# ପୁଳିନବିହାରୀ ଗ୍ରନ୍ଥାବଳୀ

## ପ୍ରଥମ ଖଣ୍ଡ



ଡ. ପୁଳିନ୍‌ବିହାରୀ ରାୟ

୧୦.୧୦.୧୯୦୭ - ୦୪.୧୧.୧୯୮୦

ପୁଲିନ ବିହାରୀ ଗ୍ରନ୍ଥାବଳୀ

ଡ. ପୁଲିନ୍ ବିହାରୀ ରାୟ

ସଂପାଦନା

**ପ୍ରଫେସର୍ ଜତୀନ୍ଦ୍ର କୁମାର ନାୟକ**

ପ୍ରଥମ ସଂସ୍କରଣ

୨୦୧୬



ପ୍ରଚ୍ଛଦପଟ ଶିଳ୍ପୀ

**ଡ. ମୁରଲୀଧର ଟାଲି**

**ପ୍ରକାଶକ**

**ଶିକ୍ଷାସନ୍ଧାନ**

ଏନ୍.ଡି.-୭, ଭି.ଆଇ.ପି. ଏରିଆ, ଆଇ.ଆର୍.ସି. ଭିଲେଜ୍

ଭୁବନେଶ୍ୱର-୧୫, ସହଯୋଗ ରୂପାନ୍ତର, ଭୁବନେଶ୍ୱର

ଆଇ.ଏସ୍.ବି.ଏନ୍. ୯୭୮-୯୩-୮୦୯୬୮-୦୯-୪

ମୂଲ୍ୟ ୬୦୦ଟଙ୍କା

**ମୁଦ୍ରଣ : ଶିକ୍ଷାପ୍ରକାଶନୀ, ଭୁବନେଶ୍ୱର**

---

**Pulin Bihari Granthabali**

*Dr. Pulin Bihari Ray*

**Editor**

Prof. Jatindra Kumar Nayak

First Edition

2016



Email : falguniray44@gmail.com

Cover

Dr. Muralidhar Tali

Pubisher :

**Sikshasandhan**

N.D-7, VIP Area, IRC Village, Bhubaneswar-751015,

in collaboration with Rupantar, Bhubaneswar

I.S.B.N. : 978-93-80968-09-4

Price. : 600/-

Printing : Sikshaprakashani, Bhubaneswar

# କୃତଜ୍ଞତା ସ୍ୱୀକାର


ମୋର ପିତା ଡା ପୁଳିନ ବିହାରୀ ରାୟ ୧୯୮୦ ମସିହା ନଭେମ୍ବର ୪ ତାରିଖରେ ଇହଲୀଳା ସମ୍ବରଣ କଲେ। ତାଙ୍କର ଜୀବନ ସଂଘର୍ଷମୟ ଥିଲେ ମଧ୍ୟ ସେ ସାହିତ୍ୟ ସାଧନାରେ ପ୍ରତି ମୂହୁର୍ତ୍ତକୁ କଟାଉଥିଲେ। ରାଶି ରାଶି ପ୍ରକାଶିତ ଓ ଅପ୍ରକାଶିତ ଲେଖା ସେହି ସାଧନାର ପରିପ୍ରକାଶ। ମୃତ୍ୟୁ ପରେ ତାଙ୍କର ଅନେକ ସାହିତ୍ୟିକ ବନ୍ଧୁ, ଶୁଭେଚ୍ଛୁ ଓ ଆତ୍ମୀୟ ମୋତେ ବାରମ୍ବାର କହୁଥିଲେ ସେ ଲେଖାଗୁଡ଼ିକୁ ଗ୍ରନ୍ଥାବଳୀ ଆକାରରେ ପ୍ରକାଶ କରିବାକୁ। ସମସ୍ତଙ୍କର ଏହି ଆନ୍ତରିକ ଇଚ୍ଛାରୁ ଆଜି ତାହା ପ୍ରକାଶିତ ହୋଇପାରିଲା। ଏହି ସମସ୍ତ ଶୁଭେଚ୍ଛୁମାନଙ୍କ ନିକଟରେ ମୁଁ ଚିର ଋଣୀ।

ଗ୍ରନ୍ଥାବଳୀର କଷ୍ଟସାଧ୍ୟ ସମ୍ପାଦନା କରିଛନ୍ତି ଇଂରାଜୀ ପ୍ରଫେସର ଡ. ଯତୀନ୍ଦ୍ର କୁମାର ନାୟକ। ନିଜର ମୂଲ୍ୟବାନ ସମୟ ଦେବାରେ ହେଳା ବା କୁଣ୍ଠା କେବେ ହେଲେ କରି ନାହାନ୍ତି। ଓଡ଼ିଆ ପ୍ରଫେସର ଡ. ବିଜୟ କୁମାର ଶତପଥୀ ଅତ୍ୟନ୍ତ ଆଗ୍ରହର ସହିତ ଗ୍ରନ୍ଥାବଳୀଟି ପଢ଼ି ତାହାର ସୁଚିନ୍ତିତ, ସମାଲୋଚନାମୂଳକ ମୁଖବନ୍ଧଟି ଲେଖିଛନ୍ତି। ଉଭୟଙ୍କୁ ମୁଁ ଅନ୍ତରର କୃତଜ୍ଞତା ଓ ଧନ୍ୟବାଦ ଜଣାଉଛି।

ଗ୍ରନ୍ଥାବଳୀ ପ୍ରକାଶ କରିବାକୁ ପିତାଙ୍କର ବନ୍ଧୁ ଓ ଲେଖକମାନେ ସ୍ୱର୍ଗତଃ ଫତୁରାନନ୍ଦ, ୰ମୁରାରୀ ମୋହନ ଜେନା, ପ୍ର. ଯତୀନ୍ଦ୍ର ମୋହନ ମହାନ୍ତି, ୰ଚନ୍ଦ୍ରମଣି ପଣ୍ଡା; ଦୁଇ ସ୍ୱର୍ଗତଃ ପିଉସା ୰ରଘୁନାଥ ଦାସ ଓ ୰ଡ. ପାର୍ଥ ରାଓ ମୋତେ ସର୍ବଦା ଉତ୍ସାହିତ କରୁଥିଲେ। ସେହି ପୁଣ୍ୟାତ୍ମାମାନଙ୍କୁ ମୋର ଭକ୍ତି ଶ୍ରଦ୍ଧାଞ୍ଜଳି ଓ କୃତଜ୍ଞତାର ପ୍ରଣାମ। ସାମ୍ବାଦିକ ଓ ଲେଖକ ଭାଇ ନୃସିଂହ ଚରଣ ସାହୁ ମଧ୍ୟ ଏ ଦିଗରେ ସବୁ ସମୟରେ ଉତ୍ସାହିତ କରି ଆସିଛନ୍ତି। ତାଙ୍କ ନିକଟରେ ମୁଁ ଚିର କୃତଜ୍ଞ।

ପିତାଙ୍କ ଜୀବିତାବସ୍ଥାରେ ତାଙ୍କର ଲେଖାଗୁଡ଼ିକ ଯତ୍ନରେ ରଖିବା ଓ ତାଙ୍କୁ ସହଯୋଗ କରିଥିବାରୁ ମୁଁ ଭଉଣୀ ସିପ୍ରା ଓ ଭାଇ ମିହିରଙ୍କୁ କୃତଜ୍ଞତା ଜଣାଉଛି। ଗ୍ରନ୍ଥାବଳୀର ପ୍ରକାଶନରେ ମୋର ସ୍ୱର୍ଗୀୟା ବଡ଼ ଭଉଣୀ ସୁଜାତା ଓ ପତ୍ନୀ କଲ୍ୟାଣୀ ସବୁ ସମୟରେ ମତେ ଆନ୍ତରିକ ଉତ୍ସାହିତ କରିଛନ୍ତି ଓ ସମ୍ପାଦନାରେ ସାହାଯ୍ୟ କରିଛନ୍ତି। ସେମାନଙ୍କୁ ମୋର ଶ୍ରଦ୍ଧା ଓ କୃତଜ୍ଞତା।

ଭଉଣୀ ଶ୍ରୀମତୀ ପ୍ରତିମା ସାମନ୍ତରାୟ ଗ୍ରନ୍ଥାବଳୀର DTP ନିର୍ଭୁଲ ଭାବରେ ଯତ୍ନର ସହିତ କରିଛନ୍ତି। ଶ୍ରୀ ସତ୍ୟବ୍ରତ ନାୟକ ଏହାର ଅଙ୍ଗସଜ୍ଜାର ଦାୟୀତ୍ୱ ସୁଚାରୁ ରୂପେ ତୁଲାଇଛନ୍ତି। ସର୍ବୋପରି 'ଶିକ୍ଷା ସନ୍ଧାନ'ର ଶ୍ରୀ ଆଶିଷ ନନ୍ଦ ଓ ଶ୍ରୀ ଦେବେନ୍ଦ୍ର କୁମାର ନାୟକଙ୍କର ଅକ୍ଳାନ୍ତ ପରିଶ୍ରମ ଦ୍ୱାରା ଏହି ଗ୍ରନ୍ଥାବଳୀର ପ୍ରକାଶନ ସମ୍ଭବ ହୋଇଛି। ଏହି ସାନ ଭଉଣୀ ଓ ଭାଇମାନଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି।

ଡ. ଫାଲ୍‌ଗୁନି ରାୟ

## ମୁଖବନ୍ଧ

# ପୁଳିନବିହାରୀଙ୍କ ସୃଷ୍ଟି ସମ୍ଭାରର ବୈଚିତ୍ର୍ୟମୟ ଦିଗ

**ପ୍ରଫେସର ବିଜୟ କୁମାର ଶତପଥୀ**

ବୋଧହୁଏ ହେବ ୧୯୭୮ ମସିହାର କଥା । ସେତେବେଳେ ମୁଁ ମୋର ଗବେଷଣା 'ଓଡ଼ିଆ ସାହିତ୍ୟରେ ମାର୍କ୍ସବାଦୀ ଚେତନା' ସମ୍ପର୍କରେ କାମ କରୁଥାଏ । ଏଥି ନିମିତ୍ତ ବିଭିନ୍ନ ପତ୍ରପତ୍ରିକା ଅନୁଧ୍ୟାନ କରୁଥାଏ । ମୁଁ ଚାକିରୀ କରୁଥାଏ ଅଧ୍ୟାପକ ଭାବରେ ଗୋଦାବରୀଶ ମହାବିଦ୍ୟାଳୟ ବାଣପୁରରେ । ଗ୍ରୀଷ୍ମ ଛୁଟି, ପୂଜା ଛୁଟି ପ୍ରଭୃତିରେ ଆସି କଟକର 'ନୂଆ ଦୁନିଆ', 'ସହକାର' 'ଡଗର', 'ଝଙ୍କାର' ପ୍ରଭୃତି ପତ୍ରିକାଗୁଡ଼ିକର ଅଫିସରେ ଦିନକୁ ସାତ ଆଠ ଘଣ୍ଟା ପରିଶ୍ରମ କରି ମୁଁ ନୋଟ୍ କରୁଥାଏ ମୋ ଗବେଷଣାରେ ସାହାଯ୍ୟ କରୁଥିବା ଉପାଦାନ ଗୁଡ଼ିକୁ । ତା'ପରେ ସେତେବେଳେ ଜେରକ୍ସ ସୁବିଧା ନଥାଏ । ପୁଣି ପୁରୁଣା ପତ୍ରପତ୍ରିକାଗୁଡ଼ିକୁ କେଉଁ ସମ୍ପାଦକ ବା ଲାଇବ୍ରେରୀଆନ୍ ପଢ଼ିବାକୁ ଦେବେ ଘରକୁ ନେଇ କିମ୍ବା ଜେରକ୍ସ କପି କରିବା ଲାଗି? ଏ ନେଇ କିଛି ଅସାଧୁ ଗବେଷକଙ୍କ ନାଁରେ ବଦ୍‌ନାମ ଥାଏ । ସେ ଯାହାହେଉ ମୋର ଏ ଉପାଦାନ ସଂଗ୍ରହ ଚାଲିଲା ଦୀର୍ଘ ଦିନ ଧରି । ମୁଁ ୧୯୮୧ ମସିହାରେ କଟକ ଆସି ସରକାରୀ କଲେଜରେ ଅଧ୍ୟାପକ ହେଲା ପରେ ନିୟମିତ ଏକ ନିର୍ଦ୍ଦିଷ୍ଟ ସମୟରେ ସକାଳ କି ସଞ୍ଜରେ ଏ ସବୁ ପତ୍ରିକାଗୁଡ଼ିକର ଅଫିସକୁ ଯାଇ ନୋଟ୍ ପ୍ରସ୍ତୁତ କରିବା ଫଳରେ ମୋର ଉପାଦାନ ସଂଗ୍ରହ କାର୍ଯ୍ୟ ତ୍ୱରାନ୍ୱିତ ହେଲା ।

ସେଇ ୧୯୭୮ ମସିହାର ଘଟଣା । ସ୍ମୃତିରୁ ଏ ଯାଏଁ ଯାଇ ନାହିଁ । ପୂଜା ଛୁଟି ଖୋଲିଲା ପୂର୍ବଦିନ ଗାଁରୁ ଆସିଛି । ରେଭେନ୍ସା ପି.ଜି.ହଷ୍ଟେଲରେ ଆମ ଗାଁର ଜଣେ ଛାତ୍ର ରହୁଥାନ୍ତି । ସଞ୍ଜ ରତରତ ହେଉଥାଏ । ତାଙ୍କ ପାଖରେ ମୋ ବ୍ୟାଗ୍ ଆଦି ରଖି ମୁଁ ବାହାରି ପଡ଼ିଲି 'ଡଗର' ଅଫିସ୍ । ସକାଳୁ ବସ୍‌ରେ ବାଣପୁର ଯିବାକୁ ପଡ଼ିବ । ତେଣୁ ଏ ସନ୍ଧ୍ୟାଟା 'ଡଗର' ଅଫିସ୍‌ରେ କଟାଇ ମୋର ଗବେଷଣା କାର୍ଯ୍ୟ ପାଇଁ ବିନିଯୋଗ କଲେ କେମିତି ହୁଅନ୍ତା? ଏଇଆ ଭାବି ଓ.ଏମ୍.ପି.ରେ ଥିବା ପି.ଜି. ହଷ୍ଟେଲରୁ ରିକ୍ସାଟେ ନେଇ 'ଡଗର' ଅଫିସ ଆଡ଼କୁ ମୁହାଁଇଲି । ଓଡ଼ିଆ ସାହିତ୍ୟରେ ପ୍ରସିଦ୍ଧ ବ୍ୟଙ୍ଗ ଓ ହାସ୍ୟରସର ସ୍ରଷ୍ଟା ଫତୁରାନନ୍ଦଙ୍କ ସହ ମୋର ପରିଚୟ ସେତେବେଳକୁ ଘନିଷ୍ଠତାରେ ପରିଣତ ହୋଇ ନ ଥାଏ । ମୋର ଜଣେ ସହପାଠୀ ତଥା ପ୍ରିୟ ବନ୍ଧୁ ପ୍ରଦୀପ କୁମାର ସାମଲ ସେ ସମୟରେ 'ଡଗର'ରେ ଗପ ଲେଖୁଥାନ୍ତି । ସେ ମତେ ପ୍ରଥମେ ଫତୁରାନନ୍ଦଙ୍କ ସହ ପରିଚୟ କରାଇ ଦେଇଥିଲେ । ୧୯୮୦ ମସିହା ପରେ କିନ୍ତୁ ଶ୍ରଦ୍ଧେୟ ବିଶିଷ୍ଟ ସାହିତ୍ୟିକ ଡ.ବିଜୟାନନ୍ଦ ସିଂହ (ସେତେବେଳେ 'ଡଗର' ଅଫିସରେ ସେ ରହୁଥିଲେ) 'ଡଗର' ଓ ଫତୁରାନନ୍ଦଙ୍କ ସହ ନିବିଡ଼ ସମ୍ପର୍କ ସ୍ଥାପନରେ ହୋଇଥିଲେ ସହାୟକ ।

ସେଦିନ ସେଇ ହାଲକା ଶୀତ ପଡ଼ି ଆସୁଥିବା ସଂଜରେ 'ଡଗର' ଅଫିସ୍‌ରେ ପହଞ୍ଚି ଦେଖେତ ଫତୁରାନନ୍ଦଙ୍କ ସହ ଜଣେ ହୃଷ୍ଟପୁଷ୍ଟ, ପୁଣି ଖୁବ୍ ଗମ୍ଭୀର ମନେ ହେଉଥିବା ବ୍ୟକ୍ତି ଜଣେ ବସିଛନ୍ତି ଓ ଦୁହେଁ ଗପସପରେ ବ୍ୟସ୍ତ । ବାରଣ୍ଡା ଟପି ଅଫିସ୍ ଦୁଆର ମୁହଁରେ ପାଦ ଦେଲା ବେଳକୁ ଫତୁରାନନ୍ଦ କ'ଣ ଗୋଟେ ଏମିତି ମଜା କଥା କହିଦେଲେ ଯେ

ସେଇ ହୃଷ୍ଟପୁଷ୍ଟ ବ୍ୟକ୍ତି ଜଣକ ଠୋ ଠୋ ହୋଇ ହସି ଉଠିଲେ। ତା ସହିତ ଫତୁରାନନ୍ଦଙ୍କ ହସରେ ଫାଟି ପଡ଼ିଲା ସେ ଘର। ହାସ୍ୟ ରୋଳରେ ଅବସାନ ପାଇଁ କେଇ ମିନିଟ ଅପେକ୍ଷା କଲା ପରେ ଯାଇ ପ୍ରଣାମ କଲି ଫତୁରାନନ୍ଦଙ୍କୁ। "ଇଏ ମୋ ବନ୍ଧୁ ପୁଳିନ ବିହାରୀ, ଡାକ୍ତର ପୁଳିନ ବିହାରୀ ରାୟ। ମୋ ପରିକା ଖୁବ୍ ମଜାଦାର କଥା ସବୁ ଲେଖନ୍ତି।" ଚତ୍‌କ୍ଷଣାତ୍ ମୁଁ ପ୍ରଣାମ କଲି ତାଙ୍କୁ। ବାଣପୁର କଲେଜରେ ଚାକିରୀ କଲା କାଳରେ ମୋର ଘନିଷ୍ଠ ବନ୍ଧୁ ଥିଲେ ଇଂରାଜୀ ବିଭାଗର ଅଧ୍ୟାପକ ମିହିର କୁମାର ରାୟ। ମିହିର ବାବୁଙ୍କଠାରୁ ତାଙ୍କ ପିତାଙ୍କ ସମ୍ପର୍କରେ ମୁଁ ଶୁଣିଥିଲି। ତାଙ୍କ ସହ ମୋର ଏଇ ପ୍ରଥମ ସାକ୍ଷାତ ମତେ ଖୁବ୍ ଆନନ୍ଦ ଦେଲା। ସେ ମୋର କୁଶଳ ଜିଜ୍ଞାସା କଲେ। ମୁଁ ଏହା ଭିତରେ ତାଙ୍କର ଲେଖାଲେଖି ସମ୍ପର୍କରେ କିଛି କଥା ମଧ୍ୟ ଜାଣିନେଲି। ମିହିର ବାବୁଙ୍କ ହାତରେ ତାଙ୍କର ବହି ସବୁ ପଠାଇବେ ବୋଲି ମତେ ସେ କହିଲେ।

"ବିଜୟ ବାବୁ ସେ ପିଲାଟି ଗାଁକୁ ଯାଇଛି ଯେ ଛୁଟି ପୂରିବାକୁ ବସିଲାଣି ଏ ଯାଏ ଆସିନି। କୁଆଁର ପୂନେଇ ବେଳକୁ ଆସିବ। କ'ଣ କରିବା କହିଲେ? ବନ୍ଧେଇ 'ଡଗର' ସବୁ ଧୂଳି ଝାଡ଼ି ଏବେ ଆପଣଙ୍କ ପାଖରେ ଥୋଇବା କାଠିକର ପାଠ।" ମୁଁ ସାଙ୍ଗେ ସାଙ୍ଗେ କହିଲି- "ଆଜି ଥାଉ ଆଜ୍ଞା କିଛି ଅସୁବିଧା ନାହିଁ। ମୁଁ ପରେ ଆସି ଏକାଦିକ୍ରମେ ପନ୍ଦର କୋଡ଼ିଏ ଦିନ କାଳ କଟକରେ ରହି 'ଡଗର'ରୁ ସବୁ ତଥ୍ୟ ସଂଗ୍ରହ କରି ନେଇଯିବି।" ସେ ଖୁସି ହେଲେ ଓ ମଜା କରି କହିଲେ - "ଭଲ କଥା। ବୁଝିଲ ନା ବିଜୟ ବାବୁ! ପୁଳିନ ବାବୁ ଓ ମୁଁ ଦୁହେଁ ଡାକ୍ତରୀ ବିଦ୍ୟା ପଢ଼ିଲୁ। ସେ ଡାକ୍ତର ହେଲେ, ମୁଁ ଅଡାକ୍ତର ହୋଇ ରହିଲି। ମାତିଲି ସାହିତ୍ୟ ଚାଷ ଓ ବେଉଷଣରେ। ପୁଳିନ ବାବୁ ଏକାଧାରରେ ଡାକ୍ତର ପୁଣି ସମୟ ପାଇଲେ ସାହିତ୍ୟ ଚାଷ ବି କରନ୍ତି।" ମୁଁ ଏହାର ଉତ୍ତର ଦେଇଥିଲି - "ସାହିତ୍ୟ ଚାଷ ତ ଅସଲି ଡାକ୍ତରୀ ବିଦ୍ୟା।" ପୁଣି ଥରେ ଉଠିଥିଲା ସେଇଠି ବିମଳ ହସର ଜୁଆର। କିଛି ସମୟ ଏମିତି ହସଖୁସି ଆଳାପ ଆଲୋଚନାରେ କଟିଥିଲା ସେଇଠି। ଏହା ଭିତରେ ଫତୁରାନନ୍ଦ ଡଗର ପ୍ରେସ୍‌ର ଜଣେ କମ୍ପୋଜିଟର ହାତରେ ଚାହା, ଗରମ ଗରମ ବରା ଓ ସଦ୍ୟପ୍ରସ୍ତୁତ ମାଳପୁଆ ମଗେଇ ସାରିଥାନ୍ତି ସେତେବେଳର ପିଠାପୁର ପୋଖରୀ ବେଢ଼ାରେ ଥିବା ଗୁଡ଼ିଆ ଦୋକାନରୁ। ତା'ର ସଦ୍‌ବ୍ୟବହାର ହେଲା। ମୁଁ ମୋର ରହିବା ସ୍ଥାନକୁ ରାତି ସାଢ଼େ ଆଠଟା କି ନଅଟା ବେଳକୁ ଲେଉଟି ଆସିଲି। ପରଦିନ ସକାଳୁ ବସ୍ ଧରି ବାଣପୁରରେ ପହଞ୍ଚିଲି।

ପୁଳିନ ବିହାରୀଙ୍କ ସହ ସେଇଦିନର ପ୍ରଥମ ସାକ୍ଷାତ କ୍ରମେ ନିବିଡ଼ତର ହେଲା। ମିହିର ବାବୁ ଥିଲେ ମୋର ସହକର୍ମୀ ପରମ ବନ୍ଧୁ, ସାହିତ୍ୟପ୍ରାଣ। ସେ ମତେ ତାଙ୍କ ସହ କଟକରେ ତାଙ୍କର ବସାଘରକୁ କେତେ ଥର ନେଇଛନ୍ତି। ପରିଚୟ ହୋଇଛି ତାଙ୍କ ବଡ଼ ଭାଇ ବିଶିଷ୍ଟ ଡାକ୍ତର ଓ ଚିତ୍ରଶିଳ୍ପୀ ଫାଲ୍‌ଗୁନୀ ରାୟଙ୍କ ସହିତ। ଫାଲ୍‌ଗୁନୀଙ୍କ ପତ୍ନୀ କଲ୍ୟାଣୀ ସାମନ୍ତରାୟ ଇଂରାଜୀ ସାହିତ୍ୟର ଛାତ୍ରୀ ଓ ସୁଯୋଗ୍ୟ ଅଧ୍ୟାପିକା। ରେଭେନ୍ସା କଲେଜ ମହିଳା ଛାତ୍ରାବାସର ମୁଖପତ୍ରର ସେ ଥିଲେ ସମ୍ପାଦିକା। ଖୁବ୍ ଭଲ କବିତା ମଧ୍ୟ ଲେଖନ୍ତି। ଏବେ ଅବସର ନେଇଛନ୍ତି ଉତ୍କଳ ବିଶ୍ୱବିଦ୍ୟାଳୟରୁ ପ୍ରଫେସର ଚାକିରୀରୁ। ପୁଳିନ ବିହାରୀଙ୍କ ଝିଅ ସିପ୍ରା ରାୟ ମଧ୍ୟ ଲେଖିକା ଓ ଓଡ଼ିଆ ଭାଷା, ସାହିତ୍ୟର ଅଧ୍ୟାପିକା ଭାବରେ କାର୍ଯ୍ୟ କରୁଥିଲେ। ତାଙ୍କର କବିତା ଓ ଅନ୍ୟାନ୍ୟ ଲେଖାଗୁଡ଼ିକ ମଧ୍ୟ ମୁଁ ପଢ଼ିଛି ସେତେବେଳେ ପତ୍ର ପତ୍ରିକାମାନଙ୍କରୁ।

ଏସବୁ କହିବାର ତାତ୍ପର୍ଯ୍ୟ ହେଲା ଯେ ସାହିତ୍ୟିକ ପୁଳିନ ବିହାରୀଙ୍କ କଳା ନେଇ ତାଙ୍କର ପୁଅ ଝିଅ ସଂସାରକୁ ଆସିଥିଲେ। ଏକ ସାହିତ୍ୟପ୍ରାଣ ପରିବାର। ମୋର ମନେ ପଡୁଛି ପୁଳିନ ବିହାରୀଙ୍କ ଦେହାନ୍ତ ପରେ ତାଙ୍କ ପରିବାର ପକ୍ଷରୁ ଗୋଟିଏ ସଭା ଶ୍ରୀରାମଚନ୍ଦ୍ର ଭବନରେ ଆୟୋଜନ ହୋଇଥିଲା। ମୁଁ ତାଙ୍କର ସାମଗ୍ରିକ କୃତି ସମ୍ପର୍କରେ ସେଠାରେ ଏକ ପ୍ରବନ୍ଧ ଉପସ୍ଥାପନ କରିଥିଲି। ପରେ ତାହା 'ଡଗର' ପତ୍ରିକାରେ ପ୍ରକାଶ ପାଇଥିଲା। ଏବେ ତାଙ୍କର ଗ୍ରନ୍ଥାବଳୀ ପ୍ରକାଶ ପାଉଛି। ଏହା ମୋ ପାଇଁ ତଥା ପୁଳିନ ବିହାରୀପ୍ରେମୀ ଅଗଣିତ ପାଠକ ପାଠିକା ପାଇଁ ତଥା ତାଙ୍କର ପରିବାର ପାଇଁ ଖୁବ୍ ଆନନ୍ଦର କଥା।

ପୁଳିନ ବିହାରୀ ତାଙ୍କ ଜୀବଦ୍ଦଶାରେ ନାନା ସଂଘାତ ଓ ପ୍ରତିକୂଳ ପରିସ୍ଥିତି ମଧ୍ୟରେ ଗତି କରିଥିଲେ। ସେ ଚାକିରୀ ଆରମ୍ଭ କରିଥିଲେ ଦ୍ୱିତୀୟ ବିଶ୍ୱ ଯୁଦ୍ଧର ଘନଘଟା କାଳରେ। ମେଡ଼ିକାଲ ସ୍କୁଲରୁ ଅଧ୍ୟୟନ ସମାପ୍ତ କଲାପରେ ସାହସୀ ପୁଳିନ ବିହାରୀ ୧୯୪୦ ମସିହା ପରେ ଯୋଗ ଦିଅନ୍ତି ଚାରବାଟିଆଠାରେ ଥିବା ଇଂରେଜମାନଙ୍କର 'ଆଲାଏଡ୍ ଫୋର୍ସେସ୍' ବାୟୁ ସେନା ଶିବିରରେ। ୧୯୪୫ ମସିହା ଦ୍ୱିତୀୟ ବିଶ୍ୱଯୁଦ୍ଧ ଶେଷ ହେବା ପରେ ସେ କଟକର କ୍ରାଏଷ୍ଟ କଲେଜିଏଟ୍ ସ୍କୁଲରେ ଡକ୍ଟର ଟିଚର ଭାବରେ ଯୋଗ ଦିଅନ୍ତି। ପରବର୍ତ୍ତୀ କାଳରେ କେନ୍ଦ୍ରାପଡ଼ା ଓ ଯାଜପୁରରେ ମାଲେରିଆ ଅଫିସର ଓ ପୁରୀ ଜିଲ୍ଲାର ବିଭିନ୍ନ ସ୍ଥାନ ବାଲିପାଟଣା, କାକଟପୁର, ବେଗୁନିଆ, ବୋଲଗଡ଼, ପାରିକୁଦ, ଡେଲାଙ୍ଗ, ଜଟଣୀ, ଚନ୍ଦକା, ଯାଁଳା ପ୍ରଭୃତି ସ୍ଥାନରେ ମେଡ଼ିକାଲ ଅଫିସର୍ ଭାବରେ ଯୋଗ ଦେଇ ସେ ଅବସର ଗ୍ରହଣ କରିଥିଲେ ୧୯୬୮ ମସିହାରେ। ତାଙ୍କ ପତ୍ନୀ ସୁନୀଳା ରାୟଙ୍କ ଦେହାନ୍ତ ହୋଇଥିଲା ୧୯୫୪ ମସିହାରେ। ପତ୍ନୀହରା ପୁଳିନ ଏହି ଦୁଃଖ ଓ ଶୋକକୁ ଧୈର୍ଯ୍ୟର ସହ ସାମ୍ନା କରିଥିଲେ।

ପୁଳିନ ବିହାରୀଙ୍କ ଜନ୍ମଦାତ୍ରୀ ସୁଖଦା ସେତେବେଳକୁ ଥିଲେ ଜୀବିତ। ଛୋଟ ପିଲାମାନଙ୍କ ବାପା ଓ ମାଆର ଦାୟିତ୍ୱ ସେ ତାଙ୍କର ଏଇ ଦୁର୍ଦ୍ଦିନଗୁଡ଼ିକରେ ଯେପରି ନେଉଥିଲେ ମୁଁ ସେକଥା ବାଣପୁରଠାରେ ମୋର ବନ୍ଧୁ ମିହିର ରାୟଙ୍କଠାରୁ ଶୁଣିଛି। ଉକ୍ତ ଗ୍ରନ୍ଥାବଳୀରେ ଡାକ୍ତର ପ୍ରଫେସର ଫାଲ୍‌ଗୁନୀ ରାୟ ଏ ପ୍ରସଙ୍ଗ ମଧ୍ୟ ଉଲ୍ଲେଖ କରିଛନ୍ତି। ପ୍ରତିକୂଳ ଭାଗ୍ୟ ସହିତ ସେ ଲଢ଼ିଛନ୍ତି। ପିଲାମାନଙ୍କୁ ସୁଯୋଗ୍ୟ କରି ଗଢ଼ିଛନ୍ତି ଓ ତା'ରି ଭିତରେ ସାହିତ୍ୟ ସାଧନା ଅବ୍ୟାହତ ରଖିଛନ୍ତି। ଏ କିଛି କମ୍ କଥା ନୁହେଁ। ଲେଖାଲେଖି କରିବା ବ୍ୟତୀତ ଛବି ଆଙ୍କିବା, ମୂର୍ତ୍ତୀ ଗଢ଼ିବା, ଫୁଟବଲ୍ ଖେଳିବା ଆଦିରେ ସେ ରଖୁଥିଲେ ରୁଚି। ଭାଗ୍ୟର ପ୍ରତିକୂଳ ପରିସ୍ଥିତି ମଧ୍ୟରେ ଥାଇ ଏହା ତାଙ୍କୁ ଅଗ୍ରଗାମୀ ହେବା ପାଇଁ ପ୍ରେରଣା ଦେଉଥିଲା। ପୁଳିନ ବିହାରୀ ତାଙ୍କ 'ବେଲିଆ' ଗଳ୍ପ ସଂକଳନର ଭୂମିକାରେ କହିଛନ୍ତି- "ମୋର ଜୀବନ ହେଲା ଡାକ୍ତରୀ, ରୋଗ ଆଉ ରୋଗୀ ନେଇ କାରବାର। ଦୈନିକ ଦୁଃଖର ଘଟଣା ଛଡ଼ା ସୁଖର ଘଟଣା କମ୍ ଆଖିରେ ପଡ଼େ। ଏହାଛଡ଼ା ନିଜର ଦୁଃଖମୟ ଜୀବନ। ସେଥିରେ କିଛି ଲେଖିବାର ଆଗ୍ରହ ଥିଲେ ମଧ୍ୟ ଲେଖି ହୁଏନା, ଲେଖିଲେ ମଧ୍ୟ ଲେଖା ଭଲ ହବ କୁଆଡୁ? ପୁଣି ଅବସର କାମ। ଯେତେବେଳେ ଅବସର ମିଳିଲା ସେତେବେଳେ ମୁଣ୍ଡ ଭିତରେ ବାର ଜଂଜାଳରୁ ଗୋଟିଏ ସମାଧାନର ସହଜ ଉପାୟ ବାହାର କରିବା ପାଇଁ ଏକ ବିରାଟ ଫାକ୍ଟରୀ କାମ କରୁଛି। ଶାନ୍ତିରେ ବସି କଲମ ଚଳେଇବା ବଡ଼ କଷ୍ଟକର।"

ଜୀବନ ଓ ଜୀବିକାର ଏଇ ସବୁ ଜଂଜାଳ ମଧ୍ୟରେ ନିଜର ଗଳ୍ପ ଓ ଉପନ୍ୟାସ ପାଇଁ ପ୍ଲଟ ଖୋଜିଛନ୍ତି ପୁଳିନ ବିହାରୀ। ଡାକ୍ତର ଭାବରେ ରୋଗୀର ରକ୍ତ ମାଂସର ଦେହକୁ ପରୀକ୍ଷା କରିବା ସହିତ ମଣିଷର ମନ ଗହନର ଅନ୍ଧାରୀ ଇଲାକାରେ ସେ ବିଚରଣ କରିଛନ୍ତି କେତେବେଳେ, ପୁଣି କେତେବେଳେ ମଧ୍ୟ ସେ ସମାଜର ବିଷାକ୍ତ ଘାଆ ଓ ବଥ ଗୁଡ଼ାକ ଉପରେ ଛୁରୀ କଇଁଚି ଚଳେଇବା ପାଇଁ ବିସ୍ମୃତ ହୋଇ ନାହାନ୍ତି। କେଉଁଠି ସେ ମଣିଷର ଚରମ ନିର୍ବୋଧତାକୁ ଠାବ କରି ନିଜେ ହସି ହସି ବେଦମ ହେବା ସହିତ ପାଠକମାନଙ୍କୁ ହସାଇଛନ୍ତି ଖୁବ୍। ଆଉ କେଉଁଠି ସମାଜର ଅବହେଳିତ, ଉପେକ୍ଷିତ ମଣିଷ ପାଇଁ ସେ ଅଜାଡ଼ି ଦେଇଛନ୍ତି କରୁଣା, ସ୍ନେହ ଓ ମମତା। ସେ 'ସହକାର', 'ଝଙ୍କାର', 'ଡ଼ଗର', 'ଆସନ୍ତାକାଲି', 'ମୋ ଦେଶ', 'ବେଳା', 'ନବ ଜୀବନ', 'ସାଧନା', 'ମାତୃଭୂମି', 'ପ୍ରଜାତନ୍ତ୍ର', 'ବନଫୁଲ', 'ଅଞ୍ଜଳି', 'ଅଧୁନା' ପ୍ରଭୃତିରେ ଲେଖିଛନ୍ତି ଅସଂଖ୍ୟ ଗଳ୍ପ ଓ କବିତା। ଓଡ଼ିଶାର ବିଭିନ୍ନ ସ୍ଥାନରେ କଟିଥିଲା ତାଙ୍କର କର୍ମମୟ ଜୀବନ। କଟକର ସାହି ବସ୍ତିର ଜୀବନପ୍ରବାହ ସହିତ ତାଙ୍କର ରହିଥିଲା ନିବିଡ଼ ପରିଚିତି। ତେଣୁ ତାଙ୍କର ରଚନା ସମ୍ଭାର ହୋଇପାରିଛି ଅନୁଭୂତିସିଦ୍ଧ। ପୁଳିନ ବିହାରୀଙ୍କ ଜ୍ୟେଷ୍ଠ ପୁତ୍ର ପ୍ରଫେସର ଡାକ୍ତର ଫାଲ୍‌ଗୁନୀ ରାୟ ଯଥାର୍ଥରେ ଉକ୍ତ ଗ୍ରନ୍ଥାବଳୀରେ ଲେଖିଛନ୍ତି- "ସେ ଯେଉଁଠାରେ ଚାକିରୀ କରୁଥିଲେ ସେଠାକାର ଲୋକଙ୍କ ଦୁର୍ଦ୍ଦଶା, ହସକାନ୍ଦ, ପାରିପାର୍ଶ୍ୱିକ ଘଟଣାବଳୀ ଓ କିମ୍ବଦନ୍ତୀ ଉପରେ ଆଧାର କରି ଗଳ୍ପ, କବିତା ଲେଖୁଥିଲେ। ଅଧିକାଂଶ ଲେଖା

ହାସ୍ୟରସାତ୍ମକ ମନେ ହେଉଥିଲେ ମଧ୍ୟ ସେଥିରେ ଗଭୀର ଭାବରେ ମଣିଷର ଦୁଃଖସୁଖ, ସମାଜର ଅନ୍ଧ ବିଶ୍ୱାସ, ସାମାଜିକ ଶୋଷଣ ଓ ରାଜନୈତିକ ଘଟଣା ସ୍ଥାନ ପାଉଥିଲା । ପାରିକୁଦରେ ଥିଲାବେଳେ ଚିଲିକାର ସୌନ୍ଦର୍ଯ୍ୟ ବର୍ଣ୍ଣନା କରି କବିତା, କାକଟପୁରରେ ଥିଲାବେଳେ ମଙ୍ଗଳାଙ୍କ ସମ୍ବନ୍ଧରେ କିମ୍ବଦନ୍ତୀ ଉପରେ ଆଧାରିତ 'ମଙ୍ଗଳାୟନ', ଚନ୍ଦକାରେ ଥିବାବେଳେ 'ଚମ୍ପା ମା ହତ୍ୟା' କବିତା 'ବହୂପୁତ୍ରେ' ଗଳ୍ପ, ଯାଁଳାରେ ଥିବା ବେଳେ 'ବାଜିଆ ପ୍ରସଙ୍ଗ' ପ୍ରଭୃତି ଏହାର ଦୃଷ୍ଟାନ୍ତ ।

ବୟସ ନିର୍ବିଶେଷରେ ପୁଲିନ ବିହାରୀଙ୍କର ତାଙ୍କର ସମକାଳୀନ ଲେଖକମାନଙ୍କ ସହ ଅନାବିଳ ବନ୍ଧୁତା ଥିଲା । ସେମାନେ ହେଲେ ଗୋପୀନାଥ ମହାନ୍ତି, ଲାଲା ନଗେନ୍ଦ୍ର ନାଥ ରାୟ, ରାଧାମୋହନ ଗଡ଼ନାୟକ, ମୁରାରୀ ମୋହନ ଜେନା, ଡ. ଶ୍ୟାମ ସୁନ୍ଦର ମିଶ୍ର, ଡ. ପ୍ରସନ୍ନ କୁମାର ପାଟଶାଣୀ, ଚନ୍ଦ୍ରମଣି ପଣ୍ଡା ପ୍ରଭୃତି । ପତ୍ନୀ ବିୟୋଗ ଓ ଘୋର ଶାରୀରିକ ଅସୁସ୍ଥତା ସହିତ ପାରିବାରିକ ଜଞ୍ଜାଳ ମଧ୍ୟରେ ଯେତେବେଳେ ପୁଲନି ବିହାରୀ ଘାଣ୍ଟି ହେଉଥିଲେ ସେତେବେଳେ ବନ୍ଧୁ ଫତୁରାନନ୍ଦଙ୍କ ଖଣ୍ଡିଏ ଚିଠି ତାଙ୍କ ଜୀବନ ଉପରେ ଗଭୀର ପ୍ରଭାବ ପକାଇଥିଲା । ସେ ଲେଖିଥିଲେ- "ପ୍ରିୟ ପୁଲିନ, ତୁମ ହାତ ହାସ୍ୟରସ ଲେଖାରେ ଦୋରସ୍ତ । ଲେଖାଲେଖି ଛାଡ଼ିବ ନାହିଁ । କଲମ ଦ୍ୱାରା ବଞ୍ଚିବ, ସିରିଞ୍ଜ ଦ୍ୱାରା ବଞ୍ଚିବ ନାହିଁ ।"

ପୁଲିନ ବିହାରୀଙ୍କ ପ୍ରଥମ ପ୍ରକାଶିତ ପୁସ୍ତକ ହେଲା 'ଛାୟାପଥ' । ୧୯୪୬ ମସିହାରେ ପ୍ରକାଶିତ ଉକ୍ତ ଗଳ୍ପ ସଂକଳନରେ ପତ୍ରସ୍ଥ ହୋଇଛି ଓଡ଼ିଶାର ଖ୍ୟାତନାମା ସାହିତ୍ୟ ସାଧକ ଢକ୍କୁର ମାୟାଧର ମାନସିଂହଙ୍କର ଅଭିମତ । ସେ ଲେଖିଛନ୍ତି- "ଏ ପୁସ୍ତକରେ ଥିବା ଅଧିକାଂଶ ଗଳ୍ପ ମୋ ଦ୍ୱାରା ସମ୍ପାଦିତ 'ଆରତି', 'ଶଙ୍ଖ' ପତ୍ରିକାମାନଙ୍କରେ ପ୍ରକାଶିତ ହୋଇ ସାରିଛି । ତେଣୁ ଗଳ୍ପ ଲେଖକ ଭାବରେ ପୁଲିନ ବାବୁ ମୋର ବେଶ୍ ପରିଚିତ । ସମ୍ପାଦକ ଭାବରେ ମୁଁ ଯେତେ କ୍ଷୁଦ୍ର ଗଳ୍ପ ପାଇଥାଏ ସେ ସବୁ ହୁଏତ ଯୌବନ କାଳର ପ୍ରେମର ଘାତ ପ୍ରତିଘାତ ବା କୃଷକ ଶ୍ରମିକର ଦୁଃଖ ବର୍ଣ୍ଣନା କରିଥାନ୍ତି । କିନ୍ତୁ ପୁଲିନ ବାବୁଙ୍କ ଗଳ୍ପରେ ନୂତନତ୍ୱ ଅଛି । ଦୈନନ୍ଦିନ ଜୀବନରେ ଅନେକ ଉପେକ୍ଷିତ ଓ ଅସାହିତ୍ୟିକ ବିଷୟ ନେଇ ତାଙ୍କର ଗଳ୍ପ ରଚନା । ଏଥିରେ ନାହିଁ ଅଛି ଯୌବନକାଳୀନ ପ୍ରଣୟର ଫେନିଳ ଉଚ୍ଛ୍ୱାସ, ନାହିଁ ବା ଅଛି ପୁଞ୍ଜିପତି ସମାଜତନ୍ତ ବିରୁଦ୍ଧରେ ଆସ୍ଫାଳନ । ତଥାପି ସେଗୁଡ଼ିକ ଉପଭୋଗ୍ୟ ହୋଇଛି ନିଜର ସ୍ୱକୀୟ ରସଗୁଣରେ ।"

'ଛାୟାପଥ' ବ୍ୟତୀତ ଅନ୍ୟ ଏକ ଗଳ୍ପ ସଂକଳନ 'ବେଲିଆ' ପ୍ରକାଶ ପାଇଥିଲା ୧୯୭୨ ମସିହା ବେଳକୁ । ଏହାକୁ ସେ ଉତ୍ସର୍ଗ କରିଥିଲେ ଫତୁରାନନ୍ଦଙ୍କୁ । ୧୯୪୫-୧୯୪୬ ମସିହା ମଧ୍ୟରେ ସେ ଲେଖିଥିବା 'ଅମଣିଷ' ଉପନ୍ୟାସ ୧୯୬୩ ମସିହାରେ ଦାଶରଥି ପୁସ୍ତକାଳୟ ତରଫରୁ ପ୍ରକାଶ ପାଇଥିଲା । ଡ.ଶ୍ୟାମ ସୁନ୍ଦର ମିଶ୍ର ଲେଖିଥିଲେ ଏହାର ମୁଖବନ୍ଧ ଓ ଏହାର ପ୍ରଚ୍ଛଦପଟ ଆଙ୍କିଥିଲେ ବିଶିଷ୍ଟ ଶିଳ୍ପୀ ଗୋପାଳ କାନୁନ୍‌ଗୋ । ୧୯୭୩ ମସିହାରେ ପ୍ରକାଶ ପାଇଥିଲା ତାଙ୍କର ଉପନ୍ୟାସ 'ରାସ୍ତା କଡ଼ର ପ୍ରାଣୀ' । ଏ ସବୁ ବ୍ୟତୀତ ପୁଲିନ ବିହାରୀଙ୍କ ଅନେକ ବ୍ୟଙ୍ଗ ବିଦ୍ରୁପ ସମ୍ବଳିତ ଓ ନିରୁତା ହାସ୍ୟ ରସାତ୍ମକ କବିତା, ଲାଳିକା ପ୍ରଭୃତି ପ୍ରକାଶ ପାଇଛି 'ଡଗର', 'ସହକାର' ଓ ତାଙ୍କର ସମକାଳୀନ ଅନ୍ୟାନ୍ୟ ପତ୍ର ପତ୍ରିକାରେ । ଏ ପ୍ରସଙ୍ଗରେ ତାଙ୍କର 'ତରୁଣ କିରାଣୀ ଆଶା', 'କହିବି ନାହିଁ ନାଆଁଟି', 'ଯୁଗର ଚିନ୍ତା', 'ବୃଷଭ କୋଇଲି', 'ଆଧୁନିକ ପ୍ରତି ପୁରାତନଙ୍କ ଉକ୍ତି' କବିତାଗୁଡ଼ିକ ସ୍ମରଣୀୟ । ଏଗୁଡ଼ିକରେ କୌତୁକମଣ୍ଡିତ ବିମଳ ହାସ୍ୟରସର ପ୍ରବାହକୁ ଲକ୍ଷ୍ୟ କରିହେବ । ୧୯୬୨ ମସିହା ଅଗଷ୍ଟ ସେପ୍ଟେମ୍ବର ସଂଖ୍ୟାରେ ମାୟାଧର ମାନସିଂହଙ୍କର 'ଧୂପ' ସଂକଳନର ପ୍ରଥମ କବିତା 'ତରୁଣ କବିର ଆଶା'ର ଲାଳିକା ସେ କରିଛନ୍ତି ବେଶ୍ ମଜାଦାର୍ ଢଙ୍ଗରେ । ସେଥିରୁ କେତୋଟି ପଦ ନିମ୍ନରେ ଦିଆଗଲା ।

"ଏତେ ବିରାଟ ସେ, ପାଏକି ଭାଷା
ହାୟରେ ତରୁଣ କିରାଣୀ ଆଶା!
ଭାବିଥିଲି ଯିବି ବିଦେଶେ କାହିଁ,
Foreign degree ଆଣିବା ପାଇଁ
ଚଢ଼ି ବ୍ୟୋମଯାନ ବିହଗ ତୁଲେ
କାହିଁ ଗୋ ଦୂରେ।
ଦାମୀ ସିଗାରେଟ୍ ମୁହଁରେ ଗୁଞ୍ଜି
ଧରି ମୋଟା କିଛି ପକେଟ୍ ପୁଞ୍ଜି,
ଧୂପ ଧୂଆଁ ପରି ଯାଆନ୍ତି ମିଶି
ମୁଁ ଦଶଦିଶି।
ଅଫିସ ଯାଆନ୍ତି ମନ ଖୁସିରେ
ଦାମିକା କାର୍‌ରେ ସୁଖେ ବସିରେ
ହାକିମ ଡାକନ୍ତା ଆସିଳ ପ୍ରିୟ
ଫାଇଲ ନିଅ।

ପୁଲିନ ବିହାରୀଙ୍କ 'ନବଜିଆ' ଗଳ୍ପ ସଂକଳନ ପ୍ରକାଶ ପାଏ ୧୯୭୩ ମସିହାରେ। ଏଥିରେ ସ୍ଥାନିତ ହୋଇଛି ୧୬ଟି ଗଳ୍ପ। ଏହାର ଭୂମିକାରେ ଶ୍ରୀ ରାୟ ଲେଖିଛନ୍ତି- "ଉକ୍ତ ପୁସ୍ତକର ଗଳ୍ପଗୁଡ଼ିକ ମଧ୍ୟରୁ କେତେକ 'ଡଗର', 'ସହକାର', 'ତରଙ୍ଗ' ଇତ୍ୟାଦି ମାସିକ ପତ୍ରିକାରେ ଏଥି ପୂର୍ବେ ପ୍ରକାଶିତ ହୋଇଥିଲା। ସେଗୁଡ଼ିକ ଏକତ୍ରିତ କରି ପୁସ୍ତକାକାରରେ ପ୍ରକାଶ କରିବା ପାଇଁ ମୋର ଜଣେ ବନ୍ଧୁ ଜଗନ୍ନାଥ କର, ଭାଣିଜୀ ସୁଜାତା ଘୋଷ, ଝିଅ ସିପ୍ରା ରାୟ, ପୁଅ ମିହିର କୁମାର ରାୟଙ୍କ ଉଦ୍ୟମ ଓ ଉତ୍ସାହ ପ୍ରଶଂସନୀୟ। ଉକ୍ତ ପୁସ୍ତକର ଗଳ୍ପଗୁଡ଼ିକୁ ଯଦି ଆମ୍ବ ସହିତ ତୁଳନା କରାଯାଏ ତା'ହେଲେ ମୋ ଆମ୍ବଗୁଡ଼ିକୁ ମୁଁ ନିଶ୍ଚୟ ମିଠା ବୋଲି କହି ଭଣ୍ଡି ଦେଇପାରେ। କିନ୍ତୁ ମୁଁ ମିଠା ବୋଲି କହିଲେ କ'ଣ ହେବ? ଯଦି ପାଠକ ପାଠିକା ରୂପୀ ଗ୍ରାହକ, ଗ୍ରାହିକାମାନେ ଏ ଆମ୍ବଗୁଡ଼ିକୁ ଚାଖି ଆଉ ଗୋଟିଏ, ଆଉ ଗୋଟିଏ କରି ଖାଇ ଆନନ୍ଦରେ ଟାକରା ଫୁଟେଇ ନିଃଶେଷ କରନ୍ତି, ତା'ହେଲେ ସେଇ ମୋର ପରମାନନ୍ଦ ବୋଲି ଜାଣିବି।"

ସେହିପରି ୧୯୭୪ ମସିହାରେ ଲେଖକଙ୍କର 'ଅରମା' ପ୍ରକାଶ ପାଏ। ସେହି ୧୬ଟି ଗଳ୍ପକୁ ନେଇ। ଏହା ମଧ୍ୟରୁ ତିନୋଟି ଗଳ୍ପ 'ବସୁଧାର ଆତ୍ମା', 'ନମାଜ', 'ଶାଶୁ ପ୍ରସଙ୍ଗ' ଯଥାକ୍ରମେ 'ଝଙ୍କାର', 'ଶ୍ଳେଷ' ଓ 'ସାଧନା' ଆଦି ପତ୍ରିକାରେ ଯଥାକ୍ରମେ ପ୍ରକାଶ ପାଇଥିଲା ବେଳେ 'ଦି ଟଙ୍କା ଛଅଣା', 'ଚନ୍ଦ୍ରମୁଖୀ' 'ପ୍ରତିଶୋଧ', 'ଚିଠି', 'କୁଳମଣିଙ୍କ ସ୍ତ୍ରୀ ସମସ୍ୟା', 'ଉତ୍କଳେ ଦେବତା ବିଦ୍ରୋହ', 'ଅନୁମତି', 'ଜନ ପ୍ରଜନନ କେନ୍ଦ୍ର', 'ଭୋଟଲୀଳା', 'ଠିକଣା ଔଷଧ', 'ଧାରାବିବରଣୀ', 'ତୁଳିର ଖେଳ' ଓ 'ଯାଚଞ୍ଚା' ଆଦି ୧୩ ଟି ଗଳ୍ପ ପ୍ରକାଶ ପାଇଥିଲା 'ଡଗର' ପତ୍ରିକାରେ।

ଗଳ୍ପ ସଂକଳନ 'ଛାୟାପଥ', 'ବେଲିଆ', 'ନବଜିଆ', 'ଅରମା' ଓ ଦୁଇଟି ଉପନ୍ୟାସ 'ଅମଣିଷ', 'ରାସ୍ତାକଡ଼ର ପ୍ରାଣୀ' ସହିତ ପ୍ରକାଶ ପାଇବାକୁ ଯାଉଥିବା ପୁଲିନ ବିହାରୀଙ୍କ ଆତ୍ମଜୀବନୀ "ଜୀବନ ପୁଳିନେ" ପ୍ରଭୃତି ରଚନା ସମ୍ଭାର ତାଙ୍କର ଲେଖକୀୟ ସତ୍ତାର ତିନୋଟି ବୈଶିଷ୍ଟ୍ୟକୁ ପ୍ରତିପାଦନ କରେ। ତାହା ହେଲା-ଜୀବନ ସମ୍ପର୍କରେ ତାଙ୍କର ସୂକ୍ଷ୍ମ ଓ ଶାଣିତ ଅବବୋଧ, ଅନ୍ୟଟି ହେଲା ତାଙ୍କର ସୃଷ୍ଟି ସମ୍ଭାର ମଧ୍ୟରେ ହାସ୍ୟରସର ଅଫୁରନ୍ତ ପ୍ରବାହ ସଂଗକୁ ଅନ୍ତଃସଲିଳା ଫଲଗୁ ପରି ପ୍ରବାହିତ ସମ୍ବେଦନଶୀଳ ଦୃଷ୍ଟିକୋଣ ଓ ଶେଷଟି ହେଲା - ସମାଜର ତଳ ସ୍ତରରେ ଅତ୍ୟନ୍ତ ଉପେକ୍ଷିତ ଓ ପଦଦଳିତ ହୋଇ ବଞ୍ଚୁଥିବା ମଣିଷମାନଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ଓ ସେମାନଙ୍କର ସାମାଜିକ ଅଧିକାର ସାବ୍ୟସ୍ତ କରିବା ପାଇଁ ଆହ୍ୱାନ।

ଗଳ୍ପ ରଚନାରେ ସିଦ୍ଧହସ୍ତ ଶ୍ରୀ ରାୟଙ୍କ ଗଳ୍ପକଳା ଓ ତାଙ୍କର ଆତ୍ମଜୀବନୀ ସମ୍ପର୍କରେ କିଞ୍ଚିତ ଚର୍ଚ୍ଚା କରିବା ପୂର୍ବରୁ ତାଙ୍କର ଦୁଇଟି ଭିନ୍ନ ସ୍ୱାଦର ଉପନ୍ୟାସ 'ଅମଣିଷ' ଓ 'ରାସ୍ତା କଡ଼ର ପ୍ରାଣୀ' ସମ୍ପର୍କରେ ବିଚାର, ବିଶ୍ଳେଷଣର ଆବଶ୍ୟକତା ମୁଁ ଅନୁଭବ କରୁଛି। ପୁଲିନ ବିହାରୀଙ୍କୁ ଆମେ ଯଦି କେବଳ ଜଣେ ହାସ୍ୟରସର ସ୍ରଷ୍ଟା ବୋଲି ବିଚାର କରି ବସୁ ତା'ହେଲେ ତାଙ୍କ ପ୍ରତିଭାର ଯଥାର୍ଥ ମୂଲ୍ୟାୟନ ହେଲା ବୋଲି କୁହାଯାଇ ପାରିବ ନାହିଁ। ହାସ୍ୟରସିକ ପୁଲିନ ବିହାରୀଙ୍କ ହୃଦୟ ଅଭ୍ୟନ୍ତରରେ ଯେଉଁ ସମ୍ବେଦନଶୀଳ ସତ୍ତାଟି ରହିଛି ତାକୁ ଠାବ କଲେ ଯାଇ ତାଙ୍କ ଲେଖକୀୟ ସତ୍ତାର ମୂଲ୍ୟାୟନ ଠିକ୍ ଭାବରେ ହେଲା ବୋଲି ଉପଲବ୍ଧି କରିହେବ।

ସମାଜ ଯାହାକୁ ଗୋଡ଼ରେ ଆଡ଼େଇ ଦିଏ, ଆବର୍ଜନା ବୋଲି ମନେକରି ଡଷ୍ଟବିନ୍‌ରେ ଫିଙ୍ଗିଦିଏ, ଅମଣିଷ ବୋଲି ସମାଜ ଦୃଷ୍ଟିରେ ଯେଉଁମାନେ ଗଣା ସେଇମାନଙ୍କ କାହାଣୀକୁ ନେଇ ଗଢ଼ି ଉଠିଛି 'ଅମଣିଷ' ଉପନ୍ୟାସ। ଉକ୍ତ ଉପନ୍ୟାସର ମୁଖବନ୍ଧ ଲେଖିଛନ୍ତି ଡ. ଶ୍ୟାମସୁନ୍ଦର ମିଶ୍ର। ସେ ଯଥାର୍ଥରେ କହିଛନ୍ତି- "......ଉପନ୍ୟାସର ପ୍ରତ୍ୟେକଟି ଚରିତ୍ର ଆମ ସମାଜର ଗୋଟିଏ ଗୋଟିଏ ନିରାଟ ବାସ୍ତବତାର ପ୍ରତିଫଳନ। ଉପନ୍ୟାସର ନାୟକ କୁତ୍ସିତ ଚରିତ୍ର 'ଭଜ'କୁ ଆଧୁନିକ ସମାଜର ଅର୍ଥନୀତିକ ସଂସ୍କାର ଦାରୁଣ ଶରବ୍ୟ ରୂପେ ଚିତ୍ରିତ କରି ଲେଖକ ତା'ପ୍ରତି ପାଠକର ସହାନୁଭୂତି ଆକର୍ଷଣ କରାଇ ପାରିଛନ୍ତି। ତାହାହିଁ ତାଙ୍କର ମହାନୁଭବତାର ପରିଚୟ ଦିଏ। ନାରୀ ଚରିତ୍ରଗୁଡ଼ିକୁ ସେ ଯେତେ ତନ୍ନ ତନ୍ନ ପର୍ଯ୍ୟାଲୋଚନା କରିଛନ୍ତି ତାହା କ୍ୱଚିତ୍ ଲେଖକଙ୍କଠାରେ ଦୃଷ୍ଟ ହୁଏ। ନବ, ନଟ, ଯାମିନୀ ବାବୁ, ବିନୟ ବାବୁ ସମସ୍ତଙ୍କଠାରେ ଏପରି ଚାରିତ୍ରିକ ବୈଶିଷ୍ଟ୍ୟ ପରିଲକ୍ଷିତ ହୁଏ। ସେ ସମସ୍ତେ ଉପନ୍ୟାସର ପରିପୂରକ ଚରିତ୍ରାବଳୀ ପରି ପ୍ରତୀୟମାନ ହୁଅନ୍ତି। ଆବେଗ ଓ ଉତ୍କଣ୍ଠା ସାଙ୍ଗକୁ ହାସ୍ୟରସର ଆଶିଂକ ସମ୍ମିଶ୍ରଣ ହୋଇ ପୁସ୍ତକଟି ସୁଖପାଠ୍ୟ ହୋଇପାରିଛି।" ଅମଣିଷ ବୋଲି ସାଧାରଣ ଦୃଷ୍ଟିରେ ଯାହାକୁ ବିଚାର କରାଯାଏ ସେମାନଙ୍କ ମଧ୍ୟରେ ମଣିଷପଣିଆର ସନ୍ଧାନ ହେଉଛି ଉପନ୍ୟାସଟିର ମର୍ମବାଣୀ।

ସମାଜଛଡ଼ା ହୋଇ ନିଷ୍ଠୁର ବ୍ୟାଧିର ତାଡ଼ନା ଭୋଗୁଥିବା ମଣିଷମାନଙ୍କର କାହାଣୀ କୁହାଯାଇଛି "ରାସ୍ତାକଡ଼ର ପ୍ରାଣୀ" ଉପନ୍ୟାସରେ। କୁଷ୍ଠ ବ୍ୟାଧିଗ୍ରସ୍ତ ଏଇ ରାସ୍ତାକଡ଼ର ପ୍ରାଣୀମାନଙ୍କ ପ୍ରତି ଔପନ୍ୟାସିକ ଅଜାଡ଼ି ଦେଇଛନ୍ତି ଅଜସ୍ର ସ୍ନେହ, ଶ୍ରଦ୍ଧା ଓ ସହାନୁଭୂତି। ଏମାନଙ୍କୁ ସେ ସାହିତ୍ୟ ଦରବାରରେ ପ୍ରତିଷ୍ଠା ଦେଇଛନ୍ତି। ଆମର ସାମାଜିକ ଜୀବନରେ ଏଇ ରୋଗୀମାନଙ୍କର ସମସ୍ୟା କମ୍ ନୁହେଁ। ଏମାନଙ୍କ ପାଇଁ ଯୋଜନାମାନ ପ୍ରଣୟନ ହୁଏ। ସେମାନଙ୍କର ଅବସ୍ଥାରେ ସୁଧାର ଆଣିବା ପାଇଁ କେତେ ପ୍ରକାର ବିଧି ବ୍ୟବସ୍ଥାମାନ ଖଞ୍ଜା ହୁଏ। ତେବେବି ସେମାନେ ଯେଉଁ ଅନ୍ଧାରରେ ଥିଲେ ସେଇ ଅନ୍ଧାରରେ ରହନ୍ତି। ରାଜନୀତିରେ ହଟଚମଟ, ପ୍ରଗତିର ନୂଆ ହିଲ୍ଲୋଳ ସେମାନଙ୍କୁ ସ୍ପର୍ଶ କରିପାରେ ନାହିଁ। ସତେ ଯେପରି ଦୁଃଖ, କଷ୍ଟ ଓ ନିର୍ଯ୍ୟାତନା ସହି କାଳାତିପାତ କରିବା ସେମାନଙ୍କ ଭାଗ୍ୟର ଲିଖନ। କୁଷ୍ଠ ବ୍ୟାଧିଗ୍ରସ୍ତଙ୍କର ସମାଜଛଡ଼ା ମଣିଷ ବା ରାସ୍ତାକଡ଼ର ମଣିଷମାନଙ୍କର ଚିନ୍ତାଧାରାକୁ ଔପନ୍ୟାସିକ ଯେପରି ମର୍ମସ୍ପର୍ଶୀ ଭାବରେ ରୂପ ଦେଇଛନ୍ତି ତାହା ଲକ୍ଷ୍ୟ କରାଯାଉ।

"ଆମେ ରାସ୍ତାକଡ଼ର ପ୍ରାଣୀ। ରାସ୍ତାକଡ଼ରୁ ଟିକିଏ ଠେଲି ଆଡ଼େଇ ଟିକିଏ ଗଡ଼େଇ ଦେଲେ ହେଲା। କୁକୁର, ଚିଲ, ଶାଗୁଣା ତେଣିକି ଆମପାଇଁ ଅଛନ୍ତି। ସେମାନଙ୍କର ସେଦିନ ପେଟପୁରା ଭୋଜି, ଆଉ କ'ଣ କହୁଛୁ? ଆମେ ଯେତେବେଳେ ମଣିଷ ହୋଇ ମଣିଷ ପଣିଆର ଶେଷ ପାହାଚକୁ ଖସିଛୁ, ତଳ ଏକବାର ତଳ, ସେଠି ଆଉ ତଳ ନାହିଁ। ଆମର ଗୋଟାଏ ଚିନ୍ତା କ'ଣ? ବଞ୍ଚିଛୁ, ମରିବୁ। ବଞ୍ଚିବାରେ ଆନନ୍ଦ ନାହିଁ, ମରିବାରେ ଦୁଃଖ ନାହିଁ। ଯେ ଯାହା ବ୍ୟବହାର କରୁଛନ୍ତି କରନ୍ତୁ, ଯେ ଯାହା କହିବାର କହନ୍ତୁ।"

ଲେଖକ ଏହି ଉପନ୍ୟାସରେ କହିବାକୁ ଚାହିଁଛନ୍ତି ଯେ ଆମର ସମାଜ ଜୀବନ ମଧ୍ୟ କୁଷ୍ଠ ବ୍ୟାଧିଗ୍ରସ୍ତ। ଯେତେବେଳେ ସମାଜ ଜୀବନରୁ ମାନବିକତା ଅପସରି ଯାଏ, ସୁସ୍ଥ ମୂଲ୍ୟବୋଧର ଅଭାବ ଘଟେ, ସ୍ନେହ, ପ୍ରେମ ଆଦି

ଗୁଣାବଳୀ ଉଭେଇଯାଏ, ସମାଜ ଜୀବନ କୁଷ୍ଠ ବ୍ୟାଧିଗ୍ରସ୍ତ ହେବା ସ୍ୱାଭାବିକ। ତେଣୁ ଉପନ୍ୟାସର ପଟ୍ଟଭୂମିରେ କୁଷ୍ଠବ୍ୟାଧିଗ୍ରସ୍ତ ମଣିଷ ପୁଣି କୁଷ୍ଠ ରୋଗାକ୍ରାନ୍ତ ସାମଗ୍ରିକ ଜୀବନର ଚିତ୍ରପଟ ଉଦ୍‌ଭାସିତ। ସତେ ଯେପରି ଡାକ୍ତର ପୁଳିନ ବିହାରୀ ଆଗେଇ ଆସିଛନ୍ତି ସେଇ ସାମାଜିକ ବ୍ୟାଧିର ନିରାକରଣ ପାଇଁ। ସେ ହୋଇଛନ୍ତି ସମାଜ ଜୀବନର ଚିକିତ୍ସକ। ବସନ୍ତର ହିଲ୍ଲୋଳରେ ଭଗ୍ନ, ଖୁଣ୍ଟା, ଜରାଜୀର୍ଣ୍ଣ ଓ ବିରୂପ ବୃକ୍ଷ ନବପଲ୍ଲବରେ ମଣ୍ଡିତ ହେଲା ପରି ସେ ମାନବିକତାର, ସ୍ନେହ ଓ ପ୍ରେମର ମଳୟ ସଞ୍ଚାର କରିବା ପାଇଁ ଚାହିଁଛନ୍ତି। ଏହାଫଳରେ ବୀର, ପାର, ଅଇଁଠା, ନଖୀ ପ୍ରଭୃତି କୁଷ୍ଠ ବ୍ୟାଧିଗ୍ରସ୍ତ ମଣିଷମାନଙ୍କର ଘାଆ, ଘାଉଡ଼ର ଯନ୍ତ୍ରଣା ଅପସରିଯିବ। ସେମାନେ ସମାଜର ମହାସ୍ରୋତରେ ସାମିଲ ହେବେ। ନବୀନ ରୀତିର ସଞ୍ଚାର ବି ଘଟିବ ସମାଜ ଜୀବନରେ। କୋଳେଇ ନେବ ସମାଜ ସେମାନଙ୍କୁ। ସେମାନେ ଆଉ ରାସ୍ତା କଡ଼ର ପ୍ରାଣୀ ହୋଇ ବାର ହାନିମାନ ଜୀବନ ଜୀଇବେ ନାହିଁ।

ଲକ୍ଷ୍ୟ କରିବାକୁ ହେବ ଯେ କଥାଶିଳ୍ପୀ ପୁଳିନ ବିହାରୀ ତାଙ୍କର ଉପନ୍ୟାସ ହେଉ କିମ୍ବା ଗଳ୍ପ ହେଉ କେଉଁଥିରେ କୌଣସି ତତ୍ତ୍ୱ ବା ଇଜମ୍‌ର ଅବତାରଣା କରି ନାହାନ୍ତି। ନିବିଡ଼ ବାସ୍ତବାନୁଭୂତିକୁ ଦରଦୀ ହୃଦୟ ଦେଇ ସେ ପାଠକମାନଙ୍କ ନିକଟରେ ଶବ୍ଦ ଓ ଭାଷାର କାରିଗରୀ ମାଧ୍ୟମରେ ଚିତ୍ର ପରି ଉପସ୍ଥାପନ କରି ଯାଇଛନ୍ତି। ମୋର ଗୋଟିଏ ସ୍ମୃତି ପ୍ରସଙ୍ଗରେ ଉଦ୍‌ଭାସିତ ହୋଇ ଉଠୁଛି। ପୁଳିନ ବିହାରୀଙ୍କ ଜୀବନ ଗୋଧୂଳିରେ ପ୍ରାୟ ଦୁଇ ତିନିଥର ତାଙ୍କ କଟକର ବସାଘରେ ମୋ ସହ ସାକ୍ଷାତ ହୋଇଛି। ସେଇ ପ୍ରତିଥର ସାକ୍ଷାତ ସମୟରେ ପୁଳିନ ବିହାରୀଙ୍କ ସହ ତାଙ୍କର ସମବୟସ୍କ ଆଉ ଜଣେ ବ୍ୟକ୍ତିଙ୍କୁ ମୁଁ ଦେଖିଛି। ଦୁଇଜଣଯାକ ଦୁଃଖସୁଖ ହେବାର ମୁଁ ମଧ୍ୟ ଲକ୍ଷ୍ୟ କରିଛି। ପ୍ରଥମେ ମୋର ଭ୍ରମ ଜାତ ହୋଇଥିଲା ଯେ ସେହି ବ୍ୟକ୍ତିଜଣକ ତାଙ୍କ ପରିବାରର ବୋଧହୁଏ କେହି ହେବେ। କିନ୍ତୁ ତାଙ୍କର କନିଷ୍ଠ ପୁତ୍ର ମୋର ବନ୍ଧୁ ଅଧ୍ୟାପକ ମିହିର ରାୟଙ୍କୁ ମୁଁ ଯେତେବେଳେ ପଚାରିଲି ସେ କହିଥିଲେ "ବ୍ୟକ୍ତି ଜଣକ ହେଉଛନ୍ତି ଲୋକନାଥ। ସେ ହେଉଛନ୍ତି ବାପାଙ୍କ ବାଲ୍ୟବନ୍ଧୁ ଓ ବାପାଙ୍କ ଏକାନ୍ତ ପ୍ରିୟ।" ବିସ୍ମିତ ହୋଇଥିଲି ମୁଁ ଏକଥା ଶୁଣି। ନିଜର ବାଲ୍ୟବନ୍ଧୁକୁ ଏଯାଏ ପୁଳିନ ବିହାରୀ ଭୁଲି ନାହାନ୍ତି। ଜୀବନ ପୁଳିନର ମହାର୍ଘ ସ୍ମୃତିକୁ ସାଇତି ରଖିଛନ୍ତି-ଏହା ମୋତେ ଅଭିଭୂତ କରିଥିଲା ସେଦିନ। 'ଅମଣିଷ' ଉପନ୍ୟାସର ଡାକ୍ତର 'ଯାମିନୀ'ଙ୍କର ବନ୍ଧୁ ନଟ ଚରିତ୍ର ମଧ୍ୟରେ ପୁଳିନ ବିହାରୀଙ୍କର ଏହି ବାଲ୍ୟବନ୍ଧୁ ଲୋକନାଥଙ୍କୁ ଖୋଜା ଯାଇପାରିବ।

ହସ ଓ କାନ୍ଦ ଉଭୟ ଜୀବନ ପାଇଁ ଅପରିହାର୍ଯ୍ୟ। ଏହା ମଧ୍ୟ ଦେଇ ଜୀବନର ଚିରନ୍ତନ ସତ୍ୟ ଧ୍ୱନିତ ହେଉଥାଏ। ହସ କିପରି ମଣିଷର ଅନ୍ତର୍ଲୋକକୁ ସମୁଜ୍ଜ୍ୱଳ କରେ ତାହା ପୁଳିନ ବିହାରୀଙ୍କ କଥା ସାହିତ୍ୟ ଅନୁଶୀଳନ କଲେ ଜଣାପଡ଼େ। ସେ ମଣିଷର ଅସଂଗତି, ନିର୍ବୋଧତା ଦେଖି ନିଜେ ହସିଛନ୍ତି ଓ ପାଠକମାନଙ୍କୁ ମଧ୍ୟ ହସାଇ ବେଦମ୍ କରିଛନ୍ତି। 'ଡଗର' ପତ୍ରିକାରେ ତାଙ୍କ ସମ୍ପର୍କରେ ଏକ ଆଲୋଚନା ଲେଖି ଅଧ୍ୟାପକ ଡ. ଶ୍ୟାମସୁନ୍ଦର କହନ୍ତି- "ସପ୍ତମ ଦଶକର ପ୍ରଥମାର୍ଦ୍ଧରେ ପୁଳିନ ବିହାରୀଙ୍କ ଦେଖା ହୁଏ ପୁରାତନ ଡାକ୍ତରୀ ଶିକ୍ଷାର ସହପାଠୀ ବନ୍ଧୁ ଅନ୍ୟତମ ଶ୍ରେଷ୍ଠ ହାସ୍ୟ ରସିକ ଫତୁରାନନ୍ଦଙ୍କ ସହ। ଏହା କେବଳ ଦୁଇ ବନ୍ଧୁଙ୍କ ମିଳନ ନୁହେଁ, ଏହା ହେଲା ପୁଳିନ ବିହାରୀଙ୍କ ସାହିତ୍ୟିକ ପ୍ରଚେଷ୍ଟା କ୍ଷେତ୍ରରେ ଏକ ନୂତନ ଦିଗନ୍ତର ବାର୍ତ୍ତାବହ। ଏହା ଫଳରେ ତାଙ୍କ କ୍ରମ ମନ୍ଦୀଭୂତ ଲେଖନୀ ବେଗବାନ ହୋଇ ଉଠିଲା ଏବଂ ତାଙ୍କ ଗମ୍ଭୀର ଲୁପ୍ତ ହାସ୍ୟର ଧାରା ସମ୍ପୂର୍ଣ୍ଣ ବିକଶିତ ହାସ୍ୟରେ ରୂପାନ୍ତରିତ ହେଲା।" ଉଚ୍ଚକୋଟୀର ହାସ୍ୟରସରେ ଥାଏ ସହୃଦୟତା ଓ ମାନବିକତାର ସୂକ୍ଷ୍ମ ବର୍ଣ୍ଣନା ଯାହା ପୁଳିନ ବିହାରୀଙ୍କ ଉପନ୍ୟାସ ପରି ତାଙ୍କ ଗଳ୍ପଗୁଡ଼ିକର ଆମେ ଖୋଜି ପାଇବା। ତାଙ୍କ ରଚିତ ଅନେକ ଗଳ୍ପ ମଧ୍ୟରୁ 'କାଲୁ ପ୍ରସଙ୍ଗ', 'ଦମ୍ପତି', 'ବେଦନା ନାଶକ', 'ଅବୁଝା', 'ବହୁପୁତ୍ରେ', 'ସଧବା', 'ମନାନ୍ ମିଆଁର ମଟରଗାଡ଼ି', 'ବାହୁଡ଼ା ବିଜେ', 'ଧୃତରାଷ୍ଟ୍ରଙ୍କ ଭାସେକ୍‌ଟୋମି', 'ଆନ୍ଦୋଳନ', 'ଶ୍ମଶାନ ପ୍ରତିଯୋଗିତା', 'ସ୍ତ୍ରୀଦାନ ଯଜ୍ଞ', 'କବିଙ୍କ ବ୍ୟାଧି', 'ଧାରା ବିବରଣୀ', 'କୁଳମଣିଙ୍କ ସ୍ତ୍ରୀ ସମସ୍ୟା' ପ୍ରଭୃତି ଗଳ୍ପ ଗୁଡ଼ିକ ଏ ପ୍ରସଙ୍ଗରେ ଉଦାହରଣ ସ୍ୱରୂପ ନିଆଯାଇପାରେ। 'ବେଦନା ନାଶକ' ଗଳ୍ପରେ ବୋହୂ ନାଆଁରେ ଯାବତୀୟ

କୁତ୍ସାରଟନା କରିବା ଦ୍ୱାରା ଶାଶୁ ଜଣକ କିପରି ସାମୟିକ ଉପଶମ ପାଏ ତାହା ଗାଳ୍ପିକ ହାସ୍ୟରସ ମାଧ୍ୟମରେ ପରିବେଷଣ କରିଛନ୍ତି । 'ଅବୁଝା' ଗଳ୍ପରେ କଲେଜ ପଢୁଆ ପିଲାଟିଏ ଜଣେ ରୋଗୀଙ୍କୁ ନିଆଶ୍ରା ଦେଖି ମାନବିକତା ଦୃଷ୍ଟିକୋଣରୁ ତାର ସେବା ଶୁଶ୍ରୂଷା କରିଛି । ରୋଗୀଟି କ୍ରମେ ସୁସ୍ଥ ହୋଇ ଉଠିଛି । ତେବେ ରୋଗୀଟିର ବଦ୍ଧମୂଳ ଧାରଣା ହୋଇଛି ଯେ ଯୁବକ ଜଣକ ଡାକ୍ତରଖାନାର କର୍ମଚାରୀ । ସେ ଖାସ୍ ରହିଛି ତାର ସେବା କରିବା ପାଇଁ । ତାକୁ ଯେତେ ବୁଝାଇଲେ ସେ ବୁଝି ନାହିଁ । ସେବା ପାଇବା ତାର ହକ୍, ଦାବି । ସେଇଥିରୁ ବଞ୍ଚିତ ହେବ କାହିଁକି ? ଏ ନେଇ ସେ ବରଂ ଅବାନ୍ତର ଯୁକ୍ତି ଉପସ୍ଥାପନ କରିଛି ଓ ବିଚରା ଯୁବକକୁ ଗାଳି ଦେଇଛି । ଏହି ଘଟଣାର ବର୍ଣ୍ଣନାରେ ବିମଳ ହାସ୍ୟରସର ତରଙ୍ଗ ସୃଷ୍ଟି କରିଛନ୍ତି ଗାଳ୍ପିକ । ଉଦାହରଣସ୍ୱରୂପ ସେହି ବର୍ଣ୍ଣନାର କିୟଦଂଶ ଏଠାରେ ଦିଆଗଲା ।

"ଲୋକଟି ଯୁବକର କଲେଜ ପାଠକୁ ଅଶ୍ୱର କାଞ୍ଚନିକ ଅଣ୍ଡା ସହିତ ତୁଳନା କରି ଡାହାଣ ଗୋଡ଼ର ଆଙ୍ଗୁଳି ସନ୍ଧିଗୁଡ଼ିକରେ ତେଲ ଲଗଉ ଲଗଉ ଯୁବକକୁ ନିଜ ଶଶୁରର ଏକମାତ୍ର ଅଯୋଗ୍ୟ ବଂଶଧର ରୂପେ ବର୍ଣ୍ଣନା କରି ପୁଣି ଆରମ୍ଭ କଲା-ଖାଲି ତୋ'ପରି ଲୋକଙ୍କୁ ପାହାର ଦରକାର । ଚାକରଟା ତୁ, ତୋତେ ସରକାର ଖାସ୍ ଦରମାଦେଇ ରଖିଛି । ରୋଗୀଙ୍କ ସାହାଯ୍ୟ କରିବା ପାଇଁ । ତୋର ପୁଣି ଏଡ଼େ ବଡ଼ପ ତୁ କଲେଜରେ ପାଠ ପଢୁଛୁ ବୋଲି କହୁଛୁ । ତୁ ଏଇଠି ମୋତେ ଆଉଁସା ଘସା କରୁଥିଲୁ, ମୁଣ୍ଡ ଚିପି ଦେଉଥିଲୁ, ଶୋଇ ଦେଉଥିଲୁ, ଯୁଆଡ଼େ ଯାଉଥିଲୁ ହାତ ଧରି ନବା ଆଣିବା କରୁଥିଲୁ, ଆଜି କଲେଜ ପିଲା ହେଇଗଲୁ ।"

ସେହିପରି ଅନ୍ୟ ଏକ ଗଳ୍ପ 'ବାହୁଡ଼ା ବିଜେ'ରେ ଡାକ୍ତରଙ୍କୁ ଡାକି ଆସିଥିବା ଲୋକ ଜଣକ ଡାକ୍ତର ଯାଉଥିବା ରିକ୍ସାଟାର ପଛେ ପଛେ ପୁଳାଏ ବାଉଁଶ ଧରି ଧପାଇଛି । ଡାକ୍ତର ପଚାରିଛନ୍ତି- "କିରେ ଏ ବାଉଁଶଗୁଡ଼ା କାହିଁକି କାନ୍ଧେଇ ଚାଲିଛୁ ? ବାଉଁଶ କ'ଣ ହେବ ?" ଲୋକଟି ଉତ୍ତର ଦେଇଛି- "ଆଜ୍ଞା ସେ ରୋଗୀ ଯଦି ମରିବ ତା'ହେଲେ କୋକେଇ ହେବ, ଯଦି ବଞ୍ଚିବ ତା'ହେଲେ ବାଡ଼ବୁଜା ହେବ ଚତୁର୍ମାସ୍ୟା ଦିନରେ । ଆଉ ରାତିରେ ବାଉଁଶ ଖୋଜିବାକୁ କିଏ ଆସିବ ? କଥାକାରଙ୍କର 'ସଧବା' ଗଳ୍ପରେ ଅନନ୍ତବାବୁଙ୍କ ସ୍ତ୍ରୀଙ୍କର ମାଛଖିଆ, 'ବହୁପୁତ୍ରେ' ଗଳ୍ପରେ ପୁତ୍ରମାନଙ୍କର ଦାୟିତ୍ୱହୀନତା, 'ଦମ୍ପତି' ଗଳ୍ପରେ ଆପୁଆ ଭାରିଜାର ନିର୍ବୋଧତା ପାଠକକୁ ହସାଇ ହସାଇ ବେଦମ୍ କରାଏ ।

ମାନବତାବାଦୀ ଦୃଷ୍ଟିକୋଣରୁ ଉତ୍ତୀର୍ଣ୍ଣ ହୋଇପାରିଛି ପୁଲିନ ବିହାରୀଙ୍କର 'ଜୀବ ଓ ଜଡ଼', 'ଗୁରୁଚରଣର ଚାକିରୀ' ଓ 'ବାଜିଆ ପ୍ରସଙ୍ଗ' ପ୍ରଭୃତି ଗଳ୍ପଗୁଡ଼ିକ । 'ଜୀବ ଓ ଜଡ଼'ରେ ମଣିଷର ହାତଗଢ଼ା କାଠ ପଥରର ଦେବତା ଅପେକ୍ଷା କଥାକାର ଅଧିକ ଗୌରବ ଦେଇଛନ୍ତି ମଣିଷକୁ । କାଠ, ପଥରର ମୂର୍ତ୍ତି ନ ପୂଜି ଜୀବନ୍ତ ଦେବତାକୁ ପୂଜିବା ପାଇଁ ସେ ଆହ୍ୱାନ ଦେଇଛନ୍ତି ଓ କହିଛନ୍ତି- "କି ଭୁଲ୍ ଧାରଣା । ମଣିଷ ଭିତରେ ଯେଉଁ ଠାକୁର ବସିଛନ୍ତି ସେ'ତ ହେଲା ଅସଲ ଠାକୁର । ସେ ମୁହଁ ଖୋଲି କହୁଛି ଭଲ ଖାଇବି, ଭଲ ପିନ୍ଧିବି, ଭଲ ଦେଖିବି, ଆଉ କିଛିଦିନ ଏ ଦୁନିଆକୁ ଭୋଗ କରିବି । ସେ ମରିବାକୁ ଆଦୌ ଚାହୁଁନି । ତାକୁ ଖାଇବାକୁ ନଦେଇ ଏ ପାଷାଣ ମୂର୍ତ୍ତି ଠାକୁରାଣୀଙ୍କ ପାଇଁ ଏତେ ଭୋଗର ଆଡମ୍ବର !"

ପୂର୍ବରୁ ପୁଲିନ ବିହାରୀଙ୍କ କବିତା ସମ୍ପର୍କରେ ସୂଚନା ଦିଆଯାଇଥିଲା । ହାସ୍ୟରସର କବିତା, ଲାଳିତ୍ୟ ବ୍ୟତୀତ ସେ ବିଭିନ୍ନ ବିଷୟକୁ ନେଇ ସେଗୁଡ଼ିକୁ ଅନୁଭୂତି ସିଦ୍ଧ କରି ପ୍ରକାଶ କରିଛନ୍ତି । ତାଙ୍କର ରଚନା ସମଗ୍ରରେ ଏଗୁଡ଼ିକ ସ୍ଥାନ ପାଇଛି । ସେଗୁଡ଼ିକ ମଧ୍ୟରେ 'ପଲ୍ଲୀ ସନ୍ଧ୍ୟା' ସମେତ ଆଉ କେତେକ କ୍ଷୁଦ୍ର କବିତାର ସମାହାର ଚିତ୍ତସ୍ପର୍ଶୀ ହୋଇ ପାରିଛି । ଯେପରି -

"ଗାଆଁ ଶେଷମୁଣ୍ଡେ ବିଲ ଆରପଟେ
ପାହାଡ଼ ଯହିଁକି ଦିଶେରେ
ନାହିଁ ଆଉ କିଛି ଦୂରେ ବହୁ ଦୂରେ
ଆକାଶ ଧରଣୀ ମିଶେରେ
ଦିନ ଶେଷେ ତହିଁ ସୂରୁଜ ଦେବତା
ଧୀରେ ଗଲେ ଯେବେ ଉଭେଇ
ଗଛ ପତରରୁ ମଥାନ ଉପରୁ
ଖରାକୁ ଦେଲା କେ ଲିଭାଇ ।"

ଯେଉଁ ସବୁ ଦୈନନ୍ଦିନ ଘଟଣା ସହ ଆମେ ସବୁ ଜଡ଼ିତ ସେଗୁଡ଼ିକୁ କାବ୍ୟିକ ଆବେଗରେ ଶାଣିତ କରି ପ୍ରକାଶ କରିଛନ୍ତି ପୁଳିନ ବିହାରୀ ।

ପୁଳିନ ବିହାରୀ ମଧ୍ୟ ଲେଖି ଯାଇଛନ୍ତି ତାଙ୍କର ଆତ୍ମଜୀବନୀ ଯାହା ଅସଂପୂର୍ଣ୍ଣ । ଏହି ଆତ୍ମଜୀବନୀ 'ଜୀବନ ପୁଳିନେ' ତିନିଗୋଟି ପର୍ବରେ ବିଭକ୍ତ । ଏଥିରେ ତାଙ୍କର ଜୀବନ ସଂଘର୍ଷର କାହାଣୀ ସାଙ୍ଗକୁ ସ୍ଥାନ ପାଇଛି ବିଂଶ ଶତକର ପାଞ୍ଚଗୋଟି ଦଶକରେ ଘଟିଥିବା ପ୍ରମୁଖ ଘଟଣାବଳୀ ଯାହାର ପ୍ରଭାବ ଓଡ଼ିଶାର ଜନଜୀବନ ଉପରେ ପଡ଼ିଥିଲା । ବ୍ରିଟିଶ ଅଧ୍ୟୁଷିତ ଓଡ଼ିଶା, ବିଶ୍ୱ ଯୁଦ୍ଧର ଘନଘଟାମୟ ପରିବେଶ ଓ ସ୍ୱାଧୀନତା ପରବର୍ତ୍ତୀକାଳୀନ ଓଡ଼ିଶାର ସାମାଜିକ, ସାଂସ୍କୃତିକ ଚିତ୍ରପଟକୁ ଧରି ରଖିଛି ତାଙ୍କର ଲେଖନୀ ବେଶ୍ ସାର୍ଥକ ଭାବରେ । ତାଙ୍କର ପୂର୍ବ ପୁରୁଷମାନଙ୍କର ପରିଚୟ ସେ ଯେପରି ଏଥିରେ ଦେଇଛନ୍ତି ତାହା ଏଠାରେ ଉଲ୍ଲେଖ କରାଯାଇପାରେ ।

"ମାମୁଁ ଘର ଇତିହାସ ମୁଁ ବିଶେଷ ଜାଣି ନାହିଁ । ସେମାନେ ଓଡ଼ିଶାକୁ କେବେ ଏବଂ କାହିଁକି ଆସିଥିଲେ ? କେମିତି ଓଡ଼ିଶାରେ ସ୍ଥାୟୀ ବସବାସ କଲେ ? କିନ୍ତୁ ଆମ ନିଜ ବଂଶର ଇତିହାସ ମୁଁ ଏତିକ ଜାଣେ ଯେ, ଆମର ପୂର୍ବପୁରୁଷ ଓଡ଼ିଶାକୁ ଆସିଥିଲେ ଚାକିରୀ ଉଦ୍ଦେଶ୍ୟରେ । ସେ ହେଲା ଷୋଡ଼ଶ ଶତାବ୍ଦୀ । ଯେତେବେଳେ ଟୋଡ଼ରମଲ୍ଲ ବଂଗର ନବାବ୍ ଥିଲେ । କେଶବ ରାୟ, ମାଧବ ରାୟ, ଦୁଇ ସହୋଦର ଭାଇ ବର୍ଦ୍ଧମାନ ଜିଲ୍ଲାରୁ ଓଡ଼ିଶାକୁ ଆସିଥିଲେ । ମୋର ମନେହୁଏ ସେତେବେଳେ ଚାନ୍ଦବାଲିରୁ କଲିକତାକୁ ଜଳପଥରେ ଯିବା ଆସିବା ସୁଗମ ହେଉଥିଲା । ସେମାନେ ବର୍ଦ୍ଧମାନ ଜିଲ୍ଲାରୁ କଲିକତା ଏବଂ କଲିକତାରୁ ଜଳପଥରେ ଚାନ୍ଦବାଲିକୁ ଆସି ସେଠୁ କଟକ ଜିଲ୍ଲାର ଅସୁରେଶ୍ୱର ମୌଜା ଦୀକ୍ଷିତପଡ଼ା ଗ୍ରାମରେ ବସବାସ କରିଥିଲେ । ଏଣୁ ଆମର ନିଜର ଘର ହେଲା କଟକ ଜିଲ୍ଲା ଅସୁରେଶ୍ୱର ମୌଜା ଦୀକ୍ଷିତପଡ଼ାରେ । ଆମେମାନେ ହେଲୁ କେଶବ ରାୟଙ୍କ ବଂଶଧର ଆଉ ମାଧବରାୟଙ୍କ ବଂଶଧର ହେଲେ ଗୌରୀ ଶଙ୍କର ରାୟଙ୍କ ପରିବାର ।"

ଏହି ଆତ୍ମଜୀବନୀର ସବୁଠାରୁ ବଡ଼ ବିଭବଟି ହେଲା ଓଡ଼ିଶାର ସାଂସ୍କୃତିକ ରାଜଧାନୀ କଟକ ବିଂଶ ଶତକରେ ଯେଉଁ ଘଟାନ୍ତର ମଧ୍ୟ ଦେଇ ଗତି କରିଛି ତାର ଚିତ୍ର ପ୍ରଦାନ କରିବା । ଏହା ମଧ୍ୟରେ ରହିଛି କଟକରେ ବସବାସ କରୁଥିବା ସାଧାରଣ ମଣିଷର ଜୀବନଚର୍ଯ୍ୟା, କଟକର ସାହିତ୍ୟିକ ଓ ସାଂସ୍କୃତିକ ପାଣିପାଗ, ଶିକ୍ଷାବ୍ୟବସ୍ଥା ପ୍ରଭୃତି । ପୁଳିନ ବିହାରୀ ତାଙ୍କ ଜୀବନର ବହୁଭାଗ କଟକରେ ଅତିବାହିତ କରିବା ସହିତ ଚାକିରୀ ଜୀବନରେ ଓଡ଼ିଶାର ବିଭିନ୍ନ ସ୍ଥାନରେ ପୋଷ୍ଟିଂ ହୋଇଛନ୍ତି । ସେ ସବୁ ଅଞ୍ଚଳଗୁଡ଼ିକର ଜନଜୀବନ ସମ୍ପର୍କରେ ସେ ସଂଗ୍ରହ କରିଛନ୍ତି ବିପୁଳ ଅନୁଭୂତି ଯାହା ଉକ୍ତ ଆତ୍ମ ଜୀବନୀକୁ ଋଦ୍ଧିମନ୍ତ କରିଛି ।

ସମୟର ନଦୀ ନିରନ୍ତର ପ୍ରବହମାନ । ହସ କାନ୍ଦରେ ଭରା ଏହାର ଦୁଇ କୂଳ । ପ୍ରତିଟି ମଣିଷ ତାର ଜୀବନ ତରୀଟି ଧରି ଏଇ ସମୟର ନଈ ସୁଅରେ ବାହିଚାଲେ ଆଗକୁ ଆଗକୁ । ସେ ମହାସମୁଦ୍ରକୁ ଭେଟିବାକୁ ଯାଏ । ସମ୍ବେଦନଶୀଳ ସ୍ରଷ୍ଟା କିନ୍ତୁ ଜୀବନ ପୁଳିନରୁ ସଂଗ୍ରହ କରିବା ଅନୁଭୂତିରାଜିକୁ ରୂପ ଦିଏ ଅନୁପମ ଶବ୍ଦ ଚିତ୍ରରେ, ଯାହା ସମ୍ପାଦନ କରିଛନ୍ତି ବିଶିଷ୍ଟ କଥାଶିଳ୍ପୀ, ହାସ୍ୟ ଓ ବ୍ୟଙ୍ଗ ସାହିତ୍ୟର ସ୍ରଷ୍ଟା ପୁଳନି ବିହାରୀ ।

ଏହିପରି ଜଣେ ସାରସ୍ୱତ ସାଧକଙ୍କର କୃତି ଗୁଡ଼ିକ ଏକତ୍ର ହୋଇ ପ୍ରକାଶ ପାଇବା ଏକ ସ୍ୱାଗତଯୋଗ୍ୟ ଉଦ୍ୟମ । ଏହା ଫଳରେ ସ୍ୱାଧୀନତା ପୂର୍ବ ଓ ପରବର୍ତ୍ତୀ କାଳର ଜଣେ ଯଶସ୍ୱୀ କଥାଶିଳ୍ପୀ ଓ ହାସ୍ୟ ବ୍ୟଙ୍ଗର ରୂପକାରଙ୍କର ସାରସ୍ୱତ ସାଧନାର ବିଭବ ଓ ବିଭାବ ସମ୍ପର୍କରେ ପାଠକମାନେ ଅବଗତ ହୋଇ ପାରିବେ । ଏଥିପାଇଁ ପୁଳିନ ବିହାରୀ ପରିବାରକୁ ମୁଁ ସାଧୁବାଦ ଜଣାଉଛି ।

# ସୂଚୀପତ୍ର

# ଜୀବନ-ପୁଳିନେ

## ୧ମ ପର୍ବ

### (୧)

ବାବା ଚାକିରୀ କରୁଥିଲେ କଟକସ୍ଥିତ ଜୋବ୍ରା ୱାର୍କସପ୍‌ରେ। ରହୁଥିଲେ କଟକ ସହରର ଥୋରିଆ ସାହିରେ। ବାବା, ମା ଏବଂ ଅଢ଼େଇ ବର୍ଷର ଝିଅ କିରଣବାଳା ରାୟ, ଆଉ ଗୋଟିଏ ଚାକର। ଏଇଥିଲା ସଂସାର। ମୋର ବଡ଼ ଭଉଣୀ କିରଣବାଳା ରାୟଙ୍କ ଜନ୍ମର ଦଶ ବର୍ଷ ପରେ ମୋର ଜନ୍ମ। ମୋର ବଡ଼ ଭଉଣୀଙ୍କୁ ଦଶ ବର୍ଷ ହବା ପର୍ଯ୍ୟନ୍ତ, ବାବାଙ୍କର ଆଉ କୌଣସି ପୁତ୍ର ସନ୍ତାନ ନ ହବାରୁ ମୋର ବୁଢ଼ୀ ମା ବାବାଙ୍କୁ ପ୍ରବର୍ତ୍ତେଇଲେ ଦ୍ୱିତୀୟ ବିବାହ କରିବା ପାଇଁ, କାରଣ ହେଲା ବଂଶ ରକ୍ଷା, ବାବା ବୁଢ଼ୀ ମା'ଙ୍କ ପ୍ରସ୍ତାବ ଗ୍ରହଣ କଲେ ନାହିଁ। ସେହି ଝିଅ କିରଣବାଳା ଥିଲା ଏକ ମାତ୍ର ସନ୍ତାନ।

ମା'ଙ୍କଠାରୁ ଯାହା ଶୁଣିଛି, କିଛିଦିନ ପରେ ଜଣେ ତାନ୍ତ୍ରିକ ଆମ ଗାଁକୁ ଆସିଥିଲେ। ମୋର ବୁଢ଼ୀ ମା ସେହି ତାନ୍ତ୍ରିକଙ୍କୁ ସବୁ କଥା କହି ଅନୁରୋଧ କଲେ, କିଛି ଉପାୟ କରିବା ପାଇଁ କିମିତି ପୁତ୍ର ସନ୍ତାନଟିଏ ହବ।

ସେହି ତାନ୍ତ୍ରିକ ଜଣକ ମୋର ବୁଢ଼ୀ ମା'ଙ୍କ ଅନୁରୋଧ ରକ୍ଷା କରି କ'ଣ ଖଣ୍ଡେ ଗଛର ଚେର ଦେଇଥିଲେ। ତାକୁ ବାଁ ହାତରେ ବର୍ଷେ କାଳ ବାନ୍ଧି ରଖିବାକୁ ହବ ଏବଂ କାହାରି ଘରେ ବର୍ଷେ କାଳ ନିମନ୍ତ୍ରଣରେ ଖାଇବାକୁ ହବ ନାହିଁ।

ମା' ସେହିପରି ବାରଣ ମାନି ଧାରାରେ ବର୍ଷେ କାଳ ଚଳିବା ପରେ ମୋର ଜନ୍ମ ହୁଏ ୧୯୦୭ ମସିହା ଅକ୍ଟୋବର ୧୦ ତାରିଖରେ। ମା'ଙ୍କ ଠାରୁ ଯାହା ଶୁଣିଛି ମୋର ବଡ଼ ଭଉଣୀଙ୍କର ଜନ୍ମର ଦଶ ବର୍ଷ ପରେ ମୋର ଜନ୍ମ ହବା ଯୋଗୁଁ ଆମର ପରିବାର, ବନ୍ଧୁ ବାନ୍ଧବଙ୍କ ମଧ୍ୟରେ ବିଶେଷ ଆନନ୍ଦର ଢ଼େଉ ଖେଳି ଯାଇଥିଲା, ଇମିତିକି ମୋର ଅଜା ଲାଲ୍ ବିହାରୀ ରାୟ ମୋର ଜନ୍ମର ସମ୍ବାଦ ପାଇ ନିଜେ ଆସି ଯାଜପୁରରୁ ପହଁଚିଲେ। ସେତେବେଳେ

ଲାଲ୍ ବିହାରୀ ରାୟ ଯାଜପୁରର ଜଣେ ଖ୍ୟାତନାମା ଲୋକ, ଯେମିତି ପରୋପକାରୀ, ଉଦାର, ସେମିତି ଅତିଶୟ ଖର୍ଚ୍ଚୀ ବୋଲି ତାଙ୍କର ଖ୍ୟାତି ଥିଲା । ଆହୁରି ଗୋଟିଏ ବିଷୟରେ ତାଙ୍କର ବିଶେଷ ଖ୍ୟାତି ଥିଲା ଯେ, ସେ କଠଉ ମାଡ଼ି ଦୂର ଦୂରାନ୍ତକୁ ଚାଲି ଯାଇ ପାରୁଥିଲେ । ମୋର ମାମୁଁ ଘର ହେଲା, ଯାଜପୁର ସହରସ୍ଥିତ ଗୋପାଳପୁର ଗ୍ରାମ ।

ମୋର ଜନ୍ମର ଆନନ୍ଦ ଉତ୍ସବ ମଧ୍ୟରେ, ଏକୋଇଶ ଦିନ ବ୍ୟାପି ନହବତରେ ବାଜା ବାଜିବା ଏବଂ ଲାଲ୍ ବିହାରୀ ରାୟ ସ୍ୱହସ୍ତରେ ମିଠେଇ ପ୍ରସ୍ତୁତ କରି ଏକୋଇଶ ଦିନରେ ଏକୋଇଶଟି ବାଳଲୀଳା କରି ମିଠେଇ ବାଣ୍ଟିବା, ତା'ଛଡ଼ା ବନ୍ଧୁ ବାନ୍ଧବ, ସାହି ପଡ଼ିଶାଙ୍କୁ ଡ଼କେଇ ଖୋଇବାପେଇବାରେ ମଧ୍ୟ ପ୍ରଚୁର ଅର୍ଥ ବ୍ୟୟିତ ହୋଇଥିଲା ।

ଆମର ନିଜ ତରଫରୁ ଏବଂ ମାମୁଁ ଘର ତରଫରୁ ଏକୋଇଶିଆକୁ ମୋ ପାଇଁ ଅଳଙ୍କାର, ସାଜସଜ୍ଜାରେ ମଧ୍ୟ ବିଶେଷ ଆଡ଼ମ୍ବର ହୋଇଥିଲା । ସେମିତି ମୋର ଅନ୍ନପ୍ରାଶନରେ ମଧ୍ୟ ବିଶେଷ ଅର୍ଥ ବ୍ୟୟିତ ହୋଇଥିଲା । ଲୋକ ସମାଗମ, ଖାଇବା ପିଇବା, ମୋ ପାଇଁ ଆମ ଘର ଏବଂ ମାମୁଁ ଘର ତରଫରୁ ଅଳଙ୍କାର, ସାଜସଜ୍ଜା, ବାସନକୁସନର ଆଡ଼ମ୍ବର ବିଶେଷ ଭାବରେ ଲୋକଙ୍କର ଦୃଷ୍ଟି ଆକର୍ଷଣ କରିଥିଲା ।

ଏ ଆଡ଼ମ୍ବର ବିଶେଷ ଭାବରେ ହବାର କାରଣ ହେଲା ଗୋଟିଏ ଝିଅର ଜନ୍ମର ଦଶ ବର୍ଷ ପରେ ପୁତ୍ର ଲାଭ । ଏଣୁ ଆଡ଼ମ୍ବର ହବା ସୁନିଶ୍ଚିତ । ସେଥିରେ ମୋର ଅଜା ଲାଲ୍ ବିହାରୀ ରାୟଙ୍କ ପରି ତତ୍କାଳୀନ ମନସ୍ୱୀ, ଜମିଦାର ଏବଂ ସାହା ଖର୍ଚ୍ଚୀ ଲୋକ ।

ମୋର ଅଜାଙ୍କୁ ସମସ୍ତେ "ଲାଲୁ ବାବୁ" ବୋଲି ଡ଼ାକୁଥିଲେ । ଅଜାଙ୍କର ଚାରି ଭାଇ, ସମସ୍ତେ ଦେଖିବାକୁ ଗଛ ପରି ମଣିଷ । ଅଜାଙ୍କର ଚାରି ଭାଇଙ୍କ ମଧ୍ୟରେ ଅଜା ଥିଲେ ତୃତୀୟ । ମୁଁ କେବଳ ଅଜାଙ୍କୁ ଏବଂ ତାଙ୍କର ତଳ ଭାଇଙ୍କୁ ଦେଖିଛି । ଅଜାଙ୍କର ସାନ ଭାଇ ହେଲେ ଗୋପୀ ବଲ୍ଲଭ ରାୟ, ଡ଼ାକ ନାମ ଗୋପୀ ବାବୁ । ସେ ଯୁଗର I.A. ପାସ୍ । ଦୁର୍ଦ୍ଦାନ୍ତ ଲୋକ । ମୋର ହେତୁ ହେଲା ବେଳକୁ ମୋର ଅଜାଙ୍କୁ ରୁଗ୍ଣ ଅବସ୍ଥାରେ ଦେଖିଛି । ଅଜା ସେତେବେଳେ ପକ୍ଷାଘାତ ରୋଗାକ୍ରାନ୍ତ ହୋଇ ଖାଲି ବିଛଣାରେ ବସିଥାନ୍ତି । କଥା ଯାହା କହନ୍ତି ଭଲ ବୁଝି ହୁଏ ନା । ହାତ ଗୋଡ଼ ଅଚଳ । ଚାକର, ଚାକରାଣୀ ଏବଂ ମୋର ଆଈଙ୍କର ସେବା ଶୁଶ୍ରୁଷାରେ ବଞ୍ଚିଥାନ୍ତି । ଅଜାଙ୍କୁ ନବା ଆଣିବା, ଖୋଇବାପେଇବାରେ ଆଈଙ୍କର ଅକ୍ଳାନ୍ତ ପରିଶ୍ରମ । ବଡ଼ ଜମିଦାର ଘର । ପୁଅ, ବୋହୂ, ଝିଅ, ଜ୍ୱାଇଁ, ଚାକର, ଚାକରାଣୀ, ପୂଜାରୀ, କୋଠିଆ ବେଠିଆରେ ଘର ଭରପୂର । ଯେମିତି ଘର, ସେମିତି ଆଡ଼ମ୍ବର ।

ମାମୁଁ ଘର ଇତିହାସ ମୁଁ ବିଶେଷ ଜାଣି ନାହିଁ । ସେମାନେ ଓଡ଼ିଶାକୁ କେବେ ଏବଂ କାହିଁକି ଆସିଥିଲେ ? କେମିତି ଓଡ଼ିଶାରେ ସ୍ଥାୟୀ ଭାବରେ ବସବାସ କଲେ ? କିନ୍ତୁ ଆମ ନିଜ ବଂଶର ଇତିହାସ ମୁଁ ଏତିକି ଜାଣେ ଯେ, ଆମର ପୂର୍ବ ପୁରୁଷ ଓଡ଼ିଶାକୁ ଆସିଥିଲେ ଚାକିରୀ ଉଦ୍ଦେଶ୍ୟରେ । ସେ ହେଲା ଷୋଡ଼ଶ ଶତାବ୍ଦୀ । ଯେତେବେଳେ ଟୋଡ଼ରମଲ୍ଲ ବଙ୍ଗର ନବାବ ଥିଲେ । କେଶବ ରାୟ, ମାଧବ ରାୟ ଦୁଇ ସହୋଦର ଭାଇ ବର୍ଦ୍ଧମାନ ଜିଲ୍ଲାରୁ ଓଡ଼ିଶାକୁ ଆସିଥିଲେ । ମୋର ମନେହୁଏ ସେତେବେଳେ କଲିକତାରୁ ଚାନ୍ଦବାଲିକୁ ଜାହାଜ ଚଳାଚଳ ହଉଥିଲା । ସେମାନେ ବର୍ଦ୍ଧମାନ ଜିଲ୍ଲାରୁ କଲିକତା ଏବଂ କଲିକତାରୁ ଜାହାଜରେ ଚାନ୍ଦବାଲିକୁ ଆସି ସେଠୁଁ କଟକ ଜିଲ୍ଲାର ଅସୁରେଶ୍ୱର ମୌଜା ଦୀକ୍ଷିତପଡ଼ା ଗ୍ରାମରେ ବସବାସ କରିଥିଲେ । ଏଣୁ ଆମର ନିଜର ଘର ହେଲା କଟକ ଜିଲ୍ଲା ଅସୁରେଶ୍ୱର ମୌଜା ଦୀକ୍ଷିତପଡ଼ାରେ । ଆମେମାନେ ହେଲୁ କେଶବ ରାୟଙ୍କ ବଂଶଧର, ଆଉ ମାଧବ ରାୟଙ୍କ ବଂଶଧର ହେଲେ ଗୌରୀ ଶଙ୍କର ରାୟଙ୍କ ପରିବାର ।

ଆମର ରାୟ ପରିବାର ଛଡ଼ା ଆହୁରି ଦୁଇଟି ବଙ୍ଗୀୟ ପରିବାର ଯଥା, ସୋମ ଏବଂ ଗୁହ ପରିବାର ଆସି ଦୀକ୍ଷିତପଡ଼ାରେ ବସବାସ କରିଥିଲେ । ସେମାନେ କେବେ ଏବଂ କି ଉଦ୍ଦେଶ୍ୟରେ ଓଡ଼ିଶାକୁ ଆସିଥିଲେ ମୁଁ

ଜାଣି ନାହିଁ । କିନ୍ତୁ ଅଦ୍ୟାପି ସେମାନଙ୍କର ବଂଶଧରମାନେ ଦୀକ୍ଷିତପଡ଼ାରେ ଅଛନ୍ତି ।

ମୋର ଯେତେବେଳେ ହେତୁ ହୁଏ, ମୁଁ ଦେଖିଲି- ଦୀକ୍ଷିତପଡ଼ା ଗାଁ କି ସୁନ୍ଦର । ଆଦର୍ଶ ପଲ୍ଲୀ । ଗାଁର ଦକ୍ଷିଣ ଦିଗରେ କେନ୍ଦ୍ରାପଡ଼ା କେନାଲ, ତା' ଆରପଟେ ଲୁଣା ନଈ । ଗାଁ ନିକଟରେ ଦୁଇଟା ପଥର ତୁଠ । ଗୋଟିଏ ମରଦଙ୍କର, ଅନ୍ୟଟି ମାଇପିଙ୍କର । ଗାଁ ଭିତରୁ କେନାଲକୁ ଗୋଟିଏ ବାଟ । ଗାଁରେ ସବୁ ଜାତିର ଲୋକ । ମହାନ୍ତି ସାହି, ପ୍ରତ୍ୟେକଙ୍କର ଉଚ୍ଚା ଉଚ୍ଚା ପାହାଚ । ଆମର ଯେଉଁଠି ଘର, ତା'ର ସାମନାରେ ପଶ୍ଚିମ ଦିଗରେ ମାଧବଜୀଉ ଠାକୁରଙ୍କର ମନ୍ଦିର, ଉତ୍ତର ଦିଗରେ ବିରାଟ ଚଣ୍ଡୀ ମଣ୍ଡପ, ଦକ୍ଷିଣ ଦିଗରେ ଗୌରୀ ଶଙ୍କର ରାୟଙ୍କ ଦୋତାଲା ପକ୍କା କୋଠା । ମଝିରେ ଖଣ୍ଡିଏ ଚୌଖୁଣ୍ଟି ଜାଗା । ଆମ ଘରକୁ ଲାଗି ଦୋଳବେଦୀ । ଚଣ୍ଡୀମଣ୍ଡପ ଆଉ ଦୋଳବେଦୀ ମଝିରେ ଗୋଟିଏ ରାସ୍ତା । ଗାଁର ଆଖପାଖରେ ନଡ଼ିଆ, ଆମ୍ବ, ପଣସ ଏବଂ ଅନ୍ୟାନ୍ୟ ଗଛ, ଜାଗା ଜାଗା ଆମ୍ବ ତୋଟା । ଆମ ଘର ଅଳ୍ପ ଦୂରରେ ପୂର୍ବ ଦିଗରେ ଭଗବତୀ ଠାକୁରାଣୀଙ୍କର ମନ୍ଦିର । ତାଙ୍କୁ ଲାଗି ଗୌରୀ ଶଙ୍କର ରାୟଙ୍କର କଚେରୀ ଘର । ତା'ର ବିପରୀତ ଦିଗରେ ବାଳିକା ମାଇନର ସ୍କୁଲ । ଗାଁରେ ଲୋକ ଭରପୂର । ବଙ୍ଗାଳୀ ସାହି ଯେମିତି, ମହାନ୍ତି ସାହି ସେମିତି । ବ୍ରାହ୍ମଣ ସାହି ମଧ୍ୟ ସେମିତି । କେହି କାହାକୁ ଊଣା ନୁହେଁ । ବ୍ରାହ୍ମଣ ସାହିରେ ତାଙ୍କର ଗୋଟିଏ ଚଣ୍ଡୀମଣ୍ଡପ । ଏମାନଙ୍କ ଛଡ଼ା ଆହୁରି ଅନେକ ଜାତିର ଲୋକ । ଛୋଟ ଛୋଟ ସାହି । ମୁଁ ଅତି ପିଲାବେଳେ ଗାଁକୁ ଯାହା ଦେଖିଥିଲି, ସେହି ଦୃଶ୍ୟ ମୋର ମନେପଡ଼େ । ଆଉ ମୁଁ ଦୁଃଖରେ ଭାଙ୍ଗି ପଡ଼େ । ତା'ର କାରଣ ହେଲା, ସେ ଗାଁ ଅଛି, ସେ ଲୋକେ ନାହାନ୍ତି, ସେ ଐଶ୍ୱର୍ଯ୍ୟ ନାହିଁ । ସବୁ ଶ୍ରୀହୀନ ।

## (୨)

ମୋର ଯେତେବେଳେ ବିଦ୍ୟାରମ୍ଭ ହୁଏ, ମୋତେ ଚାରିବର୍ଷ ହୋଇଥିଲା ବୋଲି ଶୁଣିଛି । ଖୁବ୍ ଆଡ଼ମ୍ବର ସହକାରେ ବିଧିବିଧାନ ଅନୁଯାୟୀ ମୋର ବିଦ୍ୟାରମ୍ଭ ହୁଏ । ଗାଁରୁ କଡ଼ାକୀ ଚକ୍ରବର୍ତ୍ତୀ କୁଳୀନ ବ୍ରାହ୍ମଣ ଡ଼କା ହୋଇ ଆସିଥିଲେ । ମୋର ତାଙ୍କର ରୂପ ଏବେ ମଧ୍ୟ ମନେପଡ଼େ । ମୁଣ୍ଡରେ ଧଳାବାଳ, ଶରୀର ଗଠନ ପୃଥୁଳ, ଗୌରବର୍ଣ୍ଣ ।

ସେ ମୋତେ ଖଣ୍ଡିଏ ଚାରିକୋଣିଆ ପଟା ଧରେଇ ଦେଲେ । ତା'ଉପରେ ହଳଦିଗୁଣ୍ଡ ବିଛା ହୋଇଥିଲା । ତାରି ଉପରେ ବ୍ରହ୍ମା, ବିଷ୍ଣୁ, ମହେଶ ନାମକ ତିନୋଟି ବଡ଼ ବଡ଼ ବୃତ୍ତ କଡ଼ାକୀ ଚକ୍ରବର୍ତ୍ତୀ ମୋର ହାତଧରି କୋଚିଲା ଖଡ଼ିରେ ଲେଖେଇଲେ । ମୁଁ ଲେଖି ପାରୁ ନଥାଏ । ତାଙ୍କରି ହାତର ସାହାଯ୍ୟରେ ସେହି ତିନୋଟି ବୃତ୍ତ ଲେଖିଲି । ସେ ବୃତ୍ତ ହେଲା ନାହିଁ, ତଥାପି ତାକୁ ବୃତ୍ତ ବୋଲି କୁହାଯିବ । ଆଉ ଗୋଟଏ "ଶ୍ରୀ" ଲେଖିବାର ମୋର ମନେ ପଡ଼ୁଛି । ସେ ମୋ ଦ୍ୱାରା ନୁହେଁ, ସେହି କଡ଼ାକୀ ଚକ୍ରବର୍ତ୍ତୀଙ୍କର ହାତର ସାହାଯ୍ୟରେ ।

ଏ ହେଲା ବିଦ୍ୟାରମ୍ଭ । ତା'ପରେ ଚାଟଶାଳି ପାଠ ଅରମ୍ଭ ହବା ପାଇଁ ଅବଧାନେ ଖୋଜା ହେଲେ । କେତେକ ଖୋଜାଖୋଜି ପରେ ଗୋଟିଏ ଅବଧାନ ଯୁଟିଲେ, ନାଁ ଘୁଷୁରିଆ ଅବଧାନେ, ଅତି ବୁଢ଼ା ମଣିଷ, ପାକୁଆ ପାଟି, ଅଳ୍ପ ଅଳ୍ପ ନଇଁ ନଇଁ ବାଡ଼ିଟିଏ ଧରି ଚାଲନ୍ତି । ଚାଟଶାଳୀ ଆରମ୍ଭ ହେଲା, କଟକ ସହର ଥୋରିଆ ସାହିରେ । ଆମେ ଯେଉଁ କୋଠା ଘରେ ଥାଉ ତାହାରି ବାହାର ପଟେ ଖଣ୍ଡିଏ ବେଶ୍ ପକ୍କା ଚଟାଣ । ସେହି ଚଟାଣ ଉପରେ ପକ୍କା ଛାତ । ଉତ୍ତର ଦିଗକୁ ଖଞ୍ଜାର ପ୍ରଧାନ ଦୁଆର, ପୂର୍ବ ଦିଗରେ ଗୋଟିଏ ଲମ୍ବା ହଲ୍ ପରି ବଖରାଏ ପ୍ରଶସ୍ତ ଘର, ପଶ୍ଚିମ ପଟେ କାନ୍ଥ, ଉତ୍ତର ଦିଗରେ ବଡ଼ ଖିଲାଣ, ତା'ତଳକୁ ବଡ଼ ବଡ଼ ଉଚ୍ଚା ଉଚ୍ଚା କେତେଟା ପାହାଚ, ସେହି ହେଲା ଅଗଣା ଭିତରୁ ବାହାରକୁ ଯିବାର ବାଟ ।

ଚାଟଶାଳି ଲାଗି ଅବଧାନେ ଯୋଗାଡ଼ ହେଲେ କିନ୍ତୁ ଚାଟ କାହାନ୍ତି ? ଚାଟ ମଧ୍ୟ କେତେକ ଯୋଗାଡ଼ ହେଲେ, ପାଠ ଆରମ୍ଭ ହେଲା । ଘୁଷୁରିଆ ଅବଧାନେ ଖଣ୍ଡିଏ ଆସନ ଉପରେ କାନ୍ଥକୁ ଆଉଜି ବସନ୍ତି, ହାତରେ

ଖଣ୍ଡେ ବେତ । ଚାଟଶାଳି ସକାଳୁ ଆରମ୍ଭ ହୁଏ, ଦିନ ୧୦ଟା ୧୧ଟା ପର୍ଯ୍ୟନ୍ତ । ଅବଧାନେ ଦି'ବେଳା ଠିକ୍ ସମୟରେ ବାଡ଼ି ଖଣ୍ଡିଏ ଧରି ନଙ୍ଗ ନଙ୍ଗ ଆସି ହାଜର ହୁଅନ୍ତି । ପିଲାଏ ମଧ ଆସି ପହଁଚି ତାଙ୍କ ପଢ଼ାରେ ଲାଗନ୍ତି କିନ୍ତୁ ମୋର ଯିବାକୁ ସବୁଦିନେ ଦି'ବେଳା ଡ଼େରି । ଦାଣ୍ଡ ଘର ଚୌକାଠ ଟପିଲେ ଚାଟଶାଳି । କିଛି ପାଏ, ଦେଢ଼ ପା' ବାଟ ଚାଲି ଯିବାକୁ ପଡ଼ୁନି, ତଥାପି ଚାଟଶାଳିକୁ "ନଗଛାମି", କେତେ ବୁଝାବୁଝି, କେତେ ଫୁସଲା ଫୁସଲି, କେତେ ପ୍ରଲୋଭନ, ଯେମିତି ଚାଟଶାଳିକୁ ଗଲେ ଅମୁକ ଜିନିଷ ଦିଆଯିବ । ଇମିତି ଦୈନିକ ମୋର ଚାଟଶାଳିକୁ ଯିବା ପାଇଁ ଗୋଟାଏ ଆଖଡ଼ା ଜମେ । ଯଦି ଗଲି ପୁଣି ଅଳ୍ପ ସମୟ ପରେ ଘରକୁ ଆସିବାର ଇଚ୍ଛା । ପାଠ ପଢ଼ା ବନ୍ଦ କରି ବସି କାନ୍ଦିଲିଣି । ନଚେତ୍ ଗୁମ୍ ମାରି ବସିଲିଣି । ଅବଧାନେ ପଚରା ଉଚରା କରି କାରଣ ବୁଝିଲା ବେଳକୁ କାରଣ ହେଲା, ମା'କୁ ଦେଖିବାକୁ ଯିବି । ଇମିତି କିଛିଦିନ ଚାଟଶାଳିକୁ ଯିବା ପାଇଁ, ଚାଟଶାଳିରେ ବସିବା ପାଇଁ ମଣ ହୁଏ । କିମିତି ମନ ଲାଗୁ । ଏଇ କାରଣ ଯୋଗୁଁ ବେଳେବେଳେ ଯେତିକି ହେଲା ସେତିକି । ଯେତିକି ସମୟ ବସିଲି, ସେତିକି, ବିଶେଷ ଆଉ କିଛି ମୋ ଉପରେ ଚାପ ନ ଦେଇ ମୋତେ ଛାଡ଼ି ଦିଆ ଯାଏ । ଅନ୍ୟ ପିଲାଏ ପଢ଼ୁଥାନ୍ତି, ମୁଁ ଚାଟଶାଳିରୁ ଉଠି ଆସି ଚୌକାଠ ଟପି ଘର ଭିତରକୁ ପଶି ଆସିଲେ ଆନନ୍ଦର କୁଆର ମାଡ଼ି ଆସେ । ଆଉ ସାଙ୍ଗେ ସାଙ୍ଗେ ଲୁଗା ଖଣ୍ଡକ ଛାଡ଼ି ଲଙ୍ଗଳା ହେଇ ପଡ଼ିଲେ, ଦିହରୁ ଯେମିତି କେତେ ବୋଝ ଓହ୍ଲେଇ ଯାଏ । ପାଠ ପଢ଼ା ଲାଗି ଚାଟଶାଳିରେ ବେଶି ସମୟ ବସିବା ଯେମିତି ଭଲ ଲାଗୁ ନଥିଲା, ସେମିତି ବେଶି ସମୟ ଲୁଗା ପିନ୍ଧିବା ମଧ ଭଲ ଲାଗୁ ନ ଥିଲା । ସେତେବେଳେ ଏତେ ହାଫ୍ ପ୍ୟାଣ୍ଟ କେହି ପିନ୍ଧୁ ନଥିଲେ । ସବୁ ପିଲାଏ ଛୋଟ ଛୋଟ ଧୋତି ନଚେତ୍ ଛୋଟ ଗାମୁଛା । ପାଇକଛା ଭିଡ଼ି କିମ୍ବା କୁଅଁକୁ ଝୁଲେଇ କେହି ଖାଲି ଦିହରେ, କେହି ଖଣ୍ଡେ ଖଣ୍ଡେ ଚଦର ଘୋଡ଼ି ହେଇ ଆସୁଥିଲେ । କୋଚିଲା ଖଡ଼ିରେ ତଳେ ପାହି କାଟି "ଅ" "ଆ" ଲେଖି ମଡ଼େଇବା ଆରମ୍ଭ ହେଲା । ଏଣେ ପାଟିରେ ପୁଣି ବଡ଼ ପାଟିରେ ଡ଼ାକି ମଡ଼େଇବାକୁ ହୁଏ । ସେତେବେଳେ "ଅ" "ଆ" ଲେଖିବା କି ବିପଦ! ତା'ପଛକୁ ମାଡ଼ି ତ ଆସିଲା 'କ' 'ଖ' 'ଗ' 'ଘ' ଇତ୍ୟାଦି ।

କିଛିଦିନ ପରେ ଠିକ୍ ହେଲା, ସକାଳେ ଯେଉଁ ଅକ୍ଷର ଲେଖିବାକୁ ଶିଖିବୁ, ଉପର ଓଳି ତାକୁ ବହିରୁ ଚିହ୍ନି ପଢ଼ିବା । ବହି ଆସିଲା, ମଧୁ ରାଓଙ୍କ "ବର୍ଣ୍ଣବୋଧ" । ସେ ନୂଆ ବହି "ବର୍ଣ୍ଣବୋଧ"ରୁ ଛବି ଦେଖିବା ଯେତିକି ଖୁସି ଲାଗୁଥିଲା, କିନ୍ତୁ ତାକୁ ପଢ଼ି ମନେ ରଖି ଅବଧାନଙ୍କୁ ସନ୍ତୁଷ୍ଟ କରି ଚାଟଶାଳିରୁ ଉଦ୍ଧାର ପାଇବା କି ବିପଦ! ମଧୁ ରାଓ "ବର୍ଣ୍ଣବୋଧ" ଲେଖି ଆମ ପରି ପାଠଚୋର ପିଲାଙ୍କ ପାଇଁ କି ବିପଦ ସୃଷ୍ଟି କରିଥିଲେ!

ଚାଟଶାଳିରେ ଅଳ୍ପ ଅଳ୍ପ ମନ ଲାଗିଲା । ସାଙ୍ଗ ଜୁଟି ଗଲେ । ଅବଧାନେ ନ ଥିଲା ବେଳେ ଖେଳ, ଅବଧାନେ ଢ଼ୋଳେଇଲା ବେଳେ ଗପ ପୁଣି ଅବଧାନେ ପହଁଚିଗଲେ କିମ୍ବା ଢ଼ୋଳେଇବା ଅବସ୍ଥାରୁ ହଠାତ୍ ଜଗି ଉଠି ବେତ ଖଣ୍ଡ ତଳେ ବାଡ଼େଇ ଦେଇ ଗୋଟାଏ ପାଟି କଲେ, କିରେ ପଢ଼ୁଛ ନା, ଗପ କଲ ବସି? ଅବଧାନଙ୍କ ତଳେ ବେତ ବାଡ଼ିଆ ଆଉ ପାଟିରେ ଆମେ ପୁଣି ସେହି ସମସ୍ୱରରେ ଚିତ୍କାର କରୁ "ଉତ୍ତର ଦିଗେ ବୃକ୍ଷ ଡ଼ାଳେ, ପେଚା ରାବିଲା ରାତ୍ରି କାଳେ" କିମ୍ବା "କଟକ ନଗର, ଧବଳ ଟଗର ।"

ଚାଟଶାଳିରେ ମନ ଲାଗିବାର ଆଉ ଗୋଟାଏ କାରଣ ହେଲା, ସକାଳ ବେଳା ଚାଟଶାଳିରୁ ଛୁଟି ହେଲାବେଳେ ଅବଧାନେ ଆମମାନଙ୍କ ହାତରେ ବେତ ଛୁଇଁ ଦିଅନ୍ତି, କିଏ ଶୂନ, ତା'ପରେ ଯେ ଯେତେ ଜଣକ ପଛରେ ଆସିଥାନ୍ତି ତାଙ୍କ ହାତରେ ସେତିକି ପାହାର । ଏଣୁ ମନରେ ଗୋଟାଏ ଆଗ୍ରହ ଜନ୍ମିଲା, କିମିତି ଶୂନ ହେବ । ମୋ ପକ୍ଷରେ ଶୂନ ହବା କିଛି କଷ୍ଟ ନଥିଲା । କାରଣ ବାହାର ଘର ଚୌକାଠ ଟପିଲେ ଚାଟଶାଳି କିନ୍ତୁ ମୋ ପକ୍ଷରେ ଶୂନ ହବା ହେଲା ନାହିଁ । ଦୂରରୁ ପିଲାଏ ଆସି ଚାଟଶାଳିରେ ଶୂନ ହେଲେ । ମୋର ସକାଳୁ ଉଠୁଛି କିଏ? ସୂର୍ଯ୍ୟ ଯଦି ବିଳମ୍ବରେ ଉଦୟ ହେଉଥାନ୍ତେ, ତା'ହେଲେ ମୋର ସକାଳୁ ଉଠି ଶୂନ ହବା ସମ୍ଭବ ହୁଅନ୍ତା, ହେଲା ନାହିଁ । ମୁଁ ଉଠିଲା ବେଳକୁ ପିଲାଏ ପାଟି

କରି ସ୍ୱର ବର୍ଣ୍ଣ, ବ୍ୟଞ୍ଜନ ବର୍ଣ୍ଣର ଚଉଦ ପୁରୁଷ ଉଦ୍ଧାର କରି ସାରିଲେଣି ।

'ବର୍ଣ୍ଣବୋଧ' ଘାଟି ଟପିଲା ପରେ 'ବାଲ୍ୟ ପାଠ' ଘାଟି ଆରମ୍ଭ ହେଲା । ବାଲ୍ୟ ପାଠ କା'ର ଲେଖା ମୋର ମନେ ପଡୁନି କିନ୍ତୁ ଭଲ ବହିଟିଏ । କେତେକ ଛବି ଥାଏ । ବିଶେଷ କରି 'ପକ୍ଷୀ ଓ ବାଳକ' ନାମକ ପଦ୍ୟଟି ପଢ଼ିବାକୁ ଭାରି ଭଲ ଲାଗୁଥିଲା । କିଛିଦିନ ପରେ ଉପର ଓଳି ଚାଟଶାଳି ସରିବା ପୂର୍ବରୁ ଅବଧାନେ ସେହି 'ବାଲ୍ୟ ପାଠ'ରୁ ଗୋଟିଏ ପଦ୍ୟକୁ ଗୀତ ପରି ଗାଇବାକୁ ଆରମ୍ଭ କଲେ । ସେ ପ୍ରଥମେ ଗାଇଲେ, ଆମେ ସମସ୍ତେ ସମସ୍ୱରରେ ତାଙ୍କର ପାଳି ଧରି ଗାଉ । ସେ ଗୀତ ବୋଲାରୁ ଆଖପାଖ ସାହି ପଡ଼ିଶା ସମସ୍ତେ ଜାଣନ୍ତି ଚାଟଶାଳି ଏଥର ସରିବ । ପଦ୍ୟଟିର ବିଷୟ ବସ୍ତୁ ମୋର ସାମାନ୍ୟ ମନେ ପଡ଼େ, କୃଷ୍ଣଙ୍କର ଧେନୁ ପଲ ଘେନି ଧେନୁ ଚରେଇବା ଏବଂ ତା'ପରେ ଗୋଷ୍ଠ ବାହୁଡ଼ା ଘଟଣା ।

ଇମିତି କିଛିଦିନ ଚାଟଶାଳି ଚାଲିଲା ପରେ ଦିନେ ରାତିରେ ମୁଁ ମା'ଙ୍କ ପାଖରେ ଶୋଇଥିଲି, ରାତିରେ ପରିଶ୍ରା ମଡ଼େଇଲା, ମା' ମୋତେ ପଦାକୁ ନେଇ ଆସିଲେ ପରିଶ୍ରା କରେଇବା ପାଇଁ । ମୁଁ ପରିଶ୍ରା କରୁଛି, ମା ଏଇ ସମୟରେ କହିଲେ, ତୋର ଘୁଷୁରିଆ ଅବଧାନଟି ମରିଗଲା । ମୁଁ ଶୁଣି ଯେତିକି ଆଶ୍ଚର୍ଯ୍ୟ ହେଲି, ସେତିକି ମଧ୍ୟ ଖୁସି ହେଲି । ଯା ହଉ କାଲିଠୁଁ ଆଉ ଚାଟଶାଳିକୁ ଯିବାକୁ ହବ ନାହିଁ । ଚାଟଶାଳି ବନ୍ଦ, ଭଲ ହେଲା ।

ସତକୁ ସତ କେତେଦିନ ଚାଟଶାଳି ବନ୍ଦ ହେଲା । ବେଶ୍ ବୁଲାବୁଲି ଖେଳ ନେଇ ଆରାମରେ ସମୟ କଟିଲା । ପୁଣି ଗୋଟାଏ ଅବଧାନ ଖୋଜା ଚାଲିଲା । କେତେଦିନ ପରେ 'କପିଳା' ଅବଧାନେ ଯୁଟିଲେ । ପୁଣି ସେହି ବାହାର ପିଲା ଓ ମୋତେ ନେଇ ପୂର୍ବ ପରି ଚାଟଶାଳି ଜମି ଉଠିଲା । ମୁଁ ଦେଖିଲି, ଘୁଷୁରିଆ ଅବଧାନେ ବୁଢ଼ା ଥିଲେ, କପିଳା ଅବଧାନେ ଟୋକା ଲୋକ, ଯାଙ୍କ ବେତ ଖଣ୍ଡକ ମଧ୍ୟ ଟୋକାଳିଆ, କି ବିପଦ! ସେହି ପାଠ ପଢ଼ା, ଚାଟଶାଳିକୁ ଦି'ଓଳି ଯିବା ଆସିବା । କପିଳା ଅବଧାନଙ୍କୁ ମୋତେ ଭାରି ଭୟ ଲାଗିଲା । ପାଠ ମଧ୍ୟ ଆଗେଇଲା । 'ବାଲ୍ୟ ପାଠ' ସରିବା ପରେ 'ଚାଟଶାଳି ପାଠ' ଆରମ୍ଭ ହେଲା । ଏଥିରେ ଛବି ଥିଲେ କ'ଣ ହବ? ତା' ସାଙ୍ଗକୁ 'ଅଙ୍କ' ଥିଲା, 'ଅଙ୍କ' କି ଭୟଙ୍କର! କି କଷ୍ଟଦାୟକ ବିଷୟ!

'ଅଙ୍କ' ଆରମ୍ଭ ହେଲା । ସେହି ତଳେ ପାହି କାଟି, କୋଟିଲା ଖଡ଼ିରେ ତଳେ ୧,୨ ଇତ୍ୟାଦି ଲେଖି ମଡ଼େଇବା । ଅବଧାନଙ୍କର ଧମକମିଶା ପ୍ରଶ୍ନ, ୧ ରୁ ୧୦୦ ପର୍ଯ୍ୟନ୍ତ ଗଣିବା, ଲେଖି ଦେଖେଇବା, କ'ଣ କରେ? ଏଥିରୁ ମୁକ୍ତିର ଉପାୟ ଦେଖାଦେଲେ 'ପଣିକିଆ' । ୧ ରୁ ୨୫କ ଯାଏ, କି ବିପଦ! ପଣିକିଆ ଲେଖିବା, ମଡ଼େଇବା ।

ଅବଧାନଙ୍କର ପ୍ରଶ୍ନ-ଏତେ କାହାଣ, ଏତେ ପଣ କୋଉଠି ଅଛି? କୁହ, ଯେ କହିଲା, ତା'ର ପ୍ରଶଂସା, ଯେ ନ କହି ପାରିଲା ତାକୁ ବେତରେ ପାହାର । ତା'ପରେ କାନ୍ଦଣା, କେତେକ ପିଲା ଲୁଚିଲେ । ମୁଁ ଦୈନିକ ଫିସାଦ ଆରମ୍ଭ କଲି, ପେଟ କାମୁଡ଼ା, ମୁଣ୍ଡ ବଥା, ଝାଡ଼ା ମଡ଼େଇବା । କିନ୍ତୁ କିଛିରେ ନିସ୍ତାର ନାହିଁ । ଚାଟଶାଳିକୁ ନ ଗଲେ ଘରେ ମା'ଙ୍କ ଠାରୁ ମାଡ଼, ଚାଟଶାଳିକୁ ଗଲେ ସେଠି କପିଳା ଅବଧାନେ ଯମ ବସିଛନ୍ତି । ଯା ହଉ ବାଧ ହେଇ ମାଡ଼ ଭୟରେ 'ପଣିକିଆ' ମଡ଼େଇବା ଘୋଷିବା, ଅବଧାନଙ୍କ ପ୍ରଶ୍ନର ଉତ୍ତର ଦବା ଚାଲିଲା । ତା'ପରେ ଫେଡ଼, ମିଶା, ହର, ଗୁଣ ତା' ସାଙ୍ଗକୁ ସୋଧି, କଡ଼ା, ଗଣ୍ଡା, କୋଡ଼ି, ପଣ, ପଦିଆ, କାହାଣ ବୋଲା ହେଲା । ତଳେ ପାହିକାଟି ଲେଖିବା ଛାଡ଼ି ସିଲଟ, ପେନ୍‌ସିଲ୍‌ରେ ଲେଖା ଆରମ୍ଭ ହେଲା । ତା'ପରେ ଆରମ୍ଭ ହେଲା ଓଡ଼ିଆରେ ହସ୍ତାକ୍ଷର ଲେଖିବା । ହସ୍ତାକ୍ଷର ଖାତା ମାଟିଆ କାଗଜରେ ତିଆରି ହେଲା । ଗୋଟାଏ ପିତଳ ଦୁଆତରେ କାଳି ତିଆରି ହେଲା । କାଠି କଲମ ତିଆରି ହେଲା । ପୁଣି କେତେଦିନ ପରେ ପର କଲମ ତିଆରି ହେଲା, ଚାଲିଲା ହସ୍ତାକ୍ଷର ଲେଖା ।

କିଛିଦିନ ପରେ ରାତିବେଳେ ଆରମ୍ଭ ହେଲା ଇଂରାଜୀ ପାଠ । ପିଆରୀ ଚରଣ ସେନ୍‌ଙ୍କ "ଫାଷ୍ଟ ବୁକ୍" ।

ଓଡ଼ିଆ ପାଠ କିଛି ଆଗେଇଲା ପରେ, ଇଂରାଜୀ ପାଠର ପ୍ରଥମ ପାହାଚ ରୂପେ ଦେଖା ଦେଲେ, A, B, C, D ଇତ୍ୟାଦି। ତା'ର କିଛିଦିନ ପରେ ପଢ଼ିବାକୁ ହେଲା One morn I met a lame man...... କି ବିପଦ! ରାତିରେ ଟିକିଏ ଖେଳୁଥିଲି, ଶୋଉଥିଲି କିନ୍ତୁ ସନ୍ଧ୍ୟାପରେ ଇଂରାଜୀ ପାଠ ଆରମ୍ଭ ହେଲା ପରେ ସେତକ ମଧ ଗଲା। ପ୍ରଥମେ ବାବା ହିଁ ପ୍ରଥମ "ଫାଷ୍ଟ ବୁକ୍" ପଢ଼େଇବା ଆରମ୍ଭ କରିଥିଲେ। ଫାଷ୍ଟ ବୁକ୍ କିଛି ଦୂର ଆଗେଇଲା ପରେ ଇଂରାଜୀ ହସ୍ତାକ୍ଷର ଲେଖିବା ପାଇଁ ବାବା ଖଣ୍ଡିଏ ସୁନ୍ଦର ବହି ଆଣି ଦେଲେ। ସେ ବହିରେ ସବୁ ରକମର ଇଂରାଜୀ ଅକ୍ଷର ଲେଖା ଥିଲା। ତାକୁ ଦେଖି ଇଂରାଜୀ ହସ୍ତାକ୍ଷର ଲେଖିବାକୁ ହେଲା। ଦିନ ବେଳା ଓଡ଼ିଆ ହସ୍ତାକ୍ଷର, ରାତିରେ ଇଂରାଜୀ ହସ୍ତାକ୍ଷର ଲେଖା ଚାଲିଲା। ଦିନବେଳା ଚାଟଶାଳିକୁ ଯାଇ ପାଠ ପଢ଼ିବା ଆଉ ରାତିରେ ଇଂରାଜୀ ପଢ଼ିବା ମୋତେ ଭାରି ଖରାପ ଲାଗୁଥାଏ। ଯେମିତି ଗୋଟିଏ ଛେଳିକୁ ବଳି ପକେଇବାକୁ ନବା ଭଳି। କ'ଣ କରେ? କେତେ ରକମର ଫିସାଦ କରେ। କେମିତି ପାଠ ପଢ଼ାରୁ ମୁକ୍ତି ପାଇବି। ଯେଉଁଦିନ ଫିସାଦଟା ବିଶ୍ୱାସଯୋଗ୍ୟ ହେଲା ଭଳି ହୁଏ, ସେଦିନଟା ପାଠରୁ ମୁକ୍ତି ମିଳେ। ଯେଉଁଦିନ ଫିସାଦଟା ବିଶ୍ୱାସ ଯୋଗ୍ୟ ହୁଏନା, ସେଦିନଟା ମାଡ଼ ଆଉ ଅଶ୍ରୁବର୍ଷଣ ଦ୍ୱାରା ପାଠ ପଢ଼ା ଆରମ୍ଭ ହୁଏ। କି ଦୁଃଖ ଲାଗେ! ଦିନବେଳା ଚାଟଶାଳି ଅବଧାନକୁ ଶତ୍ରୁ ଭଳି ମନେ ହୁଏ। ବାବାଙ୍କ ପ୍ରତି ମୋର ଯେତେ ଆଗ୍ରହ, ସ୍ନେହ, ଶ୍ରଦ୍ଧା ଥିଲା ସବୁ କ୍ରମଶଃ କମିବାକୁ ଲାଗିଲା। ଶେଷରେ ବାବାଙ୍କ ପାଖକୁ ଯିବାକୁ ଭୟ ଲାଗିଲା, ଲୁଚିଲି। ବାବା ଯେତେ ମୋତେ ଭଲ ପାଆନ୍ତୁ, ଆଦର କରନ୍ତୁ, ଆଉ ନୁହେଁ।

ବାବା ଚାକିରୀ କରୁଥିଲେ ଯୋବ୍ରା ୱାର୍କସପ୍‌ରେ, ଷ୍ଟୋରକିପର୍ (storekeeper) ଥିଲେ। ବାବା ସନ୍ଧ୍ୟା ପୂର୍ବରୁ ଅଫିସ୍‌ରୁ ଫେରି ନିଜର ନିତ୍ୟକର୍ମ ସାରି ମୋତେ ପାଖରେ ବସେଇ ଫାଷ୍ଟ ବୁକ୍ ପଢ଼ା ଆରମ୍ଭ କଲେ ମୋର ମନେ ହୁଏ ଯେମିତି ଗୋଟାଏ କୋଉ ହିଂସ୍ର ଜନ୍ତୁ ହାବୁଡ଼େ ପଡ଼ିଛି, କିମିତି ଯାଙ୍କ କବଳରୁ ମୁକ୍ତି ପାଇବି? କେହି ସାହା ଭରସା ନାହାନ୍ତି। ମା ଭୈରବୀ ରୂପିଣୀ, ପାଠ ନ ପଢ଼ିଲେ ମାତ, କିଛି ସ୍ନେହ ମମତା ନାହିଁ, ଇମିତିକି ଘରର ପୂଜାରୀ, ଚାକର, ଚାକରାଣୀ ସମସ୍ତଙ୍କର ମୋ ପ୍ରତି ଭର୍ତ୍ସନା। ଗାଳି, ଥଟ୍ଟା, ପରିହାସ ପୁଣି ଯେମିତିକି ମୁଁ ସବୁବେଳେ ପାଠ ପଢୁଥିବି ଆଉ ଖେଳିବି ନାହିଁକି, ବୁଲିବି ନାହିଁ। ସେମାନେ ଯେମିତି ସମସ୍ତେ ପାଠୁଆ ମୁହିଁ ଏକା ମୂର୍ଖ। ଖାଲି ମୂର୍ଖ ନୁହେଁ, ଚୋରଟାଏ, ପାଠଚୋର, ଯା'କୁ ଦେଖିଲି ଭୟ ଲାଗିଲା। କାହାରି ଟିକିଏ ହେଲେ ମୋ ପ୍ରତି ଶ୍ରଦ୍ଧା ନାହିଁ କି ମାୟା ମମତା ନାହିଁ। ସମସ୍ତଙ୍କର ଗୋଟାଏ କଥା 'ପାଠଚୋର', ଫିସାଦିଆଟା, ଏଇଟା କିଛି କରିବ ନାହିଁ। ଯା ବଡ଼ ଭାଇ ଘୋଡ଼ାରେ ଗଲେ ଏ ତା' ପଛେ ପଛେ ଲୋଟା ଗାମୁଛା ଧରି ଦଉଡ଼ିବ।

ବଡ଼ଭାଇ ଯିଏ, ସେ ମୋର ସହୋଦର ଭାଇ ନୁହଁନ୍ତି, ଜେଠା ପୁଅ ବଡ଼ଭାଇ। ସେ ସେତେବେଳେ entrance ପଢୁଥାନ୍ତି। ଭଲ ପଢୁଥାନ୍ତି ଏଣୁ ସମସ୍ତଙ୍କର ମୋ ପ୍ରତି ବ୍ୟଙ୍ଗୋକ୍ତି ଯେ ମୁଁ ବଡ଼ଭାଇଙ୍କର ଲୋଟା, ଗାମୁଛା ବୋହିବି, ସେ ଘୋଡ଼ାରେ ଚଢ଼ିବେ, ବାବୁ ହେବେ। ଏ କଥା ଶୁଣି ମୁଁ ମନେ ମନେ ଚିନ୍ତିତ ହୋଇପଡ଼େ, କ'ଣ କରିବି? ବଡ଼ଭାଇ ତ ଘୋଡ଼ାରେ ଚଢ଼ି ଯିବେ ମୁଁ ତାଙ୍କ ପଛେ ପଛେ କିମିତି ଲୋଟା, ଗାମୁଛା ଧରି ଦଉଡ଼ିବି? ଘୋଡ଼ା ତ କେତେ ଜୋର୍‌ରେ ଦଉଡ଼ିବ! ମୁଁ କ'ଣ ସେମିତି ଦଉଡ଼ି ପାରିବି?

ଦିନବେଳା କପିଳା ଅବଧାନଙ୍କ ଦ୍ୱାରା କେତେଦିନ ଚାଟଶାଳି ପାଠ ଚାଲିଲା। ମୋର ଭଲ ମନେ ଅଛି, ମୁଁ ଘର ଭିତରୁ ଗୋଡ଼ ବଢ଼େଇଲେ ଚାଟଶାଳି। ପିଲାଏ କେତେ ଦୂରରୁ ଆସି ଯେତେବେଳେ ୨କ ପଣିକିଆ ଲେଖିଲେଣି, ମୁଁ ସେତେବେଳେ ଜଳଖିଆ ଇତ୍ୟାଦି ଖାଇ ଚାଟଶାଳିରେ ପହଁଚି, ପାହିକାଟି ୨କ ପଣିକିଆ ଲେଖୁ ଲେଖୁ ଖଡ଼ି ଥୋଇ ଦେଇ ଗୁମ୍ ମାରି ବସିଲିଣି। ଅବଧାନେ କାରଣ ପଚରାଉଚରା କରି ବୁଝିଲା ବେଳକୁ ଅଶ୍ରୁବର୍ଷଣ, କାନ୍ଦଣା ଆଉ ପଢ଼ିବି ନାହିଁ, ମା'କୁ ଦେଖିବାକୁ ଯିବି। ମାଷ୍ଟ୍ରେ ମାରି ପାରନ୍ତିନି କାରଣ ବାବୁ ଘର ପିଲା,

ଥୋରିଆ ସାହିରେ ଆମ ଘରଟା 'ବାବୁଘର' ବୋଲି ପରିଚିତ । ସମସ୍ତଙ୍କ ମୁହଁରେ ଗୋଟାଏ କଥା 'ବାବୁଘର' । ଯଦି କୋଉ ଜିନିଷ କୋଉଠି ନ ମିଳିବ ବାବୁ ଘରେ ଥିବ, ବାବୁ ଘରେ ମିଳିବ । କାହାରି କୁଣ୍ଡିଆ ହେଇଛି ମରା ନଡ଼ିଆ ତେଲ ଦରକାର । କାରଣ, କିଏ କହେଇଛି କର୍ପୂର ମରା ନଡ଼ିଆ ତେଲରେ ଫେଣ୍ଟି ଲଗେଇଲେ କୁଣ୍ଡିଆ ଭଲ ହେଇଯିବ । ପଡ଼ିଶା ଘରର କେହି ଯଦି ମା'ଙ୍କୁ ଅନୁରୋଧ କଲା ଠାକୁରାଣୀ, ମରା ନଡ଼ିଆ ତେଲ ଟିକିଏ ଦରକାର ଅଛି, ଦେଇ ପାରିବକି ? ମା' ରାଜି ହେଲେ, ଗାଁରୁ ନଡ଼ିଆ ତ ଆଣି ରଖା ହେଇଥାଏ । ସାଙ୍ଗେ ସାଙ୍ଗେ ନଡ଼ିଆ କୋରି ସେଥିରୁ ତେଲ ବାହାର କରି ଦିଆ ହେଲା । ମୋର ହେତୁ ହେଲା ବେଳକୁ ଶୁଣିଛି, ଥୋରିଆସାହିରେ ଆମ ପଡ଼ିଶା ଘରର କି ପୁରୁଷ କି ସ୍ତ୍ରୀ ଲୋକ ସମସ୍ତେ ମୋର ମା'ଙ୍କୁ କେହି 'ଠାକୁରାଣୀ', 'ବାବୁଆଣୀ' କିମ୍ୱା 'ମା' ବୋଲି ଡ଼ାକୁଥିଲେ । ଆଉ ବାବାଙ୍କୁ 'ବାବୁ' ବୋଲି ଡ଼ାକୁଥିଲେ । ବାବାଙ୍କର ନାମ, ବ୍ରଜବିହାରୀ ରାୟ । ଏଣୁ ଥୋରିଆସାହିରେ ବାବାଙ୍କର ଡ଼ାକ ନାମଥିଲା, ବରଜୁ ବାବୁ । ଆଉ ମୋତେ ସମସ୍ତେ ଡ଼ାକୁଥିଲେ, 'ଧଡ଼ି ବାବୁ' । ମୁଁ ଅତି ଦୁର୍ବଳ ଥିବାରୁ ମୋତେ ଘରେ ସମସ୍ତେ ଡ଼ାକୁଥିଲେ ଧଡ଼ିଆ । ଏଣୁ ମୁଁ ହେଲି 'ଧଡ଼ି ବାବୁ' । ଆମ ଗାଁରେ ମୋରି ପରି ଆଉ କେତୋଟି 'ଧଡ଼ିଆ' ନାମଧାରୀ ପିଲା ଥିଲେ, ସେମାନଙ୍କୁ ଡ଼କା ହୁଏ, 'ସାହି ଧଡ଼ିଆ'-ସାହିର ପିଲା ଧଡ଼ିଆ, ମଠ ଧଡ଼ିଆ-ଗୋଟିଏ ମଠର ଧଡ଼ିଆ ନାମକ ପିଲା , 'ବଢ଼େଇ ଧଡ଼ିଆ'-ଗୋଟିଏ ବଢ଼େଇ ଘରର ଧଡ଼ିଆ ନାମକ ପିଲାଟିଏ, କଟକ ଧଡ଼ିଆ । ମୁଁ ହେଲି କଟକ ଧଡ଼ିଆ କାରଣ ମୋର ଜନ୍ମ କଟକରେ । ମୋତେ ସମସ୍ତେ ଧଡ଼ିଆ କିମ୍ୱା ଧଡ଼ି ବୋଲି ଡ଼ାକୁଥିଲେ ଆଉ କେତେକ 'ପୁଳିନ୍' ବୋଲି ଡ଼ାକନ୍ତି ।

ମୋର ମନେ ଅଛି, ସନ୍ଧ୍ୟା ପୂର୍ବରୁ ବାବା ଅଫିସ୍‌ରୁ ଆସି ନିତ୍ୟକର୍ମ ସାରି ଜଳଖିଆ ଖାଇ ଦାଣ୍ଡରେ ବସିଲେ । ସାହିପଡ଼ିଶାଙ୍କର କେତେକ ସୁବିଧା, ଅସୁବିଧା, ଅଭାବ, ଅଭିଯୋଗ ବାବାଙ୍କୁ ଶୁଣିବାକୁ ହୁଏ । ବିଚାର କରିବାକୁ ହୁଏ । ଉପଦେଶ ଦବାକୁ ହୁଏ । କେତେକ ମାଇପି, ମରଦ ଆସି ରୁଣ୍ଡ ହୁଅନ୍ତି । କେତେ କଥା ପଡ଼େ, ଯେମିତି କା ପୁଅ ତା'ମାକୁ ଖାଇବାକୁ ଦଉନି । କିଏ କା'ର ଜିନିଷ ଚୋରି କରିଛି, କିଏ କାହାକୁ ମାରିଛି, କା ଜାଗାରେ କିଏ ଜବରଦସ୍ତି କାନ୍ଥ ଉଠେଇଛି ।

ବାବା ସବୁ ଧୈର୍ଯ୍ୟର ସହିତ ଶୁଣି ବିଚାର କରି ଯା'କୁ ଯାହା କହନ୍ତି । ସେମାନେ ଠିକ୍ ମାନନ୍ତି । କାରଣ ବାବୁ କହିଲେ, ବାବୁଙ୍କ କଥା ମାନିବାକୁ ହବ ଯାହା ମୀମାଂସା କଲେ ମାନିବାକୁ ହବ ସେଇଟା ଠିକ୍ କଥା । କେହି ଅବାଧ ହୁଅନ୍ତି ନାହିଁ । ବାବା ମଧ କାହାକୁ କାହାକୁ ଧମକ ଦବା ମଧ ଦେଖିଛି । ଯା'କୁ ଧମକ ଦିଅନ୍ତି, ସେ ମଧ ଭୟ କରେ, କଥା ମାନେ, ଜବାବ ନାହିଁ, ପ୍ରତ୍ୟୁତ୍ତର ନାହିଁ, ନୀରବରେ କଥା ମାନିଗଲା ।

ଆହୁରି ଦେଖିଛି, କେତେକ ଆସି ବାବାଙ୍କର ପରାମର୍ଶ ଲୋଡନ୍ତି । ଯେମିତି ଝିଅ ପୁଅଙ୍କର ବାହା ଲାଗି କୋଉଠି କିଏ କନ୍ୟାଟିଏ କି ବରଟିଏ ଠିକ୍ କରିଛି, ସେଠି କଲେ ଭଲ ହବ କି ମନ୍ଦ ହବ ? ବାବାଙ୍କର ଯଦି ବରଘର କିମ୍ୱା କନ୍ୟାଘର ଲୋକ ପରିଚିତ ହୋଇଥାନ୍ତି, ବାବା ସେଠି ବିଭା କରିବା ନ କରିବା ବିଷୟରେ ମତ ଦିଅନ୍ତି । ବାବା ଯା କହିବେ ସେଇଟା ଠିକ୍ କଥା । ଯାହା ସମସ୍ୟା ଉପୁଜିଲା, ଚାଲ ବରଜୁବାବୁଙ୍କୁ ପଚାରିବା । ସେତେବେଳେ ଥୋରିଆସାହିର ଲୋକଙ୍କର ମାଲିକମଦ୍ଦମା, ଦଙ୍ଗାହାଙ୍ଗାମା ଆଡ଼କୁ ଏତେ ମନ ନଥିଲା । ତେଣୁ ବାବାଙ୍କ ପାଖକୁ ମାଲିମକଦ୍ଦମା ବିଷୟରେ କାହାରି ପରାମର୍ଶ ଲାଗି ଆସିବାର ଦରକାର ପଡୁ ନଥିଲା । ବାବା ମଧ ମାଲିମକଦ୍ଦମା, ଦଙ୍ଗାହାଙ୍ଗମାର ବହୁ ଦୂରରେ ରହିବାର ଲୋକଥିଲେ । ବାବା ଥିଲେ ଅହିଂସାବାଦୀ, ଶାନ୍ତିପ୍ରିୟ ଲୋକ । ଗୋଟାଏ କଥା ଲେଖୁ ଲେଖୁ ଅନେକ କଥା ଲେଖି ସାରିଲିଣି ।

ସାହି ପଡ଼ିଶାଙ୍କର ଯାହାର ଯାହା ଦରକାର ପଡ଼େ, ଯେମିତି କୁଣ୍ଡିଆ ଲାଗି ମରା ନଡ଼ିଆ ତେଲର ଦରକାର ପଡ଼େ । ସେମିତି କାହାର ପିତଳ ହଣ୍ଡା, କରେଇ, କାହାର ପିଲାଟିଏ ଜନ୍ମ ହେଇଛି, ମା'ର କ୍ଷୀର ନାହିଁ, ତା'ର

ପ୍ରତିଦିନ କିଛି ଗାଈ କ୍ଷୀର ଦରକାର । କା'ର ପୁଅ, ଝିଅ ବାହାହବ ତାଙ୍କୁ କିଛି ଦବାକୁ ହବ । ଆଉ ଗୋଟାଏ କଥା, ଥୋରିଆସାହିରେ ଅଧିକାଂଶ ଲୋକଙ୍କର ପୁଅ ବାହା ହେଲେ ବାବୁ ଘରୁ ସୁନାବଳା ଆଣି ପିନ୍ଧିବା । ମା'ଙ୍କୁ ଯେ ଆସି ସୁନାବଳା ମାଗେ, ମା'ହାତରୁ ସୁନାବଳା କାଢ଼ି ସରଳ ବିଶ୍ୱାସରେ, ଅକୁଣ୍ଠିତ ଚିତ୍ତରେ ଦେଇ ଦିଅନ୍ତି । ଲୋକେ ମଧ ପୁଅ ବାହାପରେ ସୁନାବଳା ସହିତରେ କିଛି ମିଠା ଜିନିଷ ଦେଇ ଫେରେଇ ଦେଇ ଯାନ୍ତି । କିଛି ଗୋଳମାଳ ନାହିଁ, ଯେମିତି ନେଇଥାନ୍ତି, ସେମିତି ଫେରେଇ ଦିଅନ୍ତି ।

ଥୋରିଆସାହିରେ ଇମିତି ଆମ ଘରୁ କେତେଲୋକେ କେତେକ ଜିନିଷ ଦରକାର ବେଳେ ନଉଥିଲେ । ବାବା, ମା ଉଭୟଙ୍କର ମଧ ଏଥିରେ କୌଣସି ଦ୍ୱିଧା ନଥିଲା । ଲୋକଙ୍କର ଦରକାର ଅନୁଯାୟୀ ଯେତେବେଳେ ଯେ ଯାହା ମାଗିଲା ଯୋଗେଇ ଦଉଥିଲେ । ଆହୁରି ଗୋଟାଏ କଥା ମନେ ଅଛି:- ଆମର ଗୋଟିଏ ପୋଟଳ ଗଛ ଥିଲା, ସେଥିରେ ଫଳ ଧରିଲେ ଶୁଖି ଝଡ଼ି ଯାଉଥିଲା କିନ୍ତୁ ତା'ର ପତର ନବା ପାଇଁ କେତେ ଯେ ଲୋକ କୁଆଡୁ ଆସୁଥିଲେ ବେଳ କାଳର ବିଚାର ନାହିଁ । ଯେ ଯେତେବେଳେ ଆସିଲା, ପୋଟଳ ପତର ଦବାକୁ ହବ କାରଣ ମୁଣ୍ଡ ବୁଲଉଛି । ପୋଟଳ ପତର ବାଟି ମହୁ ସାଥିରେ ମିଶେଇ ଖାଇବାକୁ ହବ ଆଉ କିଛି ସେଥିରୁ ମୁଣ୍ଡରେ ଘଷିବାକୁ ହବ । ମୋର ମନେ ଅଛି ପୋଟଳ ପତର ନବା ପାଇଁ ଥରେ ଜଣେ ଲୋକ ବାରଙ୍ଗରୁ ଆସିଥିଲା । ପୋଟଳ ପତର ପାଇଁ ଯେ ଆସେ, ତାକୁ କେଭେ ଫେରେଇ ଦିଆ ହୁଏ ନା । ତା'ଛଡ଼ା ଥୋରିଆସାହିକୁ ଯଦି କେଳା ସାପ ଖେଳେଇ ଆଣିଲା, ସେ ବାବୁଘର ଦୁଆରେ ସାପ ଖେଳେଇବ ଆଉ ସମସ୍ତେ ଠିଆ ହେଇ ଦେଖିବେ । ଯଦି କେଳା ପାତିମାଙ୍କଡ଼ ଆଣିଛି ନଚେଇବାକୁ, ସେ ପାତିମାଙ୍କଡ଼ ବାବୁଘର ଦୁଆରେ ନାଚିବ ଆଉ ସମସ୍ତେ ଦେଖିବେ । ଯା' ହବ ସବୁ ବାବୁଘର ଦୁଆରେ ହବ ଆଉ ସମସ୍ତେ ତାକୁ ଦେଖି ଆନନ୍ଦ ଅନୁଭବ କରିବେ । ବାବାଙ୍କର ଏଥିରେ ଖର୍ଚ୍ଚ କରିବାରେ କୌଣସି କୁଣ୍ଠା ନଥାଏ ବରଂ ଆନନ୍ଦ ।

ଦେବାଲୀ ଦିନ ରାତିରେ ଦୀପ ଜଳା ହବ ଆଉ ନାନା ପ୍ରକାର ବାଣ ଫୁଟା ହବ । ଏଥିଲାଗି ସାହିର ପିଲାମାନଙ୍କର ଆମ ଦୁଆରେ ବିଶେଷ ଗଣ୍ଡଗୋଳ । ବାବା ନିଜେ ହିଁ ଅନେକ ପ୍ରକାର ବାଣ କିଣି ଆଣୁଥିଲେ । ଆଉ ସନ୍ଧ୍ୟାପରେ ପାହାଚ ଉପରେ ଦୀପ ସଜା ହେଇ ଜଳା ଆରମ୍ଭ ହେଲେ ପିଲାଏ ଆସି ଋଣ୍ଡ ହେଲେ ବାବା ଦାଣ୍ଡରେ ବସି ପିଲାଙ୍କୁ ଫୋଟକା, ଫୁଲଝରି, ଅନାର ଇତ୍ୟାଦି ବାଣ୍ଟିବାକୁ ଆରମ୍ଭ କରନ୍ତି । ଆଉ ବଡ଼ ମଣିଷ ଦେଖି ହାବେଳି ଇତ୍ୟାଦି ଦିଅନ୍ତି ମାରିବା ପାଇଁ । ଦୀପ ଜଳୁ ଜଳୁ କୋଉଟା ଲିଭିଲା, କୋଉଟାରେ ତେଲ ସରିଗଲା, କୋଉଟାରେ ସଳିତା ନାହିଁ, ସେ ସବୁ ପୂଜାରୀ, ଚାକର ନଜର ରଖିଥାନ୍ତି । ଦୀପରେ ପୋଲାଙ୍ଗ ତେଲ ଢ଼ାଳନ୍ତି, ସଳିତା ପକାନ୍ତି ପୁଣି ଲିଭିଲା ଦୀପକୁ ଲଗେଇ ଦିଅନ୍ତି । ମୋତେ ଖାଲି ଫୁଲ ଝରି ଜଳେଇ ଧରିବାକୁ ଦିଆ ହୁଏ । ସେଇଥିରେ ମୋର ଆନନ୍ଦ । ଫୁଲ ଝରି ଜଳିବା ପରେ ଚାରିଆଡ଼େ ଛିଟିକି ପଡ଼େ । ପରେ ମୁଁ ଦେଖିଛି ମୁଁ ଯେତେବେଳେ ଟିକିଏ ବଡ଼ ହେଲି ନିଜର ଇଚ୍ଛାରେ ବାଣ ଇତ୍ୟାଦି କିଣିବାକୁ ଜିଦ୍ କଲି । ବାବା, ଗୋଟିଏ ଟଙ୍କା ଦିଅନ୍ତି । ମୋ ସହିତରେ ଜଣେ ଚାକର ଯାଏ । ଆମେ ଦିହେଁ ମାଛୁଆ ବଜାରରୁ ଫୋଟକା ଇତ୍ୟାଦି କିଣି ଆଣୁ । ସେତେବେଳେ ଗୋଟାଏ ଟଙ୍କାକୁ କେତେ ଫୋଟକା ଓ ଅନ୍ୟାନ୍ୟ ଜିନିଷ ମିଳୁଥିଲା । ଚାକର ଗୋଟାଏ ଟୋକେଇରେ ଟୋକେଇଏ ଫୋଟକା ଇତ୍ୟାଦି କିଣି କାନ୍ଧରେ ଥୋଇ ମୋତେ ସାଙ୍ଗରେ ଧରି ସନ୍ଧ୍ୟା ପୂର୍ବରୁ ଘରକୁ ଫେରୁଥିଲା । ସନ୍ଧ୍ୟାପରେ ସାହିପିଲାଙ୍କୁ ବଣ୍ଟା ହୁଏ । ଯେ ଯାହା ମାଗିଲା, ଯେ ଯେଉଁଟା ଫୁଟେଇ ପାରିବ, ଜାଳି ପାରିବ । ଆମ ଦୁଆରେ ସେଦିନ ପିଲାଙ୍କର ଭାରି ଗହଳି ହୁଏ ।

ମୋର ଚାଟଶାଳିରେ ପଢ଼ିବା କଥା ଲେଖୁ ଲେଖୁ ଅନେକ ଗୁଡ଼ିଏ ଅନ୍ୟ କଥା ଲେଖି ପକେଇଲି । ବର୍ତ୍ତମାନ ପୁଣି ସେହି ଚାଟଶାଳିରେ ପଢ଼ିବା କଥା ଉଲ୍ଲେଖ କରେ:-

ମୋର ମନେ ପଡୁଛି, କପିଳା ଅବଧାନଙ୍କ ଦ୍ୱାରା ଚାଟଶାଳି ପାଠ କିଛି ଦିନ ଚାଲିଲା ପରେ, କପିଳା

ଅବଧାନେ ହଠାତ୍ ମରିଗଲେ। ସମସ୍ତେ କପିଳା ଅବଧାନଙ୍କ ମୃତ୍ୟୁ ସମ୍ବାଦରେ ଦୁଃଖିତ ହେଲେ କାରଣ ଭଲ ଅବଧାନଟିଏ ଛୁଟିଥିଲେ। ଭଲ ମଣିଷ ଥିଲେ କିନ୍ତୁ ମୋର ଟିକିଏ ହେଲେ ଦୁଃଖ ନଥିଲା କାରଣ ପଢ଼ାରୁ ବର୍ତ୍ତମାନ କିଛି ଦିନ ମୁକ୍ତି ମିଳିଲା, ବୁଲିବା, ଖେଳିବା ପାଇଁ ବାଟ ଫିଟିଗଲା, ଆଉ ଜଣେ ଅବଧାନେ ଜୁଟିବା ଯାଏ। କିନ୍ତୁ ରାତିରେ ବାବାଙ୍କ ହାବୁଡ଼ରୁ ଯିବି କୁଆଡ଼େ? ରାତିରେ ତ 'ଫାଷ୍ଟ ବୁକ୍' ପଢ଼ିବାକୁ ହୁଏ। ସେ ଆଉ ବନ୍ଦ ହେଲା ନାହିଁ। ସେ ଠିକ୍ ଚାଲିଲା କିନ୍ତୁ ଦିନବେଳଟା ବଡ଼ ଆନନ୍ଦରେ କଟେ। ବାବା ଅଫିସ୍‌କୁ ଚାଲିଯାନ୍ତି କିନ୍ତୁ ଘରେ ମା, ପୂଜାରୀ, ଚାକର, ଚାକରାଣୀ ସମସ୍ତଙ୍କର ମୁଁ ଯେମିତି ଗୋଟାଏ ଭର୍ତ୍ସନାର ଶିକାର ହେଉଥାଏ। ସମସ୍ତେ ପଦେ ପଦେ ହାଣନ୍ତି। ମା କହନ୍ତି, ହଁ ପାଠ ତ ହେଲା ନାହିଁ, ଯୋଡ଼ାଏ ଅବଧାନଙ୍କୁ ଖାଇଲୁ, ମୂର୍ଖଟା ସେମିତି ବୁଲିବୁ, ଆଉ କ'ଣ କରିବୁ?

ପୂଜାରୀ କହେ, ହଁ, ଖାଲି ଖେଳ, ଆଉ କ'ଣ କରିବ? ଆମେ ତ ହେଲେ ପାଠ ନ ପଢ଼ି ପୂଜାରୀଗିରି କରି ପେଟ ପୋଷୁଛୁ, ତୁମ ଦ୍ୱାରା ତ ଏ କାମ ବି ହବ ନାହିଁ। ଚାକର କହେ, ଖାଲି ଖେଳ, ଖେଳିଲେ ତ ପେଟ ପୋଷିବ। ବଡ଼ଭାଇଙ୍କର ଲୋଟା, ଗାମୁଛା ବୋହିବ, ଆଉ କ'ଣ କରିବ? ଚାକରାଣୀ ବୁଢ଼ୀ ମୁହଁକୁ ଝାଡ଼ି କହେ, ଏଇଟାଠି ବୁଦ୍ଧି ନା ଅକଲ କିଛି ଅଛି? ମୋ 'ଆନିଆ' ଠି (ବୁଢ଼ୀର ଏକମାତ୍ର ପୁଅ ଆନନ୍ଦ ବାରିକ, ବ୍ୟବସାୟ ବାଳ କାଟିବା) କେଡ଼େ ବୁଦ୍ଧି, କେଡ଼େ ଅକଲ।

ଇମିତି ସମସ୍ତଙ୍କର ଛି ଛାକର, ଗାଳି, ଭର୍ତ୍ସନାରେ ଦିନ କଟିଲେ ସୁଦ୍ଧା ମୋର ଚାଟଶାଳିର କେତେକ ସାଙ୍ଗଙ୍କ ମେଳରେ ବୁଲିବା, ଖେଳିବାରେ ଦିନ କଟିଯାଏ। ବୁଲିବାଟା ବେଶି ଦୂରକୁ ନୁହେଁ। ସେଇ ଦାଣ୍ଡ ପାହାଚ ତଳେ, ସାହିର ରାସ୍ତା କଡ଼ରେ, ସେଥିରେ ପୁଣି କଡ଼ା ନଜର, କୁଆଡ଼େ ଗଲା ସେ?

ସୁଖର ଦିନ ବେଶି ଦିନ ରହେନା। ଯେତେ ଗାଳିମନ୍ଦ ଖାଏ, ଖେଳିବା, ବୁଲିବାରେ ଆନନ୍ଦରେ ଦିନଗୁଡ଼ିକ ବେଶ୍ ସୁରୁଖୁରୁରେ କଟିବା ବନ୍ଦ ହେଲା। କାରଣ ଆଉ ଜଣେ ଅବଧାନ ଜୁଟିଲେ। ବାପ୍‌ରେ! ତାଙ୍କର ରୂପ ଦେଖିତ ମୋର ପିଳେହି ପାଣି। ଯେମିତି ଫଡାଏ ନାକ, ସେମିତି ଚକାଡ଼ୋଳା। ସେମିତି କଳା ମଚମଚ ବପୁ। ମୋତେ ଅନେଇ ଦେଲା ବେଳକୁ ମୁଁ କୋଉ ପାତାଳରେ ପଶିଯାଏ।

ପୁଣି ଚାଟଶାଳି ଜମିଲା, ସେହି ପଣିକିଆ, ସୋଧି, ଅଙ୍କ, ଚାଟଶାଳି ପାଠ, ଆଉ ବିଶ୍ରାମ ନାହିଁ। ଅବଧାନଙ୍କ ନାଁ ପୁଣି 'ସତିଆ ଅବଧାନ'। ମୁଁ ତ ତାଙ୍କ ଧମକ ଚମକ, ଚାହାଣୀରେ ଅଧାପ୍ରାଣ। ଚାଟଶାଳିରେ ମୋର ଗୋଟିଏ ମୁସଲମାନ ପିଲା ସାଙ୍ଗ ଥିଲା, ନାଁ- 'ରହମାନ'। ମୁଁ ଚାଟଶାଳିରେ ଅବଧାନେ ନ ଆସିବା ପୂର୍ବରୁ ଭାରି ଦୁଷ୍ଟାମୀ କରେ। କାହାକୁ ମାଡ଼, କା'କୁ ଗାଳି। କେହି କିଛି କହି ପାରନ୍ତିନି, କାରଣ ବାବୁ ଘର ପିଲା। କିନ୍ତୁ ମୋର ଦୁଷ୍ଟାମୀ କଥା ଯେତେବେଳେ ଅବଧାନଙ୍କ କାନକୁ ଗଲା, ସେ ମୋର ସେହି ମୁସଲମାନ ସାଙ୍ଗ ରହମାନ ଉପରେ ଦାୟିତ୍ୱ ଦେଲେ ଯେ ମୁଁ ଯଦି କାହାକୁ ମାରେ କି ଗାଳି ଦିଏ, ସେହି ରହମାନ ଅବଧାନଙ୍କୁ ଜଣେଇବ। ପ୍ରକୃତରେ ରହମାନ ସାଙ୍ଗରେ ଯେତେ ମୋର ବନ୍ଧୁତ୍ୱ ଥିଲେ ମଧ୍ୟ ମୁଁ ଯଦି କୋଉ ଦିନ କୋଉ ପିଲାକୁ ମାରେ କି ଗାଳି ଦିଏ, ରହମାନ ଅବଧାନଙ୍କୁ ଜଣେଇ ଦିଏ। ଆଉ ଅବଧାନେ ମୋତେ ଆଚ୍ଛା କରି ବେତରେ ପିଟନ୍ତି। ରହମାନ ବେଶ୍ ଭଲ ପଢୁଥିଲା, ଖୁବ୍ ଶାନ୍ତ ଶିଷ୍ଟ ପ୍ରକୃତିର କିନ୍ତୁ ତା' ସହିତରେ ମୋର ବନ୍ଧୁତ୍ୱ ଥିବା ସତ୍ତ୍ୱେ ସେ ମୋ ବିରୁଦ୍ଧରେ ଅବଧାନଙ୍କ ଆଗରେ ମୋର ଦୁଷ୍ଟାମୀର ଘଟଣା ବାରମ୍ବାର ଧରେଇ ଦବା ଯୋଗୁଁ ରହମାନ ପ୍ରତି ମୋର ଶ୍ରଦ୍ଧା କମିଗଲା। ସେହି ଅନୁପାତରେ ବନ୍ଧୁତ୍ୱ ମଧ୍ୟ କମି ଆସିଲା।

ଦିନବେଳା ସତିଆ ଅବଧାନଙ୍କ ଦ୍ୱାରା ଚାଟଶାଳି ପଢ଼ା ବେଶ୍ ଆଗେଇ ଚାଲିଲା। ଆଉ ରାତି ବେଳା ବାବାଙ୍କ ଦ୍ୱାରା ଇଂରାଜୀ ପାଠ ମଧ୍ୟ ବେଶ୍ ଆଗେଇ ଚାଲିଲା। ଆଉ ଯେମିତି ସପ୍ତରଥୀଙ୍କ ଘେରରେ ପଡ଼ିଲି। ଘରର ସମସ୍ତେ, ବାବା, ମା, ଅବଧାନଙ୍କଠାରୁ

ଆରମ୍ଭ କରି ଚାକର, ପୂଜାରୀ ପର୍ଯ୍ୟନ୍ତ ସମସ୍ତଙ୍କର ମୋ ଉପରେ କଡ଼ା ଦୃଷ୍ଟି, ପରିହାସ, କଟୂକ୍ତି, ତାଚ୍ଛଲ୍ୟ ଭାବ, ମୁଁ ଯେମିତି ଗୋଟାଏ ଚୋର କି ଅପରାଧୀ କି ପାପୀଟାଏ ଆଉ ସମସ୍ତେ ସାଧୁ, ସଚ୍ଚୋଟ, ପୁଣ୍ୟବନ୍ତ। ପିଲାବେଳେ ପାଠ ପଢ଼ା ନଥିଲେ ମୋର ପିଲାବେଳଟା ବଡ଼ ସୁଖମୟ ହୋଇଥାନ୍ତା, ପୁଣି ପାଠ ଭିତରେ ଗଣିତ ବିଦ୍ୟା ଯଦି ନ ଥାନ୍ତା।

## (୩)

ମୁଁ ଚାଟଶାଳିରେ ପଢ଼ିବା ବେଳେ ଥୋରିଆସାହିକୁ ଯାହା ଦେଖିଥିଲି, ସେ କଟକ ସହର ମଝିରେ ଥିବା ଗୋଟିଏ ଜାଗା ବୋଲି ଜଣା ଯାଉ ନଥିଲା। ଗୋଟିଏ ପୂରା ମଫସଲର ଗ୍ରାମ୍ୟ ପରିବେଶ। ଆମେ ଯେଉଁ କୋଠା ଘରେ ଭଡ଼ାରେ ରହିଥାଉ, ସେହି ଖଣ୍ଡିକ ସେ ସାହିରେ ଏକମାତ୍ର କୋଠା ଘର। ପୁରୁଣା କାଳିଆ କୋଠାଘର, ପଥର ତିଆରି, ପ୍ରଶସ୍ତ ପକ୍କା ଅଗଣା, ପଛ ପଟେ ବାରିବଗିଚା କରିବା ପାଇଁ ବିସ୍ତର ଜାଗା। ମୂଳିଆ ଲଗେଇ, ଚାକରବାକର ସାହାଯ୍ୟରେ ବାବା ବହୁତ ବଡ଼ ବଗିଚା କରିଥିଲେ। ସେହି ବଗିଚାରୁ ବିଭିନ୍ନ ପ୍ରକାରର ପନିପରିବା ଆମଦାନି ହଉଥିଲା। ସେଇ ବାରି ଆଡ଼େ ବଗିଚାର ଗୋଟାଏ ପାଖକୁ ପକ୍କା ପାଇଖାନା ଥିଲା। ରାତିରେ ବାରିଆଡ଼େ ଯିବାକୁ ଭାରି ଭୟ ଲାଗେ। ଲେମ୍ବୁ ଗଛ, ସଜନା ଗଛ, ବରକୋଳି ଗଛ, କଦଳୀ ଗଛ ଏବଂ ଋତୁ ଅନୁଯାୟୀ ପନିପରିବା ଗଛରେ ବାରିଆଡ଼ ବେଶ୍ ଜଙ୍ଗଲିଆ ହୋଇଥାଏ ଆଉ ବାରିର ସୀମା ସେ ପାଖରେ ଧାନ ବିଲ, କଣ୍ଟାବୁଦା ଆଉ ତାକୁ ଲାଗି ଡ଼ାହାଣ ପଟେ ଗୋଟାଏ ବଡ଼ ପୋଖରୀ ଥିଲା। ତା ନାଁ କଲାଗାଡ଼ିଆ। ବାଁପଟେ ସେତେବେଳେ ବର୍ଷର ଅଧିକାଂଶ ସମୟରେ ଇଟା ତିଆରି ହଉଥିଲା, ଆଉ ଗୋଟାଏ ଖାଲ ଥିଲା, ସେଥିରେ ବେଶ୍ ପାଣି ଥାଏ।

ଏ ତ ଗଲା ବାରି ଆଡ଼ କଥା। ଦାଣ୍ଡ ପଟେ ଗୋଟାଏ ପୁରୁଣା କାଳିଆ ପଥର ଖିଲାଣ, ଭାରି ଉଚ୍ଚା କୋଠା। ସାହି ମଝି ରାସ୍ତାକୁ ଆସିବା ପାଇଁ ଛ'ଖଣ୍ଡ ପଥର ପାହାଚ ଅତିକ୍ରମ କରି ତଳକୁ ଓଲୋହିବାକୁ ହୁଏ। କୋଠାର ବାହାର ଆଡ଼ର ପଥର ଖିଲାଣ ଆଉ ପଥର ପାହାଚକୁ ଦେଖିଲେ କେତେକାଂଶରେ ଗୋଟାଏ ଦେବାଳୟ ପରି ମନେହୁଏ।

ଆମର କେତେକ ବନ୍ଧୁବାନ୍ଧବ ଥୋରିଆସାହିରେ ଆମର ଘର ଖୋଜିବାକୁ ଆସି, ସେହି କୋଠାକୁ ସାହିର ଗୋଟିଏ ଦେବାଳୟ ଭାବି ଭୁଲରେ ଦାଣ୍ଡଆଡ଼ ତଳ ପାହାଚରେ ମୁଣ୍ଡ ଲଗେଇ ନମସ୍କାର କରି ନିରାଶାରେ ଫେରି ଯାଇଛନ୍ତି। ଯେ ଥୋରିଆସାହିରେ ଖୋଜି ଖୋଜି ଆମ ଘର ପାଇଲେ ନାହିଁ ଅର୍ଥାତ୍ ଆମ ପରି ଦେବତାଗୁଡ଼ିଏ ସେହି ଦେବାଳୟପ୍ରତିମ କୋଠା ଭିତରେ ଅଛୁ ଆମକୁ ନଡ଼ାକି, କାହାରି କି ନପଚାରି ଅନେକ ଲୋକ ଇମିତି ଭୁଲ କରିଛନ୍ତି।

ଦାଣ୍ଡଆଡ଼େ ସାହି ମଝିରେ କଚ୍ଚା ରାସ୍ତା। ଏ ରାସ୍ତା ପୂର୍ବଆଡ଼େ ମଙ୍ଗଳାବାଗ ରାସ୍ତା ସହିତ ମିଶିଛି। ଆଉ ପଶ୍ଚିମ ଆଡ଼େ ପ୍ରଧାନ ସଡ଼କ ସହିତ ମିଶିଛି। ଯେଉଁ ସଡ଼କ ମଙ୍ଗଳାବାଗ ଆଡ଼ୁ ଆସି ପରେ ପୁଣି ଦୁଇଭାଗ ହୋଇ ଯାଇଛି, ଗୋଟାଏ ରାସ୍ତା ମେରିଆ ବଜାର ଆଡ଼େ ଯାଇଛି ଅନ୍ୟଟି ମୁସ୍‌ଲିମ୍ ସେମିନାରି ଆଉ ରାହୁସାପାଟଣା ଆଡ଼େ ଯାଇଛି। ସାହି ମଝି ରାସ୍ତାର ଉତ୍ତର ପଟେ ଆମ ଦାଣ୍ଡ ଦୁଆର ସାମନାରେ ଗୋଟାଏ ବଡ଼ ବଗିଚା ଥିଲା। ସେଥିରେ ବାର ମାସରେ ବାର ଫସଲ କରି ଜଣେ ଲୋକ, ନାଁ, ନାଥ ମୂଳିଆ, ବେଶ୍ ଅର୍ଥ ଉପାର୍ଜନ କରି ପାରୁଥିଲା। କେବେ ସେ ବଗିଚାର ମାଟି ପଡ଼ିଆ ପଡ଼ିବାର ଦେଖାଯାଉ ନଥିଲା। ଆଉ ଏହି ବଗିଚାରୁ ଯେତେବେଳେ ଯେଉଁ ଫସଲ ଆମଦାନି ହଉଥିଲା, ସେ ପ୍ରଥମ ଫଳଟା ବାବାଙ୍କୁ ଦେଇ ନାଥ ମୂଳିଆ ବଉନି କରୁଥିଲା। କାରଣ ତା'ର ଧାରଣା ବଗିଚାର ପ୍ରଥମ ଫଳ ଫୁଲ ବାବାଙ୍କୁ ଦେଇ ପ୍ରଥମେ ବଉନି କଲେ, ତା'ର ଭଲ ବିକ୍ରି ହୋଇ ଯାଉଥିଲା।

ପରେ ନାଥ ମୂଳିଆ ସେ ବଗିଚାର ମାଟିରୁ ବାରମାସରେ ବାର ଫସଲ କରି ବେଶ୍ ଧନୀ ହୋଇ ପାରିଥିଲା। ତା'ଭାଗ୍ୟକୁ ତା'ର ବଗିଚାର ଉତ୍ତର ଆଡ଼େ

ଗୋଟାଏ ବଡ଼ ପୋଖରୀ ଥିଲା। ସେଥିଯୋଗୁଁ ତା'ର ପାଣିର ଅଭାବ ହଉ ନଥିଲା, ସେ ତେଣ୍ଡା ଲଗେଇ, ପାଣି ବୋହି ବଗିଚାଟିକୁ ସବୁଦିନେ ସବୁଜ ଆଉ ସଜୀବ ରଖି ପାରୁଥିଲା।

ପ୍ରତିବର୍ଷ ବଡ଼ଦିନ (X-mas) ରେ ବାବାଙ୍କୁ ଆଣି ତା'ର ବଗିଚାର ସର୍ବବୃହତ୍ ଫୁଲ କୋବିଟିଏ ଭେଟି ଦବା ମୋର ଏ ପର୍ଯ୍ୟନ୍ତ ମନେ ପଡ଼େ। ଆଉ ଅନ୍ୟାନ୍ୟ ଦିନରେ ଅନ୍ୟାନ୍ୟ ପନିପରିବା ଦବା ତ ଲାଗିଥାଏ। ନାଥ ମୁଲିଆ ବଗିଚାକୁ ଲାଗି ଯେଉଁ ବଡ଼ ପୋଖରୀ, ତା' ଆରପଟେ ପ୍ରଧାନ ସଡ଼କ ଦେଖା ଯାଉଥିଲା! କିଛିଦିନ ପରେ ସେଠି କଟକ ମ୍ୟୁନିସ୍‌ପାଲିଟି ତରଫରୁ ଗାଡ଼ିଖାନାଟିଏ ତିଆରି ହେଲା। ବର୍ତ୍ତମାନ ସେ ଗାଡ଼ିଖାନା ଉଠି ଯାଇ ସେଠି ଥୋରିଆସାହି ଗାର୍ଲସ୍ ହାଇସ୍କୁଲ ହେଇଛି। ଗାଡ଼ିଖାନା ତିଆରି ହେଲା ପରେ, ସେ ପ୍ରଧାନ ସଡ଼କର ଅଳ୍ପ ଅଂଶ ଆମ ଘରକୁ ଦେଖା ଯାଉଥିଲା।

ଥୋରିଆସାହିରେ ସବୁ ଜାତିର ଲୋକେ ବସବାସ କରୁଥିଲେ। ସମସ୍ତେ ପ୍ରାୟ ସେଠାକାର ସ୍ଥାୟୀ ବାସିନ୍ଦା। କେବଳ ଆମେହିଁ ସେ ସାହିରେ ପ୍ରଥମେ ବାହାରର ଲୋକ ଭଡ଼ା ଘର ନେଇ ରହିଥିଲୁ। ବାବା ଚାକିରୀ କରୁଥିଲେ ଯୋବ୍ରା ୱାର୍କସପ୍‌ରେ। ବାବା ଥିଲେ storekeeper। ତେର ଲକ୍ଷ ଟଙ୍କାର ଜିନିଷ ବାବାଙ୍କ ଜିମାରେ ଥିଲା। ବିରାଟ ଷ୍ଟୋର। ବିଭିନ୍ନ ପ୍ରକାରର ଜିନିଷ। ବାବା ଖୁବ୍ ସକାଳୁ ନିତ୍ୟକର୍ମ ସାରି ଯୋବ୍ରା ୱାର୍କସପ୍‌କୁ ଯାଉଥିଲେ। ବାବା ଗୋଟାଏ ମୋଟା ପିତଳ କଡ଼ାରେ ଭର୍ତ୍ତି ହେଇଥିବା ଗୁରାଏ ଚାବି ଧରି ଯା'ନ୍ତି। ସେତେବେଳେ ସକାଳ ୭ଟାରେ ଯୋବ୍ରା ୱାର୍କସପ୍‌ରୁ ମେସିନ୍ ସାହାଯ୍ୟରେ ହୁଇସିଲ୍ ଦିଆ ଯାଉଥିଲା। ଏ ହୁଇସିଲ୍ ଦବାର କାରଣ ହଉଛି, ଯୋବ୍ରା ୱାର୍କସପ୍‌ର କର୍ମଚାରୀମାନେ ଯେ ଯେଉଁଠି ଅଛନ୍ତି, ସମସ୍ତେ ଜାଣି ପାରିବେ ଯେ ୭ଟା ବାଜିଲା। ଏ ହୁଇସିଲ୍ ଶବ୍ଦ ଥୋରିଆସାହିରେ ଆମ ଘରକୁ ଶୁଣା ଯାଉଥିଲା। ସେମିତି ଦିନ ବାରଟା ଗୋଟାଏ ବେଳେ ୱାର୍କସପ୍ ବନ୍ଦ ହବା ବେଳକୁ ହୁଇସିଲ୍ ଦିଆ ଯାଉଥିଲା। ସେ ହୁଇସିଲ୍‌ରୁ ଆମେ ଜାଣି ପାରୁଥିଲୁ ଯୋବ୍ରା ୱାର୍କସପ୍ ବନ୍ଦ ହେଲା ବାବା ଏଥର ଘରକୁ ଆସିବେ। ଘରେ ମା, ପୂଜାରୀ, ଚାକର ସମସ୍ତେ ପ୍ରସ୍ତୁତ ହେଇ ରହୁଥିଲେ। ବାବା ଆସିଲେ ଖିଆପିଆ ହବ। ବାବା ସକାଳୁ ଚାଲିଚାଲି ଯୋବ୍ରା ୱାର୍କସପ୍‌କୁ ଯା'ନ୍ତି ପୁଣି ଚାଲି ଚାଲି ଆସନ୍ତି। ଦିନ ଗୋଟାଏ ପରେ ବାବା ଖାଇସାରି ଶୋଇ ଯା'ନ୍ତି। ପୁଣି ୫ଟାରେ ୱାର୍କସପ୍ ଛୁଟି ହେଲେ ଚାଲି ଚାଲି ଆସି ସନ୍ଧ୍ୟା ପୂର୍ବରୁ ଘରେ ପହଁଚନ୍ତି। ମୋର ହେତୁ ହେଲା ବେଳକୁ ମୁଁ ଶୁଣିଛି ବାବା ସେତେବେଳେ ୮୦ଟଙ୍କା ଦରମା ପାଉଥିଲେ। ଘରେ କି ଖର୍ଚ୍ଚ! କି ଆଡ଼ମ୍ବର! ଲୋକେ ଆସୁଛନ୍ତି, ଖାଉଛନ୍ତି, ରହୁଛନ୍ତି, ଯାଉଛନ୍ତି। କିଏ ଖାଇପିଇ କେତେଦିନ ରହିଲେଣି ତା'ର କିଛି ଠିକ ଠିକଣା ନାହିଁ। ଥୋରିଆସାହିରେ ଆମର ସେ ଘର ଖଣ୍ଡକ ସବୁ ଆଡୁ ଦେଖିବାକୁ ଗଲେ ଗୋଟାଏ କେନ୍ଦ୍ରସ୍ଥଳ ପରି ଥିଲା। କଟକ ରେଲୱେ ଷ୍ଟେସନ୍‌କୁ ଯେତିକି, ସିଆଡ଼େ ମହାନଦୀକୂଳ ଷ୍ଟିମର୍ ଷ୍ଟେସନ୍‌କୁ ସେତିକି ପ୍ରାୟ ଦୂର। ପୁଣି କୋର୍ଟ କଚେରୀ ପ୍ରାୟ ସେତିକି ଦୂର, ମେଡ଼ିକାଲ ତ ଅନେକ ନିକଟ।

ଷ୍ଟିମର୍ ଷ୍ଟେସନ୍ କହିଲି କାହିଁକି, ସେତେବେଳେ ଆମର ଗାଁ ଆଡ଼େ କେନ୍ଦ୍ରାପଡ଼ା, ଅଲଭା ପର୍ଯ୍ୟନ୍ତ ଷ୍ଟିମରରେ କଟକରୁ ଲୋକେ ଯା'ଆସ କରୁଥିଲେ। ମୋର ମନେ ଅଛି ତିନିଟା ଷ୍ଟିମର୍ ଯା'ଆସ କରୁଥିଲା। ତାଙ୍କ ନାଁ ଥିଲା, ଦୁର୍ଗା, ଗଣେଶ ଆଉ ସରସ୍ୱତୀ। ସରସ୍ୱତୀଟା ବିଶେଷ ବଡ଼ ଥିଲା। ସେ ଆମ ଗାଁ କେନାଲରେ ଯାଉଥିଲା ବେଳେ ବଡ଼ ଧୀର ମନ୍ଥର ଗତିରେ ଯା'ଆସ କରୁଥିଲା।

ଆମ ଗାଁର ଯେ କୌଣସି ଲୋକର ଦେହ ଖରାପ ହେଲେ କିମ୍ବା କଟକରେ ମାଲିମକଦ୍ଦମା ପଡ଼ିଲେ ଆମ ଘରେ ଆସି ପହଁଚୁଥିଲେ। ମୋର ମନେ ଅଛି ଆମ ଗାଁର ଜଣେ ବ୍ରାହ୍ମଣଙ୍କର ଗୋଟାଏ ଅପରେସନ୍ ହବାର ଦରକାର ପଡ଼ିଲା। ଗାଁରୁ ଚାରି, ପାଞ୍ଚ ଜଣ ମରଦ ମାଇପି ଆସି ପହଁଚିଲେ। ଡ଼ାକ୍ତରଖାନାରେ ସେ ଲୋକର ଅପରେସନ୍ ହେଲା। ସେତେବେଳେ କଟକ ବଡ଼ ଡ଼ାକ୍ତରଖାନାର ଅବସ୍ଥା ଆଜିକାଲି ପରି ତ ନଥିଲା। ପ୍ରତ୍ୟେକ ୱାର୍ଡ଼ରେ

ଗୋଟିଏ ଗୋଟିଏ ଲଣ୍ଠନ ଜଳୁଥିଲା । ଏତେ ରୋଗୀ ରହୁ ନଥିଲେ କି ଏତେ କର୍ମଚାରୀ ନଥିଲେ । ଡ଼ାକ୍ତରଖାନାକୁ ଯିବା ଲାଗି ରାସ୍ତାରେ ଆଲୁଅ ନଥିଲା । ଦିନ ବେଳା ଲୋକେ ଯେତିକି ଯାହା ଯା ଆସ କରୁଥିଲେ ସନ୍ଧ୍ୟା ପରେ ସବୁ ବନ୍ଦ । ଡ଼ାକ୍ତରଖାନା ହତା ଭିତରକୁ ଯିବା ଲାଗି ମଣିଷ ଭୟ କରୁଥିଲେ । ଯା ହବ ରାତି ପାହିଲେ, ବିଶେଷତଃ ମଫସଲରୁ ଯେଉଁମାନେ ଆସୁଥିଲେ ।

ଆମ ଗାଁର ଯେଉଁ ବ୍ରାହ୍ମଣଙ୍କର ଅପରେସନ୍ ହେଲା ତାଙ୍କ ପାଇଁ ଆମ ଘରୁ ପଥ୍ୟ ଦୈନିକ ଦିନବେଳା ଗାଁରୁ ଆସିଥିବା ତାଙ୍କ ସାଙ୍ଗରେ ମରଦ ମଣିଷ ନେଇ ଯାଉଥିଲେ, ତା'ପାଖରେ ରହୁଥିଲେ ଆଉ ରାତି ହେଲେ ଡ଼ାକ୍ତରଖାନା ହତା ମାଡ଼ିବାକୁ କୁଣ୍ଠିତ । କେହି ଯିବେ ନାହିଁ । ଶେଷରେ ବାବାଙ୍କୁ ତା'ର ରାତି ବେଳାର ପଥ୍ୟ ଧରି ଯିବାକୁ ପଡୁଥିଲା ଏବଂ ରାତିରେ ଜଗି ରହିବାକୁ ପଡୁଥିଲା । ସେତେବେଳେ ଲୋକେ ଡ଼ାକ୍ତରଖାନା ତରଫରୁ ରୋଗୀଙ୍କୁ ଦିଆଯାଉଥିବା ପଥ୍ୟ ଖାଇବାକୁ କୁଣ୍ଠିତ ହଉଥିଲେ । କାରଣ ଜାତି ଯିବ । କି ସହର କି ମଫସଲ, ସବୁଠି ଇମିତି କେତେକ ଲୋକ ଥିଲେ ଯେଉଁମାନେ ରୋଗରେ ଘରେ ପଡ଼ି ମରିବେ ପଛେ ଡ଼ାକ୍ତରଖାନାକୁ କଦାପି ଯିବେ ନାହିଁ । ଥରେ ଥରେ ରାତିବେଳା ଆମର ଖାଇବା ପିଇବା ସରିଲାଣି । ବାରନ୍ଦା ଧୁଆ ହଉଛି ଏଇ ସମୟରେ କେତେକ ଲୋକ ଆସି ଜଗତସିଂହପୁରରୁ ପହଁଚିଲେ । ଜେଠା ଜଗତସିଂହପୁରରେ ଜିଲ୍ଲାଦାର ଥିଲେ । ଜେଠାଙ୍କ କୁଟୁମ୍ବ କିମ୍ୱା ତାଙ୍କର ପରିଚିତ କେହି ଲୋକ, ଇମିତି କି ତାଙ୍କର ଚପରାସୀମାନଙ୍କର କଟକରେ କାମ ପଡ଼ିଲେ ସେମାନେ ମଧ୍ୟ ଆସି ଆମରି ବସାରେ ରହି କଟକରେ କାମ ସାରି ଯାଉଥିଲେ ।

ରାତିବେଳା ଆମର ଖାଇବା ପିଇବା ସରିବା ପରେ ଯେଉଁମାନେ ଆସି ପହଁଚୁଥିଲେ ସେମାନଙ୍କ ଲାଗି ପୁଣି ରୋଷେଇବାସ ହଉଥିଲା । ସେମାନଙ୍କର ଖିଆପିଆ ସାରି ପୂଜାରୀ, ଚାକର ବିଛଣା ଧରିବାକୁ ଗଲା ବେଳକୁ ରାତି ପାହିଲାଣି । ଆଉ ଶୋଇବେ କ'ଣ ? ପୁଣି ଦିନର କାମ ଆରମ୍ଭ ହେଲା । ଏଥି ପାଇଁ ଆମ ଘରୁ ଭଲ ଭଲ ପୂଜାରୀ, ଚାକର, ଚାକରାଣୀ କେତେକ ବିଦାୟ ନେଇଛନ୍ତି । କେତେ ଖଟିବେ ?

କେହି ପୁଣି ଚାକିରୀ ଯୋଗାଡ଼ରେ ଆସି ମାସ ମାସ ଧରି ଆମ ବସାରେ ବସିଛନ୍ତି । ଇମିତି ବଡ଼ ଭିଣେଇଙ୍କ ଘରୁ ମଧ୍ୟ ଲୋକ ଆସି ରହି ଖାଇ ପିଇ କେହି ବେଶିଦିନ, କେହି ଅଳ୍ପଦିନ ରହି ଯାନ୍ତି । ବଡ଼ ଭିଣେଇଙ୍କ ଘର ଅଲାଣ୍ଡ ଗାଁ । କଟକରୁ ଜଗତସିଂହପୁର ଯିବା ବାଟରେ ବାଁ ଆଡ଼େ ସେ ଗାଁ ପଡ଼େ ।

ମୋର ମାମୁଁ ଘର ଯାଜପୁରରୁ ମଧ୍ୟ ସେମିତି ଲୋକେ ଆସୁଥିଲେ । କୁଣିଆ ସବୁଦିନେ କେତେବେଳେ କିଏ ଆସି ପହଁଚୁଥିଲା ତା'ର କିଛି ଠିକଣା ନାହିଁ । ବାବା, ମା'ଙ୍କର ମଧ୍ୟ ଭାରି ଆନନ୍ଦ । ଖାଇବା, ପିଇବା, ଗପ, ପାଟିତୁଣ୍ଡରେ ଘରେ ବିସ୍ତର କୋଳାହଳ । ମା ମଧ୍ୟ ଯା'କୁ ଯେମିତି ଚର୍ଚ୍ଚା କରିବାର କଥା କରୁଥିଲେ । କେବଳ ଚାକର, ଚାକରାଣୀ, ପୂଜାରୀ ଅତ୍ୟଧିକ ଖଟଣୀ ଯୋଗୁଁ ବିରକ୍ତ ହଉଥିଲେ, କେତେ ଖଟିବେ ?

କୁଣିଆଙ୍କ ଆଉ ମନ୍ତବ୍ୟ ମଧ୍ୟ ଶୁଣା ଯାଉଥିଲା, ଆମ ଘରକୁ ଯେତେବେଳେ ଆସିଲେ ଗଣ୍ଡାଏ ଭାତ ଖାଇବାକୁ ମିଳେ । ମୋର ମା' ମଧ୍ୟ କିଏ କେତେବେଳେ କୁଣିଆ ଆସି ପହଁଚି ଯିବ ଭାବି ସେଥିଲାଗି ଅଧିକା କିଛି ରାନ୍ଧିବା ପାଇଁ ପୂଜାରୀକୁ ଆଗରୁ ବରାଦ କରିଥାନ୍ତି ।

କୁଣିଆଙ୍କ ଭିତରୁ ପୁଣି କିଏ କେତେ ପ୍ରକାରର ନୂଆ ନୂଆ ଖାଦ୍ୟର ବରାଦ କରନ୍ତି ତାଙ୍କୁ ମଧ୍ୟ ସେହିପରି ଖାଦ୍ୟ ତିଆରି କରି ଖାଇବାକୁ ଦିଆଯାଉଥିଲା । କାହାର ମନ ଡ଼ାକୁଛି ବିଭିନ୍ନ ପ୍ରକାରର ପିଠା ଖାଇବାକୁ, କାହାର ମନ ଡ଼ାକୁଛି ମାଛ ମୁଣ୍ଡର ଛେଞ୍ଚଡ଼ା, କାହାର ମନ କଞ୍ଚା ଆମ୍ବ ପକେଇ ସେଉଳ ମାଛର ଖଟା, କାହାର କଦଳୀ ଭଣ୍ଡାର ତରକାରୀ । ଇମିତି କେତେ କ'ଣ । ରନ୍ଧାବଢ଼ାର ବ୍ୟବସ୍ଥା, ତା'ଛଡ଼ା ସାହିପଡ଼ିଶାଙ୍କର ଆମ ଘରୁ କେତେକ ଜିନିଷ ନବା ପାଇଁ ଆଶା ଥାଏ, ବରାଦ ହୁଏ, ଯୋଗେଇ ଦିଆ ହୁଏ ।

କୁଣିଆଙ୍କ ଯୋଗୁଁ ଆମେମାନେ କିଏ କେଉଁଠି

ଶୋଇବୁ ଜାଗା ମିଳୁ ନଥିଲା । ଯେତିକି ଜିନିଷପତ୍ର, ସେତିକି ଲୋକ ସେଥିରେ ପୁଣି ବାବା ମୋର ଜେଠାଙ୍କ ପୁଅ ବଡ଼ଭାଇଙ୍କୁ ଆଣି ପାଖରେ ରଖି ପି.ଏମ୍.ଏକାଡ଼େମୀରେ entrance ପଢ଼ଉଥିଲେ । କାରଣ ସେତେବେଳେ ଜଗତସିଂହପୁରରେ ମାଇନର ସ୍କୁଲଟିଏ ଥିଲା । ବଡ଼ଭାଇ ମାଇନର ପାଶ୍ କଲାପରେ, ବାବା ତାକୁ କଟକକୁ ଆଣି ପଢ଼େଇଲେ । ବଡ଼ଭାଇଙ୍କ ସକାଶେ ଜଣେ ପ୍ରାଇଭେଟ ଟିଉଟର୍ ମଧ୍ୟ ଆମ ଘରେ ଖାଇପିଇ ଦରମା ନେଇ ରହିଥିଲେ । ଯେ ଯୁଆଡ଼ୁ ଆସିଲେ, ଯେ କେହି ଆସିଲେ ମୋ ପ୍ରତି ଭାରି ଶ୍ରଦ୍ଧା, ଭାରି ଆଦର କାରଣ ମୁଁ ବାବାଙ୍କର ସେତେବେଳେ ଏକମାତ୍ର ପୁତ୍ର ସନ୍ତାନ । ତା'ପରେ ବଡ଼ ଭଉଣୀ କିରଣବାଳାଙ୍କ ଜନ୍ମର ଦଶ ବର୍ଷ ପରେ ମୋର ଜନ୍ମ । ବାବାଙ୍କର ମଧ୍ୟ ମୋ ପ୍ରତି ବିଶେଷ ସ୍ନେହ, ଶ୍ରଦ୍ଧା । ମୋର ମନେଅଛି, ମୋର କୋଉ ଜିନିଷ ଖାଇବାକୁ ମନ ଡ଼ାକୁଛି ବାବା ମିଛରେ ମୋର ହାତର ନାଡ଼ି ଚିପି ଠିକ୍ ସେହି ସେହି ଜିନିଷର ନାଁ କହିଦିଅନ୍ତି । ମୋତେ ଭାରି ଆଶ୍ଚର୍ଯ୍ୟ ଲାଗେ । ମୋତେ ଖୋଇବା ପାଇଁ ବାବା ସେହି ସବୁ ଜିନିଷର ବରାଦ କରନ୍ତି, ଆଣି ଦିଅନ୍ତି । କେବଳ ରାତି ବେଳା First Book ପଢ଼େଇବାକୁ ଯାଇ ଯାହା ବିପଦ ସୃଷ୍ଟି କରନ୍ତି । ନଚେତ୍ ମୋ ପାଇଁ ବାବା ଦୈନିକ ଗୋଟାଏ ଗୋଟାଏ ନୂଆ ନୂଆ ଖେଳଣା ଆଣି ଦିଅନ୍ତି । ସେତେବେଳେ କଟକ ବେପାରୀସାହିରେ ବଳି ଭଗତଙ୍କ କୋଠାର ଅଳ୍ପ ଦୂରରେ ଗୋଟାଏ ବଡ଼ ମନୋହାରୀ ଦୋକାନ ଥିଲା । ସେ ଦୋକାନକୁ ସମସ୍ତେ କହୁଥିଲେ, "ବିଜୁଆ ଦୋକାନ", ଅର୍ଥାତ୍ ସେ ଦୋକାନୀର ନାଁ ହେଲା, "ବିଜୁଆ" । ତା'ର ପୂରା ନାଁ ମୁଁ ଜାଣି ନାହିଁ । ଜାତିରେ ବୋଧହୁଏ ଶୁଣ୍ଡି ଥିଲା । ବିଜୁଆ ଦୋକାନ ଚମତ୍କାର ଦୋକାନ । ଦେଖିଲେ ଆଖି ଝଲସି ଯିବ । ହରେକ ରକମର ଜିନିଷ, ହରେକ ରକମର ଖେଳଣା ।

ମୁଁ ଅନେକବାର ବାବାଙ୍କ ସାଙ୍ଗରେ ବିଜୁଆ ଦୋକାନକୁ ଯାଇଛି । କଣ୍ଢେଇ, ଖେଳଣା ଦେଖିଲେ ମନ ହଉଥିଲା ସବୁଯାକ କିଣି ଆଣିବି । ବିଜୁଆ ସହିତରେ ବାବାଙ୍କର ଭାରି ବନ୍ଧୁତ୍ୱ ଥିଲା, କେବଳ ମୋରି ପାଇଁ ଦୈନିକ ଗୋଟିଏ ଖେଳଣା କିଣିବା ଦ୍ୱାରା । ବାବା ଯୋବ୍ରା ୱାର୍କସପରୁ ଫେରି ଘରକୁ ନ ଆସି ସିଆଡ଼େ ସିଆଡ଼େ ବିଜୁଆ ଦୋକାନକୁ ଯାଇ କଣ୍ଢେଇ କିଣି ଘରକୁ ଫେରନ୍ତି । ବାବା ଦୈନିକ ଗୋଟାଏ ଗୋଟାଏ ନୂଆ ନୂଆ ଧରଣର ଚେନି କଣ୍ଢେଇ ଆଣନ୍ତି । ଆଉ ମୋର ଆନନ୍ଦର ଢ଼େଉ ଉଚ୍ଛୁଳି ପଡ଼େ । କିନ୍ତୁ ଗୋଟାଏ କଥା କଣ୍ଢେଇଟିଏ ଦୈନିକ ସନ୍ଧ୍ୟା ବେଳକୁ ଆସିଲେ ତହିଁ ଆରଦିନ ସକାଳକୁ ତା'ର କେତେକ ଅଙ୍ଗ ପ୍ରତ୍ୟଙ୍ଗରେ ନିଶ୍ଚୟ ଆକସ୍ମିକ ଦୁର୍ଘଟଣା ଯୋଗୁଁ fracture ଅବଶ୍ୟମ୍ଭାବୀ । ଯେମିତି ଗଣେଶଙ୍କ ଶୁଣ୍ଢ, ନର୍ତ୍ତକୀର ଗୋଡ଼, ଚଢ଼େଇର ଡ଼େଣା, ସନ୍ୟାସୀର ମୁଣ୍ଡ, କେଉଁ ଭଦ୍ରଲୋକର ବକ୍ଷ, ଇମିତି କେତେ କ'ଣ । କା'ର ନାକ, କା'ର ଆଖି, କା'ର ହାତ । ସବୁ injury ଗୁଡ଼ିକ grievous, କେଉଁଟାହିଁ simple injury ନୁହେଁ । ଅର୍ଥାତ୍ ସବୁ କ୍ଷତ ଗୁରାକ ପ୍ରାଣାନ୍ତକ, କେଉଁଟା ହିଁ ସାଧାରଣ କ୍ଷତ ନୁହେଁ । ସାମାନ୍ୟ ଚିକିତ୍ସାରେ ଭଲ ହବାର ନୁହେଁ । କେତେ ଅଠା ଲଗେଇ ଯୋଡାଯୋଡି କରେ । ସେ କାହିଁକି ଯୋଡ଼ି ହବ? ନ ହେଲାରୁ କାନ୍ଦି ଗଡ଼ିବା ହେଲା ଏକ ମାତ୍ର ପ୍ରତିବାଦ, ଯା ଦ୍ୱାରାକି ପୁଣି ସନ୍ଧ୍ୟା ବେଳକୁ ଆଉ ଗୋଟାଏ କଣ୍ଢେଇ ବା ଖେଳଣା ମିଳିବ ।

ବଡ଼ଭାଇ ଯେ ଆମ ଘରେ ରହି ପାଠ ପଢୁଥିଲେ, ସେ ଅନେକଗୁଡ଼ିଏ ପାରା ପୋଷିଥିଲେ । ଏଣୁ ମୋର ମନ ହେଲା ଗୋଟାଏ ପାରା ନେଇ ଖେଳିବି । କିନ୍ତୁ ମୋତେ ପାରା ଦଉଛି କିଏ? ବଡ଼ଭାଇ ନଥିଲା ବେଳେ ପାରା ଭାଡ଼ି ଖୋଲି ପାରାକୁ ଟଣା ଓଟରା କରେ । ନିହାତି ବେଳକୁ ତାଙ୍କ ଛୁଆକୁ କାଢ଼ି ଆଣେ ପୁଣି ରଖିଦିଏ । ପାରାମାନେ ଉଡ଼ି ଉଡ଼ି ଆସି ବସିବା ପାଇଁ ଆମର ଗୋଟାଏ ଛତ୍ରି ପୋତା ହେଇଥାଏ । ପାରାମାନେ ଉଡ଼ି ଉଡ଼ି ଆସି ସେ ଛତ୍ରି ଉପରେ ବସନ୍ତି ପୁଣି ବେଳ ଉଣ୍ଡି ଆସି ଭାଡ଼ିରେ ପଶନ୍ତି । ମୋର ମନ ହେଲା, ସେମିତି ଛୋଟ ଧରଣର ଗୋଟିଏ ଛତ୍ରି ପୋତିବି ସେଥିରେ ପାରାକୁ ବସେଇବି । ବଡ଼ ପାରାତ ବୋଲ ମାନିବେ ନାହିଁ, ଉଡ଼ି ପଳେଇବେ, ପୁଣି ବଡ଼ଭାଇ ଜାଣିବେ । ଏଣୁ

ଭାବିଲି, ପାରାଛୁଆଙ୍କୁ ବସେଇଲେ ସୁବିଧା ହବ । ସେମାନେ ତ ଉଡ଼ି ପାରିବେନି । ଗୋଟାଏ କାଠି ପଞ୍ଜୁରୀ ଥିଲା, ଖଣ୍ଡେ ବାଡ଼ି ଯୋଗାଡ଼ କଲି, ସେ କାଠି ପଞ୍ଜୁରୀର ତଳ ଅଂଶକୁ ଛଡ଼େଇ ସେ ବାଡ଼ିର ଉପର ଅଂଶରେ ଲଗେଇଲି । ସେ ବେଶ୍ ଗୋଟିଏ ଛୋଟ ଧରଣର ଛତ୍ରି ପରି ଦେଖାଗଲା କିନ୍ତୁ ତାକୁ ପୋତିବି କେଉଁଠି? ଆମର ଅଗଣାରେ ଅନେକଗୁଡ଼ିଏ ଫୁଲ କୁଣ୍ଡ ଥିଲା । ମନେମନେ ଠିକ୍ କଲି । ଗୋଟାଏ ଫୁଲ କୁଣ୍ଡର ମାଟିରେ ସେ ଛତ୍ରିକୁ ପୋତିବି, ତା' ନହେଲେ ଆଉ କେଉଁଠି ପୋତିବାର ସୁବିଧା ନଥିଲା । କାରଣ ଅଗଣାଟ ପକ୍କା । ସେହି ଫୁଲ କୁଣ୍ଡରେ ଛତ୍ରି ପୋତା ହେଲା । ବଡ଼ଭାଇ କୁଆଡ଼େ ବୁଲିବାକୁ ଯାଇଥିଲେ, ପାରା ଭାଡ଼ିରୁ ଦି'ଟା ପାରା ଛୁଆଙ୍କୁ ଆଣି ସେ ଛତ୍ରି ଉପରେ ବସେଇଲି । ଭାରି ଖୁସି ଲାଗିଲା, ଯେମିତି କେଡ଼େ ବଡ଼ କାମଟାଏ କଲି । ରୋଜ ଏମିତି ସନ୍ଧ୍ୟା ପୂର୍ବରୁ ପାରା ଛୁଆଙ୍କୁ ଆଣି ବସାଏ, ପୁଣି ବଡ଼ଭାଇଙ୍କ ଆସିବା ପୂର୍ବରୁ ସେ ପାରା ଛୁଆଙ୍କୁ ଭାଡ଼ିରେ ରଖିଦିଏ । ଘରେ ସମସ୍ତେ ମୋତେ ଧମକାନ୍ତି, ବଡ଼ଭାଇଙ୍କ ଆଗରେ କହିଦେବେ କିନ୍ତୁ କେହି ବଡ଼ଭାଇଙ୍କୁ କହନ୍ତି ନାହିଁ । ଦିନେ ଦୈବ ଦୁର୍ଯୋଗକୁ ସେମିତି ପାରାଛୁଆଙ୍କୁ ଆଣି ମୋର ଛତ୍ରି ଉପରେ ବସେଇ ଅନେଇଛି, ବଡ଼ଭାଇ ଆସି ପଛପଟୁ ମୋ ମୁଣ୍ଡରେ ଦି'ତିନିଟା ଆସ୍ତେ ଆସ୍ତେ ଚାପୁଡ଼ା ମାଇଲେ । ବଡ଼ ସାବଧାନରେ, ଯେମିତି କେହି ଜାଣିବେ ନାହିଁ କାରଣ ବଡ଼ଭାଇ ମୋତେ ମାରିଛନ୍ତି, ମୁଁ ସେଥିସକାଶେ କାନ୍ଦିଛି ଯଦି ମା' ଜାଣିଛନ୍ତି କି ଆଉ କେହି ଜାଣିଛନ୍ତି, ତା'ହେଲେ ବଡ଼ଭାଇଙ୍କର ଅବସ୍ଥା ଶୋଚନୀୟ ହେଇ ପଡ଼ିବ । ତାଙ୍କୁ ବାତ୍ୟାବିପନ୍ନ ଅଞ୍ଚଳର ଲୋକଙ୍କ ଅବସ୍ଥାର ସମ୍ମୁଖୀନ ହେବାକୁ ହେବ । ମୋ ଦେହରେ ହାତ ଛୁଇଁବାର ଅଧିକାର କେବଳ ମା'ଙ୍କର, ଆଉ ଅବଧାନଙ୍କର ଥାଏ । ପୁଲିସ୍‌ଙ୍କର ମୃଦୁ ଲାଠି ଚାଳନା ପରି ବଡ଼ଭାଇ ମୋତେ ଆସ୍ତେ ଆସ୍ତେ ମାଇଲେ ମଧ୍ୟ ମୁଁ ଆଉ ବଡ଼ପାଟି କରି କାନ୍ଦି ପାରିଲି ନାହିଁ । କାରଣ ନିଜର ଦୋଷ. ଯା କିଛି ନିରବରେ ଆଖିରୁ ଲୁହ ବୋହିଲା । ସେ ଯେମିତି ଲୁହବୁହା ଗ୍ୟାସ୍ (tear gas) ଜନିତ । ଚୋର ମା କାନ୍ଦେନା ତୁନି ତୁନି ହେଇ କାନ୍ଦେ ଆଉ କୋଉଦିନ ତାଙ୍କ ପାରାଙ୍କୁ ମୁଁ ହାତ ଦେଇନାହିଁ ।

ଦି'ପହରେ ସାହିର ପିଲାଏ ନଟୁ ଖେଳନ୍ତି । ବଡ଼ଭାଇ ମଧ୍ୟ ନଟୁ ଖେଳନ୍ତି । ମୋର ମନ ଡ଼ାକିଲା, ନଟୁ ଖେଳିବି । ବାବାଙ୍କ ଉପରେ ଜୁଲୁମ ହେଲା, ନଟୁ କିଣିଦିଅ, ନଟୁ ଖେଳିବି । ବାବା ମୋ ପାଇଁ ଗୋଟିଏ ଅତି ଛୋଟ ରଙ୍ଗିନ୍ ନଟୁଟିଏ ଆଣି ଦେଲେ । ନଟୁ ବୁଲେଇବା ପାଇଁ ଜତି ତିଆରି କରି ମୋତେ ଦିଆ ହେଲା । ଆଉ ମୁଁ ଯେତେବେଳେ ପ୍ରଥମେ ଆମ ଦାଣ୍ଡ ଆଡ଼େ ନଟୁ ବୁଲେଇ ଦେଖେଇ ଦେଲି, ବାବା ଦେଖି ମା'ଙ୍କୁ କହିଲେ, ମା ଆସି ପୁଣି ମୋର ନଟୁ ବୁଲେଇବା ଦେଖିଲେ । ବାବା, ମା ଦିହେଁ ଭାରି ହସିଲେ, ଆଶ୍ଚର୍ଯ୍ୟ ହେଲେ ।

ଦିନେ ରାତିରେ ଶୋଇଛି, ରାତି ଆଉ ଅଳ୍ପ ଅଛି ପାହିବାକୁ ମୋର ନିଦ ଭାଙ୍ଗିଗଲା । ଦେଖିଲି ଘର ଭିତରେ ଗୋଟାଏ ବଡ଼ ପୋକ ବୁଲୁଛି । ପୋକର ପିଠି ଉପରଟା ନାଲି ରଙ୍ଗ ଆଉ ସେଥିରେ ପୁଣି ବଡ଼ କଳା ଟୋପା ଗୁଡ଼ାଏ । ପୋକଟା ଦେଖିବାକୁ କଁଇଛ ପରି । ପୋକଟା ମୁଣ୍ଡ କାଢ଼ି ଘର ଭିତରେ ଚାରିଆଡ଼େ ବୁଲୁଛି । ଲଣ୍ଠନ ଜଳୁଛି । ମୁଁ ମା'ଙ୍କ ପାଖରେ ଶୋଇଥିଲି । ଭୟରେ ମା'ଙ୍କୁ ଉଠେଇଲା ବେଳକୁ ବାବା, ମା, ବଡ଼ଭାଇ ସମସ୍ତେ ହସି ଉଠିଲେ । ତା'ପରେ ଜାଣିଲି ସେ ପୋକଟା ପ୍ରକୃତ ଜୀବନ୍ତ ପୋକ ନୁହେଁ । ଖେଳଣାଟାଏ । ତା' ପେଟରେ ସ୍ପ୍ରିଂ ଅଛି । ସେଥିରେ ଚାବି ଦେଇ ଛାଡ଼ି ଦେଲେ ସେ ସେମିତି ଘୁରେ । ପୋକଟାକୁ ଆଉ ଭୟ ରହିଲା ନାହିଁ । ନେଇ ଖେଳିଲି । ତା'ପରେ ଆଉ ଦିନେ ସକାଳ ହେଲାବେଳକୁ ଦେଖିଲି ଘର ଭିତରେ ମୋର ସାମନାରେ ଗୋଟାଏ ଟେବୁଲ ଉପରେ ଯୋଡ଼ାଏ ବିଲେଇ ଆଉ ଯୋଡ଼ାଏ ସିଂହ । ବିଲେଇ ହଳକ ଆଉ ସିଂହ ହଳକ ଆଁ କରି ରହିଛନ୍ତି । ଠିକ୍ ଯେମିତି କାହାକୁ ଧଇଲେ କାମୁଡ଼ି ଦେବେ । ମୁଁ ସେଗୁଡ଼ାକୁ ଦେଖି ଭୟରେ କାତର ହେଇ ଶୋଇଛି ଆଉ ଉଠୁ ନାହିଁ । ମନେ ମନେ ଭାବୁଛି ଉଠିଲେ କାମୁଡ଼ି ଦେବେ । ମା ଯେତେ ମୋତେ ଉଠଉଛନ୍ତି, ମୁଁ ଆଉ ବିଛଣାରୁ ଉଠୁ ନାହିଁ । ମା ଶେଷରେ ପଚାରିଲେ, କିରେ ଉଠୁ ନାହୁଁ କାହିଁକି? ମୁଁ ସେ ବିଲେଇ

ଆଉ ସିଂହ ଆଡ଼କୁ ହାତ ଦେଖେଇ ଅତି କରୁଣ ସ୍ୱରରେ କହିଲି, ସେଗୁରା ମୋତେ କାମୁଡ଼ି ଦେବେ ।

ମା' କହିଲେ ସେଗୁରା ମାଟିରେ ତିଆରି, ତୁ ଖେଳିବୁ ବୋଲି ଅଣା ହେଇଛି । ମୁଁ ବୁଝିଲି ସେ ଗୁରା ଖେଳଣା ତଥାପି ଭୟ ହେଲା ସେଗୁରାକୁ ନେଇ ଖେଳିବାକୁ । ମା' ଶେଷରେ ସେଗୁରାଙ୍କୁ ନେଇ ଆହୁରି ଉଚ୍ଚା ଜାଗାରେ ଥୋଇ ଦେଲେ । ତା'ପରେ ମୁଁ ଉଠିଲି । ଆଉ ଦିନେ ରାତିରେ ସ୍ୱପ୍ନ ଦେଖିଲି ମୁଁ ଯୁଆଡ଼େ ଯାଉଛି ସିଆଡ଼େ ଗୋଟାଏ ଗୋଟାଏ କଣ୍ଢେଇ ପାଉଛି । ସତକୁ ସତ ସକାଳେ ଉଠି ମୁଁ ଯୁଆଡ଼େ ଯାଉଛି ହାଣ୍ଡିଶାଳ, ବାରିଆଡ଼େ, ଗୁହାଳ, ଢ଼ିଙ୍କିଶାଳ ସବୁ ଆଡ଼େ ଦେଖିଲା ବେଳକୁ ବିଭିନ୍ନ ରକମର ଗୋଟାଏ ଗୋଟାଏ କଣ୍ଢେଇ ଥୁଆ ହେଇଛି । ଆନନ୍ଦରେ ମୋର ଛାତି ଫୁଲି ଉଠିଲା । ସବୁ ଗୋଟେଇ ଆଣି ଥୋଇଲି । ପରେ ଜାଣିଲି ଯେ ବାବା ମୋ ପାଇଁ ଗୁରାଏ କଣ୍ଢେଇ କିଣି ଆଣି ସେମିତି ବିଭିନ୍ନ ଜାଗାରେ ଥୋଇ ଥିଲେ ।

ତା'ପରେ ଆଉ ଥରେ ବାବା ସେହି ବିଜୁଆ ଦୋକାନରୁ ଗୋଟିଏ ଖେଳଣା ଆଣିଲେ । ଖେଳଣାଟି ଗୋଟିଏ କୁକୁର । ଅବିକଳ କୁକୁର ପରି । ଦିହରେ ବଡ଼ବଡ଼ କଳା ଲୋମ । ଆଖି ଦି'ଟା କାଚରେ ତିଆରି । ଅବିକଳ କୁକୁର ଆଖି ପରି । ତା' ବେକରେ ଗୋଟିଏ ଧଳା ପଟି ଥାଏ । ସେଥିରୁ ଗୋଟାଏ ଲମ୍ବା ରବର ନଳୀ ଲାଗିଥାଏ । ସେ ନଳୀ ଶେଷରେ ଗୋଟାଏ ରବରର ବଲ୍ ପରି ଲାଗିଥାଏ । ତାକୁ ଚିପି ଦେଲେ ସେ କୁକୁର ଠିକ୍ କୁକୁର ଭଙ୍ଗିରେ କହି ଉଠେ, ଯେତେ ଖେଳନା ବାବା ଆଣିଥିଲେ, ସବୁଠୁ ମୋତେ ଏ ଖେଳନାଟି ଭାରି ଭଲ ଲାଗିଲା । ସବୁବେଳେ କୁକୁରଟିକୁ ନେଇ ଖେଳୁଥିଲି । ଦିନେ ଦେଖିଲା ବେଳକୁ ମୋର ବଡ଼ଭାଇ ସେ କୁକୁର ପେଟକୁ କାଟି ସାରିଛନ୍ତି । କାରଣ ଦେଖିବେ ତା' ପେଟ ଭିତରେ କ'ଣ ଯନ୍ତ୍ର ଖଞ୍ଜା ଅଛି ? ଏ ଘଟଣାରେ ବଡ଼ଭାଇଙ୍କ ଉପରେ ମୋର ଭାରି ରାଗ ହେଲା । ଏହାର ପ୍ରତିଶୋଧ ନବା ପାଇଁ ବଡ଼ଭାଇଙ୍କ ଅନୁପସ୍ଥିତିରେ ମୁଁ ତାଙ୍କର ପାରା ଭାଡ଼ିର କେତେକ ପଟା ଖୋଲିଦିଏ, ଯା ଫଳରେ କେତେକ ପାରା ଉଡ଼ି ପଳାନ୍ତି । ଇମିତି କେତେଦିନ ତାଙ୍କୁ ହଇରାଣ କଲି । ଏଇଠୁ ବଡ଼ଭାଇଙ୍କ ପ୍ରତି ମୋର ମନ ଭିତରେ କିମିତି ଗୋଟାଏ ହିଂସାଭାବ ଜାତ ହେଲା । କିନ୍ତୁ ବଡ଼ଭାଇ ମୋର ଦୁଷ୍ଟାମୀ ଯୋଗୁଁ କେଭେ ମାରି ପାରନ୍ତିନି ।

କେତେଦିନ ପରେ ମୋର ମନ ହେଲା ମୁଁ ପାରା ରଖିବି । ପାରା ନେଇ ଖେଳିବି କିନ୍ତୁ ପ୍ରକୃତ ପାରାକୁ ନେଇ ଖେଳିବା, ପୋଷିବା ମୋ ପକ୍ଷରେ ଅସମ୍ଭବ । ଏଣୁ ବାବା ଆଉ ବିଜୁଆ ଦୋକାନରୁ ମୋ ପାଇଁ ଖେଳନା ନଆଣି ସନ୍ଧ୍ୟା ପରେ ଅଫିସ୍‌ରୁ ଫେରି ମାଛୁଆ ବଜାରରୁ ଦୈନିକ ଗୋଟିଏ ସୋଲ ତିଆରି ପାରା ଆଣି ଦେଲେ । ସେତେବେଳେ ମାଛୁଆ ବଜାରରେ ଜଣେ ଲୋକ ଥିଲା, ଯେ ବି ସୋଲରେ ବିଭିନ୍ନ ରକମର ଜିନିଷ ତିଆରି କରି ପାରୁଥିଲା ।

ବାବା ଦୈନିକ ଗୋଟିଏ ଗୋଟିଏ ସୋଲର ପାରା ଆଣି ଦେଲେ । ପାରାଗୁରିକ ଦେଖିବାକୁ ଅବିକଳ ଧଳା ରଙ୍ଗର ପାରା ପରି । ଠିକ୍ ବଡ଼ ଭାଇଙ୍କ ପରି ଗୋଟିଏ ଭାଡ଼ିରେ ପାରା ରଖିଲି । ରଖିଲେ କ'ଣ ହବ ? ସେ କ'ଣ ଜୀଅନ୍ତା ପାରା ପରି ଉଡ଼ି ପାରୁଛି ନା, ଖେଳି ପାରୁଛି ? ଯେଉଁଠି ରଖିଲି, ସେଇଠି ପଡ଼ି ରହିଲା । ବକ୍ ବକ୍‌ମ, ବକ୍ ବକ୍‌ମ ଶବ୍ଦ ନାହିଁକି ବେକ ଫୁଲେଇ ଘୂରି ବୁଲିବା ନାହିଁ । ସେତେବେଳେ ଜୀବ ଆଉ ଜଡ଼ ମଧ୍ୟରେ ପାର୍ଥକ୍ୟ କ'ଣ ଜାଣି ନଥିଲି । ଏଣୁ ଜୀବନ୍ତ ପ୍ରାଣୀ ମଧ୍ୟରେ ମଣିଷ, ପଶୁ, ପକ୍ଷୀ ଯେମିତି ଆଦରର ଜିନିଷ ଥିଲା, ସେମିତି ମାଟିର ତିଆରି କଣ୍ଢେଇ, କାଗଜ ତିଆରି ଖେଳନା, ରବର ତିଆରି ଖେଳନା ସବୁ ଜିନଷ ସମାନ ଭାବରେ ଆକର୍ଷଣୀୟ ଥିଲା । ମାଟିର କଣ୍ଢେଇକୁ କେତେ ଯତ୍ନରେ ସାଇତି ରଖୁଥିଲି । ତାଙ୍କର ଖାଇବା, ପିଇବା, ଶୋଇବା ପାଇଁ କେତେ ସତର୍କ ରହୁଥିଲି । ମଣିଷ ଖାଇବାକୁ ମାଗୁଛି, ରହିବାକୁ ଆଶ୍ରା ଖୋଜୁଛି, ତା'ପାଇଁ କିଛି କରି ହେଲା ନାହିଁ । ଯତ୍ନ ନେଇ ହେଲା ନାହିଁ । ପରେ ଯଦିଚ ଜୀବ ଓ ଜଡ଼ର ପାର୍ଥକ୍ୟ ଭଲ ଭାବରେ ବୁଝି ପାରିଲି ।

କଟକ ସହରରେ ଘୁଡ଼ି ଉଡ଼େଇବା କେତେକ ଲୋକଙ୍କର ଭାରି ସଉକ । ବିଶେଷତଃ ଯୁବକ ମହଲରେ । ଥୋରିଆସାହିର ମଧ କେତେକ ଟୋକାଏ ଘୁଡ଼ି ଉଡ଼େଇବା ଦେଖିଲି । ମୋର ବଡ଼ ଭାଇ ମଧ ତାଙ୍କ ସାଙ୍ଗରେ ମିଶି ଘୁଡ଼ି ଉଡ଼େଇବାରେ ମାତିଲେ । ଏଣୁ ମୁଁ ପିଲା ହେଲେ କ'ଣ ହବ ? ମୋର ମଧ ଘୁଡ଼ି ଉଡ଼େଇବାକୁ ମନ ଡ଼ାକିଲା । ବଡ଼ଭାଇ ଘୁଡ଼ି ଉଡ଼େଇବା ବେଳେ, ମୁଁ ଉଡ଼େଇବା ପାଇଁ ଜିଦ୍ କଲେ ସେ ମୋ ହାତରେ ନଟେଇଟାକୁ ଅଳ୍ପ ସମୟ ପାଇଁ ଧରିବାକୁ ଦେଉଥିଲେ, ସେଇଥିରେ ମୋର ଭାରି ଆନନ୍ଦ । ପରେ ମୋ ପାଇଁ ଘୁଡ଼ି ଆଣିବାକୁ ବାବାଙ୍କୁ କହିଲି । ବାବା ପ୍ରଥମେ ବାଧା ଦେଇ କହିଲେ ତୁ ଘୁଡ଼ି କ'ଣ କରିବୁ ? ବଡ଼ ହେଲେ ଘୁଡ଼ି ଉଡ଼େଇବୁ । ମୁଁ କହିଲି, ମୁଁ ଉଡ଼େଇ ନ ପାରିଲେ ଖାଲି ରଖିବି । ତା'ପରେ ବାବା ପ୍ରତିଦିନ ସନ୍ଧ୍ୟା ପରେ ଗୋଟିଏ ଗୋଟିଏ ବିଭିନ୍ନ ରଙ୍ଗର ଘୁଡ଼ି ଆଣି ଦେଲେ । ତାକୁ ସାଇତି ରଖିଥାଏ । ଯେଉଁ ଘୁଡ଼ି ପସନ୍ଦ ନହୁଏ ତାକୁ ଚିରି ପକାଏ । ଏଥିଯୋଗୁଁ ବାବାଙ୍କୁ ଅନେକ କଷ୍ଟ ଭୋଗ କରିବାକୁ ପଡ଼ିଛି ।

ବଡ଼ଭାଇ ଘୁଡ଼ି ଉଡ଼ଉ ଉଡ଼ଉ ଘୁଡ଼ି କଟିଗଲେ ମୋତେ ଆସି ଭାରି କଅଁଳେଇ ଫୁସଲାନ୍ତି ଗୋଟିଏ ଘୁଡ଼ି ନବା ପାଇଁ । ମୁଁ ତାଙ୍କ ଉପରେ ପୂର୍ବର କେତେକ ହିଂସା ମନୋଭାବ ନେଇ ଏତିକିବେଳେ ଦାଉ ସାଧି କହେ ନାହିଁ ଦେବି ନାହିଁ । ବଡ଼ଭାଇ ଆଉ ଟିକିଏ ନ୍ୟୁନ ହେଇ କହନ୍ତି ଗୋଟିଏ ଘୁଡ଼ି ଦେ, ମୁଁ ତୋତେ ଉଡ଼େଇବାକୁ ଦେବି ।

ମୋର ମନ ମାନିଯାଏ । ବଡ଼ଭାଇଙ୍କୁ ଘୁଡ଼ିଟିଏ ଦିଏ । ବଡ଼ଭାଇ ଘୁଡ଼ି ଉଡ଼େଇଲେ ମୁଁ ଜିଦ୍ ଧରେ ଉଡ଼େଇବା ପାଇଁ । ଭାଇ ଟିକିଏ ମୋ ହାତରେ ନଟେଇକୁ ଧରେଇ ଦିଅନ୍ତି । ଭାରି ଖୁସି ଲାଗେ । ପୁଣି ସଙ୍ଗେ ସଙ୍ଗେ ନଟେଇ ଛଡ଼େଇ ନିଅନ୍ତି । ମୋର ମନ ହୁଏ ଆହୁରି ବେଶି ସମୟ ନଟେଇ ଧରି ଉଡ଼େଇବା ପାଇଁ, କିନ୍ତୁ କ'ଣ କରିବି ? ଘୁଡ଼ିତ ଯାଇ ଆକାଶରେ ।

ପରେ ଘୁଡ଼ି ଉଡ଼େଇବାକୁ ମୋର ଏତେ ମନ ହେଲା ଯେ ହାତେ ହାତେ ଘୁଡ଼ି ତିଆରି କରିବାକୁ ଶିଖିଗଲି । ଅବଶ୍ୟ ଏଥିରେ ଆମ ସାହିର ମୋର କେତେଜଣ ସାଙ୍ଗ ସହାୟତା କରୁଥିଲେ । ବାବାଙ୍କର ସେତେବେଳେ ଦୁଇ ଖଣ୍ଡ ମାସିକ ବଙ୍ଗଳା ପତ୍ରିକା ଆସୁଥିଲା । ଗୋଟିକର ନାମ, "ବ୍ରହ୍ମ ବିଦ୍ୟା", ଅନ୍ୟଟିର ନାମ "ବସୁନ୍ଧରା" । ଆଉ ସାପ୍ତାହିକ ସମ୍ବାଦ ପତ୍ର "ସାପ୍ତାହିକ ବଙ୍ଗବାସୀ" । କିଛିଦିନ ପରେ ଘୁଡ଼ି ତିଆରି କରିବାକୁ ଯେତେବେଳେ ଅଳ୍ପ କିଛି ଶିଖି ଗଲି, ସେତେବେଳେ ଥରେ ଥରେ ଉପରୋକ୍ତ ସମ୍ବାଦ ପତ୍ର ଆଉ ମାସିକ ପତ୍ରିକା ପୋଷ୍ଟ ପିଅନ ଆଣି ଦେଇଗଲେ, ବାବାଙ୍କର ଅନୁପସ୍ଥିତିରେ ଅର୍ଥାତ୍ ବାବା ଯେତେବେଳେ ଅଫିସ୍ ଯାଇଥାନ୍ତି, ମୁଁ ସେ ପତ୍ରପତ୍ରିକା ସବୁ ଚିରି ଘୁଡ଼ି ଉଡ଼େଇବାରେ ଲାଗେ ।

ବାବା ଯେବେ ପଚାରନ୍ତି, ବ୍ରହ୍ମ ବିଦ୍ୟା, ବସୁନ୍ଧରା କି ସାପ୍ତାହିକ ବଙ୍ଗବାସୀ କିଛି ତ କାହିଁ କେତେଦିନ ହେଲା ଦେଖୁ ନାହିଁ ? କାରଣ କ'ଣ ? କାରଣଟା ପ୍ରକାରାନ୍ତରେ ଯେତେବେଳେ ବାବା ଜାଣିପାରିଲେ ଯେ ମୁଁ ତାକୁ ସବୁ ଚିରି ଘୁଡ଼ି ତିଆରି କରି ଖେଳିଛି । ବାବା ମୋତେ ସାବଧାନ କରି ଦେଲେ ସେ ସବୁ ପଢ଼ା ବହି, ଭାରି ଭଲ ବହି । ସେ ସବୁ ଆଉ ନଷ୍ଟ କରିବୁ ନାହିଁ ।

ମୁଁ ଆଉ ସେ ସବୁ ନଷ୍ଟ ନକରି ସାଙ୍ଗମାନଙ୍କ ଜରିଆରେ ଘୁଡ଼ି ତିଆରି କାଗଜ ଅଣେଇ ଘୁଡ଼ି ତିଆରି କରି ସୂତା ବାନ୍ଧି ଉଡ଼େଇଲି । ନଟେଇର ଦରକାର ନଥିଲା । ହାତରେ ସୂତା ଧରି ଉଚ୍ଚା ବାରନ୍ଦା ଉପରେ ଠିଆ ହେଇ ଉଡ଼ାଏ । କିଛିଦିନ ପରେ ବାବା ଗୋଟିଏ ଖେଳନା ଆଣି ଦେଲେ, ଯାହା କି ପରେ ମୋର ଜୀବନର ଅନେକ ଘାତ ପ୍ରତିଘାତ ଉନ୍ନତି ଅବନତିର ମୂଳ କାରଣ ହେଇ ବସିଲା । ଖେଳନାଟି ହଉଛି, ଗୋଟିଏ ଟେନିସ୍ ବଲ୍ ।

ଦେଖିବାକୁ ଗୋଲାକାର
ପେଟରେ ପବନ ତା'ର
ନୁହେଁ ସେ ଗଛର ଫଳ
ନୁହଁରେ ସେ ସୁକୋମଳ

ଏ ଜୀବନର ଉତ୍‌ଥାନ ପତନର ପ୍ରତୀକ ପରି ଏକୁ ତଳେ ବାଡ଼େଇ ଦେଲେ ଉପରକୁ ଉଠୁଛି ପୁଣି ତଳକୁ ଖସୁଛି । ଦୂରକୁ  କାନ୍ଥରେ ବାଡ଼େଇଦେଲେ ପାଖକୁ ଫେରି ଆଉଛି । ଯାକୁ ହାତରେ ମାଇଲେ ଯାହା, ଗୋଡ଼ରେ ମାଇଲେ ସେଇଆ, ମୁଣ୍ଡରେ ମାଇଲେ ମଧ ସେଇଆ । ପୁଣି ଲଜ୍ଜା ସରମ ନାହିଁ । ମାନ, ଅଭିମାନ ନାହିଁ । କେତେବେଳେ ଅତି ଉପରକୁ ଉଠି ଯାଉଛି ତ ପୁଣି କେତେବେଳେ ଅତି ତଳକୁ ଖସି ଯାଉଛି । କେତେବେଳେ ଗଡ଼ି ଗଡ଼ି ଯାଉଛି ତ, କେତେବେଳେ ଡ଼େଇଁ ଡ଼େଇଁ ବୁଲୁଛି । ରବର କି ଜିନିଷ, ସେତେବେଳେ ମୁଁ ଜାଣି ନଥିଲି । ସେହି ବଲ୍‌ରୁ ମୁଁ ପ୍ରଥମେ ଜାଣିଲି ଯେ ଏ ପଦାର୍ଥଟି ରବରରେ ତିଆରି । ଏ ବଲ୍ ଉପରେ ପୁଣି ଗୋଟିଏ ପାତଳା କ୍ୟାନଭାସ୍‌ର ଆବରଣ । କ୍ୟାନଭାସ୍ କି ଜିନିଷ ସେଇଠୁଁ ଜାଣିଲି । ଏଇ ବଲ୍‌ଟି ଆଣି ବାବା ମୋତେ ଦେଲା ପରେ ହିଁ ଖେଳିବାର ଧାରା ବଦଳିଗଲା । ଆଉ କଣ୍ଢେଇ ନେଇ ଖେଳିବା ଭଲ ଲାଗିଲା ନାହିଁ । ସାଙ୍ଗସାଥୀ ମଧ ଅନେକ ଜୁଟିଗଲେ । କାରଣ ଥୋରିଆସାହିରେ ମୋର ସମବୟସ୍କ ପିଲାମାନେ ମଧ ସେତେବେଳେ ବଲ୍ କ'ଣ ଜାଣି ନଥିଲେ । ଏଇ ବଲ୍ ନେଇ କେତେବେଳେ ଏକା, କେତେବଳେ ସାଙ୍ଗସାଥୀଙ୍କ ମେଳରେ ଖେଳିଲି । କିନ୍ତୁ ଖେଳିଲେ ସେଇ ପକ୍କା ଅଗଣାରେ କିମ୍ୱା ଦାଣ୍ଡ ଆଡ଼େ, ଯେଉଁଠି ଚାଟଶାଳୀ ବସେ । ପାହାଚ ତଳକୁ ଓଲେହିବାର ନିୟମ ନଥିଲା ।

ଦିନବେଳା ପାଠ ପଢ଼ା ସଇଲେ, ବଲ୍ ନେଇ ଖେଳେ । ବାବା ଯଦିଚ ଏ ଜିନିଷଟି ଆଣି ଦେଲେ କିନ୍ତୁ ସବୁବେଳେ ଆତଙ୍କିତ ହେଲେ, କୋଉଦିନ ମୁଁ ଗୋଡ଼ ହାତ ଭାଙ୍ଗିବି । କାରଣ ମୁଁ ବଲ୍ ସହିତରେ ବଲ୍ ପାଲଟିଗଲି । ଡ଼େଇଁଲି, ଗଡ଼ିଲି,  ଦୌଡ଼ିଲି । ବଲ୍ ଜିନିଷଟା ମୋତେ ବିଶେଷ ଆନନ୍ଦ ଦେଲା । ସେତେବେଳେ ଗୋଟିଏ ଟେନିସ୍ ବଲ୍‌ର ଦାମ୍ ଥିଲା ଦଶଅଣା ।  ବଲ୍ ହେଲା ମୋର ସର୍ବସ୍ୱ, ଧନ, ଜୀବନ, ସମ୍ପତ୍ତି । ଅବଶ୍ୟ ସେତେବେଳେ ଧନ, ଜୀବନ, ସମ୍ପତ୍ତି କ'ଣ ଜାଣି ନଥିଲି । ବଲ୍ ଗତ ପ୍ରାଣ, ବଲ୍ ଯଦି କେଉଁଠି ହଜିଲା କାନ୍ଦି ଗଡ଼ିଲି, କିଏ ସମ୍ଭାଳେ ମୋତେ ? ଘରର ଚାକର, ପୂଜାରୀ, ବନ୍ଧୁ ବାନ୍ଧବ, ଆତ୍ମୀୟ ସ୍ୱଜନ ସମସ୍ତେ ଲାଗି ପଡ଼ନ୍ତି ଖୋଜିବାରେ । ବେଳେ ବେଳେ ମୁଁ ବଲ୍ ନେଇ ବେଶି ଉତ୍‌ପାତ କଲେ, ମା ବଲ୍‌କୁ ଲୁଚେଇ ଦିଅନ୍ତି । ବଲ୍ ଫାଟିଗଲେ କି ଫୁଟିଗଲେ ଆଉ ଗୋଟିଏ ବଲ୍ ଆଣି ଦବାକୁ ବାବା ବାଧ କିନ୍ତୁ କୁଣ୍ଠିତ ହୁଅନ୍ତି । ମୋର ମନେ ଅଛି, ପିଲାବେଳେ ଆମ ଘରେ ଗୋଟିଏ ପୂଜାରୀ ଥିଲା, ସେ ମୋତେ ଅନେକବାର କାଖେଇ, ପିଠିରେ ଲାଉ କରି ବକ୍‌ସିବଜାର ମାର୍କେଟ୍‌କୁ ନେଇଯାଏ, ସଉଦା କିଣେ, ମୋତେ ପିପରମେଣ୍ଟ ମିଠେଇ କିମ୍ୱା ଅନ୍ୟ କିଛି ରକମର ଖାଇବା ଜିନିଷ କିଣି ଦିଏ । ପୂଜାରୀଟିକୁ ଆମେ ରଘୁଆ ନନା ବୋଲି ଡ଼ାକୁଥିଲୁ । ତା'ର ଘର ଥିଲା ଆମରି ଗାଁ ଆଡ଼େ କାଠାର ପାଟପୁର । ପ୍ରାୟ ସେତେବେଳେ ବାବାଙ୍କ ସାଙ୍ଗରେ ବକ୍‌ସିବଜାରକୁ ଗଲି । ବାବାଙ୍କର ହାତ ଧରି ଚାଲି ଚାଲି ଯାଏ । ସେତେବେଳେ ବକ୍‌ସିବଜାର ମାର୍କେଟ୍ ଦୋକାନ ଘର ସବୁ ଚାଳ ଘର ଥିଲା । ସନ୍ଧ୍ୟା ହେଲେ ମାର୍କେଟ୍‌ର ବିଭିନ୍ନ ସ୍ଥାନରେ ପଂଚ୍ ଲାଇଟ୍ (ପେଟ୍ରୋମାକ୍ସ ପରି)  ସବୁ ବଡ଼ ବଡ଼ କାଠର ଖୁଣ୍ଟରେ ଟଙ୍ଗା ହେଇ ଜଳା ହଉଥିଲା । ତା'ର ଅନତି ଦୂରରେ ସଡ଼କର ଆର ପଟେ ସେଠି ଯେଉଁ ବଳି ଭଗତର କୋଠା ଘର ଅଛି, ଯେଉଁଠି ଗଭର୍ନମେଣ୍ଟ ପ୍ରେସ୍ ହଉଥିଲା । ତା'ର ସାମନାରେ ପ୍ରଧାନ ରାସ୍ତାର ଆର ପଟେ ଯେଉଁ ବଡ଼ ଧାଉଡ଼ି ଦୋ'ତାଲା କୋଠା ଘର ଅଛି, ତା'ର ତଳ ମହଲାରେ ବିଭିନ୍ନ ପ୍ରକାରର ଦୋକାନ ଘର ସବୁ ଥିଲା । ଖିଲି ପାନ ଦୋକାନଠୁଁ ଆରମ୍ଭ କରି ମନୋହାରୀ ଜିନିଷ ପର୍ଯ୍ୟନ୍ତ । ସେଇଠି ଗୋଟିଏ ମୁସଲମାନ ଲୋକର ଦୋକାନ ଥିଲା । ସେଇଠି ଗୋଟିଏ କାଚ ବଏମ୍ ଭିତରେ ଟେନିସ୍ ବଲ୍ ଗୁରିଏ ରଖି ସେ ମୁସଲ୍‌ମାନ ଦୋକାନୀ ବିକୁଥିଲା । ମୁଁ ସେ ବଲ୍‌ରୁ ଗୋଟିଏ କିଣିବାକୁ ଜିଦ୍ ଧଇଲେ ବାବା ରାଜି ହୁଅନ୍ତି ନାହିଁ । ଏଣୁ ମୁଁ ରାଗରେ କାନ୍ଦି କାନ୍ଦି ସେ ସଡ଼କ ଉପରେ ଗଡ଼ିଯାଏ । ସେତେବେଳେ ବାବାଙ୍କ ସାଙ୍ଗରେ ବଜାରକୁ ବାହାରିଲେ ମା ବେଶ୍ ମୋତେ ସଜବାଜ କରି ପଠଉଥିଲେ । ସୁନେଲି, ରୂପେଲି ଜରି

କାମ ଥିବା ମଖମଲର ପ୍ୟାଣ୍ଟ ଜାମା, ବିଭିନ୍ନ କାରୁକାର୍ଯ୍ୟ ଥିବା ଟୋପି, ଗୋଡ଼ରେ ରଙ୍ଗିନ୍ ମୋଜା ଆଉ ଜରି କାମ ଥିବା ମଖମଲର ଜୋତା। ସେତେବେଳେ ବକ୍‌ସିବଜାର ରାସ୍ତା ସବୁ ପିଚୁ ରାସ୍ତା ନଥିଲା। ଖାଲି ନାଲି ସଡ଼କ, ନାଲି ଧୂଳିରେ ଭରା। ମୁଁ ଯେତେବେଳେ ଗୋଟିଏ ଟେନିସ୍ ବଲ୍ କଣିବା ପାଇଁ ଜିଦ୍ ଧରି ଦୋକାନୀ ସାମନାରେ ରାସ୍ତାର ନାଲି ଧୂଳିରେ ଗଡ଼ିଯାଏ, ବାବା ଲଜ୍ଜିତ ହେଇ ବାଧ ହେଇ ଗୋଟିଏ ଟେନିସ୍ ବଲ୍ ଦଶଅଣା ଦାମ୍‌ରେ କିଣି ଦିଅନ୍ତି। ସେ ନାଲି ଧୂଳି ସବୁ ବାବା ଝାଡ଼ି ଦିଅନ୍ତି। ସେ ପ୍ୟାଣ୍ଟ ଜାମାର ଅବସ୍ଥା ନାଲି ଧୂଳିରେ ଯାହା ହୁଏ, ଯେ ଦେଖିଥିବେ, ସେମାନେ କ'ଣ ଭାବିଥିବେ? ଏବେ ମୁଁ ସେ କଥା ଭାବୁଛି। ବାବାଙ୍କୁ ମୁଁ କି ଲଜ୍ଜାରେ କି ବିପଦରେ ପକେଇଛି। ବାବା ଯେ ତାକୁ ସହ୍ୟ କରି ମୋର ଜିଦ୍‌କୁ ବଜାୟ ରଖି ମୋତେ ବଲ୍ କିଣି ଦେଇଛନ୍ତି। ମୁଁ ଯଦି ପରେ ସଡ଼କର ନାଲି ଧୂଳି ପରି ବାବାଙ୍କର ଚରଣ ଧୂଳିରେ ଗଡ଼ି ଯାଇଥାନ୍ତି, ତା'ହେଲେ ମୋର ସେ ଅପରାଧରୁ ମୁକ୍ତ ହେଇଥାନ୍ତି।

ବାବା କେବଳ ପରେ ବିରକ୍ତ ହେଇ କହନ୍ତି, ଆଉ ତୋତେ କେଭେ ବଜାରକୁ ସାଙ୍ଗରେ ଆଣିବି ନାହିଁ। ତୁ ରାସ୍ତାରେ ଗଡ଼ି ଯାଉଛୁ? ସେ ପ୍ୟାଣ୍ଟ ଜାମା କ'ଣ ହେଲା? ବଜାରରୁ ଆସି ଘରେ ପହଁଚିଲେ ମୋର ସେ ଧୂଳିଧୂସରିତ ରୂପ ଏବଂ ଜାମା ପ୍ୟାଣ୍ଟର ଅବସ୍ଥା ଦେଖି ମା ବାବାଙ୍କୁ ପଚାରନ୍ତି, ଏ ଇମିତି କାହିଁକି ହେଇଛି? ବାବା ସବୁ କଥା କହିଲା ପରେ ମା' ପ୍ୟାଣ୍ଟ, ଜାମାକୁ କାଢ଼ି ନେଇ ନିର୍ଘାତ ମାଡ଼ ଦିଅନ୍ତି। ଯେମିତି ଆଉ ଦିନେ ବଜାରକୁ ଗଲେ କେଭେ ବାବାଙ୍କୁ ସେମିତି ହଇରାଣ କରିବି ନାହିଁ କିମ୍ବା ଦାମିକା ଜାମା, ପ୍ୟାଣ୍ଟକୁ ସଡ଼କ ଧୂଳିରେ ନଷ୍ଟ କରିବି ନାହିଁ।

ଥରେ ମୋର ମନେ ଅଛି, ଦିନେ ସନ୍ଧ୍ୟା ବେଳେ ମୁଁ ବାବାଙ୍କ ସାଙ୍ଗରେ ବକ୍‌ସିବଜାର ମାର୍କେଟ୍‌କୁ ଯାଇଥାଏ, ଗୋଟାଏ କାପାଳିକ ଭଳି ଲୋକ, ତା'ର ବେଶ ଭୂଷା ଦେଖିବାକୁ ଅତି ଭୟଙ୍କର। ତା' ବାଁ ହାତରେ ଗୋଟାଏ ମଲା ମଣିଷର ଖପୁରି ଧରି ଘୂରୁ ଥାଏ। ସେ ଖପୁରିଟାରେ ସିନ୍ଦୁର ଲାଗିଥାଏ। ସେ ଲୋକଟା ବିଡ଼ି ଟାଣୁଥାଏ। ଏଣେ ପଇସା ମାଗୁଥାଏ। ଶେଷରେ ଦେଖିଲି, ସେ ଯେଉଁ ବିଡ଼ିଟା ଟାଣୁ ଥିଲା ତାକୁ ଆଣି ସେ ଖପୁରିର ଗୋଟାଏ ଜାଗାରେ ଗୁଞ୍ଜି ରଖି ଦେଲା। ମୁଁ ସେ ଦୃଶ୍ୟ ଦେଖି ଭୟରେ ବାବାଙ୍କ ଦେହରେ ମିଶି ଗଲା ପରି ଲୁଚି ଲୁଚି ତାକୁ ଅନେଇଲି। ସେ କି ଭୟଙ୍କର ଦୃଶ୍ୟ। ତା'ପରେ ଘରକୁ ଫେରି ଭୟରେ ରାତିରେ ଆଉ ନିଦ ହେଲା ନାହିଁ। ସେତେବେଳେ ଖଣ୍ଡେ ଲେପ ଘୋଡ଼ି ହେଇ ପଡ଼ିଲେ ମୁଁ ନିଜକୁ ଅନେକ ନିରାପଦ ମନେ କରୁଥିଲି। ଲେପ ଥିଲା ମୋର ଅନେକ ଭୟ ଆଶଙ୍କାର ବିଲୋପର ଅସ୍ତ୍ର। ଯେଉଁଠି ଯା'ଦୁଷ୍ଟାମୀ କରେ, ଖଣ୍ଡେ ଲେପରେ ଆମୂଳଚୂଳ ଘୋଡ଼ି ହେଇ ପଡ଼ିଲେ ମୁଁ ବଡ଼ ନିର୍ଭୀକ ହେଇ ପଡ଼େ।

ଥରେ ମନେ ଅଛି, ଦାଣ୍ଡ ଆଡ଼େ ଆମ ଦୁଆର ସାମନାରେ ରାସ୍ତାର ଆର ପଟେ ଗୋଟିଏ ଛୋଟ ଗରିବ ପରିବାର ଚଳୁଥାନ୍ତି। ତାଙ୍କ ଘରର ଚାରିପଟେ ସିଜୁବାଡ଼ ଘେରା। ସିଜୁବାଡ଼ ଯୋଗୁଁ ତାଙ୍କ ଘର ଆଦୌ ବାହାରକୁ ଦେଖାଯାଏ ନାହିଁ। ମୁଁ ଦାଣ୍ଡ ଆଡ଼େ ଠିଆ ହେଇଥିଲି କ'ଣ ମନ ହେଲା ଗୋଟାଏ ବଡ଼ ଖପରା କାଢ଼ି ସେହି ସିଜୁବାଡ଼ ଆଡ଼କୁ ଛାଡ଼ି ସାଇଲି। ଖପରା କାତି ଛାଡ଼ିବାର ମୁହୂର୍ତ୍ତକ ପରେ ସେଇ ସିଜୁବାଡ଼ ଆରପଟୁ ଗୋଟିଏ ବୁଢ଼ୀ ଆକୁଳ ଏବଂ ରାଗରେ ପାଟି କରି କହିବାର ଶୁଣାଗଲା, ଯା'ର ସରଳାର୍ଥ ହଉଛି କିଏ ଏମିତି ଖପରା କାତିଟା ମାଇଲା? ମୋର ନାତି ଅଭିକା ମରି ଯାଇଥାନ୍ତା। ତା'ପରେ ବୁଢ଼ୀ ଅଶ୍ଳୀଳ ଉପାଧି ସଂଯୋଗ କରି ଆଶୀର୍ବାଦ କଲା ତାକୁ ମରଣ ହଉ।

ବୁଢ଼ୀର କଣ୍ଠସ୍ୱର ମୋର ପରିଚିତ। ବୁଢ଼ୀକୁ ସମସ୍ତେ ଡ଼ାକନ୍ତି ଘୁଷୁରିଆ ମା। ତା'ର ଗୋଟିଏ ଖୁବ୍ ଛୋଟ ନାତି। ମୁଁ ବୁଝିପାରିଲି ମୋର ଖପରା କାତି ବୁଢ଼ୀର ଦେହରେ କେଉଁଠି ବାଜିଛି। ଆଉ ଅଳ୍ପ କରେ ତା'ର ନାତି ମରିଯାଇ ଥାନ୍ତା। ଜଣେ କିଏ ମାଇପି ପୁଣି ପାଟିକରି ଚିହ୍ନେଇ ହେଲା ପରି କହିଲା, ସେ ବାବୁ ଘର ପୁଅ ମାଇଲା। ମୁଁ ଏସବୁ ଘଟଣା ଶୁଣି ମୋର ମନେ

ହେଲା ସମୁଦ୍ର ମାଡ଼ି ଆସୁଛି ଆଉ ରକ୍ଷା ନାହିଁ । ଆଉ ଠିଆ ହେବି କ'ଣ ? ଏକ ମୁହୂର୍ତ୍ତରେ ଦାଣ୍ଡ ଆଡୁ ଚମକି ଆସି ଖଟ ଉପରେ ଲେପ ଦୁର୍ଗ ଭିତରେ ଆଶ୍ରୟ ନେଇ ଆତ୍ମଗୋପନ କଲି । ଘୁଷୁରିଆ ମା ନାତିକୁ କାଖେଇ ଆମର ଗୃହ ପ୍ରବେଶ କଲା । ମୁଁ ଲେପ-ଦୁର୍ଗ ଭିତରେ ଥଉଥାଏ କାରଣ ମା ଜାଣିଲେ ବାଡ଼େଇବେ । ମୁଁ ଯେକୌଣସି ଦୁଷ୍ଟାମୀ କଲେ ମା' ମାଡ଼ ଦିଅନ୍ତି, ବାବା ବିଶେଷ କିଛି କହନ୍ତି ନାହିଁ । ବାବା ବିଶେଷ ଶାନ୍ତ ପ୍ରକୃତିର ଲୋକ ଥିଲେ ।

ମୁଁ ଲେପ ଭିତରୁ ଅଳ୍ପ କିଛି କଇଁଛ ପରି ମୁଣ୍ଡ କାଢ଼ି ଖିଡ଼ିକି ବାଟେ ଅନେଇ ଦେଖିଲି ଘୁଷୁରିଆ ମା ଗୋଟିଏ ଛୋଟ ନାତିକୁ କାଖେଇଛି । ନାତିଟି ଗୋଟିଏ ମର୍କଟ ଶିଶୁ ପରି ଦେଖିବାକୁ । ତା'ର ତାଲୁ ଦୁକ୍ ଦୁକ୍ ପଡୁଛି, ଉଠୁଛି । ସେ ଯେ ଏଡ଼େ ବଡ଼ ମାରକ ଦଶାରୁ ବଞ୍ଚିଗଲା ତାକୁ ଜଣା ନାହିଁ । ସେ ବୁଢ଼ୀର ବାମ ପାଖରେ ସୁକୁଟା ସ୍ତନକୁ କ୍ଷୀର ଖାଇଲା ପରି ପାଟିରେ ପୁରେଇ ରଗଡୁଛି । ଘୁଷୁରିଆ ମା, କମାଣରୁ ଗୋଳା ବର୍ଷଣ ପରି ରାଗରେ ଥରି ଥରି ସବୁ ଘଟଣା ମା'ଙ୍କ ଆଗରେ ନିଜେ ବର୍ଣ୍ଣନା କଲା । ମୁଁ ପୁଣି କଇଁଛ ପରି ମୁଣ୍ଡକୁ ଲେପ ଭିତରକୁ ଟାଣି ନେଇ ଲେପ ଭିତରେ ଥାଇ ଯାହା ଶୁଣିଲି, ବୁଢ଼ୀର ବାଁ ପାଖ ଛାତିରେ ମୋର ଖପରାକାତି ବାଜିଲା ଆଉ ଅଳ୍ପକେ ଯଦି ନାତିର ତାଲୁରେ ଖପରା କାତି ବାଜିଥାନ୍ତା ପ୍ରକୃତରେ ନାତିଟିର ପରଲୋକ ପ୍ରାପ୍ତି ହେଇଥାନ୍ତା । କିନ୍ତୁ ତା'ହବ କିମିତି ? ବୁଢ଼ୀର ସେହି ନାତି ପରେ ବଡ଼ ହେଲାରୁ ମୋର ପରମବନ୍ଧୁ ହେଲା । ବାର୍ଦ୍ଧକ୍ୟରେ ମଧ୍ୟ ସେ ମୋର ସେହି ପରମ ବନ୍ଧୁ, ସେ ମୋର ସାଙ୍ଗ, ସହକର୍ମୀ, ସହାୟକ, ସୁଖ, ଦୁଃଖ ସବୁଥିରେ ମୋର ସାଥୀ । କଟକର ନାମଜାଦା ବୁଦ୍ଧିମାନ ଶିଂଘ କାରିଗର, ଲୋକନାଥ ରାଉତ ଡ଼ାକ ନାମ ଲୋକା । ଯୁଆଡ଼େ ଯିବି ସାଙ୍ଗରେ ଲୋକା ଥିବ, ଯାହା କରିବି, ଲୋକା ଜାଣିବ । ବିପଦ ବେଳେ ଲୋକା, ସମ୍ପଦରେ ଲୋକା କିନ୍ତୁ ଭାବିଲେ ଦୁଃଖ ଲାଗେ, ଲୋକା ଚିରଦୁଃଖୀ ।

ଘୁଷୁରିଆ ମା'ଠାରୁ ସବୁ କଥା ଶୁଣି ମା' କହିଲେ, ହଉ, ମୁଁ ତାକୁ ଦେଖୁଛି ସେ ଗଲା କୁଆଡ଼େ ? ମୁଁ ଲେପ ଭିତରେ ଲୁଚିଥାଏ କିନ୍ତୁ ଏ ବିପଦରୁ କେମିତି ରକ୍ଷା ପାଇବି ସେଥିଲାଗି ଭଗବାନଙ୍କୁ ମଧ୍ୟ ଡ଼ାକିବାକୁ ଜାଣି ନଥାଏ । କିନ୍ତୁ ରକ୍ଷା ପାଇଗଲି, ମା' ଆଉ ସେ ବିଷୟରେ ମୋତେ କିଛି ପଚାରି ନାହାନ୍ତି ବୋଧେ କାମ କାର୍ଯ୍ୟ ଭିତରେ ଭୁଲିଗଲେ । ସେଦିନ ମୋତେ ସେହି ଭଗବାନ ହିଁ ରକ୍ଷା କଲେ କାରଣ ବଡ଼ ହେଲାରୁ ଜାଣିଲି ଯେ ଭଗବାନ ସମସ୍ତଙ୍କୁ ବେଳେବେଳେ ବିନା ପ୍ରାର୍ଥନାରେ ନିଜେ ଆସି ରକ୍ଷା କରନ୍ତି ।

ଆହୁରି ମନେ ଅଛି, ଗୋଟିଏ ଝିଅ ପିଲା ରାସ୍ତା କଡ଼ରେ ଧୂଳିଘର କରି ଖେଳୁଛି, ମୁଁ ତା'ପାଖକୁ ଯାଇ ଜବରଦସ୍ତ ଜିଦ୍ କରି କହିଲି, ମୁଁ ଖେଳିବି । ସେ ନାହିଁ କଲା । ନାଁ, ମୁଁ ଖେଳେଇବି ନାହିଁ । ଏଣୁ ରାଗରେ ତା'ମୁଣ୍ଡକୁ ନଇଁ ଦେଇ ତା'ପିଠିରେ ଦି'ବିଧା ପକେଇଲି । ସେ କାନ୍ଦିଲା । ଲୋକେ ହାଉ ହାଉ କଲେ, ବାବୁ ଘର ପୁଅ ମାଇଲା । ମୁଁ ଦୌଡ଼ି ଆସି ଲେପ ଦୁର୍ଗ ଭିତରେ ଆତ୍ମଗୋପନ କଲି । ମା'ଙ୍କ ପାଖକୁ କେହି ଆସିଲେ ନାହିଁ କହିବା ପାଇଁ । ସବୁ ବାହାରେ ବାହାରେ ଉଡ଼ିଗଲା, ମୁଁ ରକ୍ଷା ପାଇଗଲି ।

ଥରେ ଗୋଟାଏ ମୋଟ କନା ଦଉଡ଼ିକୁ ସରୁ ସୁତାରେ ବାନ୍ଧିଲି । ଆମ ଅଗଣାରେ ଅନେକ ଫୁଲ କୁଣ୍ଡ ଥିଲା । ସେଇ କୁଣ୍ଡ ଫାଙ୍କରେ ସେ ସୁତା ବନ୍ଧା କନା ଦଉଡ଼ିକୁ ରଖିଦେଲି । ଅଗଣାରେ ମା, ବାବା ବସି ଗପ କରୁଥିଲେ । ମୁଁ ମା, ବାବାଙ୍କୁ ଭୟଭୀତ କରିବା ପାଇଁ ମିଛରେ ଆସି ମା'ଙ୍କ କୋଳରେ ବସିଲି । ମା, ବାବା ଗପ କରୁଥାନ୍ତି । ମୁଁ ଆସ୍ତେ ଆସ୍ତେ ସେ ସୂତାକୁ ଟାଣିଲି । ମା, ବାବାଙ୍କ ଲକ୍ଷ୍ୟ ନାହିଁ ଯେ ମୁଁ ଆସ୍ତେ ଆସ୍ତେ ସୂତା ଟାଣୁଛି । ସେ ସୂତା ଟାଣିବା ଦ୍ୱାରା ସେ କନା ଦଉଡ଼ିଟା ଲମ୍ବା ହେଇ ସାପ ପରି ଆଗକୁ ଆସିଲା । ମା, ବାବା ତାକୁ ଦେଖି ସାପ ଭାବି ଭୟରେ ଚିନଖାନିଆ ହେଇ ସେଠୁ ପଳେଇବାକୁ ଉଦ୍ୟମ କଲା ବେଳକୁ ମୁଁ ହସି ପକେଇଲି । ମା, ବାବା ମୋର ଅପକାର୍ତ୍ତି ବୁଝି ପାରିଲେ ।

ଅପକୀର୍ତ୍ତିର ପୁରସ୍କାର ସ୍ୱରୂପ ମା' ମୋତେ ବିଧା, ଚାପୁଡ଼ା କିଛି ଦେଇ କୋଳରୁ ଠେଲି ବାହାର କରିଦେଲେ ।

ଥୋରିଆସାହିରେ ଆମର ଚଳାଚଳ ବିଷୟରେ ପୂର୍ବରୁ ବର୍ଣ୍ଣନା କରି ସାରିଛି । ଏଣୁ ଏଠି ଆଉ ତା'ର ପୁନରାବୃତ୍ତି କରିବା ଠିକ୍ ନୁହେଁ । ଆମେମାନେ ସେଠି ବେଶ୍ ଭଲରେ ଥାଉ । ପଡ଼ୋଶୀମାନଙ୍କର ଆମ ଉପରେ ଖୁବ୍ ଭରସା ଥାଏ । କିଛି ଗୋଟାଏ ଅସୁବିଧା ପଡ଼ିଲେ, ବାବୁ ଘରକୁ ଗଲେ, ପଚାରିଲେ, ପରାମର୍ଶ କଲେ, ଜଣେଇଲେ, ମାଗିଲେ ସବୁ ଅସୁବିଧା ଯେମିତି ଦୂରୀଭୂତ ହୋଇଯାଉଥିଲା ।

ପଡ଼ୋଶୀମାନଙ୍କ ଭିତରେ ସମସ୍ତଙ୍କଠାରୁ ନୀଳାଦ୍ରି ଛାଟୋଇ ଆମର ଖୁବ୍ ସହାୟକ ଥିଲା । ଆମର ଦୁଆର ମୁହଁ ସାମନାରେ ତାଙ୍କର ଘର ଥିଲା । ସେ ଥିଲା ଥୋରିଆସାହିର ଅଧିକାରୀ, ଖାନଦାନୀ ଘର । ମୁଁ ନୀଳାଦ୍ରି ଛାଟୋଇଙ୍କୁ ଦେଖିଛି । ସାହିରେ ତାଙ୍କର ଖୁବ୍ ପ୍ରତିପତ୍ତି ଥିଲା । ତାଙ୍କ କଥା ସାହିରେ ସମସ୍ତେ ମାନୁଥିଲେ । ବର୍ତ୍ତମାନ ଥୋରିଆସାହିରେ ଯଦୁମଣି ସେନାପତିଙ୍କ ଯେଉଁ ଘର ଅଛି, ସେ ଜାଗା ଖଣ୍ଡକ ବେଶ୍ ଗୋଟାଏ ପ୍ରଶସ୍ତ ପଡ଼ିଆ ଥିଲା । ସେ ଜାଗା ଖଣ୍ଡକ ଥିଲା ନୀଳାଦ୍ରି ଛାଟୋଇର । ସେ ଥରେ ବାବାଙ୍କୁ କହିଲା, ବାବୁ ୧୦୦ଟଙ୍କା ଦେଇ ମୋଠୁଁ ସେ ଜାଗା ଖଣ୍ଡକ କିଣି ପକେଇ ଥାଅ । ବାବା ଉତ୍ତରରେ କହିଲେ, ମୋର ସେ ଜାଗା କ'ଣ ହବ ? ମୁଁ ତ ଚାକିରୀ ପରେ ଆମ ଗାଁକୁ ଚାଲିଯିବି । ସେତେବେଳେ ଲୋକେ ଜାଣି ପାରି ନଥିଲେ, କଟକ ଟାଉନ୍‌ର ଅବସ୍ଥା ଆଜି କାଲି ଯା ହେଉଛି, ଦିନେ ଇମିତି ଅବସ୍ଥାରେ ପହଁଚିବ । ତା'ପରେ ଆଉ ଜଣେ ଲୋକ, ଘୁଷୁରି ରାଉତ, ମୋର ସାଙ୍ଗ ଲୋକନାଥ ରାଉତର ବାପ, ଭାରି ସରଳ, ନୀରିହ ଲୋକ । ବାବାଙ୍କ ସଙ୍ଗେ ତା'ର ବିଶେଷ ସୌହାର୍ଦ୍ଦ୍ୟ ଥିଲା । ଆହୁରି ଅନେକ ଲୋକ ଥିଲେ । ପାଣ୍ଡୁ ସାହୁ, କାର୍ତ୍ତିକ ଜେନା, ଲୋକନାଥ ମୂଳିଆ, ଆନନ୍ଦ ପାଣିଗ୍ରାହୀ, ବୃନ୍ଦାବନ ପାଣିଗ୍ରାହୀ, ମୁକୁନ୍ଦ ସାହୁ, କାର୍ତ୍ତିକ ରାଉତ ଇତ୍ୟାଦି ବାବାଙ୍କ ଭାରି ପ୍ରିୟ ଲୋକ ଥିଲେ ।

## (୪)

ପ୍ରତ୍ୟେକ ବର୍ଷ ଦଶହରା ବେଳକୁ ଆମ ଗାଁକୁ ଯିବା ଗୋଟାଏ ବେଶ୍ ଆନନ୍ଦଦାୟକ ଘଟଣା ଥିଲା । ଆମ ଗାଁ ଅସୁରେଶ୍ୱରର ଦୀକ୍ଷିତପଡ଼ାର ଦୁର୍ଗା ପୂଜା ସେତେବେଳେ ଖୁବ୍ ଜାକଜମକରେ ପାଳିତ ହଉଥିଲା । ଆମ ଗାଁର ଯେ ଯେଉଁଠି ଚାକିରୀ କରୁଥିଲେ, ଦୁର୍ଗାପୂଜା ବେଳକୁ ଗାଁରେ ଏକଜୁଟ ହଉଥିଲେ । ପୂଜା ଚାରିଦିନଯାକ ଗାଁ, ଲୋକ ଗହଳି, ଯାତ୍ରା, ନାଟ ତାମସା, ସଙ୍ଗୀତ, ବାଜାରେ ଉଛୁଳି ପଡୁଥିଲା ।

ପ୍ରତ୍ୟେକ ବର୍ଷ ଦୁର୍ଗାପୂଜାର ଅଳ୍ପ କିଛିଦିନ ପୂର୍ବରୁ ଦଶହରା ସଉଦା କିଣା ଆରମ୍ଭ ହଉଥିଲା । ଲୁଗାପଟା, ମଇଦା, ଘିଅ, ଚିନି, ଗୁଡ଼, କନ୍ଦ, ବେସନ, ଖଲିପତ୍ର ଇତ୍ୟାଦି ସବୁଜିନିଷ କଟକରୁ କିଣି ଗାଁକୁ ନବାକୁ ହଉଥିଲା । ସଉଦା ଏତେ କିଣା ହୁଏ ଯେ ଦେଖିଲେ ମନେ ହବ ଯେମିତି କୋଉ ବ୍ୟବସାୟୀ ମହାଜନର ଦୋକାନରେ ବିକ୍ରି ହବା ପାଇଁ ଜିନିଷ ସବୁ ଯାଉଛି ।

ବାବା ଅଫିସ୍‌ରୁ ଆସି ଜଳଖିଆ ଇତ୍ୟାଦି ଖାଇ କାମସାରି ଦେଇ ଚୌଧୁରୀ ବଜାର, ନୟାସଡ଼କ ଆଡ଼କୁ ଦଶହରା ସଉଦା କିଣିବାକୁ ଚାଲି ଯାନ୍ତି । ସାଙ୍ଗରେ ଚାକର ଗଲେ ମଧ୍ୟ ଭାରୁଆ ଲଗେଇ ଜିନିଷ ବୁହା ହୁଏ । ସେତେବେଳେ କଟକରେ ହାତଟଣା ରିକ୍ସା କିମ୍ବା ସାଇକେଲ୍ ରିକ୍ସା ନଥିଲା, ଶଗଡ଼ରେ ନଚେତ୍ ଚାଲି ଚାଲି ଯିବାକୁ ହଉଥିଲା ।

ବାବା କେତେକ ଜିନିଷ ଆଣି ଚାକର, ଭାରୁଆ ସାହାଯ୍ୟରେ ପହଁଚିଲାବେଳକୁ ପୁଣି ଆହୁରି କେତେକ ଜିନିଷ କିଣା ହବାକୁ ବାକି ରହିଥାଏ । ଯେମିତି ଠାକୁରାଣୀଙ୍କ ପାଇଁ କେତେକ ଦରକାରୀ ଜିନିଷ, ମିଠା ଜିନିଷ, ଫଳଫୁଲ ଇତ୍ୟାଦି ଇତ୍ୟାଦି । ବାବା ପୁଣି ଚୌଧୁରୀ ବଜାର, ନୟାସଡ଼କ ଆଡ଼କୁ ଯାନ୍ତି । ସେତେବେଳେ ଚୌଧୁରୀ ବଜାର, ନୟାସଡ଼କରେ ସେତେବେଳର କଟକ ଟାଉନରେ ବଡ଼ ବଡ଼ ଦୋକାନ ସବୁ ଥିଲା । ସେତେବେଳେ ଦୋକାନରେ ପେଟ୍ରୋମାକ୍ସ ନଥିଲା କି

ବିଜୁଳିବତୀ ନଥିଲା । ଅଧିକାଂଶ ଦୋକାନୀ ଗ୍ୟାସ୍ ଲାଇଟ୍ ଜାଳୁଥିଲେ । ଚୌଧୁରୀ ବଜାରରେ କେତେକ ଦୋକାନୀ କିରୋସିନ ଲାଇଟ୍ ଜାଳୁଥିଲେ । ତଥାପି ସେତେବେଳେ କଟକ ଟାଉନ୍‌ର ଦଶହରା ବଜାର ବେଶ୍ ଜାକଜମକ ଦେଖା ଯାଉଥିଲା । ଆଜିକାଲି ବିଜୁଳିବତୀ ଯୁଗରେ ଦଶହରାବଜାର ଯେତେ ସୁନ୍ଦର ଦେଖାଗଲେ ମଧ ସେତେବେଳକାର ଗ୍ୟାସ୍ ଲାଇଟ, କିରୋସିନ ଲାଇଟ୍‌ରେ ମଧ ଦଶହରା ବଜାର କମ୍ ସୁନ୍ଦର ଦେଖା ଯାଉ ନଥିଲା । ବହୁତ ଲୋକ ଗହଳି, ବହୁତ ଭିଡ଼, ବହୁତ କିଣାବିକା । ସେତେବେଳେ ଦଶହରାକୁ ଗାଁକୁ ଯିବା ବେଶ୍ ଗୋଟାଏ ଆନନ୍ଦଦାୟକ ଘଟଣା ଥିଲା ।

ପ୍ରତ୍ୟେକ ବର୍ଷ ଦଶହରାରେ ଲୁଗାପଟା କିଣା ହେଲାବେଳେ ପ୍ରଥମେ ବାବା ମୋତେ ନୟାସଡ଼କକୁ ନେଇ ଯାଉଥିଲେ । ନୟାସଡ଼କରେ ଯେଉଁଠି ଓସ୍ତ ଗଛ ମୂଳେ ଗୋଟିଏ ପକ୍କା ପିଣ୍ଡି ଅଛି ଠିକ୍ ତା'ର ବିପରୀତ ଆଡ଼େ ପ୍ରଧାନ ରାସ୍ତାର ଆରପଟେ ଗୋଟିଏ ପୋଷାକପତ୍ରର ଦୋକାନ ଥିଲା । ଦୋକାନୀର ନାମ G. Naik । ସେତେବେଳେ G. Naik ର ଦୋକାନ ନାମ ଡ଼ାକ । କାରଣ ସେଠି ସବୁ ନୂଆ ନୂଆ ଧରଣର ପୋଷାକପତ୍ର ମିଳୁଥିଲା । ବିଶେଷତଃ ପିଲାଙ୍କ ପାଇଁ ରଙ୍ଗଢ଼ଙ୍ଗିଆ, ଚିକ୍‌ମିକିଆ ଦାମିକା ପୋଷାକପତ୍ର, ଦେଖିଲେ ଆଖି ଝଲସି ଯିବ । ଦୁର୍ଗାପୂଜାରେ ଆଗେ ମୋର ପୋଷାକପତ୍ର କିଣା ସରିଲେ ଆଉ ଯାହାଙ୍କର କିଣା ହେବ । ମୋର ମନେ ଅଛି, ନୟାସଡ଼କକୁ ବାବା ମୋତେ କାଖେଇ ନେଇଛନ୍ତି କିମ୍ବା ଜଣେ ଚାକର ମୋତେ କାଖେଇ ନେଇ ଯାଏ ।

ଜି. ନାୟକ ଦୋକନୀର କଥାବାର୍ତ୍ତା, ଜିନିଷପତ୍ର ବିକିବାର କାଇଦା ଭାରି ଚମତ୍କାର ଥିଲା । ଭାରି ଖାଣ୍ଟି କଥା, ସଚ୍ଚୋଟ କଥା । ଜି. ନାୟକ ଦୋକାନରେ ପିଲାଙ୍କର ପ୍ୟାଣ୍ଟ, କୋଟ୍‌ଠାରୁ ଆରମ୍ଭ କରି ଟୋପି, ମୋଜା, ଜୋତା, ରୁମାଲ ପର୍ଯ୍ୟନ୍ତ ସବୁ ମିଳୁଥିଲା । ପୁଣି ଅତର, ଏସେନସ୍, ବାସନାତେଲ ମଧ ମିଳୁଥିଲା । ବାସନା ସାବୁନ ଦଶହରା ବେଳକୁ କିଣା ହେବାର ମୋର ସେତେ ମନେ ପଡୁନାହିଁ । କାରଣ ସେତେବେଳେ ଆମ ଘରେ କାହାରି ସାବୁନ ଲଗେଇବା ଅଭ୍ୟାସ ନଥିଲା । ବାସନା ତେଲ ମଧ୍ୟରେ ସେତେବେଳେ ନାମ ଡ଼ାକ ଥିଲା, ଲକ୍ଷ୍ମୀବିଳାସ, କେଶରଂଜନ, ଜବାକୁସୁମ । ସେତେବେଳେ ମାଇପିମାନଙ୍କର କାଚ ଚୁଡ଼ି ଅନେକ ରଙ୍ଗମର । କିନ୍ତୁ ପରେ ଆସିଲା ରେଶମୀ ଚୁଡ଼ି ।

ମୋର ପ୍ୟାଣ୍ଟ, କୋଟ୍, ଟୋପି, ମୋଜା, ଜୋତା ସବୁ ରଙ୍ଗିନ, ଜରି ଆଉ କାଚ ମାଳିଦିଆ କାରୁକାର୍ଯ୍ୟ ଭରା । ପ୍ୟାଣ୍ଟ, କୋଟ୍, ଜୋତା, ଟୋପି ସବୁ ମଖମଲର । ମୋ ପାଇଁ ଏସେନସ୍ ଆଉ ରୁମାଲ କିଣା ହେଉଥିଲା । ମୋର କିଣା ସରିଲେ, ବାବା, ମା, ବଡ଼ଭାଇ, ଚାକର, ଚାକରାଣୀ, ପୂଜାରୀ, ଗାଁର ଧୋବା, ଭଣ୍ଡାରୀ, ରଇତ, ବେଠିଆ, ବେପାରୀ ସମସ୍ତଙ୍କ ପାଇଁ ଲୁଗାପଟା କିଣା ହେଉଥିଲା । ତା'ଛଡ଼ା ବାବା, ମା'ଙ୍କର କେନ୍ଦ୍ରାପଡ଼ାରେ ଏକ ଧରମ ଝିଅ ଥିଲା । ତା'ପାଇଁ ଏକ ମସ୍ତବଡ଼ ଶାଢ଼ୀ କିଣା ହେଉଥିଲା । ସେ ଶାଢି ରଙ୍ଗୀନ, ଫୁଲ ପକା । ସେ ଶାଢ଼ି ଦେଖିଲେ ମନେହୁଏ ଯେମିତି ବିମଳା କି ଶାରଳାଙ୍କୁ ମାନସିକ କରି ଦେବା ଭଳି ଶାଢ଼ି । ମୋଟାମୋଟି ଗୋଟାଏ ବସ୍ତା ଲୁଗାପଟା କିଣା ହେଉଥିଲା । ବର୍ଷେ ବର୍ଷେ ମୁଁ ଦେଖିଛି, ଦଶହରା ସଉଦା କିଣା ହେଉ ହେଉ ରାତି ପାହିଯାଏ ।

ସେତେବେଳେ ଆମ ଗାଁକୁ ଯିବା ପାଇଁ ଯୋବ୍ରା ନିକଟରୁ ଷ୍ଟିମର୍ ଚାଲୁଥିଲା । ସେତେବେଳେ ଲୋକେ ଷ୍ଟିମର୍‌କୁ "ଧୂଆଁ କଳ" ବୋଲି କହୁଥିଲେ । କେତେକ 'ଷ୍ଟିମର୍' କହୁଥିଲେ । ବର୍ଷେ ବର୍ଷେ ଆମେ ଗାଁକୁ ଷ୍ଟିମର୍‌ରେ ଯାଉଥିଲୁ । ପ୍ରତ୍ୟେକ ବର୍ଷ ଦଶହରାରେ ଗାଁକୁ ଯିବା ପାଇଁ କି ଭିଡ଼ । କି ଠେଲା ପେଲା । ଧକ୍କା ଧକ୍କି । କାଣ୍ଠିଆରେ, କପିଳାରେ, ବାଜିଆରେ କୋଉଠି ବସିବୁ ? ଚାଲିଆ କିଛି ଭୟ କରନା ।

କିଛି ସମୟ ପରେ ଷ୍ଟିମର୍ ଛାଡ଼ିବାର ସଙ୍କେତ ସ୍ୱରୂପ ହୁଇସିଲ୍ ଦେଲେ, ଲୋକେ ଆହୁରି ଅଧୈର୍ଯ୍ୟ ହେଇ ଦୌଡ଼ାଦୌଡ଼ି ଡ଼କାଡ଼କି, ପାଟିତୁଣ୍ଡ, ହଟ୍ଟଗୋଳ, କି ଭିଡ଼ ! । ଷ୍ଟିମର୍‌ର ଇଞ୍ଜିନ୍ ଅଂଶଟା ଆଗେ ଆଗେ ଯାଏ । ସେ ବେଶ୍ ଗୋଟିଏ ଛୋଟ ଧରଣର ଜାହାଜ ପରି

ଉପରେ ଚିମ୍ନି । ସେଇ ଇଞ୍ଜିନ୍ ଅଂଶରେ ଷ୍ଟିମରର କର୍ମଚାରୀମାନେ କାମ କରୁଥାନ୍ତି । ଅଧିକାଂଶ ମୁସଲମାନ କର୍ମଚାରୀ ଆଉ ପଛରେ ଗୋଟିଏ ଛୋଟକାଟର ଜାହାଜ ପରି ଲାଗିଥାଏ । ସେଥିରେ ଇଞ୍ଜିନ୍ ନଥାଏ । କେବଳ ଯାତ୍ରୀମାନଙ୍କ ବସିବା ପାଇଁ ତା'ରି ଅଳ୍ପ ଦୂରରେ ସାମନାରେ ଯାଉଥିବା ଇଞ୍ଜିନ୍ ଥିବା ଷ୍ଟିମର୍ ପଛ ପଟୁ ମୋଟା ଦଉଡ଼ି ବନ୍ଧା ହେଇ ଟଣା ହେଇ ଚାଲିଥାଏ । ଷ୍ଟିମରର ଏହି ଯାତ୍ରୀବାହୀ ଅଂଶକୁ ଲୋକେ "ବଜରା" ବୋଲି କହନ୍ତି । ସେଥିରେ ଫାଷ୍ଟ କ୍ଲାସ, ସେକେଣ୍ଡ୍ କ୍ଲାସ, କ୍ୟାବିନ ଆଉ ମାଇପିମାନଙ୍କ ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା ଥାଏ । ବଜରାରେ ଏତେ ଲୋକ, ଏତେ ଜିନିଷପତ୍ର ଲଦା ହେଇଥାଏ ଯେ ପାଦ ପକେଇବାକୁ ଜାଗା ନଥାଏ କିନ୍ତୁ ଯେତେ ଅସୁବିଧା ହେଲେ ମଧ୍ୟ ଥରେ ଷ୍ଟିମର୍‌ରେ ଉଠି ବସି ପାରିଲେ, ଷ୍ଟିମର୍ ହୁଇସିଲ ଦେଇ ଯୋବ୍ରା ଘାଟ ଛାଡ଼ିଲେ କି ଆନନ୍ଦ! ସମସ୍ତେ ଦଶହରାରେ ଗାଁକୁ ଯାଉଛନ୍ତି । ସମସ୍ତଙ୍କ ମନରେ ଆନନ୍ଦ, ସାମନାରେ ଦୁର୍ଗା ପୂଜା । ସମସ୍ତେ ସାଙ୍ଗରେ କିଛି କିଛି ପାଥେୟ ଧରି ଚାଲିଛନ୍ତି । କିଏ ଦଳେ ସାଙ୍ଗ ହେଇ ଯାଉଛନ୍ତି, କିଏ ଏକା ଏକା ଯାଉଛି । କିଏ ସପରିବାରରେ ଯାଉଛନ୍ତି । ଆମେମାନେ ସେତେବେଳେ ଥୋରିଆସାହିରୁ ବଗି ଗାଡ଼ି କିମ୍ବା ଶଗଡ଼ରେ ଯୋବ୍ରା ଘାଟକୁ ଷ୍ଟିମର୍ ଧରିବା ପାଇଁ ଯାଉଥିଲୁ ।

ଦଶହରାର ଜିନିଷ ପତ୍ର ସବୁ ଶଗଡ଼ରେ ବୋଝେଇ ହେଇ ଯାଉଥିଲା । ଆମେମାନେ ବହୁ କଷ୍ଟରେ ଷ୍ଟିମର୍‌ରେ ବସୁଥିଲୁ । ବର୍ଷେ ମୋର ମନେ ଅଛି ଯାତ୍ରୀଙ୍କ ଭିଡ଼ରେ, ଠେଲାପେଲାରେ ଆମର କେତେଗୁଡ଼ାଏ ଜିନିଷ ନଈରେ ଖସିପଡ଼ିଲା । ସେତେବେଳକୁ ଷ୍ଟିମର୍ ହୁଇସିଲ୍ ଦେଇ ଯୋବ୍ରାଘାଟ ଛାଡ଼ିବା ଉପରେ । ଆମର ଯାହା ଜିନିଷ ନଈରେ ପଡ଼ିଗଲା, ସେଥିମଧ୍ୟରେ ଆମର ଗୋଟିଏ ଜଳଖିଆ ହାଣ୍ଡି ଖସି ପଡ଼ିଲା । ସେ ଜଳଖିଆ ହାଣ୍ଡିରେ ମଇଦା ପୁରି ଆଉ ମୋହନଭୋଗ ଥାଏ । ସେ ହାଣ୍ଡି ଉପରେ କନା ବନ୍ଧା ହେଇଥିଲା । ଜିନିଷ ପଡ଼ି ଯିବାର ଦେଖି ଆମ ସାଙ୍ଗରେ ଗୋଟିଏ ଛୋଟ ପୂଜାରୀ ଟୋକ ଥିଲା, ତା'ର ନାମ ଲୋକା । ସେ ଜିନିଷଗୁଡ଼ିକ ପାଣିରୁ ଉଠେଇ ଆଣିବା ପାଇଁ ନଈକୁ ଡ଼େଇଁ ପଡ଼ିଲା । ତା'ର ପାଣିକୁ ଡ଼େଇଁ ପଡ଼ିବାର ଦେଖି ଷ୍ଟିମରର ଇଞ୍ଜିନ ଅଂଶଟା ଷ୍ଟାର୍ଟ ବନ୍ଦ କରିଦେଲା । ସେ ଇଞ୍ଜିନ୍ ଅଂଶରୁ ମଧ୍ୟ କେତେକ ମୁସଲମାନ୍ କର୍ମଚାରୀ ପାଣିକି ଡ଼େଇଁ ପଡ଼ି ସେ ଜଳଖିଆ ହାଣ୍ଡିକୁ ନେଇଗଲେ । ପୂଜାରୀ କେତେକ ଜିନିଷ ପାଣିରୁ ଉଦ୍ଧାର କରି ଆଣି ପୁଣି ବଜରାରେ ଉଠିଲା । ସେ ଜଳଖିଆ ହାଣ୍ଡି ଆଉ ଆଣି ପାରିଲା ନାହିଁ । ସେ ଜଳଖିଆ ହାଣ୍ଡିଟି ଆମ ସାଙ୍ଗରେ ନିଆ ହଉଥିଲା ଆମେ ବାଟରେ ଜଳଖିଆ କରିବା ପାଇଁ ।

ମହାନଦୀରେ ଷ୍ଟିମର ଛାଡ଼ିଲେ କି ଆନନ୍ଦ ଲାଗେ! ଇଆଡ଼େ କଟକ ଟାଉନ୍ ଦୂରେଇ ଦୂରେଇ କ୍ରମଶଃ ଅଦୃଶ୍ୟ ହେଇଯାଏ । ଜଗତପୁର ଲକ୍ କ୍ରମଶଃ ନିକଟ ହେଇ ଆସେ । ଶେଷରେ ଷ୍ଟିମର୍ ଧୀରେ ଧୀରେ ଜଗତ୍‌ପୁର ଲକ୍ ଭିତର ଦେଇ କେନ୍ଦ୍ରାପଡ଼ା କେନାଲ୍‌ରେ ପ୍ରବେଶ କରେ । ଲକ୍ ଭିତରେ ଷ୍ଟିମର୍ ପଶିଲେ, ତା'ର ଦୁଇ ପାଖର କବାଟ ବନ୍ଦ ହେଇଯାଏ । ଷ୍ଟିମର୍ କ୍ରମଶଃ ତଳକୁ ତଳ ଖସି ଖସି ଯାଏ । ଏତେବେଳେ ଶ୍ୱାସରୋଧ ହେଇଯାଏ । ଷ୍ଟିମର୍‌ର ଦୁଇ ପାଖରେ ଦୁଇଟା ବଡ଼ ପଥରର ଗାନ୍ଥୁଣି ପାଚେରୀ । ସେଥିରେ ଶିଉଳି ଲାଗିଥାଏ । ମୁଁ ଭୟରେ ଅସ୍ଥିର ହେଇପଡ଼େ । ପୁଣି କ୍ରମଶଃ ଷ୍ଟିମର୍ ଉପରକୁ ଉପରକୁ ଉଠେ । ସେତେବେଳେ ମୋର ଭୟ ଛାଡ଼ିଯାଏ । ଷ୍ଟିମର ଉପରକୁ ଉଠିଲେ ଲକ୍‌ର ଉଭୟ ପାର୍ଶ୍ୱରେ ଲକ୍ କର୍ମଚାରୀମାନଙ୍କ ଘର, ବଗିଚା ଇତ୍ୟାଦି ଦେଖାଯାଏ । କେତେକ ବୁଲାବିକାଳୀ ଯାତ୍ରୀମାନଙ୍କୁ ଖାଇବା ଜିନିଷ ବିକିବା ପାଇଁ ଲକ୍‌ର ଉଭୟ ପାର୍ଶ୍ୱରେ ଡ଼ାକ ଛାଡ଼ନ୍ତି, ମୁଢ଼ି, ବରା, କାକରା, ଉଖୁଡ଼ା ଇତ୍ୟାଦି ।

କିଛି ସମୟ ପରେ ଲକ୍‌ର କବାଟ ଖୋଲା ହେଲେ ଷ୍ଟିମର୍ ଲକ୍ ଭିତରୁ ବାହାରି କେନାଲ୍‌ରେ ଯାତ୍ରା ଆରମ୍ଭ କରେ । କେନାଲ୍‌ରେ ଷ୍ଟିମର୍ ଗଲାବେଳେ କେନାଲ୍‌ର ଉଭୟ ପାର୍ଶ୍ୱର ଧାନକ୍ଷେତ, କଳିତ୍ରା କ୍ଷେତ, ଜନବସତିର ଶୋଭା କି ଆନନ୍ଦଦାୟକ! ସେ କଥା ଲେଖି ବୁଝେଇ ହବନି । ଯେ ଦେଖିବ ସେ ବୁଝି ପାରିବ । କେନାଲ୍‌ର ଉଭୟ ପାଖର ବନ୍ଧ ଉପରେ ପିଠିରେ

ବୁଜୁଳା ଲଦି, ଛତା ଧରି ଲୋକେ ଚାଲିଛନ୍ତି । ବୋହୂ, ଝିଅ ଗାଧୋଉଛନ୍ତି । କିଏ କଳସୀରେ ପାଣି ନେଇ ଘରକୁ ଫେରୁଛି, ବନ୍ଧ ଉପରେ ଭାର ହାଣ୍ଡି କାନ୍ଧେଇ କିଏ ଚାଲିଛି । ଷ୍ଟିମର୍ ଆସିବାର ଶବ୍ଦ ଶୁଣି କେନାଲ ନିକଟବର୍ତ୍ତୀ ବସ୍ତି ଭିତରୁ ଲୋକେ ଆସି କେନାଲ ବନ୍ଧ ଉପରେ ଦଳ ବାନ୍ଧି ଠିଆ ହେଉଛନ୍ତି ଷ୍ଟିମର୍‌କୁ ଦେଖିବା ପାଇଁ । ଛୋଟ ଛୋଟ ପିଲାଏ ଷ୍ଟିମର୍‌କୁ ଦେଖି ବାର ରକମର ଥଟ୍ଟା ପରିହାସ କରୁଛନ୍ତି । ଖୁସିରେ କୁଦୁଛନ୍ତି । କିଏ ବସି କେନାଲ କୂଳରେ ବନ୍‌ସୀରେ ମାଛ ମାରୁଛି ।

ଜାଗା ଜାଗା ଯାତ୍ରୀଙ୍କର ଓଲେହିବା ଉଠିବା ଲାଗିଛି । ଷ୍ଟିମର୍ ଅଟକୁଛି । ଗୋଟିଏ ଗାଁ ପଡ଼ିଲେ ଷ୍ଟିମର୍ ବହୁତ ଦୂରରୁ ହୁଇସିଲ୍ ଦିଏ । ସେ ହୁଇସିଲ୍ ଶବ୍ଦ ଶୁଣି ଯା'ର ଷ୍ଟିମର୍‌ରେ ଯିବାର ଥାଏ, ସେମାନେ ଆସି କେନାଲ୍ ବନ୍ଧରେ ଅପେକ୍ଷା କରିଥାନ୍ତି ଷ୍ଟିମର୍ ଅଟକିଲେ, ଷ୍ଟିମର୍‌ରେ ଉଠନ୍ତି, ଯା'ର ଓଲେହିବାର ସେ ଓଲେହି ଯାନ୍ତି । ଇମିତି ଜଗତ୍‌ପୁର ଲକ୍ ପରେ ଖଇରା ପୋଲ, ବାରବୋଡ଼ିଆ, କେନ୍ଦୁପାଟଣା, ଦାନପୁର ଶେଷରେ ଖଣ୍ଡ ସାହି । ଲୋକନାଥପୁର ଲକ୍ ପାରି ହୋଇ ଯାଇ ପୁବଂଶ ଘାଟରେ ଷ୍ଟିମର ପହଁଚେ । ସେତେବେଳେ ସକାଳ ୯ଟାରେ ଯୋବ୍ରା ଘାଟରେ ଷ୍ଟିମର୍‌ରେ ବସିଲେ ଦିନ ୪ଟାରେ ପୁବଂଶ ଘାଟରେ ଷ୍ଟିମର୍ ପହଁଚୁଥିଲା । ସେତେବେଳେ ଷ୍ଟିମର୍ କଟକରୁ ଅଳଭା ପର୍ଯ୍ୟନ୍ତ ଯାତାୟାତ କରୁଥିଲା ।

ଷ୍ଟିମର୍ ପୁବଂଶ ଘାଟରେ ପହଁଚିଲା ବେଳକୁ ଗାଁର ଅନେକ ଲୋକ ଆସି ପୁବଂଶ ଘାଟରେ କେନାଲ ବନ୍ଧ ଉପରେ ଠିଆ ହେଉଥାନ୍ତି ଦେଖିବା ପାଇଁ ଆଜି କିଏ କିଏ ଦଶହରାରେ ଗାଁକୁ ଆସିଲେ । ମୋର ମନେପଡୁଛି, ଷ୍ଟିମର୍ ପୁବଂଶ ଘାଟରେ ଲାଗିଲେ ଗୋଟିଏ ଅନ୍ଧ ଯୁବକ ଷ୍ଟିମର୍ ଉପରକୁ ଉଠି ଆସି ବଇଁଶୀରେ ସୁର ଦେଇ ବଜାଏ, "ଶ୍ରୀ ରାଧା ବାତୁଳି, ପ୍ରେମ ରସାତୁଳି" ଆଉ ତା'ପରେ ପରେ ଯାତ୍ରୀମାନଙ୍କୁ ଭିକ୍ଷା ମାଗେ, 'ବାବୁମାନେ ଅନ୍ଧକୁ କିଛି ମିଳି ଯାଉ ।'

ଯାତ୍ରୀମାନେ ଯେ ଯା'ର ଶକ୍ତି ଅନୁଯାୟୀ ଅନ୍ଧକୁ କିଛି କିଛି ପଇସା ଦିଅନ୍ତି । ଅନ୍ଧର ସେ ବଂଶୀ ବାଦନ ମୋତେ ଭାରି ଭଲ ଲାଗେ, ଆହୁରି ଶୁଣିବାକୁ ଇଚ୍ଛା ହୁଏ । କିନ୍ତୁ ଷ୍ଟିମର୍ ଯେତିକି ସମୟ ରହେ, ସେତିକି ଶୁଣିପାରେ, ତା'ପରେ ଅନ୍ଧ ଯୁବକ ଆସ୍ତେ ଆସ୍ତେ ଷ୍ଟିମର୍‌ରୁ ଓଲେହି ଆସେ । ଆମେମାନେ ଓଲେହି ଆସୁ, ଜିନିଷପତ୍ର ସବୁ ଓଲେହି ଦିଆ ହୁଏ । ଅନେକ ଯାତ୍ରୀ ଓଲେହି ଯାନ୍ତି । ଆମର ଆଗରୁ ଗାଁକୁ ବୁଢ଼ୀମା'ଙ୍କ ପାଖକୁ ଚିଠି ଦିଆ ହେଉଥାଏ କୋଉଦିନ ଆମେ ଯାଇ ଗାଁରେ ପହଁଚିବୁ । ବୁଢ଼ୀ ମା' ଠିକ୍ ସମୟ ଅନୁଯାୟୀ ଆମର ଋଇତଙ୍କ ଭିତରୁ କେତେଜଣଙ୍କୁ ପଠେଇଥାନ୍ତି । ସେମାନେ ଭାର କରି ଜିନିଷ ପତ୍ର ବୋହିବାରେ ଲାଗନ୍ତି । ବାବା, ମା ଏମାନେ କେନାଲ୍ ବନ୍ଧେ ବନ୍ଧେ ଚାଲି ଚାଲି ଆସି ଆମ ଗାଁର ଗାଧୁଆ ତୁଠରୁ ଆମ ଗାଁ ଭିତରକୁ ଆସନ୍ତି । ପୁବଂଶ ଘାଟରୁ ଆମ ଗାଁ ଅନେକ ଗୁରାଏ ବାଟ । ମୁଁ ଅଳ୍ପ ବାଟ ଚାଲେ ପୁଣି କାଖ ହୁଏ । ଇମିତି ଆସି ଆସି ଯେତେବେଳେ ଆମ ଗାଁ ଭିତରକୁ ଗଲୁ, ମୁଁ ଦେଖୁଛି ଗାଁ ରାସ୍ତାର ଉଭୟ ପାଖର ସିଜୁବାଡ଼ ସବୁ ହଣା ହୋଇ ରାସ୍ତା ଚଉଡ଼ା କରା ହେଉଥାଏ, ପରିଷ୍କାର ପରିଚ୍ଛନ୍ନ ହେଉଥାଏ । କାରଣ ଦୁର୍ଗାପୂଜାରେ ଲୋକ ସମାଗମ ହବ । ବୋହୂ, ଝିଅ କେନାଲକୁ ଗାଧେଇ ଯିବେ ଏଣୁ ଗାଁର ପ୍ରତ୍ୟେକ ରାସ୍ତା ଚଉଡ଼ା, ପରିଷ୍କାର ପରିଚ୍ଛନ୍ନ କରା ହେଉଥାଏ । ଏ ସବୁ ଆଗରୁ ଗୌରୀଶଙ୍କର ରାୟ କରେଇ ଥାନ୍ତି । ତାଙ୍କର ସେତେବେଳେ ଅତି ବୃଦ୍ଧ ଅବସ୍ଥା । ସେ ଗାଁରେ ରହୁଥିଲେ । ଏଣୁ ଆଗରୁ ସବୁ ପରିଷ୍କାର ପରିଚ୍ଛନ୍ନ । ଯେଉଁଠି ଯାହା ଦୁର୍ଗାପୂଜାକୁ ଦରକାର ସବୁ କରେଇ ରଖୁଥିଲେ । ଗାଁର ଘର ସବୁ ଲିପା ପୋଛା ହୋଇ ନାନା ରକମର ଚିତା ଦିଆ ହେଉଥାଏ ।

ଗାଁରେ ଘରେ ପହଁଚିବା ମାତ୍ରେ ମୁଁ ଆଗେ ଚଣ୍ଡୀ ମଣ୍ଡପକୁ ଦଉଡ଼ି ପଳାଏ ଦେଖିବା ପାଇଁ ଦୁର୍ଗାଙ୍କର ମେଢ଼ କିମିତି ତିଆରି ହେଉଛି । କୋଉ ବର୍ଷ ଦୁର୍ଗା ମେଢ଼ ଖୋଲା ଥାଏ, କୋଉ ବର୍ଷ ଲୁଗା ଢ଼ଙ୍କା ହେଉଥାଏ । ଚଣ୍ଡୀମଣ୍ଡପର ପଛପଟେ ନହବତ କରା ହେଉଥାଏ ପୂଜାରେ ବାଜାବାଲା ତା ଉପରେ ବସି ବାଜା ବଜେଇବା ପାଇଁ । ମୁଁ ଆଗେ ଗାଁ ଚାରି ଆଡ଼େ ଖେଦି ଦେଇ ଆସେ । ସାଙ୍ଗମାନେ ଜୁଟିଯାନ୍ତି । କୁଆଡ଼େ କୁଆଡ଼େ ବୁଲୁ ବୋଲି

ବାବା, ମା'ଭାରି ଭୟ କରନ୍ତି କାଳେ କେନାଲ ଆଡ଼କୁ ପଳେଇ ଯିବି। ଏଣୁ ସମସ୍ତେ ମୋ ଉପରେ ନଜର ରଖିଥାନ୍ତି। ସାଙ୍ଗମାନଙ୍କ ମଧ୍ୟରୁ ମୋର ସବୁଠୁଁ ଗୋଟିଏ ଭଲ ସାଙ୍ଗ ଥିଲା, ମୋର ଜେଠା ପୁଅ ଭାଇ, ଭୂଷଣ ଚନ୍ଦ୍ର ରାୟ। ବଡ଼ ନୀରିହ, ଶାନ୍ତ ପ୍ରକୃତିର। ଆହୁରି ଅନେକ ସାଙ୍ଗ ଥାନ୍ତି କିନ୍ତୁ ତା'ରି ସଙ୍ଗେ ମୋର ଭାରି ମନର ମେଳ।

ଗାଁ ଲୋକରେ ଭରପୂର। ବଙ୍ଗାଳୀ ସାହି, ମହାନ୍ତି ସାହି, ବାମ୍ଭଣ ସାହି, ଗୁଡ଼ିଆ ସାହି ସବୁଠି ଲୋକ ଗହଳି। କାରଣ ଗାଁରେ ଦୁର୍ଗାପୂଜା ହବ, ଯାତ୍ରା ହବ। ଯେ ଚପରାସୀ କାମ ଖଣ୍ଡିଏ କରୁଛି ସେ ମଧ୍ୟ ବିଦେଶରୁ ଗାଁକୁ ଆସିଛି, ରଇତ, ବେଠିଆ, ବର୍ତ୍ତନିଆ ସମସ୍ତେ ଜାଗତିଆର, ଜମିଦାର, ସାଆନ୍ତେ ସବୁ ଗାଁକୁ ଆସିଛନ୍ତି। ଖାଇବା, ପିଇବା, ଲୁଗା, ଦଶହରା ବକ୍‌ସିସ୍ ସବୁ ମିଳିବ। ବର୍ଷକର ପର୍ବଟିଏ, କି ଆନନ୍ଦ, କି ଉତ୍ସାହ, କି ଜାଗରଣୀ! ସମସ୍ତେ ଖଟୁଛନ୍ତି, ଅବସାଦ ନାହିଁ, ବିରକ୍ତି ନାହିଁ। ଚଣ୍ଡୀ ମଣ୍ଡପରେ ଚୂନ ଦିଆ ହେଇ, ରଙ୍ଗ ଲଗା ହେଇ ଚକ୍ ଚକ୍ ହେଇଛି।

ଦୁର୍ଗା ମେଢ଼, କଟକର ଦୁର୍ଗା ମେଢ଼ ସହିତରେ ସମକକ୍ଷ, ସେମିତି କାରିଗରୀ, ସେମିତି ସାଜସଜ୍ଜା। ଚଣ୍ଡୀମଣ୍ଡପ ଝଲ୍‌ମଲ୍ ଦଶୁଛି। ମେଢ଼ ସାମନାରେ ଗୋଟିଏ ଝାଡ଼ ଟଙ୍ଗା ହେଇଥାଏ। ସେ ଚଣ୍ଡୀମଣ୍ଡପର ଶୋଭା ଆହୁରି ବଢ଼େଇ ଦିଏ। ଚଣ୍ଡୀମଣ୍ଡପର ସାମନାରେ ଯେଉଁ ଚାରିକୋଣିଆ ଓସାରିଆ ଜାଗା, ସେଇଠି ଦୁର୍ଗା ପୂଜାର ଚାରିଦିନ ଯାକ ରାତିରେ ଯାତ୍ରା ହୁଏ। ସେଇ ଚାରିକୋଣିଆ ଜାଗାର ପୂର୍ବ ପଟେ ଆମ ଘର, ପଶ୍ଚିମ ପଟେ ମାଧବଜୀଉ ଠାକୁରଙ୍କ ମନ୍ଦିର। ଦକ୍ଷିଣପଟେ ଗୌରୀଶଙ୍କର ରାୟଙ୍କ କୋଠା, ଉତ୍ତରରେ ଚଣ୍ଡୀମଣ୍ଡପ। ସେଇ ଚାରିକୋଣିଆ ଜାଗା ଉପରେ ଅନେକଗୁଡ଼ିଏ ଖୁଣ୍ଟ ପୋତା ହେଇ ପ୍ରକାଣ୍ଡ ରଙ୍ଗୀନ ଚାନ୍ଦୁଆ ଟଙ୍ଗା ହୁଏ। ସେଇ ଚାନ୍ଦୁଆ ତଳେ ପୁଣି ବଡ଼ ବଡ଼ କାଚର ରଙ୍ଗୀନ୍ ବେଲୁନ୍ ସବୁ ଝୁଲା ହୁଏ। ପ୍ରତ୍ୟେକ ଖୁଣ୍ଟରେ ପୁରୁଣା କାଳିଆ ବଡ଼ ବଡ଼ ଲ୍ୟାମ୍ପ ସବୁ ବନ୍ଧା ହୁଏ। ତା'ଛଡ଼ା କଟକରୁ ଅନେକଗୁଡ଼ାଏ ଫଟ ଲାଇଟ୍ ସବୁ ଯାଇଥାଏ। ସେ ସବୁ ମଧ୍ୟ ଜଳେ। ତଳେ ବସିବା ପାଇଁ ଅନେକ ହେଁସ ପରା ହେଇ ତା' ଉପରେ ବଡ଼ କେରପାଲ୍ ବିଛା ହେଲା ପରେ, ମାଧବଜୀଉଙ୍କ ମନ୍ଦିରର ଅଳ୍ପ ଦୂରରେ ଗାଲିଚା ପରା ହୁଏ। ତା'ଉପରେ ବଡ଼ ବଡ଼ ତକିଆ ଥୁଆ ହୁଏ। ସେଠି ଗ୍ରାମର ମୁରବୀମାନେ ବସନ୍ତି। ଗୌରୀଶଙ୍କର ରାୟଙ୍କୁ ରାତିରେ ବସି ଯାତ୍ରା ଦେଖିବା ମୋର ମନେପଡୁ ନାହିଁ। କିନ୍ତୁ ରାମଶଙ୍କର ରାୟ, ମୋର ବାବା, ଜେଠା, ଗ୍ରାମର ଅନ୍ୟାନ୍ୟ ଆତ୍ମୀୟସ୍ୱଜନ ମୁରବୀ ଶ୍ରେଣୀର ଲୋକମାନେ ବସିବାର ମୁଁ ଦେଖିଛି। ଆମେ ପିଲାମାନେ ତାଙ୍କ ସାମନାରେ ବସି ରାତିସାରା ଯାତ୍ରା ଦେଖୁ। ଏ ହେଲା ଆମ ଗାଁର ଦୁର୍ଗାପୂଜାରେ ଚାରି ରାତିରେ ଯାତ୍ରା ହବାର ମଜଲିସି।

ଆମେ ପ୍ରାୟ କଟକରୁ ଚତୁର୍ଥୀ ପଞ୍ଚମୀ କିମ୍ବା ଖୁବ୍ ଡ଼େରି ହେଲେ ଷଷ୍ଠୀ ଦିନ ଯାଇ ପହଁଚୁ। ଘରେ ଜିନିଷ ପତ୍ର ସବୁ ଭର୍ତ୍ତି ହେଇଥାଏ। ନୂଆ ଲୁଗାର ବାସନା, ଅନ୍ୟାନ୍ୟ ଜିନଷର ବାସନାରେ ଘର ଭରିଯାଏ। ରଇତ, ବେଠିଆ ବେପାରୀ ସମସ୍ତେ ଯିବା ଆସିବାରେ ଘର ଆନନ୍ଦରେ ଭରପୂର। ଷଷ୍ଠୀର ରାତି ପାହିଲେ ସପ୍ତମୀ ପୂଜା। ଦୁର୍ଗାଙ୍କର ଚକ୍ଷୁଦାନ। ଖାଲି ମନହୁଏ, ଷଷ୍ଠୀର ରାତିଟା କେମିତି ପାହିବ। ବେଶି ଲୋଭ ନୂଆ ଜାମା ପ୍ୟାଣ୍ଟ୍ କେମିତି ପିନ୍ଧିବି। ଷଷ୍ଠୀଦିନ ରାତିରେ ପ୍ରାୟ ଗ୍ରାମର ଅଧିକାଂଶ ଘରେ ଲୋକେ ଶୁଅନ୍ତି ନାହିଁ। ରାତି ପାହିଲେ ଠାକୁରାଣୀଙ୍କ ଚକ୍ଷୁଦାନ ହବ। ଚଣ୍ଡୀମଣ୍ଡପରେ ଦୁର୍ଗାଙ୍କର ମେଢ଼ର ସବୁ କାମ ପ୍ରାୟ ସରି ଯାଇଥାଏ। ଚଣ୍ଡୀମଣ୍ଡପରେ ରାତିସାରା ଆଲୁଅ ଜଳୁଥାଏ, ଲୋକେ ଜଗିଥାନ୍ତି। ଆମ ଗାଁର ଦୁର୍ଗାପୂଜା ଠିକ୍ ନିୟମ ଅନୁଯାୟୀ ଘଡ଼ି ଘଣ୍ଟା ଧରି ବିଧି ବିଧାନ ମାନ ହଉଥିଲା। ଟିକିଏ କୋଉ କାମରେ ହେଳା ହବ ନାହିଁ। ଡ଼େରି ହବ ନାହିଁ। ଷଷ୍ଠୀର ରାତି ପାହିବା ଆଗରୁ ନହବତରେ ବାଜାବାଲାଏ ଯୋଡ଼ି ମହୁରୀ, ନାଗରା ବଜେଇ ସପ୍ତମୀ ପ୍ରଭାତର ଆଗମନୀର ସ୍ୱର ଧରନ୍ତି। ଗାଁ ଚମକି ଉଠେ, ହସି ଉଠେ। ବାବା ମୋତେ ଏବଂ ମୋର ସାନ ଭଉଣୀକୁ ଉଠେଇ ଦିଅନ୍ତି। ଆମେ ଉଠି ପଡୁ। କି ସୁନ୍ଦର ବାଜା! ଗାଁର ପରିସ୍ଥିତି କ'ଣ ଲାଗେ! କି ଆନନ୍ଦର ଦିନ ସେ।

ସପ୍ତମୀର ପ୍ରତ୍ୟୁଷ, ଚକ୍ଷୁଦାନ ପୂର୍ବରୁ ଆମେ ପିଲାଏ ଏବଂ ମୁରବୀମାନେ ସମସ୍ତେ ନିଜର ଗାଧୁଆ କାମ ସାରି ନୂଆ ଲୁଗା, ଜାମା ଇତ୍ୟାଦି ପିନ୍ଧି ଚକ୍ଷୁଦାନ ବେଳକୁ ଚଣ୍ଡୀମଣ୍ଡପରେ ସମସ୍ତେ ଉପସ୍ଥିତ ରହିବୁ । ଏଣୁ ଗ୍ରାମର ବୋହୂ ଝିଅଠାରୁ ଆରମ୍ଭ କରି ସମସ୍ତେ କେନାଲକୁ ଗାଧେଇବା ପାଇଁ ବାହାରିଯାନ୍ତି ।

ବାବା କଟକରୁ ଯାଇଥିବା ବାସନା ତେଲ ବୋତଲ ଖୋଲି ଦିଅନ୍ତି । ବାବା, ମା, ଆମେ ପିଲାଏ ସମସ୍ତେ ବାସନାତେଲ ଲଗଉ । କେବଳ ବୁଢ଼ୀମା'ଙ୍କୁ ଛାଡ଼ି ଆମ ଘରର ଚାକର, ପୂଜାରୀକୁ ଛାଡ଼ି । ମୋର ମନେ ଅଛି ମୋତେ ଆମ ରଇତ ଗୁଡ଼ିଆ ଘରର ସଧବା ବୁଢ଼ୀ ଜଣେ ତେଲ ଲଗେଇ ଦିଏ । ବୁଢ଼ୀକୁ ଡ଼ାକନ୍ତି, ବାରିଣିଆ ମା । ମୁଁ ତେଲ ଲଗେଇ ସାରିଲେ ବାବା ମୋତେ କାଖେଇ କେନାଲକୁ ନେଇଯାନ୍ତି । କେନାଲର ଗାଧୁଆ ତୁଠରେ ସେ ଦିନ କି ଭିଡ଼ । କି ଗହଳି । ଆମ ଗାଁର ଗାଧୁଆ ତୁଠ ଦି'ଟା, ଗୋଟିଏ ପୁରୁଷଙ୍କ ପାଇଁ, ଅନ୍ୟଟି ସ୍ତ୍ରୀ ଲୋକଙ୍କ ପାଇଁ । ଦୁଇଟି ଯାକ ତୁଠ ପଥରରେ ତିଆରି । ପଥର ପାହାଚ । ମୋର ମନେ ପଡୁଛି, ସେ ତୁଠର ପଥର ପାହାଚରେ ଲେଖାଥାଏ ବଙ୍ଗଳାରେ "ବିଷ୍ଣୁ ଚରଣ ଦେ" । ସେ ଏଇ ତୁଠ ସବୁ ତିଆରି କରିଥିଲେ । ଏବେ ତ ଦେଖିଲି, ସିମେଣ୍ଟ ପାହାଚ ହେଲାଣି । ସେ ମାଙ୍କଡ଼ା ପଥର ପାହାଚର ରୂପ ବଦଳି ଗଲାଣି । ଗାଁ ଲୋକଙ୍କଠୁ ପଚାରି ବୁଝିଲି ଯେ ଭୋଟ ବେଳେ ସିମେଣ୍ଟ ପାହାଚ କରେଇ ନେଇଛନ୍ତି ।

ସପ୍ତମୀ ପୂଜାଦିନ ଚକ୍ଷୁଦାନ ପୂର୍ବରୁ ସେଇ ଦୀକ୍ଷିତପଡ଼ା ଗାଧୁଆ ତୁଠରୁ କେନାଲ ପାଣିରେ ଯେତେ ବାସନା ତେଲ ଭାସିଯାଏ, ତା'ର ଗନ୍ଧ ଅତି ଦୂରକୁ ମଧ୍ୟ ଜଣା ଯାଉଥିବ । କେନାଲ୍‌ରେ ଗାଧୁଆ ସାରି ଘରକୁ ଫେରିଲେ ବାବା ଆମର ପୋଷାକପତ୍ର, ଲୁଗାପଟା ସବୁ ବାହାର କରନ୍ତି । ମୋ ଲାଗି ଜାମା, ପ୍ୟାଣ୍ଟ, ଟୋପି ଯାହା ଆସିଥାଏ ପିନ୍ଧେଇ ଦିଅନ୍ତି । ଶେଷରେ ରୁମାଲରେ ଏସେନସ୍ ଢ଼ାଳି ପକେଟ୍‌ରେ ଗୁଞ୍ଜି ଦିଅନ୍ତି । ପୁରାପୁରି ଦଶହରା ବେଶ । ବାବା, ମା, ବୁଢ଼ୀ ମା, ଚାକର ଇତ୍ୟାଦି ସମସ୍ତେ ନୂଆ ଧୋତି, ଶାଢ଼ି ପିନ୍ଧନ୍ତି । ଆମ ଗାଁର ସମସ୍ତେ ନୂଆ ଲୁଗାପଟା ପିନ୍ଧି ଗୋଟିଏ ପୋଖରୀ କୂଳରେ ରୁଣ୍ଡ ହୁଅନ୍ତି । ପୋଖରୀର ନାଁ "କଣ୍ଡିଆ" । ସେଇଠୁଁ ଠାକୁରାଣୀଙ୍କୁ ଅଣା ହୁଏ । ପୁରୋହିତ, ଗ୍ରାମବାସୀଏ ସମସ୍ତେ ସେହିଠି ଉପସ୍ଥିତ ହେଇ ପୂଜା କରି ଗୋଟିଏ କଦଳୀ ଗଛକୁ ହଳଦିଆ ଶାଢ଼ିରେ ଗୁରେଇ ଗୋଟିଏ ବାଉଁଶ ସାହାଯ୍ୟରେ କାନ୍ଧେଇ ଚଣ୍ଡୀମଣ୍ଡପକୁ ଆଣନ୍ତି । ଏ ପୂଜାପାଠି ପୋଖରୀର ପାଣିରେ ପଶି କରିବାକୁ ହୁଏ ।

ବର୍ଷେ ମୋର ମନେ ଅଛି କଣ୍ଡିଆ ପୋଖରୀ କୂଳରେ ଗ୍ରାମବାସୀଏ ସମସ୍ତେ ଠିଆ ହେଇଛନ୍ତି, ତାଙ୍କ ମଧ୍ୟରେ ଗୌରୀଶଙ୍କର ରାୟ ଠିଆ ହେଇଛନ୍ତି । ସେତେବେଳକୁ ସେ ନଇଁ ପଡ଼ିଲେଣି । ଗୁଡ଼ାଖୁ ଟାଣୁଥାନ୍ତି, ମୁଣ୍ଡ ଉପରେ ଅନ୍ୟ ଜଣେ ଛତା ଧରିଥାଏ । ବାବା ମୋତେ ପୁରାପୁରି ପ୍ୟାଣ୍ଟ, ଜାମା, ଟୋପି, ମୋଜା, ଜୋତା ପିନ୍ଧେଇ, ଏସେନସ୍ ଲଗା ରୁମାଲ ପକେଟରେ ଗୁଞ୍ଜିଦେଇ ନିଜେ କାଖେଇ ନେଇ କଣ୍ଡିଆ ପୋଖରୀ କୂଳରେ ଓଲେହି ଦେଇ କହିଲେ ଯା, ଜେଠାଙ୍କୁ ନମସ୍କାର କରି ଆ ।

ମୁଁ ବାବାଙ୍କ କଥା ମାନି ଯାଇ ଗୌରୀଶଙ୍କର ରାୟଙ୍କ ଗୋଡ଼ ତଳେ ମୁଣ୍ଡ ଲଗେଇ ନମସ୍କାର କଲି । ଗୌରୀଶଙ୍କର ରାୟ ମୋତେ ଦେଖି ପାଖରେ ଠିଆ ହେଇଥିବା ଅନ୍ୟ ଜଣେ କାହାକୁ ପଚାରିଲେ, ଏ ସାହେବ ଛୁଆଟି କାହାରି ? ଅନ୍ୟମାନେ କହିଲେ, କନେହୀର । (ବାବାଙ୍କର ଗାଁରେ ଡ଼ାକ ନାମ ଥିଲା, କନ୍ହେଇ । ସାଙ୍ଗସାଥୀମାନେ କନ୍ହେଇ ବୋଲି ଡ଼ାକୁଥିଲେ ଆଉ କେତେକ କନ୍ହେଇ ବାବୁ ମଧ୍ୟ ଡ଼ାକୁଥିଲେ । ବୁଢ଼ୀ ମା ବାବାଙ୍କୁ ଶ୍ରଦ୍ଧାରେ 'କନ୍ହେଇ' ବୋଲି ଡ଼ାକୁଥିଲେ ।) ଗୌରୀଶଙ୍କର ରାୟ କହିଲେ ତାକୁ ଟିକିଏ ଡ଼ାକି ଦିଅ ତ । ବଡ଼ଭାଇ ଗୌରୀଶଙ୍କର ରାୟ ଡ଼ାକିଛନ୍ତି, ବାବା ବିଚଳିତ ହେଇ ପଡ଼ିଲେ, କାହିଁକି ? କ'ଣ ହେଲା ? ବାବା ଯାଇ ଗୌରୀଶଙ୍କର ରାୟଙ୍କ ପାଖରେ ଶଙ୍କିତ ହେଇ ଠିଆ ହେଲେ । ଗୌରୀଶଙ୍କର ରାୟ ମୋତେ ଦେଖେଇ ବାବାଙ୍କୁ କହିଲେ, ଯାକୁ ଯେ ଆଜିଠୁଁ ଇମିତି ସଜଉଛୁ, ଯାର

ଭବିଷ୍ୟତ କ'ଣ ହବ? ଆମର କ'ଣ ଦେଶୀ ପୋଷାକ ନାହିଁ? ବାବା ନିରବରେ ମୋତେ ନେଇ ଫେରି ଆସିଲେ।

ବଡ଼ ଭାଇ ଯା କହିଲେ ତାକୁ ଅକ୍ଷରେ ଅକ୍ଷରେ ପାଳନ କରା ହେଲା। ତହିଁ ଆର ବର୍ଷକୁ ଆଉ ସେ ଜାକଜମକର ପୋଷାକ ନାହିଁ। କେବଳ ଧୋତି, ପଞ୍ଜାବୀ ଆଉ ଜୁତା, ଟୋପି ନାହିଁ କି ମଖମଲର ରଙ୍ଗୀନ ଜରିକାମକରା ପ୍ୟାଣ୍ଟ, ଜାମା ନାହିଁ। ଆଜିକାଲି ବଡ଼ଭାଇଙ୍କୁ କିଏ ମାନୁଛି? ବଡ଼ଭାଇ ସାମନାରେ ସିଗାରେଟ ଟାଣିଲେ ବି ଦୋଷ ନାହିଁ। ଏକାଠି ବସି ସିନେମାରେ ଅଭିନେତ୍ରୀର ରୂପ ଯୌବନକୁ ବିଭିନ୍ନ ଦୃଷ୍ଟିକୋଣରୁ ସମାଲୋଚନା କଲେ ମଧ ଦୋଷ ନାହିଁ। ସେ ସମୟ ଥିଲା ଭିନେ। ଆମ ଗାଁର ଇମିତି ଗୋଟିଏ ଧାରା ଥିଲା ଯେ ଗୁରୁଜନ ଶ୍ରେଣୀର ଲୋକଙ୍କୁ ଯେ ଯେଉଁଠି ଭେଟିବ ନମସ୍କାର କରିବାକୁ ହେଲେ ମାଟିରେ ମୁଣ୍ଡ ଲଗେଇ ନମସ୍କାର କରିବାକୁ ହବ। ସେ ଚୌଧୁରୀ ବଜାରର ସଡ଼କ ହଉ, ବାଲୁବଜାରର ରାସ୍ତା ହଉ, ଦରଘା ବଜାର ହଉ, କୋର୍ଟ କଚେରୀ ହଉ। ମୁଁ ମଧ ଆଗେ ସେମିତି ଯାକୁ ଭେଟିଛି, ମୁଣ୍ଡ ତଳେ ଲଗେଇ ନମସ୍କାର କରିଛି। ଆଜିକାଲି ତ ହାୱାଇ ଚପଲ, ହାୱାନିର ଯୁଗ, ନମସ୍କାରର ଧାରା ମଧ ସେମିତି ହାଲୁକା ଧରଣର, କୌଣସିମତେ ହାତ ଟେକି ଦେଲେ ହେଲା।

କଣ୍ଡିଆ ପୋଖରୀରୁ ସେ କଦଳୀ ଗଛଟି ମହାସମାରୋହରେ ଆସିଲା ପରେ ଦୁର୍ଗାଙ୍କର ଚକ୍ଷୁଦାନ କାର୍ଯ୍ୟ ଆରମ୍ଭ ହୁଏ। ଚକ୍ଷୁଦାନ ଯେମିତି ସରେ ଏକ ସାଙ୍ଗରେ ଅନେକ ରକମର ବାଜା, ଢ଼ୋଲ, ମହୁରୀ, କଂସାଡ଼, ଘଣ୍ଟା ଇତ୍ୟାଦି ବାଜି ଉଠେ। ଚକ୍ଷୁଦାନ ବେଳେ ଭାରି ଭୟ ଲାଗେ କାରଣ ଚକ୍ଷୁଦାନ ବେଳେ ସମସ୍ତେ ଚୁପ୍‌ଚାପ୍, ନିରବ। ଚକ୍ଷୁଦାନ ଯେମିତି ସରେ ସମସ୍ତଙ୍କ ତୁଣ୍ଡରୁ ଏକ ସାଙ୍ଗରେ "ହରିବୋଲ" ଶବ୍ଦ ଉଠେ। ଆଉ ଏକ ସାଙ୍ଗରେ ସବୁ ରକମର ବାଜା ବାଜି ଉଠେ।

ବାବା ମୋତେ ଆଗରୁ ସାବଧାନ କରି କହିଥାନ୍ତି, ଡ଼ରିବୁ ନାହିଁ। ତା'ପରେ ବିଧି ବିଧାନ ଅନୁଯାୟୀ ବିହିତ ପୂଜା ଆରମ୍ଭ ହୁଏ। ମୁଁ ସାଙ୍ଗମାନଙ୍କ ସହିତରେ କୁଆଡ଼େ କୁଆଡ଼େ ବୁଲେ, କୁଆଡ଼େ କୁଆଡ଼େ ଯାଏ ତା'ର କିଛି ଠିକ୍ ନ ଥାଏ। ବେଶି ଭାଗ କେନାଲ ଆଡ଼କୁ ଯିବା ନିଷିଦ୍ଧ। ଆମ ଗାଁର ବ୍ରାହ୍ମଣ ବସ୍ତିରେ ମଧ ଦୁର୍ଗାପୂଜା ହୁଏ। ଗୋଟିଏ ମେଢ଼ ମୁଁ ଦେଖିବାରେ କଳସ ପୂଜା ହଉଥିଲା। ଅତୀତର ଗୋଟାଏ ଦୁର୍ଘଟଣା ଯୋଗୁଁ ଦୁର୍ଗାଙ୍କର ମୂର୍ତ୍ତି ପୂଜା ବନ୍ଦ ହେଇ ଯାଇଥାଏ। ଆଉ ଗୋଟାଏ କାରଣ ଆର୍ଥିକ ଅନାଟନ। ବ୍ରାହ୍ମଣ ବସ୍ତିରେ ଚକ୍ରବର୍ତ୍ତୀ, ବନ୍ଦ୍ୟୋପାଧ୍ୟାୟ ଇତ୍ୟାଦି କୁଳୀନ ବ୍ରାହ୍ମଣ ଥିଲେ। ବହୁତ ଲୋକ ଅନେକଗୁଡ଼ିଏ ଘର, ବଡ଼ ସୁନ୍ଦର ବ୍ରାହ୍ମଣବସ୍ତି। ପ୍ୟାରୀ ମୋହନ ଆଚାର୍ଯ୍ୟଙ୍କ ଶଶୁର ଘର ଏଇ ବସ୍ତିରେ। ତାଙ୍କର ଶାଶୁଙ୍କୁ ମୁଁ ଦେଖିଛି, ସେ ଏଇ ବସ୍ତିରେ ଥିଲେ।

ମହାନ୍ତି ସାହିରେ ଗୋଟିଏ ଦିଓଟି ସରସ୍ୱତୀ ମୂର୍ତ୍ତି ପୂଜା ବେଳେ ହଉଥିଲା। ମୂର୍ତ୍ତି ସବୁ ବଡ଼ ସୁନ୍ଦର ହଉଥିଲା। ତା'ପରେ ଆମ ଗାଁର ଭଗବତୀ ଠାକୁରାଣୀ, ଏ ଗୋଟିଏ ଆମ ଗାଁର ପ୍ରଧାନ ପୂଜା ପୀଠ। ପୂଜା ଚାରିଦିନ ଏଠି ମଧ ବେଶ୍ ଆଡ଼ମ୍ବର ସହକାରେ ପୂଜା ହୁଏ। ଆଉ ଗୋଟିଏ ଜାଗା, ସେ ଜାଗାକୁ ସମସ୍ତେ "ପୋଖରୀ କୂଳ" ବୋଲି କହନ୍ତି। ଏଠି ମଧ ଗୋଟିଏ ଦୁର୍ଗା ମୂର୍ତ୍ତି ହଉଥିଲା। ସିଂହବାହିନୀ ମୂର୍ତ୍ତି। ଏଠା ଦୁର୍ଗାପୂଜା ଆର୍ଥିକ ଅନାଟନ ଯୋଗୁଁ ମଧ ବିଶେଷ ଆଡ଼ମ୍ବର ସହକାରେ ହେଇ ପାରୁ ନଥିଲା।

ଦୁର୍ଗାପୂଜା ଚାରିଦିନ ପ୍ରତ୍ୟେକ ପୂଜା ଶେଷରେ ଆମର ଚଣ୍ଡୀମଣ୍ଡପରେ ଖୁବ୍ ଗାଉଣା ବାଜଣା ହୁଏ। ବାବା ଏବଂ ଆଉ ସମସ୍ତେ ଏ ଗାଉଣା ବାଜଣା କରୁଥିଲେ। ତା'ପରେ ସମସ୍ତେ ବାହାରନ୍ତି ଗାଁରେ ଯେଉଁଠି ଯେଉଁଠି ଦୁର୍ଗା ଆଉ ସରସ୍ୱତୀ ମୂର୍ତ୍ତି ହେଇଥାଏ ସେଠିକି ସମସ୍ତେ ଯାନ୍ତି। ସେଠି ଦୁଇଟି ଗୋଟିପୁଅ ଗୀତ ଗାଇ ନାଚନ୍ତି। ଗୋଟିପୁଅ ଗୀତ ବୋଲି ନାଚିଲେ ଗୌରୀଶଙ୍କର ରାୟ ସେମାନଙ୍କ ସହିତରେ ଗୀତ ବୋଲିବାର ମୁଁ ଦେଖିଛି। ଗୀତ ଭଲ ବୁଝି ହୁଏ ନା ତଥାପି ଚୌକୀରେ ବସି ଗୀତ ବୋଲନ୍ତି। ତା'ପରେ ଭଗବତୀ ଠାକୁରାଣୀଙ୍କ ନିକଟକୁ ଯାଉ, ସେଠି ମଧ ଗୋଟିପୁଅ ନାଚ ହୁଏ। ଭଗବତୀ ଦର୍ଶନପରେ ଆମେ ସମସ୍ତେ ଘରକୁ ଫେରୁ।

ଯାତ୍ରୀ ସମାଗମ ଆରମ୍ଭ ହୁଏ। ବହୁତ ଦୂରରୁ ଯାତ୍ରୀ ଆସନ୍ତି ଆମ ଗାଁକୁ ଦୁର୍ଗା ଦେଖିବା ପାଇଁ। ଆମ ଚଣ୍ଡୀମଣ୍ଡପ ସାମନାରେ ଲୋକ ଭିଡ଼ାଭିଡ଼ି। ଆସୁଛନ୍ତି, ଯାଉଛନ୍ତି। ଆମର ସେଠା ଦୋଳମଣ୍ଡପ ଉପରେ କେତେକ ମଫସଲ ଦୋକାନ ବସେ। ଘରେ ଘରେ କୁଣିଆ, ଖାଇବା, ପିଇବା, ଯିବା, ଆସିବା, କେହି ରହିଲେଣି ରାତିରେ ଯାତ୍ରା ଦେଖିବା ପାଇଁ। ଦିନ ଏମିତି ଆନନ୍ଦ କୋଳାହଳରେ କଟିଯାଏ ସନ୍ଧ୍ୟା ହେଲେ ଆରମ୍ଭ ହେଲା ଆହୁରି ଲୋକ ସମାଗମ। ଆଗରୁ ବର୍ଣ୍ଣନା କରିସାରିଛି ମଜଲିସ୍‌ର ଆୟୋଜନ, ଆଡ଼ମ୍ବର। ଏଣୁ ଏଠି ଆଉ ସେ ବିଷୟରେ ଲେଖିବା ଠିକ୍ ନୁହେଁ।

ସନ୍ଧ୍ୟା ବେଳକୁ ଗୋଟିପୁଅ ନାଚ ହୁଏ ରାତି ପ୍ରାୟ ୯/୧୦ଟା ଯାଏ। ତା'ପରେ ଆରମ୍ଭ ହୁଏ ସୁଆଙ୍ଗ। ସନ୍ଧ୍ୟାବେଳୁ ଗୋଟିପୁଅ ନାଚ ୯/୧୦ ଯାଏ ହବାର କାରଣ ହଉଛି, ବୋହୂ, ଝିଅ ଆଉ ଅନ୍ୟାନ୍ୟମାନେ ଖାଇବା ପିଇବା ସାରି ଯାତ୍ରା ଦେଖିବାକୁ ଆସିବେ। ସମୟତ ଦରକାର, ସମସ୍ତଙ୍କର ବେଶି ଲୋଭ ଯାତ୍ରା ଦେଖିବେ। ଯାତ୍ରାବାଲା ଆଗରୁ ଆସି ରହିଥାନ୍ତି। ଦୈନିକ ଗୋଟିପୁଅ ନାଚ ହବା ବେଳକୁ ଆମର ଆତ୍ମୀୟସ୍ୱଜନ ମୁରବୀମାନେ ଆସି ଗାଲିଚା ଉପରେ ବଡ଼ ବଡ଼ ତକିଆକୁ ଆଉଜି ବସନ୍ତି। ଆମେ ଯେତେ ପିଲା ଥାଉ ସମସ୍ତେ ସେମାନଙ୍କ ସାମନାରେ ବସୁ। ରୂପାର ଅତରଦାନୀରେ ସମସ୍ତଙ୍କ ଉପରେ ଅତର ଛିଞ୍ଚା ହୁଏ। ମୁରବୀମାନଙ୍କ ମଝିରେ ରାମଶଙ୍କର ରାୟ ବସିଥାନ୍ତି। ଅନ୍ୟାନ୍ୟ ଲୋକେ ଚାରିଆଡ଼େ ଘେରି ବସିଥାନ୍ତି। କେହି କେହି ଠିଆ ହେଇ ଗୋଟିପୁଅ ନାଚ ଦେଖନ୍ତି। ଗୌରୀଶଙ୍କର ରାୟଙ୍କୁ କେବେ ରାତିରେ ବସି ଗୋଟିପୁଅ ନାଚ ଦେଖିବାର ମୁଁ ଦେଖି ନାହିଁ। ସେ ଦିନବେଳା ହିଁ ଯା' ଆସ କରୁଥିଲେ।

ଗୋଟିପୁଅ ନାଚ ବନ୍ଦ ହେଇ ଯାତ୍ରା ଆରମ୍ଭ ହବା ବେଳକୁ ମଜଲିସ୍‌ର ଚାରିଆଡ଼େ ଲୋକ ଭରପୂର। ଲୋକମାନେ ଚଣ୍ଡୀମଣ୍ଡପ ଉପରକୁ ଉଠି ଯାଇଥାନ୍ତି। ଇମିତିକି ମେଢ଼କୁ ଛୁଇଁ ପକେଇବାର ସମ୍ଭାବନା। ଏଣୁ ମଝିରେ ମଝିରେ ରାମଶଙ୍କର ରାୟ ଏବଂ ଅନ୍ୟମାନେ ପାଟି କରନ୍ତି, ହଟାଅ, ହଟାଅ ମେଢ଼ ଛୁଇଁ ଦେବେ।

ଲୋକ ମଧ ଜଗି ରହିଥାନ୍ତି ଲୋକଙ୍କୁ ହଟେଇବା ପାଇଁ। ଯାତ୍ରାବାଲା ବେହେଲା, ଡୁବିତବଲା, ପଖଜ, ଗିନି ଧରି ମଜଲିସ୍ ଭିତରେ ଆସି ବସି ବାଜା ବଜେଇବା ଆରମ୍ଭ କଲେ। ଲୋକଙ୍କର କି ଉନ୍ମାଦନା! କି ଭିଡ଼! ଅସଂଖ୍ୟ ଲୋକ। ସୁଆଙ୍ଗ ଯାହାହୁଏ, ସବୁ ବୈଷ୍ଣବ ପାଣୀଙ୍କ ରଚନା, ଯାତ୍ରା ଆରମ୍ଭ ହୁଏ। ଆମେ ପିଲାଏ ସାରା ରାତି ଯାତ୍ରା ଦେଖୁ। ବେଳେବେଳେ ସେହି ମଜଲିସ୍‌ରେ ଶୋଇ ଯାଉ, ପୁଣି ଉଠୁ, ଯାତ୍ରା ଦେଖୁ।

ମୁଁ ପ୍ରଥମେ ଆମ ଗାଁରେ ବୈଷ୍ଣବ ପାଣୀଙ୍କ ସୁଆଙ୍ଗ ଦେଖିଲି। କି ଆନନ୍ଦ! ଦୁଆରୀର ଅଭିନୟ ଦେଖି ହସି ହସି ଗଡୁ। ସବୁତ ନୂଆ ଦେଖୁଛି। ଜୀବନର ଆରମ୍ଭ, ସବୁ ସୁନ୍ଦର, ସବୁ କୌତୁହଳପୂର୍ଣ୍ଣ। ସେତେବେଳେ ଯାତ୍ରାବାଲାଏ ବେହେଲା, ଡୁବି ତବଲା, ପଖଜ, ଗିନିରେ କାମ ଚଳାଉ ଥିଲେ। ହାରମୋନିୟମ ନ ଥିଲା। ପରବର୍ତ୍ତୀ ବର୍ଷରେ ଯେଉଁ ଯାତ୍ରାଦଳ ହାରମୋନିୟମ ଆଣିଲେ, ସେମାନେ ହେଲେ ବଢ଼ିଆ ଯାତ୍ରାଦଳ। ତା'ପରେ ଯେଉଁ ଦଳ 'ବିଗୁଲ' ଆଣିଲେ, ସେ ହେଲେ ଆହୁରି ସରସା ଦଳ ତା'ପରେ ଯେଉଁ ଦଳ କ୍ଲାରିଓନେଟ ଆଣିଲେ, ସେ ହେଲେ ତାଠୁଁ ସରସା ଦଳ।

ଆଜିକାଲି ପରି ମାଇକ୍ ନଥିଲା। ବିଭିନ୍ନ ପ୍ରକାରର ବାଦ୍ୟଯନ୍ତ୍ର ନଥିଲା କି ସିନେମା ଭଙ୍ଗୀରେ ଫାଇଟିଂ ନଥିଲା କି ଆକ୍ଟିଂ ନଥିଲା। ସେତେବେଳେ ବୈଷ୍ଣବ ପାଣୀଙ୍କ ଭାଷାରେ ଟଙ୍କାରେ ଛ'ସେର ଅଧେ ଚାଉଳ, ଆଜିକାଲି ପରି କିଲୋକୁ ଟ୧.୫୦ ପଇସା ନଥିଲା। ସେତେବେଳେ ଟଙ୍କାକୁ ଛ'ସେର ଅଧେ ଚାଉଳ ଖାଇ ଯାତ୍ରାବାଲା ବୋଧେ ଅଳସୁଆ ଥିଲେ। ଏବେ ମହରଗ ଚାଉଳ ଖାଇବା ଦ୍ୱାରା ଯାତ୍ରାରେ ବେଶି ଫାଇଟିଂ ହଉଛି। ମହରଗ ଚାଉଳରେ ବେଶି ଖାଦ୍ୟସାର ଅଛି ବୋଲି ମନେହୁଏ। ଆଉ ଗୋଟାଏ କଥା, ଆଜିକାଲି ପରି ଇଲେକ୍‌ଟ୍ରିକ୍ ଲାଇଟ୍ ନଥିଲା। ସେଇ ଫଟ୍‌ଲାଇଟ୍ ସାରାରାତି ଜଳୁଥିବ ପୁଣି ଜଣେ ବାରିକ ଗୋଟାଏ ମଶାଲ ଧରି ସାରାରାତି ଯାତ୍ରାବାଲାଙ୍କ ପଛରେ ବୁଲୁଥିବ। ରାଜାଙ୍କ ପଛରେ, ରାଣୀଙ୍କ ପଛରେ ଡ୍ୟାନ୍‌ସିଂ ପିଲାଙ୍କ ପଛରେ,

ଯାତ୍ରାରେ ସବୁବେଳେ ମଶାଳ ଧରି ବୁଲିବାକୁ ହବ। ସେଥିରେ ତେଲ ଢ଼ଳା ହଉଥିବ। ଯାତ୍ରା ସରିଲେ ବାରିକର ଛୁଟି।

ମୁଁ ପିଲାବେଳେ କେତେଥର ଭ୍ରମରେ ପଡ଼ିଛି। ରାତିରେ ଯାତ୍ରାରେ ଯେଉଁମାନେ ମାଇପି ଲୋକର ଅଭିନୟ କରନ୍ତି ମୁଁ ତାଙ୍କୁ ପ୍ରକୃତ ମାଇପି ବୋଲି ମନେ ମନେ ଭାବିଥାଏ। କିନ୍ତୁ ସକାଳ ବେଳା ଯେତେବେଳେ ଯାତ୍ରାବାଲା କେନାଲ୍‌କୁ ଗାଧେଇ ଯାନ୍ତି ମୁଁ ଭାବେ ଏ କଣ! ରାତିରେ ତ ଏ ମାଇପିଟାଏ ହେଇଥିଲା ଦିନବେଳା ପୁଣି ପୁରୁଷ କେମିତି ହେଲା? ସେତେବେଳେ ମୋତେ ଜଣା ନଥାଏ, ପୁରୁଷ ଲୋକେ ମାଇପି ସାଜି, ମାଇପି ଭୂମିକାରେ ଅଭିନୟ କରନ୍ତି। ଥରେ ମୁଁ ଏବଂ ଆଉ କେତେଜଣ ସାଙ୍ଗ, ଯାତ୍ରାବାଲାମାନେ ଯେଉଁ ଘରେ ଯାତ୍ରା ହବା ପୂର୍ବରୁ ସଜବାଜ ହୁଅନ୍ତି, ସେ ଘର ଦୁଆର ମୁହଁକୁ ଯାଇ ଦୁଆର ମୁହଁରେ ଠିଆ ହେଇ ତାଙ୍କ ସଜବାଜ ହବା ଦେଖିଲୁ। ମୁଁ ସେଇଠି ପ୍ରଥମେ ଦେଖିଲି, ପୁରୁଷ ଲୋକେ ମାଇପି ସାଜିବା। ଆମେ ଅଳ୍ପ ସମୟ ଠିଆ ହେଇ ଦେଖିବାରୁ ଯାତ୍ରାବାଲା ଆମ ଉପରେ ଖିଙ୍କାରି ହେଲେ। ଆମେ ପଳେଇ ଆସିଲୁ। ରାତିରେ ଯାତ୍ରା ଆରମ୍ଭ ହେଇ ଯାତ୍ରା ଶେଷ ହବା ବେଳକୁ ଭୋର ହେଇଯାଏ। ଭୋର ବେଳକୁ ଦୁର୍ଗାଙ୍କର ମଙ୍ଗଳ ଆଳତି ଆରମ୍ଭ ହେଲେ ଯାତ୍ରା ଭାଙ୍ଗେ। ଲୋକେ ମଙ୍ଗଳ ଆଳତି ଦେଖି ଯେ ଯା' ଘରକୁ ଫେରନ୍ତି।

ମୁଁ ସକାଳେ ବାବାଙ୍କ ସାଙ୍ଗରେ କେନାଲ୍‌କୁ ଗାଧେଇ ଗଲା ବେଳେ ଦେଖେ ରାସ୍ତା ସବୁ କାଦୁଅ। ମୁଁ ଆଶ୍ଚର୍ଯ୍ୟ ହେଇ ଭାବେ ବର୍ଷାତ ହେଇ ନାହିଁ କାଦୁଅ କୁଆଡୁ ହେଲା? ପରେ ଜାଣିଲି ଯେ ଲୋକମାନେ ରାତିରେ ଯାତ୍ରା ଦେଖିବାକୁ ଆସି ଏତେ ପରିଶ୍ରା କରିଛନ୍ତି ଯେ ରାସ୍ତା କାଦୁଅ ହେଇ ଯାଇଛି। ମୁଁ ଏବଂ ମୋର ସାଙ୍ଗମାନଙ୍କ ଭିତରେ ପ୍ରତିଯୋଗିତା ଚାଲେ କି, କେତେ ରାତି ଅନିଦ୍ରା ହେଇ ଯାତ୍ରା ଦେଖିବ। ମୁଁ ଚାରି ରାତିଯାକ ଅନିଦ୍ରା ହେଇ ଯାତ୍ରା ଦେଖେ।

ପଲ୍ଲୀର ଦୁର୍ଗାପୂଜା ଯେ କେତେ ମନୋରମ ସେ କଥା ମୁଁ ଏବେ ଭାବୁଛି। କଟକ ସହରରେ ତ ଅନେକ ଦୁର୍ଗା ମେଢ଼ ହୁଏ। କିନ୍ତୁ କାହିଁ ଇମିତି ଆମୋଦ ତ ମିଳେ ନାହିଁ। ଗାଁରେ ଦୁର୍ଗାପୂଜା ବେଳେ ଆମ ଘରେ ପଶିଗଲେ, ପୁରି, ଉଖୁଡ଼ା, ନାଡ଼ି ମିଠେଇ, ମଣ୍ଡା, ମାଲପୁଆର ବାସ୍ନାରେ ମନ ଆନନ୍ଦରେ ଭରି ଉଠେ। ତା'ଛଡ଼ା କଟକରୁ କ୍ଷିରମନ, ବାଲସଇ, ପାନତୁଆ ଇତ୍ୟାଦି ବଡ଼ ବଡ଼ ହାଣ୍ଡିରେ ଯାଇଥାଏ। ସେ କି ଆନନ୍ଦର ବେଳ!! ଗାଁରେ ସମସ୍ତେ ଯେମିତି ଗୋଟିଏ ପରିବାରର ଲୋକ। ସମସ୍ତଙ୍କର ଭେଟ, ସୁଖାଳାପ, ହସ ପରିହାସ, ବ୍ୟଙ୍ଗ, ବିଦ୍ରୁପ।

ଏକାଠି ଗାଉଣା, ବାଜଣା, ଗାଧୁଆ, କିଏ କା ଘରେ ଖାଇଲାଣି, କିଏ କଉଠି ଦଳ ହେଇ ଗପ କରୁଛନ୍ତି, ଦୀକ୍ଷିତପଡ଼ା ଗାଁର ଆମ ସାହିରେ ଦୁର୍ଗାପୂଜା କଥା ମନେ ପଡ଼ିଲେ ଏବେ ଆଖିରେ ଲୁହ ଆସେ। ତା'ର କାରଣ ପରେ ବର୍ଣ୍ଣନା କରିବି।

ଦୁର୍ଗାପୂଜା ବେଳେ ଚାରିଟା ବାଜିଲେ ସାଙ୍ଗସାଥୀଙ୍କୁ ନେଇ ମୋର ବଲ୍ ଖେଳ ଆରମ୍ଭ ହେଇଯାଏ। ପୂଜା ବେଳେ ମୋର ସାଙ୍ଗସାଥୀଏ ମୋତେ ଅପେକ୍ଷା କରିଥାନ୍ତି, ମୁଁ କେବେ ଗାଁରେ ଯାଇ ପହଁଚିବି କାରଣ ମୁଁ ଟେନିସ୍ ବଲ୍ ମୋ ସାଙ୍ଗରେ ନେଇଥାଏ। ଗାଁରେ ମୁଁ ପହଁଚିଗଲେ, ଚାରିଟା ବେଳେ ବଲ୍ ଖେଳଟା ହୁଏ। ବଲ୍ ଖେଳିବାର ଜାଗା ହେଲା, ମହାନ୍ତି ଦାଣ୍ଡ, ଚେନାଏ ଜାଗା। ପିଲାଙ୍କର ବଲ୍ ଖେଳକୁ ସେତିକି ଜାଗା ଯଥେଷ୍ଟ। କିନ୍ତୁ ଆମେ ପିଲାଏ ଦି'ଦଳ ହେଇ ଖେଳିବା ବେଳକୁ ଏଥିରେ ଆମଠାରୁ ବେଶି ବୟସର ଲୋକ ମଧ୍ୟ ଯୋଗ ଦିଅନ୍ତି। ଇମିତିକି ଗିରିଜା ଶଙ୍କର ରାୟ ଆଉ ଅନ୍ୟ କେତେଜଣ ମଧ୍ୟ ଆମ ସହିତରେ ମିଶି ଖେଳନ୍ତି। କା'ର ନଖ ଉଡ଼ିଯାଏ, କା'ର ଆଙ୍ଗୁଳିରେ ମାଡ଼ ହୁଏ, କିଏ ପଡ଼ି ଖଣ୍ଡିଆ ଖାବରା ହେଇଯାନ୍ତି। ରେଫରୀ ଦରକାର ନାହିଁ। ଗୋଲ୍ ପୋଷ୍ଟର ଦରକାର ନାହିଁ। ନେଟ୍‌ର ଦରକାର ନାହିଁ। ସମୟର ସୀମା ନାହିଁ। ସଂଜ ହେଲା ପର୍ଯ୍ୟନ୍ତ ଦୁର୍ଗାଙ୍କର ସନ୍ଧ୍ୟା ଆଳତିର ବାଜାବାଜିବା ଆରମ୍ଭ ହବ ପର୍ଯ୍ୟନ୍ତ ଖେଳ। ତା'ପରେ ଦୁର୍ଗାଙ୍କର ସନ୍ଧ୍ୟା ଆଳତି

ଦର୍ଶନ, ଘରେ ଜଳଯୋଗ। ତା'ପରେ ଗୋଟିପୁଅ ନାଚର ପ୍ରାରମ୍ଭିକ ପ୍ରସ୍ତୁତି ବେଳକୁ, ନିଜେ ପ୍ରସ୍ତୁତ ହେଇ ଆସି ମଜଲିସ୍‌ରେ ମୁରବୀମାନଙ୍କ ସାମନା ଧାଡ଼ିରେ ସାଙ୍ଗସାଥୀଙ୍କ ସହ ଉପବେଶନ।

ଯେଉଁ ବର୍ଷ ଦୁର୍ଗାଙ୍କର ସନ୍ଧି ପୂଜା ନିଃଶବ୍ଦ ରାତିରେ ପଡ଼େ ସେ ରାତିଟା ବଡ଼ ଭୟଙ୍କର ଲାଗେ। ଯାତ୍ରା ବନ୍ଦ କରାହୁଏ। ଆମେମାନେ ଶୋଇ ପଡିଥିଲେ, ବାବା ଆମକୁ ସବୁ ଉଠେଇ ଦିଅନ୍ତି। କାରଣ ପୂଜାବେଳେ ଶୋଇବା ନିଷିଦ୍ଧ। ସନ୍ଧି ପୂଜା ଶେଷରେ ବାଜା ବାଜି ଉଠିଲେ କାଳେ ଚମକି ପଡ଼ିବି। ପଲ୍ଲୀର ଦୁର୍ଗା ପୂଜା ବେଳେ ନିଃଶବ୍ଦ ରାତିରେ ସନ୍ଧି ପୂଜା ଯେ କେଡ଼େ ଭୟଙ୍କର, କେଡ଼େ ସୁନ୍ଦର, କେଡ଼େ ଆଡ଼ମ୍ବରପୂର୍ଣ୍ଣ ସେ ଘଟଣା ମୁଁ ଆମ ଗାଁରେ ହିଁ ଦେଖିଛି। ସହର ବଜାରରେ ଦୁର୍ଗାଙ୍କର ସନ୍ଧି ପୂଜା ମଧ୍ୟ ଦେଖିଛି, ଏତେ ସୁନ୍ଦର ନୁହେଁ। ଜଣାଯାଏ ନାହିଁ ସନ୍ଧି ପୂଜା ହଉଛି।

ଆମ ଗାଁରେ ଦିନ ବେଳା ସନ୍ଧି ପୂଜା ପଡ଼ିଲେ ବହୁତ ଲୋକ ସମାଗମ ହୁଏ। ସନ୍ଧି ପୂଜା ଲାଗି ଚଣ୍ଡୀମଣ୍ଡପକୁ ଭୋଗ ବୁହା ହେଲା ବେଳେ ଲୋକେ ଯାତ୍ରୀମାନଙ୍କୁ ପାଖେଇ ଦିଅନ୍ତି କାଳେ ଭୋଗ ହାଣ୍ଡି ଛୁଇଁ ଦେବେ। ଯେଉଁ ଭୋଗ ହାଣ୍ଡି ଯାଏ, ସେ ହାଣ୍ଡିଗୁଡ଼ିକ ଆଗରୁ କୁମ୍ଭାରକୁ ବରାଦ ଦିଆ ହେଇଥାଏ। ସେ ଭୋଗ ହାଣ୍ଡିକୁ ଯେଉଁ ଲୋକ ବୋହି ନେଇ ଚଣ୍ଡୀମଣ୍ଡପରେ ଦୁର୍ଗାଙ୍କ ସାମନାରେ ରଖିବ, ତା'ର ଦୈହିକ ଶକ୍ତି ସେମିତି ଥିବା ଦରକାର।

ମୋର ମନେ ଅଛି, ଆମ ଘରୁ ଭୋଗ ହାଣ୍ଡି ବୋହି ନେଉଥିଲେ ଜଣେ ବୟସ୍କ ବ୍ରାହ୍ମଣ। ତାଙ୍କୁ ଆମେ ଭିକାରୀ ନନା ବୋଲି ଡ଼ାକୁଥିଲୁ। ଭିକାରୀ ନନା ସନ୍ଧି ପୂଜାର ଭୋଗ ହାଣ୍ଡି ନେଇ ଚଣ୍ଡୀମଣ୍ଡପରେ ଥୋଇ ଦେଇ ଆସିଲେ, ମା'ଙ୍କ ସାମନାରେ ଭୋ ଭୋ କରି କାନ୍ଦି ପକେଇ କହେ, ଠାକୁରାଣୀ, ଏଇ ବର୍ଷ ଯାହା ଭୋଗ ହାଣ୍ଡି ନେଲି ଆଉ ଆର ବର୍ଷକୁ ନେଇ ପାରିବି ନାହିଁ। କିନ୍ତୁ ତା' ଆର ବର୍ଷକୁ ସନ୍ଧି ପୂଜା ଭୋଗ ହାଣ୍ଡି ବୁହା ହେଲା ବେଳକୁ ସେହି ଭିକାରୀ ନନା ଅଣ୍ଟା ଭିଡ଼ି ମା'ଙ୍କୁ କୁହେ, ଠାକୁରାଣୀ (ଭିକାରୀ ନନା ମୋର ମା'ଙ୍କୁ ଠାକୁରାଣୀ ବୋଲି ଡ଼ାକୁଥିଲା) ମୁଁ ବଞ୍ଚିଛି, ଆଉ କିଏ ଭୋଗ ହାଣ୍ଡି ନବ? ମୁଁ କ'ଣ ମଲିଣିକି?

ଭିକାରୀ ନନା ଭୋଗ ହାଣ୍ଡି ଧରି ଖୁବ୍ ସାବଧାନରେ ଧୀରେ ଧୀରେ ଚଣ୍ଡୀମଣ୍ଡପକୁ ଚାଲେ, ଭଣ୍ଡାରୀ ପାଣି ଧରି ଆଗେ ଆଗେ ପକେଇ ପକେଇ ଚାଲିଥାଏ। ଗୌରୀଶଙ୍କର ରାୟଙ୍କ ଗୁମାସ୍ତା ବେତ ଖଣ୍ଡେ ହାତରେ ଧରି "ହଟୋ" "ହଟୋ" ଚିତ୍କାର କରି ଯାତ୍ରୀଙ୍କୁ ବାଟ ଛାଡ଼ି ଦବା ପାଇଁ ଆଡ଼େଇବାରେ ଲାଗିଥାଏ। ଅନ୍ୟ କେତେଜଣ ମଧ୍ୟ ଯାତ୍ରୀଙ୍କୁ ପାଖେଇବାରେ ଲାଗିଥାନ୍ତି। ଭିକାରୀ ନନା ଦୁର୍ଗାଙ୍କ ସାମନାରେ ଭୋଗ ହାଣ୍ଡି ଚଣ୍ଡୀମଣ୍ଡପରେ ଥୋଇ ଦେଇ ଆସିଲେ। ମା'ଙ୍କ ସାମନାରେ ସେହି ଅଭିନୟ, ସେହି କାନ୍ଦଣା, ସେଇ ଦୁଃଖପ୍ରକାଶ ଯେ ଆର ବର୍ଷକୁ ଆଉ ପାରିବି ନାହିଁ।

ଭିକାରୀ ନନାର ଚେହେରା ବେଶ୍ ଗୋଟାଏ ଦୃଷ୍ଟି ଆକର୍ଷଣ କଲା ଭଳି। ଜବରଦସ୍ତ ଉଚା ଲୋକ, ଛାତିରୁ ପେଟ ଯାଏ କଳା ମଚମଚ ବାଳ। ତା'ଉପରେ ପଇତା ପଡ଼ିଥାଏ, ମୁଣ୍ଡରେ ପଲମ କଟା ବାଳ, ସେଥିରେ ଗୋଟିଏ ଲଙ୍କାଆମ୍ବ ଭଳି ଚୁଟି, ଗୋରା ଦେହ, ମୁହଁ ଠିକ୍ ଆମ ଗାଁ ଭଗବତୀ ଠାକୁରାଣୀଙ୍କ ପରି, ଚଉଡ଼ା ଓଠ, କଳାମୋଟା ଭୁରୁ, ଚଉଡ଼ା କପାଳ, ସେଥିରେ ରାମାନନ୍ଦୀ ଚନ୍ଦନ ଚିତା। ଭିକାରୀ ନନା ଆମ ଘରେ ସବୁ କାମରେ ହାଜର। ଆମର ପୂର୍ବ ପୁରୁଷ ଭିକାରୀ ନନାର ବଂଶକୁ ଜାଗା ଜମି ଦେଇ ଅଇଥାନ କରେଇ ଥିଲେ। ସେଥିଯୋଗୁଁ ଭିକାରୀ ନନା ଆମର ଭାରି ଅନୁଗତ, ଭାରି ରହସ୍ୟର ଲୋକ, ହସେଇବା ପାଇଁ ବେଳେ ବେଳେ ମିଛ କଥା କହି ହସେଇ ଦିଏ।

ଆମ ଗାଁର ଦୁର୍ଗାଙ୍କ ଦିନରେ ହଉ ବା ରାତିରେ ହଉ ସନ୍ଧି ପୂଜା ପଡ଼ିଲେ ସନ୍ଧି ପୂଜା ଶେଷରେ ଗ୍ରାମବାସୀ ସମସ୍ତେ ବାଜା ବଜେଇ ଭଗବତୀ ଠାକୁରାଣୀଙ୍କ ନିକଟକୁ ଯାନ୍ତି। ସେଠି ବଳି ଦାନ ହୁଏ ପାଣି କଖାରୁ, କାକୁଡ଼ି, ଆଖୁ ଇତ୍ୟାଦି। ଭଗବତୀଙ୍କ ମାଳିର ରୂପ ସେଦିନ ବଡ଼ ଭୟଙ୍କର ଦେଖାଯାଏ। କଳା ମୁହଁରେ ସିନ୍ଦୁରରେ ଚିତ୍ରିତ

ହେଇ, ହାତରେ ଖଡ଼୍‌ଗ ଧରି ଯେତେବେଳେ ମାଳି ଭଗବତୀଙ୍କ ମନ୍ଦିର ଭିତରୁ ବାହାରି ଆସେ ମୋର ମନେହୁଏ ଯେମିତି ସତେ ଭଗବତୀ ନିଜେ ହିଁ ଖଡ଼୍‌ଗ ଧାରଣ କରି ଆବିର୍ଭୂତା ହେଲା ପରି। କି ଭୟଙ୍କର ସେ ଦୃଶ୍ୟ!! ମୁଁ ଭୟରେ କାଠ ହେଇଯାଏ। ବାବା ମୋତେ ଧରିଥାନ୍ତି, ମୋତେ ସାବଧାନ କରେଇ ଦିଅନ୍ତି, ଡ଼ରିବୁ ନାହିଁ।

ବଳିଦାନ ପରେ ଏକ ସମୟରେ ସବୁ ପ୍ରକାର ବାଜା ଯେତେବେଳେ ବାଜି ଉଠେ ଅନେକ ଚମକି ପଡ଼ନ୍ତି। ମୁଁ ଶୁଣିଛି ବର୍ଷେ ଗୋଟିଏ ଗୋଟିପୁଅ ବଳିଦାନ ବେଳେ ଢୋଳଉଥିଲା, ହଠାତ୍ ବାଜାବାଜି ଉଠିବାର ଶବ୍ଦରେ ଚମକି ପଡ଼ି ଝାଡ଼ା, ବାନ୍ତି ରୋଗରେ ଆକ୍ରାନ୍ତ ହେଇ ପ୍ରାଣ ହରେଇ ଥିଲା। ସେଥିଲାଗି ଭଗବତୀଙ୍କ ବଳିଦାନ ବେଳେ ଯେ ଯେଉଁଠି ଶୋଇଥିବ, ଢୋଳଉଥିବ ସମସ୍ତଙ୍କୁ ଜଗେଇ ଦିଆ ହୁଏ।

ପୂଜା ଚାରିଦିନ ବେଶ୍ ଖିଆପିଆ, ନାଚତାମସା, ଆନନ୍ଦ ଉତ୍ସବରେ କଟିଯାଏ। ଯେଉଁଦିନ ଦୁର୍ଗାଙ୍କର ବିସର୍ଜନ ହୁଏ, ସେଦିନ ଗାଁରେ ଯେମିତି ବିଷାଦ ଘୋଟି ଆସେ। ବିଧିବିଧାନ ଅନୁଯାୟୀ ଦେବୀଙ୍କର ବିସର୍ଜନ ସରିଲେ ସନ୍ଧ୍ୟା ପୂର୍ବରୁ ଦେବୀଙ୍କୁ ଚଣ୍ଡୀମଣ୍ଡପରୁ ଆଣି ଆମ ଦୁଆରେ ରଖା ହୁଏ।

ମେଢ଼ ସହିତରେ ଶୋଭାଯାତ୍ରାରେ ଯିବେ। ପ୍ରତ୍ୟେକ ବର୍ଷ ପ୍ରାୟ ରାତି ୮ଟା କିମ୍ବା ୯ଟା ବେଳକୁ ଦେବୀଙ୍କର ମେଢ଼ ବାହାରେ। ରାସ୍ତାରେ ମେଢ଼ ସାମନାରେ, ମେଢ଼ର ପଛରେ ଅସଂଖ୍ୟ ଲୋକ। ଆମ ଗାଁର ଯେତେ ବୋହୂ, ଝିଅ, ମା, ଜେଠେଇ, ଖୁଡ଼ୀ, ଆଈ ସମସ୍ତେ ଆସି ଚଣ୍ଡୀମଣ୍ଡପର ପଛପଟ ଉଚ୍ଚା ବାରନ୍ଦାରେ ରୁଣ୍ଡ ହୁଅନ୍ତି ବିଦାୟ ବେଳରେ ଦେବୀଙ୍କୁ ଦେଖିବା ପାଇଁ। ଏତିକି ବେଳେ ବାଜାବାଲାଏ ମହୁରୀରେ ବିଦାୟ ବେଳର ସ୍ୱର ଧରନ୍ତି। ଆଉ ମୋର ଜେଠା କୁଞ୍ଜ ବିହାରୀ ରାୟ ଦେବୀଙ୍କର ବିଦାୟ ବେଳର ଗୀତ ଗାଇବାକୁ ଆରମ୍ଭ କରନ୍ତି। ସେତେବେଳେ ସମସ୍ତଙ୍କ ଆଖିରେ ଲୁହ, ବୋହୂ, ଝିଅ, ବୟସ୍କା ସମସ୍ତେ କାନ୍ଦି ପକାନ୍ତି। ଦେବୀଙ୍କର ବିଦାୟ ବେଳର ଶୋଭାଯାତ୍ରା ଯେତିକି ସୁନ୍ଦର, ସେତିକି ଦୁଃଖଦାୟକ। ପୁରୁଷଙ୍କ ପକ୍ଷରେ ଦେବୀ ପାଣିରେ ପଡ଼ିବା ଯାଏ କିଛି ଆନନ୍ଦ ଉପଭୋଗର ଅବସର ଥାଏ। କିନ୍ତୁ ଦେବୀଙ୍କ ମେଢ଼ ଚଣ୍ଡୀମଣ୍ଡପ ଛାଡ଼ି ପଛ କଲେ ମାଇପିମାନଙ୍କ ଦଶହରା ପର୍ବ ସରିଲା, ଆଉ ନାହିଁ। ପୁଣି ବଞ୍ଚି ଥିଲେ ବର୍ଷେ। ଗାଁ ଶୁନଶାନ୍। ମାଇପିମାନେ ଯେ ଯାହା ଘରକୁ ବିଷନ୍ନ ଚିତ୍ତରେ ଫେରନ୍ତି।

ଦେବୀଙ୍କର ମେଢ଼କୁ ଦଧିବାମନଜୀଉ ଠାକୁରଙ୍କ ପାଖକୁ ନିଆ ହୁଏ। ବାଟରେ ବନାଟି ଖେଳ ହୁଏ, ତରୁଆଲ ଖେଳ ହୁଏ। ଜାଗାଜାଗା ମେଢ଼କୁ ଠିଆ କରି ଅନ୍ୟ ଗାଁର ଲୋକେ ଦେଖିବା ପାଇଁ ମେଢ଼ ସାମନାରେ ଗୋଟିପୁଅ ନାଚ ହୁଏ। ଗ୍ରାମର କି ହିନ୍ଦୁ କି ମୁସଲମାନ ସମସ୍ତେ ଶୋଭାଯାତ୍ରାରେ ଯୋଗ ଦିଅନ୍ତି। ଦୀକ୍ଷିତପଡ଼ା ଗାଁରୁ ଦଧିବାମନଜୀଉ ଠାକୁରଙ୍କ ମନ୍ଦିର ଗୁରାଏ ବାଟ।

ଦଧିବାମନଜୀଉ ଠାକୁରଙ୍କ ମନ୍ଦିର ସାମନାରେ ଦେବୀଙ୍କର ମେଢ଼ ରଖାହୁଏ। ସେଠି ସେମିତି ଗୋଟିପୁଅ ନାଚ, ବନାଟି ଖେଳ, ତରବାରୀ ଖେଳ ହୁଏ। କିଛି ସମୟ ପରେ ମେଢ଼କୁ ପୁଣି ଫେରେଇ ଆଣିବାକୁ ହୁଏ କଣ୍ଟିଆ ପୋଖରୀକୁ। ସେଠି ମେଢ଼କୁ କାନ୍ଧେଇ ଅଣ୍ଟାଏ ପାଣିକୁ ନିଆ ହୁଏ। ସେଠି ବ୍ରାହ୍ମଣ ଆଳତି କଲା ପରେ, ମେଢ଼କୁ ପାଣିରେ ମୁହଁ ମଡ଼େଇ ପକେଇ ଦିଆ ହୁଏ। ମୋର ମନେ ଅଛି, ମେଢ଼ ପାଣିରେ ପଡ଼ିସାରିଲେ ରାମ ଶଙ୍କର ରାୟ କହନ୍ତି, ପୁଣି ବଞ୍ଚିଥିଲେ ବର୍ଷେ।

ଆମ ଗାଁରେ ଦେବୀଙ୍କୁ ପାଣିରେ ପକେଇଲା ବେଳେ ଦେବୀଙ୍କର କୌଣସି ସାଜସଜ୍ଜା କାଢ଼ି ନିଆ ହୁଏ ନାହିଁ। ଯେମିତି କଟକରେ ଦୁର୍ଗା ମେଢ଼କୁ ପାଣିରେ ପକେଇଲା ବେଳେ ଦେବୀଙ୍କ ଦେହରୁ ସମସ୍ତ ସାଜସଜ୍ଜା କାଢ଼ି ନେଇ ଦେବୀଙ୍କୁ ଉଲଗ୍ନ ଅବସ୍ଥାରେ କାଠଯୋଡ଼ି ପାଣିରେ ବିସର୍ଜନ କରନ୍ତି।

ଦେବୀଙ୍କ ବିସର୍ଜନ ପରେ ଘରକୁ ଫେରିବା ପୂର୍ବରୁ ଦଧିବାମନଜୀଉ ଠାକୁରଙ୍କ ସାମନାରେ ଦୁଇଧାଡ଼ି ହେଇ ବସିବାକୁ ହୁଏ। ବ୍ରାହ୍ମଣ ଆମ ଉପରେ ମନ୍ତ୍ର ପାଠ କରି

ଶାନ୍ତିବାରି ଛିଞ୍ଚନ୍ତି । ତା'ପରେ ଆରମ୍ଭ ହୁଏ ନମସ୍କାର, ପ୍ରତିନମସ୍କାର ଆଉ କୋଳାକୋଳିର ପାଳା । ମୋର ମନେ ଅଛି ଆମ ଗାଁରେ ଜଣେ ଡ଼ାକ୍ତର ଥିଲେ । ତାଙ୍କର ନାମ ରାଖାଳ ଚନ୍ଦ୍ର ସୋମ । ଭାରି ରଙ୍ଗ ରସର ଲୋକ । ପୃଥୁଳକାୟ, ଲମ୍ବୋଦର ପୁରୁଷ । ଲମ୍ବୋଦର ଖାଲି କହିଲେ ହବ ନାହିଁ । ଅତିଶୟ ଲମ୍ବୋଦର ଇମିତିକି ଲମ୍ବୋଦର ପ୍ରତିଯୋଗିତାରେ ସ୍ୱୟଂ ଗଣେଶ ମଧ୍ୟ ପରାସ୍ତ ହେଇ ଯିବେ । କୋଳାକୋଳି ବେଳେ ସେ ମୋତେ ତାଙ୍କ ପେଟ ଉପରେ ଗଡ଼ାନ୍ତି, ଯା ଫଳରେ ତାଙ୍କ ପେଟରେ ମୋର ନାକ ମୁହଁ ଦଳି ହେଇଯାଏ । ରାଖାଳ ଚନ୍ଦ୍ର ସୋମ ମୋର ଚାଲିଚଳନ, ଠିଆ ହବାର ଭଙ୍ଗୀ କଥା କହିବାର ଢ଼ଙ୍ଗ ଦେଖି ବେଳେ ବେଳେ କହନ୍ତି, ଦେଖ ଦେଖ ଏ ପିଲା ଗୋଟାଏ ଭିନ୍ନ ଢ଼ଙ୍ଗର, ତା'ର ଠିଆ ହବାର ଭଙ୍ଗୀ ସେ କେମିତି କଥା କହୁଛି ।

ଗାଁର ଦୁର୍ଗାପୂଜା ସରିଲେ ଯେଉଁଦିନ ଯାତ୍ରାବାଲା ତାଙ୍କର ପେଡ଼ିପୁଟୁଳା, ବାଜା ଇତ୍ୟାଦି ନେଇ ଚଣ୍ଡୀମଣ୍ଡପ ସାମନା ଦେଇଗାଁରୁ ବିଦାୟ ହେଇଯାନ୍ତି ମୁଁ ଆମ ଘରେ ଖଟ ଉପରେ ଶୋଇ ଲୁଚି ଲୁଚି କାନ୍ଦେ କାରଣ ପୁଣି ବର୍ଷେ ଗଲେ । ମନହୁଏ ଗାଁରେ ସବୁଦିନ ଦଶହରା ପର୍ବ ଲାଗିଥାନ୍ତା କି ।

ଦଶହରା ପରେ ଗାଁ ଶୂନଶାନ୍ । କେଇଟା ଦିନପରେ ଦଶହରା ଛୁଟି ସରିଲେ ପୁଣି ଗାଁରୁ କେମିତି କଟକକୁ ଫେରି ଆସିବା ଏକ ସମସ୍ୟା ଉପୁଜେ । ପୁବଂଶ ଘାଟରୁ ଷ୍ଟିମର୍‌ରେ ଉଠିବାକୁ ହୁଏ । ସେମିତି ଭିଡ଼, ଧସ୍ତାଧସ୍ତି, ଯେଉଁ ଦିନ ଗାଁ ଛାଡ଼ି ଆସୁ, ବୁଢ଼ୀମା କେନାଲ୍ କୂଳ ପର୍ଯ୍ୟନ୍ତ ଛାଡ଼ିବାକୁ ଆସନ୍ତି । ଆମକୁ ଧରି କାନ୍ଦି ପକାନ୍ତି । ବୁଢ଼ୀମା ବେଶି ବାଟ ଆସି ନପାରି ଆମ ଗାଧୁଆ ତୁଠରୁ ଫେରିଯାନ୍ତି ।

ବର୍ଷେ ଆମେ ସମସ୍ତେ ଜାଲି ବୋଟ୍‌ରେ ଦଶହରାରେ ଗାଁକୁ ଯିବାର ମନେ ଅଛି । ସେ ବର୍ଷ ଜାଲି ବୋଟ୍ ମହାନଦୀରେ ବୁଡ଼ିଯାଉ ଯାଉ ଆମେ ରକ୍ଷା ପାଇଥିଲୁ । ବର୍ଷେ ଜାଲି ବୋଟ୍‌ରେ ଆମ ଗାଁରୁ ଦଶହରା ପରେ କଟକ ଆସିଥିଲୁ । ସେ ବର୍ଷ ବୁଢ଼ୀମା ଆମକୁ ଗାଧୁଆ ତୁଠରେ କାନ୍ଦ କାନ୍ଦ ହେଇ ବିଦାୟ ଦେଇଗଲେ । ଯେଉଁ ବର୍ଷ ଜାଲି ବୋଟ୍ ମହାନଦୀରେ ବୁଡ଼ି ଯିବାର ଦୁର୍ଘଟଣାରୁ ଆମେ ରକ୍ଷା ପାଇଥିଲୁ । ତା'ପର ବର୍ଷଠାରୁ ବାବା ଠିକ୍ କଲେ ଆମେ ଡ଼ଙ୍ଗାରେ ଦଶହରାକୁ ଗାଁକୁ ଯିବୁ, ଷ୍ଟିମରରେ ଯିବା ଯେଉଁ କଷ୍ଟକର, ତା'ଠାରୁ ଡ଼ଙ୍ଗାରେ ଯିବା ବେଶ ନିରାପଦ ଆଉ ଆମୋଦଦାୟକ । ଏଣୁ ବଡ଼ ଡ଼ଙ୍ଗା ଭଡ଼ା ନିଆ ହୁଏ. ବେଶ୍ ପ୍ରଶସ୍ତ ବସିବା ପାଇଁ. ଜିନିଷପତ୍ର ରଖିବା ପାଇଁ ବେଶ୍ ସୁବିଧା । ଡ଼ଙ୍ଗାରେ ବସିଲେ, ଆମେ ଆନିକଟ ତଳକୁ କାଳିଆ ବୋଦା ନିକଟରେ ଡ଼ଙ୍ଗାରେ ବସୁ । ଗାଁକୁ ଯଦି କାହାର ଦଶହରାକୁ ଯିବାର ଥାଏ ସେ ମଧ୍ୟ ଆମ ଡ଼ଙ୍ଗାରେ ବୋଝପାତି ନେଇ ବସିଯାନ୍ତି । ମୁଁ ଏବଂ ମୋର ଜେଠାପୁଅ ଭାଇମାନେ ବିଶେଷ ଦୁଷ୍ଟାମି କରୁ ବୋଲି ଜେଠେଇ ଖଣ୍ଡେ ବେତ ରଖିଥାନ୍ତି । ବେଶି ଭୟ ପାଣିରେ ପଡ଼ିଯିବୁ । ଦୁର୍ଗାପୂଜାର ଯାବତୀୟ ଜିନିଷ ସବୁ ଡ଼ଙ୍ଗାର ମଙ୍ଗ ଆଡ଼େ ଲଦା ହେଇଥାଏ ।

କାଳିଆବୋଦା ନିକଟରୁ ଡ଼ଙ୍ଗା ଛାଡ଼େ । ମହାନଦୀ, ଚିତ୍ରୋତ୍ପଳା ପାରି ହେଇ ଲୁଣା ନଈ ପଡ଼ିଲେ ଆମ ଗାଁ ନିକଟ ହୁଏ । ସକାଳ ୯ଟାରେ କାଳିଆବୋଦା ନିକଟରେ ଡ଼ଙ୍ଗାରେ ବସିଲେ, ନିଃଶବ୍ଦ ରାତିରେ ଯାଇ ଆମ ଗାଁ ନିକଟରେ ପହଁଚୁ । ରାତିଟା ସେହି ଡ଼ଙ୍ଗାରେ କଟେଇବାକୁ ହୁଏ । ବର୍ଷେ ମୋର ମନେ ଅଛି ଆମେ ଲୁଣା ନଈରେ ଆମ ଗାଁ ନିକଟରେ ପହଁଚିଲୁ, ଡ଼ଙ୍ଗା ରହିଲା, ସେଦିନ ପଞ୍ଚମୀର ରାତି । ରାତି ପାହିଲେ ଷଷ୍ଠୀ ପଡ଼ିବ । ମା'ଙ୍କର ଷଷ୍ଠୀର ଉପବାସ, ପଞ୍ଚମୀର ରାତିରେ ତାଙ୍କର ଗଣ୍ଡାଏ ଭାତ ଖାଇବା ଦରକାର । ସାରାଦିନ ଡ଼ଙ୍ଗାରେ କଟିଲା । କଟକରୁ ଆସିଲା ବେଳେ ଯା' ଭାତ ଖାଇ ଆସିଥିଲୁ । ଏଣୁ ବାବା ପୂଜାରୀକୁ କହିଲେ ଡ଼ଙ୍ଗାରେ ଭାତ ରାନ୍ଧିବା ପାଇଁ । ମା' ଖାଇବେ ଏବଂ ଆମେମାନେ ସମସ୍ତେ ଖାଇବୁ । ଆମେ ସମସ୍ତେ କହିଲେ, ଆମର ପରିବାର, ପୂଜାରୀ, ଚାକର । ତା'ଛଡ଼ା ଆମ ଡ଼ଙ୍ଗାରେ ବସି ଯେଉଁମାନେ ଗାଁକୁ ଆସିଥାନ୍ତି ।

ପୂଜାରୀ ରୋଷେଇ ବସେଇଲା । ଡ଼ାଲି ବସେଇଲା ବେଳେ ପଚାରିଲା ଡ଼ାଲିରେ କେତେ ପାଣି ଦେବି ? ବାବା ପରିହାସ କରି କହିଲେ ଯେତେ ଜଣ ଅଛୁ ସେତେ ଗ୍ଲାସ ପାଣି । ନଈରେ କ'ଣ ପାଣି ଅଭାବ ହେଉଛି ? ରୋଷେଇ ସରିଲା ପରେ ଆମେ ଡ଼ଙ୍ଗାର ମଙ୍ଗ ଆଡ଼େ ଖାଇବାକୁ ବସିଲୁ । ସାଙ୍ଗରେ ତ ଖଲିପତ୍ର ଆସିଥାଏ । ଖଲିପତ୍ର ପଡ଼ିଲା । ଆମେ ଖାଇବାର ଅଳ୍ପ କିଛି ସମୟ ପରେ "ଚର୍" ଚର୍" ଶବ୍ଦ ଶୁଣାଗଲା । ସମସ୍ତେ ଚମକି ପଡ଼ିଲେ କ'ଣ ହେଲା ? ଡ଼ଙ୍ଗାରେ କୋଉଠି ପାଣି ପଶିଲାକି ? ପରସ୍ପର ପଚରା ଉଚରା ହେଲେ । କ'ଣ ହେଲା ଦେଖ, ଡ଼ଙ୍ଗାରେ କୋଉଠି ପାଣି ପଶିଲାଣି ।

ବୋଝେଇ ଡ଼ଙ୍ଗା । ଡ଼ଙ୍ଗାରେ ପାଣି ପଶିଲେ ଆଉ ରକ୍ଷା ନାହିଁ । ପରେ ଜଣାଗଲା ଆମ ପତରରୁ ଡ଼ାଲି ପାଣି ଡ଼ଙ୍ଗାର ମଙ୍ଗ ପାଖର କୋଉ ଫାଙ୍କ ଦେଇ ଯାଇ ନଈରେ ପଡୁଛି । ହସ ଉଠିଲା । ବାବା ଯାହା ପରିହାସ କରି କହିଥିଲେ, ଯେତେ ଲୋକ ଅଛନ୍ତି, ସେତେ ଗ୍ଲାସ ପାଣି ଡ଼ାଲିରେ ଦବାକୁ, ପୂଜାରୀ ସେଇଆ କରିଛି ।

ଖାଇବା, ପିଇବା ସରିବାର କିଛି ସମୟ ପରେ ସେଇ ଲୁଣା ନଈ ଉପରେ ଡ଼ଙ୍ଗାରେ ଥାଇ ମୁଁ ସେ ବର୍ଷ ଉଷାର ପ୍ରଥମ ଉନ୍ମେଷ ଦେଖିଥିଲି । ସେ ଦୃଶ୍ୟ ମୁଁ ଏ ପର୍ଯ୍ୟନ୍ତ ଭୁଲି ପାରି ନାହିଁ । ଲୁଣା ନଈ ଉପରୁ ଧୀରେ ଧୀରେ ଅନ୍ଧକାରର ଅବଗୁଣ୍ଠନ ଅପସରି ଗଲା । ଲୁଣା ନଈ ଉଭୟ ପାର୍ଶ୍ୱର ତୀର ଭୂଇଁ । ତା'ର ଗାଁ ଗଣ୍ଡା କ୍ରମଶଃ ପରିସ୍ଫୁଟ ହେଇ ଆସିଲା । ଲୁଣା ନଈର ନୀଳ ଆସ୍ତରଣ କ୍ରମଶଃ ରଙ୍ଗୀନ୍ ଦେଖାଗଲା । ସ୍ରୋତ ଚାଲିଛି । ଶରତକାଳର ଉଷା, ପୂର୍ବ ଦିଗରେ ବିଭିନ୍ନ ରଙ୍ଗର ପ୍ରଦର୍ଶନୀ । ସେଥିରେ ଉଜ୍ଜ୍ୱଳ କୁଆଁତାରା । ଆକାଶରେ ପୁଣି ଉଷାର ଆଲୋକରେ ପକ୍ଷୀଙ୍କର କଳରବ । ଲୁଣା ନଈର ତୀରଭୂଇଁର ଗ୍ରାମବାସୀଙ୍କର ଅସ୍ପଷ୍ଟ ଚଳନ୍ତ୍ ମୂର୍ତ୍ତି । ଏଣେ ଦୁର୍ଗାପୂଜା ଆସନ୍ନ । ଆମେ ଗାଁ ନିକଟରେ ପହଁଚିଛୁ । ଆଉ ଅଳ୍ପ ସମୟ ପରେ ଡ଼ଙ୍ଗା ଛାଡ଼ି ଲୁଣା ନଈର ବନ୍ଧ ଟପି କେନାଲ୍ ପାରି ହେଇ ଗଲେ ଗାଁରେ ପହଁଚିବୁ । ବୁଢ଼ୀମା, ସାଙ୍ଗସାଥୀ ସମସ୍ତଙ୍କର ଦେଖା ମିଳିବ, ସେ କି ଆନନ୍ଦ ।

ଲୁଣା ନଈରେ ସୂର୍ଯ୍ୟୋଦୟ ଦେଖିଲି, କି ସୁନ୍ଦର, କି ମହାନ ସେ ଦୃଶ୍ୟ । ସେତେବେଳେ କିଏ ଏହି ବିଶ୍ୱବ୍ରହ୍ମାଣ୍ଡର ସ୍ରଷ୍ଟା ସେ କଥା ବି ମୋତେ ଜଣା ନାହିଁ । କା'ର ତୂଳୀରେ ଏ ସୂର୍ଯ୍ୟୋଦୟର ଛବି ଚିତ୍ରିତ ହେଲା କିଛି ଜଣା ନାହିଁ । ତଥାପି ଏ ଦୃଶ୍ୟ ଦେଖି ଶୈଶବରେ ମୁଁ ଆତ୍ମହରା । ସେ ବିଷୟ କାଳି, କଲମ ସାହାଯ୍ୟରେ ଲେଖି ବୁଝେଇବାକୁ ମୁଁ ଅସମର୍ଥ ।

ସେତେବେଳେ ଦେହ-ଦୁର୍ଗକୁ ଷଡ଼ରିପୁ ଆକ୍ରମଣ କରି ନାହାନ୍ତି, ମନ ସେତେବେଳେ ନିର୍ଦ୍ୱନ୍ଦରେ ରାଜତ୍ୱ କରୁଛି । ତା'ର ରାଜତ୍ୱରେ କୁଟିଳତା, ହିଂସା, ଦ୍ୱେଷ, ଅହମିକାର ସ୍ଥାନ ନାହିଁ । ଅତି ଅନାବିଳ, ଅତି ସରଳ ମନ-ରାଜାଙ୍କର ଆଦେଶ-ଖାଲି ଖେଳିବି, ବୁଲିବି ଆଉ ପାଠ ପଢ଼ିବି ନାହିଁ ।

ଖରା ପଡ଼ିଲାରୁ ଗାଁରୁ କେତେକ ରଇତ ଜିନିଷପତ୍ର ବୋହି ନେବା ପାଇଁ ପହଁଚିଲେ । ଆମେ ଡ଼ଙ୍ଗା ଛାଡ଼ି କେନାଲ୍ ପାରି ହେଲୁ । କେନାଲ୍ ପାରି ହବା ପାଇଁ ଗୋଟାଏ ଢ଼ୋଲ ପଡ଼ିଥାଏ । ସେଇଥିରେ ସମସ୍ତେ କେନାଲ୍‌ର ଏ ପାରି ସେ ପାରି ହୁଅନ୍ତି । ଗାଁରେ ମୋର ସବୁଠାରୁ ଅନ୍ତରଙ୍ଗ ସାଙ୍ଗ ଥିଲା, ମୋର ଜଣେ ଜେଠା ପୁଅ ଭାଇ, ଭୂଷଣ ଚନ୍ଦ୍ର । ଆଗରୁ କହିଛି, ପ୍ରତ୍ୟେକ ବର୍ଷ ଦୁର୍ଗାପୂଜା ପୂର୍ବରୁ କଟକରେ ବାବା ପାଞ୍ଜି ଦେଖନ୍ତି, ଦେବୀ କେଉଁ ପୂଜାରେ କେଉଁ ବାହନରେ ଆସିବେ । ମୁଁ ସେତେବେଳେ ପାଞ୍ଜି କ'ଣ ଜାଣି ନଥାଏ, କିନ୍ତୁ ବାବା ମିଛରେ କୌତୂହଳ ସୃଷ୍ଟି କରିବା ପାଇଁ ମୋତେ ପାଞ୍ଜି ପଢ଼ି ଶୁଣାନ୍ତି । ଷଷ୍ଠୀଦିନ ଗ୍ରାମକୁ ଷ୍ଟିମର୍ ଯୋଗେ ଯାତ୍ରା, ପୁବଂଶ ଘାଟରେ କେନାଲ୍ କୂଳରେ ଭୂଷଣ ସହିତରେ ସାକ୍ଷାତ ।

ମୁଁ ଆଶ୍ଚର୍ଯ୍ୟ ହୁଏ ପାଞ୍ଜିରେ ଏକଥା ଲେଖା ଅଛି ? ଭାରି ଖୁସି ହୁଏ । ଯା ହଉ, ଭୂଷଣ ସହିତରେ ପୁବଂଶ ଘାଟରେ ଦେଖା ହବ । ମୁଁ ଖୁସି ହବାର ଦେଖିଲେ ବାବା ହସନ୍ତି । ତା'ପରେ ମୁଁ ଜାଣିପାରେ, ଏ ମିଛ କଥା ।

ବର୍ଷେ ଆମେମାନେ ଦୁର୍ଗାପୂଜାର କିଛିଦିନ ଆଗରୁ ଗାଁକୁ ଯାଇଥିଲୁ । ସେତେବେଳେ ମୂର୍ତ୍ତି ସବୁ ଗଢ଼ା

ହଉଥାନ୍ତି । ମୁଁ ଅନେକ ସମୟରେ କାରିଗର ପାଖରେ ବସି ମୂର୍ତ୍ତି ଗଢ଼ା ହବା ଦେଖେ । କିମିତି ମୂର୍ତ୍ତି ଗଢ଼ା ହଉଛି ? କିମିତି ଧରଣର ମାଟି ବ୍ୟବହାର ହଉଛି ? ମାଟି ସହିତରେ କ'ଣ ମିଶା ହଉଛି ? ମୂର୍ତ୍ତି ସବୁ କିମିତି ଏକ ମାଟିଆ, ଦୋମାଟିଆ ହଉଛି ? ମୂର୍ତ୍ତି ସବୁକୁ କିମିତି ଚିକ୍କଣ, ସୁନ୍ଦର କରା ହଉଛି ? ତା'ପରେ ମୂର୍ତ୍ତି ସବୁ କିମିତି ଶୁଖା ହଉଛି ? ତା'ପରେ ମୂର୍ତ୍ତି ସବୁରେ କିମିତି ରଙ୍ଗ ଦିଆ ହଉଛି ? କି କି ରଙ୍ଗ ବ୍ୟବହାର ହଉଛି ? ତୁଳି ସବୁ କେଉଁଥିରେ ତିଆରି ହେଇଛି ? ରଙ୍ଗ ସହିତରେ କ'ଣ ମିଶା ହେଇଛି ? ମେଢ଼ରେ ଅଷ୍ଟ ନାୟିକା କିମିତି ଅଙ୍କା ହଉଛି ?

ମୁଁ କାରିଗର ଆଉ ଚିତ୍ରକାର ପାଖରେ ବସି ସବୁ ଦେଖିଲି । ଏ ସବୁ ଦେଖୁ ଦେଖୁ ପୁଣି ସାଙ୍ଗସାଥୀଙ୍କ ସାଙ୍ଗରେ ମିଶି ଚଣ୍ଡୀମଣ୍ଡପରେ ଏତେ ଉତ୍ପାତ କରୁ, ଗଣ୍ଡଗୋଳ କରୁ, ଦୌଡ଼ାଦୌଡ଼ି କରୁ ଯେ ମୂର୍ତ୍ତି ସବୁଙ୍କ ଦେହରେ ଧକ୍କା ବାଜି ଭାଙ୍ଗି ଯିବାର ଆଶଙ୍କାରେ କାରିଗର ପାଟି କରନ୍ତି । କିନ୍ତୁ ତାକୁ ବେଳେବେଳେ ମାନିଲେ, ବେଳେବେଳେ ମାନୁନା ।

ଆମେମାନେ ଚଣ୍ଡୀମଣ୍ଡପରେ ଗୋଳମାଳ, ଦୌଡ଼ାଦୌଡ଼ି କରୁ କରୁ ଏଇ ସମୟରେ ଦି' ପହରେ ଯେତେବେଳେ ରାମ ଶଙ୍କର ରାୟ ତାଙ୍କର କଚେରୀ ଘରକୁ ଗଲାବେଳେ, ଆମେମାନେ ଚଣ୍ଡୀମଣ୍ଡପରେ ଦୁଷ୍ଟାମୀ କରିବାର ଦେଖି ଚିତ୍କାର କିମ୍ବା କାରିଗରଙ୍କୁ ପାଟି କରି କହି କହି ଯାନ୍ତି, ସମସ୍ତଙ୍କର କାନ ମୋଡ଼ି ବାହାର କର । ଆମେ ରାମ ଶଙ୍କର ରାୟଙ୍କୁ ଦେଖି ଏବଂ ତାଙ୍କର ଧମକ ଶୁଣି କିଏ କୁଆଡ଼େ ଲୁଚି ଯାଉ ପୁଣି ସେ ଚାଲିଗଲେ ଆମର ଯୋଉ ଦୁଷ୍ଟାମୀକୁ ସେହି ଦୁଷ୍ଟାମୀ ଚାଲେ । ତଥାପି ମୁଁ ଅନେକ ସମୟରେ ମୂର୍ତ୍ତିଗଢ଼ା, ଚିତ୍ରକରା, କିମିତି ମେଢ଼ ସଜା ହୁଏ ସବୁ ବସି ବସି ଦେଖେ ।

ଏଇ ଘଟଣାରୁ ମୋର ମନ ହେଲା, କିମିତି ମୂର୍ତ୍ତି ଗଢ଼ିବି, ଛବି ଆଙ୍କିବି, ମେଢ଼ ତିଆରି କରିବି, ତାକୁ ସଜେଇବି, ଠାକୁର ପୂଜା କରିବି, ପୂଜା ଶେଷରେ ତାକୁ ନେଇ ପାଣିରେ ବିସର୍ଜନ କରିବି । ଆଉ ଗୋଟିଏ କଥା, ମୋର ବୁଢ଼ୀମା ମାଟିରେ ଭଲ କଣ୍ଢେଇ ଗଢ଼ି ପାରୁଥିଲେ । ଆଉ ଖଡ଼ି ଏବଂ ଗେରୁ ସାହାଯ୍ୟରେ ଘରର ଚଟାଣ ଏବଂ କାନ୍ଥରେ ବିଭିନ୍ନ ରକମର ଚିତ୍ରକରି ପାରୁଥିଲେ । ସେମିତି ମୋର ମା ମଧ୍ୟ ଘରର ଚଟାଣ ଏବଂ କାନ୍ଥରେ ବିଭିନ୍ନ ପ୍ରକାର ରଙ୍ଗରେ ଚିତ୍ରକରି ପାରୁଥିଲେ । ଆଗରୁ କହିଛି, ମୋର ମାମୁଁ ଘର ଯାଜପୁର । ମୁଁ ଦେଖିଛି ଯାଜପୁରରେ ମହିଳାମାନେ କାନ୍ଥରେ ଯେଉଁ ଚିତ୍ର ଆଙ୍କନ୍ତି, ସେ ଗୋଟାଏ ଦେଖିବା ଭଳି ଚିତ୍ର । ସେ ଚିତ୍ର ଖାଲି ଖଡ଼ି ସାହାଯ୍ୟରେ ଅଙ୍କା ହେଇ ଥାଉ ପଛେ ତା'ର ଗୋଟିଏ ବୈଶିଷ୍ଟ୍ୟ ଅଛି । କଳା କୁଶଳତାର ପରିଚୟ ମିଳେ । ଏଣୁ ମୋର ମା'ଙ୍କ ସ୍ୱହସ୍ତ ଅଙ୍କିତ କାନ୍ଥର ଚିତ୍ର ସବୁ ମଧ୍ୟ ସେହିପରି ଥିଲା । ତା'ଛଡ଼ା କଟକରେ ଆମ ସାହିରେ ଆମ ଗାଁର ଜଣେ ବ୍ରାହ୍ମଣ ଯୁବକ ଏବଂ ତାଙ୍କର ବିଧବା ମା ଭଡ଼ା ଘର ନେଇ ରହୁଥିଲେ । ସେ ମା, ପୁଅ ଅଧିକାଂଶ ସମୟରେ ଆମ ଘରେ ହିଁ ଚଳାଚଳ ହଉଥିଲେ । ପୁଅର ନାମ, ଶ୍ରୀ ବିଧୁଭୂଷଣ ଭଟ୍ଟାଚାର୍ଯ୍ୟ । ମୁଁ ତାଙ୍କୁ ବିଧୁ ଦାଦା ବୋଲି ଡ଼ାକୁଥିଲି । ସେ କଟକରେ ରହି କମ୍ପାଉଣ୍ଡରି ପଢୁଥିଲେ । ସେ ଭାରି ରଙ୍ଗରସର ଲୋକ । ଅଳ୍ପ କଥାରେ ଲୋକଙ୍କୁ ହସେଇ ଦେବେ । ସେ ମଧ୍ୟ ବିଭିନ୍ନ ରକମର ଚିତ୍ର କରି ପାରୁଥିଲେ ।

ବୁଢ଼ୀମା ଯେତେବେଳେ କଟକ ଆସୁଥିଲେ, ମୁଁ ତାଙ୍କୁ ଚିତ୍ର କରିବା ପାଇଁ ଅନୁରୋଧ କରେ । ସେ କେବେ ଖଡ଼ି କିମ୍ବା ଗେରୁ ସାହାଯ୍ୟରେ ହାତୀ, ମୟୂର, ଫୁଲ ଇତ୍ୟାଦି ଆଙ୍କି ଦେଖେଇ ଦଉଥିଲେ । ମା'ଙ୍କୁ ମୋତେ ଭାରି ଭୟ ଲାଗୁଥିଲା । ସେଥି ଯୋଗୁଁ ତାଙ୍କୁ କେବେ ମୋ ପାଇଁ ଚିତ୍ର ଆଙ୍କି ଦବା ପାଇଁ ଅନୁରୋଧ କରି ପାରେନା ।

ଦୁର୍ଗାପୂଜା, ଲକ୍ଷ୍ମୀପୂଜା ଏବଂ ଅନ୍ୟାନ୍ୟ ପୂଜାପାର୍ବଣରେ ତାଙ୍କର ହାତଅଙ୍କା ଚିତ୍ର ଦେଖି ଆନନ୍ଦ ଲାଭ କରୁଥିଲି ଏବଂ ପ୍ରେରଣା ପାଉଥିଲି । କିନ୍ତୁ ବିଧୁ ଦାଦାଙ୍କ ସାଙ୍ଗରେ ଛବି ଆଙ୍କିବା ପାଇଁ ଭାରି ଜୁଲୁମ କରେ । ବିଧୁ ଦାଦା ମଧ୍ୟ ମୋର ଜୁଲୁମ ଭାରି ସହ୍ୟ କରୁଥିଲେ । ବିଧୁ ଦାଦାଙ୍କ ସହିତରେ ମୋର ବୟସର ପାର୍ଥକ୍ୟ ଯେତେ ଥାଉ ପଛେ ବିଧୁ ଦାଦା ଯେମିତି ମୋର

ସାଙ୍ଗ । ବିଧୁ ଦାଦା ଚଟାଣ ଉପରେ ଖଡ଼ିରେ ଅନେକ ରକମର ଚିତ୍ର କରି ଦେଖାନ୍ତି । ମୁଁ ତାଙ୍କ ଦେଖାଦେଖି କେତେ ରକମର ଖଡ଼ି ସାହାଯ୍ୟରେ ଘୋଡ଼ା, ହାତୀ, ମୟୂର ଆଙ୍କେ । ସେତେବେଳେ ମୋ ହାତରେ ଘୋଡ଼ା, ହାତୀ, ମୟୂରର ରୂପ ଯାହା ଦେଖା ଯାଉଥିଲା ସେମିତିଆ ଘୋଡ଼ା, ହାତୀ ଏବଂ ମୟୂର ବୋଧହୁଏ ସ୍ୱୟଂ ଭଗବାନ ସୃଷ୍ଟି କରି ପାରିବେନି ଆଉ ଗୋଟାଏ କଥା ସେହି ଘୋଡ଼ା, ହାତୀ, ମୟୂରକୁ ଯଦି ରବୀନ୍ଦ୍ର ନାଥ ଆଙ୍କିଥାନ୍ତେ, ତା'ହେଲେ ବୋଧହୁଏ ତାକୁ ବିଶେଷ ଗୁରୁତ୍ୱ ଦିଆ ଯାଇଥାନ୍ତା ।

ବୁଢ଼ୀମା'ଙ୍କୁ ଚିତ୍ର ଆଙ୍କିବା ଛଡ଼ା ମୋ ପାଇଁ କଣ୍ଢେଇ ଗଢ଼ି ଦବା ପାଇଁ ଅନେକ ଥର ଜିଦ୍ ଧରିଛି । ବୁଢ଼ୀମା ମୋତେ ଅନେକ ରକମର କଣ୍ଢେଇ ଗଢ଼ି ଦେଇଛନ୍ତି ।

ଦଶହରା ପର୍ବ ପରେ କଟକ ଆସିଲେ, ପୁଣି ସେଇ ଚାଟଶାଳିରେ ପାଠ ପଢ଼ା, ସେଇ ସତିଆ ଅବଧାନଙ୍କ ଧମକ, ରାତିରେ ବାବାଙ୍କ ପାଖରେ ଇଂରେଜୀ ପଢ଼ିବା । କିନ୍ତୁ ଏଣିକି ଅବସର ବେଳେ କଣ୍ଢେଇ ଗଢ଼ିବା, ଅନ୍ୟାନ୍ୟ ମୂର୍ତ୍ତି ତିଆରି କରିବା, ମେଢ଼ ତିଆରି କରି ତାକୁ ସଜେଇବା, ସେଥିରେ ଗୋଟିଏ କଣ୍ଢେଇ ବସେଇ ତାକୁ ପୂଜା କରିବା, ଶେଷରେ ତାକୁ ଅଗଣା ଭିତରେ ଥିବା କୂଅରେ ନେଇ ପାଣିରେ ପକେଇବା ହେଲା ଖେଳ । ସାହିର ସମବୟସ୍କ ସାଙ୍ଗମାନେ ମଧ୍ୟ ଜୁଟି ଗଲେ ସହଯୋଗ କରିବା ପାଇଁ । ସାଙ୍ଗସାଥୀଏ ଖୁବ୍ ଭଲ ଚିକିଟା ମାଟି ଆଣି ଯୋଗେଇଲେ । ଗୋଟିଏ ଛୋଟିଆ ମେଢ଼ ଯୋଗାଡ଼ କଲି । ମେଢ଼ଟି ଏତେ ଛୋଟ ଯେ, ଗୋଟିଏ ଠଣା ଭିତରେ ରଖି ହେବ ଗାଁରେ ଯେମିତି ଦୁର୍ଗାଙ୍କର ମେଢ଼ରେ ଅଷ୍ଟ ନାୟିକା ଅଙ୍କା ହୁଏ ତାକୁ ତ ଆଉ କରିପାରେନା । ଏଣୁ ସେ ଜାଗାରେ, ପାଞ୍ଜିରେ ଥିବା ରାଶି ଚକ୍ରକୁ ଗୋଟି ଗୋଟି କରି କାଟି ଅଷ୍ଟ ନାୟିକା ପରି ସଜାଏ । ଗୋଟିଏ କିଣା କଣ୍ଢେଇରୁ ସେଥିରେ ବସେଇ ପୂଜା କରେ । ବଳିଦାନ ହୁଏ, କଇଁଚି କାକୁଡ଼ି ଫଳ କିମ୍ବା କଞ୍ଚା କଦଳୀ, ପୂଜା ସମାପନାନ୍ତେ ଦେବୀଙ୍କୁ ସାଙ୍ଗସାଥୀଙ୍କ ମେଳରେ ଗୋଟିଏ ଟିଣ ଡ଼ବାକୁ ବାଡ଼େଇ ବାଜା ବଜେଇ କୂଅରେ ମୂର୍ତ୍ତି ବିସର୍ଜନ କରୁ ।

କିଛିଦିନ ପରେ ମା' ମୋ ପାଇଁ ଗୋଟିଏ ଛୋଟିଆ କଂସାଡ଼ କିଣି ଦେଲେ । ଏଣୁ ଦେବୀଙ୍କୁ ନେଇ କୂଅରେ ବିସର୍ଜନ କଲାବେଳେ ଟିଣ ଡ଼ବାକୁ ବାଡ଼େଇ ବାଜା ବଜେଇବା ପରିବର୍ତ୍ତେ କଂସାଡ଼ ବଜା ହେଲା । କିନ୍ତୁ କିଛିଦିନ ପରେ ଦେଖିଲି ଯେ ସମସ୍ତେ ମୋ ଉପରେ ବିରକ୍ତ କାରଣ ଦି'ପହରେ ଶୋଉ ନାହିଁ । ଖାଲି ସାଙ୍ଗସାଥୀଙ୍କୁ ନେଇ କଣ୍ଢେଇ ଗଢ଼ା ଚାଲିଛି । ମେଢ଼ ସଜା ହଉଛି । ପାଠ ପଢ଼ାରେ ଆଦୌ ମନ ନାହିଁ । ଏଣୁ କିଛିଦିନ ପରେ ଦେଖିଲି ଯେ ମୁଁ ଉପରବେଳା ଚାଟଶାଳିରେ ଯାଇ ପହଁଚିଲା ବେଳକୁ ମୋର ହାତତିଆରି ଦେବୀ ମୂର୍ତ୍ତି ମେଢ଼ ସହିତରେ ଯାଇ ଚାଟଶାଳିର ଗୋଟିଏ ଠଣାରେ ଥୁଆ ହେଇଛି । ମୁଁ ଯାଇ ଚାଟଶାଳିରେ ପହଁଚିଲା ମାତ୍ରେ ମୋତେ ସତିଆ ଅବଧାନେ ଧମକେଇବାକୁ ଆରମ୍ଭ କରନ୍ତି, "ଏଇ ସବୁ କାରିଗରୀ ହଉଛି, ପାଠ ପଢ଼ା ନାହିଁ ।"

ମୁଁ ଦେଖିବା ବେଳକୁ ଦେବୀ ଠଣାରେ ବିରାଜମାନ । ମୁଁ ମନେ ମନେ ରାଗରେ ଜଳେ ଆଉ ଭାବେ କିଏ ଆଣି ଇମିତି ମୋ ମେଢ଼କୁ ଚାଟଶାଳିର ଠଣାରେ ଥୋଇଲା ? ପରେ ବୁଝିଲି ଯେ ଆମର ପୂଜାରୀ ଏ କାମ କରୁଛି । ଯେଉଁ ମେଢ଼ଟି ଚାଟଶାଳିରେ ଥୁଆ ହୁଏ, ତାକୁ ଅବଧାନେ ତାଙ୍କ ପିଲା ଖେଳିବା ପାଇଁ ନେଇ ଯାନ୍ତି ।

ଇମିତି କେତେଥର ସେ ପୂଜାରୀ କଲା ପରେ ଦିନେ ଖରାବେଳେ ଘରେ ସମସ୍ତେ ଶୋଇଲେଣି ସେ ପୂଜାରୀ ଏକା ରୋଷେଇ ଘରେ ଖାଇ ବସିଚି । ମୁଁ ଆଉ ସେ, ଆଉ କେହି ନାହାନ୍ତି । ମୁଁ ଦାଉ ନବା ପାଇଁ ଭାବିଲି ତାକୁ କେମିତି ଖାଇବାକୁ ଦେବି ନାହିଁ, ହଇରାଣ କରିବି । ଏଣୁ ରାଗରେ ତାକୁ କେତେ ପ୍ରକାରର ଅଶ୍ଳୀଳ ଭାଷାରେ ଗାଳିଗୁଲଜ କରିବା ସଙ୍ଗେ ସଙ୍ଗେ କେତେଗୁଡ଼ିଏ ମନୁଷ୍ୟର ଅଖାଦ୍ୟ ପଦାର୍ଥ ଦେଖେଇଲି । ତଥାପି ଦେଖିଲି ଯେ ସେ ତ ଖାଇ ଚାଲିଛି । ଭାବିଲି ସେ ଯେମିତି ଆଦୌ ଖାଇ

ପାରିବନି ଏଣୁ ମନୁଷ୍ୟ ପକ୍ଷରେ ଆହୁରି ଉତ୍କଟ ଅଖାଦ୍ୟ ଜିନିଷ ଦେଖେଇଲି ଯେଉଁ ଖାଦ୍ୟରେ ଆଦୌ ଖାଦ୍ୟସାର ନାହିଁ, ଷଡ଼ରସ ନାହିଁ, ଚର୍ବ ଚୋଷ୍ୟ ନୁହେଁ, ଦେଖିଲେ ଘୃଣା ହବ। ଖାଇବାତ ଦୂରର କଥା ପୂଜାରୀ ଖାଇବା ଛାଡ଼ି ଉଠିଲା, ମୋ ମନଟା ଶାନ୍ତ ପଡ଼ିଲା। ଠିକ୍ ଦାଉ ନେଇଛି କିନ୍ତୁ କିଛି ସମୟ ପରେ ମା ଯେମିତି ଉଠିଲେ, ପୂଜାରୀ ମା'ଙ୍କ ଆଗରେ ମୋ ବିରୁଦ୍ଧରେ ଅଭିଯୋଗ କରି ଜଣେଇଲା-ଠାକୁରାଣୀ, ଆଜି ଆପଣଙ୍କ ପୁଅ ମୋତେ ଖାଇବାକୁ ଦେଲେ ନାହିଁ, ମୁଁ ଖାଇବା ଛାଡ଼ି ଉଠିଲି।

ମା ସବୁ କଥା ପୂଜାରୀ ମୁହଁରୁ ଶୁଣି ମୋତେ ଗୁରାଏ ବାଡ଼େଇଲେ। ପରେ ପରେ ମୁଁ ସବୁବେଳେ କଣ୍ଢେଇ ଆଉ ମୂର୍ତ୍ତି ଗଢ଼ିବାରେ ଲାଗିଲି। ପ୍ରତ୍ୟେକ ଦିନ ଉପରବେଳା ମା ଶୋଇ ଉଠିଲେ ଦେଖନ୍ତି-ଆମ ଅଗଣା ଭିତର କୂଅର ଫନ୍ଦ ଉପରେ ଗୁରାଏ କଣ୍ଢେଇ ଗଢ଼ା ହେଇ ଖରାରେ ଶୁଖିବା ପାଇଁ ରଖା ହେଇଥିବ। ଦିନେ ମା ଶୋଇ ଉଠି ଦେଖିଲେ ଯେ ମୁଁ ଅନ୍ୟାନ୍ୟ କଣ୍ଢେଇ ସହିତରେ ଗୋଟିଏ "ଛିନ୍ନମସ୍ତା' ଗଢ଼ିଛି। ଅବିକଳ ଯେମିତି ଛବିରେ ଆମେ ଛିନ୍ନମସ୍ତାଙ୍କ ରୂପ ଦେଖିବାକୁ ପାଉ।

ମା ଛିନ୍ନମସ୍ତା ମୂର୍ତ୍ତି ଦେଖି ଚମକି ପଡ଼ି କହିଲେ ଆରେ ଏତ ଛିନ୍ନମସ୍ତା ଗଢ଼ିଲାଣି, ଏ ତ ବଂଶ ରଖିବ ନାହିଁ। ଆମ ଘରେ ଛିନ୍ନମସ୍ତାର ମୂର୍ତ୍ତି ରହିବାର ନୁହେଁ। ମା ରାଗରେ ଛିନ୍ନମସ୍ତାର ମୂର୍ତ୍ତି ସହିତ ଅନ୍ୟାନ୍ୟ ଯେତେ କଣ୍ଢେଇ ଖରାରେ ଶୁଖା ହେଉଥିଲା ସବୁଗୁଡ଼ିକ କୂଅ ଭିତରକୁ ଠେଲି ଦେଲେ। ଦିନସାରା ଯେତେ କଷ୍ଟ କରି ଛିନ୍ନମସ୍ତା ମୂର୍ତ୍ତି ଆଉ କଣ୍ଢେଇ ଗଢ଼ିଥିଲି, ସବୁଗୁଡ଼ିକ ଟବ୍‌ଟାବ୍ ହେଇ କୂଅ ପାଣିରେ ସଳିଳ ସମାଧି ଲାଭ କଲେ। ତା'ପରେ ଯେତେବେଳେ ମାଟି ନେଇ କଣ୍ଢେଇ ଗଢ଼ି ବସିଲି, ମା ଦେଖିଲେ ମାରି ଗୋଡ଼େଇଲେ।

ଏଣୁ ମୁଁ ଲୁଚି ଆମର ଜଣେ ପଡ଼ିଶା ଘରେ ଯାଇ ତା'ର ଗୋଟିଏ ଅଧା କାନ୍ଥ ଉପରେ ବସି ମୂର୍ତ୍ତି ଗଢ଼ିଲି। କିନ୍ତୁ ସେଥିରେ ବି ମା ମୂର୍ତ୍ତି ଗଢ଼ିବାରେ ବାଧା ସୃଷ୍ଟି କଲେ। ଏଣୁ ଆଉ କଣ୍ଢେଇ ବା ମୂର୍ତ୍ତି ଗଢ଼ିବା ମୋ ଦ୍ୱାରା ହେଇ ପାରିଲା ନାହିଁ। ସେଇଠୁଁ ମୋର ମୂର୍ତ୍ତି ଇତ୍ୟାଦି ଗଢ଼ିବା ବନ୍ଦ ହେଇଗଲା। କିନ୍ତୁ ଠାକୁରପୂଜା ବନ୍ଦ ହେଲା ନାହିଁ।

ମୁଁ ଯେଉଁ ଛିନ୍ନମସ୍ତା ମୂର୍ତ୍ତି ଗଢ଼ିଥିଲି, ସେ ଛିନ୍ନମସ୍ତାଙ୍କ ରୂପ ମୁଁ ପ୍ରଥମେ ଆମ ଗାଁରେ ଦେଖିଥିଲି। ଆମ ଗାଁରେ ଜଣେ ଭଦ୍ରଲୋକ ଥିଲେ, ସେ ପ୍ରତ୍ୟେକ ବର୍ଷ ତାଙ୍କ ଘରେ ଛିନ୍ନମସ୍ତା ବଡ଼ ସମାରୋହରେ ପୂଜା କରୁଥିଲେ। ସେ ଛିନ୍ନମସ୍ତାଙ୍କ ଚିତ୍ର ଦେଖିଥିଲି, କଟକର ଗଡ଼ଗଡ଼େଶ୍ୱରଙ୍କ ମନ୍ଦିର ଭିତର କାନ୍ଥରେ। ସେଠି ଦୁର୍ଗାଙ୍କର ଦଶାବତାର ଚିତ୍ର ଅଙ୍କିତ ଥିବାର ଦେଖିଲି। ପ୍ରତ୍ୟେକ ଚିତ୍ର ତଳେ ପ୍ରତ୍ୟେକ ଅବତାରର ନାମ ଲେଖାଥିଲା। ମୋତେ ସେ ଦଶାବତାର ରୂପ ଭିତରୁ ଛିନ୍ନମସ୍ତା ଆଉ ଅନ୍ନପୂର୍ଣ୍ଣାଙ୍କ ରୂପ ଭାରି ଭଲ ଲାଗିଥିଲା। ଏଣେ ଚିତ୍ର ଆଙ୍କିବାକୁ ମନ ହେଲେ ମଧ୍ୟ ହାତରେ କିଛି ଉପକରଣ ନଥାଏ। ଉପକରଣ ଯୋଗାଡ଼ କରିବାକୁ ଅର୍ଥ ଦରକାର। ଅର୍ଥ ଦଉଛି କିଏ ? କିନ୍ତୁ ମାଟିର ତ ଅଭାବ ନାହିଁ। ସାଙ୍ଗସାଥୀମାନେ ମାଟି ଆଣି ଗଦେଇଲେ। ଏଣୁ ଛିନ୍ନମସ୍ତାଙ୍କ ରୂପ ଗଢ଼ିଥିଲି। ଛିନ୍ନମସ୍ତାଙ୍କ ରୂପ ଦେଖି ମା ଯେ କହିଥିଲେ ଏ ବଂଶ ରଖିବ ନାହିଁ।

ପ୍ରକୃତ କଥା, ଯେଉଁଦିନ ଛିନ୍ନମସ୍ତାଙ୍କ ରୂପ ଗଢ଼ିଥିଲି ସେଦିନ ଛିନ୍ନମସ୍ତାଙ୍କ ରୂପ ସହିତରେ ଯେତେ କଣ୍ଢେଇ ଗଢ଼ି ଖରାରେ ଶୁଖେଇ ଥିଲି ସେ ସବୁ କଣ୍ଢେଇଙ୍କର ବଂଶ ବୁଡ଼ିଲା। ଛିନ୍ନମସ୍ତାଙ୍କ ସହିତରେ ସବୁ କଣ୍ଢେଇ ମା'ଙ୍କର କରାଘାତରେ କୂଅ ପାଣିରେ ଝାସ ଦେଲେ। ଗଡ଼ଗଡ଼େଶ୍ୱର ମହାଦେବଙ୍କ ମନ୍ଦିର ଭିତରେ ଦୁର୍ଗାଙ୍କର ଦଶାବତାର ଦେଖିବାର ପ୍ରଥମେ କେମିତି ସୁବିଧା ପାଇଥିଲି ସେ ବିଷୟରେ କିଛି ଲେଖିବା ଦରକାର ମନେ କରୁଛି।

ଆମେମାନେ ପ୍ରତ୍ୟେକ ବର୍ଷ କାର୍ତ୍ତିକ ପୂର୍ଣ୍ଣିମା ଦିନ ବଡ଼ି ସକାଳୁ ବଗି ଗାଡ଼ିରେ ଥୋରିଆସାହିରୁ ମହାନଦୀର ଗଡ଼ଗଡ଼ିଆ ଘାଟକୁ ଯାଉ। ସେଠି ମହାନଦୀରେ ଗାଧୋଇ ଡ଼ଙ୍ଗା ଭସାଣି ସାରିଲା ପରେ କେତେକ ବ୍ରାହ୍ମଣ ଆଉ ଭିକାରୀଙ୍କୁ ପଇସା ଦିଆ ହୁଏ। ଆଉ କେତେକ ଭିକାରୀ ଯେଉଁମାନେ ରାସ୍ତା କଡ଼ରେ ବସିଥାନ୍ତି, ତାଙ୍କୁ ବିରି ଆଉ ଚାଉଳ ବଣ୍ଟା ହୁଏ। ଆଗରୁ ଘରୁ ବିରି, ଚାଉଳ ମିଶା

ହେଇ ବଣ୍ଟା ହବା ପାଇଁ ସାଙ୍ଗରେ ଗୋଟାଏ ବଡ଼ ବାଉଁସିଆରେ ନିଆ ହେଉଥାଏ । ତା'ପରେ ଗଡ଼ଗଡ଼େଶ୍ୱରଙ୍କ ମନ୍ଦିର ଭିତରକୁ ଯାଉ, ସେଠି ପୂଜା ପାଠି, ଦାନ ଦକ୍ଷିଣା ସାରି ଗୋଟିଏ ଗୁଡ଼ିଆ ଦୋକାନରେ ଜଳଖିଆ କରୁ । ବାବା, ମା ଗୁଡ଼ିଆ ଦୋକାନରେ ଜଳଖିଆ କରନ୍ତି ନାହିଁ । ମୁଁ ଏବଂ ଚାକର, ପୂଜାରୀ ସମସ୍ତେ ଜଳଖିଆ କରୁ ।

ଆଜି କାଲି ତ କଟକ ସହରରେ ବିଜୁଳିବତୀର ଯୁଗ । ଜନସଂଖ୍ୟା ବହୁଗୁଣ ବଢ଼ି ଯାଇଛି । ସେ ଅନୁପାତରେ ବାଲିଯାତ୍ରାରେ ଗୁଡ଼ିଆ ଦୋକାନର ସାଜସଜ୍ଜାର ଆଡ଼ମ୍ବର ମଧ ବହୁଗୁଣ ବୃଦ୍ଧି ପାଇଛି । କିନ୍ତୁ ମୋର ପିଲାବେଳେ କଟକ ବାଲିଯାତ୍ରାର ଗୁଡ଼ିଆ ଦୋକାନର ସାଜସଜ୍ଜାର ଆଡ଼ମ୍ବର ମଧ କମ୍ ନଥିଲା । ସେତେବେଳେ ଫଚ ଲାଇଟ୍, ପେଟ୍ରୋମାକ୍ସ ଆଉ ଗ୍ୟାସ୍ ଲାଇଟ୍‌ର ଯୁଗ । ଗୁଡ଼ିଆ ଦୋକାନର ପାନତୁଆ, ଖିରମନ, ମିଠେଇ ସବୁ superlative degree ମୁଁ ତ ଦେଖି ଆଶ୍ଚର୍ଯ୍ୟ ହେଇଯାଏ । ଗୋଟାଏ ପାନତୁଆ ଜଣେ ଲୋକ ଖାଇଲେ ପେଟ ଭର୍ତ୍ତି ହେଇଯିବ । ପୁରି ସେରକ ଚାରି ଅଣା, ଦାମ୍ ଦେଖିଲେ ପେଟ ପୁରି ଯିବ । ସେତେବେଳେ ଲୋକମାନେ ଗୁଡ଼ିଆ ଦୋକାନରେ ବସି ଜଳଖିଆ ଖାଇବାକୁ ଲଜ୍ଜା ବୋଧ କରୁଥିଲେ । ଯା ଖାଇବେ, ତାକୁ କିଣି ନେଇ ଯେ ଯା ଘରେ ଖାଉଥିଲେ । କ'ଣ ଖାଇବ ? ମିଠେଇ ଗୋଟାଏ ଖାଇଲେ ପେଟ ଭର୍ତ୍ତି । ବାବା, ପୂଜାରୀ, ଚାକରଙ୍କୁ ତାଙ୍କର ଯାହା ଇଚ୍ଛା ପେଟ ଭରି ଖୁଆନ୍ତି । ଆଉ ସାହିରୁ ଯେ ଆମ ସାଙ୍ଗରେ ଯାଇଥାନ୍ତି, ତାଙ୍କୁ ମଧ ପେଟ ଭରି ଖୁଆନ୍ତି ।

ଆଉ ଗୋଟାଏ ବାଲିଯାତ୍ରାର ଆକର୍ଷଣୀୟ ଜିନିଷ ହେଲା, ଦହିବରା । ପଇସାକୁ ଚାରିଖଣ୍ଡ । ସେତେବେଳେ କଟକ ସହରରେ ବରା, ପିଆଜି ଇତ୍ୟାଦି ଗରିବ ଲୋକଙ୍କର ଜଳଖିଆ ଭିତରେ ଗଣ୍ୟ ହଉଥିଲା । ଧନୀ ଲୋକ ଆଉ ମଧବିତ୍ତ ଶ୍ରେଣୀର ଲୋକଙ୍କର ଜଳଖିଆ ଥିଲା ରସଗୋଲା, ପାନତୁଆ, ଖିରମନ, ଖାସ୍ତାଗଜା, ବାଲୁସାଇ, ପୁରି, କଚୁରି, ସିଙ୍ଗଡ଼ା ଇତ୍ୟାଦି ଲୋକେ ଖାଉଥିଲେ ଯେମିତି ଅନ୍ୟକୁ ଖୋଉଥିଲେ ସେମିତି । ଅନ୍ୟକୁ ଖୋଇବାରେ ଲୋକେ ଆନନ୍ଦ ପାଉଥିଲେ । ସେତେବେଳେ କଟକ ସହରରେ ଏତେ ଚା'ର ପ୍ରଚଳନ ନଥିଲା । ଯେ ଯା ଘରକୁ ଯାଉଥିଲେ, ସେ ତାକୁ ଜଳଖିଆ କିଛି ନଖୋଇ ବିଦାୟ କରୁ ନଥିଲେ । ସେତେବେଳେ ଲୋକେ ଧୋତି, ପଞ୍ଜାବୀ, କୋଟ୍, କମିଜ ପିନ୍ଧୁଥିଲେ । ବେକରେ ଚଦର ପକଉଥିଲେ । ବେଶ୍ ଢ଼ିଲା ଧରଣର ପୋଷାକ ପିନ୍ଧୁଥିଲେ । ମନ ମଧ ଖୋଲା ଥିଲା । ଖୋଲା ମନରେ କଥାବାର୍ତ୍ତା କରିବା ଲୋକଙ୍କର ଧରଣ ଥିଲା । ଏବେ ଲୋକଙ୍କର ପୋଷାକ ପରିଚ୍ଛଦ ହେଲା ନଳୀ ଫୁଲ୍ ପ୍ୟାଣ୍ଟ୍ ସାଙ୍ଗକୁ ଟି କଟ୍ ସାର୍ଟ ଦେହରେ ଚିପି ପିନ୍ଧା ହେଉଥିବ । ସେମିତି ଏବେ ଲୋକଙ୍କର ମନ ମଧ ଚିପି ହେଇଗଲାଣି । ଅତି ସଂକୀର୍ଣ୍ଣ, ଯେ ବନ୍ଧୁବାନ୍ଧବ, କୁଣିଆ ଆସିଲେ ତାକୁ କେମିତି ଚା ମନ୍ଦାଏ ଦେଇ ତାକତର୍କରେ ବିଦାୟ କଲେ ବଞ୍ଚିବାର କଥା । ନଳୀ ପ୍ୟାଣ୍ଟ୍ ଇମିତି ପିନ୍ଧା ହଉଛି ଯେ ତଳେ ମଶିଣା କିମ୍ବା ପିଢ଼ାରେ ବସିବା କଷ୍ଟକର । ବସିବାକୁ ହେଲେ ଚୌକୀ ଦରକାର ନଚେତ୍ ପ୍ୟାଣ୍ଟ୍ ଫାଟିବାର ସମ୍ଭାବନା । ମୋର ପିଲାବେଳେ କଟକରେ ଦକ୍ଷିଣ ଭାରତୀୟ ଜଳଖିଆ ଦୋକାନ ଆଦୌ ନଥିଲା । ଦୋଷା, ଇଟ୍‌ଲି, ଉପମା, ସମ୍ବର, ପାଚେଡ଼ି କିଏ ଖାଏ ? ମୁଁ ଦେଖିଲି ପ୍ରଥମେ କଟକରେ ରେଭେନ୍‌ସା କଲେଜ ନିକଟରେ South Indian Hotel ଆରମ୍ଭ ହେଲା ।

ସେଇଠୁଁ କଟକରେ ଏବଂ ଅନ୍ୟତ୍ର ଦକ୍ଷିଣ ଭାରତୀୟ ଜଳଖିଆର ଦୋକାନ ବ୍ୟାପିଲା । କଟକ ସହରର ଲୋକେ ଆଗେ ବଗିରେ କିମ୍ବା ଶଗଡ଼ରେ ଯିବା ଆସିବା କରୁଥିଲେ, ଯେଉଁ ଦିନଠୁଁ କଟକରେ ଏବଂ ଅନ୍ୟତ୍ର ରିକ୍ସାର ପ୍ରଚଳନ ହେଲା, ସେଇଠୁଁ ଆରମ୍ଭ ହେଲା ବେଶି ଦକ୍ଷିଣ ଭାରତୀୟ ଜଳଖିଆର ପ୍ରଚଳନ । ମୋର ମନେ ଅଛି, ମାଛୁଆ ବଜାରରେ ଗୋଟିଏ ବଡ଼ ଜଳଖିଆ ଦୋକାନ ଥିଲା । ସେ ଦୋକାନର ମାଲିକ ହେଲେ ଗୋପୀ ସାହୁ । ତାକୁ ଗୋପୀ ସାହୁ ଗୁଡ଼ିଆ ଦୋକାନ କହୁଥିଲେ । ବେଶ ପୃଥୁଳକାୟ, ଲମ୍ବୋଦର ଲୋକ, ଦେଖିଲେ ମନଖୁସୀ ହେଇଯାଏ । କାରଣ ଦୋକାନ ଭଳି ଗୁଡ଼ିଆ, ବ୍ୟବହାର ମଧ ସେମିତି କଥାରେ ମନଖୁସୀ ହେଇଯାଏ । ଗୋପୀ ସାହୁ ଯେତେବେଳେ ପୁରି କି କଚୁରୀ ଛାଣେ ଘିଅ

ବାସନାରେ ସେ ବଜାର ଖଣ୍ଡକ ମହକି ଉଠେ । ସେତେବେଳେ ଦାଲଦା, ତୁଷାର, ଭେଜିଟେବଲ ଘିଅ, ହ୍ୱାଇଟ ଅଏଲ୍‌ର ପ୍ରଚଳନ ନଥିଲା ।

ଆଗେ ବାଲିଯାତ୍ରାରେ ବଗି ଆଉ ଶଗଡ଼ ଜମା ହେଇ ଯାଉଥିଲା । କଟକ ସହରର ଲୋକ ସଂଖ୍ୟା ଅନୁପାତରେ ଏବଂ କଟକର ଆଖପାଖ ଅଞ୍ଚଳର ଲୋକେ ଆସି ଶଗଡ଼ରେ ଜମା ହଉଥିଲେ । ବେଶି ଭାଗ ଲୋକେ ଖାଇବାରେ ପଇସା ଖର୍ଚ୍ଚ କରୁଥିଲେ । ଲୋକଙ୍କୁ ଖୋଇ ଖର୍ଚ୍ଚ କରୁଥିଲେ । ଜିନିଷପତ୍ର ପ୍ରଚୁର କିଣା ବିକା ହଉଥିଲା । ବେଶି ରାତି ହେଲେ କାର୍ତ୍ତିକ ମିଳନ ହଉଥିଲା । ଆତସବାଜି ହଉଥିଲା । ସେତେବେଳେ ଏତେ କାର୍ତ୍ତିକ ମେଢ଼ ହଉ ନଥିଲା । ଅତି ଆନନ୍ଦରେ ସବୁ ପର୍ବ ପର୍ବାଣୀ ସମାହିତ ହଉଥିଲା । କେବଳ କଟକରେ ମହରମ ବେଳେ ତାଜିଆ ବାହାରିଲେ କେବେ କେବେ କଟକ ଝୋଲା ସାହିର ଲୋକେ ଦଙ୍ଗାଗୋଳ କରୁଥିଲେ ।

ମୋର ମନେ ଅଛି, ମହରମ ବେଳେ ତାଜିଆ ଦେଖିବା ପାଇଁ ମୋତେ ପୋଷାକପତ୍ର ପିନ୍ଧେଇ ବାବା ନିଜେ କାଖେଇ ଦରଘା ବଜାରକୁ ନେଇ ଯାଉଥିଲେ । ସେଠି ପ୍ରିଣ୍ଟିଂ ପ୍ରେସ୍‌ର ବାହାରେ ଗୋଟିଏ ଜାଗାରେ ବସେଇ ଦଉଥିଲେ । ତାଜିଆ ବାହାରିଲେ ଯଦି ଦଙ୍ଗାଗୋଳ ଆରମ୍ଭ ହେଲା, ବାବା ମୋତେ ବସିବା ଜାଗାରୁ ନେଇ ଚାଲି ଆସୁଥିଲେ । ବର୍ଷେ ମୋତେ ନେଇ ଯେଉଁଠି କବିବର ରାଧାନାଥ ରାୟଙ୍କ ମୂର୍ତ୍ତି ଅଛି, ସେଇଠି ବାବା ଠିଆ କରି ଦେଲେ ଏବଂ ନିଜେ ସେଇଠି ଛତା ଧରି ଠିଆ ହେଲେ । ସେତେବେଳେ ଗୌରୀଶଙ୍କର ପାର୍କ ତିଆରି ହେଇ ନଥାଏ । ସେଠି ଗୋଟାଏ ପଡ଼ିଆ ଥାଏ । ସେଠି କେବଳ ମ୍ୟୁନିସିପାଲିଟିର କଚଡ଼ା, ଝାଟୁଆ ସବୁ ଗଦା ହଉଥାଏ ।

ମୋତେ ବାବା ରାଧାନାଥଙ୍କର ପ୍ରସ୍ତର ମୂର୍ତ୍ତିକୁ ଦେଖେଇ ଚିହ୍ନେଇ ଦେଇ କହିଲେ, ଏ ହଉଛି ରାଧାନାଥ ରାୟଙ୍କ ମୂର୍ତ୍ତି । ସେ ଜଣେ ବଡ଼ କବି ଥିଲେ । ତାଙ୍କର କେତେ ବହି ଅଛି, ବଡ଼ ହେଲେ ପଢ଼ିବୁ । ମୁଁ ରାଧାନାଥଙ୍କ ପ୍ରସ୍ତର ମୂର୍ତ୍ତିକୁ ଦେଖି ଭାବିଲି, ରାଧାନାଥ ରାୟଙ୍କ ଶବକୁ ସେମିତି ଭଙ୍ଗୀରେ ବସେଇ ଦେଇଛନ୍ତି । ମୁର୍ଦ୍ଦାରଟାଏ ବସିଛି, ମୋତେ ଭାରି ଭୟ ଲାଗିଲା । ମୁଁ ବାବାଙ୍କୁ ଜାବୁଡ଼ି ଧରି ଠିଆ ହେଇ ସେ ମୂର୍ତ୍ତିକୁ ଟିକିଏ ଟିକିଏ ଚାହୁଁ ଥାଏ । ତା'ପରେ ଘରେ ଆସି ଆଉ ଘୃଣାରେ ଭାତ ଖାଇ ପାରିଲି ନାହିଁ । ଖାଲି ତାଙ୍କର ପେଚୁଆ ପେଚୁଆ ଆଖି ଦି'ଟା ମୋର ମନେ ପଡ଼ିଲା ଆଉ ଭୟ ଲାଗିଲା ।

ସେମିତି କଟକରେ ଦେବାଳୀ ବେଳକୁ କାଳୀ ମେଢ଼ ଦେଖିବା ପାଇଁ ଆମେମାନେ ସମସ୍ତେ ବଗି ଗାଡ଼ିରେ ଯାଉ । ଜାଗା ଜାଗା ବୁଲି ଦେଖୁ । ବର୍ଷେ ରାତିରେ ମୋତେ କାଳୀ ମୂର୍ତ୍ତି ଦେଖାଇବା ପାଇଁ ବାବା ନେଇ ଯାଇଥିଲେ । ମୋର ମନେ ଅଛି ଚୌଧୁରୀ ବଜାର କାଳୀଙ୍କୁ ଦେଖିଲା ବେଳେ ଦେଖିଲି କାଳୀଙ୍କ ସାମନାରେ ମଶାଣୀଟାଏ, ସେଥିରେ ମଣିଷର କଙ୍କାଳ ପଡ଼ିଛି, ତାକୁ କାଉ, ଶାଗୁଣା ଟାଣି ଓଟାରି ଖାଉଛନ୍ତି । କେଉଁଠି ମୁର୍ଦ୍ଦାର ଗୋଟାକୁ ନେଇ କେତେଜଣ ମିଶି ଦାହ କରୁଛନ୍ତି । ବିଲୁଆ, କୁକୁର ବୁଲୁଛନ୍ତି ଆଉ କେତେକ ଲୋକ ଗୋଟିଏ ଶବକୁ କାନ୍ଧେଇ ମଶାଣୀ ଭୂଇଁକୁ ସତ୍କାର କରିବା ପାଇଁ ଆଣୁଛନ୍ତି । ଏ ସବୁ ଦୃଶ୍ୟ ଦେଖି ମୁଁ ତ ଭୟରେ ଅସ୍ଥିର ହେଇ ପଡ଼ିଲି । ଏହା ଛଡ଼ା ମେଢ଼ରେ କାଳୀଙ୍କର ଯେଉଁ ଭୟଙ୍କର ରୂପ, ତା ଛଡ଼ା ଆହୁରି ଭୟଙ୍କର କାଳୀଙ୍କର ଉଭୟ ପାର୍ଶ୍ୱରେ ଯେଉଁ ଦୁଇଟା ଯୋଗିଣୀ ମୂର୍ତ୍ତି, କି ଭୟଙ୍କର ତାଙ୍କର ରୂପ । ! ପାଟି ଆଁ କରିଛନ୍ତି, ଦାନ୍ତଗୁଡ଼ା ବାହାରିଛି । ପାଟିର ଦୁଇ କଡ଼ ଦେଇ ରକ୍ତର ଧାର ବୋହି ଯାଉଛି । ବଡ଼ ବଡ଼ ଆଖିରେ ତରାଟି ଅନେଇଛନ୍ତି । ପୁଣି ସେ ଦୁଇଟାଙ୍କ ଭିତରୁ ଗୋଟାଏ ଯୋଗଣୀ ଗୋଟିଏ ପିଲାକୁ ଓଲଟା ଧରିଛି । ପିଲାର ମୁଣ୍ଡ ତଳକୁ, ଗୋଡ଼ ଦି'ଟା ଉପରକୁ । ଯୋଗଣୀ ସେ ପିଲାଟାକୁ ପୂରାପୂରି ଦୁଇଫାଳ କରି ଚିରି ଦବା ପାଇଁ ସେ ପିଲାର ଦୁଇଟା ଗୋଡ଼କୁ ଦୁଇ ହାତରେ ଚିରିବା ଅବସ୍ଥାରେ ଧରିଛି । ତଳେ ପିଲାଟି ତା'ର ମୁଣ୍ଡକୁ ମଝିରେ ମଝିରେ ଯନ୍ତ୍ରଣାରେ ଛଟପଟ ହେଲା ଭଳି ଏ ପାଖ ସେପାଖ ହଲଉଛି । ଏ ବିକଟ ଦୃଶ୍ୟ ଦେଖି ମୁଁ ଆଉ ଯିବି କୁଆଡ଼େ ? ବାବାଙ୍କୁ ଜାବୁଡ଼ି ଧରିଲି । ଅଛ ଟିକିଏ ଟିକିଏ ଅନେଇ ପୁଣି ମୁହଁକୁ

ବାବାଙ୍କ ଦେହରେ ଚାପି ଧରିଲି । କାନ୍ଦିବା ଭଳି ହେଲାରୁ ବାବା ସେଠୁଁ ମୋତେ ନେଇ ଆସିଲେ । ଘରେ ଆସି ଘୃଣାରେ ଆଉ ଖାଇ ପାରିଲି ନାହିଁ । ଖାଲି ସେ ମଶାଣୀର ଦୃଶ୍ୟ ଆଖିରେ ଦେଖାଗଲା । ବେଶି ଦେଖାଗଲା, କାଉ, ଶାଗୁଣା ଗୋଟାଏ ମୁର୍ଦ୍ଦାରକୁ ଯେ ଟାଣି ଓଟାରି ଖାଉଥିଲେ ଆଉ ରାତିରେ ନିଦ ହେଲା ନାହିଁ । ଭାରି ଦୁଃଖ ଲାଗିଲା । ଖାଲି ମନେପଡ଼ିଲା ସେ ଯୋଗଣୀ ତ ସେ ପିଲାଟିକୁ ମାରିଦବ । କ'ଣ କରି ତା' ଗୋଡ଼ ଦି'ଟାକୁ ଫାଡ଼ି ଦଉଛି । ସେତେବେଳେ ମଧ କାଳୀ ମେଳନ ରାତିରେ ବେଳେବେଳେ ଦଙ୍ଗାଗୋଳ ହଉଥିଲା । ମୁଣ୍ଡ ଫଟାଫଟି ହଉଥିଲେ । ବର୍ଷେ ବର୍ଷେ ଆମେ ସମସ୍ତେ କାଳୀଙ୍କର ପାଣିରେ ବିସର୍ଜନ ଦେଖିବାକୁ ରାତିରେ କାଠଯୋଡ଼ି କୂଳ ଦେବୀଗଡ଼ା ପାଖକୁ ଏକ ବଳଦିଆ ଗାଡ଼ିରେ ଯାଉଥିଲୁ । ଦୁର୍ଗା, କାଳୀ, ଲକ୍ଷ୍ମୀ, ସରସ୍ୱତୀ, ଗଣେଶ, କାର୍ତ୍ତିକ ଏମାନଙ୍କର ମାଟିରେ ମୂର୍ତ୍ତି ଗଢ଼ି ଚିତ୍ର କରିବାରେ ଓଡ଼ିଶାର କଟକ ସହରର କାରିଗର ଆଉ ଚିତ୍ରକାରମାନେ ମୋର ମନେହୁଏ ଭାରତର ଅନ୍ୟାନ୍ୟ ଜାଗାର କାରିଗର, ଚିତ୍ରକାରମାନଙ୍କ ତୁଳନାରେ ଶ୍ରେଷ୍ଠ ବିବେଚିତ ହେବେ ।

## (୫)

ମୋର ଅତି ପିଲାବେଳେ ମୁଁ ମାମୁଁ ଘରକୁ ଯାଇଥିଲି । ମୋର ବିଶେଷ କିଛି ସେତେବେଳକା ଘଟଣା ମନେ ନାହିଁ । କିନ୍ତୁ ମୋର ହେତୁ ହେଲା ପରେ ମୁଁ ଯେତେବେଳେ ମାମୁଁ ଘରକୁ ଗଲି ସେତେବେଳେ ମା'ଙ୍କ ସାଙ୍ଗରେ ଯାଇଥିଲି । ଆଉ ଜଣେ ଦାଦୀ ସମ୍ପର୍କୀୟ ହେବେ, ଆମକୁ ମାମୁଁ ଘରେ ପହଁଚେଇ ଦେଇ ଆସିବାକୁ ଆମ ସାଙ୍ଗରେ ଯାଇଥିଲେ ।

ଆଗରୁ କହିଛି, ମୋର ମାମୁଁ ଘର ଯାଜପୁର ଟାଉନ୍‌ର ଗୋପାଳପୁର ଗାଁରେ । କଟକରୁ ବ୍ୟାସସରୋବର ଷ୍ଟେସନ୍‌କୁ ଟିକେଟ୍ କରିବାକୁ ହୁଏ । ବ୍ୟାସସରୋବର ଷ୍ଟେସନ୍ ଯେଉଁ ଜାଗାରେ ତାକୁ ମଧ ଡ଼ୋଳିପୁର କୁହାଯାଏ । ଏବେ ସେହି ବ୍ୟାସ ସରୋବର ଷ୍ଟେସନ୍‌ର ନାମ ହେଉଛି, ଯାଜପୁର ରୋଡ଼ ।

ମୁଁ ମୋର ହେତୁରେ ଯେଉଁ ଥର ପ୍ରଥମେ ମାମୁଁ ଘରକୁ ଗଲି, ସେଥର ବ୍ୟାସସରୋବର ଷ୍ଟେସନ୍ ପରିବର୍ତ୍ତେ ବରୁଣ୍ଡେଇ ଷ୍ଟେସନ୍‌କୁ ଟିକେଟ କଟା ହେଉଥିଲା । ବରୁଣ୍ଡେଇ ଷ୍ଟେସନ୍ ହେଉଛି ବ୍ୟାସସରୋବରର ପରବର୍ତ୍ତୀ ଷ୍ଟେସନ୍ । ସେଠୁଁ କୁଆଡ଼େ ଯାଜପୁରକୁ ଯିବା ପାଇଁ ଶଗଡ଼ ମିଳେ । ବ୍ୟାସସରୋବର ଷ୍ଟେସନ୍ ନିକଟରେ ଯାଜପୁରକୁ ଯିବା ପାଇଁ ସହଜରେ ଶଗଡ଼ ମିଳେନା ।

ଆମେ କଟକରୁ ଯାଇ ବରୁଣ୍ଡେଇ ଷ୍ଟେସନ୍‌ରେ ପହଁଚିଲୁ । ଷ୍ଟେସନ୍ ବୋଲି ଯାକୁ ଦେଖିଲି ବଖୁରିଏ ଘର, ଚାରିଆଡ଼େ ଧାନ ବିଲ, କାଁ ଭାଁ କେଉଁଠି ଚାଳଘର ଗୋଟାଏ ଗୋଟାଏ ଦେଖା ଯାଉଛି । କେତୋଟି ଘର ଷ୍ଟେସନ୍ ନିକଟରେ, ସେଥିରେ ଗୋଟିଏ ଦୋ'ଟି ମଫସଲୀ ଦୋକାନ । ସେଠି ଡ଼ାଲି, ଚାଉଳ, ହାଣ୍ଡି ଇତ୍ୟାଦି ମିଳେ ଆଉ ଯାତ୍ରୀ ରହିବା ପାଇଁ ବଖୁରିଏ ବଖୁରିଏ ଘର ମିଳେ । ବରୁଣ୍ଡେଇ ଷ୍ଟେସନ୍‌ରେ ମୁସାଫିରଖାନା ବୋଲି କିଛି ନାହିଁ । ଟ୍ରେନ୍‌ରୁ ଓଲେହିଲେ ନିଜ ଭାଗ୍ୟକୁ ଆଦରି ଯୁଆଡ଼େ ଯିବ ଯାଅ । ଏତ ଗଲା ବରୁଣ୍ଡେଇ ଷ୍ଟେସନ୍‌ର ହାଲ୍ । ଏବେ ସେ ଷ୍ଟେସନ୍‌ର ନାମ ହେଉଛି ବୈତରଣୀ ରୋଡ଼ ।

ମୋର ଜନ୍ମସ୍ଥାନ ଓଡ଼ିଶାର ତତ୍କାଳୀନ ରାଜଧାନୀ କଟକ ସହରର ଷ୍ଟେସନ୍‌ର ହାଲ୍ ଯାହା ଥିଲା ସେ ତୁଳନାରେ ଆଜିକାଲିର କଟକ ଷ୍ଟେସନ୍‌କୁ ଦେଖିଲେ ମନେହୁଏ ଯେମିତି ଆଲ୍ଲାଦିନ ୱାଣ୍ଡରଫୁଲ ଲ୍ୟାମ୍ପର ପ୍ରଭାବରେ କିଏ ଉଡ଼େଇ ଆଣି ଥୋଇ ଦେଇଛି ତଥାପି ସେହି ପୁରୁଣା ଷ୍ଟେସନ୍‌ର ଅଳ୍ପ କେତୋଟି ଘରକୁ ଦେଖିଲେ ମୋର ମନେପଡ଼େ ସେଇ ପିଲାଦିନର କଟକ ଷ୍ଟେସନ୍, ସେଇ ଅଳ୍ପ କେତୋଟି ପୁରୁଣା କାଳିଆ ଘର ଆଜିକାଲିର ନୂଆ ଘରମାନଙ୍କ ମଝିରେ ମଝିରେ ଛାକିଜୁକି ହେଇ ଆଧୁନିକତାର ସହିତରେ ତାଳ ପକେଇ ଚାଲିଛନ୍ତି । ସେ ଘରକୁ ମଧ ହଠାତ୍ ଚିହ୍ନି ହଉ ନାହିଁ । ଏତେ ଯାତ୍ରୀ ଭିଡ଼ ନଥିଲା । କେତେ ଗୋଟି ଘର ସେଥିରେ ଫାଷ୍ଟ କ୍ଲାସ, ସେକେଣ୍ଡ କ୍ଲାସ, ଇନ୍‌ଟର କ୍ଲାସର ଉଏଟିଂ ରୁମ ଥିଲା

ଆଉ ଥାର୍ଡ଼ କ୍ଲାସ ଋଏଟିଂ ରୁମ୍‌ର ଅବସ୍ଥା ଯା ଥିଲା ସେ ନର୍କ କୁଣ୍ଡ ସହିତରେ ତୁଳନୀୟ, ପ୍ଲାଟଫର୍ମର ଅବସ୍ଥା ମଧ୍ୟ ତଦ୍ରୂପ । ହୁଇଲ୍‌ର ବୁକ୍ ଷ୍ଟଲ୍‌ର ସେତେବେଳେ ନାଁ ଗନ୍ଧ ନଥିଲା । ରାତି ହେଲେ ପ୍ଲାଟଫର୍ମରେ ଗ୍ୟାସ ଲାଇଟ୍ ଜଳୁଥିଲା । ତଥାପି ସେତେବେଳେ ସେ ଲାଇନ୍‌ରେ ଖୋର୍ଦ୍ଧାରୋଡ଼ ବଡ଼ ଷ୍ଟେସନ୍ ଥିଲା ।

ଆମେମାନେ କୁଆଡ଼େ ଯିବାକୁ ହେଲେ, ଥୋରିଆସାହିରୁ କଟକ ଷ୍ଟେସନ୍‌କୁ ବଗିରେ ଯାଉଥିଲୁ କିମ୍ବା ଦି'ବଳଦିଆ ଶଗଡ଼ କିମ୍ବା ଏକ ବଳଦିଆ ଶଗଡ଼ରେ ଯାଉଥିଲୁ । ଷ୍ଟେସନ୍ ପଛପଟେ ସାଇକେଲ୍ ବା ରିକ୍ସା ଷ୍ଟାଣ୍ଡ ଆସିବ କୁଆଡ଼ୁ? କଟକରେ ସାଇକେଲ୍ ତ ଖୁବ୍ କମ୍ ଥିଲା । ରିକ୍ସା ତ ଆଦୌ ନଥିଲା । ମୋର ମନେ ଅଛି ଥୋରିଆସାହିରେ କେହି କେବେ ସାଇକେଲ୍‌ରେ ଚାଲିଗଲେ ତାର ଘଣ୍ଟି ଶବ୍ଦ ଶୁଣି ମୁଁ ଦାଣ୍ଡ ଆଡ଼କୁ ଦୌଡ଼ି ଆସି ଦେଖୁଥିଲି । କଟକ ଷ୍ଟେସନ୍‌ର ଅନ୍ୟାନ୍ୟ ଜାଗାମାନଙ୍କରେ ବଡ଼ ବଡ଼ ଝୁଲା ଲ୍ୟାମ୍ପ ରାତିରେ ଜଳୁଥିଲା ।

ସେଥର ଆମେ ଯାଇ ବରୁଣ୍ଡେଇ ଷ୍ଟେସନ୍‌ରେ ପହଁଚିଲୁ । ଶଗଡ଼ ଯୋଗାଡ଼ କରିବାକୁ ଚେଷ୍ଟା କରି ଶଗଡ଼ ମିଳିଲା ନାହିଁ । ଏଣୁ ସେଠି ଷ୍ଟେସନ୍ ନିକଟରେ ବଖରାଏ ଘର ଭଡ଼ା ନେଇ ରାତିରେ ରହିଲୁ । ସେଠି ସେ ରାତିଟା ରନ୍ଧାବଢ଼ା କରି ଖାଇପିଇ ଶୋଇଲୁ । ତହିଁ ଆରଦିନ ମଧ୍ୟ ଶଗଡ଼ ମିଳିଲା ନାହିଁ । ପୁଣି ଆମେ ବରୁଣ୍ଡେଇ ଷ୍ଟେସନ୍‌ରୁ ବ୍ୟାସ ସରୋବର ଷ୍ଟେସନ୍‌କୁ ଫେରି ଆସିଲୁ । ସେତେବେଳେ ବ୍ୟାସ ସରୋବର ଷ୍ଟେସନ୍‌ର ଅବସ୍ଥା ବରୁଣ୍ଡେଇ ଷ୍ଟେସନ୍ ଭଳି ବଖୁରିଏ ଘର । ଛୋଟ ପ୍ଲାଟଫର୍ମ ସାମନାରେ କେତୋଟି ଲାଇନ୍ । ଚାରିଆଡ଼େ ଧାନବିଲ । କିନ୍ତୁ ଷ୍ଟେସନ୍ ସାମନା ପଟେ ଅଳ୍ପ ଦୂରରେ ଗୋଟିଏ ଡ଼ାକବଙ୍ଗଳା । ସେମିତି କାଁ ଭାଁ ଚାଳଘର । ମଫସଲୀ ଦୋକାନ । ଷ୍ଟେସନ୍‌ର ସାମନା ପଟେ ଅଳ୍ପ କିଛି ଦୂରରେ ଗୋଟିଏ ନାଳି ସଡ଼କର ଆର ପଟେ ଗୋଟିଏ ବଡ଼ ପୋଖରୀ ଥିଲା । ସେଠି ବ୍ୟାସସରୋବର ଷ୍ଟେସନ୍‌ରେ ପହଁଚି ରାତିରେ ବଖରାଏ ଘର ଭଡ଼ା ନେଇ ରହିଲୁ । ଯାଜପୁର ଟାଉନ୍‌କୁ ଯିବା ପାଇଁ ଶଗଡ଼ ମିଳୁ ନାହିଁ । ପୁଣି ରାତି ପାହିଲା । ମୋର କିଛି ଚିନ୍ତା ନଥାଏ । ମୋତେ ଭାରି ଆନନ୍ଦ ଲାଗୁଥାଏ । ଷ୍ଟେସନ୍, ତା'ର ଆଖପାଖରେ ଧାନବିଲ । ଯାତ୍ରୀଗାଡ଼ି, ମାଲଗାଡ଼ି ଯାଉଛି, ଆସୁଛି । ଯେଉଁ ଗାଡ଼ି ଠିଆ ହେଲା ବିଶେଷତଃ ମାଲଗାଡ଼ି ବେଶି ସମୟ ପଡ଼ି ରହିଲେ, ମୁଁ ତା'ର ଡ଼ବାଗୁଡ଼ାକୁ ଗଣିବାରେ ଲାଗିଯାଏ । କେତେଟା ଡ଼ବା ଖଞ୍ଜା ହେଉଛି? ମୋର କୌତୂହଳ ବଢ଼ିଗଲା, ଇଞ୍ଜିନ୍ କ'ଣ? କିମିତି ଏ ଡ଼ବା ଗୁଡ଼ାକୁ ଟାଣି ନଉଛି? ଲାଇନ୍ ଉପରେ ଗାଡ଼ି କେମିତି ଚାଲୁଛି? ଆମ ଗାଁକୁ ଗଲା ବେଳେ ଷ୍ଟିମର୍ ଦେଖିଥିଲି । ମାମୁଁ ଘରକୁ ଗଲାବେଳେ ରେଲ୍‌ଗାଡ଼ି ଦେଖିଲି । ଏ ତ ଭାରି ଚମତ୍କାର ଜିନିଷ । ରାତି ହେଲେ ଦୂରର ସିଗ୍‌ନାଲ୍ ପୋଷ୍ଟର ନାଲିନେଳୀ ଆଲୁଅ ମୋତେ ଦେଖିବାକୁ ଭାରି ଭଲ ଲାଗୁଥିଲା ।

ଶଗଡ଼ର ଯୋଗାଡ଼ ଚାଲିଛି । ଆମେ ଷ୍ଟେସନ୍ ସାମନା ପଟେ ଦୂରରେ ଗୋଟିଏ ଗଛ ମୂଳେ ମା ଓ ମୁଁ ବସିଛୁ, ଦାଦୀ କୁଆଡ଼େ ଶଗଡ଼ ବୁଝିବାକୁ ଯାଇଛନ୍ତି । ଏଇ ସମୟରେ ପ୍ଲାଟଫର୍ମ ଉପରେ ଠିଆ ହେଇ ଗଦାଧର ଦତ୍ତ ଆମକୁ ଅନେଇଲେ । ମା'ଙ୍କୁ ଦେଖି ଆମ ପାଖକୁ ଆସିଲେ । ମା ସବୁ କଥା କହିଲେ, ଯାଜପୁରକୁ ଯିବା ପାଇଁ ଯେତେ କଷ୍ଟ ଭୋଗିଲୁଣି ।

ଗଦାଧର ଦତ୍ତ ମା'ଙ୍କର ପୁତୁରା ହେବେ । ମା'ଙ୍କର ଏକ ବଡ଼ ଭଉଣୀଙ୍କର ପୁତୁରା । ଏଣୁ ମା'ଙ୍କର ପୁତୁରା ସମ୍ପର୍କୀୟ । ସେତେବେଳେ ଗଦାଧର ଦତ୍ତଙ୍କ ବୟସ ଅଳ୍ପ, ଟୋକା ବେଳ । ସେ ସବୁ କଥା ଶୁଣି ବୋଧେ ସେଇ ଶଗଡ଼ ଯୋଗାଡ଼ କରି ଦେଲେ । ଆମେମାନେ ବ୍ୟାସସରୋବର ଷ୍ଟେସନ୍‌ରୁ ଯାଜପୁରକୁ ଦିନ ୩ଟା ବେଳେ ବାହାରିଲୁ । ବ୍ୟାସସରୋବର ଷ୍ଟେସନ୍‌ରୁ ଯାଜପୁର ଟାଉନ୍ ୧୯ ମାଇଲ ବାଟ । ଆମେ ମାମୁଁ ଘରେ ପହଁଚିଲା ବେଳକୁ ରାତି ହେଇ ଯାଇଥିଲା । ମା ପହଁଚିବା ମାତ୍ରେ ମାମୁଁ ଘରେ ସମସ୍ତେ ଆନନ୍ଦରେ ଉତ୍‌ଫୁଲ୍ଲ ହେଇ ଉଠିଲେ । ମା ବହୁତଦିନ ପରେ ବାପଘରକୁ ଯାଇଥିଲେ । ସେତେବେଳେ କଟକରୁ ଜଣେ ଯାଜପୁରକୁ ଯିବା ଏତେ

ସହଜ ବ୍ୟାପାର ନଥିଲା । ଆଜିକାଲି ତ ଯାଜପୁର ରୋଡ଼ ଷ୍ଟେସନ୍ ଅଞ୍ଚଳ ଗୋଟାଏ ସହରରେ ପରିଣତ ହେଲାଣି । ଯାଜପୁର ରୋଡ଼ ଷ୍ଟେସନ୍‌ରୁ ଯାଜପୁରକୁ ଟାଉନ୍ ବସ୍ ଚାଲିଛି । ଆମେମାନେ ଯାଜପୁରକୁ ଗଲାବେଳେ ବ୍ୟାସସରୋବର ଷ୍ଟେସନ୍‌ରେ କି ହଇରାଣ ହେଉଥିଲୁ ।

ମୁଁ ସେଇଥର ମୋର ଅଜା, ଆଈଙ୍କୁ ଦେଖିଲି । ଆଈଙ୍କର ଚେହେରା ଦେଖି ମୁଁ ଆଶ୍ଚର୍ଯ୍ୟ ହେଲି । କାରଣ କଟକରେ ଆମ ଘରେ ଖଣ୍ଡିଏ ଛବି ଥିଲା । ସେଥିରେ ରାଧାଙ୍କର ରୂପ ଯେମିତି ଥିଲା ଅବିକଳ ଆଈଙ୍କର ରୂପ ସେହିପରି । ବୁଢ଼ୀର ଚମତ୍କାର ଗଠନ, କଥା ଅତି ମଧୁର । ମୋର ଆଉ ଆଦର ଯତ୍ନର ବାକି ରହିଲା ନାହିଁ । ଅଜାଙ୍କୁ ଦେଖିଲି, ଅଜା ପକ୍ଷାଘାତ ରୋଗରେ ଆକ୍ରାନ୍ତ ହୋଇ ଅଚଳ ଅବସ୍ଥାରେ ବିଛଣାରେ ବସିଥାନ୍ତି । ମୋତେ କୋଳକୁ ନେଲେ, ପିଠି ଆଉଁସି ଦେଲେ, ମୁଁ ତାଙ୍କ କୋଳରେ ବସିଲି । ଆମ ସାଙ୍ଗରେ ଯେଉଁ ଦାଦୀ ଯାଇଥିଲେ ଅଜା ତାଙ୍କ ସାଙ୍ଗରେ ଗପ କଲେ । କଥା କିନ୍ତୁ ଭଲ ଭାବରେ ବୁଝା ଯାଉ ନଥାଏ ।

ମାମୁଁ ଘର ସେତେବେଳେ ମସ୍ତବଡ଼ ଜମିଦାର ଘର । ଯାଜପୁରର ନାଁ ଡ଼ାକ ଖାନଦାନୀ ଘର । ଧନ, ଜନରେ ଭରପୂର । ଲୋକ ମଧ୍ୟ ସେମିତି । ଆସୁଛନ୍ତି, ଯାଉଛନ୍ତି, ଖାଉଛନ୍ତି, ରହୁଛନ୍ତି । ଅମାପ ଖର୍ଚ୍ଚ, ଚାକର, ଚାକରାଣୀଗୁରାଏ । ପଲଙ୍କ ସବୁ ଏତେ ଉଚ୍ଚା ଯେ ସେଥିରେ ଉଠିବାକୁ ସିଡ଼ି ଲାଗିଛି । ଦାମିକା ପଲଙ୍କ ଯାକୁ କହନ୍ତି । ପିଲାଟାଏ ସେ ପଲଙ୍କରୁ ଖସି ପଡ଼ିଲେ ଆଉ ବଞ୍ଚିବାର କଥା ନୁହଁ ।

ମାମୁଁ ଘରେ ଗୋପାଳଜୀଉ ଠାକୁରଙ୍କ ମନ୍ଦିର ଅଛି । ମନ୍ଦିର ଆହୁରି ସୁନ୍ଦର ଏବଂ ବଡ଼ ଥିଲା । ମା'ଙ୍କଠାରୁ ଶୁଣିଛି ବର୍ଷେ ଯୁନିଆ ବେଳକୁ ପ୍ରବଳ ଝଡ଼ ତୋଫାନରେ ମନ୍ଦିର ଭାଙ୍ଗି ପଡିଥିଲା । ତା'ପରେ ଏ ମନ୍ଦିର ତିଆରି ହୋଇଛି । ସୁନ୍ଦର ରାଧାକୃଷ୍ଣଙ୍କର ମୂର୍ତ୍ତି । ସୁନ୍ଦର ସାଜସଜ୍ଜା । ସେମିତି ପୂଜାପାର୍ବଣର ଆଡ଼ମ୍ବର । ଯେ ପୂଜକ ନିଯୁକ୍ତ ହୋଇଛନ୍ତି ତାଙ୍କୁ ଦେଖିଲେ ଭକ୍ତିରେ ମୁଣ୍ଡ ନଇଁ ପଡ଼ିବ । ପୃଥୁଳକାୟ, ଶ୍ୟାମଳ ବର୍ଣ୍ଣ, ବୃଦ୍ଧ, କୁଳୀନ ବ୍ରାହ୍ମଣ । ଗୋପାଳଜୀଉଙ୍କର ଦୈନିକ ଦିନବେଳା କ୍ଷୀରି,ଖେଚେଡ଼ି, ଡ଼ାଲି, ପାଞ୍ଚରକମର ତରକାରି, ମିଠା, ଭୋଗ ଖଞ୍ଜା । ରାତିରେ ଅନଳି ଭୋଗ ହୁଏ । ଗୋପାଳଜୀଉଙ୍କର ନୀତି ବଢ଼ିଲେ ବ୍ରାହ୍ମଣ ଗୋଟିଏ ବଡ଼ ପିତଳ ଥାଳିରେ ଦୈନିକ ଦିନ ବେଳା ଠାକୁର ଘର ଖଞ୍ଜାରୁ ପ୍ରସାଦ ଆଣି ଘର ଭିତରକୁ ସେ ଥାଳିକୁ ଧରି ନଇଁ ନଇଁ ଆସି ଯେତେବେଳେ ଥୋଇଦିଏ, ସେ ପ୍ରସାଦର ବାସନାରେ ଚାରିଆଡ଼ ମହକି ଉଠେ । ସେ ପ୍ରସାଦ ଦୈନିକ ଆଈ ଏବଂ ଅନ୍ୟମାନେ ଖାନ୍ତି ।

କଟକରେ କାଠଯୋଡ଼ି କୂଳରେ ରାସବିହାରୀ ମଠରେ ଯେଉଁ ରାଧାରମଣ ଦେବଙ୍କର ମୂର୍ତ୍ତି ପୂଜା ହେଉଛନ୍ତି । ମୋର ମାମୁଁଘର ଠାକୁରଙ୍କ ଖଞ୍ଜାରେ ତାଙ୍କର ଜଟା ଏବଂ କଠଉ ରଖା ହୋଇଛି । ଆମେ ସେଥର ରାତିରେ ମାମୁଁ ଘରେ ପହଁଚିଲୁ । ରାତିରେ ଯାହା କିଛି ଦେଖିଥିଲି, ସେତିକି । ଆଈ ନିଜେ ମୋତେ ଭାତ ଖୋଇ ଦେଲେ । ମୁଁ ବୁଝିପାରୁ ନଥାଏ । ଭାବିଲି ଏ କିଏ? ଏ କାହିଁକି ମୋତେ ଭାତ ଖୋଇ ଦଉଛନ୍ତି? ତାଙ୍କର କି ମୋ ପ୍ରତି ଆଦର, ସ୍ନେହ! ଆଉ ଗଣ୍ଡିଏ, ଗଣ୍ଡିଏ କହି ପେଟେ ଖୋଇଲେ । ମୁଁ ଖାଇସାରି ଶୋଇଗଲି । ରାତି ପାହିଲା ପରେ ତହିଁ ଆରଦିନ ମାମୁଁ ଘରକୁ ଭଲ କରି ଦେଖିଲି । କି ବିରାଟ ଖଞ୍ଜା! କେତେ ଘର! କେତେ ଲୋକ! ପୁଣି ଜଣେ ମାଉସୀଙ୍କ ଘର ମାମୁଁ ଘରର ଅଳ୍ପ ଦୂରରେ । କି ସୁନ୍ଦର ପରିବେଶ! ମାମୁଁଙ୍କ ଘରେ ମୋର କି ଆଦର! କି ଯତ୍ନ! କେବଳ ମୋର ନୁହେଁ, ମୋ ତଳେ ଆଉ ଗୋଟିଏ ଭଉଣୀ ହୋଇଥାଏ, ତା'ର ମଧ୍ୟ ସେମିତି ଆଦର ଯତ୍ନ । ମାମୁଁଙ୍କ ଘରର ବାହାର ଦରଜା ଭାରି ବଡ଼ । ଯେମିତି ଜମିଦାରଙ୍କ ଘରର ବାହାର ଦୁଆର ହୋଇଥାଏ, କବାଟ ସେମିତି ବଡ଼ । ସବାରି ରହିଥାଏ । ଗଉଡ଼ ସବୁବେଳେ ପ୍ରସ୍ତୁତ ଥାନ୍ତି । ଯେତେବେଳେ ଯାର ଦରକାର ପଡ଼ିଲା ସେତେବେଳେ ସବାରିରେ ବାହାରିଲେ । ମୋର ଅଳ୍ପ ମନେ ପଡୁଛି ଥରେ ମା'ଙ୍କ ସାଙ୍ଗରେ କୁଆଡ଼େ ସବାରିରେ ଯାଉଥିଲି ସବାରି କବାଟ ବନ୍ଦ

ଥିଲା, ମୁଁ ସବାରିର କବାଟକୁ ଅଳ୍ପ ଖୋଲି ଦେଇ ବାହାରକୁ ଅନେଇ ଦେଖିଲି ଆକାଶରେ ମସ୍ତବଡ଼ ଲଞ୍ଜା ତାରା ପଡ଼ିଛି । ମୁଁ ସେତେବଡ଼ ଲଞ୍ଜାତାରା ପଡ଼ିବା ଆଉ କେଭେ ଦେଖି ନାହିଁ । ମା ସବାରିର କବାଟକୁ ବନ୍ଦ କରି ଦେଇ ମୋତେ କହିଲେ ବାହାରକୁ ଅନାନା, ଲଞ୍ଜା ତାରା ପଡ଼ିଛି ।

ମୋର ଅଜା ଦୈନିକ ହୁକାରେ ଗୁଡ଼ାଖୁ ଟାଣୁଥିଲେ । ଗୁଡ଼ାଖୁର ଗନ୍ଧ ମୋତେ ଭାରି ଭଲ ଲାଗିଲା । ମୁଁ ଛାଁଏ ଛାଁଏ ଅଜାଙ୍କର ହୁକାର ଚିଲମରେ କୋଇଲା, ଟିକିଆ ସଜେଇ, ଗୁଡ଼ାଖୁ ଦେଇ ନିଆଁ ଲଗେଇ, ଫୁଙ୍କି ତାକୁ ତାଉ କରି ହୁକା ଉପରେ ଚିଲମକୁ ରଖି ଦେଇ ଅଜାଙ୍କୁ ଟାଣିବା ପାଇଁ ଦବାରେ ନିଜକୁ ନିଯୁକ୍ତ କରିଦେଲି । ଚାକରଙ୍କର ଆଉ ଦରକାର ପଡ଼ିଲାନି । ଯେତେବେଳେ ଦେଖିଲି ଅଜା ଗୁଡ଼ାଖୁ ଟାଣିବାକୁ ଖୋଜିଲେ ମୁଁ ହାଜର । କାହାରି ଡ଼ାକିବା ଦରକାର ନାହିଁ । ଅଜା ଭାରି ଖୁସି ହେଲେ । ଅଜା ପକ୍ଷାଘାତ ରୋଗରେ ଆକ୍ରାନ୍ତ ହେଇ ଆଉ କୁଆଡ଼େ ଯାଇ ଆସି ପାରୁ ନଥିଲେ । ଦିନ ସାରା ଗୋଟିଏ ଜାଗାରେ ବସି ରହନ୍ତି । ସନ୍ଧ୍ୟା ହେଲେ ଆଇ ତାଙ୍କୁ ପୁଣି ଘର ଭିତରକୁ ଆଣନ୍ତି, ସକାଳ ହେଲେ ପୁଣି ତାଙ୍କୁ ବାହାରକୁ ନିଅନ୍ତି । ତାଙ୍କର ସବୁ କାମ କରିବା ପାଇଁ ଆଇ ସବୁବେଳେ ପ୍ରସ୍ତୁତ ଥାନ୍ତି । ତା'ଛଡ଼ା ବୋହୂ, ଝିଅ, ଚାକର, ଚାକରାଣୀ ତ ତାଙ୍କର ସେବା କରିବା ପାଇଁ ସବୁବେଳେ ପ୍ରସ୍ତୁତ ଥାନ୍ତି । ମୁଁ ତ ଗୁଡ଼ାଖୁ ସଜେଇ ଦବା ପାଇଁ ପ୍ରସ୍ତୁତ ରହିଲି ।

ମାମୁଁ ଘରେ ଅନ୍ୟାନ୍ୟ ମାଉସୀଙ୍କ ଝିଅ, ପୁଅ ତୁଳନାରେ ଆମମାନଙ୍କର ଆଦର ଯତ୍ନ ବେଶି । ମୋର ଅଜାଙ୍କର ସାନଭାଇ ଗୋପୀବଲ୍ଲଭ ରାୟ ଏବଂ ମଝିଆମାମୁଁ ଗଗନବିହାରୀ ରାୟ, ଘରେ ସମସ୍ତଙ୍କୁ ସାବଧାନ କରେଇ କହନ୍ତି, ଦେଖ ସେମାନେ ଚୁଡ଼ା, ମୁଢ଼ି ଖାନ୍ତି ନାହିଁ । ସେମାନେ କଟକିଆ ପିଲା, ତାଙ୍କ ଲାଗି ଯେମିତି ଦୈନିକ ପୁରି, ମୋହନଭୋଗ ହୁଏ । ଏଣୁ ଦୈନିକ ଆମ ପାଇଁ ପୁରି, ମୋହନଭୋଗ ତିଆରି ହେଇ ରାତିରୁ ଆମ ମୁଣ୍ଡ ପାଖରେ ଥୁଆ ହେଇଥାଏ । ମୁଁ ସକାଳୁ ଉଠି, ଦାନ୍ତ ଘସି ତାକୁ ଆଗେ ଖାଏ । ମୋର ସାନ ଭଉଣୀ, ତାକୁ ବୁଢ଼ୀ ମାଉସୀ ବୋଲି ସମସ୍ତେ ଡ଼ାକନ୍ତି । ସେ ଆଗେ ସକାଳୁ ଉଠିଲେ, ସେହି ବିଛଣାରେ ବସି ଅଘଷା ପାଟିରେ ସେ ପୁରି, ମୋହନଭୋଗକୁ ଖାଇସାରି, ତା'ପରେ ଦାନ୍ତ ଘଷେ ।

ମାମୁଁ ଘରକୁ ଗଲେ ମୋର ଭୋକ ବହୁଗୁଣ ବଢ଼ିଯାଏ । ପାଟି ଚାଲିଥାଏ । ଯେ ଯେତେବେଳେ ଖାଇ ବସିଲେ, ତାଙ୍କ ସାଙ୍ଗରେ ଖାଇବାକୁ ବସିଯାଏ । ମାମୁଁ, ମାଇଁ, ମା, ଆଇ ଯେ ଯେତେବେଳେ ଖାଇ ବସନ୍ତି ମୋତେ ଡ଼ାକନ୍ତି । ମୁଁ ବିନା ଦ୍ୱିଧାରେ ଖାଇବାକୁ ବସିଯାଏ । କିନ୍ତୁ ଯେତେ ଯା ସାଙ୍ଗରେ ଖାଏ ମୋର ଲୋଭ ଥାଏ ଆଇଙ୍କ ସାଙ୍ଗରେ ଖାଇବା ପାଇଁ । କାରଣ ଆଇ ଠାକୁରଙ୍କ ପ୍ରସାଦ ଖାନ୍ତି । ଠାକୁରଙ୍କ ପ୍ରସାଦ ସହିତରେ ଯେଉଁ ଖଟା ହେଇଥାଏ ସେଇଥିରେ ମୋର ବେଶି ଲୋଭ । ମୋର ମନେ ଅଛି ଦିନେ ଆଇଙ୍କ ସଙ୍ଗେ ମୁଁ ଖାଉଛି ଏଇ ସମୟରେ ମା ଆସି ମାଇଲେ, କାରଣ ଏତେ ଖାଇଲେ ପେଟ ଖରାପ ହବାର ଆଶଙ୍କା । ମା ଯେମିତି ମାଇଲେ ମୁଁ ଆଇଙ୍କ ସଙ୍ଗେ ଖାଇବା ଛାଡ଼ି ଦେଇ ଉଠି ପଳେଇଲି ଆଉ ଜଣେ ଦୂରସମ୍ପର୍କୀୟ ମାମୁଁ ଘରେ ଯାଇ ଲୁଚିଲି । ଆଇ ରାଗରେ ଖାଇବା ଛାଡ଼ି ଉଠି ଗଲେ । ଦିନ ଚାରିଟା ବେଳକୁ ଆଇ ମୋତେ ଖୋଜି ଖୋଜି ପାଇଲେ । ମୋତେ ଦେଖି କାନ୍ଦି ପକେଇଲେ । ମୋତେ ଧରି ଘରକୁ ଆଣିଲେ ।

ମୋର ନିଜର ତିନି ମାମୁଁ କିନ୍ତୁ ମା'ଙ୍କର ଜେଠାଙ୍କ ପୁଅ, ଝିଅ, ଭାଇ, ଭଉଣୀମାନେ ଥାନ୍ତି । ଏଣୁ ମୋର ମାମୁଁ, ମାଇଁ, ମଉସା, ମାଉସୀ ଅନେକ, ଏକାନ୍ନବର୍ତ୍ତୀ ପରିବାର, ଗହଳି କୁଟୁମ୍ବ କିଏ ଜେଠାପୁଅ ଭାଇ, କିଏ ଜେଠାଝିଅ ଭଉଣୀ କିଛି ଜାଣି ହବ ନାହିଁ । ସମସ୍ତେ ଯେମିତି ସହୋଦର ଭାଇ, ଭଉଣୀ । କିଛି ଭେଦଭାବ ନାହିଁ । ସମସ୍ତେ ଆମାୟିକ, ଉଦାର, ଉଚ୍ଚମନା, ଖର୍ଚ୍ଚୀ । କେହି କାହାକୁ ଊଣା ନୁହନ୍ତି । ମୋର ଅଜାଙ୍କର ସାନ ଭାଇ ଗୋପୀବଲ୍ଲଭ ରାୟ ନିଃସନ୍ତାନ ଥିଲେ । ଆଉ ସମସ୍ତଙ୍କର ସନ୍ତାନ ସନ୍ତତି ଅନେକ । ମୁଁ ଅଜାଙ୍କର ବଡ଼ ଦୁଇ ଭାଇଙ୍କୁ ଦେଖି ନାହିଁ ।

ମୋର ମାମୁଁ ଘରେ ଜଣେ ପୂଜାରୀ ଥିଲା । ତା ନାଁ ଦୀନା ପୂଜାରୀ । ଯେମିତି କୁଟୁମ୍ବକୁ ସେମିତି ବଳବାନ ପୂଜାରୀ । ରୋଷେଇ ସେମିତି ଚମତ୍କାର । ଦୀନା ପୂଜାରୀ ଯଦି କୌଣସି କାରଣରୁ ଅନୁପସ୍ଥିତ ହେଲା ତାର ଗୋଟିଏ ବିଧବା ଭଉଣୀ ଆସି ରୋଷେଇ କରେ । ସେମିତି ଭାଇ ପରି ଭଉଣୀ । ବଳିଷ୍ଠ ଚେହେରା, ଅଣ୍ଟାରେ ଛଡ଼ାଏ ଗୋଠ ପଡ଼ିଥାଏ । ରୋଷେଇ ସେମିତି ଚମତ୍କାର । ଚାଲିଲେ ମାଟି ଦବି ଯିବ । କଥା କହିବାର ଭଙ୍ଗୀ ସେମିତି । ଡ଼ାକ ନାମ ଉଲୀ ମାଉସୀ । ଥାଳି ପଟ ପରି ମୁହଁ । ସେଥିରେ ବସନ୍ତ ଦାଗ । ମୋର ମନେ ଅଛି ଉଲୀ ନାନୀଙ୍କୁ ଶରଦ ହେଲେ, ସେ ଭାତ ସହିତରେ ସୋରିଷ ତେଲ ଢ଼ାଳି ଚକଟି ଖାଇଲେ, ତା'ର ଶରଦ ଛାଡ଼ି ଯାଏ । ଭାରି ଖଟିଲାବାଲୀ, ଭାରି ଟାଣୁଆ ।

ମୋର ନିଜର ବଡ଼ମାମୁଁ ବିପିନ ବିହାରୀ ରାୟ ଅବକାରୀ ବିଭାଗରେ ଚାକିରୀ କରୁଥିଲେ । ମଝିଆମାମୁଁ ଫରେଷ୍ଟ ବିଭାଗରେ ଚାକିରୀ କରୁଥିଲେ । ସାନମାମୁଁ ମଧ୍ୟ ଫରେଷ୍ଟ ବିଭାଗରେ ଚାକିରୀ କରୁଥିଲେ । ମୋର ବଡ଼ମାମୁଁଙ୍କ ପ୍ରଥମ ସ୍ତ୍ରୀ ହେଲେ ଯାଜପୁରର କୃଷ୍ଣ ପ୍ରସାଦ ବସୁଙ୍କର ବଡ଼ ଭଉଣୀ । ତାଙ୍କୁ ମୋର ଅଳ୍ପ ମନେ ଅଛି । କାରଣ ତାଙ୍କର ଅଳ୍ପ ବୟସରେ ମୃତ୍ୟୁ ହୋଇଥିଲା । ତା'ପରେ ବଡ଼ମାମୁଁ ଦ୍ୱିତୀୟ ବିବାହ କଲେ ଆମରି ଗାଁରେ । ମଝିଆମାମୁଁ କିମ୍ବା ସାନମାମୁଁ ସେତେବେଳେ ବିବାହ କରିନଥିଲେ ।

ଆମେମାନେ ଯାଜପୁରକୁ ଥରେ ଗଲେ ପ୍ରାୟ ଛ'ମାସରୁ କମ୍ ରହି ଆସୁ ନଥିଲୁ । ମାମୁଁ ଘରକୁ ଗଲେ ଆନନ୍ଦରେ ମୋର ଅନ୍ତରାତ୍ମା ଖୋଲି ଯାଉଥିଲା । ରାସ୍ତା, ଘାଟ, ବିଲ, ପୋଖରୀ, ସାହିପଡ଼ିଶା ସବୁ ଆପଣାର ଭଳି ମନେ ହଉଥିଲା । ଯେମିତି କେତେ କାଳର ଚିହ୍ନା ଜାଗା । ଯେଉଁଠି ଗଲେ ସେଠି ଆଦର ଯତ୍ନର ସୀମା ନଥାଏ । କାରଣ ମୋର ଅଜାଙ୍କର ତିନିପୁଅରେ ମା ଥିଲେ ଏକମାତ୍ର ଝିଅ । ତେଣୁ ମା ଯା କହିବେ ସେ କଥା ଯେମିତି ହେଲେ ରଖିବାକୁ ହବ । ପଞ୍ଚୁପାଣ୍ଡବଙ୍କ ମଧ୍ୟରେ ଅର୍ଜୁନଙ୍କର ଯେମିତି ବେଶି ନାଁ ପଡ଼େ ସେମିତି ଅଜାଙ୍କର ଆଉ ତିନି ଭାଇଙ୍କ ଭିତରେ ଅଜାଙ୍କର ବେଶି ନାଁ ପଡ଼େ । କାରଣ ଅଜା ହିଁ ସବୁ କରୁଥିଲେ, ସବୁ ବୁଝୁଥିଲେ । ଆଉ ଭାଇମାନେ ଯେ କିଛି କରୁ ନଥିଲେ, ତା ନୁହେଁ । ତଥାପି ସବୁ କଥାରେ ଲାଲୁ ବାବୁଙ୍କର ବେଶି ନାଁ । ଲାଲୁ ବାବୁଙ୍କ ଘର, ଲାଲୁ ବାବୁଙ୍କ ଭାଇ, ଲାଲୁବାବୁଙ୍କ ଜମି, ଲାଲୁବାବୁଙ୍କ ପୁଅ, ପୁତୁରା । ଏଣୁ ଲାଲୁ ବାବୁଙ୍କ ଝିଅ ପରୀଙ୍କର ନାଁ ବେଶି ପଡ଼େ । ଯାକୁ କହନ୍ତି ଗେହ୍ଲା ଝିଅ । ଏଣୁ ପରୀର ପୁଅ ମୁଁ, ମୋର ଅନ୍ୟାନ୍ୟ ମାଉସୀଙ୍କ ପୁଅମାନଙ୍କ ତୁଳନାରେ ମୋର ଆଦର ଯତ୍ନ ଆଉ ଶ୍ରଦ୍ଧା ବେଶି ଏବଂ ମୋର ଭଉଣୀମାନଙ୍କର ମଧ୍ୟ ।

ମାମୁଁ ଘରେ ମୁଁ ସୁଖରେ ଭାସିଲେ କ'ଣ ହବ ? ଗୋଟିଏ କଥାରେ ଭାରି ଅସ୍ୱସ୍ତି ବୋଧ ହେଲା, ପାଠପଢ଼ା । ମୁଁ ଭାବିଥିଲି ମାମୁଁ ଘରେ ଯେତେଦିନ ରହିବି ପାଠ ପଢ଼ା ବନ୍ଦ । କିନ୍ତୁ ମା ଦେଖିଲେ ମୁଁ ଯଦି ମାମୁଁ ଘରେ ଇମିତି ବାଲୁଙ୍ଗା ହେଇ ବୁଲେ ଯେତକ ପଢ଼ିଛି ସବୁ ପୋଡ଼ି ଖାଇବି । ଏଣୁ ମୋତେ ଚାଟଶାଳିକୁ ପଠାଇବାର ବ୍ୟବସ୍ଥା ହେଲା । ଚାଟଶାଳି ହଉଛି ମାମୁଁଙ୍କ ଘରର ଅଳ୍ପ ଦୂରରେ ଦୟା ନାହାକ ଘରେ । ଦୟା ନାହାକ ମାମୁଁ ଘରର ଧରାବନ୍ଧା ଜ୍ୟୋତିଷ । ଯାତ୍ରା, ପୁନେଇ, ଉଆଁସ, ସଂକ୍ରାନ୍ତି, ଏକାଦଶୀ ସବୁ କଥା ସକାଳ ହେଲେ ଆସି ଜଣେଇବ । ଆଜି ଘରୁ ଯାତ୍ରା କରିବା ଭଲ କି ମନ୍ଦ ସବୁ କହିବ । ବିବାହ ଇତ୍ୟାଦିରେ ବର, କନ୍ୟାର କୋଷ୍ଠି ମିଳନ କରି କେଉଁଠି ରାଜଯୋଟକ, କି ନାଗ ନାଡ଼ି ଭେଦ ପଡୁଛି ସବୁ ଦୟା ନାହାକ କହିବ । କାଳବେଳା, ବାରବେଳା, ମଘା ନକ୍ଷତ୍ର ଇତ୍ୟାଦି ସବୁ ଜଣେଇବା ତା ଜିମା ।

ଦୟା ନାହାକ ଭଲ ଜ୍ୟୋତିଷ ବୋଲି ସେତେବେଳେ ନାଁ ଡ଼ାକ । ଟିକିଏ ଟିକିଏ କଥାରେ ଡ଼ାକ ପଡ଼େ । ଦୟା ନାହାକକୁ ଡ଼ାକ । ସେ ପୁଣି ମୋର ସାନମାମୁଁଙ୍କର ସାଙ୍ଗ । କିନ୍ତୁ ଗୋଟାଏ ନୂଆ କଥା ଦୟା ନାହାକର ମା, ବିଧବା ବୁଢ଼ୀ, ଚାଟଶାଳିଟିଏ କରି ପିଲା କେତୋଟି ନେଇ ତାଙ୍କୁ ପାଠ ପଢ଼ାଏ । ସେଥିରୁ ସେ କିଛି ପଇସା ଉପାର୍ଜନ କରି ସଂସାର ଚଳେଇବାରେ ସାହାଯ୍ୟ କରେ । ଆଶ୍ଚର୍ଯ୍ୟ କଥା ବୁଢ଼ୀ ମୁହଁରେ ପଣିକିଆ,

ସୋଧି, ଗୋପୀ ଭାଷା, ମଥୁରା ମଙ୍ଗଳ ସବୁ ଜିଭ ଅଗରେ, ମୁଣ୍ଡରେ ପୁରୁଷଙ୍କ ପରି ଅଳ୍ପ କିଛି କଳା ଧଳା ଖୁଣ୍ଟା ଖୁଣ୍ଟା ବାଳ। ହାତରେ ଖଣ୍ଡେ ବେତ। କି କଡ଼ା ଲୋକ! କଟକରେ ଘଡିଆ ଅବଧାନଠୁଁ ଏ ତ ବେଶି ହିଂସ୍ର ଜନ୍ତୁ ଭଳି ମନେ ହଉଛି। ଟିକିଏ ଭୁଲ କଲେ ମାଡ଼, ଖେଙ୍କି ହବା, ଗାଳି, ମୋତେ ଏହି ବୁଢ଼ୀ କବଳରେ ପଡ଼ିବାକୁ ହେଲା। ମୁଁ ତ ହଗି ମୁତି ଆଠୁଁଏ। ସମସ୍ତେ ତାକୁ ଦୟା ମା ନାହାକାଣୀ ବୋଲି ଡ଼ାକନ୍ତି।

ମାମୁଁ ଘରେ ଆସି ଯାହା ସୁଖ କରିଥିଲି ସବୁ ତକ ଶୁଖୁଆ ଝୋଳରେ ଗଲା। ପାଠ ପଢ଼ା କଣ ମ? କି ଯନ୍ତ୍ରଣା! ମନେ ମନେ ଭାବେ ମାମୁଁ ଚାଲିଗଲେ ଅବଧାନ ଡ଼ାଆଁଣେ ପାଁଏ ଯମକୁ, ଯମର ଭଉଣୀ ଯମୁନା ମାମୁଁ ଘରେ ଯେଉଁଦିନଠୁଁ ପାଠ ପଢ଼ା ଆରମ୍ଭ ହେଲା ମାମୁଁ ଘର ଆଉ ସେତେ ଭଲ ଲାଗିଲା ନାହିଁ। ଦୟା ମା ନାହାକାଣୀ ପାଖରେ କିଛିଦିନ ପାଠ ପଢ଼ା ଚାଲିଲା। କିଛିଦିନ ପରେ ସେହି ମାମୁଁ ଘରେ ଥିଲା ବେଳେ ମୁଁ ଆଉ ଗୋଟିଏ ଜାଗାରେ ପଢ଼ିବାକୁ ଗଲି। ସେ ଜାଗା ହଉଛି ମୋର ମାମୁଁ ଘରର ଅଳ୍ପ ଦୂରରେ। ମୋର ଜଣେ ମଉସାଙ୍କର ଗୋଟିଏ ମାଟି ଖଞ୍ଜା ଥିଲା। ସେଠି କେତେଜଣ ଛାତ୍ର ଗୋଟିଏ ମେସ୍ କରି ରହିଥିଲେ। ସେମାନେ ମାଇନର ସ୍କୁଲରେ ପଢୁଥିଲେ କି ହାଇସ୍କୁଲରେ ପଢୁଥିଲେ, ମୋର ଠିକ୍ ମନେ ପଡୁନାହିଁ। ମା ମୋତେ ଦୟା ନାହାକାଣୀ ପାଖରୁ ଉଠେଇ ନେଇ ସେଇ ମେସ୍ ଛାତ୍ରମାନଙ୍କ ପାଖରେ ପଢ଼ିବାର ବ୍ୟବସ୍ଥା କରିଦେଲେ। ସେଠି ଦେଖିଲି ସେ ଛାତ୍ରମାନେ ବଡ଼ ଆଦର ଯତ୍ନରେ ମୋତେ ପଢ଼େଇଲେ। ସେଠି ବେତ ନାହିଁକି ଧମକ ନାହିଁ। ଭାରି ଶ୍ରଦ୍ଧାରେ ସେମାନେ ମୋତେ ପଢ଼େଇଲେ। ସେ ଛାତ୍ରମାନେ ଦୟା ମା ନାହାକାଣୀ ପରି ଏତେ ଭୟଙ୍କର ନୁହନ୍ତି କି ହିଂସ୍ର ପ୍ରକୃତିର ନୁହନ୍ତି। ସେଠି ପାଠପଢ଼ା ଟିକିଏ ଭଲ ଲାଗିଲା। ସେଠିକି ଯିବାକୁ ମନ ହେଲା। ଇମିତି ସେଠି କିଛିଦିନ ପାଠପଢ଼ା ଚାଲିଲା ପରେ କଟକରୁ ବାବାଙ୍କ ପାଖରୁ ଚିଠିଗଲା ମୋର ସ୍କୁଲରେ ନାଁ ଲେଖାହେବ। ମୋତେ ଶୀଘ୍ର କଟକ ପଠେଇବା ପାଇଁ। ମୁଁ ଆଗରୁ କହିଛି ଆମେ ଥରେ ମାମୁଁ ଘରକୁ ଗଲେ ଛ'ମାସ ଯାଏ ରହୁ। ପୁଣି ଯେତେବେଳେ ମାମୁଁ ଘରକୁ ଯାଉ ପାଞ୍ଚ, ଛ'ବର୍ଷ ପରେ। ଏଣୁ ମା ଯେତେବେଳେ ଛ'ମାସ ପରେ ବାପ ଘରୁ ବିଦାୟ ନେଇ ଆସନ୍ତି, ସେ ବଡ଼ ଦୁଃଖଦାୟକ ହୁଏ। ଘରେ ଏବଂ ସାହି ପଡ଼ିଶାରେ ଶୋକର ଛାୟା ଖେଳିଯାଏ। ସାହିପଡ଼ିଶା, ବନ୍ଧୁବାନ୍ଧବଙ୍କ ଘରୁ ଅନେକ ନିମନ୍ତ୍ରଣ କରନ୍ତି। ମା ବାପ ଘରୁ ଆସିବେ ବୋଲି ଆହୁରି ଅନେକ ରକମର ଖାଇବା ପିଇବା ହୁଏ। ଆସିବା ଦିନ କି କରୁଣ ଦୃଶ୍ୟ। ଜଣେ ଜଣେ ମା'ଙ୍କୁ ଧରି କାନ୍ଦିବା, ମା ଜଣ ଜଣକୁ ଧରି କାନ୍ଦିବା ମାମୁଁ ଘରେ ଆସି ପହଁଚିବା ଦିନ କି ଆନନ୍ଦ! ଯିବାଦିନ କି ଦୁଃଖ! ମୋର ଆଈଙ୍କୁ ଛାଡ଼ି ଆସିବାକୁ ଆଦୌ ମନ ହୁଏ ନା। ମା, ବାପ ଘରୁ ଆସିବା ବେଳେ ଅନେକ ଜିନିଷ ମା'ଙ୍କ ସାଙ୍ଗରେ ଦିଆ ହୁଏ। ଯେମିତି ଭାର ହାଣ୍ଡି, ଶାଢ଼ି, ଯେ ଚାକର ଚାକରାଣୀ ସାଙ୍ଗରେ ଯାଇଥାନ୍ତି, ତାଙ୍କୁ ଧୋତି କିମ୍ବା ଶାଢ଼ି, ଟଙ୍କା, ମୋ ପାଇଁ ଧୋତି ଚାଦର। ସେତେବେଳେ ଯାଜପୁରରେ ପିଲାଙ୍କର ପ୍ୟାଣ୍ଟ, ଜାମା ପିନ୍ଧିବା ଚଳନ ନଥିଲା। ମୋତେ ପୁଣି ଯେଉଁ ଧୋତି ଦିଆ ହୁଏ ସେ ଚୌରାଳିଶ ଇଞ୍ଚର ଧୋତି। ମୁଁ ତାକୁ ଆଦୌ ପିନ୍ଧି ପାରେନା। ଥରେ ମୁଁ ଆଈଙ୍କୁ ପଚାରିଲି ମୁଁ ତ ପିଲା, ମୋତେ ଏତେ ବଡ଼ ଧୋତି କାହିଁକି ଦଉଛ? ମୁଁ ପିନ୍ଧି ପାରୁନି।

ଆଈ ଉତ୍ତରରେ ମୋତେ କହିଲେ ବନ୍ଧୁ, ସାନ ହେଲେ କ'ଣ ବ୍ୟବହାର ସାନହବ? ଆଉ ଗୋଟାଏ କଥା କହିନାହିଁ। ଆମେମାନେ ଯେତେଥର ଯାଜପୁରକୁ ଯାଉ ଥରେ ଦି'ଥର ଯେମିତି ହେଲେ, ବରୁଁଆ, ପୁରୁଷୋତ୍ତମପୁରକୁ ଯାଉ। ବରୁଁଆ ହେଲା ଯାଜପୁରରୁ ପ୍ରାୟ ଛ'ମାଇଲ ବାଟ। ସେଥିରେ ପୁଣି ଯୋଡ଼ାଏ ନଈ ପାରି ହବାକୁ ପଡ଼େ। ବୁଢ଼ା, ଖରସୁଆଁ, ଯାଜପୁରରୁ ବରୁଁଆକୁ ଯିବା ପାଇଁ ବିଶେଷ ଅସୁବିଧାର ସମ୍ମୁଖୀନ ହବାକୁ ହୁଏ। ଶଗଡ଼ରେ ଯାଜପୁରରୁ ଯିବାକୁ ହୁଏ। ରାସ୍ତା ଭାରି କଦର୍ଯ୍ୟ। ଶଗଡ଼ ଖାଲି ଉଠ ପଡ଼ ହୁଏ। ଶଗଡ଼ ଥୋଡ଼ା ବାଟ ଉପରକୁ ଉଠେ। ପୁଣି ଗଡ଼ାଣିଆ ବାଟ ପଡ଼ିଲେ ଉପରୁ ତଳକୁ ଖସେ। ଭାରି ଯନ୍ତ୍ରଣା! ପଲୁ

ନଈ ପାରି ହବାକୁ ପଡ଼େ। ନଈରେ ବଡ଼ ଡ଼ଙ୍ଗା ଥାଏ। ସେଥିରେ ଶଗଡ଼, ମଣିଷ ସବୁ ଏକ ସାଙ୍ଗରେ ପାରି କରିଦିଏ। କୌଣସି ପ୍ରକାରେ ଯାଇ ବଗୁଁଆରେ ପହଁଚିଗଲେ ସେହି ମାମୁଁ ଘର ପରି ଲାଗେ। ସେମିତି ଆଦର ଯତ୍ନ, ଖାଇବା, ପିଇବା, ଆଳାପ, ଆଲୋଚନା ମୋର ସାଙ୍ଗସାଥୀ ମଧ୍ୟ ଯୁଟି ଯା'ନ୍ତି। ସେମିତି କୁଆଡ଼େ କୁଆଡ଼େ ବୁଲିବା, ଦିନ ସାରା ଖେଳିବା, କିଛି ଦୁଃଖ ନାହିଁ। କି ଆନନ୍ଦର ଦିନ! ବଗୁଁଆ ପୁରୁଷୋତ୍ତମପୁରରେ ଅନେକ ଲୋକର ବସବାସ, ଅନେକ ଶିକ୍ଷିତ ଧନୀ ପରିବାର ଥାନ୍ତି। ମୋର ଅଜାଙ୍କର ଜନ୍ମସ୍ଥାନ ହେଲା ବଗୁଁଆ ପୁରୁଷୋତ୍ତମପୁର। ଯାଜପୁରକୁ ସେ ଘରଜୋଇଁଆ ହେଇ ଆସି ଶଶୁର ଘରେ ରହୁଥିଲେ। ବଗୁଁଆରେ ଅଜାଙ୍କର ସାନଭାଇ ଗୋପୀବଲ୍ଲଭ ରାୟ ରହୁଥିଲେ। ଗୋପୀବଲ୍ଲଭ ରାୟ ସେତେବେଳେ ବଗୁଁଆ ଅଞ୍ଚଳର ପ୍ରାୟ ବୟୋଜ୍ୟେଷ୍ଠ ଲୋକ ଥିଲେ। ସେ ସେ ଯୁଗର I.A. ପାସ୍ କରା ଲୋକ। କଥା କଥାରେ ତାଙ୍କ ମୁହଁରୁ ଇଂରାଜୀ ଶବ୍ଦ ବାହାରି ପଡ଼େ। ସେ କେଉଁଠି ସେକ୍ରେଟେରୀ, କେଉଁଠି ଚେୟାରମ୍ୟାନ, କେଉଁଠି ପ୍ରେସିଡ଼େଣ୍ଟ, ଇମିତି କେତେକ ଅନୁଷ୍ଠାନ ସହିତ ସଂପୃକ୍ତ ଥିଲେ। ଦୀର୍ଘକାୟ ବଳିଷ୍ଠ ଲୋକ। ସେ ଅଞ୍ଚଳରେ ଲୋକେ ତାଙ୍କୁ କହନ୍ତି ଘିଅ ଦୁଧ ଖିଆ ଗୋପୀ ବାବୁ। ଗୋପୀ ବଲ୍ଲଭ ରାୟ ଯୁଆଡ଼େ ଯାଉଥିଲେ, ସାଙ୍ଗରେ ଘିଅ ଠେକି ଥିବ ମୁଁ ଦେଖିଛି। ସେ ପଳାଏ, ଦି'ପଳାର ଘିଅ ଖାଇବାର ଲୋକ ନୁହନ୍ତି। ଘିଅ ଖାଇବେ ପୋଷେ ପୁଣି ଯେତେଥର ଭାତ ନେବେ, ସେତେଥର ପୋଷେ ପୋଷେ ଘିଅ ନେବେ। ମୋର ମନେ ଅଛି ସେ ଯେତେବେଳେ କଟକ ଆସୁଥିଲେ ଆମ ବସାରେ ରହୁଥିଲେ। ଆମେ ସମସ୍ତେ ଏକ ସାଙ୍ଗରେ ଖାଇ ବସିବା ବେଳେ ସମସ୍ତଙ୍କୁ ପୋଷେ ପୋଷେ ଘିଅ ଦବା ତାଙ୍କର ଅଭ୍ୟାସ। ଆଉ ଗୋଟାଏ କଥା କି ବର୍ଷା, କି ଖରା, କି ଶୀତ, ତାଙ୍କର ନିତ୍ୟକର୍ମ ପାଇଁ ହାଣ୍ଡିଏ ଗରମ ପାଣି ଦରକାର। ୯୦ ବର୍ଷ ବୟସରେ ତାଙ୍କର ପରଲୋକ ହୁଏ। ସେତେବେଳ ସୁଦ୍ଧା ତାଙ୍କର ଗୋଟିଏ ଦାନ୍ତ ପଡ଼ି ନଥିଲା। ସେ ଭାରି ସଚ୍ଚୋଟ ଲୋକ ବୋଲି ତାଙ୍କର ଖ୍ୟାତି ଥିଲା।

ବଗୁଁଆରେ ଅନେକ ଗୁଡ଼ିଏ ସାହି ଅଛି। ଯେମିତି ରାୟ ସାହି, ଘୋଷ ସାହି, ଦେୱାନ ସାହି, ମିତ୍ର ସାହି, ଦତ୍ତ ସାହି, ପାଟରା ସାହି, ବ୍ରାହ୍ମଣ ସାହି, ଚମାର ସାହି। ଇମିତି ଆହୁରି କେତେ ସାହି ଅଛି। ମୋର ସଠିକ୍ ମନେ ପଡୁ ନାହିଁ। ବଗୁଁଆରେ ଅନେକ ସରକାରୀ, ବେସରକାରୀ, ନାମଜାଦା ଶିକ୍ଷିତ ଲୋକଙ୍କର ବସବାସ। ବଗୁଁଆରେ ମୋର କେତେକ ମାମୁଁ, ମାଈଁ, ମଉସା, ମାଉସୀ ଥାନ୍ତି। ସେଠି ମୋର ମାମୁଁଘର ନିକଟରେ ଗୋଟିଏ ଛୋଟ ନଈ, ତା'ର ନାମ ଡୁଇ। ଡୁଇର ସ୍ରୋତ ସେତେ ପ୍ରଖର ନୁହେଁ କି ଗଭୀରତା ସେତେ ବେଶି ନୁହେଁ। ଏଣୁ ମୋତେ ଗାଧୋଇବା, ପହଁରିବା, ବୁଡ଼ିବାକୁ ଭାରି ସୁବିଧା ହଉଥିଲା। ଏଇ ନଈରେ ଅଧିକାଂଶ ଲୋକଙ୍କର ବାସନ ମଜାଠୁଁ ଆରମ୍ଭ କରି ଗାଧୋଇବା ଇତ୍ୟାଦି ସବୁ କାର୍ଯ୍ୟ ଚଳେ।

ରାୟ ସାହିରେ ଯେଉଁଠି ମୋର ମାମୁଁଘର, ସେଠି ଗୋଟିଏ ଚଣ୍ଡୀ ମଣ୍ଡପ ଏବଂ ରାଧାକାନ୍ତ ଠାକୁରଙ୍କ ମନ୍ଦିର ଅଛି। ମୋର ମନେ ଅଛି ଯେଉଁ ବର୍ଷ ମୋର ଅଜାଙ୍କର ମା'ଙ୍କର ପରଲୋକ ପ୍ରାପ୍ତି ହୁଏ। ସେ ବର୍ଷ ତାଙ୍କର ଶୁଦ୍ଧି କ୍ରିୟାକୁ ଆମେ ସମସ୍ତେ ଯାଜପୁରରୁ ବଗୁଁଆ ଯାଇଥିଲୁ। କି ବିରାଟ ଶୁଦ୍ଧି କ୍ରିୟାର ଆୟୋଜନ! କି ଆଡ଼ମ୍ବର! ସେଥର ଆମେ ଅନେକଦିନ ବଗୁଁଆରେ ଥିଲୁ। ମୋର ଅନ୍ୟାନ୍ୟ ମାଉସୀପୁଅ ଭାଇମାନେ ମଧ୍ୟ ଯାଇଥିଲେ। ଏଣୁ ସାଙ୍ଗସାଥୀର ଅଭାବ ରହିଲା ନାହିଁ। ସମସ୍ତେ ଏକାଠି ଦିନତମାମ ଖେଳୁ, ସନ୍ଧ୍ୟା ହେଲେ ଯାଇ ରାଧାକାନ୍ତଙ୍କର ଆଳତି ଦର୍ଶନ କରୁ। ରାଧାକାନ୍ତଙ୍କ ମନ୍ଦିର ବାରନ୍ଦାରେ ଗୋଟାଏ ପ୍ରକାଣ୍ଡ ନାଗରା ପରି (ମାଦଳ) ବାଦ୍ୟ ରଖା ହେଇଥାଏ। ତାକୁ ଜଣେ ଲୋକ ଦୁଇ ହାତରେ ଦୁଇଖଣ୍ଡ ବଡ଼ କାଠ ଧରି ବାଡ଼େଇ ବଜାଏ। ଏହା ଛଡ଼ା ଘଣ୍ଟା, କଂସାଡ଼ ବାଜେ। ଆଳତି ଶେଷରେ ଶଙ୍ଖ ଧ୍ୱନି ପରେ ବ୍ରାହ୍ମଣ ହାତରୁ ତୁଳସୀ ନେଇ ଆମେ ସବୁ ପିଲାର ଦଳ ଯାଇ ମାଈଁମାନଙ୍କ ହାତରେ ତୁଳସୀ ଦଉ। ମୋର ଯେତେ ମାଈଁ ସମସ୍ତେ ଗୋଟିଏ ଘରେ ବସିଥାନ୍ତି। ସେମାନଙ୍କୁ କିଛି କାମ କରିବାକୁ ପଡ଼େ ନାହିଁ। କାରଣ ବଡ଼ ଜମିଦାର ଘର ବୋହୂ ସେମାନେ, ଯୁଆଡ଼େ ଯିବେ,

ସବାରିରେ ଯିବେ । ପ୍ରତ୍ୟେକଙ୍କ ସାଙ୍ଗରେ ଚାକରାଣୀ ବନ୍ଧା, ଗାଧୋଇଲେ, ପାଳଟା ଲୁଗାକୁ ଚାକରାଣୀ କାଚି ଚୁପୁଡ଼ି, ଧରି ଧରି ସାଙ୍ଗରେ ଆସିବ । ପୂର୍ବକାଳିଆ ବୋହୂମାନେ, ଶାଶୁମାନଙ୍କୁ ଯା କହିବାକୁ ଚାହିଁବେ, ମୁହାଁମୁହିଁ କହିପାରିବେ ନାହିଁ । ଚାକରାଣୀ ମାଧ୍ୟମରେ କହିବାକୁ ହବ । ଶାଶୁ, ଶଶୁର ଏବଂ ଅନ୍ୟାନ୍ୟ ଗୁରୁଜନମାନେ ବୋହୂମାନଙ୍କର ମୁହଁ ଦେଖି ପାରିବେ ନାହିଁ । ସମସ୍ତଙ୍କର ମୁହଁ ଓଢଣାରେ ଆବୃତ । ଯେମିତି ରୂପ, ସେମିତି ଅଳଙ୍କାର ।

ଆମେ ଯେତେ ଗୁରିଏ ଭଣଜା ଥାଉ ସନ୍ଧ୍ୟାବେଳେ ମାଇଁମାନଙ୍କ ହାତରେ ରାଧାକାନ୍ତଙ୍କର ତୁଳସୀ ଦବାରେ ଭାରି ଆନନ୍ଦ । ସେଥିରେ ପୁଣି ପ୍ରତିଯୋଗିତା କିଏ ଆଗେ ତୁଳସୀ ଦେଇ ପାରିବ । ଯାଜପୁରକୁ ଗଲେ, ଯେମିତି ଥରେ ଦି'ଥର ବଗୁଁଆ ଯିବାକୁ ପଡ଼େ, ସେମିତି ମଝିରେ ମଝିରେ ଯାଜପୁର ସହରର ଯେତେ ଦେବ ଦେବୀ ସବୁ ବୁଲି ଦେଖିବାକୁ ହୁଏ । ଯେମିତି ବିରଜା, ବରାହଜୀ, ଜଗନ୍ନାଥ ମନ୍ଦିର, ଦଶାଶ୍ୱମେଧ ଘାଟ, ଶୁଭ ସ୍ତମ୍ଭ, ନାଭିଗୟା, ମଣିକର୍ଣ୍ଣିକା, ଇତ୍ୟାଦି । ମଝିରେ ମଝିରେ ଯେଉଁ ଦିନ ଇଚ୍ଛା ହେଲା ମା, ମାଉସୀ, ମା'ଙ୍କର ସମବୟସ୍କାମାନେ ବାହାରି ପଡ଼ନ୍ତି ଯାଜପୁରର ଦେବଦେବୀଙ୍କୁ ଦେଖିବା ପାଇଁ । ମୁଁ ଏବଂ ମୋର ମାଉସୀ ପୁଅ ଭାଇ, ଭଉଣୀ ଏବଂ ପଡ଼ୋଶୀ ସାଙ୍ଗସାଥୀମାନେ ମା, ମାଉସୀ ଏମାନଙ୍କ ସଙ୍ଗେ ବୁଲିବାକୁ ଯାଉ ।

ସେତେବେଳେ ଯାଜପୁର ସହରରେ ମୋର ମା, ମାଉସୀମାନଙ୍କର ଭାରି ପ୍ରତିପତ୍ତି ଥିଲା । କାହାରିକି ଭୟ ନାହିଁ । କେହି କିଛି କହି ପାରିବେ ନାହିଁ । ଯଦି ଏମାନଙ୍କ କୌଣସି କଥାକୁ କେହି କିଛି ପ୍ରତିବାଦ କରିଛି ତା'ର ଅବସ୍ଥା ଶୋଚନୀୟ । ସମ୍ଭବ ହେଲେ- ସମବେତ ଭାବରେ ପ୍ରତିବାଦୀ ଉପରେ କିଛି ଉତ୍ତମ ମଧ୍ୟମ ହେଇ ଯାଉଥିଲା । କିଏ କହିବ ? ଏମାନେ ଯେଉଁ ମନ୍ଦିର ଭିତରେ ପଶିଲେ ଯେଉଁ ଦୋକାନକୁ ଗଲେ ଅନ୍ୟମାନେ ପାଖେଇ ଯାଉଥିଲେ । ବାଟରେ ଚାଲି ଚାଲି ଯାଉଥିଲା ବେଳେ ଅନ୍ୟ ଲୋକେ ସାବଧାନ ହେଇ ଦୂରରୁ ବାଟ କାଟୁଥିଲେ । ବୈତରଣୀ ନଦୀର ଯେଉଁ ତୁଠରେ ଏମାନେ ଗାଧୋଇବାକୁ ଗଡ଼ିଲେ ଅନ୍ୟ ମାଇପିମାନେ ସେ ତୁଠ ଛାଡ଼ି ଅନ୍ୟ ତୁଠକୁ ଚାଲି ଯାଉଥିଲେ । କାରଣ ଏମାନେ ହେଲେ ସେତେବେଳକାର ଯାଜପୁର ସହରର ଜମିଦାର ଘର ଝିଅ । ସହଜେ ସେତେବେଳେ ଯାଜପୁର ସହରରେ ମୋର ମାମୁଁଘରର ପ୍ରତିପତ୍ତି କାହିଁରେ କ'ଣ । ସେମାନେ ବିଶେଷ ଉଦ୍ଧତ ପ୍ରକୃତିର ଲୋକ ଥିଲେ । ଲୋକମାନଙ୍କ ପ୍ରତି ଦୟା, ଦାକ୍ଷିଣ୍ୟ, ସହାନୁଭୂତି କମ୍ ନଥିଲା କି ଲୋକମାନଙ୍କ ପ୍ରତି ଚଢ଼ଉ ଭାବ କମି ନଥିଲା । କାହାରି ବିପଦ ଆପଦରେ ସାହାଯ୍ୟ କରିବାକୁ ଯେମିତି କେହି ବଦମାସୀ କଲେ, ଔଦ୍ଧତ୍ୟ ଦେଖେଇଲେ ତା ପ୍ରତି ଶାସ୍ତି ବିଧାନ କରିବାକୁ ସେମିତି । ମୋର ମାମୁଁଘର ବଂଶର ଲୋକମାନେ ସମସ୍ତେ ପ୍ରାୟ ବଳବାନ, ଦୀର୍ଘକାୟ, ବଡ଼ କୁଟୁମ୍ବ । ସତକଥା କହିବାକୁ କେହି ପଛେଇବାର ଲୋକ ନୁହନ୍ତି । ବେଳ ପାଇଲେ ଅପ୍ରିୟ ସତ୍ୟ କଥା କହିବା ସେମାନଙ୍କର ଗୋଟାଏ ଅଭ୍ୟାସ । ଆଗ ପଛ ବିଚାର ନାହିଁ । ଭାରି ଏକତା । ଜଣକ ଉପରେ ଯଦି କୌଣସି କାରଣରୁ ଆଞ୍ଚ ଆସିଲା ଆଉ ସମସ୍ତେ ଏକଯୁଟ ହେଇଯିବେ । ଯେଉଁଠି ଝିଅ ବାହା ଦେଲେ ଦରକାର ବେଳେ ସେ ଝିଅକୁ ଶଶୁର ଘରୁ ଆଣିବାକୁ ଗଲେ ଯଦି ସେ ଶଶୁର ନ ଛାଡ଼ିଛି କି ଝିଅକୁ କୌଣସି କାରଣରୁ ହଇରାଣ କରିଛନ୍ତି, ତା'ହେଲେ ସେ ଝିଅର ଶଶୁର, ସ୍ୱାମୀଙ୍କ ଅବସ୍ଥା ଶୋଚନୀୟ । କିଏ ପାରିବ ଏମାନଙ୍କ ସାଙ୍ଗରେ ? ସେତେବେଳେ ମୋର ମାମୁଁଘର ବଂଶର ଲୋକଙ୍କୁ ଅନେକ ରାବଣ ବଂଶ ବୋଲି କହୁଥିଲେ । ମୋର ଅଜାଙ୍କୁ ମିଶେଇ ଚାରି ଭାଇ । ଏ ଚାରି ଭାଇରେ ଗୋଟିଏ ଭଉଣୀ ଥିଲେ । ସେ ମଧ୍ୟ ସେମିତି ଦେଖିବାକୁ ଦୀର୍ଘକାୟ । ବଳିଷ୍ଠ । ତାଙ୍କର ପୁଅ ହେଲେ ଯାଜପୁର ଅଞ୍ଚଳର ଖ୍ୟାତନାମା ରାୟ ସାହେବ ଗୋବିନ୍ଦ ବଲ୍ଲଭ ବୋଷ । ତାଙ୍କର ପୁଅ ହେଲେ ଶ୍ରୀ ଶରତଚନ୍ଦ୍ର ବୋଷ, M.A. ଯେ କି Unit 3 New Capital H.E. School ର ଅବସରପ୍ରାପ୍ତ headmaster.

ମୋର ମାମୁଁଘର ବଂଶର ଲୋକଙ୍କର ଦେବତା, ବ୍ରାହ୍ମଣ, ସାଧୁ, ସନ୍ନ୍ୟାସୀଙ୍କ ପ୍ରତି ଯେମିତି ଭକ୍ତି, ଗରିବ, ଅସହାୟ ଲୋକଙ୍କ ପ୍ରତି ଯେମିତି ଦୟା, ସହାନୁଭୂତି, ଯେମିତି ପରୋପକାରୀ ସେମିତି ତାଙ୍କ ପ୍ରତି ଯଦି କେହି ଔଦ୍ଧତ୍ୟ ଦେଖେଇଛି, ଅଶୋଭନୀୟ ବ୍ୟବହାର କରିଛି, ତା ପ୍ରତି ଦଣ୍ଡ ବିଧାନରେ, ଦାଉ ନବାରେ, ଅତ୍ୟାଚାର କରିବାରେ ମଧ ସେମାନେ ପଛେଇବାର ଲୋକ ନଥିଲେ ।

ମୋର ଅଜାଙ୍କର ନାଁ ଲାଲୁ ବାବୁ କହିଲେ ସମସ୍ତେ ଜାଣିପାରୁ ଥିଲେ । ମା'ଙ୍କଠାରୁ ଶୁଣିଥିଲି ମୋର ଅଜା ଜେନାପୁରରେ ଚାକିରୀ କଲାବେଳେ ସେଠି ଗୋଟିଏ ହାଟ ବସେଇ ଥିଲେ । ସେ ହାଟ ଏ ପର୍ଯ୍ୟନ୍ତ ଚାଲିଛି । ଆଉ ମୋର ସାନ ଅଜା ଗୋପୀ ବଲ୍ଲଭ ରାୟ ଗଡ଼ମଧୁପୁର ରାଜାଙ୍କର ଦେୱାନ ଥିଲେ । ସେ ୩୦ ବର୍ଷ ଚାକିରୀ କଲା ପରେ ୩୦ ବର୍ଷ ପେନ୍‌ସନ୍ ପାଇଥିଲେ । ଏ କଥା ଅନେକ ଲୋକଙ୍କ ମୁହଁରେ ଶୁଣାଯାଏ । ଆଉ ଗୋଟାଏ କଥା ମଧ ତାଙ୍କ ବିଷୟରେ ଲୋକଙ୍କ ମୁହଁରେ ଶୁଣାଯାଏ । ଗୋପୀ ବାବୁ ଏତେ ସଚ୍ଚୋଟ ଲୋକ ଥିଲେ ଯେ ଥରେ ଦେୱାନ ଥିଲା ବେଳେ ଜଣେ ଲୋକର ତାଙ୍କ ନିକଟରେ କ'ଣ କାମ ଥିଲା ସେ ସଜନା ଛୁଇଁ ବିଡ଼ାଏ ଧରି ଗୋପୀବାବୁଙ୍କ ନିକଟକୁ ଆସି ଛୁଇଁ ବିଡ଼ାଟିଏ ଦେଲାରୁ ଗୋପୀ ବାବୁ ସବୁକଥା ବୁଝିଲା ପରେ ସେ କାହିଁକି ଛୁଇଁ ବିଡ଼ାଟିଏ ଆଣି ଦେଲା ତାକୁ ସେହି ଛୁଇଁରେ ବାଡ଼େଇଥିଲେ ।

## (୬)

ଆଗରୁ କହିଛି ଆମେ ମାମୁଁଘରେ ଥିଲା ବେଳେ ବାବା କଟକରୁ ମା'ଙ୍କୁ ଚିଠି ଲେଖିଥିଲେ ମୋତେ କଟକ ପଠେଇଦବା ପାଇଁ । ସ୍କୁଲରେ ନାଁ ଲେଖା ହବ । ମା ମଧ ଭାବି ଠିକ୍ କଲେ ମୋତେ ନିଶ୍ଚୟ କଟକ ପଠେଇ ଦବା ପାଇଁ । କାରଣ ସ୍କୁଲରେ ନାମ ଲେଖେଇବାକୁ ହବ । ଏଣୁ ସେଥର ମା ମୋତେ କଟକ ପଠେଇବାର ବ୍ୟବସ୍ଥା କଲେ । ସେ ହେଲା ପ୍ରଥମ ମା ମୋତେ ଛାଡ଼ି ରହିବା ଆଉ ମୁଁ ମା'ଙ୍କୁ ଛାଡ଼ି ଆସିବା । ମା'ଙ୍କୁ ଛାଡ଼ି ଆସିବା କି ଦୁଃଖ !! ପିଲାବେଳର ସେ ଦୁଃଖ ଜୀବନରେ ଭୁଲିବାର ନୁହେଁ । ମା ଠିକ୍ କଲେ ମୋର ଜଣେ ଦୂରସମ୍ପର୍କୀୟ ମାମୁଁଙ୍କ ସଙ୍ଗେ ମୋତେ କଟକ ପଠେଇ ଦେବେ କାରଣ ସେତେବେଳେ ମୋର ନିଜ ମାମୁଁମାନେ କେହି ଘରେ ନଥିଲେ ।

ଆଗେ ବ୍ୟାସସରୋବର ଷ୍ଟେସନ୍‌କୁ ଆସିବାକୁ ହେଲେ, ଯାଜପୁରରୁ ଶଗଡ଼ରେ ଆସିବାକୁ ହଉଥିଲା । ମୋର କଟକ ଆସିବାର ଶୁଭ ଦିନ, ଲଗ୍ନ ଦୟା ନାହାକ ଠିକ୍ କରି ଦେଲା । ମୋତେ ରାତି ଦୁଇଟା ବେଳେ ମାମୁଁଘରୁ ଯାତ୍ରା କରିବାକୁ ହବ । ଏଣୁ ସେ ଦୂରସମ୍ପର୍କୀୟ ମାମୁଁ, ମାଇଁ ଶଗଡ଼ରେ ବାହାରିଲା ବେଳକୁ ମୁଁ ତାଙ୍କ ଶଗଡ଼ରେ ବସିଲି । ନିଃଶବ୍ଦ ରାତି, ମା ଠିଆ ହେଇଥାନ୍ତି । ଶଗଡ଼ ଛାଡ଼ିଲା, କି ଦୁଃଖ ମା'ଙ୍କୁ ଛାଡ଼ି ଆସିବା । ତା'ପରେ ମାମୁଁଘର ଛାଡ଼ି ଆସିବା ।

ସେ ମାମୁଁ, ମାଇଁ ଶଗଡ଼ ଭିତରେ ଶୋଇଗଲେ । ମୋତେ ନିଦ ହଉ ନଥାଏ । ମା'ଙ୍କୁ ଭାବି ସୁଁ ସୁଁ ହେଇ କାନ୍ଦିଲି । ସେ ମାମୁଁ, ମାଇଁ ଉଠି ମୋତେ ବୁଝେଇଲେ । ରାତିସାରା ଶଗଡ଼ ଚାଲିଥାଏ । ସକାଳ ହେଲା ବେଳକୁ ଶଗଡ଼ ଆସି ବ୍ୟାସସରୋବର (ଯାଜପୁର ରୋଡ଼) ଷ୍ଟେସନ୍ ନିକଟରେ ପହଁଚିଲା । ମୁଁ ଯୁଆଡ଼େ ଅନଉଥାଏ, ମା'ଙ୍କ ମୁହଁ ଦେଖା ଯାଉଥାଏ । କ'ଣ କରିବି ? ମା'ଙ୍କ ପାଖକୁ ପଳେଇବାର ଉପାୟ ନାହିଁ । ଯୁଆଡ଼େ ଅନେଇଲେ ଖାଲି ବିଷାଦଭରା ପରିବେଶ । ବାବାଙ୍କ ପାଖକୁ ଯେ ଯାଉଛି, ସେଥିରେ ମଧ ଆନନ୍ଦ ନାହିଁ । ବାବାଙ୍କ ଠାରୁ ମା'ଙ୍କ ପ୍ରତି ବେଶି ଆକର୍ଷଣ । ପୁଣି ବାବାଙ୍କ ପାଖରେ ରହି ପାଠ ପଢ଼ିବାକୁ ଯାଉଛି । ସେ କି ବିପଦ । ପାଠ କିଏ ପଢ଼ିବ ?

ମୁଁ ଯେଉଁ ମାମୁଁ, ମାଇଁଙ୍କ ସାଙ୍ଗରେ କଟକ ଆସିଲି । ସେମାନେ ଖୁବ୍ ଯତ୍ନରେ ମୋତେ ସାଙ୍ଗରେ ଆଣିଲେ । ସେ ପ୍ରଥମେ କଟକ ଷ୍ଟେସନ୍‌ରେ ପହଁଚି ମୋତେ ତାଙ୍କ ଘରକୁ ନେଇଗଲେ । ତାଙ୍କର କଟକରେ ବାଖରାବାଦରେ

ଘର ଥିଲା । ସେଠି ଯତ୍ନରେ ରଖିଲେ । ତା'ପରେ ସନ୍ଧ୍ୟା ପୂର୍ବରୁ ମୋତେ ଆମର ଥୋରିଆସାହି ବସାକୁ ଆଣିଲେ ।

ଥୋରିଆସାହି ବସାରେ ଆମେ ପହଁଚି ଦେଖିଲୁ ବାବା ଅଫିସରୁ ଫେରି ନାହାନ୍ତି । ପୂଜାରୀ, ଚାକର ଅଛନ୍ତି । ବାବାଙ୍କର ଆସିବା ପର୍ଯ୍ୟନ୍ତ ମୋର ସେ ମାମୁଁ ମୋତେ ନେଇ ଅପେକ୍ଷା କରି ବସି ରହିଲେ । ମୁଁ ଯେ ଅନେକ ଦିନ ହେଲା ବାବାଙ୍କୁ ଦେଖି ନାହିଁ । ବାବାଙ୍କୁ କିଛି ସମୟ ପରେ ଦେଖିବି । ସେଥିପାଇଁ ମୋର ଆନନ୍ଦ କି ଆଗ୍ରହ ନଥିଲା କାରଣ ଏକେ ମା'ଙ୍କୁ ଛାଡ଼ି ଆସିଛି, ମାମୁଁ ଘର ଛାଡ଼ି ଆସିଛି, ଆଇଙ୍କୁ ଛାଡ଼ି ଆସିଛି । ପୁଣି ବାବାଙ୍କ ପାଖକୁ ଆସିଛି ପାଠ ପଢ଼ିବା ପାଇଁ । ଏଥିରେ ଖୁସି ହେବି କିମିତି ? ବାବାଙ୍କ ପାଖରେ ରହିଲେ ଯାହା କିଛି ଆନନ୍ଦ ଲାଗନ୍ତା । ସେଥିରେ ପୁଣି ପାଠ ପଢ଼ିବାକୁ ହବ, ଏତ ମହାଦୁଃଖର କଥା !

କିଛି ସମୟ ପରେ ବାବା ଆସି ପହଁଚିଲେ । ବାବା ମୋତେ ଦେଖି ଯେତେ ଆନନ୍ଦିତ ହେଲେ ମୁଁ କିନ୍ତୁ ସେତେ ଆନନ୍ଦିତ ହେଲି ନାହିଁ । କାରଣତ ଆଗରୁ କହିଛି । ମୋର ସେ ମାମୁଁ କିଛି ସମୟ ବାବାଙ୍କ ସହିତରେ ଅନେକ ଗଳ୍ପ, ଥଟ୍ଟା, ହସ ପରିହାସ ପରେ ଆନନ୍ଦରେ ମୋତେ ବାବାଙ୍କ ପାଖରେ ଛାଡ଼ି ବିଦାୟ ନେଲେ ।

ବାବାଙ୍କ ପାଖରେ ଆମେତ କେହି ନଥିଲୁ । ମୋତେ ପାଖରେ ପାଇ ବାବା ବିଶେଷ ଆନନ୍ଦିତ ହେଲେ । ବାବାଙ୍କ ପାଖରେ ଥାଇ ମଧ୍ୟ କେତେଦିନ ପରେ ନୂଆ ଆସିଛି ବୋଲି ପାଠ ପଢ଼ା ମଧ୍ୟ ବନ୍ଦ ରହିଲା । ମା'ଙ୍କୁ ପ୍ରଥମେ ଛାଡ଼ି ଆସିଛି ବୋଲି ବାବା ମଧ୍ୟ ଚେଷ୍ଟା କଲେ ମୋର କିମିତି ମନ ଲାଗିବ, ତାଙ୍କ ପାଖରେ ରହିବି ।

ସେତେବେଳେ ମୋର ବଡ଼ ଭଉଣୀ, ବଡ଼ ଭିଣେଇ କଟକ କାଜିବାଜାରରେ ଜଗନ୍ନାଥ ବଲ୍ଲଭ ମଠ ପାଖରେ ରହୁଥିଲେ । ସେଠି ଭିଣେଇଙ୍କର ନିଜର ଖଣ୍ଡେ ଭଲ ଘର ଥିଲା । କୋଠା ଘର ନୁହେଁ ତଥାପି କୋଠା ଘର ପରି ସିମେଣ୍ଟ, ଚଟାଣ, ଇଟା କାନ୍ଥ, ଚାଳ ଛପର, ବେଶ୍ ପ୍ରଶସ୍ତ ଖଞ୍ଜା । ଚମତ୍କାର ଜାଗାରେ ଘର, ଅଳ୍ପ କିଛି ଦୂରରେ ଜଗନ୍ନାଥ ବଲ୍ଲଭ ମଠ, ସୁନ୍ଦର ଜାଗା, ମୋର ମନର ପରିବର୍ତ୍ତନ ପାଇଁ ବାବା ଦିନେ ଦିନେ ଅଫିସରୁ ଫେରି ମୋତେ ବଡ଼ ଭଉଣୀଙ୍କ ପାଖକୁ ନେଇ ଯାଉଥିଲେ । ବଡ଼ ଭଉଣୀ ମୋ ଠାରୁ ଦଶ ବର୍ଷ ବଡ଼ ଥିଲେ । ମୋତେ ପିଲା ବେଳୁଁ କାଖ କୋଳ କରି ଯେମିତି ବଡ଼ ଭଉଣୀ କରିଥାନ୍ତି ସେମିତି ମୋର ଅନେକ ଝଞ୍ଜାଳ ସମ୍ଭାଳି ମୋତେ ବଢ଼େଇଥିଲେ । ତାଙ୍କର ବିବାହ ବେଳର ଘଟଣା ମୋର ଅଳ୍ପ ଅଳ୍ପ ମନେ ପଡ଼େ ।

ବଡ଼ ଭଉଣୀଙ୍କ ପାଖକୁ ଗଲେ ତାଙ୍କର ମୋ ପ୍ରତି ବିଶେଷ ଆଦର ଯତ୍ନ । ମୁଁ ମଧ୍ୟ ତାଙ୍କ ପାଖକୁ ଗଲେ ମୋତେ ଭାରି ଭଲ ଲାଗୁଥିଲା । ବଡ଼ ଭଉଣୀଙ୍କ ଛଡ଼ା ତାଙ୍କ ଘରର ସମସ୍ତଙ୍କ ମୋ ପ୍ରତି ବିଶେଷ ସ୍ନେହ, ଶ୍ରଦ୍ଧା କାରଣ ମୁଁ ଗୋଟିଏ ମାତ୍ର ଶଳା । କିନ୍ତୁ ବଡ଼ ଭଉଣୀଙ୍କ ଘରକୁ ଗଲେ ମୋତେ ଯେ ଯେତେ ସ୍ନେହ, ଶ୍ରଦ୍ଧା କରନ୍ତୁ ମୁଁ କିନ୍ତୁ କୁଆଡ଼େ ଯାଏନି । ବଡ଼ ଭଉଣୀଙ୍କ ପାଖରେ ବସେ ନଚେତ୍ ବାବାଙ୍କ ପାଖରେ ବସିଥାଏ । ଯେ ଯେତେ ଡ଼ାକିଲେ କାହାରି ପାଖକୁ ଯାଏନି । ମୁଁ ଶଳା ବୋଲି ମୋତେ ସମସ୍ତଙ୍କର ଥଟ୍ଟା ପରିହାସ । ମୁଁ ଯେମିତି ଗୋଟାଏ କି ଅଦ୍ଭୁତ ଜୀବ । ଯଦି ଟିକିଏ କୁଆଡ଼େ ବୁଲି ବାହାରିଲିଣି, ବଡ଼ ଭଉଣୀଙ୍କ ନଣନ୍ଦ, ଦିଅରମାନେ ମୋତେ ଥଟ୍ଟା କଲେଣି । କେତେକ ଥଟ୍ଟାରେ ମୋତେ ଧମକ ଦେଲେଣି । ଆଉ ଛାଡ଼ିବୁନି । ଏଇଠି ରଖିନବୁ, କିଏ କହିଲେଣି ବାହା ହେଇ ପଡ଼ିବେ, ଇମିତି କେତେ ରକମର ଥଟ୍ଟା ପରିହାସ ମୋତେ ସେଠି ଭାରି ଭୟ ଏବଂ ସରମ ଲାଗୁଥିଲା ।

ବଡ଼ ଭଉଣୀଙ୍କ ଘରକୁ ଯେ ଏବେ ଗଲି ତା ନୁହେଁ । ଏଥିପୂର୍ବରୁ ଅନେକବାର ବାବା, ମା'ଙ୍କ ସାଙ୍ଗରେ ଯାଇଛି, ଚାଟଶାଳିରେ ପଢ଼ିବା ବେଳେ ଅବଧାନଙ୍କ ସାଙ୍ଗରେ ଶ୍ରୀପଞ୍ଚମୀ ପରେ ସରସ୍ୱତୀ ମୂର୍ତ୍ତି ଧରି "ବନ୍ଦଇ ହରି..." ବୋଲିବାକୁ ଯାଇଛି । ବର୍ଷେ ମୋର ମନେ ପଡୁଛି ବଡ଼ ଭଉଣୀଙ୍କ ଘରୁ "ବନ୍ଦଇ ହରି..." ବୋଲି ଫେରୁ ଫେରୁ ସଞ୍ଜ ଗଡ଼ି ଗଲା । ଆମେ ଯେଉଁ ସରସ୍ୱତୀ ମୂର୍ତ୍ତି ସବୁ ହାତରେ ନେଇ ବୁଲୁଥିଲୁ ତହିଁ ଆରଦିନ ସେ

ସରସ୍ୱତୀ ମୂର୍ତ୍ତି ସବୁକୁ ପାଣିରେ ବିସର୍ଜନ କରିବାର କଥା କିନ୍ତୁ ଦୈବ ଦୁର୍ଘଟଣାକୁ ସତିଆ ଅବଧାନେ ଆମମାନଙ୍କୁ ମୋର ବଡ଼ ଭଉଣୀଙ୍କ ଘରୁ ଯେଉଁ ବାଟ ଦେଇ ନେଇ ଆସୁଥିଲେ, ସେ ବାଟରେ ଗୋଟାଏ ପୋଲ ପଡ଼ିଲା ସେ ପୋଲ ତଳେ ପାଣି ଚାଲିଥାଏ। ଆମେ ପିଲାମାନେ ପ୍ରତ୍ୟେକ ସରସ୍ୱତୀ ମୂର୍ତ୍ତି ଧରି ଅବଧାନଙ୍କ ପଛେ ପଛେ ଚାଲି ଥାଉ। ହଠାତ୍ ସେ ପୋଲ ଉପରେ ଆମର ସାମନା ଆଡୁ ଗୋଟାଏ ବଗି ଗାଡ଼ି ଚାଲି ଆସିଲା। ଅବଧାନେ ପାଟି କରି କହିଲେ ହେ ପିଲେ ପାଖେଇ ଯାଅ। ଏଇ ସମୟରେ ଆମେ ପାଖେଇ ଯାଉ ଯାଉ ଗୋଟାଏ ପିଲା ହାତରୁ ସରସ୍ୱତୀ ମୂର୍ତ୍ତି ସେ ପୋଲ ତଳ ପାଣିରେ ଖସି ପଡ଼ିଲା। ଏହି ସମୟରେ ଆମ ପିଲାଙ୍କ ମଧ୍ୟରେ ଭାରି ହସ ଉଠିଲା। ମୁଁ କହିଲି ସରସ୍ୱତୀ କାଲି ପାଣିରେ ପଡ଼ିଥାନ୍ତେ। ଆଜି ଟିକିଏ ଆଗରୁ ଚାଲିଗଲେ। ଏକଥା ଶୁଣି ଅବଧାନେ ହସିଲେ ଆଉ ସବୁ ପିଲାଏ ହସିଲେ।

ଆଉ ଥରେ ମୁଁ, ବାବା, ମା'ଙ୍କ ସାଙ୍ଗରେ ବଡ଼ ଭଉଣୀଙ୍କ ଘରକୁ ଯାଇ ଥାଏ। ବଡ଼ ଭଉଣୀଙ୍କ ଶାଶୁ ଘରର ଚାଲିଚଳନ, ହାବଭାବ, ଆଚାର ବ୍ୟବହାର ଆମ ଘରର ଆଚାର ବ୍ୟବହାର ସହିତରେ ତୁଳନା କଲେ ଅନେକ ତଫାତ୍। ଆମ ଘରେ କୁକୁଡ଼ାକୁ ଘରେ ରଖିବା ତ ଦୂରର କଥା କୁକୁଡ଼ାକୁ ଛୁଇଁବାକୁ ମନା। ଏଲୁମିନିୟମ ବାସନ କି କଲେଇ ବାସନରେ ଖାଇବା ମନା। ଛେଳି ମାଂସ କି କୁକୁଡ଼ା ମାଂସ ଖାଇବା ନିଷିଦ୍ଧ। ମାଛ ଖାଇବା ବାରଣ ନଥିଲା। ତରକାରୀରେ ରସୁଣ ଆଦୌ ବ୍ୟବହାର ହବ ନାହିଁ। ପାଇଖାନାକୁ ଗଲେ ଲୁଗା ପିନ୍ଧି ଯିବା ବାରଣ। ଗାମୁଛା ପିନ୍ଧି ଯିବାକୁ ହବ। ବଜାରରେ ଗୁଡ଼ିଆ ଦୋକାନରେ ବସି ଜଳଖିଆ ଖାଇବା ନିଷିଦ୍ଧ। ଯା ଖାଇବ, ଗୁଡ଼ିଆ ଦୋକାନରୁ କିଣି ଆଣି ଘରେ ଖାଇବାକୁ ହବ। ଗୁଡ଼ିଆ ଦୋକାନ ପଛେ ଘରୁ ଯେତେ ଦୂର ହେଉଥାଉ, ଛୁଆଁ ଛୁତି ବାରଣ। ବ୍ରାହ୍ମଣ ଛଡ଼ା ଅନ୍ୟ କୌଣସି ଜାତି ରାନ୍ଧିଲେ, ଖିଆ ହବ ନାହିଁ। ଏସବୁ ତୁଳନା କଲେ ବଡ଼ ଭିଣେଇଙ୍କ ଘରର ହାବଭାବ ଚାଲିଚଳନ ଆମଘର ସହିତରେ ପୂରାପୂରି ଓଲଟା। ତାଙ୍କ ଘରେ ସେତେବେଳେ କୁକୁଡ଼ା ପାଳନ, ମାଂସ ଭକ୍ଷଣ ଇତ୍ୟାଦି ସବୁ ଚଳୁଥିଲା। ଏଣୁ ବାବା, ମା ବଡ଼ ଭିଣେଇଙ୍କ ଘରକୁ ଗଲେ ସେଠି ଖାଇବା ପିଇବା ପାଇଁ କୁଣ୍ଠା ବୋଧ କରୁଥିଲେ। ମୁଁ ତ ଭିଣେଇଙ୍କ ଘରେ ତରକାରୀ ଖାଇ ପାରେନା, ଏତେ ମସଲା ଆଉ ଲଙ୍କା ତାଙ୍କ ଘରେ ବ୍ୟବହାର କରନ୍ତି, ଯା କି ଆମ ଘରର ମସଲା ଇତ୍ୟାଦିର ଦଶଗୁଣ ହବ। ବଡ଼ ଭିଣେଇଙ୍କ ଘରେ ଖାଇବା ପିଇବା, ପୋଷାକ ପରିଚ୍ଛଦର ଆଡ଼ମ୍ବର ଖୁବ୍, ମଉଜୀ ଲୋକ କିନ୍ତୁ ଭାରି ରାଗୀ। ଆଉ କେତେକାଂଶରେ କଳହପ୍ରିୟ ଲୋକ। ପ୍ରତ୍ୟେକଙ୍କ ଦୈହିକ ଗଠଣ ମଧ୍ୟ ଭାରି ସୁନ୍ଦର। ମୋର ବଡ଼ ଭଉଣୀଙ୍କର ପ୍ରଥମ ସନ୍ତାନ ହେଲା ପୁତ୍ର ସନ୍ତାନ। ସେ ମଧ୍ୟ ଭାରି ସୁନ୍ଦର ହେଉଥାଏ। ମୋର ମନେ ଅଛି ଥରେ ଭିଣେଇଙ୍କ ଘରେ ଗୁରିଏ କୁକୁଡ଼ା ଛୁଆ ହେଉଥାଏ। ସେ ଗୁରିକ ଭାରି ସୁନ୍ଦର ହେଉଥାନ୍ତି। ବାବା, ମା, ମୁଁ ସମସ୍ତେ ଭିଣେଇଙ୍କ ଘରକୁ ଯାଇଥାଉ। ମୁଁ ସେ କୁକୁଡ଼ା ଛୁଆଙ୍କୁ ଗୋଡ଼େଇଲି ଧରିବା ପାଇଁ। ମୋର ମନ ହେଲା ଧରିଲେ ନେଇ ପାଳିବି, ଖେଳିବି କିନ୍ତୁ ବାବା ଯେ ତାକୁ ନଜର କରିଛନ୍ତି, ମୋତେ ଆଉ ଜଣା ନାହିଁ। ଆମେମାନେ ଯେତେବେଳେ ସେଥର ଭିଣେଇଙ୍କ ଘରୁ ଥୋରିଆ ସାହିକୁ ଫେରୁ, ବାବା ବାଟରେ ମୋତେ ଧିକ୍କାର ଦେଇ କହିଲେ ତୁ କୁକୁଡ଼ା ଛୁଆ ଧରିବାକୁ ଗୋଡ଼ଉଥିଲୁ? କୁକୁଡ଼ାକୁ ଛୁଅଁନ୍ତି? କୂଳରେ ପାଣି ଦବାକୁ ତୋର ଯୋଗ୍ୟତା ରହିଲା ନାହିଁ।

ଅତି ପିଲାବେଳେ ବଡ଼ ଭିଣେଇଙ୍କୁ ମୋତେ ଭାରି ଭୟ ଲାଗୁଥିଲା। ତା'ର କାରଣ ହେଲା ବଡ଼ ଭଉଣୀ ବିଭା ହେଲା ପରେ, ତାଙ୍କର ଶଶୁର ଘରର ଲୋକେ ଆମମାନଙ୍କ ସହିତରେ ଅପ୍ରିୟ ହେଲାରୁ ବଡ଼ ଭଉଣୀଙ୍କୁ କେତେବର୍ଷ ଯାଏ ଆଉ ଆମ ଘରକୁ ପଠେଇଲେ ନାହିଁ। ମୁଁ ଏଇ କଥା ଶୁଣି ମୋର ମନରେ ଧାରଣା ହେଲା ଯେ କେତେବେଳେ ମୋତେ ଯଦି ନେଇ ଯିବେ ଆଉ ଛାଡ଼ିବେ ନାହିଁ। ଏଇ ଭୁଲ ଧାରଣା ଯୋଗୁଁ ମୁଁ ଅନେକ ବର୍ଷ ଯାଏ ଭିଣେଇଙ୍କ ପାଖକୁ ଯାଇ ନାହିଁ। ସେ ମୋତେ ଅନେକ ସ୍ନେହ ଶ୍ରଦ୍ଧା କରନ୍ତି। ମୋ ପାଇଁ ଅନେକ

ପ୍ରକାର କିନିଷ ଆଣନ୍ତି । ତଥାପି ମୁଁ ତାଙ୍କ ପାଖକୁ ଯାଏନା । ଚାଟଶାଳିରେ ପଢ଼ିବାବେଳେ ଯଦି ଦେଖୁଛି ଭିଣେଇ ଆସୁଛନ୍ତି ମୁଁ ସିଲଟ୍, ପେନ୍‌ସିଲ୍ ଥୋଇ ଦେଇ ଅବଧାନଙ୍କୁ କିଛି ନ କହି ଘର ଭିତରକୁ ଉଠି ପଳାଏ, ଲୁଚେ ।

କେତେକ ବର୍ଷ ପରେ ମୋର ସେ ଭୟ ଛାଡ଼ିଗଲା । ବଡ଼ ଭିଣେଇଙ୍କ ନିଜ ଗାଁ କଟକ ଜିଲ୍ଲା ଜଗତସିଂପୁରକୁ ଯିବା ବାଟରେ ବାଁ ଆଡ଼େ ପଡ଼େ । ଗାଁର ନାଁ ହେଲା "ଅଲାଣ୍ଡୋ" । ମା'ଙ୍କୁ ଛାଡ଼ି ଆସି ବାବାଙ୍କ ପାଖରେ ଥିବା ଯୋଗୁଁ ମୋର ମନର ପରିବର୍ତ୍ତନ ଲାଗି ବାବା ଅନେକ ଚେଷ୍ଟା କରିଛନ୍ତି । ଦିନେ ବାବା ମୋତେ କହିଲେ ଆଜି ତୋର ସ୍କୁଲରେ ନାଁ ଲେଖା ହବ । ଦିନେ ଦି'ପହରେ ବାବା ମୋତେ ସାଙ୍ଗରେ ନେଇ କଟକ ଟାଉନ୍‌ର ପି.ଏମ୍.ଏକାଡ଼େମୀକୁ ଗଲେ । ମୁଁ ସ୍କୁଲ କ'ଣ ଜାଣି ନଥାଏ । ବାବା ପି.ଏମ୍.ଏକାଡ଼େମୀକୁ ଯାଇ ହେଡ଼ମାଷ୍ଟରଙ୍କ ବସିବା ଘରେ ପହଁଚି ତାଙ୍କ ସହିତରେ ଦେଖା କଲେ । ମୁଁ ସେ ସ୍କୁଲ ଦେଖି ଆଶ୍ଚର୍ଯ୍ୟ ହେଲି । ହେଡ଼ମାଷ୍ଟରଙ୍କୁ ଦେଖି ମଧ ଆଶ୍ଚର୍ଯ୍ୟ ହେଲି । ସେତେବେଳେ ପି.ଏମ୍.ଏକାଡ଼େମୀର ହେଡ଼ମାଷ୍ଟର ଥିଲେ ନିମାଇ ଚରଣ ଚ୍ୟାଉପଟ୍ଟନାୟକ । କି ବିରାଟ ଚେହେରା ! କି ବ୍ୟକ୍ତିତ୍ୱ ! ଯେମିତି ରୂପ ସେମିତି ପୋଷାକର ଆଡ଼ମ୍ବର, ଗୋରା ଦେହ, ଚଉଡ଼ା କପାଳ, ବଡ଼ ବଡ଼ ନିଶ, ଗାଲ ଫୁଲି ରହିଛି । ସେଥିରେ କଳା ରଙ୍ଗର ଚପକନ୍ ସଙ୍ଗେ ଧଳା ଫୁଲ ପ୍ୟାଣ୍ଟ । ସେଥିରେ ପକେଟ୍ ୱାଚ୍‌ର ସୁନା ଚେନ୍ ଛାତିର ବାଁ ପଟେ ଝୁଲୁଛି । ବାବା ହେଡ଼ମାଷ୍ଟରଙ୍କ ସାମନାରେ ଗୋଟିଏ ଚୌକିରେ ବସିଲେ । ମୁଁ ଭୟରେ ବାବାଙ୍କ ପଛପଟେ ଠିଆ ହୋଇ ହେଡ଼ମାଷ୍ଟରଙ୍କୁ ଅନ୍ଧ ଅନ୍ଧ ଅନଉ ଥାଏ । ଏ କି ଅଦ୍ଭୁତ ଜୀବ !! ଏତ ଘୁଷୁରିଆ ଅବଧାନ ନୁହେଁ । କପିଳା ଅବଧାନ ନୁହେଁ, ସତିଆ ଅବଧାନ ନୁହେଁ କି ଦୟା ମା ନାହାକାଣୀ ନୁହେଁ । ଯାଙ୍କର କଥା କହିବାର ଭଙ୍ଗୀ କିମିତି ! ଆଖିର ଭଙ୍ଗୀ କିମିତି ! ବସିବାର ଭଙ୍ଗୀ କିମିତି ! ବଡ଼ ଭୟଙ୍କର ପୁଣି ଅତି ସୁନ୍ଦର ଦେଖିବାକୁ ।

ବାବା ହେଡ଼ମାଷ୍ଟରଙ୍କ ସଙ୍ଗେ କଥାବାର୍ତ୍ତା ହୋଇ ମୋର ନାଁ ଲେଖେଇ ମୋତେ ସାଙ୍ଗରେ ନେଇ ମୁଁ ଯେଉଁ କ୍ଲାସରେ ପଢ଼ିବି ସେଇ କ୍ଲାସକୁ ଗଲେ । ସେଠି ସେତେବେଳେ ରାମକୃଷ୍ଣ ମିତ୍ର ପଢ଼଼ଉ ଥିଲେ । ଅତି ବୁଢ଼ା ମଣିଷ । ସେ ବାବାଙ୍କୁ ଦେଖି ଭାରି ଖୁସି ହେଲେ ଏବଂ ମୁଁ ପଢ଼ିବି ଶୁଣି ବାବାଙ୍କୁ କହିଲେ କ'ଣ ବାପକୁ ପଢ଼େଇଥିଲି ପୁଣି ପୁଅକୁ ପଢ଼େଇବି ? ରାମବାବୁଙ୍କ ସହିତରେ ବାବାଙ୍କର ବେଶ ସୁଖାଳାପ ହେଲା । ବାବା ମୋତେ କ୍ଲାସ ଚିହ୍ନେଇ ଦେଇ କହିଲେ ଏଣିକି ତୋତେ ଏଇଠିକି ରୋଜି ଆସିବାକୁ ହବ । ଏଇଠି ପଢ଼ିବୁ ।

ସେ କ୍ଲାସର ନାଁ ସେତେବେଳେ କ'ଣ ଥିଲା ମୋର ଠିକ୍ ମନେ ପଡୁ ନାହିଁ । ମାଇନରର ଶେଷ ତଳ କ୍ଲାସ, ବୋଧେ 7th class, ସେତେବେଳେ ଆଜିକାଲି 11th class କୁ ମ୍ୟାଟ୍ରିକ୍ 1st class କୁହା ଯାଉଥିଲା 10th class କୁ ମ୍ୟାଟ୍ରିକ 2nd class କୁହା ଯାଉଥିଲା । ସେମିତି 9th class କୁ ମ୍ୟାଟ୍ରିକ 3rd class, 8th କୁ ମ୍ୟାଟ୍ରିକ 4th class କୁହା ଯାଉଥିଲା । ସେ ଯା ହଉ, ମୋର ମାଇନର୍ ଶେଷ ତଳ କ୍ଲାସରେ ନାଁ ଲେଖା ହେଲା । କ୍ଲାସରେ କେତେଗୁଡ଼ିଏ ପିଲାଙ୍କୁ ଦେଖିଲି । ବେଞ୍ଚ, ଡ଼େସ୍କ, ଟେବଲ୍, ଚେୟାର କିମିତି ସଜା ହୋଇଛି ଦେଖିଲି । ଶିକ୍ଷକ କିମିତି ବସି ପଢ଼଼ଉଛନ୍ତି । ପିଲାଏ କିମିତି ବସି ପଢ଼ୁଛନ୍ତି । ସବୁ ଦେଖିଲି । ସେଦିନ ଆଉ କ୍ଲାସରେ ବସି ପଢ଼ିବାକୁ ହେଲା ନାହିଁ । ବାବା ମୋତେ ସାଙ୍ଗରେ ନେଇ ଆସିଲେ । କହିଲେ କାଲିଠୁଁ ରୋଜି ଏଇଠି ଆସି ପଢ଼ିବାକୁ ହବ । ବାବା routine ଲେଖି ଆଣିଲେ, ବହିର ତାଲିକା ଲେଖି ଆଣିଲେ ।

ବାବାଙ୍କ ସାଙ୍ଗରେ ବସାକୁ ଫେରି ଆସିବା ବେଳେ ପି.ଏମ୍.ଏକାଡ଼େମୀର କୋଠାଘର ଏବଂ ଅନ୍ୟାନ୍ୟ କ୍ଲାସ ସବୁକୁ ନଜର କରି ଆସିଲି । କି ବିରାଟ, କି ପ୍ରକାଣ୍ଡ କି ପ୍ରଶସ୍ତ ଘର ସବୁ । ଆଜି କାଲି ପି.ଏମ୍.ଏକାଡ଼େମୀର କୋଠା ସବୁ ଯେତେ ଦୋତାଲା ହୋଇଛି ସେତେବେଳେ ଅଳ୍ପ ଅଂଶ ଦୋତାଲା ଥିଲା । ମୁଁ ପଢ଼ିବା ବେଳେ ମଧ କେତେକ ଘର ନୂଆ ତିଆରି ହେଲା । ଗୌରୀଶଙ୍କର

ଛାତ୍ରାବାସର ଭିତ୍ତି ସ୍ଥାପନ ହେଲା । ପରେ ଦୋତାଲା ଘର ତିଆରି ହେଲା । ସ୍କୁଲକୁ ଲାଗି ଖେଳ ପଡ଼ିଆ ଯେତିକି ଥିଲା ଏବେ ଆହୁରି ବଢ଼ିଗଲାଣି । ଖେଳ ପଡ଼ିଆରେ ଗୋଟାଏ ଜାଗାରେ parallel bar ପୋତା ହୋଇଥିଲା । ପି.ଏମ୍.ଏକାଡ଼େମୀର ପ୍ରତିଷ୍ଠାତା ହେଲେ ପ୍ୟାରୀ ମୋହନ ଆଚାର୍ଯ୍ୟ । ତାଙ୍କର ଶଶୁର ଘର ହେଲା ଆମରି ଗାଁ ଦୀକ୍ଷିତପଡ଼ାରେ । ଏଣୁ ଆମ ଗାଁର ଅଧିକାଂଶ ଛାତ୍ର ଯେ କି ମ୍ୟାଟ୍ରିକ୍ ପଢ଼ିବା ପାଇଁ କଟକ ଆସୁଥିଲେ ସେମାନେ ପି.ଏମ୍.ଏକାଡ଼େମୀରେ ନାଁ ଲେଖେଇ ପଢୁଥିଲେ । କେବଳ ଆମ ଗାଁର ନୁହଁ, କଟକ ଜିଲ୍ଲାର ଅଧିକାଂଶ ଛାତ୍ର ପି.ଏମ୍.ଏକାଡ଼େମୀରେ ପଢ଼ିବାକୁ ଭଲ ପାଉଥିଲେ ।

ସେତେବେଳେ ଓଡ଼ିଶାକୁ ନବାଗତ ବଙ୍ଗାଳୀ, ଓଡ଼ିଶାର ସ୍ଥାୟୀବାସିନ୍ଦା ବଙ୍ଗାଳୀ, ଅଧିକାଂଶ ଲୋକେ ତାଙ୍କର ପିଲାଙ୍କୁ ପି.ଏମ୍.ଏକାଡ଼େମୀରେ ପଢ଼େଇବାକୁ ଭଲ ପାଉଥିଲେ । ପି.ଏମ୍.ଏକାଡ଼େମୀର କେତେକ ହେଡ୍‌ମାଷ୍ଟର ମଧ୍ୟ ବଙ୍ଗାଳୀ ଥିଲେ । ସେମାନଙ୍କ ମଧ୍ୟରେ ବଙ୍ଗର ବିପ୍ଳବୀ ନେତା ବିପିନ ଚନ୍ଦ୍ର ପାଲ୍ ଅନ୍ୟତମ ।

ମୁଁ ପଢ଼ିବା ବେଳେ ପି.ଏମ୍.ଏକାଡ଼େମୀର ସାମନା ପଟେ କେତେକ ଗୁରିଏ ଧାଉଡ଼ି ଚାଳଘର ଥିଲା । ସେଥିରେ ଅଧିକାଂଶ ତେଲେଙ୍ଗା ଲୋକ ରହୁଥିଲେ । ପି.ଏମ୍.ଏକାଡ଼େମୀର ପ୍ରଧାନ ଫାଟକ ସାମନାରେ ଗୋଟିଏ ଚାଳଘରେ ଦିନର ଅଧିକାଂଶ ସମୟରେ ସିସାରେ ଓଡ଼ିଆ ଅକ୍ଷର ସବୁ ତିଆରି ହଉଥିଲା । ଖେଳଛୁଟିରେ ଆମେ ସାନସାନ ପିଲାଏ ସ୍କୁଲ ହତା ଭିତରୁ ବାହାରି ଆସି ସେହି ତରଳ ସିସାରେ ଅକ୍ଷର ତିଆରି ହବା ଦେଖୁଥିଲୁ । ସ୍କୁଲରୁ ବାହାରିଲେ ପ୍ରଧାନ ରାସ୍ତାକୁ ଆସିବା ପାଇଁ ଯେଉଁ ରାସ୍ତା ଥିଲା, ତା'ର ଉଭୟ ପାର୍ଶ୍ୱରେ ଛୋଟ ଛୋଟ ଦୋକାନ ଥିଲା । ପାନ ଦୋକାନ, ଚାଉଳ, ଡ଼ାଲି ଦୋକାନ ଇତ୍ୟାଦି । ଆଜିକାଲି ତ ସେ ରାସ୍ତାର ଉଭୟ ପାର୍ଶ୍ୱର ଦୋକାନ, ତା'ର ଆଲୋକସଜ୍ଜା ଦେଖିଲେ ମୋର ମନେ ହୁଏ ନା ଯେ ସେହି ରାସ୍ତା ଦେଇ ଆମେ ପି.ଏମ୍.ଏକାଡ଼େମୀକୁ ପଢ଼ିବାକୁ ଯାଉଥିଲୁ । ପି.ଏମ୍.ଏକାଡ଼େମୀର ମଧ୍ୟ ବହୁତ ପରିବର୍ତ୍ତନ ହୋଇଛି ।

ମୋର ସ୍କୁଲକୁ ଯିବା ଆରମ୍ଭ ହେଲା । ମୁଁ ସ୍କୁଲକୁ ଯିବି ବୋଲି ବାବା ଗୋଟିଏ ହାତଟଣା ଛୋଟ ଗାଡ଼ିଟିଏ କିଣି ଥିଲେ । ସେ ଗାଡ଼ିର ଯୋଡ଼ିଏ ଚକ, ଆଉ ଦୁଇଟି ପିଲା ବସିବା ପାଇଁ ସ୍ଥାନ ଥିଲା । ଜଣେ ଆଗରେ, ଜଣେ ପଛରେ । ଗାଡ଼ିଟି ବେଶ୍ ରଙ୍ଗୀନ୍ । ସେହି ଗାଡ଼ିରେ ପ୍ରଥମେ କେତେଦିନ ଆମର ଜଣେ ବୁଢ଼ା ଚାକର ମୋତେ ବସେଇ ନେଇ ସ୍କୁଲରେ ଛାଡ଼ି ଆସେ । ପୁଣି ସ୍କୁଲ ଛୁଟି ହେଲା ବେଳକୁ ଯାଇ ଅପେକ୍ଷା କରିଥାଏ । ଛୁଟି ହୋଇଗଲେ ମୋତେ ସେ ଗାଡ଼ିରେ ବସେଇ ନେଇ ଆସେ ।

ସ୍କୁଲରେ ଯାଇ କ୍ଲାସରେ ବସିଲି ବେଞ୍ଚ ଉପରେ ଅନ୍ୟାନ୍ୟ ପିଲାଙ୍କ ସାଙ୍ଗରେ । ଚୋରଟା ପରି ବସିଲି । କାହାରି ସାଙ୍ଗରେ କଥାବାର୍ତ୍ତା ନାହିଁ । ଖାଲି ସରମ ଲାଗୁଥାଏ । ଯେମିତି ଗୋଟାଏ ଚଢ଼େଇ ଧରା ହୋଇ ଅନ୍ୟ ଚଢ଼େଇମାନଙ୍କ ସାଙ୍ଗରେ ଛାଡ଼ିଦିଆ ହୋଇଛି । ପ୍ରତ୍ୟେକ ଶିକ୍ଷକଙ୍କ କ୍ଲାସ୍ ସରିବା ପରେ ଦୂରରୁ ଘଣ୍ଟା ଶବ୍ଦ ଶୁଣା ଯାଉଛି । ଜଣେ ଶିକ୍ଷକ ଗଲେ ଆଉ ଜଣେ ଶିକ୍ଷକ ଆସୁଛନ୍ତି । ପାଠ ପଢ଼ା ଚାଲିଛି । କିଛି ସମୟ ପରେ ଖେଳଛୁଟିର ଘଣ୍ଟା ବାଜିଲା । ପିଲାଏ ସବୁ କୋଳାହଳ କରି କ୍ଲାସରୁ ବାହାରି ଆସିଲେ, ବୁଲିଲେ, ଖେଳିଲେ, ପାଟିକଲେ । ମୁଁ ଆଶ୍ଚର୍ଯ୍ୟ ହେଲି । ମୋର କ୍ଲାସରୁ ମଧ୍ୟ ପିଲାଏ ପଳେଇଲେ । ମୁଁ ବାରନ୍ଦାକୁ ଆସି ପିଲାଙ୍କର ଖେଳିବା, ବୁଲିବା ଦେଖିଲି । ସ୍କୁଲ ପଛରେ ଖେଳ ପଡ଼ିଆରେ ଦୁଇଟା ଧାଉଡ଼ି କୋଠାର ମଝିରେ ଯେଉଁ ସ୍ଥାନ ସେଥିରେ ପୁଣି ସ୍କୁଲ ସାମନାରେ ଯେଉଁଠି ଟିକିଏ ଖୋଲା ଜାଗା ଅଛି ସେଠି ମଧ୍ୟ ପିଲାଏ ଖେଳୁଛନ୍ତି । ଯେ ଯେତେ ପ୍ରକାର ଖେଳୁଛନ୍ତି, ତା'ମଧ୍ୟରେ ମୋ ଆଖିରେ ପଡ଼ିଲା ମୁଁ ଯେଉଁ ଟେନିସ୍ ବଲ୍ ଖେଳୁଥିଲି, ସେମିତି ଗୋଟିଏ ଟେନିସ୍ ବଲ୍‌କୁ ନେଇ କେତେକ ପିଲା ଖେଳୁଛନ୍ତି । ମନ ଖୁସି ହୋଇଗଲା । ମନ ହେଲା ଖେଳିବାକୁ କିନ୍ତୁ ସାହସ ହେଲା ନାହିଁ । ମୁଁ ତ ନୂଆ । ମୋର କାହା ସାଙ୍ଗରେ ଖେଳିବାକୁ କୁଣ୍ଠାବୋଧ । ମୋତେ କେହି ସାଙ୍ଗରେ ମିଶେଇବାକୁ ମଧ୍ୟ କୁଣ୍ଠାବୋଧ କରୁଥାନ୍ତି । ପୁଣି ଖେଳିବି

କ'ଣ ? ମା'ଙ୍କ କଥା ସବୁବେଳେ ମନେପଡୁଛି । ଏଣେ ବାବାଙ୍କ ପାଖକୁ ଆସିଛି ଯେ ତାଙ୍କ ପାଖରେ ହେଲେ ରହନ୍ତି ତା ମଧ୍ୟ ନୁହେଁ । ବାବା ସକାଳୁ ଅଫିସ୍ ଚାଲିଗଲେ । ମୁଁ ଖାଇପିଇ ସ୍କୁଲକୁ ଆସିଲି । ଦିନସାରା ଏଠି କଟିଲା ପୁଣି ଯାଇ ସନ୍ଧ୍ୟା ବେଳକୁ ବାବାଙ୍କ ସହିତରେ ଭେଟ ପୁଣି ରାତିରେ ପାଠ ପଢ଼ାର ଭୟ । ଏ ପରିସ୍ଥିତି ଭାରି ଦୁର୍ବିସହ ମନେ ହେଲା । କ'ଣ କଲେ ପୁଣି ମା'ଙ୍କ ପାଖକୁ ଯିବି ?

ଏଥି ମଧ୍ୟରେ ବାବା ସ୍କୁଲରୁ ଯେଉଁ routine ଟିପି ଆଣିଥିଲେ ତାକୁ ବେଶ୍ ସୁନ୍ଦର ଭାବରେ ତାଙ୍କ ଅଫିସରୁ ଖଣ୍ଡେ କାଗଜରେ ତିଆରି କରି ଆଣିଲେ । ବହି କିଣା ହେଲା । ବହିଗୁଡ଼ିକୁ ବାହାରୁ ଦେଖିବାକୁ ଭାରି ସୁନ୍ଦର, ଛବି ଭରା କିନ୍ତୁ କେତେକ ଆମ୍ବ ଯେମିତି ବାହାରୁ ଅତି ସୁନ୍ଦର ଦେଖାଗଲେ, ଖାଇଲା ବେଳକୁ ଖଟା ଲାଗେ ସେମିତି ଏ ବହିଗୁଡ଼ିକ ମନେ ହେଲା । କିନ୍ତୁ ପଢ଼ିବାକୁ ତ ହବ । ପାଠ ପଢ଼ାରୁ ଆଉ ମୁକ୍ତି ପାଇବାର ଉପାୟ ନାହିଁ । ପାଠଚୋର ବୋଲି ତ ଆଗରୁ ଉପାଧି ଲାଭ ହେଇଥାଏ । କ'ଣ କରିବି ? ବାବାଙ୍କ ପ୍ରତି ସେତେ ଶ୍ରଦ୍ଧା ନଥାଏ, କେବଳ ମା'ଙ୍କ ପାଖରେ ଯାଇ ମନ ।

ବାବା ମୋର ମନର ପରିବର୍ତ୍ତନ ଲାଗି ଅନେକ ଚେଷ୍ଟା କରୁଥାନ୍ତି । ଯୁଆଡ଼େ ଗଲେ ସାଙ୍ଗରେ ନେଇ ଯାନ୍ତି । ଥରେ କଟକକୁ ଗୋଟାଏ ଥିଏଟର୍ ପାର୍ଟି ଆସିଲା । ମ୍ୟୁନିସିପାଲିଟି ପଡ଼ିଆରେ ସେମାନେ ରହିଲେ । ତାଙ୍କର ଯେତେ ନାଟକ ସବୁ ମଞ୍ଚସ୍ଥ କଲେ । ସବୁ ହିନ୍ଦିରେ ଲେଖା । ବାବା ମୋତେ ଦେଖେଇବାକୁ ନେଇଗଲେ । ସେଥର "ମହାଭାରତ" ନାଟକ ମଞ୍ଚସ୍ଥ ହଉଥାଏ । ମୁଁ ନାଟକ ବୁଝେ ନାହିଁକି ହିନ୍ଦି ବୁଝେ ନାହିଁ । ତଥାପି ବାବା ମୋତେ ଦେଖେଇବା ପାଇଁ ନେଇ ଗଲେ । ମୋତେ ଭାରି ଭଲ ଲାଗିଲା । କୌରବ, ପାଣ୍ଡବଙ୍କ ମଧ୍ୟରେ ପଶାଖେଳ, ଦ୍ରୌପଦୀଙ୍କ ବସ୍ତ୍ରହରଣ ଏବଂ ଆଉ କେତେକ ଘଟଣା, ଗୀତ, ମଞ୍ଚସଜ୍ଜା, ଆଲୋକ ସଜ୍ଜା, ଦୃଶ୍ୟ ପରିବର୍ତ୍ତନ, ସବୁ କିଛି ମୋତେ ଚମତ୍କୃତ କରି ଦେଲା । କିନ୍ତୁ ମୁଁ ଭଲ କରି ଦେଖି ପାରିଲି ନାହିଁ । ତା'ର କାରଣ ମୋତେ ନାଳଶୂଳା ଝାଡ଼ା ଧରିଥାଏ । କିଛି ସମୟ ବସିବା ପରେ ଝାଡ଼ା ମଡ଼ଉ ଥାଏ । ବାବା ମୋତେ ବାରମ୍ବାର ବାହାରକୁ ଆଣୁଥାନ୍ତି ଝାଡ଼ା ବସେଇବା ପାଇଁ । ମୁଁ ଝାଡ଼ା ଫେରି ସାରିଲେ ମୋତେ ମ୍ୟୁନିସିପାଲିଟି ପୋଖରୀରେ ଶୌଚ କରେଇ ପୁଣି ମୋତେ ନେଇ ଯାଇ ନାଟକ ଦେଖିବାକୁ ବସନ୍ତି । ମୋତେ ନାଳଶୂଳା ସେଥର ଧରିବାର କାରଣ ହଉଛି ମା' ତ ଯାଜପୁରରେ ଥାନ୍ତି । ମା କେତେଗୁରିଏ ବରକୋଳି ଆଚାର କରି ରଖି ଯାଇଥିଲେ । ସେ ଆଚାର ଦୈନିକ ଗୋଟିଏ ମାଟି ହାଣ୍ଡିରେ ରଖା ହେଇ ଖରାରେ ଶୁଖା ହୁଏ । ଯେଉଁଦିନ କୌଣସି କାରଣରୁ ସ୍କୁଲ ଶୀଘ୍ର ଛୁଟି ହେଇ ଯାଏ ମୁଁ ଘରକୁ ଶୀଘ୍ର ଆସି ସେ ବରକୋଳିରୁ ଚାକର, ପୂଜାରୀଙ୍କ ଅଜ୍ଞାତରେ ଗୋଟିଏ ଗୋଟିଏ ଉଦରସ୍ଥ କରେ, କି ସୁଆଦ ଲାଗେ ! ମନ ହୁଏ ହାଣ୍ଡିକ ଯାକ ଖାଇ ଦେବି କିନ୍ତୁ ଧରାପଡ଼ିଲେ ବିପଦ । କୋଳି ଆଚାର ଲୁଚେଇ ଖାଇବା ଯୋଗୁଁ ନାଳଶୂଳା ପୋଖରୀ ଧରିବା ହେଲା ମୂଳ କଥା ।

ସେ ପୁଣି କେତେଦିନ ପରେ ଭଲ ହେଇଗଲା । ଏହାପରେ ଥରେ କଟକକୁ ଗୋଟାଏ ବଡ଼ ସର୍କସ୍ ପାର୍ଟି ଆସିଲା । ତା'ର ନାଁ ମୋର କିଛି ମନେ ପଡୁ ନାହିଁ । 'କାଳିକସ୍' ହବ କି କଣ ? ମୁଁ ସର୍କସ୍ କ'ଣ ସେତେବେଳେ ଜାଣି ନଥାଏ । ବାବା ମୋତେ ନେଇଗଲେ ସେ ସର୍କସ୍ ଦେଖେଇବା ପାଇଁ । ସର୍କସ୍ ତାର ତମ୍ବୁ ପକେଇଥାଏ ମ୍ୟୁନିସିପାଲିଟି ପଡ଼ିଆରେ । ବାବା ମୋତେ ନେଇ ଗ୍ୟାଲେରିରେ ବସେଇଲେ । ଅସଂଖ୍ୟ ଲୋକ । ମୋତେ ସବୁ ନୂଆ । ସର୍କସ୍‌ର ବାଜା ଶୁଣି ମୋର ମନ ଖୁସି ହେଇଗଲା । ତା'ପରେ ତମ୍ବୁ ଭିତରର ସାଜସଜ୍ଜା, ସବୁତ ଚମତ୍କାର । ସର୍କସ୍‌ର ଜୀବଜନ୍ତୁ, ଖେଳ କସରତ୍ ଦେଖି ମୁଁ ତ ଆତ୍ମହରା ହେଇ ପଡ଼ିଲି । କ'ଣ ଏସବୁ ! କି ଆଶ୍ଚର୍ଯ୍ୟଜନକ । ବାଘ, ସିଂହକୁ ତ ଏତେ ନିକଟରେ ଦେଖି ନଥିଲି । ସେଇଠି ପ୍ରଥମେ ଦେଖିଲି । ବାଘ, ସିଂହ ଯେ ମଣିଷକୁ ଇମିତି ଭୟ କରେ, ବୋଲ ମାନେ, କଣ ଯେ ହେଲି ସେ ସବୁ ଘଟଣା ଦେଖି, ସେ ବିଷୟରେ ଲେଖି ବୁଝେଇ ହବନି । ମୁଁ ତା'ପରେ ଯେତେ ସର୍କସ୍

ଦେଖିଲି, ସେ ସର୍କସ୍ ପାର୍ଟି ଭଳି କେହି ନୁହେଁ । ସେମିତି ସର୍କସ୍ ପାର୍ଟି ଓଡ଼ିଶାକୁ ଆସି ନାହାନ୍ତି ।

ସର୍କସ୍ ଦେଖି ସେଥର ବାବା, ମୁଁ ଘରକୁ ଫେରିଲୁ । ମୋର ମନ ହେଲା କିମତି ସର୍କସ୍ କରିବି କିନ୍ତୁ ମଣିଷ ଦ୍ୱାରା ଯେଉଁ ଖେଳ କସରତ୍ ଦେଖେଇବାର କଥା ସେ ସବୁତ ହେଇ ପାରିଲାନି । ସେଥିରେ ଉପକରଣ ଦରକାର, ଲୋକ ଦରକାର, ସାହସ ଦରକାର, କିଏ କରିବ ? ତେଣୁ ଗୋଟିଏ ବିଷୟ ମନରେ ପଶିଲା ସର୍କସ୍‌ରେ ବାଘ, ସିଂହକୁ ନେଇ ଜଣେ ଲୋକ ଯେମିତି ଖେଳ ଦେଖେଇଲା ମୁଁ ସେମିତି ଦେଖେଇବି । ସିଂହ କୁଆଡୁ ମିଳିବ ? ବାଘ ବା କୁଆଡୁ ମିଳିବ ? କିନ୍ତୁ ବାଘ ପରିବର୍ତ୍ତେ ଆମର ଗୋଟିଏ ବିଲେଇକୁ ଠିକ୍ କଲି । ବିଲେଇଟି ଦେଖିବାକୁ ବଡ଼ । କଳା ନୁହେଁ କି ଧଳା ନୁହେଁ । କେମିତି ଗୋଟାଏ ମାଟିଆ ରଙ୍ଗର । ମୁହଁଟା ଅବିକଳ ବାଘ ପରି । ଦେହର ଗଠଣ ମଧ ସେମିତି । ମାଇ ବିଲେଇଟାଏ । ସେ ବିଲେଇ ହେଲା ବାଘ, ମୁଁ ହେଲି ବାଘର ଖେଳ ଦେଖେଇବାର ଲୋକ ।

ଆମ ଘରେ ସେତେବେଳେ ଅନେକ ଗୁଡ଼ିଏ ବିଲେଇ ଥିଲେ । ତା ଭିତରେ ସେଇ ବିଲେଇଟା ଥିଲା ସବୁଠାରୁ ବଡ଼ । ମୋ ବାବାଙ୍କର ବିଲେଇମାନଙ୍କ ପ୍ରତି ବିଶେଷ ଶ୍ରଦ୍ଧା ଥିଲା । ବିଶେଷତଃ ସେହି ବିଲେଇଟା ବାବାଙ୍କର ବେଶି ପ୍ରିୟ ଥିଲା ଏବଂ ଅନୁଗତ ଥିଲା । ତାର ନାଁ ଥିଲା 'ଗେଲେହି' । ସେ ଶୋଇଲା ବେଳେ ବାବାଙ୍କ ଗୋଡ଼ ପାଖରେ ଶୁଏ । ସେ ବିଲେଇକୁ ଶନିସପ୍ତା ଦଶା ପଡ଼ିଲା । ମୁଁ ଠିକ୍ କଲି ତାଲିମ୍ କରିବି, ବିଲେଇ ବାଘ ପରି ଖେଳ ଦେଖେଇବ । ତା'ବେକରେ ଦଉଡ଼ି ବାନ୍ଧିଲି । ମୁଁ ହାତରେ ଛାଟ ଧଇଲି । ବିଲେଇର ତାଲିମର ପ୍ରଥମ ପର୍ଯ୍ୟାୟ ଆରମ୍ଭ ହେଲା ବିଲେଇ କି କହିଲି ଠିଆ ହ' ଦି' ଗୋଡ଼ରେ । ସେ କାହିଁକି ଶୁଣିବ ? ସେ ଶୋଇଲା । ହେଲା ମାଡ଼ । ତାକୁ କହିଲି ମୋ ଚାରିପଟେ ବୃତ୍ତାକାରରେ ଦୌଡ଼ । ସେ ଶୋଇଲା, ହେଲା ମାଡ଼ । ତାକୁ କହିଲି ଆଁ କର, ସେ କାହିଁକି ଶୁଣିବ ? ପୁଣି ମାଡ଼ । ଇମିତି ମାଡ଼ ଖାଇ ଖାଇ ସେ ହଗିମୁତି ଆଠୁଁଏ । ଶେଷରେ ରାଗରେ ମୋତେ ଆପୁଁଡ଼ିବାକୁ ଆରମ୍ଭ କଲା । ରାଗରେ ଗର୍ଜିଲା । ପଳେଇବାକୁ ଛଟପଟ ହେଲା । ଯାଉଛି କୁଆଡ଼େ ? ବେକରେ ଦଉଡ଼ି ବନ୍ଧା ହେଇଛି । ଶେଷରେ ତାକୁ ଗୋଟାଏ ପଞ୍ଜୁରୀ ଭିତରେ ବନ୍ଦ କରି ରଖିଲି । ସେଥିରେ ପୁଣି ତାକୁ ଜାଗା ହଉ ନଥାଏ, ଖୁନ୍ଦିଖାନ୍ଦି ପୁରେଇଲି । ଇମିତି ବିଲେଇକୁ ତାଲିମ କରୁ କରୁ ଦିନେ ବାବା ଦେଖିଲେ ପିଞ୍ଜରା ଭିତରେ ବିଲେଇ । ବାବା କହିଲେ, ବୋକା, ବିଲେଇକୁ ପିଞ୍ଜରା ଭିତରେ ବନ୍ଦ କରି ରଖନ୍ତି ? ସେ ବୁଲିବ, ଖାଇବ, ତାକୁ ବନ୍ଦ କରି ରଖିଲେ ସେ କେମିତି ରହିବ ? ଦିନେ ସେ ବିଲେଇ ଉପରେ ଗୋଟାଏ ଲୁହା ଟବ୍‌କୁ ଓଜାଡ଼ି ଢ଼ଙ୍କେଇ ରଖିଦେଲି । ମୋର ଆଉ ମନେ ନାହିଁ । ମୁଁ ସ୍କୁଲକୁ ଚାଲିଗଲି । ବିଲେଇ ଖରାରେ ଛଟପଟ ହେଇ ବୋବେଇବାକୁ ଆରମ୍ଭ କଲା । ମୁଁ ନଥାଏ । ବାବା ଟବ୍‌କୁ କାଢ଼ି ଦେଖନ୍ତି ତା ଭିତରେ ବିଲେଇ ରହିଛି । ବିଲେଇ ସେତେବେଳକୁ ଗରମରେ ଛଟପଟ ହେଲାଣି । ବାବା ଟବ୍ କାଢ଼ି ଦେଇ ବିଲେଇକୁ କାଢ଼ି ଆଣି ଖାଇବାକୁ ଦେଲେ ।

ରାତିରେ ଯେତେବେଳେ ବାବାଙ୍କ ସାଙ୍ଗରେ ମୁଁ ଖାଇବାକୁ ବସେ, ବାବା ମୋତେ ବିଲେଇର ଦୁର୍ଦ୍ଦଶା କଥା କହି ବିରକ୍ତ ହେଲେ । ସେଇ ଦିନଠୁଁ ବିଲେଇ ତାଲିମରୁ ମନ ଛାଡ଼ିଗଲା । ପିଲାବେଳେ ମୁଁ ଅନେକ ବିଲେଇ ଛୁଆଙ୍କୁ ଇମିତି କଷ୍ଟ ଦେଇଛି । ଆମ ଅଗଣାରେ କୂଅ ପାଖରେ ଲୁହା ଟବ୍‌ରେ ପାଣି ଭର୍ତ୍ତି ହେଇ ଥୁଆ ହେଇଥାଏ । ମୁଁ ଅନେକ ବିଲେଇ ଛୁଆଙ୍କୁ ନେଇ ସେ ପାଣି ଟବ୍‌ରେ ଛାଡ଼ି ଦିଏ । କାରଣ ପହଁରିବେ । ସେ କାହିଁକି ପହଁରୁଥିଲେ ? ଉବେଇ ଟୁବେଇ ହୁଅନ୍ତି । ମା ଦେଖିଲେ ମୋତେ ବାଡ଼େଇବାକୁ ଉଠନ୍ତି । ଏଣୁ ସେ ସବୁ ବନ୍ଦ ହେଲା । ପରେ ମୂଷା ପାଳିବାକୁ ମନ ହେଲା । ଆମର ଯେଉଁ ଘରେ ଧାନ ରହୁଥିଲା ସେ ଘରେ ଅନେକ ଚୂଟିଆ ମୂଷା ଥାନ୍ତି । ସେଥିରୁ କେତେଗୁଡ଼ାଏ ଧରି ଗୋଟାଏ ପିତଳ ଜାଲି ବାକ୍ସରେ ରଖିଲି । ତାଙ୍କୁ ଧାନ ଖାଇବାକୁ ଦିଏ । ସେମାନେ ଭଲରେ ଥାନ୍ତି । ବେଳେ ବେଳେ କ'ଣ ମନ ହୁଏ, ଗୋଟା ଗୋଟାକୁ ଧରି ତାଙ୍କ ଗୋଡ଼ରେ

ସୂତା ବାନ୍ଧି ପୋଖରିକୁ ଫୋପାଡ଼ି ଦିଏ । ସେମାନେ ପହଁରିବାକୁ ଚେଷ୍ଟା କଲେ ଭାରି ଖୁସି ଲାଗେ । ବେଳେବେଳେ ବିଲେଇକୁ ଡ଼ାକି ସେ ମୂଷାରୁ ଗୋଟାଏ ଗୋଟାଏ ଦେଇଦିଏ । ବିଲେଇ ଭାରି ଆନନ୍ଦରେ ନେଇ ପଳାନ୍ତି । ଇମିତି ମୂଷାକୁ ବିଲେଇ କି ଦବାର ଦେଖି ମୋ ବୁଢ଼ୀ ମା ମୋ ଉପରେ ବିରକ୍ତ ହେଇ ଥରେ କହିଲେ, ଯାର ପାଠ ହବ ନାହିଁ । ଗଣେଶଙ୍କ ବାହନକୁ ଇମିତି କରି ମାରୁଛି, ଯାର କେଭେ ପାଠ ହବ ନାହିଁ ।

ବୁଢ଼ୀ ମା'ଙ୍କ ଇମିତି ଭବିଷ୍ୟତ ବାଣୀ ଶୁଣି ମୁଁ ମନେ ମନେ ଭାବେ ପାଠ ନହେଲେ ପାଠ ବନ୍ଦ ହେଇ ଯାନ୍ତାକି । ଥରେ ଅନେକ ଘର ବୁଲି ବୁଲି, ଅନେକ ଚେଷ୍ଟା କରି ଗୋଟିଏ ଧଳା ମୂଷା ଯୋଗାଡ଼ କରି ଆଣି ପୋଷିଲି । କିଛିଦିନ ମୂଷାର ଖାଇବା, ରହିବା ପାଇଁ ଖୁବ୍ ଯତ୍ନ ନେଲି । ପରେ ଆଉ ମୂଷାର ଯତ୍ନ ନେଲି ନାହିଁ । ଇମିତି କି ମୂଷାର ରହିବାର ଭାଡ଼ି ଖୋଲା ପଡ଼ିଲା । ମୂଷା ସେ ଭାଡ଼ିରୁ ବାହାରି ଘର ସାରା ବୁଲେ । ପୁଣି ତା'ର ଭାଡ଼ିରେ ପଶି ରହେ । ଦିନେ ମୁଁ କୁଆଡ଼େ ବାହାରକୁ ଯାଇଥିଲି ଫେରି ଆସି ଘରେ ପଶିବା ମାତ୍ରେ ପୂଜାରୀ କହିଲା ବାବୁ, ମୂଷାକୁ ଆଜି ବିଲେଇ ନେଇଗଲା ।

ମୁଁ ଏକଥା ଶୁଣି ପ୍ରଥମେ ବିଶ୍ୱାସ କଲି ନାହିଁ । ଭାବିଲି ମୋତେ ଥଟ୍ଟାରେ କହୁଛି କିନ୍ତୁ ପୂଜାରୀ ଯେତେବେଳେ ମରା ମୂଷାକୁ ଆଣି ଦେଖେଇଲା ମୁଁ ଦୁଃଖରେ ଏବଂ ରାଗରେ ଅଥୟ ହେଇ ପଡ଼ିଲି । ପୂଜାରୀକୁ ପଚାରିଲି କୋଉ ବିଲେଇ ମାରି ଦେଲା ? ଘରେ ତ ଅନେକ ଗୁଡ଼ିଏ ବିଲେଇ ଥାନ୍ତି, ପୂଜାରୀ କହିଲା କାଣୀ ବିଲେଇ ।

ବିଲେଇ ତ ଅନେକ ଥାନ୍ତି, ତା'ଭିତରେ ଗୋଟାଏ ବିଲେଇ ଥିଲା, ସେ ଅନ୍ୟ ବିଲେଇଙ୍କ ସଙ୍ଗେ କଳିକଜିଆ କରି ତା'ର ଗୋଟାଏ ଆଖି ଫୁଟି ଯାଇଥିଲା । ତାରି କୀର୍ତ୍ତି । ସେଇ ମୂଷାକୁ ମାରିଛି । ଜଗତରେ ଦୁଇ ଆଖି ଥିବା ମଣିଷ ହେଉ ବା ଅନ୍ୟ ପ୍ରାଣୀ ହେଉ ସେମାନେ ଯେତେ ଭଲ ପ୍ରକୃତିର ହେଇଥାନ୍ତି ଯଦି କାହାରି ଗୋଟିଏ ଆଖି ଫୁଟିଗଲା, ତା'ର ପ୍ରକୃତି ବଦଳି ଯାଏ, ମନ୍ଦ ଆଡ଼କୁ ହିଁ ବେଶି ତା'ର ପ୍ରକୃତି ବଦଳେ । ସେ ବେଶି ଭାଗ ପ୍ରାୟ ଅନ୍ୟର ଅନିଷ୍ଟକାରୀ ହେଇ ବସେ, ତା'ର କରାମତି ଟିକିଏ ଅଲଗା ଜଣା ପଡ଼େ, ଏ କ୍ଷେତ୍ରରେ ମଧ୍ୟ ସେଇୟା ।

ଅନ୍ୟ ଦୁଇ ଆଖିଆ ବିଲେଇ ଏତେ ଗୁରାଏ ଥାଉ ଥାଉ କାଣୀ ବିଲେଇ ତ ନିଶ୍ଚୟ କିଛି ନୂଆ କରାମତି ଦେଖେଇବ, ବିଶେଷତଃ ମନ୍ଦ ଆଡ଼କୁ । କାଣୀ ବିଲେଇ ମୂଷାଟିକୁ ମାରି କୁଆଡ଼େ ଲୁଚିଛି, ତାର ପତ୍ତା ନାହିଁ । ବାବା ଘରେ ନଥିଲା ବେଳେ ମୁଁ, ପୂଜାରୀ, ଚାକର ତିନିହେଁ ମିଶି ଯା ମନକୁ ଆସେ ତା କରୁ । ଆମେ ତିନିହେଁ ପ୍ରାୟ କମ ବନ୍ଧୁତରେ ଅଳ୍ପ ବୟସର ଥିଲୁ । ତିନି ଜଣ ଯାକ ତିନି ସାଙ୍ଗ ପରି । ଏଣୁ ଆମ ଭିତରେ ପ୍ରସ୍ତାବ ହେଲା କାଣୀ ବିଲେଇକୁ ଧରିବା ।

ବିଲେଇକୁ ଖୋଜା ଚାଲିଲା । କିନ୍ତୁ ବିଲେଇ ନିରୁଦ୍ଦିଷ୍ଟ । ମନଭାରି ଖରାପ ଥାଏ । କିଛିଦିନ ପରେ କାଣୀ ବିଲେଇ ଧରାପଡ଼ିଲା । ବାବା ଘରେ ନଥିଲେ । ଆମେ ତିନିହେଁ ମିଶି କାଣୀ ବିଲେଇକୁ ଅଣ୍ଟାରେ ବାନ୍ଧି ପକେଇଲୁ । ତାକୁ ତଳ ମୁଣ୍ଡ କରି ଢେଙ୍କିଶାଳରେ ଚାଳିଆରେ ବାନ୍ଧି ଟଙ୍ଗେଇ ଦେଲୁ । ବିଲେଇର ଛଟପଟ ହବା ଦେଖି ମନ ଖୁସି ହେଇଗଲା ।

ସନ୍ଧ୍ୟା ବେଳକୁ ବିଲେଇ ତଳ ମୁଣ୍ଡ ହେଇ ଝୁଲି ଝୁଲି ବଙ୍କା ହେଇ ଡ଼ାଙ୍ଗ ପରି ହେଇ ରହିଲା । ବାବା ଜାଣନ୍ତି ନାହିଁ । ସନ୍ଧ୍ୟା ବେଳେ କାଣୀ ବିଲେଇର ଅବସ୍ଥା ଦେଖି ଆମେ ତିନିହେଁ ଭୟଭୀତ ହେଇଗଲୁ । ଭାବିଲୁ ବିଲେଇ ମରିଗଲା । କି ପାପ କଲୁ । ଆମେ ତିନିହେଁ ବିଚଳିତ ହେଇ ପଡ଼ି ବିଲେଇକୁ ଚାଳିଆରୁ ଖୋଲି ଆଣିଲୁ । ବିଲେଇ ମଲା ପରି ପଡ଼ିଥାଏ । କିଛି ନାହିଁ । ଶେଷରେ ବିଲେଇ ଅଣ୍ଟାରୁ ଯେମିତି ଦଉଡ଼ି ଖୋଲିଛୁ ବିଲେଇ ଉଠିପଡ଼ି ଏକା ଦୌଡ଼କେ ଛୁ । ଆମେ ତିନିହେଁ ଅବାକ୍ ହେଇଗଲୁ । ବିଲେଇ କି ଛଟାଣ କରି ପଡ଼ିଥିଲା ।

ଆଉ ଥରେ ସେମିତି ବାବା ଘରେ ନଥାନ୍ତି, ମୁଁ ଦେଖିଲି ଆମ ବାରିଆଡ଼େ ଦୂରରେ କଣ୍ଟିବୁଦା ଭିତରେ

ଗୋଟିଏ ନେଉଳ ପଶିଲା । ମୁଁ ପୂଜାରୀ ଆଉ ଚାକର ଟୋକାକୁ ଡ଼ାକି କହିଲି ନେଉଳ କିମିତି କଣ୍ଟି ବୁଦା ଭିତରେ ପଶିଲା ଆଉ ତାକୁ କିମିତି ଧରିବା । ତା'ର ପ୍ରସ୍ତାବ ଦେଲି । ଆମେ ତିନିହେଁ ବାହାରିଲୁ ନେଉଳ ଧରିବାକୁ ।

ପ୍ରଥମେ ମୁଁ ନେଉଳ ଧରିବା ପାଇଁ ଗୁରୁଣ୍ଡି ଗୁରୁଣ୍ଡି କଣ୍ଟି ବୁଦା ଭିତରେ ପଶିଲି କିଛି ବାଟ ଯାଇ ଦେଖେ ମସ୍ତ ବଡ଼ ସାପ ଟେକା ହୋଇ ଶୋଇଛି, କ'ଣ କରିବି ? ପଛକୁ ହଠାତ୍ ବାହାରି ଆସି ପାରୁନି । କାରଣ ଗୁରୁଣ୍ଡି ଗୁରୁଣ୍ଡି ଯାଇ ପଶିଛି । ହଠାତ ପଳେଇ ଆସିଲେ ଏଣେ ପିଠି କଣ୍ଟାରେ ଚିରିଯିବ । ମୁଁ ସେ ପର୍ଯ୍ୟନ୍ତ କେଭେ ଏତେ ନିକଟରେ ସାପ ହାବୁଡ଼େ ପଡ଼ି ନଥିଲି । ପୁଣି କଣ୍ଟି ବୁଦା ଭିତରେ । ସେଦିନର ବିପଦ କଥା ଭାବିଲେ ଏ ପର୍ଯ୍ୟନ୍ତ ଲୋମ ଟାଙ୍କୁରି ଉଠେ । ସାପ ମୋତେ ଦେଖି ନାହିଁ । ସେ ଶୋଇଛି । ହଳଦି ବର୍ଣ୍ଣର ମୋଟା ସାପ । ସାପର ଦୃଷ୍ଟି ମୋ ଉପରେ ପଡ଼ିଥିଲେ ସେହିଦିନ ସେଇଠି ମରିଥାନ୍ତି । ମୁଁ ପ୍ରଥମେ ସାପକୁ ଭେଟି କାନ୍ଦିଲା ପରି ହେଲି । ପରେ କୌଣସି ପ୍ରକାରେ ସେ କଣ୍ଟି ବୁଦା ଭିତରୁ ବାହାରି ଆସି ପୂଜାରୀକୁ ସବୁ କଥା ଭୟରେ କହିଲାରୁ ସେ କହିଲା ମୁଁ ଦେଖିବି ।

ତାକୁ ଯେତେ ମନା କଲି, ସେ ମାନିଲା ନାହିଁ । ସେ କଣ୍ଟିବୁଦା ଭିତରେ ଅଳ୍ପ ଦୂର ଯାଇ ବାହାରି ଆସି କହିଲା ସାପ ଫଣା ଟେକି ଠିଆ ହୋଇଛି । ମୁଁ ଓ ପୂଜାରୀ ଠିକ୍ କଲୁ ପଳେଇବା । ଆମ କଥା ଶୁଣି ଚାକର ଟୋକା କହିଲା ମୁଁ ଦେଖିବି, ମୁଁ ନ ଦେଖିଲେ ଯିବି ନାହିଁ । ତାକୁ ଯେତେ କହିଲେ ସେ ନ ମାନିବାରୁ ତାକୁ ମାଡ଼ ଦେଇ ସେଠୁଁ ନେଇ ଆସିଲୁ, ଚାକର ଟୋକା ଆମ ଭିତରେ ସବୁଠୁଁ ବୟସରେ ସାନ ଥିଲା ।

ଆଉ ଥରେ ବାବା ଘରେ ନଥାନ୍ତି, ବାବା ଯେଉଁ ଗାଡ଼ିଟିଏ ମୋ ଲାଗି ଆଣିଥିଲେ, ଯେଉଁଥିରେ ମୁଁ ସ୍କୁଲକୁ ଯାଉଥିଲି, ପକ୍କା ଅଗଣା ଭିତରେ ସେଥିରେ ମୁଁ ସାମନାରେ ବସିଲି । ମୋ ପଛପଟେ ପୂଜାରୀ ବସିଲା । ସେ ଗାଡ଼ିକୁ ସାହିର ଗୋଟାଏ ଟୋକା ଖୁବ୍ ଜୋର୍‌ରେ ବୃତ୍ତାକାରରେ ଅଗଣା ଭିତରେ ଦଉଡେଇଲା । ଦଉଡୁ ଦଉଡୁ ସେ ଗାଡ଼ି ନେଉଟି ପଡ଼ି ତା'ର କେତେକ ଅଂଶ ଭାଙ୍ଗି ଚୁର୍‌ମାର୍ ହୋଇଗଲା । ଭଗବାନଙ୍କ ଦୟାରୁ ଆମର କୌଣସି ଶାରୀରିକ କ୍ଷତି ହୋଇ ନାହିଁ । ଚାଳକର ମଧ କିଛି ହୋଇ ନାହିଁ । ଗାଡ଼ିଟା ଯେମିତି ନେଉଟି ପଡ଼ିଲା, ମୁଁ ଏବଂ ପୂଜାରୀ ଉଭୟଙ୍କ ମୁଣ୍ଡ ଫାଟି ଯାଇଥାନ୍ତା, ସେଥିରୁ ରକ୍ଷା ପାଇଲେ କ'ଣ ହବ, ଦେହଟା ଭାରି ଥରିଲା । ଏଣେ ମନ ଭୟ ଏବଂ ଦୁଃଖରେ ଅସ୍ଥିର ହୋଇ ଉଠିଲା ବାବା ଜାଣିଲେ କ'ଣ କହିବେ ? ଗାଡ଼ିଟା ଯେ ଭାଙ୍ଗିଗଲା ଆଉ ସ୍କୁଲକୁ ଗାଡ଼ିରେ ଯାଇ ହବ ନାହିଁ । ସେ ଯା ହେଲା, ହେଲା କିମିତି ବାବାଙ୍କୁ କ'ଣ କହି ମୁକ୍ତି ପାଇବୁ ? ଏଣୁ ଗୋଟାଏ ମସୁଧା କଲୁ, ବାବା ଆସିଲେ ତିନିହେଁ କହିବୁ ଯେ ଗାଡ଼ିଟା ଚାଳିଆ ପାଖରେ ଥୁଆ ହୋଇଥିଲା, ଚାଳିଆ ଉପରୁ ଗାଡ଼ି ଉପରକୁ ଗୋଟାଏ ମାଙ୍କଡ଼ କୁଦି ପଡ଼ିବା ଦ୍ୱାରା ଗାଡ଼ି ତଳେ ପଡ଼ି ଯାଇ ଭାଙ୍ଗି ଗଲା ।

ବାବା ଅଫିସ୍‌ରୁ ଆସିଲେ ଆମେ ତିନିହେଁ ସେଇ କଥା କହିଲୁ । ବାବା ସତ ଘଟଣା ବୋଲି ବୁଝିଗଲେ । ଏଣୁ ଆଉ କିଛି କହିଲେ ନାହିଁ । ଆମେ ରକ୍ଷା ପାଇଗଲୁ କିନ୍ତୁ ମୁଁ ମନେ ମନେ ଭାବିଲି ସ୍କୁଲକୁ କେମିତି ଯିବି ? ଏଣେ ସ୍କୁଲରେ ମଧ ମନ ଲାଗି ଗଲାଣି । ସାଙ୍ଗସାଥୀ, ଗପ, ଖେଳ ସବୁ ପ୍ରକାରର । ଭାରି ମଜା । ସ୍କୁଲରେ ପାଠ କହିବାରେ ବେଶ୍ ପ୍ରତିଯୋଗିତା ଚାଲେ । ସାର୍ ଯାହା ପଚାରିଲେ କିଏ ଆଗ କହିବ ? ଏଣୁ ଯେ ଆଗ କହେ, ସାର୍ ତାକୁ ଭାରି ଭଲପାନ୍ତି । ତା'ର ବସିବାର ସ୍ଥାନ ମଧ ବଦଳି ଯାଏ । ମୋର କେବଳ ଇଂରାଜୀ ବିଷୟଟି ଭଲ ହଉଥିଲା । ଆଉ ଓଡ଼ିଆ, ଇତିହାସ, ଭୂଗୋଳ ଇତ୍ୟାଦି ଯାହା ଯେମିତି ଚଳନୀୟ କିନ୍ତୁ ଅଙ୍କ ବିଷୟ ଆରମ୍ଭ ହେଲେ ମନହୁଏ କେଉଁଠି ଲୁଚିବି କିନ୍ତୁ କ୍ଲାସ୍‌ରେ ଲୁଚିବାର ଜାଗା ନଥାଏ । କେବଳ ଆଗ ପିଲାଙ୍କ ପଛରେ ମୁହଁ ଲୁଚେଇ ବସିବା ଛଡ଼ା ଆଉ ଉପାୟ ନାହିଁ । ଅଙ୍କ ପିରିୟଡ଼ରେ ଭାରି ଭୟ ଲାଗେ । ମନହୁଏ କେମିତି ଏ ପିରିୟଡ଼ଟା ସରିଯାନ୍ତା କି ।

ଏଣିକି ଦୈନିକ ସ୍କୁଲକୁ ଚାଲି ଚାଲି ଯିବାକୁ ପଡ଼ିଲା । ସାଙ୍ଗରେ ଗୋଟାଏ ଚାକର ଯାଏ । ସେ ସ୍କୁଲରେ ଛାଡ଼ି ଦେଇ ଆସେ ପୁଣି ସ୍କୁଲ ଛୁଟି ବେଳକୁ ଯାଇ ନେଇ ଆସେ । ମୁଁ ସ୍କୁଲକୁ କୋଉ କୋଉ ଦିନ ଥୋରିଆସାହିରୁ ବାହାରି ମୁସ୍‌ଲିମ୍ ସେମିନାରି ଆଡ଼କୁ ଯେଉଁ ବାଟ ଗଲା, ସେହି ବାଟରେ କିଛିଦୂର ଗଲେ ଗୋଟାଏ କବରଖାନା ପଡ଼େ । ସେଇଠୁଁ କେଶରପୁର ବାଟ ଦେଇ ମେରିଆ ବଜାର ବାଟରେ ଯାଇ ବର୍ତ୍ତମାନ କ୍ୟାପିଟାଲ ସିନେମା ଆଡ଼କୁ ଯେଉଁ ବାଟ ଯାଇଛି ସେଇ ବାଟରେ ଯାଇ ତିନିକୋଣିଆ ବଗିଚା ପାଖରେ ପହଁଚି ପ୍ରଧାନ ରାସ୍ତାରେ ଉଠୁ । ସେଇଠୁଁ ଚାଲି ଚାଲି ଯାଇ ପି.ଏମ୍.ଏକାଡ଼େମୀରେ ପହଁଚୁ । ସେତେବେଳେ କ୍ୟାପିଟାଲ୍ ସିନେମାର ନାଁ ଗନ୍ଧ ନଥିଲା କି କଟକ ସହରର ଲୋକେ ସିନେମା କ'ଣ ଜାଣି ନଥିଲେ । କଟକ ସହରର ଲୋକଙ୍କ ସିନେମା ଦେଖିବା କଥା ପରେ କହିବି । ମେରିଆ ବଜାରରୁ ଯେଉଁ ରାସ୍ତା ତିନିକଣିଆ ବଗିଚା ଆଡ଼କୁ ଯାଇଛି ସେ ରାସ୍ତାର ଉଭୟ ପାର୍ଶ୍ୱ ଅତି ନିମ୍ନ ଶ୍ରେଣୀର ଲୋକଙ୍କ ବସବାସ ଥିଲା । ତାକୁ ଭେଡ଼ି ସାହି ବୋଲି କଟକର ଲୋକେ କହୁଥିଲେ । ସେ ଲୋକଙ୍କୁ ଯାହା ଦେଖିଛି, ସେତେବେଳେ ସେମାନଙ୍କର ଅତି ଦୈନ୍ୟ ଅବସ୍ଥା । ଉଭୟ ପାର୍ଶ୍ୱରେ ନୁଆଣିଆ ଚାଳଘର । ଏତେ ନୁଆଣିଆ ଯେ ଘରେ ପଶିବାକୁ ହେଲେ ଗୁରୁଣ୍ଡି ଗୁରୁଣ୍ଡି ପଶିବା ଭଳି ନଚେତ୍ ପିଠିରେ ଚାଳ ବାଜିବ । ଉଭୟ ପାର୍ଶ୍ୱର ଲୋକେ, କି ମାଇପି, କି ମରଦ ସମସ୍ତେ ପ୍ରାୟ ବାଉଁଶ ପାଟିଆରେ ତଲେଇ, ଟୋକେଇ, ପାଛିଆ ବୁଣୁଥାନ୍ତି ଆଉ ମଝିରେ ମଝିରେ କଳିଗୋଳ କରି ମାଡ଼ ମରାମରି ହୁଅନ୍ତି, ମାଇପି ମାଇପିରେ ଚୁଟି ଧରାଧରି, ମାଇପି ମରଦରେ ଚାପୁଡ଼ା, ବିଧା, ମରଦ ମରଦରେ କୁସ୍ତାକୁସ୍ତି ହେଇ ବାଡ଼ିଆ ବାଡ଼େଇ ହୁଅନ୍ତି ।

ଆମେ ପିଲାଗୁରାକ ସ୍କୁଲକୁ ଯାଉ ଯାଉ ଏ ମାଡ଼ଗୋଳ ଦେଖିବା ପାଇଁ ଠିଆ ହେଇ ଦେଖୁ । ସେମାନେ ସମସ୍ତେ ତେଲଙ୍ଗୀ ଭାଷାରେ କଥାବାର୍ତ୍ତା ହୁଅନ୍ତି, କି ଅପରିଷ୍କାର ସେ ବସ୍ତି !

କ୍ୟାପିଟାଲ୍ ସିନେମା ହବା ଦିନଠାରୁ ସେ ବସ୍ତି ବାଟରେ ମଣିଷ ଚଳାଚଳ, ଯାନବାହନ ଚଳାଚଳ ବଢ଼ିଗଲା । ଏବେ ସେ ବସ୍ତିର ଅବସ୍ଥା ଅନେକ ବଦଳି ଗଲାଣି । କେତେକ ପକ୍କା ଘର ମୁଣ୍ଡ ଟେକିଲାଣି । ସେ ବାଟ ଦେଇ ତିନିକୋଣିଆ ବଗିଚା ଆଡ଼କୁ ଗଲା ବେଳେ ସେ ବସ୍ତିର ଡ଼ାଆଁଣ ପଟେ ଗୋଟିଏ ଗ୍ରାମଦେବତୀ ଥିଲେ ତାଙ୍କର ଅବସ୍ଥା ମଧ ବସ୍ତି ଅନୁଯାୟୀ ଥିଲା । ଏବେ ଦେଖିଲି ସେ ଠାକୁରାଣୀଙ୍କ ଅବସ୍ଥା ମଧ ବଦଳି ଯାଇଛି । ବସ୍ତିର ଉନ୍ନତି ସଙ୍ଗେ ସଙ୍ଗେ ତାଙ୍କର ମଧ ଉନ୍ନତି ଘଟିଛି । କ୍ୟାପିଟାଲ୍ ସିନେମା ହବା ଦିନଠାରୁ ସେ ଅଞ୍ଚଳର ଉନ୍ନତି ଘଟିଲା । ମୁଁ ସ୍କୁଲକୁ ଗଲାବେଳେ ଦେଖିଛି ତିନିକଣିଆ ବଗିଚା ଆଖପାଖ ଅଞ୍ଚଳ ଧୂ ଧୂ ପଦା ଜାଗା, କାଁ ଭାଁ କେତେବେଳେ କେମିତି ଲୋକଙ୍କର ଯିବା ଆସିବା । ଆଖପାଖରେ ଗୋଟାଏ ଦି'ଟା ମୁସଲ୍‌ମାନଙ୍କର ପାଉଁରୁଟି ତିଆରି ଦୋକାନ ଆଉ ଭାଟି ଥିଲା । ପାନ ଦୋକାନ, ଜଳଖିଆ ଦୋକାନ, ମନୋହାରୀ ଜିନିଷର ଦୋକାନ, ଦରଜୀ ଦୋକାନ, ଔଷଧ ଦୋକାନ, ସାଇକେଲ୍ ମରାମତି ଦୋକାନ, ସେଲୁନ୍‌ର ପରା ନଥିଲା । ଭେଡ଼ି ସାହି ଆଡୁ ତିନିକୋଣିଆ ବଗିଚା ଆଡ଼କୁ ଆସିଲା ବାଟରେ ବାଁ ପଟେ ଗୋଟାଏ ବଡ଼ ଡ଼ାକବଙ୍ଗଳା ଭଳି ଚାଳଘର ଥିଲା । ତା'ର ଚାରିପଟେ ପାଚେରୀ ମଧ ଥିଲା । ସେତେବେଳେ କଟକ ସହରରେ ସାଇକେଲ, ସାଇକେଲ ରିକ୍ସା, କାର୍, ମଟର ସାଇକେଲ୍, ସ୍କୁଟର ଇତ୍ୟାଦି ଦେଖିବା ସ୍ୱପ୍ନ । କେବଳ ଏକ ବଳଦିଆ ଗାଡ଼ି, ଶଗଡ଼ ନଚେତ୍ ବାଟୋଇ, ଆଉ କିଛି ନଥିଲା । ଏବେ ତିନିକୋଣିଆ ବଗିଚା, କ୍ୟାପିଟାଲ ସିନେମା ଆଖପାଖ ବାଟରେ ଯାଉ ଯାଉ ଟିକିଏ ଅନ୍ୟମନସ୍କ ହେଲେ, କାର୍ ହେଉ, ସାଇକେଲ୍ ହେଉ, ସାଇକେଲ୍ ରିକ୍ସା ହେଉ, ଯାହାରି ଦୟାରେ ହେଉ, ଧକ୍କାଟାଏ ସୁନିଶ୍ଚିତ ।

ତିନିକୋଣିଆ ବଗିଚା ତ ବର୍ତ୍ତମାନ କଟକ ସହରରେ ଗୋଟାଏ ଜନଗହଳିଆ ଜାଗା, ଚାରିଆଡ଼େ ବିଜୁଳିବତୀ ଆଲୁଅରେ ଆଖି ଝଲସି ଯିବ ପୁଣି ଲାଉଡ୍ ସ୍ପିକରରେ ଗୀତ ଉଛୁଳି ପଡୁଛି, ପିଯାର କିୟା ତ ଡ଼ରନା

କିୟା, କେତେବେଳେ ପେହ୍ଲା ପେହ୍ଲା ପିଆର, ଆଓ ପିଆର କରେଙ୍ଗେ ।

ମେରିଆ ବଜାର ଆଡୁ ଆସି ଯେଉଁଠି ଭେଡ଼ି ସାହି ଆଡ଼କୁ ଯିବାକୁ ହବ ସେଇ ଛକରୁ ଅଳ୍ପ ଦୂରରେ ରାସ୍ତାରେ ବାଁ ପଟେ ଟିକିଏ ହାତୀ ପୋଖରୀ ଆଡ଼କୁ ଆଗେଇ ଗଲେ ଗୋଟାଏ ବଡ଼ ପାଚେରୀ ଘେରା ହତା, ତା'ଭିତରେ କେତେକ ପକ୍କାଘର, ସେଇଠି ପି.ଏମ୍.ଏକାଡ଼େମୀର ହେଡ୍‌ମାଷ୍ଟର ନିମାଇ ଚରଣ ଚ୍ୟାଉପଟ୍ଟନାୟକ ରହୁଥିଲେ । ଆମେ ଦିନେ ଦିନେ ଭେଡ଼ି ସାହି ବାଟେ ଯାଉ ଯାଉ, ଆଗରେ ଦେଖୁ ହେଡ୍‌ମାଷ୍ଟର ଚାଲିଛନ୍ତି କାହାରି ସାଥୀରେ କଥା ନାହିଁ, ସାଙ୍ଗରେ କେହି ନାହିଁ, ଏକା ଏକା ଚାଲିଛନ୍ତି ତଳମୁହାଁ ହେଇ । କି ଗାମ୍ଭୀର୍ଯ୍ୟପୂର୍ଣ୍ଣ ଚାଲି । କଳା ଚପକନ୍‌କୁ ଧଳା ଫୁଲ୍ ପ୍ୟାଣ୍ଟ, ମୋଜା, ଜୋତା, ବେଳେବେଳେ ହାତରେ ଖଣ୍ଡେ ଛତା ଥାଏ ନଚେତ୍ ଖଣ୍ଡେ ବହି, ଛାତିରେ କଳା ଚପକନ୍ ଉପରେ ବାଁ ପଟେ ପକେଟ୍ ୱାଚ୍‌ର ସୁନାଚେନ୍ ଝୁଲୁଥାଏ, ଉନ୍ନତ ଗୋରା ଦେହ, ବାଘ ପରି ମୁହଁ ।

ସେତେବେଳେ ନିମାଇ ଚରଣ ଚ୍ୟାଉପଟ୍ଟନାୟକ ପି.ଏମ୍.ଏକାଡ଼େମୀର ହେଡ୍‌ମାଷ୍ଟରଙ୍କ ଯେଉଁ ଗାମ୍ଭୀର୍ଯ୍ୟ, ବଳିଷ୍ଠ ବ୍ୟକ୍ତିତ୍ୱ, ଆଡ଼ମ୍ବରପୂର୍ଣ୍ଣ ସାଜସଜ୍ଜା, କଥା କହିବାର ଭଙ୍ଗୀ, ଆଖିର ଭଙ୍ଗୀ, ଯାହା ଦେଖିଥିଲି ଆଜିକାଲି ସେଭଳି ହାଇସ୍କୁଲର ଜଣେ ହେଡ୍‌ମାଷ୍ଟର ଆଖିରେ ପଡୁ ନାହିଁ । କୌଣସି ଗୋଟିଏ କଲେଜର ପ୍ରିନ୍‌ସିପାଲଙ୍କୁ ମଧ ସେ ଧରଣର ଦେଖିବା ବିରଳ ।

ଆମେ ପିଲାଏ ସ୍କୁଲକୁ ଯାଉ ଯାଉ ଆଗରେ ହେଡ୍‌ମାଷ୍ଟରଙ୍କୁ ଯିବାର ଦେଖି ଭୟରେ ଚପି ଯାଉ । ଆମେ ପଛେଇ ପଛେଇ ଚାଲୁ କାଳେ ହେଡ୍‌ମାଷ୍ଟର ଦେଖିନେବେ । ନିମାଇ ଚରଣ ଚ୍ୟାଉପଟ୍ଟନାୟକ କେଭେ ପଛକୁ ଅନାନ୍ତି ନାହିଁ । ହେଡ୍‌ମାଷ୍ଟର ଯାଇ ସ୍କୁଲରେ ପଶିଲେ, ଆମେ ତା'ପରେ ସ୍କୁଲକୁ ଯାଉ । ଯଦି କୋଉଦିନ ଦେଖିଲୁ ଯେ ଆମେ ଆଗେଇ ଆସିଛୁ, ହେଡ୍‌ମାଷ୍ଟର ପଛରେ ଆସୁଛନ୍ତି, ଆମେ ଅତି ନମ୍ର, ଧୀରସ୍ଥିର ହେଇ ଆଗେ ଆଗେ ଚାଲି ଚାଲି ଆସୁ ତଥାପି ଚାଲିବାଟା ଖୁବ୍ ଶୀଘ୍ର ହୁଏ । କାରଣ ମନେହୁଏ କାଳେ ହେଡ୍‌ମାଷ୍ଟର ଆମ ପାଖକୁ ଆସିଯିବେ । ଦଳେ ମୂଷା ପଛରେ ଅଳ୍ପ ଦୂରରେ ଗୋଟାଏ ବୁଢ଼ା ବିଲେଇ ଆସୁଥିବାର ଦେଖି ମୂଷାଦଳର ମନର ଅବସ୍ଥା ଯା ହବାର ସମ୍ଭବ, ସେଇ ଅବସ୍ଥା ।

ବେଶି ଭାଗ ସେହି ଭେଡ଼ି ସାହି ରାସ୍ତାରେ ଆସିବାବେଳେ ଇମିତି ଦିନେ ଦିନେ ହେଡ୍‌ମାଷ୍ଟରଙ୍କ ସଙ୍ଗେ ଆଗ ପଛ ହେଇ ଯିବାର ଅସୁବିଧାରେ ପଡୁ । ମୋ ସାଙ୍ଗରେ ଯେଉଁ ଚାକର ଟୋକାଟିଏ ଯାଏ, ତା'ସହିତରେ କେଉଁ କେଉଁ ଦିନ ଯଦି ଭଲରେ ଗପ କରି ଯାଏ ତ କେଉଁ କେଉଁ ଦିନ ତାକୁ ମାଡ଼ ଦେଇ ଦେଇ ସାଙ୍ଗରେ ନିଏ ।

ଏତ ଗଲା ପି.ଏମ୍.ଏକାଡ଼େମୀକୁ ଯିବାର ଗୋଟାଏ ବାଟ ଆଉ ଗୋଟାଏ ବାଟ ହେଲା ଥୋରିଆସାହିରୁ ବାହାରି ପ୍ରଥମେ ବଢ଼େଇ ସାହି, ତା'ପରେ ମାଛୁଆବଜାର, ତା'ପରେ ବେପାରୀ ସାହି, ବଳିଭଗତର କୋଠା ସାମନା ଦେଇ ଚାଲି ଚାଲି ଆସି ବକ୍ସିବଜାର ପୋଷ୍ଟ ଅଫିସ ପାଖରେ ଉଠି ପ୍ରଧାନ ରାସ୍ତାରେ ବାଁ ଆଡ଼େ ଯାଇ ଯାଇ ସେହି ତିନିକୋଣିଆ ବଗିଚା ପାଖରେ ପହଁଚି, ପି.ଏମ୍.ଏକାଡ଼େମୀକୁ ଯାଉ । ଅନେକ ଆଡୁ ମୋରି ପରି ସ୍କୁଲ ପିଲାଏ ଚାଲିଥାନ୍ତି ।

ଆଜିକାଲି ଥୋରିଆସାହିରୁ ଆରମ୍ଭ କରି ବଢ଼େଇସାହି, ମାଛୁଆବଜାର, ବକ୍ସିବଜାରର ରାସ୍ତାର ଉଭୟ ପାର୍ଶ୍ୱରେ ଯେତେ ବିଭିନ୍ନ ପ୍ରକାରର ଦୋକାନ, ହୋଟେଲ, ସେଲୁନ, ଔଷଧ ଦୋକାନ, ଫଟୋ ଦୋକାନ, ଜଳଖିଆ ଦୋକାନ, ଟେଲରିଂ ସପ୍, ବରା ପକୁଡ଼ି ଦୋକାନ, ଚା ଦୋକାନ ଦେଖିବାକୁ ମିଳୁଛି । ସେତେବେଳେ ବର୍ତ୍ତମାନର ଦୋକାନସବୁର ଏକ ଚତୁର୍ଥାଂଶ ନଥିଲା ।

ଆଗରୁ ତ ବକ୍ସିବଜାର ମାର୍କେଟ ଅବସ୍ଥା ବର୍ଣ୍ଣନା କରି ସାରିଛି । ସବୁ ଚାଳଘର, ରାତିରେ ଫଚ୍ ଲାଇଟ୍ ଜଳା ହୁଏ । ଅଳ୍ପ କେଇଟା ପାନ ଦୋକାନ, ଚା ଦୋକାନ ନାହିଁ । ସେଲୁନ୍ ନାହିଁ । ଦରଜୀ ଦୋକାନ

ନାହିଁ । ସେତେବେଳେ କଟକକୁ ସିଲେଇ ମେସିନ୍ ଆସି ନଥାଏ । ମୋର ମନେ ଅଛି, ଯେତେବେଳେ Singer ସିଲେଇ ମେସିନ୍ କମ୍ପାନୀର ଶାଖା କଟକକୁ ନୂଆ ହୋଇ ଆସେ, ତାଙ୍କର କର୍ମଚାରୀ କେଇ ଜଣ ଘରେ ଘରେ ବୁଲି ଲୋକଙ୍କୁ ବୁଝଉଥାନ୍ତି, ପ୍ରଥମେ ୨୫ଟଙ୍କା ଦେଲେ ମେସିନ୍‌ଟିଏ ଦେବେ, ତା'ପରେ ପ୍ରତି ମାସରେ ମାସିକ ୫ଟଙ୍କା କରି ଦବାକୁ ହବ ତା'ର ଦାମ୍ ଶୋଧ ହବା ଯାଏ । ପୁଣି ବୁଝଉଥାନ୍ତି, ମେସିନ୍ କିଣିଲେ ତାଙ୍କ ତରଫରୁ ଲୋକ ଆସି କିମିତି ସିଲେଇ କରିବାକୁ ହବ ଶିଖେଇ ଦେବେ ।

ଏତେ ବୁଝେଇବା ସତ୍ତ୍ୱେ ଲୋକେ ରାଜି ହଉ ନଥାନ୍ତି କିଣିବାକୁ । ଆଜିକାଲି ତ Singer ସିଲେଇ ମେସିନ ଦେଖିବାକୁ ସ୍ୱପ୍ନ । ଉଷା ମେସିନ୍ ସବୁଠି ମୁଣ୍ଡ ଟେକିଛି । Singer ମେସିନ୍ ଲାଗି ଆଗରୁ ନାଁ ଦେଲେ, କିଛିଦିନ waiting list ରେ ରହିଲେ ଯାଇ ମିଳୁଥିଲା । ଏବେ ସେତକ ମଧ୍ୟ ବନ୍ଦ । ଖଣ୍ଡେ ମିଳିଲେ ମଧ୍ୟ ଦାମ୍ ଅତ୍ୟଧିକ । କିଣିବା ଭାରି କଷ୍ଟକର । ବକ୍ସିବଜାରରେ ଫଟୋ ଦୋକାନ କହିଲେ କୁହୁସ୍ ଫଟୋ ଦୋକାନ । କୁହୁସ୍ ସେତେବେଳେ କଟକ ଟାଉନ୍‌ର କାହିଁକି ଓଡ଼ିଶାର ନାମଜାଦା ଫଟୋଗ୍ରାଫର୍ । ଆଜିକାଲିତ କଟକ ଟାଉନ୍ ଏବଂ ଓଡ଼ିଶାରେ ବହୁତ ଫଟୋଗ୍ରାଫର ମୁଣ୍ଡ ଟେକିଛନ୍ତି କିନ୍ତୁ କୁହୁସ୍‌ର ଫଟୋ ନବାର ଟେକ୍‌ନିକ୍ ସହିତରେ କେହି ପ୍ରାୟ ସମକକ୍ଷ ହେବେ ନାହିଁ । କୁହୁସ୍ ହାତର ମୋର ପିଲାବେଳର ଫଟୋ ଏ ପର୍ଯ୍ୟନ୍ତ ଅଛି । ତା'ର କିଛି କ୍ଷୟକ୍ଷତି ନାହିଁ । ଆଜିକାଲିତ ଫଟୋ ଖଣ୍ଡେ ଉଠେଇଲେ ଅଳ୍ପ କେତେବର୍ଷରେ ନଷ୍ଟ ହୋଇ ଯାଉଛି, ସେଥିରେ ପୁଣି କେତେ ପ୍ରକାରର ଗଲତି ।

ଔଷଧ ଦୋକାନ କହିଲେ ଡ଼ାକ୍ତର ଜଗଦାନନ୍ଦ ମହାନ୍ତିଙ୍କ ଦୋକାନ, Edward Medical Hall ପରେ ଡ଼ାକ୍ତର ମାନ ଗୋବିନ୍ଦ ସାହୁଙ୍କ ଦୋକାନ ଆରମ୍ଭ ହେଲା ପଲ୍‌ଟନ୍ ବଜାରରେ । ହୋଟେଲ୍‌ର ନାଁ ଗନ୍ଧ ନାହିଁ । ସେତେବେଳେ ଲୋକେ ହୋଟେଲ୍‌ରେ ଖାଇବାକୁ ମଧ୍ୟ କୁଣ୍ଠାବୋଧ କରୁଥିଲେ । କାରଣ ଜାତି ଯିବ ।

ବକ୍ସିବଜାରର ମାର୍କେଟ ଭିତରେ ସେତେବେଳେ ମୁସଲମାନଙ୍କର ଗୋଟିଏ ଦୋ'ଟି ହୋଟେଲ୍ ଥିଲା । ନଚେତ୍ ହିନ୍ଦୁମାନଙ୍କ ହୋଟେଲ୍ ବକ୍ସିବଜାରରେ ଆଦୌ ନଥିଲା । ଆଜିକାଲି ତ ମୁସଲ୍‌ମାନ ହୋଟେଲ୍ ଅପେକ୍ଷା ହିନ୍ଦୁ ହୋଟେଲ୍ ବେଶି । ପୁଣି ଗଳିକନ୍ଦିରେ ହୋଟେଲ୍ ନାଁ ତ କେତେ ପ୍ରକାରର ।

ମନୋହାରୀ ଜିନିଷ ଏବଂ ଅନ୍ୟାନ୍ୟ ଜିନିଷର ବଡ଼ ଦୋକାନ ଥିଲା, ବିଲ୍‌ମୋରିଆର ଦୋକାନ । ସେ ଏବେ ମଧ୍ୟ ଯେଉଁଠି ଅଛି, ସେତେବେଳେ ସେଇଠି ଥିଲା । ଆଉ ବକ୍ସିବଜାର ପୋଷ୍ଟଅଫିସ ଆଡୁ ପି.ଏମ୍.ଏକାଡ଼େମୀ ଆଡ଼କୁ ଯିବାର ପ୍ରଧାନ ରାସ୍ତାର ବାଁ ପଟେ କେତେକ ଦୋକାନ ଥିଲା । ସେ ସବୁ ଇମିତି କିଛି ବଡ଼ ଦୋକାନ ନଥିଲା । ଅଧିକାଂଶ ମନୋହରୀ ଜିନିଷର ଦୋକାନ, ଲୁଗା ଦୋକାନ, ପାନ, ଗୁଡ଼ାଖୁ ଦୋକାନ । ଏଇ ଦୋକାନମାନଙ୍କ ଭିତରୁ ମୋର ଟେନିସ୍ ବଲ୍ କିଣା ହବା କଥା ପୂର୍ବରେ ବର୍ଣ୍ଣନା କରିଛି । ମୋର ବେଶି ଲୋଭନୀୟ ଦୋକାନ ଥିଲା, ଯେଉଁଠି ପିପରମେଣ୍ଟ ମିଠେଇ ଆଉ ଖେଳନା ବିକ୍ରି ହଉଥିଲା । ସେତେବେଳେ ବକ୍ସିବଜାର ପୋଷ୍ଟ୍ ଅଫିସ ଅତି ଛୋଟ ଥିଲା ।

ସ୍କୁଲରେ ବେଶି ମନ ଲାଗିବାର କାରଣ ହଉଛି, ଖେଳଛୁଟି । ଖେଳଛୁଟିଟ ଅତି ଆନନ୍ଦର ବେଳ । କେତେ ପିଲାଙ୍କର କେତେ ରକମର ଖେଳ । ଏଇ ଖେଳଛୁଟିରେ ପ୍ରଥମେ ଦେଖିଲି football । ମୁଁ ଯେଉଁ ଟେନିସ୍ ବଲ୍ ଖେଳୁଥିଲି, ଏତ ଆକୃତିରେ ତା'ର ଅଜା ପରି । କେଡ଼େ ବଡ଼ ! କେତେ ଓଜନ ! ଖେଳ ଛୁଟିରେ ପଡ଼ିଆରେ ଯାକୁ ନେଇ ପିଲାଏ ଖେଳିଲା ବେଳେ ମୁଁ ଏବଂ ମୋର ସହପାଠୀମାନେ ଠିଆ ହୋଇ ଦେଖୁ । କେବେ କେବେ ବଲ୍ ବାହାରକୁ ଚାଲି ଗଲେ, ତାକୁ ଦୂରରୁ ଗୋଟେଇ ଆଣି ଦବା ଭାରି ଆନନ୍ଦ ଲାଗେ । ବେଳେବେଳେ ଗୋଡ଼ରେ ମାଇଲେ ପଥର ଭଳି ଲାଗେ ।

କେତେକ ପିଲା ନଦାଖାଇ ଫଳ, ଆତ ନେଇ ବଲ୍ ପରି ଗୋଡ଼ରେ ଖେଳିବାରେ ଲାଗିଥାନ୍ତି । ସ୍କୁଲରେ

ପଢ଼ିବା ଅବଧାନଙ୍କ ଆଗେ ଚାଟଶାଳିରେ ପଢ଼ିବାଠାରୁ ଢେର୍ ଭଲ। ଏଠି ଦୋଷ କଲେ କି ପଢ଼ା ନକଲେ, ବେଞ୍ଚ ଉପରେ ଠିଆ ହବ କିମ୍ବା ଚଟାଣରେ ଆଣ୍ଠେଇବ କିମ୍ବା କାନ ମୋଡ଼ାଟା ହବ। ଏଠି ବେତମାଡ଼ କମ୍ ତଥାପି ଜଣେ ଜଣେ ସାର୍ ବେତ ଧରି ଆସିଥାନ୍ତି। ଯଦି ବେତ ନ ଆଣିଥାନ୍ତି ଦରକାର ପଡ଼ିଲେ ଛାଟ ଭଙ୍ଗା ହେଇ ଆସେ, ମାଡ଼ ହୁଏ। ସେ ଯେତେ ଯା ହଉ ମଝିରେ ମଝିରେ ମା'ଙ୍କ କଥା ମନେ ପଡ଼ିଲେ ଆଉ କିଛି ଭଲ ଲାଗେ ନାହିଁ। ବାବାଙ୍କୁ କହେ ମୁଁ ମା ପାଖକୁ ଯିବି। ବାବା ମୋର କଥା ଶୁଣି କେତେ ପ୍ରକାରେ ମୋର ମନକୁ ଭୁଲେଇବାକୁ ଚେଷ୍ଟା କରନ୍ତି। ବେଳେବେଳେ ମୋର ଯେଉଁଦିନ ସ୍କୁଲ ଛୁଟିଥାଏ ଅଥଚ ବାବାଙ୍କର ଅଫିସ୍ ଛୁଟି ନଥାଏ, ସେଦିନ ବାବା ମୋତେ ସାଙ୍ଗରେ ଯୋବ୍ରା ୱାର୍କସପ୍‌କୁ ନେଇଯାନ୍ତି। ସେଠି ବାବା ମୋତେ ଟେଲିଫୋନ୍‌ରେ କେମିତି କଥାବାର୍ତ୍ତା କରିବାକୁ ହୁଏ, ଦେଖେଇ ଦିଅନ୍ତି। ବାବା ପ୍ରଥମେ ଟେଲିଫୋନ୍‌ରେ ଜଣକୁ ଡ଼ାକନ୍ତି, ତାକୁ କହନ୍ତି ମୋର ପୁଅ ଟିକିଏ ଟେଲିଫୋନ୍‌ରେ କଥା କେମିତି କୁହାଯାଏ ଶୁଣିବାକୁ ଚାହେଁ ଆପଣ ଟେଲିଫୋନ୍‌ରେ ତା' ସହିତରେ କଥାବାର୍ତ୍ତା କରନ୍ତୁ।

ବାବା ମୋତେ ଟେଲିଫୋନ୍ ପାଖକୁ ଟେକି ଧରନ୍ତି କାରଣ ଟେଲିଫୋନ୍ କାନ୍ଥରେ ଲଗା ହେଇଥାଏ। ମୁଁ ଟେଲିଫୋନ୍‌ରେ କାନ ଦେଇ ଶୁଣେ, ଜଣେ କିଏ ତା'ଭିତରୁ ପଚାରୁଛି ତୁମର ନାଁ କ'ଣ? ତୁମେ କୋଉ କ୍ଲାସରେ ପଢୁଛ? ମୁଁ କିଛି ନ କହିଲେ ବାବା ମୋତେ କହନ୍ତି କହ ନାଁ କହ, କୋଉ କ୍ଲାସରେ ପଢୁଛୁ କହ। ମୁଁ ନାଁ କହେ, କୋଉ କ୍ଲାସ୍‌ରେ ପଢୁଛି କହେ ପୁଣି ସେହି ଟେଲିଫୋନ୍‌ରେ ଗୀତ ଶୁଣେ। ମୋତେ ଭାରି ଖୁସି ଲାଗେ, ଆଶ୍ଚର୍ଯ୍ୟ ହୁଏ। ବାବା ଦିନେ ଦିନେ ମୋତେ ଯୋବ୍ରା ୱାର୍କସପ୍ ଦେଖେଇବାକୁ ନିଅନ୍ତି। କିମିତି ଲୁହା କଟା ହଉଛି? ଲୁହା କଣା କରା ହଉଛି? ସେର, ଅଧସେର, ପା, ଅଧପା ଲୁହାରେ କିମିତି ତିଆରି ହଉଛି? ଲୁହା କିମିତି ଆଉଟା ହେଇ ତରଳ କରା ହଉଛି? ମୋତେ ଭାରି ଆଶ୍ଚର୍ଯ୍ୟ ଲାଗେ ସେ ସବୁ ଦେଖି। ଯୋବ୍ରା ୱାର୍କସପ୍‌ର ଉପରେ ଯେଉଁ ବଡ଼ ଘଡ଼ି ଅଛି, ସେ କିମିତି ଚାଲୁଛି? ବେଳେବେଳେ ଯୋବ୍ରା ୱାର୍କସପ୍‌ର ଷ୍ଟୋର୍ ଖୋଲା ହେଲେ ବାବାଙ୍କ ସଙ୍ଗେ ଷ୍ଟୋର୍ ଭିତରେ ଯାଇ ବୁଲେ। ବୁଲୁ ବୁଲୁ ଚକ୍‌ଖଡ଼ିରୁ କେତେ ଖଣ୍ଡ ପକେଟ୍‌ରେ ପକେଇଥାଏ। ଷ୍ଟୋର୍ ବନ୍ଦ ହେଇ ଆମେ ବାହାରିଲା ବେଳକୁ, ବାବା ମୋର ପକେଟ୍ ଉଣ୍ଡାଳି ଦେଖନ୍ତି, ମୁଁ କେତେ ଖଣ୍ଡ ଚକ୍‌ଖଡ଼ି ପକେଟ୍‌ରେ ପୁରେଇଛି। ବାବା, ମୋର ପକେଟ୍‌ରୁ କାଢ଼ି ନେଇ ଯେଉଁଥିରେ ଚକ୍‌ଖଡ଼ି ସବୁ ଥାଏ, ସେଇଥିରେ ପକେଇ ଦିଅନ୍ତି।

ବେଳେବେଳେ ଟାଇପ୍ ମେସିନ୍‌ରେ ବାବା ମୋର ନାଁ ଟାଇପ୍ କରି ଦେଖେଇ ଦିଅନ୍ତି। ତା'ପରେ ମୁଁ ନିଜେ ନିଜେ ଟାଇପ୍ ମେସିନ୍‌ରେ କାଗଜ ପୁରେଇ ମନକୁ ଯା ଆସେ ଗୁରାଏ ଏଣୁତେଣୁ ଅକ୍ଷରଗୁରାକ ବାଡ଼ଉଥାଏ। ଦିନେ ଦିନେ ବାବା ଅଫିସ୍‌ରେ କାମ କରୁଥିଲା ବେଳେ ମୁଁ ମନ ଇଚ୍ଛା ଯୋବ୍ରା ୱାର୍କସପ୍ ଭିତରେ ବୁଲୁଥାଏ କିନ୍ତୁ ବାବା ସର୍ତ୍ତକ ଥାନ୍ତି କାଳେ ମୁଁ ନଈ ଆଡ଼କୁ ଚାଲି ଯାଏ କିମ୍ବା କୌଣସି ଜିନିଷରେ ହାତ ଦିଏ।

ଦିନେ ବାବାଙ୍କ ପାଖରେ ମୁଁ ଠିଆ ହେଇଛି, ବାବାଙ୍କ ହାକିମ ଯୋବ୍ରା ୱାର୍କସପ୍‌ର executive engineer ପଶି ଆସିଲେ। ସେ ଜଣେ European ଲୋକ, ବିରାଟ ମଣିଷ, ନାଁ A.E. Marchent, ବଡ଼ ବଡ଼ ନିଶ ରଖିଥାନ୍ତି। ମୋତେ ଦେଖି ବାବାଙ୍କୁ ପଚାରିଲେ Who is he? ବାବା ଇଂରାଜୀରେ ଉତ୍ତର ଦେଲେ, ମୋର ପୁଅ। ତା'ପରେ ସେ ମୋତେ ପଚାରିଲେ What is your name? ମୁଁ ତାଙ୍କୁ ଦେଖି ଛାନିଆ ହେଇ ବାବାଙ୍କ ଚୌକୀକୁ ଲାଗି ଠିଆ ହେଇଥାଏ। ତାଙ୍କ କଥା କିଛି ବୁଝି ପାରୁ ନଥାଏ। ବାବା କହିଲେ କହ ନାଁ କହ। ମୁଁ କହିଲି, ଶ୍ରୀ ପୁଳିନ ବିହାରୀ ରାୟ। ତା'ପରେ ସେ ପଚାରିଲେ What is Sree? ବାବା ତାଙ୍କୁ ବୁଝେଇ ଦେଲେ। ତା'ପରେ ସେ ଚାଲିଗଲେ। ସେଇଠି ପ୍ରଥମେ ମୁଁ ଗୋରା ଲୋକ ଦେଖିଲି। ଖାଣ୍ଟି European ଲୋକ। ସେ ରହୁଥିଲେ ରାଣୀହାଟର Winford House ରେ। ସେ କୋଠା ତାଙ୍କର ନିଜର ଥିଲା। ତାକୁ ମାର୍ଚେଣ୍ଟ ସାହେବ ବୋଲି ସମସ୍ତେ ଡ଼ାକୁଥିଲେ।

ବାବାଙ୍କଠାରୁ ପରେ ଶୁଣିଥିଲି ସେ ଭାରି ଭଲ ମଣିଷ ଥିଲେ । କିନ୍ତୁ ଅତ୍ୟଧିକ କୃପଣ ପ୍ରକୃତିର ଲୋକ । ତାଙ୍କର ସ୍ତ୍ରୀ ଅତ୍ୟଧିକ ଖର୍ଚ୍ଚୀ ଥିଲେ । ଏଥିଯୋଗୁଁ ସ୍ୱାମୀ, ସ୍ତ୍ରୀ ଉଭୟଙ୍କ ମଧ୍ୟରେ ବେଳେ ବେଳେ ମନୋମାଳିନ୍ୟ ଘଟୁଥିଲା । ବାବା ଅନେକ ସମୟରେ ଯାଇ ତାଙ୍କର କଳିକଜିଆର ମୀମାଂସା କରି ଆସୁଥିଲେ । ବାବାଙ୍କ ମତରେ ସ୍ତ୍ରୀ ପ୍ରକୃତରେ ସ୍ୱାମୀ ଅପେକ୍ଷା ଭଲ ମଣିଷ ଥିଲେ ।

ଦିନେ ଦିନେ ବାବା ଅଫିସରେ କାମ କରୁଥିବା ବେଳେ ମୁଁ ମନ ଇଚ୍ଛା ଏଣେ ତେଣେ ବୁଲୁ ବୁଲୁ ଥରେ ଥରେ ଯାଇ ଯୋବ୍ରା ୱାର୍କସପ୍‌ର ସାମନାରେ ଯେଉଁ ଖୁଣ୍ଟ ଅଛି ତାକୁ ଅନାଏ, ଆଶ୍ଚର୍ଯ୍ୟ ହୁଏ । କେଡ଼େ ଉଚ୍ଚା ! ଆମେ ମହାନଦୀରେ ଗାଁକୁ ଗଲା ଆସିଲା ବେଳେ ଏଇ ଖୁଣ୍ଟଟା ଅନେକ ଦୂରକୁ ଦେଖାଯାଏ । ଏ ଗୋଟାଏ ଚିମନି । ଏଇ ଚିମନି ବାଟେ ଯୋବ୍ରା ୱାର୍କସପ୍‌ର କଳ କାରଖାନାର ଧୂଆଁ ଉପରକୁ ଯାଉଥିଲା । ପରେ ଏ ଆଉ ଚିମନିର କାର୍ଯ୍ୟ କରୁ ନଥିଲା । ଖାଲି ଠିଆ ହୋଇଥାଏ । ଯାକୁ ଲୋକେ ଯୋବ୍ରା ଖୁଣ୍ଟ ବୋଲି କହୁଥିଲେ ।

ଦିନେ ଦିନେ ବାବାଙ୍କ ଅଫିସ୍ କାମ ସରିବା ପରେ ବାବା ମୋତେ ସାଙ୍ଗରେ ନେଇ ନଈ କୂଳକୁ ବୁଲିବାକୁ ଯାଉଥିଲେ । ବେଳେବେଳେ ଷ୍ଟିମର୍ ଘାଟକୁ ନେଇ ଯାଉଥିଲେ, ସେଠି ଆମେ ଅପେକ୍ଷା କରୁଥିଲୁ, ଆମ ଗାଁ ଆଡ଼ୁ ଷ୍ଟିମର୍ ଆସି ପହଁଚିଲେ, ଗାଁର ଲୋକ କେହି ଆସିଥିଲେ ଦେଖାହୁଏ । ନଚେତ୍ ନାହିଁ । ଆମ ଗାଁ ଆଡ଼ୁ ଷ୍ଟିମର୍ ଆସିବାର ଦେଖିଲେ ମୋତେ ଭାରି ଖୁସି ଲାଗେ । ଷ୍ଟିମର୍ ଘାଟରେ ଆସି ପହଁଚିଲେ ଲୋକେ ଓହ୍ଲାନ୍ତି । ଭାରି ଗହଳି ହୁଏ । ଆଗରୁ କୁଲି, ଏକ ବଳଦିଆ ଗାଡ଼ି, ଦି'ବଳଦିଆ ଶଗଡ଼ ବଗି ଠିଆ ହୋଇଥାଏ । ଲୋକେ ଯେ ଯୁଆଡ଼େ ଗଲେ, ବାବା, ମୁଁ ଫେରି ଆସୁ ଆଉ ଦିନେ ଦିନେ ବାବା ମୋତେ ଆନିକଟ ଆଡ଼କୁ ବୁଲେଇବାକୁ ନେଇ ଯାନ୍ତି । ଆନିକଟ କାହିଁକି ତିଆରି ହୋଇଛି ? ଯା ଦ୍ୱାରା କ'ଣ ଉପକାର ହଉଛି ? ସବୁ ବୁଝାନ୍ତି । ମୁଁ ସବୁ ଶୁଣିଲେ ମଧ୍ୟ ପାଣି ପଡ଼ିବାର ଦେଖି ଆନନ୍ଦରେ ସବୁ ଭୁଲି ଯାଏ । ମୁଁ ମଝିରେ ମଝିରେ ଗୋଡ଼ି ଗୋଟେଇ ପାଣିକୁ ପକାଏ ।

ଆମେ ବୁଲି ସାରି ଘରକୁ ଫେରୁ । ଫେରିବାର ବାଟ ହେଲା ଆନିକଟ୍‌ରୁ ଫେରି ଯୋବ୍ରା ୱାର୍କସପ୍‌ର ହତା ଭିତର ଦେଇ ଯେଉଁଠି ଏବେ ଇଞ୍ଜିନିୟରିଂ ସ୍କୁଲ ଏବଂ କାରଖାନା ହୋଇଛି, ସେଠି ଅନେକ ଗୁରାଏ ବଡ଼ ବଡ଼ ବାଉଁଶ ବୁଦା ଥିଲା, ବଖରାଏ ପକ୍କା ଘର କି ଚାଳ ଘରର ନାଁ ଗନ୍ଧ ନଥିଲା । ସେଇ ବାଉଁଶ ବୁଦା ମୂଳେ ମୂଳେ ବଙ୍କେଇ ବଙ୍କେଇ ଧୂଳି ମାଟି ରାସ୍ତାରେ ଆସି, ଯୋବ୍ରା ୱାର୍କସପ୍‌ରୁ ମଙ୍ଗଳାବାଗ ଆଡ଼କୁ ଯେଉଁ ରାସ୍ତା ଯାଇଛି, ସେଇ ରାସ୍ତାରେ ଉଠି ଥୋରିଆସାହିକୁ ଆସୁ । ବାଟରେ ଆସିଲାବେଳେ ରାସ୍ତାର ଡ଼ାଆଁଣ ପଟେ ପୁରୁଣା ଅମଳର କଲେକ୍ଟର୍ ସାହେବଙ୍କ ଦୋତାଲା ବଡ଼ କୋଠା ବାବା ଚିହ୍ନେଇ ଦିଅନ୍ତି । ଯେଉଁ କୋଠାରେ ପରେ କିଛି ବର୍ଷ ପାଇଁ ୟୁନିଭର୍‌ସିଟି ଅଫିସ୍ ହୋଇଥିଲା, ପ୍ରକାଣ୍ଡ କୋଠା ! ବ୍ରିଟିଶ ଅମଳର ତିଆରି ।

ଘରେ ଆସି ପହଁଚିଲେ ବାବା ନିତ୍ୟକର୍ମ ସାରି ସନ୍ଧ୍ୟା ପରେ ମୋତେ ନେଇ ପଢ଼େଇବାକୁ ଆରମ୍ଭ କରନ୍ତି । ବାବା ତଳେ ମଶିଣା, ତକିଆ ପକେଇ ଶୁଅନ୍ତି, ମୁଁ ପାଖରେ ବସି ପଢ଼େ । ପଢ଼ିବା ମୋତେ ଭାରି ବିରକ୍ତ ଲାଗେ । ସେତେବେଳେ ମନ ହୁଏ ମା'ଙ୍କ ପାଖକୁ କିମିତି ପଳେଇବି । ରାତିରେ ବାବାଙ୍କ ସାଙ୍ଗରେ ଖାଇ ବସିବା ବେଳେ ମୁଁ କହେ ମା ପାଖକୁ ଯିବି ।

ଇମିତି କେତେଥର କହିବା ପରେ ଦିନେ ବାବାଙ୍କୁ କହିଲି ମୋତେ ଯଦି ମା'ଙ୍କ ପାଖକୁ ନ ପଠେଇବ ମୁଁ କୂଅକୁ ଡ଼େଇଁ ପଡ଼ିବି । ବାବା ଏକଥା ଶୁଣି ଭାରି ଭୟ କଲେ ଏବଂ ମୋ ଉପରେ ମନେ ମନେ ବିରକ୍ତ ହେଲେ କିନ୍ତୁ ପ୍ରକାଶ୍ୟରେ କିଛି କହିଲେ ନାହିଁ । ବାବା କିଛିଦିନ ଯାଏ ମୋ ଉପରେ ସର୍ତକତାର ସହିତ ନଜର ରଖିଲେ କାଳେ ମୁଁ ସତେ ସତେ କୂଅକୁ ଡ଼େଇଁ ପଡ଼ିବି । ସ୍କୁଲକୁ ଗଲେ, ଖେଳିଲେ, ବୁଲିଲେ ମା'ଙ୍କ କଥା କେତେକାଂଶରେ ଭୁଲି ଯାଏ । ରାତି ହେଲେ, ପାଠ ପଢ଼ା ଆରମ୍ଭ ହେଲେ, ପୁଣି ମା'ଙ୍କ କଥା ପନେ ପଡ଼େ ।

ଦିନେ ବାବା ଅଫିସ୍ ଚଞ୍ଚଳ ଫେରି ଆସି ମୋତେ କହିଲେ, 'ଆ ଗୋଟାଏ ଜାଗାକୁ ଯିବା ।' ବାବା ନିତ୍ୟକର୍ମ ସାରି, ମୋତେ ସାଙ୍ଗରେ ନେଇ ବାହାରିଲେ । ଆମେ ଗଲୁ ବାଲୁବଜାର, 'ବିନୋଦ ବିହାରୀ'କୁ । ସେତେବେଳେ ବଙ୍ଗ ଦେଶରୁ କୁଳଦା ରଞ୍ଜନ ରାୟ କଟକ ଆସିଥାନ୍ତି । ତାଙ୍କର ବକ୍ତୃତା ଶୁଣିବା ପାଇଁ ବାବା ମୋତେ ବାଟରେ ଗୋଟାଏ ଗୁଡ଼ିଆ ଦୋକାନରେ ଜଳଖିଆ ଖୋଇ ନେଲେ । କିନ୍ତୁ ସେ ଜଳଖିଆ ଖାଇଲେ ନାହିଁ । ପରେ ଦେଖିଛି ବାବା ନିଜେ କେଭେ ଗୁଡ଼ିଆ ଦୋକାନରେ ବସି ଜଳଖିଆ କରିବାକୁ ଭଲ ପାନ୍ତି ନାହିଁ । ସେଥର ଆମେ ଯାଇ ବିନୋଦବିହାରୀରେ ଯେଉଁଠି ଦୁର୍ଗାମଣ୍ଡପ ଅଛି, ସେହି ଅଗଣାରେ ପରା ହୋଇଥିବା ଖଣ୍ଡେ କେର୍‌ପାଲ୍ ଉପରେ ବସିଲୁ । ଅନେକ ଲୋକ ଆଗରୁ ଆସି ବସିଥାନ୍ତି ବକ୍ତୃତା ଶୁଣିବା ପାଇଁ । ମୁଁ ଆଗରୁ ବିନୋଦବିହାରୀ ଦେଖିଥିଲି । କାରଣ କାଳୀ ଦେଖିବା ପାଇଁ ବାବା, ମା ଓ ମୁଁ ଅନେକବାର ବଗି ଗାଡ଼ିରେ ଆସିଛୁ । ସେହି ବିନୋଦବିହାରୀ ଦୁର୍ଗାମଣ୍ଡପ ଅଗଣା, ଯେଉଁଠି କୁଳଦା ରଞ୍ଜନ ରାୟ ବକ୍ତୃତା ଦେବେ ସେଠି ତାଙ୍କ ପାଇଁ ଟେବୁଲ୍, ଚେୟାର ପଡ଼ିଥାଏ । ପ୍ରଥମେ ବକ୍ତୃତା ଆରମ୍ଭ ହବା ପୂର୍ବରୁ ତାଙ୍କ ସାଥିରେ ଆସିଥିବା ଦଳେ ଲୋକ ନଦୀୟା କୀର୍ତ୍ତନ ଆରମ୍ଭ କଲେ । ମୁଁ କୀର୍ତ୍ତନର କିଛି ନ ବୁଝିଲେ ମଧ୍ୟ ତା'ର ଧ୍ୱନି, ସ୍ୱର ଶୁଣି ମୋ ମନରେ ଗୋଟାଏ କିମିତି ଦୁଃଖ ଜାତ ହେଲା । ମା'ଙ୍କ କଥା ମନେ ପଡ଼ିଲା । ଖାଲି କାନ୍ଦ କାନ୍ଦ ହେଲି କିନ୍ତୁ ପ୍ରକାଶ୍ୟରେ କାନ୍ଦି ନାହିଁ । ଖାଲି ମନେ ପଡ଼ିଲା ମା କ'ଣ କରୁଥିବେ ? ମା'ଙ୍କ ସଙ୍ଗେ ବୋଧେ ଆଉ ଦେଖା ହେବ ନାହିଁ ।

କୀର୍ତ୍ତନ ବନ୍ଦ ହେଲା । କୁଳଦା ରଞ୍ଜନ ରାୟ ଠିଆ ହେଇ ବକ୍ତୃତା ଦବାକୁ ଆରମ୍ଭ କଲେ । ମୁଁ କିଛି ବୁଝି ପାରିଲି ନାହିଁ କେବଳ ରାଧା କୃଷ୍ଣଙ୍କ ନାଁ ବୁଝି ପାରିଲି ଆଉ କିଛି ବୁଝି ପାରିଲି ନାହିଁ । ବାବା ଏବଂ ଅନ୍ୟ ଲୋକମାନେ ତନ୍ମୟ ହେଇ ଶୁଣୁଥାନ୍ତି । ମୋର ମନ ହଉଥାଏ ଘରକୁ ପଳେଇ ଆସିବି । ମୁଁ ଭାବିଥିଲି ବାବା ମୋତେ ଆଉ କିଛି ନୂଆ ଜିନିଷ ଦେଖେଇବାକୁ ନଉଛନ୍ତି । ସର୍କସ ହେଇଥିଲେ ସବୁଠାରୁ ଭଲ ଲାଗିଥାନ୍ତା । ଘରକୁ ଯିବାକୁ ମନ ହେଲେ ବାବାଙ୍କୁ କହୁଛି କିମିତି ? ବାଧ ହେଇ ବସି ରହେ । କୁଳଦା ରଞ୍ଜନ ରାୟଙ୍କ ବକ୍ତୃତା ଶେଷରେ ପୁଣି କୀର୍ତ୍ତନ ହୁଏ । କୀର୍ତ୍ତନ ଶେଷରେ ବାତସା (ଚିନିରେ ତିଆରି) ଲୋକମାନଙ୍କ ଆଡ଼କୁ ଗୋଟିଏ ଥାଳିରୁ ଫୋପଡ଼ା ହୁଏ । ସେ ବାତସା ଯେ ପାନ୍ତି, ଖାନ୍ତି ।

ଇମିତି କୁଳଦା ରଞ୍ଜନ ରାୟଙ୍କ ବକ୍ତୃତା ଶୁଣିବା ପାଇଁ ବାବା ମୋତେ ଆଉ ଥରେ ଦରଘାବଜାରର ଗଣେଶ ଚନ୍ଦ୍ର ଚନ୍ଦଙ୍କ ଘରକୁ ନେଇଥିଲେ । ପୁଣି ଥରେ ବକ୍ସିବଜାରରେ ବଳିଭଗତଙ୍କ କୋଠା ଯେଉଁଠି ପରେ କେତେ ବର୍ଷ ପାଇଁ ସରକାରୀ ଛାପାଖାନା ହେଇଥିଲା, ସେଠିକି ମଧ୍ୟ ନେଇ ଯାଇଥିଲେ । ସେହି ଲୋକ ସମାଗମ, କୀର୍ତ୍ତନ, ବକ୍ତୃତା ପରେ ବାତ୍‌ସା ବିତରଣ । ମୁଁ କେତେଥର ଗଲା ପରେ ବାବାଙ୍କଠାରୁ ବୁଝିଲି ଯେ ଧର୍ମ ସମ୍ବନ୍ଧରେ ବକ୍ତୃତା ଦିଆ ହଉଛି, ଧର୍ମ କ'ଣ ବୁଝି ନଥାଏ ତଥାପି ବାବା ସାଙ୍ଗରେ ନେଇଯାନ୍ତି ।

ବାବା ମୋତେ ଏ ଧର୍ମ ସମ୍ବନ୍ଧୀୟ ସଭାକୁ ସାଙ୍ଗରେ ଆଣିବାର ଦେଖି ବାବାଙ୍କୁ ତାଙ୍କର ସମବୟସ୍କ ଲୋକମାନେ ମୋତେ ଦେଖେଇ ବାବାଙ୍କୁ ପଚାରିଛନ୍ତି, ଯାକୁ କାହିଁକି ସାଙ୍ଗରେ ଆଣିଛନ୍ତି ? ଏ କ'ଣ ବୁଝିବ ? ବାବା ଉତ୍ତରରେ କହିବାର ମୁଁ ଶୁଣିଛି, ସେ କିଛି ନବୁଝୁ, ସେ କୀର୍ତ୍ତନ ଶୁଣୁ, ବକ୍ତୃତାରୁ ତା କାନରେ କେତେଟା ଶବ୍ଦ ବାଜୁ, ଶୁଣିବା ଦ୍ୱାରା ତା'ର mental impression ତ ହବ ।

ଆଉଥରେ କୁଳଦା ରଞ୍ଜନ ରାୟ ଥୋରିଆ ସାହି ନିକଟ ବଢ଼େଇସାହିର ବାସ୍ତରୀ ମଠରେ ବକ୍ତୃତା ଦେଇଥିଲେ । ବାବା ସେଥର ମଧ୍ୟ ମୋତେ ସାଙ୍ଗରେ ନେଇ ଯାଇଥିଲେ । ସେତେବେଳକୁ କୁଳଦା ରଞ୍ଜନ ରାୟଙ୍କ ବକ୍ତୃତା ଶୁଣିବା ପାଇଁ ମୋର ଟିକିଏ ଆଗ୍ରହ ଜନ୍ମିଲାଣି । କିଛି ନ ବୁଝେ, କୁଳଦା ରଞ୍ଜନ ରାୟଙ୍କ ବକ୍ତୃତା ଦବାର ଭଙ୍ଗୀ, ଗୀତ ଗାଇବାର ଭଙ୍ଗୀ ଏବଂ ତାଙ୍କର ଗୀତ ଗାଇବାର ସଙ୍ଗେ ସଙ୍ଗେ କୀର୍ତ୍ତନ ମୋର ବଡ଼ ଆଗ୍ରହ ସୃଷ୍ଟି କଲା । ସେ ବଙ୍ଗଳା ଭାଷାରେ ବକ୍ତୃତା ଦଉଥିଲେ । ମୁଁ ଥରେ ଅଛ ବୁଝି ପାରିଲି ଯେ କୃଷ୍ଣ ବଂଶୀ

ବାଦନ କରୁଛନ୍ତି ଆଉ ଗୋପୀମାନେ ତାଙ୍କୁ ଘେରି ନୃତ୍ୟ କରୁଛନ୍ତି । ଆଉ ସେତକି ବେଳେ କୁଳଦା ରଞ୍ଜନ ରାୟଙ୍କ ସାଥିର କୀର୍ତ୍ତନ ଦଳ ତାଳେ ତାଳେ କୀର୍ତ୍ତନ ଆରମ୍ଭ କରିଦେଲେ । ମୋତେ ଭାରି ଚମତ୍କାର ଲାଗିଲା । ଅନ୍ତରରେ କିମିତି ଗୋଟାଏ ଆକସ୍ମିକ ଆନନ୍ଦ ଅନୁଭବ କଲି । ସେଇ ବଡ଼େଇ ସାହି ବାସ୍ତରୀ ମଠରେ ବକ୍ତୃତା ପରେ ଆଉ କୁଳଦା ରଞ୍ଜନ ରାୟଙ୍କ ବକ୍ତୃତା ଶୁଣି ନାହିଁ ।

ଏଣେ ସ୍କୁଲକୁ ଯିବା ଆସିବାରେ ବେଶ୍ ମନ ଲାଗି ଯାଇଥାଏ । ଚାଟଶାଳିକୁ ଯିବା ଯେମିତି ବିରକ୍ତ ଲାଗୁଥିଲା ଏଠି ସେମିତି ନାହିଁ । ଖେଳ ଏଠି ପ୍ରଧାନ ଆକର୍ଷଣ । ତା'ଛଡ଼ା ସାଙ୍ଗସାଥୀ ମଧ ବେଶ୍ ଯୁଟିଗଲେ ।

ସ୍କୁଲରେ ଥରେ ପରୀକ୍ଷା ଆରମ୍ଭ ହେଲା । ତଳ କ୍ଲାସଠାରୁ ଉପର କ୍ଲାସ ଯାଏ ସମସ୍ତଙ୍କର ପରୀକ୍ଷା । ମୁଁ ପରୀକ୍ଷା କ'ଣ ବୁଝି ପାରୁ ନଥାଏ । ଆମର ପରୀକ୍ଷା ହେଲା ସବୁ ବିଷୟ ମୌଖିକ, କେବଳ ଅଙ୍କକୁ ଛାଡ଼ି ଇଂରାଜୀରେ ମୌଖିକ ପରୀକ୍ଷା କ୍ଲାସରେ ହେଲା । ଯେଉଁ ସାର୍ ଇଂରାଜୀ ପଢ଼ଉଥିଲେ ସେଇ ପରୀକ୍ଷା କଲେ । ଅଙ୍କ ପରୀକ୍ଷାରେ ଅଙ୍କ ଦିଆ ହେଲା । ଖାତାରେ ଅଙ୍କ କଷି ଦବାକୁ ହବ । କ'ଣ ଗୁରାଏ ଗାରେଇଲି ଏଣୁ ତେଣୁ । ଖାତାକୁ ସବୁ ପିଲାଏ ସାର୍‌ଙ୍କୁ ଦେଲେ । ମୁଁ ମଧ ଖାତା ଫୋପାଡ଼ି ଦେଇ ଆସିଲି । ଓଡ଼ିଆ ସାହିତ୍ୟ ପରୀକ୍ଷା ମୌଖିକ ହେଲା । ମୁଁ ପଡ଼ିଆରେ ଖେଳୁଥିଲି, ଜଣେ ସାଙ୍ଗ ପିଲା କହିଲା, ତୋତେ ସାର୍ ଡ଼ାକୁଛନ୍ତି, ଯା ପରୀକ୍ଷା ଦବୁ ।

ଖେଳି ଖେଳି ଦେହରୁ ଝାଳ ବୋହି ଯାଉଥାଏ । ଯାଇ ସାର୍‌ଙ୍କ ଆଗେ ଠିଆ ହେଇଗଲି । ସାର୍ ହେଲେ ପି.ଏମ୍.ଏକାଡ଼େମୀର ସଂସ୍କୃତ ଶିକ୍ଷକ "ଭୋଳି ପଣ୍ଡିତେ" । ଭୋଳି ପଣ୍ଡିତେ ବହୁକାଳ ପି.ଏମ୍.ଏକାଡ଼େମୀରେ ଚାକିରୀ କରିଥିଲେ । ମୁଁ ଯାଇ ତାଙ୍କ ସାମନାରେ ଠିଆ ହେଇଗଲାରୁ ଭୋଳି ପଣ୍ଡିତେ ଆମର ପାଠ୍ୟ ପୁସ୍ତକ ମଧୁରାଓଙ୍କ "ସାହିତ୍ୟ କୁସୁମ"ରୁ ଯା ପ୍ରଶ୍ନ କରୁଥାନ୍ତି କହି ପାରୁ ନଥାଏ । ଶେଷରେ ମନେ ଅଛି ମୋତେ ପଚାରିଲେ "ତୁମୁଳ" ମାନେ କ'ଣ କହ ? ମୁଁ ଉତ୍ତରରେ କହିଲି ତୁମୁଳ ମାନେ "ସଂଗ୍ରାମ" । ଭୋଳି ପଣ୍ଡିତେ ମୋ ଉପରେ ବିରକ୍ତ ହେଇ ମୋର କାନ ମୋଡ଼ି ଗୋଟାଏ ଚାପୁଡ଼ା ପକେଇ କହିଲେ, ଯା ବାହାର । ମୁଁ କାନ ମୋଡ଼ା, ଚାପୁଡ଼ାଟାଏ ଯେ ଖାଇଲି, ତା' ପ୍ରତି ଖାତିର ନାହିଁ । ମୁଁ ପଳେଇ ଆସି ପୁଣି ଖେଳରେ ଲାଗିଗଲି । କିଛିଦିନ ପରେ ଅଙ୍କ ଖାତା ମିଳିଲା । ମୁଁ ଦେଖିଲି ଅଙ୍କ ଖାତା ଉପରେ ଗୋଟାଏ ଗୋଲାକାର ଚିହ୍ନ ପେନ୍‌ସିଲ୍‌ରେ ଲେଖା ହେଇଛି । ଏ ଯେ କାହିଁକି ଅଙ୍କା ହେଇଛି ମୁଁ ଜାଣେ ନାହିଁ ।

ଏ ଗୋଲାକାର ଚିହ୍ନ କ'ଣ ? କିଛି ବୁଝୁ ନଥାଏ । ଘରେ ଆସି ପହଁଚିଲାରୁ ବାବା ମୋ ହାତରେ ଖାତା ଦେଖି ପଚାରିଲେ କ'ଣ ? ସେ କି ଖାତା ? ମୁଁ କହିଲି ଅଙ୍କ ଖାତା, ଅଙ୍କ ପରୀକ୍ଷା ହେଇଥିଲା, ସେହି ଖାତା ଫେରେଇ ଦେଇଛନ୍ତି । ବାବା ପୁଣି ପଚାରିଲେ କ'ଣ zero(ଜିରୋ) ପାଇଥିବୁ । ସେ ପର୍ଯ୍ୟନ୍ତ zero ଶବ୍ଦ ଶୁଣି ନଥିଲି । Zero ଶବ୍ଦଟା କାନକୁ ଭାରି ଭଲ ଶୁଣାଗଲା, ଭାରି ଖୁସି ହେଇଗଲି । ହସିକି, ବାବା କହିଲେ, ଅଙ୍କରେ ଶୂନ ଗୋଳ ଆଲୁ, କିଛି ନମ୍ବର ରଖି ନାହୁଁ । ଯା ଅଙ୍କ ଦିଆ ହେଇଥିଲା କରିବାକୁ କିଛି କରି ପାରିଲୁ ନାହିଁ ।

ପରେ ବୁଝିଲି zero ଶବ୍ଦର ଅର୍ଥ ହେଉଛି ଶୂନ । କିଛିଦିନ ପରେ progress report ବାହାରିଲା । ସ୍କୁଲରେ ସାର୍ ମୋତେ ମୋର progress report ଖଣ୍ଡକ ଦେଲେ । ବାବାଙ୍କ ଠାରୁ ଦସ୍ତଖତ କରେଇ ଆଣିବାକୁ ହବ । ଘରେ ଆଣି ବାବାଙ୍କୁ ଦେଖେଇଲି । ବାବା ଦେଖିଲେ କେବଳ ଇଂରାଜୀରେ ଭଲ ନମ୍ବର ରଖିଛି ଆଉ କୋଉଥିରେ ଭଲ ନମ୍ବର ନାହିଁ । ମନ୍ତବ୍ୟ ଦିଆ ହେଇଛି 'He is very talkative' ଅର୍ଥାତ୍ ସେ ଭାରି ଗପୁଡି ।

ଗପ କରିବା ମୋର ପିଲାଦିନରୁ ଅଭ୍ୟାସ । ସତ, ମିଛ, ଯା ମନକୁ ଆସିଲା ଗୁରାଏ ଗପ କରେ । ମିଛ କଥାକୁ ପ୍ରକୃତ ସତ କଥା ଭଳି ସଜେଇ କହିବା ମୋର ଅଭ୍ୟାସ । ବେଳେ ବେଳେ ମିଛ କହୁଛି ବୋଲି ମଧ ଧରା ପଡ଼େ । ଏଣୁ ମୁଁ ଗାଲୁ ଗପ କରେ ବୋଲି ପିଲାଦିନେ ସମସ୍ତେ ଜାଣନ୍ତି । ମୋର ନିଜର ଜେଠା କୁଞ୍ଜ ବିହାରୀ ରାୟ ମୋର କୌଣସି କଥାକୁ ସତ ବୋଲି

ବିଶ୍ୱାସ କରନ୍ତି ନାହିଁ । ପ୍ରକୃତ ସତ କଥା କହିଲେ ମଧ ତାକୁ ମିଛ ବୋଲି ଭାବନ୍ତି । ଏଥି ଯୋଗୁଁ ମୋ ଉପରେ ବିରକ୍ତ ହୁଅନ୍ତି, ହସନ୍ତି, ଗାଳି ଦିଅନ୍ତି ମଧ ।

ମୋତେ ଘରେ ଟିଉସନ୍ କରିବା ପାଇଁ ବାବା ମାଷ୍ଟର ଖୋଜିଲେ । ମାଷ୍ଟର ଯେ ଯୁଟିଲେ, ସେମାନେ ଦେଖିବାକୁ ଚାଟଶାଳି ଅବଧାନଙ୍କ ପରି ନୁହନ୍ତି । ବେଶ ଧୋବ ଧାଉଳିଆ । ଏମାନଙ୍କୁ ଦେଖିଲେ ସେତେ ଭୟ ଲାଗିଲା ନାହିଁ । କିନ୍ତୁ ବିରକ୍ତ ଲାଗେ କାରଣ ଏମାନେ ପାଠ ପଢ଼େଇବାକୁ ଆସନ୍ତି । ଇମିତି ହୁଏ ଯେ, ମାଷ୍ଟର ଟିଉସନ୍ କରିବା ପାଇଁ ଆସି ମୋ ନାଁ ଧରି ଡ଼ାକି ଦେଲେ ମୋ ଦେହରୁ ଗୋଟାଏ ଝାଳ ବୋହି ଯାଏ । କାରଣ ମାଷ୍ଟର ଆସିଲେ ପାଠ ପଢ଼ିବାକୁ ହବ । ମୋର ଯେ ମାଷ୍ଟର କେତେ ଜଣ ଟିଉସନ୍ କରିବା ପାଇଁ ଯେ କେତେଦିନ ନିଯୁକ୍ତ ହେଇଥିଲେ, ମୋର ମନେହୁଏ ସେ କେତେଦିନ ତାଙ୍କୁ ଶନିସପ୍ତା କିମ୍ବା ଶନି ସାଢ଼େ ସାତର କେତେକାଂଶ ଭୋଗ ହଉଥିଲା । କାରଣ ମୋ ପରି ଏକ ଗଧକୁ ପାଠ ପଢ଼େଇବା, ବୁଝେଇବା, ମନେ ରଖେଇବା, ପାଠ ଆଦାୟ କରିବା ଏକ ବିଷମ ବ୍ୟାପାର । ମୁଁ ପୁଣି ପରୀକ୍ଷାରେ ଭଲ ନକଲେ, ମାଷ୍ଟରର ଦୁର୍ନାମ । କେତେକ ମାଷ୍ଟର ବିରକ୍ତ ହେଇ ଟିଉସନ୍ ଛାଡ଼ି ଚାଲି ଯାଇଛନ୍ତି, କେତେକ ମାସିକ ବେତନକୁ ଝଗି ପଢ଼େଇଛନ୍ତି । ମୋର ମନେ ଅଛି, ଜଣେ ମାଷ୍ଟର ମୋତେ ଟିଉସନ୍ କରୁଥାନ୍ତି । ସେ ସନ୍ଧ୍ୟା ବେଳକୁ ଆସି ଦୁଇ ଘଣ୍ଟା ପଢ଼େଇବାର କଥା । ମୁଁ ତ ଯେଉଁଦିନ ସ୍କୁଲକୁ ଶୀଘ୍ର ଆସେ, ସାହିର ସାଙ୍ଗ ପିଲାଙ୍କୁ ନେଇ ନଟୁ ଖେଳ ଜମିଯାଏ । ମା ମୋତେ କହନ୍ତି ଦି'ପହରେ ଟିକିଏ ଶୋଇପଡ଼ । ନଚେତ୍ ସନ୍ଧ୍ୟା ପରେ ମାଷ୍ଟରଙ୍କ ପାଖେ ପଢ଼ିବାକୁ ବସିଲେ ଢ଼ୋଳ ମାଡ଼ିବ । ମାଷ୍ଟର ବିରକ୍ତ ହବ ।

ମୁଁ ଶୁଣେ ନାହିଁ । ଖେଳରେ ମାତିଯାଏ । ସନ୍ଧ୍ୟା ପରେ ମାଷ୍ଟରଙ୍କ ପାଖରେ ଟିଉସନ୍ ହବାକୁ ବସିଲେ ଢ଼ୋଳ ମାଡ଼େ । ମୁଁ ପଢୁ ପଢୁ ଢ଼ୋଳେଇ ପଡ଼ିଲେ ମାଷ୍ଟ୍ରେ ମୋତେ ଗୋଟାଏ ଚାପୁଡ଼ା ପକାନ୍ତି । ମୁଁ ଖୁବ୍ ଆସ୍ତେ କହେ, "ଶଳା ଚୋର" । ପୁଣି ଢ଼ୋଳେଇ ପଡ଼ିଲେ ପୁଣି ମାଷ୍ଟ୍ରେ ଚାପୁଡ଼ାଏ ପକାନ୍ତି । ମୁଁ ପୁଣି ଚୁପଚୁପ୍ କହେ, "ଶଳା ଚୋର" । ମୁଁ ଏତେ ଆସ୍ତେ କହେ ଯେ, ମାଷ୍ଟ୍ରେ କିଛି ବୁଝି ପାରନ୍ତି ନାହିଁ । ଇମିତି କେତେଥର କହିବା ପରେ ଥରେ ମାଷ୍ଟ୍ରେ ବୁଝି ନେଲେ ଯେ ମୁଁ ତାଙ୍କୁ 'ଶଳା ଚୋର' କହୁଛି । ତା'ପରେ ଆହୁରି ମାଡ଼ ଦେଲେ । ମାଡ଼ରେ ମୋର ଢ଼ୋଳେଇବା ଛାଡ଼ିଗଲା । ଏଣେ ମନରେ ଭୟ ହେଲା, କାଳେ ବାବା ମା ଜାଣିବେ, ମୁଁ ଶଳା ଚୋର କହୁଛି । ଯେତିକି ମାଡ଼ ହେଲା ସେ ଅନୁପାତରେ ମୁଁ କମ୍ କାନ୍ଦିଲି ନଚେତ୍ କୌଣସି କୌଣସି ମାଷ୍ଟରଙ୍କ ଠାରୁ ଅଳ୍ପ ମାଡ଼ ଖାଇଲେ ବେଶି ଜୋରରେ କାନ୍ଦେ କାରଣ ବାବା, ମା ଜାଣିବେ ଯେ ଏ ମାଷ୍ଟର ପୁଅକୁ ବହୁତ ବାଡ଼ଉଛି ଏଣୁ ଶୀଘ୍ର ଏ ବିଦାୟ ନବାର ସମ୍ଭାବନା ।

ଯେଉଁ ମାଷ୍ଟରଙ୍କୁ 'ଶଳା ଚୋର କହିଥିଲି ସେ ଅଳ୍ପ ଦିନ ପରେ ବିଦାୟ ନେଇ ଗଲେ । ପୁଣି ଜଣେ ଆସିଲେ, ପୁଣି ପାଠ ପଢ଼ା ଚାଲିଲା । ମାଷ୍ଟରମାନେ ପ୍ରାୟ ସନ୍ଧ୍ୟା ପରେ ଆସି ଟିଉସନ୍ କରୁଥିଲେ । କେବଳ ଯେତେବେଳେ ସ୍କୁଲ ସକାଳୁଆ ହୁଏ, ସେତେବେଳେ ମାଷ୍ଟରମାନେ ଆସି ଦି'ପହରେ ଟିଉସନ୍ କରୁଥିଲେ । ସେମାନେ ଠିକ୍ ସମୟରେ ଆସି ବସିଥିବେ । ମୁଁ ଦି'ପହରେ ଗଭୀର ନିଦରେ ଘର ଭିତରେ ଶୋଇଥିବି, ମୋତେ ବାବା, ମା ଡ଼ାକୁଥିବେ, ମାଷ୍ଟ୍ରେ କିଛି ସମୟ ଅପେକ୍ଷା କରି ବସିଲା ପରେ ମୁଁ ନିଦରୁ ଉଠି ସଜବାଜ ହେଇ ଯାଇ ପାଠ ପଢ଼ାରେ ବସିବାକୁ ଆହୁରି କିଛି ବେଳ ଯାଏ । ଇମିତି କିଛି ବେଳ ଗତ ହେଲା ପରେ ପଢୁ ପଢୁ ସଞ୍ଜ ହୁଏ । ମାଷ୍ଟ୍ରେ ବିଦାୟ ନିଅନ୍ତି । ମୁଁ ପୁଣି ଖେଳରେ ଲାଗି ଯାଏ । ପୁଣି କିଛି ସମୟ ପରେ ସଞ୍ଜ ଗଡ଼ିଗଲେ ବାବାଙ୍କ ପାଖରେ ପାଠ ପଢ଼ା ଆରମ୍ଭ ହୁଏ । ସବୁବେଳେ ପାଠ ପଢ଼ା ! ବଡ଼ ବିରକ୍ତ ଲାଗେ । ଥରେ ଥରେ ବାବାଙ୍କ ସାଙ୍ଗରେ ରାତିରେ ଖାଇ ବସିବା ବେଳେ ବାବାଙ୍କୁ କହେ, ମୁଁ ମା ପାଖକୁ ଯିବି ।

ବାବା କେତେ ପ୍ରକାରେ ଭୁଲେଇବାକୁ ଚେଷ୍ଟା କରନ୍ତି । ମୁଁ ଭୁଲି ଯାଏ । କାରଣ ରାତିଟା ଶୋଇ ପଡ଼ିଲେ

ପୁଣି ସକାଳ ହେଲେ ସେହି ସ୍କୁଲକୁ ଯିବା, ସ୍କୁଲରେ ସାଙ୍ଗ ପିଲାଙ୍କ ସଙ୍ଗେ ଗପ, ପାଠପଢ଼ା, ଖେଳ ଇତ୍ୟାଦିରେ ମା'ଙ୍କ କଥା ବେଶି ମନେ ପଡ଼େ ନାହିଁ। ରାତି ହେଲେ, ବାବାଙ୍କ ପାଖରେ ପାଠ ପଢ଼ା ବେଳେ ପୁଣି ମା'ଙ୍କ କଥା ମନେ ପଡ଼େ।

ଇମିତି କିଛିଦିନ ବିତିଲା ପରେ, ମା'ଙ୍କ ପାଖକୁ ଯିବା ପାଇଁ ଗୋଟାଏ ସୁବିଧା ମିଳିଗଲା। ସାନ ମାମୁଁଙ୍କର ବିଭାଘର ହେବାର ସମ୍ବାଦ ଯାଜପୁରରୁ ଆସିଲା। ଆମରି ବସାରେ ଯାଜପୁରରୁ ବରଯାତ୍ରୀ ଆସି ରହିବେ। କଟକରେ ବିଭାଘର ହବ। କନ୍ୟାଙ୍କ ବାପ ଘର ହେଲା କଟକ ନିକଟସ୍ଥ ସିଂମାପୁର। କନ୍ୟା ପକ୍ଷ ମଧ କଟକ ଆସିବେ। ସାନମାମୁଁ ସେତେବେଳେ ଅନୁଗୁଳରେ ଚାକିରୀ କରୁଥିଲେ। ତାଙ୍କର ବିବାହ ବୟସ ଆଗେଇ ଯାଇଥିଲା। କାରଣ ସାନମାମୁଁଙ୍କ ଉପର ଭାଇ ମୋର ମଝିଆ ମାମୁଁଙ୍କ ବିଭାଘର ହୋଇ ନଥିଲା। ତେଣୁ ବଡ଼ଭାଇ ନହେଲେ, ସାନଭାଇ କିମିତି ବିଭା ହେବେ? ଏଥିଯୋଗୁଁ ସାନମାମୁଁ ବିଭା ହୋଇ ପାରୁ ନଥିଲେ। ମଝିଆ ମାମୁଁଙ୍କ ରୋଜଗାର ନଥିଲା। ସେ ଦାର୍ଜିଲିଂରେ ଟ୍ରେନିଂ ପାଇଲା ପରେ ଫରେଷ୍ଟ ବିଭାଗରେ ଚାକିରୀ କରୁଥିଲେ। ସେଠି ହାକିମଙ୍କ ସଙ୍ଗେ କ'ଣ ଗଣ୍ଡଗୋଳ କରି ଚାକିରୀ ଛାଡ଼ି ଘରେ ଆସି ବସିଥିଲେ। ସେ ବିବାହ ନକରିବା ପାଇଁ ମତ ପ୍ରକାଶ କରିବାରୁ ମୋର ମା ହିଁ ସାନମାମୁଁଙ୍କ ବିବାହ ଲାଗି ଉଦ୍ୟମ କଲେ।

ବିବାହ ପୂର୍ବରୁ ସାନମାମୁଁ ଅନୁଗୁଳରୁ ଆସି କଟକରେ ପହଁଚି କାଜିବଜାରରେ ରହିଲେ। କାଜି ବଜାରରେ ମୋର ଜଣେ ମାଉସୀ ଥିଲେ। ସେ ହଉଛନ୍ତି ମୋର ମା'ଙ୍କର ଜେଠାଙ୍କ ଝିଅ ବଡ଼ ଭଉଣୀ, ମଉସା କଟକରେ ଚାକିରୀ କରୁଥିଲେ।

ସାନମାମୁଁ ଯେଉଁଦିନ ଆସି କଟକରେ ପହଁଚିଲେ ସେହିଦିନ ବାବା ଅଫିସରୁ ଆସି ସନ୍ଧ୍ୟା ବେଳେ ମୋତେ କହିଲେ ଚାଲ ସାନମାମୁଁ ଆସିଛନ୍ତି ଦେଖି ଆସିବା ଚାଲ।

ବାବା, ମୁଁ ଯାଇ କାଜିବଜାରରେ ମାଉସୀଙ୍କ ଘରେ ପହଁଚିଲୁ। ସାନମାମୁଁଙ୍କୁ ଦେଖିଲି। ମଉସା, ମାଉସୀ ଭାରି ଆଦର ଯତ୍ନ କଲେ। ସାନମାମୁଁଙ୍କର ଭଲ ମନ୍ଦ ମୁଁ କିଛି ଜାଣି ନଥିଲି। କେବଳ ସାନମାମୁଁଙ୍କୁ ଚିହ୍ନି ଥିଲି। ବଡ଼ମାମୁଁଙ୍କ ପାଖକୁ ଭୟରେ ବେଶି ଯାଏ ନାହିଁ। ସେ କିନ୍ତୁ ମୋତେ ବେଶି ଭଲ ପାଉଥିଲେ। ତିନି ମାମୁଁଙ୍କ ଭିତରେ ମଝିଆ ମାମୁଁଙ୍କୁ ମୋତେ ବେଶି ଭଲ ଲାଗୁଥିଲା। କାରଣ ମଝିଆ ମାମୁଁ ଅନେକ ରଙ୍ଗରସର ଗଳ୍ପ କରି ପାରୁଥିଲେ। ସେଇଥି ପାଇଁ ମୁଁ ତାଙ୍କୁ ବେଶି ଭଲ ପାଉଥିଲି। ତା'ଛଡ଼ା, ମୋ ପ୍ରତି ତାଙ୍କର ସ୍ନେହ, ଶ୍ରଦ୍ଧା ଅତ୍ୟଧିକ ଥିଲା। ଥରେ ମୋର ମନେ ଅଛି, ମୋ ପାଇଁ ସେ ଗୋଟାଏ କାଗଜ ବାକ୍ସରେ ବାକ୍ସେ ବିଭିନ୍ନ ପ୍ରକାରର ଚିନି କଣ୍ଢେଇ ଆଣିଥିଲେ। ମୁଁ ଏକ ସମୟରେ ଏତେ ଗୁଡ଼ାଏ କଣ୍ଢେଇ ପାଇ ବିଶେଷ ଖୁସି ହୋଇଗଲି। ସେଇ ଦିନଠୁଁ ଅନ୍ୟ ଦୁଇଜଣ ମାମୁଁଙ୍କ ଅପେକ୍ଷା ମଝିଆ ମାମୁଁଙ୍କ ପ୍ରତି ତାଙ୍କ ଶେଷ ଜୀବନ ପର୍ଯ୍ୟନ୍ତ ମୋର ବିଶେଷ ଶ୍ରଦ୍ଧା ଏବଂ ଭକ୍ତି ଥିଲା।

ସେ ଜୀବନସାରା ଅବିବାହିତ ଥିଲେ। କଟକ ରାସବିହାରୀ ମଠର ରାଧାରମଣ ଦେବଙ୍କର ସେ ଭାରି ଭକ୍ତ ଥିଲେ। ସେ ମଧ ପରୋପକାରୀ ଥିଲେ।

ସେଦିନ ମାଉସୀଙ୍କ ଘରେ ବାବା, ସାନମାମୁଁ, ମଉସା, ମାଉସୀଙ୍କ ସଙ୍ଗେ ଗଳ୍ପ କରୁ କରୁ ମୋତେ କହିଲେ, ତୁ ଏଇଠି ବସିଥା, ମୁଁ ଗୋଟାଏ ଜାଗାରୁ ଆସୁଛି। ମୁଁ ଗୋଟିଏ ଚୌକୀ ଉପରେ ବସି ରହିଲି। ବାବା, ମଉସା, ମାଉସୀ ଏବଂ ସାନମାମୁଁଙ୍କ ଜିମାରେ ମୋତେ ଛାଡ଼ି ଅଳ୍ପ ସମୟ ପାଇଁ କୁଆଡ଼େ ଗଲେ। ମୁଁ କିଛି ସମୟ ଅପେକ୍ଷା କରି ବାବାଙ୍କର ଫେରିବାରେ ବିଳମ୍ବ ହେଲାରୁ ମୁଁ କାନ୍ଦିବାକୁ ଆରମ୍ଭ କଲି। ମୋ କାନ୍ଦିବାର ଦେଖି ସାନମାମୁଁ ମୋତେ ଧମକ ଦେଇ କହିଲେ, ବସ ଚୂପ କରି, କାନ୍ଦୁଛି? ଉଠେଇ କଚାଡ଼ି ଦେବି ଯେ। ସାନମାମୁଁଙ୍କର ଏ ଧମକରେ ମୁଁ ଚୂପ୍ ହୋଇଗଲି କିନ୍ତୁ ସେହି ଦିନଠୁଁ ସାନମାମୁଁଙ୍କୁ ଆଉ ଭଲ ଲାଗିଲା ନାହିଁ। ସାନମାମୁଁ ଆସି ଯେଉଁ ମାଉସୀ ଘରେ ରହିଥିଲେ ସେ ମାଉସୀଙ୍କୁ ମଧ ସେତେ ଭଲ ଲାଗେନା। କାରଣ ଥରେ ମୋର ଗୋଟାଏ ଦାନ୍ତ ହଲୁଥିଲା। ଏଥି

ପୂର୍ବରୁ ଥରେ ତାଙ୍କ ବସାକୁ ଆମେ ସମସ୍ତେ ଯାଇଥିଲୁ। ସେ ମାଉସୀ ମୋର ସେ ହଲିବା ଦାନ୍ତକୁ ଦେଖୁ ଦେଖୁ ହଠାତ୍ ଭାଙ୍ଗି ଦେଲେ, ଗୁରାଏ ରକ୍ତ ବୋହିଲା। ମୁଁ ଭୟରେ କାନ୍ଦି କାନ୍ଦି ସାରା ଦିନଟା ତାଙ୍କ ବସାରେ ଶୋଇ ରହିଲି। ସେହି ଘଟଣା ପରଠାରୁ ଆଉ ସେ ମାଉସୀଙ୍କୁ ସେ ବଞ୍ଚିଥିବା ଯାଏ ଆଦୌ ଭଲ ଲାଗିଲା ନାହିଁ। ସେ ଯେତେ ଆଦର ଯତ୍ନ କଲେ ମଧ ଆଉ ତାଙ୍କ ପ୍ରତି ମୋର ଶ୍ରଦ୍ଧା ରହିଲା ନାହିଁ।

ମୁଁ, ବାବା ସେଦିନ କାଳିବଜାରରୁ ମାଉସୀଙ୍କ ଘରୁ ବିଦାୟ ନେଇ ଆସିଲୁ। ସାନମାମୁଁଙ୍କର ଧମକ ମୋର ମନେ ପଡୁଥାଏ କିନ୍ତୁ ବାବାଙ୍କୁ କିଛି କହିଲି ନାହିଁ।

କିଛିଦିନ ପରେ ସାନମାମୁଁ ଏବଂ ବରଯାତ୍ରୀ ଦଳ ଆସି ଥୋରିଆ ସାହିରେ ଆମ ବସାରେ ପହଁଚିଲେ। ମୁଁ ଖେଳିବା ପାଇଁ ମା ଯାଜପୁରରୁ ମୋ ପାଇଁ ତାଙ୍କ ସାଙ୍ଗରେ ଗୋଟିଏ ଛୋଟିଆ ରଥ ପଠେଇଥାନ୍ତି। ରଥଟି ବଡ଼ ସୁନ୍ଦର ହେଇଥାଏ। ରଥଟି ଦେଖି ମନ ଭାରି ଖୁସି ହେଇଗଲା। ଏଣେ ଯାଜପୁରରୁ ବରଯାତ୍ରୀ ଦଳରେ ସାନମାମୁଁଙ୍କ ସାଙ୍ଗରେ ବହୁତ ଲୋକ ଆସିଥାନ୍ତି କିନ୍ତୁ ମଝିଆ ମାମୁଁ ଆସି ନଥାନ୍ତି।

ଆମରି ବସାରେ ସାନମାମୁଁ, ବରଯାତ୍ରୀ ଦଳ ଦିନବେଳା ରହିଲେ। ରାତିକି ସାନମାମୁଁଙ୍କ ବିଭାଘର ହବ। କନ୍ୟାପକ୍ଷ ସିଂମାପୁରରୁ ଆସି ମଙ୍ଗଳାବାଗ ନିକଟସ୍ଥ ମେଡ଼ିକାଲ ହତାର ପ୍ରଧାନ ଫାଟକ ସମ୍ମୁଖସ୍ଥ ରାସ୍ତାର ବିପରୀତ ଆଡ଼େ ଯେଉଁ ରାସ୍ତା ମହ୍ଲାସାହି ଏବଂ ମହାନଦୀ କୂଳକୁ ଯାଇଛି, ସେହି ରାସ୍ତାର ଗୋଟିଏ ପାଖରେ ଗୋଟିଏ ଘରେ ରହିଲେ।

ସେତେବେଳେ କଟକରେ କଲେକ୍ଟର ସାହେବ ସେହି ଅଞ୍ଚଳର ଅଳ୍ପ ଦୂରରେ ରହୁଥିଲେ। ତାଙ୍କର କୋଠି ଥିଲା ମଙ୍ଗଳାବାଗଠାରୁ ଇଞ୍ଜିନିୟରିଂ ସ୍କୁଲ ଆଡ଼କୁ ଯାଇଥିବା ରାସ୍ତାର ବାଁ ପଟେ ଯେଉଁ ଦୋତାଲା ପ୍ରାସାଦ ଅଛି, ଯେଉଁଥିରେ କିଛି ବର୍ଷ ପାଇଁ ୟୁନିଭର୍‌ସିଟି ଅଫିସ୍ ହେଉଥିଲା। ସେହି ପ୍ରାସାଦରେ କଲେକ୍ଟର ସାହେବ ରହୁଥିଲେ। ସେତେବେଳେ କଲେକ୍ଟର ସାହେବଙ୍କ ସ୍ତ୍ରୀ ଗର୍ଭବତୀ ଥିଲେ। ଏଣୁ କଲେକ୍ଟର ସାହେବ ହୁକୁମ ଜାରି କରିଥିଲେ ଯେ ରାତିରେ କିମ୍ୱା ଦିନବେଳେ ସେ ଅଞ୍ଚଳରେ କୌଣସି ବାଜାବାଜିବ ନାହିଁ। ବିଶେଷତଃ ରାତିବେଳା ବିବାହଜନିତ କିମ୍ୱା ଅନ୍ୟ କୌଣସି କାରଣରୁ ହେଉ ବାଜା ବାଜିବ ନାହିଁ କିମ୍ୱା ବାଣ ଫୁଟିବ ନାହିଁ। କାରଣ ରାତିରେ ବାଜା ବାଜିବା ଏବଂ ବାଣ ଫୁଟିବା ଶବ୍ଦରେ କଲେକ୍ଟର ସାହେବଙ୍କ ପତ୍ନୀଙ୍କର ଗର୍ଭାବସ୍ଥାରେ ନିଦ୍ରାଭଙ୍ଗ କିମ୍ୱା ଅନ୍ୟ କୌଣସି ଦୁର୍ଘଟଣା ଘଟି ପାରେ।

ଏଣୁ ସାନମାମୁଁଙ୍କ ବିଭାଘରରେ ରାତିରେ ଆଉ ବାଜା ବାଜିଲା ନାହିଁ କିମ୍ୱା ବାଣ ଫୁଟିଲା ନାହିଁ। ସମସ୍ତେ ଗୋଟିଏ ନିରବ ପଟୁଆରରେ କେତେକ ଗ୍ୟାସ୍ ଲାଇଟ୍ ସାହାଯ୍ୟରେ ବର ଏବଂ ବରଯାତ୍ରୀମାନେ ଯାଇ କନ୍ୟା ଘରେ ପହଁଚିଲେ। ବିଭାଘର ଭଲରେ ସମାହିତ ହେଇଗଲା। ମୁଁ ସାନମାମୁଁଙ୍କ ବିବାହ ବେଦୀର ଅଳ୍ପ ଦୂରରେ ରହି ବିଭାଘର ଖୁବ୍ ଭଲ ଭାବରେ ଦେଖିଲି। ବିଭା ଘରେ ଖାଇବା ପିଇବା ସରିବା ପରେ ସେହି ରାତିରେ ବରଯାତ୍ରୀମାନେ ପୁଣି ଆମର ଥୋରିଆସାହି ବସାକୁ ଫେରି ଆସିଲେ।

ବିବାହ ପରଦିନ ମୁଁ ଓ ମୋର ଜଣେ ଯାଜପୁରର ସାଙ୍ଗ କ'ଣ ଗୋଟାଏ କାମରେ ଦିନବେଳା କନ୍ୟା ଘରକୁ ଗଲୁ। କନ୍ୟା ଘରେ ଆମ ଦୁଇଜଣଙ୍କୁ ଜଳଖିଆ ଦେଲେ ଖାଇବା ପାଇଁ। ଆମେ ଦୁହେଁ ଯେଉଁ ଜଳଖିଆ ଖାଇବାକୁ ବସିଲୁ, ତା'ର ଅଳ୍ପ ଦୂରରେ ଗତ ରାତ୍ରିରେ ବିବାହିତ ସାନମାମୁଁ ବସିଥିଲେ। ମୁଁ ଓ ମୋର ସାଙ୍ଗ ଉଭୟେ ଖାଉ ଖାଉ ସାନମାଇଁଙ୍କୁ ଦେଖିବା ପାଇଁ ଥରେ ଦୁଇଥର ଅନେଇଲାରୁ ଜଣେ ବୁଢ଼ୀ ଆମକୁ ପରିହାସ କରି କହିଲେ ତାକୁ ଅନଉଛ କାହିଁକି? ସେ କିଏ? ସେ ତୁମର କ'ଣ ହବ?

ଆମେ ଜଳଖିଆ ଖାଇସାରି ସରମରେ ସେଠୁଁ ପଳେଇ ଆସିଲୁ। ସାନମାମୁଁଙ୍କ ବିବାହ ପରେ ବର, କନ୍ୟା, ବରଯାତ୍ରୀ ଆମ ବସାରୁ ଯାଜପୁରକୁ ଫେରି

ଯିବାର କଥା । ଆଗରୁ କହିଛି, ଯାଜପୁରରୁ ମା ମୋ ପାଇଁ ଗୋଟିଏ ଛୋଟିଆ ରଥ ପଠେଇଥିଲେ, ମୁଁ ଖେଳିବି, ମୋର ମନ ଲାଗିବ । ବାବାଙ୍କ ପାଖରେ କଟକରେ ରହିବି । ସାନମାମୁଁ, ସାନମାଇଁ, ବରଯାତ୍ରୀ ସମସ୍ତେ ଯେତେବେଳେ ଯାଜପୁରକୁ ବାହାରିଲେ ମୁଁ ଜିଦ୍ ଧରିଲି ମୁଁ ଯିବି । ବାବା ଆଉ ମୋତେ ଅଟକେଇବେ କ'ଣ? ବାବା ମୋତେ ବାଧା ଦେଲା ବେଳକୁ ମାମୁଁ ଘରର ଅଧିକାଂଶ ଲୋକେ କହିଲେ ହଉ ଚାଲୁ, ବର କନ୍ୟା ଯାଉଛନ୍ତି, ସେଠି କେତେ କ'ଣ ହବ । ପିଲା ମଣିଷ, ଏଠି ଆଉ ରହିବ କାହିଁକି? ଆସିଲେ ପଢ଼ାପଢ଼ି କରିବ ।

ବାବା ଆଉ ମୋତେ ଅଟକେଇ ପାରିଲେନି, ମୁଁ ଯାଜପୁର ବାହାରିଲି । ସାନମାଇଁ, ମୁଁ ଗୋଟିଏ ବଗି ଗାଡ଼ିରେ ବସିଲୁ ଆଉ ସମସ୍ତେ ଅନ୍ୟାନ୍ୟ କେତେକ ବରଯାତ୍ରୀ ଅନ୍ୟ ବଗି ଗାଡ଼ିରେ ବସିଲେ । ଆମେ ଯାଇ କଟକ ଷ୍ଟେସନ୍‌ରେ ପହଁଚି ଟ୍ରେନ୍‌ରେ ବସିଲୁ । ବାବା ଟ୍ରେନ୍‌ର କମ୍ପାର୍ଟମେଣ୍ଟର ଦୁଆର ମୁହଁରେ ଆମକୁ ଅନେଇ ଠିଆ ହେଇଥାନ୍ତି । ବାବା ଓଲେହି ଗଲେ, ଟ୍ରେନ୍ ଛାଡ଼ିଲା । ଏଇ ସମୟରେ ମୋତେ ଅକସ୍ମାତ୍ ଶୁଣାଗଲା ମୋର ବାବାଙ୍କୁ କିଏ ଡ଼ାକିଲା ବ୍ରଜବାବୁ । ମୋର ମନ ଖରାପ ଲାଗିଲା, ଭାବିଲି କ'ଣ ହେଲା କି ବାବାଙ୍କର? ସେଦିନ ରାତିରେ କେତେ ସମୟ ବାବାଙ୍କ କଥା ଭାବୁ ଭାବୁ ଶୋଇ ପଡ଼ିଲି । ଟ୍ରେନ୍ ଚାଲିଥାଏ ।

ତହିଁ ଆରଦିନ ରାତି ପାହିଲା ବେଳକୁ ଟ୍ରେନ୍ ଯାଇ ବ୍ୟାସସରୋବର (ଯାଜପୁର ରୋଡ଼୍) ଷ୍ଟେସନ୍‌ରେ ପହଁଚିଲା । ଆଗରୁ ତ କହିଛି, ସେତେବେଳର ବ୍ୟାସସରୋବର ଷ୍ଟେସନ୍‌ର ପରିସ୍ଥିତି । ବର୍ତ୍ତମାନ ତ ସେ ଯାଜପୁର ରୋଡ଼ରେ ରୂପାନ୍ତରିତ ହେଇ ଯାଜପୁର ରୋଡ଼୍ ସହରରେ ପରିଣତ ହେଲାଣି । ସେତେବେଳର ବ୍ୟାସସରୋବର ଷ୍ଟେସନ୍‌ର ଚୌହଦି ଭାବିଲେ ବର୍ତ୍ତମାନ ସେଇ ଜାଗା ବୋଲି ସନ୍ଦେହ ହୁଏ ।

ସେତେବେଳେ ବ୍ୟାସସରୋବରରେ ଷ୍ଟେସନରେ ଗାଡ଼ି ଅଳ୍ପ ସମୟ ଠିଆ ହଉଥିଲା । ବ୍ୟାସସରୋବରର ଷ୍ଟେସନ୍‌ରେ ଗାଡ଼ି ପହଁଚିବା ପୂର୍ବରୁ ଲୋକେ ପ୍ରସ୍ତୁତ ହେଇ ରହୁଥିଲେ କିମିତି ଜିନିଷ ପତ୍ର ଲୋକେ ସୁରୁଖୁରୁରେ ଓଲେହିବେ । ଆମର ମଧ୍ୟ ସେମିତି ଆଗରୁ ହୁସିଆର ହେଇ ଗାଡ଼ି ପହଁଚିବା ପୂର୍ବରୁ ଜିନିଷ ପତ୍ର ଏବଂ ନିଜେ ଓଲେହିବା ପାଇଁ ପ୍ରସ୍ତୁତ ହେଇଥିଲେ । ତଥାପି ଜିନିଷ ପତ୍ର ଓଲୋହୁ ଓଲୋହୁ ଗୋଟିଏ ଭାର ହାଣ୍ଡି ଫାଟିଗଲା ଆଉ ସବୁ ଜିନିଷ ଭଲରେ ଗାଡ଼ିରୁ ଉତାରି ନିଆଗଲା । ଭୋର ବେଳେ ବ୍ୟାସସରୋବର ଷ୍ଟେସନ୍‌କୁ ଦେଖି ମନ ଖୁସି ହେଇଗଲା । ପୁଣି ଆହୁରି ମନ ଖୁସି ହବାର କାରଣ ମା, ଆଈ, ଅଜା, କେତେ ଲୋକଙ୍କ ସହିତରେ ଭେଟ ହବ । ପୁଣି ବାହାଘରର ଆନନ୍ଦ, କୋଳାହଳ!

ମୋତେ ଜଣାଗଲା ଯେମିତି ମୁଁ ଗୋଟାଏ ବନ୍ଦୀଶାଳାରୁ ମୁକ୍ତି ପାଇଛି । ତଥାପି ବାବାଙ୍କ କଥା କେତେବେଳେ କିମିତି ମନେ ପଡୁଥାଏ । ଆମେମାନେ ସମସ୍ତେ ବ୍ୟାସସରୋବରର ଷ୍ଟେସନ୍‌ରେ ଓଲେହି ଯେ ଯା'ର ନିତ୍ୟକର୍ମ ସାରି ଯେଉଁ ଭାର ହାଣ୍ଡିଟି ଫାଟି ଯାଇଥିଲା ସେଇଥିରୁ ସମସ୍ତେ ଜଳଖିଆ କଲୁ । କାରଣ ତାକୁ ଅନ୍ୟ କୌଣସିଥିରେ ନବା ପାଇଁ ସୁବିଧା ନଥିଲା । ତା'ପରେ ଗୋଟିଏ ଘରେ ରୋଷେଇବାସ ହେଇ ସମସ୍ତେ ଖାଇଲେ । ଏହି ସମୟରେ ଯାଜପୁରରୁ ଶଗଡ଼ ଆସି ପହଁଚିଲା । ସେଇଥିରେ ସମସ୍ତେ ଜିନିଷ ପତ୍ର ଲଦି ଯାଜପୁରକୁ ବାହାରିଲୁ । ମୋ ଉପରେ ସମସ୍ତଙ୍କର ନଜର ଥାଏ କୁଆଡ଼େ ଗଲି? କ'ଣ କଲି? ଖାଇଲି କି ନ ଖାଇଲି? ବେଶି ନଜର ରଖିଥାନ୍ତି ମୋର ସାନ ଅଜା ଗୋପୀବଲ୍ଲଭ ରାୟ । ମୋତେ ନଜର ରଖିବେ କ'ଣ? ମୁଁ ତ ନିଜେ ମୁରବି ପାଲଟି ଯାଇଥାଏ । ସେଦିନ ବ୍ୟାସସରୋବର ଷ୍ଟେସନ୍ ଛାଡ଼ିଲା ବେଳକୁ ଅପରାହ୍ଣ ହେଇ ଯାଇଥାଏ । ମୁଁ ଯେଉଁ ଶଗଡ଼ରେ ବସିଥିଲି ଏବଂ ଅନ୍ୟ କେତେ ଖଣ୍ଡ ଶଗଡ଼ରେ ଅନ୍ୟାନ୍ୟମାନେ ଏବଂ ଜିନିଷ ପତ୍ର ସବୁ ଲଦା ହେଇ ମୁହଁ ସଞ୍ଜ ବେଳକୁ ଯାଇ ମାମୁଁ ଘରେ ପହଁଚିଲୁ । ବର, କନ୍ୟା କୋଉଠି ରହିଲେ ମୋର ଆଉ ନଜର ନଥିଲା । ମୁଁ ଯେମିତି ଶଗଡ଼ରୁ ଓଲେହିଲି ଆଗେ ଦୌଡ଼ି ଯାଇ ମା'ଙ୍କ ସଙ୍ଗେ ଦେଖା କଲି । ମା' କ'ଣ କାର୍ଯ୍ୟବ୍ୟସ୍ତ ଥିଲେ । ମୋତେ ଦେଖି

ମା' ଆନନ୍ଦରେ ଗଦ୍‌ଗଦ୍ ହେଇ କହିଲେ, କିରେ ତୁ ଚାଲି ଆସିଛୁ କି? ଭଲ କରିଛୁ, ଚାଲି ଆସିଛୁ ।

ତା'ପରେ ଆଉ ମା'ଙ୍କ ସହିତରେ ମୋର ଭେଟ ହେଇ ନାହିଁ । ମୁଁ ନିଜେ ହିଁ ବାହାଘରର ଲୋକ ଗହଳି ଭିତରେ କୁଆଡ଼େ ହଜି ଗଲି । ସନ୍ଧ୍ୟା ପରେ ବର, କନ୍ୟା ପାଲିଙ୍କିରେ ବସି ବାଜା, ରୋଷଣି ସହିତରେ ଆସି ପହଁଚିଲେ । କି କୋଳାହଳ! କି ଆନନ୍ଦ! କି ଗହଳି! ସବୁ ଦେଖିଲି । ବର, କନ୍ୟା ପହଁଚିଲା ପରେ ଆଉ ଯେତେ ଯାହା ବିଧି ବିଧାନ ପାଳନ କରାଗଲା ସବୁ ଦେଖିଲି । ମୁଁ ମୋର ସେଠା ସାଙ୍ଗମାନଙ୍କ ସହିତରେ ଖେଳିବୁଲି ଆନନ୍ଦରେ ଦିନ କଟେଇବାରେ ଲାଗିଲି । ବାହାଘର ଶେଷରେ କୁଣିଆ, ବନ୍ଧୁ ବାନ୍ଧବ ସମସ୍ତେ ବିଦାୟ ନେଲେ । ମାମୁଁ ଘରୁ ଲୋକ ଗହଳି କମିଗଲା । କିନ୍ତୁ ମୋର ଏଥର ମାମୁଁ ଘରକୁ ଯିବାରେ ଗୋଟାଏ ନୂଆ ଧରଣର ଆନନ୍ଦ ଅନୁଭବ କଲି । ସେ ଆନନ୍ଦର କାରଣ ହେଲା, ମାମୁଁ ଘରେ ଏଥର ଜଣେ ନୂଆ ଲୋକର ପ୍ରବେଶ । ସେ ହେଲେ ସାନମାଇଁ । ଯେତେ ଯୁଆଡ଼େ ଖେଳେ ବୁଲେ, ମଝିରେ ମଝିରେ ଟିକିଏ ସାନମାଈଁଙ୍କୁ ଦେଖେ, ପାଖରେ ବସେ । କ୍ରମେ କ୍ରମେ କଥାବାର୍ତ୍ତା ଆରମ୍ଭ ହେଲା, କିନ୍ତୁ ମୁଁ ସାନମାଈଁଙ୍କ ପାଖରେ ବେଶି ସମୟ ରହେନା । ମୋତେ ସରମ ଲାଗେ । ତା'ର କାରଣ ହଉଛି ସାନମାଈଁ ଏକେରେ ନୂଆଲୋକ, ତା'ପରେ ମୁଁ କେତେବେଳେ ଲୁଗା ପିନ୍ଧି ଥାଏ ତ, କେତେବେଳେ ଲଙ୍ଗଳା । ମୁଁ ଅନେକ ସମୟରେ ମାମୁଁ ଘରେ ଲଙ୍ଗଳା ହେଇ ବୁଲେ । ଏଥିଯୋଗୁଁ ମାମୁଁ ଘରେ ମୋର ଆଈ ଶ୍ରେଣୀର ବୁଢ଼ୀମାନେ ମୋତେ ଭାରି ଥଟ୍ଟା କରନ୍ତି । କେତେକ ଗାଳି ଦିଅନ୍ତି । ସେ ଗାଳି, ଥଟ୍ଟା, ପରିହାସକୁ କିଏ ଶୁଣୁଛି? ମନ ହେଲା ତ ଲୁଗା ପିନ୍ଧିଲି ନଚେତ୍ ଲଙ୍ଗଳା ହେଇ ବୁଲିଲି । କଟକରେ ବାବାଙ୍କ ପାଖରେ ଥିବା ବେଳେ କେବଳ ପ୍ରାଇଭେଟ୍ ଟିଉଟର୍‌ଙ୍କ ନିକଟରେ ଟିଉସନ୍ ହବା ବେଳେ ଲୁଗା ପିନ୍ଧେ ଆଉ ସ୍କୁଲକୁ ଗଲାବେଳେ ଲୁଗା ପିନ୍ଧେ । ସ୍କୁଲରୁ ଘରକୁ ଆସିଲେ ଲୁଗା, ଜାମା ଫୋପଡ଼ା ହୁଏ । ମୋର ପୁଣି ସେହି ଉଲଗ୍ନ, ଦିଗମ୍ବର ବେଶ । ମୋତେ ସବୁବେଳେ ଲୁଗା ପିନ୍ଧିବାକୁ ଆଦୌ ଭଲ ଲାଗୁ ନଥିଲା । ଭାରି ଗରମ ଲାଗୁଥିଲା । ଆଜିକାଲି ପରି ସେତେବେଳେ ତ ହାଫ୍ ପ୍ୟାଣ୍ଟ ପିନ୍ଧିବା ଚଳନ ନଥିଲା । ପିନ୍ଧିଲେ ଲୁଗା ପିନ୍ଧିବାକୁ ହବ ଆଉ ତା'ର ଦ୍ୱିତୀୟ ଜିନିଷ କିଛି ନାହିଁ । ମୋର ଅନେକ ଧୋତି ଥିଲା କିନ୍ତୁ କଛା, କୁଞ୍ଚା କରି ପିନ୍ଧୁଛି କିଏ? ମୋର ମନେ ଅଛି ଚାଟଶାଳିରେ ପଢ଼ିବା ବେଳେ ପ୍ରଥମେ ମୁଁ କଳା ଧଡ଼ିଆ ଲାଲ୍ ରଙ୍ଗର ଧୋତି ପିନ୍ଧୁଥିଲି । ବେଶ୍ ଛୋଟ ଧୋତି, ଟିକିଏ ମୋଟା । ଚାଟଶାଳିରେ ଚଟାଣ ଉପରେ ପାହି କାଟି ପଣିକିଆ ଲେଖିଲା ବେଳେ ଯେ ଯୁଆଡ଼ିକି ମୁହଁ କରି ଲେଖୁଥାଉ, ଠରାଠରି ହେଇ ଦେଖେଇ ହୁଅନ୍ତି । -କିଏ କିମିତି କଛା ମାରିଛି । କଛାଟା ପ୍ରାୟ ଦଉଡ଼ି ପରି ମୋଡ଼ା ହେଇ ମରା ହେଇଥାଏ । ଅବଧାନେ ଯେତେବେଳେ ଜାଣନ୍ତି ଆମେମାନେ ଠରାଠରି ହଉଛୁ ସାଙ୍ଗେ ସାଙ୍ଗେ ବେତରେ ପିଟା ଉପରେ ପାହାରେ ପାହାରେ ବସେଇ ଦିଅନ୍ତି । ଆମେ ସବୁ ସାବଧାନ ହେଇ ଭଲ ପିଲା ପରି କିଏ ପଣିକିଆର ଶୈଶବ, କିଏ ବାଲ୍ୟାବସ୍ଥା, କିଏ ଯୌବନାବସ୍ଥା, କିଏ ପ୍ରୌଢ଼ାବସ୍ଥାର ବନ୍ଦନା ଆରମ୍ଭ କରିଦଉ ।

ଏଥର ମାମୁଁ ଘରେ ରହିଲି । ଆଉ ଦୟା ମା ନାହାକାଣୀ ପାଖରେ ପାଠ ପଢ଼ିବାକୁ ହେଲା ନାହିଁ । କାରଣ ମୋର ତ କଟକରେ ଯେତେବେଳେ ସ୍କୁଲରେ ନାଁ ଲେଖା ହେଇଛି ମୁଁ ଦୟା ମା ନାହାକାଣୀକୁ ପାଠରେ ବଳେଇ ଗଲିଣି ବୋଲି ସମସ୍ତଙ୍କର ଧାରଣା । ଦୟା ମା ନାହାକାଣୀ ମଧ ମୋତେ ଦେଖିଲେ କିଛି କହେନା ।

ଆଗରୁ ତ କହିଛି ମୋର କଣ୍ଢେଇ ଗଢ଼ିବାର ଅଭ୍ୟାସ ଥିଲା । ଏଥର ମାମୁଁ ଘରେ କେତେକ ସାଙ୍ଗକୁ ନେଇ କଣ୍ଢେଇ ଗଢ଼ା ଆରମ୍ଭ କଲି । ସାନମାମୁଁଙ୍କ ବିବାହ ବେଳେ କଟକରେ ବେଦୀ ନିକଟରେ ଥାଇ ବିଭା ବେଳର ଯାହା ଯାହା ବିଧିବିଧାନ ନଜର କରିଥିଲି, ସେ ସବୁ କଣ୍ଢେଇ ମାଧମରେ କରିବାକୁ ମନ ହେଲା ଅର୍ଥାତ୍ କଣ୍ଢେଇ ବାହାଘର ଖେଳ ବଡ଼ ଜୋର୍‌ସୋର୍‌ରେ ଆରମ୍ଭ ହେଲା । ସେହି କଣ୍ଢେଇଙ୍କ ଭିତରୁ ଜଣକୁ ବର ଆଉ

ଜଣକୁ କନ୍ୟା ସଜେଇ ମୋରି ସାଙ୍ଗ ଭିତରୁ ଜଣକୁ ବରକର୍ତ୍ତା ଆଉ ଜଣକୁ କନ୍ୟାକର୍ତ୍ତା କରି ବେଶ୍ ଦୈନିକ କଣ୍ଢେଇ ବାହାଘର ଜମିଲା। ସେହି ସାଙ୍ଗ ଭିତରୁ ପୁରୋହିତ, ବାଜାବାଲା, ଶଙ୍ଖୁଆ, ବାରିକ ସମସ୍ତେ ହେଇଯାନ୍ତି। କିନ୍ତୁ ବରଯାତ୍ରୀ ହୁଅନ୍ତି ଅନ୍ୟ କଣ୍ଢେଇମାନେ। ମୋର ଏ କଣ୍ଢେଇ ବାହାଘରରେ ମାତିବା ଦେଖି ସମସ୍ତେ ଥଟ୍ଟା, ପରିହାସ, ଗାଳି ମୋ ପ୍ରତି ପ୍ରୟୋଗ କଲେ ମୁଁ ବେଳକେ ଚପିଯାଏ, ପୁଣି ଯୋଉ କଥାକୁ ସେଇ କଥା।

ଖେଳିବା, ବୁଲିବା, ଖାଇବା, ଅଜାଙ୍କୁ ଗୁଡ଼ାଖୁ ସଜେଇ ଦବା ଏଇଥିରେ ମାମୁଁ ଘରେ ବେଶ୍ କିଛିଦିନ ଆନନ୍ଦରେ କଟିଗଲା। ମାମୁଁ ଘରେ ଥିଲା ବେଳେ ଆମ ସାଙ୍ଗରେ ବରାବର ଗୋଟିଏ ଚାକର କିମ୍ବା ଚାକରାଣୀ କଟକରୁ ଯାଇଥାଏ। ସେଥର ଗୋଟିଏ ଚାକରାଣୀ ଆମ ସାଙ୍ଗରେ ଯାଇଥାଏ। ମୁଁ ତାକୁ ଯେ କୌଣସି କାରଣରୁ ଅନେକ ସମୟରେ ମାରେ। ଥରେ ଦି'ପହରେ ମା, ଆଈ, ସମସ୍ତେ ଶୋଇଥିଲା ବେଳେ ମୁଁ ତାକୁ ମାଇଲି। ସେ ରାଗରେ ମୋର ବୁଢ଼ା ଆଙ୍ଗୁଳିକୁ କାମୁଡ଼ି ଦେଲା। ମା' ଯେତେବେଳେ ଉଠିଲେ ମା'ଙ୍କୁ ସେ କେମିତି ମୋ ଆଙ୍ଗୁଳିକୁ କାମୁଡ଼ି ଦେଲା ସବୁ କଥା କହିଲି। ମା ତାକୁ ଧମକେଇଲେ। ସେ ମୋ ଆଙ୍ଗୁଳିକୁ କାମୁଡ଼ିବା କଥା ମାନିଲା ନାହିଁ। ଏଣୁ ମା ଆଉ ତାକୁ ମାଇଲେ ନାହିଁ। ମୋର ତା' ଉପରେ ରାଗ ରହିଲା। ମୁଁ ସବୁ ବେଳେ ଚେଷ୍ଟାରେ ରହିଲି। ସେ କିମିତି ଭଲ କରି ମାଡ଼ ଖାଇବ। ଏଣୁ ଥରେ ମା ରଖିଥିବା ଗୋଟିଏ ଅଧୁଲି ଚୋରି କରି ଲୁଚେଇ ଦେଲି। ଅଧୁଲିଟି ପଦାରେ ରଖା ହେଇଥିଲା। ମୁଁ ଜାଣେ ମା ତାକୁ ହିଁ ସନ୍ଦେହ କରିବେ କାରଣ ସେ ଅନେକବାର ଚୋରି କରି ଧରା ପଡ଼ିଛି। ଏଣୁ ତାକୁ ନିଶ୍ଚୟ ବାଡ଼େଇବ। ପ୍ରକୃତ ସେଇଆ ହେଲା। ତାକୁ ହିଁ ସନ୍ଦେହ କଲେ, ସେଇ ଚୋରି କରିଛି। ସେ ଯେତେ ଅସ୍ୱୀକାର କଲେ କ'ଣ ହବ? ମା ତାକୁ ବାଡ଼େଇଲେ। ଏତେ ବାଡ଼େଇଲେ ଯେ ମୁଁ ଅଧୈର୍ଯ୍ୟ ହେଇ ପଡ଼ିଲି କାରଣ ମୁଁ ଚୋରି କରିଛି ଅଥଚ ବିନା କାରଣରେ ଚାକରାଣୀଟା ନିର୍ଘାତ ମାଡ଼ ଖାଉଛି, କ'ଣ କରିବି? ଏଣେ ମୁଁ ଲୁଚେଇଛି ବୋଲି ଆଉ ଜଣେଇବା ଉଚିତ୍ ନୁହେଁ। କାରଣ ମୋ ଉପରେ ମଧ୍ୟ ସେମିତି ମାଡ଼ ହବ। ମୁଁ ଆଉ କିଛି କହିଲି ନାହିଁ। ସେଇଥର ମୁଁ ଜାଣିଲି ଲୋକେ ଚୋରି ନ କରି ବିନା କାରଣରେ ମଧ୍ୟ ସନ୍ଦେହରେ ପଡ଼ି ଇମିତି ମାଡ଼ଖାନ୍ତି। ମୁଁ ତା'ର ମାଡ଼ ଦେଖି ଦୁଃଖ କଲେ କ'ଣ ହବ? ଆଉ ତାକୁ ରକ୍ଷା କରିବାର ବାଟ ନଥିଲା। ତାକୁ ରକ୍ଷା କରିବାର ଅର୍ଥ ମୋ ପିଠିରେ ମଧ୍ୟ ସେମିତି ମାଡ଼ ଅଶ୍ରାଏ ହେଇଥାନ୍ତା। ମୁଁ ପୁଣି ଭାବିଲି ଯା ହେଇଛି, ଭଲ ହେଇଛି, ସେ ଯେମିତି ମୋତେ କାମୁଡ଼ି ଦେଇଥିଲା ସେ ଦୁଃଖ ମନରୁ କେତେକ ଲାଘବ ହେଇଗଲା।

କିଛିଦିନ ପରେ ବାବାଙ୍କ ପାଖରୁ ଚିଠି ଆସିଲା ଆମେମାନେ କଟକ ଯିବୁ। କାରଣ ମୋର ପଢ଼ାପଢ଼ିର କ୍ଷତି ହଉଛି ଆଉ ବେଶିଦିନ ମାମୁଁ ଘରେ ରହିବା ଉଚିତ୍ ନୁହେଁ। ଏଣୁ ଆମମାନଙ୍କର କଟକ ଆସିବାର ପର୍ବ ଆରମ୍ଭ ହେଲା। ଆଗରୁ ତ କହିଛି ମା'ଙ୍କର ବାପ ଘରୁ ବିଦାୟ ହେଇ ଆସିବାବେଳେ ବିଶେଷ ଆଡ଼ମ୍ବର, ଆୟୋଜନ ହୁଏ। ମା ବାପ ଘରୁ ଆସିବା ବେଳେ ଗୁରାଏ ଜିନିଷ ସାଙ୍ଗରେ ଆଣନ୍ତି ଯେମିତି ଲୁଗା, ଭାର, କୁଲା, ବାଉଁଶିଆ, ଝାଡ଼ୁ, ଟୋକେଇ, ଚକି, ଶିଳ, ଯା ଦରକାରେ ମନେ କଲେ ସବୁ ଆଣିଲେ। ବେଳେ ବେଳେ ଗୋଟାଏ ଶୁଆ କିମ୍ବା ନେଉଳ ମଧ୍ୟ ଅଣା ହୁଏ। ମୁଁ ପୁଣି ଛୋଟ ପିଲାଟାଏ ହେଲେ କ'ଣ ହେଲା ମୋତେ ସବୁ ବଡ଼ ବଡ଼ ଜିନିଷ ଦିଆ ହୁଏ। ମାମୁଁ ଘରୁ ଆସିବା ମୋତେ ଭାରି ଦୁଃଖ ଲାଗେ। ସେ ଦୁଃଖ ଏ ପର୍ଯ୍ୟନ୍ତ ମୁଁ ଭୁଲି ପାରିନି।

କଟକରୁ ଯାଜପୁରକୁ ଯିବା ଏବଂ ଯାଜପୁରରୁ କଟକ ଆସିବା ସେତେବେଳେ ଏତେ ସହଜ ନଥିଲା। ସେଥି ଯୋଗୁଁ ମା ଥରେ ବାପ ଘରକୁ ଯାଇ ଆସିଲେ ପୁଣି ପାଞ୍ଚ ବର୍ଷ, ଛଅ ବର୍ଷ କିମ୍ବା ସାତ ବର୍ଷ ପରେ। ଏଣୁ ଭାରି ଦୁଃଖ ଲାଗେ କାରଣ ଆଜି ଯା'ଙ୍କୁ ମା ଦେଖି ଆସିଛନ୍ତି ଆଉ ଥରେ ଗଲା ବେଳକୁ ତାଙ୍କ ସହିତରେ ଦେଖା ହବା ସନ୍ଦେହ। ପ୍ରକୃତ ମଧ୍ୟ କେତେଥର ସେମିତି

ଘଟଣା ଘଟିଥାଏ । ମା ଆଉ ଥରେ ଗଲା ବେଳକୁ ଆଉ ତା'ସାଙ୍ଗରେ ଦେଖା ହେଲା ନାହିଁ । ସେ ମରିଗଲେଣି । ସେ ଥର ବାବା ନିଜେ ଯାଇ ଆମକୁ ଆଣିବା ପାଇଁ ମାମୁଁ ଘରେ ପହଁଚିଲେ । ଆମେ ବାବାଙ୍କ ସାଙ୍ଗରେ ମାମୁଁ ଘରୁ ବିଦାୟ ନେଇ ଆସିଲୁ ।

## (୭)

କଟକ ବସାରେ ମା'ଙ୍କର ଅନୁପସ୍ଥିତିରେ ଯା ସବୁ ଅବ୍ୟବସ୍ଥା ଦେଖା ଦେଇଥିଲା, ମା' ଆସି ପୁଣି ସେ ସବୁ ସଜାଡ଼ି ନେଲେ । ମୋର ପୂର୍ବ ପରି ସ୍କୁଲକୁ ଯିବା ଆସିବା ଆରମ୍ଭ ହେଲା । ସାଙ୍ଗରେ ଜଣେ ଚାକର ଯାଇ ଛାଡ଼ି ଆସେ । ପୁଣି ସ୍କୁଲ ଛୁଟି ହେଲେ ଯାଇ ନେଇ ଆସେ । ସ୍କୁଲରେ ପାଠ ପଢ଼ା, ସାଙ୍ଗସାଥୀ ବେଶ୍ ଆରେଇ ଯାଇଥିଲା । ମୋର ପ୍ରଧାନ ଆକର୍ଷଣ ଥିଲା ଯେ କୌଣସି ପ୍ରକାର ଖେଳ । ସବୁଠାରୁ ଭଲ ଲାଗୁଥିଲା ball ନେଇ ଖେଳିବା । ଦିନେ ଦିନେ ମୋର ନିଜର ଟେନିସ୍ ବଲ୍ ପକେଟ୍‌ରେ ନେଇଯାଏ । ମୋର ନିଜର ଟେନିସ୍ ବଲ୍ ନେଇ ସ୍କୁଲରେ ଖେଳିବା ଦ୍ୱାରା ଅନେକ ବିଭ୍ରାଟ ଉପୁଜେ, ଯେମିତି କିଏ କୁଆଡ଼େ ଦୂରକୁ ମାରିଦଏ, କିଏ ଲୁଚେଇ ଦିଏ, କିଏ ମାଗେ ଦିନେ ଦୁଇଦିନ ପାଇଁ ଘରେ ନେଇ ଖେଳିବ । ଇମିତି କେତେଦିନ ନେଲା ପରେ ଆଉ ସ୍କୁଲକୁ ବଲ୍ ନେଲି ନାହିଁ । ବଡ଼ ବଡ଼ ପିଲାମାନେ football ନେଇ ଖେଳଛୁଟିରେ ଖେଳନ୍ତି । ଆମେମାନେ ସେଠି ପଶି ପାରୁନା, କେବଳ ନେପଥ୍ୟରେ ଯା କୋଳାହଳ କରୁ । ଶେଷକୁ ଜଦାଖାଇ ଫଳ, ଆତ, କିମ୍ବା ବେଲ ନେଇ ବଲ୍ ଖେଳ ହୁଏ । କେତେକ ପିଲା ଖେଳ ଛୁଟିରେ ବାଗୁଡ଼ି, ବୋହୂଚୋରି, ଗୁଚିତାଣ୍ଡୁ, ଗୋଲି, ନଟୁ ଇତ୍ୟାଦି ନେଇ ଖେଳନ୍ତି । ଏ ସବୁ ପ୍ରକାର ଖେଳ ମୁଁ ଆଗରୁ ଥୋରିଆ ସାହିରେ ପିଲାଏ ଖେଳିବାର ଦେଖିଥିଲି । ଥରେ ସ୍କୁଲରେ ଅନ୍ୟ କ୍ଲାସର ଜଣେ ବଙ୍ଗାଳୀ ପିଲା ମୋତେ ଅତି ନ୍ୟୁନ ହେଇ ମୋର ଟେନିସ୍ ବଲଟି ତା'ର ଘରେ ନେଇ ଦୁଇ, ତିନି ଦିନ ଲାଗି ଖେଳିବା ପାଇଁ ମାଗିଲା । ମୁଁ ତାକୁ ଦେଇଦେଲି । ସେ ଆଉ ଫେରାଏନା, ଦଳେ ବଙ୍ଗାଳୀ ପିଲା ସେ ବଲ୍‌କୁ ନେଇ ଥୋରିଆ ସାହି ନିକଟସ୍ଥ ବାସ୍ତରୀ ମଠ ପ୍ରାଙ୍ଗଣରେ ଚାରିଟା ବେଳେ ସ୍କୁଲରୁ ଫେରି ଖେଳନ୍ତି । କ'ଣ କରିବି ? ବଲ୍ କିମିତି ଆଦାୟ କରିବି ? ଦିନେ ସେମାନେ ଖେଳୁଛନ୍ତି ମୁଁ ବାହାରେ ଲୁଚି ଠିଆ ହେଲି । ବଲ୍ ପଦାରେ ଆସି ଯେମିତି ପଡ଼ିଛି, ମୁଁ ନେଇ ଦୌଡ଼ି ଘରକୁ ପଳେଇ ଆସିଲି । ମୁଁ ବଲ୍ ନେଇ ପଳେଇ ଆସିବା ଦେଖି, ମୋ ପଛେ ପଛେ ଜଣେ ଦୁଇ ଜଣ ପିଲା ମଧ୍ୟ ଗୋଡ଼େଇ ଆସିଲେ । ସେମାନେ ଆମ ଘରେ ଆସି ପହଁଚିଲେ । ମୋର ମା ତାଙ୍କୁ ଧମକ ଦେଇ ବାହାର କରିଦେଲେ । ପରେ ମୋର ଜଣେ ପ୍ରାଇଭେଟ୍ ଟିଉଟର୍ ମୋତେ ସାଙ୍ଗରେ ନେଇ ସେ ପିଲାମାନେ ଯେଉଁଠି ରହୁଥିଲେ ସେଠିକି ଯାଇ ମୋର ବଲ୍ ସେମାନେ ନେଇଥିଲେ ବୋଲି କହିଲାରୁ ସେମାନେ ଆଉ କିଛି କରି ପାରିଲେ ନାହିଁ ।

ବର୍ତ୍ତମାନ ଏ ଯେଉଁ ପ୍ରାଇଭେଟ୍ ଟିଉଟରଙ୍କ କଥା କହିଲି ଇମିତି କେତେ ଟିଉଟର୍ ମୋତେ ପଢ଼େଇବା ପାଇଁ ଆମ ଘରେ ରହିଲେ କିନ୍ତୁ ଅଳ୍ପ ଦିନ ମଧ୍ୟରେ ମୋ ଉପରେ ବିରକ୍ତ ହେଇ ବିଦାୟ ନେଲେ । କେବଳ ମୋ ଦୋଷରୁ ନୁହେଁ । ଏମାନଙ୍କ ଦୋଷରୁ ମଧ ଏମାନେ ବିଦାୟ ନେଇଛନ୍ତି । ତା'ର କାରଣ କେଉଁ ଟିଉଟର୍ କିମିତି ପଢ଼ଉଛନ୍ତି ବାବା ନଜର ରଖନ୍ତି । ଯଦି କେହି ଭୁଲ୍‌ଭାଲ୍ ପଢ଼ାନ୍ତି, ବାବା ସେ ଟିଉଟର୍‌କୁ ରଖନ୍ତି ନାହିଁ । ମୁଁ ଆମ ଦାଣ୍ଡ ଆଡ଼େ ଯେଉଁଠି ପଢ଼େ ବାବା ଅଫିସ୍‌ରୁ ଫେରି ସନ୍ଧ୍ୟାବେଳେ ତାଙ୍କର ନିତ୍ୟକର୍ମ ସାରି ଆମ ପଢ଼ିବା ଜାଗାଠାରୁ ଅଳ୍ପ ଦୂରରେ ବସନ୍ତି । ସେତେବେଳେ ଯେ ଆସିଲା, ତାଙ୍କ ସଙ୍ଗେ ଗପ କରନ୍ତି ଆଉ ଏଣେ ଟିଉଟର୍ କିମିତି ପଢ଼ଉଛନ୍ତି, ନଜର ରଖିଥାନ୍ତି । ଅନେକ ଟିଉଟରଙ୍କ ପଢ଼େଇବାରେ ଅନେକ୍ ଭୁଲ ଧରନ୍ତି । ଆଉ ତାକୁ ରଖନ୍ତି ନାହିଁ । ଆଉ ମୋ ଦୋଷରୁ ଯେଉଁମାନେ ଯାନ୍ତି, ତା'ର କାରଣ ମୁଁ ତ ଆଗରୁ କହିଛି । ମୁଁ କିମିତି ମେଧାବୀ ଛାତ୍ର, ମୋର ପଢ଼ିବାରେ କେତେ ଆଗ୍ରହ, ପାଠ ପଢ଼ାରେ ମୋର କୋଉ ଦୋଷ ବାଛିବ ? କମ୍ବଳଯାକ ବାଳ, ପାଠ ପଢ଼ା ତ ମୋତେ ବିଷ । ପାଠ ପଢ଼ା କଥା କହିଲେ

ମୋତେ ଜ୍ୱର ଆସେ । ଯେଉଁ ଟିଉଟର୍‌ମାନେ ରହନ୍ତି ସେମାନେ ମୋତେ ପଢ଼େଇବାରେ ବିକ୍‌ଦାର ହେଇ ଟିଉସନ୍ ଛାଡ଼ି ଚାଲିଯାନ୍ତି । କେତେକ ମୋତେ ନିର୍ଘାତ ମାଡ଼ ଦିଅନ୍ତି, କିନ୍ତୁ କ'ଣ ହବ? ଶୁଆକୁ "ହରିନାମ" ଶିଖେଇଲେ ସିନା ବୋଲ ମାନିବ, କୁଆକୁ ଶିଖେଇଲେ ବୋଲ ମାନୁଛି କୁଆଡ଼ୁ? ପାଠ ପଢ଼ାରେ ବସିଲେ ମୋତେ ଜେଲ୍‌ଖାନାରେ ବନ୍ଦୀ ହବା ଭଳି ଜଣାଯାଏ । ସ୍କୁଲରେ ପଢ଼ିବା ପାଇଁ ମୋତେ ବେଶ ଆରେଇ ଯାଇଥାଏ କିନ୍ତୁ ଘରେ ପଢ଼ିବା ମୋତେ ଆଦୌ ଭଲ ଲାଗେନା । ଆଉ ଗୋଟାଏ ବିପଦ, ସ୍କୁଲରେ ଶିକ୍ଷକମାନେ ଯେତେ ଧମକାନ୍ତୁ, ମାଡ଼ ଦିଅନ୍ତୁ, ସେ ସେହି ସ୍କୁଲ ସମୟ ଭିତରେ ଯେତିକି ସମୟ ସ୍କୁଲ ଚାଲେ ସେତିକି ସମୟ ଶିକ୍ଷକଙ୍କ ସହିତରେ ଭେଟ, ତା'ପରେ ଆଉ କିଛି ନାହିଁ । କିନ୍ତୁ ଘରେ ପଶିଲେ ପିଞ୍ଜରାବଦ୍ଧ ବନ ବିହଙ୍ଗ । ଘରେ ସବୁବେଳେ ଟିଉଟର୍ ବିଦ୍ୟମାନ । ଦାଣ୍ଡ ଆଡ଼କୁ ବାହାରିବାର ଉପାୟ ନାହିଁ । କାରଣ, ଦାଣ୍ଡ ଆଡ଼େ ଗୋଟାଏ ଲମ୍ବା ହଲ୍ ପରି ଘର ଥିଲା । ସେ ଘରେ ଧାନ ଗୋଟାଏ ଆଡ଼େ ରହୁଥିଲା । ସେଥିଯୋଗୁଁ ତାକୁ 'ଧାନଘର' କୁହାଯାଉଥିଲା । ମୋର ଜେଠା ପୁଅ ବଡ଼ଭାଇ ଯେ ଆମ ଘରେ ରହି ପଢୁଥିଲେ, ତାଙ୍କୁ ଯେଉଁ ପ୍ରାଇଭେଟ୍ ଟିଉଟର୍ ପଢ଼ଉଥିଲେ ସେ ମଧ ସେହି ଘରେ ରହି ବଡ଼ଭାଇଙ୍କୁ ପଢ଼ଉଥିଲେ । ଏଣୁ ମୋର ଯେଉଁ ପ୍ରାଇଭେଟ୍ ଟିଉଟର୍ ରହିଲେ, ତାଙ୍କୁ ସେଇ ଘରଟା ରହିବା ପାଇଁ ଛାଡ଼ି ଦିଆ ଯାଉଥିଲା । ମୋର ସ୍କୁଲରେ ପଢ଼ିବା ବେଳକୁ ବଡ଼ଭାଇ ଏନ୍‌ଟ୍ରାନସ୍ ପାସ୍ କରି ଆମ ଘରୁ ଯାଇ କଟକର କାଠଗଡ଼ା ସାହିସ୍ଥ କାୟସ୍ଥ ହଷ୍ଟେଲ୍‌ରେ ରହୁଥିଲେ ।

ମୋର ଯେଉଁମାନେ ପ୍ରାଇଭେଟ୍ ଟିଉଟର୍ ହେଇ ସେ ଘରେ ରହୁଥିଲେ ତାଙ୍କୁ ଦେଖିଲେ ମୋତେ ଶତ୍ରୁ ଭଳି ଲାଗୁଥିଲା । ମନେ ମନେ ଅନେକ ଥର ଭାବିଛି ଏଇଟା ଯାଉ ନାହିଁ କାହିଁକି? ଅନେକ ସମୟରେ ଟିଉଟର୍‌ଙ୍କ ନାଁରେ ମା'ଙ୍କ ଆଗରେ ମିଛ କହି ସେମାନଙ୍କୁ ଗାଳି ଖୋଇଛି । ଯେମିତି ଏ ମାଷ୍ଟର କିଛି ଭଲ ପଢ଼ଉ ନାହିଁ ଖାଲି ଶୋଉଛି । ମାଷ୍ଟରଙ୍କୁ ଯାହା ଖାଇବାକୁ ଦିଆ ହୁଏ ସେଥିରେ ମଧ ମାଷ୍ଟର କ'ଣ ଭଲ ମନ୍ଦ କହୁଥିଲେ, ମା'ଙ୍କ ଆଗରେ ମିଛ କହି, ତାଙ୍କୁ ଅପ୍ରିୟ କରଉଥିଲି । ଯେମିତି କୋଉ ମାଷ୍ଟ୍ର ଭାତ ସାଙ୍ଗରେ ଘିଅ ଖୋଜୁଛି କିଏ ଆହୁରି ଭଲ ଜଳଖିଆ ଖୋଜୁଛି, କିଏ ଭାରି ଅପରିଷ୍କାରଟାଏ, ତା' ଦିହଯାକ କୁଣ୍ଡିଆ ଗୁରାଏ ।

ଯେତେ ଟିଉଟର୍ ରହିଲେ, ଗଲେ, ଶେଷରେ ଜଣେ ଯୁଟିଲେ, ଯାଙ୍କ କଥା ଆଗରୁ ଟିକିଏ ସୂଚନା ଦେଇଛି । ଯାଙ୍କର ନାଁ ଗଦାଧର ଘୋଷ, ଘର-କେନ୍ଦ୍ରାପଡ଼ା, ବୟସ ଅଳ୍ପ । ସେ ମଧ ପ୍ରଥମେ ଆସି ସେହି ଧାନ ଘରେ ରହିଲେ । ଏ ଟିଉଟର୍‌ଙ୍କ ଇଂରାଜୀ, ଓଡ଼ିଆ ହସ୍ତାକ୍ଷର ଭାରି ସୁନ୍ଦର । ଏ ଭାରି ମିଶାଳ ପ୍ରକୃତିର ଲୋକ କିନ୍ତୁ ମୁଁ ଯାଙ୍କ ବିରୁଦ୍ଧରେ ମଧ ମା'ଙ୍କ ଆଗରେ ତାଙ୍କ ଖାଇବା ବିଷୟରେ ମିଛ କହି ଅନେକ ଅପ୍ରୀତିକର ଘଟଣା ସୃଷ୍ଟି କରିଛି, ଯେମିତି ତାଙ୍କୁ ଯାହା ଖାଇବାକୁ ଦିଆ ଯାଉଛି, ସେ ସେଥିରେ ଭାରି ଅସନ୍ତୁଷ୍ଟ, ଆହୁରି ଭଲ ଭଲ ଜିନିଷ ଖାଇବାକୁ ଖୋଜୁଛନ୍ତି । ତାଙ୍କୁ ଆମ ଘର ରୋଷେଇ ଭଲ ଲାଗୁନାହିଁ ।

ସବୁ ମିଛ କଥା କେବଳ ମାଷ୍ଟରଙ୍କୁ ବଦନାମ କରି ବିଦାୟ କରିବାର ଫନ୍ଦି । ସେ ଯା ହଉ ଗଦାଧର ଘୋଷ ବହୁତ ଦିନ ମୋର ପ୍ରାଇଭେଟ୍ ଟିଉଟର୍ ହେଇ ରହିଥିଲେ । ପରେ ସେ ଅନ୍ୟାନ୍ୟ ଟିଉଟର୍‌ଙ୍କ ଭଳି ବାହାର ଲୋକ ହେଇ ଆଉ ରହି ନଥିଲେ । ଆମ ପରିବାରର ଜଣେ ବୋଲି ଗଣ୍ୟ ହୋଇଥିଲେ । ଏ କେବଳ ତାଙ୍କର ସୌହାର୍ଦ୍ଦ୍ୟପୂର୍ଣ୍ଣ ବ୍ୟବହାର, ଅମାୟିକ ପ୍ରକୃତି, ସହିଷ୍ଣୁତା ଯୋଗୁଁ । ଏ କେବଳ ମୋତେ ଯେ ପାଠ ପଢ଼ଉଥିଲେ ତା' ନୁହେଁ ଏ ମୋତେ ପ୍ରଥମେ ପହଁରା ଶିଖେଇଥିଲେ । ଥୋରିଆସାହି ନିକଟସ୍ଥ ବଡ଼େଇ ସାହିର ବାସ୍ତରୀମଠ ପ୍ରାଙ୍ଗଣରେ ଗୋଟିଏ ପୋଖରୀକୁ ଏ ନିତି ଗାଧେଇ ଯାଉଥିଲେ । କେତେଦିନ ପରେ ମୋତେ ସାଙ୍ଗରେ ଗାଧେଇବାକୁ ନେଲେ, ସେଇଠି ମୋ ପେଟରେ ଗାମୁଛା ବାନ୍ଧି କିମିତି ପହଁରିବାକୁ ହୁଏ ଶିଖେଇଲେ । ମୁଁ ଇମିତି କେତେଥର ପହଁରିବା ପରେ ମୁଁ ନିଜେ ନିଜେ ପହଁରି ପାରିଲି ।

ଏ ମାଷ୍ଟର ପଢୁଥିଲେ କଟକର ଭିକ୍ଟୋରିଆ ହାଇସ୍କୁଲରେ । ଏବେ ଯାର ନାମ ଭକ୍ତମଧୁ ବିଦ୍ୟାପୀଠ । ମୁଁ ପଢୁଥିଲି ପି.ଏମ୍. ଏକାଡ଼େମୀରେ । ଏଣୁ ମୁଁ ଆଉ ମାଷ୍ଟ୍ରେ ଏକ ସାଙ୍ଗରେ ଘରୁ ଖାଇପିଇ ସ୍କୁଲକୁ ଠିକ୍ ସମୟରେ ବାହାରି ଯାଉଥିଲୁ । ସେ ମୋତେ ପି.ଏମ୍. ଏକାଡ଼େମୀରେ ଛାଡ଼ିଦେଇ ସେହି ବାଟରେ ଭିକ୍ଟୋରିଆ ସ୍କୁଲକୁ ଯାଉଥିଲେ । ପୁଣି ଫେରିବାବେଳେ ଯଦି ତାଙ୍କ ସହିତରେ ଭେଟ ହୁଏ ତାଙ୍କ ସାଙ୍ଗରେ ଘରକୁ ଆସେ ନଚେତ୍ ପିଲାଙ୍କ ସାଙ୍ଗରେ ଘରକୁ ଫେରେ । ଆଉ ଚାକରକୁ ସାଙ୍ଗରେ ଯାଇ ନବା ଆଣିବାର ଦରକାର ପଡ଼ିଲାନି କାରଣ ମୋର ସାହାସ ଟିକିଏ ବଢି ଯାଇଥାଏ, ଭୟ ଟିକିଏ ଛାଡି ଯାଇଥାଏ । କେହି ସାଙ୍ଗରେ ନଥିଲେ ବି ମୁଁ ଏକା ଏକା ଘରକୁ ଚାଲି ଆସେ । ଆହୁରି କିଛିଦିନ ପରେ ଆହୁରି ନିର୍ଭୀକ ହେଇ ପଡ଼ିଲି । ବାଟରେ ଆସିଲା ବେଳେ କାହାରି କାହାରି ସାଙ୍ଗରେ କଳିକଜିଆ, ମାଡ଼ ମରାମରି ମଧ୍ୟ ଚାଲେ । ଥରେ ମୁଁ ସ୍କୁଲରୁ ଆସିଲା ବେଳେ ତିନିକୋଣିଆ ବଗିଚାରୁ କ୍ୟାପିଟାଲ୍ ସିନେମା ସାମନା ଦେଇ ଯେଉଁ ବାଟ ଆସି ମେରିଆ ବଜାର ରାସ୍ତାରେ ମିଶିଛି ସେହି ବାଟରେ ଆମେ ଦଳେ ସାନ ସାନ ପିଲା ସାଙ୍ଗ ହେଇ ଆସୁଛୁ, ମୁଁ ଖଣ୍ଡିଏ ଛତା ମୁଣ୍ଡରେ ଦେଇ ଚାଲିଥାଏ । ପଛରେ ଗୋଟାଏ ପିଲା ଆଉ ଗୋଟାଏ ପିଲାକୁ ଶିଖେଇବାର ଶୁଣିଲି ଯେ ସେ ଅନ୍ୟ ପିଲାଟାକୁ ଠେଲି ଦବ । ଯେମିତି କି ସେ ମୋ ଉପରେ ପଡ଼ିବ । ମୁଁ ଶୁଣି ଚୁପ୍‌ଚାପ୍ ରହିଲି । ଭାବି ଠିକ୍ କଲି, ହଉ ପଡୁ ମୋ ଉପରେ ତା'ପରେ ଦେଖିବି । ସତକୁ ସତ ସେ ପିଲାଟା ମୋ ପିଠିରେ ପଡ଼ିଲା । ମୁଁ ତାକୁ ପଚାରିଲି, କିରେ ମୋ ଉପରେ କାହିଁକି ପଡ଼ିଲୁ ? ସେ ଉତ୍ତର ଦେଲା ସେ ମୋତେ ଠେଲି ଦେଲାରୁ ମୁଁ ତୁମ ଉପରେ ପଡ଼ିଲି । ଏଣୁ ଯେଉଁ ପିଲା ଏ ପିଲାଟାକୁ ପ୍ରଥମେ ଠେଲି ଦେଲା, ତା' ପିଠିରେ ତିନି ଚାରି ଗୋଇଠା ବସେଇଲି । ସେ ସେତିକିରେ ଥଣ୍ଡା ହେଇ ବାଟେ ବାଟେ ଆସିଲା । ଆଉ ଦିନେ ଦିନେ ଯଦି କୌଣସି ପିଲା ସହିତରେ ବାଟରେ କଳିକଜିଆ ହେଲା ମୁଁ ଏକା ତାକୁ ପାରିଲି ନାହିଁ । ତହିଁ ଆରଦିନ ମୁଁ ଓ ଆଉ ଦୁଇ ତିନିଜଣ ପିଲା ମିଶି ତାକୁ ବାଟରେ ବାଡ଼ଉ । ଇମିତି ପ୍ରାୟ ସ୍କୁଲକୁ ଯିବା ଆସିବା ବେଳେ ଦିନେ ଦୁଇଦିନ ଛଡ଼ାରେ କଳି କଜିଆ ଲାଗେ, ମାଡ଼ଗୋଳ ହଉ ।

କିଛିଦିନ ପରେ ମୁଁ ଆଉ ମାଷ୍ଟ୍ରେ ସ୍କୁଲରୁ ଫେରିଲା ପରେ ମାଷ୍ଟ୍ରେ ମୋତେ କିଲ୍ଲା ମଇଦାନକୁ ସାଙ୍ଗରେ ନେଇ ବାହାରିଲେ । ଫୁଟବଲ୍ ମ୍ୟାଚ୍ ମୋତେ ଦେଖେଇବା ଏବଂ ନିଜେ ମଧ୍ୟ ଦେଖିବା ଉଦ୍ଦେଶ୍ୟରେ । ମୁଁ ତାଙ୍କରି ସାଙ୍ଗରେ ଯାଇ ପ୍ରଥମେ କିଲ୍ଲା ମଇଦାନ ଦେଖିଲି ଆଉ ମଧ୍ୟ ଫୁଟବଲ୍ ମ୍ୟାଚ୍ ଦେଖିଲି । କିଲ୍ଲା ମଇଦାନ ଦେଖି ଭାରି ଆଶ୍ଚର୍ଯ୍ୟ ହେଲି । କାରଣ ଏଡ଼େ ବଡ଼ ପଡ଼ିଆ ଆଗରୁ କେଭେ ଦେଖି ନଥିଲି । ଫୁଟବଲ୍ ମ୍ୟାଚ୍ ମଧ୍ୟ ଦେଖି ବିଶେଷ ଆନନ୍ଦ ଅନୁଭବ କଲି । କି ଚମତ୍କାର ଫୁଟବଲ୍ ମ୍ୟାଚ୍ ଦେଖିବାକୁ । ଫୁଟବଲ୍ ମ୍ୟାଚ୍ ଦେଖି ମନ ହେଲା ସେହି ଫୁଟବଲ୍ ପରି ତଳେ ଗଡ଼ି ବୁଲିବାକୁ, ଶୂନ୍ୟେ ଶୂନ୍ୟେ ଉପରକୁ ଉଠିଯିବାକୁ, ଗୋଲ୍ ଭିତରେ ଯାଇ ପଶିବାକୁ କିନ୍ତୁ ଗୋଟାଏ କଥା ଏତେ ପଦାଘାତ (kick) କିଏ ସହିବ ? ଫୁଟବଲ୍ ଖେଳାଳୀମାନଙ୍କୁ ଦେଖିଲେ ମୋର ଭାରି ମନେମନେ ଶ୍ରଦ୍ଧା ଉପୁଜେ । ବାରଂବାର ଦେଖିବାକୁ ମନ ଡ଼ାକେ । ଯେ centre forward position ରେ ଖେଳେ ଆଉ ଯେ back position ରେ ଖେଳେ ତାକୁ ମୋର ବିଶେଷ ଶ୍ରଦ୍ଧା ହୁଏ । ଇମିତି ମ୍ୟାଚ୍ ଦେଖୁ ଦେଖୁ ମୋର କ୍ରମଶଃ ମନ ଡ଼ାକିଲା ମୁଁ କିମିତି football player ହେବି । କିନ୍ତୁ ମୁଁ ତ ଅତି ଛୋଟ ପିଲା । ଦିହରେ ବଳ ନଥାଏ । ସେ ଫୁଟବଲ୍‌କୁ ତ ଗୋଡ଼ରେ ମାରି ପାରୁ ନ ଥାଏ । କ୍ରମଶଃ ବୁଝିଲି ଯେ ସ୍କୁଲ୍ ସ୍କୁଲ୍ ମଧ୍ୟରେ ଫୁଟବଲ୍ ମ୍ୟାଚ୍ ହୁଏ । ଯେଉଁ ସ୍କୁଲ ସବୁଠାରୁ ଭଲ ଖେଳେ, ସମସ୍ତଙ୍କୁ ହରାଏ ସେ କପ୍ ପାଏ, ସିଲଡ଼ ପାଏ । ଖେଳ ଶେଷରେ କପ୍, ସିଲ୍ଡ଼ ବିଜୟୀ ସ୍କୁଲ ପାଇବାର ମଧ୍ୟ ଦେଖିଲି । ପୁଣି ବୁଝି ପାରିଲି ଯେମିତି ସ୍କୁଲ୍ ସ୍କୁଲ୍ ଟିମ୍ ମଧ୍ୟରେ ମ୍ୟାଚ୍ ହୁଏ ସେମିତି ବଡ଼ ବଡ଼ ଟିମ୍ ମଧ୍ୟରେ ମଧ୍ୟ ମ୍ୟାଚ୍ ହୁଏ । ସେଥିରେ ବୟସ୍କ ଲୋକମାନେ ମଧ୍ୟ ଖେଳନ୍ତି, ସେମିତି

ବିଜୟୀ ଦଳ କପ୍, ସିଲ୍ଡ଼ ପାନ୍ତି । ଫୁଟବଲ୍ ମ୍ୟାଚ୍ ଦେଖିବାକୁ ଯାଇ ଯାଇ ଅନେକ କଥା ଫୁଟବଲ୍ ଖେଳ ବିଷୟରେ ବୁଝି ପାରିଲି । ମାଷ୍ଟ୍ରେ ଫୁଟବଲ୍ ମ୍ୟାଚ୍ ଦେଖେଇବା ପାଇଁ ମୋତେ ସାଙ୍ଗରେ ନେଇଗଲେ । ମୋତେ କେଉଁଠି ଏକା ଛାଡ଼ନ୍ତି ନାହିଁ । ସେ ବରାବର ପାଖେ ପାଖେ ରଖିଥାନ୍ତି । ମୋର ମନହୁଏ, ସବୁବେଳେ ମ୍ୟାଚ୍ ଲାଗିଥାନ୍ତା କି । କିଲ୍ଲା ପଢ଼ିଆରୁ ଆସିବାକୁ ମନ ହୁଏନା । ସବୁ ଖେଳ ଛାଡ଼ି କେବଳ କେମିତି ବଲ୍ ଖେଳିବି ମନ ଡ଼ାକିଲା । ମାଷ୍ଟ୍ରେ ଯଦି କୌଣସି ଦିନ କୁଆଡ଼େ ଚାଲି ଯାନ୍ତି ସେଦିନ ଆଉ ମୋର କିଲ୍ଲା ପଢ଼ିଆକୁ ଯିବା ହୁଏନା । ମୁଁ ଘରେ ଟେନିସ୍ ବଲ୍ ନେଇ ଖେଳେ । ବେଳେବେଳେ ଘରୁ ବାହାରି ଆସି ସାହି ଦାଣ୍ଡରେ ସାହି ପିଲାଙ୍କୁ ନେଇ ଦୁଇ ଦଳ ହେଇ ଖେଳୁ ।

ଦିନେ ଗୋଟାଏ ବଡ଼ ଭୀଷଣ ଘଟଣା କରି ବସିଲି । ଦିନେ ସ୍କୁଲରୁ ଫେରି ଟେନିସ୍ ବଲ୍‌କୁ ନେଇ ବାସ୍ତରୀ ମଠକୁ ବାହାରି ଗଲି । ଅନ୍ୟ ପିଲା କେହି ନଥାନ୍ତି । ମୁଁ ଏକା, ପ୍ରଶସ୍ତ ପକ୍କା ଚଟାଣ, ଟେନିସ୍ ବଲ୍ ନେଇ ଫୁଟବଲ୍ ପରି ଗୋଡ଼ରେ ମାରି ଖେଳିବାକୁ ଭଲ ଜାଗା । ସେଠି ଯାଇ ଖେଳିବାକୁ ଆରମ୍ଭ କଲି । ମୁଁ ଯେଉଁ ଆଡ଼କୁ ବଲ୍ ମାରିବାକୁ ଆରମ୍ଭ କଲି ସେଇଆଡ଼େ ଠାକୁରଙ୍କ ଦୁଆର ମୁହଁ ଖୋଲାଥାଏ । ଠାକୁର ହେଲେ, ରାମକୃଷ୍ଣ ମୂର୍ତ୍ତି । ତାଙ୍କର ଉଭୟେ ପାର୍ଶ୍ୱରେ ନିତାଇ ଗୌରଙ୍କ ମୂର୍ତ୍ତି । ବଡ଼ ସୁନ୍ଦର ଦେଖିବାକୁ । ପକ୍କାରେ ତିଆରି ଉଚ୍ଚା ସିଂହାସନ ଉପରେ ଗୋଟିଏ ସୁନ୍ଦର କାଠର ବିମାନ ଭିତରେ ଠାକୁର ସବୁ ସଜ୍ଜା ହେଇଥାନ୍ତି । ସାମନାରେ ଗୋଟିଏ ଅଷ୍ଟ ଉଚ୍ଚା ପଥର ସ୍ତମ୍ଭ ଉପରେ ମୁଗୁନି ପଥରର ଗରୁଡ଼ ଅଧିଷ୍ଠିତ । ସୁନ୍ଦର ପରିବେଶ । ଠାକୁର ଘରର ଦୁଆର ଖୋଲା ହେଲେ ଫୁଲ ଚନ୍ଦନ, ଧୂପର ଗନ୍ଧରେ ଚାରିଆଡ଼ ମହକି ଉଠେ । ବାସ୍ତରୀମଠରେ ଯେତେବେଳେ ଏ ରାଧାକୃଷ୍ଣ ମୂର୍ତ୍ତି ପ୍ରତିଷ୍ଠିତ ହୁଅନ୍ତି ମୁଁ ସେତେବେଳେ ପିଲା, ସେତେବେଳର ମାଛୁଆବଜାରର ବିଖ୍ୟାତ ଧନୀ ଲୋକ ପାଣୁ ସାହୁ ଏ ରାଧାକୃଷ୍ଣ ମୂର୍ତ୍ତିଙ୍କୁ ବୃନ୍ଦାବନରୁ ଆଣି ବାସ୍ତରୀମଠରେ ପ୍ରତିଷ୍ଠା କରିଥିଲେ । ଏଇ ରାଧାକୃଷ୍ଣ ମୂର୍ତ୍ତି ପ୍ରତିଷ୍ଠା ବେଳେ ବାସ୍ତରୀ ମଠ ପ୍ରାଙ୍ଗଣରେ ବିଧିବିଧାନ ଅନୁଯାୟୀ ବିରାଟ ଆୟୋଜନ ହୋଇଥିଲା । ଅଷ୍ଟପ୍ରହରୀ, ହୋମ, ମଉଚ୍ଛବ ସବୁ ବିରାଟ ଧରଣର । ମୁଁ ତ ସେ କେତେଦିନ ସବୁବେଳେ ଯାଇ ବାସ୍ତରୀମଠରେ ହାଜର । ଘରେ ଆଦୌ ରହୁ ନଥିଲି । ବିରାଟ ଜନ ସମାଗମ ହେଉଥିଲା ।

ମୁଁ ତ ସେଦିନ ଯାଇ ବଲ୍ ଖେଳିବା ଆରମ୍ଭ କରିଦେଲି । ଠାକୁରଙ୍କ ଦୁଆର ମୁହଁ ଖୋଲାଥାଏ । ଠାକୁର ଘରର ବାହାରେ ବାଁ ପଟକୁ ଜଣେ ବ୍ରାହ୍ମଣ ବସି ଆଳତିବତୀ ତିଆରି କରୁଥାଆନ୍ତି । ଏଇ ବ୍ରାହ୍ମଣ ହେଉଛନ୍ତି ଠାକୁରଙ୍କ ପୂଜକ । ସେ ମୋତେ ବଲ୍ ଖେଳିବାର ଦେଖି କହିଲେ, ଦେଖ ବାବୁ, ଠାକୁର ଘର ଖୋଲା ଅଛି, ଏଠି ବଲ୍ ଖେଳୁଛ, ବଲ୍ କାଳେ ଠାକୁରଙ୍କ ଦେହରେ ବାଜିବ । ତୁମେ ଏଠି ବଲ୍ ଖେଳନା ।

ବ୍ରାହ୍ମଣ କଥା କିଏ ଶୁଣୁଛି ? ମୁଁ ଦୌଡ଼ାଦୌଡ଼ି କରି ବଲ୍ ଗୋଡ଼ରେ ମାରୁଥାଏ । ଇମିତି ବଲ୍ ମାରୁ ମାରୁ ଥରେ ଗୋଟାଏ ବଲ୍ ମାରି ଦେଲି ଯେ ବଲ୍ ଯାଇ ରାଧାଙ୍କ ଦେହରେ ବାଜି ସେ ଘର ଭିତରେ ରହିଗଲା । ମୁଁ ଭାବିଥିଲି ବଲ୍‌ଟା ପଦାକୁ ବାହାରି ଆସିବ । ପଦାକୁ ବାହାରି ଆସିଥିଲେ ମୁଁ ନେଇ ଦୌଡ଼ି ପଳେଇ ଆସିଥାନ୍ତି । କିନ୍ତୁ ବଲ୍ ତ ଠାକୁରଙ୍କ ଘର ଭିତରେ ରହିଗଲା । ମୁଁ ତଥାପି ଭାବିଲି ଘର ଭିତରେ ପଶି ବଲ୍‌କୁ ନେଇ ପଳେଇ ଆସିବି । ମୁଁ ଦୌଡ଼ିଗଲା ବେଳକୁ ବ୍ରାହ୍ମଣ ବଡ଼ ବଡ଼ ଆଖି କାଢ଼ି ରାଗରେ କହିଲେ, କ'ଣ କହୁଥିଲି ? ଏ କ'ଣ ହେଲା ? ଠାକୁର ମାରା ହେଲେ । ବର୍ତ୍ତମାନ ୨୦୦ ଟଙ୍କା ଦରକାର ହବ । ଠାକୁରଙ୍କୁ ପୁଣି ମାର୍ଜନା କରିବା ପାଇଁ । ଚାଲ, ମୁଁ ତୁମ ବାବାଙ୍କ ପାଖକୁ ଯାଉଛି ।

ମୁଁ ବ୍ରାହ୍ମଣର କଥା ଶୁଣି ଭୟରେ ବଲ୍‌କୁ ଛାଡ଼ି, ବାସ୍ତରୀମଠ ଛାଡ଼ି ଏକା ଦୌଡ଼କେ ଆସି ଘରେ ପହଁଚି କାହାକୁ କିଛି ନ କହି, ଖଟ ଉପରେ ଯାଇ ଲେପ ଘୋଡ଼ି ହେଇ ଶୋଇ ପଡ଼ିଲି । ଆଗରୁ ତ କହିଛି ବିପଦ ଆପଦରେ ମୁଁ ଲେପ ଘୋଡ଼ି ହେଇ ଶୋଇ ପଡ଼େ । ଲେପ-ଦୁର୍ଗ ଥିଲା ମୋର ସବୁଠାରୁ ବଡ଼ ନିରାପଦ ଜାଗା ।

ଲେପ ଭିତରେ ପଶି ଭାବିଲି ୨୦୦ଟଙ୍କା ଲାଗିବ! କି ବିପଦ! ବାବା ଶୁଣିଲେ କ'ଣ କହିବେ? ମା' ଶୁଣିଲେ ତ ଆଗେ ମାଡ଼। ପୁଣି ଭାବିଲି ଠାକୁରଙ୍କ ଦିହରେ ବଲ୍ ବାଜିଲା! କେଡ଼େ ପାପ କଲି! ମୁଁ ଆଉ ବୋଧେ ବଞ୍ଚିବି ନାହିଁ। ମରିଯିବି।

ଏଣୁ ପ୍ରତ୍ୟେକ ମୁହୂର୍ତ୍ତରେ ମନରେ ଭୟ ହଉଥାଏ। ଏଇ ବ୍ରାହ୍ମଣ ଆସିଲେ ବୋଧହୁଏ, କ'ଣ କରିବି? ଛାତିଟା ଭୟରେ ଦାଉଁ ଦାଉଁ ବାଡ଼େଇ ହଉଥାଏ। ପୁଣି ସେଇ ଅବସ୍ଥାରେ ସେଇ ଠାକୁରଙ୍କୁ ମନେ ମନେ ଡ଼ାକୁଥାଏ ପ୍ରଭୁ, ମୋତେ ରକ୍ଷା କର। ବ୍ରାହ୍ମଣ କିମିତି ନ ଆସୁ।

ସତକୁ ସତ ବ୍ରାହ୍ମଣ ଆସିଲା ନାହିଁ କି ବାବା, ମା ଏ ଘଟଣା ଜାଣିଲେ ନାହିଁ। ମୁଁ ରକ୍ଷା ପାଇଗଲି। ବାସ୍ତରୀ ମଠ ବାଟରେ କେତେଦିନ ଯାଏ ଆଉ ଗଲି ନାହିଁ। ଅନ୍ୟ ବାଟ ଦେଇ ସ୍କୁଲକୁ ଗଲି। ବହୁତ ଦିନ ପରେ ବାସ୍ତରୀ ମଠ ବାଟରେ ଯିବା ଆସିବା କଲି। ଦିନେ ବାସ୍ତରୀ ମଠ ବାଟ ଦେଇ ସ୍କୁଲରୁ ଫେରୁଛି ଭାରି ବର୍ଷା ହେଉଥାଏ। ରାସ୍ତାରେ ପାଣିର ସୁଅ ଚାଲିଥାଏ। ମୁଁ ଦେଖିଲି ଯେ ସେଇ ବାସ୍ତରୀ ମଠର ବ୍ରାହ୍ମଣ ମୋ ଆଗେ ଆଗେ ଛତା ଖଣ୍ଡେ ମୁଣ୍ଡରେ ଦେଇ ଚାଲିଛନ୍ତି। ମୋର ତ ରାଗ ଥାଏ। ମୁଁ ପାଣିରେ ଗୋଡ଼ ବାଡ଼େଇ ବାଡ଼େଇ ଚାଲିଲି। ଯେମିତି କି ସେ ବ୍ରାହ୍ମଣ ଲୁଗା ପଟାରେ ଆଉ ତାଙ୍କ ଦିହରେ ପାଣି ପଡ଼ିବ। ସତକୁ ସତ ସେ ବ୍ରାହ୍ମଣଙ୍କ ଉପରେ ପାଣି ପଡ଼ିଲା। ବ୍ରାହ୍ମଣ ଫେରି ପଡ଼ି ମୋତେ ଅନେଇ ଗୋଟାଏ ପାଟି କରି ଧମକ ଦେଲେ। ମୁଁ ତାଙ୍କର ଧମକରେ ପୁଣି ଭଲ ପିଲା ପରି ଚାଲି ଚାଲି ବ୍ରାହ୍ମଣଙ୍କ ପଛେ ପଛେ ଭୟରେ ଘରକୁ ଫେରିଲି। ବ୍ରାହ୍ମଣ ଯେତେବେଳେ ବାସ୍ତରୀ ମଠ ଭିତରେ ପଶିଲା ମୁଁ ନିର୍ଭୟରେ ସେ କେତେବାଟ ଟପି ଘରେ ପଶିଲି।

କିଛିଦିନ ପରେ ଦିନେ ଘରେ ଆଲୋଚନା ଶୁଣିଲି ଆମ ଗାଁର ହରିଶ୍ଚନ୍ଦ୍ର ଦେ ମା'ଙ୍କୁ କହୁଛନ୍ତି ଛବି ଗୁଡ଼ାକ ଚଳାଚଳ ହଉଛନ୍ତି ଆଉ ଇମିତି ଗୋଟାଏ ଧରଣର ସେ ଆଲୁଅ ଆଣିଛି ସବୁଗୁଡ଼ାକ ଏକ ସାଙ୍ଗରେ ଜଳି ଉଠୁଛି, ପୁଣି ଏକ ସାଙ୍ଗରେ ନିଭି ଯାଉଛି। ଯେତେବେଳେ ସେ ଛବିଗୁଡ଼ାକର ଚଳାଚଳ୍ ଦେଖଉଛି ଘରଟାକୁ ପୂରା ଅନ୍ଧାର କରି ଦୁଛି। ଅନ୍ଧାରରେ ସେ ଛବି ସବୁ ଭଲ ଦେଖା ଯାଉଛି। ଆଲୁଅରେ ସେତେ ଭଲ ଦିଶୁ ନାହିଁ। ପୁଣି ଯେତେ ପଛରେ ବସିବ ସେତେ ଭଲ ଦେଖାଯିବ। ସାମନାରେ ବସିଲେ ସେତେ ଭଲ ଦେଖା ଯିବ ନାହିଁ।

ବାବା ମଧ୍ୟ ଏ ଆଲୋଚନାରେ ଭାଗ ନେଇ ହରିଶ୍ଚନ୍ଦ୍ର ଦେଙ୍କ ସହିତରେ ମା'ଙ୍କୁ ବୁଝେଇ କହୁଛନ୍ତି ଯାକୁ "ସିନେମା" ବୋଲି କହୁଛନ୍ତି। ଏ ଗୋଟାଏ ନୂଆ ଜିନିଷ। ଦେଖା ନଥିଲା କି ଶୁଣା ନଥିଲା। ମା ମଧ୍ୟ ଶୁଣି ଆଶ୍ଚର୍ଯ୍ୟ ହେଇ ଉତ୍ତର ଦଉଛନ୍ତି ହଁ ଛବିଗୁଡ଼ାକ ଚାଲବୁଲ କରୁଛନ୍ତି! ମା ପୁଣି ପଚାରୁଛନ୍ତି କଥା କହୁ ନାହାନ୍ତି? ବାବା ଆଉ ହରିଶ୍ଚନ୍ଦ୍ର ଦେ ଉତ୍ତର ଦଉଛନ୍ତି ନା, କଥା କହୁ ନାହାନ୍ତି ଖାଲି ଯିବା ଆସିବା, ଯୁଦ୍ଧ କରିବା, ସେଥିରେ ମଧ୍ୟ ସର୍କସ୍, ମ୍ୟାଜିକ, ସମୁଦ୍ର, ଜାହାଜ ଆହୁରି କେତେ କଣ ଦେଖଉଛି।

ଶେଷରେ ପ୍ରସ୍ତାବ ହେଲା ଦେଖିବାକୁ ଯିବା। ବାବା ଏବଂ ହରିଶ୍ଚନ୍ଦ୍ର ଦେ କହିଲେ ଠିକ୍ ଆମ ଛାପାଖାନାର ଅଳ୍ପ ଦୂରରେ ଗୋଟାଏ ପଡ଼ିଆ ଅଛି, ସେଇଠି ଏ ସବୁ ଦେଖଉଛି। ବାବା ଏବଂ ହରିଶ୍ଚନ୍ଦ୍ର ଦେ ଆମର ଛାପାଖାନା ବୋଲି ଯାହାକୁ କହିଲେ ସେ ହେଲା ପ୍ରିଟିଂପ୍ରେସ୍। ଆମରି ଗାଁର ଗୌରୀଶଙ୍କର ରାୟ ତ ପ୍ରିଣ୍ଟିଂ ପ୍ରେସ୍ ପ୍ରଥମେ ପ୍ରତିଷ୍ଠା କରିଥିଲେ। ଏଣୁ ଆମର ଅଧିକାଂଶ ଗ୍ରାମବାସୀ ପ୍ରାୟ କଥାରେ କଥାରେ କହିଥାନ୍ତି ଆମ ପ୍ରିଣ୍ଟିଂପ୍ରେସ୍, ଆମ ଛାପାଖାନା, ବିଶେଷତଃ ହରିଶ୍ଚନ୍ଦ୍ର ଦେ। କାରଣ ହରିଶ୍ଚନ୍ଦ୍ର ଦେ ରହୁଥିଲେ କଟକର ସେହି ପ୍ରିଣ୍ଟିଂ ପ୍ରେସ୍‌ରେ। ଗୋଟିଏ ବଖରାରେ ଏଇ ହରିଶ୍ଚନ୍ଦ୍ର ଦେଙ୍କୁ ବାବା ଖଣ୍ଡିଏ ପିଅନ ଚାକିରୀରେ ରଖେଇ ଦେଇଥିଲେ। P.W.D. ରେ ଦରମା ମାସିକ ୬ଟଙ୍କା। କଟକରେ ଆଜିକାଲି ଯେଉଁ Dey Hotel ଅଛି, ତାକୁ ପ୍ରଥମେ ଆରମ୍ଭ କରିଥିଲେ ଆମ ଗାଁର ଏଇ ହରିଶ୍ଚନ୍ଦ୍ର ଦେଙ୍କର ସାନଭାଇ ହୃଦୟ ବଲ୍ଲଭ ଦେ। ଏଇ Dey Hotel ପ୍ରଥମେ ଥିଲା ଗୌରୀଶଙ୍କର ପାର୍କ ନିକଟସ୍ଥ ପ୍ରଧାନ ରାସ୍ତାର ଠିକ୍ ଆର ପଟେ। ବର୍ତ୍ତମାନ ଏ Dey Hotel

ଯାଇ ଦରଘା ବଜାରରେ ମ୍ୟୁନିସ୍‌ପାଲିଟିର ଡ଼ାକ୍ତରଖାନାର ପଛପଟେ । ସେତେବେଳେ ଗୌରୀଶଙ୍କର ପାର୍କ ବୋଲି କିଛି ନଥିଲା । ସେଠି ଗୋଟାଏ ବଡ଼ ପୋଖରୀ ଥିଲା ବୋଲି ଶୁଣିଛି । ସେ ପୋଖରୀ ମୁଁ ଦେଖି ନାହିଁ । ମୁଁ ଦେଖିଲା ବେଳକୁ ସେ ପୋଖରୀ ପୋତା ହବା ପାଇଁ ସେଠି ମ୍ୟୁନିସ୍‌ପାଲିଟିର କଚଡ଼ା ଗଦା ହୋଇ ସେ ଗୋଟାଏ ପଡ଼ିଆରେ ପରିଣତ ହେଲାଣି । ସେଇଠି ଏ ସିନେମା ଆସି ତମ୍ବୁ ପକେଇଥାଏ ।

ହରିଶ୍ଚନ୍ଦ୍ର ଦେ ଆମର ଦାଦୀ ସମ୍ପର୍କୀୟ ହେବେ । ଏଣୁ ତାଙ୍କୁ ଆମେ ହରି କାକା ବୋଲି ଡାକୁଥିଲୁ । ସେ ଚମତ୍କାର ରାନ୍ଧି ପାରୁଥିଲେ । ପ୍ରିଣ୍ଟିଂପ୍ରେସ୍‌ରେ ସେତେବେଳେ ଯେତେ ଫିଷ୍ଟ୍ ହଉଥିଲା ସେ ସବୁ ରାନ୍ଧୁ ଥିଲେ । ଆମ ଘରେ ମଧ୍ୟ ଯେତେବେଳେ ଯେଉଁ ଫିଷ୍ଟ ହଉଥିଲା ଏଇ ହରିକାକା ଆସି ରାନ୍ଧୁଥିଲେ । ଯେତେବେଳେ କିଛି ବଡ଼ ଧରଣର ଖାଇବା ପିଇବାର ଆୟୋଜନ ହେଲା, ହରିକାକାଙ୍କୁ ଡ଼ାକ ପଡ଼େ । ହରିକାକା ଇମିତି ମଧ୍ୟ ମଝିରେ ମଝିରେ ଆମ ଘରକୁ ବୁଲିବାକୁ ଆସୁଥିଲେ । ଗପ କରୁଥିଲେ, ବେଳେବେଳେ ଖାଇପିଇ ମଧ୍ୟ ଯାଉଥିଲେ ।

ଆଗରୁ କହିଲି ଯେ ସେତେବେଳେ ଗୌରୀଶଙ୍କର ପାର୍କ୍ ବୋଲି କିଛି ନଥିଲା । ସେ ଗୋଟାଏ ଅପରିଷ୍କାର ପଡ଼ିଆ ଥିଲା । ଆମେମାନେ ସେଇଠିକି ସିନେମା ଦେଖିବାକୁ ବାହାରିଲୁ । ସେତେବେଳେ କଟକରେ ହାତଟଣା ରିକ୍ସା କି ସାଇକେଲ ରିକ୍ସା କିଛି ନଥିଲା । କେବଳ ବଗିଗାଡ଼ି, ଏକ ବଳଦିଆ ଶଗଡ଼, ଦି'ବଳଦିଆ ଶଗଡ଼ ଗାଡ଼ି ଭରସା, ବଗି ଗାଡ଼ିରେ ମଧ୍ୟ ଗୋଟାଏ ଘୋଡ଼ା, କିମ୍ବା ଦୁଇଟା ଲାଗି ଚାଲୁଥିଲା । ଥୋରିଆ ସାହିରେ ସେତେବେଳେ ଲୋକା ମୂଳିଆ ବୋଲି ଜଣେ ଲୋକ ଥିଲା । ମଧ୍ୟବିତ୍ତ ଲୋକ, ତାରି ମଜବୁତ ଦି'ବଳଦିଆ ଶଗଡ଼ ଥିଲା । ତା'ର ବ୍ୟବସାୟ ଥିଲା କେବଳ ଶଗଡ଼ ବୋହିବା । ଆମର ଯେତେବେଳେ କେଉଁଠିକି ଯିବାର ଦରକାର ପଡ଼େ ବଗିଗାଡ଼ି କିମ୍ବା ଶଗଡ଼ରେ ଯାଉଥିଲୁ । ଲୋକା ମୂଳିଆ ମଜବୁତ ଲୋକ, କଳା ମୋଟା ଦିହ । ବଡ଼ ବଡ଼ ନିଶ ହଳେ । ମୋଟା ମୋଟା ବାହୁ । ତାର ଟାଟ ଶଗଡ଼ ଦେଖିବାକୁ ବେଶ୍ ସୁନ୍ଦର ମଧ୍ୟ ଥିଲା ।

ସେଥର ଆମେମାନେ ମା, ମୁଁ ମୋର ଗୋଟିଏ ସାନ ଭଉଣୀ ଶଗଡ଼ରେ ବସି ସିନେମା ଦେଖିବାକୁ ବାହାରିଲୁ । ବାବା ଶଗଡ଼ ସାଙ୍ଗରେ ଚାଲି ଚାଲି ଗଲେ । ସେତେବେଳେ କଟକର ପ୍ରଧାନ ରାସ୍ତା ସବୁ ନାଲି ସଡ଼କ ଥିଲା । ଆମେ ଯାଇ ସିନେମା ନିକଟରେ ପହଁଚିଲୁ । ଶଗଡ଼ ଯାଇ ସିନେମା ନିକଟରେ ପହଁଚିଲା ବେଳକୁ ମୁଁ ଶଗଡ଼ ଭିତରୁ ଅନେଇ ଦେଇ ଖୁସି ହେଇଗଲି । ବିରାଟ ତମ୍ବୁ । ସେ ତମ୍ବୁ ଉପରେ ମାଳେ ବିଜୁଳିବତୀ, ଡ଼ାଇନାମୋର ଶବ୍ଦ । ଏ ସିନେମା କମ୍ପାନୀ ବିଜୁଳି ସରବରାହ ପାଇଁ ତାର ନିଜର ପ୍ରକାଣ୍ଡ ଡ଼ାଇନାମୋ (dynamo) ଆଣିଥାଏ । ଏଣେ ଡ଼ାଇନାମୋର ଶବ୍ଦକୁ ଟପି ଶୁଣାଯାଉଥାଏ ବିଭିନ୍ନ ବାଦ୍ୟ ଯନ୍ତ୍ରର ଐକ୍ୟତାନବାଦନ । ଏ ସିନେମା କମ୍ପାନୀ ତାର ନିଜର ବିଭିନ୍ନ ପ୍ରକାରର ବାୟକ ଓ ବାଦ୍ୟ ଯନ୍ତ୍ର ଆଣିଥାଏ । ଯେମିତି ସର୍କସରେ ବାୟକ ଓ ବାଦ୍ୟ ଯନ୍ତ୍ର ଥାଏ । ଏ ବାଜା ଆହୁରି ସୁନ୍ଦର ଶୁଣିବାକୁ ଲାଗିଲା । ବାବା ଟିକେଟ୍ କରି ଆଣିଲେ । ଏ ସିନେମା ତମ୍ବୁ ଭିତରେ ପୁରୁଷଙ୍କ ପାଇଁ ଆଉ ମହିଳାଙ୍କ ପାଇଁ ଦୁଇଟା ଭିନ୍ନ ଭିନ୍ନ ଜାଗା ଥାଏ । ମା, ସାନ ଭଉଣୀକୁ ନେଇ ମହିଳାଙ୍କ ଆଡ଼େ ବସିଲେ । ବାବା ଏବଂ ମୁଁ ପୁରୁଷଙ୍କ ଆଡ଼େ ତଳେ ବସିଲୁ । ତଳେ ବେଶ୍ ବାଲି ବିଛା ହେଇଥାଏ । ତଳେ ବସିବା ପାଇଁ ଟିକେଟ୍ ବୋଧହୁଏ ଅଣାଏ ପଇସା ଥିଲା । ତଳେ ବସିବା ପାଇଁ ବେଶ୍ ଭଲ ଲାଗିଲା । ବହୁତ ଲୋକ ବସିଥାନ୍ତି । ଏ ହେଲା କଟକ ସହରକୁ ପ୍ରଥମ ସିନେମା ଆସିବା । ବୋଧେ ୧୯୧୬ ମସିହା ହବ, ମୋର ସଠିକ୍ ମନେ ନାହିଁ ।

ସିନେମା ଆରମ୍ଭ ହବାର ଅଳ୍ପ ସମୟ ପୂର୍ବରୁ ବାଜା ବାଲା ସବୁ ତମ୍ବୁ ଭିତରକୁ ଚାଲି ଆସିଲେ । ପର୍ଦ୍ଦା (screen) ସାମନାରେ ଅର୍ଦ୍ଧଚନ୍ଦ୍ରାକାରେ ଦର୍ଶକଙ୍କ ଆଡକୁ ପଛ କରି ବସି ବାଜା ବଜେଇବା ଆରମ୍ଭ କଲେ । ବିରାଟ ଚାରିକଣିଆ ଧଳା କନାର ପର୍ଦ୍ଦା । ବାବା ମୋତେ ବୁଝେଇ ଦେଲେ ସେଇ ପର୍ଦ୍ଦା ଉପରେ ଯା ଖେଳ ଦେଖେଇବାର ଦେଖେଇବ ।

ଘଣ୍ଟି ବାଜିଲା । ତମ୍ବୁ ଭିତର ହଠାତ୍ ଅନ୍ଧାର ହୋଇଗଲା । ସିନେମା ଆରମ୍ଭ ହେଲା । ପର୍ଦ୍ଦା ଉପରେ ଯାହା ଦେଖିଲି ମନ ଯେ କି ଆନନ୍ଦରେ ଭରି ଉଠିଲା । ସେ ଦିନର ଆନନ୍ଦ ଉପଲବ୍ଧିକୁ କାଳି କଲମରେ ବୁଝେଇ ପାରିବିନି । ଥରେ ମନେ ଅଛି କେତେଗୁଡ଼ା ଗୋରା ସୈନ୍ୟ କେତେ ଗୁଡ଼ା କଳା ଘୋଡ଼ାରେ ବସି ସିଗାରେଟ୍ ଲଗେଇ ଲମ୍ବା ଧାଡ଼ିରେ ଜଣକ ପଛେ ଜଣେ ଆମରି ଆଡ଼କୁ ମାଡ଼ି ଆସିବାର ଦେଖିଲି । ମୋର ମନେ ହେଲା ଏମାନେ ମୋତେ ମାଡ଼ି ପକେଇବେ । ମୁଁ ଭୟରେ ବାବାଙ୍କ ପାଖକୁ ଘୁଞ୍ଚିଗଲି । ବାବା ମୋତେ ଠେଲି ଦେଇ କହିଲେ ବୋକା, ସେ କ'ଣ ମାଡ଼ି ପକେଇବ ? ସେ ଗୁରା ଛବି ନା ସତେ କ'ଣ ମଣିଷ ଘୋଡ଼ା ଉପରେ ବସି ଆମ ଆଡକୁ ଆସୁଛନ୍ତି ?

ସତକୁ ସତ ଦେଖିଲି ସେମାନେ ସେହି ପର୍ଦ୍ଦାର ଡ଼ାଆଁଣ ଆଡ଼କୁ ଯାଇ ଗୋଟିକ ପରେ ଗୋଟିଏ କୁଆଡ଼େ ଉଭେଇ ଗଲେ । ଆହୁରି କେତେ କ'ଣ ଦେଖିଲି । ସବୁ ମଣିଷ, ଜୀବଜନ୍ତୁ ପରି କାରବାର । କିନ୍ତୁ କେହି କଥା କହୁ ନାହାନ୍ତି । ସବୁ ଠାରାଠାରି ହେଉଛନ୍ତି । କଥାବାର୍ତ୍ତା ହେଉଛନ୍ତି କିନ୍ତୁ କିଛି ଶୁଣା ଯାଉ ନାହିଁ । ସବୁ ନିର୍ବାକ୍ (silent picture) ଯେତେବେଳେ ସର୍କସ୍ ଦେଖଉଛି, ସେତେବେଳେ ପର୍ଦ୍ଦା ସାମନରେ ବସିଥିବା ବାଜାବାଲାମାନେ ସର୍କସ୍‌ର ବାଜା ବଜଉଛନ୍ତି । ଯେତେବେଳେ କିଛି ନାଚ ଦେଖଉଛି ସେତେବେଳେ ବାଜାବାଲାମାନେ ଠିକ୍ ନାଚର ତାଳେ ତାଳେ ବାଜା ବଜଉଛନ୍ତି । ସୈନ୍ୟମାନଙ୍କର ମାର୍ଚିଂ ବେଳେ ଠିକ୍ ମାର୍ଚିଂର ତାଳେ ତାଳେ ବାଜା ବଜଉଛନ୍ତି । ଯେତେବେଳେ ସିନେମା ଦେଖେଇବାର ଅଧା ସମୟ ହେଲା ସିନେମା ବନ୍ଦ ହୋଇଗଲା । ତମ୍ବୁ ଭିତରେ ପୁଣି ଆଲୁଅ ସବୁ ଜଳି ଉଠିଲା । ଦର୍ଶକମାନେ କେତେକ ବାହାରକୁ ବାହାରି ଗଲେ । ବାଜାବାଲାମାନେ ପୁଣି ସେହି ବିଶ୍ରାମ. ସମୟ ତକ (interval) ବାଜା ବଜେଇବା ଆରମ୍ଭ କଲେ । ଇନ୍‌ଟରଭାଲ୍ ସରିଲା । ପୁଣି ତମ୍ବୁ ଭିତର ଅନ୍ଧାର ହୋଇଗଲା । ସିନେମା ଆରମ୍ଭ ହେଲା । ବାଜା ବନ୍ଦ ହେଲା । ପଛ ଆଡୁ ପର୍ଦ୍ଦା ଉପରେ ଆଲୁଅ ପଡ଼ିଲା । ପୁଣି ବିଭିନ୍ନ ପ୍ରକାରର ଚଳତ୍ ଦୃଶ୍ୟ ଦେଖାଗଲା । ଅନେକ ଲୋକ ଇନ୍‌ଟରଭାଲ୍ ସମୟରେ ଆଲୁଅ ଜଳି ଉଠିବା, ପୁଣି ବାଜା ବାଜିବା ଦେଖି ଖେଳ ଶେଷ ହବା ଭାବି ଭୁଲରେ ଯେ ପଦାକୁ ବାହାରିଗଲେ ଆଉ ଫେରିଲେ ନାହିଁ । ଚଳଚ୍ଚିତ୍ର ମଧ୍ୟରେ ପ୍ରଥମ ମହାଯୁଦ୍ଧର କେତେକ ଖଣ୍ଡ ଚିତ୍ର (cut piece) ଆହୁରି କେତେ କଣ, ଜାହାଜ, ସମୁଦ୍ର, ମରୁଭୂମି, ଏରୋପ୍ଲେନ୍ ଆକାଶରେ ଉଡ଼ିବା ଦେଖିଲି । କେତେକ ମ୍ୟାଜିକ୍ ଆହୁରି କେତେକ ରଙ୍ଗୀନ ଚିତ୍ର, ବେଲୁନ୍ ସାହାଯ୍ୟରେ ଆକାଶରେ ମଣିଷ ଉଡ଼ିବା ଇତ୍ୟାଦି ଦେଖି ମନ ଯେ କି ଆନନ୍ଦରେ ଭରି ଉଠିଲା । ସେ କଥା ଲେଖି ଆଉ କଣ ବୁଝେଇବି ? ସିନେମା ଦେଖିବା ଏଇ ଥରେ ନୁହେଁ ଏଣିକି ପ୍ରତ୍ୟେକ ଦିନ ବାବା ଅଫିସ୍‌ରୁ ଫେରିଲେ ଆମେ ସିନେମାକୁ ବାହାରୁ । ସେଇ ଲୋକା ମୂଳିଆର ଶଗଡ଼ରେ । ଥୋରିଆ ସାହିର ଆମର କେତେକ ପଡୋଶୀଙ୍କୁ ମଧ ବାବା ଆମ ସାଙ୍ଗରେ ନେଇ ସିନେମା ଦେଖେଇ ଆଣିଲେ । ତାଙ୍କର ଟିକେଟ୍ ସବୁ ବାବା ନିଜେ ଖର୍ଚ୍ଚ କରି କିଣି ଆଣନ୍ତି । ଖାଲି ଟିକେଟ୍ ଖର୍ଚ୍ଚ ନୁହେଁ କାହାକୁ ଭୋକ ହେଲାଣି ତ ବାବା ନିଜେ ସେମାନଙ୍କୁ ଖୁଆନ୍ତି କାରଣ ସାଙ୍ଗରେ ଆସିଛନ୍ତି, କାହାରି ଯେମିତି କିଛି ଅସୁବିଧା ନହୁଏ । ବାବା ଯେ କେବଳ ପଡ଼ୋଶୀମାନଙ୍କୁ ଏ ସିନେମା ଦେଖେଇବା ପାଇଁ ସାଙ୍ଗରେ ନେଇ ଯାଉଥିଲେ, ତା ନୁହେଁ । ଅଧିକାଂଶ ପର୍ବପର୍ବାଣୀରେ ମଧ ବାବା ପଡ଼ୋଶୀମାନଙ୍କୁ ସାଙ୍ଗରେ ନେଇ ଯାଉଥିଲେ ଦେଖେଇବା ପାଇଁ କାରଣ ବାବା କହନ୍ତି ସେମାନେ ଗରିବ ଲୋକ ସେମାନଙ୍କୁ ନେଇ ମୁଁ ନଦେଖେଇଲେ ସେମାନଙ୍କର ବଳ କାହିଁ ସେମାନେ ଦେଖିବେ ? ପର୍ବପର୍ବାଣି ଭିତରେ ଯେମିତି ଶିବରାତ୍ରି ମେଳା, ପୁରୀ ରଥଯାତ୍ରା, କଟକରେ ଧବଳେଶ୍ୱରଙ୍କର ବଡ଼ ଓଷା, ଚନ୍ଦ୍ରଭାଗ ମେଳା, ଭୁବନେଶ୍ୱରରେ ଅଶୋକାଷ୍ଟମୀ ଇତ୍ୟାଦି । ପଡ଼ୋଶୀମାନେ ମଧ ବାବାଙ୍କ ସହିତରେ ଯିବାକୁ ନିରାପଦ ମନେ କରନ୍ତି । ତାଛଡ଼ା ସବୁ ଖର୍ଚ୍ଚ ବାବାଙ୍କ ଉପରେ, ଯିବା ଆସିବା, ଖାଇବା, ରହିବା ସବୁ ବିଷୟରେ । ଆମେମାନେ ଯଦି କୁଆଡ଼େ ମେଳା ମଉଛବରେ ବାହାରିଲୁ

ଆଉ ପଡ଼ୋଶୀ ଜାଣିପାରିଲେ, ବାହାରିଲେ ସାଙ୍ଗରେ କାରଣ ହେଲା ଆମ ସାହି ବାବୁ ଯାଉଛନ୍ତି। ସାହି ବାବୁ କେତେକ କହନ୍ତି, କେତେକ ବରଜୁ ବାବୁ କହନ୍ତି। ପ୍ରତ୍ୟେକ ବର୍ଷ ଶିବରାତ୍ରିରେ ଆମେ ଗୋଟାଏ ଗୋଟାଏ ଜାଗାକୁ ଯାଉ, ଜାଗରମେଳା ଦେଖିବା ପାଇଁ। ଯେମିତି ମହାବିନାୟକ, କପିଳାସ, ପୁରୀର ଲୋକନାଥ, କଟକର ପରମହଂସ ପୀଠ, ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିରରେ ଜାଗରମେଳା ଇତ୍ୟାଦି। ଇମିତି ମେଳା ମଉଛବରେ ଯିବା ଆସିବାରେ ମୋର ଗୋଟାଏ ଘଟଣା ମନେପଡୁଛି ଥରେ ପୁରୀର ରଥଯାତ୍ରା ଦେଖିବା ପାଇଁ ଆମେମାନେ ବାହାରିଛୁ। ସାଙ୍ଗରେ କେତେଜଣ ପଡ଼ୋଶୀ ମଧ ଅଛନ୍ତି। ହଠାତ୍ କଟକ ରେଲ୍ ଷ୍ଟେସନ୍‌ର ପ୍ଲାଟଫର୍ମରେ ଥୋରିଆ ସାହିର ନିକଟବର୍ତ୍ତୀ ପାଣ ସାହିର ଜଣେ ମାଇପି ନାଁ କାଳିଆ ମା ଦେଖିଲା ବାବା ପୁରୀ ଯାଉଛନ୍ତି। ସେ ଭିଡ଼ରେ ଟିକେଟ୍ କରି ନପାରି, ପ୍ଲାଟଫର୍ମରେ ହତାଶ ହେଇ ଠିଆ ହେଇଥିଲା। ଯେମିତି ବାବାଙ୍କୁ ଦେଖିଛି, ତା ମନରେ ଗୋଟାଏ ସାହସ ହେଇଗଲା ଯେ ବରଜୁ ବାବୁ ଯାଉଛନ୍ତି ତାଙ୍କୁ କହିଲେ ସେ ଟିକେଟ୍ କରିଦେବେ। ଏଣୁ ବାବାଙ୍କ ପାଖକୁ ଆସି ଦୁଃଖରେ ସବୁ କଥା ଜଣେଇଲାରୁ ବାବା ତାର ଟିକେଟ୍ କରି ଆଣିଲେ। କାଳିଆ ମା ଆମରି ଡ଼ବାରେ ଉଠିଲେ, ଆମେମାନେ ଯାଇ ପୁରୀରେ ପହଁଚିଲୁ। ସଞ୍ଜ ଗଡ଼ି ଯାଇଥାଏ। ସେତେବେଳର ପୁରୀ ଷ୍ଟେସନ୍ ଆଜିକାଲି ପରି ତ ନଥିଲା କିମ୍ବା ପୁରୀ ସହର ଆଜି କାଲିର ପୁରୀ ସହର ପରି ନଥିଲା। ସେଥିରେ ପୁଣି ସେ ଦିନ ଭଲ ବର୍ଷା ଅଶ୍ରାଏ ହେଇ ଯାଇଥାଏ। ସେତେବେଳେ ପୁରୀ ବଡ଼ ଦାଣ୍ଡରେ ନାଳି ମାଟି, କାଦୁଅ ପଚପଚ, ବଡ଼ଦାଣ୍ଡ କଡ଼ର ଦୋକାନର ଯେତିକି ଆଲୁଅ ସେତିକି। ବିଜୁଳିବତୀର ନାଁ ଗନ୍ଧ ନଥିଲା। ଜାଗା ଜାଗା ଅନ୍ଧାର, ମୁହଁକୁ ମୁହଁ ଦିଶୁ ନାହିଁ। ଆମରି ପରି କେତେ ଯାତ୍ରୀ ସେହି ଅନ୍ଧାରରେ ଚାଲିଥାନ୍ତି। ବାବା ମୋର ହାତଧରି ଚାଲିଥାନ୍ତି। ମୁଁ ଶୁଣିଲି ଜଣେ ବଙ୍ଗାଳୀ ଯାତ୍ରୀ କହି କହି ଚାଲିଥାଏ ଠାକୁର, ଏ ଦେଶେ ଆଛ, ଚାଲ ସିଦ୍ଧ ଖାଛ, ଆମାଦେରି ଦେଶେ ଚଲୁନ, ଲୁଚି ଭେଜେ ଖାଓୟାବ ଅର୍ଥାତ ଠାକୁରେ ଏ ଦେଶରେ ରହି ଚାଉଳ ସିଝା ଖାଉଛ। ଆମ ଦେଶକୁ ଗଲେ, ଲୁଚି ଭାଜି ଖୋଇବି। ସେ କଥା ମୁଁ ଏ ପର୍ଯ୍ୟନ୍ତ ଭୁଲି ପାରି ନାହିଁ। ବାବା, ମା, ମୁଁ ଚାଲିଥାଉ। ସାନ ଭଉଣୀକୁ ମା କାଖେଇ ଚାଲିଥାନ୍ତି। ପଡ଼ୋଶୀମାନେ ସାଙ୍ଗରେ ଚାଲିଥାନ୍ତି। କାଳିଆ ମା ଆମ ପଛେ ପଛେ ଚାଲିଥାଏ। ଆମେମାନେ ଯାଇ ଆମର ଗାଁର ଜଣେ ପୁରୋହିତ ଭଗବତୀ ଚରଣ ଚକ୍ରବର୍ତ୍ତୀ ପୁରୀରେ ଚାକିରୀ କରୁଥିଲେ। ସେ ହେରାଗୋହିରି ସାହିରେ ଖଣ୍ଡିଏ ନିଜର ଘର କରି ରହିଥାନ୍ତି। ଆମେମାନେ ସମସ୍ତେ ତାଙ୍କରି ଘରେ ପଶିଲୁ। କାଳିଆ ମା ବାହାରେ ବସିଲା। ଚକ୍ରବର୍ତ୍ତୀ ମହାଶୟ ଭାରି ଅମାୟିକ ଲୋକ, ଭାରି ଖର୍ଚ୍ଚୀ, ଆମୋଦି ଉଚ୍ଛମିଜାଜୀ ଲୋକ, କୁଣିଆ ମଇତର ତାଙ୍କ ଘରକୁ ଆସିଲେ ସେ ଭାରି ଖୁସି ହୁଅନ୍ତି। ଆମର ସମସ୍ତଙ୍କ ପାଇଁ ତାଙ୍କ ଘରେ ରୋଷେଇ ହେଲା। ବାବା କାଳିଆ ମା ପାଇଁ ମଧ ରୋଷେଇ କରିବାକୁ କହିଲେ।

ବାବାଙ୍କର ଇଛା ସେ ଯେତେବେଳେ ଆମ ସାଙ୍ଗରେ ଆସିଛି, ସେ ଆଉ କୁଆଡ଼େ ଖାଇବା ପାଇଁ ଯିବ? ଅଲଗା ବା ଖାଇବ କାହିଁକି? ଏଣୁ କାଳିଆ ମା ଆମ ସାଙ୍ଗରେ ବରାବର ରହିଲା। ତହିଁ ଆରଦିନ ପୁରୀର ରଥଯାତ୍ରା। ସେହି ମୋର ପ୍ରଥମ ରଥଯାତ୍ରା ଦେଖିବା। ତା'ପୂର୍ବରୁ ମୁଁ କେଭେ ଏତେ ଲୋକ ଏକତ୍ରିତ ହବା ଦେଖି ନଥିଲି। ବାବା, ମା, ମୁଁ, ସାନ ଭଉଣୀ, ପଡ଼ୋଶୀ ବଡ଼ଦାଣ୍ଡର ଗୋଟାଏ କୋଠା ଉପରେ ରହି ଦେଖିଲୁ। କାଳିଆ ମା ସେହି କୋଠା ନିକଟରେ ତଳେ ବଡ଼ଦାଣ୍ଡ କଡ଼ରେ ରହି ଦେଖିଲା। ଯୁଆଡ଼େ ଅନେଇଲି ଖାଲି ମଣିଷ। ସମସ୍ତଙ୍କର ଲକ୍ଷ୍ୟ ଜଗନ୍ନାଥଙ୍କର ରଥଯାତ୍ରା ଦେଖିବେ। ସେତେବେଳେ ମୋର ବଡ଼ ଭିଣେଇ ପୁରୀ ଅଦାଲତରେ ଚାକିରୀ କରୁଥିଲେ। ବଡ଼ଭିଣେଇ, ବଡ଼ଭଉଣୀ ପୁରୀରେ ମାର୍କେଟ ନିକଟରେ ଭଡ଼ା ଘର ନେଇ ରହୁଥିଲେ। ଆମେ ସମସ୍ତେ ବଡ଼ ଭିଣେଇଙ୍କ ଘରକୁ ଯାଇଥିଲୁ। ମୁଁ ମୋର ଏକମାତ୍ର ଭାଣିଜାକୁ ବଡ଼ଭଉଣୀଙ୍କଠାରୁ ରଥଯାତ୍ରା ଦେଖେଇବା ପାଇଁ ନେଇ ଆସିଥିଲି। ମୁଁ ତାକୁ କାଖେଇଥାଏ। ସେଥର ପ୍ରଚଣ୍ଡ ଖରା ହେଇଥାଏ। ଯାତ୍ରୀମାନେ ଖରାରେ ଆଉଟି ହେଇ ଯାଉଥାନ୍ତି। ତଥାପି

ଯେତେ କଷ୍ଟ ଭୋଗନ୍ତୁ ପଛକେ ରଥାରୂଢ଼ ଜଗନ୍ନାଥଙ୍କୁ ଦେଖିବେ, କି ଆନନ୍ଦ! କି କୋଳାହଳ! କିନ୍ତୁ ସେତେବେଳେ ଆଜିକାଲି ପରି ରେଡ଼ିଓ ମାଧମରେ ରଥଯାତ୍ରାର ଧାରା ବିବରଣୀ ପ୍ରଚାର ହେଉ ନଥିଲା କି କଟକ ରେଡ଼ିଓ ଷ୍ଟେସନ୍ ସ୍ଥାପିତ ହୋଇ ନଥିଲା। ସେତେବେଳେ ପୁରୀର ରଥଯାତ୍ରୀଙ୍କୁ କଲେରା ପ୍ରତିଷେଧକ ଟୀକା ମଧ ଦିଆ ଯାଉ ନଥିଲା। ଏଣୁ ଅନେକ ଯାତ୍ରୀଙ୍କର ପୁରୀ ଧାମରେ ମହାପ୍ରୟାଣ ଘଟୁଥିଲା। ମୁଁ ଦେଖିଛି ଠାକୁରେ ଏଣେ ରଥରେ ବସି ମାଉସୀମା ଘରକୁ ବିଜେ ହେଲାବେଳେ ପୁରୀ ମ୍ୟୁନିସିପାଲିଟିର ମେହେନ୍ତରମାନେ ମୁର୍ଦ୍ଦାର ଗୋଟାଏ ଗୋଟାଏ ପିଠିରେ ଲାଉ କରି ଚାଲିଛନ୍ତି। କେତେକ ମ୍ୟୁନିସିପାଲିଟିର ମୁର୍ଦ୍ଦାର ବୁହା ଗାଡ଼ିରେ ମୁର୍ଦ୍ଦାର ପକେଇ ଚାଲିଛନ୍ତି। ସେତେବେଳେ ପୁରୀରେ ପାନୀୟ ଜଳର ବ୍ୟବସ୍ଥା କିଛି ନଥିଲା। ସେଇ କୂଅ ପାଣି ଲୋକେ ପିଉଥିଲେ। ପୁରୀ ସହରରେ ନଳକୂପ (tube well) ନଥିଲା। ରାସ୍ତାଘାଟ ଗଳିକନ୍ଦି ପୁରୀ ସହରର କି ଅପରିଷ୍କାର ଥିଲା! ପୁରୀର ମ୍ୟୁନିସିପାଲିଟି ତାଙ୍କ ପାରୁ ପର୍ଯ୍ୟନ୍ତ ଯତ୍ନ ନେଉଥିଲେ। ତଥାପି ଅପରିଚ୍ଛନ୍ନତା, ଯାତ୍ରୀଙ୍କର ମୃତ୍ୟୁ ସଂଖ୍ୟା ବଳେଇ ପଡୁଥିଲା। ପୁରୀ ସହରର ସେତେବେଳର ଅବସ୍ଥା ବର୍ଣ୍ଣନା କରିବାକୁ ବସିଲେ ସ୍ୱତନ୍ତ୍ର ଖଣ୍ଡିଏ ବହି ହବ।

ସେଥର ରଥଯାତ୍ରା ଦେଖିଲୁ। କି ଚମତ୍କାର ଦୃଶ୍ୟ! ବାଜା, କୀର୍ତ୍ତନ, ହୁଳହୁଳିର ଶବ୍ଦରେ ପୁରୀ ସହର ଉଛୁଳି ପଡୁଥାଏ। ଏ ଦୃଶ୍ୟରେ ଅନ୍ତରରେ କି ଅନିର୍ବଚନୀୟ ଆନନ୍ଦ ଭରି ଉଠିଲା। ତାକୁ ଲେଖି ବୁଝେଇବା ଦୁଃସାଧ୍ୟ। ଭକ୍ତିରେ ମୁଣ୍ଡ ନଇଁ ପଡ଼ିଲା। ମୋର ସେ ସାନ ଭାଣିଜୀଟି ରଥ ଚାଲିଲା ବେଳେ ସମସ୍ତେ ହୁଳହୁଳି ପକେଇବାର ଦେଖି ସେ ମଧ ହୁଳହୁଳି ପକେଇଲା। ମୁଁ ଆଶ୍ଚର୍ଯ୍ୟ ହେଇଗଲି। ସେଥର ରଥଯାତ୍ରା ପରେ ଦିନେ ଦୁଇଦିନ ପୁରୀରେ ରହି ସମସ୍ତେ କଟକ ଚାଲି ଆସିଲୁ। ସେଇ ରଥ ଯାତ୍ରା ଦେଖି ଆସିବା ପରଠୁଁ ଅନ୍ୟ ସମୟରେ ଆମେ ଆଉ ଯୁଆଡ଼େ ବାହାରିଲୁ ଯେଉଁ ପଡ଼ୋଶୀ ଆମ ସାଙ୍ଗରେ ଯା'ନ୍ତୁ ପଛେ କାଳିଆ ମା ନିଶ୍ଚୟ ଆମ ସାଙ୍ଗରେ ଯିବ। ଏଇ କାଳିଆ ମା'ର ସଂକ୍ଷିପ୍ତ ବିବରଣୀ ଏହିଠାରେ କହି ରଖେ। ଆଗରୁ କହିଛି କାଳିଆ ମା'ର ଘର ହେଉଛି ଥୋରିଆ ସାହି ନିକଟସ୍ଥ ପାଣ ସାହିରେ। ସେ ସାହିରେ କାଳିଆ ମା ଘର ଧନୀ ଘର। ତା'ର ସଂସାରରେ ସ୍ୱାମୀ, ପୁଅ, ବୋହୂ, ଝିଅ, ନାତି, ନାତୁଣୀ ସମସ୍ତେ ଥାନ୍ତି। ତାର ନିଜର ଖଣ୍ଡେ ସୁନ୍ଦର ବଗି ଗାଡ଼ିଥାଏ। ତା'ର ସ୍ୱାମୀ ସେତେବେଳେ କଟକ ସହରରେ ନିଜର ବଗି ଗାଡ଼ି ଚଳେଇ ଭଲ ପଇସା ଉପାର୍ଜନ କରୁଥାଏ। ପୁଣି ସ୍ୱାମୀ ବଗି ଗାଡ଼ି ଚଳେଇ ଥକା ହେଇଗଲେ ପୁଅ କାଳିଆ ବଗି ଚଲାଏ। ପୁଣି ବେଳେବେଳେ ବାପ, ପୁଅ ଉଭୟେ ପର୍ବପର୍ବାଣୀରେ କଟକ ସହରରେ ବାଜା ବଜେଇ ଯା'ନ୍ତି। କାଳିଆ ମା'ର ଡ୍ରମ୍ ବାଜା, ବିଗୁଲ ଥିଲା। ତା'ଛଡ଼ା ପାଣ ସାହିରେ ଦେଡି, ମହାଜନୀ ଥିଲା। ଏଇ କାଳିଆ ମା ପରେ ମୋର ମହାପ୍ରସାଦିଆ ଧରମ ମା ହେଇଥିଲା। ମୋର ନିଜର ମା'ଙ୍କ ଠାରୁ ବଳି ମୋ ପ୍ରତି ତା'ର ସ୍ନେହ ଶ୍ରଦ୍ଧା ଥିଲା। ମୋର ଜନ୍ମଦିନରେ, ଦଶହରା ପର୍ବରେ କାଳିଆ ମା ମୋ ପାଇଁ ଚମତ୍କାର ଧୋତି, ଚଦର, ପୁଣି ମିଠା ଆଣେ। ଆମ ଘରେ ମଧ ମୋର ଜନ୍ମଦିନରେ କାଳିଆ ମା'କୁ ଅନ୍ୟାନ୍ୟ ବନ୍ଧୁବାନ୍ଧବଙ୍କ ପରି ନିମନ୍ତ୍ରଣ ହୁଏ। କାଳିଆ ମା ଆସେ, ଖାଏ ଖୁସିରେ ଯାଏ। ପୁଣି ଦଶହରା ପର୍ବରେ ଆମ ଆଡୁ କାଳିଆ ମା'କୁ ତା'ର ପିନ୍ଧିବା ଭଳି ଭଲ ଶାଢି ଦିଆ ହୁଏ। ଗୋଟାଏ କଥା ଲେଖିବାକୁ ଭୁଲି ଯାଇଛି। କାଳିଆ ମା'ର ନିଜର ଗୋଟାଏ ବ୍ୟବସାୟ ଥିଲା। କାଳିଆ ମା ପରିବା ବିକେ। ନିଜ ମୁଣ୍ଡରେ ଗୋଟାଏ ଟୋକେଇରେ କେତେକ ପରିବା ନେଇ କଟକ ସହରରେ ସାହି ସାହି ବୁଲି ପରିବା ବିକେ। ଥରେ ମୋର ମନେ ଅଛି ମୁଁ ପିଲାଙ୍କ ସାଙ୍ଗରେ ମାଛୁଆ ବଜାର ବାଟେ ସ୍କୁଲରୁ ଦିନ ୧୧ଟା ବେଳେ ଘରକୁ ଫେରୁଛି। କାରଣ ସେତେବେଳେ ସକାଳୁଆ ସ୍କୁଲ ହଉଥାଏ। କାଳିଆ ମା ଗୋଟାଏ ଟୋକେଇରେ ବୋଝେ ପରିବା ମୁଣ୍ଡେଇ ବଣିଆ ସାହି ଗଳି ଭିତରୁ ବାହାରି ପଡ଼ି ମୋତେ ହଠାତ୍ ଦେଖି ପକେଇ ଆନନ୍ଦରେ ଡ଼ାକି ଦେଲା ବାପା କିରେ? କାଳିଆ ମା ସହିତରେ ମୁଁ କଥାବାର୍ତ୍ତା ହେଇ ଘରକୁ ଆସିଲା ବେଳେ ପିଲାଏ ମୋତେ ପଚାରିଲେ ସେ କିଏ କିରେ? ମୁଁ କହିଲି ସେ ମୋର ଧରମ ମା।

ପିଲାଏ କହିଲେ ସେ ତ ପାଣ ସାହିର ପାଲୁଣୀଟାଏ ହବ କି କ'ଣ? ମୁଁ କହିଲି ହଁ। ପିଲାଏ ସେଇଠୁଁ ମୋତେ ଥଟ୍ଟା କଲେ ହଇରେ, ସେ ପାଲୁଣୀଟା ତୋର ଧରମ ମା। ଛିଃ ଛିଃ। ମୋର ସାଙ୍ଗ ପିଲାଏ ଯେଉଁମାନେ ଏ କଥା ଜାଣିଲେ, ସେମାନେ ମୋତେ କେତେଦିନ ଯାଏ ଥଟ୍ଟା କଲେ ସେ ପାଲୁଣୀ ପୁଅ, ତାକୁ ଛୁଁଅନା।

କାଳିଆ ମା କେମିତି ମୋର ଧରମ ମା ହେଲା ସେ ଘଟଣା ପରେ ବର୍ଣ୍ଣନା କରିବି। କାଳିଆ ମା ଜାତିରେ ପାଲୁଣୀ ହେଲେ କ'ଣ ହେଲା? ସେ ମୋର ମା, ପୁଣ୍ୟଶ୍ଳୋକା ପ୍ରାତଃସ୍ମରଣୀୟା, ନମସ୍ୟା।

ଏଇ ପ୍ରସଙ୍ଗରେ ମୋର ଆଉ ଗୋଟିଏ ଧରମ ମା'ର କଥା କହି ରଖେ। ମା'ଙ୍କଠାରୁ ଶୁଣିଛି ମୁଁ ଯେତେବେଳେ ଜନ୍ମ ହୁଏ ସେତେବେଳେ ମା'ଙ୍କର କ୍ଷୀର ନଥିଲା। ମା'ର କ୍ଷୀର ନଖାଇଲେ ବଞ୍ଚିବି କିମିତି? ମୁଁ ଜନ୍ମ ହବା ବେଳେ ଆମ ସାହିର ଅନେକ ପଡ଼ିଶା ଘରର ମାଇପିମାନେ ଆସିଥିଲେ ଦେଖିବା ପାଇଁ। ତାଙ୍କ ଭିତରେ ଜଣେ ମାଇପି ଆସିଥିଲା ତା'ର ନାମ ଦୁଲୀ ଦେଈ। ମୋର ଜନ୍ମର କେତେ ମାସ ଆଗରୁ ତା'ର ଗୋଟିଏ ଝିଅ ହେଇଥାଏ। ସେ ଝିଅଟି ତା'ର କ୍ଷୀର ଖାଉଥିଲା। ସେ ଝିଅ କ୍ଷୀର ଖାଇ ମଧ ଆହୁରି କ୍ଷୀର ବଳେ। ଏଣୁ ଦୁଲୀ ଦେଈ ମୋତେ କ୍ଷୀର ଖୋଇବାକୁ ଆପେ ରାଜି ହେଲା। ମୁଁ ଅନେକଦିନ ଦୁଲୀ ଦେଈର କ୍ଷୀର ଖାଇ ବଢ଼ିଛି। ମୋର ହେତୁ ହେଲା ବେଳକୁ ମୁଁ ଦୁଲୀ ଦେଈକୁ ଦେଖିଛି। ସେ ପ୍ରତ୍ୟେକ ଦିନ ଆମ ଘରକୁ ଯେମିତି ହେଲେ ଥରେ ଆସି ମୋତେ କୋଳରେ ନେଇ ବସିବ ନିଜର ମା ପରି ସ୍ନେହ, ଶ୍ରଦ୍ଧା। ମୁଁ ତାକୁ ଦୁଲୀ ମାଉସୀ ବୋଲି ଡ଼ାକିଲି। ଦୁଲୀ ମାଉସୀକୁ ଯାହା ଦେଖିଛି ବେଶ୍ ଶାନ୍ତିମୟୀ, ନିରାଡ଼ମ୍ବରା, ସରଳା। ଦୁଲୀ ମାଉସୀର ଯେତେବେଳେ ପରଲୋକ ପ୍ରାପ୍ତ ହୁଏ ମୁଁ ଗାଧେଇଛି, ପାଳିଛି। ତା'ର ଶୁଦ୍ଧିକ୍ରିୟାକୁ ବେଭାର ମଧ ଦିଆ ହେଇଛି। ଦୁଲୀ ମାଉସୀର ଦି'ପୁଅ, ଶ୍ୟାମ ସାହୁ, ଦ୍ୱିଜ ସାହୁ। ଶ୍ୟାମ କୁଆଡ଼େ ଘର ଛାଡ଼ି ପଳେଇଲା। 'ତା'ପରେ ଦ୍ୱିଜ ହୁଏ ଘରର ମାଲିକ। ଏଣୁ ଦୁଲୀ ମାଉସୀର ପୁଅ ଦ୍ୱିଜ ସାହୁ ହେଲା ମୋର ବଡ଼ଭାଇ ପରି। ତାକୁ ମୁଁ ଡ଼ାକେ ଦିଜୁଆ ଭାଇ। ଦିଜୁଆ ଭାଇ ବାହା ହେଲା। ପୂର୍ବେ ଯେଉଁ ମୋର ବାଲ୍ୟବନ୍ଧୁ ଲୋକନାଥ ରାଉତ କଥା ଲେଖିଛି, ତାରି ବଡ଼ ଭଉଣୀକୁ ନାଁ ଜେମା ଦେଈ। ଥୋରିଆ ସାହିରେ ମୁଁ ଦ୍ୱିଜ ସାହୁ, ଜେମା ଦେଈକୁ ବରାବର ବଡ଼ଭାଇ, ବଡ଼ଭାଉଜର ସମ୍ମାନ ଦେଇ ଚଳି ଆସିଛି। ସେମାନେ ମଧ ମୋତେ ନିଜର ବଡ଼ଭାଇ, ଭାଉଜ ପରି ବ୍ୟବହାର କରିଛନ୍ତି।

ସେତେବେଳର କଟକ ସହରରେ ପ୍ରଥମ ସିନେମା ଆସିବାର ଘଟଣା ଲେଖୁ ଲେଖୁ ଅନେକ କଥାର ଅବତାରଣା କରି ବସିଲି। ବାବାଙ୍କ ପାଇଁ ଅନେକ ଅସହାୟ ପଡୋଶୀ ଲୋକ ଯାଇ ସିନେମା ଦେଖି ଆସିଲେ। ଆମମାନଙ୍କଠାରୁ ସିନେମାର କଥା ଶୁଣି ଥୋରିଆସାହିର ଅନେକ ଅବସ୍ଥାପନ୍ନ ଲୋକେ ଯାଇ ସିନେମା ଦେଖି ଆସିଲେ। କଟକ ସହରରେ ସେତେବେଳେ ସିନେମା ଲାଗି ଗୋଟାଏ ଚାଞ୍ଚଲ୍ୟ ସୃଷ୍ଟି ହେଇଗଲା। ସମସ୍ତଙ୍କ ମୁହଁରେ ସେହି ସିନେମା କଥା। ମୋର ମା'ତ ସିନେମା ଦେଖି ଖାଲି ଦୁଃଖ କରି କହିଲେ ସବୁ ତ ମଣିଷ ପରି ଖାଲି କଥା କୁହନ୍ତେ କି, କି ଆଶ୍ଚର୍ଯ୍ୟ ଜିନିଷ।। ଏ ସିନେମା ଦେଖିବା ପାଇଁ କଟକ ସହରର ବାହାରୁ ଲୋକେ ମଧ ଆସି ଗହଳି କଲେ। ଯା ହଉ। ସେ ଥରକ ସିନେମା କଟକ ଛାଡ଼ି ଚାଲିଗଲା। ପୁଣି କିଛି ଦିନ ପରେ ଆଉ ଗୋଟାଏ ସିନେମା କମ୍ପାନୀ ଆସି ଆସ୍ଥାନ ଜମେଇଲା। ଯେଉଁ ଜାଗାରେ ପ୍ରଥମ ସିନେମା କମ୍ପାନୀ ଆସି ସିନେମା ଦେଖଉଥିଲା, ଯାର ଗୋଟାଏ ବିଶେଷତ୍ୱ ଥିଲା ଯେ ଯେଉଁ ପର୍ଦ୍ଦାରେ ସିନେମା ଦେଖା ଯାଏ ତା'ର ଗୋଟାଏ ପାଖରେ ପୁରୁଷ ବସି ଦେଖନ୍ତି, ଠିକ୍ ତା'ର ବିପରୀତ ପାଖରେ ମହିଳାମାନେ ବସି ଦେଖନ୍ତି। ଏଇ ଦ୍ୱିତୀୟ ବାର ଯେଉଁ ସିନେମା ଆସିଲା ସେଥିରେ ଆମେମାନେ ଯୀଶୁଖ୍ରୀଷ୍ଟଙ୍କ ଜୀବନୀ, ସେକସ୍‌ପିୟରଙ୍କ ଲିଖିତ ନାଟକ "ମରଚ୍ୟାଣ୍ଟ ଅଫ୍ ଭେନିସ୍" ପୂର୍ଣ୍ଣାଙ୍ଗ ନାଟକ ଦେଖିଲୁ। ଆହୁରି ଅନେକ ପ୍ରକାରର ଚଳଚିତ୍ର ଦେଖିଲୁ। ସବୁ ନିର୍ବାକ୍ ଚିତ୍ର, ପୂର୍ବ

ପରି ସେମିତି ଲୋକ ଗହଳି । ଆଲୋଚନା, ଚାଞ୍ଚଲ୍ୟ, କଟକ ସହରରେ ବ୍ୟାପିଲା । ସେ ମଧ କେତେଦିନ ପରେ ଚାଲିଗଲା ।

ମୋର ଏଥି ମଧରେ କ୍ଲାସ୍ ପ୍ରମୋସନ୍ ହେଲା । ମୁଁ କିଛି ବୁଝି ନଥିଲି । ପ୍ରମୋସନ୍ କ'ଣ? କ୍ଲାସରେ ଆସି ହେଡ୍‌ମାଷ୍ଟର ନିଜେ ନାଁ ଡ଼ାକି ଜଣେଇ ଦେଇଗଲେ ଯେଉଁମାନେ ପ୍ରମୋସନ୍ ପାଇଲେ । ମୁଁ ମୋର ନାଁ ଶୁଣିଲି । ପ୍ରମୋସନ୍ ଡ଼କା ସରିଲା ପରେ ଯେଉଁମାନେ ପ୍ରମୋସନ୍ ପାଇଲେ ଆନନ୍ଦରେ ପାଟିତୁଣ୍ଡ ନାଚକୁଦ କରିଗଲେ । ମୁଁ ମଧ କିଛି ନବୁଝି ଆନନ୍ଦରେ କୁଦା ମାରି ଆସିଲି । ସେଦିନ କାହିଁକି ଜଣେ ଚାକର ସ୍କୁଲକୁ ଯାଇଥିଲା । ସେ ମୋତେ ସାଙ୍ଗରେ ନେଇ ଘରକୁ ଆସିଲା । ଥୋରିଆ ସାହିରେ ଆମ ଘରର ଅଳ୍ପ ଦୂରରେ ଗ୍ରାମ ଦେବତୀ ଗେହ୍ଲା ଦେଈ ଠାକୁରାଣୀଙ୍କ ପୀଠ । ମୁଁ ଘରକୁ ଆସିବା ପୂର୍ବରୁ ଗେହ୍ଲା ଦେଈ ଠାକୁରାଣୀଙ୍କ ପିଣ୍ଡି ଉପରେ ସାଷ୍ଟାଙ୍ଗେ ପ୍ରଣିପାତ କଲି । ଚାକର ପିଣ୍ଡି ତଳକୁ ଠିଆ ହୋଇ ଅଳ୍ପ ଅଳ୍ପ ହସୁଥାଏ । ତା'ପରେ ଘରକୁ ଆସିଲି ମା ପଚାରିଲେ କିଂରେ ପ୍ରମୋସନ୍ ପାଇଲୁ? ମୁଁ ଉତ୍ତର ଦେଲି ହଁ । ମା ଭାରି ଖୁସି ହେଲେ । କିନ୍ତୁ ପ୍ରମୋସନ୍ ଯେ କ'ଣ? କିଛି ବୁଝି ନଥାଏ । ପରେ ବୁଝିଲି ମୁଁ ଯେଉଁ କ୍ଲାସରେ ପଢୁଥିଲି ସେ ପାଠ ସରିଲା । ଆମର ସେତେବେଳେ ପ୍ରମୋସନ୍ ଡ଼କା ଯାଉଥିଲା ଡ଼ିସେମ୍ବର ମାସରେ । ବାର୍ଷିକ ପରୀକ୍ଷା ପରେ ପ୍ରମୋସନ୍ ଡ଼କା ହୋଇ ବଡ଼ଦିନ ଛୁଟି ହୋଇଯାଏ । ସେତେବେଳେ ପ୍ରମୋସନ୍ ଡ଼କା ହୋଇ ବଡ଼ ଦିନ ଛୁଟି ହୋଇଗଲେ ଭାରି ମଜା ଲାଗୁଥିଲା । ଏକେରେ ପାଠ ପଢ଼ାପଢ଼ି ବନ୍ଦ, ପ୍ରମୋସନ୍ ପାଇଛି ବୋଲି ଚାରିଆଡ଼େ ସମ୍ମାନ, ତା'ପରେ ବଡ଼ଦିନ ଦିନ (X-mas) ଯେମିତି ହେଲେ ଗୋଟାଏ ବଡ଼ ଫିଷ୍ଟ ହୁଏ । ସେତେବେଳକୁ ଫୁଲକୋବି ମିଳେ । ଶୀତକାଳୀନ ଅନ୍ୟାନ୍ୟ ପନିପରିବା ମଧ ମିଳେ । ପୁଣି ସେତେବେଳେ ଶସ୍ତା ଅମଳ ।

ମୋର ପ୍ରାଇଭେଟ୍ ଟିଉଟର୍ ଗଦାଧର ଘୋଷ ମଧ ତାଙ୍କ ଉପର କ୍ଲାସକୁ ପ୍ରମୋସନ୍ ପାଇଥାନ୍ତି । ସେ ତ ଦାଣ୍ଡ ଆଡ଼ ବାହାର ଘରେ ରହନ୍ତି । କିନ୍ତୁ ଆମେମାନେ ମା, ବାବା, ମୁଁ, ସାନ ଭଉଣୀ, ପୂଜାରୀ, ସମସ୍ତେ ରୋଷେଇ ଘରେ ବସିଥାଉ । ରୋଷେଇ ସରିଲେ ଖାଇପିଇ ରୋଷେଇ ଘରୁ ବିଦାୟ ନେଇ ଶୋଇବା ଘରକୁ ଆସୁ । ଯେ କେହି କୁଣିଆ ମଧ ଆସିଥାନ୍ତି ଯେଉଁମାନେ ଅତି ଆତ୍ମୀୟ ଆଉ ମା ଯା'ଙ୍କୁ ଦେଖା ଦେଲେ ଦୋଷ ନାହିଁ ସେମାନେ ମଧ ରୋଷେଇ ଘରେ ବସି ନାନା ପ୍ରକାରର ଗପ କରନ୍ତି । ମୁଁ ଶୀତରେ ଘୋଡ଼ିଘାଡ଼ି ହୋଇ ବାବାଙ୍କ ଦେହକୁ ଗୁଞ୍ଜି ହୋଇ ବସେ । ବେଳେବେଳେ ଶୋଇ ପଡ଼ିଥାଏ । ଖାଇଲା ବେଳକୁ ଉଠେ, ଖାଏ ।

ଆମେମାନେ ଥୋରିଆ ସାହିରେ ଥିବା ପର୍ଯ୍ୟନ୍ତ ବାବା, ମା'ଙ୍କର ଜୀବନକାଳ ମଧରେ ରୋଷେଇ ଘରେ ଆମର ସବୁଦିନ ବେଶ୍ ଗୋଟାଏ ଆଡ୍ଡା ଜମେ । ରୋଷେଇ ଘରଟା ବେଶ ପ୍ରଶସ୍ତ ଥିଲା । ପୁଣି ସେହି ରୋଷେଇ ଘରକୁ ଲାଗି ଆଉ ବଖରାଏ ପ୍ରଶସ୍ତ ଘର ଥିଲା । ସେ ଘର ଭିତରେ ବେଳକେ କ୍ୟାନ୍‌ଭାସ୍‌ର ଖଟ ପଡ଼ିଥାଏ । ମୁଁ ବେଳେ ବେଳେ ସେ ଖଟ ଉପରେ ଶୋଇ ଯାଏ । ସେ ବଖରାରେ ବେଳକେ ଖିଆପିଆ ହଉଥିଲା । ପରେ ଆମର ଯେତେବେଳେ ଗ୍ରାମୋଫୋନ୍ କିଣା ହେଲା । ଖାଇବା ପୂର୍ବରୁ ସେ ରୋଷେଇ ଘରେ ସମସ୍ତେ ଏକାଠି ବସି ଗ୍ରାମୋଫୋନ୍ ବଜେଇ ଗୀତ ଶୁଣୁଥିଲୁ । ଗ୍ରାମୋଫୋନ୍ ବାଜେ ଖାଇବା ପିଇବା ଆରମ୍ଭ ହବା ପୂର୍ବ ପର୍ଯ୍ୟନ୍ତ । ଏ ଗ୍ରାମୋଫୋନ୍ ପ୍ରଥମେ ବାଜିବା ମୁଁ ଦେଖେ ଆମଘରେ । ପ୍ରାୟ ମଝିରେ ମଝିରେ ଫିଷ୍ଟ ହୁଏ । ସେଥିରେ ବାବାଙ୍କ ଅଫିସ ତରଫରୁ କେତେକ କର୍ମଚାରୀ ନିମନ୍ତ୍ରିତ ହୋଇ ଆସନ୍ତି । ସେମାନଙ୍କ ମଧରେ ଜଣେ କର୍ମଚାରୀ ଆସନ୍ତି, ତାଙ୍କ ନାଁ ଇନ୍ଦୁ ବାବୁ । ବୋଧେ ବଙ୍ଗୀୟ ବ୍ରାହ୍ମଣ ହେବେ । ବେଶ୍ ସୁନ୍ଦର, ପୃଥୁଳକାୟ ମଣିଷ । ସେତେବେଳେ ତାଙ୍କର ନିଜର ଗୋଟିଏ His Master's Voice ଗ୍ରାମୋଫୋନ୍ ଥିଲା । ସେ ଗ୍ରାମୋଫୋନ୍‌ର ଗୋଟାଏ ବଡ଼ funnel ଥାଏ । ରେକଡ୍ ଅନେକ ପ୍ରକାରର । ସବୁ ବଙ୍ଗଳା ଭାଷାର । କେବଳ ଗୀତ । ସେ ନିଜେ ସେ ଗ୍ରାମୋଫୋନ୍‌କୁ ବଜାନ୍ତି, କାହାରିକୁ ଛୁଇଁବାକୁ

ଦିଅନ୍ତି ନାହିଁ । ସେତେବେଳେ କଟକ ସହରର ଅବସ୍ଥା ଇମିତି ହେଇଥିଲା, ଯାହାର ଗ୍ରାମୋଫୋନ୍ ଶୁଣିବାକୁ ମନ ହେଲା ଇନ୍ଦୁ ବାବୁଙ୍କ ଡ଼ାକ । ସେ ଭଦ୍ରଲୋକଙ୍କୁ ଆଗରୁ ନିମନ୍ତ୍ରଣ କରି ଆସିବାକୁ ହୁଏ । ଚିହ୍ନାପରିଚ, ଜଣାଅଜଣାର ପ୍ରଶ୍ନ ନାହିଁ । ଖାଲି ଇନ୍ଦୁବାବୁଙ୍କୁ ନିମନ୍ତ୍ରଣ କରି ଆସିଲେ ହେଲା । ସେ ଠିକ୍ ସମୟରେ ଗ୍ରାମୋଫୋନ୍, ରେକର୍ଡ଼ ଧରି ଆସି ପହଁଚିବେ । ନିଜେ ବଜେଇବେ, ନିମନ୍ତ୍ରଣ ରକ୍ଷା କରିବେ । ଶେଷରେ ଗ୍ରାମୋଫୋନ୍ ସାଙ୍ଗରେ ଧରି ଘରକୁ ଯିବେ । ଅବଶ୍ୟ ତାଙ୍କୁ ଡ଼ାକିବାକୁ ଗଲେ ଜଣେ ଲୋକ ତାଙ୍କ ସାଙ୍ଗରେ ଗ୍ରାମୋଫୋନ୍ ଧରି ଆସେ । ପୁଣି ସାଙ୍ଗରେ ଧରି ନେଇଯାଏ । ରେକର୍ଡ଼ରେ ସେ କାଳର ଯେତେ ବଙ୍ଗଳାର ବିଖ୍ୟାତ ଗାୟକ, ଗାୟିକାଙ୍କର ଗୀତ, ସେତେବେଳେ ଏତେ ପ୍ରକାରର ବାଦ୍ୟଯନ୍ତ୍ର ବାହାରି ନଥିଲା । କେବଳ ହାରମୋନିୟମ୍, ବେହେଲା, ବଇଁଶୀ, ବୀଣା ଆଉ ତୁବିତବଲା । ଇନ୍ଦୁବାବୁଙ୍କର ସେଇ ଗ୍ରାମୋଫୋନ୍ ଖଣ୍ଡକ ଯୋଗୁଁ ମାସ ସାରା ପ୍ରତ୍ୟେକଦିନ ରାତି ବେଳା ତାଙ୍କୁ ନିମନ୍ତ୍ରଣ ନିୟମିତ ଭାବରେ ଜୁଟୁଥିଲା ।

ଇନ୍ଦୁବାବୁ ନବାଗତ ବଙ୍ଗାଳୀ । P.W.D.ରେ ଚାକିରୀ କରୁଥିଲେ । ଏଣୁ ବାବାଙ୍କର ପରିଚିତ ସାଙ୍ଗ ଥିଲେ । ଆମ ଘରେ ଯେତେବେଳେ ଫିଷ୍ଟ ହୁଏ, ଇନ୍ଦୁବାବୁ ସେ ଫିଷ୍ଟରେ ନିମନ୍ତ୍ରିତ ହେଇ ଆସି ଗ୍ରାମୋଫୋନ୍ ବଜେଇବା ଆରମ୍ଭ କରିଦିଅନ୍ତି । ମୁଁ ଆଗେ ଯାଇ ଗ୍ରାମୋଫୋନ୍‌ର ଫନେଲ ସାମନାରେ ବସି ପଡ଼େ । ଗୀତ ଶୁଣି ଆନନ୍ଦରେ ମୋର ମନ ହୁଏ ସେ ଫନେଲ୍ ଭିତରେ ପଶି ଯିବାକୁ । ସେତେବେଳେ ମୁଁ ଭାବୁଥିଲି ସେ ଫନେଲ୍ ଭିତରେ ଛୋଟ ଛୋଟ ଲୋକ ଅଛନ୍ତି ସେଇମାନେ ଇମିତି ଗୀତ ଗାଉଛନ୍ତି, ବାଜା ବଜଉଛନ୍ତି । ଖଣ୍ଡେ ରେକର୍ଡ଼ ଥିଲା ସେଥିରେ ଗୋଟାଏ କୁକୁର ଭୁକିବାର ଶବ୍ଦ ଥିଲା । କୁକୁର ଭୁକିବା ଶବ୍ଦ ଶୁଣି ମୁଁ ଭାବୁଥିଲି ସେ ଗ୍ରାମୋଫୋନ୍ ଭିତରେ ଗୋଟାଏ କୁକୁର ଅଛି, ସେଇ ଭୁକୁଛି । ଗ୍ରାମୋଫୋନ୍ ତ ପ୍ରଥମ ଦେଖିଲି, ମୁଁ ସେତେବେଳେ ଅତି ପିଲା । କିଛି ତ ଗ୍ରାମୋଫୋନ୍ ବିଷୟରେ ଧାରଣା ନଥିଲା । ସେତେବଳେ ମଧ କଟକ ସହରର ଲୋକଙ୍କର ଧାରଣା ନଥିଲା । ଗ୍ରାମୋଫୋନ୍ କିମିତି ବାଜୁଛି ? ରେକର୍ଡ଼ କ'ଣ ? ଗୀତ କିମିତି ରେକଡ଼ିଂ କରାହୁଏ ? କିଛି ଜଣା ନାହିଁ । ପରେ ଆମର ଯେତେବେଳେ ନିଜର ଗ୍ରାମୋଫୋନ୍ କିଣା ହେଲା, ସବୁ କଥା ପରେ ପରେ ଭଲ ଭାବରେ ବୁଝି ପାରିଲି । ଗ୍ରାମୋଫୋନ୍ କଣ ? ରେକର୍ଡ୍ କଣ ? କିମିତି ବାଜୁଛି ? ତାର କଳକବଜା ପର୍ଯ୍ୟନ୍ତ ଖୋଲାଖୋଲି କରି ଦେଖିଲି ।

କିଛି ବର୍ଷ ପରେ ଦେଖିଲି କଟକ ସହରରେ ଝୁଲଣ ଯାତ୍ରା ବେଳେ ଦଶହରା, କାଳୀ ପୂଜା ବେଳେ କେତେକ ଜାଗାରେ ଗ୍ରାମୋଫୋନ୍ ବାଜୁଛି । ପୁରୀରେ ଶିବରାତ୍ରୀ ମେଳାରେ ଲୋକନାଥଙ୍କ ଠାରେ ଗ୍ରାମୋଫୋନ୍ ବାଜିବା, ଅନେକ ଭଦ୍ରଲୋକଙ୍କ ଘରେ ଗ୍ରାମୋଫୋନ୍ ବାଜିବା, ଯେଉଁଠି ଗ୍ରାମୋଫୋନ୍ ବାଜୁଥାଏ ଆମେମାନେ କିଛି ସମୟ ଠିଆ ହେଇ ଶୁଣିଛୁ । ସେତେବେଳେ ଯା'ର ଗ୍ରାମୋଫୋନ୍ ଅଛି, ସେ ଗୋଟାଏ ଧନୀ ଲୋକ ଭିତରେ ପରିଗଣିତ ହେଉଥିଲା । ଇମିତି ଆହୁରି କେତେ ଗୁରାଏ ଜିନିଷ ଥିଲା ତାକୁ ଯେ ସେତେବେଳେ ବ୍ୟବହାର କରୁଥିଲେ, ସେମିତି ଧନୀ ଲୋକ ବୋଲି ଗଣା ହେଉଥିଲେ ଯେମିତି ସାଇକେଲ୍, ଫାଉଣ୍ଟେନ୍‌ପେନ୍ ଇତ୍ୟାଦି ।

ମୁଁ ପ୍ରଥମେ ଫାଉଣ୍ଟେନ୍‌ପେନ୍ ବ୍ୟବହାର କରିବା ଦେଖିଲି, ମୋର ଜଣେ ପ୍ରାଇଭେଟ୍ ଟ୍ୟୁଟରଙ୍କଠାରେ । ତାଙ୍କର ଗୋଟିଏ ଫାଉଣ୍ଟେନ୍‌ପେନ୍ ଥିଲା । ତାର ନାଁ Swan, ପରେ ଫାଉଣ୍ଟେନ୍‌ପେନ୍ ବ୍ୟବହାର କରିବା ଦେଖିଲି ବସନ୍ତ କୁମାର ଦାସଙ୍କ ଠାରେ । ସେ ସେତେବେଳେ ପ୍ରଥମେ ପି.ଏମ୍.ଏକାଡ଼େମୀକୁ asst. teacher ହେଇ ଆସିଥିଲେ । ତାଙ୍କର ଗୋଟିଏ ଫାଉଣ୍ଟେନ୍‌ପେନ୍ ଥିଲା, ନାଁ Black Bird । ସେତେବେଳେ Black Bird fountain pen ର ଭାରି ଖ୍ୟାତି । ବସନ୍ତ ବାବୁ ଗୋଟିଏ Black Bird fountain pen ବହୁକାଳ ବ୍ୟବହାର କରିଥିଲେ । ସେଥିଯୋଗୁଁ ତାଙ୍କର ବେଶ୍ ସୁନାମ ଥିଲା । ସେତେବେଳେ ଯାର ଗୋଟିଏ fountain pen ଥିଲା ସେ ଅନ୍ୟ କାହାରିକୁ ଅଳ୍ପ ସମୟ ପାଇଁ ଲେଖିବାକୁ ଦଉ ନଥିଲା । କାରଣ

fountain pen ଖରାପ ହୋଇଯିବ । ସେମିତି ସାଇକେଲ୍, ଗ୍ରାମୋଫୋନ୍ ମଧ୍ୟ କେହି କାହାରିକୁ ବ୍ୟବହାର କରିବାକୁ ଦେଉନଥିଲେ ।

ମୁଁ କେତେ ଭାବିଛି କିମିତି ଗୋଟିଏ ଫାଉଣ୍ଟେନ୍‌ପେନ୍ କିଣିବି । କିନ୍ତୁ ହୋଇ ପାରେନା । ସେତେବେଳେ ବୟସ୍କ ଲୋକଙ୍କୁ କ୍ୱଚିତ୍ fountain pen ବ୍ୟବହାର କରିବା ଦେଖା ଯାଉଥିଲା । ଆଉ ସ୍କୁଲରେ ୪ର୍ଥ, ୫ମ ଶ୍ରେଣୀର ପିଲାଙ୍କୁ କିଏ ପଚାରେ ? ସେହି କାଠି କଲମ, ନଚେତ୍ nib ଲଗା କଲମ ଦୁଆତରେ ବୁଡ଼େଇ ଲେଖିବା ପ୍ରଚଳନ ଥିଲା । ଫାଉଣ୍ଟେନ୍‌ପେନ୍ କିଣିବି, ଏକଥା ବାବା, ମା'ଙ୍କୁ କହିଲେ, ଥଟ୍ଟା, ପରିହାସ ସହିବାକୁ ହବ ନଚେତ୍ ଜିଦ୍ ଧଇଲେ ମାଡ଼ ଖାଇବାକୁ ହବ । କେତେଥର ଭାବିଛି ଅନ୍ୟର ଚୋରି କରିବି କିନ୍ତୁ ମନରେ ଭୟ ହୁଏ କାଳେ ଧରା ପଡ଼ିବି । ଏଣୁ ସେତେବେଳେ ପାରି ନାହିଁ, ପରେ ମନେ ଅଛି ମୁଁ ୭ମ ଶ୍ରେଣୀରେ ପଢ଼ିବା ବେଳେ ମୋର ଜଣେ ସହପାଠୀର ଛାତି ପକେଟ୍‌ରୁ ତା'ର ଅଲକ୍ଷ୍ୟରେ ଗୋଟିଏ ଦାମିକା ଫାଉଣ୍ଟେନ୍‌ପେନ୍ କାଢ଼ି ନେଲି, ସେ ପିଲାଟି ତା'ର ଦାମିକା ଫାଉଣ୍ଟେନ୍‌ପେନ୍ ହରେଇ ଦୁଃଖରେ ଭାଙ୍ଗି ପଡ଼ିଲା । ମୁଁ ଫାଉଣ୍ଟେନ୍‌ପେନ୍‌ଟିକୁ ଘରକୁ ନେଇ ଆସି ଲୁଚେଇ ଥାଏ । କ୍ଲାସର ଶିକ୍ଷକଙ୍କ କାନକୁ ଏ କଥାଗଲା । ପରେ କଣ ମନ ହେଲା ଦିନେ ସେ ଫାଉଣ୍ଟେନ୍‌ପେନ୍‌କୁ ସ୍କୁଲକୁ ନେଇ ଗୋଟିଏ ଜାଗାରେ ଥୋଇ ଦେଲି ପରେ ମୁଁ ଏବଂ ଅନ୍ୟ ସହପାଠୀମାନେ ସେଇଠି ଖୋଜୁ ଖୋଜୁ ମୁଁ ଯେମିତି ସେ ଫାଉଣ୍ଟେନ୍‌ପେନ୍‌ଟିକୁ ପାଇଲି ହଠାତ୍ ସେ ପିଲାକୁ ଡ଼ାକି ଜଣେଇ ଦେଲି, ଏଇଠି ତୋର ଫାଉଣ୍ଟେନ୍‌ପେନ୍ ପଡ଼ିଛି । ସେ ପିଲାଟି ତା'ର ଫାଉଣ୍ଟେନ୍‌ପେନ୍ ପାଇ ବିଶେଷ ଖୁସି ହେଲା, ଅନ୍ୟ ପିଲାମାନେ ମଧ୍ୟ ଖୁସି ହେଲେ । ମୁଁ ଫାଉଣ୍ଟେନ୍‌ପେନ୍ ଚୋରି କରିଥିଲି ବୋଲି ଆଉ ଜଣା ପଡ଼ିଲା ନାହିଁ । କ୍ଲାସ୍‌ର ଶିକ୍ଷକ ମଧ୍ୟ ଏ ଘଟଣା ଶୁଣି ଖୁସି ହେଲେ । ସେତେବେଳେ ଜଣେ ଗୋଟାଏ ଫାଉଣ୍ଟେନ୍‌ପେନ୍ ହଜେଇବା ମାନେ ଯେମିତି ସୁନା ମୁଣ୍ଡାଟାଏ ହଜେଇବା ।

ଆହୁରି କେତେଦିନ ପରେ ମୁଁ ନିଜେ ଅଳ୍ପ ଦାମିକା କେତେକ ଫାଉଣ୍ଟେନ୍‌ପେନ୍ କିଣି ପାରିଲି । ମୋର ବଡ଼ ଭଉଣୀ ମୋର ଫାଉଣ୍ଟେନ୍‌ପେନ୍ ଦେଖି ଇଚ୍ଛା କଲେ ଗୋଟିଏ ନବା ପାଇଁ । ମୁଁ ତାଙ୍କୁ ମାଗଣାରେ ନଦେଇ ପ୍ରଥମେ ତାଙ୍କଠୁଁ ଦାମ୍ ନେଇ ଗୋଟିଏ ବିକିଲି । ବଡ଼ଭଉଣୀ ସେ କଲମକୁ ନେଇ ତାଙ୍କ ବାକ୍ସରେ ରଖିଲେ । ଯେଉଁଠି ରଖିଲେ, ମୁଁ ଭଲ କରି ନଜର ରଖିଲି । ପରେ ବଡ଼ଭଉଣୀଙ୍କର ସେହି ବାକ୍ସର ଗୋଟିଏ ଅନ୍ୟ ଚାବି ଯୋଗାଡ଼ କଲି । ବଡ଼ଭଉଣୀଙ୍କ ଅନୁପସ୍ଥିତିରେ ମୁଁ ସେଇ ଚାବି ଦ୍ୱାରା ତାଙ୍କର ବାକ୍ସ ଖୋଲି ସେ ଫାଉଣ୍ଟେନ୍‌ପେନ୍ କାଢ଼ି ନେଲି । ବଡ଼ଭଉଣୀ ଯେତେବେଳେ ତାଙ୍କର ବାକ୍ସ ଖୋଲି ଦେଖନ୍ତି ଫାଉଣ୍ଟେନ୍‌ପେନ୍ ନାହିଁ, ସେ ମୋତେ ସନ୍ଦେହ କରି କହିଲେ ଏ ଚୋରି କାମ, ତୁ ମୋ ଫାଉଣ୍ଟେନ୍‌ପେନ୍ ନେଇଛୁ । ମୁଁ ଆଉ ମାନେନା । ଓଲଟି ଚଢ଼଼ଉ ହୋଇ ଉତ୍ତର ଦେଲି ତୁମ ପାଖରେ ତୁମ ବାକ୍ସର ଚାବି ରହିଛି ମୁଁ କେମିତି ନେଲି ? ମା'ଙ୍କୁ ଏ କଥା କହିଲି । ବଡ଼ ଭଉଣୀ ମୋତେ ସନ୍ଦେହ କରୁଛନ୍ତି । ମୁଁ କୁଆଡ଼େ ତାଙ୍କ ଫାଉଣ୍ଟେନ୍‌ପେନ୍ ନେଇଛି । ମା ମଧ୍ୟ ବଡ଼ ଭଉଣୀଙ୍କୁ କହିଲେ ତୋ ପାଖରେ ତ ଚାବି ରହିଲା ସେ କିମିତି ନେଲା ? ବଡ଼ ଭଉଣୀ ନିରୂପାୟ ହୋଇ ଚୁପ୍ ରହିଲେ । ଇମିତି ଥରେ ନୁହେଁ ଅନେକବାର ତାଙ୍କ ବାକ୍ସରୁ ଚୋରି କରିଛି । କିନ୍ତୁ ଧରା ପଡ଼ିନାହିଁ । ବଡ଼ ଭଉଣୀଙ୍କୁ ଫାଉଣ୍ଟେନ୍‌ପେନ୍ ବିକିବା ପୁଣି ତାଙ୍କ ବାକ୍ସରୁ ଚୋରି କରିବାର ସୁବିଧା ପାଇବାର କାରଣ ହେଲା ବଡ଼ ଭଉଣୀ ସେତେବେଳେ ଆମ ଘରେ ରହୁଥିଲେ । କିଛିଦିନ ପରେ ଥରେ ବଡ଼ ଭଉଣୀ କଟକ କାଜିବଜାରସ୍ଥ ତାଙ୍କ ଶଶୁର ଘରେ ରହିଥାନ୍ତି । ମୁଁ ଥରେ ତାଙ୍କ ବାକ୍ସରୁ ଚୋରି କରିଥିବା ଗୋଟିଏ ଫାଉଣ୍ଟେନ୍‌ପେନ୍‌କୁ ପକେଟ୍‌ରେ ମାରି ତାଙ୍କ ଘରେ ଯାଇ ପହଁଚିଲି । ମୋର ଆଉ ମନେ ନାହିଁ ଯେ ତାଙ୍କୁ ବିକିଥିବା ଏବଂ ତାଙ୍କ ବାକ୍ସରୁ ଚୋରି କରିଥିବା ଫାଉଣ୍ଟେନ୍‌ପେନ୍‌କୁ ଛାତିରେ ଲଗେଇଛି । ବଡ଼ ଭଉଣୀ ତାଙ୍କ ଫାଉଣ୍ଟେନ୍‌ପେନ୍‌କୁ ଚିହ୍ନି ପାରି ଯେତେବେଳେ ମୋତେ ଧରିବାକୁ ଚେଷ୍ଟା କଲେ ମୁଁ ତାଙ୍କ ପାଖରୁ

ପଳେଇ ଆସି ରକ୍ଷା ପାଇଗଲି । ବଡ଼ ଭଉଣୀ ଯେତେଦିନ ଆମ ଘରେ ଥାନ୍ତି, ସେତେଦିନ ତାଙ୍କ ବାକ୍ସରୁ ଚୋରି କରିଥିବା କଲମ ସବୁ ଲୁଚେଇ ରଖେ । ସେ ଯେତେବେଳେ ତାଙ୍କ ଶଶୁର ଘରକୁ ଯାନ୍ତି ମୁଁ ସାଧୁ ପାଲଟି ସେ ଫାଉଣ୍ଟେନ୍‌ପେନ୍ ସବୁ କାଢ଼ି ଗୋଟିକ ପରେ ଗୋଟିଏ ବ୍ୟବହାର କରେ ।

## (୮)

ବଡ଼ ଭଉଣୀଙ୍କର ଜନ୍ମର ଦଶବର୍ଷ ପରେ ମୋର ଜନ୍ମ ହୁଏ । ମୋ ପରେ ପରେ ଅଳ୍ପ ବର୍ଷର ବ୍ୟବଧାନରେ ମୋର ତିନୋଟି ଭାଇ, ତିନୋଟି ଭଉଣୀ ଜନ୍ମ ହୁଅନ୍ତି । ଭାଇ ତିନୋଟି ଜନ୍ମ ହବାର କିଏ ଦଶ ମାସରେ, କିଏ ତିନି ଦିନରେ, କିଏ ଅଳ୍ପ ସମୟ ରହି ମୃତ୍ୟୁ ବରଣ କଲେ । ତିନୋଟି ଭଉଣୀଙ୍କ ଭିତରୁ ମୋର ତଳ ଭଉଣୀଟି ପାଞ୍ଚଦିନ ରହି ମୃତ୍ୟୁ ବରଣ କଲା । ବାକି ଯୋଡ଼ିଏ ଭଉଣୀ ରହିଲେ । ଗୋଟିଏ ଭଉଣୀର ନାଁ ଥିଲା ହିରଣ୍ୟବାଳା, ଅନ୍ୟଟିର ନାଁ ଶଙ୍କରୀବାଳା । ହିରଣ୍ୟବାଳା ବଡ଼ । ଶଙ୍କରୀବାଳା ସାନ ।

ହିରଣ୍ୟବାଳାର ଆଖି ଅସମ୍ଭବ ଟେରା ଥିଲା । ସେ କୁଆଡ଼େ ଅନେଇଛି ଜାଣି ହୁଏନା । ତାର ଜନ୍ମ ବେଳେ ତାର ଆଖି ଟେରା ଦେଖି ସାହି ପଡ଼ିଶାର ଲୋକେ ବାବା, ମାଙ୍କୁ କହିଲେ ଏ ଝିଅଟି ଭାରି ଲକ୍ଷ୍ମୀମନ୍ତ, ଆପଣଙ୍କର ଧନ ବଢ଼ିବ । ସାହିପଡ଼ିଶାଙ୍କ ଏ କଥାକୁ, ସତକୁ ସତ କେତେଦିନ ପରେ ବାବାଙ୍କ ନାଁରେ ଗୋଟାଏ ଲଟେରିରେ ୭୨୮ଟଙ୍କା ଉଠିଲା । ବାବା ମୋଟେ ପାଞ୍ଚ ଟଙ୍କାର ଲଟେରି ଟିକେଟ କିଣିଥିଲେ । ବାବା ଏକା ଲଟେରି ଟିକେଟ୍ କିଣି ନଥିଲେ, ସେଥର ଯୋବ୍ରା ୱାର୍କସପ୍‌ର ଅନେକ ମିଳିତ ଭାବରେ ଲଟେରି ଟିକେଟ୍ କିଣିଥିଲେ । ବାବା ମାତ୍ର ୫ଟଙ୍କା ଦେଇଥିଲେ । ଏଣୁ ବାବାଙ୍କ ଭାଗରେ ୭୨୮ଟଙ୍କା ପଡ଼ିଲା । ଏ ଟଙ୍କା ମିଳିବା ଛଡ଼ା, ଧାନ, ଚାଉଳ ଅନ୍ୟାନ୍ୟ ଜିନିଷପତ୍ର, ଗାଈ, ଗୋରୁ, ଚାକର ବାକରରେ ଘର ଯେମିତି ଲକ୍ଷ୍ମୀରେ ଭରପୂର ହେଇଗଲା ଖାନଦାନୀ ଘର ଯାହାକୁ କହନ୍ତି । ହିରଣ୍ୟବାଳାକୁ ସମସ୍ତେ ବେଶି ଶ୍ରଦ୍ଧା କଲେ । ତା'ପାଇଁ ସ୍ୱତନ୍ତ୍ର ଗୋଟିଏ ବୁଢ଼ା ଚାକର ନିଯୁକ୍ତ ହେଲା । ସେ ତାକୁ ସବୁବେଳେ କୋଳ କାଖ କରି ଆଦରରେ ବଢ଼େଇବାରେ ଲାଗିଲା । ସେ ବୁଢ଼ାକୁ ସମସ୍ତେ ଶ୍ୟାମ ବୁଢ଼ା ବୋଲି ଡ଼ାକୁଥିଲେ । ସେହି ଶ୍ୟାମ ବୁଢ଼ା ହିଁ ହିରଣ୍ୟବାଳାର ଡ଼ାକ ନାମ ରଖିଥିଲା, ବୁଢ଼ୀମାଉସୀ । ଏଣୁ ସମସ୍ତେ ହିରଣ୍ୟବାଳାକୁ 'ବୁଢ଼ୀମାଉସୀ' ବୋଲି ଡ଼ାକିଲେ । ଶ୍ୟାମ ବୁଢ଼ା ଯଦି ଅଳ୍ପ ସମୟ ପାଇଁ କୁଆଡ଼େ ଯାଇଛି କିମ୍ବା କୌଣସି କାମରେ ଲାଗିଛି ହିରଣ୍ୟବାଳା 'ମଉଛା' 'ମଉଛା' କହି ଖୋଜେ । ଆମେ ସମସ୍ତେ ଶ୍ୟାମ ବୁଢ଼ାକୁ 'ମଉସା' ବୋଲି ଡ଼ାକୁ । ହିରଣ୍ୟବାଳାର ତ ଭଲ କରି ପାଟି ଖୋଲି ନଥାଏ । ଏଣୁ ସେ ଡ଼ାକେ 'ମଉଛା' ।

ହିରଣ୍ୟବାଳାର ଜନ୍ମର ଅଳ୍ପ ବର୍ଷ ପରେ, ଅର୍ଥର ପ୍ରାଚୁର୍ଯ୍ୟ ଯୋଗୁଁ ମା ବାବାଙ୍କୁ କହିଲେ ମୁଁ ଲୋକଙ୍କଠାରୁ ଅଳଙ୍କାର ବନ୍ଧା ରଖି ଟଙ୍କା ଧାର ଦେବି । ବାବା ଏକଥା ଶୁଣି ମା'ଙ୍କୁ ସତର୍କ କରେଇ ବାରଣ କରି କହିଲେ ଲୋକଙ୍କଠାରୁ ଅଳଙ୍କାର ବନ୍ଧା ରଖି ଟଙ୍କା ଧାର ଦବା ବେପାର ବନ୍ଦକର, ସେ ଭଲ ନୁହେଁ । ଲୋକେ ସୁଧ ବଢ଼ିବା ଯୋଗୁଁ ତାଙ୍କ ଅଳଙ୍କାର ମୁକୁଳେଇ ପାରୁନଥିବେ । ତାଙ୍କ ଅଳଙ୍କାର ସୁଧ ଭାରରେ ବୁଡ଼ି ଯାଉଥିବ, ସେ ଭାରି ଦୁଃଖର କଥା । ସେ ସୁଧ ଟଙ୍କା ଆମର ଦରକାର ନାହିଁ । କଣ ମିଳିବ ସେଥିରୁ ?

ମା ବାବାଙ୍କ କଥା ମାନିଲେ ନାହିଁ । ଲୋକଙ୍କଠାରୁ ଗହଣା ବନ୍ଧା ରଖି ଟଙ୍କା ଧାର ଦବା ଆରମ୍ଭ କଲେ । ଖାଲି ଗହଣା ନୁହେଁ । କଂସା, ବାସନ ଇମିତିକି ଲଣ୍ଠନ୍ ଇତ୍ୟାଦି ଆଣି ଲୋକେ ବନ୍ଧା ରଖି ଟଙ୍କା ଧାର ନେଲେ । ସେତେବେଳେ ଭାରି ମହରଗ ବେଳ ପଡ଼ିଥାଏ । ଲୋକେ ଖାଇବାକୁ ପାଉ ନଥାନ୍ତି । ସେତେବେଳେ ଢେଙ୍କାନାଳ ଆଡୁ ଅନେକ ଲୋକ କଟକ ପଳେଇ ଆସୁଥାନ୍ତି । କାମ କାର୍ଯ୍ୟ କରି ପେଟ ପୋଷିବା ପାଇଁ କେତେକ ଲୋକ ଆସାମ ଚା ବଗିଚାରେ କୁଲି କାମ କରିବାକୁ ପଳଉଥାନ୍ତି । ମୋର ମନେ ହଉଛି, ୧୯୧୯ କିମ୍ବା ୧୯୨୦ ମସିହା ହବ କି କଣ ?

ମା ଜିନିଷ ବନ୍ଧା ରଖି ଟଙ୍କା ଧାର ଦବା ତ ଆରମ୍ଭ କଲେ। କିନ୍ତୁ ମା'ଙ୍କୁ ଟଙ୍କାକ ଷୋଳ ଅଣା କି ପନ୍ଦର ଅଣା କିମ୍ବା ସତର ଅଣା ଜଣା ନାହିଁ। ସେଥିରେ ପୁଣି ସୁଧ ହିସାବ ହବ କିମିତି? ଏଣୁ ସେତେବେଳେ ଆମ ଘରେ ଗଦାଧର ଘୋଷ ବୋଲି ମୋର ଯେଉଁ ପ୍ରାଇଭେଟ୍ ଟ୍ୟୁଟର ଥିଲେ, ସେ ହେଲେ ମା'ଙ୍କର 'ଆକାଉଣ୍ଟାଣ୍ଟ' ଅର୍ଥାତ୍ ସେ ସବୁ ଖାତାରେ ଲେଖାଲେଖି କରିବେ କିଏ କେତେ ତାରିଖରେ କଣ ବନ୍ଧା ରଖି କେତେ ଟଙ୍କା ଧାର ନେଲା, ପୁଣି କିଏ କେତେ ମାସ ଜିନିଷ ବନ୍ଧା ରଖି ଟଙ୍କା ପରିଶୋଧ କରି ନେଲା ବେଳକୁ ତାର ସୁଧ କେତେ ହେଲା? ସେ ସବୁ ଅସୁଲ ମିଶେଇ କେତେ ଟଙ୍କା ଦବ? ସବୁ ହିସାବକିତାବ କରି ମା'ଙ୍କୁ ବୁଝେଇବେ। ତା'ର ଅସୁଲ ଏତେ, ଆଉ ସୁଧ ଏତେ, ମୋଟ ଏତେ ଟଙ୍କା, ମା ତା'ପରେ ଟଙ୍କା ସୁଧ ରଖି ଜିନିଷ ବାହାର କରିଦେବେ।

ସେଥିରେ ପୁଣି ଗଦାଧର ଘୋଷ ଅଙ୍କରେ ଦୁର୍ବଳ ଥିଲେ। ସେ ଭଲ ଭାବରେ ସୁଧ ହିସାବ କରି ପାରନ୍ତି ନାହିଁ ଏଣୁ ସେ ମା'ଙ୍କୁ ବେଳେବେଳେ ଭୁଲରେ ସୁଧ ଅସୁଲ-ମିଶି ମା'ଙ୍କର ଖାତକଠାରୁ ଯାହା ପ୍ରାପ୍ୟ ତା'ଠାରୁ କେବେ ବେଶି, କେବେ କମ୍ କହି ବସନ୍ତି। ମାଷ୍ଟ୍ରେ ଭୁଲରେ ଯା କହିଲେ ସେଇଥିରେ ମା'ଙ୍କର ବିଶ୍ୱାସ। ମାଷ୍ଟ୍ରେ ଯାହା ଟଙ୍କା, ଅଣା, ପାହି କହିଥିବେ ମା ସେତକ ଖାତକକୁ ଆଉ ଛାଡ଼ିବାର ଲୋକ ନୁହନ୍ତି। ମା ଯେମିତି ହେଲେ ଆଦାୟ କରିବେ। ନଚେତ୍ ଜିନିଷ ଦେବେ ନାହିଁ। ସେ ଫେରି ଯାଉ। ମାଷ୍ଟ୍ରଙ୍କ ହିସାବ ବେଦବାକ୍ୟ। ପରେ ବାବା ହିସାବ କରି ଦେଖନ୍ତି, ମାଷ୍ଟ୍ରେ ଭୁଲରେ କମ୍ କହିଛନ୍ତି କିମ୍ବା ବେଶି କହିଛନ୍ତି। ବାବାଙ୍କଠାରୁ ମାଷ୍ଟ୍ରଙ୍କର ଭୁଲ ହିସାବ ଶୁଣିଲେ ମା'ଙ୍କ ଆଡୁ ମାଷ୍ଟ୍ରଙ୍କ ଉପରେ ଗାଳି ବର୍ଷଣ ହୁଏ ଯେ ସେ ବୃଷ୍ଟିରେ ଆଉ ଛତା ସମ୍ଭାଳିବ ନାହିଁ। ମାଷ୍ଟ୍ରେ ବର୍ଷାରେ ଜୁବୁବୁଡୁ। ମାଷ୍ଟ୍ରେ ନିଜର ଭୁଲ ବୁଝିପାରି ଚୁପ୍ ରହନ୍ତି। ନଚେତ୍ ବେଳେ ବେଳେ ମା'ଙ୍କ ସହିତରେ ଅଯଥା ଯୁକ୍ତି ତର୍କ କରନ୍ତି। ପୁଣି ଅଧିକ ଗାଳି ଖାଆନ୍ତି। ମାଷ୍ଟ୍ରେ ଗାଳି ଖାଇବା ଦେଖିଲେ ମୁଁ ମନେ ମନେ ଭାରି ଖୁସି ହୁଏ।

ଗଦାଧର ଘୋଷଙ୍କ ଘର ଥିଲା କେନ୍ଦ୍ରାପଡ଼ା ଟାଉନର ନସଡ଼ି ଗ୍ରାମରେ। ଗଦାଧର ବାବୁ ପ୍ରଥମେ ମୋର ପ୍ରାଇଭେଟ ଟ୍ୟୁଟର ଭାବରେ ନିଯୁକ୍ତି ପାଇ ଅନ୍ୟାନ୍ୟ ଟ୍ୟୁଟରଙ୍କ ଭଳି ବାହାରେ ବାହାରେ ଚଳୁଥିଲେ। ଗୋଟାଏ ଘଟଣାରେ ସେ ଆମ ପରିବାର ସହିତ ମିଶି ମୋର ବଡ଼ ଭାଇ ପରି ଆମ ଘରେ ଚଳିଲେ।

ଘଟଣାଟି ହେଲା ମୋର ଗୋଟିଏ ସାନଭଉଣୀ ଜନ୍ମ ହେଲା। ପୂର୍ବରୁ କହିଛି ସେ ଭଉଣୀ ନାଁ ଥିଲା, ଶଙ୍କରୀବାଳା। ଡ଼ାକ ନାମ, ଟୁକୁନା। ସେ ଭଉଣୀଟି ଜନ୍ମ ହବାର ଅଳ୍ପଦିନ ପରେ ତା'ର ମୁଣ୍ଡରେ ବଥ ପରି କଣ ଗୁରାଏ ବାହାରିଲା। ସମସ୍ତେ ଆସି ଦେଖୁଥାନ୍ତି। ମାଷ୍ଟ୍ରେ କହିଲେ ମୁଁ ଟିକିଏ ଦେଖିବି। ମାଷ୍ଟ୍ରେ ଆସି ଦେଖି ଦୁଃଖ କଲେ। ସେହି ପ୍ରଥମଦିନ ଦେଖାରେ, ତାଙ୍କର ସେ ଭଉଣୀଟି ପ୍ରତି ଶ୍ରଦ୍ଧା ଜାତ ହେଲା। ସେ ପରେ ଦୈନିକ ଥରେ ଆସି ସେ ଭଉଣୀଟିକୁ ଦେଖନ୍ତି। ବାବା, ମା'ଙ୍କ ସହିତରେ କଥାବାର୍ତ୍ତା କରନ୍ତି। ଗଦାଧର ଘୋଷ ପିଲାବେଳୁଁ ପିତୃମାତୃହୀନ ହୋଇଥିଲେ। ଏଣୁ ମୋର ବାବା, ମାଙ୍କୁ ନିଜର ବାପ, ମା ଭଳି ଭକ୍ତି କରି ଚଳିଲେ। ଗଦାଧର ଘୋଷଙ୍କୁ ତାଙ୍କର ତାଙ୍କର ବଡ଼ଭାଇ କଟକରେ ରଖି ପଢ଼ଉଥିଲେ। ଅର୍ଥାଭାବରେ ସେ ଆମ ଘରେ ରହି ଟ୍ୟୁସନ୍ କରି ପଢୁଥିଲେ। ସେଥିରେ ପୁଣି ଆମ ଘର ହେଲା ଅସୁରେଶ୍ୱର। ଗଦାଧର ଘୋଷଙ୍କ ଘର ହେଲା, କେନ୍ଦ୍ରାପଡ଼ା। ଏଣୁ ଆମ ଗାଁଆଡ଼ ଲୋକ ବୋଲି ଉଭୟ ପକ୍ଷରୁ ସୌହାର୍ଦ୍ଦ୍ୟ ବେଶି ଜନ୍ମିଲା। ଏଣୁ ପରେ ଇମିତି ହେଲା ଆମେ ଯୁଆଡ଼େ ବନ୍ଧୁବାନ୍ଧବଙ୍କ ଘରକୁ ବାହା ନିମନ୍ତ୍ରଣରେ ଗଲୁ। ମାଷ୍ଟ୍ରେ ଆମ ସାଙ୍ଗରେ ଗଲେ। ଅନେକ ଅପରିଚିତ ଲୋକ ମାଷ୍ଟ୍ରଙ୍କୁ ଆଉ ମୋତେ ଦେଖି ଭୁଲରେ ଯଦି ମା'ଙ୍କୁ କେହି ପଚାରନ୍ତି ଏ କ'ଣ ଆପଣଙ୍କ ଯୋଡ଼ିଏ ପୁଅ? ମା କହନ୍ତି ହଁ ଏ ମୋର ଦି'ପୁଅ।

ମାଷ୍ଟ୍ରଙ୍କ ଚେହେରା ମଧ୍ୟ ଆମ ପରିବାର ସହିତରେ ପ୍ରାୟ ମିଶି ଯାଉଥିଲା। ମାଷ୍ଟ୍ରେ ପ୍ରକୃତ ହିଁ ମା'ଙ୍କର ବଡ଼ପୁଅ ପରି ଜଣାପଡୁ ଥିଲେ। ମୋର ଯେତେ ଦୂର ମନେ ପଡୁଛି ମାଷ୍ଟ୍ରେ ମୋଠାରୁ ତିନି କ୍ଲାସ କି ଚାରି କ୍ଲାସ

ଉପରେ ପଢୁଥିଲେ । କିଛିଦିନ ପରେ ମାଷ୍ଟ୍ରେ ଆମ ଘର ସହିତରେ ଏତେ ମିଶିଗଲେ ଯେ ଶେଷରେ ପୂଜାରୀକୁ ରୋଷେଇ ପାଇଁ ଚାଉଳ, ଡ଼ାଲି ଇତ୍ୟାଦି ତାଙ୍କୁ କାଢ଼ି ଦବାକୁ ହେଲା । ଆଜି କ'ଣ ରନ୍ଧା ହବ, ମାଷ୍ଟ୍ରେ ବରାଦ କରିବେ । ଏକାଠି ବସି ଖାଇବା ପିଇବା ମଧ ହେଲା । ମୋର ସାନଭଉଣୀ ଯେତେବେଳେ ଆଉ ଟିକିଏ ବଡ଼ ହେଲା, ମାଷ୍ଟ୍ରେ ତାକୁ କାଖ କୋଳ କରି ବୁଲିଲେ । ସାନଭଉଣୀର ମଧ ଇମିତି ମାଷ୍ଟ୍ରଙ୍କ ପ୍ରତି ସ୍ନେହ, ଶ୍ରଦ୍ଧା ଜନ୍ମିଲା ଯେ ତା'ର ସବୁ କଥାରେ ମାଷ୍ଟ୍ରେ ଲୋଡ଼ା । ମାଷ୍ଟ୍ରେ ନହେଲେ ଅଚଳ ଅବସ୍ଥା । ମାଷ୍ଟ୍ରେ ଖୋଇ ଦେବେ, ମାଷ୍ଟ୍ରେ ବୁଲେଇବେ, ମାଷ୍ଟ୍ରେ ଶୁଆଇବେ, ଶୋଇ ଉଠିଲେ ମାଷ୍ଟ୍ରେ ଖଟ ଉପରୁ ଉଠେଇ କାଖ କରି ଆଣିବେ । ମା ଯଦି ଆଣିବେ ତ ଆଣିବେ । ନଚେତ୍ ମାଷ୍ଟ୍ରେ ଆଣିବେ । ଆଉ କେହି ଆଣିବାକୁ ଗଲେ ସେଇ ଖଟ ଉପରେ ବସି ବିଭିନ୍ନ ଭଲ୍ୟୁମ, ବିଭିନ୍ନ ରିଦିମ୍‌ରେ କାନ୍ଦଣା ହଉଥିବ । ଯେ ଆଣିବାକୁ ଯିବ, ତା'ଉପରେ ପ୍ରଚଣ୍ଡ ରାଗ । ରାଗର ସଙ୍କେତ ହେଲା ମାରିବା, ଆହୁରି ଜୋର୍‌ରେ କାନ୍ଦିବା ଇତ୍ୟାଦି ।

ଶଙ୍କରୀବାଳାର 'ଟୁକୁନା' ନାମ କରଣ ହବାର ଗୋଟିଏ ଘଟଣା ଅଛି । ଘଟଣାଟି ହେଲା ମୁଁ ଆଗରୁ କହିଛି ପ୍ରତ୍ୟେକ ବର୍ଷ ପର୍ବପର୍ବାଣୀରେ ଆମେ ଯେ କୌଣସି ତୀର୍ଥ ଜାଗାକୁ ବୁଲିବାକୁ ଯାଉଥିଲୁ । ବର୍ଷେ ରୁକୁଣା ରଥ ବେଳକୁ ଆମେ ଭୁବନେଶ୍ୱର ଯାଇଥିଲୁ । ସେତେବେଳର ଭୁବନେଶ୍ୱର ଆଜି କାଲିର ଭୁବନେଶ୍ୱରକୁ ତୁଳନା କଲେ ଆକାଶ, ପାତାଳ ତଫାତ୍ । ରୁକୁଣା ରଥକୁ ସେ ବର୍ଷ ବହୁତ ଯାତ୍ରୀ ଆସିଥାନ୍ତି ଭୁବନେଶ୍ୱରକୁ । ଆମେ ଦିନ ବେଳା ରଥ ଟଣା ଦେଖି ଲିଙ୍ଗରାଜଙ୍କ ମନ୍ଦିର ପ୍ରାଙ୍ଗଣ ମଧରେ ଥିବା ବାଁଫିର ଗୋଟିଏ ପାଖରେ ବସିଲୁ । ସେଇଠି ପ୍ରସାଦ କିଣି ଖାଇଲୁ । ଆମେ ଦେଖିଲୁ ବାଁଫିର ଅନ୍ୟ ପାଖରେ ଅନ୍ୟ ଗୋଟିଏ ବଙ୍ଗାଳୀ ପରିବାର ଗୁରିଏ ପିଲାଛୁଆ ନେଇ ପ୍ରସାଦ ଖାଉଥାନ୍ତି । ବାବା ଆମକୁ ସେଇଠି ଚିହ୍ନେଇ ଦେଲେ ସେ ଭଦ୍ରଲୋକ ହଉଛନ୍ତି ଜାନକୀ ବାବୁ ଏବଂ ସେ ମହିଳା ହଉଛନ୍ତି ତାଙ୍କର ସ୍ତ୍ରୀ । ଆଉ ସେ ପିଲାମାନେ ବୋଧହୁଏ ତାଙ୍କର ନାତି ନାତୁଣୀ ହେବେ । ମୁଁ ସେଇଠି ପ୍ରଥମେ ସୁଭାଷ ବୋଷଙ୍କର ବାବା, ମା'ଙ୍କୁ ଦେଖିଲି । ପରେ ଅନ୍ୟ ଗୋଟିଏ ସଭାରେ ଜାନକୀ ବାବୁଙ୍କୁ ଦେଖିଥିଲି । ସୁଭାଷ ବୋଷଙ୍କ ପିତା ଜାନକୀ ବାବୁ ଦେଖିବାକୁ ବେଶ୍ ସୁନ୍ଦର ଉଚ୍ଚା ମଣିଷ, ଗୋରା ବର୍ଣ୍ଣ ଆଉ ତାଙ୍କର ସ୍ତ୍ରୀ ସୁଭାଷ ବୋଷଙ୍କ ମାତା ଦେଖିବାକୁ ଅଳ୍ପ ଶ୍ୟାମଳ ବର୍ଣ୍ଣର, ବେଶି ଉଚ୍ଚା ନୁହଁନ୍ତି । ମୁଣ୍ଡର ମଝି ଅଂଶ ଟିକିଏ ଚନ୍ଦା ଭଳି ଜଣା ଯାଉଥାଏ । ଆଜି ପର୍ଯ୍ୟନ୍ତ ଭାରତର କୃତୀ ସନ୍ତାନ ବିପ୍ଳବୀ ସୁଭାଷ ବୋଷଙ୍କର ପିତାମାତାଙ୍କର ରୂପ ମୋର ମନେ ପଡୁଛି । ସେତେବେଳକୁ ଲିଙ୍ଗରାଜଙ୍କ ମନ୍ଦିର ପ୍ରାଙ୍ଗଣରେ ଅସ୍ତଗାମୀ ସୂର୍ଯ୍ୟଙ୍କର କିରଣ ପୂରାପୂରି ଲିଭି ଯାଇ ନଥାଏ । ଅସଂଖ୍ୟ ଯାତ୍ରୀ ମନ୍ଦିର ପ୍ରାଙ୍ଗଣରେ । ଆମେ ବାଁଫିର ଯେଉଁ ପାଖରେ ବସିଥିଲୁ ସେ ପାଖରେ ଅନ୍ୟ ଗୋଟିଏ ଛୋଟ ମନ୍ଦିରର ଛାଇ ପଡ଼ିଥାଏ । ଜାନକୀ ବାବୁ ଏବଂ ତାଙ୍କର ସ୍ତ୍ରୀ ଯେଉଁ ପାଖରେ ବସିଥାନ୍ତି ସେ ପାଖରେ ଖରା ପଡ଼ିଥାଏ ।

ଆମେ ମନ୍ଦିର ପ୍ରାଙ୍ଗଣରେ ପ୍ରସାଦ ସେବନ କରିସାରି ମନ୍ଦିର ଏବଂ ମନ୍ଦିର ଚାରିଆଡ଼ର ବଜାର ଦୋକାନ ଦେଖିବା ଏବଂ ଜିନିଷ ପତ୍ର କିଣାକିଣି କରିବା ପାଇଁ ବାହାରିଲୁ ।

ସେତେବେଳେ ମନ୍ଦିରର ଆଖପାଖରେ ଗୁରାଏ ଚାଟିଘେରା ଦୋକାନ, ଏତେ କ୍ୟାବିନ, ହୋଟେଲ, ମନୋହାରୀ ଜିନିଷ, ଜଳଖିଆ ଦୋକାନ, ଦରଜୀ ଦୋକାନ, ସେଲୁନ୍ କିଛି ନଥାଏ । ସବୁ ମଫସଲି ଦୋକାନ ବଜାର ଯେମିତି ହେଇଥାଏ । ମଣିଷଟଣା ଶଗଡ଼ଗାଡ଼ି ଯେ ଯୁଆଡ଼େ ଯିବାକୁ ଚାହିଁବେ, ସେହି ମଣିଷଟଣା ଶଗଡ଼ରେ ଯିବେ । ରୁକୁଣା ରଥର ବେଳ ବୋଲି ବଜାରରେ ଜାଗା ଜାଗା କେତେଟା ଫଚ୍ ଲାଇଟ ଜଳୁଥାଏ । ନଚେତ୍ ଅନ୍ୟାନ୍ୟ ଜାଗାରେ ରାସ୍ତାରେ ଯିବା ପାଇଁ, ରାସ୍ତା କଡ଼ର ଦୋକାନରୁ ଯେତକ ଆଲୁଅ ରାସ୍ତା ଉପରେ ପଡ଼ିଥାଏ, ସେଇ ବାଟ ଦେଖାଏ । ରାସ୍ତା ସବୁ କି ସଂକୀର୍ଣ୍ଣ । କି ଅପରିଷ୍କାର ଗଳିକନ୍ଦି । କି ଆବର୍ଜନା । ମଣିଷଟଣା ଶଗଡ଼ ମଧ ବେଳେବେଳେ ମିଳେନା, ଲୋକେ ସେତେବେଳର

ରେଲଷ୍ଟେସନ୍‌ରୁ ମନ୍ଦିର ପର୍ଯ୍ୟନ୍ତ ଚାଲି ଚାଲି ଆସୁଥିଲେ । ସେତେବେଳେତ କ୍ୟାପିଟାଲ ବୋଲି କିଛି ନଥିଲା । କେବଳ କୋଚିଲା ବଣ । ମୋର ମନେ ଅଛି ଅନେକ ସମୟରେ ରେଲଷ୍ଟେସନ୍‌ରୁ ଶଗଡ଼ରେ ଆସିଲେ ସେଇ କୋଚିଲାବଣ ଭିତର ଦେଇ ଯାତ୍ରୀମାନଙ୍କୁ ଲିଙ୍ଗରାଜ ମନ୍ଦିର ପାଖକୁ ନେଇ ଆସୁଥିଲେ । କାରଣ ହେଲା ସେ କୋଚିଲାବଣ ଭିତର ଦେଇ ଭୁବନେଶ୍ୱରକୁ ଆସିଲେ ନିକଟ ବାଟ ପଡ଼େ ।

ସେତେବେଳର ବଣ ଜଙ୍ଗଲ ଆଉ ଆଜିକାଲିକାର ଚକ୍‌ମକିଆ କ୍ୟାପିଟାଲକୁ ଦେଖିଲେ ମନେହୁଏ ଯେମିତି ଆଲ୍ଲାଦିନ ୱାଣ୍ଡରଫୁଲ୍ ଲ୍ୟାମ୍ପର ପ୍ରଭାବରେ ଏ କ୍ୟାପିଟାଲକୁ କିଏ ଉଡ଼େଇ ଆଣି ଥୋଇ ଦେଇଛି । ସେତେବେଳର ଭୁବନେଶ୍ୱରର କେଦାରଗୌରୀ ଅଞ୍ଚଳଟା ମଧ୍ୟ ସେମିତି ଜଙ୍ଗଲିଆ ଥିଲା । ସେମିତି ଅପରିଷ୍କାର, ନିଛାଟିଆ, ଅନ୍ଧାରୁଆ, ସନ୍ଧ୍ୟା ପରେ ଲୋକେ ଆଉ ସେଠିକି ଯାଉ ନଥିଲେ ।

ସେଦିନ ଭୁବନେଶ୍ୱରରେ ସବୁ ଦେଖି ଜିନିଷ ପତ୍ର ଯାହା କିଣି ସାରି ଆମେମାନେ ବାହାରିଲୁ ଭୁବନେଶ୍ୱର ଷ୍ଟେସନ୍‌କୁ ଗାଡ଼ି ଧରି କଟକ ଆସିବା ପାଇଁ । ଚାଲି ଚାଲି ଆସିବାକୁ ହେଲା । ଶଗଡ଼ ମିଳିଲା ନାହିଁ । ଭୁବନେଶ୍ୱର ଷ୍ଟେସନ୍‌କୁ ଆସିବୁ ବୋଲି ଭୁଲରେ ମନ୍ଦିର ସାମନାରୁ ଯେଉଁ ରାସ୍ତା ପୁରୀ ଆଡ଼କୁ ଯାଇଛି ସେଇ ରାସ୍ତାରେ ଥୋଡ଼ା ବାଟ ବାହାରିଗଲୁ । କିଛି ବାଟ ଗଲା ପରେ ଭାରି ନିଛାଟିଆ ଜଣାଗଲା । ସନ୍ଦେହ ହେଲା ଏ ଷ୍ଟେସନ୍ ବାଟ ନୁହେଁ । ଲୋକଙ୍କୁ ପଚାରି ବୁଝାଗଲା ଯେ ଆମେ ପ୍ରକୃତ ଭୁଲ ବାଟରେ ଆସିଛୁ । ପୁଣି ଲେଉଟି ଷ୍ଟେସନ୍ ବାଟ ଧଇଲୁ । ଚାଲି ଚାଲି ଆସି ଯେତେବେଳେ ଷ୍ଟେସନ୍‌ରେ ପହଁଚିଲୁ, ଦେଖି ଆଶ୍ଚର୍ଯ୍ୟ ହେଲୁ ଅସଂଖ୍ୟ ଯାତ୍ରୀ ଷ୍ଟେସନ୍‌ଠାରେ ପଡ଼ି ରହିଛନ୍ତି । ଗାଡ଼ିରେ ଯାଇ ପାରୁ ନାହାନ୍ତି । ଟିକେଟ୍ ମିଳୁ ନାହିଁ । ସେତେବେଳର ଭୁବନେଶ୍ୱର ଷ୍ଟେସନ୍ ହେଲା ବଖୁରିଏ ପକା ଘର ଆଉ ତା' ପାଖରେ ଗୋଟିଏ ତୃତୀୟ ଶ୍ରେଣୀ ମୁସାଫିରଖାନା । ଯାତ୍ରୀ ଯେତେ ପଡ଼ି ରହିଥାନ୍ତି ସେ ମୁସାଫିରଖାନାକୁ ବଳେଇ ଗୁରାଏ ରାସ୍ତା ଉପରେ ବିଛଣା ପତ୍ର ପାରି ଶୋଇଥାନ୍ତି, ବସିଥାନ୍ତି, ବୁଲୁଥାନ୍ତି । ସମସ୍ତଙ୍କର ଗୋଟାଏ ଚିନ୍ତା କେମିତି ଗାଡ଼ି ଧରି ଯେ ଯା'ର ଘରକୁ ଯିବେ ।

ଆମେମାନେ ବାଟ ଚାଲି ଚାଲି ଆସି ଥକା ହେଇ ପଡ଼ିଥିଲୁ । ଏଣୁ ସେଇ. ବଖୁରିକିଆ ଷ୍ଟେସନ୍ ଘର ପଛପଟେ ଚଉଡ଼ା ରାସ୍ତା ଉପରେ ନାଲି ସଡ଼କରେ ବିଛଣାପତ୍ର ପାରି ଆମେମାନେ ବସିଲୁ । ଆମେ ଯେଉଁ ଜାଗାରେ ବିଛଣା ପତ୍ର ପାରି ବିଶ୍ରାମ ନେଇଥିଲୁ ସେ ଜାଗା ଆଜିକାଲି ପିଚୁ ହେଇ ଯାଇଛି । ସେଠି ଆଜିକାଲି ସାଇକେଲ୍ ରିକ୍ସା ପଙ୍‌ତରା ମାରୁଛନ୍ତି । ସେତେବେଳେ ଷ୍ଟେସନ୍ ନିକଟରେ ଏତେ ବଜାର ଦୋକାନ ନଥିଲା, ଯା ଥିଲା ସବୁ ମଫସଲି ଧରଣର, ଚାଳଘର, କିରୋସିନି ଆଲୁଅ ।

ଲୋକେ ସେମିତି ପାଟିତୁଣ୍ଡ କରି ବୁଲୁଥାନ୍ତି । ସମସ୍ତଙ୍କର ଆପତ୍ତି, ଷ୍ଟେସନ୍ ମାଷ୍ଟର ଟିକେଟ୍ ଦଉନାହିଁ କେମିତି ଯିବୁ? କଣ କରିବୁ? ପ୍ଲାଟଫର୍ମ୍ ଉପରକୁ ଯାଇ ଅନ୍ୟ ବାଟରେ ଷ୍ଟେସନ୍ ମାଷ୍ଟରଙ୍କୁ କହିବାର ଉପାୟ ନାହିଁ । କାରଣ ପ୍ଲାଟଫର୍ମ୍‌କୁ ଯିବା ବାଟ ବନ୍ଦ କରି ଦିଆଯାଇଥାଏ । ଆମେମାନେ ସମସ୍ତେ ଜଗି ଥାଉ । ଜହ୍ନ ପରିଷ୍କାର ପଡ଼ିଥାଏ । ବାବା, ମାଷ୍ଟ୍ରେ ଏବଂ ବାବାଙ୍କର ଜଣେ ଚପରାଶି ଚେଷ୍ଟା କରୁଥାନ୍ତି କେମିତି ଟିକେଟ୍ ମିଳିବ । ସାନ ଭଉଣୀ ଶୋଇଥାଏ । ମଝିଆ ଭଉଣୀ, ମୁଁ ଜଗି ସେ ବିଛଣା ଉପରେ ଶୋଇଥାଉ । ମା ଆମକୁ ଜଗି ବସିଥାନ୍ତି । ରାତି କ୍ରମଶଃ ବଢ଼ିବାରେ ଲାଗିଲା । ବାବା, ମାଷ୍ଟ୍ରେ ଆଉ ବାବାଙ୍କର ଚପରାସୀ ଆସି ଥକା ହେଇ ବସିଲେ । ସେ ରାତିରେ ଆଉ ଟିକଟ୍ ମିଳିଲା ନାହିଁ । ଅନ୍ୟାନ୍ୟ ଯାତ୍ରୀମାନେ ଆମରି ପରି ରାତି ସାରା ଜଗିଥାନ୍ତି । ହଠାତ୍ ଶୁଣାଗଲା ଟୁକୁନାଟା କୂଅରେ ପଡ଼ିଗଲା । ଆମେମାନେ ଶୁଣି ଆଶ୍ଚର୍ଯ୍ୟ ହେଲୁ କ'ଣ ଟୁକୁନାଟା କୂଅରେ ପଡ଼ିଗଲା? ଟୁକୁନା କିଏ? ତା'ପରେ ବୁଝାଗଲା ବାଲେଶ୍ୱରରୁ ଆସିଥିବା ଜଣେ ମାଇପି ଯାତ୍ରୀ ହାତରୁ କୂଅରେ ଗୋଟିଏ ଛୋଟ ଲୋଟା ଖସିପଡ଼ିଲା । ବାଲେଶ୍ୱର ଆଡ଼େ ଛୋଟ ଲୋଟାକୁ "ଟୁକୁନା" କହନ୍ତି । ଟୁକୁନା ଶବ୍ଦଟା ଶୁଣିବାକୁ ଭାରି ଭଲ ଲାଗିଲା । ସେତେବେଳେ

ମୋର ସାନଭଉଣୀ ଶଙ୍କରୀବାଳାର ଡ଼ାକ ନାମ ଦିଆ ହୋଇ ନଥାଏ। ଏଣୁ ତାର ନାମ ସେଇ ଟୁକୁନା ରଖାଗଲା। ଆଉ ତାର ଉପର ଭଉଣୀ ହିରଣ୍ୟବାଳାର ଡ଼ାକ ନାମ ତ ଆଗରୁ ଆମ ଘରେ ଥିବା ଶ୍ୟାମ ବୁଢ଼ା ଦ୍ୱାରା "ବୁଢ଼ୀ ମାଉସୀ" ରଖା ହୋଇଥିଲା।

ତହିଁ ଆରଦିନ ରାତିରେ ଆମେ ଭୁବନେଶ୍ୱର ଷ୍ଟେସନ୍‌ରୁ ପୁରୀ ଏକ୍‌ପ୍ରେସ୍ ଯୋଗେ କଟକକୁ କୌଣସିମତେ ଆସି ପାରିଲୁ। କି ହଇରାଣ। ଯେଉଁଦିନ ରାତିଟା ଆମେ ଭୁବନେଶ୍ୱର ଷ୍ଟେସନ୍ ନିକଟରେ ପଡ଼ି ରହିଲୁ, ଇମିତି ଗୋଟାଏ ଦି'ଟା ଘଟଣା ଘଟିଲା ଯାହାକି ଆଜିକାଲି ଘଟିଥିଲେ ଷ୍ଟେସନ୍ ମାଷ୍ଟରଙ୍କ ଅସ୍ତିତ୍ୱ ରହନ୍ତାନି। ଘଟଣା ହେଲା କେତେକ ଦୂର ଯାତ୍ରୀଙ୍କଠାରୁ ଟିକଟ୍ ବାବଦକୁ ଟଙ୍କା ନେଇ ଟିକେଟ୍ ନଦେଇ ଷ୍ଟେସନ୍ ମାଷ୍ଟର ଝରକା ଖିଡ଼ିକି ବନ୍ଦ କରି ଦେଲେ। ଇମିତି ଦୁଇଥର ଯାତ୍ରୀଙ୍କ ସଙ୍ଗେ ବ୍ୟବହାର କରିବାର ମୁଁ ବାବା ଏବଂ ଅନ୍ୟମାନେ ଆଲୋଚନା କରିବାର ଶୁଣିଥିଲି। ସେତେବେଳର ଭୁବନେଶ୍ୱର ଷ୍ଟେସନ୍ ଘର ବଖୁରିଏ। ସେଥିରେ ଟିକେଟ୍ କାଟିବା ପାଇଁ ଗୋଟିଏ ଖିଡ଼ିକି ଖୋଲା ହୁଏ। ସେଥିରେ ଟିକେଟ୍ ପାଇଁ ଟଙ୍କା ବଢ଼େଇ ଦେଇ ଟିକେଟ୍ ନପାଇ ଖିଡ଼ିକି ଯଦି ବନ୍ଦ କରି ଦିଆହୁଏ ଦୂର ଯାତ୍ରୀମାନଙ୍କ ପକ୍ଷରେ କି ବିପଦ! ଭାବିଲେ ଦିହ ଗରମ ହୋଇ ଉଠେ। ଷ୍ଟେସନ୍ ମାଷ୍ଟରଙ୍କ ଭାଗ୍ୟ ଯେ ସେ ସେତେବେଳେ ଏ ଘଟଣା ଘଟାଇ ଥିଲେ ଆଉ ସେତେବେଳର ଲୋକ ମଧ୍ୟ ଯାକୁ ସହ୍ୟ କରି ରହିଗଲେ।

ମୁଁ ପ୍ରମୋସନ୍ ପାଇ ପାଇ ଗଦାଧର ଘୋଷଙ୍କ ଶିକ୍ଷାଦାନରେ ଆସି ୬ଷ୍ଠ ଶ୍ରେଣୀରେ ପହଁଚିଥାଏ। କୌଣସିମତେ under consideration ହଉ ବା ଭଲରେ ହଉ ୬ଷ୍ଠ ଶ୍ରେଣୀରେ ଆସି ପହଁଚିଲି। ଏଇ ସମୟରେ ୬ଷ୍ଠ ଶ୍ରେଣୀରେ ପଢ଼ିବା ବେଳେ ପ୍ରଥମେ ମୁଁ ଗୋପବନ୍ଧୁ ଦାସଙ୍କ ଦ୍ୱାରା ସମ୍ପାଦିତ "ସମାଜ" ସମ୍ବାଦପତ୍ର ଦେଖିଲି। ଫର୍ଦ୍ଦେ ମାଟିଆ କାଗଜ, ମୂଲ୍ୟ ମାତ୍ର ଗୋଟିଏ ପଇସା। ଶିରୋନାମା ଆଜିକାଲି ଯେମିତି ଲେଖା ହଉଛି, ସେତେବେଳେ ମାଟିଆ କାଗଜ ଉପରେ ମଧ୍ୟ ଲେଖା ହଉଥିଲା। ପୁଣି ଏଇ ୬ଷ୍ଠ ଶ୍ରେଣୀର କ୍ଳାସ ଟିଚର ଥିଲେ ବାଳକୃଷ୍ଣ କର। ଏ "ମାତୃଭୂମି" ସମ୍ବାଦ ପତ୍ରର ପ୍ରତିଷ୍ଠାତା ବାଳକୃଷ୍ଣ କର ନୁହନ୍ତି। ଏ ଆଉ ଜଣେ ବାଳକୃଷ୍ଣ କର। ଏ ଅନେକ ବର୍ଷ ଯାଏ ପି.ଏମ୍.ଏକାଡ଼େମୀରେ ଶିକ୍ଷକ ଥାଇ ସେଠା ଛାତ୍ରାବାସର ସୁପରିଟେନ୍‌ଡ଼େଣ୍ଟ ଭାବରେ ଦାୟିତ୍ୱ ତୁଲାଇଥିଲେ। ଏ ମହାଶୟ ଦିନେ ଆମକୁ କହିଲେ ପିଲାଏ, ଆମ ସ୍କୁଲର ଗୋଟିଏ ମ୍ୟାଗାଜିନ ବାହାରିବ। ତାର ନାମ "ସାହିତ୍ୟ-ସୋପାନ" ରଖା ଯାଇଛି। ତୁମ ପ୍ରତ୍ୟେକଙ୍କୁ ଅଣାଏ ଲେଖା ଚାନ୍ଦା ଦବାକୁ ପଡ଼ିବ। କାଲି ତୁମେମାନେ ପ୍ରତ୍ୟେକ ଅଣାଏ ଲେଖା ପଇସା ଆଣିଥିବ। ମୁଁ ମ୍ୟାଗାଜିନ୍ ଶବ୍ଦଟାକୁ ଠିକ୍ ଭାବରେ ବୁଝି ପାରିଲି ନାହିଁ। ତଥାପି ଏତିକି ବୁଝିଲି ଯେ ଏଥିରେ ଯିଏ ଯାହା ଲେଖା ଦବ, ଭଲ ହୋଇଥିଲେ, ପ୍ରକାଶ ପାଇବ। ଆଉ ଅଣାଏ ପଇସା ଚାନ୍ଦା ଦବାକୁ ପଡ଼ିବ।

ସେହିଦିନ ସ୍କୁଲରୁ ଫେରି ସନ୍ଧ୍ୟା ପରେ ମୁଁ ପଢୁଛି, ଗଦାଧର ଘୋଷ ପାଖରେ ବସିଛନ୍ତି। ବାବା ମୋର ପଢ଼ିବା ଜାଗାର ନିକଟରେ ଗୋଟିଏ କ୍ୟାନ୍‌ଭାସ୍ ଖଟ ଉପରେ ଶୋଇଛନ୍ତି। ମୁଁ ବାବାଙ୍କୁ କହିଲି ବାବା ଆମ ସ୍କୁଲରେ ଗୋଟାଏ "ମ୍ୟାଗାସ୍ଥାନିସ୍" ବାହାରିବ, ମୋତେ ଅଣାଏ ଚାନ୍ଦା ଦବାକୁ ପଡ଼ିବ।

ମୁଁ "ମ୍ୟାଗାସ୍ଥାନିସ୍" କହିବା ଶୁଣି ବାବା ହସି ପକେଇ କହିଲେ କଣ କହିଲୁ? ମ୍ୟାଗାସ୍ଥାନିସ୍? ବୋକା "ମ୍ୟାଗାଜିନ୍" କହିଥିବେ। ମ୍ୟାଗାଜିନ୍‌କୁ ମ୍ୟାଗାସ୍ଥାନିସ୍ କହୁଚୁ? ମାଷ୍ଟ୍ରେ ମଧ୍ୟ ହସିଲେ। ମୁଁ ଲଜ୍ଜାରେ ଚପିଗଲି। ତହିଁ ଆରଦିନ ଅଣାଏ ପଇସା ଚାନ୍ଦା ନେଇ ବାଳକୃଷ୍ଣ କରଙ୍କ ହାତରେ ଦେଲି। କିନ୍ତୁ ମୋର ମନ ହେଲା ମୁଁ କିଛି ଲେଖି ସାହିତ୍ୟ-ସୋପାନକୁ ଦେବି, ଛପା ହବ।

ମୋର ପାଠ ଭିତରେ ଇଂରାଜୀ, ଓଡ଼ିଆ ଭଲ ହଉଥାଏ। ଅଙ୍କ ନାଁ ଶୁଣିଲେ ଜ୍ୱର ଆସେ। ଆଉ ଅନ୍ୟାନ୍ୟ ବିଷୟ ମଧ୍ୟରେ ତ୍ରଇଂ ଭଲ ହୁଏ। ଆଉ ଯାହା ଢ଼ୋକ ପାଣି ପିଇ ବଞ୍ଚିବା କଥା। ତଥାପି ମନ ହେଲା କିଛି ଗୋଟାଏ ଲେଖି ସାହିତ୍ୟ-ସୋପାନକୁ ଦେବି, ଛପା ହବ। ରାତିରେ ପଢ଼ା ସରିବା ପରେ କଣ ଗୁରାଏ ବସି

ଲେଖିଲି । ତାକୁ ଆଉ ଥରେ ଭଲ କରି ଲେଖି ନେଇ ତହିଁ ଆରଦିନ ବାଳକୃଷ୍ଣ କରଙ୍କ ହାତରେ ଦେଲି । କିନ୍ତୁ ମୋର ମନେ ହଉଛି ବାଣିଜ୍ୟ ବିଷୟରେ ଗୋଟାଏ କୋଉ ବହିରୁ ଦେଖି କଣ ଲେଖିଥିଲି । ବାଳକୃଷ୍ଣ କର ପଚାରିଲେ ତୁ ଲେଖିଛୁ? ଆଚ୍ଛା ହଉ ଦେଖିବା । ସେ ଲେଖାଟି ରଖିଲେ, ଚାନ୍ଦା ଦେଲି । ମୁଁ ଲେଖାଟିଏ ଦବାର ଦେଖି ସହପାଠୀମାନେ ପଚାରିଲେ ତୁ ଲେଖା ଦେଲୁ, କଣ ଲେଖିଛୁ? ମୁଁ ସେମାନଙ୍କୁ କହିଲି ବାଣିଜ୍ୟ ବିଷୟରେ । ପିଲାମାନେ ଶୁଣି କହିଲେ ଆମେ ଗୋଟାଏ ଗୋଟାଏ କିଛି ଲେଖି ଦବୁ ।

ମୋର ସେ ଲେଖା ସାହିତ୍ୟ-ସୋପାନରେ ଛପା ହବ କଣ? ତାର ତଳ ସୋପାନରେ ବୋଧେ ଗୋଡ଼ ରଖି ପାରିଲାନି । କୁଆଡ଼େ ଗୋଡ଼ ଖସି ଗଲା କି କଣ, ତା ବିଷୟରେ ଆଉ କୌଣସି ସମ୍ବାଦ ପାଇଲି ନାହିଁ । ବାଳକୃଷ୍ଣ କରଙ୍କୁ ମଧ ସେ ବିଷୟରେ ପଚାରିବାକୁ ଭୟ ହେଲା । ଆଉ ପଚାରିଲି ନାହିଁ । ଯଦିଚ ସାହିତ୍ୟ-ସୋପାନରେ ମୋର ଲେଖା ଛପା ହେଲା ନାହିଁ ତଥାପି ସେହି ଦିନଠୁଁ କିଛି ଗୋଟାଏ ଲେଖିବି ସବୁବେଳେ ମନ ଡ଼ାକିଲା ।

ପରେ ସାହିତ୍ୟ-ସୋପାନର ପ୍ରଥମ ସଂଖ୍ୟା ଯେତେବେଳେ ପ୍ରକାଶ ପାଇଲା, ତାକୁ ଦେଖି ମନ ଖୁସି ହେଇଗଲା । ବୁଝେ ନ ବୁଝେ, ତାକୁ ଘରକୁ ଆଣି ପଢ଼ିଲି । ବାବା ପଢ଼ିଲେ । ମାଷ୍ଟ୍ରେ ପଢ଼ିଲେ । ସେହି ସାହିତ୍ୟ-ସୋପାନର ଲେଖା, କଳେବର ଦେଖି ମୋର କାହିଁକି ସବୁବେଳେ ମନ ଡ଼ାକିଲା କିଛି ଲେଖିବି । ଆମମାନଙ୍କୁ ଗୋଟିଏ ନିର୍ଦ୍ଦିଷ୍ଟ ଦିନରେ ଲାଇବ୍ରେରିରୁ ଛୋଟ ଛୋଟ ବହି ଦିଆ ଯାଉଥିଲା । ବହିଗୁଡ଼ିକ ଇଂରାଜୀ, ବଙ୍ଗଳା ଓ ଓଡ଼ିଆରେ ଲେଖା ଥିଲା । ମୁଁ ପ୍ରାୟ ଓଡ଼ିଆ, ବଙ୍ଗଳା ବହି ଆଣି ପଢ଼ିବାକୁ ଲାଗିଲି । ବଙ୍ଗଳା ଭାଷା ମୋତେ କେହି ପଢ଼େଇ ନଥିଲେ । ମୁଁ ନିଜେ ନିଜେ ପଢ଼ିବାକୁ ଶିଖିଗଲି । ତାର କାରଣ ଆମ ଘରେ ସବୁବେଳେ ମା'ଙ୍କର ପଢ଼ିବା ପାଇଁ ବଙ୍ଗଳା ରାମାୟଣ, ମହାଭାରତ, ଚୈତନ୍ୟଚରିତାମୃତ ଆଉ କବିକଙ୍କଣ ମଙ୍ଗଳଚଣ୍ଡୀ ରଖା ହେଇଥାଏ । ମା ସବୁ କାମଦାମ ସାରି ଦିନେ ଦିନେ ସେ ସବୁ ବହିରୁ ଖଣ୍ଡେ ପଢୁଥିଲେ । ମୁଁ ସେଇଥିରୁ ପ୍ରାୟ ଶୁଣି ଶୁଣି ବଙ୍ଗଳା ପଢ଼ିବାକୁ ଆକୃଷ୍ଟ ହେଲି । ତା ଛଡ଼ା ବାବାଙ୍କର ସାପ୍ତାହିକ ବଙ୍ଗବାସୀ, ବସୁନ୍ଧରା, ହିନ୍ଦୁ ପତ୍ରିକା ଆସୁଥିଲା ତାକୁ କିଛି ବେଳେ ବେଳେ ପଢ଼େ ଏବଂ ତାର ସଦ୍‌ବ୍ୟବହାର କିମିତି କରୁଥିଲି ସେକଥା ପୂର୍ବେ ବର୍ଣ୍ଣନା କରିଛି । କିନ୍ତୁ ଯେତେବେଳେ ଭଲ କରି ରାମାୟଣ, ମହାଭାରତ ପଢ଼ିବାକୁ ମନ ଡ଼ାକିଲା । ସେତେବେଳେ ଘରେ କିଛି ନାହିଁ । କେବଳ ଚୈତନ୍ୟଚରିତାମୃତ ଆଉ ମଙ୍ଗଳଚଣ୍ଡୀ ଥାଏ । ସେ କେବଳ ପୂଜା ହଉଥାଏ । ତାକୁ ମୁଁ ଛୁଇଁବାକୁ ମନା । ଏଣୁ ମୁଁ ନିଜେ ଚେଷ୍ଟା କରି ମାଛୁଆ ବଜାର, ବହ୍ନିବଜାରରେ ଆମର ପରିଚିତ, ଅପରିଚିତ କେତେକ ଭଦ୍ରଲୋକଙ୍କ ଘରୁ ଖୋଜି ଖୋଜି ବଙ୍ଗଳା ରାମାୟଣ, ମହାଭାରତ ଆଣି ପଢ଼ିଲି । ରାମାୟଣ, ମହାଭାରତ ପଢ଼ିକି କେତେ ଆନନ୍ଦ, କେତେ ଦୁଃଖ ଅନୁଭବ କରିଛି ସେ ବର୍ଣ୍ଣନାତୀତ । ରାମାୟଣ ପଢ଼ି ମୁଁ ସେତେ ଦୁଃଖ ଅନୁଭବ କରିନାହିଁ ବରଂ ଆନନ୍ଦ ଅନୁଭବ କରିଛି । କିନ୍ତୁ ଯେଉଁଦିନ ମହାଭାରତରୁ 'ଅଭିମନ୍ୟୁ ବଧ' ପଢ଼ିଲି, ସେଦିନ ଦୁଃଖରେ ଅଭିଭୂତ ହେଇ ପଡ଼ିଲି । ଯେଉଁଦିନ 'କୀଚକ ବଧ' କଥା ପଢ଼ିଲି ସେଦିନ ହସିହସି ଗଡ଼ିଛି । ସେମିତି ଆହୁରି ଅନେକ ଘଟଣା ପଢ଼ି ସୁଖଦୁଃଖରେ ଅଭିଭୂତ ହେଇ ପଡ଼ିଛି । ମୁଁ ତ କ୍ଲାସରେ ଓଡ଼ିଆ ସାହିତ୍ୟ ପଢୁଥିଲି କିନ୍ତୁ ମୋର ବଙ୍ଗାଳୀ ସହପାଠୀ ପିଲାଏ ବଙ୍ଗଳା ସାହିତ୍ୟ ପଢୁଥିଲେ । ତାଙ୍କଠୁଁ ବଙ୍ଗଳା ପାଠ୍ୟ ପୁସ୍ତକ ଆଣି ପଢ଼ିଲି । ଯେମିତି ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ଲିଖିତ ଗଦ୍ୟ ବଙ୍ଗଳା ପୁସ୍ତକ "ସୀତା ବନବାସ" ଇତ୍ୟାଦି । ଇମିତି କ୍ରମଶଃ ବଙ୍ଗଳା, ଓଡ଼ିଆ ବହି ପଢ଼ିବାକୁ ମନ ଡ଼ାକିଲା । ଇଂରାଜୀ ଯାହା ପାଠ୍ୟ ପୁସ୍ତକ, ସେତିକି ପଢୁଥାଏ । ତାଛଡ଼ା ମୋ ପଢ଼ିବା ଭଳି ଅନ୍ୟ ଇଂରାଜୀ ବହି ପଢ଼ିବାକୁ ମନ ଡ଼ାକିଲା ନାହିଁ । ସେତେବେଳେ କ୍ଲାସ୍‌ରେ ଓଡ଼ିଆ ସାହିତ୍ୟ ବହି ଆମର ପଢ଼ା ହଉଥାଏ ମଧୁ ରାଓଙ୍କ ଲିଖିତ "ସାହିତ୍ୟ କୁସୁମ" ।

ଏଇଠି ଆଉ ଗୋଟିଏ କଥା କହେ । ଆଗରୁ ଆମ ଗାଁ ଦୁର୍ଗା ପୂଜା ବିଷୟରେ କେତେକ କଥା ଲେଖିଛି ।

ଅସୁରେଶ୍ୱର, ଦୀକ୍ଷିତପଡ଼ାର ଦୁର୍ଗା ପୂଜା ସେତେବେଳେ ନାଁ ଡ଼ାକ। ଦୁର୍ଗାଙ୍କର ସାଜସଜ୍ଜାଠାରୁ ଆରମ୍ଭ କରି ବିଧିବିଧାନ ଅନୁଯାୟୀ ପୂଜା ଅର୍ଚ୍ଚନା ଏତେ ଆଡ଼ମ୍ବର ସହକାରେ ସେତେବେଳର ଅନ୍ୟ କୌଣସି ପଲ୍ଲୀ ଗାଁରେ ହେଉଥିଲା ବୋଲି ମୋର ସନ୍ଦେହ ହୁଏ। ଦୀକ୍ଷିତପଡ଼ାର ବଙ୍ଗାଳୀ ସାହି, ମହାନ୍ତି ସାହି, ବ୍ରାହ୍ମଣ ସାହିରେ ଘରେ ଘରେ ଲୋକ ଭରା, ପୁରୁଖା ପୁରୁଷ ଲୋକେ ଯେତେ ପୁରୁଖା ବୁଢ଼ୀ ମଧ୍ୟ ଥିଲେ ସେମିତି।

ଆମର ବଙ୍ଗାଳୀ ସାହିରେ ସେତେବେଳେ ଗୌରୀଶଙ୍କର ରାୟ, ରାମଶଙ୍କର ରାୟ, କୁଞ୍ଜ ବିହାରୀ ରାୟ, ବ୍ରଜ ବିହାରୀ ରାୟ, ହରିଶ୍ଚନ୍ଦ୍ର ରାୟ, ଯୋଗେଶ ଚନ୍ଦ୍ର ରାୟ, ତ୍ରୈଲୋକ୍ୟ ନାଥ ରାୟ, ନୀଳାଦ୍ରି ବିହାରୀ ରାୟ, ଡାକ୍ତର ରାଖାଲ ଚନ୍ଦ୍ର ସୋମ। ବ୍ରାହ୍ମଣ ସାହିରେ ପ୍ୟାରୀ ଚରଣ ଚକ୍ରବର୍ତ୍ତୀ, ଭଗବତୀ ଚରଣ ଚକ୍ରବର୍ତ୍ତୀ, ଅକ୍ଷୟ କୁମାର ଚକ୍ରବର୍ତ୍ତୀ। ତାଙ୍କର ପିତା, ଆହୁରି ଅନ୍ୟାନ୍ୟମାନେ ମହାନ୍ତି ସାହିରେ ମୋର କେବଳ ମନେପଡ଼େ କାଳନ୍ଦୀ ଚରଣ ମହାନ୍ତିଙ୍କୁ। ଆହୁରି ଅନେକଙ୍କୁ ଦେଖିଛି କିନ୍ତୁ ମୁଁ ନାଁ ଜାଣେନା। ପୁରୁଷମାନଙ୍କ ମଧ୍ୟରେ ଏମାନେ ଯେମିତି ମହିଳାମାନଙ୍କ ମଧ୍ୟରେ ମୋର ବୁଢ଼ୀମା। ରାମଶଙ୍କର ରାୟଙ୍କ ସ୍ତ୍ରୀ, ମୋର ମା, ଦେଠେଇ ମା ଆହୁରି ଅନ୍ୟାନ୍ୟ ପୁରୁଖା ମହିଳାମାନେ ଥିଲେ ଯେଉଁମାନେ କି ଦୁର୍ଗାଙ୍କର ପୂଜା ଅର୍ଚ୍ଚନା ବିଷୟରେ ଖୁବ୍ ନିଷ୍ଠାପରାୟଣା, ସାବଧାନ, ଯେମିତି ଟିକିଏ ବିଳମ୍ବ ହବ ନାହିଁ। ଛୁଆଁଛୁତ ହବ ନାହିଁ। ଦୁର୍ଗାଙ୍କର ପୂଜାରେ ଯେଉଁଠି ଯାହା ଦରକାର ଠିକ୍ ଯୋଗେଇ ଦିଆଯିବ। ଉପାସ ରହିବାକୁ ହେଲେ ଖାଡ଼ା ଖାଡ଼ା ଉପାସ। ପୂଜା ନସରିବା ଯାଏ ଛେପ ଢ଼ୋକିବେ ନାହିଁ। ରାତି ଅଧରେ ସନ୍ଧି ପୂଜା ପଡ଼ିଲେ ଗାଧେଇ ପୂଜା ସାମଗ୍ରୀ ସଜାଡ଼ିବାକୁ ହେଲେ ନିଶ୍ଚୟ ଗାଧେଇବାକୁ ହବ। ଟିକିଏ ଅବହେଳା ନାହିଁ। ସେଥିରେ ପୁଣି ଆନନ୍ଦର ସୀମା ନାହିଁ। ଦୁର୍ଗାଙ୍କ ପୂଜାରେ ପୂଜା ସାମଗ୍ରୀ, ଭୋଗ ଇତ୍ୟାଦି ଯୋଗେଇବାର ପ୍ରଧାନ କାମ ଥିଲା ଆମ ତିନି ଘରୁ, ଗୌରୀଶଙ୍କର ରାୟ, କୁଞ୍ଜବିହାରୀ ରାୟ, ଏବଂ ହରିଶ୍ଚନ୍ଦ୍ର ରାୟଙ୍କ ଘରୁ, ଆଉ ଯେ ଯେମିତି ଭୋଗ, ପୂଜା ସାମଗ୍ରୀ ଯୋଗେଇଲେ ସେଥିରେ ବାଧା ନଥିଲା। ଗାଁର ସମସ୍ତଙ୍କ ଘରୁ ପ୍ରାୟ ଭୋଗ ଆସୁଥିଲା। ମୋ ଦେଖିବାରେ ଦୁର୍ଗାଙ୍କୁ ପୂଜା କରୁଥିଲେ ପ୍ୟାରୀ ଚରଣ ଚକ୍ରବର୍ତ୍ତୀ ଆଉ ଭଗବତୀ ଚରଣ ଚକ୍ରବର୍ତ୍ତୀ।

ଦୁର୍ଗା ପୂଜାର ଚାରି ରାତି ଯାତ୍ରା ହେଉଥିଲା। ସେହି ବୈଷ୍ଣବ ପାଣୀଙ୍କ ଲିଖିତ ସୁଆଙ୍ଗ ସବୁ। ମୁଁ ଆମ ଗାଁ ଦୁର୍ଗା ପୂଜା ବେଳେ ବର୍ଷେ ବୈଷ୍ଣବ ପାଣୀଙ୍କୁ ଆମ ଗାଁକୁ ଯିବାର ଦେଖିଛି। ତାଙ୍କର ଯାତ୍ରାଦଳ କି ନା କହିପାରିବି ନାହିଁ କିନ୍ତୁ ତାଙ୍କୁ ଦେଖିଛି। ଆମ ଗାଁରେ ସେତେବେଳେ ଯେଉଁ ଯାତ୍ରାଦଳ ଯାତ୍ରା କରି ପ୍ରଶଂସିତ ହେଇ ଯାଉଥିଲେ ସେମାନେ ଗର୍ବ ଅନୁଭବ କରୁଥିଲେ। ସେମାନେ ଅନ୍ୟ ଜାଗାକୁ ଯାତ୍ରା କରିବା ପାଇଁ ନିମନ୍ତ୍ରଣ ପାଉଥିଲେ। କାରଣ ସେମାନେ ଦୀକ୍ଷିତପଡ଼ାରେ ଯାତ୍ରା କରି ପ୍ରଶଂସା ଅର୍ଜନ କରିଛନ୍ତି।

ଦୁର୍ଗାପୂଜା ସହିତରେ ଯାତ୍ରା, ଗୋଟିପୁଅ ନାଚ ସେମିତି ପ୍ରତ୍ୟେକ ବର୍ଷ ଆଡ଼ମ୍ବର ସହକାରେ ଚାଲିଥିଲା। କିନ୍ତୁ ବର୍ଷେ ଗାଁକୁ ଗଲାବେଳେ ଦେଖିଲି ଆମରି ଦାଣ୍ଡ ଦୁଆରର ବାଁ ପଟକୁ ଆମର ଗୋଟିଏ ପାଚେରୀ ଆଡ଼କୁ ପଛ କରି ଏକ ପ୍ରକାଣ୍ଡ ଷ୍ଟେଜ୍ ତିଆରି ହେଇଛି, ସିନ୍ ଇତ୍ୟାଦି ଟଙ୍ଗା ହେଇଛି। ଷ୍ଟେଜ୍‌ର ମୁହଁ ହେଇଛି ପଶ୍ଚିମ ଆଡ଼କୁ ଅର୍ଥାତ୍ ମାଧବ ଜୀଉ ଠାକୁରଙ୍କ ଆଡ଼କୁ ଦୁର୍ଗାଙ୍କ ଆଡ଼କୁ ମଧ୍ୟ ନୁହେଁ। ଦୁର୍ଗାଙ୍କ ଆଡ଼କୁ ହେଇଥିଲେ ଉତ୍ତର ଆଡ଼କୁ ହେଇଥାନ୍ତା। କାରଣ ଦୁର୍ଗା ହଉଥିଲେ ଆମ ଗାଁରେ ଦକ୍ଷିଣ ଆଡ଼କୁ ମୁହଁ କରି।

ଷ୍ଟେଜ୍ ତିଆରି ହବାର କାରଣ ଶୁଣିଲି। ଏଇ ବର୍ଷଠୁଁ ଥିଏଟର୍ ହବ। ଯାତ୍ରା କି ଗୋଟିପୁଅ ନାଚ ଆଉ ହବ ନାହିଁ। ମୋ ମନଟା ଭାଙ୍ଗି ପଡ଼ିଲା। ଷ୍ଟେଜ୍ କଣ? ଥିଏଟର୍ କଣ? କିଛି ବୁଝି ନଥାଏ। ନାଟକ କଣ? କିଛି ଜଣା ନାହିଁ। ଷ୍ଟେଜ୍ ଭିତରକୁ ପଶିବାକୁ ଆମ ପିଲାଗୁଡ଼ାଙ୍କୁ ମନା। କେହି ତା' ଭିତରେ ପଶି ପାରିବେ ନାହିଁ। ଥରେ ଆମେ କେତେଟା ପିଲା କୌଶଳ କରି ତା'ଭିତରକୁ ପଶି ଯାଇ ଥିବା ଦେଖି ଗିରିଜା ଶଙ୍କର ରାୟ ଆମ ଉପରେ

ବିରକ୍ତ ହୋଇ ଗୋଡ଼େଇଲେ। ଆମେ ଭୟରେ କିଏ କୋଉ ବାଟରେ ପଳେଇ ଆସିଲୁ। ଷ୍ଟେଜ୍ ଭିତରେ ବୁଲିବା ଆମର ସେତିକି।

ସେ ବର୍ଷ ଗାଁରେ ଯାଇ ପହଁଚି ପ୍ରଥମେ ଷ୍ଟେଜ୍ ଦେଖିଲି। ତାପରେ ଚଣ୍ଡୀମଣ୍ଡପକୁ ଯାଇ ଦେଖେ ମୋର ଜେଠାପୁଅ ବଡ଼ ଭାଇ ହାରମୋନିୟମ ବଜଉଛନ୍ତି। ଆଉ ଜଣେ ତାଙ୍କ ଆଗରେ ନାଚୁଛି। ସାମନାରେ ନାଚି ନାଚି ପୁଣି ଦୂରକୁ ଚାଲି ଯାଉଛି। ଯେ ନାଚୁଛନ୍ତି ତାଙ୍କର ନାଁ ପରେ ଜାଣିଲି ଶ୍ରୀ ବିଷ୍ଣୁ ଚରଣ ମହାନ୍ତି। ସେ ଅନ୍ୟ ଗାଁର ଲୋକ। ଦୀକ୍ଷିତପଡ଼ାର ନୁହନ୍ତି। ମୁଁ ପୁଣି ଶୁଣିଲି ସେ ଥିଏଟର୍‌ରେ କ'ଣ ପାର୍ଟ୍ ନେଇଛନ୍ତି। ପାର୍ଟ୍ କଣ ବୁଝି ନଥାଏ। କିନ୍ତୁ ମୋର ମନ ହେଲା ମୁଁ ଗୋଟାଏ ପାର୍ଟ୍ ନେବି। ପାର୍ଟ୍ ନେଲେ କଣ କରିବାକୁ ହୁଏ ଜଣା ନାହିଁ। କେବଳ ନାଚିବା ଦେଖିଲି। ମୋର ମନ ଡ଼ାକିଲା ମୁଁ ଗୋଟାଏ ପାର୍ଟ୍ ନେବି। ଚଣ୍ଡୀମଣ୍ଡପରେ ନାଚ, ବାଜା ଚାଲିଥାଏ। ମୁଁ ଘରକୁ ପଳେଇ ଆସି ମା'ଙ୍କୁ କହିଲି ମୁଁ ଥିଏଟର୍‌ରେ ଗୋଟାଏ ପାର୍ଟ୍ ନେବି। ମା କହିଲେ ତୁ ପିଲାଟା, ତୁ କଣ ଗୋଟାଏ ପାର୍ଟ୍ ନବୁ? ମୁଁ କହିଲି ତୁ ବଡ଼ଭାଇଙ୍କୁ କହ, ସେ ମୋତେ ଗୋଟାଏ ପାର୍ଟ୍ ଦେବେ।

ମା ପୁଣି କହିଲେ ତୁ କି ପାର୍ଟ୍ ନବୁ? ଆସୁ ବଡ଼ଭାଇ ତାକୁ ପଚାରେ। ବଡ଼ଭାଇ ଘରକୁ ଆସିଲେ ମୋ କହିବା ଅନୁଯାୟୀ ମା ତାଙ୍କୁ କହିଲେ ଆରେ ତାକୁ ଗୋଟାଏ କଣ ଥିଏଟର୍‌ରେ ପାର୍ଟ୍ ଦେ। ସେ ମୋ ସାଙ୍ଗରେ ଲଗେଇଛି ଗୋଟାଏ କଣ ପାର୍ଟ୍ ନବ। ବଡ଼ଭାଇ ହସିଲେ, କହିଲେ ଖୁଡ଼ି, ସେ କି ପାର୍ଟ୍ ନବ? ସେ ପିଲାଟା, ତା ଦ୍ୱାରା କଣ ହବ?

ମୁଁ ବଡ଼ଭାଇଙ୍କ ଉତ୍ତର ଶୁଣି ହତାଶ ହୋଇ ରାଗରେ ଶୋଇଲି। ସେ ବର୍ଷ ଦୁର୍ଗାପୂଜାରେ ଚାରି ରାତି ଥିଏଟର୍ ହେଲା। ରାମ ଶଙ୍କର ରାୟଙ୍କ ଲେଖା ଅନେକଗୁଡ଼ିଏ ନାଟକ ଆଉ ପ୍ରହସନ ଯେମିତି କାଞ୍ଚିକାବେରୀ, ରାମ ବନବାସ, ଯୁଗଧର୍ମ, କଳିକାଳ, ବୁଢ଼ାବର ଇତ୍ୟାଦି। ଯେଉଁ ରାତିରେ ଥିଏଟର୍ ଆରମ୍ଭ ହେଲା ରାମ ଶଙ୍କର ରାୟ ମଝିରେ ବସିଲେ ତାଙ୍କ ପାଖେ ପାଖେ ଆଉ ଯେତେ ପୁରୁଖା ଲୋକମାନେ ବସିଲେ ଆମେ ପିଲାମାନେ ସବୁ ସାମନାରେ ବସିଲୁ।

ଯେତେବେଳେ ମୁଁ ଷ୍ଟେଜ୍ ସାମନାରେ ବସିଲି ପ୍ରଥମେ ଦେଖିଲି drop scene, ପାଖେ ଅସ୍ତଗାମୀ ସୂର୍ଯ୍ୟକୁ, ଅନ୍ୟ ପାଖେ ଉଦୀୟମାନା ଚନ୍ଦ୍ରର ଚିତ୍ର, ନଈ, ଗାଁ ଗଣ୍ଡାର ଦୃଶ୍ୟ। ସେ drop scene ରୁ ଜାଗା ଜାଗା ରଙ୍ଗ ଛାଡ଼ି ଯାଇଛି। ଷ୍ଟେଜ୍ ସାମନାରେ ଉଭୟ ପାର୍ଶ୍ୱରେ ଦୁଇଟା ଫଚ୍ ଲାଇଟ୍ ଟଙ୍ଗା ହୋଇଛି। ଆଜିକାଲି ବିଜୁଳିବତୀ ସାହାଯ୍ୟରେ ଆଲୋକ ସଜାରେ ମଞ୍ଚର ମର୍ଯ୍ୟାଦା ଅନେକଗୁଣ ବଢ଼ି ଯାଇଛି।

ଥିଏଟର୍ ଆରମ୍ଭ ହବା ପୂର୍ବରୁ ଘଣ୍ଟା ଶବ୍ଦ କେତେଥର ହେଲା। ମୁଁ ବୁଝି ପାରିଲି ନାହିଁ କେଉଁଠି ଏବଂ କିଏ ଘଣ୍ଟା ବଜଉଛି? କିଛି ସମୟ ପରେ ଷ୍ଟେଜ୍ ଭିତରୁ ଐକ୍ୟତାନବାଦନ ଶୁଣାଗଲା। ସେତେବେଳେ ତ ଆଜିକାଲି ପରି ଏତେ ପ୍ରକାର ବାଦ୍ୟ ଯନ୍ତ୍ର ନଥିଲା, କେବଳ ହାରମୋନିୟମ୍, ବେହେଲା, କ୍ଲାରିଓନେଟ, ତୁବି ତବଲା, ଗିନି, ପଖଜ ଇତ୍ୟାଦି। ଐକ୍ୟତାନବାଦନ ବେଶ୍ ଚମତ୍କାର ଲାଗିଲା। କିଛି ସମୟ ପରେ ଯେତେବେଳେ drop scene ଉଠିଲା, ଦେଖିଲି "ଅଦୃଷ୍ଟ କୁମାରୀଗଣ" ଚମତ୍କାର ଭଙ୍ଗୀରେ କିଏ ଠିଆ ହୋଇଛି, କିଏ ବସିଛି, କିଏ ଅଧା ବସିଛି, କିଏ ଅଧା ଶୋଇଛି ସମସ୍ତଙ୍କ ମୁହଁ ଧଳା। Rosy cheek, ସେଥିରେ ପୁଣି ନୟନ ତଟରେ କଜଳଗାର, ମୁଣ୍ଡରେ ମୁକୁଟ ପରି କାଗଜ ତିଆରି ନେଳି, ନାଲି ପତ୍ର, ପୁଷ୍ପ, ପରିଚ୍ଛଦ ମଧ୍ୟ ସେମିତି ସୁନ୍ଦର, ଝଲମଲିଆ, ଜାମା, ଘାଗରା, ପାଦରେ ପୁଣି ଅଳତା, ବଳାଗଣ୍ଠିରେ ଘୁଙ୍ଗୁର, ହାତ, ଗୋଡ଼ ମଧ୍ୟ ସେମିତି ମୁହଁ ପରି ଧଳା ଦୁ'ଛି। ହାତ ପାପୁଲି ମଧ୍ୟ ଲାଲ ରଙ୍ଗରେ ରଞ୍ଜିତ। ମୁଁ ତ ଅବାକ୍ ହୋଇଗଲି। କାହାରିକି ପ୍ରଥମେ ଚିହ୍ନି ପାରିଲି ନାହିଁ। ମନେ ହେଲା ଯେମିତି ସ୍ୱର୍ଗରୁ ପରୀଗୁଡ଼ିଏ ଉଡ଼ି ଆସିଛନ୍ତି କି? ଯାତ୍ରାରେ ଦେଖିଥିଲି dancing ପିଲା କିନ୍ତୁ ସେମାନେ ତ ଏତେ ସୁନ୍ଦର ଦିଶୁ ନଥିଲେ। ଯାଙ୍କ ମୁହଁରେ, ସାରା ଷ୍ଟେଜରେ ଫଂଚ୍ ଲାଇଟ୍‌ର ଆଲୁଅ ପଡ଼ି ଆହୁରି ଶୋଭା ବଢ଼େଇ ଦେଇଛି। ଗୋଟିପୁଅ

ନାଚିବାର ତ ଦେଖିଛି । ସେମାନେ ତ ଏତେ ସୁନ୍ଦର ଦେଖା ଯାଉ ନଥିଲେ । ଆମରି ପିଲାଙ୍କ ଭିତରୁ ଅନେକ ଆନନ୍ଦରେ ପାଟି କରି କୁହାକୁହି ହେଲେ, ହେଇରେ, ବିଷ୍ଣୁ, ହେଇରେ ସତ୍ୟବାଦୀ, କିଏ କହିଲା ହେଇରେ ଶରତ । ପୁଣି କହିଲେ ସେ ହଉଛି ବିପିନ, ସେ ହଉଛି ବାୟା । ଏମିତି ପିଲାଙ୍କ ଆଡୁ ଅଦୃଷ୍ଟ କୁମାରୀମାନଙ୍କର ସଂକ୍ଷିପ୍ତ ପରିଚୟ ପ୍ରଦାନରେ ଗୋଳମାଳ ହେଲାରୁ ମୁରବିଙ୍କ ଆଡୁ ଗୋଟାଏ ପାଟି ହେଲା ବସ୍ ଚୁପ୍ କରି କେହି ପାଟି କରନା ।

ସମସ୍ତେ ଚୁପ୍ ହେଇଗଲେ । ଅନ୍ୟାନ୍ୟ ଦର୍ଶକମାନେ ମଧ ନିରବ ରହି ଦେଖିଲେ । ଭୀଷଣ ଲୋକ ସମାଗମ କିନ୍ତୁ ସୁଆଙ୍ଗ ଦେଖିବା ପାଇଁ ଲୋକଙ୍କର ଯେମିତି ସୁବିଧା ହଉଥିଲା ଏଥିରେ ସେମିତି ହେଲା ନାହିଁ । ଲୋକମାନେ ଅନେକ ମନେ ମନେ ଅସନ୍ତୁଷ୍ଟ ହେଲେ କିନ୍ତୁ କାହାରି କିଛି କହିବାର ଉପାୟ ନାହିଁ ।

ଅଦୃଷ୍ଟ କୁମାରୀଗଣ ଯେତେବେଳେ ନାଚି ନାଚି wings ଭିତରକୁ ପଶିଗଲେ, ଷ୍ଟେଜ୍ ଫାଙ୍କା ହେଇଗଲା । ମୁଁ ଆଶ୍ଚର୍ଯ୍ୟ ହେଇଗଲି ଏମାନେ କୁଆଡ଼େ ଉଭେଇଗଲେ ?

ନାଟକ ଆରମ୍ଭ ହେଲା । ଦେଖିଲି ଆମରି ଗାଁର ଏବଂ ଅନ୍ୟ ଗାଁର ତରୁଣ ଦଳଙ୍କ ଭାଗ ବେଶି । ବୟସ୍କ ଲୋକ ମଧ କେତେକ ମିଶିଛନ୍ତି । ସେତେବେଳେ ଓଡ଼ିଶାରେ କେଉଁଠି ମହିଳାମାନେ ଷ୍ଟେଜ୍‌ରେ ଓଲେହି ନାହାନ୍ତି ଅଭିନୟ କରିବା ପାଇଁ । ସେହି ପୁରୁଷଙ୍କୁ ମହିଳା ସାଜି ଅଭିନେତ୍ରୀ ଭୂମିକାରେ ଅଭିନୟ କରିବାକୁ ପଡୁଥିଲା । ଏଣୁ ଆମ ଗାଁରେ ମଧ ସେଇୟା । ସେତେବେଳେ ମହିଳାମାନେ ନାଚିବା ବେଳେ ଗୋଟିଏ ପାଖରେ ଶ୍ରୀ ବିଷ୍ଣୁ ଚରଣ ମହାନ୍ତି ଗୋଟିଏ ଧାଡ଼ିର ସାମନାରେ ରହି ନାଚୁଥିଲେ । ବାବା ମୋତେ ତାଙ୍କୁ ଚିହ୍ନେଇ ଦେଇ କହିଲେ ଜାଣିଛୁ, ସେ ବି.ଏ. ପଢୁଛି । ମୁଁ ବାବାଙ୍କ କଥା ଶୁଣି ଆଶ୍ଚର୍ଯ୍ୟ ହେଇଗଲି, ବି.ଏ. ପଢୁଛି ! ! କେଡ଼େ ବଡ଼ ଗୁଣୀ ଲୋକ ଏ !

ଆଜିକାଲି ତ ବି.ଏ. ପାଠୁଆଙ୍କର ଅବସ୍ଥା ଯେ କେଉଁଠି ପହଁଚିଲାଣି ଭାବିଲେ ଆକାଶ ପାତାଳ ପ୍ରଭେଦ ।

ଅଦୃଷ୍ଟ କୁମାରୀଗଣଙ୍କ ନୃତ୍ୟ ଦେଖି ଯେମିତି ଆଶ୍ଚର୍ଯ୍ୟ ହେଲି ନାଟକ ଦେଖି ମଧ ସେମିତି ଆଶ୍ଚର୍ଯ୍ୟ ହେଲି । "ରାମ ବନବାସ" ନାଟକ ଭଲ ଭାବରେ ବୁଝି ପାରିଲି କାରଣ ଆଗରୁ ରାମାୟଣ ପଢ଼ି ଘଟଣା ଜାଣିଥିଲି ।

ଆଜିକାଲି ମଞ୍ଚସଜ୍ଜା ସହିତରେ ସେତେବେଳକାର ମଞ୍ଚସଜ୍ଜା ତୁଳନା କଲେ ହସ ଲାଗେ । ଆଜିକାଲି ପରି ବିଜୁଳି ଆଲୁଅ ବିଭିନ୍ନ ପ୍ରକାରର ଦୃଶ୍ୟ ସଜ୍ଜା, ଟେକ୍‌ନିକ୍ । ସେତେବେଳେ ସ୍ୱପ୍ନ । ସେଥିରେ ପୁଣି ସୌଖୀନ ଭାବରେ ଦଳେ ଟୋକା, ବୁଢ଼ା, ଅଧୁଆଡ଼ି ମିଶି ନାଟକ ମଞ୍ଚସ୍ଥ କରିବେ । ତା'ଛଡ଼ା ଗ୍ରାମ୍ୟ ପରିବେଶ ମଧରେ ଦର୍ଶକ ମଧ ସେମିତି ଭଲ ପେଶାଦାର ଦଳର ଥିଏଟର୍ ଦେଖିଥିବା ପାଠୁଆ ଲୋକେ ବସି ରାତିସାରା ଥିଏଟର୍ ଦେଖୁଛନ୍ତି । ଆପତ୍ତି ନାହିଁ । କଟୁ ମନ୍ତବ୍ୟ ନାହିଁ, ଅବସାଦ ନାହିଁ । ମୂର୍ଖ ଗାଉଁଲୀ ଲୋକତ ସହଜେ ଦେଖିବେ, ତାଙ୍କୁ ତ ଚମତ୍କାର ଲାଗୁଛି । ସେ ତ କେଭେ ଥିଏଟର୍ କଣ ଦେଖିନଥିଲେ । ଏବେ ପାଠୁଆ ବାବୁଭାୟାଙ୍କ ଭଳି ତାଙ୍କୁ ଏତେ ଆରଉ ନାହିଁ । ଷ୍ଟେଜ୍‌ର ମୁହଁ ଆଡ଼କୁ ଅନେଇ ବସିଲେ ଯାହା ଦେଖିବେ ଯାତ୍ରା, ସୁଆଙ୍ଗ ଭଳି ଯୋଉଠିସେଠି ବସି ତ ଆଉ ଦେଖି ହଉନି ।

ମୋର ମନେ ଅଛି ରାମ ବନବାସ ନାଟକରେ ଯେ କୌଶଲ୍ୟାର ଭୂମିକାରେ ପୁରୁଷ ଲୋକଟି ଅଭିନୟ କରିଥିଲେ ତାଙ୍କର ଡ଼ାକ ନାମ ଖତୁଆ । ସେ ଜଣେ ଯୁବକ, ତ୍ରିପଣ୍ଡ କଳା ରଙ୍ଗର । ତାଙ୍କର କୌଣସି ନାରୀ ଭୂମିକାରେ ଅଭିନୟ କରିବାକୁ ଭାରି ଆଗ୍ରହ । ଏଣୁ ଯେଉଁଦିନ ରାତିରେ ରାମ ବନବାସ ନାଟକ ହବ ସେଦିନ ୩ଟା ବେଳୁଁ ଆସି ଆମ ଗାଁରେ ପହଁଚିଲେ ସାଙ୍ଗରେ ଗୋଟିଏ କଳା କଟକଟ ଅଳନ୍ଦୁ ଲଗା ଚାରିକଣିଆ ବେତର ପେଡ଼ି । ସେଥିରେ ତାଙ୍କର କୌଶଲ୍ୟା ସାଜିବା ପାଇଁ ଶାଢ଼ୀ, ଗହଣା ଯାହା ଯାହା ଦରକାର ସବୁ ଆଣିଥାନ୍ତି । ଶାଢ଼ୀ ହେଲା ଖଣ୍ଡେ ଦି'ଖଣ୍ଡ ନାଲି ରଙ୍ଗର ତେଲ ଚିକିଟା ମଠା ଆଉ କେତେକ ରୁପାର ଗହଣା ଯେମିତି କି ଚୁଡ଼ି, ପାହୁଡ଼, ତାଇଚ, ମଲ, ମୁଦି ଆଉ ବେକକୁ ହରଡ଼ଫାଳିଆ ସୁନାହାର, ଦଣ୍ଡି, ନୋଥ ଇତ୍ୟାଦି ।

ଏହାଛଡ଼ା ଆମ ଗାଁର ଥିଏଟର୍ ଦଳ ପକ୍ଷରୁ ତାଙ୍କୁ ପରଚୁଲା, ପାଉଡ଼ର ଇତ୍ୟାଦି ଯୋଗେଇ ଦିଆ ହେଲା। ସେ ଆସି ପହଁଚିଲା ପରେ ତାଙ୍କର ଦାଢ଼ି, ନିଶ ଇତ୍ୟାଦି କଟା ହେଲା। ତା'ପରେ ମୁହଁ ଧୁଆ ସରିଲା। ମୁହଁ ଶୁଖିଲେ ପାଉଡ଼ର ଘଷା ଆରମ୍ଭ ହେଲା। ସେ ତାଙ୍କର ସାଜସଜ୍ଜାରେ ଲାଗି କୌଶଲ୍ୟା ସାଜି ଥିଏଟର୍ ଆରମ୍ଭ ହବା ଯାଏ ପାର୍ଟ ମୁଖସ୍ଥ କରିବାରେ ଲାଗିଲେ। ଏ ଗଲା କୌଶଲ୍ୟାଙ୍କ କଥା। ମନ୍ଥରାଙ୍କ ସାଜସଜ୍ଜାର କଥା ଟିକିଏ କହେ, ମନ୍ଥରାର ପିଠିରେ ଗୋଟାଏ କୁଜ ଥିଲା ବୋଲି ରାମାୟଣରେ ବର୍ଣ୍ଣନା କରାଯାଇଛି। ଏଣୁ ମନ୍ଥରାକୁ 'କୁଜୀ' ବୋଲି କୁହାଯାଏ। ତାର କୁଜ କେମିତି କରାଯିବ? କୁଜ କରିବା ପାଇଁ ତା ପିଠିରେ ଗୋଟାଏ ଗଉଣୀ ଓଗଡ଼ା ହେଇ ବନ୍ଧା ହେଲା। ତା ଉପରେ ନାଲି ରଙ୍ଗର ମଠା ଶାଢ଼ିର ଆବରଣରେ ବେଶ୍ ଗୋଟିଏ କୁଜୀ ପରି ଜଣାଗଲା।

ଏମିତି ସବୁ କେତେକ ସାଜସଜ୍ଜା ହୁଏ। ଆଉ କେତେକଙ୍କର ଭଲ ସାଜ ସଜ୍ଜା ହୁଏ। ଯେଉଁମାନଙ୍କ ଭଲ ସାଜସଜ୍ଜା ହୁଏ ସେମାନଙ୍କ ଲାଗି ଆମ ଘରୁ ଏବଂ ଅନ୍ୟାନ୍ୟଙ୍କ ଘରୁ ଭଲ ଭଲ ଶାଢ଼ି, ସୁନା ରୂପାର ଅଳଙ୍କାର ମାଗି ନିଆ ହୁଏ।

ସିନ୍ ସବୁର ଅବସ୍ଥା କେତେକ ଭଲ ତ କେତେକର ଜାଗା ଜାଗା ରଙ୍ଗ ଛାଡ଼ି ଯାଇଥାଏ। ଖାଲି ଯାହା ତାହା ହେଇ କିଛି ଗୋଟାଏ ଦେଖାଗଲେ ହେଲା। ମୁଁ ତ ସେତେବେଳେ ସିନ୍ କଣ ଜାଣି ନଥିଲି। ଏଣୁ ତାକୁ ମଧ ଦେଖି ଆଶ୍ଚର୍ଯ୍ୟ ହେଲି। କେମିତି ଏତେ ଦୂରକୁ ରାସ୍ତା ଦେଖା ଯାଉଛି? କେମିତି ଏତେ କୋଠାବାଡ଼ି ଦେଖା ଯାଉଛି? କେମିତି ଜଙ୍ଗଲ ହେଇଛି?

ଆମ ଗାଁରେ ଥିଏଟର୍ ହବା ପାଇଁ ଦୁର୍ଗାପୂଜାର ବହୁତଦିନ ଆଗରୁ ଗୌରୀଶଙ୍କର ରାୟଙ୍କ ଚୌଧୁରୀ ବଜାରସ୍ଥ କୋଠାର ଦୋ'ତାଲା ଉପରେ rehearsal ହୁଏ। ତା'ପରେ ଗାଁରେ ଯାଇ କେତେଦିନ rehearsal ହୁଏ। ତାପରେ ଗାଁରେ ନାଟକ ମଞ୍ଚସ୍ଥ ହୁଏ।

ଆମ ଗାଁ ନିକଟରେ କାଳଦେଶିଆ ବୋଲି ଗୋଟିଏ ଗାଁ ଅଛି। ଆମ ଗାଁରେ ଯେଉଁ ବର୍ଷ ଦୁର୍ଗାପୂଜାରେ ଥିଏଟର୍ ଆରମ୍ଭ ହୁଏ କାଳଦେଶିଆରେ ମଧ ସେହି ବର୍ଷ ଥିଏଟର୍ ଆରମ୍ଭ ହୁଏ। ଆମ ଗାଁର ଥିଏଟର୍‌ର ସାଜସଜ୍ଜା, ଅଭିନୟ ଇତ୍ୟାଦି ତୁଳନାରେ ସେଠି କୁଆଡ଼େ ନିକୃଷ୍ଟ ଧରଣର ହୁଏ। ଏସବୁ ଆଲୋଚନା ପଡ଼େ ଆମ ଗାଁର ଆମରି ବନ୍ଧୁବାନ୍ଧବ କେତେକ ତରୁଣ ଦଳଙ୍କ ମଧ୍ୟରେ କାଳଦେଶିଆରେ କୁଆଡ଼େ ହେଁସ, ଖଣ୍ଡୁଆ, ମଶିଣା ଇତ୍ୟାଦି ମଞ୍ଚରେ ବ୍ୟବହାର ହଉଥିଲା। କାଳଦେଶିଆରେ ଦୁର୍ଗାପୂଜା ବେଳେ ଦୁର୍ଗା ମୂର୍ତ୍ତି ପରିବର୍ତ୍ତେ ସରସ୍ୱତୀ ମୂର୍ତ୍ତି ତିଆରି କରି ପୂଜା କରନ୍ତି। ମୁଁ କେଭେ ଦେଖି ନାହିଁ, ଶୁଣିବା କଥା।

ଇମିତି ଦୁଇତିନି ବର୍ଷ ଆମ ଗାଁରେ ଥିଏଟର୍ ହବା ପରେ ବର୍ଷେ ଗୋଟିଏ ଗହଣା ଚୋରି ହେଲା। ଗହଣା ହେଲା ରୂପାର ଚନ୍ଦ୍ରହାର। ଏ ଚନ୍ଦ୍ରହାର ଆମ ଗାଁର ଜଣକ ଘରୁ ମଗା ହେଇ ଆସିଥିଲା। ଏଥି ଲାଗି ସେ ବର୍ଷ ବହୁତ ଗଣ୍ଡଗୋଳ ଲାଗିଲା। ଆମ ଗାଁରେ ଏଇ ଥିଏଟର୍ ହବା ଦ୍ୱାରା କେତେକଗୁଡ଼ିଏ ତରୁଣଙ୍କ ଅବନତି ଘଟିଲା। ପାଠରେ ଡ଼ୋରି ପଇଲା। ଛନ୍ନଛଡ଼ା ହେଲେ। ମୋର ନିଜର ଜେଠପୁଅ ଭାଇ ମୋଠାରୁ ବୟସରେ ଅନେକ ବଡ଼। ସେତେବେଳେ କଟକ କାଠଗଡ଼ା ସାହିସ୍ଥ କାୟସ୍ଥ ଛାତ୍ରାବାସରେ ରହୁଥିଲେ। ସେ I.A. ପରୀକ୍ଷା ଲାଗି sent up ନହେଇ ପାରି କୁଆଡ଼େ ପଳେଇଲେ। କେତେକ ପାଠ ଛାଡ଼ି ବୁଲିଲେ। ଯେଉଁ ବର୍ଷ ମୋର ଜେଠପୁଅ ବଡ଼ ଭାଇ କଟକ ଛାଡ଼ି ପଳେଇଲେ ସେ ବର୍ଷ ଆମ ଘରେ ତାଙ୍କ ଲାଗି ଦୁଃଖ ଘୋଟିଗଲା। ବିଶେଷ ଦୁଃଖ କଲେ ମୋର ମା କାରଣ ସେ ତାଙ୍କୁ ପାଖରେ ରଖି entrance ପାସ୍ କରିବା ପର୍ଯ୍ୟନ୍ତ ଲାଳନପାଳନ କରିଥିଲେ। ସେତେବେଳେ ସେହି ଏକା ଆମ କୁଟୁମ୍ବରେ entrance ପାସ୍ କରା ବଡପୁଅ, କେବଳ ଗିରିଜା ଶଙ୍କର ରାୟ ସେତେବେଳେ ଗୌରୀଶଙ୍କର ରାୟଙ୍କ ପରିବାରରୁ ପାଠପଢ଼ାରେ ମନୋନିବେଶ କରି କଲିକତା ବିଶ୍ୱବିଦ୍ୟାଳୟରୁ English ରେ କୃତିତ୍ୱର ସହ ପାସ୍ କରି ସ୍ୱର୍ଣ୍ଣପଦକ ଲାଭ କରିଥିଲେ। Law ପରୀକ୍ଷାରେ ମଧ ସେମିତି ସ୍ୱର୍ଣ୍ଣପଦକ ଲାଭ କରିଥିଲେ।

ଗିରିଜା ଶଙ୍କର ରାୟ ଯେତେବେଳେ ଆମ ଗାଁରେ କୃତିତ୍ୱର ସହ English ରେ M.A. ଆଉ Law pass କଲେ, ସେତେବେଳେ ଆମ ଗାଁରେ ଗୋଟାଏ ଚାଞ୍ଚଲ୍ୟ ସୃଷ୍ଟି ହେଇଗଲା । ସମସ୍ତଙ୍କ ମୁହଁରେ ଗିରିଜା ଶଙ୍କର ରାୟଙ୍କ ପ୍ରଶଂସା । ଆମେ ପିଲାଗୁଡ଼ାକ ଯେତେବେଳେ ଦୁଷ୍ଟାମି କରି ଗୋଳମାଳ କରୁ ବୁଢ଼ାବୁଢ଼ା ମୁରବି ଶ୍ରେଣୀର ଲୋକମାନେ ଆମ ଉପରେ ନାକ ଟେକି ଗାଳି ବର୍ଷଣ କରି କହନ୍ତି, ଏ ଗୁଡ଼ାକ କେହି ଗିରିଜା ପରି ହେବେ ନାହିଁ ।

ସମସ୍ତେ ଆଶା କରିଥିଲେ ଗିରିଜା ଅମଳରେ ଆମ ଗାଁର ଆହୁରି ଉନ୍ନତି ହବ । ଦୁର୍ଗାପୂଜା ଆହୁରି ଆଡ଼ମ୍ବର ସହକାରେ ସମାହିତ ହବ ।

ବାବା ମୋତେ ବରାବର ଚେତାଇ ଦିଅନ୍ତି ଦେଖୁଛୁ ବୁଢ଼ା ଦା (ଗିରିଜା ଶଙ୍କର ରାୟଙ୍କୁ ଆମ ଗାଁରେ ସମସ୍ତେ ବୁଢ଼ା ବୋଲି ଡ଼ାକୁଥିଲେ । ଯେଉଁମାନଙ୍କର ଭାଇ ସମ୍ପର୍କୀୟ ହେବେ ସେମାନେ ବୁଢ଼ା ଦା ବୋଲି ଡ଼ାକୁଥିଲେ) କେମିତି M.A. ପାସ୍ କରି ନାଁ କଲା ତୁମେମାନେ କେହି ବୁଢ଼ା ପରି ହେଇ ପାରିବନି । ବୁଢ଼ା ଦା ପରି ହବାକୁ ଚେଷ୍ଟା କର ।

ବହୁଦିନ ପରେ ଯେତେବେଳେ ଗିରିଜା ବାବୁଙ୍କ ଅମଳ ଆସିଲା ସେତେବେଳେ ଗାଁର ଉନ୍ନତି ହବ କଣ ? ଦୁର୍ଗାପୂଜା ହବ କଣ ? ଦୀକ୍ଷିତପଡ଼ା ଗାଁ ରସାତଳକୁ ଗଲା । ଗାଁ ଉପରେ ଶନିର ଦୃଷ୍ଟି ପଡ଼ିଲା । ତାର ଘଟଣା ଯେଉଁମାନେ ଏ ପର୍ଯ୍ୟନ୍ତ ମୋରି ପରି ବଞ୍ଚି ରହିଛନ୍ତି, ସେହିମାନେ ହିଁ କହିବେ ଗାଁରେ ଦୁଇ ସହୋଦର ଭାଇ, ଯେଉଁମାନେ ସୁଖଦୁଃଖରେ ଭଲରେ ଚଳୁଥିଲେ ତାଙ୍କର ପୈତୃକ ଘର ଭାଗ ଭାଗ ହେଲା । ଯେ ଜମି ବିକି ନାହିଁ ତାର ଜମି ବେଆଇନ ଭାବେ ଦଖଲ ହେଇ ବାଡ ବୁଜା ହେଲା । ବିଧବାର ଡ଼ିହ ବିକା ହେଲା, ମଠ ଦଖଲ ହେଇ ମଠର ଠାକୁରଙ୍କୁ କେନାଲରେ ଭସେଇ ଦିଆ ହେଲା । ଦୁର୍ଗାପୂଜା ଚାନ୍ଦାରେ ହେଲା । ନାଟ ତାମସା କୁଆଡ଼େ ଉଭେଇ ଗଲା । ଯେ ଗାଁ ଛାଡ଼ି ବିଦେଶରେ ରହି ଜୀବିକା ଅର୍ଜନ କରୁଥିଲେ, ତାଙ୍କର ଜମିର ଫସଲକୁ ଜବରଦସ୍ତ ଆଦାୟ କରା ହେଲା ।

ଲୋକେ ଭୟଭୀତ ହେଲେ । କିଏ କହିବ ? କିଏ ଉତ୍ତର ଦବ ? ପ୍ରତିବାଦ କଲେ ପଛକୁ ମକଦ୍ଦମା ଖଞ୍ଜା ହବ । ଯେ ଋଣ କଲା, ସେ ସର୍ବସ୍ୱାନ୍ତ ହେଲା । ଗୋବର ମାଟି ନେଇ ଉଠିଲା । ଘରବାରି ନିଲାମ ହେଲା, ବେଦଖଲ ହେଲା । ଏମିତି କି ପୁରାତନ ପୋଖରୀ ମଝିରେ ବାଡ଼ ଉଠିଲା । ଦୁଃଖରେ ଯେମିତି ପୋଖରୀ ଶୁଖି ଠୋ ଠୋ ହେଇଗଲା, ପୋତି ହେଇଗଲା । ମାଟି ଶୁଖି ଫାଟିଲା । ମଝିରେ ବାଡ଼ ଠିଆ ହେଇଛି । ଆହୁରି ଦେଖିବାକୁ ହେଲା ଦାଦୀ, ପୁତୁରା ମଧ୍ୟରେ ପୂର୍ବକାଳର ଘର ମଝିରେ କାନ୍ଥ ଉଠିଲା, ହାଣ୍ଡି ଭିନେ ହେଲା । ବୁଢ଼ା ବୁଢ଼ା ଲୋକେ ଗିରିଜା ବାବୁଙ୍କ ଅମଳରେ ଗାଁର ଅବସ୍ଥା, ଦୁର୍ଗାପୂଜାର ଅବସ୍ଥା ଦେଖି ଦୁଃଖରେ ଭାଙ୍ଗି ପଡ଼ିଲେ । କ'ଣ ହେଲା !! ହାୟରେ ଅଦୃଷ୍ଟ !! ସେମାନେ ଯାହା ଆଶା କରିଥିଲେ ମରୀଚିକାରେ ପରିଣତ ହେଲା । ମୁଁ ଥରେ ବାବାଙ୍କୁ ବହୁତଦିନ ପରେ କହିଥିଲି ବାବା, ବୁଢ଼ାଦା'ଙ୍କ ପରି ଆମେ କେହି ନ ହେଇଛୁ ଭଲ ହେଇଛି । ବାବା ନିରୁତ୍ତର ରହିଲେ ।

ଗିରିଜା ଶଙ୍କର ରାୟଙ୍କ ଜ୍ଞାନର ଗାରିମା ଯୋଗୁଁ ଆମେ ଗର୍ବ ଅନୁଭବ କଲେ କଣ ହବ ? ଦୀକ୍ଷିତପଡ଼ା ଗାଁ ସରିଯାଇଛି । ପୂର୍ବର ଦୀକ୍ଷିତପଡ଼ା ଆଉ ନାହିଁ । ଭାବିଲେ ଆଖିରେ ଲୁହ ଆସେ । କିଛି କାଳ ପରେ ଲୋକେ ଯେତେବେଳେ ବେଶି ଉତ୍ୟକ୍ତ ହେଲେ, ଗିରିଜା ଶଙ୍କର ରାୟ ମଧ୍ୟ ଆଉ ଗାଁକୁ ଗଲେ ନାହିଁ । ତାଙ୍କର ଶେଷକାଳ ପର୍ଯ୍ୟନ୍ତ କଟକରେ ଅବସ୍ଥାନ କଲେ । ମୁଁ ଏସବୁ ଲେଖିବାକୁ ବାଧ୍ୟ ହେଲି କାରଣ ମୁଁ ଭୁକ୍ତଭୋଗୀ । ଆହୁରି ମୋ' ପରି ଅନେକ ଅଛନ୍ତି ।

ଗାଁ ଥିଏଟର୍ ବନ୍ଦ ହେଇ ପୁଣି ପୂର୍ବପରି ଯାତ୍ରା ଚାଲିଲା । ଗାଁରେ ଥିଏଟର୍ ଯେତେବେଳେ ଆରମ୍ଭ ହୁଏ ସେତେବେଳକୁ ଗୌରୀଶଙ୍କର ରାୟଙ୍କ ପରଲୋକ ହେଇଗଲାଣି । ରାମ ଶଙ୍କର ରାୟ ସେତେବେଳେ

ଜୀବିତାବସ୍ଥାରେ, ଗାଁର ଦୁର୍ଗାପୂଜାର ଅବସ୍ଥା ସେମିତି ଅକ୍ଷୁର୍ଣ୍ଣ ଥାଏ ।

ଗାଁରେ ଥିଏଟର୍ ଦେଖି ଆସିଲା ପରେ ମୁଁ କଟକକୁ ଆସି ମୋର ମନ ହେଲା ଥିଏଟର୍ କରିବି । କିନ୍ତୁ କଣ କରିବି ? ଥିଏଟର୍ ପାଇଁ ପେଣ୍ଡାଲ୍ କେଉଁଠି ହବ ? କଟକରେ ଆମ ଦାଣ୍ଡ ଘରେ ଗୋଟାଏ ପଲଙ୍କ ପଡ଼ିଥିଲା ତାକୁ ବେଶି ଭାଗ ଆମ ଘରକୁ ଯେଉଁ କୁଣିଆମାନେ ଆସନ୍ତି ତାଙ୍କୁ ସେ ପଲଙ୍କ ବ୍ୟବହାର କରିବାକୁ ଦିଆହୁଏ । ସେତେବେଳେ କେହି କୁଣିଆ ନଥିଲେ ପଲଙ୍କ ଖାଲି ପଡ଼ିଥିଲା । ସେହି ପଲଙ୍କକୁ ଠିକ୍ କଲି ଏଇଠି ଷ୍ଟେଜ୍ ହବ କିନ୍ତୁ ଅଭିନେତା କାହିଁ ? ନାଟକ କାହିଁ ? କଣ ମଞ୍ଚସ୍ଥ କରାଯିବ ? କିଛି ଜଣା ନାହିଁ । କିନ୍ତୁ ଥିଏଟର୍ ହବ । ସାହିର ମୋରି ବୟସର କେତେକ ସାଙ୍ଗସାଥୀ ଜୁଟିଗଲେ । ଅଭିନୟ କରିବା ପାଇଁ ମୋ ତରଫରୁ ମୁଁ, ମୋର ଗୋଟିଏ ସାନ ଭଉଣୀ ଏବଂ ମୋର ଗୋଟିଏ ଭଣଜା ଥିଏଟର୍ କରିବାକୁ ପ୍ରସ୍ତୁତ ହେଇଥାଉ । କିନ୍ତୁ ନାଟକ କାହିଁ ? ମୁଁ ଠିକ୍ କଲି ନାଟକ ଲେଖିବି । ନାଟକର ବିଷୟବସ୍ତୁ ମଧୁସୂଦନ ରାଓଙ୍କର "ସାହିତ୍ୟ-କୁସୁମ"ରୁ କେତୋଟି ବିଷୟ ବାଛି ନାଟକ ଲେଖିବାକୁ ଆରମ୍ଭ କଲି, ନାଟକ କେମିତି ଲେଖା ହୁଏ, ଜଣା ନାହିଁ । ତଥାପି ଖଣ୍ଡିଏ ଛୋଟ ଖାତା ତିଆରି କରି ନାଟକ ଲେଖିବା ଆରମ୍ଭ କଲି । ଏଇ ହେଲା ମୋର ଜୀବନର ପ୍ରଥମ ଲେଖା । ଲେଖାଲେଖି ପ୍ରତି ଆଗ୍ରହ ଜନ୍ମିଲା ଏଇଠୁଁ । ମୁଣ୍ଡରେ କିଛି ନାହିଁ । ତଥାପି ଲେଖିବାକୁ ଇଚ୍ଛା । ନାଟକ ଲେଖିବାକୁ ତ ଆରମ୍ଭ କଲି । ଏଣେ ଚାଲିଲା ମଞ୍ଚ ସଜ୍ଜା । ଘରେ ଯେତେ ଭଲ ଛିଣ୍ଡା ରଙ୍ଗୀନ୍ ଆଲୁଆନ୍ ଥିଲା ସବୁ ଆଣି ମଞ୍ଚ ସଜ୍ଜାରେ ଲଗେଇଲି । ଗାଁରେ ଯେମିତି ଦେଖିଥିଲି, ସେମିତି କରିବାକୁ ଇଚ୍ଛା କିନ୍ତୁ ସେତେ ଉପକରଣ କେଉଁଠୁ ପାଇବି ? ତଥାପି ମଞ୍ଚସଜ୍ଜା ଭାରି ସୁନ୍ଦର ଦେଖାଗଲା । ମଞ୍ଚରେ ଆଲୋକ ସଜ୍ଜା କିମିତି ହବ ? ଆଲୁଅ କାହିଁ ? ମନ ହେଲା ଲଣ୍ଠନ୍ ଜାଳିବା, କିନ୍ତୁ ମା, ବାବା ଦେଖିଲେ କଣ କହିବେ ? ଉପର ଆଲୁଆନ ସବୁ ଟଙ୍ଗା ହେଇଛି ଯଦି ନିଆଁ ଧଇଲା ନିଆଁ ଲିଭାଳୀ ଦଳ ତ ସେତେବେଳେ କଟକରେ ନଥାନ୍ତି । ମୋର ଏ ପଲଙ୍କ ମଞ୍ଚକୁ ନିଆଁ ଦାଉରୁ କିଏ ରକ୍ଷା କରିବ ? ଥିଏଟର୍ କରିବାର ପୁରସ୍କାର ସ୍ୱରୂପ ମୋରି ପିଠିରେ କେତେକ ତାଳ ବୃଷ୍ଟି ହବ । ଏଣୁ ଠିକ୍ ହେଲା ଦିନ ବେଳା ଥିଏଟର୍ ହବ ।

ମୋରି ସାଙ୍ଗ ଭିତରୁ ଜଣେ କହିଲା ବାବୁ ଟିକେଟ୍ କରିବା । ଯେଉଁମାନେ ଟିକେଟ୍ ନେବେ ସେଇମାନେ ଦେଖିବେ । ଟିକେଟ୍ ବିନା ମୂଲ୍ୟରେ ବିତରଣ କରାଯିବ । ଏଣୁ ଭାବନା ପଡ଼ିଲା ଟିକେଟ୍ କେମିତି ତିଆରି ହବ ? ପୃଥିବୀର କେଉଁ ଛାପାଖାନା ଆମ ଥିଏଟରର ଟିକେଟ ଛାପିବ ? ଏଣୁ କେତେଗୁଡ଼ିଏ ଛୋଟ ଛୋଟ କାଗଜ ଚିରିଲି । ଗୋଟିଏ ଛୋଟ ଟିଣ ଡ଼ବା ଯୋଗାଡ଼ କଲି ତା ତଳେ ଗୋଟାଏ ମୋହର ପରି କଣ ଲେଖା ଥିଲା ସେହି ମୋହରରେ ନାଲି ସ୍ୟାହି ବୋଳି ତାକୁ ସେହି ଛିଣ୍ଡା କାଗଜ ଉପରେ ବାଡ଼େଇ ଟିକେଟ୍ ତିଆରି ହେଲା ।

ଜଣେ ସାଙ୍ଗ ସେ ଟିକେଟ୍ ସବୁକୁ ନେଇ ଆମର ଦୁଆର ମୁହଁ ସାହି ରାସ୍ତା କଡ଼ରେ ବସି ଯେ ଲୋକ ଯାଉଥାନ୍ତି ସେ ଟିକେଟ୍ ଖଣ୍ଡେ ଖଣ୍ଡେ ଜଣ ଜଣକ ହାତରେ ଦେଲା । ଅନେକ ସାହିର ଲୋକେ ଟିକେଟ୍ ନେଇ ହସି ହସି ପଚାରିଲେ ଏ କ'ଣ ? ତାକୁ ସେ ସାଙ୍ଗ ବୁଝେଇ ଦଉଥାଏ ଥିଏଟର୍ ହବ, ଦେଖିବାକୁ ଆସିବ ।

ବାଟୋଇ ପୁଣି ପଚାରିଲେ କିଏ ବାବୁ ଘର ପୁଅ, ତୁମେମାନେ ମିଶି ଥିଏଟର୍ କରିବ ? ଏମିତି କେତେଜଣ ପଚାରି ହସି ହସି ଚାଲିଗଲେ । ଏହି ସମୟରେ ଜଣେ କୁଣିଆ ଆସି ଆମ ଘରେ ପହଁଚିଲେ । ସେ ହଉଛନ୍ତି ମୋର ଜଣେ ମାଉସୀ ପୁଅ ଭାଇ । ଅଜୀର୍ଣ୍ଣ ରୋଗରେ ଭୋଗି ଦୁର୍ବଳ ହେଇ କଟକରେ ଚିକିତ୍ସା ହବା ପାଇଁ ଆମ ଘରେ କିଛିଦିନ ରହିବେ ।

ସେ କୁଣିଆ ମଧ୍ୟ ଆମର ପଲଙ୍କ ଉପରେ ମଞ୍ଚ ସଜ୍ଜା ଦେଖି ଚମତ୍କୃତ ହେଇ ମା'ଙ୍କୁ ପଚାରିଲେ ଏ କଣ ? ମା ଉତ୍ତରରେ କହିଲେ ସେ ପିଲାମାନେ କ'ଣ ସଜେଇଛନ୍ତି ଥିଏଟର୍ କରିବେ । ଏଣେ ମା ଆମକୁ ଧମକ

ଦେଇ କହିଲେ ସେ ଖଟରୁ ସେ ସବୁ କାଢ଼ି ନିଅ । ସେ ଖଟରେ ଏ (କୁଣିଆ) ଶୋଇବେ । ମା'ଙ୍କର ଏ ଧମକପୂର୍ଣ୍ଣ ନିର୍ଦ୍ଦେଶ ଶୁଣି ମୁଁ ହତାଶ ହୋଇ ପଡ଼ିଲି । ମୋର ସାଙ୍ଗମାନେ ମଧ୍ୟ ହତାଶ ହୋଇ ପଡ଼ିଲେ । ସେ ମଞ୍ଚରେ ବିନା ନାଟକରେ ସେହିଦିନ ଯବନିକା ପାତ ହେଲା । ମୋର ନାଟ୍ୟକାର ଜୀବନର ମଧ୍ୟ ସେହିଦିନ ସମାପ୍ତି ଘଟିଲା । ମୋର ଶିଳ୍ପୀ ଜୀବନର କଥା ପରେ ଆଲୋଚନା କରିବି ।

ଏଇ ୬ଷ୍ଠ ଶ୍ରେଣୀରେ ପଢ଼ିବା ବର୍ଷ ମୋର "କାନଫୋଡ଼ା" କର୍ମ ସମାପନ ହୁଏ । ବୁଢ଼ୀ ମା ବରାବର ଦୁଃଖ କରି କହିଲେ ମୁଁ ଯାର ବିଭାଘର ଦେଖି ତ ପାରିବି ନାହିଁ, ହେଲେ କାନଫୋଡ଼ା ଦେଖିଥାନ୍ତି ।

କାନଫୋଡ଼ା କର୍ମ ତ ଯେମିତି ହେଲେ ହବାର କଥା ଆଗରୁ ବିଧି ରହିଛି । ବୁଢ଼ୀମା'ଙ୍କର ଯଦି ପରଲୋକ ହୋଇଯାଏ ସେ'ତ ଆଉ ଦେଖି ପାରିବେ ନାହିଁ । ଏଣୁ ଶୀଘ୍ର କରାହେଲା । ଆମର କାନଫୋଡ଼ା କର୍ମରେ ବିବାହ ପରି ସବୁ ବିଧିବିଧାନ ହୁଏ । କେବଳ କନ୍ୟାକୁ ଛାଡ଼ି । ଯାର କାନଫୋଡ଼ା ହୁଏ ତାକୁ ବର ବୋଲି ଡ଼କା ହୁଏ । ତାକୁ ବର ଭଳି ମୁକୁଟ ପିନ୍ଧିବାକୁ ହୁଏ । ମୋର କାନଫୋଡ଼ା କର୍ମ ବହୁତ ଆଡ଼ମ୍ବର ସହକାରେ ସମାହିତ ହୋଇଥିଲା । ବନ୍ଧୁ ସମାଗମ, ବାଜା, ଭୋଜି, ସବୁ ବଡ଼ ଆକାରରେ । କିନ୍ତୁ ଗୋଟାଏ ଘଟଣାରେ ମୋର କାନଫୋଡ଼ା ଉତ୍ସବ ମଧ୍ୟରେ ଗୋଟାଏ ବିଷାଦର ଛାୟା ଖେଳି ଯାଇଥିଲା । ତାର କାରଣ ମୋର ବଡ଼ମାମୁଁ ହଠାତ୍ ଅସୁସ୍ଥ ହୋଇ ପଡ଼ିଲେ । ତାଙ୍କର ପେଟରେ ଭୀଷଣ ଯନ୍ତ୍ରଣା ଅନୁଭବ କଲେ । ସମସ୍ତେ ତାଙ୍କର ପ୍ରାଣହାନିର ଆଶଙ୍କାରେ ଆତଙ୍କିତ ହୋଇ ପଡ଼ିଲେ । ଡ଼ାକ୍ତର ଆସି ଦେଖି ମତ ଦେଲେ ତାଙ୍କର ପିତ୍ତଥଳି (gall bladder) ରେ ଯନ୍ତ୍ରଣା ହଉଥିଲା । ଯା ହଉ ବଡ଼ମାମୁଁ ସୁସ୍ଥ ହୋଇ ଉଠିଲେ । ମୋର କାନଫୋଡ଼ା ଉତ୍ସବଟା ବଡ଼ମାମୁଁଙ୍କର ଅସୁସ୍ଥତା ଯୋଗୁଁ ପୂରା ମାତ୍ରାରେ ଉପଭୋଗ୍ୟ ହୋଇ ପାରି ନଥିଲା । ମୋର ମନେ ପଡୁଛି ମୁଁ ମୁକୁଟ ପିନ୍ଧିବାର ଦେଖି ବୁଢ଼ୀ ମା ବାରବାର କହୁଥିଲେ କାନଫୋଡ଼ା ଦେଖିଲି ଆଉ ବାହା ଦେଖି ପାରିବି ନାହିଁ ।

ଏଇ ୬ଷ୍ଠ ଶ୍ରେଣୀରେ ପଢ଼ିବା ବର୍ଷ ଆମ ଘରେ ଗୋଟାଏ ବଡ଼ ଧରଣର ଚୋରି ହୋଇଗଲା । ଆମ ଘରେ ସେତେବେଳେ ଗୋଟିଏ ପିଲା ଚାକର, ଜଣେ ଭେଣ୍ଡା ପୂଜାରୀ ଆଉ ଗଦାଧର ଘୋଷ ପ୍ରାଇଭେଟ ଟିଉଟର୍ ଥିଲେ । ପିଲା ଚାକରଟା ଉପରେ ବିଶେଷ କାମ ପଡୁଥିଲା । କୁଣିଆ ସବୁବେଳେ, ଅସମ୍ଭବ ଖଟଣୀ । ଏଣୁ ମା ଶ୍ରୀଗୁଣ୍ଡିଚା ଦିନ ଆଉ ଗୋଟାଏ ଭେଣ୍ଡା ଚାକର ନିଯୁକ୍ତ କଲେ । ବାବା ଅଫିସ୍‌ରୁ ଫେରି ସେ ଚାକରକୁ ଦେଖି ପଚାରିଲେ ଏ କିଏ ? ମା କହିଲେ ମୁଁ ଆଉ ଗୋଟାଏ ନୂଆ ଚାକର ରଖିଲି । ସେ ପିଲାଟା ଉପରେ ବହୁତ କାମ ପଡୁଛି । ସେ ଏକା ପାରୁ ନାହିଁ । ବାବା ଆଉ କିଛି କହିଲେ ନାହିଁ ।

ଏ ଯେଉଁ ଭେଣ୍ଡା ଚାକର ରହିଲା, ଯା ନାଁ 'ବେନୁଆ' । ଆମ ଘରେ ଗାଈ ଅନେକ ଗୁଡ଼ିଏ ଥିବା ସତ୍ତ୍ୱେ ପୁଣି ଗଉଡ଼ ଜଣେ ନାଗୁଆ କରି ଦୁଧ ଦିଏ । ଏ ଗଉଡ଼ଘର ମଙ୍ଗଳାବାଗ ମଲ୍ଲୀସାହିରେ । ଏ ନିଜେ ଦୁଧ ଆଣି ଦେଇ ଯାଉଥିଲା । ପୁଣି ଦେଖାଗଲା ସନ୍ଧ୍ୟାବେଳକୁ ଜଣେ ଲୋକ ହାତରେ ଦୁଧ ପଠେଇଲା । ଏହି ଲୋକ ହେଲା ବେନୁଆ । ବେନୁଆ ଦୈନିକ ଦୁଧ ଆଣି ପହଁଚେଇ ଦେଇ ବସେ । ମା'ଙ୍କ ସହିତରେ ତା'ର ଦୁଃଖର କଥା ବର୍ଣ୍ଣନା କରି ଗପ କରେ । ସେ କେମିତି ସେ ଗଉଡ଼ ଘରେ ଦୁଃଖରେ ଅଛି । ସେ କହେ ଦୈନିକ ଘାସ ଛେଲି, ତାକୁ ବିକି ପାଞ୍ଚଟି ପଇସା ଆଣି ସେ ଗଉଡ଼କୁ ଦେଲେ, ସେ ଦି'ବେଳା ଦି'ମୁଠା ତାକୁ ଖାଇବାକୁ ଦିଏ । ଘାସ ଛେଲିବା ଛଡ଼ା ଅନ୍ୟ ସମୟରେ ସେ ଗଉଡ଼ ଘରେ ତା'ର ଗାଈଗୋରୁର ଧନ୍ଦା କରେ । ଏମିତି କଷ୍ଟରେ ସେ ସେଠି ଅଛି ।

ମା' ତା'ର ଦୁଃଖ ଶୁଣି କହିଲେ, ଦେଖ ମୋର ଜଣେ ଚାକର ଦରକାର । ଏ ଯେଉଁ ପିଲା ଚାକରଟା ଅଛି, ଏ ପାରୁ ନାହିଁ, ତୁ ଯଦି ରହିବୁ ତ ରହ, ତୁ ରହିଲେ ଭଲ ହବ । ଏଣୁ ବେନୁଆ ଶ୍ରୀଗୁଣ୍ଡିଚା ଦିନ ଆମ ଘରେ କାର୍ଯ୍ୟରେ ଯୋଗ ଦେଲା । ଭାରି କାମିକା । ଘରର ଯାବତୀୟ କାମ ସାରି ଯଦି ଧାନ କୁଟିବାକୁ ଲୋକ ଅଭାବ ପଡ଼ିଲା, ବେନୁଆ ଧାନ କୁଟି ପକାଏ । ଇମିତି

କେତେ କାମ କରିବା ଦ୍ୱାରା ତା'ଉପରେ ସମସ୍ତେ ସନ୍ତୁଷ୍ଟ ଥାନ୍ତି ।

ଆଗରୁ କହିଛି, ମା, ବାବାଙ୍କ କଥା ନ ମାନି ଅଳଙ୍କାର ଇତ୍ୟାଦି ବନ୍ଧା ରଖି ଟଙ୍କା ଋଣ ଦବା ଆରମ୍ଭ କଲେ । ମା ଯାକୁ ଟଙ୍କା ଋଣ ଦିଅନ୍ତି, ତା'ପାଖରେ ଟଙ୍କା ବାକ୍ସ ଖୋଲି ଅଳଙ୍କାର ରଖି ଟଙ୍କା ଋଣ ଦିଅନ୍ତି । ମା ଟଙ୍କା ବାକ୍ସ ଖୋଲି ବସିଲେ ବେନୁଆ ଯେଉଁଠି ଥାଏ, ଯେଉଁ କାମରେ ଲାଗିଥାଏ ଆସି ମା'ଙ୍କ ପାଖରେ ଠିଆ ହେଇ ସବୁ ଦେଖେ । ମା ଥରେ ଦି'ଥର ବେନୁଆ ଉପରେ ବିରକ୍ତ ହେଇ ତାକୁ କହିଲେ ତୁ କ'ଣ ଚୋର ଅଛୁ କିରେ? ତୁ କ'ଣ ମୁଁ ଯେତେବେଳେ ଟଙ୍କା ବାକ୍ସ ଖୋଲି ବସିଲି ତୁ ଆସି ଠିଆ ହେଇ ଦେଖୁଛୁ? ତୁ କ'ଣ ସବୁ ନଜର କରୁଛୁ କିରେ? ତୁ କ'ଣ ଠାଉରିଆ ଅଛୁ କି?

ବେନୁଆ କିଛିଦିନ ରହିଲା ପରେ ଦିନେ ମୁଁ ସ୍କୁଲରୁ ଫେରୁଛି ସେଦିନ ଭାରି ଅଶ୍ରାଏ ବର୍ଷା ହେଇ ଯାଇଥାଏ । ବାସ୍ତରୀ ମଠ ନିକଟରେ ଦେଖିଲି ବେନୁଆ ମାଛୁଆ ବଜାର ଆଡ଼େ ଯାଉଛି । ମୁଁ ବେନୁଆକୁ ପଚାରିଲି କୁଆଡ଼େ ଯାଉଛୁ? ବେନୁଆ ଉତ୍ତର ଦେଲା, ମୁଁ ତୁମ ଜଳଖିଆ ଆଣିବାକୁ ଯାଉଛି ।

ମୁଁ ଘରେ ଆସି ପହଁଚିବା ମାତ୍ରେ ମା କହିଲେ ଆରେ ବେନୁଆ ପଳେଇଲା । ଗଲୁ ଦେଖିବୁ, କୁଆଡ଼େ ଗଲା? ମୁଁ ମା'ଙ୍କୁ କହିଲି, ମୁଁ ତାକୁ ବାଟରେ ଭେଟିଲି । ସେ କହିଲା, ଜଳଖିଆ ଆଣିବାକୁ ଯାଉଛି । ତଥାପି ମୁଁ ବେନୁଆକୁ ଖୋଜିବାକୁ ଦୌଡ଼ିଲି । କିନ୍ତୁ ଆଉ ପାଇଲି ନାହିଁ । ଫେରି ଆସିଲି । ସେହିଦିନ ରାତ୍ରି, କି କାଳରାତ୍ରି ସେ!। ଆମେ ଯଦି ନିଦରୁ ଉଠିଥାନ୍ତେ ସବଂଶରେ ନିପାତ, କେହି ବଂଚି ନଥାନ୍ତେ । ବାବାଙ୍କର ଯେତେବେଳେ ରାତି ୨ଟାରେ ନିଦ ଭାଙ୍ଗେ ଦେଖିଲା ବେଳକୁ ଘରେ ଆଉ କିଛି ନାହିଁ । ମା'ଙ୍କର ଯେତେ ସୁନାରୂପାର ଅଳଙ୍କାର, ବନ୍ଧକି ସୁନାରୂପାର ଅଳଙ୍କାର, ସବୁ ଶେଷ, କିଛି ନାହିଁ । ତା'ଛଡ଼ା ମୋର ମଝିଆ ଭଉଣୀର ବେକରେ ପିନ୍ଧିଥିବା ତିନିସରି ସୁନାର ଗୋପ, ଆଉ ହାତରେ ପିନ୍ଧିଥିବା ପୋହଳା ସହିତରେ ସୁନାର ନଅର କୋଳିଆ କଣ୍ଠି, ଦାଢୁଆ ହତିଆରରେ କଟା ହେଇଛି, ହାତରେ କଟା ଦାଗ ରହିଛି । ଅଥଚ ତା ନିଦ ଭାଙ୍ଗି ନାହିଁ । ଆଷାଢ଼ର ନିବିଡ ଅନ୍ଧାକାର ରାତ୍ରି । ଆମେ ସମସ୍ତେ ବାରନ୍ଦାରେ ଶୋଇଥିଲୁ । ଯେଉଁ ଘରେ ଆଲମାରିରେ ଅଳଙ୍କାର ସବୁ ଥୁଆ ହେଇଥିଲା, ସେ ଘର ଖୋଲା ଥିଲା । ଆଲମାରିରେ ତାଲା ପଡ଼ିଥିଲା । ସେ ତାଲା ଭଙ୍ଗା ହେଇଛି, ବାକ୍ସ ସବୁ ଉଠି ଯାଇଛି ।

ବାବାଙ୍କର ହଠାତ୍ ନିଦ ଭାଙ୍ଗିଗଲା । ମୋର ଆଉ ଗୋଟିଏ ସାନ ଭଉଣୀ ଅସୁସ୍ଥ ଥାଏ । ଏଣୁ ବାବା ମା'ଙ୍କୁ ଉଠେଇଲେ । ମା, ଉଠି ବିରକ୍ତ ହେଲେ । ଲଣ୍ଠନଟା କାହିଁକି ଘର ଭିତରେ ନେଇ ରଖିଛ? ବର୍ଷା ରାତି, ପିଲାଏ ଶୋଇଛନ୍ତି । ବାବା ନାହିଁ କଲେ ମୁଁ ଲଣ୍ଠନ୍ ତ ଘର ଭିତରେ ଥୋଇ ନାହିଁ । ବାବା ପୁଣି କହିଲେ ଆଲମାରି କାହିଁକି ଖୋଲା ହେଇଛି? ବାବା, ମା ଉଠିଲେ, ମାଷ୍ଟର, ପୂଜାରୀ, ଚାକର ସମସ୍ତେ ଉଠିଲେ । ସମସ୍ତେ ଯାଇ ଆଲମାରିକୁ ଦେଖିଲେ, ଯେମିତି ହିରଣ୍ୟକଶିପୁର ଗର୍ଭ ବିଦୀର୍ଣ୍ଣ କରା ହେଇଛି, ଆଲମାରିର ଗର୍ଭ ଖାଲି, କିଛି ନାହିଁ । ମାଷ୍ଟ୍ରେ ଦେଖି କାନ୍ଦି ପକେଇଲେ । ସାନ ମଝିଆ ଭଉଣୀଟି ଶୋଇଥିଲା, ତା ବେକରେ, ହାତରେ ଅଳଙ୍କାର ନାହିଁ । ତାକୁ ଉଠେଇଲା ବେଳକୁ ସେ ଉଠୁ ନାହିଁ ପଡ଼ି ରହିଛି । ମା କାନ୍ଦି ଉଠି କହିଲେ, ଝିଅକୁ ବୋଧେ ମାରି ଦେଇଛନ୍ତି । କେତେ କଷ୍ଟରେ ସେ ଉଠିଲା । ତା ହାତ ବେକରେ ଗହଣା ନଥିବା ଦେଖି ସେ କାନ୍ଦିଲା । ତା'ପରେ ବାବା, ମାଷ୍ଟ୍ରେ, ପୂଜାରୀ ସମସ୍ତେ ବାରିଆଡ଼କୁ ଗଲେ । ବାରି ଦୁଆରର କାନ୍ଥ ଖୋଲା ହେଇ ଜଂଜିର ଖୋଲା ହେଇଛି । ବାରିକି ଗଲାବେଳକୁ ସବୁ ବାକ୍ସ ଭଙ୍ଗା ହେଇ ପଡ଼ିଛି । ଗୋଟାଏ ବାକ୍ସ ଭିତରୁ ଦୋ'ଟି ଛୋଟ ଅଳଙ୍କାର ମିଳିଲା । ସେ ଅଳଙ୍କାର ଜଣେ ବନ୍ଧା ପକେଇଥିଲା । ବାବାଙ୍କର ଗୋଟାଏ ବଡ଼ ଟ୍ରଙ୍କରେ କେତେକ ଇଂରାଜୀ, ସଂସ୍କୃତ, ବଙ୍ଗଳା, ଓଡ଼ିଆ ଧର୍ମ ପୁସ୍ତକ, କାବ୍ୟ, ଗ୍ରନ୍ଥାବଳି ଇତ୍ୟାଦି ଥିଲା । ସେ ଟ୍ରଙ୍କ ଅନେକ ଦୂରରେ ଖୋଲା ହେଇ ପଡ଼ିଥିଲା । ତା'ପରେ ଦେଖାଗଲା ଆମେମାନେ ଯେଉଁ ବାରନ୍ଦାରେ ଶୋଇଥିଲୁ ସେ ବାରନ୍ଦା ତଳକୁ ବଡ଼ ବଡ଼ ମାଙ୍କଡ଼ା ପଥର, ମୂଳି

ଠେଙ୍ଗା, କଷ ଦଉଡ଼ି ସବୁ ଥୁଆ ହେଇଥିଲା । ବୋଧେ ଆମେ ଉଠିଥିଲେ ଆମରି ଉପରେ ସେ ସବୁ ପ୍ରୟୋଗ କରା ହେଇଥାନ୍ତା । ତା'ଛଡ଼ା ହତିଆରତ ଆଣିଥିଲେ, ବାରିଆଡେ ବାଡ଼ କଟା, କାନ୍ଥ ହଣା, ବାକ୍ସ ଭଙ୍ଗାରୁ ଜଣାଗଲା ।

ସେହି ରାତ୍ରିରେ ଆମେ ଗୋଟାଏ ମାରକ ଦଶାରୁ ରକ୍ଷା ପାଇଗଲୁ । ଜିନିଷ ଯାହା ଗଲା ଗଲା, ଆମେ ବଞ୍ଚିଗଲୁ । ଆଉ ଘରେ ଅଳଙ୍କାର ବୋଲି କିଛି ନାହିଁ । ମା ସୁନା ଅଳଙ୍କାର ସବୁକୁ ରଖି ଦେଇ ରୂପା ଅଳଙ୍କାର ପିନ୍ଧି ଥିଲେ । ସେତିକି, ଟଙ୍କା, ସୁନା, ରୂପା ଆଉ କିଛି ନାହିଁ । ଆମେମାନେ ସେଇଠୁଁ ଦରିଦ୍ର ହେଇଗଲୁ । ସକାଳ ହେଲା । ବାବା, ଲାଲ୍‌ବାଗ୍ ଥାନାକୁ ଦଉଡ଼ିଲେ । ବେନୁଆକୁ ପୂରା ସନ୍ଦେହ ହେଲା । ତାରି କୀର୍ତ୍ତି । ତେବେ ସେ ଏକା ନୁହେଁ, ତା'ର ଦଳବଳ ନେଇ ଆସିଥିଲା । ସାହିପଡ଼ିଶା, ବନ୍ଧୁବାନ୍ଧବ, ବାବାଙ୍କର ଅଫିସ୍‌ର କର୍ମଚାରୀ ସମସ୍ତେ ଆମର ଦୁର୍ଦ୍ଦଶା ଦେଖିବାକୁ ଆସିଲେ । ଦିନବେଳା ଯେମିତି ସେମିତି କଟିଯାଏ । ରାତି ହେଲେ କୋକୁଆ ଭୟ, ଲୋକେ ଆମକୁ ଜଗି ଶୋଇଲେ, ଘର ଶ୍ରୀହୀନ ଜଣାଗଲା । ଯେମିତି ଘରେ ଗୋଟାଏ କିଏ ମରିଯାଇଛି, କି ଭୟଙ୍କର ଅବସ୍ଥା ! ମା'ଙ୍କ ଦେହରେ କେବଳ ମାତ୍ର କେଇଖଣ୍ଡ ରୂପା ଗହଣା, ଖାଇବା ପିଇବାରେ ଠିକ୍ ଠିକଣା ରହିଲା ନାହିଁ । ସମସ୍ତେ ଆସି ଦୁଃଖ କଲେ ଆହା ଘରେ କଳା କନା ବୁଲିଗଲା ! ପୁଲିସ ଆସିଲେ, ତଦନ୍ତ ହେଲା । ବେନୁଆକୁ ଖୋଜା ହେଲା । ବେନୁଆ ନିରୁଦ୍ଦେଶ । କିଛିଦିନ ପରେ ମୁଁ ସ୍କୁଲରେ ଅଛି ହଠାତ୍ ଆମର ଜଣେ ଋଇତ ଟୋକା, ଡ଼ାକ ନାଁ ମଣିଆ, ସେ ମୋର ବଡ଼ଭଉଣୀଙ୍କ କାଜିବଜାରସ୍ଥ ଘରେ କାମ କରୁଥିଲା । ମୋତେ ଖବର ଦେଲା ବେନୁଆକୁ ସେ ଧରିଛି । ତାକୁ ମୋର ବଡ଼ଭଉଣୀଙ୍କ ଘରେ ବସେଇ ଆସିଛି । ପୁଲିସ୍‌କୁ ଖବର ଦେଲେ, ତାକୁ ଧରି ନେଇ ଥାନାକୁ ଯିବ । ନଚେତ୍ ପୁଣି କୁଆଡ଼େ ପଳେଇବ ।

ମୁଁ ଏକଥା ଶୁଣି, ଆମର କ୍ଲାସ ଟିଚରଙ୍କୁ କହିଲି, ସ୍କୁଲରେ ସବୁ ଶିକ୍ଷକ ଆମ ଘରେ ଚୋରି ହବାର ଜାଣି ବିଶେଷ ଦୁଃଖିତ ଥିଲେ । ମୁଁ କ୍ଲାସ ଟିଚରଙ୍କୁ କହିବା ମାତ୍ରେ ସେ ମୋତେ ଛାଡ଼ି ଦେଲେ । ମୁଁ, ମଣିଆ ଦିହେଁ ଲାଲବାଗ୍ ଥାନାକୁ ଦଉଡ଼ିଲୁ । ସେଠି ସବୁ କଥା ଜଣେଇଲାରୁ ଥାନାବାବୁ ଜଣେ କନେଷ୍ଟବଲକୁ ପଠେଇଲେ । ସେ ଆସି ମୋ ବଡ଼ଭଉଣୀଙ୍କ ଘରୁ ବେନୁଆକୁ ଧରି ନେଇଗଲା । ମୁଁ ଘରକୁ ଆସି ଏକଥା ମା'ଙ୍କୁ ଜଣେଇଲି । ବେନୁଆକୁ ଧରା ହେଇଛି ଶୁଣି ସମସ୍ତେ ଆଶା କଲେ ଏଥର ଜିନିଷ ସବୁ ମିଳିଯିବ ।

ସେତେବେଳେ ମଙ୍ଗଳାବାଗରେ ଗୋଟିଏ ଫାଣ୍ଡି ଥିଲା । ସଦରଥାନା ଲାଲ୍‌ବାଗ୍‌ରେ ଯା କିଛି କରିବାକୁ ହେଲେ, ଲାଲ୍‌ବାଗ୍ ଥାନାକୁ ଦଉଡ଼ିବାକୁ ହଉଥିଲା । ବାବା ଅଫିସ୍‌ରୁ ଫେରି ଶୁଣିଲେ ବେନୁଆ ଧରା ପଡ଼ିଛି । ବାବା ଲାଲ୍‌ବାଗ୍ ଥାନାକୁ ଦଉଡ଼ିଲେ । ସେତେବେଳେ ପୁଲିସ୍ ସୁପରିଟେନ୍‌ଡ଼େଣ୍ଟ ଶ୍ରୀକୃଷ୍ଣ ମହାପାତ୍ର । ବାବାଙ୍କର ସୁପରିଚିତ ଅନ୍ତରଙ୍ଗ ବନ୍ଧୁ । ବାବା ତାଙ୍କ ସହିତରେ ଦେଖା କଲେ । ଶ୍ରୀକୃଷ୍ଣ ମହାପାତ୍ର ବାବାଙ୍କୁ ଉପଦେଶ ଦେଲେ, ସେ ଲୋକକୁ (ବେନୁଆକୁ) ନେଇ ପୁଣି ଘରେ ରଖ । ସେ ଯେମିତି କାମଧନ୍ଦା କରୁଥିଲା, କରୁ । ସବୁ କଥା ପରେ ତାହାରିଠୁଁ ବାହାରିବ । ଶ୍ରୀକୃଷ୍ଣ ମହାପାତ୍ରଙ୍କ ଉପଦେଶ ଅନୁଯାୟୀ ବାବା ପୁଣି ବେନୁଆକୁ ଆଣି ଘରେ ରଖିଲେ । ବେନୁଆ ଆସି ଘରେ ରହି କାମଧନ୍ଦା କଲା । ସେ ଅସ୍ୱୀକାର କରୁଥାଏ ଯେ ସେ ଏ ଚୋରିର କିଛି ଜାଣେନା । ଏଣୁ ସେ ନିର୍ଦ୍ଦୋଷ । ଭଲ ମଣିଷ ପରି ଆମେ ରାତିରେ ସମସ୍ତେ ଶୋଇଲେ ସେ ଆମକୁ ଜଗି ଶୁଏ । ମୁଣ୍ଡ ତଳେ ଖଣ୍ଡେ ଘାସ ଛେଲା ଖୁରୁପି ରଖେ । ଚୋର ପଶିଲେ ତାକୁ ସେଇ ଖୁରୁପିରେ ହାଣି ଦବ । ଆମ ଆଡୁ ତାକୁ କିଛି କୁହାଯାଉ ନଥାଏ । ସେ ଭଲ ଆମେ ଭଲ । ଶ୍ରୀକୃଷ୍ଣ ମହାପାତ୍ରଙ୍କ ଉପଦେଶକୁ ମାନି ତାକୁ ଘରେ ରଖା ହେଇଥାଏ । ସେ ମଧ୍ୟ ଚମତ୍କାର କାମ କରୁଥାଏ । କିଛିଦିନ ରହିଲା ପରେ ଦିନେ ସନ୍ଧ୍ୟା ପରେ ତାକୁ ଦୁଧ ଆଉଟିବାକୁ ଦିଆଗଲା । ସେ କ'ଣ କରିବ ? ଭାଗ୍ୟରେ ତ ଦୁଃଖ ଅଛି । ଗୋଟାଏ ପରିବାରକୁ ବିନା କାରଣରେ ସର୍ବଶ୍ୱାନ୍ତ କରିଛି । ମା ତାକୁ ଧଇଲେ, ସେ

ଦୁଧ ଆଉଟୁ ଆଉଟୁ ଦୁଧ ପିଉଛି, ବାବାଙ୍କୁ ଡ଼ାକି ଦେଖେଇଲେ। ସେ ଲୁଚେଇ ଦୁଧ ପିଉଥିଲା ବୋଲି ପ୍ରମାଣିତ ହେଲା। ଏଣୁ ଏଇ ସୁଯୋଗରେ ମା, ବାବା ତାକୁ ପଚାରିଲେ ତୁ ପିଲା ଖାଇବାର ଦୁଧକୁ ଯେତେବେଳେ ଲୁଚେଇ ଖାଉଛୁ, ମୋର ଏତେ ସୁନାରୂପାର ଅଳଙ୍କାର ତୁ ଚୋରି କରି ନାହୁଁ? କ'ଣ କହୁଛୁ? ଚୋରି ତୁ କରିଛୁ, କହ ସତ କଥା, ମୋ ଘରେ ଯେଉଁ ଚୋରି ହେଲା, ଏ ତୋରି କାମ।

ବାବା ତାକୁ ଧରି ବାଡ଼େଇବାକୁ ଆରମ୍ଭ କଲେ। କିଛି ମାଡ଼ ଖାଇଲା ପରେ ସେ ସ୍ୱୀକାର କଲା, ସେ ଚୋରି କରିଛି। ଏକଥା ସାଙ୍ଗେ ସାଙ୍ଗେ ସାହିରେ ଖବର ହେଇଗଲା। ବାବୁ ଘର ଚାକର ଚୋରି କରିଛି, ନିଜ ମୁହଁରେ ମାନିଛି। ଜଣେ ଦି ଜଣ ପଡ଼ିଶା ଲୋକ ମଧ ଆସି ପହଁଚିଗଲେ। ସେମାନେ ମଧ ତାକୁ ବାଡ଼େଇଲେ, ପଚାରିଲେ କହ ଜିନିଷ କୋଉଠି ରଖିଛୁ? ବେନୁଆ ସ୍ୱୀକାର କଲା ଗୋଟାଏ ଜାଗାରେ ଜିନିଷ ପୋତା ହେଇଛି। ବାବା, ପଡ଼ିଶା ଲୋକ ବେନୁଆକୁ ନେଇ ସେ ଜାଗାକୁ ଗଲେ। ଦେଖିଲେ ସେ ଜାଗାରେ ଗୋଟାଏ ଗାତ ଖୋଳା ହେଇଛି କିନ୍ତୁ ଜିନିଷ ନାହିଁ। ସେଇଠୁଁ ବେନୁଆକୁ ଆଣି ଗୋଟାଏ ଘରେ ବନ୍ଦ କରି ରଖାଗଲା ଆଉ ଆଗପରି ତାକୁ ବ୍ୟବହାର କରାଗଲା ନାହିଁ।

ବେନୁଆ ଏକ ଅଦ୍ଭୁତ ଧରଣର ଲୋକ। ଆଜି ଯଦି କହେ ଅମୁକ ଲୋକ ଘରେ ଜିନିଷ ରଖିଛି ବାବା ପୁଲିସ ଆଣି ତା'ଘର ଖାନତଲାସ କଲା ବେଳକୁ ତା' ଘରେ ଜିନିଷ ନାହିଁ। ବେନୁଆ ଇମିତି କେତେ ଲୋକର ନାଁ କହିଲା, କେତେ ଘର ଖାନତଲାସ କରା ହେଲା କିନ୍ତୁ ଜିନିଷ ମିଳିଲା ନାହିଁ। ଶେଷକୁ କହିଲା ମୋତେ ଯେଉଁଦିନ ପ୍ରଥମେ ପୁଲିସ ହାଜତରେ ରଖିଲେ ମୋ ଭାଗରେ ଯେତକ ଜିନିଷ ପଡ଼ିଥିଲା ମୋ ପାଖରେ ଥିଲା ତାକୁ ସେଦିନ ମୋ ପାଖରୁ କାଢ଼ି ନେଇ କହିଲେ ଯେତେ ଯାହା ହଉ, ତୋର ଆଉ କିଛି ହବ ନାହିଁ।

ଇମିତି ହେଇ ସେ ଜିନିଷ ଆଉ ମିଳିଲା ନାହିଁ କିନ୍ତୁ ବେନୁଆ କି ଅକଥନୀୟ ଅତ୍ୟାଚାର ସହ୍ୟ କରିଛି। ଭାବିଲେ ଦୁଃଖ ଲାଗେ। ଆମର ବନ୍ଧୁବାନ୍ଧବ, ପଡ଼ିଶା, ଧୋବା, ଭଣ୍ଡାରୀ ପର୍ଯ୍ୟନ୍ତ ଯେ ଆସିଲେ ତାକୁ ଛେଚିଲେ, ଅସହ୍ୟ ଯନ୍ତ୍ରଣା! କିନ୍ତୁ କିଛି ନାହିଁ। ବେନୁଆ କାନ୍ଦୁଛି ଆଖିରେ ଲୁହ ବୁନ୍ଦାଏ ନାହିଁ। ମାଡ଼ ଖାଉଛି, ଅସମ୍ଭବ କାମ କରୁଛି, କାମକାର୍ଯ୍ୟରେ ତ୍ରୁଟି ନାହିଁ। ଦିନେ ଦିନବେଳା ବାବା ଅଫିସକୁ ଯାଇଛନ୍ତି ଘରେ ମା, ମୁଁ ଆଉ ବେନୁଆ ଆମେ ତିନିହେଁ କେବଳ ଅଛୁ ଆଉ କେହି ନାହାନ୍ତି। ସମସ୍ତେ ବେନୁଆକୁ ବାଡ଼େଇବା ଦେଖି ମୁଁ ସେଦିନ ପିଲା ବୁଦ୍ଧିରେ ବେନୁଆକୁ ଗୋଟାଏ ବାଡ଼ିରେ ଦି'ଚାରି ପାହାର ପକେଇଲି। ବେନୁଆ ଶୋଇଥିଲା, ବେନୁଆ ରାଗରେ ଧଡ଼ପଡ଼ ହେଇ ଉଠି ଆସି କୂଅକୁ ଡ଼େଇଁ ପଡ଼ିଲା। ମା, ମୁଁ ଭୟରେ ଅସ୍ଥିର ପଡ଼ିଲୁ। ମା ପଡ଼ିଶା ଘର ଲୋକଙ୍କୁ ଡ଼ାକିବା ପାଇଁ ମୋତେ ପଠେଇଲେ।

ମୁଁ ଦୌଡ଼ିଯାଇ ପଡ଼ିଶା ଘରୁ ଦି'ଚାରି ଜଣ ଲୋକଙ୍କୁ ଡ଼ାକି ଆଣିଲି। ସେମାନେ ସବୁ କଥା ଶୁଣି କୂଅ ଭିତରକୁ ଅନେଇ ଦେଖନ୍ତି ବେନୁଆ ଅଣ୍ଟାଏ ପାଣିରେ ଠିଆ ହେଇଛି କାରଣ ଗୋଟାଏ ମଣିଷ ବୁଡ଼ି ମରିବା ଭଳି କୂଅରେ ପାଣି ନଥାଏ। ପଡ଼ିଶା ଘର ଲୋକ ବେନୁଆକୁ ଡ଼ାକିଲେ ଉଠି ଆସିଲୁ ନା? ନହେଲେ କୂଅକୁ ଭାଙ୍ଗି ତୋ ଉପରେ ଗଦେଇ ଦବୁ। ବେନୁଆ କୂଅ ଭିତରୁ ଉତ୍ତର ଦେଲା ମୁଁ ଆଉ ଜୀବନ ରଖିବି ନାହିଁ। ଉପରୁ ପୁଣି ଧମକ ଦିଆଗଲା ଉଠି ଆସୁଛୁ ନା? କୂଅକୁ ଭାଙ୍ଗି ତୋ ଉପରେ ଗଦେଇ ତୋତେ ପୋତି ଦବୁ।

ବେନୁଆ ଓଦା ସଡ଼ ସଡ଼ ହେଇ ଉପରକୁ ଉଠି ଆସିଲା। ସେହି ବର୍ଷ ଦଶହରାକୁ ବେନୁଆ ଆମ ସାଙ୍ଗରେ ଆମ ଗାଁକୁ ଯାଇଥିଲା। ଦଶହରା ପରେ ଆମେ ଯେଉଁଦିନ କଟକ ଆସିବୁ, ପୁବଂଶ ଘାଟକୁ ଷ୍ଟିମର୍ ଧରିବା ପାଇଁ ବାହାରିଲା ବେଳେ ବେନୁଆ କୁଆଡ଼େ ପଳେଇଲା। ଆଉ ବେନୁଆ ମିଳିଲା ନାହିଁ।

ଆଜିକାଲି ମୁଁ ଭାବୁଛି କି ଦୁଃସମୟରେ ଶ୍ରୀଗୁଣ୍ଡିଚା ଦିନ ବେନୁଆ ଆମ ଘରେ ରହିଥିଲା, କ'ଣ କରିଗଲା ସେ! କି କାଳ ରାତ୍ରି ସେ!! ଯେଉଁ ରାତିରେ ସମସ୍ତ

ଅଳଙ୍କାର ଚୋରିଗଲା, ସେହି ଚୋରି ପରଠୁଁ ଆଉ ଘର ଉଧେଇଲା ନାହିଁ। ଯେମିତି ଗୋଟାଏ ପ୍ରବାଦ ଅଛି ଘରୁ ଲକ୍ଷ୍ମୀ ଗଲେ, ସେମିତି ଅବସ୍ଥା ହେଲା। ଅଭାବ ଘୋଟିଗଲା। ଯେଉଁ ସାନ ଭଉଣୀଟି ଦେହରୁ ସୁନା ଅଳଙ୍କାର ଚୋର କାଟି ନେଇଗଲେ ସେ ଭଉଣୀଟି ଯେମିତି ଶ୍ରୀହୀନା ହୋଇ ପଡ଼ିଲା। ସବୁଦିନ ଦରିଦ୍ର ବାଆ ଗୋଡ଼େଇଲା କିନ୍ତୁ ବାବା ମା'ଙ୍କର ମନୋବଳ ଭାଙ୍ଗି ପଡ଼ି ନଥିଲା। ବାବା କହିଲେ ଯିବା ପଦାର୍ଥ ଚାଲିଗଲା ତାକୁ ଭାବିଲେ କ'ଣ ହବ? ପୁଣି ଭାଗ୍ୟରେ ଥିଲେ ସେତିକି ସୁନା ଅଳଙ୍କାର ହବ। ମା କହିଲେ ଜିନିଷ ଗଲା ଗଲା, ଜୀବନତ ରହିଗଲା।

ପୁଣି ଅଳଙ୍କାର କରା ହେଲା କିନ୍ତୁ ଦାରିଦ୍ର୍ୟର ଛାୟା ଗଲା ନାହିଁ। ସେହି ଚୋରି ପରଠୁଁ ଘର ଦିନକୁ ଦିନ ତଳକୁ ଗଲା। ଚୋରି ଯୋଗୁହିଁ ଆମେ ଦରିଦ୍ର ହୋଇ ପଡ଼ିଲୁ। ବେନୁଆ ପରି ଅନ୍ୟ ଚାକର କେତେକ ଚୋରି କରି ପଳେଇଥିଲେ। କିନ୍ତୁ ଛୋଟକାଟିଆ ଜିନିଷ ନେଇ। ଏହା ଆଗରୁ ଥରେ ମୋର ଜେଠାପୁଅ ବଡ଼ ଭାଇ ଯେ କି ଆମ ଘରେ ରହି ପଢୁଥିଲେ ସେ ମଧ ମା'ଙ୍କର ମୁଣ୍ଡର ସୁନାର ବେଣୀ ଓ ଆଉ କେତେକ ଅଳଙ୍କାର ଚୋରେଇ ନେଇ ବଣିଆ ସାହିରେ ଅଳ୍ପ ଦାମ୍‌ରେ ବିକି ଦେଇଥିଲେ। ସେ ବେଣୀରେ ଯେଉଁ ମୁକ୍ତା ଲାଗିଥିଲା ତାକୁ କାଚ ସହିତରେ ଛେଚି ଗୁଡ଼ି ଉଡ଼େଇବା ସୂତାରେ ମାଂଜା ଦେଇଥିଲେ। ସେତେବେଳେ ସେ ଅଳଙ୍କାରର ଦାମ୍ ୩୦୦ଟଙ୍କା ଥିଲା। ତାକୁ ମାତ୍ର ୨୧ଟଙ୍କାରେ ବିକି ଥିଲେ। ବଡ଼ଭାଇ ଧରା ପଡ଼ିଲେ, ବଣିଆ ଧରା ପଡ଼ିଲା। ବାବା ସେ ବଣିଆକୁ କ୍ଷମା ଦେଇଦେଲେ।

ସବୁଦିନ ରାତିରେ ଆମେ ଖାଇ ପିଇ ଶୋଇଲା ବେଳକୁ ରାତି ପ୍ରାୟ ୨ଟା ହୁଏ। କିନ୍ତୁ ଯେଉଁଦିନ ଆମ ଘରେ ଏ ବଡ଼ ଧରଣର ଚୋରି ହୁଏ ସେଦିନ ରାତି, ବର୍ଷା ରାତି ଯୋଗୁଁ ଆମେ ସମସ୍ତେ ରାତି ୧୦ଟା କି ୧୧ଟାରେ ଶୋଇ ଯାଇଥିଲୁ। ଯେଉଁଦିନ ଯା ଘଟିବାର, ଘଟିବ, ଅନିର୍ବାର୍ଯ୍ୟ, କେହି ଏଡ଼ି ପାରିବ ନାହିଁ।

କିଛିଦିନ ପରେ ଦଶହରା ବେଳେ ଆମକୁ ଗାଁକୁ ଯିବାକୁ ପଡ଼ିଲା। ବେନୁଆକୁ ବାବା ପୁଲିସ ଜିମାରେ ଦେଇ ଗାଁକୁ ଯାଇଥାନ୍ତେ। କିନ୍ତୁ ଏଥି ପୂର୍ବରୁ ଆମର ଜଣେ ଦାଦୀ ଆସି ବେନୁଆକୁ ଖଣ୍ଡେ ବେତରେ ଇମିତି ବାଡ଼େଇଥିଲେ ଯେ, ତା ଦିହଯାକ ମାଡ଼ର ଦାଗ ରହିଥିଲା। ଏଣୁ ବେନୁଆକୁ ଆଉ ପୁଲିସ ଜିମାରେ ଛାଡ଼ି ଯାଇ ହେଲା ନାହିଁ। ବାଧ ହୋଇ ବେନୁଆକୁ ସାଙ୍ଗରେ ନେଇ ଗାଁକୁ ଯିବାକୁ ହେଲା। ବେନୁଆ ଆମ ସାଙ୍ଗରେ ଗାଁକୁ ଗଲା କିଛି ଆପତ୍ତି ନାହିଁ। ଦଶହରାରେ କାମ କାର୍ଯ୍ୟ ଠିକ୍ କଲା। ମାଡ଼ଟା ବନ୍ଦ ଥାଏ। କିନ୍ତୁ ଗାଁରେ ସମସ୍ତଙ୍କଠାରୁ ଗାଳି ଗୁଲଜ, ଅପମାନର ବାକି ରହିଲା ନାହିଁ। ଦଶହରା ସରିଲା। ଆମେ ସମସ୍ତେ କେନ୍ଦ୍ରାପଡ଼ା ଗଲୁ ବଳଦେବଜୀଉ ଦର୍ଶନ କରିବା ପାଇଁ। ସେଠି ଆମେମାନେ ଜଣକ ଘରେ ରହିଲୁ। ସେ ହେଲେ ମା'ଙ୍କର ଧରମ ଝିଅ, ଜ୍ୱାଇଁ। ଠିକ୍ ନିଜର ଝିଅ, ଜ୍ୱାଇଁ ପରି ଆମେ ତାଙ୍କୁ ନାନୀ ଆଉ ଭିଣେଇ ବୋଲି ଡ଼ାକୁଥିଲୁ। ଦଶହରାରେ ନାନୀ ଆମ ଘରକୁ ବହୁତ ପନିପରିବା ପଠାଏ। ଆମ ଘରୁ ନାନୀ ପାଇଁ ସେତେବେଳର ଦାମିକା ଶାଢ଼ୀ, ନାନୀର ବରାତ ଅନୁଯାୟୀ ଦିଆ ହୁଏ। ପ୍ରକୃତ ହିଁ ନାନୀ ଆମର ନିଜର ସହୋଦରା ଭଉଣୀ ପରି। ଭିଣେଇ ମଧ ସେମିତି ଆପଣାର ମନେ ହଉଥିଲା। ବାବା ଯେତେବେଳେ କେନ୍ଦ୍ରାପଡ଼ାରେ P.W.D.ର cashier ହୋଇ କାର୍ଯ୍ୟ କରୁଥିଲେ ସେତେବେଳେ ନାନୀ ମା'ଙ୍କୁ ମହାପ୍ରସାଦ ଦେଇ ଧର୍ମଝିଅ ସମ୍ପର୍କ ସ୍ଥାପନ କରିଥିଲା। ଏକଥା ମୁଁ ମା'ଙ୍କ ଠାରୁ ଶୁଣିଥିଲି, କାରଣ ସେତେବେଳକୁ ମୋର ଜନ୍ମ ନାହିଁ। କେବଳ ମୋର ବଡ଼ ଭଉଣୀ କିରଣବାଳା ଜନ୍ମ ହୋଇଥାନ୍ତି।

କେନ୍ଦ୍ରାପଡ଼ାରେ ରହିବା ଭିତରେ ମୋର ପ୍ରାଇଭେଟ୍ ଟିଉଟର୍ ଗଦାଧର ଘୋଷ ତାଙ୍କ ଘରକୁ ଆମର ସମସ୍ତଙ୍କୁ ନିମନ୍ତ୍ରଣ କରି ଖୁବ୍ ଭଲ ଭାବରେ ବଳଦେବଜୀଉଙ୍କ ପ୍ରସାଦ ଖୁଆଇ ଥିଲେ। ଗଦାଧର ଘୋଷଙ୍କ ଘର ଥିଲା, କେନ୍ଦ୍ରାପଡ଼ା ନସଡ଼ିପୁର ଗାଁ। ନସଡ଼ିପୁର ଗାଁ କେନ୍ଦ୍ରାପଡ଼ା କେନାଲର ଉତ୍ତର ପଟେ ଅବସ୍ଥିତ। ଗଦାଧର ଘୋଷଙ୍କର ଘର ବେଶ ଖାନଦାନୀ ଧରଣର। ବଡ଼ଭାଇ, ବଡ଼ ଭାଉଜ,

ବଡ଼ଭାଇଙ୍କର ପିଲା କେତୋଟି, ଗଦାଧର ଘୋଷଙ୍କର ନିଜର ସ୍ତ୍ରୀ । ଆମେମାନେ ଗଦାଧର ଘୋଷଙ୍କ ଘରେ ଖାଇପିଇ ବେଶ୍ ଭଲ ଭାବରେ ଫେରିଲୁ । ଆଦର, ଅଭ୍ୟର୍ଥନା କେଉଁଥିରେ ତ୍ରୁଟି ନାହିଁ ।

ଆମେମାନେ କେନ୍ଦ୍ରାପଡ଼ା ବୁଲାବୁଲି କରି ସାରି ଗାଁକୁ ଫେରିଲୁ । ଦଶହରା ଛୁଟି ସରିଲା, କଟକ ଆସିବାକୁ ହବ । ଜିନିଷ ପତ୍ର ଶଗଡ଼ରେ ଲଦା ହେଲା । ପୁରଂଶ ଘାଟକୁ ଆସିବାକୁ ହବ । ସେଇଠି ଆମକୁ ଧୂଆଁକଳ (ଷ୍ଟିମର୍)ରେ ବସି କଟକ ଆସିବାକୁ ହବ । ଧୂଆଁକଳ ଆସିବାର ସମୟ ହେଇ ଆସିଲା । ଆମେ ଗାଁରୁ ବାହାରିଲୁ ଆଉ ଅଳ୍ପ ସମୟ ଡ଼େରି କଲେ ଧୂଆଁକଳ ବାହାରିଯିବ । ସମସ୍ତେ ତରବର ହେଇ ବାହାରିଲୁ । କିନ୍ତୁ ବେନୁଆକୁ ଖୋଜିଲା ବେଳକୁ ବେନୁଆ ନାହିଁ, କୁଆଡ଼େ ପଳେଇଛି ।

ଆମେ ସମସ୍ତେ ଆସି କଟକରେ ପହଁଚିଲୁ । ଦିନକ ପରେ କେନ୍ଦ୍ରାପଡ଼ାର ସେ ଭିଣେଇଙ୍କ ପାଖରୁ ବାବା ଗୋଟାଏ ଟେଲିଗ୍ରାମ୍ ପାଇଲେ ବେନୁଆ ଯାଇ ତାଙ୍କ ପାଖରେ ପହଁଚିଛି । ଟେଲିଗ୍ରାମ୍ ପାଇ ବାବା ସଙ୍ଗେ ସଙ୍ଗେ କେନ୍ଦ୍ରାପଡ଼ା ଗଲେ । କିନ୍ତୁ ଯାଇ ପହଁଚିଲା ବେଳକୁ ବେନୁଆ ସେଠୁଁ ପଳେଇଛି । ବାବା ଫେରି ଆସିଲେ । ତା ପରଠୁଁ ବେନୁଆର ଆଉ ଦେଖା ମିଳିଲା ନାହିଁ ।

ବେନୁଆକୁ ଗରିବ ବୋଲି ଆମ ଘରେ ରଖା ଯାଇଥିଲା କିନ୍ତୁ ବେନୁଆ ଆମକୁ ଗରିବ କରି ଦେଇଗଲା । ପରେ ଶୁଣିଥିଲି ତତ୍କାଳୀନ ଓଡ଼ିଆ ସମ୍ବାଦପତ୍ର "ଉତ୍କଳ ଦୀପିକା"ରେ ଆମଘର ଚୋରିର ବିଷୟ ପ୍ରକାଶ ପାଇଥିଲା । ସେତେବେଳେ ଯେ କୌଣସି ଘଟଣା ଯଦି ଉତ୍କଳ ଦୀପିକାରେ ପ୍ରକାଶ ପାଇଛି, ସେ ହେଲା ବଡ଼ ଘଟଣା । ଲୋକେ କୁହାକୁହି ହୁଅନ୍ତି ଦୀପିକାରେ ବାହାରିଥିଲା । ଏଇ ୬ଷ୍ଠ ଶ୍ରେଣୀରେ ପଢ଼ିବା ବର୍ଷ ମୁଁ ପ୍ରଥମେ ଆମ କ୍ଲାସରେ "ସମାଜ" ସମ୍ବାଦପତ୍ର ଦେଖିବାକୁ ପାଇଲି । ସେତେବେଳେ 'ସମାଜ'ର ରୂପ ଥିଲା ଫର୍ଦ୍ଦେ ମାଟିଆ କାଗଜ । ଆଜିକାଲି ଶିରୋନାମା ଯେମିତି ପ୍ରକାଶ ପାଉଛି ସେମିତି କିନ୍ତୁ ଫର୍ଦ୍ଦେ, ଦାମ୍ ଗୋଟିଏ ପଇସା । ମୁଁ ସମାଜ ପଢ଼ିବାକୁ ଲାଗିଲି । କିଛି ପଢ଼ିଛି ପୁଣି କିଏ ନେଇଗଲା ।

ଏଇ ୬ଷ୍ଠ ଶ୍ରେଣୀରେ ପଢ଼ିବା ବର୍ଷ ଥରେ ମା ମୋର ସାନ ଭଉଣୀକୁ ନେଇ ବାପଘର ଯାଜପୁରକୁ ଯାଇଥାନ୍ତି । ମୁଁ, ବାବା ଏବଂ ଜଣେ ପୂଜାରୀ ଆମେ ତିନିହେଁ କଟକରେ ଥାଉ । ବାବା ଦିନେ ଅଫିସରୁ ଫେରି ସନ୍ଧ୍ୟା ବେଳେ ମୋତେ କହିଲେ କାଲି ସକାଳେ ଗାନ୍ଧି କଟକ ଆସିବେ । ଆମେମାନେ ଭୋର୍ ବେଳେ ଯିବା କଟକ ଷ୍ଟେସନ୍‌କୁ ଗାନ୍ଧିଙ୍କୁ ଦେଖିବା । ତୁ ଖୁବ୍ ସକାଳୁ ଉଠିବୁ ।

ମୁଁ ସେତେବେଳେ ଗାନ୍ଧି କିଏ ? କିଛି ବୁଝି ନଥାଏ । କିନ୍ତୁ ବାବା ଯେତେବେଳେ କହୁଛନ୍ତି ଗାନ୍ଧିଙ୍କୁ ଦେଖିବାକୁ ଯିବା ମୁଁ ଖୁସି ହେଇ ରାଜି ହେଇଗଲି । କହିଲି ହଁ, ଭୋର୍‌ରୁ ଉଠି କଟକ ଷ୍ଟେସନ୍‌କୁ ଯିବା । ସେହିଦିନ ରାତି ପାହିଲା ବେଳକୁ ମୁଁ, ବାବା ଆଉ ପୂଜାରୀ ତିନିହେଁ କଟକ ଷ୍ଟେସନ୍‌କୁ ବାହାରିଲୁ । ଅସଂଖ୍ୟ ଲୋକ ଚାଲିଥାନ୍ତି । ବାବା ମୋର ହାତ ଧରି ଚାଲିଥାନ୍ତି । କିନ୍ତୁ କଟକ ଷ୍ଟେସନ୍ ଏତେ ଲୋକାରଣ୍ୟ ହେଇଥାଏ ଯେ ଆମେ ଆଉ ଗାନ୍ଧିଙ୍କୁ ଦେଖି ପାରିଲୁ ନାହିଁ । ଗାନ୍ଧି ଷ୍ଟେସନ୍‌ରୁ ଚାଲିଗଲେ ବୋଲି ଶୁଣିଲୁ । ହତାଶ ହେଇ ଫେରି ଆସିଲୁ । ଘରେ ଆସି ବାବା କହିଲେ ଆଜି ସନ୍ଧ୍ୟାବେଳେ କାଠଯୋଡ଼ି ବାଲିରେ ସଭା ହବ । ଗାନ୍ଧି ବକ୍ତୃତା ଦେବେ, ଶୁଣିବାକୁ ଯିବା । ମୋତେ ଭାରି ଖୁସି ଲାଗିଲା କିନ୍ତୁ କିଛି ବୁଝି ନଥାଏ । ବକ୍ତୃତା କ'ଣ ? ବାବା ପୂଜାରୀକୁ କହିଲେ ଆଜି ମୁଁ ଅଫିସରୁ ଆସିବା ପୂର୍ବରୁ ରାତି ପାଇଁ ରୋଷେଇ ସାରି ଦେଇଥିବୁ । ମୁଁ ଅଫିସ୍‌ରୁ ଫେରିଲେ କାଠଯୋଡ଼ି ଆଡ଼େ ଯିବା ଗାନ୍ଧିଙ୍କ ବକ୍ତୃତା ଶୁଣିବା ।

ବାବା ସେଦିନ ଶୀଘ୍ର ଅଫିସ୍‌ରୁ ଫେରିଲେ । ପୂଜାରୀ ରାତି ପାଇଁ ରୋଷେଇ ସାରି ଦେଇଥିଲା । ଆମେ ତିନିହେଁ କାଠଯୋଡ଼ି ଆଡ଼େ ବାହାରିଲୁ । କାଠଯୋଡ଼ି କୂଳରେ ପହଁଚି ଦେଖେ, କାଠଯୋଡ଼ି ବାଲିରେ ଅସଂଖ୍ୟ ଲୋକଙ୍କର ସମାବେଶ । ମଝିରେ ଖଣ୍ଡିଏ କାଠର ମଞ୍ଚ ଉପରେ ଖଣ୍ଡିଏ ଚୌକୀ ପଡ଼ିଛି ତା'ଉପରେ ବସିଛନ୍ତି ଜଣେ ମହିଳା । ଆଉ ସେହି କାଠର ମଞ୍ଚ ଉପରେ ଖଣ୍ଡେ ଟେବୁଲ ପଡ଼ିଛି

ତା'ଉପରେ ଖଣ୍ଡେ ଚୌକୀ ପଡ଼ିଛି ସେ ଚୌକୀରେ ଜଣେ ପୁରୁଷ ଲୋକ ବସିଛନ୍ତି । ତାଙ୍କର ପରିଧେୟ ଅତି ସରଳ । ମୁଣ୍ଡରେ ଗୋଟିଏ ପଗଡ଼ି ।

ବାବା ମୋତେ ଗାନ୍ଧି ଆଉ ଗାନ୍ଧିଙ୍କ ସ୍ତ୍ରୀଙ୍କୁ ଚିହ୍ନେଇ ଦେଲେ । ସେଇ ମୋର ଗାନ୍ଧି ଆଉ ଗାନ୍ଧିଙ୍କ ସ୍ତ୍ରୀଙ୍କୁ ଦେଖିବା ପ୍ରଥମ ।

ଅସଂଖ୍ୟ ଲୋକ ଆସୁଥାନ୍ତି, ଗାନ୍ଧିଙ୍କୁ ଦେଖିବେ । ତାଙ୍କର ବକ୍ତୃତା ଶୁଣିବେ । କେତେକ ନଈ ବନ୍ଧ ଉପରେ ରୁଣ୍ଡ ହେଇ ଦେଖୁଥାନ୍ତି, କେତେକ ନଈବାଲିକୁ ଗଡ଼ି ଯାଉଥାନ୍ତି ଯେଉଁଠି ଗାନ୍ଧିଙ୍କୁ ଘେରି ଲୋକମାନେ ବସିଥାନ୍ତି ସେଠି ଯାଇ ବସୁଥାନ୍ତି । ନଈବାଲିରେ ସେତେବେଳେ ଅସ୍ତଗାମୀ ସୂର୍ଯ୍ୟଙ୍କର କିରଣ ପଡ଼ି ଥାଏ । ସଞ୍ଜ ହବାକୁ ଆଉ ଅଳ୍ପ ସମୟ ବାକି । ସେତେବେଳେ ବ୍ରିଟିଶ ଅମଳ । ଛୁଇଁଲେ ଛ'ଘା । ଗୁଇନ୍ଦା ବିଭାଗର କର୍ମଚାରୀମାନେ ପଲ ପଲ ବୁଲୁଥାନ୍ତି । ଏ ସବୁ ସଭା ସମିତିକୁ ସରକାରୀ କର୍ମଚାରୀମାନଙ୍କୁ ଯିବାକୁ ମନା, ଲୁଚିଛପି ଯିବା କଥା, ଧରା ପଡ଼ିଲେ ଚାକିରୀ ଗଲା, ଓଲଟି ଆହୁରି ସଜା । ଏଣୁ ଅନେକ ସରକାରୀ କର୍ମଚାରୀ ନଈବନ୍ଧ ଉପରେ ଲୁଚିଛପି ଅପେକ୍ଷା କରିଥାନ୍ତି । ସଞ୍ଜ ହେଲେ, ଅନ୍ଧାର ହେଲେ ସଭାସ୍ଥଳକୁ ଯିବେ କାରଣ ସଭାସ୍ଥଳକୁ ନଗଲେ ବକ୍ତୃତା ଶୁଣି ହବ ନାହିଁ ।

ବାବା ସେତେବେଳେ ସରକାରୀ କର୍ମଚାରୀ । ଏଣୁ ବାବା ମଧ ମୋତେ ନେଇ ଦୂରରେ ଗୋଟାଏ ଜାଗାରେ ନଈବନ୍ଧ ଉପରେ ବସିଲେ, ଅନ୍ଧାର ହେଲେ ନଈବାଲିକୁ ଯିବେ । ସୂର୍ଯ୍ୟ ମା କୋଳକୁ ବାହୁଡ଼ିଲେ । ସଞ୍ଜ ହେଲା । ତା'ପରେ କାଠଯୋଡ଼ି ବାଲି ଉପରେ, ତୀର ଭୂମିରେ, ସୁଦୂର ଗାଁ ଗଣ୍ଡା ଉପରେ ଅନ୍ଧକାର ମାଡ଼ି ଆସିଲା । ଗାନ୍ଧିଙ୍କ ନିକଟରେ ପେଟ୍ରୋମାକ୍ସ ଜଳିଲା । ସରକାରୀ କର୍ମଚାରୀମାନେ ଗୋଟି ଗୋଟି ହେଇ ସଭାସ୍ଥଳକୁ ଗଡ଼ିଲେ । ବାବା ମୋତେ ନେଇ ଗୋଟିଏ ଜାଗାରେ ବାଲି ଉପରେ ଅନ୍ଧାର ଭିତରେ ବସିଲେ, ପୂଜାରୀ ପାଖରେ ବସିଲା ।

ଗାନ୍ଧି ହିନ୍ଦିରେ ବକ୍ତୃତା ଆରମ୍ଭ କଲେ । ମୁଁ ସେ ବକ୍ତୃତାରୁ କ'ଣ ବୁଝିବି ? କାହିଁକି ଏ ସଭା ? ଏତେ ଲୋକ ରୁଣ୍ଡ ହେଇଛନ୍ତି କାହିଁକି ? ଗାନ୍ଧି କାହିଁକି ଏ ବକ୍ତୃତା ଦଉଛନ୍ତି ? କ'ଣ ତାଙ୍କର ଉଦ୍ଦେଶ୍ୟ, ଲକ୍ଷ୍ୟ ? କିଛି ବୁଝୁ ନଥାଏ । ମୁଁ କେବଳ ଗାନ୍ଧି ଆଉ ଗାନ୍ଧିଙ୍କର ସ୍ତ୍ରୀଙ୍କୁ ଅନେଇ ବସିଥାଏ । ଗାନ୍ଧିଙ୍କ ସ୍ତ୍ରୀଙ୍କୁ ଦେଖି ମୋର ଆଈଙ୍କୁ ମନେ ପଡୁଥାଏ । କେତେକ ମୋରି ଆଈଙ୍କ ପରି ଚେହେରା । ମଝିରେ ମଝିରେ ତାଳି ଉଠୁଥାଏ । ମୋତେ ଏ ସବୁ ଭାରି ଆଶ୍ଚର୍ଯ୍ୟ ଲାଗୁଥାଏ । ଖାଲି ଭଲ ଲାଗୁଥାଏ ଲୋକ ଗହଳି ଦେଖି ।

ସେଦିନ ସଭା ଭାଙ୍ଗିଲା । ଆମେମାନେ ଅନ୍ଧକାର ଭିତରେ ଘରକୁ ଫେରିଲୁ । ତହିଁ ଆରଦିନ ପୁଣି ଗାନ୍ଧିଙ୍କ ବକ୍ତୃତା ଶୁଣିବାକୁ କାଠଯୋଡ଼ି ବାଲିକୁ ଗଲୁ । ସେଦିନ ଜଣେ କିଏ ଭଦ୍ରଲୋକ ଗାନ୍ଧିଙ୍କୁ କେତେକ ପ୍ରଶ୍ନ କଲେ । ଗାନ୍ଧି ତା'ର ଉତ୍ତର ହିନ୍ଦି ପରିବର୍ତ୍ତେ ଇଂରାଜିରେ ଦେଲେ ।

ବାବା ଖୁବ୍ ମନଯୋଗ ଦେଇ ଶୁଣୁଥାନ୍ତି । ମୁଁ ସେମିତି ଗାନ୍ଧିଙ୍କୁ ଅନେଇ ବସିଥାଏ । ସେଦିନ ସଭା ଭାଙ୍ଗିଲା । ଆମେ ଘରକୁ ଫେରିଲୁ । ପରେ ବାବାଙ୍କଠାରୁ ଏବଂ ଅନ୍ୟ ଲୋକଙ୍କର ଆଲୋଚନାରୁ ବୁଝି ପାରିଲି ଯେ ବ୍ରିଟିଶ ଶାସନରୁ ଭାରତକୁ ମୁକ୍ତ କରିବା ହେଲା ଗାନ୍ଧିଙ୍କର ଲକ୍ଷ୍ୟ । ବ୍ରିଟିଶ ଶାସନରେ ଭାରତ ପରାଧୀନ ହେଇ ରହିଛି ।

ସେଥର ଦିନବେଳା ଥରେ ଗାନ୍ଧି କଟକସ୍ଥିତ କଦମରସୁଲ ଭିତରକୁ ଯାଇଥିଲେ । ଗାନ୍ଧିଙ୍କ ପଛେ ପଛେ ଅନେକ ଲୋକ କଦମରସୁଲ ଭିତରକୁ ପଶିଗଲେ । ବାବା ମଧ ସେ ଲୋକ ଗହଳି ଭିତରେ କଦମରସୁଲ ଭିତରକୁ ଯାଇଥିଲେ । ମୋତେ ସାଙ୍ଗରେ ନେଇ ନଥିଲେ । ବାବା ମୋତେ ଆସି କହିଲେ ଲୋକ ଗହଳିରେ କଦମରସୁଲ ଭିତରେ ମୁଁ ଗାନ୍ଧିଙ୍କ ପିଠିରେ ଟିକିଏ ହାତ ଛୁଇଁ ଦେଲି । ଭାବିଲି ଗାନ୍ଧିତ ଏଡ଼େବଡ଼ ମହାପୁରୁଷ ତାଙ୍କୁ ଛୁଇଁବା ଦ୍ୱାରା ମୋ ଦେହକୁ ଯଦି କିଛି ମହତ୍‌ଗୁଣ ଆସିପାରେ ।

ଗାନ୍ଧିଙ୍କ ମୁହଁରୁ ବକ୍ତୃତା ଶୁଣିବା ପରେ ବାବାଙ୍କର ମନର ଅନେକ ପରିବର୍ତ୍ତନ ହେଇଗଲା କିନ୍ତୁ ବାବାଙ୍କର ଏଇ ମନର ପରିବର୍ତ୍ତନ ଯୋଗୁଁ ମୁଁ ପରେ ଅନେକ ଅସୁବିଧାରେ ପଡ଼ିଛି । ଏଇ ଅସୁବିଧାରେ ପଡ଼ିବାର ଆଉ ଗୋଟାଏ କାରଣ ହଉଛି ମୋର ୬ଷ୍ଠ ଶ୍ରେଣୀରେ ପଢ଼ିବା ବର୍ଷ ମୋର ଜେଠାପୁଅ ବଡ଼ ଭାଇ ଯେ କି ଆମ ଘରେ ରହି ପଢୁଥିଲେ । ସେ entrance ପାସ୍ କଲାପରେ କଟକସ୍ଥ କାୟସ୍ଥ ହୋଷ୍ଟେଲରେ ରହି Ravenshaw College ରେ I.A. ପଢୁଥିଲେ । I.A. ରେ ଦୁଇଥର sent up ନ ହେଇ ପାରି ତାଙ୍କର ଗୋଟିଏ B.S.A. bicycle କୁ ବିକି ଦେଇ ନିରୁଦ୍ଦେଶ ହେଇଗଲେ । ଏଇ B.S.A. bicycle ଟି ମୋର ମା ତାଙ୍କୁ କିଣି ଦେଇଥିଲେ ।

ଗାନ୍ଧିଙ୍କର ବକ୍ତୃତା ଆଉ ବଡ଼ଭାଇଙ୍କର ନିରୁଦ୍ଦେଶ ହବା, ଏଇ ଦୁଇଟା ଘଟଣା ହେଲା ମୋର ଯେତେ ଅସୁବିଧାର କାରଣ । ବାବା ଗାନ୍ଧିଙ୍କ ମୁହଁରୁ ବକ୍ତୃତା ଶୁଣିବା ପରେ ମୋର ପଢ଼ାପଢ଼ି ପ୍ରତି ତାଙ୍କର ଆଉ ବେଶି ଆଗ୍ରହ ରହିଲା ନାହିଁ । ଯେଉଁଠି ଯେତେବେଳେ କିଛି ଆଲୋଚନା ପଡ଼ିଲା ବାବା ଖାଲି କହିଦେଲେ ଇଂରେଜୀ ପଢ଼ି ଲାଭ କ'ଣ ? ଖାଲି କିରାଣୀ ସୃଷ୍ଟି ହବା କଥା । ମୁଁ ଯା ସରକାରୀ ଚାକିରୀ କଲି ତାକୁ ଆଉ ସରକାରୀ ଚାକିରୀରେ ପୂରେଇବି ନାହିଁ । ଏ କଥା ଶୁଣି ଯଦି କେହି ପ୍ରଶ୍ନ କଲା ତା'ହେଲେ ସେ କ'ଣ କରିବ ?

ବାବା ଉତ୍ତରରେ କହନ୍ତି ସେ ପାନ ଦୋକାନ କରିବ । ବେଶି ମୂଳଧନ ଦରକାର ନାହିଁ । ସ୍ୱାଧୀନ ବ୍ୟବସାୟ, ଗୋଲାମୀ କାହିଁକି କରିବ ? ଏଇ ପାନଦୋକାନ ଖଣ୍ଡେ କରି ଆମ ଗାଁ ବରଖୁ ମିଆଁ କେମିତି ବଡ଼ ଲୋକ ହେଲା । କୋଠାବାଡ଼ି କଲା । ଶେଷରେ ସବାରିରେ ଯିବା ଆସିବା କଲା । ତା'ର ମଧ୍ୟ କଥାଏ କଥାଏ ଉଦାହରଣ ଦିଆ ହୁଏ । ପୁଣି ବରଖୁ ମିଆଁ ସେହି ପାନ ଦୋକାନ ଖଣ୍ଡକୁ କେମିତି ସଚ୍ଚୋଟ ଭାବରେ ଚଳେଇଥିଲା । ସେ କଥା ମଧ୍ୟ କୁହାହୁଏ । ପୁଣି କୁହାହୁଏ ଯେ କୌଣସି ବ୍ୟବସାୟ କର, ସାନ ହଉ, ବଡ଼ ହଉ, ସଚ୍ଚୋଟ ଭାବରେ ଚଳେଇ ପାରିଲେ ନିଶ୍ଚୟ ଦିନେ ନା ଦିନେ ବଡ଼ ହବ । ଆଉ ଯଦି ଠକିବା ମନୋବୃତ୍ତି ରଖିବ ତା'ହେଲେ ଆଦୌ ଉଧେଇବ ନାହିଁ ।

ମୋତେ ମଧ୍ୟ ପାଠ ପଢ଼ା ଭଲ ଲାଗୁ ନଥାଏ । ବାବାଙ୍କ ମୁହଁରୁ ଏ କଥା ଶୁଣି ଭାବେ, ଭଲ କଥା ପାନ ଦୋକାନ କରିବି, ମନ ଇଚ୍ଛା ପାନ ଖାଇବି । ପୁଣି ଭାବେ ଯେତେ ଶୀଘ୍ର ପାଠ ଛାଡ଼େ ଭଲ । ବାବା ଆଜି କୁହନ୍ତେ କି ପାନ ଦୋକାନ କରିବାକୁ । କିନ୍ତୁ ଏଇଠୁଁ ସୂତ୍ରପାତ ହେଲା ମୋର ଜୀବନର ଆଉ ଏକ ଅଧ୍ୟାୟ ।

ପୁଣି ବଡ଼ଭାଇ ଯେ ନିରୁଦ୍ଦେଶ ହେଲେ, ବାବା, ମା'ଙ୍କର ଗୋଟାଏ ଧାରଣା ଜନ୍ମିଲା, ପାଠ ପଢ଼ିଲା ବୋଲି ତା'ର ଆଖି ଖୋଲିଲା, ସେ ପଳେଇଲା । ଯାକୁ ଆଉ ବେଶି ପଢ଼େଇବା ଉଚିତ୍ ନୁହେଁ । ଏ ବେଶି ପଢ଼ିଲେ, ଏ ବି ଦିନେ ନା ଦିନେ ପଳେଇବ । ଏଣୁ ମୋତେ ବେଶି ପଢ଼େଇବାକୁ ବାବା, ମା'ଙ୍କର ଆଉ ଆଗ୍ରହ ରହିଲା ନାହିଁ । ନଚେତ୍ ଏଥି ପୂର୍ବରୁ ବାବା ମୋତେ ଅନେକବାର କହିବାର ମୁଁ ଶୁଣିଛି, ତୁ M.A. ପଢ଼ିବୁ, ତେବେ ଯାଇ ତୋର ପାଠ ପଢ଼ା ବନ୍ଦ କରା ହବ ।

କିନ୍ତୁ ଗାନ୍ଧିଙ୍କର ବକ୍ତୃତା ଆଉ ବଡ଼ଭାଇଙ୍କର ନିରୁଦ୍ଦେଶ ହବା ପରେ ଆଉ ବାବାଙ୍କ ମୁହଁରୁ ମୋତେ M.A. ଯାଏ ପଢ଼ିବାକୁ ହବ, କହିବାର ଶୁଣି ନାହିଁ । ମୁଁ ସେତେବେଳେ M.A. ପାଠ କ'ଣ କିଛି ବୁଝି ନଥାଏ ।

## (୯)

ଗାନ୍ଧି ପ୍ରଥମେ ଆସି କଟକରେ ଯେ ବକ୍ତୃତା ଦେଇଗଲେ, ପ୍ରକୃତ ସେଇଥିରେ ଲୋକଙ୍କର ଅନେକ ମନର ପରିବର୍ତ୍ତନ ଘଟିଲା । ଲୋକେ ବୁଝି ପାରିଲେ ସ୍ୱାଧୀନତା କ'ଣ । ସେମାନେ ବ୍ରିଟିଶ ଶାସନରେ କେତେ ଦୁଃଖରେ ଅଛନ୍ତି, ବ୍ରିଟିଶ ଜାତି ଭାରତରେ କ'ଣ କରିଛନ୍ତି, କ'ଣ କରୁଛନ୍ତି ? ଲୋକଙ୍କର ବ୍ରିଟିଶ ବିରୋଧୀ ମନୋଭାବ ବଢ଼ିଲା । ଲୋକେ ସାହସ କଲେ, ହରତାଳ କରିବାକୁ । ବ୍ରିଟିଶ ଜାତି ବିରୁଦ୍ଧରେ ଦି'କଥା କହିବାକୁ । ତା'ନହେଲେ

କୋକୁଆ ଭୟ ଥିଲା । ବ୍ରିଟିଶ ଦମନ ଲୀଳାରେ ଲୋକେ ନିସ୍ତବ୍ଧ ହୋଇ ରହିଥିଲେ । ଗାନ୍ଧି ହିଁ ଲୋକଙ୍କ ଆଖି ଖୋଲିଲେ, ମୁହଁ ଖୋଲିଲେ ହରତାଳ କରିବାକୁ । ସତ୍ୟାଗ୍ରହ କରିବାକୁ ଲୋକେ ସାହସ କଲେ । ଗାନ୍ଧି ପ୍ରଥମେ କଟକ ଆସିଗଲା ପରେ, ଲୋକେ ବହୁ ପରିମାଣରେ ଗାନ୍ଧିଙ୍କର ଅହିଂସା, ଅସହଯୋଗ ଆନ୍ଦୋଳନ ପ୍ରତି ଆକୃଷ୍ଟ ହେଲେ ।

ପ୍ରଥମେ ଦିନେ କଟକରେ ହରତାଳ ପାଳନ ହେଲା । ସେଦିନ କଟକରେ ଦୋକାନ ବଜାର ବନ୍ଦ ହେଲା । ସେଦିନ ସନ୍ଧ୍ୟାବେଳେ କଟକର ପି.ଏମ୍. ଏକାଡ଼େମୀର ପ୍ରାଙ୍ଗଣରେ ସଭା ହେଲା । ଅନେକ ଲୋକ ଉପସ୍ଥିତ ଥିଲେ । ବାବା ମୋତେ ସାଙ୍ଗରେ ନେଇ ଯାଇଥିଲେ । ସେଦିନ ଲୋକଙ୍କର ଭାରି ଆନନ୍ଦ । ଆଜି ପ୍ରଥମ ଥର ପାଇଁ କଟକ ସହରରେ ହରତାଳ ପାଳନ କରାଯାଇଛି । ସେଦିନ ବାବା ମୋତେ ଯେତେବେଳେ ସାଙ୍ଗରେ ନେଇ ପି.ଏମ୍.ଏକାଡ଼େମୀକୁ ଯାଉଥାନ୍ତି, ମୁଁ ଦେଖୁଛି ଦୋକାନ ବଜାର ସବୁ ବନ୍ଦ । ମାଛୁଆ ବଜାର, ବକ୍ସିବଜାର ସବୁ ବନ୍ଦ, ସବୁ ଶୂନସାନ, ଭାରି ନିଛାଟିଆ ଲାଗୁଥାଏ । ମୁଁ ବାବାଙ୍କୁ ପଚାରିଲି, ବାବା ଆଜି ଦୋକାନ ସବୁ କାହିଁକି ବନ୍ଦ ହୋଇଛି ? ବାବା କହିଲେ, ଆଜି ହରତାଳ ପାଳନ ହେଉଛି ।

ମୁଁ ସେ ପର୍ଯ୍ୟନ୍ତ "ହରତାଳ" କ'ଣ ଜାଣି ନଥିଲି । ପି.ଏମ୍.ଏକାଡ଼େମୀ ପ୍ରାଙ୍ଗଣରେ ସେଦିନ ସନ୍ଧ୍ୟାରେ ଅନେକ ଲୋକ ଉପସ୍ଥିତ ଥିଲେ । ଜଣେ ଜଣେ ଉଠି ବକ୍ତୃତା ଦବାକୁ ଆରମ୍ଭ କଲେ । ଇମିତି କେତେ ଜଣ ବକ୍ତୃତା ଦେଲା ପରେ ହଠାତ୍ ଜଣେ ଯୁବକ ସଭାସ୍ଥଳର ପଶ୍ଚିମ ଆଡ଼ର ପାଚେରି ଡ଼େଇଁ ସଭାସ୍ଥଳରେ ପ୍ରବେଶ କଲେ । ଯୁବକର ବର୍ଣ୍ଣ କଳା, ମୁଣ୍ଡରେ ବାବୁରୀ ବାଳ, ଖଣ୍ଡେ ଧୋତି ପିନ୍ଧିଛନ୍ତି, ଦେହରେ କିଛି ନାହିଁ ଖାଲି ଦେହ । ଯୁବକ ଆପେ ଆପେ ସଭାସ୍ଥ ମଞ୍ଚ ଉପରକୁ ଉଠି ଆସି ବକ୍ତୃତା ଦବାକୁ ଆରମ୍ଭ କଲେ । ସମସ୍ତେ କୁହାକୁହି ହେଲେ, ଏ ଯଦୁମଣି ମଙ୍ଗରାଜ । ବାବା ଆଶ୍ଚର୍ଯ୍ୟ ହେଲା ପରି କହି ଉଠିଲେ, ଏଇ ଲୋକ ! ହଁ, ଏଇ ତ ।

ମୁଁ ବାବାଙ୍କୁ ପଚାରିଲି କ'ଣ ବାବା ? ବାବା କହିଲେ, ଏଠି ପାଟି କରନା, ପରେ କହିବି । ମୁଁ ଚୁପ୍ ହୋଇଗଲି । କିଛି ସମୟ ପରେ ସଭା ଭାଙ୍ଗିଲା । ଲୋକେ କେତେକ ଲୁଚିଛପି, କେତେକ ସଦମ୍ଭରେ ସଭାସ୍ଥଳ ଛାଡ଼ି ଯେ ଯାହା ଘରକୁ ଫେରିଲେ । ସେଥର ଗାନ୍ଧିଙ୍କର କଟକ ଛାଡ଼ି ଗଲା ପରେ କଟକ ସହରରେ ଏଇ ହରତାଳ ପାଳନ ହେଲା । ଅହିଂସା ଭାବରେ ଅସହଯୋଗ ଆନ୍ଦୋଳନର ପ୍ରଥମ ପଦକ୍ଷେପ ।

ମୁଁ ବାଟରେ ଘରକୁ ଫେରୁ ଫେରୁ ବାବାଙ୍କୁ ସେ ଯୁବକ ବିଷୟରେ ପଚାରିଲି, ସେ କିଏ ବାବା ? କହିଥିଲେ ପରେ କହିବି । ବାବା କହିଲେ ସେ ଜଣେ ଇମିତିଆ ଲୋକ ବୋଲି ମୁଁ ଜାଣି ନଥିଲି । ତା'ର ନାମ ଯଦୁମଣି ମଙ୍ଗରାଜ । ମୁଁ ତାକୁ ଆଜି ଜାଣିପାରିଲି । ମୁଁ ଥରେ ଗାଁରୁ ଷ୍ଟିମରରେ ଆସି ଯୋବ୍ରା ଘାଟରେ ଓଲେହିଲି ସାଙ୍ଗରେ ଗୋଟିଏ ବୋଝ ଥିଲା । ଯେତେ ବୋଝିଆ ଖୋଜିଲି ମିଳିଲେ ନାହିଁ । ଶେଷରେ ଏଇ ଟୋକା ଆସି କହିଲା ମୁଁ ନେଇ ଯିବି ଚାଲନ୍ତୁ ।

ସତକୁ ସତ ସେ ବୋଝକୁ କାନ୍ଧରେ ବସେଇ ଯୋବ୍ରା ଘାଟରୁ ଆଣି ଯେତେବେଳେ ଥୋରିଆ ସାହିରେ ବସା ଦୁଆରେ ଥୋଇଲା ମୁଁ ପଇସା ଯାଚିଲି ସେ ପଇସା ନେଲା ନାହିଁ । ନମସ୍କାରଟିଏ କରି ଚାଲିଗଲା । ମୁଁ ତା'ପରେ ଭାବିଲି ଏ କିଏ ? କାହିଁକି ମୋର ବୋଝକୁ ବୋହି ଆଣିଲା, ପଇସା ନେଲା ନାହିଁ । କ'ଣ ଏ କଥା ? ଆଜି ମୁଁ ତାକୁ ସେଇଠି ଚିହ୍ନି ପାରିଲି । ସେ ଗୋଟିଏ ଭଲ ଆଦର୍ଶ ଟୋକାଟିଏ, ତା'ଭିତରେ ଭିନ୍ନ ଚେତନା ଅଛି ।

କଟକ ସହରରେ ଏଇ ହରତାଳ ପାଳନ ପରେ ଲୋକେ ଯେମିତି ସ୍ୱାଧୀନତା ସଂଗ୍ରାମ ପାଇଁ ଆହୁରି ଉତ୍ସାହିତ ହୋଇ ଉଠିଲେ ।

କିଛିଦିନ ପରେ ଯୋବ୍ରା ୱାର୍କସପ୍‌ରେ ଶ୍ରମିକମାନଙ୍କର ମଜୁରି ନେଇ କ'ଣ ଗଣ୍ଡଗୋଳ ହେଲା । କେତେକ ଶ୍ରମିକ ଧର୍ମଘଟ ଆରମ୍ଭ କଲେ । ମୋର ମନେ

ଅଛି ସନ୍ଧ୍ୟା ପରେ ଥୋରିଆ ସାହିସ୍ଥ ଆମରି ବସାରେ କେତେକ ଶ୍ରମିକ ଏକଜୁଟ ହୁଅନ୍ତି । କ'ଣ କରିବାକୁ ହବ ବାବାଙ୍କ ସହିତରେ ପରାମର୍ଶ କରନ୍ତି । ବାବା ସେମାନଙ୍କୁ କ'ଣ କରିବାକୁ ହବ ସେ ବିଷୟରେ ଉପଦେଶ ଦିଅନ୍ତି । ଆମ ଅଗଣାରେ ଜହ୍ନ ପଡ଼ିଥାଏ । ବାବା ଗୋଟିଏ କ୍ୟାନ୍‌ଭାସ୍ ଖଟ ଉପରେ ବସି ସେମାନଙ୍କ ସଙ୍ଗେ ଧର୍ମଘଟ ବିଷୟରେ ଆଲୋଚନା କରନ୍ତି । ସେମାନେ ତଳେ ବସିଥାନ୍ତି । ସେତେବେଳେ ବ୍ରିଟିଶ ଅମଳ, ଛୁଇଁଲେ ଛ'ଘା । ଗୋଟାଏ ସରକାରୀ ଅନୁଷ୍ଠାନରେ ଶ୍ରମିକ ଧର୍ମଘଟ ଏଇ ପ୍ରଥମ । ବାବା ସରକାରୀ କର୍ମଚାରୀ । ଯାହା ଧର୍ମଘଟ ବିଷୟରେ ଆଲୋଚନା କରିବାକୁ ହବ ଲୁଚିଛପି । ଏଣୁ ଆମରି ବସାରେ ରାତିରେ ଏସବୁ ଆଲୋଚନା ହୁଏ । ମୋର ଆଉ ବିଶେଷ କିଛି ମନେପଡୁନାହିଁ । ସେ ଧର୍ମଘଟର ପରିଣାମ କ'ଣ ହେଲା । କିନ୍ତୁ ମୋର ଏତିକି ମନେଅଛି କେତେଜଣ ଶ୍ରମିକ ସେହି ଧର୍ମଘଟରେ ଚାକିରୀ ଛାଡ଼ିଦେଲେ । ପରେ ସେମାନେ ନିଜେ ନିଜେ ଅଳ୍ପ ମୂଳଧନରେ ନିଜର ବ୍ୟବସାୟ କରି ଖୁବ୍ ଉନ୍ନତି କଲେ ।

ଅଳ୍ପ କିଛି ବର୍ଷ ପରେ ସେମାନେ ବାବାଙ୍କୁ କହିବାର ମୁଁ ଶୁଣିଛି, ଯା ହଉ ବାବୁ, ଆପଣଙ୍କ କଥା ମାନି ଆମେ ଚାକିରୀ ଛାଡ଼ି ଦେଲୁ ବୋଲି ଅଭିକା ସୁଖରେ ଅଛୁ । ଏଥି ମଧ୍ୟରୁ ଜଣକର ନାଁ ମୋର ମନେ ଅଛି । ତାକୁ ନୀଳା କମାର ବୋଲି ସମସ୍ତେ ଡ଼ାକନ୍ତି । ସେ ବାବାଙ୍କର ଭାରି ଅନୁଗତ ଥିଲା । ଆମ ଘରେ ଯେ କୌଣସି ବାହା ନିମନ୍ତାରେ ନୀଳା କମାର ଆସି ବହୁତ କାମ କରି ସାହାଯ୍ୟ କରେ । ନୀଳା କମାରର ଘର ହେଲା ମଙ୍ଗଳାବାଗରେ । ତା'ର ନିଜର ଶାଳ ଖଣ୍ଡେ କରି ବହୁତ ପଇସା ଉପାର୍ଜନ କରିଥିଲା । ନୀଳା କମାର ଲୁହା କାରିଗର ଥିଲା ।

ଆଉ ଗୋଟାଏ ଘଟଣା ହେଲା, ସେତେବେଳେ କଟକର ମାଛୁଆ ବଜାର ବଡ଼େଇ ସାହିରେ ପ୍ରଥମ କରି P.W.D. କର୍ମଚାରୀଙ୍କ ଉଦ୍ୟମରେ "ବୀଣାପାଣି" କ୍ଲବର ଭିତ୍ତି ସ୍ଥାପନ ହେଲା । ସେତେବେଳେ କଟକର P.W.D. କର୍ମଚାରୀ କହିଲେ, ସବୁ ବଙ୍ଗାଳୀ, ଅଧିକାଂଶ ବିଦେଶାଗତ । P.W.D.ର ଯେତେ କର୍ମଚାରୀ ସମସ୍ତଙ୍କଠାରୁ ବୀଣାପାଣି କ୍ଲବ ପାଇଁ ଚାନ୍ଦା ଆଦାୟ ହଉଥିଲା । ପ୍ରଥମେ ବୀଣାପାଣି କ୍ଲବ ଚାଳଘର ହେଇ ଆରମ୍ଭ ହେଲା । ଦେବୀମଣ୍ଡପ, ରଙ୍ଗମଞ୍ଚ, ରଙ୍ଗମଞ୍ଚରେ ନାଟକ ଇତ୍ୟାଦି ଦେଖିବା ପାଇଁ ଦର୍ଶକମାନଙ୍କର ବସିବା ସ୍ଥାନର ଛାତ ମଧ୍ୟ ଚାଳଘର ଥିଲା । ଦେବୀମଣ୍ଡପର ଚଟାଣ ପକ୍କା ଥିଲା ଆଉ ସବୁ ମାଟି । ପରେ ଆସ୍ତେ ଆସ୍ତେ ସବୁ ପକ୍କା କରି ନିଆଗଲା । ଛାତ ମଧ୍ୟ ପକ୍କା ହେଲା । ଦର୍ଶକମାନଙ୍କର ବସିବା ଜାଗା ଛାତ କେବଳ ଦସ୍ତାପତର (ଟିଣ ଛାତ) ଦ୍ୱାରା ତିଆରି ହେଲା । ଏଠି କେବଳ ବଙ୍ଗଳା ନାଟକ ଅଭିନୀତ ହେଉଥିଲା, ଏବେ ମଧ୍ୟ ହଉଛି । ତା'ଛଡ଼ା କଟକର କୌଣସି ଉଚ୍ଚପଦସ୍ଥ ବଙ୍ଗାଳୀ କର୍ମଚାରୀଙ୍କ ଚାକିରୀରୁ ଅବସର ନବା କିମ୍ବା ବଦଳି ସମୟରେ ବିଦାୟକାଳୀନ ସଭା(farewell meeting) ମଧ୍ୟ ଏଇଠି ହଉଥିଲା । ଏଠି ପ୍ରଥମେ ଦୁର୍ଗା, କାଳୀ, ଜଗଧାତ୍ରୀ, ସରସ୍ୱତୀ ପୂଜା ଆରମ୍ଭ ହେଲା । କେବଳ ଯେ P.W.D. ର କର୍ମଚାରୀ ଏଇ ବୀଣାପାଣି କ୍ଲବ ପାଇଁ ଚାନ୍ଦା ଦଉଥିଲେ, ତା' ନୁହେଁ କଟକର ଅଧିକାଂଶ ଲୋକଙ୍କ ଠାରୁ ବୀଣାପାଣି କ୍ଲବ ପାଇଁ ଚାନ୍ଦା ଆଦାୟ ହଉଥିଲା । ଓଡ଼ିଆ, ବଙ୍ଗାଳୀ ଉଭୟଙ୍କର ସହଯୋଗରେ ବେଶ୍ ଭଲ ଭାବରେ ପୂଜା କାର୍ଯ୍ୟ ସମାହିତ ହଉଥିଲା । ବୀଣାପାଣି କ୍ଲବରେ ନାଟକ ମଞ୍ଚସ୍ଥ ହେଲା ବେଳେ ମଧ୍ୟ ଓଡ଼ିଆ, ବଙ୍ଗାଳୀ ଉଭୟଙ୍କର ସହଯୋଗରେ ହଉଥିଲା । କିଛି ବର୍ଷ ପରେ ଦେଖାଗଲା ଯେ ସେଠି କେବଳ ବଙ୍ଗାଳୀଙ୍କ ପ୍ରାଧାନ୍ୟ ବଢ଼ିବାକୁ ଲାଗିଲା । ଏଣୁ ଓଡ଼ିଆ ଲୋକେ ଏଥିଲାଗି ଚାନ୍ଦା ଦବା ବନ୍ଦ କଲେ । ମୋର ବାବା P.W.D. କର୍ମଚାରୀ ହେଲେ ମଧ୍ୟ ଚାନ୍ଦା ଦବା ବନ୍ଦ କଲେ । ବୀଣାପାଣି କ୍ଲବକୁ କେଭେ ଗଲେ ନାହିଁ । ଏଥିଲାଗି P.W.D.ର ବଙ୍ଗାଳୀ ଅଫିସର ବାବାଙ୍କର ବିରୁଦ୍ଧରେ ରହିଲେ । ପରେ ବଙ୍ଗାଳୀ ଓଡ଼ିଆଙ୍କ ମଧ୍ୟରେ ଇମିତି ଗଣ୍ଡଗୋଳ ଆରମ୍ଭ ହେଲା ଯେ ବଙ୍ଗାଳୀଙ୍କର ଏଣେ drama ଆରମ୍ଭ ହେଲେ, ତେଣେ ଠିକ୍ କାନ୍ଥ ସେପଟେ ବାସ୍ତରୀମଠରୁ ଝାଞ୍ଜ, ମୃଦଙ୍ଗ ବାଜା ଆରମ୍ଭ ହେଲା । ତା'ଛଡ଼ା ବୀଣାପାଣି କ୍ଲବର ଯେଉଁ ଅଂଶଟା ଦସ୍ତାପତରର ଛାତ ତା'ଉପରକୁ ଟେକା ବୃଷ୍ଟି

ହେଲା । ଇମିତି ଗଣ୍ଡଗୋଳ ଯୋଗୁଁ ବୀଣାପାଣି କ୍ଲବରେ drama ହବା ବାଧା ପ୍ରାପ୍ତ ହେଲା । କିଛି ବର୍ଷ ପରେ ଏ ଗଣ୍ଡଗୋଳର କିମିତି କ'ଣ ସମାଧାନ ହେଲା ମୋର କିଛି ପରିଷ୍କାର ମନେ ପଡୁନାହିଁ । କିନ୍ତୁ ପୁଣି ସେଠି ଓଡ଼ିଆ, ବଙ୍ଗାଳୀ ଉଭୟେ ମିଶି ଯୋଗ ଦେଲେ । ବାବା କିନ୍ତୁ ଆଉ କେଭେ ବୀଣାପାଣି କ୍ଲବକୁ ଗଲେ ନାହିଁ ।

ମୁଁ ପ୍ରତି ବର୍ଷ ଦଶହରା ପରେ ଆମ ଗାଁରୁ ଫେରି ଆଗେ ବୀଣାପାଣି କ୍ଲବକୁ ପଳାଏ ଦେଖିବା ପାଇଁ, ଦଶହରା ବେଳେ କ'ଣ କେମିତି ହେଇଥିଲା । ମେଢ଼ ଖାଲି ପଡ଼ିଥାଏ, ସବୁ ଶୁନ୍‌ଶାନ ତଥାପି ବୁଲି ଦେଖିବାକୁ ମନ ହୁଏ । ଏଠି ବୀଣାପାଣି କ୍ଲବରେ ଯେମିତି ଚାନ୍ଦା ଦବାକୁ ପଡୁଥିଲା ମାଛୁଆ ବଜାରର ସର୍ପା ଘରେ ମଧ ସେମିତି ଚାନ୍ଦା ଦବାକୁ ପଡୁଥିଲା । ମାଛୁଆ ବଜାରର ସର୍ପା ଘରେ ପ୍ରତି ବର୍ଷ ଦୁର୍ଗା ଆଉ କାଳୀ ପୂଜା ହଉଥିଲା । ସର୍ପା ଘରେ ସେତେବେଳେ ଭାରି ଦରିଦ୍ର ଅବସ୍ଥା ଥିଲା । ସେଠି ବଙ୍ଗାଳୀ, ଓଡ଼ିଆ ଭେଦଭାବ ନଥିଲା । ସେଠି ପ୍ରକୃତ ସାର୍ବଜନୀନ ଦୁର୍ଗା ଆଉ କାଳୀ ପୂଜା ହଉଥିଲା । ବାବା ବୀଣାପାଣି କ୍ଲବ୍‌ର ଚାନ୍ଦା ଦବା ବନ୍ଦ କଲେ ମଧ ସର୍ପା ଘରେ ଚାନ୍ଦା ଦଉଥିଲେ । ସର୍ପା ଘରକୁ ବରାବର ଦେବୀ ଦର୍ଶନକୁ ଯାଉଥିଲେ, ବିଶେଷତଃ କାଳୀ ପୂଜା ସମୟରେ । ଦୁର୍ଗା ପୂଜା ବେଳେ ତ ଆମେ ଗାଁକୁ ଯାଉଥିଲୁ, ଏଣୁ ଦୁର୍ଗା ପୂଜା ବେଳେ ଯାଇ ପାରୁ ନଥିଲେ । ପରେ ଯେତେବେଳେ ଆମର ଦଶହରାରେ ଗାଁକୁ ଯିବା ବନ୍ଦ ହେଲା, ସେତେବେଳେ ଦୁର୍ଗା ପୂଜା ବେଳେ ଦର୍ଶନ ଲାଗି ସର୍ପା ଘରକୁ ଯାଉଥିଲେ, ବୀଣାପାଣି କ୍ଲବକୁ ନୁହେଁ ।

ମୁଁ ୭ମ ଶ୍ରେଣୀରେ ପଢ଼ିବାବେଳେ ମୋର ଅଜା ଲାଲ ବିହାରୀ ରାୟଙ୍କ ପରଲୋକ ହୁଏ । ମୁଁ ୭ମ ଶ୍ରେଣୀରୁ ୮ମ ଶ୍ରେଣୀକୁ ଭଲ ଭାବରେ ନମ୍ବର ରଖି ପ୍ରମୋସନ୍ ପାଇଲି । ଏଇ ସମୟରେ ଗୋଟାଏ ଘଟଣା ହେଲା ମୁଁ ୭ମ ଶ୍ରେଣୀରୁ ୮ମକୁ ଭଲ ଭାବରେ ପ୍ରମୋସନ୍ ପାଇଲା ବେଳକୁ ମୋର ପ୍ରାଇଭେଟ୍ ଟିଉଟର ଗଦାଧର ଘୋଷ ସେତେବେଳର ଫାଷ୍ଟ କ୍ଲାସରୁ (ବର୍ତ୍ତମାନ ଯା'କୁ ଇଲେଭେନ୍‌ଥ କ୍ଲାସ କୁହାଯାଉଛି) test ପରୀକ୍ଷାରେ ଫେଲ୍ ହୋଇଥାନ୍ତି । ଅର୍ଥାତ୍ ଆଉ matriculation ପରୀକ୍ଷା ଦେଇପାରିବେ ନାହିଁ । ଏଣୁ ସେ ଭାରି ମନଦୁଃଖରେ ଥାନ୍ତି । ମୁଁ କିନ୍ତୁ ଭାରି ଖୁସି ଥାଏ । କାରଣ ମାଷ୍ଟ୍ରେ ଫେଲ୍ ହେଇଛନ୍ତି ମୁଁ ପ୍ରମୋସନ୍ ପାଇଥାଏ, ପୁଣି ଭଲ ଭାବରେ । ମୋର ସେତେବେଳେ କାହିଁରେ କ'ଣ ଆନନ୍ଦ ।

ଦିନେ ସନ୍ଧ୍ୟାବେଳେ ମାଷ୍ଟ୍ରେ ମନ ଦୁଃଖରେ ଘୋଡ଼ିଘାଡ଼ି ହେଇ ଶୋଇଛନ୍ତି । ବାବା ଅଫିସରୁ ଆସି ପହଁଚିଲେ । ମା ବାବାଙ୍କୁ କହିଲେ ମାଷ୍ଟ୍ରେ ଫେଲ୍ ହେଇ ଯାଇଛି, ତୁମେ ଯାଇ ଟିକିଏ ବୁଝୁନା ? ବୁଝାବୁଝି କଲେ, ହେଡ୍‌ମାଷ୍ଟରଙ୍କୁ କହିଲେ ମାଷ୍ଟରଙ୍କ ପାସ୍ ହେଇଯାନ୍ତା । ଏହାର ଉତ୍ତର ଦବାକୁ ଯାଇ ବାବା କହିଲେ, ସେ ଯୋଉ ବିଷୟରେ ଯା ଫେଲ୍ ହେଇଥାଉ, ଓଡ଼ିଆ ସାହିତ୍ୟରେ ଯେତେବେଳେ ଫେଲ୍ ହେଇଛି ମୁଁ କାହାକୁ ଯିବି କହିବାକୁ ତା'ପାଇଁ, ମୁଁ ଯିବି ନାହିଁ ।

ମା ଏକଥା ଶୁଣି କହିଲେ, କ'ଣ ? ଓଡ଼ିଆ ସାହିତ୍ୟରେ ଫେଲ୍ ହେଇଛି ? ମୁଁ ତ ପରୀକ୍ଷା ଦେଇଥିଲେ, ପାସ୍ କରିଥାନ୍ତି । ମା' ଏତକ କହି ଆଉ ଯିବେ କୁଆଡ଼େ ? ମାଷ୍ଟ୍ରେ ଉଠି ମା'ଙ୍କ ସଙ୍ଗେ ଲଗେଇଲେ କଳି । ମୋତେ ଏ କଳି ଲାଗିବା ଦେଖି ଭାରି ମଜା ଲାଗିଲା । ମୁଁ ତ ଓଡ଼ିଆ ସାହିତ୍ୟରେ ଭଲ ନମ୍ବର ରଖିଥାଏ । ମୁଁ ଭାବିଲି ମାଷ୍ଟ୍ରେ କେମିତି ଓଡ଼ିଆ ସାହିତ୍ୟରେ ଫେଲ୍ ହେଲେ ? ଭଲ ହେଇଛି ଫେଲ୍ ହେଇଛନ୍ତି ।

ଅଜାଙ୍କର ଶୁଦ୍ଧି କ୍ରିୟାକୁ ମା ଆଗେ ସାନ ଭଉଣୀ ଦୁଇଜଣଙ୍କୁ ସାଙ୍ଗରେ ନେଇ ଯାଜପୁର ଚାଲିଗଲେ । ମୁଁ, ବାବା, ମାଷ୍ଟ୍ରେ ଆଉ ଗୋଟାଏ ପୂଜାରୀ ପରେ ଯିବାକୁ ରହିଲୁ । କାରଣ ମୋର ପ୍ରମୋସନ୍ ଡ଼କା ହବାର ଥିଲା । ମାଷ୍ଟରଙ୍କ test ପରୀକ୍ଷା ଫଳ ବାହାରି ସାରିଥାଏ । ଯେଉଁଦିନ ପ୍ରମୋସନ୍ ଡ଼କା ହେଲା ମୁଁ ଶୁଣି ଘରକୁ ଫେରି ଆସି ଖେଳୁଥାଏ, ବାବା ଅଫିସ୍‌ରୁ ଫେରି ଆସିବା ମାତ୍ରେ ମୁଁ ବାବାଙ୍କୁ ମୋର ପ୍ରମୋସନ୍ ପାଇବା କଥା ଜଣେଇଲି । ବାବା ସାଙ୍ଗେ ସାଙ୍ଗେ ମୋତେ ଗୋଟାଏ ଟଙ୍କା ଦେଲେ ମିଠେଇ କିଣି ଆଣି ପିଲାଙ୍କୁ ବାଣ୍ଟିବା

ପାଇଁ । ଆଉ ଘରେ ଖଣ୍ଡେ ନୂଆ ଧୋତି ଥିଲା, ତାକୁ କାଢ଼ି ଦେଲେ । ଆମ ଘରେ ଯେଉଁ ବୁଢ଼ୀ ମାଇପି ଜଣକ ସେତେବେଳେ କାମ କରୁଥିଲା ତାକୁ ଦବା ପାଇଁ । ମୁଁ ସେ ଧୋତି ଖଣ୍ଡକ ନେଇ ସେ ବୁଢ଼ୀକୁ ଦେଇ କହିଲି ଫକିରୀ ମାଉସୀ ନିଅ । ବୁଢ଼ୀଟି ବଡ଼ ହତଭାଗିନୀ । ବୁଢ଼ୀ ଧୋତି ଖଣ୍ଡକ ନେଇ ମୋତେ ପଚାରିଲା, କ'ଣ କିରେ ବାପ, ଆଜି ଲୁଗା କାହିଁକି ଦେଲୁ? ମୁଁ କହିଲି, ମାଉସୀ ମୁଁ କ୍ଲାସ ଉଠିଛି । ବୁଢ଼ୀ କ'ଣ ବୁଝିଲା । ବୁଢ଼ୀ ଆମ ଘରୁ କାମ ସାରି ସେ ଧୋତି ଖଣ୍ଡକ ନେଇ ଘରକୁ ଗଲା । ସାହିରେ ଯେ ତାକୁ ପଚାରିଲା ଏ ଧୋତି କ'ଣ କିଣିଲ? ବୁଢ଼ୀ ସମସ୍ତଙ୍କୁ କହିଲା, ବରଜୁ ବାବୁ ପୁଅ କ'ଣ ଗିଲାସ ଉଠେଇଛି ଯେ, ସେଇଥି ପାଇଁ ମୋତେ ଖଣ୍ଡେ ଆଜି ଧୋତି ଦେଇଛି ।

ମୁଁ ପ୍ରମୋସନ୍ ପାଇଲି ମାଷ୍ଟ୍ରେ କିନ୍ତୁ test ରେ ଫେଲ୍ ହେଇ ଆଉ matriculation ପରୀକ୍ଷା ଦେଇ ପାରିଲେ ନାହିଁ । ବାବା, ମୁଁ, ମାଷ୍ଟ୍ରେ, ପୂଜାରୀ ସମସ୍ତେ ମୋରି ଅଜାଙ୍କର ଶୁଦ୍ଧି କ୍ରିୟାରେ ଯୋଗ ଦବା ପାଇଁ ଯାଜପୁର ଗଲୁ । ଆଗରୁ ତ କହିଛି, ମୋର ମାମୁଁ ଘରେ ଯେଉଁ କାମ ହୁଏ ସବୁ ବଡ଼ ଧରଣର । ଅଜାଙ୍କର ଶୁଦ୍ଧିକ୍ରିୟା ମଧ ସେହି ବଡ଼ ଧରଣରେ ସମାହିତ ହେଲା । ସେଠି ଖର୍ଚ୍ଚକାଟ ବ୍ୟବସ୍ଥା ଆଦୌ ଗ୍ରହଣୀୟ ନୁହେଁ । ଯାଜପୁରରେ ଦଶାଶ୍ୱମେଧ ଘାଟରେ ଯେଉଁଠି ଅଜା ଦାହ ହେଇଥିଲେ ସେଠିକି ବାବା, ମୁଁ ଏବଂ ମୋର ମାମୁଁଙ୍କ ମଧରୁ ଜଣେ ଯାଇ ଦେଖି ନମସ୍କାର କରି ଆସି ବୈତରଣୀ ନଦୀରେ ଗାଧେଇଲୁ ।

ଅଜାଙ୍କର ଶୁଦ୍ଧିକ୍ରିୟା ସରିବା ପରେ ବାବା, ମୁଁ, ମାଷ୍ଟ୍ରେ, ପୂଜାରୀ କଟକ ଫେରି ଆସିଲୁ । ସେତେବେଳେ ବଡ଼ଦିନ ଛୁଟି ଶେଷରେ ସ୍କୁଲ ଖୋଲୁଥିଲା, ସ୍କୁଲରେ ଛାତ୍ରମାନଙ୍କର ନାମ ଲେଖା ଇତ୍ୟାଦି ସେଇ ନବବର୍ଷର ଜାନୁୟାରି ମାସରେ ହେଉଥିଲା । ଆଉ ଯେଉଁମାନେ ଉପର କ୍ଲାସକୁ ପ୍ରମୋସନ୍ ପାଉଥିଲେ, ସେମାନେ ଉପର କ୍ଲାସରେ ସେଇ ଜାନୁୟାରି ମାସରେ ହିଁ ଯୋଗ ଦଉଥିଲେ । ଏଣୁ ମୁଁ ମଧ ୮ମ ଶ୍ରେଣୀରେ ଯୋଗ ଦେଲି । ଏହି ୮ମ ଶ୍ରେଣୀ ଭାରି ଆନନ୍ଦଦାୟକ ହେଲା । କାରଣ ୮ମ ଶ୍ରେଣୀ ଦୋତାଲା ଉପରେ । ଏତେଦିନ ତଳ ମହଲାରେ ପଢ଼ି ପଢ଼ି ଏଥର ଦୋତାଲା ଉପରକୁ ଆସିଲି । ଏଥର ପ୍ରକୃତ ଉପର କ୍ଲାସକୁ ଉଠିଲା ପରି ଜଣାଗଲା । ଲମ୍ବା ପାହାଚ ଉଠି ଉଠି କ୍ଲାସକୁ ଯିବାକୁ ହୁଏ । ୮ମ ଶ୍ରେଣୀର "ବି" ସେକ୍ସନ୍ ରେ ମୁଁ ପଢ଼ିଲି ।

ଏଥର ସବୁ ବିଷୟ ଇଂରାଜୀ । ଇଂରାଜୀ ବିଷୟତ ତଳ କ୍ଲାସରୁ ଥିଲା । ଏବେ ଇତିହାସ, ଭୂଗୋଳ, ଅଙ୍କ, ଜ୍ୟାମିତି ସବୁ ଇଂରାଜୀରେ । ୮ମ ଶ୍ରେଣୀ ଆହୁରି ସୁଖକର ହେଇଥାନ୍ତା କେବଳ ଅଙ୍କ ବିଷୟ ଯୋଗୁଁ ବଡ଼ ବିପଦପୂର୍ଣ୍ଣ ମନେ ହେଲା । କାରଣ B.V.Gupta ଙ୍କ arithmetic ସାଙ୍ଗକୁ K.P.Basu ଙ୍କ algebra, ତା'ସାଙ୍ଗକୁ ଇଂରାଜୀରେ ଜ୍ୟାମିତି, ମରଣଦଶା ! ଅଙ୍କ ତ ଦେଖିଲେ ମୋ ପିଳେହିପାଣି ତା'ସାଙ୍ଗକୁ ଭଗାରୀ ବୀଜଗଣିତ ଯୋଡ଼ି ହେଲେ ଯିବି କୁଆଡ଼େ? ପୁଣି ଯୋଡ଼ାଏ ଇତିହାସ, British history, Indian history, ସେ ପୁଣି ଇଂରାଜୀରେ କି କଡ଼ା କଡ଼ା ଶବ୍ଦରେ ଲେଖା । ଖାଲି ଓଡ଼ିଆ ସାହିତ୍ୟ ମରୁଭୂମିରେ ଜଳାଶୟ ପରି ମନେ ହଉଥାଏ, ସେତିକିରେ ମନ ଟିକିଏ ଭଲ ଲାଗୁଥାଏ ।

ମାଷ୍ଟ୍ରେ test ପରୀକ୍ଷାରେ ଫେଲ୍ ହେଲେ ସୁଦ୍ଧା ସେହି ମୋତେ ପଢ଼ଉଥାନ୍ତି । ପୁଣି ବାବା ନିଜେ ବେଳେ ବେଳେ ମୋତେ algebra କରେଇବାକୁ ବସିଯାନ୍ତି । ଏଥର ଶ୍ୱାସରୋଧ ହେଲା ପରି ମନେ ହଉଥାଏ ତଥାପି ଦେଖିଲି ଅଙ୍କ ଅପେକ୍ଷା ବୀଜଗଣିତ ମୋତେ ଭଲ ଲାଗିଲା । ଜ୍ୟାମିତି ଘୋଷୁଥାଏ, ଏ ପୁଣି ଇଂରାଜୀରେ । ଇତିହାସ, ଭୂଗୋଳ ସବୁ ଘୋଷୁଥାଏ । ଇଂରାଜୀରେ ଇତିହାସ, ଭୂଗୋଳ ସେଇଠୁ ଲେଖିବା ଆରମ୍ଭ ହେଲା । ଥରେ ମନେ ଅଛି ଜଣେ ମୋର ସ୍କୁଲ ଇନ୍‌ସ୍‌ପେକ୍ଟର ତାଙ୍କ ନାଁ ବୋଧେ Duke ହବ କି କ'ଣ । ସେ ଆମର 'B' section କୁ ଇତିହାସ ପିରିଅଡ଼ରେ କ୍ଲାସ ଇନସ୍‌ପେକସନ୍ ଲାଗି ପହଁଚିଲେ । ମୋତେ Spanish Armada ବିଷୟରେ ପଚାରିଲେ । ମୁଁ ମୁଖସ୍ଥ କରିଥିଲି ସବୁ କହିଗଲି, Duke ଭାରି ଖୁସି ହେଇଗଲେ ।

୮ମ ଶ୍ରେଣୀରେ ପଢ଼ିଲା ବେଳକୁ ମୋର ଟିକିଏ ସ୍ୱାଧୀନତା ବଢ଼ିଲାଣି । ଯେମିତି ଏକା ଏକା ସ୍କୁଲକୁ ଯିବା, କିଲ୍ଲା ପଡିଆକୁ ଏକା ଖେଳ ଦେଖିବାକୁ ଯିବା । ସ୍କୁଲରେ ମଧ୍ୟ ମୋର ଅନେକ ସାହସ ବଢ଼ି ଯାଇଥାଏ । ମୁଁ ଗୋଟିଏ ଜାଗାରେ ବସିବାର ପିଲା ନୁହେଁ । କେତେଥର ଦୋତାଲାରୁ ତଳକୁ, ତଳୁ ଦୋତାଲାକୁ ଅଯଥା ଯିବା ଆସିବା କରେ । ମୁହଁ ଅନେକ ଫିଟି ଯାଇଥାଏ । ସାଙ୍ଗସାଥୀ ମଧ୍ୟ କେତେକ ତଳ କ୍ଲାସରୁ ସାଙ୍ଗରେ ଥାନ୍ତି । କେତେକ ନୂଆ ସାଙ୍ଗ ଜୁଟି ଗଲେ । ସ୍କୁଲରେ କେବଳ ଅଙ୍କ ପିରିୟଡ଼ ଛଡ଼ା ଆଉ ସବୁ ସମୟ ଆନନ୍ଦରେ କଟି ଯାଏ । ବେଶି ଆନନ୍ଦ ଲାଗେ ଓଡ଼ିଆ ସାହିତ୍ୟ କ୍ଲାସ ଆଉ ଖେଳ ଛୁଟି । ଏଣିକି ଖେଳଛୁଟିରେ ବଡ଼ ଆକୃତିର football ରେ ଗୋଡ ଛୁଇଁଲିଣି, ତା'ପଛରେ ଗୋଡ଼େଇଲିଣି, ମୁଣ୍ଡରେ head କରିବା, ଅନ୍ୟକୁ ବଲ୍ ନେଇ ଧପେଇବା, ସବୁ ଟିକିଏ ଟିକିଏ ଆରମ୍ଭ ହେଲା ତଥାପି ଜୋର୍ ପାଉ ନଥାଏ । ଯେତିକି ପାରେ football କୁ ଗୋଡ଼, ମୁଣ୍ଡ ଦେଇ ନିଷ୍ଠାପର ଭାବରେ ସେବା କରୁଥାଏ । କିଲ୍ଲା ପଡ଼ିଆକୁ ଯାଇ ଅନେକ ମ୍ୟାଚ୍ ଦେଖେ, କିଲ୍ଲା ପଡ଼ିଆରୁ ଏକା ଏକା ପଲଟନ୍ ବଜାର, ମାଛୁଆ ବଜାର, ବଡ଼େଇ ସାହି ହେଇ ଘରକୁ ଫେରେ । କିଲ୍ଲା ପଡ଼ିଆରେ ମଧ୍ୟ ଅପରିଚିତ ପିଲାଙ୍କ ସହିତ ବଲ୍ ଖେଳେ । ଦିନଯାକ ଯେତିକି ଖେଳେ ରାତିରେ ପଢ଼ିବା ବେଳେ ସେତିକି ଢ଼ୋଳାଏ, ମାଡ଼ ଖାଏ, କାନ୍ଦେ ପୁଣି ତହିଁ ଆରଦିନ ସେମିତି ସ୍କୁଲରେ ବଲ୍ ଖେଳିବା, କିଲ୍ଲା ପଡ଼ିଆରେ ଯାଇ ବଲ୍ ଖେଳିବା, ମ୍ୟାଚ୍ ଦେଖିବା ବନ୍ଦ ନାହିଁ । କ୍ରମଶଃ football ଖେଳ ଆଡ଼କୁ ବିଶେଷ ଆଗ୍ରହ ବଢ଼ିଲା । ସବୁ ଖେଳ କୁଆଡ଼େ ଗଲା, football ଛଡ଼ା ଆଉ କୌଣସି ଖେଳ ଭଲ ଲାଗିଲା ନାହିଁ ।

କେତେକ ସ୍କୁଲ ଟିମ୍‌ର ମ୍ୟାଚ୍ ଦେଖିଲି । ସେତେବେଳେ କଟକର ମିଶନ ସ୍କୁଲ (ବର୍ତ୍ତମାନ କ୍ରାଏଷ୍ଟ କଲେଜିଏଟ୍ ନାମରେ ପରିଚିତ) ଟିମ୍ ପିଲାଏ ଭଲ ଖେଳୁଥାନ୍ତି । ତାଙ୍କୁ ହରେଇବା ଭାରି କଷ୍ଟକର । ପି.ଏମ୍.ଏକାଡ଼େମୀର ଖେଳାଳୀମାନେ ବରାବର ହାରିଯାନ୍ତି । ହେଡ଼ମାଷ୍ଟର ନିମାଇ ଚରଣ ପଟ୍ଟନାୟକ football ଖେଳ ପ୍ରତି ବିଶେଷ ଆଗ୍ରହୀ ଥିଲେ କିନ୍ତୁ କ'ଣ ହବ? ସବୁ ବର୍ଷ ପି.ଏମ୍.ଏକାଡ଼େମୀ ହାରିଯାଏ ।

କଟକରେ ସେତେବେଳେ ରେଭନ୍‌ସା କଲେଜିଏଟ୍, ପି.ଏମ୍.ଏକାଡ଼େମୀ, ମିଶନ ସ୍କୁଲ, ଭିକ୍ଟୋରିଆ ହାଇସ୍କୁଲ, ମୁସଲିମ୍ ସେମିନାରି, ଏଇ ପାଞ୍ଚୋଟି ମାତ୍ର ହାଇସ୍କୁଲ ଥିଲା । ଯାଙ୍କ ମଧ୍ୟରେ ରେଭେନ୍‌ସା କଲେଜିଏଟ୍, ମିଶନ୍ ସ୍କୁଲ football ଖେଳରେ ବେଶ୍ ସୁନାମ ସୁନାମ ଅର୍ଜନ କରିଥିଲେ । ମିଶନ୍ ସ୍କୁଲର ପ୍ରାଧାନ୍ୟ ବେଶି ଥିଲା ।

ମଝିରେ ମଝିରେ ବାହାର ସ୍କୁଲ ଟିମ୍ ମଧ୍ୟ ଆସି ଯୋଗ ଦଉ ଥିଲେ । ପୁରୀ, ଖୋର୍ଦ୍ଧା, ବାଲେଶ୍ୱର ଯେଉଁ ସ୍କୁଲ ଆସନ୍ତି କଟକରୁ ହାରି ଯାଉଥିଲେ । କେବଳ ବାରିପଦା ହାଇସ୍କୁଲ ଟିମ୍ କଟକରେ ବେଶ୍ ସୁନାମ ଅର୍ଜନ କରିଥିଲେ । ବାରିପଦା ହାଇସ୍କୁଲ ଟିମ୍ କଟକ ଖେଳିବାକୁ ଆସିଲେ କିଲ୍ଲା ପଡ଼ିଆ ଲୋକାରଣ୍ୟ ହେଇ ଯାଉଥିଲା । ଆଉ ଗୋଟାଏ କଥା ବାରିପଦା ସ୍କୁଲ ଟିମ୍‌ର ଜଣେ ଖେଳାଳୀର ଖେଳ ଅତି ଉଚ୍ଚକୋଟୀର ଏବଂ ବିଶେଷ ଆକର୍ଷଣୀୟ ହେଇ ପଡୁଥିଲା । ସେ ଖେଳାଳୀ ଜଣକର ପ୍ରକୃତ ନାଁ କ'ଣ ମୁଁ ଜାଣି ନାହିଁ । ତାଙ୍କୁ ସମସ୍ତେ ଡ଼ାକୁଥିଲେ "ବରଜା" । ବରଜାର ଖେଳ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରି ଥିଲା । ଆଉ ଏଇ ବରଜା ଯୋଗୁଁ ବାରିପଦା ହାଇସ୍କୁଲ ଅନେକବାର Gupta Cup ବିଜୟୀ ହୋଇଥିଲେ, ସେତେବେଳେ କେବଳ knock-out match ହଉଥିଲା, league match ହଉ ନଥିଲା, open team ଆଉ school team ଉଭୟଙ୍କର କେବଳ knock- out match ହଉଥିଲା । ବାରିପଦା ହାଇସ୍କୁଲ ଟିମ୍‌ର ବରଜାର ଖେଳ ମୋ ମନରେ ବିଶେଷ ପ୍ରଭାବ ପକେଇ ଥିଲା ।

୮ମ ଶ୍ରେଣୀଟା ମୋର ଭଲରେ ଭଲରେ କଟିଗଲା । ୮ମରୁ ୯ମକୁ ପ୍ରମୋସନ୍ ପାଇଲି । କେବଳ ଅଙ୍କ ଛଡ଼ା ଆଉ ସବୁଥିରେ ପ୍ରାୟ ଭଲ କରିଥିଲି । ଅଙ୍କ ବିଷୟରେ algebra ମୋତେ ଅଳ୍ପ କିଛି ଆରେଇ ଯାଇଥାଏ ତଥାପି ଦେଖିଲେ ଛାନିଆ, ଯେତେ ବତେଇଲେ କ'ଣ ହବ?

ଯୋଉ ଭୁଲ୍‌କୁ ସେଇ ଭୁଲ୍। ଥରେ ମନେ ଅଛି, ଅଙ୍କ ପରୀକ୍ଷା ଦିନ ଜ୍ୟାମିତି ବହିରୁ ଗୋଟିଏ ଉପପାଦ୍ୟ ଛିଣ୍ଡେଇ ନେଇ ପରୀକ୍ଷା ଖାତା ଭିତରେ ଲୁଚେଇ ଥାଏ କପି କରିବା ପାଇଁ। ଆମର ଡ୍ରିଲ୍ ମାଷ୍ଟର ସେଦିନ ଗାର୍ଡ଼ ଥାନ୍ତି। ସେ ଆସି ମୋରି ପାଖରେ ବସିଲେ, କରିବି କ'ଣ? ଆଖିରୁ କୁଳିକୁଳିଆ ପୋକ ବାହାରି ଯାଉଥାଏ। ପଇଲି ଧରା ବୋଧହୁଏ। କପି ଧରା ହେଲେ ପରିଣାମ ତ ଜାଣିଛି। କୋଉ କୂଳରେ ରାହା ନାହିଁ। ପିତୃ କୂଳ, ମାତୃ କୂଳ ସବୁ ଉଚ୍ଛନ୍ନ ହେଇଯିବ। ତା'ଛଡ଼ା ଘରେ ପଶିଲେ ମାଡ଼। କେତେ ଠାକୁରଙ୍କୁ ମନେ ମନେ ପ୍ରାର୍ଥନା କରି ପକେଇଲି। ଆମ ଗାଁର ଯେତେ ପରିଚିତ ଠାକୁର, ଠାକୁରାଣୀ କଟକରେ ଆମ ପଡ଼ୋଶୀ ଠାକୁରାଣୀ, ପୁରୀର ଜଗନ୍ନାଥ ସମସ୍ତଙ୍କୁ ବଡ଼ ଆତଙ୍କରେ ଡ଼ାକି ପକେଇଲି। ରକ୍ଷା କର। ଗଜକୁ ଉଦ୍ଧାର କରିଥିଲ, ଦ୍ରୌପଦୀଙ୍କୁ ବସ୍ତ୍ର ଯୋଗେଇ ଥିଲ। ସେ ଡ୍ରିଲ୍ ମାଷ୍ଟର ମୋ ପାଖରେ ବସିଥାନ୍ତି ଯେ ତାଙ୍କ ଦିହଟା ମୋତେ କେମିତି ଗୋଟାଏ ବାଘର ସାନ୍ନିଧ ପରି ଲାଗୁଥାଏ। ଖାଲି ଠାକୁରଙ୍କୁ ଡ଼ାକୁଥାଏ। ଏ କେତେବେଳେ ମୋ ପାଖରୁ ଉଠି ଯିବ। ଶେଷରେ କୋଉ ଦେବତା ମୋତେ ରକ୍ଷା କଲେ କେଜାଣି? ଘୋଡ଼ାମୁହାଁ ଡ୍ରିଲ୍ ମାଷ୍ଟର ମୋ ପାଖରୁ ଭଲରେ ଭଲରେ ଉଠି ଅନ୍ୟ ଆଡ଼େ ଗଲା। ମୁଁ ତା'ପରେ ସେ ଉପପାଦ୍ୟକୁ ଅତି ସାବଧାନରେ ଉତାରି ଖାତା ଦେଇ ଚାଲି ଆସିଲି।

ଯା ହଉ ୮ମ ଶ୍ରେଣୀ ଗଲା, ଏଥର ୯ମ ଶ୍ରେଣୀକୁ ଆସିଲି। ପୁଣି ଦୋ'ତାଲାରୁ ତଳକୁ ଖସିଲି। କାରଣ ୯ମ ଶ୍ରେଣୀଟା ତଳ ମହଲାରେ ଥାଏ। ସାପ ବଢ଼ିଲେ, ଚକ୍ର ବଢ଼ିଲା। ୯ମ ଶ୍ରେଣୀରେ ଆଉ ଟିକିଏ ଓସ୍ତାଦ୍ ପାଲଟି ଗଲି। ପାଠ ପଢ଼ାରେ ଆଉ ଟିକିଏ ମନ ଲାଗି ଆସୁଥାଏ। କାରଣ ପ୍ରତ୍ୟେକ ବର୍ଷ ପ୍ରମୋସନ୍ ପାଇ କ୍ଲାସ ଉଠିବା ଦ୍ୱାରା ମୋତେ ଅନେକ ପ୍ରଶଂସା କରୁଥାନ୍ତି। ସେଇ ଗଦାଧର ମାଷ୍ଟ୍ରେ ଥାନ୍ତି, ବେଳେବେଳେ କୁଆଡ଼େ ଯା'ନ୍ତି। ଆମ ଘରେ ଚୋରି ହବା ପରେ ମାଷ୍ଟ୍ରଙ୍କର ଆଉ ପାଠ ପଢ଼ାରେ ଠିକ୍ ଠିକଣା ରହିଲା ନାହିଁ। ବାବା ଯୁଆଡ଼େ ମାଷ୍ଟ୍ରେ ସିଆଡ଼େ।

ଥରେ ଗୋଟାଏ ଘଟଣା ହେଲା, ଆମ ଘରେ ଗୋଟାଏ ପୂଜାରୀ ଥିଲା। ସେ ଆମ ଘରୁ ପଳେଇଲା କିନ୍ତୁ ଆମ ନାଁ କହି ଗୋଟାଏ ଦୋକାନରୁ କେତେକ ଜିନିଷ ବାକି କରି ନେଇ ପଳେଇ ଥାଏ। ସେ ଜିନିଷ ସବୁ ହେଲା, ଘିଅ, ଅଟା, ଡ଼ାଲି, ଚିନି ଇତ୍ୟାଦି।

ସେ ପୂଜାରୀକୁ ଖୋଜିବା ପାଇଁ ବାବା ବାହାରିଲେ। ବାବାଙ୍କ ସଙ୍ଗେ ମାଷ୍ଟ୍ରେ ବାହାରିଲେ। ଉଭୟେ ସକାଳୁ ନିତ୍ୟକର୍ମ ସାରି ଜଳଖିଆ ଖାଇ ବାହାରିଗଲେ। ମା ସେତେବେଳେ ଯାଜପୁରରେ ଥାନ୍ତି, ଏଣୁ ମୁଁ ଆଉ ଫକିରୀ ମାଉସୀ ଘରେ ରହିଲୁ। ମୁଁ ସକାଳୁ ବାବାଙ୍କ ସାଙ୍ଗରେ ଜଳଖିଆ କରିଥିଲି। ବାବା, ମାଷ୍ଟ୍ରେ ଗଲେ ଯେ ଆଉ ଭାତ ଖାଇଲା ବେଳକୁ ଫେରିଲେ ନାହିଁ। ଅପେକ୍ଷା କରି କରି ମୁଁ ପଖାଳ ଖାଇ ରହିଲି। ଦିନ ତିନିଟା ବାଜିଲା। ବାବା ଫେରିଲେ ନାହିଁ। ଚାରିଟା ବାଜିଲା ତଥାପି ଫେରିଲେ ନାହିଁ। ଫକିରୀ ମାଉସୀ ମୋତେ କହିଲା ପୁଅ ଆ, ମୁଁ ଚୁଲୀ ଲଗେଇ ଦଉଛି। ବଟେଇ ଦେବି, ତୁ ରାନ୍ଧ, ବାବା, ମାଷ୍ଟ୍ରେ ଫେରିଲେ ସେମାନେ ଖାଇବେ।

ଏ କଥା ଶୁଣି ମୋର ମଧ ମନ ହେଲା ରାନ୍ଧିବା ପାଇଁ। ଫକିରୀ ମାଉସୀ ଚୁଲି ଲଗେଇ ଦେଲା ମୁଁ ରନ୍ଧା ଆରମ୍ଭ କଲି। ଫକିରୀ ମାଉସୀ ବଟେଇ ଦଉଥାଏ। ମୁଁ ଖୁବ୍ ଭଲ ଭାବରେ ଭାତ, ଡ଼ାଲି, ଛଙ୍କା ତରକାରୀ (ସେତେବେଳେ ଆଳୁ, ବାଇଗଣ ଇତ୍ୟାଦି ଟିକିଏ ବେଶି ଜିରା, ଧନିଆ, ଅଦା, ପିଆଜ ବାଟି ଭଲ ଭାବରେ ତାକୁ ଲଙ୍କା ଫୁଟଣ ଦେଇ ବଘାରି ମସଲା ସହିତରେ କଷି, ତାକୁ ମସଲା ପାଣିରେ ସିଝେଇ ଓଲେହିଲା ବେଳକୁ ସେଥିରେ ଗରମ ମସଲା ଅଛ ପକେଇ ଆଉ ଭଲ ଘିଅ କିଛି ପକେଇବାକୁ ହୁଏ। ଯାର ନାମ ହେଲା, ଛଙ୍କା ତରକାରି) କରି ସାରିଲା ପରେ ଫକିରୀ ମାଉସୀକୁ କହିଲି, ମାଉସୀ ଟିକିଏ ଖଟା କରିବା କାରଣ ବାବା ଦିନ ସାରା ଭାତ ଖାଇ ନାହାନ୍ତି, ବୁଲି ବୁଲି ଥକା ହେଇ ପଡ଼ିଥିବେ। ଏତେବେଳେ ଭାତ ସାଙ୍ଗକୁ ଖଟା ଟିକିଏ ହେଲେ ଭାରି ଭଲ ଲାଗିବ। ମୁଁ ଖଟା କଲି, କନ୍ଦମୂଳ ଆଉ ତେନ୍ତୁଳି

ମିଶେଇ । ଫକିରୀ ମାଉସୀ ମସଲା ବାଟି ଦେଲା ମୁଁ ଫକିରୀ ମାଉସୀକୁ କହିଲି, ମାଉସୀ ବାବା ଆସିଲେ ମୁଁ ରାନ୍ଧି ସାରିଛି ବୋଲି ତୁମେ କିଛି କହିବ ନାହିଁ । ବାବା ଯେତେବେଳେ ରାନ୍ଧିବାକୁ ଆସିବେ, ସେତେବେଳେ ଯାଇ କହିବା, ଫକିରୀ ମାଉସୀ କହିଲା ହଉ ।

ମୁଁ, ଫକିରୀ ମାଉସୀ ଦିହେଁ ରୋଷେଇ କାମ ସାରି ଯାଇ ଅଗଣାରେ ବସିଲୁ । ବାବାଙ୍କ ଫେରିବାକୁ ଅପେକ୍ଷା କରିଥାଉ । ଏଇ ହେଲା ମୋର ପ୍ରଥମ ରାନ୍ଧଣା । ଫକିରୀ ମାଉସୀ ପ୍ରଥମ ଲୋକ, ମୋତେ ରୋଷେଇ ଶିଖେଇବାରେ । ଫକିରୀ ମାଉସୀକୁ ହାଣ୍ଡି ଛୁଇଁବାକୁ ମନା । ସେ କେବଳ ବଟେଇଲା ମୁଁ ରାନ୍ଧିଲି । ଆମେ ଚୁପ୍‌ଚାପ୍ ଥାଉ । ମୁଁ ଖଣ୍ଡେ ମଶିଣା ପାରି ଅଗଣାରେ ଶୋଇଥାଏ, ଫକିରୀ ମାଉସୀ ମୋର ଅଳ୍ପ ଦୂରରେ ବସିଥାଏ ।

ବାବା, ମାଷ୍ଟ୍ରେ ଠିକ୍ ସଞ୍ଜ ହବାର ଅଳ୍ପ ପୂର୍ବରୁ ଆସି ପହଁଚିଲେ । ଉଭୟେ ଅତ୍ୟଧିକ ଥକା ହେଇ ପଡ଼ିଥାନ୍ତି । ଗୋଡ଼, ହାତ ଧୋଇଲେ, କମିଜ ଇତ୍ୟାଦି ଓଲେହିଲେ । ବାବା ମାଷ୍ଟ୍ରଙ୍କୁ କହିଲେ, ମାଷ୍ଟ୍ରେ କ'ଣ ଖାଇବା ? ଏତେବେଳେ ଗଣ୍ଡାଏ ଭାତ ଲାଗି ମନ ହଉଛି । ମୁଁ, ଫକିରୀ ମାଉସୀ ଚୁପ୍‌ଚାପ୍ ଥାଉ । ବାବା ପୁଣି କହିଲେ, ଏତେବେଳେ ଭାତ ସାଙ୍ଗକୁ ଟିକିଏ ଖଟା ହେଲେ ଆହୁରି ଭଲ ଲାଗନ୍ତା । ମୁଁ ଏତେବେଳେ ଆଉ ହସ ସମାଳି ପାରିଲି ନାହିଁ ଖେଁ କରି ହସି ଉଠିଲି । ବାବା ମୋର ହସିବା ଦେଖି ଖୁସିରେ ପଚାରିଲେ, କିରେ ହସିଲୁ କାହିଁକି ? ରାନ୍ଧିଛୁ କି ? ଫକିରୀ ମାଉସୀ ଏତେବେଳେ ବାବାଙ୍କୁ କହିଲା ହଁ, ଆଜି ପୁଅ ଭାତ, ଡ଼ାଲି, ତରକାରୀ, ଖଟା ସବୁ କରି ସାରିଛି । ବାବା କହିଲେ, କେମିତି ସେ ରାନ୍ଧିଲା ? ସେ ତ ରୋଷେଇ ଜାଣି ନାହିଁ । ଫକିରୀ ମାଉସୀ କହିଲା ମୁଁ ବଟେଇ ଦେଲି, ସେ ରାନ୍ଧିଲା । ବାବା କହିଲେ ମାଷ୍ଟ୍ରେ, ମୁଁ କହୁ ନ ଥିଲି ପୁଅ ବୋଧେ ରାନ୍ଧି ରଖିଥିବ ମୋତେ କେମିତି ଗୋଟାଏ ଜଣାଗଲା ।

ସେଦିନ ବାବା ମୋ ଉପରେ ଭାରି ଖୁସି ହେଇଗଲେ । ଆମେମାନେ ସମସ୍ତେ ତା'ପରେ ଖାଇ ବସିଲୁ, ଫକିରୀ ମାଉସୀ ତା'ଘରକୁ ଚାଲିଗଲା । ୯ମ ଶ୍ରେଣୀରୁ ମୁଁ ପ୍ରଥମେ ରାନ୍ଧି ଶିଖିଲି । ୯ମ ଶ୍ରେଣୀରେ ପଢ଼ିଲା ବେଳେ ମାଷ୍ଟ୍ରେ ଆଉ ମୋତେ ପଢ଼େଇଲେ ନାହିଁ । ସେ ଆମ ଘରେ ଥାନ୍ତି । ବାବା ତାଙ୍କୁ ବକ୍ସିବଜାରରେ ଗୋଟିଏ ଦୋକାନ କରି ଦେଇଥିଲେ । ସେ ଦୋକାନରେ ବିକ୍ରି ହଉଥିଲା ଏକ ପ୍ରକାର ଜୋତା । ସେ ଜୋତାର ନାମ ହେଲା vegetable shoe । ଯାକୁ ଓଡ଼ିଆ ରେ କହିବାକୁ ଗଲେ, ନିରାମିଷ ଜୋତା ଅର୍ଥାତ୍ ଯାକୁ ମଡ଼େଇ ଦେବ ମନ୍ଦିର ଯାଇ ହବ । କାରଣ ଏ ଜୋତାରେ ଚମଡ଼ାର ଅଂଶ ନାହିଁ । ଏହାର ଉପର ଅଂଶଟା କ୍ୟାନ୍‌ଭାସ୍‌ରେ ତିଆରି, ତଳ ଅଂଶଟା ଝୋଟର ସରୁ ସୁତାରେ ତିଆରି । ଯାକୁ ଦେଖିଲେ ଅବିକଳ rubber sole ଦିଆ cades ପରି ଧଳା ରଙ୍ଗର । ମାଷ୍ଟ୍ରଙ୍କ ନାଁରେ ଯାର agency ନିଆ ହେଇଥିଲା । କିଛିଦିନ କଟକ ସହରରେ ଏ ଜୋତା ଖୁବ୍ ବିକ୍ରି ହେଲା । ପରେ ବନ୍ଦ ହେଇଗଲା । ମାଷ୍ଟ୍ରେ ଚାକିରୀ ଉଦ୍ଦେଶ୍ୟରେ ଖୋର୍ଦ୍ଧା ଗଲେ ।

ଏଇ ୯ମ ଶ୍ରେଣୀରେ ପଢ଼ିବା ବେଳେ ମୋର ସମବୟସ୍କଙ୍କ ମଧ୍ୟରେ ମୁଁ football ଖେଳରେ ବେଶ୍ ଖେଳାଳୀ ପାଲଟି ଯାଇଥାଏ । ମୁଁ ଭଲ ଖେଳିବାର ଦେଖି ମୋର ଜଣେ ସାଙ୍ଗ ବଙ୍ଗାଳୀ ପିଲା ନାମ, ଅମୂଲ୍ୟ ଧନ ନିୟୋଗି ମୋତେ କହିଲା ଦେଖ, ଆମେ କେତେକ ପିଲା ମିଶି ଗୋଟିଏ କ୍ଲବ୍ କରିଛୁ । ସେ କ୍ଲବ୍‌ର ନାମ ରଖିଛୁ Mangalabag Boys' Union Club । ସେଥିରେ ମାସକୁ ଅଣାଏ କରି ଚାନ୍ଦା ଦବାକୁ ହବ, ଚାଲ ସେଇ କ୍ଲବ୍‌ରେ ନାଁ ଲେଖେଇବୁ । ଆମର ଜଣେ ମାଷ୍ଟର ଅଛନ୍ତି, ସେ ଆମର ଖେଳର କଥା ବୁଝନ୍ତି । କ୍ଲବ୍‌ର ଭାର ତାଙ୍କରି ଉପରେ ଦିଆଯାଇଛି, ଚାଲ୍ ମୋ ସାଙ୍ଗରେ ଯିବୁ । ଆମେ medical field ନିକଟରେ ଆଉ ଗୋଟାଏ ପଡ଼ିଆ ଅଛି ସେଇଠି ଖେଳୁ । ମୁଁ ରାଜି ହେଲି । ଏ ଅମୂଲ୍ୟ ଧନ ନିୟୋଗି ହେଲା ବିଭୁତି ଭୂଷଣ ନିୟୋଗିର ବଡ଼ଭାଇ । ବିଭୂତି ଭୂଷଣ ନିୟୋଗି ହେଲା ଓକିଲ । ମଙ୍ଗଳାବାଗରେ ତାଙ୍କର ବହୁତ କୋଠା ଘର ଅଛି । ସେ ମଧ୍ୟ ସେଇଠି ରହନ୍ତି । ସେତେବେଳେ ବିଭୂତି ଭୂଷଣ ନିୟୋଗି ମୋର ବର୍ଷକ ତଳ କ୍ଲାସରେ ପି.ଏମ୍. ଏକାଡ଼େମୀରେ ପଢୁଥିଲା । ଅମୂଲ୍ୟ ସେଇ ୯ମ ଶ୍ରେଣୀରୁ

ପଢ଼ା ଛାଡ଼ି କଲିକତା ଚାଲିଗଲା ଆଉ ତା' ସାଙ୍ଗରେ ମୋର ଭେଟ ହେଇ ନାହିଁ ।

ଦିନେ ଅମୂଲ୍ୟ, ମୁଁ ଏକା ସାଙ୍ଗରେ ସ୍କୁଲରୁ ଆସିଲୁ । ଅମୂଲ୍ୟ ମୋ ସଙ୍ଗେ ଆମ ଘରକୁ ଆସି ବାହାରେ ବସିଲା । ମୁଁ ବହିପତ୍ର ଥୋଇ ଦେଇ ଅମୂଲ୍ୟ ସାଙ୍ଗରେ ବାହାରିଲି । ଅମୂଲ୍ୟ ମୋତେ ନେଇ ତାଙ୍କର ମାଷ୍ଟରଙ୍କ ଆଗରେ ପହଁଚେଇ ଦେଇ କହିଲା, ଏ ମୋ ସାଙ୍ଗରେ ପଢେ । ଏ ଆମ କ୍ଲବ୍‌ରେ ନାଁ ଲେଖେଇବ, ଖେଳିବ । ଏ ଭଲ ଖେଳୁଛି । ମାଷ୍ଟ୍ରେ ଯେଉଁ ରୁମ୍‌ରେ ବସିଥିଲେ ସେ ଗୋଟାଏ କ୍ଲାସ ରୁମ୍ ପରି । କାନ୍ଥରେ black board ଅଛି, ବେଞ୍ଚ, ଡ଼େସ୍କ ସବୁ ଅଛି । କେତେକ ପିଲା ସେ ବେଞ୍ଚ ଉପରେ ବସିଥିଲେ ମାଷ୍ଟ୍ରେ ଗୋଟାଏ ଚେୟାରରେ ବସି ସାମନା ଟେବୁଲ ଉପରେ ହାତ ରଖି ପଢ଼ଉଥିଲେ ମୋତେ ଦେଖି ଭାରି ଖୁସି ହେଲେ । ତା'ର କିଛି କ୍ଷଣ ପରେ ମୁଁ, ଅମୂଲ୍ୟ ଏବଂ ଅନ୍ୟ ପିଲାମାନେ footballଟିଏ ନେଇ ଖେଳିବାକୁ ବାହାରିଲୁ । କେବେ ଅତି ପିଲାବେଳେ ବାବା ସାଙ୍ଗରେ ମୁଁ medical କୁ ଆସିଥିଲି ମୋର କିଛି ଭଲ ମନେ ନଥିଲା । ସେତେବେଳେ ମୋତେ ମାତ୍ର ଚାରି ବର୍ଷ ବୟସ । ମୋର ବେକର ବାଁ ପଟେ ଗୋଟାଏ ବଥ ବାହାରିଥିଲା । ସେ ବଥ ଏଇ medical ରେ ଅପରେସନ୍ ହେଇଥିଲା । ତା'ପରେ ଥରେ ଦୁଇଥର ବାବାଙ୍କ ସାଙ୍ଗରେ medical କୁ ଅନ୍ୟ ରୋଗର ଚିକିତ୍ସା ପାଇଁ ଆସିଥିଲି । ମେଡ଼ିକାଲ୍‌କୁ ଆସିବା ପାଇଁ ମୋତେ ଭାରି ଭୟ ଲାଗୁଥିଲା । କିନ୍ତୁ ଅମୂଲ୍ୟ ସାଙ୍ଗରେ ଯେଉଁଦିନ ମେଡ଼ିକାଲ ହତାକୁ ମୁଁ ଆସିଲି ସେଦିନ କି ଆନନ୍ଦ ଲାଗିଲା । ଯେଉଁଠି medical student ମାନଙ୍କର ଖେଳ ପଡ଼ିଆ ଥିଲା ସେଠି ଆଜିକାଲି gynic ward ର ପ୍ରକାଣ୍ଡ ଦ୍ୱିତଳ ପ୍ରାସାଦ ଠିଆ ହେଇଛି । ଆମେ ଯେଉଁ ପଡ଼ିଆରେ ଖେଳୁଥିଲୁ ସେଠି ଆଜିକାଲି surgical ward ର ଦ୍ୱିତଳ ପ୍ରାସାଦ ଠିଆ ହେଇଛି । ଆମର ଖେଳ ପଡ଼ିଆ ଆଉ ଚିହ୍ନି ହଉ ନାହିଁ । ସେ ମେଡ଼ିକାଲ ହତା ଆଉ ନାହିଁ । ସବୁଠି ବଡ଼ ବଡ଼ କୋଠା ମୁଣ୍ଡ ଟେକି ଠିଆ ହେଇଛି । ଆଗର ମେଡ଼ିକାଲ ପଡ଼ିଆର ସେ ଶାନ୍ତ ଭାବ ଆଉ ନାହିଁ । ଅମୂଲ୍ୟ ମୋତେ କି ଅମୃତବେଳାରେ ନେଇ ମେଡ଼ିକାଲ ପଡ଼ିଆରେ ଛାଡ଼ିଥିଲା ଆଜି ଭାବିଲେ ମୋତେ ଆଶ୍ଚର୍ଯ୍ୟ ଲାଗେ । କି ସୁନ୍ଦର ମେଡ଼ିକାଲ ପଡ଼ିଆ ! ଆମର ଥୋରିଆ ସାହି ବସାରୁ କେତେ ପାଖ । ମଙ୍ଗଳାବାଗର ପ୍ରଧାନ ରାସ୍ତା ଟପିଲେ ମେଡ଼ିକାଲ ହତା । ଆମେ ଯେଉଁ ପଡ଼ିଆରେ ଖେଳୁଥିଲୁ ସେ ହେଲା ବ୍ରିଟିଶ ଅମଳର କଲେକ୍ଟର ସାହେବଙ୍କ କୋଠା ସାମନାର ରାସ୍ତାର ଏ ପଟେ । ଏଇ କୋଠାରେ କେତେକ ବର୍ଷ Utkal University office ମଧ ହଉଥିଲା । ସେତେବେଳେ ମେଡ଼ିକାଲ ହତାର ଚାରିଆଡ଼େ ପୂରାପୂରି compound wall ନଥିଲା ।

ମେଡ଼ିକାଲ ପଡ଼ିଆ ଦେଖି ମନ ଆନନ୍ଦରେ ଭରି ଉଠିଲା । ଯେଉଁ ମାଷ୍ଟରଙ୍କ କଥା ଆଗେ କହିଲି, ସେ ସୁର୍ ପରିବାରର ପିଲାଙ୍କୁ ପଢ଼େଇବା ପାଇଁ ନିଯୁକ୍ତ ହେଇଥିଲେ । ସେ ରହୁଥିଲେ ସେଇ ସୁର ପରିବାରଙ୍କ ସଙ୍ଗେ । ସୁର୍ ପରିବାରର ସେଠି ଗୋଟିଏ ବଡ଼ ଦୋତାଲା କୋଠା ଅଛି । ଏ କୋଠା ବହୁ କାଳର । ଏଇ କୋଠାର ସାମନା ଦେଇ ଗୋଟିଏ ରାସ୍ତା ମହାନଦୀ କୂଳ ଆଡ଼କୁ ଯାଇଛି । ଏଠି କାଠ ଗୋଲା ଥାଏ । ଏବେ ମଧ ଅଛି । ସୁରଙ୍କର ଏଇ କୋଠା ନିକଟରେ ଆଜି କାଲି cancer ward ହେଇଛି, ସୁରଙ୍କର ବାହାରଆଡ଼େ ଗୋଟିଏ tube well ଥିଲା ।

ମେଡ଼ିକାଲ ପଡ଼ିଆକୁ ଦେଖି ଆଉ କିଲ୍ଲା ପଡ଼ିଆକୁ ଯିବାକୁ ମନ ହେଲା ନାହିଁ । ସ୍କୁଲରୁ ଆସିଲେ ମେଡ଼ିକାଲ ପଡ଼ିଆ, ଆଉ କୁଆଡ଼େ ନାହିଁ । ଘରେ ଦୈନିକ ଖେଳିବା ପାଇଁ ବାଧା ଦିଅନ୍ତି । ମୁଁ ନ ମାନି ଲୁଚି ପଳାଏ । ଏଇଠି କେତେ ସାଙ୍ଗ ଯେ ଯୁଟିଲେ ତା'ର ଠିକଣା ନାହିଁ । ଆମେ ଖେଳୁଥିଲା ବେଳେ ବାବା ଦିନେ ଦିନେ ଜୋବ୍ରା ୱାର୍କସପରୁ ପାଖ ରାସ୍ତା ଦେଇ ଘରକୁ ଫେରନ୍ତି । ବାବାଙ୍କୁ ଦେଖି ମୁଁ ଟିକିଏ ଛପି ଯାଏ । ବାବା ଆମ ଆଡ଼େ ଅନାନ୍ତି ନାହିଁ ।

ଆମେ ଖେଳିଲା ବେଳେ football ଖେଳର କୌଣସି ନିୟମ ମାନିବାକୁ ହୁଏ ନା । ଦି'ଦଳ ହଉ referee ର ଦରକାର ନାହିଁ, goal post ର ଦରକାର ନାହିଁ । ସେ ପଡ଼ିଆ ମେଡ଼ିକାଲ୍‌ର ଅଧୀନରେ । ଏଣୁ

ସେଠି post ଦି'ଟା ପୋତିବାକୁ ଗଲେ ମେଡ଼ିକାଲ୍‌ର ଅନୁମତି ଦରକାର। କିଏ ମେଡ଼ିକାଲ୍‌ରୁ ଅନୁମତି ଆଣୁଛି? ମେଡ଼ିକାଲ୍ ବା ଅନୁମତି ଦବ କାହିଁକି? ଲାଇନ୍ ହାତେ ହାତେ କଟା ହୁଏ। Goal post ର ଯେତିକି ଦୈର୍ଘ୍ୟ ତା'ଠୁ ଅଛ ଛଡ଼ାରେ ଉଭୟ ପାଖରେ ଇଟା ଥୁଆ ହୁଏ। ଖେଳ ଚାଲେ। ଉଭୟ ପଟେ ୧୧ ଜଣ କରି ୨୨ ଜଣ ଖେଳାଳୀ ପରିବର୍ତ୍ତେ ୩୦ ଜଣ ପ୍ରାୟ ଖେଳୁ। ସେହି ପଡ଼ିଆର ଗୋଟାଏ ପାଖ ହେଲା ମଙ୍ଗଳାବାଗ ଅନ୍ୟପାଖ ହେଲା female ward ଏବଂ ସେଠା କର୍ମଚାରୀଙ୍କ ରହିବା ସରକାରୀ ଘର ସବୁ। ସେ ପଡ଼ିଆର ମଙ୍ଗଳାବାଗ ପଟେ ଗୋଟାଏ ବଡ଼ ଝଙ୍କା ବରଗଛ ଥିଲା। ବର୍ଷା ହେଲେ ଆମେମାନେ ଖେଳ ଛାଡ଼ି ସେଇ ବରଗଛ ତଳେ ଆଶ୍ରୟ ନଉ। କେତେକ ସେ ବରଗଛ ଓହଳକୁ ଧରି ଝୁଲନ୍ତି ପୁଣି ବର୍ଷା ଛାଡ଼ିଲେ ଯାଇ ଖେଳୁ। Football ଖେଳର ଯେତିକି ସମୟ ଖେଳିବାର ନିୟମ ସେ ନିୟମ ନଥାଏ। ସଂଜ ହବା ପର୍ଯ୍ୟନ୍ତ ଖେଳୁ, ସେତେବେଳେ ବିଜୁଳିବତୀ ଆଲୁଅ ନଥିଲା। ମ୍ୟୁନିସିପାଲଟି ତରଫରୁ ସେତେବେଳେ ଯେଉଁ ଆଲୁଅ ଖୁଣ୍ଟି ଥିଲା ସେଥିରେ କିରାସିନିବତୀ ଜଳୁଥିଲା। ସେ ଆଲୁଅ ଜଳିବାଯାଏ ଖେଳ ହୁଏ। ଖେଳ ସରିଲେ ଆମେ ସମସ୍ତେ ଦଉଡ଼ୁ ସୁରଙ୍କର କୋଠାର ବାହାର ପଟେ ଯେଉଁ tube well ଥିଲା ସେଇଠିକି। ଜଣେ pump କରେ ଆଉ ସମସ୍ତେ ପେଟେ ପେଟେ ପାଣି ପିଇଯାନ୍ତି। ମୁଁ ମଧ ପେଟେ ପାଣି ପିଇଯାଏ। ତା'ପରେ ମୋର ଚିନ୍ତା ପଡ଼େ କେମିତି ଘରେ ପଶିବି? ଘରୁ ଖେଳିବା ପାଇଁ ଲୁଚି ପଳେଇଥିଲି। ବର୍ତ୍ତମାନ ଘରେ ପଶେ କେମିତି? କୌଣସି ପ୍ରକାରେ ଚୋର ପରି ନିର୍ଲଜ୍ଜ ଭାବରେ ଘରେ ପଶିଲି। ଗାଳି ଆରମ୍ଭ ହେଲା। ଅପରାଧୀ ପରି ସେ ଗାଳିକୁ ସହ୍ୟ କରେ। ଉତ୍ତର ଦବାର ଉପାୟ ନାହିଁ, ଦେଲେ ମାଡ଼ ହବାର ଭୟ।

ସେତେବେଳେ ଆମର ବର୍ଷ ଭିତରେ ତିନି ଥର ପରୀକ୍ଷା ହଉଥିଲା। 1st terminal, 2nd terminal ପୁଣି 3rd terminal। ମୁଁ football ଖେଳି ପାଣି ପିଇବା ଦ୍ୱାରା ମୋତେ ଏଇ 2nd terminal ବେଳକୁ ଜ୍ୱର ହୁଏ। କଟକର ବାଲୁଙ୍କେଶ୍ୱର କବିରାଜ ଆସି ମୋର ଜ୍ୱରର ଚିକିତ୍ସା କଲେ, ଜ୍ୱର ଛାଡ଼ିଯାଏ। ଏଇ ଜ୍ୱର ସକାଶେ ମୁଁ 2nd terminal ପରୀକ୍ଷା ଦେଇ ପାରେନା। ଚିକିତ୍ସା ହୁଏ, ଗାଳି ହୁଏ, ମଲା ପରି ହୁଏ ପୁଣି ବଞ୍ଚେ। ଆମେ ଯେଉଁ football ନେଇ ଖେଳୁ, ସେ football ଚୋରାରେ medical ସ୍କୁଲର ଜଣେ game peon ପାଖରୁ କିଣା ହୁଏ। ତାକୁ ଚାରୋଟି ଟଙ୍କା ଦେଲେ ସେ ଗୋଟିଏ football ଦିଏ। ଯେଉଁଦିନ football leak ହେଇଥାଏ କିମ୍ବା bladder ଫାଟି ଯାଇଥାଏ କିମ୍ବା cover ଛିଣ୍ଡି ଯାଇଥାଏ ସେଦିନ ଖେଳ ବନ୍ଦ ରହେ। ଆମେ ସବୁ ମେଳା ମେଳା ହଉ। କେତେକ ମହାନଦୀର ଆନିକଟ ଆଡ଼େ ବୁଲିବାକୁ ବାହାରିଯାନ୍ତି। କେତେକ ମେଡ଼ିକାଲ ହତାରେ ଥିବା ରାସ୍ତାର ଉଭୟ ପାର୍ଶ୍ୱର ଦେବଦାରୁ ଗଛ ଉପରେ ଚଢ଼ି ବସନ୍ତି। ନଚେତ medical team ର ଯଦି ମ୍ୟାଚ୍ ହଉଥାଏ ତାଙ୍କ ପଡ଼ିଆ ପାଖରେ ବସି ମ୍ୟାଚ୍ ଦେଖୁ। ସେତେବେଳେ Medical School ରେ football ଖେଳ ପ୍ରତି ବିଶେଷ ଆଗ୍ରହ ଥିଲା। ସେତେବେଳେ Medical School ରେ ବିଶେଷ ବୟସ୍କ ଛାତ୍ର ଖେଳୁଥିଲେ। ଛାତ୍ରମାନଙ୍କ ସଙ୍ଗେ medical ର ଶିକ୍ଷକମାନେ ମଧ ଖେଳୁଥିଲେ। Dr. P.C. Ray, Dr. Asu Rakhit, Dr. Amulya Dhan Dutta ଏମାନେ ମଧ ଖେଳିବାର ମୁଁ ଦେଖିଛି। ଆହୁରି କେତେକ ଖେଳାଳୀ ଦେଖିଛି ସେମାନେ ଛାତ୍ର କି ଶିକ୍ଷକ ମୁଁ ଜାଣେନା। ତାଙ୍କର ମୁଣ୍ଡ ଚନ୍ଦା ଫୁଲାଏ ଝାମ୍ପୁଡ଼ା ନିଶ ଥାଏ।

ସେତେବେଳର ଶିକ୍ଷକମାନଙ୍କ ମଧରେ ଡାକ୍ତର ସନାତନ ପୂଜାରୀ football ଖେଳରେ ବିଶେଷ ଆଗ୍ରହୀ ଥିଲେ। ସେ ଏକା କାହିଁକି, ଆହୁରି ଅନେକ ଥିଲେ କିନ୍ତୁ ଡାକ୍ତର ସନାତନ ପୂଜାରୀଙ୍କର ପ୍ରାଧାନ୍ୟ ବେଶି ଜଣାପଡ଼େ। କାରଣ ମୁଁ ଦେଖିଛି କିଲ୍ଲା ପଡ଼ିଆରେ ଯଦି medical team ର କାହା ସହିତରେ ମ୍ୟାଚ୍ ଅଛି ଡାକ୍ତର ସନାତନ ପୂଜାରୀ ବର୍ମା ଚୁରୁଟ ଲଗେଇ ଲାଇନ୍ କଡ଼ରେ ବୁଲ ବୁଲି ପାଟି କରୁଥିବେ. knock him down, knock him dowm.

ସେତେବେଳେ medical team ର ଖେଳ ଦେଖିବାକୁ ସମସ୍ତଙ୍କର ବିଶେଷ ଆଗ୍ରହ କାରଣ medical team ର ଖେଳାଳୀମାନେ ଖେଳିଲେ ମାଡ଼ ମରାମରିଟା ସୁନିଶ୍ଚିତ। ଏଣୁ ଲୋକଙ୍କୁ ଭାରି ଭଲ ଲାଗେ। Medical team ର ଯେଉଁଦିନ କିଲ୍ଲା ପଡ଼ିଆରେ ଅନ୍ୟ କେଉଁ team ସହିତରେ ମ୍ୟାଚ୍ ଥାଏ ସେଦିନ ରାଣୀହାଟ ପୋଲଠାରୁ ଆରମ୍ଭ କରି ମଙ୍ଗଳାବାଗ ଇତ୍ୟାଦିରେ ହରତାଳ ହେଲା ପରି ଅଧିକାଂଶ ଦୋକାନପାଟ ବନ୍ଦ। ଦୋକାନ ଇତ୍ୟାଦି ବନ୍ଦ କରି ଲୋକେ କିଲ୍ଲା ପଡ଼ିଆକୁ medical team ର ଖେଳ ଦେଖିବାକୁ ଯାଇଥିବେ। ପ୍ରତ୍ୟେକ ମ୍ୟାଚ୍‌ରେ medical team ଜିତିଛି ତ ଭଲ ନଚେତ୍ ହେଲା ଗଣ୍ଡଗୋଳ, ମାଡ଼ପିଟ। Medical team ମ୍ୟାଚ୍‌ରେ ଅନେକ referee ହବାକୁ ରାଜି ହୁଅନ୍ତି ନାହିଁ। Medical team ର ଅଧିକାଂଶ ମ୍ୟାଚ୍‌ରେ ତତ୍କାଳୀନ ଏକ ଭଦ୍ରଲୋକ ନାଁ ଫୈଜ ଅଲ୍ଲୀ ଅନେକବାର referee ହବାର ମୁଁ ଦେଖିଛି। ଫୈଜ ଅଲ୍ଲୀ ମଧ ଅନେକ ଗଣ୍ଡଗୋଳର ସମ୍ମୁଖୀନ ହେଇଛନ୍ତି, ମାଡ଼ପିଟ ହେଇଛି, ଖେଳ ଭାଙ୍ଗିଛି। Medical team ଅନେକବାର scratch ହେଇଛି। ସେତେବେଳେ medical team ର ଜଣେ centre forward, ନାମ ନିଖିଲ ବାନାର୍ଜି ଅତି ଚମତ୍କାର ଖେଳୁଥିଲେ। ତାଙ୍କର ଖେଳ ମୁଁ ଏ ପର୍ଯ୍ୟନ୍ତ ଭୁଲି ପାରିନି। ଯେଉଁ team କୁ ଯେତେଟା goal ଦେବେ ବୋଲି କହିଥିବେ ସେତିକିଟା goal ଦେବେ। ଆଉ ଭୀଷଣ ରାଗୀ। ଯାଙ୍କ ଯୋଗୁଁ medical team ବହୁବାର scratch ହେଇଛି। ଏ ଆଗେ ମାଡ଼ପିଟ ଆରମ୍ଭ କରୁଥିଲେ, ଏ ବୋଧେ ବିହାରରୁ ଆସି ଏଠି ପଢୁଥିଲେ।

ଆଉ ଗୋଟିଏ ଘଟଣା medical ଛାତ୍ର, medical ର ଅନ୍ୟାନ୍ୟ କର୍ମଚାରୀମାନଙ୍କର ଏକତା, ଏ ଗୋଟାଏ medical ର ଆଦର୍ଶ ଥିଲା। ତାଙ୍କ ଭିତରେ ସେମାନେ ଯାହା କରନ୍ତୁ, କିନ୍ତୁ ବାହାରକୁ ଏକ, ଇମିତିକି ଯେ କୌଣସି ଜାଗାରେ medical ଛାତ୍ର, ଶିକ୍ଷକ କିମ୍ବା ଅନ୍ୟ କେହି କର୍ମଚାରୀ ହଉ ଯଦି ବାହାର ଲୋକ କେହି ତାଙ୍କୁ ଅପମାନ କରିଛି କିମ୍ବା ଆଘାତ କରିଛି ଜଣେ medical ର ବେହେରା ଯଦି ତାକୁ ଦେଖିଛି ସେ ମଧ ଛାଡ଼ିବ ନାହିଁ। ତାକୁ ଯେମିତି ହେଲେ ଆଘାତ କରିବ କିମ୍ବା medical ରେ ଆସି ଖବର ଦେଇ ଦବ। ତା'ପରେ ଦଳବାନ୍ଧି ମାଡ଼ ଫୌଜଦାରି କରିବାକୁ ବାହାରିଲେ medical ଛାତ୍ର।

୯ମ ଶ୍ରେଣୀରେ ପଢ଼ିବା ବେଳେ କେତେଦିନ ଯାଇ ଦିନବେଳା ମାଛୁଆବଜାରର ଗୋବିନ୍ଦ ଚନ୍ଦ୍ର ପୃଷ୍ଟିଙ୍କ ଘରେ ଜଣେ ଭଦ୍ରଲୋକଙ୍କ ପାଖରେ ମୁଁ ଟିଉସନ୍ ହେଇଛି। ସେ ଭଦ୍ରଲୋକଙ୍କ ନାଁ ମୋର ମନେ ନାହିଁ କିନ୍ତୁ ସେ ଜଣେ ଭଲ ଶିକ୍ଷକ ଥିଲେ। ସେମିତି ୮ମ ଶ୍ରେଣୀରୁ ୯ମ ଶ୍ରେଣୀକୁ ପ୍ରମୋସନ୍ ପାଇବା ପୂର୍ବରୁ କେତେମାସ ଆଉ ଜଣେ ଶିକ୍ଷକଙ୍କ ପାଖରେ ପଢୁଥିଲି। ସେ ଶିକ୍ଷକଙ୍କ ନାମ, ହରିମାଷ୍ଟ୍ରେ। ସେ ମାଛୁଆବଜାରର ଜଣେ ତେଲି ମହାଜନଙ୍କ ଘରେ ରହି ତାଙ୍କ ପିଲାଙ୍କୁ ଟିଉସନ୍ କରୁଥିଲେ। ତେଲି ମହାଜନଙ୍କ ନାଁ ମୋର ମନେ ନାହିଁ କିନ୍ତୁ ତାଙ୍କ ବଡ଼ପୁଅ ଅନନ୍ତ ଚରଣ ସାହୁ ମୋ ସହିତରେ ପି.ଏମ୍.ଏକାଡ଼େମୀରେ ୮ମ ଶ୍ରେଣୀରେ ପଢୁଥିଲା। ଅନନ୍ତ ଚରଣ ସାହୁ ବର୍ତ୍ତମାନ ଚଉଦୁଆର ଅଞ୍ଚଳର ବଡ଼ କଣ୍ଟ୍ରାକ୍ଟର ଶତ୍ରୁଘ୍ନ ସାହୁଙ୍କ ବଡ଼ଭାଇ, ଶତ୍ରୁଘ୍ନ ସାହୁ ସେତେବେଳେ ଅତି ଛୋଟ।

ମୁଁ ସନ୍ଧ୍ୟାବେଳୁ ଯାଇ ତାଙ୍କ ଘରେ ପଢୁଥିଲି । ରାତି ପ୍ରାୟ ୯ଟା ବେଳକୁ ବାବା ଯାଇ ନେଇ ଆସୁଥିଲେ। ୯ମ ଶ୍ରେଣୀରେ ପଢ଼ିବା ବେଳେ ଜଣେ ଶିକ୍ଷକ, ନାମ ନବ ବାବୁ, ବଡ଼ ଆତଙ୍କ ସୃଷ୍ଟି କରିଥିଲେ। ନବ ବାବୁ ଆମକୁ British history ପଢ଼ଉଥିଲେ, ଯେ ପଢ଼ା ନକରି ଯାଇଛି ହେଲା ତା'ଉପରେ ମାଡ଼। ସେ ମାଡ଼ ପୁଣି ଅସହ୍ୟ। ଅନେକ ପିଲା ଲୁଚୁଥିଲେ। ଅନେକ ସେହି ୯ମ ଶ୍ରେଣୀରୁ ନବ ବାବୁଙ୍କ ଭୟରେ ପାଠ ଛାଡ଼ି ପଳେଇଲେ। ନବ ବାବୁ ଦେଖିବାକୁ ବେଶ୍ ପୃଥୁଳକାୟ ଲୋକ ଥିଲେ। ଦେଖିଲେ ଭୟ ହବ। ନବ ବାବୁଙ୍କ period ଆସିଲା ମାନେ, ପିଲାଏ ମନେ ମନେ ଠାକୁରଙ୍କୁ ଭଜିଲେ। କିନ୍ତୁ ଈଶ୍ୱର କି ଆଲ୍ଲା କେହି ଦୟା କରନ୍ତି ନାହିଁ। ଯା ହଉ ମୋର ଭଲରେ ଭଲରେ ୯ମ ଶ୍ରେଣୀ କଟିଗଲା।

## (୧୦)

୧୦ମ ଶ୍ରେଣୀକୁ ପ୍ରମୋସନ୍ ପାଇଲି । ୧୦ମ ସେହି ତଳେ, ଆଉ ଗୋଟାଏ ଆଡ଼େ, ଆଉ ଉପର ମହଲାକୁ ଯାଇ ନାହିଁ । ବାବା, ବନ୍ଧୁ ବାନ୍ଧବ ସମସ୍ତେ ଖୁସି ହେଲେ । ଯା ହଉ ଆଉ ଗୋଟାଏ ବର୍ଷ ପରେ matriculation ପରୀକ୍ଷାର ଶେଷ ବର୍ଷରେ ପହଁଚିବି । ସେତେବେଳେ ୧୦ମ ଶ୍ରେଣୀକୁ 2nd class କୁହାଯାଉଥିଲା । ୧୧ଶ ଶ୍ରେଣୀକୁ matric class କୁହାଯାଉଥିଲା କିମ୍ୱା 1st class କୁହାଯାଉଥିଲା । ସେତେବେଳେ ଗୋଟାଏ ପିଲା 2nd class କିମ୍ୱା 1st class ରେ ଆସି ପହଁଚିବା ମାନେ କୂଳକୁ ବିହନ ହେଲା, କୂଳ ରଖିଲା, କୂଳରେ ଲାଗିଲା, ମଣିଷ ହେଇଗଲା ଇତ୍ୟାଦି ଇତ୍ୟାଦି ଲୋକେ କହିବାର ଶୁଣା ଯାଉଥିଲା ।

ସେତେବେଳେ I.A., B.A. ପଢ଼ିବା ମାନେ, ସେ ଯେମିତି କେଡ଼େ ବଡ଼ ଜ୍ଞାନୀ ପିଲାଟାଏ ଯେ matriculation ପାସ୍ କଲା । ତା'ପରି ପାଠୁଆ ପିଲା କେହି ନାହିଁ ।

ଯା ହଉ, ମୁଁ କୌଣସିମତେ ଆସି 2nd class ରେ ପହଁଚିଲି । ବାବାଙ୍କର ଆନନ୍ଦର ସୀମା ରହିଲା ନାହିଁ । ମୋର ମନେ ଅଛି- railway junction କ'ଣ ମୋତେ ଦେଖେଇବା ପାଇଁ ବାବା ମୋତେ Khurda Road Station କୁ ନେଇ ଯାଇଥିଲେ । ବାବା, ମୁଁ କଟକ ଷ୍ଟେସନ୍‌ରୁ ସକାଳ ଟ୍ରେନ୍‌ରେ ବାହାରି Khurda Road Station ବୁଲାବୁଲି କରି ଫେରିବା ପୂର୍ବରୁ ଗୋଟିଏ ଦୋକାନରେ ପୁରି, ତରକାରି ଜଳଖିଆ କରି ଟ୍ରେନ୍‌ରେ ସନ୍ଧ୍ୟାବେଳକୁ କଟକ ଫେରିଲୁ । ସେତେବେଳେ Khurda Road Station ଅଞ୍ଚଳରେ ଏତେ ଚକ୍‌ମକିଆ କୋଠାବାଡ଼ି କିମ୍ୱା ଚକ୍‌ମକିଆ ବଜାର ଦୋକାନ ନଥିଲା, ଯେଉଁ ଗୁଡ଼ିଆ ଦୋକାନରେ ଜଳଖିଆ କରିଥିଲୁ, ସେ ଦୋକାନଟି ଟାଟି ଘର ଥିଲା, ଅତି ନିକୃଷ୍ଟ ଧରଣର, ଷ୍ଟେସନ୍‌ର ପଛ ପଟେ ଯେଉଁଠି ଆଜି କାଲି J. B. Thakar ର ଦୋକାନ ହେଇଛି । ଜଳଖିଆ ଦୋକାନଟି ଅତି ଛୋଟ ହେଲେ କ'ଣ ହବ, ଜଳଖିଆ-ପୁରି, ତରକାରି ଯା ଖାଇଲୁ ଅତି ଭଲ । ଆଜିକାଲି ପରି ଡାଲଡା ଘିଅରେ ତିଆରି ପୁରି ନୁହଁ କିମ୍ୱା ଭେଜାଲ ସୋରିଷତେଲରେ ତିଆରି ତରକାରି ନୁହଁ ।

ସେତେବେଳେ Khurda Road Station ଅଞ୍ଚଳରେ ଇମିତି ଟାଟ ଘରେ ଅନେକ ଦୋକାନ ଥିଲା । ସେତେବେଳେ ଲୋକେ କାଠ କ୍ୟାବିନରେ ଦୋକାନ କରୁ ନଥିଲେ କି ଜାଣି ନଥିଲେ ।

ଯେଉଁଦିନ ମୁଁ ୧୦ମ ଶ୍ରେଣୀକୁ ପ୍ରମୋସନ ପାଇ ଆସି ଘରେ ପହଁଚିଲି, ମା ପ୍ରଥମେ ପଚାରିଲେ କିରେ ପ୍ରମୋସନ୍ ପାଇଛୁ? ମୁଁ ମିଛରେ ମୁହଁକୁ ଶୁଖେଇ ମା'ଙ୍କୁ କହିଲି, ନା ମୁଁ ପ୍ରମୋସନ୍ ପାଇ ନାହିଁ । ମା' ଶୁଣି ଅବାକ ହେଲେ ଯେ ମୁଁ ପ୍ରମୋସନ୍ ପାଇ ନାହିଁ । ମୋତେ କିଛି ଗାଳି ଦବାକୁ ମା' ଆରମ୍ଭ କରିଛନ୍ତି ଏଇ ସମୟରେ ମୁଁ ହସି ପକେଇଲି । ମା' ସେଇଠୁ ବୁଝି ପାରିଲେ ଯେ ମୁଁ ପ୍ରମୋସନ୍ ପାଇଛି, ମିଛରେ ଗୋଟାଏ ଠକିବା ପାଇଁ ଇମିତି କହିଲି । ତା'ପରେ ମା' ଖୁସି ହେଲେ କିନ୍ତୁ ମୋତେ କି ଦୁର୍ବୁଦ୍ଧି ଦେଖାଗଲା, କାହିଁକି ଯେ ସେମିତି ମିଛ କହିଲି କେଭେ ସେମିତି ଆଗେ କହି ନଥିଲି । ଏଥର ଯେ ମା'ଙ୍କ ଆଗରେ କାହିଁକି ମିଛ କହିଲି, କି ଅଶୁଭ ସମୟରେ ମୋ ତୁଣ୍ଡରୁ ମିଛ ବାହାରିଗଲା, ମୁଁ ପ୍ରମୋସନ୍ ପାଇ ନାହିଁ, ତା'ର ଯେ କି ପରିଣତି ହେଲା । ତାହା ପରେ ବର୍ଣ୍ଣନା କରିବି ।

ଏଇ ୧୦ମ ଶ୍ରେଣୀରେ ପଢ଼ିବା ବର୍ଷ ବାବାଙ୍କର ଚାକିରୀରେ ଗଣ୍ଡଗୋଳ ଆରମ୍ଭ ହେଲା । ସେତେବେଳେ ଜଣେ ଗୋରା executive engineer ଯୋବ୍ରା ୱାର୍କସପ୍‌ର ଦାୟିତ୍ୱରେ ଥିଲେ । ସେ ବାବାଙ୍କୁ କ'ଣ କହିବାରୁ ବାବା ତାଙ୍କୁ ଉଚିତ୍ ଉତ୍ତର ଦେଲେ । ଏଇଥିରେ ସେ ରାଗି ଯାଇ

ବାବାଙ୍କ ଉପରେ ଆକ୍ରୋଶ ରଖିଲେ । ବାବାଙ୍କର ଭୟ ହେଲା, ଏ ଚାକିରୀ ଖାଇ ଦବ । ବାବା ଆଉ ପେନ୍‌ସନ୍ ପାଇ ପାରିବେ ନାହିଁ ।

କେତେଦିନ ପରେ ବାବାଙ୍କୁ ଜ୍ୱର ଆରମ୍ଭ ହେଲା । ବାବା ଅନେକ ଦିନ ଜ୍ୱର ରୋଗରେ ଭୋଗିଲେ । ସେତେବେଳେ ଆଜିକାଲି ପରି ହଠାତ୍ ଜ୍ୱର ଛଡ଼େଇବା ପାଇଁ ଶୀଘ୍ର ଫଳପ୍ରଦ ଔଷଧି ବାହାରି ନଥିଲା । ଏଣୁ ଅନେକ ଦିନ ଭୋଗିଲା ପରେ ବାବା ଭଲ ହେଲେ । ବାବାଙ୍କ ଅସୁସ୍ଥତା ଯୋଗୁଁ ଅନେକ ବନ୍ଧୁ ବାନ୍ଧବ ଆସିଲେ । ବାବାଙ୍କର ଯେ ଜଣେ ଉପରିସ୍ଥ ଗୋରା କର୍ମଚାରୀ ସହିତରେ ମନୋମାଳିନ୍ୟ ଘଟିଛି । ଏ କଥା ମଧ ଚାରିଆଡ଼େ ପ୍ରଚାର ହେଇଗଲା ।

ମୁଁ ମଧ ସେତେବେଳକୁ ଆଉ ଟିକିଏ ଉଚ୍ଛୃଙ୍ଖଳ ହେଇ ଗଲିଣି । ପାଠ ପଢ଼ାରେ ଆଉ ସେତେ ମନ ଲାଗିଲା ନାହିଁ । ପାଠ ମଧ ବଳେଇଲାଣି । ଅନେକଗୁଡ଼ାଏ ବହି । ଏଥିରେ ବାବା ବାଧ କଲେ additional mathematics ନବା ପାଇଁ । ଏକେରେ ମୁଁ ଅଙ୍କରେ ଦୁର୍ବଳ । କୌଣସି ପ୍ରକାରେ ଅଙ୍କରେ ପାସ୍ କରିବା ଠେଲାପେଲାରେ ଚାଲିଥାଏ । କୌଣସି ପ୍ରକାରେ ୩୦ଟା ନମ୍ବର ରହିଗଲେ ମୁଁ ବଂଚିଗଲି । ତା'ଉପରେ ପୁଣି additional mathematics ନେଲି । Additional mathematics ନ ନେଲେ, additional sanskrit ନବାର କଥା । Sanskrit ଏବେ ମୋର କୋଉ ଭଲ ହୁଏ ଯେ, ସେଥିରେ ତ ଯମ ଭୋଳି ପଣ୍ଡିତେ ବସିଥାନ୍ତି । କ'ଣ କରେ ? ସେତେବେଳେ ଅଶ୍ୱିନୀ କୁମାର ଘୋଷ additional mathematics ପଢ଼ଉଥାନ୍ତି । ସେ ଭୋଳି ପଣ୍ଡିତଙ୍କ ଭଳି କଡ଼ା କି ଚିଡ଼ା ଲୋକ ନଥିଲେ ।

ମୁଁ ବାବାଙ୍କ କଥା ମାନି ଭୟରେ additional mathematics ନେଲି । କି ଭୟଙ୍କର subject ! ସେଥିରେ ପୁଣି ତିନି ଖଣ୍ଡ ବହି ପଢ଼ିବାକୁ ହବ । Trigonometry, mensuration ଏବଂ 5th part solid geometry । କି ବିପଦ ! ମୋତେ ସପ୍ତରଥୀ ଘେରିଗଲା ପରି ମନେ ହେଲା । କେହି ରକ୍ଷା କରିବାକୁ ନାହାନ୍ତି । ସେତେବେଳେ କେହି ପ୍ରାଇଭେଟ ଟିଉଟର୍ ମଧ ନଥିଲେ ମୋତେ ଟିକିଏ ସାହାଯ୍ୟ କରିବା ପାଇଁ ।

ଏଇ ୧୦ମ ଶ୍ରେଣୀରେ ପଢ଼ିବା ବର୍ଷ ମୋର ଜେଠା ପୁଅ ବଡ଼ ଭାଇ ଯେ କି ନିରୁଦ୍ଦେଶ ହେଇଥିଲେ ସେ ଆସି ବର୍ମାରୁ ପହଁଚିଲେ । ସେ ପାଠ ଛାଡ଼ି ନିରୁଦ୍ଦେଶ ହେଇ ତାଙ୍କର ଅଜ୍ଞାତବାସରୁ ଫେରିବା ପରେ ସମସ୍ତେ ଆନନ୍ଦ ଅନୁଭବ କଲେ । ତାଙ୍କର ପୂରାପୁରି ଇଂରାଜୀ ଢ଼ାଞ୍ଚା । ବଡ଼ଭାଇଙ୍କୁ ଦେଖି ସମସ୍ତେ ଚମକି ଗଲେ । ତାଙ୍କର ଚାଲିଚଳନ, କଥାବାର୍ତ୍ତା ସବୁ ନୂଆ ଧରଣର । ଆମମାନଙ୍କଠାରୁ ସମ୍ପୂର୍ଣ୍ଣ ପୃଥକ । ସେ କିଛିଦିନ ରହି ପୁଣି ବର୍ମା ଚାଲିଗଲେ ।

ଏଇ ୧୦ମ ଶ୍ରେଣୀରେ ପଢ଼ିବା ବର୍ଷ ମୋର ଚିତ୍ର କରିବା ଦିଗରେ ଆଗ୍ରହ ଜନ୍ମିଲା । ତା'ର କାରଣ ହଉଛି, ଗାଁରେ ଦୁର୍ଗା ପୂଜା ସମୟରେ ଚିତ୍ରକାର ଦୁର୍ଗାଙ୍କ ମେଢ଼ରେ ଅଷ୍ଟ ନାୟିକା ଆଙ୍କିବା, ଦୁର୍ଗା ମୂର୍ତ୍ତି ଏବଂ ଅନ୍ୟାନ୍ୟ ମୂର୍ତ୍ତି ସବୁ ଚିତ୍ର କରିବା ଦେଖି ମନ ଡ଼ାକିଲା ଚିତ୍ର କରିବି । ଏଣୁ ଦଶହରାରୁ ଗାଁରୁ ଫେରି ଚିତ୍ରକାର ପରି ସଢ଼େଇରେ ବିଭିନ୍ନ ରଙ୍ଗ ସଜେଇ ରଖିବା, ତୁଳି ତିଆରି କରିବାରେ ଲାଗି ପଡ଼ିଲି । ତୁଳି ବା କେଉଁଠି ସହଜରେ ତିଆରି କରି ହଉଛି ?

ବାବା ମୋର ଛବି ଆଙ୍କିବାରେ ଆଗ୍ରହ ଦେଖି ମୋତେ ଗୋଟିଏ ଇଂଗଲିସ୍ କମ୍ପାନି ତିଆରି ପୁରୁଣା ରଙ୍ଗ ବାକ୍ସ ଆଣିଦେଲେ । ସେଥିରେ କେତେକ ତୁଳି ଆଉ ଛୋଟ ଛୋଟ ଇଟା ପରି ବିଭିନ୍ନ ରକମର ରଙ୍ଗ ଥିଲା । ତା'ଆଗରୁ ମୁଁ କଟକର ଚୌଧୁରୀ ବଜାର, ନୟାସଡ଼କ ଇତ୍ୟାଦି ବୁଲି ବୁଲି ବିଭିନ୍ନ ଦୋକାନରୁ ହଳଦିଆ ରଙ୍ଗ, ନେଳିଆ ରଙ୍ଗ, କଳା ରଙ୍ଗ, ଲାଲି ରଙ୍ଗ ସବୁ ଯୋଗାଡ଼ କରି ଆଣିଥିଲି । ରଙ୍ଗ କେମିତି ତିଆରି କରିବାକୁ ହୁଏ ଗାଁରେ ଚିତ୍ରକାର ଠାରୁ ଶିଖିଥିଲି । ଆମର କଟକ ବସାର କାନ୍ଥରେ ସବୁ ବିଭିନ୍ନ ଧରଣର ଦୃଶ୍ୟ ଅଙ୍କା ଚାଲିଲା । କାଗଜରେ ମଧ ଆଙ୍କିବାକୁ ଆରମ୍ଭ କଲି । ମୋ ନିଜ ତିଆରି ସଢ଼େଇରେ ରଖା ହେଇଥିବା ରଙ୍ଗରେ କାନ୍ଥରେ ବିଭିନ୍ନ ପ୍ରକାରର ଦୃଶ୍ୟ ଆଙ୍କେ ଆଉ ବାବାଙ୍କ ଦେଇଥିବା

ରଙ୍ଗରେ କାଗଜରେ ଚିତ୍ର ଆଙ୍କେ । ମୋର ଚିତ୍ର କରିବାର ଦେଖି ଥୋରିଆସାହିରେ କେତେକ ପଡ଼ୋଶୀ ମାଇପିମାନେ କେତେକ ଭାର ହାଣ୍ଡି ଚିତ୍ର କରି ଦବାକୁ ମା'ଙ୍କୁ ଅନୁରୋଧ କଲେ ଯେ ମୁଁ କେମିତି ସେମାନଙ୍କର ଭାର ହାଣ୍ଡି କେତେଟା ଚିତ୍ର କରିଦିଏ । ଏଣୁ ମା'ଙ୍କ କହିବା ମତେ କେତେକ ଭାର ହାଣ୍ଡି ମଧ ଚିତ୍ର କରିବାକୁ ଆରମ୍ଭ କଲି । ଯେ ଆମ ଘରକୁ ଆସିଲେ, ସେ କାନ୍ଥରେ ମୋ ଅଙ୍କା ଚିତ୍ର ସବୁ ଦେଖି ଏ ସବୁ କିଏ ଆଙ୍କିଛି ପ୍ରଶ୍ନ କରିବାରୁ ମୁଁ ଚିତ୍ର କରିଛି ଶୁଣି ବିଶେଷ ଖୁସି ହେଲେ । ଏସବୁ ପ୍ରଶଂସା ଶୁଣି ମୋର ଆହୁରି ମନ ମାତିଲା ଛବି ଆଙ୍କିବାରେ ।

ଆଉ ଗୋଟିଏ ଘଟଣାରେ ମୋର ଛବି ଅଙ୍କାରେ ଆହୁରି ଆଗ୍ରହ ବଢ଼ିଲା । ଘଟଣା ହେଲା, ସେତେବେଳେ ଥୋରିଆସାହି ନିକଟସ୍ଥ ବଣିଆ ସାହିରେ ରହୁଥିଲେ ଭିକାରୀ ପରିଜା (ଜିଲ୍ଲାଦାର)ଙ୍କ ପୁଅମାନେ ହରି ପରିଜା (ଡ଼ାକ୍ତର) ରାମ ପରିଜା, କୃଷ୍ଣ ପରିଜା (ଇଞ୍ଜିନିୟର), ନିରଞ୍ଜନ ପରିଜା (ଡ଼ାକ୍ତର) । ସେତେବେଳେ ହରି ପରିଜା ଡ଼ାକ୍ତରୀ ପଢୁଥିଲେ ଆଉ ସମସ୍ତେ ପି.ଏମ୍.ଏକାଡ଼େମୀରେ ପଢୁଥିଲେ । ଏମାନଙ୍କ ମଧରୁ ରାମ ପରିଜା ଭଲ ଚିତ୍ର କରୁଥିଲେ । ତାଙ୍କର ଖଣ୍ଡେ ଚିତ୍ର, ନାମ "ଅର୍ଘ୍ୟ ଥାଳି" ସେତେବେଳର "ଉତ୍କଳ ସାହିତ୍ୟ"ରେ ପ୍ରକାଶିତ ହୋଇଥିଲା । ମୁଁ ମଧ ପି.ଏମ୍.ଏକାଡ଼େମୀରେ ପଢୁଥିଲି । ଏଣୁ ଏମାନଙ୍କ ସଙ୍ଗେ ଭଲ ପରିଚୟ ହେଇଥିଲା । ଯାଙ୍କ ବସାକୁ ମୁଁ ମଧ ସମୟେ ସମୟେ ବୁଲିବାକୁ ଯାଉଥିଲି । ରାମ ପରିଜାଙ୍କ ଚିତ୍ରାଙ୍କନ ଦେଖି ମୁଁ ମଧ ଅନୁରୂପ ଚିତ୍ର କରିବାକୁ ଆଗ୍ରହୀ ହେଲି ।

ସେତେବେଳର ବଙ୍ଗଳା ପତ୍ରିକା "ଭାରତ ବର୍ଷ", "ବସୁମତୀ", "ପ୍ରବାସୀ"ରେ ଅନେକ ରଙ୍ଗୀନ ଛବି ପ୍ରକାଶ ପାଉଥିଲା । ତାକୁ ଦେଖି ମଧ ମନ ହେଲା ସେମିତି ଛବି ଆଙ୍କିବି ।

ଯେଉଁଠି ଯେତେ ଛବି ଦେଖିଲି ତାକୁ ଭଲ ଭାବରେ ଦେଖିଲି ଶିଖିବା ଉଦ୍ଦେଶ୍ୟରେ । ଏଣୁ ମୋର ଛବି ଆଙ୍କିବା ମଧ ବେଶ୍ ଅଗ୍ରଗତି କଲା । ରାମ ପରିଜାଙ୍କ "ଅର୍ଘ୍ୟଥାଳି" ଛବି ଉତ୍କଳ ସାହିତ୍ୟରେ ପ୍ରକାଶିତ ହବାର ଦେଖି ମୋର ମନ ହେଲା ମୋର କେମିତି ଖଣ୍ଡେ ଛବି ଉତ୍କଳ ସାହିତ୍ୟରେ ପ୍ରକାଶ ପାଇବ । ଏଣୁ ମୁଁ ଖଣ୍ଡେ ଛବି ଆଙ୍କିଲି, ସେ ଛବିର ନାଁ ଦେଲି "ସାନ୍ଧ୍ୟ ପ୍ରଦୀପ" । ଜଣେ ଗୃହିଣୀ ସନ୍ଧ୍ୟାବେଳେ ଗୋଟିଏ ଜଳନ୍ତା ପ୍ରଦୀପ ଧରି ତାକୁ ପଣତ ଢ଼ଙ୍କେଇ ଚଉରା ମୂଳରେ ଥୋଇବାକୁ ଯାଉଛି ।

ସେ ଛବି କି ନେଇ ତତ୍କାଳୀନ "ଉତ୍କଳ ସାହିତ୍ୟ"ର ସମ୍ପାଦକ ବିଶ୍ୱନାଥ କରଙ୍କ ନିକଟକୁ ଗଲି । ଉତ୍କଳ ସାହିତ୍ୟ ପ୍ରେସ ସେତେବେଳେ ବାଲୁବଜାରରେ ଥିଲା । ବିଶ୍ୱନାଥ କର ମୋତେ ସେ ଛବିରେ କେତେକ ପରିବର୍ତ୍ତନ କରି ଆଣିବାକୁ କହିଲେ । ମୁଁ ସେ ଛବିକୁ ନେଇ ଆସିବା ପରେ ବେରାମ ପଡ଼ିଲି । ସେ ଛବି କୁଆଡ଼େ ଗଲା ଆଉ ମୁଁ ତାଙ୍କ ପାଖକୁ ଯାଇ ପାରିଲି ନାହିଁ କି ଆଉ ତାଙ୍କ ସହିତରେ ମୋର ଦେଖା ହେଇ ନାହିଁ ।

ରାମ ପରିଜା ଯେଉଁଠି ବଣିଆ ସାହିରେ ରହୁଥିଲେ, ସେଠାରେ କେତେକ ଯୁବକ ମିଶି ଥରେ ଥିଏଟର୍ କଲେ । ସେଥିରେ ଅଶ୍ୱିନୀ ଘୋଷଙ୍କ ଲେଖା "ସିଓଜୀ" ନାଟକ ମଞ୍ଚସ୍ଥ କରା ହେଇଥିଲା । ଏଥିରେ ବିଭିନ୍ନ ସିନ୍ ସବୁ କାଗଜରେ ଅଙ୍କା ହେଇଥିଲା । ଏ ସିନ୍ ସବୁ ଆଙ୍କିଥିଲେ ରାମ ପରିଜା । ବେଶ୍ ଚମତ୍କାର ହେଇଥିଲା । ସେତେବେଳେ ବଣିଆ ସାହିରେ ଦୁଇ ଜଣ ସହୋଦର ଭାଇ ବଙ୍ଗାଳୀ ଭଦ୍ରଲୋକ ଥିଲେ । ଏଇ ଦୁଇ ଜଣଙ୍କ ନାମ ହେଲା ଚଣ୍ଡି ଚରଣ ମିତ୍ର ଏବଂ ଭଗବତୀ ଚରଣ ମିତ୍ର । ଯାଙ୍କରି ବଗିଚାରେ ପେଣ୍ଡାଲ ତିଆରି ହେଇଥିଲା । ନାଟକ ବେଶ୍ ଉପଭୋଗ୍ୟ ହେଇଥିଲା । ମୁଁ ଏ ନାଟକର ଗୋଟିଏ ଛୋଟ ଭୂମିକାରେ ଅଂଶ ଗ୍ରହଣ କରିଥିଲି । ମୋର ଅଭିନୟ କରିବା ସେଇଠି ଆରମ୍ଭ, ସେଇଠି ଶେଷ । ମୋତେ ଅଭିନୟ କରିବା ଭଲ ଲାଗିଲା ନାହିଁ । ଅଭିନୟ କରିବାକୁ ଆଉ କେଭେ ମୋର ଆଗ୍ରହ ହେଲା ନାହିଁ ।

ଥରେ ପି.ଏମ୍.ଏକାଡ଼େମୀର ପ୍ରତିଷ୍ଠାତା ପ୍ୟାରୀ ମୋହନ ଆଚାର୍ଯ୍ୟଙ୍କ ଖଣ୍ଡେ ଛବି ଆଙ୍କିଲି । ତାକୁ ସ୍କୁଲକୁ

ନେଇଗଲି । ମୋର କ୍ଲାସ ପିଲାଏ ସେ ଛବିକୁ ମୋଠୁଁ ଛଡ଼େଇ ନେଇ କାନ୍ଥରେ ମାରି ଦେଲେ । ମୁଁ ଭୟ କଲି କାଳେ କୋଉ ସାର୍ ଆସି ମୋତେ ଗାଳି ଦେବେ କିନ୍ତୁ ଜଣେ ଦୁଇ ଜଣ ଶିକ୍ଷକ ଆସି ପଢ଼େଇ ଚାଲି ଗଲେ କେହି କିଛି କହିଲେ ନାହିଁ । ତା'ପରେ ଇଂରାଜୀ ପିରିୟଡ଼ରେ ଆସିଲେ ବସନ୍ତ କୁମାର ଦାସ । ସେ ପଢ଼େଇବା ପୂର୍ବରୁ ଆଗେ କାନ୍ଥକୁ ଅନେଇ ଦେଇ ଦେଖନ୍ତି ପ୍ୟାରୀ ମୋହନ ଆଚାର୍ଯ୍ୟଙ୍କ ଚିତ୍ର ଟଙ୍ଗା ହେଇଛି । ପଚାରିଲେ ଏ ଛବି କିଏ ଆଙ୍କିଛି ? ପିଲାଏ କହିଲେ ପୁଳିନ୍ ଆଙ୍କିଛି । ବସନ୍ତ ବାବୁ ତା'ପରେ ମୋତେ ଡ଼ାକି ପଚାରିଲେ ତୁମେ ସ୍କୁଲରୁ ଯାଇ କ'ଣ କର ? ମୁଁ ମିଛରେ କହିଲି ଘରେ ଥାଏ । ବସନ୍ତ ବାବୁ କହିଲେ ନା, ଘରେ ରହିବ ନାହିଁ । ନଈକୂଳ ଆଡ଼େ ବୁଲିବାକୁ ଚାଲିଯିବ । ତୁମର ଛବି ଆଙ୍କିବାରେ ବେଶ୍ ହାତ ଅଛି, ଭଲ, ପଢ଼ାରେ ମନ ଦିଅ, ଛବି ଆଙ୍କ ।

ଆଉ ଥରେ ପ୍ୟାରୀ ମୋହନ ଆଚାର୍ଯ୍ୟଙ୍କ ଗୋଟାଏ ଠିଆ ହବା ଭଙ୍ଗୀର ବଡ଼ ଛବି ଆଙ୍କିଲି । ବାବା, ମା, ସମସ୍ତେ ଦେଖି ଭାରି ଖୁସି ହେଲେ । ସେ ଛବିଟି ରଖିଥିଲି । ଏଣେ ଗୋଟାଏ ଅଭାବରେ ପଡ଼ିଲି, ଅଭାବଟା ହେଲା, ଅଣାଏ ପଇସାର । Mangalabag Boy's Union Club ରେ football ଖେଳ ପାଇଁ ଗୋଟାଏ ମାସର ଚାନ୍ଦା ଦବାକୁ ହବ । କେତେଥର କିଛି ଖବର କାଗଜ ବିକି ଚାନ୍ଦା ଦେଇଛି । ଏଥର ଆଉ ଖବରକାଗଜ ନଥିଲା । Football ଖେଳ ପାଇଁ ବାବାଙ୍କୁ ଅଣାଏ ପଇସା ଚାନ୍ଦା ମାଗିବା ଅସମ୍ଭବ, କ'ଣ କରିବି ? ଚାନ୍ଦା ନ ଦେଲେ ଖେଳ ବନ୍ଦ । ମୋର ଜଣେ ସାଙ୍ଗ ନେତ୍ରାନନ୍ଦ ତ୍ରିପାଠୀ କହିଲା, ମୋତେ ସେ ପ୍ୟାରୀ ମୋହନ ଆଚାର୍ଯ୍ୟଙ୍କ ଛବିଟା ବିକି ଦେ, ମୁଁ ରାଜି ହେଲି । ଦାମ୍ ଛିଣ୍ଡିଲା, ଅଣାଏ ପଇସା । ମୁଁ ଛବିକୁ ଅଣାଏ ପଇସାରେ ବିକି football ଖେଳ ପାଇଁ club ରେ ଚାନ୍ଦା ଦେଲି । ନେତ୍ରାନନ୍ଦ ତ୍ରିପାଠୀ ପ୍ୟାରୀ ମୋହନ ଆଚାର୍ଯ୍ୟଙ୍କ ଛବିକୁ କାଚ ବନ୍ଧେଇ ବହୁତ ଦିନ ଯାଏ ତା'ର ବାହାର ଘରେ ଟାଙ୍ଗି ରଖିଥିଲା । ନେତ୍ରାନନ୍ଦର ଘର ହେଲା ମଙ୍ଗଳାବାଗର ତ୍ରିପାଠୀ ଗଳିରେ ।

Football ଖେଳରେ ମଧ୍ୟ ବେଶ୍ ଉନ୍ନତି ହେଲା । ପି.ଏମ୍.ଏକାଡ଼େମୀର 'B' teamରେ ଖେଳିବାର ସୁବିଧା ପାଇଲି । ଅନେକ ସାଙ୍ଗ ପିଲା କହିଲେ, ତୁ ତ ଭଲ ଖେଳିଲୁଣି ଆର ବର୍ଷକୁ 'A' teamରେ ଖେଳିବୁ । ଚାରିଟା ବେଳକୁ ଦିନେ ଦିନେ medical team ର କାହାରି ସହିତରେ ମ୍ୟାଚ୍ ଥିଲେ ଆମର ଖେଳ ବନ୍ଦ କରି ବସି ଖେଳ ଦେଖୁ । ପୁଣି .ଯେବେ Medical School ର sports ହୁଏ, ତାକୁ ମଧ ଦେଖୁ । ପିଲାବେଳୁ Medical School ର football ଖେଳ ଆଉ sports ଦେଖି ଖେଳ ଆଉ sports ପ୍ରତି ମୋର ବିଶେଷ ଆଗ୍ରହ ଜନ୍ମିଲା । ଛବି ଅଙ୍କା ମଧ ଚାଲିଥାଏ । ଛବି ଅଙ୍କା, football ଖେଳ ଆଉ sports ରେ ଏତେ ମାତିଗଲି ଯେ ଆଉ ପାଠ ପଢ଼ାରେ ମନ ଲାଗିଲା ନାହିଁ । ଛବି ଅଙ୍କା ଦେଖିଲେ ମା ବେଳେ ବେଳେ ଭାରି ବିରକ୍ତ ହୁଅନ୍ତି, ଗାଳି ମଧ ଦିଅନ୍ତି ।

ଦିନକର ଘଟଣା ମନେ ଅଛି । ସାରା ଦି'ପହର ଗୋଟାଏ ମଶିଣା ଉପରେ ବସି ଗୋଟାଏ କ'ଣ ଚିତ୍ର କରୁଥିଲି, ପାଖରେ ପାଣି ଗିଲାସ, ରଙ୍ଗ ବାକ୍ସ, ତୂଳି, ଚିତ୍ର ସବୁ ଥୁଆ ହେଇଛି । ମା ଦି'ପହରେ ଶୋଇ ଉଠି ଦେଖିଲେ, ମୁଁ ଛବି ଆଙ୍କୁଛି । ମା' ରାଗି ଯାଇ ମୋ ମଶିଣାର ଗୋଟାଏ ପାଖରୁ ଘୋଷାରି ଦେଲେ ଯେ ମୁଁ, ଚିତ୍ର, ରଙ୍ଗ ବାକ୍ସ, ପାଣି ଗିଲାସ ସବୁ ଏକାଠି ହେଇଗଲୁ । ପାଣି ଢ଼ାଳି ଚିତ୍ର, ରଙ୍ଗ, ତୂଳି ଇତ୍ୟାଦି ସବୁ ଭିଜିଗଲା । ମା' ଗାଳି ଦେଲେ । ପାଠ ପଢ଼ା ଛାଡ଼ି ଦି'ପହର ସାରା ବସି ଛବି ଅଙ୍କା ହଉଛି ।

ଛବି ଅଙ୍କା, football ଖେଳ ସାଙ୍ଗକୁ ପୁଣି ସାହିତ୍ୟ ଚର୍ଚ୍ଚାରେ ମନ ଲାଗିଗଲା । ଆଗରୁ କହିଛି ପାଠ ଭିତରେ ଓଡ଼ିଆ ସାହିତ୍ୟଟି ମୋତେ ଭଲ ଲାଗେ । ତା'ର କାରଣ ହଉଛି, ମୁଁ ତ ଘରୋଇ ଭାବରେ ବଙ୍ଗଳା ପଢ଼ିବାକୁ ଶିଖି ଯାଇଥିଲି । ବଙ୍ଗଳା ରାମାୟଣ, ମହାଭାରତ, କବିକଙ୍କଣ ଚଣ୍ଡୀ ସବୁ ପଢ଼ିଥିଲି । ଥରେ ଗୋଟାଏ ପେଟରା ଭିତରୁ ପାଇଲି କାଳିଦାସଙ୍କ "ରଘୁବଂଶ" କାବ୍ୟର ବଙ୍ଗଳା ଅନୁବାଦ ବହି । ତାକୁ ପଢ଼ି ମୁଁ ଆତ୍ମହରା ହେଇ

ପଢ଼ିଲି । ତା'ପରେ ଗୋଟାଏ ବଙ୍ଗଳା ଉପନ୍ୟାସ ପାଇଲି, "ଜୀବନତାରା" । ବହୁ ପୁରାତନ ଲେଖା । ପୁଣି ସ୍କୁଲରେ "ରାଧାନାଥ ଗ୍ରନ୍ଥାବଳୀ" ପଢ଼ା ଆରମ୍ଭ ହେଲା ।

ସେତେବେଳେ ପି.ଏମ୍.ଏକାଡ଼େମୀରେ ଗଦାଧର ରଥଶର୍ମା ନାମରେ ଜଣେ ପଣ୍ଡିତ ଥିଲେ । ସେ ଆମକୁ ରାଧାନାଥ ଗ୍ରନ୍ଥାବଳୀରୁ "ତୁଳସୀ ସ୍ତବକ", "ଚିଲିକା", "ଦରବାର" ଇତ୍ୟାଦି ପଢ଼ଉଥିଲେ । କି ଚମତ୍କାର ତାଙ୍କର ପଢ଼େଇବା ! ମୁଁ ତ ଟିକିଏ ଅନ୍ୟମନସ୍କ ହେଇ ପାରେନା । ସେ ପୁଣି ଆମର ଡ୍ରଇଂ ନଉଥିଲେ । ମୋର ଓଡ଼ିଆ ସାହିତ୍ୟ ଭଲ ହୁଏ ପୁଣି ଭଲ ଡ୍ରଇଂ କରେ । ଏଣୁ ମୁଁ ତାଙ୍କ ହାତରେ ବେଶି ନମ୍ବର ରଖୁଥିଲି ଏବଂ ତାଙ୍କର ପ୍ରିୟ ଛାତ୍ର ମଧ୍ୟ ହୋଇଥିଲି । ଓଡ଼ିଆ ସାହିତ୍ୟ ପରୀକ୍ଷାରେ ପ୍ରବନ୍ଧ ଲେଖିଲା ବେଳେ କୌଣସି କବିଙ୍କର ଉକ୍ତି ଦବାକୁ ଯାଇ ମିଛରେ ମନରୁ ଦି'ଧାଡ଼ି କବିତା ଲେଖି ଦିଏ । କେଉଁ କବି କହିଛନ୍ତି ତାଙ୍କର ଆଉ ନାଁ ଲେଖେ ନାହିଁ, ଖାଲି ଲେଖେ କବି କହିଛନ୍ତି ।

ରାଧାନାଥ ଗ୍ରନ୍ଥାବଳୀ ସାଙ୍ଗକୁ ପୁଣି ମଧୁ ରାଓଙ୍କ "ବସନ୍ତ ଗାଥା" ଗଦାଧର ରଥଶର୍ମା ପଢ଼େଇଲେ । ମୁଁ ତ ସେ କବିତା ସବୁ ପଢ଼ି ତନ୍ମୟ ହେଇଗଲି ଆଉ କୌଣସି ବିଷୟ ପଢ଼ିବାକୁ ମନ ହେଲା ନାହିଁ । ସବୁବେଳେ ରାଧାନାଥ ଗ୍ରନ୍ଥାବଳି ପଢ଼ିବାକୁ ଭଲ ଲାଗିଲା । ବାବାଙ୍କଠୁ ଅନେକବାର ଗାଳି ଶୁଣିଛି, ଆଉ କିଛି ପଢ଼ା ହଉନି ସବୁବେଳେ ରାଧାନାଥ ଗ୍ରନ୍ଥାବଳି ପଢ଼ା ହଉଛି, ଖାଲି ରାଧାନାଥ ଗ୍ରନ୍ଥାବଳି ପଢ଼ିଲେ କ'ଣ ମ୍ୟାଟ୍ରିକ୍ ପାସ୍ କରିଯିବୁ ? ରାଧାନାଥ ଗ୍ରନ୍ଥାବଳି ଶେଷରେ ଲୁଚି ଲୁଚି ପଢ଼ିଲି, ବାବା ଯେମିତି ନ ଦେଖିବେ ।

ଛବି ଅଙ୍କା, football ଖେଳ, ସାହିତ୍ୟ ଚର୍ଚ୍ଚାରେ ଏତେ ମନ ଲାଗିଗଲା ଯେ ପାଠ ପଢ଼ା ପ୍ରତି ଆଉ ଆଗ୍ରହ ରହିଲା ନାହିଁ । ବାବା ମଧ୍ୟ ତାଙ୍କର ଚାକିରୀରେ ଗୋରା ହାକିମ ସହିତରେ ମନାନ୍ତର ହବା ଯୋଗୁଁ ସବୁବେଳେ ଚିନ୍ତିତ ରହିଲେ, କ'ଣ କରିବେ ? କ'ଣ କଲେ ଭଲ ହବ ? ଗୋରା ହାକିମ କାଳେ ତାଙ୍କର ଚାକିରୀ ଖାଇଦବ ।

ବାବାଙ୍କର ମଧ୍ୟ ଚାକିରୀ ଆଉ ଅଳ୍ପ କେତେ ବର୍ଷ ଥିଲା । ପ୍ରାୟ ସରିବା ଉପରେ । ଆଉ ଯାହା ଦୁଇ, ତିନି ବର୍ଷ ଅଧିକା ଚାକିରୀ କରିଥାନ୍ତେ । ଆଉ ଅଧିକା ଚାକିରୀ କରିବା ଆଶା ନ ରଖି ବାବା ଚାକିରୀ ଛାଡି ପେନ୍‌ସନ୍ ନବାକୁ ସ୍ଥିର କଲେ । ବାବା ମଧ୍ୟ ଏତେ ବେଳକୁ ଋଣଗ୍ରସ୍ତ ହେଇ ପଡ଼ିଥାନ୍ତି । ନିଜର ପରିବାରର ଖର୍ଚ୍ଚ ଯେ ଇମିତି କିଛି ବେଶି ଥିଲା, ତା ନୁହେଁ । କେବଳ ଅତିଥିସତ୍କାର କରି ଆଉ ନିଜର ଅମିତବ୍ୟୟିତା ଯୋଗୁଁ । ବାବା ଯାହା ଅମିତବ୍ୟୟୀ ଥିଲେ ମା' ତାଙ୍କଠୁ ବେଶି ଥିଲେ । ଯେଉଁଠି ପାଞ୍ଚ ଟଙ୍କା ଖର୍ଚ୍ଚ ହବାର କଥା ମା' ସେଠି ଦଶ ଟଙ୍କା ବ୍ୟୟର ବ୍ୟବସ୍ଥା କରି ବସୁଥିଲେ । ବାବା, ମା ଉଭୟେ ଅମିତବ୍ୟୟୀ ଥିଲେ ମଧ୍ୟ ଋଣଗ୍ରସ୍ତ ହବାର ବେଶି କାରଣ ହେଲା, ଅତିଥିସତ୍କାର ।

ଆଗରୁ କହିଛି ଆମର ଥୋରିଆ ସାହି ବସାରେ କେତେବେଳେ ହେଲେ କୁଣିଆ ଛାଡ଼ ନଥିଲା । କୁଣିଆ ଆସୁଛନ୍ତି, ଯାଉଛନ୍ତି, ଖାଉଛନ୍ତି, ରହୁଛନ୍ତି । କିଏ କେତେଦିନ ରହିଲାଣି ତା'ର କିଛି ଠିକ୍ ଠିକଣା ନାହିଁ । ପାଠ ପଢ଼ିବା ପାଇଁ, କଚେରୀରେ ମାଲିମକଦ୍ଦମା ପାଇଁ, ପରୀକ୍ଷା ଦବା ପାଇଁ ଆଉ ଇମିତି ଖୁସିରେ ବନ୍ଧୁ ବାନ୍ଧବମାନେ ଆସି ଦେଖି ଯିବା ପାଇଁ । ଇମିତି କେତେ ରକମର କୁଣିଆ ପୁଣି ଜଣେ ଦି'ଜଣ ନୁହେଁ । ସକୁଟୁମ୍ବ, ଚାକର, ବିଲେଇ, କୁକୁର ସାଙ୍ଗରେ ନେଇ ଆସି ପହଁଚିଲେଣି । ଆମର ଜଣେ ବନ୍ଧୁ ଥରେ ଧରା ପଡ଼ିଥିଲେ । ସେ ସରକାରୀ ଚାକିରିରେ କେତେ ମାସ ଛୁଟି ନେଇଥାନ୍ତି । ସେ ତାଙ୍କର କୁଟୁମ୍ବ ନେଇ ଆମ ଘରେ ଆସି ରହିଲେ । କାରଣ ତାଙ୍କର ଇଚ୍ଛା କଟକରେ ରହିବେ, ତାଙ୍କ ଗାଁକୁ ଯିବେ ନାହିଁ । ବାବାଙ୍କୁ କହିଥିଲେ, ତାଙ୍କର ଦରମା ମିଳୁ ନାହିଁ । ବାବା ପ୍ରକୃତ ବିଶ୍ୱାସ କରିଗଲେ ଯେ ତାଙ୍କର ଦରମା ମିଳୁ ନାହିଁ । ଦିନେ ସେ କୁଆଡ଼େ ବଜାରେ ବୁଲିବାକୁ ଯାଇଛନ୍ତି, ଏଇ ସମୟରେ ପୋଷ୍ଟପିଅନ ତାଙ୍କ ନାଁରେ ଆସିଥିବା money order ଆଣି ପହଁଚିଲା । ବାବା money order କୁପନରୁ ପଢ଼ି ବୁଝିଲେ ତାଙ୍କର ଦରମା ଆସିଛି । ବାବା ଆଶ୍ଚର୍ଯ୍ୟ ହେଲେ, ଏ ଦରମା ପାଉଛନ୍ତି,

ମୋତେ କେମିତି ମିଛ କହୁଛନ୍ତି ଯେ ବିନା ଦରମାରେ ଛୁଟିରେ ଅଛନ୍ତି । ଭଦ୍ରଲୋକ କ'ଣ କରନ୍ତି, ବଜାରେ ବୁଲିବାକୁ ଯାଇ ପ୍ରତ୍ୟେକ ମାସରେ ସିଆଡ଼େ ବକ୍ସିବଜାର ପୋଷ୍ଟ ଅଫିସ୍‌ରୁ ଦରମା ଘେନି ଆଣନ୍ତି । ଦୈବାତ୍ ସେଦିନ ସେ ଭଦ୍ରଲୋକ ବଜାରକୁ ଯାଇଛନ୍ତି ଏହି ସମୟରେ ପୋଷ୍ଟ ପିଅନ money order ନେଇ ଆସି ପହଁଚିବାରୁ ଜଣାପଡ଼ିଲା ସେ ଦରମା ପାଉଛନ୍ତି । ବାବା ଏକଥା ଜାଣି ସୁଦ୍ଧା ତାଙ୍କୁ କିଛି କହିଲେ ନାହିଁ ।

ଅନେକ କୁଣିଆ ଆସନ୍ତି । ତାଙ୍କର ଯା'ର ଯାହା ଖାଇବାକୁ ମନ ଡ଼ାକେ, ସେ ଆମରି ବସାରେ ରହି ବରାଦ କରନ୍ତି, ତାଙ୍କ ପାଇଁ ସବୁ କରିଦିଆ ହୁଏ । ସେମାନେ ଖାଇ ପ୍ରଶଂସା କରି ସନ୍ତୁଷ୍ଟ ହେଇ ଯାନ୍ତି । ମୋଟାମୋଟି କହିବାକୁ ଗଲେ, ଆମର ଥୋରିଆ ସାହି ବସା ଗୋଟାଏ ଧର୍ମଶାଳା ପରି ହେଇଥିଲା । ବାବା ଯେତେବେଳେ ଋଣଗ୍ରସ୍ତ ହେଲେ, ଚାକିରୀରେ ଗଣ୍ଡଗୋଳ ଆରମ୍ଭ ହେଲା, ସେହି ସମୟରେ ବାବାଙ୍କର ଚାକିରୀରୁ ଅବସର ନବା ସ୍ଥିର ହେଲା । ମୁଁ ସେତେବେଳେ ୧୦ମ ଶ୍ରେଣୀରେ ପଢୁଥାଏ ।

ଗୋଟାଏ ଘଟଣା ମୋର ମନେ ପଡୁଛି, ଚାକର ଥିଲେ ମଧ୍ୟ, ମା ମୋତେ ବାଧ୍ୟ କରି ବଜାରକୁ ପଠେଇବେ । ବଜାର ସଉଦା କରିବା ପାଇଁ, ବକ୍ସିବଜାର ମାର୍କେଟ, ମାଛୁଆ ବଜାର ନଚେତ୍ ମଙ୍ଗଳାବାଗକୁ । ବାବା ଏଥିରେ ମଧ୍ୟ ବାଧା ଦିଅନ୍ତି ନାହିଁ । ମୋତେ କ'ଣ training ଦିଆ ହଉଥାଏ, ମୁଁ କେମିତି ବଜାର ସଉଦା କରିବାକୁ ଶିଖିବି । ପ୍ରକୃତ ମୁଁ ସେ ପର୍ଯ୍ୟନ୍ତ ବଜାର ସଉଦା କରି ଜାଣି ନଥାଏ । ପାଠ ପଢ଼ାରେ ସେତେ ମନ ଲାଗେ ନାହିଁ । ତଥାପି ଯେତିକି ସମୟ ପଢ଼ିବାକୁ ବସିବି, ସେହି ସମୟରେ ମା' ମୋତେ ତଡ଼ି ଘରୁ ବାହାର କରିଦେବେ ବଜାର ସଉଦା କରି ଆଣି ଦବା ପାଇଁ । ଦିନ ବେଳା ହେଲେ, ପ୍ରକାରେ ଭଲ ଲାଗେ, ରାତିବେଳା ଯେତେ ବିପଦ । ମୋର ମନେ ଅଛି ଅନ୍ଧାର ରାତି, ବାହାରେ ବର୍ଷା ହଉଥିବ, ବିଜୁଳି ମାରୁଥିବ, ମୋତେ ଖଣ୍ଡେ ଛତା, ପଇସା ଆଉ ଗୋଟାଏ ଜାଗା ଦେଇ ଘରୁ ବାହାର କରିଦେବେ, ନାହିଁ କରିବାର ଉପାୟ ନାହିଁ । କଲେ ମାଡ । ଭୟରେ ଅନିଚ୍ଛା ସତ୍ତ୍ୱେ ଘରୁ ବାହାରି ଯାଏ ମଙ୍ଗଳାବାଗ ଆଡ଼େ କିମ୍ବା ମାଛୁଆ ବଜାର ଆଡ଼େ । ସେତେବେଳେ ତ କଟକ ସହରର ରାସ୍ତାରେ ବିଜୁଳି ଆଲୁଅ ନଥିଲା । ମ୍ୟୁନିସପାଲିଟି ତରଫରୁ ଯେଉଁ କିରୋସିନି ଆଲୁଅ ଜଳେ ସେ ଏ ଝଡ଼ି ବର୍ଷାରେ ରାତିରେ ସଞ୍ଜ ପରେ ପରେ ଲିଭି ସାରିଥାଏ । ଏଣୁ ଘିଟିଘିଟିଆ ଅନ୍ଧାରରେ ଯିବାକୁ ହୁଏ । ସେତେବେଳେ ପୁଣି ଟର୍ଚ୍ଚର ଆଜିକାଲି ପରି ବ୍ୟବହାର ନଥିଲା । ତଥାପି ଲଣ୍ଠଣ କ'ଣ ନଥିଲା ? ନା, ମୋତେ ଆଲୁଅ ଦିଆ ହବ ନାହିଁ । ସେମିତି ଅନ୍ଧାରରେ ଯିବାକୁ ହବ, ଚାକର, ପୂଜାରୀ ଯିବେ ନାହିଁ । ମୋତେ ହିଁ ଯିବାକୁ ହବ । ବିଜୁଳି କଢ଼ାଇଲା ବାଟ ପରି, ସତକୁ ସତ ଅନ୍ଧାରେ ଯାଉ ଯାଉ ଯେତେବେଳେ ବିଜୁଳି ମାରେ, ସେତିକିବେଳେ ମୁଁ ବାଟ ଦେଖିପାରେ । ଥରେ ଅନ୍ଧାରରେ ଯାଉଛି ଥୋରିଆ ସାହିରୁ ବଣିଆ ସାହି ଆଡ଼େ ଯିବାକୁ ଯେଉଁ ମୋଡ଼ ଅଛି, ସେଠି ଗୋଟାଏ ବଡ଼ ଝଙ୍କା ବରଗଛ ଥିଲା । ସେଥିରୁ ପାଣି ଟପ ଟପ ପଡୁଛି । ସେଇଠି ହେଲା ବେଳକୁ ଦୈବାତ୍ ବିଜୁଳିଟାଏ ସେତିକିବେଳେ ମାରିଦେଲା । ମୁଁ ସେଇ ବିଜୁଳି ଆଲୁଅରେ ଦେଖି ପାରିଲି, ମୋ ସାମନାରେ ଗୋଟାଏ ଦଳୁଆ ଘୋଡ଼ାଟାଏ, ପାଖେଇ ଗଲି ନଚେତ୍ ସେ ଘୋଡ଼ା ମୋତେ ମାଡ଼ି ପକେଇଥାନ୍ତା । ଆଉ ଥରେ ସେମିତି ଯାଉ ଯାଉ ଗୋଟାଏ କୂଅରେ ପଡ଼ିଥାନ୍ତି । ସେଇ ବିଜୁଳି ଆଲୁଅରେ ରକ୍ଷା ପାଇଗଲି ।

ସେତେବେଳେ ବକ୍ସିବଜାର, ମାଛୁଆ ବଜାର କିମ୍ବା ମଙ୍ଗଳାବାଗର ଯେତେ ଦୋକାନପାଟ ବର୍ଷା ରାତିରେ ସଞ୍ଜର ଅଳ୍ପ ସମୟ ପରେ ବନ୍ଦ । ଆଜିକାଲି ପରି ତ ଏତେ ଦୋକାନ ନଥିଲା କି ଏତେ ବିଜୁଳି ଆଲୁଅର ଆଡ଼ମ୍ବର ନଥିଲା । କାଁ ଭାଁ କେଉଁଠି ପେଟ୍ରୋମାକ୍ସ କିମ୍ବା କିରୋସିନି ଆଲୁଅ ଜଳେ । ବର୍ଷା ରାତିରେ ମଙ୍ଗଳାବାଗ, ମାଛୁଆ ବଜାର ଏସବୁ ଶୂନଶାନ ।

ମୁଁ କୌଣସି ପ୍ରକାରେ ସଉଦା ନେଇ ଘରକୁ ଫେରେ । ଅନ୍ଧାର ରାତିରେ ବାଟରେ ଗଲାବେଳେ ମୋର

ଯେ କ'ଣ ଅସୁବିଧା ହଉଛି, ସେ କଥା କହିବାକୁ ଭୟ, କହିଲେ ମୋ କଥାକୁ କେହି ବିଶ୍ୱାସ କରନ୍ତି ନାହିଁ। କାରଣ ଗାଲୁ ଗପ କରେ ବୋଲି ଆଗରୁ ଖ୍ୟାତି ଅର୍ଜନ କରିଥାଏ। ଯେତେ ଯାହା ହଉ, ରାତି ହଉ, ଦିନ ହଉ ଯେତେବେଳେ ବଜାର ସଉଦା କରିବାକୁ କହିବେ, ଯିବାକୁ ହବ। ନାହିଁ କଲେ ମାଡ଼, ଗାଳି। ଅନ୍ଧାର ରାତିରେ ବଜାର ସଉଦା କରି ଫେରିଲି, ଯଦି ଗୋଟାଏ ସଉଦା ଭୁଲି ଆସିଲି, ପୁଣି ଯା। ଭୁଲିବା ତ ସ୍ୱାଭାବିକ କାରଣ ସ୍ମୃତି ଶକ୍ତି ଏତେ ମୋଟା ଯେ କୁରାଢ଼ିରେ ହାଣିଲେ ଛିଣ୍ଡିବାର ନୁହଁ। ଦିନେ ଦିନେ ସନ୍ଧ୍ୟା ବେଳୁ ବରାଦ ହୁଏ ବକ୍ସିବଜାରରୁ ସଉଦା ଆଣିବା ପାଇଁ। ସନ୍ଧ୍ୟା ପୂର୍ବରୁ ତ ମେଡ଼ିକାଲ୍ ପଡ଼ିଆରେ ଖେଳି ଖେଳି ଅବସ ହେଇ ଆସିଥାଏ। ତା'ପରେ ପୁଣି ବକ୍ସିବଜାରରୁ ସଉଦା ଆଣିବାକୁ ଦଉଡ଼େ। ସେ ସଉଦା ଭିତରେ ପନିପରିବା ଇତ୍ୟାଦି ତ କିଣି ବୋହି ଆଣିବାକୁ ହୁଏ। ତା'ଛଡ଼ା ଯଦି ଗୋରୁଙ୍କର ନଡ଼ା ନଥିବ, ନଡ଼ା ମଧ୍ୟ କିଣି ବୋହି ଆଣିବାକୁ ହୁଏ, ବକ୍ସିବଜାରରୁ ସଉଦା କରି ପଢ଼ିବାକୁ ବସିବା ବେଳକୁ ଆସିଲା ନିଦ। ଆଉ ପାଠପଢ଼ା ହଉଛି କାହିଁ? ସେଥିରେ ପୁଣି ଆଉ ଘରୋଇ ମାଷ୍ଟର କେହି ପଢ଼େଇବାକୁ ନାହାନ୍ତି। ଯା ପଢ଼େ, ମନକୁ ମନ ପଢ଼େ। ଖାଲି ବହି ଖୋଲି ବସିବା କଥା। ସମସ୍ତେ ଜାଣିବେ, ମୁଁ ପଢୁଛି, ସେଥିରେ ପୁଣି ସ୍କୁଲ ଲାଇବ୍ରେରୀରୁ ଛୋଟ ଛୋଟ ବଙ୍ଗଳା ଗପ ବହି, ଜୀବନୀ, ଭ୍ରମଣ ବୃତ୍ତାନ୍ତ ଆଣି ପଢ଼ିବାକୁ ଭଲ ଲାଗିଲା। ଏଣେ ଘରେ ରଘୁବଂଶର ବଙ୍ଗଳା ଅନୁବାଦ, ରାଧାନାଥ ଗ୍ରନ୍ଥାବଳି ପଢ଼ିବା ଦ୍ୱାରା ସେହି ୧୦ମ ଶ୍ରେଣୀରେ ପଢ଼ିବା ବେଳେ ମନ ଡ଼ାକିଲା ମୁଁ ଓଡିଆରେ ଲେଖିବି। ଏଣୁ ମୁଁ ପ୍ରଥମେ ଲେଖିଲି ଗୋଟିଏ ଗପ ଓଡ଼ିଆରେ ତା'ର ନାମ ମାଳତୀ। ଜଣକ ଘରର ଗୋଟିଏ ଦାସୀକୁ କେନ୍ଦ୍ର କରି 'ମାଳତୀ' ମୋର ପ୍ରଥମ ଲେଖା ଗଳ୍ପ।

"ମାଳତୀ" ଗଳ୍ପ ଯେଉଁଦିନ ପ୍ରଥମେ ଲେଖିଲି, ସେଦିନ ମନରେ କି ଆନନ୍ଦ! ସେ ଗଳ୍ପକୁ ନେଇ ମୋର ସହପାଠୀମାନଙ୍କୁ ଦେଖେଇଥିଲି। ତା'ପରେ ସେ ଗଳ୍ପ କୁଆଡ଼େ ହଜିଲା ମୋର ଆଉ ମନେ ନାହିଁ। ତା'ପରେ କେତେକ ଇଂରାଜୀ ଲେଖାକୁ ଓଡ଼ିଆରେ ଅନୁବାଦ କରିବାକୁ ଚେଷ୍ଟା କରିଥିଲି। କେତେକ ଅନୁବାଦ କଲି, ତା'ପରେ ଗୋଟିଏ କବିତା ଲେଖିଲି। ନାମ, ଅନ୍ନପୂର୍ଣ୍ଣା। ସେ କବିତାକୁ ସେମିତି କେତେଜଣ ସହପାଠୀଙ୍କୁ ପଢ଼େଇଲି। ତା'ପରେ ସେ କବିତା କୁଆଡ଼େ ଗଲା। ଇମିତି କିଛି ଲେଖି, ଲେଖା ହଜିଲେ ମଧ୍ୟ ଲେଖିବାକୁ ଆଗ୍ରହ ଜନ୍ମିଲା। "ଦୁର୍ଯ୍ୟୋଧନ"ଙ୍କ ବିଷୟରେ ଗୁରାଏ ଗଦ୍ୟରେ ଲେଖିଲି। ଏ ଲେଖା ବଙ୍ଗଳାରେ ଲେଖିଥିଲି। ତାକୁ ସେମିତି ଗୁରାଏ ଲେଖି ଛାଡ଼ି ଦେଲି।

ଏ ଲେଖା ଲେଖି ସାଙ୍ଗକୁ ଚାଲିଥାଏ football ଖେଳ। ଲୁଚି ଛପି ଖେଳୁଥିଲି। ଦିନେ ଖେଳରେ ଡ଼ାଁଆଣ ଗୋଡ଼ର ଆଙ୍ଗୁଳି ତିନିଟା ଜଖମ କରି ଆସିଲି। ଆଉ ଯାଏ କୁଆଡ଼େ? ଭଲ କରି ଚାଲି ପାରିଲି ନାହିଁ। ଗୋଡ଼ ଫୁଲି ଭୀଷଣ ଦରଜ ହେଇଗଲା। ବାବା, ମା ଯେ ବିରକ୍ତ ହଉଥିଲେ, ସାବଧାନ କରଉଥିଲେ, football ଖେଳିଲେ ଗୋଡ଼ହାତ ଭାଙ୍ଗିବୁ। ମୁଁ ତ ନ ମାନି ଲୁଚି ଖେଳୁଥିଲି। ଆଜି ତ ଗୋଡ଼ ଜଖମ କରି ଆସିଲି, ତା'ଅର୍ଥ ଆଜି ଧରାପଡ଼ିଲି। ଘରକୁ ଛୋଟେଇ ଛୋଟେଇ ଆସି ଚୋର ପରି ଖଟ ଉପରେ ଶୋଇ ପଡ଼ିଲି। ଯୋଉ ଯନ୍ତ୍ରଣା। ମୋର ଯେ କି କଷ୍ଟ। ସେଥିପ୍ରତି କାହାରି ସହାନୁଭୂତି ନାହିଁ। ସମସ୍ତଙ୍କର ବିରକ୍ତି ଭାବ। ମା' ତ ମୋର ଏ ଅବସ୍ଥା ଦେଖି ଯେମିତି ଗୋଟାଏ ଶୀକାର ପାଇଗଲେ ଗାଳି ଦବାକୁ। କେତେ ପ୍ରକାର ଗାଳି, ଭର୍ତ୍ସନା, ପରିହାସ, ଯାଇଥିଲେ ରୋଜଗାର କରିବାକୁ ଆଇଲେ ଖଟ ଉପରେ ଶୋଇ ପଡ଼ିଲେ, ଗୋଡ଼ ଗୋଟାଏ ଛିଣ୍ଡି ଯାଇଥାନ୍ତା କି ଭଲ ହେଇଥାନ୍ତା। ମୋ ମୁହଁଟା କୁଆଡ଼େ ହନୁମାଙ୍କଡ଼ ସହିତରେ ତୁଳନୀୟ ଇତ୍ୟାଦି ଇତ୍ୟାଦି।

ମୁଁ ତ ଯନ୍ତ୍ରଣାରେ ଆକୁଳ ହଉଥାଏ, ଖଟରୁ ଓଲେହିବା କଷ୍ଟ। ଯା ହଉ ଖାଇଲା ବେଳକୁ ମା ଆଣି ଭାତ ଥାଳିଟା ଖଟ ପାଖରେ ଥୋଇ ମୋତେ ରାଗରେ ଡ଼କା ଦେଲା, ଆ ଗିଳିବୁ ଆ। ମୁଁ ଟିକିଏ ସୁବିଧାରେ ଖଟରୁ ଓଲେହିଲେ ତ ଖାଇବି। ଗୋଡ଼ ତ ତଳେ ଛୁଇଁ ହଉ ନଥାଏ। ଏତେ ଦୁଃଖରେ, ମୁଁ ଖଟରୁ ଆସ୍ତେ ଓଲହୁ

ଓଳହୁ ମୋତେ ଖଟରୁ ଜୋରରେ ଘୋଷାରି ନିଆ ହେଲା ଭାତ ଥାଳି ପାଖକୁ । ମୁଁ ତ ଯନ୍ତ୍ରଣାରେ ମରେ ।

ଛବି ଅଙ୍କା, football ଖେଳ, ଲେଖାଲେଖି ଇତ୍ୟାଦିରେ ବିଶେଷ ଆଗ୍ରହ ଜନ୍ମିବା ଦ୍ୱାରା ଆଉ ପାଠ ପଢ଼ାରେ ଆଦୌ ମନ ଲାଗିଲା ନାହିଁ । ଏଣୁ ସେ ବର୍ଷ ୧୦ମ ଶ୍ରେଣୀରେ ଫେଲ୍ ହେଲି । ୧୦ମ ଶ୍ରେଣୀକୁ ପ୍ରମୋସନ୍ ପାଇ ଫେଲ୍ ହେଇଛି ବୋଲି ମିଛରେ ରହସ୍ୟ ସୃଷ୍ଟି କରିବା ପାଇଁ ଯେମିତି ମୁହଁକୁ ଶୁଖେଇ ମା'ଙ୍କ ଆଗରେ ଆସି ଠିଆ ହେଉଥିଲି । ଏଥର ସ୍କୁଲରୁ ଫେଲ୍ ଖବର ନେଇ ମା'ଙ୍କ ଆଗରେ ସତରେ ସେମିତି ଆସି ଠିଆ ହେଲି ମା ବିଶ୍ୱାସ କଲେ ନାହିଁ ଯେ ମୁଁ ସତରେ ଫେଲ୍ ହେଇଛି । ଏଥର ମା'ଙ୍କୁ ସତରେ କହିଲି ଯେ ମୁଁ ଫେଲ୍ ହେଇଛି । ମା ପ୍ରକୃତ ବୁଝି ପାରିଲେ ମୁଁ ଫେଲ୍ ହେଇଛି । ତା'ପରେ ପୂର୍ବାପର ସମ୍ବନ୍ଧ ନେଇ ଗାଳି ଆରମ୍ଭ ହେଲା । କେତେଗୁଡ଼ିଏ କଟୁ ଶବ୍ଦ ସାହାଯ୍ୟରେ କୁହାଗଲା, ଛବି ଆଙ୍କିବୁ, ଫୁଟବଲ୍ ଖେଳିବୁ । ସବୁବେଳେ ରାଧାନାଥ ଗ୍ରନ୍ଥାବଳି ପଢ଼ିବୁ । ତୁ'ଟା କୁଆଡୁ ପ୍ରମୋସନ୍ ପାଇବୁ ? ଆହୁରି ଅନେକ ରକମର ଗାଳି । ମୁଁ ତ ଚୋରଟା ପରି ଚୁପ୍ ହେଇ ବସିଥାଏ । ଯେ ଆଇଲା ପଦେ, ବାବାଙ୍କଠାରୁ ଆରମ୍ଭ କରି ଚାକର, ପୂଜାରୀ ପର୍ଯ୍ୟନ୍ତ । ସେଦିନ ଚାରିଟା ବେଳେ ମେଡ଼ିକାଲ ପଡ଼ିଆକୁ ଆଉ ଖେଳିବାକୁ ଗଲି ନାହିଁ । ବାବା ଅଫିସ୍‌ରୁ ଫେରି ଶୁଣିଲେ ମୁଁ ଫେଲ୍ ହେଇଛି । ବାବା ସେତେବେଳେ କିଛି କହିଲେ ନାହିଁ ଚୁପ୍ ହେଇ ରହିଲେ । ବାବାଙ୍କର ସେତେବେଳେ ଚାକିରୀରେ ଅସ୍ଥିର ଅବସ୍ଥା ଏଣେ ମୁଁ ପୁଣି କ୍ଲାସ୍ ପ୍ରମୋସନ୍ ପାଇଲି ନାହିଁ । ଏଣୁ ମନ ଦୁଃଖରେ ବୋଧେ ଚୁପ୍ ହେଇ ରହିଲେ ।

ସେତେବେଳେ ବଡ଼ଦିନ ଛୁଟି ପୂର୍ବରୁ ପ୍ରମୋସନ୍ ଡ଼କା ହେଇ ସ୍କୁଲ ବନ୍ଦ ହଉଥିଲା । ବଡ଼ଦିନ ଛୁଟି ପରେ January ମାସରେ ପୁଣି ନାଁ ଲେଖା ହବା କଥା । ଏଣୁ ବଡ଼ଦିନ ଛୁଟି ଭିତରେ ମୋ ବିଷୟରେ ଖୁବ୍ ଗୋଟାଏ ଆଲୋଚନା ଚକ୍ର ବସିଲା । ଆଲୋଚନା ଚକ୍ରରେ ଯୋଗ ଦେଲେ ବାବା, ମା, ମୋର ଏକ ମାଉସୀଙ୍କ ପୋଷ୍ୟପୁତ୍ର । ସେ ସେତେବେଳେ ଦୈନିକ କାଳି ବଜାରରୁ ଆମ ବସାକୁ କେତେ ଘଣ୍ଟା ପାଇଁ ବୁଲିବାକୁ ଆସୁଥିଲେ । ସେ ମ୍ୟାଟ୍ରିକ ପାସ୍ କରି ସେତେବେଳେ I.A. ପଢୁଥିଲେ । ଏଣୁ ସେତେବେଳେ ସେ ଖୁବ୍ ଉଚ୍ଚଶିକ୍ଷିତ, ଭଲ ପିଲା ବୋଲି ଗଣ୍ୟ ହଉଥିଲେ । ପୁଣି ବଡ଼ଦିନ ଛୁଟିରେ ଗଦାଧର ମାଷ୍ଟ୍ରେ ଆସି କୁଆଡୁ ପହଁଚିଥାନ୍ତି । ସେ ମଧ୍ୟ ଏ ଆଲୋଚନା ଚକ୍ରରେ ଭାଗ ନେଲେ । ଆଲୋଚନାର ବିଷୟ ବସ୍ତୁ ହେଲା ମୁଁ ଆଉ ପଢ଼ିବି କି ନାହିଁ । ଏଇଠୁ ପାଠ ପଢ଼ା ବନ୍ଦ କରାଯିବ କି କ'ଣ ?

ବାବାଙ୍କର ଇଚ୍ଛା ଆଉ ମନ୍ତବ୍ୟ, ମୋ ଦ୍ୱାରା ପାଠ ପଢ଼ା ହବ ନାହିଁ । ମୋ ଦ୍ୱାରା କିଛି ହବ ନାହିଁ କେବଳ ଛବି ଅଙ୍କା ହବ । ମୁଁ କୁଆଡ଼େ "ନାଟୁ ସରକାର" ଭଳି ହେବି । (ସେତେବେଳେ କଟକରେ ନାଟୁ ସରକାରଙ୍କ ଭାରି ଖ୍ୟାତି । ସେ ଭଲ ଚିତ୍ର କରି ପାରୁଥିଲେ) ତାକୁ ଆଉ ପଢ଼େଇବା ଉଚିତ୍ ନୁହଁ । ମିଛରେ ଟଙ୍କାର ଅପବ୍ୟୟ ହବ । ମାଉସୀଙ୍କ ପୋଷ୍ୟ ପୁତ୍ର ମଧ୍ୟ ବାବାଙ୍କର କଥାକୁ ସମର୍ଥନ କରି କହିଲେ, ନାହିଁ ସେ ଆଉ ବେଶି ପଢ଼ି ପାରିବ ନାହିଁ । ତାକୁ ଆଉ ପଢ଼ାନ୍ତୁ ନାହିଁ ।

ଗଦାଧର ମାଷ୍ଟରଙ୍କର ମଧ୍ୟ ସେଇୟା ମତ । କେବଳ ମା କହିଲେ ନାହିଁ, ସେ ତ ଏଥର ଫେଲ୍ ହେଲା, ଯା ଆଗରୁ ତ ସେ କେଭେ ଫେଲ୍ ହେଇ ନାହିଁ ତାକୁ ପୁଣି ଥରେ ପଢ଼ାଅ । ବାବାଙ୍କର କିନ୍ତୁ ସେଇ ଏକ ମତ ଯେ ସେ ଆଉ ପଢ଼ିବ ନାହିଁ । କାହିଁକି ତାକୁ ମିଛରେ ପଢ଼େଇବି ? ଅଯଥା ଟଙ୍କା ଖର୍ଚ୍ଚ ହବା କଥା ।

ବଡ଼ ଭଉଣୀ ମଧ୍ୟ ଏ ଆଲୋଚନା ଚକ୍ରରେ ଭାଗ ନେଇଥିଲେ । ସେ ସେତେବେଳେ ଶାଶୁଘରୁ ଆସି ଆମ ଘରେ ଚାରିବର୍ଷ ହେଲା ରହିଥାନ୍ତି । ବଡ଼ ଭଉଣୀଙ୍କର ମତ, ମୁଁ ପଢ଼େ । ମୋର ପାଠ ପଢ଼ା ବନ୍ଦ କରିବା ଉଚିତ ନୁହେଁ । କିନ୍ତୁ ମୁହଁ ଖୋଲି କିଛି କହୁ ନଥାନ୍ତି । ଶେଷରେ ମୋତେ ସମସ୍ତେ ପଚାରିଲେ, ମୋର ମତ କ'ଣ ? ମୁଁ ଘର ଭିତରେ ଚୋରଟା ପରି ବସି ଏମାନଙ୍କର ଆଲୋଚନା ଶୁଣୁଥାଏ । ମୋର ବେଶି ରାଗ ହଉଥାଏ ମାଉସୀଙ୍କ

ପୋଷ୍ୟ ପୁତ୍ରଙ୍କ ଉପରେ। କାରଣ ସେ ବେଶି ମତ ଦଉଥାନ୍ତି, ମୋତେ ଆଉ ପଢ଼େଇବା ଉଚିତ୍ ନୁହଁ।

ମୁଁ ଘର ଭିତରେ ବସି ଭାବୁଥାଏ ଟଙ୍କା ଖର୍ଚ୍ଚ ହଉ ନାହିଁ? ମୋତେ ପଢ଼େଇବାରେ ଖାଲି ଟଙ୍କାର ଅପବ୍ୟୟ ହେଇ ଯିବ। ମୁଁ ତ କେଭେ ଫେଲ୍ ହେଇ ନଥିଲି ଏଇ ଥରକ ଫେଲ୍ ହେଇଛି। ଶେଷରେ ମୋତେ ପଚରା ହେଲା ତୋର କ'ଣ ଇଛା? ଆଉ ପଢ଼ିବୁ ନା ଏଇଠୁଁ ପଢ଼ା ଛାଡ଼ିବୁ? ମୁଁ ଚୋରଟା ପରି ଉତ୍ତର ଦେଲି ମୁଁ ପଢ଼ିବି। ବାବା ମୋର ଉତ୍ତର ଶୁଣି କହିଲେ ପଢ଼ିବୁ ନା football ଖେଳିବୁ? ସାଙ୍ଗସାଥୀ ନେଇ ବୁଲିବୁ, ତୁ ପାଠ ପଢ଼ିବୁ? ହଉ ପଢ଼, ଏଥର ଫେଲ୍ ହେଲେ ପାଠ ପଢ଼ା ବନ୍ଦ। ଯା ହଉ ଆଉ ବର୍ଷେ ୧୦ମ ଶ୍ରେଣୀରେ ପଢ଼ିବା ସ୍ଥିର ହେଲା।

ମାଉସୀ ପୁଅ ଭାଇର ମୋତେ ପଢ଼େଇବା ବିଷୟରେ ଅସମ୍ମତି ପ୍ରକାଶ ଯୋଗୁହିଁ ତାଙ୍କ ପ୍ରତି ମୋର ସେହି ଦିନଠୁଁ ଅଶ୍ରଦ୍ଧା ଜନ୍ମିଲା ଯେ ସେ ବଞ୍ଚିଥିବା ଯାଏ ତାଙ୍କ ସହିତରେ ମୋର ଆଉ ସଦ୍‌ଭାବ ନଥିଲା।

ସେ ବର୍ଷ ମୋର କ୍ଲାସ ପ୍ରମୋସନ୍ ନ ପାଇବା, ବାବାଙ୍କର ଚାକିରୀରେ ଗଣ୍ଡଗୋଳ ଯୋଗୁଁ ମନସ୍ତାପ ଏଣେ ଋଣ ଭାର ଯୋଗୁଁ ଅଶାନ୍ତି। ଏଣୁ ସବୁ ବର୍ଷ ବଡ଼ଦିନ ଛୁଟିଟା ଯେମିତି ଆନନ୍ଦରେ କଟେ, ସେ ବର୍ଷ ଆଉ ସେମିତି କଟିଲା ନାହିଁ। ସମସ୍ତଙ୍କର ବିମର୍ଷ ଅବସ୍ଥା।

ବଡ଼ଦିନ ଛୁଟି ସରିଲା। ମୁଁ ନୂଆ ବର୍ଷରେ ସେହି ପୁରୁଣା ୧୦ମ ଶ୍ରେଣୀରେ ଯାଇ ବସିଲି। ମୋର ତଳ କ୍ଲାସ ପିଲା ମୋର ସାଙ୍ଗ ଧଇଲେ। ଭାରି ସରମ ଲାଗୁଥାଏ। ମୋର ସାଙ୍ଗ ପିଲାଏ ୧୧ଶ ଶ୍ରେଣୀରେ ସେତେବେଳେ ମ୍ୟାଟ୍ରିକ ଫାଷ୍ଟ କ୍ଲାସ କୁହା ଯାଉଥିଲା, ଯାଇ ବସିଲେ। ତାଙ୍କୁ ମଧ ମୁହଁ ଦେଖେଇବାକୁ ସରମ ଲାଗୁଥାଏ। କ'ଣ କରିବି? କେତେଦିନ ପାଣି ଫୋଟକା ପରି ଭାସି ବୁଲିଲି। ପୁଣି ଫାଟି ଫାଟି ସେଇ ପାଣିରେ ମିଶିଗଲି, ମନସ୍ତାପ କମିଗଲା। ସରମ ଛାଡ଼ିଗଲା। ଏଥର ପାଠ ପଢ଼ାରେ ମନ ଦେଲି। ବଡ଼ ଭୟ ଲାଗୁଥାଏ। ପୁଣି ଯଦି ଫେଲ୍ ହୁଏ ଆଉ ବାବା ପଢ଼େଇବେ ନାହିଁ।

ପାଠ ପଢ଼ାରେ ଭାରି ମନ ଲାଗିଲା। ସବୁତ ପୁରୁଣା ବହି ବାକି କେତେ ଖଣ୍ଡ ନୂଆ ବହି ପଢ଼ିବାକୁ ହେଲା। ଯେତେବେଳେ ସମୟ ମିଳିଲା ପଢ଼ିଲି କିନ୍ତୁ ଏଣେ କାବ୍ୟ କବିତା ମଧ ଲୁଚି ଲୁଚି ପଢୁଥାଏ। Football ଖେଳ ମଧ ଲୁଚି ଛପି ଚାଲିଥାଏ। କିନ୍ତୁ ପାଠପଢ଼ା ପ୍ରତି ଭାରି ଆଗ୍ରହ ଜନ୍ମିଲା।

ସେତିକିବେଳେ ମ୍ୟାଟ୍ରିକ ପାଠ ସାଙ୍ଗକୁ S.L.C.(School Leaving Certificate) ପାଠର ପ୍ରବର୍ତ୍ତନ ହେଲା। ଜଣେ ପିଲା ଯେ ପାରିବ, ସେ ମ୍ୟାଟ୍ରିକ୍ ପରୀକ୍ଷା ଦେଇ ପାରିବ ପୁଣି S.L.C. ପରୀକ୍ଷା ମଧ ଦେଇ ପାରିବ। ସେ ମ୍ୟାଟ୍ରିକ ପରୀକ୍ଷାରେ ପାସ୍ କଲେ ସେ ମ୍ୟାଟ୍ରିକ୍ ବୋଲି ଯେମିତି ଗଣ୍ୟ ହେବ, ସେମିତି S.L.C. ପରୀକ୍ଷାରେ ପାସ୍ କଲେ ସେ ମଧ ମ୍ୟାଟ୍ରିକ୍‌ର ସମକକ୍ଷ ବୋଲି ଗଣ୍ୟ ହେବ। ଜଣେ ପିଲା ଦୁଇଟାଯାକ ପରୀକ୍ଷା ଦେଇପାରିବ। ସେ ଦୁଇଟାରେ ପାସ୍ କଲେ ଭଲ ନଚେତ୍ ଯେ କୌଣସି ଗୋଟାଏ ପରୀକ୍ଷାରେ ପାସ୍ କଲେ ମଧ ଭଲ। ଏଣୁ ମୁଁ ମାଟ୍ରିକ୍ ଆଉ S.L.C.ଦୁଇଟା ଯାକ ପରୀକ୍ଷା ପାଇଁ ପଢ଼ିଲି।

ଏଇ ସମୟରେ ବଡ଼ଭାଇ ପୁଣିଥରେ ରେଙ୍ଗୁନ୍‌ରୁ ଆସି ପହଁଚିଲେ। ଏଥର ସେ ସାଙ୍ଗରେ ଆଣିଥିଲେ ବିଶ୍ୱକବି ରବୀନ୍ଦ୍ର ନାଥଙ୍କର "ଚୟନିକା" କବିତା ସଂକଳନ। ତାକୁ ନେଇ ମୁଁ ପଢ଼ିଲି। "ମୋର ପୁରାତନ ଭୃତ୍ୟ", "ଦୁଇବିଘା ଜମି" ଏ ଧରଣର ଅଳ୍ପ କେତୋଟି କବିତା ବୁଝି ପାରିଲି, ଆଉ କେତେକ ବୁଝି ପାରିଲି ନାହିଁ। ତଥାପି ଅନେକଗୁରାଏ ପଢ଼ିଲି। ମନରେ ଭାରି ଆନନ୍ଦ ଅନୁଭବ କଲି। ମୋ ନିଜର କବିତା ଲେଖିବା ପାଇଁ ଆଗ୍ରହ ଜନ୍ମିଲା।

ଏଥର ବଡ଼ଭାଇ, ବାବା, ମା'ଙ୍କୁ କହିଲେ ଯେ ତାଙ୍କର ସହୋଦର ଜଣେ ସାନଭାଇକୁ ଏବଂ ମୋତେ ସାଙ୍ଗରେ ନେଇ ରେଙ୍ଗୁନ ଯିବେ। ତାଙ୍କର ନିଜର ସାନଭାଇ ବୟସରେ ମୋଠାରୁ ବଡ଼, ମାଇନର ଫେଲ୍

ହେଇ ବୁଲୁଥାଏ । ମୁଁ ୧୦ମ ଶ୍ରେଣୀରେ ପଢୁଥାଏ । ରେଙ୍ଗୁନ ଯିବାର କଥା ଶୁଣି ମୋ ମନ ବେଳେବେଳେ ଆନନ୍ଦରେ ଭରି ଉଠୁଥାଏ । ଜାହାଜରେ ରେଙ୍ଗୁନ ଗଲେ ଲେଖିବି ଭ୍ରମଣ ବୃତ୍ତାନ୍ତ । ଥରେ ବାବା, ମୁଁ, ବଡ଼ଭାଇ ଖାଇ ବସିଛୁ । ମୁଁ କହି ପକେଇଲି "ବଙ୍ଗୋପସାଗରରେ ଜାହାଜ ଯାତ୍ରା" ଲେଖିଲେ ଭାରି ସୁନ୍ଦର ହବ । ବାବା ମୋ କଥା ଶୁଣି ଗାଳି ଦେଲେ । ଯେମିତି କେଡ଼େ ବଡ଼ ଲେଖକ, କେତେ ଲେଖିଲାଣି । ବଡ଼ଭାଇ ମଧ୍ୟ ମଝିରେ ମଝିରେ ମୋତେ ପ୍ରବର୍ତ୍ତେଇଲେ, ରେଙ୍ଗୁନ ଯିବା ପାଇଁ, ଅନେକ ପ୍ରଲୋଭନ ଦେଖେଇଲେ ।

ବାବା ସେତେବେଳେ ଚାରିଆଡୁ ବିବ୍ରତ ହେଇ ପଡ଼ିଥାନ୍ତି । ଚାକିରୀରେ ଗଣ୍ଡଗୋଳ, ଋଣଭାର, ମୁଁ ଭଲ ପଢୁ ନଥାଏ । ତା'ପରେ ଆଉ ଗୋଟାଏ କଥା ଆଗରୁ କହିଛି । ବାବା ଯେଉଁ ଦିନଠୁଁ ଗାନ୍ଧିଙ୍କର ବକ୍ତୃତା ଶୁଣିଲେ, ସେହିଦିନଠୁଁ ମୋ ପଢ଼ା ପ୍ରତି ତାଙ୍କର ଆଉ ସେତେ ଆଗ୍ରହ ନଥିଲା । ସବୁବେଳେ କହୁଥିଲେ, ଏ ପାଠ ପଢ଼ାରେ କିଛି ମୂଲ୍ୟ ନାହିଁ, ଖାଲି କିରାନୀ ସୃଷ୍ଟି ହବା କଥା, ଗୋଲାମୀ କରିବା କଥା, ତା ଛଡ଼ା ଆଉ କିଛି ନୁହେଁ ।

ବାବା ବଡ଼ଭାଇଙ୍କ କଥାରେ ରାଜି ହେଲେ । ମୁଁ ବଡ଼ଭାଇଙ୍କ ସଙ୍ଗେ ରେଙ୍ଗୁନ ଯିବି । ଏକଥା ଶୁଣି ମା ବାଧା ଦେଇ କହିଲେ, ନା ତାକୁ ମୁଁ ରେଙ୍ଗୁନ ଛାଡ଼ିବି ନାହିଁ । ମୋର ଗୋଟିଏ ପୁଅ, ସେ ତା' ନିଜ ଭାଇକୁ ନେଇ ଯାଉ । ମୁଁ ମୋ ପୁଅକୁ ଛାଡ଼ିବି ନାହିଁ । ତୁମେ ଯଦି ପଠେଇଛ, ମୁଁ ଆତ୍ମହତ୍ୟା କରିବି ।

ଏଣୁ ମୋର ରେଙ୍ଗୁନ୍ ଯିବା ବନ୍ଦ ହେଲା । ବଡ଼ଭାଇ ତାଙ୍କର ନିଜର ସାନଭାଇକୁ ନେଇ ରେଙ୍ଗୁନ୍ ଗଲେ । ସେଥର ବଡ଼ଭାଇଙ୍କ ବିବାହ ଲାଗି ଯୋଗାଡ଼ ଚାଲି ଥିଲା । ପାତ୍ରୀ କେଉଁଠି ଠିକ୍ ହେଇ ନଥାଏ । ଏଇ ଅବସ୍ଥାରେ ସେ ରେଙ୍ଗୁନ୍ ଗଲେ । ଏଥର ପାଠ ପଢ଼ାରେ ମୋର ଭାରି ଆଗ୍ରହ ଜନ୍ମିଥାଏ । ଫେଲ୍ ହବାର ସରମ ଲଜ୍ଜା ଆଉ ନଥାଏ । ମୁଁ ତ କ୍ଲାସରେ ପୁରୁଣା ମୂଷା ଆଉ ସବୁ ମୋ ଆଗରେ ୧୦ମ ଶ୍ରେଣୀକୁ ଆସିଛନ୍ତି । ଏଣୁ ମୋର ପ୍ରାଧାନ୍ୟ ଟିକିଏ ବେଶି ଥାଏ ।

୧୦ମ ଶ୍ରେଣୀର B sectionରେ ମୁଁ ପଢୁଥାଏ । ସେଥର ୧୦ମ ଶ୍ରେଣୀରେ ୧ମ ପରୀକ୍ଷାରେ ମୁଁ ୩ୟ ହେଲି । ଏ ତ ନୂଆ କଥା ! ମୋର ପୁଣି ଗୋଟାଏ position କ'ଣ ? ପିଲାଦିନୁ ତ କ୍ଲାସରେ position ରଖିବା ମୋତେ ସ୍ୱପ୍ନ । Under consideration ରେ ଏତେ ବାଟ ଆଗେଇ ଆସିଲି । ଏଇଠି ଆଉ under consideration ସାହସ ଦେଲା ନାହିଁ । ଏଣୁ ୧୦ମ ଶ୍ରେଣୀରେ ଥରେ ଝୁଣ୍ଟି ପଡ଼ି ପୁଣି ଉଠି ଆଉ ଥରେ ଚାଲୁଛି । ଏଥିରେ ପୁଣି ୩ୟ position କ'ଣ ? ମନ ଭାରି ଖୁସି ଖୁସି ଲାଗିଲା । ସବୁଥିରେ ଭଲ ନମ୍ବର ଥାଏ । ମୁଁ ନିଜେ ଟିକିଏ ନିଜକୁ ବାଗେଇ ନେଲି, ଯେମିତି କ୍ଲାସରେ ଭଲ ପିଲା ହୁଅନ୍ତି । ପଛ ବେଞ୍ଚରେ ଆଉ ଲୁଚି ବସିବାକୁ ମନ ହେଲା ନାହିଁ । କିନ୍ତୁ ଏଣେ ଘରର ଅବସ୍ଥା ଇମିତି ହେଲାଣି ଯେ ପ୍ରତି ମାସରେ ଦରମା ଦେଲା ବେଳକୁ ଧାରଉଧାର କରି କୌଣସି ମତେ ଦରମା ଦିଆ ହଉଥାଏ । ଘରର ଆଉ ସେ ଆଗର ଖାଦଦାନୀ ଭାବ ନାହିଁ । ଅତି ଦୈନ୍ୟ ଅବସ୍ଥା । ଆଗରୁ କହିଛି ଯେଉଁଦିନ ଆମ ଘରେ ଚୋରି ହେଲା, ସେଇ ଦିନଠୁଁ ଘର ଶ୍ରୀହୀନ ହବାକୁ ଆରମ୍ଭ ହେଲା ।

ମୁଁ ଯେଉଁ ବର୍ଷ ୧୦ମ ଶ୍ରେଣୀରେ ଫେଲ୍ ହେଇ ଦ୍ୱିତୀୟ ବାର ପଢୁଥାଏ, ସେ ବର୍ଷ ଦଶହରାକୁ ବାବା ଆଉ ଆମ ସାଙ୍ଗରେ ଗାଁକୁ ଯାଇ ପାରିଲେ ନାହିଁ । କାରଣ ଚାକିରିରେ ଅବସର ନବା ପୂର୍ବରୁ ତାଙ୍କର ଚାର୍ଜ ବୁଝେଇବା ଆରମ୍ଭ ହେଇଗଲା । ବାବା ଚାକିରି ଛାଡ଼ିବେ, ଦଶହରାରେ ଦୁର୍ଗାପୂଜା କିମିତି ହବ ? ବାବାଙ୍କ ହାତରେ ଟଙ୍କା ବୋଲି କିଛି ନଥାଏ । ତଥାପି ଗାଁରେ ଯାଇ ଦୁର୍ଗାପୂଜା କରିବାକୁ ହବ ।

ଏଥି ମଧ୍ୟରେ ବୁଢ଼ୀ ମା'ଙ୍କର ପରଲୋକ ହେଇ ଯାଇଥାଏ । ଗାଁ ଘର ଜଣେ ବୃଦ୍ଧା ପୁରୁଣା ଦାସୀ ଦ୍ୱାରା ଚଳୁଥାଏ । ଜେଠା କଟକ ଜିଲ୍ଲାର ଜଗତସିଂହପୁରରେ

ଥାନ୍ତି । ସେତେବେଳକୁ ସେ ଚାକିରିରୁ ଅବସର ନେଇ ସାରିଲେଣି । ସେ କିଲ୍ଲାଦାର ଥିଲେ । ତାଙ୍କର ଚାକିରିକାଳ ମଧ୍ୟରେ ସେ ଜଗତସିଂପୁରରେ ଖଣ୍ଡେ ଘର କରି ପକେଇଥିଲେ । ସେ କେତେବର୍ଷ ପୂର୍ବରୁ ଆଉ ଗାଁକୁ ଦଶହରାରେ ଯାଉ ନଥିଲେ । ବାବାଙ୍କ ଉପରେ ଦୁର୍ଗାପୂଜାର ସବୁ ଭାର । ଜେଠା କେବଳ ୧୫ କିମ୍ବା ୧୬ ଟଙ୍କା ପଠେଇ ଦେଇ ଚୁପ୍‌ଚାପ୍ ରହୁଥିଲେ । ବାବା ସବୁ ସମ୍ଭାଳି ଚଳେଇ ନଉଥିଲେ କିନ୍ତୁ ବାବାଙ୍କର ଆର୍ଥିକ ଅବସ୍ଥା ଅତି ଶୋଚନୀୟ ହେଇ ପଡ଼ିଲା । ସେ ବର୍ଷ ଦଶହରା ବେଳକୁ ବାବା ଶୂନ୍ୟ ହସ୍ତରେ ବସିଥାନ୍ତି । ବାବା, ମା, ସମସ୍ତେ ଚିନ୍ତାଗ୍ରସ୍ତ, କିମିତି ଦୁର୍ଗାପୂଜା ହବ ?

ରାତି ପ୍ରାୟ ୮ଟା ବେଳ ହବ । ମା ମୋତେ ଗୋଟିଏ ସୁନାହାର ଦେଲେ, ଜଣେ ପଡ଼ିଶାଘରେ ବନ୍ଧା ରଖି କିଛି ଟଙ୍କା ଆଣିବା ପାଇଁ । ମୁଁ ସୁନାହାରକୁ ନେଇ ପଡ଼ିଶା ଘରେ ବନ୍ଧା ରଖି ୬୦ ଟଙ୍କା ଆଣିଲି । ଯେଉଁଠି ଦଶହରାରେ ସେତେବେଳେ ୩୦୦ ଟଙ୍କା ଖର୍ଚ୍ଚ ହଉଥିଲା । ସେ ଜାଗାରେ ୬୦ ଟଙ୍କାରେ କିମିତି କ'ଣ ହବ ? କୌଣସି ମତେ ଦୁର୍ଗାପୂଜାରେ ଯେତିକି ସାମଗ୍ରୀ ଦରକାର ଆଉ ଅଳ୍ପ କିଛି ଜିନିଷ ସେହି ରାତିରେ କିଣି ଆଣିଲୁ । ଲୁଗାପଟା କାହାରି କିଛି କିଣା ହେଲା ନାହିଁ । କେବଳ ମୋର ଖଣ୍ଡେ ଜାମା, ଖଣ୍ଡେ ଧୋତି ଆଉ ସାନ ଭଉଣୀ ଦୁଇ ଜଣଙ୍କର ଦୁଇଖଣ୍ଡ ଜାମା, ଏତିକି । ମୁଁ ବାବା ଯେତେବେଳେ ବଜାରରୁ ସଉଦା କରି ଫେରିଲୁ, ବାବା ବାଟରେ ମୋତେ ସାଙ୍ଗରେ ନେଇ ବଡ଼ ଦୁଃଖରେ ଫେରୁଥାନ୍ତି ।

ତହିଁ ଆରଦିନ ଷଷ୍ଠୀ ତିଥିରେ ମା' ମୋତେ ଆଉ ସାନ ଭଉଣୀ ଦୁଇ ଜଣକୁ ସାଙ୍ଗରେ ନେଇ ଷ୍ଟିମର୍‌ରେ ଗାଁକୁ ବାହାରିଲେ । ବାବା କଟକରେ ରହିଲେ । ପୂର୍ବର ଦଶହରାରେ ଗାଁକୁ ଯିବାର ଆଡ଼ମ୍ବରକୁ ଭାବି ମୋତେ ଭାରି ଦୁଃଖ ଲାଗୁଥାଏ । ସେଥିରେ ପୁଣି ଷ୍ଟିମର୍‌ରେ ଯାଉ ଯାଉ ଖଇରା ନିକଟରେ ମୋତେ ଜ୍ୱର ଆରମ୍ଭ ହେଲା । କେହି ସାଙ୍ଗରେ ନାହାନ୍ତି । ମା' ହତାଶ ହୋଇ ପଡ଼ିଲେ, କୌଣସି ମତେ ଯାଇ ଗାଁରେ ପହଁଚିଲୁ । ସେ ବର୍ଷ ଗାଁରେ ସମସ୍ତେ ଆମର ଦଶହରାରେ ଦୈନ୍ୟ ଭାବ ଦେଖି ବୁଝି ପାରିଲେ ବାବାଙ୍କର ଅଭାବ କଥା, ଚାକିରୀ ଛାଡ଼ିବାକୁ ହବ ।

ସେ ବର୍ଷ ଆମର ଦୈନ୍ୟ ଅବସ୍ଥାକୁ ଗାଁର ମଧ୍ୟ ସେହିପରି ଦୂରବସ୍ଥା । ଘରେ ଘରେ ଅଧିକାଂଶ ଲୋକେ ମ୍ୟାଲେରିଆ ଜ୍ୱରରେ ଆକ୍ରାନ୍ତ । ଅଧିକାଂଶ ଲୋକଙ୍କର ପେଟରେ ଗୋଟାଏ ଗୋଟାଏ ପ୍ଲିହା । ସେ ୧୯୨୧ କି ୧୯୨୨ ମସିହା ହବ, ସେହି ବର୍ଷ ପ୍ରଥମେ ଗାଁରେ ମ୍ୟାଲେରିଆ ପଶେ । ଆମ ଗାଁରେ କେବଳ ନୁହେଁ, ଜଗତପୁର ଷ୍ଟେସନ (ଏବେ ଯା'ର ନାଁ କେନ୍ଦ୍ରାପଡ଼ା ରୋଡ୍ ହେଇଛି) ଠାରୁ ଆରମ୍ଭ କରି କେନ୍ଦ୍ରାପଡ଼ା, ଆଳି, କନିକା, କୁଞ୍ଜ ପର୍ଯ୍ୟନ୍ତ ମ୍ୟାଲେରିଆ ବ୍ୟାପିଲା ।

ସେ ବର୍ଷ ମୁଁ ଯାଇ ଗାଁରେ ଜ୍ୱରରେ ଶୋଇଲି । ଘର ଖାଁ ଖାଁ ଲାଗୁଥାଏ । ବାବା ଆସି ନାହାନ୍ତି, ମା ଏକା । ରାମ ଶଙ୍କର ରାୟ ମୋତେ ଜ୍ୱର ହେଇଛି, ବାବା ଆସି ନାହାନ୍ତି ଶୁଣି କୃଷ୍ଣ ଶଙ୍କର ରାୟଙ୍କୁ (ପ୍ୟାରୀ ଶଙ୍କର ରାୟଙ୍କ କାକା) କହିଲେ, ମୋତେ ଦେଖି ଜ୍ୱରର କିମିତି ଚିକିତ୍ସା ହବ ବ୍ୟବସ୍ଥା କରିବା ପାଇଁ । କୃଷ୍ଣ ଶଙ୍କର ରାୟ ଆସିଲେ । ମୋର ମା' ତାଙ୍କର ଖୁଡ଼ୀ ହେବେ । ତାଙ୍କ ଠାରୁ ମୋର ଜ୍ୱର ବିଷୟରେ ବୁଝିଲେ । କ'ଣ ଚିକିତ୍ସା ହେଲା ମୋର ମନେ ନାହିଁ । ମୁଁ ଭଲ ହେଇଗଲି କିନ୍ତୁ ସେ ବର୍ଷ ଯେ ଯାତ୍ରାବାଲା ଆସିଲେ, ସେମାନେ ମଧ୍ୟ ମ୍ୟାଲେରିଆରେ ଆକ୍ରାନ୍ତ ହେଲେ । ସେ ବର୍ଷ ଦଶହରା ଯାହା ତାହା ହେଇ ଚଳିଗଲା । ସେ ବର୍ଷ ମ୍ୟାଲେରିଆରେ ଭୋଗି ଲୋକ ଏତେ ଦୁର୍ବଳ ହେଇ ପଡ଼ିଥାନ୍ତି ଯେ ଦଶମୀ ଦିନ ଦୁର୍ଗାଙ୍କର ବିସର୍ଜନ ପରେ ମେଢ଼ କେମିତି ମଣ୍ଡପରୁ ବାହାରକୁ ଅଣାହବ ଭାଳେଣି ପଡ଼ିଲା । ଶେଷରେ କୌଣସି ମତେ ଟଣା ଓଟରା ହେଇ ମେଢ଼କୁ ପଦାକୁ ଆଣିବା ବେଳେ ଦୁର୍ଗାଙ୍କର ହାତର ଆଙ୍ଗୁଳି, ଗଣେଷଙ୍କର ଶୁଣ୍ଢ କ୍ଷତବିକ୍ଷତ ହେଲା । ପୁଣି ପ୍ରତିବର୍ଷ ମେଢ଼କୁ ନେଇ ଯେମିତି ଦଧିବାମନଜୀଙ୍କ ନିକଟକୁ ପଟୁଆର କରି ଯାନ୍ତି, ସେ ବର୍ଷ ଆଉ ନେଇ ପାରିଲେ ନାହିଁ । କିଏ ଏଡ଼େ ବଡ଼ ମେଢ଼କୁ ଏତେ ବାଟ କାନ୍ଧେଇ ନବ ? ସମସ୍ତଙ୍କର

ପେଟରେ ପ୍ଲିହା, ଦେହ ଦୁର୍ବଳ ମ୍ୟାଲେରିଆ ଜ୍ୱରରେ ଭୋଗି । ବର୍ତ୍ତମାନ ଯାକୁ ଦେଖୁଛ କାମ କରୁଛି, ପର ମୁହୂର୍ତ୍ତରେ ସେ ଯାଇ ଜ୍ୱରରେ ଶୋଇ କମ୍ପୁଛି । କି ଦୁଃସମୟରେ ମ୍ୟାଲେରିଆ ଜ୍ୱର ଆମ ଗାଁରେ ପଶିଲା ।

ଗାଁର ଘରେ ଘରେ କେତେ ରୋଜଗାରୀ ଲୋକ ଯେ ମରିଗଲେ । ମୋର ମନେ ଅଛି, ମହାନ୍ତି ସାହିରେ ଗୋଟିଏ କୁଟୁମ୍ବରୁ ଭେଣ୍ଡା ଭେଣ୍ଡା ଛ'ଜଣ ମରିଗଲେ । ଘରେ ଘରେ ବିଧବାଙ୍କ ସଂଖ୍ୟା ବଢ଼ିଗଲା । ରୋଜଗାର କରିବାକୁ କେହି ନାହିଁ । ଘରେ ଘରେ କୁଲା ଦେଇ ଓଷା । ସେତେବେଳେ ମ୍ୟାଲେରିଆ ପାଇଁ ବିଶେଷ କିଛି ନୂଆ ଧରଣର ଔଷଧ ବାହାରି ନଥିଲା । ସେଇ Edward's tonic, ଜାରମୋଲିନ୍, କୁଇନୋହି ମୋଜେନ୍, କୁଇନାଇନ୍, D. Gupta's anti- malaria mixture ଇତ୍ୟାଦି । ଲୋକେ କୁଇନାଇନ୍ ଖାଇ ଖାଇ ଲୋକଙ୍କର ସନ୍ତାନ ଉତ୍ପାଦିକା ଶକ୍ତି କମିଗଲା । ଏଣେ ଲୋକେ ମ୍ୟାଲେରିଆରେ ମଲେ । ଏଣୁ ଜନସଂଖ୍ୟା ମଧ କମିଗଲା । କେବଳ ଯେଉଁମାନେ ବିଦେଶରେ ରହୁଥିଲେ, ସେହିମାନେ ହିଁ ବଞ୍ଚିଗଲେ । ଆମେ କଟକରେ ରହୁଥିବା ଯୋଗୁଁ ବଞ୍ଚିଗଲୁ । ଗାଁରେ ଥିଲେ ମରିଯାଇଥାନ୍ତୁ । ଗାଁରେ ଦିନେ ଓଳିଏ ରହିବା ବିପଦ । ମ୍ୟାଲେରିଆ ଧରି ନବ । କେତେକ ଗାଁ ଛାଡ଼ି ସହରକୁ ପଳେଇଲେ । ସହରରେ ମଧ ମ୍ୟାଲେରିଆ ବ୍ୟାପିଲା ।

ସେ ବର୍ଷ କୌଣସି ମତେ ଦୁର୍ଗାଙ୍କୁ ନେଇ କଣ୍ଡିଆ ପୋଖରୀରେ ପକେଇ ଦେଇ ଆସିଲେ । ଦୁର୍ଗାଙ୍କ ହାତ ଆଙ୍ଗୁଳି ଆଉ ଗଣେଷଙ୍କ ଶୁଣ୍ଢ ଜଖମ ହବା ଦ୍ୱାରା ଗ୍ରାମବାସୀଏ ଯାକୁ ଅଶୁଭ ସୂଚନା ବୋଲି ଭାବିଲେ । ଗାଁର ନିଷ୍ଚୟ କିଛି ଅମଙ୍ଗଳ ହବ, ହେଲା । ଗାଁ ଶ୍ରୀହୀନ ହେଇଗଲା, ଜନଶୂନ୍ୟ ହେଇଗଲା, ଗାଁର ଐଶ୍ୱର୍ଯ୍ୟ ଲୋପ ହେଇଗଲା । ସେ ବର୍ଷ ମା କୌଣସି ମତେ ଗାଁରେ ଦୁର୍ଗାପୂଜା ଶେଷ କରି ଆମକୁ କଟକ ନେଇ ଚାଲି ଆସିଲେ ।

ବାବାଙ୍କର ଚାକିରୀରେ ଚାର୍ଜ ବୁଝେଇବା ଚାଲିଥାଏ । ତେର ଲକ୍ଷ ଟଙ୍କାର ଜିନିଷ ବାବାଙ୍କର ଜିମାରେ ଥିଲା । ସେ ସବୁର ଚାର୍ଜ ବୁଝେଇବା ତ ନିଶ୍ଚୟ ସମୟସାପେକ୍ଷ । ମୁଁ ନିୟମିତ ଭାବରେ ସ୍କୁଲକୁ ଯାଇ ୧୦ମ ଶ୍ରେଣୀରେ ପଢୁଥାଏ । ପାଠ ପଢା ପ୍ରତି ଏଥର ଖୁବ୍ ଆଗ୍ରହ ଜନ୍ମିଥାଏ । ବଡ଼ ଭଉଣୀ ଆମ ଘରେ ଚାରିବର୍ଷ ରହିଲା ପରେ ତାଙ୍କ ଶାଶୁ ଘରକୁ ଗଲେ । ସେତେବେଳେ ଭିଣେଇ ପୁରୀରେ ମାର୍କେଟ ନିକଟରେ ଘର ଭଡ଼ା ନେଇଥାନ୍ତି ।

ଦିନେ ମୁଁ ସ୍କୁଲରେ ଗୋଟାଏ ପରୀକ୍ଷା ଦେଇ ଘରକୁ ଆସି ଦେଖିଲା ବେଳକୁ ମା କାନ୍ଦୁଛନ୍ତି, ତା'ର କାରଣ ବଡ଼ ଭଉଣୀଙ୍କର ଦୁଇଟିଯାକ ଝିଅ ଦିନକ ଛଡ଼ାରେ ମୃତ୍ୟୁ ହବାର ସମ୍ବାଦ ଆସି ପହଞ୍ଚି ଥାଏ । ତା'ପରେ ବାବା ମା ଆମକୁ ନେଇ ପୁରୀ ଗଲେ । ବଡ଼ ଭଉଣୀଙ୍କୁ କିଛିଦିନ ପାଇଁ କଟକ୍ ନେଇ ଆସିଲେ । ବଡ଼ ଭଉଣୀ କଟକରେ ଆମ ଘରେ ରହି ପୁଣି ପୁରୀ ଗଲେ ।

ଏଥି ମଧରେ ବଡ଼ ଭାଇ ରେଙ୍ଗୁନ୍‌ରୁ ଆସି ପହଁଚିଲେ, ତାଙ୍କର ବିଭାଘର ହବ । ବଡ଼ଭାଇଙ୍କ ବିଭାଘର ଜଗତସିଂପୁରରେ ହବାର ସ୍ଥିର ହେଲା । ଏଣୁ ଆମକୁ ଜଗତସିଂପୁରକୁ ଯିବାକୁ ହବ । ବାବାଙ୍କର ସେତେବେଳେ ଭାରି ଦୁଃଖର ବେଳ । ଉତ୍କଟ ଅର୍ଥାଭାବ କିନ୍ତୁ ଯେମିତି ହେଲେ ଯିବାକୁ ହବ । ବାବା କୌଣସିମତେ ଧାରଉଧାର କରି ଆମକୁ ନେଇ ଜଗତସିଂପୁର ବାହାରିଲେ । ମୁଁ ମୋର ଜଣେ ସହପାଠୀକୁ ଅନୁରୋଧ କରି କହିଲି, ତୁ ମୋର ଏଥର ସ୍କୁଲରେ ଦରମାଟା ଦେଇଥିବୁ ଆମେ ଜଗତସିଂପୁରରୁ ଫେରିଲେ ତୋର ଟଙ୍କା ଦେଇଦେବି । କାରଣ ମୁଁ ବୁଝିପାରିଲି ଯେ ବାବାଙ୍କ ହାତରେ ଆଉ ଟଙ୍କା ନଥାଏ ସ୍କୁଲର ଦରମା ଦବା ପାଇଁ । ସେ ସହପାଠୀ ମଧ ମୋର ଏ ପ୍ରସ୍ତାବରେ ରାଜି ହେଲା । ମୁଁ ତା'ଉପରେ ଦୃଢ଼ ଭାବରେ ବିଶ୍ୱାସ କଲି ଯେ ସେ ମୋର ଦରମାଟା ନିଶ୍ଚୟ ଦେଇ ଦବ । ମୁଁ ତା'ଉପରେ ନିର୍ଭର କରି ନିଶ୍ଚିନ୍ତ ରହିଲି ।

ବାବା, ବଡ଼ ଭଉଣୀ, ଭଣଜା, ମୋର ମଝିଆ ଭଉଣୀ, ମୁଁ ଆମେ ସମସ୍ତେ ଜଗତସିଂପୁର ଗଲୁ । ମା ଗଲେ ନାହିଁ । ତା'ର କାରଣ ମା' ଯେଉଁଠି ବଡ଼ଭାଇଙ୍କୁ

କହିଲେ ବିଭାହବା ପାଇଁ, ବଡ଼ଭାଇ ସେଠି ବିଭା ନ ହୋଇ ଅନ୍ୟ ଜାଗାରେ ବିଭା ହେଲେ। ଏଣୁ ମା ରାଗରେ ବଡ଼ଭାଇଙ୍କ ବିବାହରେ ଯୋଗ ଦେଲେ ନାହିଁ। ମା' ମୋର ଆଉ ଗୋଟିଏ ଛୋଟ ଭଉଣୀକୁ ନେଇ କଟକରେ ରହିଲେ।

ବଡ଼ଭାଇଙ୍କ ବିଭାଘର ଭଲରେ ଭଲରେ ହେଇଗଲା। କିନ୍ତୁ ବାବାଙ୍କ ମନରେ ସେତେ ଆନନ୍ଦ ନଥାଏ। ଆମେ ଯେତେବେଳେ ବଡ଼ଭାଇଙ୍କ ବିବାହ ପରେ କଟକ ଫେରିଲୁ, ମା କହିଲେ ମୋର ସ୍କୁଲରେ ନାଁ କଟି ଯାଇଛି। ବାବା ବଡ଼ଭଉଣୀ ଶୁଣି ମନଦୁଃଖ କଲେ। ମୁଁ ମଧ୍ୟ ହତାଶ ହେଇ ପଡ଼ିଲି। ଭାବିଲି ସ୍କୁଲରେ ନାଁ କଟିଗଲା ଆଉ କ'ଣ ପଢ଼ି ପାରିବି ନାହିଁ କି?

ଯେଉଁ ସହପାଠୀ ମୋତେ ଦୃଢ଼ ଭାବରେ କହିଥିଲା, ମୋର ଦରମା ସ୍କୁଲରେ ଦାଖଲ କରିଦେବ ସେ ଦରମା ଦାଖଲ କରି ନଥିବା ହେତୁ, ତାରି ଚାଣକ୍ୟତା ଯୋଗୁଁ ମୋର ସ୍କୁଲରେ ନାଁ କଟିଗଲା। ତା ଉପରେ ମନେ ମନେ ଭାରି ରାଗିଲି କିନ୍ତୁ ରାଗିଲେ ବା କ'ଣ ହବ? ଏଣୁ ମନଦୁଃଖରେ ନିରବ ରହିଲି।

# ୨ୟ ପର୍ବ

## (୧)

ଆମେ ବଡ଼ ଭାଇଙ୍କ ବିବାହ ପରେ କଟକରେ ଆସି ମ୍ୟାଲେରିଆରେ ଆକ୍ରାନ୍ତ ହୋଇ ପଡ଼ିଲୁ । କେବଳ ମା'ଙ୍କୁ ଛାଡ଼ି । ମା' ଭଲ ଥାନ୍ତି । ଆମେ ଯେତେ ଜଣ ଜଗତସିଂପୁର ଯାଇଥିଲୁ ସମସ୍ତେ ମ୍ୟାଲେରିଆ ଭୋଗି ବିଛଣାରେ ପଡ଼ି ରହିଲୁ । ମା' ଏକାହିଁ ଆମକୁ ଦେଖାଶୁଣା କରୁଥାନ୍ତି । ଏଣେ ହାତରେ ପଇସା ନାହିଁ । ଜଣେ ପୂଜାରୀ କେବଳ ଥାଏ । ମା' ଅତି କଷ୍ଟରେ ଘର ଚଳଉ ଥାନ୍ତି । ବାବା ତ ବିଛଣାରେ ଜ୍ୱରରେ ଶୋଇଥାନ୍ତି ।

କେତେଦିନ ପରେ ଆମେମାନେ ସମସ୍ତେ ଭଲ ହୋଇ ଉଠିଲୁ । ବାବା ଚାକିରୀରେ ପୁଣି ତାଙ୍କର ଚାର୍ଜ୍ ବୁଝେଇବା ଆରମ୍ଭ କଲେ । ବଡ଼ ଭଉଣୀ ତାଙ୍କ ଶାଶୁ ଘରକୁ ଫେରିଗଲେ, ମୋର ତ ସ୍କୁଲରେ ନାଁ କଟା ଯାଇଥାଏ, ତଥାପି ମୁଁ ସ୍କୁଲକୁ ଯିବା ଆରମ୍ଭ କଲି । ଏଣେ ପାଠ ପଢ଼ାରେ ମନ ଲାଗିଥାଏ, ତେଣେ ସାଙ୍ଗସାଥୀଙ୍କ ମାୟା, ସ୍କୁଲର ବାତାବରଣ ସବୁ ଆଡୁ ପ୍ରଲୋଭନରେ ପଡ଼ି ମୁଁ ସ୍କୁଲକୁ ଯାଉଥାଏ କିନ୍ତୁ ସ୍କୁଲରେ ନାଁ ନଥିବା ଯୋଗୁଁ ସରମ ସରମ ଲାଗୁଥାଏ । କାଳେ କିଏ କହିଦବ–ଯାର ସ୍କୁଲରେ ନାଁ ନାହିଁ, ଏ ଆସି କ୍ଲାସରେ କାହିଁକି ବସୁଛି ? ଅନେକ ସାଙ୍ଗ ପଚାରୁଥାନ୍ତି, କ'ଣ ନାଁ ପୁଣି ଲେଖେଇବୁ ? ମୁଁ ହଁ କରେ । କିନ୍ତୁ ବାବା, ମା'ଙ୍କ ଆଡୁ ଇଚ୍ଛା ଦେଖୁ ନଥାଏ ଯେ ମୋର କିମିତି ନାଁ ଲେଖା ହବ । ବାବା ସେତେବେଳେ ବିଶେଷ ମନଦୁଃଖରେ ଥାନ୍ତି । ଏଣେ ପୁଣି ଉତ୍କଟ ଅର୍ଥାଭାବ । ବାବା ତ ଇମିତି କେତେ ଲୋକଙ୍କ ଆଗରେ କହୁଥିଲେ- ଏ ପାଠ ପଢ଼ି କିଛି ଲାଭ ନାହିଁ, ସେ କିଛି ନ କଲେ ପାନ ଦୋକାନ କରିବ । ଯେତେବେଳେ ନାଁ କଟିଗଲା ଶୁଣିଲେ, ଖାଲି ଏତିକି କହିଲେ, ଦରମା ଯଦି ଦାଖଲ ହବାର ଥିଲା ମୋତେ କହିଥିଲେ ମୁଁ ବଡ଼ ଭାଇଙ୍କ ଠାରୁ ଧାର କରି ହେଲେ ଜଗତସିଂପୁରରୁ ହେଡ୍‌ମାଷ୍ଟରଙ୍କ ନାଁରେ ଟଙ୍କା ମନିଅର୍ଡ଼ର କରି ପଠାଇ ଥାନ୍ତି । ମୋତେ କହିଲା ନାହିଁ, କୋଉ ସାଙ୍ଗପିଲାକୁ କହିଗଲା, ସେ ଦେଲା ନାହିଁ, ନାଁ କଟିଗଲା ।

ମୁଁ କେତେଦିନ ସ୍କୁଲକୁ ଯାଉଥିଲି । ଦିନେ କ୍ଲାସ୍‌ରେ ବସିଛି, ଜଣେ ଶିକ୍ଷକ ଗୋଟାଏ କୋଉ ଘଟଣାରେ ପରିହାସ କରି କହିଲେ-ତା'ର ସ୍କୁଲରେ ନାଁ ନ ଥାଇ ସେ ଯେତେବେଳେ ସ୍କୁଲକୁ ଆସୁଛି, ତା'ପରି ମନଯୋଗୀ ପିଲା ଆଉ କିଏ ଅଛି ? ମୋତେ ଭାରି ସରମ ଲାଗିଲା । ମୁଁ ଆଉ ସ୍କୁଲକୁ ଗଲି ନାହିଁ । ଭାବିଲି-ନାଁ ଲେଖା ହେଲେ ଆସିବି ।

ଘରେ ବେଳେବେଳେ ବାବା, ମା'ଙ୍କୁ କହେ- ମୋର ନାଁ ଲେଖା ହବ ନାହିଁ ? ବାବା, ମା' ଉଭୟେ କହନ୍ତି-ତୁ ଟା କୋଉ ପାଠ ପଢ଼ିବୁ ଯେ ତୋର ପୁଣି ଗୋଟାଏ ନାଁ ଲେଖାରେ ଟଙ୍କା ଖର୍ଚ୍ଚ ହବ କାହିଁକି ? ସେମିତି ଗଣ୍ଡାଏ ଖାଇ ପଡ଼ି ଥା' । ପାଠ ପଢ଼ିଲେ ଚାଲାଖ ହବୁ । ବଡ଼ଭାଇ ପରି କୁଆଡ଼େ ପଳେଇବୁ ।

ଜେଠାପୁଅ ବଡ଼ଭାଇ ଯେ I.A. ପଢୁ ପଢୁ ରେଙ୍ଗୁନ ପଳେଇ ଥିଲେ । ସେଇଥିପାଇଁ ବାବା, ମା'ଙ୍କର ମନର ଧାରଣା ହେଲା-ସେ ପାଠ ପଢ଼ିଲା ବୋଲି, ତା'ର ଆଖି ଖୋଲିଗଲା, ସେ ରେଙ୍ଗୁନ୍ ପଳେଇଲା । ଯାକୁ ପୁଣି ପଢ଼େଇଲେ ଏ ମଧ୍ୟ ପଳେଇପାରେ । ଏଣୁ ମୋର ଯେତେବେଳେ ସ୍କୁଲରେ ନାଁ କଟିଗଲା ଆଉ ନାଁ ଲେଖେଇବାକୁ ମନ ଦେଲେ ନାହିଁ । ସେତେବେଳେ matriculation ଯେ ପାସ୍ କରୁଥିଲା ସେ ଭାରି ଭଲ ପାଠୁଆ ବୋଲି ଗଣ୍ୟ ହଉଥିଲା । I.A., B.A. ଯେ ପଢ଼ିଲା ସେ ତ କେଡ଼େ ବଡ଼ ମନିଷୀ, ତାକୁ ଲୋକେ କେତେ ସମ୍ମାନ ଦଉଥିଲେ, ତା' ପରୋକ୍ଷରେ ଲୋକେ ତୁନିତୁନି ହୋଇ କୁହାକୁହି ହଉଥିଲେ-ସେ I.A. ପଢୁଛି, ସେ B.A. ପାସ କରିଛି, ସେ ଜଣେ M.A. ।

ସ୍କୁଲ ଯିବାତ ବନ୍ଦ ହେଲା । ମୋର ଆଉ କିଛି କାମ ନାହିଁ, କେବଳ ଦିନ ବେଳା, ରାତି ବେଳା ବଜାର ସଉଦା କରିବା । ଆଉ ଚାରି ବାଜିଲେ ପଡ଼ିଆରେ ball ଖେଳିବା । ଦୈନିକ ସ୍କୁଲ ଯିବା ବେଳ ହେଲେ ମନ ଭାରି ଦୁଃଖ ଲାଗେ, ମୋରି ସାଙ୍ଗମାନେ ସ୍କୁଲକୁ ଯାଉଥାନ୍ତି, ମୁଁ ଯଦି ସେତେବେଳେ ବଜାର ସଉଦା କରିବାକୁ ଯାଇଥାଏ ସାଙ୍ଗ ପିଲାଏ ସ୍କୁଲକୁ ଯାଉଥିବାର ଦେଖିଲେ ତାଙ୍କ ସାଙ୍ଗରେ ଚାଲି ଚାଲି ଥୋଡ଼ା ବାଟ ଯାଏ ପୁଣି ମନ ଦୁଃଖରେ ବଜାର ସଉଦା କରି ଘରକୁ ଫେରିଆସେ ।

ଚାରି ବାଜିଲେ ଯେତେବେଳେ ମେଡ଼ିକାଲ ପଡ଼ିଆରେ ଯାଇ ball ଖେଳିବାକୁ ପହଁଚେ, ସେତେବେଳେ ମନ ଭଲ ଲାଗେ ତଥାପି ମନ ଦୁଃଖ ଲାଗେ, ଅନ୍ୟ ସାଙ୍ଗ ପିଲାଙ୍କୁ ଦେଖି ଭାବେ, ସେମାନେ ପଢ଼ିଲେ ମୁଁ ପଢ଼ି ପାରିଲି ନାହିଁ ।

ଏଇ ମେଡ଼ିକାଲ ପଡ଼ିଆରୁ ball ଖେଳରୁ ଦୁଇ ଜଣ ଅନ୍ତରଙ୍ଗ ବନ୍ଧୁ ଜୁଟିଲେ । ଜଣେ ମୃଣାଳକାନ୍ତି ସେନ୍ ଆଉ ଜଣେ ପ୍ରିୟ ନାଥ ସିଂ । ମୃଣାଳ କାନ୍ତି ସେନ୍ ହେଲା-କଟକର ଶ୍ୟାମା ସେନ୍, ଯେ କି ପ୍ରଥମେ ମଙ୍ଗଳାବାଗର Cuttack Emporium ଆରମ୍ଭ କରିଥିଲେ, ତାଙ୍କର ବଡ଼ଭାଇଙ୍କର ପୁଅ । ମୃଣାଳ ତତ୍‌କାଳୀନ Muslim Schoolର ଛାତ୍ର । ଯାଙ୍କର ରାଣୀହାଟରେ ପ୍ରକାଣ୍ଡ କୋଠା ଅଛି । କଟକରେ ବହୁକାଳର ବାସିନ୍ଦା, ପ୍ରିୟନାଥ ସିଂ ହେଲା-ନିମାଇ ଚରଣ ସିଂଙ୍କ ପୁଅ । ନିଜ ଗାଁ କଟକ ଜିଲ୍ଲା ବହୁଗ୍ରାମ । ପ୍ରିୟନାଥ ତତ୍‌କାଳୀନ ଭିକ୍ଟୋରିଆ ହାଇସ୍କୁଲର ଛାତ୍ର । ନିମାଇ ଚରଣ ସିଂ ସେତେବେଳେ ମେଡ଼ିକାଲରେ ଚାକିରୀ କରୁଥିଲେ । ଯାଙ୍କର ନିଜ ଘର ଥିଲା ଥୋରିଆସାହି ନିକଟରେ ।

ମୃଣାଳ ସହିତରେ ମୋର ପ୍ରଥମେ ଥରେ ମେଡ଼ିକାଲ ପଡ଼ିଆରେ କଳିଗୋଳ ହୁଏ, ତା'ପରେ ପୁଣି ଭଲ ବନ୍ଧୁତା ଜନ୍ମେ । ପ୍ରିୟ ସହିତରେ କେବେ କଳିଗୋଳ ହେଇ ନାହିଁ । ସେ ସବୁଦିନ ପ୍ରିୟ । କଟକର ଶ୍ୟାମା ସେନ୍‌ଙ୍କ ପରିବାର ସହିତରେ ବାବାଙ୍କର ଆଗରୁ ସଦ୍‌ଭାବ, ପରିଚୟ ଥିଲା । ନିମାଇ ଚରଣ ସିଂଙ୍କ ସହିତରେ ମଧ୍ୟ ବାବାଙ୍କର ଆଗରୁ ପରିଚୟ ଥିଲା । କୌଣସି ପରାମର୍ଶ ଦରକାର ପଡ଼ିଲେ, ନିମାଇ ଚରଣ ସିଂ ବାବାଙ୍କ ପାଖକୁ ଆସି ପରାମର୍ଶ ନେଉଥିଲେ । ସେ ବାବାଙ୍କ କଥା ଭାରି ମାନୁ ଥିଲେ । ପ୍ରିୟର ପ୍ରକୃତି ସରଳ, ଅମାୟିକ ଥିଲା । ମୃଣାଳ ମଧ୍ୟ ସରଳ, ଅମାୟିକ, ଉଚ୍ଚମନା ଧରଣର ଥିଲା । ଆମେ ତିନିହେଁ ଖୁବ୍ ଭଲ ସାଙ୍ଗ ହେଲୁ । ମେଡ଼ିକାଲ ପଡ଼ିଆରେ ଆମେ ତିନିହେଁ ball ଖେଳୁ । ଖେଳ ସରିଲେ, ମୃଣାଳ ଆମକୁ ଡ଼ାକି ନିଏ ମେଡ଼ିକାଲର anatomy class ଆଡ଼େ, ସେଠି ଦୁଇଟା parallel bar ଥିଲା । ସେଠି ମେଡ଼ିକାଲ ଛାତ୍ରମାନେ ବେଳେ ବେଳେ ଆସି parallel bar ରେ ବ୍ୟାୟାମ କରନ୍ତି । ମୃଣାଳ, ପ୍ରିୟ ଏବଂ ମୁଁ ସେଠି ମେଡ଼ିକାଲ ଛାତ୍ରମାନଙ୍କ parallel barରେ ବ୍ୟାୟାମ କରିବା ଦେଖି ଆମେ ମଧ୍ୟ ବ୍ୟାୟାମ କରିବା ଆରମ୍ଭ କଲୁ । ଆମ ତିନିଙ୍କ ମଧ୍ୟରେ ପ୍ରିୟ ହିଁ parallel barରେ ଭଲ ବ୍ୟାୟାମ କୌଶଳ ଦେଖେଇ ପାରୁଥିଲା । ମୁଁ ଅଳ୍ପ କିଛି, ମୃଣାଳ ଆଦୌ କିଛି କରି ପାରେନା । ସେ ଖାଲି ବସେ, ଗପ କରେ କେବଳ ସେ ଆମକୁ ଡ଼ାକି ନିଏ । Parallel barରେ ବ୍ୟାୟାମ କରିବା ଦ୍ୱାରା ପ୍ରିୟର ଶରୀର ଗଠନ ଅତି ସୁନ୍ଦର ଥିଲା, ତାକୁ ତତ୍‌କାଳୀନ ମେଡ଼ିକାଲ ଛାତ୍ରମାନେ ପ୍ରଶଂସା କରୁଥିଲେ । ଆମ ତିନିଙ୍କ ମଧ୍ୟରେ ମୋର ଦେହ ଖୁବ୍ ଦୁର୍ବଳ ଥିଲା । Parallel barରେ କିଛି ସମୟ ବ୍ୟାୟାମ କଲା ପରେ, ମୃଣାଳ ଆମକୁ କହେ ଚାଲ ମୁର୍ଦ୍ଦାର ଦେଖିବା । ମୋର ମୁର୍ଦ୍ଦାର ଦେଖିବାକୁ ଆଦୌ ଇଚ୍ଛା ହୁଏ ନା । ଭୟ ଲାଗେ, ଘୃଣା ହୁଏ । ତଥାପି ମୃଣାଳର ପ୍ରରୋଚନାରେ ପଡ଼ି ଘୃଣା, ଭୟ ଥିଲେ ମଧ୍ୟ dissection hall ଆଡ଼କୁ ଯାଉ । ସେଠି ବଡ଼ ବଡ଼ କାଚ ଝରକାରେ ସେ hall ଭିତରକୁ ଅନେଇ ଦେଖୁ-କେଉଁଠି ଟେବୁଲ ଉପରେ ଖାଲି ମଣିଷର ଗଣ୍ଡିଟାଏ ପଡ଼ିଛି, କେଉଁଠି ହାତ ଖଣ୍ଡେ, କେଉଁଠି ଗୋଡ଼ ଖଣ୍ଡେ ପୁଣି କେଉଁଠି ଖାଲି ମୁଣ୍ଡଟାଏ ପଡ଼ିଛି ।

ସେତେବେଳେ ପୁଣି ସଞ୍ଜ ହେଇ ଆସୁଥାଏ । ଏଣେ ନାକରେ ଗୋଟାଏ ଉତ୍କଟ ଗନ୍ଧ ଜଣା ପଡ଼େ । ଆମେ ପଳେଇ ଆସୁ, ଯେ ଯା ଘରକୁ ଫେରୁ । ବାଟରେ

ଆସୁ ଆସୁ ମୃଣାଳ ବଙ୍ଗଳାରେ କେତେ କଥା କହେ, ଯାକୁ ଓଡ଼ିଆରେ କହିଲେ-ଏ ମଣିଷ ଜୀବନଟା କିଛି ନୁହେଁ। ଆମେ ବଞ୍ଚିଛୁ ବୋଲି ଏତେ ମାୟା ସ୍ନେହ, ଲୋଭ। ସେଇ ମଣିଷ ଆଜି ତାଙ୍କର ପ୍ରାଣ ନାହିଁ ବୋଲି ସେମାନେ ଖଣ୍ଡ ଖଣ୍ଡ ହେଇ କଟା ହେଇ ପଡ଼ିଛନ୍ତି। ସେମାନେ ଯେତେବେଳେ ବଞ୍ଚିଥିବେ ଆମରି ପରି ତ ତାଙ୍କଠି ମାୟା, ମମତା, ଲୋଭ, ସବୁଥିବ।

ମୁଁ ମୃଣାଳ କଥାକୁ ଶୁଣେ। ଏଣେ ଭୟରେ ମୋର ମନେ ହୁଏ ଯେମିତି ମୋ ପଛରେ କିଏ ଗୋଟାଏ ଆସୁଛି। ମୁଁ ଭାବେ କାଲିଠୁଁ ଏଣିକି ଆଉ ଆସିବି ନାହିଁ। କାଲି ପୁଣି ସେଇ କଥା। Ball ଖେଳ, ତା'ପରେ parallel barରେ ବ୍ୟାୟାମ କରି ମୁର୍ଦ୍ଦାର ଦର୍ଶନାନ୍ତେ ମୃଣାଳର ସେମିତି କେତେଗୁଡ଼ିଏ ମଣିଷ ଜୀବନ ବିଷୟରେ ଅସାରତାର ବ୍ୟାଖ୍ୟାନ ଶୁଣିଶୁଣି ଘରକୁ ଫେରୁ।

ମୃଣାଳ ଯେତେ ଆମକୁ ମଣିଷ ଜୀବନ ବିଷୟରେ ଅସାରତାର ବ୍ୟାଖ୍ୟାନ କରେ ପୁଣି ଖେଳ ବେଳେ ମୋ ବିପକ୍ଷରେ ରହି, ମୋ ଖେଳରେ ସେତିକି ବାଧା ସୃଷ୍ଟି କରେ। ତା'ର ଇଚ୍ଛା ମୋତେ ଇଞ୍ଚେ ଛାଡ଼ି ଦବ ନାହିଁ। ଯେତେ ଯା'ହଉ ମୃଣାଳ, ପ୍ରିୟ ଏବଂ ମୁଁ ତିନି ହେଁ ଏତେ ଘନିଷ୍ଠ ବନ୍ଧୁ ହେଇ ପଡ଼ିଲୁ ଯେ କ୍ରମେ ତିନିହେଁ ତିନିଙ୍କ ଘରକୁ ଯିବା ଆସିବା ଆରମ୍ଭ ହେଇଗଲା।

ଦିନବେଳା ମୋର ବଜାର ସଉଦା କରିବା, ଓଡ଼ିଆ, ବଙ୍ଗଳା ଯାହା ବହି ପାଇଲି ପଢ଼ିବା ଆଉ ମନକୁ ଯାହା ଆସିଲା ଗୁରାଏ ଲେଖିବା ଆଉ ଚାରିଟା ବାଜିଲେ ଖେଳ ଜମିବା ପୂର୍ବରୁ ଯାଇ ମେଡ଼ିକାଲ ପଡ଼ିଆରେ ହାଜର ହବା, ଏ ହେଲା ମୋର ପ୍ରଧାନ କାମ। ବାବା, ମା'ଙ୍କୁ ଯେତେ ଲୁଚିଛପି ଖେଳିବା ପାଇଁ ପଳେଇବା ବେଳେ ସାନ ଭଉଣୀ ଦି'ଜଣ ଯେମିତି ହେଲେ ବାବାଙ୍କୁ କହି ଦିଅନ୍ତି-ହେଇଟି ଭାଇ ପଳେଇଲା ଖେଳିବା ପାଇଁ।

ତା'ପରେ ମୋର ସାଙ୍ଗ ପିଲାଙ୍କ ଭିତରୁ କେତେଜଣ ଯେଉଁମାନେ ରାଣୀହାଟ, ମଙ୍ଗଳାବାଗ ଆଡୁ ସ୍କୁଲକୁ ଯାଉଥିଲେ, ସେମାନେ ସ୍କୁଲକୁ ଗଲାବେଳେ ମୋ ଘରବାଟ ଦେଇ ଯିବାକୁ ଆରମ୍ଭ କଲେ। ସ୍କୁଲରୁ ଫେରିବା ବେଳେ ମୋ ପାଖରେ ହାବୁଡ଼ି ଅଳ୍ପ ସମୟ ପାଇଁ ବସି ଗଳ୍ପ କରିଗଲେ ମୋର ମନ ଭାରି ଦୁଃଖ ହୁଏ-ମୁଁ ଆଉ ପଢ଼ି ପାରିଲି ନାହିଁ।

ଦିନେ ଦିନେ ଖେଳ ଶେଷରେ ମୃଣାଳ, ପ୍ରିୟ ଆଉ ମୁଁ ତିନିହେଁ ମୃଣାଳ ଘର ବାଟ ଦେଇ ଆସୁ। ମୁଁ ଯାହା ଦିନ ବେଳା ଲେଖି ଥାଏ, ମୃଣାଳ, ପ୍ରିୟ ଆଗରେ କହେ। କିଛି ସମୟ ମୃଣାଳ ଦୁଆରେ ଗପ କରି ମୃଣାଳ ତା' ଘରକୁ ଯାଏ, ତା'ପରେ ପ୍ରିୟ, ମୁଁ ଘରକୁ ଫେରୁ। ତା'ପରେ ପ୍ରିୟ ଦୁଆରେ ଠିଆ ହେଇ କିଛି ସମୟ ଗପ କଲା ପରେ, ପ୍ରିୟ ତା'ଘରକୁ ଯାଏ, ତା'ପରେ ମୁଁ ଘରକୁ ଫେରେ।

ଖେଳ ପରେ ଘରେ ପଶିବା ମୋ ପକ୍ଷରେ ଭାରି ବିପଦ ହେଇଥାଏ। ମା'ଙ୍କର ଗାଳି ତ ସୁନିଶ୍ଚିତ। ନିତି ଭାଗବତ କି ଗୀତା ପାଠ ପରି ଅଧ୍ୟାୟ। ତା'ପରେ ସଞ୍ଜ ପରେ ସଉଦା କରି ଘରେ ପଶିବା, ରାତିବେଳା ଯେଉଁଠି ଲଣ୍ଠନ ଜଳୁଥାଏ, ସେଇଠି ବସି ବହି ପଢ଼ିବା ନଚେତ୍ ଲେଖିବା। ଏଇ ହେଲା ରାତି ବେଳାର କାମ। ମା'ଙ୍କର ଟିକିଏ ଟିକିଏ କଥାରେ ଗାଳି, ବାବା ମଧ୍ୟ ବେଳେ ବେଳେ ଚିଡ଼ି ଚିଡ଼ି ହୁଅନ୍ତି। ମୁଁ ଖେଳିବାକୁ ଗଲାବେଳେ ସାନ ଭଉଣୀ ଦି'ଜଣ ଯେ ବାବାଙ୍କୁ କହି ଦିଅନ୍ତି, ସେଥିଲାଗି ସେମାନଙ୍କୁ ଶତ୍ରୁ ପରି ମନେ ହୁଏ। ମୁଁ ଏଥିଯୋଗୁଁ ବେଳେ ବେଳେ ତାଙ୍କୁ ଗାଳି ଦିଏ, ମାରେ। ଏହାର ପ୍ରତିଫଳ ସ୍ୱରୂପ ମା' ମୋତେ ବେଳେ ବେଳେ ମାରନ୍ତି, ଗାଳି ଦିଅନ୍ତି। ମୋର ମନେ ଅଛି-ଥରେ ମୋର ସାନ ଭଉଣୀ ବୁଢ଼ୀ ମାଉସୀ ସହିତ କଳି କରି ତାକୁ ମାରିବା ଯୋଗୁଁ ମା' ରାଗରେ ଗୋଟାଏ ଲୁହାର ଚୂଲି ଫୁଙ୍କା ନଳରେ ମୋତେ ପାହାରେ ପକେଇଲେ ଯେ ମୋ ବାଁ ପାଖର ବେକର ହାଡ଼, ଯା'କୁ collar bone ବା clavicle କୁହାଯାଏ, ଭାଙ୍ଗିଗଲା। ସେ କଥା କିଏ ବୁଝୁଛି? ସେ ଜାଗାଟା ଦରଜ ହେଲା, ଫୁଲିଲା, ପୁଣି କେତେଦିନ ପରେ ଭଲ ହେଇଗଲା। ସେହି ହାଡ଼ ଭାଙ୍ଗି ଆପଣା ଛାଏଁ ଯୋଡ଼ି ହେଇଗଲା, ବିନା ଚିକିତ୍ସାରେ।

କୌଣସି ଔଷଧି ବ୍ୟବହାର ନକରି ସେ ହାଡ଼ ଭାଙ୍ଗି ଆପେ ଆପେ ଯୋଡ଼ି ହବା କଥା ପରେ ଜାଣି ପାରିଲି ।

ରାତିବେଳା ଯାହା ବହି ପଢ଼େ କି ଲେଖେ ମୁଁ ଅଲଗା ଲଣ୍ଠନ ନେଇ ବସି ପାରିବି ନାହିଁ । ଯେଉଁଠି ଆଲୁଅ ଜଳୁଥିବ, ସେଠି ଯାଇ ମୋତେ ବହି ପଢ଼ିବାକୁ ହବ କିମ୍ବା ଲେଖିବାକୁ ହବ । ଲେଖିଲେ ତ ପୁଣି ଗାଳି । ବାବା ବେଳେ ବେଳେ ଗାଳି ଦିଅନ୍ତି-ମୁଣ୍ଡରେ ତ କିଛି ନାହିଁ, କ'ଣ ଏତେ ଲେଖା ହଉଛି ?

ମୃଣାଳ ଘରକୁ ଯିବା ଦ୍ୱାରା ମୋର ଗୋଟାଏ ଭାରି ସୁବିଧା ହେଲା । ମୃଣାଳ ଘର ଭିତରକୁ ଯାଇ ପାରେନା । ମୃଣାଳର ସ୍ୱତନ୍ତ୍ର ଗୋଟିଏ ପଢ଼ା ଘର ଥାଏ, ସେଠି ମୃଣାଳର ପଢ଼ିବା ଏବଂ ଶୋଇବା ପାଇଁ ସବୁ ବ୍ୟବସ୍ଥା ହୋଇଥାଏ । ଠିକ୍ ପଢ଼ା ଘର ଆର ପଟେ ତା'ର ଜେଜେ ଥାନ୍ତି । ସେ ଜଣେ ଅବସରପ୍ରାପ୍ତ ଉଚ୍ଚପଦସ୍ଥ ଇଞ୍ଜିନିୟର । ଯେଉଁଦିନ କୌଣସି କାରଣରୁ ମେଡ଼ିକାଲ ପଡ଼ିଆରେ football ଖେଳ ବନ୍ଦ ହୁଏ, ମୁଁ, ପ୍ରିୟ ଏବଂ ଅନ୍ୟ ସାଙ୍ଗ କେତେକ ଯାଇ ତା' ପଢ଼ା ଘରେ ଜୁଟୁ, ହସ, ଗପ ଚାଲେ । ଯଦି ଅତି ଗୋଳମାଳ କରୁ, ତା'ର ଜେଜେ ସେ ପଟୁ ପାଟି କରନ୍ତି । ବେଳେବେଳେ ମୃଣାଳର ପଢ଼ା ଘର ଭିତରକୁ ପଶି ଆସନ୍ତି । ସେ ପାଟି କଲାବେଳକୁ ମୃଣାଳ ଆମକୁ ସବୁ ସେ ଘର ଭିତରେ କେତେକ ଜାଗାରେ ଲୁଚି ଯିବାକୁ କହେ । ଆମେ ଲୁଚି ଯାଉ । ମୃଣାଳ ଖଣ୍ଡେ ବହି ମେଲେଇ ଭଲ ପିଲା ପରି ପଢ଼ିବା ଭଙ୍ଗିରେ ବସି ପଢ଼େ । ମୃଣାଳର ଜେଜେ ପଶି ଆସି ପଚାରନ୍ତି-ପଢୁଛ ? ହଉ ପଢ଼ ପଢ଼ । ଆଉ କାହା ପାଟି ଶୁଣା ଯାଉଥିଲା ? ମୃଣାଳ ଭଲ ପିଲା ପରି ଠିଆ ହେଇ ନମ୍ର ଭାବରେ ଉତ୍ତର ଦିଏ-କାହିଁ କେହି ତ ନାହାନ୍ତି ।

ସେତେବେଳେ ଆମେ ସେଇ ଘର ଭିତରେ ଲୁଚିଥାଉ । ମୃଣାଳର ଜେଜେ ଚାଲିଗଲେ ଆମେ ପୁଣି ଭୂଇଁ ଫୁଟି ବାହାରିଲା ପରି ଯେ ଯା ଜାଗାରୁ ବାହାରି ପଡୁ । ପୁଣି ଚାଲେ ଗପ, ହସ, ହଟ୍ଟଗୋଳ । ମୃଣାଳ ଘରେ ବହୁ କାଳରୁ ଅନେକ ବଙ୍ଗଳା, ଇଂରାଜୀ ବହିଥିଲା, ଗୋଟିଏ ଛୋଟ ଧରଣର ଲାଇବ୍ରେରୀ ପରି । ସେଥିରେ ପୁଣି ଅନେକ ପୁରୁଣା ବଙ୍ଗଳା ପତ୍ରିକା ମଧ୍ୟ ଥିଲା । ସେ ସବୁ ଆଉ ପ୍ରକାଶ ପାଉନାହିଁ । ମୁଁ ମୃଣାଳକୁ କହି ଖଣ୍ଡିଏ ଖଣ୍ଡିଏ ବହି ଘରକୁ ଆଣିଲି । ମୃଣାଳ ଲୁଚେଇ ମୋତେ ସେ ସବୁ ବହି ଦବାକୁ ଆରମ୍ଭ କଲା । ମୋତେ ଭାରି ଆନନ୍ଦ ଲାଗିଲା । ବହି ସବୁ ହେଲା-ବଙ୍ଗର ଯେତେ ବଡ଼ ବଡ଼ ଲେଖକ ଆଉ କବିଙ୍କ ଗ୍ରନ୍ଥାବଳୀ । ମୃଣାଳ ପାଖରୁ ପ୍ରଥମେ ମୁଁ ବଙ୍ଗର ଖ୍ୟାତନାମା ଔପନ୍ୟାସିକ ବଙ୍କିମଚନ୍ଦ୍ରଙ୍କ ଗ୍ରନ୍ଥାବଳି ଆଣି ପଢେ । ସେ ସବୁ ଉପନ୍ୟାସକୁ ମୁଁ ଏକ ନିଃଶ୍ୱାସରେ ପଢ଼ିବାକୁ ଆରମ୍ଭ କଲି, ଯେମିତି ପାଠ୍ୟପୁସ୍ତକ ପଢ଼ିବା ପରି । ସେ କି ଆନନ୍ଦ ଉପଭୋଗ କଲି । ମୁଁ ତ ଆଖି କିଆରିରେ ପଶି ଗଲି, କି ଚମତ୍କାର ଲେଖା । ମୁଁ ମୃଣାଳ ନିକଟରୁ ଯେଉଁ ବହି ଆଣେ, ଖୁବ୍ ସାବଧାନରେ ପଢ଼ି ତାକୁ ଫେରେଇ ଦିଏ । ପୁଣି ଖଣ୍ଡେ ଆଣେ । ଇମିତି ମୃଣାଳ ଯୋଗୁଁ ଅନେକ ଗୁଡାଏ ବହି ପଢ଼ିବାର ସୁଯୋଗ ପାଇଲି । ଖାଲି ବଙ୍କିମ ଚନ୍ଦ୍ରଙ୍କର ଲେଖା ନୁହେଁ ଆହୁରି ଅନେକ ଲେଖକଙ୍କ ଲେଖା, ଅନେକ ପୁରାତନ ପତ୍ରିକା, ନୂତନ ପତ୍ରିକା ଆଣି ପଢ଼ିଲି । ମୋତେ ଯେମିତି ଗୋଟାଏ ବହିର ଖଣି ମିଳିଗଲା । ସବୁ କିନ୍ତୁ ମୃଣାଳ ଗୁପ୍ତ ଭାବରେ ମୋତେ ଦିଏ, ତାଙ୍କର ଯେଉଁ ଘର ଲାଇବ୍ରେରୀ, ସେ ତା'ର ଜେଜେଙ୍କର ଦାୟିତ୍ୱରେ ଥାଏ । ମୃଣାଳ କୌଣସି ପ୍ରକାରେ ତା'ର ଜେଜେର ପରୋକ୍ଷରେ କଞ୍ଚି ଆଣି ସେ ଲାଇବ୍ରେରୀ ଖୋଲି ବହି ଆଣି ମୋତେ ଦିଏ । ମୋର ତ ପାଠ ପଢ଼ା ନଥାଏ । ଦିନ ବେଳା, ରାତି ବେଳା ବଜାର ସଉଦା କରେ । ଚାରିଟା ବେଳେ ଖେଳେ । ଆଉ ଅବସର ବେଳେ ଯେତେ ସବୁ ବଙ୍ଗଳା ଗ୍ରନ୍ଥାବଳି ପଢ଼େ ।

କିଛିଦିନ ପରେ ଇମିତି ହେଲା-ମୁଁ ତ ସ୍କୁଲକୁ ଯାଉ ନ ଥାଏ । ମୃଣାଳ, ପ୍ରିୟ ସ୍କୁଲକୁ ଯାଉଥାନ୍ତି । ମୃଣାଳ ତାଙ୍କ ସ୍କୁଲ ଲାଇବ୍ରେରୀରୁ ବହି ଆଣେ ଆଉ ପ୍ରିୟ ତାଙ୍କ ସ୍କୁଲରୁ ବହି ଆଣେ । ବହି ସବୁ ହେଲା-ଭ୍ରମଣ ବୃତ୍ତାନ୍ତ, ଜୀବନୀ, ଗଳ୍ପ ଏବଂ ଉପନ୍ୟାସ ଇତ୍ୟାଦି । ମୃଣାଳ କିମ୍ବା ପ୍ରିୟ ଯେ କେହି ବହି ଆଣିଲେ, ଆମେ ତିନିହେଁ ତାକୁ ପଢୁ । ଛୁଟିଦିନଗୁଡାକରେ ମୃଣାଳ, ପ୍ରିୟ

ମୋ ଘରକୁ ଚାଲି ଆସନ୍ତି । ମୃଣାଳ ବହି ପଢ଼େ, ମୁଁ ଓ ପ୍ରିୟ ଶୁଣୁ । ବହିସବୁ ମୋରି ପାଖରେ ରଖିଯାନ୍ତି । ସେମାନେ ନଆସିଲେ ମୁଁ ଏକା ଏକା ପଢ଼ି ସାରିଦିଏ । ଅଧିକାଂଶ ବଙ୍ଗଳା ବହି ।

ଏଇ ସବୁ ବହି ପଢ଼ି ପଢ଼ି ମନରେ ଆଗ୍ରହ ଜନ୍ମେ । ଲେଖିବି, ଲେଖେ, ଯାହା ଲେଖେ ସବୁ ଓଡ଼ିଆରେ । ଆଉ ମୃଣାଳ, ପ୍ରିୟକୁ ପଢ଼ି ଶୁଣାଏ । ମୃଣାଳ ମୋତେ ବରାବର ପ୍ରବର୍ତ୍ତାଏ-ତୁ ବଙ୍ଗଳାରେ ଲେଖେ । କିନ୍ତୁ ମୋତେ ଓଡ଼ିଆରେ ଲେଖିବାକୁ ଭଲ ଲାଗେ । ମୃଣାଳଙ୍କ ଘରେ ସମସ୍ତଙ୍କର ଚାଲିଚଳଣ ନବାଗତ ବଙ୍ଗାଳୀଙ୍କ ପରି । ଯଦିଓ ସେମାନେ ଓଡ଼ିଶାରେ ବହୁତ ଦିନର ଅଧିବାସୀ, ତେବେ ଆମ ପରି ପୁରାତନ ବାସିନ୍ଦା ନୁହନ୍ତି । ତଥାପି ସେମାନେ ଭଲ ଭାବରେ ଓଡ଼ିଆ ବୁଝନ୍ତି ଏବଂ ଓଡ଼ିଆରେ କଥାବାର୍ତ୍ତା କରିପାରନ୍ତି ।

ଇମିତି କେତେଦିନ ଅନ୍ୟାନ୍ୟ ବଙ୍ଗଳା ବହି ପଢୁ ପଢୁ ପ୍ରିୟ ବଙ୍ଗଳାର ତତ୍‌କାଳୀନ ବିଖ୍ୟାତ ଡ଼ିଟେକ୍‌ଟିଭ ଉପନ୍ୟାସ ଲେଖକ ପାଞ୍ଚକଡ଼ି ଦେଙ୍କର ଖଣ୍ଡେ ଦୁଇ ଖଣ୍ଡ ଡ଼ିଟେକ୍‌ଟିଭ ଉପନ୍ୟାସ ଆଣି ପହଁଚେଇଲା । ଆମେ ତିନିହେଁ ପଢ଼ିଲୁ । ଡ଼ିଟେକ୍‌ଟିଭ ଉପନ୍ୟାସ ଆହୁରି ଭଲ ଲାଗିଲା । ସେଇଠୁ ଖୋଜା ହେଲା-ଆଉ କେଉଁଠି ପାଞ୍ଚକଡ଼ି ଦେଙ୍କର ଡ଼ିଟେକ୍‌ଟିଭ ଉପନ୍ୟାସ ମିଳିବ । ମୃଣାଳ, ପ୍ରିୟ ଆହୁରି ପାଞ୍ଚକଡ଼ି ଦେଙ୍କର ଉପନ୍ୟାସ ଆଣିଲେ । ମୁଁ କେତେ ଖଣ୍ଡ କଲିକତାରୁ ମଗେଇ ଆଣିଲି । ଚାଲିଲା ଡ଼ିଟେକ୍‌ଟିଭ-ଉପନ୍ୟାସ ପଢ଼ା । ଆମେ ତିନିହେଁ ଡ଼ିଟେକ୍‌ଟିଭ-ଉପନ୍ୟାସ ପଢ଼ି ପଢ଼ି, ନିଜେ ଜଣେ ଜଣେ ଡ଼ିଟେକ୍‌ଟିଭ ପାଲଟିଗଲୁ । ଆମ ସାଙ୍ଗ ପିଲାଙ୍କ ଭିତରେ କିଏ କ'ଣ କରୁଛି, ଧଇଲୁ । ପ୍ରତ୍ୟେକ କଥାରେ ଆଗ୍ରହ ଜନ୍ମିଲା-ଯାହାର ଯାହା ଗଲତି, କେମିତି ଧରିବା ।

ପାଞ୍ଚକଡ଼ି ଦେଙ୍କ ପରେ ସେମିତି ଦୀନେନ୍ଦ୍ର କୁମାର ରାୟଙ୍କ କେତେକ ଡ଼ିଟେକ୍‌ଟିଭ ଉପନ୍ୟାସ ପଢ଼ିଲୁ । ନିଜେ ଗୋଟାଏ ଗୋଟାଏ ଗୁଇନ୍ଦା ପାଲଟି ଯାଇ କେତେକ ପିଲାଙ୍କର ଗଲତି ମଧ ଧଇଲୁ । ଡ଼ିଟେକ୍‌ଟିଭ ଉପନ୍ୟାସ ପଢୁ ପଢୁ ମୋର ମନ ଡ଼ାକିଲା-ମୁଁ ଗୋଟାଏ ଡ଼ିଟେକ୍‌ଟିଭ ଉପନ୍ୟାସ ଲେଖିବି । ଲେଖା ଆରମ୍ଭ କଲି । ମୁଁ ପ୍ରିୟଙ୍କ ଘରକୁ ଗଲେ, ତାଙ୍କ୍‌ ବାହାର ଘରେ ଯାଇ ବସି ପ୍ରିୟ ସାଥିରେ ଗପ କରି ଆସେ । ତାଙ୍କ ଘର ଭିତରକୁ ଯାଏନା । ଦିନେ ମୁଁ ଯେଉଁ ଡ଼ିଟେକ୍‌ଟିଭ ଉପନ୍ୟାସ ଲେଖୁଥିଲି, ତାକୁ ନେଇ ପ୍ରିୟର ବାହାର ଘରେ ବସି ପ୍ରିୟକୁ ପଢ଼ି ଶୁଣଉଛି ତା'ର ବାବା ଯେ ଉଢ଼ାଳରେ ଲୁଚି ଶୁଣୁଛନ୍ତି ଆମେ ଜାଣୁନା, ସେ ଉପନ୍ୟାସର ଗୋଟାଏ ଜାଗାରେ ଆଧୁନିକ ନାରୀମାନଙ୍କୁ ସମାଲୋଚନା କରି ଲେଖିଥାଏ । ସେଇ ଅଂଶଟା ଯେମିତି ପ୍ରିୟକୁ ଶୁଣେଇଛି, ତା'ର ବାବା ଆମ ସାମନାକୁ ବାହାରି ଆସି ପଚାରିଲେ, ଏ ଉପନ୍ୟାସ କିଏ ଲେଖିଛି ? ପ୍ରିୟ କହିଲା ପୁଳିନ ଲେଖିଛି । ପ୍ରିୟର ବାବା ମୋତେ କହିଲେ, ତୁମ ଭିତରେ କ'ଣ ଅଛି ମୁଁ ଆଜି ବୁଝି ପାରିଲି । ଭଲ, ଏମିତି ଲେଖାଲେଖି କର । ତୁମେ ପିଲା ହେଲେ ମଧ ତୁମ ଭିତରେ ଏ ଜିନିଷ ଅଛି ମୁଁ ଜାଣି ନଥିଲି । ଆସ, ଘର ଭିତରକୁ ଆସ ।

ପ୍ରିୟର ବାବା ମୋତେ ସେଦିନ ଘର ଭିତରକୁ ଡ଼ାକି ନେଇ ପ୍ରିୟର ମା'ଙ୍କ ସହିତରେ ପରିଚୟ କରାଇ ଦେଲେ । ସେଦିନ ପ୍ରଥମାଷ୍ଟମୀ ଥିଲା । ମୋତେ କିଛି ଖାଇବାକୁ ଦବା ପାଇଁ ପ୍ରିୟର ମା'ଙ୍କୁ କହିଲେ । ସେଦିନ ପ୍ରିୟ ଘରେ ମୁଁ ପ୍ରଥମ କରି କେତେକ ପିଠା, ଖିରି ଆଉ ତରକାରି ଖାଇଲି । ପ୍ରିୟର ମା'ଙ୍କୁ ଦେଖିଲି, ଅତି ସ୍ନେହଶୀଳା, ଅତି ନମ୍ରସ୍ୱଭାବା । ମୋତେ ଠିକ୍‌ ନିଜର ପୁଅ ଭଳି ଆଦରଯତ୍ନ କଲେ, ପ୍ରିୟର ବାବା ମୋ ବିଷୟରେ ପ୍ରିୟର ମା'ଙ୍କୁ ଅନେକ ଦୁଃଖ କରି କହିଲେ ଯେ, ମୁଁ ପଢ଼ିପାରିଲି ନାହିଁ, ପଢ଼ିଥିଲେ ଅନେକ ପଢ଼ିଥାନ୍ତି । ଏ ପିଲାକୁ ପଢ଼େଇବା ଦରକାର ।

ସେହିଦିନ ମୁଁ ବାବା, ମା'ଙ୍କୁ ନପଚାରି ଅନ୍ୟ ଘରେ ଖାଇଲି । ସେ ପର୍ଯ୍ୟନ୍ତ ମୁଁ ଅନ୍ୟ ଲୋକ ଘରେ ଖାଇ ନଥିଲି । ବାବା, ମା ଯେଉଁଠି ଖାନ୍ତି ମୁଁ ଖାଏ । ଆମର ବନ୍ଧୁବାନ୍ଧବଙ୍କ ଛଡ଼ା ମୁଁ ଅନ୍ୟ କାହାରି ଘରେ ଖାଇ ନଥିଲି । ସେହିଦିନ ହେଲା ପ୍ରଥମ ଜଣେ ସାଙ୍ଗ ଘରେ ଖାଇବା, ମୋର ଜାତିର ବାରଣ ବହୁତ ଥିଲା । ଅନ୍ୟ

ଘରେ ଖାଇବି, କାଳେ ଜାତିଯିବ, ଏ ମୋର ବରାବର ଭୟ ଥିଲା । ପ୍ରିୟ ଘରେ ଖାଇବା କଥା ବାବା, ମା'ଙ୍କୁ କହିଲି । ବାବା, ମା ବିଶେଷ ସେମିତି କିଛି ବିରକ୍ତ ହେଲେ ନାହିଁ । କେବଳ କହିଲେ, ତୁଟା କୋଉ ଜାତିରେ ରହିବୁ ଯେ? ତୁ ତ ସେମିତି କେତେ ଘରେ ଖାଇବୁ ।

ତା'ପରେ ଅନେକବାର ପ୍ରିୟଙ୍କ ଘରକୁ ଯାଇଛି । ପ୍ରିୟର ମା'ଙ୍କର ଆଦରଯତ୍ନ, ମୋତେ ବିଶେଷ ଆକୃଷ୍ଟ କଲା । ପଢ଼ି ନ ପାରି ମନ ଦୁଃଖରେ ଥାଏ । ଏଣେ ନିଜ ଘରେ ପଶିଲେ, ମା'ଙ୍କର ଗାଳି । ବଡ଼ ଅଶାନ୍ତି ଭୋଗୁଥାଏ । କେବଳ ପ୍ରିୟର ମା'ଙ୍କ ପାଖରେ ବସିଲେ ମନରେ ଟିକିଏ ଶାନ୍ତି ପାଏ । ପ୍ରିୟର ବାବା, ମା ଉଭୟେ ମୋତେ ଭାରି ଭଲ ପାଇଲେ । ମୋର ଏ ଦୁଃଖ ବେଳେ ପ୍ରିୟର ମା' ମୋତେ ଅନେକ ଆଶ୍ୱାସନା ଦେଇଛନ୍ତି । ପ୍ରିୟର ମା' ମୋତେ କହନ୍ତି, ପୁଅ ଦୁଃଖର ବେଳ ସବୁଦିନେ ରହିବ ନାହିଁ । ପୁଣି ଭଲ ବେଳ ଆସିବ । ବର୍ତ୍ତମାନ ତ ବାବାଙ୍କୁ ଗୋଟାଏ ଖରାପ ବେଳ ପଡ଼ିଛି, କ'ଣ କରିବ? ଧୈର୍ଯ୍ୟ ଧରି ରହିଲେ, ସବୁ କଥା ପୁଣି ଠିକ୍ ହେଇଯିବ ।

ପ୍ରିୟର ଘରକୁ ଯିବା ଆସିବା ଦ୍ୱାରା ପ୍ରିୟର ମୋର ବନ୍ଧୁତ୍ୱ ଆହୁରି ବଢ଼ିଗଲା । ମୃଣାଳର ଘରକୁ କେବେ ମୁଁ ଯାଇ ନାହିଁ । କେବଳ ମୃଣାଳର ପଢ଼ା ଘରକୁ ଯାହା ଯିବା ଆସିବା କରେ । ମୃଣାଳ ପିଲାବେଳୁ ମାତୃହୀନ । ତା'ର ଜେଜେ ହିଁ ତା'ର ଦାୟିତ୍ୱ ନେଇ ନିଜ ପାଖରେ ରଖି କଟକରେ ପଢ଼ଉଥଲେ । ତାଙ୍କର ନିଜ ଘର ହେଲା ବଙ୍ଗଦେଶର ବର୍ଦ୍ଧମାନ ଜିଲ୍ଲା । ଆମର ପୂର୍ବ ପୁରୁଷ ମଧ ବର୍ଦ୍ଧମାନ ଜିଲ୍ଲାରୁ ପୂର୍ବେ ଓଡ଼ିଶାକୁ ଆସିଥିଲେ । ଏଥି ଯୋଗୁଁ ମୃଣାଳର ମୋର ବନ୍ଧୁତ୍ୱ ଆହୁରି ଯେମିତି ଘନୀଭୂତ ହେଇଥାଏ । ମୋର ଏ ଦୁଃଖ ବେଳରେ ମୃଣାଳ, ପ୍ରିୟର ସଙ୍ଗ ମନରେ ଅନେକ ଆନନ୍ଦ ଦେଉଥାଏ । ଯେତେ ସମୟ ବାହାରେ ରହେ ଭଲ, ଘରେ ପଶିଲେ ବିପଦ । ମା'ଙ୍କର ଗାଳି, ବାବାଙ୍କର ତାଚ୍ଛଲ୍ୟ ଭାବ । ମୁଁ ଯେମିତି ଗୋଟାଏ ଚାକର ପିଲାଟାଏ ଥାଏ । କେବଳ ବଜାର ସଉଦା କରିବା, ଘରେ ଖାଇବା, ଚାରିଟା ବେଳ ହେଲେ ଲୁଚି ଫୁଟବଲ ଖେଳିବାକୁ ଯିବା ଆଉ ବାକି ସମୟରେ ବହି ପଢ଼ିବା, ଲେଖିବା ଇତ୍ୟାଦି ।

ଥରେ ମନସ୍ତାପରେ ଯାଇ କଟକ ବଡ଼ ଡ଼ାକ୍ତରଖାନାର outdoorରୁ ମୋର ଗୋଡ଼ର ଗଣ୍ଠି ଦରଜ ପାଇଁ ଗୋଟାଏ ପ୍ରକାର ଔଷଧ ଆଣିଲି । ମୁଁ ଦେଖିଲି, ମୋତେ ଯେଉଁ ଧଳା ରଙ୍ଗର ଗୁଣ୍ଡ ଦେଲେ, ପାଣିରେ ଗୋଳି ଗଣ୍ଠିରେ କନା ବାନ୍ଧି ସେ ପାଣିକୁ ମଡ଼େଇବାକୁ କହିଲେ । ସେ ଗୁଣ୍ଡକୁ ଗୋଟାଏ ଆଲମାରିରୁ କାଢ଼ିଲେ । ସେ ଆଲମାରିର ଉପରେ ଲେଖାଥିଲା "ବିଷ" ।

ମୁଁ ସେ ଗୁଣ୍ଡକୁ ଆଣି ଭାବିଲି ଏ ଗୁଣ୍ଡ ତ ବିଷ, ଯାକୁ ଖାଇ ଆତ୍ମହତ୍ୟା କରିବି । ଇମିତି ଗାଳିଗୁଲଜ ଖାଇ ବଞ୍ଚିବା ଅପେକ୍ଷା ମରିଯିବା ଭଲ । ଘରେ ବାବା, ମା'ଙ୍କର ପରୋକ୍ଷରେ ସେ ଗୁଣ୍ଡକୁ ଗୋଟିଏ ପୁରୁଣା ପୋଷ୍ଟକାର୍ଡ଼ ଉପରେ ରଖି ପାଟିକି ଛାଟିବାକୁ ଟେକିଲି ପୁଣି ଭାବିଲି, ମୁଁ ତ ବାବା, ମା'ଙ୍କର ଗୋଟିଏ ପୁଅ, ମୁଁ ଯଦି ମରେ, ବାବା, ମା'ଙ୍କର ଅବସ୍ଥା କ'ଣ ହବ? ବାବାଙ୍କର ତ ଗୋଟାଏ ଖରାପ ବେଳ ପଡ଼ିଛି । ପୁଣି ସବା ସାନ ଭଉଣୀଟିର ମାୟା ମୋତେ ବିଷ ଖାଇବାରୁ ନିବର୍ତ୍ତେଇଲା । ସେ କ'ଣ କରିବ? ସବା ସାନ ଭଉଣୀକୁ ମୋତେ ବିଶେଷ ଭଲ ଲାଗୁଥିଲା । ସେ ଅତି ଛୋଟ ହେଇଥାଏ, ତା'ଉପର ଭଉଣୀକୁ ସେତେ ଭଲ ଲାଗେ ନା । ତା'ର ମୋର ଆଦୌ ପଡ଼େନା । ସବୁବେଳେ କଳିକରେ । ମା ତା ସପକ୍ଷରେ ରହି ମୋତେ ମାରନ୍ତି । ମୁଁ ଏକୁଟିଆ ବେଳେ ତାକୁ ମାରେ । ସେ ମା'ଙ୍କ ଆଗରେ ତାକୁ ମାରିବା କଥା କହିଲେ, ମୁଁ ପୁଣି ମା'ଙ୍କ ଠାରୁ ମାଡ଼ ଖାଏ ।

ସେଥର କ'ଣ ମନ ହେଲା, ଭଗବାନଙ୍କ ଦୟାରୁ ଆଉ ସେ ବିଷ ଗୁଣ୍ଡ ଖାଇଲି ନାହିଁ । ତାକୁ ଡ଼ାକ୍ତରଖାନାରେ ଯେମିତି କହେଇ ଥିଲେ, ସେମିତି ପାଣିରେ ଗୋଳେଇ, ଗୋଡ଼ରେ ମଡ଼େଇଲି । କିଛିଦିନ ପରେ ବାବା ଚାକିରୀ ଛାଡ଼ିଲେ । ଯେଉଁଦିନ ବାବାଙ୍କର ଚାକିରୀ ଛାଡ଼ିବା କଥା ତହିଁ ପୂର୍ବଦିନ ବାବା ଖାଲି ମଝିରେ ମଝିରେ କହି ହଉଥାନ୍ତି, ଆଜି ରାତି ପାହିଲେ, ଚାକିରୀ ସରିଲା । ମୁଁ ଶୁଣି ମୋତେ ଭାରି ଦୁଃଖ ଲାଗୁଥାଏ ।

## (୨)

ବାବା ଚାକିରୀ ଛାଡ଼ିଲେ । ବାବାଙ୍କର ଦରମା ଇତ୍ୟାଦି ସବୁ ବନ୍ଦ । ପେନ୍‌ସନ୍ ମିଳିବାକୁ ଅନେକ ଦିନ ଲାଗିବ । ବାବାଙ୍କର ହାତ ଏକବାର ଶୂନ୍ୟ । କେହି ମଧ ସାହାଯ୍ୟ କରିବାକୁ ନାହାନ୍ତି । ମୁଁ ତ ପାଠ ଛାଡ଼ି ବୁଲୁଥାଏ । ଯୋଡ଼ିଏ ସାନ ଭଉଣୀ, ବଡ଼ ଭଉଣୀ କେବଳ ବିଭା ହୋଇଥିଲେ ।

ବାବା ଚାକିରୀ ଛାଡିଲା ବେଳକୁ, ବାବାଙ୍କର ଯେଉଁ ଗୋରା ହାକିମ ସଙ୍ଗେ ମନୋମାଳିନ୍ୟ ଘଟିବା ଯୋଗୁଁ ବାବା ଶୀଘ୍ର ଛାଡ଼ିଲେ ସେ ବଦଳି ହୋଇ ଚାଲି ଗଲେଣି । ସେ ଗୋରା ହାକିମଙ୍କ ଜାଗାରେ ଜଣେ ବଙ୍ଗାଳୀ ହାକିମ ଆସିଥାନ୍ତି । ଆଗରୁ କହିଛି ସେତେବେଳେ P.W.D.ରେ ଅଧିକାଂଶ ବଙ୍ଗାଳୀ କର୍ମଚାରୀ । ସେଥିରୁ ଅଧିକାଂଶ ନବାଗତ ବଙ୍ଗାଳୀ । ଓଡ଼ିଶାର ବାସିନ୍ଦା ଖୁବ୍ କମ୍ । ଯେ ବଙ୍ଗାଳୀ ହାକିମ ଗୋରା ହାକିମଙ୍କ ଜାଗାରେ ଆସିଲେ, ସେ ଜଣେ ନବାଗତ ବଙ୍ଗାଳୀ । ଏଇ P.W.D.ରେ ସେତେବେଳେ ଯେତେ ନବାଗତ ବଙ୍ଗାଳୀ କର୍ମଚାରୀ ଥିଲେ ତାଙ୍କରି ଦ୍ୱାରାହିଁ କଟକର ମାଛୁଆବଜାର ବଢ଼େଇ ସାହିରେ "ବୀଣାପାଣି" କ୍ଲବ ପ୍ରତିଷ୍ଠିତ ହୋଇଥାଏ ।

ସେଇ ବୀଣାପାଣି କ୍ଲବରେ ଓଡ଼ିଆ, ବଙ୍ଗାଳୀଙ୍କ ସଂଘର୍ଷ ବେଳେ ବାବା ଓଡ଼ିଆଙ୍କ ସପକ୍ଷରେ ରହି ବୀଣାପାଣି କ୍ଲବକୁ ଚାନ୍ଦା ଦଉ ନଥିଲେ କି ସେଠିକି ଯାଉ ନଥିଲେ । ଏ କଥା ନବାଗତ ବଙ୍ଗାଳୀମାନେ ଜାଣିଥିଲେ । ବର୍ତ୍ତମାନ ଏଇ କାରଣରୁ P.W.D.ରେ ଯେତେ ନବାଗତ ବଙ୍ଗାଳୀ ସବୁ ବାବାଙ୍କର ବିରୁଦ୍ଧରେ ରହିଲେ । ଆଉ ଏଇ ନବାଗତ ବଙ୍ଗାଳୀମାନେ ହିଁ ସେତେବେଳେ P.W.D.ରେ ଅଧିକାଂଶ ଉଚ୍ଚ କର୍ମଚାରୀ ଥିଲେ ।

ଏଣୁ ବାବାଙ୍କର ସେତେବେଳେ ଭାରି ବିପଦର ବେଳ । ଅଧିକାଂଶ P.W.D.ର ନବାଗତ ବଙ୍ଗାଳୀ କର୍ମଚାରୀ ବାବାଙ୍କର ବିରୁଦ୍ଧରେ ରହି ଚେଷ୍ଟା କରୁଥାନ୍ତି ବାବା କେମିତି ପେନ୍‌ସନ୍ ନ ପା'ନ୍ତୁ । ବାବା ଏଇ ସବୁ କାରଣ ଯୋଗୁଁ ହାହୁତାଶ ହଉଥାନ୍ତି । ଚାକିରୀ କାଳରେ କିଛି ମଧ ସଞ୍ଚୟ କରି ନାହାନ୍ତି । ଯାହା security deposit ଥିଲା ସେ ମଧ ସରକାରଙ୍କ ହାତରେ, କେବେ ମିଳିବ ତା'ର ଥୟ ନାହିଁ । ପେନ୍‌ସନ୍ ମିଳିଲେ, ସେ security deposit କେତେ ହଜାର ଟଙ୍କା ମିଳିବାର କଥା । ମୋର ମନେ ହଉଛି-ତିନି ହଜାର ଟଙ୍କା ହବ କି କ'ଣ ? ଜେଠା ପୁଅ ବଡ଼ ଭାଇ, ଯା'କୁ ବାବା entrance ଯାଏଁ ପଢ଼େଇ ଥିଲେ । ଭାବିଥିଲେ-ତାଙ୍କର ଅସମୟରେ କେତେବେଳେ ସାହାଯ୍ୟ କରିବ । ସେ ସେତେବେଳେ ରେଙ୍ଗୁନରେ ଥାଇ ଭଲ ରୋଜଗାର କରୁଥାନ୍ତି । ବାବାଙ୍କ ସଙ୍ଗେ ତାଙ୍କର ଚିଠିପତ୍ର ନଥାଏ । ଜେଠାଙ୍କ ସହିତରେ ତାଙ୍କର ସେତେବେଳେ ଚିଠିପତ୍ର, ଟଙ୍କା ସାହାଯ୍ୟ କରିବା ଚାଲିଥାଏ । ଜେଠା ଯେତେବେଳେ ପେନ୍‌ସନ୍ ନେଲେ, ସେ କେତେମାସ ତାଙ୍କର ପେନ୍‌ସନ୍ ମିଳିବାକୁ ବିଳମ୍ବ ହେଲା । ସେ କେତେମାସ ଜେଠାଙ୍କୁ ବଡ଼ ଭାଇ ଟଙ୍କା ଦେଇ ଚଳେଇ ଥିଲେ । ବାବାଙ୍କ ବେଳକୁ ସେ ନିରବ । ବାବା ଯାହା ଆଶା କରିଥିଲେ, ବର୍ତ୍ତମାନ ବେଳକୁ ତା'ର ବିପରୀତ ଫଳ ହେଲା ।

ମୁଁ ଥରେ ନ ପଢ଼ିପାରି ହତାଶ ହୋଇ ବଡ଼ ଭାଇଙ୍କ ପାଖକୁ ଚିଠି ଲେଖିଥିଲି, ମୁଁ କେମିତି ପଢ଼ିବି ? ବଡ଼ଭାଇ ଉତ୍ତରରେ ଲେଖିଲେ, ତୁ ରେଙ୍ଗୁନ ଚାଲିଆ । ତୋତେ ଯେତେବେଳେ ରେଙ୍ଗୁନ୍‌କୁ ମୋ ସଙ୍ଗେ ଆସିବାକୁ କହିଥିଲି, ଆସିଲୁ ନାହିଁ କାହିଁକି ?

ମୁଁ ବଡ଼ଭାଇଙ୍କ ଚିଠି ପାଇ ନିରବ ରହିଲି । ବାବାଙ୍କର ପେନ୍‌ସନ୍ ମିଳିବାକୁ ପ୍ରାୟ ବର୍ଷେ ଡ଼େରି ହେଲା । ସେ ବର୍ଷଟା ଯେ କି କଷ୍ଟରେ ଚଳିଛି, ଆଜି ମଧ ମନେପଡ଼ିଲେ ଦୁଃଖରେ ଦେହ ଅବଶ ହୋଇଯାଏ । ସେତେବେଳେ କେବଳ ଧାର କରଜରେ ବାବା ସଂସାର ଚଳଉଥାନ୍ତି । ଅଳଙ୍କାର, ଜିନିଷପତ୍ର ବନ୍ଧା ପଡୁଥାଏ । କେତେକ ବିକ୍ରି ହଉଥାଏ । ବାବା ହାତ ଉଧାରି ଟଙ୍କା ମଧ ଆଣୁଥାନ୍ତି । ବାବାଙ୍କୁ ସମସ୍ତେ ଅତି ନୀରିହ ଭଲ ମଣିଷ ବୋଲି ଜାଣନ୍ତି । ଏଣୁ ଅନେକ ମଧ ଧାର ଦଉଥାନ୍ତି ।

ଇମିତି ଅବସ୍ଥା ହେଲା ଯେ ପ୍ରତିଦିନ ବାବା କୋଉଠୁ କେମିତି ଟଙ୍କା ଧାର କରି ଆଣିଲେ ମୁଁ ଯିବି ବଜାର ସଉଦା କରି ଆଣିବି। ତା'ପରେ ରୋଷେଇ ହବ ଆମେ ଖାଇବୁ। ତେବେ ସେତେବେଳେ ଶସ୍ତା ବେଳ। ଚାଉଳ ସେରକ ଛ'ପଇସା କିମ୍ବା ଅଣାଏ। ମୁଢ଼ି ପଇସାକୁ ଦି'ସେର, ବରା ପଇସାରେ ଦି'ଖଣ୍ଡ। ଗୋଟାଏ ଟଙ୍କାରେ ଅନେକ ଜିନିଷ କିଣି ହଉଥିଲା। ବାବାଙ୍କର ଚାକିରୀ କାଳରେ ତ ଆମେ ଦୈନିକ ଦୁଇବେଳା ଭାତ ସାଙ୍ଗରେ ଘିଅ ଖାଉଥିଲୁ। ସେ ଅଭ୍ୟାସ ତ ଥାଏ। ବର୍ତ୍ତମାନ ଉତ୍କଟ ଅଭାବ ବେଳେ ମଧ୍ୟ ଦୈନିକ ସଉଦା ଭିତରେ ଘିଅ କିଣାଟା ଥାଏ। ସେତେବେଳେ ଦି'ପଇସାକୁ ଗିନାଏ ଭଲ ଘିଅ। ଯେତେ ଯା ହଉ, ସେତେବେଳେ ଆମେମାନେ ଖାଇବା ଦିଗରେ ଅଭାବ ଅନୁଭବ କରି ନାହୁଁ। ପୂଜାରୀ ଚାକର ତ ନଥାନ୍ତି, ମା' ହାତେ ହାତେ ସବୁ କରୁଥାନ୍ତି। ମୁଁ ଏତେ ଛନ୍ନଛଡ଼ା ହେଇଗଲି ଯେ ଯଦି ବଜାରକୁ ଗଲି, ସଉଦା କିଣି ସିଆଡ଼େ ବଲ୍ ଖେଳି ବହୁତ ଡ଼େରିରେ ଘରକୁ ଫେରେ। ମା'ଇଆଡ଼େ ଅନେଇ ବସିଥାନ୍ତି। ମୁଁ ସଉଦା ଆଣିଲେ ରୋଷେଇ ହବ। ମୁଁ ଖେଳି ଖେଳି ଆସି ଘରେ ପହଁଚିଲା ବେଳକୁ ମା' ମାରି ଗୋଡ଼ାନ୍ତି। ଆଜିକାଲି ଯେଉଁଠି ମଙ୍ଗଳାବାଗରେ ରାମଚନ୍ଦ୍ର ଲଜିଂ ହାଉସ ହେଇଛି, ସେଠି ଗୋଟାଏ ବଗିଚା ଥିଲା। ସଡ଼କ ଆଡ଼କୁ ସେହି ବଗିଚାର ଗୋଟାଏ ଇଟା ପାଚେରୀ ଥିଲା। ପୁଣି ସେହି ପାଚେରୀ ସଡ଼କରୁ ଭିତରକୁ ଲମ୍ବି ଯାଇଥିଲା। ସେଠି ପାଖେ ଇଟା ପାଚେରୀ ଅନ୍ୟ ପାଖରେ ଜଣକର ଘରର କାନ୍ଥ। ଏଣୁ ସେ ଗୋଟାଏ ଗଳି ପରି ହେଇଥାଏ। ସେହି ଗଳିରେ ଟେନିସ୍ ବଲ୍‌କୁ ଗୋଡ଼ରେ ମାରି ଫୁଟବଲ୍ ପରି ଖେଳ ହୁଏ। ସେହି ଗଳିରେ ପ୍ରାୟ ୨୦ ଜଣ ପିଲା ଦୁଇଭାଗ ହେଇ ଖେଳୁ। ଏଇ ଗଳିର ଶେଷ ସୀମାକୁ ଗଲେ, ସେଠି ଗୋଟାଏ ଦୋତାଲା କୋଠା ଥିଲା। ଏବେ ମଧ୍ୟ ଅଛି। ତା'ର ଉପର ମହଲାରେ ଜଣେ ପ୍ରୌଢ଼ା ବଙ୍ଗାଳୁଣୀ ଶିକ୍ଷୟତ୍ରୀ ଥାନ୍ତି। ଆଉ ତଳ ମହଲାରେ ଗୋଟିଏ ବଖରାରେ ବିମଳକାନ୍ତି ଘୋଷ ଏବଂ ତା'ର ସାନଭାଇ ଅମଳକାନ୍ତି ଘୋଷ ରହୁଥାନ୍ତି। ଏ ଦୁଇ ଭାଇ ସେହି ଶିକ୍ଷୟତ୍ରୀଙ୍କ ତତ୍ତ୍ୱାବଧାନରେ ସେଠି ରହି ପଢୁଥାନ୍ତି। ବିମଳକାନ୍ତି ଘୋଷ ପି.ଏମ୍. ଏକାଡ଼େମୀର ୯ମ ଶ୍ରେଣୀର ଛାତ୍ର। ସେତେବେଳେ ସେ ଜଣେ ଆଦର୍ଶ ଛାତ୍ର ବୋଲି ପରିଚିତ। ପଢ଼ାରେ ଯେମିତି ଖେଳରେ ସେମିତି। ମୋ ସହିତରେ ତା'ର ପରିଚୟ ନଥିଲା। ପରିଚୟ ହେଲା। Mangalabag Boys' Union କ୍ଲବରେ ଯୋଗ ଦେଇ ବିମଳକାନ୍ତି ଘୋଷ Mangalabag Boys' Union କ୍ଲବର ସେତେବେଳେ captain ଥାଏ। ପ୍ରିୟ ଠାରୁ ତା'ର ଅନେକ ପ୍ରଶଂସା ଶୁଣିଲି, ତା'ପରେ ମୋ ସହିତରେ ମଧ୍ୟ ଘନିଷ୍ଠ ବନ୍ଧୁତା ହେଲା। ତା'ର ରହିବା ଘର ବଖରାକ ଆମର କେତେ ଜଣଙ୍କର ବେଶ ଆଡ୍ଡା ଜାଗା ହେଇଥାଏ। ମୁଁ ଅଧିକାଂଶ ସମୟ ବିମଳ ପାଖରେ ଯାଇ ବସେ। ବିମଳର ବେଶ୍ ଅମାୟିକ ବ୍ୟବହାର। କେତେବେଳେ ସକାଳେ, କେବେ ଛୁଟିଦିନ ଦେଖି ଦି'ପହରେ ବିମଳ ପାଖରେ ବସି ଗପ କରେ। ବିମଳ ଅନେକ ସମୟରେ ବଙ୍ଗଳାର ବିଖ୍ୟାତ ଔପନ୍ୟାସିକ ଶରତଚନ୍ଦ୍ର ଚଟ୍ଟୋପାଧ୍ୟାୟଙ୍କ ଉପନ୍ୟାସ ପଢ଼େ ମୁଁ ଶୁଣେ। ମୁଁ ଯାହା ଛବି ଆଙ୍କେ ବିମଳକୁ ଦେଖାଏ। ବିମଳ ମୋଠାରୁ ଖଣ୍ଡେ ଛବି ମାଗି ନେଇ ତାକୁ କାଚ ବନ୍ଧେଇ ତା' ରୁମ୍‌ରେ ଟଙ୍ଗେଇଲା। ବେଳେବେଳେ ବଙ୍ଗଳାର ବିଖ୍ୟାତ ନାଟ୍ୟକାର ଗିରୀଶଚନ୍ଦ୍ର ଘୋଷଙ୍କ ବହି ମଧ୍ୟ ପଢୁ। ମୋର ପାଠ ଛାଡ଼ି ମନସ୍ତାପରେ ବୁଲିବା ବେଳେ ବିମଳକାନ୍ତି ଘୋଷର ସାନ୍ନିଧ ମୋର ମନରେ ଅନେକ ଆନନ୍ଦ ଦେଇଛି। ଅନେକ ବହିପତ୍ରର ଆଲୋଚନା, ଖେଳର ଆଲୋଚନାରେ ସମୟ କଟିଛି।

ସାଙ୍ଗସାଥୀ ସମସ୍ତେ ପଢୁଛନ୍ତି। ମୁଁ ପାଠଛାଡ଼ି ବୁଲୁଛି। ଏ ବିଷୟ ଭାବିଲେ ମନଦୁଃଖରେ ଭାଙ୍ଗି ପଡୁଥାଏ। ଅନେକବାର ଲୁଚି ଲୁଚି କାନ୍ଦିଛି। ଘରେ ବାବା ମା'ଙ୍କୁ ଯଦି କହିଲି ମୋର ସ୍କୁଲରେ ନାଁ ଲେଖେଇ ଦିଅ ମୁଁ ପଢ଼ିବି। ଏତକ କହିବା ମାତ୍ରେ ମୋ ଉପରେ ହେଲା ଗାଳି। ବିଶେଷ ମା' ଗାଳି ଦିଅନ୍ତି। ତୁ ଟା ପଢ଼ିବୁ? ସେମିତି ଗଣ୍ଡାଏ ଖାଇ ପିଇ ପଡ଼ିଥା। ବାବା କିଛି ନ କହିଲେ ମଧ୍ୟ ବିରକ୍ତ ହୁଅନ୍ତି। ମୁଁ ଚୁପ୍ ରହେ। ବାବାଙ୍କର ସେତେବେଳେ ଅବସ୍ଥା ମଧ୍ୟ ନଥିଲା ମୋତେ ପଢ଼େଇବା ପାଇଁ। ଅନେକ ବାବାଙ୍କର ବନ୍ଧୁ ବାନ୍ଧବ,

ସାଙ୍ଗସାଥୀ ମଧ୍ୟରୁ ବାବାଙ୍କୁ କହିଲେ, ମୋତେ କଟକର କାୟସ୍ଥ ହଷ୍ଟେଲରେ ରଖେଇ ପଢ଼େଇବା ପାଇଁ । ସେଠି ଗରିବ ପିଲାଙ୍କୁ ଖାଇବା ଇତ୍ୟାଦି ସବୁ ଛାଡ଼ ଥାଏ ।

ବାବା, ମା ଏ କଥା ଶୁଣି କହନ୍ତି, ଲୋକେ କ'ଣ କହିବେ ? ଗୋଟିଏ ବୋଲି ପୁଅ, ତାକୁ ପଢ଼େଇ ପାରିଲା ନାହିଁ ଯେ କାୟସ୍ଥ ହଷ୍ଟେଲରେ ରଖି ଫ୍ରି ରେ ପଢ଼େଇଲା । ନାହିଁ, ସେ ହବ ନାହିଁ । ଯେତେବେଳେ ପଇସାର ସୁବିଧା ହବ ଯଦି ପଢ଼ିବ ତ ପଢ଼ିବ, ନଚେତ୍ ଫ୍ରି ରେ ରଖି ପଢ଼େଇବି ନାହିଁ ।

ସେତେବେଳେ ବଡ଼ ମାମୁଁ ଅବକାରୀ ବିଭାଗରେ ଚାକିରୀ କରୁଥାନ୍ତି । ସାନମାମୁଁ ଫରେଷ୍ଟ ବିଭାଗରେ ଅନୁଗୁଳରେ ଚାକିରୀ କରୁଥାନ୍ତି । ବଡ଼ ଭିଣେଇ ନାଜର । ଜେଠା ଅବସର ପ୍ରାପ୍ତ ଜିଲ୍ଲାଦାର, ପେନ୍‌ସନ୍ ପାଉଥାନ୍ତି । ବଡ଼ଭାଇ ରେଙ୍ଗୁନରେ ଚାକିରୀ କରୁଥାନ୍ତି । କାହାରି ମନ ହେଲା ନାହିଁ ଯେ ବାବାଙ୍କର ଏ ଅସୁବିଧା ବେଳେ କିଛି ସାହାଯ୍ୟ କରି ମୋତେ ପଢ଼େଇବା ପାଇଁ । ସମସ୍ତେ ନିରବ ରହିଲେ । ବରଂ ମୋର ପୂର୍ବତନ ଘରୋଇ ଶିକ୍ଷକ ଗଦାଧର ଘୋଷ, ସେ ସେତେବେଳେ ଖଡ଼ଗପୁରରେ ରେଳବାଇରେ କ'ଣ ଚାକିରୀ କରୁଥାନ୍ତି । ସେ ବାବାଙ୍କୁ ଚିଠି ଲେଖିଲେ, ଆପଣ ଯଦି ମନରେ କିଛି ନ ଭାବନ୍ତି, ଆପଣ ତ ବର୍ତ୍ତମାନ ହଇରାଣ ହଉଛନ୍ତି, ଆପଣ ଯଦି ରାଜି ହୁଅନ୍ତି, ତା'ହେଲେ ମୁଁ ପୁଲିନ୍‌କୁ ରେଳବାଇରେ fireman କାମରେ ରଖେଇ ଦେଇ ପାରିବି । ଆପଣ କିଛି ହେଲେ ଏ ହଇରାଣ ବେଳେ ସାହାଯ୍ୟ ପାଇ ପାରିବେ ।

Fireman ଚାକିରୀ ହେଲା, ଯା' ଶୁଣିଥିଲି train ଚାଲିଲା ବେଳେ ଇଞ୍ଜିନ୍ ଭିତରକୁ କୋଇଲା ଫୋପାଡ଼ିବା କାମ । ବାବା, ମା ଏଥିରେ ନାରାଜ ହେଲେ, କହିଲେ ସେ କୁଆଡ଼େ ଏ କାମକୁ ପାରିବ ? ଦୁର୍ବଳ ପିଲା, ତା'ପରେ ପୁଅକୁ ଯଦି ଅଭିକା ଖଡ଼ଗପୁର ପଠେଇ ଦଉଛି । ଲୋକେ କ'ଣ କହିବେ ? କହିବେ ଦୁଃଖ ବେଳେ ପିଲାଙ୍କୁ ବାଣ୍ଟି ଦେଲା, ନାହିଁ ସେ କାମ ହବ ନାହିଁ । ସେହିପରି ମାଷ୍ଟରଙ୍କୁ ଚିଠି ଦିଆଗଲା ।

ତାର କିଛି ଦିନ ପରେ ବଡ଼ ଭଉଣୀ କା' ହାତରେ ଖବର ଦେଲେ ପୁଲିନ୍‌କୁ କଉଠି ଖଣ୍ଡେ ଚାକିରୀରେ ରଖେଇ ଦେଲେ ଭଲ ହୁଅନ୍ତା । ଏତେ ହଇରାଣ ହଉଛନ୍ତି । ବାବା ଗୋଟାଏ କଉଠୁ ଖବର ଆଣିଲେ ଗୋଟାଏ ଚାକିରୀ ଖାଲି ଅଛି । ସେ ଚାକିରୀ ହେଲା, ସେତେବେଳେ କଟକରେ ପ୍ରଥମ କରି Singer companyର ସିଲେଇ ମେସିନ୍‌ର ଶାଖା ଖୋଲୁଥାଏ । ସେ ତା'ର ମେସିନ୍ ବିକ୍ରି ପାଇଁ ବ୍ୟବସ୍ଥା କରିଥାଏ ଯେ ପ୍ରଥମେ ୨୫ ଟଙ୍କା ଦେଲେ, ସେ କମ୍ପାନି ମେସିନ୍ ଦବ । ତା'ପରେ ମାସିକ କିସ୍ତି ବନ୍ଦିରେ ୫ଟଙ୍କା ଦେଇ ମେସିନ୍‌ର ପୂରା ଦାମ୍ ସୁଝିବାକୁ ହବ । ତାଙ୍କ ତରଫରୁ ଲୋକ ଆସି ସିଲେଇ କେମିତି କରିବାକୁ ହବ, ଘରେ ବସି ଶିଖେଇ ଦେଇ ଯିବେ । ଏତେ ସୁବିଧା ଦେଇ ମଧ ସେତେବେଳେ ଲୋକେ ଖଣ୍ଡେ Singer companyର ସିଲେଇ ମେସିନ କିଣିବାକୁ ରାଜି ହଉ ନଥାନ୍ତି । ଏଣୁ ତା'ର ଭଲ ପ୍ରଚାର ପାଇଁ ଜଣେ ଲୋକ ଗୋଟାଏ ମେସିନ୍ ନେଇ ଦୁଆରେ ଦୁଆରେ ପ୍ରଚାର କରିବ । ସେ ଲୋକ ସହିତରେ ଆଉ ଜଣେ ଲୋକ ତା' ସାଙ୍ଗରେ ସିଲେଇ ମେସିନ୍ ଧରି ଦୁଆରେ ଦୁଆରେ ବୁଲିବ । ଏ ହେଲା ଚାକିରୀ । ବାବା ଠିକ୍ କଲେ ମୋତେ ସେହି ସିଲେଇ ମେସିନ୍ ଧରି ବୁଲିବା ଚାକିରୀରେ ରଖେଇ ଦେବେ । ଏଣୁ ମୋତେ ଦିନେ ସନ୍ଧ୍ୟାବେଳେ କହିଲେ ଗୋଟାଏ ଦରଖାସ୍ତ ଲେଖିବା ପାଇଁ । ସେ ଦରଖାସ୍ତ ପୁଣି ଇଂରାଜୀରେ ଲେଖା ହବ । ଦରଖାସ୍ତ କେମିତି ଲେଖାହବ ? ବାବା ଡ଼ାକିବେ, ମୁଁ ଲେଖିବି । ମୋତେ ବାବା କହିଲେ କାଗଜ ଆଣ ତ । ଖଣ୍ଡେ ଦରଖାସ୍ତ ଲେଖିବାକୁ ହବ । ମୁଁ ବତେଇ ଦେବି ।

ମୁଁ ବାବାଙ୍କର ଏ କଥା ଶୁଣି ମୋର ଭାରି ରାଗ ହେଲା । ଭାବିଲି, ପଢ଼େଇ ପାରିଲେ ନାହିଁ । ଯିବି ମେସିନ୍ ଧରି ଦୁଆରେ ଦୁଆରେ ବୁଲିବା ପାଇଁ । ସେତେବେଳକୁ ପାଠ ଛାଡ଼ି ସାଙ୍ଗସାଥୀଙ୍କ ମେଳରେ ବୁଲି ବୁଲି ଛତରା ହେଲିଣି । ମୁହଁ କେତେକ ଖୋଲିଲାଣି । ଉଦ୍ଧତ ସ୍ୱଭାବ ଅଳ୍ପ କିଛି ବଢ଼ିଲାଣି । ବାବା ଜାଣି ନଥାନ୍ତି । ବାବା ପୁଣି

ଥରେ ଯେମିତି କହିଛନ୍ତି କାଗଜ ଆଣ, ଦରଖାସ୍ତ ଲେଖିବୁ ପରା । ମୁଁ ସାଙ୍ଗେ ସାଙ୍ଗେ ରାଗରେ ଜବାବ ଦେଲି, ମୁଁ ଦରଖାସ୍ତ ଲେଖିବି ନାହିଁ । ପଢ଼ାପଢ଼ି କୁଆଡ଼େ ଗଲା । ଯିବି ମେସିନ୍ ବୋହି ବୁଲିବା ପାଇଁ । ବାବା ମୋ ମୁହଁରୁ ପ୍ରଥମେ ଇମିତି ଜବାବ ଶୁଣି ଆଶ୍ଚର୍ଯ୍ୟ ହେଇ କହିଲେ, କିରେ ଏ କ'ଣ ଇମିତି ଜବାବ ଦେଲାଣି । ଯା' ମୁହଁରୁ ତ କଥା ବାହାରୁ ନଥିଲା । ଏ ସାଙ୍ଗସାଥୀରେ ପଡ଼ି ଯାର ମୁହଁ ଇମିତି ହେଲାଣି ।

ପୁଣି ଧମକ ଦେଲା ଭଳି କହିଲେ, ଆଣିଲୁ କାଗଜ । ମୁଁ ବାବାଙ୍କର ଧମକ ଶୁଣି ରାଗରେ ଖାଉଁ ମାଉଁ ହେଇ ଫରଦେ କାଗଜ ଆଣିଲି । ବାବା ଡ଼ାକିଲେ, ମୁଁ ଇଂରାଜୀରେ ଲେଖବି । ସେତେବେଳେ ଇଂରାଜୀ ଅକ୍ଷର ଲେଖିବା ମୋର ଆଉ ଅଭ୍ୟାସ ନଥାଏ । ଇଂରାଜୀ ଅକ୍ଷର ଲେଖିଲା ବେଳକୁ କଖାରୁ ମଞ୍ଜି ଭଳି । ଠିକ୍ ମତେ ଲେଖି ପାରୁ ନଥାଏ । ବାବା ଚିଡ଼ୁଥାନ୍ତି । ଯା ହଉ କୌଣସି ମତେ ଦରଖାସ୍ତର ପାଦ ପୂରଣ ହେଲା । ବାବା ମୋତେ ସାଙ୍ଗରେ ନେଇ କଟକର ଖଟବିନ୍ ସାହିକୁ ଚାଲିଲେ । ମୁଁ ବାଟରେ ରାଗରେ ଭାବି ଭାବି ଯାଉଥାଏ, ଏ କାମ ନ ହବ କି ।

ସତକୁ ସତ ସେଦିନ ଜହ୍ନ ରାତି ଥାଏ । ଖଟବିନ୍ ସାହିରେ ଜଣକ ଘରେ ପହଁଚିଲୁ । ସେହି ଭଦ୍ରଲୋକଙ୍କ କଲମରେ ମୋର ଚାକିରୀ ହବାର କଥା । ସେ ମୋତେ ଦେଖି ନାପସନ୍ଦ କଲେ । କହିଲେ, ଏ ସେ ମେସିନ୍ ବୋହି ପାରିବ ନାହିଁ । ଦୁର୍ବଳିଆ ପିଲା । ଏଣୁ ଚାକିରୀ ଆଉ ହେଲା ନାହିଁ । ବାଟେ ବାଟେ ଫେରିଲୁ । ମୁଁ ମନେ ମନେ ଭାବୁଥାଏ ଭଲ ହେଇଛି । ଚାକିରୀରେ ରହିଲେ ଚାରିଟା ବେଳେ ମେଡ଼ିକାଲ ପଡ଼ିଆରେ football ଖେଳି ପାରିବି ନାହିଁ ।

ଅବସ୍ଥା ଯେ କୋଉଠି ପହଁଚିଲାଣି ମୋତେ କ'ଣ ଜଣା ଅଛି ? ଖାଲି ଦୁଃଖ ଲାଗୁଥାଏ, ପଢ଼ି ପାରିଲି ନାହିଁ । ବାବା ଯୁଆଡ଼ୁ ସିଆଡ଼ୁ ଟଙ୍କା ଧାର କରି ଆଣିଲେ, ରୋଷେଇଟା ହେଲେ ପେଟେ ଖାଇ ଦେଇ ବଜାର ସଉଦା କରି ଦେଇ ଚାରିଟା ବେଳକୁ ମେଡ଼ିକାଲ ପଡ଼ିଆରେ ball ଖେଳିଲେ ହେଲା ।

ବାବା, ମା'ଙ୍କ ଉପରେ ମୋର ଭାରି ରାଗ ହଉଥାଏ । ଏମାନେ ମୋତେ ପଢ଼େଇଲେ ନାହିଁ । କେବଳ ପଢ଼େଇଲେ ନାହିଁ କହିଲେ କ'ଣ ହବ ? ମୋ ପ୍ରତି ସବୁ ଆଡ଼ୁ ଅବହେଳା । ମୋର ଯେ ମୁଣ୍ଡର ବାଳ ଗୁରାଏ ବଢ଼ିଲାଣି, କେମିତି ଖିଅର ହେବି ସେକଥା ଭାବୁ ନାହାନ୍ତି । ଲୁଗା ଯେ ଛିଣ୍ଡିଗଲାଣି, ଜାମା ଛିଣ୍ଡିଗଲାଣି କ'ଣ ପିନ୍ଧିବି ? ସେ କଥା ଭାବୁ ନାହାନ୍ତି । ମୁଁ ଯେ କ'ଣ ହେଉଥାଏ । କୋଉ ମହାଦଶା ଯେ ମୋର ସେତେବେଳେ ଭୋଗ ହଉଥାଏ । କି ଅବସ୍ଥା ଯେ ମୁଁ ଭୋଗୁଥାଏ, କେହି ମୋତେ ଅନେଇ ଯାଉ ନଥାନ୍ତି । ସେତେବେଳେ ମୁଁ ଖଣ୍ଡେ ଚଦର ପିନ୍ଧି, ଧୋତି ନୁହଁ ଖାଲି ଚଦର ଖଣ୍ଡେ ପିନ୍ଧି ଖାଲି ଦିହରେ କୁଆଡ଼େ କୁଆଡ଼େ ବୁଲିଛି । ମେଡ଼ିକାଲ ପଡ଼ିଆରେ ଖାଲି ଦିହରେ ଚଦର ଖଣ୍ଡେ ପିନ୍ଧି ଯାଇ ball ଖେଳିଛି । ଖେଳର ଲୋଭ ସମାଳି ପାରେ ନା, କ'ଣ କରିବି ? ପିଲାଏ ମୋତେ ଖାଲି ଦିହରେ ଯାଇ ball ଖେଳିବା ଦେଖି ଥଟ୍ଟା କରିଛନ୍ତି । ଶେଷକୁ ପିଲାଙ୍କର ଥଟ୍ଟା ସହ୍ୟ କରି ନ ପାରି, ଘରେ ଖୋଜି ଖୋଜି ନେଳି ରଙ୍ଗର କ୍ୟାନ୍‌ଭାସ୍ କନା ଖଣ୍ଡେ ପାଇଲି । ସେ ଟିକଏ ପତଳା କନା ଥାଏ । ତାକୁ ହାତେ ହାତେ କାଟି ଖଣ୍ଡେ ଫତେଇ ପରି କଲି । ସେ କନାରେ ମା' କେବେ ବଡ଼ି ପାରିଥିଲେ, ସେଥିରେ ଅଳ୍ପ ଅଳ୍ପ ବଡ଼ିର ଦାଗ ଥାଏ । ମୁଁ ଭାବିଲି, ଯାକୁ ପିନ୍ଧିଲେ କେହି ଜାଣି ପାରିବେ ନାହିଁ । ଏଣୁ ତାକୁ ପିନ୍ଧି ଯେଉଁଦିନ ମେଡ଼ିକାଲ ପଡ଼ିଆକୁ ଖେଳିବାକୁ ଗଲି, କେହି କିଛି କହିଲେ ନାହିଁ । କିନ୍ତୁ ଗୋଟାଏ ପିଲା ଥଟ୍ଟା କଲା, ଆରେ ଏଥିରେ ବଡ଼ି ପରା ହେଇଥିଲା । ମୋତେ ଭାରି ସରମ ଲାଗିଲା, କ'ଣ କରିବି ? ସେମିତି ନିର୍ଲଜ୍ଜ ଭାବରେ ଖେଳିଲି ।

ଏତିକିବେଳେ ଘରେ ଆହୁରି କେତେକ ଦୁର୍ଘଟଣା ଘଟିଲା । ଅଗଣାରେ ଯେଉଁ କୂଅଟା ଥିଲା ସେ କ୍ରମଶଃ ଭୁଷୁଡ଼ିବାକୁ ଆରମ୍ଭ କଲା । କ୍ରମେ ପୋତି ହେଇ ପଡ଼ିଲା । ମା' ଜଣେ ପଡ଼ିଶା ଘର କୂଅରୁ ପାଣି ଆଣି କାମ ଚଳେଇଲେ ।

ଏଇ ସମୟରେ ଘରେ ଆମର ଯେତେ ଗାଈ, ବାଛୁରୀ ଥିଲେ, ଗୋଟିଏ ଗୋଟିଏ ମରିବାକୁ ଆରମ୍ଭ

କଲେ । ଆଜି ଗୋଟାଏ ମଲା ତ, କାଲି ଗୋଟାଏ ମଲା । ଏମିତି ଅନେକ ଗୋରୁ ଫାଟୁଆ ରୋଗରେ ମଲେ । ତା'ପରେ ବର୍ଷା ଦିନ ଯେମିତି ଆରମ୍ଭ ହେଲା ଆଉ ଗୋଟାଏ ଦୁର୍ଘଟଣା ଘଟିବାକୁ ଆରମ୍ଭ ହେଲା । ଦୁର୍ଘଟଣା ହେଲା ଆମେ ଥୋରିଆସାହିରେ ଯେଉଁ ଭଡ଼ା ଘରେ ରହିଥିଲୁ ତା'ର ଉତ୍ତର ଆଡ଼କୁ କେତେକ ପଥର ତିଆରି କୋଠା ଘର ଥିଲା । ଦକ୍ଷିଣ ଆଡ଼େ କେତେକ ମାଟି ଚାଳ ଘର ଥିଲା ଆଉ ପୂର୍ବ ପଶ୍ଚିମ ଆଡ଼େ ଦି'ଟା ବଡ଼ ବଡ଼ ଚାଳିଆ ଥିଲା । ପଶ୍ଚିମ ଆଡ଼ ଚାଳିଆ ଢେଙ୍କିଶାଳ ଥିଲା, ପୂର୍ବ ପଟ ଚାଳିଆ ଗୁହାଳ ଥିଲା । ସେତେବେଳେ ଘରର ମାଲିକ ବୋଲି କେହି ନ ଥିଲେ । ମାଲିକ ମରି ଯାଇଥାଏ । ତା'ର ଗୋଟିଏ ପୋଷା ପୁଅ ଥିଲେ । ସେ ନାବାଳକ, ପିଲା, ଭଡ଼ା ନେଇ ରସିଦ୍ ଦବାକୁ କେହି ନାହାନ୍ତି । ଏଣୁ କେହି ଆଉ ଭଡ଼ା ନଉ ନଥାନ୍ତି ।

ଏତିକିବେଳେ ବାବାଙ୍କୁ ଅନେକ ଶିଖେଇଲେ, ଆପଣ ଏ ଘରକୁ ନିଜ ନାଁରେ କରେଇ ନିଅନ୍ତୁ । ବାବା ମନା କରି କହିଲେ, ମୁଁ ସେମିତି କାମ କରିବାକୁ ଯିବି ନାହିଁ । ମୋର ଗୋଟିଏ ପୁଅ, ମୋର ଅନିଷ୍ଟ ହେଇପାରେ ।

ବର୍ଷା ଯେମିତି ପ୍ରବଳ ଆରମ୍ଭ ହେଇଛି, ଘର ଛପର ହେଇ ନ ଥାଏ । ସେ ମାଟି ଘର ଆଉ ଚାଳିଆର କାନ୍ଥ ପଡ଼ିବାକୁ ଆରମ୍ଭ କଲା । ଦିନବେଳା, ରାତିବେଳା ଅନବରତ କାନ୍ଥ ଖଣ୍ଡେ ଖଣ୍ଡେ ଛିଡ଼ିବାକୁ ଆରମ୍ଭ କଲା । ରୋଷଇ ଘର ଭାଙ୍ଗି ଶୋଇଲା । ରାନ୍ଧି ଖାଇବାକୁ ଆଉ ଜାଗା ନାହିଁ । ବାବା ଆମର କାହାରିକି ଆଉ ସେ ଭଙ୍ଗା ରୋଷେଇ ଘରେ ପୂରେଇ ଦେଲେ ନାହିଁ । ମା'ଙ୍କୁ ମଧ ଛାଡ଼ିଲେ ନାହିଁ । ନିଜେ ହାତରେ ରୋଷେଇ କରି କୋଠା ଘରକୁ ବୋହି ଆଣନ୍ତି । ମା ବାଢ଼ି ଦିଅନ୍ତି, ଆମେ ସବୁ ଖାଉ । ମୋର ମନେ ଅଛି, ରାତିବେଳା ମୂଷଳ ଧାରାରେ ବୃଷ୍ଟି ହଉଛି । ବାବା ସେ ଭଙ୍ଗା ରୋଷଇ ଘରେ ରାନ୍ଧୁଛନ୍ତି । କାନ୍ଥ ସବୁ ଭୁସ୍‌ଭାସ୍ ହେଇ ବେଳେ ବେଳେ ପଡୁଛି ।

ଆମେ ଆତଙ୍କିତ ହେଇ ବାବାଙ୍କୁ ଡ଼ାକୁ, ବାବା ତୁମେ ଚାଲିଆସ, ରୋଷେଇ ନ ହେଲା ନାହିଁ । ବାବା ରୋଷେଇ ସାରି ସବୁ ବୋହି ନେଇ ଆସନ୍ତି । କେବେ କାହାରି ଉପରେ କାନ୍ଥ ପଡ଼ି ନାହିଁ । ଶେଷକୁ କାନ୍ଥ ପଡ଼ି ଘର ଚାଳିଆ ସବୁ ଭାଙ୍ଗି ପଦା ହେଇଗଲା । ଆଉ ରୋଷେଇ ଘର ବୋଲି କିଛି ରହିଲା ନାହିଁ । ଗାଈ, ବାଛୁରୀ ତ ମରି ଯାଇଥିଲେ, ଗୁହାଳ ଭାଙ୍ଗି ଶୋଇଲା । ଢେଙ୍କି ଟେକା ହେଇ ଆସି ଅନ୍ୟ ଗୋଟାଏ ଜାଗାରେ ରଖା ହେଲା । ସେ କେତେଦିନ ପାଇଁ କୁଟାକୁଟିରୁ ଅବସର ଗ୍ରହଣ କଲା ।

ତା'ପରେ କୋଠାଘରର ଗୋଟିଏ ବାରନ୍ଦାରେ ରୋଷେଇ ହବାର ବ୍ୟବସ୍ଥା କରାଗଲା । ସେଇ ଘର କେଡ଼େ ସୁନ୍ଦର ଦିଶୁଥିଲା । ବର୍ତ୍ତମାନ କ'ଣ ଦେଖାଗଲା !! ଚାରିଆଡ଼େ ଭଙ୍ଗା କାନ୍ଥ । ଅଧାଅଧା ଠିଆ ହେଇଛି । ଚାଳର ଛପର ସବୁ ଭାଙ୍ଗି କଙ୍କାଳ ପରି ବତା ବାଉଁଶ, ପଚା ନଡ଼ା ସବୁ ଚାରିଆଡ଼େ ବିଛେଇ ହେଇ ପଡ଼ିଛି । କି ବୀଭତ୍ସ ସେ ଦୃଶ୍ୟ । କି ଦୁଃଖଦାୟକ ! ଘରର ଆଉ ଆବରଣ ବୋଲି କିଛି ରହିଲା ନାହିଁ । ପଡ଼ିଶା ଘର ସବୁ ଦିଶୁଛି । ବାରିଆଡ଼େ ଦୂରରେ ବିଲବାରି ଦେଖା ଯାଉଛି । ଯେଉଁ ଘରେ ଦିନେ କାନ୍ଥ ହାଣି ବାରିପଟ ଦୁଆର ଖୋଲି ଚୋର ପଶିଥିଲେ ଆଜି ସେଠି ଆଉ ଚୋରଙ୍କୁ ବାଧା ବୋଲି କିଛି ନାହିଁ । ଚାରିଆଡ ମେଲା, ଘରେ ମଧ କିଛି ନାହିଁ । ଚୋର ବା ଆସିବେ କାହିଁକି ? ଯେଉଁମାନେ ଚୋରି କରିଥିଲେ, ସେମାନେ କ'ଣ ବର୍ତ୍ତମାନ ଦେଖୁନଥିବେ ? ଯେଉଁ ଘରେ ଲୁଚି ଛପି ପଶି ଧନ ନେଇ ଯାଇଥିଲେ, ସେ ଘରେ ଆଜି କିଛି ନାହିଁ । ଆମେ ସିନା ଚୋରକୁ ଚିହ୍ନି ନାହୁଁ, ଚୋରତ ଆମକୁ ଚିହ୍ନିଥିବେ । ଏଇ ବାବୁ, ଏଇ ବାବୁ ଘର । ବର୍ତ୍ତମାନ ଆଉ ଚୋର ଆମକୁ ଅନେଇବ କାହିଁକି ? ବର୍ତ୍ତମାନ କେବଳ ଜୀବନଟାଇ ସମ୍ବଳ ।

ମଣିଷକୁ ଯେତେବେଳେ ବିପଦ ପଡ଼େ, ସବୁ ଆଡୁ ଘୋଟି ଆସେ । ବର୍ତ୍ତମାନ ବନ୍ଧୁବାନ୍ଧବ, କୁଣିଆ କାହାରି ଦେଖା ନାହିଁ । ବାବା, ମା, ମୁଁ ଆଉ ଯୋଡ଼ିଏ ଭଉଣୀ । ଏଇ ହେଲା ସଂସାର । ଚାକର ନାହିଁ । ପୂଜାରୀ ନାହିଁ । ଶାରୀ ନାହିଁ, ଶୁଆ ନାହିଁ, କେବଳ ବିଲେଇ ଯୋଡ଼ିଏ ଥାନ୍ତି ।

ଏଇ ଦୁରବସ୍ଥା ଭିତରେ ଦଶହରା ପର୍ବ ପଡ଼ିଲା । ବାବାଙ୍କ ହାତରେ ଗୋଟିଏ ବୋଲି ଟଙ୍କା ନାହିଁ । ଏଇ ଦଶହରାରେ ଗାଁକୁ ଯିବା ପାଇଁ କେତେ ଖର୍ଚ୍ଚ ହଉଥିଲା,କେଡ଼େ ଆଡ଼ମ୍ବର ସହକାରେ ସବୁ ହଉଥିଲା, ବର୍ତ୍ତମାନ କିଛି ନାହିଁ । ସେ ବର୍ଷ ଆଉ ଗାଁକୁ ଯାଇ ହେଲା ନାହିଁ । ବାବା କେଉଁଠୁ ଟଙ୍କା ଧାର କରି ଆଣିଲେ । ସେ ବର୍ଷ ଦଶହରା କଟକରେ ହିଁ କଟିଲା । କାହାରି ଲୁଗାପଟା କିଛି ହେଇ ପାରିଲା ନାହିଁ । ଯାହା ସବୁ ପୁରୁଣା ଥିଲା ପିନ୍ଧିଲୁ । କେବଳ ସାନ ଭଉଣୀ ଦି'ଜଣଙ୍କ ପାଇଁ ଜଣକର ଶାଢ଼ୀ ଖଣ୍ଡେ ଆଉ ଜଣଙ୍କର ଫ୍ରକ୍ ଖଣ୍ଡେ କିଣା ହେଲା । ଆଉ କାହାରି କିଛି ନାହିଁ । ମୁଁ ସେହି ଚଦର ଖଣ୍ଡେ ପିନ୍ଧି ବୁଲୁଥାଏ । ସପ୍ତମୀ ପୂଜା ଦିନ ଚାରିଟା ବେଳକୁ ମା କାନ୍ଦିଲେ ଆମର ଗାଁର ଦୁର୍ଗା ପୂଜା କଥା ଭାବି । ଦୁଃଖର କଥା ଏ ବର୍ଷ ଦୁର୍ଗା ପୂଜାରେ ଗାଁକୁ ଯାଇ ହେଲା ନାହିଁ । ଖାଇବା ପିଇବା ଠିକ୍ ଚାଲିଥାଏ । ସେଥିରେ ଆମର ପଡ଼ୋଶୀ ଜଣକୁ ପୁଣି ନିମନ୍ତ୍ରଣ କରା ହେଲା । ସେହି ଯେ ବଡ଼ ଭାଇଙ୍କ ବାହାଘରକୁ ଯାଇ ଜଗତସିଂପୁରରୁ ଫେରିଲା ପରେ ଆମେ ଯେଉଁ ମ୍ୟାଲେରିଆରେ ଭୋଗିଲୁ, ସେଇଠୁଁ ମ୍ୟାଲେରିଆ ପ୍ରାୟ ଆମ ଘରେ ଲାଗି ରହିଲା । ଛାଡ଼ିଯାଏ, ପୁଣି ହୁଏ । ସମସ୍ତଙ୍କ ପେଟରେ ଉଣା ଅଧିକେ ଛୋଟ ହଉ, ବଡ଼ ହଉ, ଗୋଟିଏ ଲେଖା ପ୍ଲିହା, ଅଛି ବହୁତେ ରକ୍ତହୀନତା, ଔଷଧି ଖିଆ ଲାଗିଥାଏ । ସେ ବର୍ଷ ଦୁର୍ଗା ପୂଜା ବେଳକୁ ଆମେମାନେ ସମସ୍ତେ ମ୍ୟାଲେରିଆରେ ଭୋଗି ରୁଗ୍‌ଣ ହେଇଥାଉ, ଯେମିତି ଭାତ, ଡ଼ାଲି, ଜଳଖିଆ ଇତ୍ୟାଦି ଖାଉ ଥାଉ, ସେମିତି ଔଷଧି ବି ଖିଆ ଚାଲିଥାଏ । ସେତେବେଳେ "ଜାରମଲିନ" ନାମକ ଗୋଟାଏ ତରଳ ଔଷଧି ବାହାରିଥାଏ । ମ୍ୟାଲେରିଆକୁ ଭଲ କାମ ଦଉଥାଏ । ଚାରିଆଡ଼େ କାନ୍ଥମାନଙ୍କରେ "ଜାରମଲିନ ଜ୍ୱରର ଯମ" ଲେଖା ହବାର ଦେଖା ଯାଉଥାଏ ।

ମୁଁ ଯେ ଏଡ଼େ ବଡ଼ ଦଶହରା ପର୍ବରେ ଚଦର ଖଣ୍ଡେ ପିନ୍ଧି ବୁଲୁଥାଏ, ମୋତେ ଭାରି ଦୁଃଖ ଲାଗୁଥାଏ । କାରଣ, ମୁଁ ଦେଖୁଛି ମୋର ସାଙ୍ଗସାଥୀମାନେ ଭଲ ଭଲ ଧୋତି କମିଜ ପିନ୍ଧି ବୁଲୁଛନ୍ତି । ସେମାନେ ଯେଉଁଠିକି ଯାଇ ପାରୁଛନ୍ତି, ମୁଁ ସେଠିକି ଯାଇ ପାରୁନି । ପ୍ରତିବର୍ଷ ଦୁର୍ଗା ପୂଜାରେ ଆମେ ଗାଁକୁ ଚାଲି ଯାଉଥିଲୁ । ବଢ଼େଇ ସାହି ବୀଣାପାଣି କ୍ଲବରେ କେବେ ଦୁର୍ଗାପୂଜା ଦେଖି ନଥିଲି । ଏ ବର୍ଷ କଟକରେ ରହିଲି ଯେ ବୀଣାପାଣି କ୍ଲବକୁ ଯାଇ ପାରୁ ନଥାଏ । କାରଣ ଖାଲି ଦିହରେ ଚଦର ଖଣ୍ଡେ ପିନ୍ଧି କେମିତିବା ଯିବି ?

ଥରେ ଅଧୈର୍ଯ୍ୟ ହେଇ, ପ୍ରଧାନ ଫାଟକ ରାସ୍ତାରେ ନଯାଇ ଗୋଟାଏ ଗଳି ବାଟରେ ଯାଇ ଦୂରରେ ପାଖେଇ ହେଇ ମେଢ଼କୁ ଅନେଇ ଠିଆ ହେଲି । ଲୋକେ ଲୋକାରଣ୍ୟ । ମୋତେ ଭାରି ସରମ ଲାଗୁଥାଏ । ମୁଁ ଖାଲି ଦିହଟାରେ ଠିଆ ହେଇଥାଏ । ସାଙ୍ଗସାଥୀଙ୍କ ଭିତରୁ କେତେ ଜଣ ସେଠି ବୁଲୁଥାନ୍ତି । ପୁରୁଷଙ୍କ ଧୋତି, କମିଜ, ପଞ୍ଜାବୀ ଆଉ ମହିଳାଙ୍କର ଶାଢ଼ୀ ଗହଣାର ପ୍ରଦର୍ଶନୀ ଦେଖିବା ଭଳି ମୋର ମନେ ହେଲା । ତା'ପରେ ପୁଣି ବିଭିନ୍ନ ରକମର ବାସନା ତେଲ, ଆଉ ଏସେନ୍‌ସ । ଏଣେ ଝୁଣା ଧୂଆଁର ଗନ୍ଧରେ ନାକ ଫାଟି ପଡୁଥାଏ ।

ମୁଁ ଗୋଟାଏ ପାଖକୁ ଲୋକ ଗହଳି ଭିତରେ ଲୁଚି ଠିଆ ହେଲା ପରି ଠିଆ ହେଇଥାଏ । ଏଇ ସମୟରେ ଜଣେ ଲୋକ ଆସି ସେଠା ପୁରୋହିତକୁ ଜଣକର ଠିକଣା ପଚାରିଲା । ପୁରୋହିତ ଭାବୁଛି କେଉଁଠି ସେ ଭଦ୍ରଲୋକର ଘର ? ମୁଁ ହଠାତ୍ କହିଦେଲି, ଅମୁକ ଜାଗାରେ । ସେ ପୁରୋହିତ ମୋତେ ଓଡ଼ିଆ ବଙ୍ଗଳା ମିଶେଇ ଯାହା କହିଲା, ତା'ର ପ୍ରକୃତ ଓଡ଼ିଆ ଅର୍ଥ ହେଲା, ଏ ଲୋକକୁ ସେଠି ଟିକିଏ ପହଁଚେଇ ଦେଇ ଆସି ପାରିବୁ ?

ମୁଁ କହିଲି, ହଁ ।

ସେ ପୁରୋହିତ ମୋତେ ପୁଣି କହିଲା, ଏ ଲୋକକୁ ସେଠି ପହଁଚେଇ ଦେଇ ଆସିଲେ ପ୍ରସାଦ ଖାଇବାକୁ ଦେବି । ମୁଁ ବୁଝି ପାରିଲି, ମୋର ରୂପ, ଭେକ ଦେଖି ସେ ପୁରୋହିତ ମୋତେ ବୋଧେ ଗୋଟାଏ ମାଗିଖିଆ ପିଲା ବୋଲି ଭାବିଲା । ମୁଁ ମନଦୁଃଖରେ ସେ ଲୋକକୁ ସାଙ୍ଗରେ ନେଇ ଯେଉଁଠି ପହଁଚେଇ ଦବାର, ଦେଇ ଆଉ ବୀଣାପାଣି କ୍ଲବକୁ ଗଲି ନାହିଁ । କିନ୍ତୁ ସେ

ପୁରୋହିତର କଥାଟା ମୋର ମନରେ ବାରମ୍ବାର ଆଘାତ ଦେଲା । ଭାବିଲି, କାହିଁକି ସେଠିକି ଗଲି ? ରାତିକି ବାବା, ମା ଆମକୁ ସାଙ୍ଗରେ ନେଇ ବିଭିନ୍ନ ଜାଗାରେ ମୂର୍ତ୍ତି ସବୁ ଦେଖିବାକୁ ବୁଲି ବାହାରିଲେ । ସାଙ୍ଗରେ କେତେଜଣ ସାହିର ମାଇପି ମଧ ବାହାରିଲେ ।

ମୁଁ କଣ ପିନ୍ଧିବି ? ଦିନଟା କଟିଗଲା ଚଦର ଖଣ୍ଡେ ପିନ୍ଧି, ରାତିକି କଣ ପିନ୍ଧି ବୁଲିବାକୁ ଯିବି ? ବାବା, ମା'ଙ୍କର କିଛି ଚିନ୍ତା ନାହିଁ, ମୁଁ କ'ଣ ପିନ୍ଧି ବୁଲିବାକୁ ଯିବି ? ମୋ ଭାଗ୍ୟକୁ ଗୋଟାଏ ପେଟରାରୁ ଖଣ୍ଡେ କଳା ରଙ୍ଗର କୋଟ ବାହାରିଲା । ସେ କୋଟ୍ ଖଣ୍ଡକ ଦୈବାତ୍ ମୋତେ ଠିକ୍ ହେଲା । ପୁଣି ପିନ୍ଧିବି କ'ଣ ? ବହୁତ ଦିନରୁ ହଳେ ଖିରଦୋଡ଼ି ଧୋତି, ଚଦର ସେହି ପେଟରାରୁ ମିଳିଲା, ତାକୁ ପିନ୍ଧିଲି, କଳା କୋଟ ମଡ଼େଇଲି । ଆଉ ଖିରଦୋଡ଼ି ଚଦରକୁ କାନ୍ଧରେ ପକେଇଲି । ଭାବିଲି, ଏ ତ ମନ୍ଦ ହେଲା ନାହିଁ । ଭଲ ପୋଷାକ ମିଳିଗଲା । କଟକର ଦଶହରା ବଜାରକୁ ପାଲାବାଲା ସାଜି ବାହାରିଲା ପରି ମୋତେ ଜଣାଗଲା । ସେ ବର୍ଷ କଟକର ବିଭିନ୍ନ ଜାଗାରେ ମୂର୍ତ୍ତି ସବୁ ଦେଖି ଖୁବ୍ ଚାଲି ଚାଲି ବୁଲିଲୁ । ଏତେ ମନସ୍ତାପ ଭିତରେ ଖୁବ୍ ଆନନ୍ଦ ଲାଗିଲା । କିନ୍ତୁ ସବୁବେଳେ ଗାଁର ଦୁର୍ଗା ପୂଜା କଥା ମନେ ପଡୁଥାଏ । ଗାଁରେ ଗୋଟିଏ ଦୁର୍ଗାମୂର୍ତ୍ତି ଆଉ ମେଢ଼କୁ ଦେଖି ଯେମିତି ଆନନ୍ଦ ଅନୁଭବ କରୁଥିଲି, ଏ କଟକ ସହରରେ ଏତେ ମୂର୍ତ୍ତି ଆଉ ମେଢ଼ ଦେଖି ସେମିତି ଆନନ୍ଦ ମିଳିଲା ନାହିଁ । ଗାଁ, ନିଜ ଗାଁ, କେତେ ଜାକଜମକ ଦଶହରା ବେଳେ, ମଜଲିସ୍, ଗୋଟିପୁଅ ନାଚ, ସୁଆଙ୍ଗ, କେତେ ସାଙ୍ଗସାଥୀଙ୍କ ସହିତରେ ଭେଟ । କଟକ ସହରରେ ଗଲୁ, ମେଢ଼ର ଦୂରରେ ଠିଆ ହେଇ ଦେଖିଲୁ । ଅଳ୍ପ ସମୟ ଠିଆ ହଉ ହଉ ପୁଲିସ ଆସି "ହଟୋ, ହଟୋ" କହିଲାଣି । ପୁଣି ଅନ୍ୟ ମେଢ଼ ଦେଖିବାକୁ ବାହାରିଲୁଣି, ଯା ଭାଗ୍ୟରେ ଅଛି । ଆମ ଗାଁର ଦୁର୍ଗା ମୂର୍ତ୍ତି ଆଉ ସାଜସଜ୍ଜା, କଟକ ସହରର ମୂର୍ତ୍ତି ଆଉ ମେଢ଼ର ସାଜସଜ୍ଜା ସହିତରେ କୌଣସି ଗୁଣରେ ଊଣା ନଥିଲା କିନ୍ତୁ ଗାନ୍ଧି ଯେଉଁ ବର୍ଷ କଟକରେ ଆସି ବିଦେଶୀ ଜିନିଷ ବର୍ଜନ ଲାଗି ପ୍ରଚାର କରି ଗଲେ । ତା'ପର ବର୍ଷଠାରୁ ଆମ ଗାଁରେ ମେଢ଼ରେ ଆଉ ପନି କାମ ବ୍ୟବହାର କରାଗଲା ନାହିଁ, ସବୁ ମାଟି ଆଉ ସୋଲର ଜିନିଷ ବ୍ୟବହାର କରାଗଲା । ଚଣ୍ଡୀ ମଣ୍ଡପ ଏତେ ଆଉ ଝଲମଲିଆ ଦେଖାଗଲା ନାହିଁ । କଟକ ଟାଉନ୍‌ରେ ଦୁର୍ଗାଙ୍କର ସନ୍ଧି ପୂଜା କେତେବେଳେ ହଉଛି କିଛି ଜଣାଗଲା ନାହିଁ କି ତା'ର କୌଣସି ଗୁରୁତ୍ୱ ନାହିଁ । ଗାଁରେ ଦୁର୍ଗାଙ୍କର ସନ୍ଧି ପୂଜାର କି ଆଡ଼ମ୍ବର ! କି ଭୟଙ୍କର ! ବିଶେଷତଃ ଯେଉଁ ବର୍ଷ ନିଃଶବ୍ଦ ରାତିରେ ସନ୍ଧି ପୂଜା ପଡ଼େ ।

ସେ ବର୍ଷ କଟକରେ ବୀଣାପାଣି କ୍ଲବ ଆଉ ମାଛୁଆବଜାରର ସର୍ପା ଘରେ ପୂଜା ଚାରିଦିନ କିଛି ଭୋଗ କରି ଦିଆ ହେଲା । ଘରେ ଯାହା ଭଲ ଜିନିଷ ତିଆରି କରି ଖାଇଲୁ । ବେଶ୍ ଏତିକିରେ ସେ ବର୍ଷର ଦଶହରା ଶେଷ । ଏ ବର୍ଷ ଗାଁ ଦୁର୍ଗା ଆଉ ଭଗବତୀ ଠାକୁରାଣୀଙ୍କ ମୁହଁ ଦେଖାଗଲା ନାହିଁ ।

କଟକର ଆଉ ଗୋଟାଏ ଦଶହରାର ଆକର୍ଷଣ କାଠଯୋଡ଼ି କୂଳରେ ପ୍ରତିମା ବିସର୍ଜନର ଆଡ଼ମ୍ବର । ଆଜିକାଲି ତ ଆଡ଼ମ୍ବର ଆହୁରି କେତେ ବଢ଼ି ଗଲାଣି । ସେତେବେଳେ ଆଡ଼ମ୍ବର ମଧ କମ୍ ନଥିଲା । ସେହି ବାର ରକମର ଜିନିଷ ବିକ୍ରି, ଗୁଡ଼ିଆ ଦୋକାନ, ଲୋକ ଗହଳି, ବାଜା ।

ଯେଉଁ ବସ୍ତିର ଯେଉଁ ମେଢ଼, ତା'ସହିତ ଠେଙ୍ଗାବାଡ଼ି ଧରି ସେହି ବସ୍ତିର ଦଳ ଦଳ ଲୋକ, ଆଲୁଅ, ସାଜସଜାର ପଟୁଆର, ମେଢ଼ମାନଙ୍କ ଭିତରୁ କିଏ ସରସ, କିଏ ନିରସ, ଏ ନେଇ ହାରଜିତର ପ୍ରତିଯୋଗିତା । ପୁଣି ଆମ ବସ୍ତିର ମେଢ଼ ଆଗେ ଯିବ, ତାଙ୍କ ବସ୍ତିର ମେଢ଼ ପଛରେ ଯିବ । ଏ ନେଇ ବେଳେବେଳେ ମାଡ଼ପିଟ । ଏ ସବୁ ଗାଁରେ ଦେଖିବାକୁ ମିଳୁ ନଥିଲା । ତଥାପି ଆମ ଗାଁର ଗୋଟିଏ ଦୁର୍ଗା ମେଢ଼ ନେଇ ପାଣିରେ ବିସର୍ଜନ କରିବାକୁ ଗଲାବେଳେ ସେ ଯେଉଁ ଗାଉଁଲୀ ବାଜା, ମହୁରିର ସ୍ୱର, ବନାଟି ଖେଳ, ମାଲମାନଙ୍କର ବିଭିନ୍ନ ପ୍ରକାର କୁସ୍ତି କୌଶଳ । ଲୋକେ ମେଢ଼ର ଆଗ ପଛ ହେଇ ଚାଲିଥିବା, ସେ ଦୃଶ୍ୟର ମଧ ମହତ୍ୱ କମ୍ ନୁହେଁ ।

କଟକ ସହରରେ ବାର ମାସରେ ତେର ପର୍ବ ଲାଗିଛି। କିନ୍ତୁ ଗାଁରେ ସେହି ବର୍ଷକେ ଥରେ ଗୋଟିଏ ଦୁର୍ଗା ପୂଜା ସରିଲେ, ଆଉ ନାହିଁ। ଗାଁ ଅନ୍ଧାର, ପୁଣି ବର୍ଷେ ଅନେଇ ଥା। ଆଉ କିଛି ନାହିଁ। କଟକରେ ତ ଦୁର୍ଗା ପୂଜା ପରେ ଲକ୍ଷ୍ମୀପୂଜା, କାଳୀ ପୂଜା, କାର୍ତ୍ତିକ ପୂଜା, ବାଲିଯାତ୍ରା, କେତେକଣ ଲାଗିଛି।

ସେ ବର୍ଷ ଦଶହରା ପର୍ବ କଟକରେ କଟିଗଲା କିନ୍ତୁ ମନରେ ଆଗ୍ରହ ଜନ୍ମିଲା, କଟକରେ ଆଉ ସବୁ ପୂଜା ପାର୍ବଣ ଦେଖିବା ପାଇଁ, ଦେଖା ହେଲା। ଆଗେ ଆମେ କୁଆଡ଼େ ବୁଲିବାକୁ ଗଲେ ବଗି ଗାଡ଼ିରେ ବୁଲିବାକୁ ଯାଉଥିଲୁ ପରେ କଟକର ଏକବଳଦିଆ ଗାଡ଼ି ବ୍ୟବହାର କରି ବୁଲିବାକୁ ବାଧ ହେଲୁ। ଥୋରିଆସାହି ନିକଟରେ ମୁସ୍‌ଲିମ୍ ସେମିନାରୀ ଆଡ଼କୁ ଯିବା ରାସ୍ତାର ବାଁ ପଟେ ଯେଉଁଠି କବରଖାନା ଅଛି, ତା'ରି ନିକଟରେ ଗୋଟାଏ ଛୋଟ ମୁସଲମାନ୍ ବସ୍ତି ଥିଲା। ସେହି ବସ୍ତିର ଜଣେ ମୁସଲମାନ୍ ତା'ର ଏକବଳଦିଆ ଗାଡ଼ିରେ ଆମକୁ ନିଆ ଅଣା କରୁଥିଲା। ଯେତେବେଳେ ଯୁଆଡ଼େ ଯିବାର ଦରକାର ପଡ଼ିଲେ ତାକୁ ଖବର ଦେଲେ ସେ ତା'ର ଗାଡ଼ି ନେଇ ଆସି ପହଁଚେ। ତା'ର ଗାଡ଼ିରେ ଆମେ ଅନେକ ଆଡ଼େ ବୁଲିଛୁ। ଇମିତିକି ଥରେ ଜାଗର ମେଳାରେ ଆମେ ସମସ୍ତେ କଟକ ନିକଟସ୍ଥ ପରମହଂସ ମହାଦେବ ପୀଠକୁ ଯାଇଥିଲୁ। ସେତେବେଳେ କଟକରେ ହାତଟଣା ରିକ୍ସା କିମ୍ବା ସାଇକେଲ୍ ରିକ୍ସା ନଥିଲା। ଦି ବଳଦିଆ କିମ୍ବା ଏକ ବଳଦିଆ ଗାଡ଼ିର ବେଶି ଚଳାଚଳ ଥିଲା। ଆମର ଏକ ବଳଦିଆ ଗାଡ଼ିବାଲାର ନାମ ଥିଲା, ଫୈଜୁ ରହମାନ। ଫୈଜୁ ଭାରି ଭଲ ମଣିଷ ଥିଲା। ଆମ ସାଙ୍ଗରେ ତା'ର ବେଶ୍ ସୌହାର୍ଦ୍ଦ୍ୟ ଥିଲା। ମେଳା ମଉଛବ କିମ୍ବା ବନ୍ଧୁବାନ୍ଧବ ଘରକୁ ଯିବାକୁ ପଡ଼ିଲେ ଫୈଜୁ ଗାଡ଼ିରେ ଯାଉଥିଲୁ। ଫୈଜୁ ଯେଉଁଠି କି ନବାର ନେଇ ପୁଣି ଘରେ ଆଣି ନିର୍ବିଘ୍ନରେ ଛାଡ଼େ।

## (୩)

ମୋର ଏଣେ ମୃଣାଳ ଘରୁ ଆଣି ବଙ୍ଗଳା ବହି ପଢ଼ା ଯେମିତି ଚାଲିଥାଏ, ତେଣେ ଓଡ଼ିଆ ବହିପଢ଼ା ସେମିତି ଚାଲିଥାଏ। ରାଧାନାଥ ଗ୍ରନ୍ଥାବଳି, ମଧୁସୂଦନ ଗ୍ରନ୍ଥାବଳି ବାରମ୍ବାର ପଢ଼ିଲେ ମଧ ମନ ତୃପ୍ତ ହୁଏ ନାହିଁ। ପୁଣି ପଢ଼େ। ତା ଛଡ଼ା ନାବକେଳି, ଭୂତକେଳି, ମଥୁରାମଙ୍ଗଳ, ଦାର୍ଢ୍ୟତା ଭକ୍ତି, ବିଲଙ୍କା ରାମାୟଣ, ଅଜି ରାଜା ଶୋକ ଇତ୍ୟାଦି ଇତ୍ୟାଦି ଯା ପାଇଲି ପଢ଼ିଲି।

ଏଣେ ମୋର ପୁଣି football ଖେଳରେ ବେଶ୍ ଉନ୍ନତି ଘଟିଥାଏ। ମନରେ ଗୋଟାଏ ଦୁଃଖ, ସ୍କୁଲରେ ପଢ଼ି ପାରିଲି ନାହିଁ। ନଚେତ୍ ସମୟଟା ମନ୍ଦ କଟୁ ନଥାଏ। ଘରେ କିନ୍ତୁ ମୋ ପ୍ରତି କାହାରି ଶ୍ରଦ୍ଧା ନଥାଏ। ଗୋଟାଏ ଯେମିତି କିଏ ବାରବୁଲା ଛତରାଟା ପୋଷା ହେଇଥାଏ। କାମ ମଧରେ କରିବାକୁ ହଉଥିଲା, ବଜାର ସଉଦା କରିବା, ଘରେ କାଠ ଚିରିବା, ବେଳେବେଳେ ଗୋରୁମାନଙ୍କୁ ଖୋଇବା, ମା'ଙ୍କୁ ରୋଷେଇରେ ସାହାଯ୍ୟ କରିବା ଇତ୍ୟାଦି ଇତ୍ୟାଦି। ତା'ଛଡ଼ା ସମୟ ମିଳିଲେ football ଖେଳିବା, ବହି ପଢ଼ା, ଛବି ଅଙ୍କା ଚାଲିଥାଏ।

ଏଇ ବାଲୁଙ୍ଗା ଜୀବନରେ ବାବା, ମା'ଙ୍କ ସଙ୍ଗେ ରାତିବେଳା କଟକରେ ଚନ୍ଦନ ଯାତ୍ରା ଦେଖି ବୁଲିଛି। କଟକର ଚନ୍ଦନ ଯାତ୍ରାର ବଡ଼ ଆକର୍ଷଣ ହଉଛି, ଜାଗା ଜାଗା ବିଭିନ୍ନ ଯାତ୍ରା ଦଳର ଅଭିନୟ। ସେତେବେଳେ ବକ୍ସି ଭଗତ, ମଣିସାହୁ ଛକ, ମ୍ୟୁନିସିପାଲିଟି ପଡ଼ିଆ, ମଙ୍ଗଳାବାଗ ନିକଟ ନୂଆ ପାଟଣା, ରାଣୀହାଟ, ରାଣୀହାଟ ନିକଟ ଗଉଡ଼ ସାହି। ଏଇ ସବୁ ଜାଗାରେ ଯାତ୍ରା ହୁଏ। ବକ୍ସିବଜାରରେ ବିଶେଷ ପ୍ରତିଯୋଗିତା ଚାଲେ, ବକ୍ସି ଭଗତ ଆଉ ମଣିସାହୁ ମଧରେ। କିଏ ଭଲ ଯାତ୍ରା ଦଳ ଆଣିଛି? ମୋ ଦେଖିବାରେ ମଣିସାହୁ ଛକରେ ଭଣ୍ଡାରୀପୋଖରୀ ଦଳ ବକ୍ସି ଭଗତର ଯାତ୍ରା ଦଳକୁ ହରେଇ ଦେଇଛି। ଭଣ୍ଡାରୀପୋଖରୀ ଦଳ ଉଠିଲେ, ବକ୍ସି ଭଗତ ଦୁଆରୁ ଲୋକେ ମଣିସାହୁ ଛକକୁ ପଳେଇ ଆସନ୍ତି। ଭଣ୍ଡାରୀପୋଖରୀ ଦଳ ଭଲ ଅଭିନୟ କରନ୍ତି। ତା ଛଡ଼ା ସେ ଦଳର ଦୁଆରୀର ରଙ୍ଗରସମୟ ଅଭିନୟ ଗୋଟାଏ

ବଡ଼ ଆକର୍ଷଣ। ସେହି ଦୁଆରୀ ଯୋଗୁହିଁ ଭଣ୍ଡାରୀପୋଖରୀ ଦଳ କଟକରେ କେତେ ବର୍ଷ ଭଲ ନାଁ କରିଥିଲେ।

ଚନ୍ଦନ ଯାତ୍ରା ବେଳେ କଟକର ଅଧିକାଂଶ ଲୋକେ ସନ୍ଧ୍ୟା ବେଳୁ ରୋଷେଇ ସାରି ଖାଇପିଇ ଯାତ୍ରା ଦେଖିବାକୁ ବାହାରି ପଡ଼ନ୍ତି। ବିଭିନ୍ନ ଜାଗାରେ ଯାତ୍ରା ଦେଖି ଦେଖି ଭୋର ବେଳକୁ ଘରକୁ ଫେରନ୍ତି। ସେତେବେଳେ ଗୋଟାଏ କଥା ମୁଁ ଦେଖିଛି, ଭାବିଲେ ଆଶ୍ଚର୍ଯ୍ୟ ଲାଗେ, ଆଉ ହସିବାକୁ ବାଧ ହୁଏ। ତା'ର କାରଣ ହେଲା, କଟକ ସହରର କେଡ଼େ କେଡ଼େ ଅଭିଜ୍ଞ ଯାତ୍ରାଦଳ ଆସି ଯାତ୍ରା କରନ୍ତି। ବଡ଼ ବଡ଼ ଯାତ୍ରାଦଳଙ୍କ ଯାତ୍ରା ଦେଖିବା ପାଇଁ ଲୋକେ ଭିଡ଼ କରନ୍ତି। କିନ୍ତୁ ଥୋରିଆସାହି ନିକଟ ପାଣ ସାହିରେ ଲୋକେ ମଧ ଏଇ ଚନ୍ଦନ ଯାତ୍ରା ବେଳେ ଯାତ୍ରା କରନ୍ତି। ସେଠି ଅଭିନେତା, ଅଭିନେତ୍ରୀ (ପୁରୁଷ ଲୋକେ ସ୍ତ୍ରୀ ବେଶ ହେଇ ଯେମିତି ସବୁ ଦଳରେ ଅଭିନୟ କରନ୍ତି)ମାନେ ମୁହଁରେ ଖଡ଼ି ବୋଳି (face powder ନୁହଁ)। ତେଲ ଚିକିଟା ମଠା ପିନ୍ଧି ଯାତ୍ରା କରନ୍ତି। ଏ ଦଳ ହେଲା ତାଙ୍କର ସାହିର ଲୋକ, ବାହାରର କୌଣସି ଦଳ ନୁହଁ। ସେଠି ଥରେ ଗୀତ ବୋଲା ହବାର ମୁଁ ଶୁଣିଛି, ଦେଖ ବସନ୍ତ, ଆହା କି ମନୁହର...... ଏଠି ଯାତ୍ରାଦଳର ଏମିତି ବି ରସିକ ଦର୍ଶକବୃନ୍ଦ ଥାନ୍ତି। ସେମାନେ କୁଆଡ଼େ ଯାତ୍ରା ଦେଖିବାକୁ ନଯାଇ, ସେଇଠି ବସି ରାତି ପାହିବା ପର୍ଯ୍ୟନ୍ତ ଯାତ୍ରା ଦେଖନ୍ତି। ଭଙ୍ଗା ଲେମୋନେଡ଼ ବୋତଲ ଧରି ଦୁଆରୀ ବାହାରେ। ତିନି ଗୋଡ଼ିଆ ଭଙ୍ଗା ଟେବୁଲ ଉପରେ ତେଲ ଚିକିଟା ମଠା ବିଛା ହେଇଥାଏ, ଖଣ୍ଡେ ଦଦରା ଚୌକିରେ ରାଜା ଆସି ବସନ୍ତି, ଯାତ୍ରା ଆରମ୍ଭ ହୁଏ।

ଯେତେବେଳେ ଶିଳ, ଶିଳପତା ଗଗନେ ଉଡୁଛି, କାହି: ଗୋବିନ୍ଦ ଚନ୍ଦ୍ର ସୁରଦେଓ ଦଳ, କୃଷ୍ଣ ପ୍ରସାଦ ବସୁଙ୍କର ଦଳ, ଭଣ୍ଡାରୀପୋଖରୀ ଦଳ, ଆହୁରି କେତେ ସେତେବେଳର ନାମଜାଦା ବଡ଼ ବଡ଼ ଯାତ୍ରାଦଳ (ସେମାନଙ୍କର ନାଁ ମୋର ମନେ ପଡୁ ନାହିଁ)କଟକରେ ଯାତ୍ରା କରୁଛନ୍ତି। ସେତେବେଳେ ପାଣ ସାହିର ଯାତ୍ରାଦଳ ମଧ ଯାତ୍ରା କରନ୍ତି। ଯାଙ୍କୁ ଦେଖିବା ପାଇଁ ସେମିତି ରସିକ ଦର୍ଶକବୃନ୍ଦ ମଧ ଥାନ୍ତି।

ଏ ତ ଗଲା ଚନ୍ଦନ ଯାତ୍ରା କଥା ପୁଣି ଏଇ ବାଲୁଙ୍ଗା ଜୀବନରେ ବାବା, ମାଙ୍କ ସାଙ୍ଗରେ କେତେ ଥର ଝୁଲଣ ଯାତ୍ରା ବେଳେ ଥୋରିଆସାହି ନିକଟସ୍ଥ ବଡ଼େଇ ସାହିର ବାସ୍ତରୀ ମଠରେ ଯାତ୍ରା ଦେଖିଛି। ଯାତ୍ରାଦଳ ସେଠିକି ପ୍ରାୟ ଆସୁଥିଲେ କଟକ ନିକଟସ୍ଥ ତାରପୁରରୁ। ଏଣୁ ତାକୁ ସମସ୍ତେ କହନ୍ତି, ତାରପୁରିଆ ଯାତ୍ରାଦଳ। ଛୋଟ ଗରିବ ଯାତ୍ରାଦଳଟିଏ। କିନ୍ତୁ ବେଶ୍ ଅଭିନୟ କରନ୍ତି। ସବୁ ବୈଷ୍ଣବ ପାଣିଙ୍କ ଲେଖା, ଦକ୍ଷଯଜ୍ଞ, ପ୍ରହ୍ଲାଦ ଚରିତ, କାଳିଦାସ ଇତ୍ୟାଦି। ମୁଁ ପ୍ରହ୍ଲାଦ ଚରିତ ସୁଆଙ୍ଗ ଦେଖି କାନ୍ଦିଛି। ଥରେ ମନେ ଅଛି ଏହି ଯାତ୍ରା ଦଳ କାଳିଦାସ ସୁଆଙ୍ଗ କରୁଥିଲେ, ଜଣେ ଯୁବକ ମାଛବାଲୀ ସାଜି ମାଛ ପସରା ନେଇ ମାଛ ବିକିବାକୁ ବାହାରି ଗାଉଛି, ଗଡ଼େଇ ଗୋଟିକ ଅଢ଼େଇ ପଇସା, ପୋହଳାଟି ପଇସେ, ଆସ ମାଛ ନବ କିଏସେ।

ମାଛବାଲୀ ପ୍ରକୃତ ଗୋଟାଏ ମାଇପି ଭଳି ଅଭିନୟ କରୁଥାଏ। ଚାରିଆଡ଼େ ଲୋକ ଭିଡ଼ାଭିଡ଼ି। ଏଇ ସମୟରେ ବାସ୍ତରୀ ମଠର ପାଚେରୀ ଆର ପଟେ ରାସ୍ତା ଉପରେ ଗୋଟାଏ କୁଜୀ ବସ୍ ଠିଆ କରି ତା'ଉପରେ ଚଢ଼ି ଠିଆ ହେଇ ସେ କୁଜୀ ବସ୍ର ଡ୍ରାଇଭର, କଣ୍ଡକ୍ଟର ଛତ୍ରାମି କରି ମାଛବାଲୀର ଅଭିନୟ ଦେଖି ହୁଇସିଲ୍ ମାଇଲେ। ମାଛବାଲୀ ବୁଝିପାରିଲା ଯେ ତାକୁ ଦେଖି ଡ୍ରାଇଭର, କଣ୍ଡକ୍ଟର ହୁଇସିଲ୍ ମାରୁଛନ୍ତି। ସେ ହଠାତ୍ ଗୀତ ବନ୍ଦ କରି କହି ଦେଲା, କେହି ଯଦି ମାଛ ନ ନବ, ନ ନିଅ ମୋ ଡ୍ରାଇଭର, କଣ୍ଡକ୍ଟରବ୍ୟାବୁ ମାନେ ତ ମଟର ହଂକେଇ ପଇସାରେ ନାଲେ ନାଲ, ସେମାନେ ତ ମୋ ଚୋକେଇ ଚାଟି ଦେବେ, ମୋ ମାଛ କ'ଣ ଅବିକ୍ରି ରହିଯିବ?

ମାଛବାଲୀ ଯେମିତି ଏତକ ଡ୍ରାଇଭର, କଣ୍ଡକ୍ଟରଙ୍କୁ ଦେଖେଇ କହିଛି, ଚାରିଆଡୁ ଘୋ କରି ତାଳି ଆଉ ହସ ଉଠିଲା। ଆଉ ସେଠି ଡ୍ରାଇଭର, କଣ୍ଡକ୍ଟରଙ୍କ ପତା ରହିଲା ନାହିଁ। ଲଜ୍ଜାରେ କୁଜୀ ବସ୍ ନେଇ କୁଆଡ଼େ ଛୁ।

ଏଇ ଯାତ୍ରା ଦେଖିବା ପାଇଁ ବାବା, ମୁଁ ବାସ୍ତରୀ ମଠରେ ମରଦଙ୍କ ଆଡ଼େ ବସୁ। ଆଉ ମା ମୋର ସାନ

ଭଉଣୀ ଦୁଇଜଣଙ୍କୁ ନେଇ ମାଇପିମାନଙ୍କ ଭିତରେ ଅନ୍ୟ ପାଖରେ ବସନ୍ତି । ଆଉ ତା'ଉପର ଭଉଣୀଟି ମାଇପିମାନଙ୍କ ଭିତରେ ଆଦୌ ବସେ ନାହିଁ । ସାରା ରାତି ମାଇପିଙ୍କ ଆଡ଼େ ମଠ ପାଚେରୀକୁ ଲାଗି ଠିଆ ହେଇ ଯାତ୍ରା ଦେଖେ । ସେ ଯେ କୌଣସି ସୁଆଙ୍ଗ ଦେଖେ, ସେ ପ୍ରତ୍ୟେକ ଚରିତ୍ରର ଅଭିନୟର ସଂଳାପ, ଗୀତ ଏତେ ନକଲ କରିଥାଏ ଯେ ତହିଁ ଆରଦିନ ସକାଳେ ଜଣେ ବହିବିକାଳୀଠାରୁ ସେହି ସୁଆଙ୍ଗ ବହି କିଣା ହୁଏ । ଆଉ ସେ ସେ ସୁଆଙ୍ଗ ବହିକୁ ଯାତ୍ରାବାଲାଙ୍କ ପରି ବୋଲେ । ରାଜା ଯେମିତି ଯାତ୍ରାରେ କହୁଥିଲେ ଅବିକଳ ସେମିତି ପୁରୁଷ କଣ୍ଠରେ କହେ । ଦୁଆରୀ ଯେମିତି କହୁଥିଲା ଅବିକଳ ତାରି କଣ୍ଠ । ଗୀତ ଯେମିତି ବୋଲୁଥିଲେ ଅବିକଳ ସେମିତି ଭଙ୍ଗୀରେ ।

ପ୍ରତ୍ୟେକ ଦିନ ସନ୍ଧ୍ୟା ପରେ ଆମ ଦୁଆରେ ଯାତ୍ରା ହବା ଭଳି ଜଣାଗଲା । ମଝିଆ ଭଉଣୀ ସୁଆଙ୍ଗ ବହି ପଢ଼ିଲେ, ପଡ଼ିଶାଘର ମାଇପିମାନେ ଆସି ଜମିଲେ । ଆଗରୁ କହିଛି ସେ ଭଉଣୀଟିର ଭଲ ନାଁ ଥିଲା ହିରଣ୍ୟବାଳା, ଶ୍ରଦ୍ଧାରେ ତାକୁ ଡ଼ କା ହଉଥିଲା ବୁଢ଼ୀ ମାଉସୀ । ବୁଢ଼ୀ ମାଉସୀ ସୁଆଙ୍ଗ ବହି ପଢ଼ିଲେ ଆମ ଦୁଆରେ ଯାତ୍ରା ଆରମ୍ଭ ହେଲା । ଯେତେ ସୁଆଙ୍ଗ ଦେଖି ଆସେ, ସେତିକି ବହି କିଣା ହୁଏ । ବୁଢ଼ୀ ମାଉସୀ ସବୁ ଯାତ୍ରା ଭଙ୍ଗୀରେ ବୋଲି ଶୁଣାଏ ।

ସେତେବେଳେ ଆମର ସେ ଦୁଃଖ ବେଳରେ ବୁଢ଼ୀ ମାଉସୀର ସୁଆଙ୍ଗ ବୋଲି ଶୁଣେଇବା ଦୁଃଖକୁ ଅନେକ ଲାଘବ କରି ଦଉଥିଲା । ତା'ର କଣ୍ଠସ୍ୱର ଅତି ଚମତ୍କାର ଥିଲା । ବୁଢ଼ୀ ମାଉସୀ ମୋର ସବା ବଡ଼ ଭଉଣୀ ଆଉ ସବା ସାନ ଭଉଣୀ ତୁଳନାରେ ବେଶି ବୁଦ୍ଧିମତୀ ଥିଲା । ପାଠ ପଢ଼ାରେ ଯେମିତି, ଗୀତ ଗାଇବାରେ ସେମିତି । ଲୋକଙ୍କୁ କଥାଏ କଥାଏ ହସେଇ ଦବାରେ ମଧ୍ୟ ତା'ର ଦକ୍ଷତା ଥିଲା । ସେ ଅତିଶୟ ଟେରୀ ଥିଲା । ଥରେ ମନେ ଅଛି ଆମେ ସବୁ ସନ୍ଧ୍ୟା ପରେ ଶୋଇ ଯାଇଥିଲୁ, ସେ ଏକା ରୋଷେଇ କରି ବାବାଙ୍କୁ ମୋତେ ଉଠେଇଲା ଖାଇବା ପାଇଁ । ଆମେ ଖାଇ ବସିଥାଉ ସେ ପରଶୁ ଥାଏ । ଏଣେ ବୈଷ୍ଣବ ପାଣିଙ୍କ ରଚିତ "ପ୍ରହ୍ଲାଦ ଚରିତ" ସୁଆଙ୍ଗରୁ ଗୋଟାଏ ଗୀତ ବୋଲୁଥାଏ: ରଜା ଘରେ ଆଜି ଖୋଜା ପଡ଼ିଅଛି, ସାପୁଆ କେଳା ଜାତି, ଦେଲେ ଖଣ୍ଡେ ଛଡ଼ି ନେବୁ ଖଣ୍ଡେ ଶାଢ଼ୀ ପାଇବୁ ଘୋଡ଼ା ହାତୀ ।

ସେ କି ଚମତ୍କାର ଗାଉଥାଏ । ସେତେବେଳେ ବାହାରେ ଜହ୍ନ ପଡ଼ିଛି, ସାହି ଘର ସବୁ ନିଶୂନ ହେଲାଣି । ଆଜି ତା'ର ସେ ଗୀତ ଗାଇବାର କଥା ମନେ ପଡ଼ିଲେ ଆଖିରୁ ଲୁହ ଗଡ଼ି ଆସେ । କିନ୍ତୁ ସେ ଭଉଣୀଟି ସଙ୍ଗେ ମୋର ଆଦୌ ପଡ଼ୁ ନଥିଲା । ସବୁବେଳେ ମୁଁ ତାକୁ କହେ ମରିଯା । ସେ ମୋତେ କହେ ମରିଯା । କେତେଥର କଳିକଜିଆ କରି ମୁଁ ତାକୁ ମାରିଛି । ତାକୁ ମାରିବା ଯୋଗୁଁ ମା'ଙ୍କ ଠାରୁ ମୁଁ ଅନେକବାର ମାଡ଼ ଖାଇଛି ।

ଥରେ ମନେ ଅଛି ମୁଁ କିଲ୍ଲା ପଡ଼ିଆରୁ football match ଦେଖି ଆସି ଘରେ ପହଁଚିଲା ବେଳକୁ ସଞ୍ଜ ଗଡ଼ିଯାଇ ଥାଏ । ଅଗଣା ଭିତରେ ଭଙ୍ଗା ଚାଳିଆ ଉପରେ ସଜନାଗଛ ଉଢ଼ାଳରେ ଜହ୍ନଟା ଦିଶୁଥାଏ । ମୁଁ ଗୋଟାଏ ଜାଗାରେ ମନ ଦୁଃଖରେ ଲୁଚି ବସି କାନ୍ଦୁଥାଏ । କିନ୍ତୁ ମୋର ଏ ଅରଣ୍ୟରୋଦନକୁ କିଏ ଖାତିର କରିଛି ? ସିଆଡ଼େ ଦାଣ୍ଡ ଘରେ ଗୀତ ବୋଲା ଚାଲିଥାଏ । ସେ ଗୀତରୁ ଗୋଟାଏ ଧାଡ଼ି ମୋର ମନେ ଅଛି । ମାଧବ ହେ, ବୁଝାଇଲି ବାରମ୍ବାର । ବାବା ବେହେଲା ବଜେଇ ଗୀତ ବୋଲୁଥାନ୍ତି । ତାଙ୍କ ସାଙ୍ଗରେ ମଝିଆ ଭଉଣୀ ଗୀତ ବୋଲୁଥାଏ । ଘର ଗୀତରେ ଉଛୁଳି ପଡୁଥାଏ । ବାବାଙ୍କର ନିଜର German made ଗୋଟାଏ ବେହେଲା ଥାଏ । ବାବା ଭଲ ବେହେଲା ବଜେଇ ପାରୁଥିଲେ । ଆଉ ଯେତେ ଓଡ଼ିଶୀ, ଛାନ୍ଦ, ଚମ୍ପୂ ବୋଲିବାକୁ ଭଲ ପାଉଥିଲେ । ଏତେ ବଡ଼ ଯେ ଦୁଃଖର ବେଳ, ପେନ୍‌ସନ୍ ପାଇବେ କି ନା ସନ୍ଦେହ, ଦୈନିକ ଧାର କଲେ ଘର ଚଳିବ । ମୁଁ ଗୋଟାଏ ମାତ୍ର ପୁଅ, ପଢ଼ିପାରିଲି ନାହିଁ । ମୋର ଭବିଷ୍ୟତ କ'ଣ ହବ ? ନିଜର ଭବିଷ୍ୟତ କ'ଣ ହବ ? ମୋ ତଳେ ଦୁଇ ଝିଅ କିଛି ଚିନ୍ତା ନାହିଁ । ବାବାଙ୍କ ମୁହଁରେ ସବୁବେଳେ ଗୁଣୁଗୁଣୁ ହେଇ ଗୀତ ବୋଲିବା ପ୍ରାୟ ଶୁଣିଛି । ଯା'ତ

ହବାର ହବ ଚିନ୍ତା କଲେ କ'ଣ ହବ? ଯା ଭାଗ୍ୟ ନେଇ ସେ ଜନ୍ମ ହେଇଛି, ମୋ ଦ୍ୱାରା କ'ଣ ହବ? ଏକଥା ପ୍ରାୟ ବାବାଙ୍କ ମୁହଁରୁ ଶୁଣିବାକୁ ମିଳେ।

ସେ ମଝିଆ ଭଉଣୀ ମୁହଁରେ ସେମିତି ସବୁବେଳେ ଗୀତ। ସେ ଯେ କୌଣସି କାମ କରୁଥାଉ ମୁହଁରେ ସବୁବେଳେ ଗୀତ ବୋଲା ଚାଲିଥିବ। ତା'ର ସବୁବେଳେ ଗୀତ ବୋଲିବା ଯୋଗୁଁ, ତା'ଉପରେ ଯେ ଯେତେ ବିରକ୍ତ ହେଲେ ମଧ ସେ ମାନେ ନା। ତା'ର କେତେବେଳେ ହେଲେ ଗୀତ ବୋଲା ବନ୍ଦ ନଥାଏ।

ଏମିତି ସମୟରେ ଥରେ ଆମ ସମସ୍ତଙ୍କୁ ଭାରି ମ୍ୟାଲେରିଆ ଜ୍ୱର ହେଲା। ମୋର ଅବସ୍ଥା ବେଶି ଖରାପ ହେଇଗଲା। ମୋର ଆଉ ଭଲ ଜ୍ଞାନ ରହିଲା ନାହିଁ। ସେତେବେଳେ ଆମ ପରିବାରର ଡାକ୍ତର ଥିଲେ ମାନଗୋବିନ୍ଦ ସାହୁ। ବାବା ମୋତେ ଗୋଟିଏ ଏକବଳଦିଆ ଗାଡ଼ିରେ ଶୁଆଇ ନେଇଗଲେ ଡାକ୍ତର ମାନଗୋବିନ୍ଦ ସାହୁଙ୍କ ପାଖକୁ। ମୋର ଜ୍ଞାନ ନଥିଲା। ଡାକ୍ତର ମାନଗୋବିନ୍ଦ ସାହୁ ମୋତେ କ'ଣ ଇଞ୍ଜେକ୍‌ସନ୍ ଦେଲେ, ଆଉ କ'ଣ ଔଷଧ ଦେଲେ ଖାଇବା ପାଇଁ। ବାବା ମୋତେ ଘରକୁ ନେଇ ଆସିଲେ।

ବାବା ଆମର ରୁଗ୍‌ଣ ଅବସ୍ଥା ଜଣେଇ ତାଙ୍କ ବିଭାଗକୁ ଲେଖି କେତେ ମାସର ଦରମା ଆଣିଥିଲେ। ସେଇ ଟଙ୍କାରେ ଆମ ସମସ୍ତଙ୍କୁ ବାବା ଖୋର୍ଦ୍ଧା ନେଇଗଲେ। ଖୋର୍ଦ୍ଧାରେ ମୋର ବଡ଼ ମାମୁଁ ବିପିନ ବିହାରୀ ରାୟ ଅବକାରୀ ଇନ୍‌ସପେକ୍ଟର ଥିଲେ। ତାଙ୍କର ଖୋର୍ଦ୍ଧା ସାନ୍ତରାପୁରରେ ନିଜର ଖଣ୍ଡେ ଘର ଥିଲା। ସେ ଘର ଖଣ୍ଡିକ ଅତି ସୁନ୍ଦର ଥିଲା। ଗୋଟିଏ ପାହାଡ଼ିଆ ଅଞ୍ଚଳରେ ସ୍ୱାସ୍ଥ୍ୟ ନିବାସ ପରି। କୂଅର ପାଣି ଅତି ନିକଟରେ। ଲୋଟା ବୁଡ଼େଇ ପାଣି ଆଣି ହୁଏ। ଦଉଡ଼ିର ଦରକାର ନାହିଁ। ପାଣି ଦେଖିବାକୁ ଧଳା ରଙ୍ଗର। ଯେମିତି ଦୁଧ ଗୋଳା ହେଇଛି। ପାଣିର ସୁଆଦ ଅତି ଚମତ୍କାର। ମୋର ମନେ ଅଛି, ବାବା ଆମକୁ କଟକରୁ ନେଇ ଟ୍ରେନ୍ ଯୋଗେ ଖୋର୍ଦ୍ଧାରୋଡ଼ ଷ୍ଟେସନ୍‌ରେ ପହଁଚିଲେ ମୋର ଚାଲିବାକୁ ବଳ ନଥାଏ। ବାବା, ମା ମୋର ଦୁଇ ବାହାକୁ ଧରି ଘୋଷାରି ଘୋଷାରି ନେଲା ପରି ନେଲେ। ଖୋର୍ଦ୍ଧାରୋଡ଼ ଷ୍ଟେସନ୍‌ରେ ଯେଉଁ overbridge ଅଛି, ତାକୁ ଟପି ଯିବା ପାଇଁ ବିଶେଷ କଷ୍ଟ ହେଲା। ମୁଁ ଚାଲି ପାରୁନଥାଏ। ବାବା, ମା'ଙ୍କ ଦିହରେ ମଧ ବଳ ନଥାଏ। ମୋର ଦୁଇ ବାହାକୁ ଧରି କୌଣସି ମତେ ଷ୍ଟେସନ ଆରପଟକୁ ନେଇଗଲେ। ରାତି ପାହିଲା। ସେତେବେଳେ ଖୋର୍ଦ୍ଧାରୋଡ଼ ଷ୍ଟେସନ୍ ବଜାର ଆଜିକାଲି ପରି ନଥିଲା। ଆଜିକାଲି ଯେଉଁଠି J.B. Thaker ଏବଂ ଅନ୍ୟାନ୍ୟଙ୍କର ଝଲମଲିଆ ଦୋକାନପାଟ ରହିଛି, ସେତେବେଳେ ସେ ଜାଗାରେ କେବଳ ଟାଟିଘର ସବୁ ଥାଏ। ଆମେମାନେ ଦାନ୍ତ ଘଷି ସାରି ସେଇଠି ଗୋଟିଏ ଗୁଡ଼ିଆ ଦୋକାନରେ ଜଳଖିଆ କଲୁ। ସେତେବେଳେ ଖୋର୍ଦ୍ଧାରୋଡ଼ ଷ୍ଟେସନ୍‌ରୁ ଖୋର୍ଦ୍ଧାକୁ ଯିବା ପାଇଁ ବସ୍ ଚାଲୁ ନଥିଲା କି ଟ୍ୟାକ୍ସି ଯା ଆସ କରୁ ନଥିଲା। କେବଳ ବଳଦଗାଡ଼ି ଭରସା। ଟାଟ ଶଗଡ଼, ଖୋର୍ଦ୍ଧାରୋଡ଼ରୁ ଖୋର୍ଦ୍ଧାକୁ ଯିବା ପାଇଁ ଶଗଡ଼ଭଡ଼ା ଚାରିଅଣା ମାତ୍ର ଥିଲା। ଆମେ ଗୋଟିଏ ଶଗଡ଼ରେ ବସି ମାମୁଁ ଘରକୁ ଗଲୁ। ବଡ଼ମାମୁଁ ଥିଲେ। ମୋର ଟିକିଏ ମୁଣ୍ଡର ଅବସ୍ଥା କେମିତି ଭଲ ଲାଗିଲା। ଖୋର୍ଦ୍ଧା ସାନ୍ତରାପୁରରେ ମାମୁଁଙ୍କର ସେ ଘର ଖଣ୍ଡକ ଅତି ସୁନ୍ଦର ମନେ ହେଲା। ସାମନାରେ କୋଚିଲା ବଣ, ପଛପଟେ ଜଙ୍ଗଲିଆ ଜାଗା, ଗାଁ ଆଉ ଘରର ଦକ୍ଷିଣ ପଟେ ବରୁଣେଇ ପାହାଡ଼, ଆଉ ଧାନବିଲ। ଉତରପଟେ କେତେଗୁଡ଼ିଏ ଗାଉଁଲି ଘର ଆଉ ଖୋର୍ଦ୍ଧା ବଜାର ଆଡ଼କୁ ରାସ୍ତା। ମାମୁଁଙ୍କର ସେ ଘର ଖଣ୍ଡିକ ମଧ ଗୋଟିଏ ଗାଉଁଲୀ ଘର ପରି ଦୋଚାଳୀ ଚାଳ ଘର।

ଆମେମାନେ ପ୍ରଥମେ ପ୍ରଥମେ କିଛି ଖାଇ ପାରୁ ନଥିଲୁ କି କୁଆଡ଼େ ବୁଲିଯାଇ ପାରୁ ନଥିଲୁ। ପେଟରେ ଗୋଟାଏ ଗୋଟାଏ ପ୍ଲିହା, ଦେହରେ ରକ୍ତ ନାହିଁ। ଦୁର୍ବଳ ଅବସ୍ଥା। ମାମୁଁ ଆମମାନଙ୍କର ଅବସ୍ଥା ଦେଖି କହିଲେ, ତୁମେମାନେ ଔଷଧ ଆଉ ଖାଅନା। କେବଳ ଏଠା କୋଚିଲା ଗଛର ହାଓ୍ୱା ଆଉ କୂଅ ପାଣିରେ ତୁମ ଦିହ ସବୁ ଭଲ ହେଇ ଯିବ।

ପ୍ରକୃତ ଆମେ ଯାହା ଖାଇ ପାରୁ ନଥିଲୁ, ସେଠି ଗଣ୍ଡାଏ ଗଣ୍ଡାଏ ବେଶି ଖାଇବାକୁ ଆରମ୍ଭ କଲୁ । ଭାତ, ବାଣପୁରର ମୁଗଡ଼ାଲି, କୋଇଲିଖିଆ ଶାଗ ଆଉ ଚିଂମାଣି ମାଛ ଆଉ ଗୋଟାଏ ସାଧାରଣ ତରକାରୀ । ସେ ଆମ ପାଟିକୁ କି ସୁଆଦ ଜଣାଗଲା ! ଖାଲି ବାଣପୁରର ମୁଗଡ଼ାଲି ଦେଇ ଭାତ ଖାଇ ହୋଇ ଯାଉଥାଏ । ଆଉ ଅନ୍ୟ ତରକାରି ତ ଅଛି । କ୍ରମଶଃ ଆମମାନଙ୍କର ସ୍ୱାସ୍ଥ୍ୟ ଭଲ ଆଡ଼କୁ ଆସିଲା । ଦେହରେ ରକ୍ତ ହେଲା । ଅଳ୍ପଅଳ୍ପ ଚାଲବୁଲ କରିପାରିଲୁ ।

ସେଠି ବେଳେବେଳେ ଦେଖୁଛୁ ମେଘ ବର୍ଷିବା ପୂର୍ବରୁ ବାଦଲ ମାଡ଼ି ଆସେ ଯେ ଆଉ ବରୁଣେଇ ପାହାଡ଼ ଦିଶେ ନାହିଁ । ଏମିତି କି ଧାନ ବିଲ ଉପରେ ମଧ ବାଦଲ ଛାଇ ଯାଏ । ଧାନ ବିଲ ମଧ ଆଉ ଦିଶେ ନାହିଁ । ବଡ଼ ସୁନ୍ଦର ଦୃଶ୍ୟ । ଆମେମାନେ ରାତିରେ ଘରେ ଶୋଇ ବରୁଣେଇ ପାହାଡ଼ରେ ବାଘ ଗର୍ଜିବା ଶୁଣିଛୁ । ବଡ଼ ଭୟ ଲାଗେ । ସବୁବେଳେ ମନେ ହୁଏ ବାଘ ଘର ଭିତରକୁ ପଶି ଆସିବକି ?

ଥରେ ଗୋଟାଏ ଘଟଣା ହେଲା, ମାମୁଁ କୁଆଡ଼େ ଗସ୍ତରେ ଯାଇଥାନ୍ତି । ଆମେମାନେ ସବୁ ଏକାଥାଉ । ମାମୁଁ ଜଣେ ଲୋକକୁ ଜଗେଇ ଦେଇ ଯାଇଥାନ୍ତି । ଭାରି ମଜବୁତିଆ ଲୋକ ସେ, ଦୈନିକ ରାତିରେ ଆସି ଜଗି ଶୁଏ । ଦିନେ ସନ୍ଧ୍ୟା ପରେ ସେ ଲୋକଟା ଆସି ନାହିଁ । ମୂଷଳ ଧାରାରେ ବର୍ଷା ହଉଛି, ଆମେ ସମସ୍ତେ ରୋଷେଇ ଘରେ ଭିତରୁ କବାଟ ବନ୍ଦ କରି ବସିଛୁ, ମା' ରାନ୍ଧୁଛନ୍ତି, ଏଇ ସମୟରେ ଅଗଣାରେ ଗୋଟାଏ ପ୍ରକାଣ୍ଡ ବାଘ କୁଦିଲା ପରି ଶବ୍ଦ ହେଲା । ବାବା, ମା, ମୁଁ, ସାନ ଭଉଣୀ ସମସ୍ତେ ଆତଙ୍କିତ ହୋଇ ଭାବିଲୁ ଅଗଣାରେ ବାଘ କୁଦିଲା । ଏ ନିଶ୍ଚୟ ବାଘ । ଭୟରେ ଆମ ଗାଁର ଠାକୁର, ଠାକୁରାଣୀଙ୍କଠୁଁ ଆରମ୍ଭ କରି କଟକର ଯୋଗିଆସାହିସ୍ଥ ଗ୍ରାମ ଦେବତୀ, କଟକ ଚଣ୍ଡୀ ପୁଣି ଖୋର୍ଦ୍ଧାର ଧବଳେଶ୍ୱରଙ୍କଠୁଁ ଆରମ୍ଭ କରି ବରୁଣେଇ ଠାକୁରାଣୀଙ୍କୁ ମନେ ମନେ ସ୍ତୁତି, ଭଜନ ଚାଲିଲା, "ମା ରକ୍ଷା କର, ମ୍ୟାଲେରିଆ ଜରରେ ମରିବାପରି ହୋଇ ଆସିଥିଲୁ, ଏଠି ବାଘ ମୁହଁରେ ଗଲୁ ।"

ଏଣେ ଆମେ ଯେଉଁ ରୋଷେଇ ଘରେ କବାଟ କିଳି ବସିଥିଲୁ ସେ କବାଟ ବି କିଛି ନୁହଁ । ବାଘ ଗୋଟାଏ ଧକ୍କା ଦେଲେ କବାଟ ଚାରିଖଣ୍ଡ ହୋଇ ଭାଙ୍ଗି ପଡ଼ିବ । ଏଇ ସମୟରେ ବାବା କହିଲେ, ମୁଁ କବାଟ ଖୋଲି ଦେଖେ, ମା' ମନା କଲେ ନା, କବାଟ ଖୋଲନା । ବାବା ମନା କଲେ, ନାହିଁ କବାଟ ଖୋଲନା । ବାବା, ମା ମନା କରୁ କରୁ ମୁଁ ଅବାଧ ହୋଇ କବାଟ ଅଳ୍ପ ଖୋଲି ଅନେଇଲା ବେଳକୁ ଅଗଣାରେ ଗୋଟାଏ ପିଜୁଳି ଗଛ ଥିଲା, ତାରି ତଳେ ଗୋଟାଏ କାଳିଆ ହୋଇ କ'ଣ ଦିଶୁଛି । ମୁଁ ହଠାତ୍ ବୁଝି ପାରିଲି ଯେ ପିଜୁଳି ଗଛରେ ରାତିବେଳେ ବାଦୁଡ଼ି ପିଜୁଳି ଖାଇବା ଯୋଗୁଁ ତାଙ୍କୁ ଘଉଡ଼େଇବା ପାଇଁ ଯେଉଁ ଟିଣ ବନ୍ଧା ହୋଇଥିଲା ସେଥିରେ ବର୍ଷା ପାଣି ପଶିବା ଯୋଗୁଁ ସେ ଟିଣ ଛିଣ୍ଡି ପଡ଼ିଛି । ଏ ଆଉ କିଛି ନୁହେଁ । ବାଘ ହୋଇଥିଲେ ସେ କ'ଣ ବର୍ଷାରେ ଅଗଣାରେ ଶୋଇଥାନ୍ତା ? ଏ କଥା ମୁଁ ବାବା, ମା'ଙ୍କୁ କହିଲାରୁ ବାବା, ମା' କବାଟ ଭଲ କରି ଖୋଲି ଦେଖିଲେ, ହସ ଉଠିଲା, ଆମେ ବାଘଭୟରୁ ମୁକ୍ତି ପାଇଲୁ ।

ମାମୁଁ ଗସ୍ତରୁ ଫେରିଲା ପରେ, ମାମୁଁଙ୍କୁ ଏ ବିଷୟ କୁହାଗଲା, ମାମୁଁ ହସିଲେ । ଆମେମାନେ କ୍ରମଶଃ ସବଳ ହେଲୁ । ଦିହରେ କିଛି ରକ୍ତ ହେଲା । ଆମେ ଭଲ ଭାବରେ ଚାଲବୁଲ କରି ପାରିବାରୁ ମାମୁଁ କହିଲେ, ତୁମେମାନେ ଏଣିକି ସକାଳ, ସନ୍ଧ୍ୟା ଏ କୋଚିଲା ବଣ ଭିତରେ କିଛି ବାଟ ବୁଲିବାକୁ ଯାଅ । ଆମେମାନେ ମାମୁଁଙ୍କ କଥା ମାନି ଦୈନିକ ସକାଳ, ସନ୍ଧ୍ୟା କିଛି କିଛି ବାଟ କୋଚିଲା ବଣ ଭିତରେ ବୁଲିବାକୁ ଆରମ୍ଭ କଲୁ ।

ଆଉ ଥରେ ମାମୁଁ ଗସ୍ତରେ ଯାଇଛନ୍ତି, ଆମେମାନେ ଶଗଡ଼ରେ ବରୁଣେଇ ପାହାଡ଼ରେ ବରୁଣେଇ ଠାକୁରାଣୀଙ୍କ ଦର୍ଶନ ପାଇଁ ବାହାରିଲୁ । ମୁଁ ତ ସେତେବେଳେ ରାଧାନାଥ ଗ୍ରନ୍ଥାବଳୀ, ମଧୁସୂଦନ ଗ୍ରନ୍ଥାବଳି ଆଉ ଚିନ୍ତାମଣି ମହାନ୍ତିଙ୍କ କେତେକ କାବ୍ୟ ପଢ଼ି ପୂରାପୁରି କବି ପ୍ରକୃତିର ହୋଇଯାଇଥାଏ । ବେଶିଭାଗ ନିଜକୁ ରାଧାନାଥ ରାୟ ମନେ କରୁଥାଏ । ଆମର ଶଗଡ଼ ବରୁଣେଇ ପାହାଡ଼ର

ଯେତେ ଯେତେ ନିକଟ ହଉଥାଏ, ମୋ ମନ ସେତେ ଆନନ୍ଦରେ ଭରି ଉଠୁଥାଏ । ଏଥି ପୂର୍ବରୁ ମୁଁ ଯଦିବା ପାହାଡ଼ ଦେଖିଥିଲି, ଏତେ ନିକଟରେ ଦେଖି ନଥିଲି । କିମ୍ବା ସେତେବେଳେ ଏତେ କାବ୍ୟ, କବିତାରେ ପାହାଡ଼, ଜଙ୍ଗଲ, ଝରଣାର ବର୍ଣ୍ଣନା ପଢ଼ି ନଥିଲି । ବର୍ତ୍ତମାନ ଅବସ୍ଥାରେ ତ ପାହାଡ଼, ଅରଣ୍ୟ, ଝରଣାର କଳନାଦ ମନକୁ ବିଚଳିତ କରିଦେଲା । ତା'ପରେ ମଝିରେ ମଝିରେ ଜଙ୍ଗଲ ଅନ୍ତରାଳରୁ ବିଭିନ୍ନ ପ୍ରକାରର ପକ୍ଷୀଙ୍କ ଡ଼ାକ ମନକୁ ଆନନ୍ଦରେ ଆନ୍ଦୋଳିତ କରୁଥାଏ ।

ଆମେମାନେ ଶଗଡ଼ ରହିବା ଜାଗାରୁ ଚାଲିଚାଲି ବରୁଣେଇ ଠାକୁରାଣୀଙ୍କ ମନ୍ଦିର ପର୍ଯ୍ୟନ୍ତ ଗଲୁ । ଠାକୁରାଣୀ ଦର୍ଶନ କଲୁ । ମନ୍ଦିର ସାମନାରେ ବସିଲୁ । ସେତେବେଳେ କେବଳ ସେହି ଠାକୁରାଣୀଙ୍କ ମନ୍ଦିରଟି ଥାଏ । ଆଉ ସାମନାରେ ଗୋଟାଏ ବଡ଼ ପକ୍‌କା କୁଣ୍ଡ ଥାଏ, ସେ କୁଣ୍ଡରେ ମନ୍ଦିର ଭିତରୁ ଦେବୀଙ୍କ ପାଦଦେଶରୁ ଝରି ଆସୁଥିବା ଝରଣାର ପାଣି ଆସି ଗୋଟିଏ ପଥର ବୃଷଭର ମୁହଁ ବାଟ ଦେଇ ଝରି ପଡୁଥାଏ । ପୁଣି ସେ କୁଣ୍ଡରୁ ପାଣି ଝରି ଅନ୍ୟ କୁଆଡ଼େ ଦୂରକୁ ବୋହି ଯାଉଥାଏ । କି ଶାନ୍ତ ମନୋମୁଗ୍ଧକର ପରିବେଶ । ମନ୍ଦିର ସାମନାରେ ବସି ଗୋଟିଏ ବୁଢ଼ା ପୂଜକ ବ୍ରାହ୍ମଣ ସାଥିରେ ବାବା ଗପ କଲେ । ଆମେମାନେ ନିକଟରେ ବସିଥାଉ । ଏଇ ସମୟରେ ବାବା ଏବଂ ବ୍ରାହ୍ମଣ ମଝିରେ ଉପରୁ ଗୋଟିଏ ଓଉ ଗଛରୁ ପାଚିଲା ଓଉଟିଏ ଦୁଲ୍ କରି ଖସି ପଡ଼ିଲା । ସେ ଓଉକୁ ଦେଖି ମୋ ପାଟିରୁ ଲାଳ ବୋହିଲା । ମୁଁ ତ ମ୍ୟାଲେରିଆରେ ଭୋଗି ଖାଲି ଖଟା ଖାଇବାକୁ, ମାଛକୁ ବିଲେଇ ପରି ହଉଥାଏ । ଏଣୁ ମୁଁ ମନେ ମନେ ବରୁଣେଇ ଠାକୁରାଣୀଙ୍କୁ ଡ଼ାକିଲି କେମିତି ଓଉ ଖଟା ଟିକିଏ ଖାଇବି, ମା'ଲୋ ଦୟାକର ।

ସତକୁ ସତ ମା' ବରୁଣେଇ ମୋ ଡ଼ାକ ଶୁଣି ଦୟା କଲେ । ବ୍ରାହ୍ମଣ କହିଲା, ବାବୁ ଦେଖନ୍ତୁ ଆପଣଙ୍କ ଭାଗ୍ୟ ଭଲ, ଆପଣଙ୍କ ପିଲାମାନେ ଆରୋଗ୍ୟ ହେଇଯିବେ । ଦେବୀ ଆପଣଙ୍କ ଉପରେ ସୁପ୍ରସନ୍ନା ଅଛନ୍ତି, ନଚେତ୍ ଏ ଉଆଉଟିକି ନେଇଯାନ୍ତୁ । ଭଲ କରି ରାନ୍ଧିବେ, ନିଜେ ଖାଇବେ, ପିଲାଙ୍କୁ ଖୋଇବେ, ଆପଣ କିଛି ଭୟ କରିବେ ନାହିଁ, ଆପଣ ସପରିବାରେ ଆରୋଗ୍ୟ ଲାଭ କରିବେ ।

ବ୍ରାହ୍ମଣର କଥା ଶୁଣି ମୋ ମନ ଭିତରଟା ଉଲୁସି ଉଠିଲା । ଖାଲି ମନ ହେଲା କେମିତି ଯାଇ ଘରେ ପହଁଚିବୁ । ମା ଓଉ ଖଟା କଲେ ଖାଇବା । ପାଟି ଟକ ଟକ ହେଲା । କେତେମାସ ହେଲା ପାଟିରେ ଖଟା ବାଜି ନାହିଁ । କେତେବେଳେ ଘରକୁ ଫେରିବା ?

ଆମେମାନେ ବରୁଣେଇ ଠାକୁରାଣୀ, ପାହାଡ଼, ଜଙ୍ଗଲ, ଝରଣା ସବୁ ଦେଖିଲୁ । ବରୁଣେଇ ଠାକୁରାଣୀଙ୍କ ପ୍ରସାଦ ଏଣ୍ଡୁରି ପିଠା କିଣିଲୁ । କି ସୁନ୍ଦର ସେ ପିଠା ! ପିଠା ମଧ କେତେଦିନ ହେଲା ଜର ସକାଶେ ପାଟିରେ ବାଜି ନଥିଲା । ପିଠା ମଧ ଦେଖି ପାଟିରୁ ଲାଳ ଗଡ଼ିଲା । ମନ ଉଛନ୍ନ ହେଲା କେମିତି ଶୀଘ୍ର ଯାଇ ଘରେ ପହଁଚିବୁ ।

ଘରକୁ ଫେରିଲୁ । ବରୁଣେଇଙ୍କ ପ୍ରସାଦ ସନ୍ଧ୍ୟା ବେଳେ ଖାଇଲୁ । ରାତିକି ରୋଷେଇ ହେଲା । ମା' ଚମତ୍କାର ଓଉ ଖଟା କଲେ । ବାବା, ମୁଁ, ସାନ ଭଉଣୀ ଦି'ଜଣ ରୋଷେଇ ଘରେ ବସିଥାଉ । ଭାତ ବଢ଼ା ହେଲା, ଆମେମାନେ ଯାହା ଖାଉଥିଲୁ, ସେଦିନ ଓଉ ଖଟା ଯୋଗୁଁ ତିନି ଗୁଣ କି ଚାରିଗୁଣ ଭାତ ଖାଇଲୁ । ସେଦିନ ଖାଇବା କି ଚମତ୍କାର ଲାଗିଲା, ଯେମିତି କାର୍ତ୍ତିକ ମାସ ଶେଷରେ ଛାଡ଼ଖାଇ ଦିନ ଖାଇଲା ଭଳି ।

ଓଉ ଖଟାତ ଖାଇଲୁ । ତହିଁ ଆରଦିନ ପୁଣି ଜର ଆରମ୍ଭ ହେଲା । କେବଳ ବାବା ମା'ଙ୍କୁ ଛାଡ଼ି ମୁଁ ଏବଂ ସାନ ଭଉଣୀ ଦି'ଜଣ ଜରରେ ଘୋଡ଼ି ଘାଡ଼ି ହେଇ ଶୋଇଲୁ । ବାବା, ମା ଆମକୁ ପୁଣି ଜରରେ ଆକ୍ରାନ୍ତ ହବାର ଦେଖି ମନଦୁଃଖରେ ହତାଶ ହେଇ ପଡ଼ିଲେ କାରଣ ଜର ତ ଛାଡ଼ି ଯାଇଥିଲା କି ଭୁଲ କଲେ । କାହିଁକି ଓଉ ଖଟା ଖୋଇଲେ ? ପିଲାଏ ତ ଭଲ ଥିଲେ, ପୁଣି ଯେ ଜର ଆରମ୍ଭ ହେଲା, କେମିତି ଭଲ ହବ ?

ଦିନେ ସଞ୍ଜ ପୂର୍ବରୁ ବାବା ହତାଶ ହେଇ ଦାଣ୍ଡ ବାରନ୍ଦାରେ ବସିଛନ୍ତି । ଏଇ ସମୟରେ ବଡ଼ମାମୁଁ ଗସ୍ତରୁ

ଫେରି ପହଁଚିଲେ । ମାମୁଁ ପ୍ରଥମେ ବାବାଙ୍କୁ ପଚାରିଲେ କ'ଣ ସବୁ ଭଲ ତ? ବାବା ଦୁଃଖରେ ଉତ୍ତର ଦେଲେ ଭଲ କ'ଣ? ପୁଣି ତ ପିଲାଙ୍କୁ ଜର ହେଲା । ମାମୁଁ ଆଶ୍ଚର୍ଯ୍ୟ ହେଇ କହିଲେ, କାହିଁକି? ପିଲାଏ ତ ଭଲ ହେଇ ଚଲାବୁଲା କରୁଥିଲେ ପୁଣି କାହିଁକି ଜର ହେଲା? ବାବା ତା'ପରେ ଓଉ ଖାଇବା ଘଟଣା ବର୍ଣ୍ଣନା କରି କହିଲେ, ଓଉ ଖଟା ଖାଇବା ପରେ ଜର ଆରମ୍ଭ ହେଲା ।

ମାମୁଁ ଏ କଥା ଶୁଣି ବାବାଙ୍କୁ ପରିହାସ କରି କହିଲେ, ମାଟିଖୋଳା ଡ଼ିପାର୍ଟମେଣ୍ଟରେ (ମାମୁଁ P.W.D. କୁ ମାଟି ଖୋଳା ଡ଼ିପାର୍ଟମେଣ୍ଟ ବୋଲି ପରିହାସ କରି କହୁଥିଲେ) ଚାକିରୀ କରି ତୁମର ବୁଦ୍ଧି ଲୋପ ହେଇ ଗଲାଣି । ତୁମକୁ ବ୍ରାହ୍ମଣ କହିଲା ବୋଲି ତୁମେ ପିଲାଙ୍କୁ ଓଉ ଖଟା କରି ଖୋଇଲ?

ଖୋର୍ଦ୍ଧାରେ ଥିବା ବେଳେ, ସେହି ଯେ ଜର ହେଇଥିଲା, ତା'ପରେ ଆଉ ହେଇ ନାହିଁ । ଆମେମାନେ ସମ୍ପୂର୍ଣ୍ଣ ଆରୋଗ୍ୟ ଲାଭ କଲୁ । ଦିହରେ ବଳ ଆସିବା ପରେ ଆମେମାନେ ପୁଣି ମାମୁଁଙ୍କ ଘର ସାମ୍ନାରେ କୋଚିଲା ବଣରେ ଦୈନିକ କିଛି କିଛି ବାଟ ବଢ଼େଇ ବୁଲିବାକୁ ଆରମ୍ଭ କଲୁ ।

ଖୋର୍ଦ୍ଧାରେ ଦିନେ ମାମୁଁଙ୍କ ଘରେ ଥିବା ବେଳେ ଦିନେ ରାତିରେ ଶୋଇଛି ଗୋଟାଏ ସ୍ୱପ୍ନ ଦେଖିଲି ମୁଁ ଗୋଟାଏ ବଡ଼ ବହି ପାଇଛି । ବହିର ନାମ, କୃଷ୍ଣସାର । ତହିଁ ଆରଦିନ ସକାଳେ ଉଠି ଦେଖିଲି, ମାମୁଁଙ୍କର ଗୋଟାଏ ଟେବୁଲ ଉପରେ ଅନେକ ଆଳିମାଳିକା ଜିନିଷ ଗଦା ହେଇଥିଲା । ମୁଁ କେବେହେଲେ ସେ ଜିନିଷ ସବୁକୁ ଘାଣ୍ଟୁ ନଥିଲି । ସେଦିନ କାହିଁକି ମନ ହେଲା, ସେ ଜିନିଷ ସବୁ କ'ଣ ଦେଖିବା ପାଇଁ । ସେ ଟେବୁଲ ଉପରେ ଗୋଟାଏ ମଶାରି ଖୋଲା ହେଇ ଗଦା ହେଇଥିଲା । ମୁଁ ଯେମିତି ସେ ମଶାରିକୁ ଆଡ଼େଇ ଦେଇଛି, ମୋ ହାତରେ ଖଣ୍ଡେ ବହି ପଡ଼ିଲା । ବହି ଖଣ୍ଡକ ରାତିରେ ଯେମିତି ସ୍ୱପ୍ନ ଦେଖିଥିଲି ଅବିକଳ ସେମିତି । କିନ୍ତୁ ବହିର ନାମ କୃଷ୍ଣସାର ପରିବର୍ତ୍ତେ "ମାମୁଁ", ଫକୀର ମୋହନ୍ ସେନାପତିଙ୍କ ଲେଖା । ମୋତେ ଭାରି ଆଶ୍ଚର୍ଯ୍ୟ ଲାଗିଲା । ଆଉ ମଧ ହସ ମାଡ଼ିଲା, କ'ଣ? ମାମୁଁଙ୍କ ଘରେ ଅଛି ପୁଣି ଯେଉଁ ବହି ଖଣ୍ଡକ ପାଇଲି ତା'ର ନାମ ମଧ "ମାମୁଁ" । ସ୍ୱପ୍ନରେ ଯେମିତି ଖଣ୍ଡେ ବହି ଦେଖିଥିଲି, ଅବିକଳ ସେମିତି! ମୁଁ ଆଉ ଅନ୍ୟ କିଛି ନ ଖୋଜି ବହିକୁ ଆଣି ଗୋଟାଏ ଚୌକୀରେ ବସି ପଢ଼ିବାକୁ ଆରମ୍ଭ କରିଦେଲି ।

ମୁଁ ସେ ପର୍ଯ୍ୟନ୍ତ ଫକୀର ମୋହନଙ୍କ ଲେଖା ପଢ଼ି ନଥିଲି କି ଜାଣି ନଥିଲି । ସେହି ହେଲା ମୋର ଫକୀର ମୋହନଙ୍କ ସାହିତ୍ୟ ସହିତ ପ୍ରଥମ ପରିଚୟ । "ମାମୁଁ" ବହି ଖଣ୍ଡକ ପଢ଼ୁ ପଢ଼ୁ ଭାରି ଚମତ୍କାର ଲାଗିଲା । ମା' ଘର ଓଳଉଥିଲେ, ତାଙ୍କୁ ପଢ଼ି ଶୁଣେଇଲି । ସେଦିନ କି ଆନନ୍ଦ! ମା' କେତେକ ଶୁଣିଲେ, ପୁଣି ଅନ୍ୟ କାମରେ ଲାଗିଲେ । ମୁଁ କିନ୍ତୁ "ମାମୁଁ" ବହି ଖଣ୍ଡକ ଆଉ ଛାଡ଼ି ପାରିଲି ନାହିଁ । "ମାମୁଁ" ବହି ଖଣ୍ଡକ ଶେଷ କଲା ପରେ ମନ ଡ଼ାକିଲା, ଫକୀର ମୋହନ ସେନାପତିଙ୍କର ଆଉ ସବୁ ଲେଖା ପଢ଼ିବା ପାଇଁ । କିନ୍ତୁ ସେଠି ଆଉ କିଛି ବହି ପାଇଲି ନାହିଁ । କେତେକ ବଙ୍ଗଳା ଗ୍ରନ୍ଥାବଳି ପାଇଲି । ତାକୁ ସବୁ ପଢ଼ି ଶେଷ କଲି ।

ଖୋର୍ଦ୍ଧାରେ ରହିବା ଭିତରେ ଆମେମାନେ ସମ୍ପୂର୍ଣ୍ଣ ଆରୋଗ୍ୟ ଲାଭ କଲୁ । ଖୋର୍ଦ୍ଧାରେ ବୁଲି କେତେକ ମଠ ଦେଖିଲୁ । ଥରେ ଖୋର୍ଦ୍ଧା ହାଇସ୍କୁଲ ଆଡ଼େ ବୁଲିବାକୁ ଗଲୁ । ମୁଁ ଦୂରରୁ ଠିଆ ହେଇ ଖୋର୍ଦ୍ଧା ସ୍କୁଲକୁ ଅନେଇ ମନେ ମନେ ଦୁଃଖ ଅନୁଭବ କଲି । ମୋ ଭାଗ୍ୟରେ ପଢ଼ିବାର ସୁଯୋଗ ଆଉ ମିଳିଲା ନାହିଁ । ମୁଁ ଭାବୁଥିଲି, ମାମୁଁ ବୋଧହୁଏ କହିବେ, ଏଇଠି ମୋ ପାଖରେ ରହି ପଢ଼ । କିନ୍ତୁ ମାମୁଁ ସେ ବିଷୟରେ କୌଣସି ସୂଚନା ଦେଲେ ନାହିଁ ।

ଖୋର୍ଦ୍ଧା ଛାଡ଼ିବା ପୂର୍ବ ଦିନ ଆମେ ଖୋର୍ଦ୍ଧାଗଡ଼ର ଭଗ୍ନାବଶେଷ ଦେଖିଲୁ । ଆଉ ଥରେ ବରୁଣେଇ ଦେଖିବାକୁ ଯାଇଥିଲୁ । ବରୁଣେଇ ଦେଖି ମନ ଭିତରେ ପ୍ରବଳ ଆଗ୍ରହ ଜନ୍ମିଲା । କେମିତି ଖଣ୍ଡେ ବରୁଣେଇ ବିଷୟରେ ରାଧାନାଥ ବାବୁଙ୍କ 'ଚିଲିକା' କାବ୍ୟ ପରି ଖଣ୍ଡେ କାବ୍ୟ ଲେଖିବି । ଆମେମାନେ ପୂର୍ଣ୍ଣ ଏକ ମାସ ଖୋର୍ଦ୍ଧାରେ ରହି ଖୋର୍ଦ୍ଧାରୁ ବିଦାୟ ନେଲୁ ।

## (୪)

ବାବା ଖୋର୍ଦ୍ଧା ଯିବା ପୂର୍ବରୁ କହୁଥିଲେ, ମାସେ ଖୋର୍ଦ୍ଧାରେ ରହିବେ ତା'ପରେ ଆଉ ମାସେ ପୁରୀରେ ରହିବେ। ସମ୍ପୂର୍ଣ୍ଣ ଆରୋଗ୍ୟ ହେଲା ପରେ କଟକ ଫେରିବେ। ଏଣୁ ଆମେମାନେ ଖୋର୍ଦ୍ଧା ଛାଡ଼ି ପୁରୀକୁ ଗଲୁ, ପୁରୀରେ ସେତେବେଳେ ମୋର ବଡ଼ ଭିଣେଇ ଅଦାଲତରେ ନାଜର ଥାନ୍ତି। ସେ ରହୁଥିଲେ ପୁରୀର ବେଲାବାସ କୋଠି ନିକଟସ୍ଥ ରାସ୍ତାର ଆର ପାଖରେ ବାଲି ଉପରେ ଯେଉଁ P.W.D.କର୍ମଚାରୀଙ୍କ ରହିବା ପାଇଁ କୋଠାଘର ସବୁ ଅଛି ସେ କୋଠାଘର ମଧ୍ୟରୁ ଗୋଟିଏ କୋଠାଘରେ। ବେଶ୍ ସୁନ୍ଦର ଘରଟିଏ। ବଡ଼ ଭିଣେଇଙ୍କ ସାନଭାଇ P.W.D.ର ଜଣେ କର୍ମଚାରୀ ଥିଲେ। ତାଙ୍କୁ ସେହି କୋଠାଘରଟି ରହିବା ପାଇଁ ମିଳିଥିଲା। ଏଣୁ ବଡ଼ଭାଇ, ସାନଭାଇ ଉଭୟେ ସେ ଘରେ ରହୁଥିଲେ।

ଆମେମାନେ ସମସ୍ତେ ଯାଇ ସେହି ଘରେ ପହଁଚିଲୁ। ସେତେବେଳେ ସନ୍ଧ୍ୟାବେଳ। ବଡ଼ ଭିଣେଇ ତାଙ୍କ ସାନଭାଇ କେହି ଅଫିସ୍‌ରୁ ଫେରି ନଥିଲେ। ବଡ଼ ଭଉଣୀ, ତାଙ୍କର ଯା' ଆଉ ଭଣଜା, ସମସ୍ତେ ସମୁଦ୍ର ଆଡ଼କୁ ବୁଲି ଯାଇଥିଲେ। ଘରେ କେବଳ ଚାକର, ପୂଜାରୀ ଥିଲେ। ଏଣୁ ଆମେ ସମସ୍ତେ ସେମାନଙ୍କର ଫେରିବା ପର୍ଯ୍ୟନ୍ତ ଅପେକ୍ଷା କରି ବସି ରହିଲୁ। ଭିଣେଇ, ଭଉଣୀ ସମସ୍ତେ ଫେରିଲେ। ଆମେ ପହଁଚିବା ଦେଖି ସମସ୍ତେ ଆନନ୍ଦ ଅନୁଭବ କଲେ। କିନ୍ତୁ ମୁଁ ପଢ଼ା ଛାଡ଼ିବା ଶୁଣି ବଡ଼ ଭଉଣୀ ଦୁଃଖ ପ୍ରକାଶ କଲେ।

ପୁରୀରେ ରହିବା ଭିତରେ ଦୈନିକ ବାବା, ମା ଆମକୁ ନେଇ ସମୁଦ୍ରକୂଳକୁ ବୁଲିବାକୁ ବାହାରିଲେ। ସକାଳେ ସମୁଦ୍ରକୂଳରେ ବୁଲିବା ବେଳେ ମନ ଆନନ୍ଦରେ ଭରି ଉଠେ। ମୁଁ ଆଉ ଭଣଜା କଙ୍କଡ଼ା ଧରିବାରେ ଲାଗିପଡୁ। କିନ୍ତୁ ଗୋଟିଏ ଧରି ପାରୁନା। ଦିନେ ଭଣଜା, ମୁଁ ଗୋଟାଏ ସାମୁଦ୍ରିକ ଜିନିଷକୁ ନେଇ ଗୋଡ଼ରେ ମାରି ball ପରି ସମୁଦ୍ରକୂଳରେ ଖେଳୁଛୁ। ତାକୁ ଯେ ଦେଖୁଥାନ୍ତି, କହୁଥାନ୍ତି, ଏ ରାବଣ ଛତା, କିଛି ସମୟ ଖେଳିବା ପରେ ଗୋଟାଏ ଢେଉ ଆସି ସେ ସାମୁଦ୍ରିକ ଜିନିଷ ଉପରେ ମାଡ଼ିଗଲାରୁ ସେ ଜିନିଷଟା ଜୀବନ୍ତ ଭାବରେ ପହଁରି ପହଁରି ପାଣି ସାଙ୍ଗରେ କୁଆଡ଼େ ଚାଲିଗଲା।

ଆମେମାନେ ସକାଳୁ ସମୁଦ୍ରକୂଳରୁ ବୁଲି ଆସି ଘରେ ନିତ୍ୟକର୍ମ ସାରି କିଛି ଖାଇ ପୁଣି ବାହାରି ଯାଉ ମନ୍ଦିର ଆଉ ବଜାର ଆଡ଼େ ବୁଲି ଦେଖିବା ପାଇଁ। ଜଗନ୍ନାଥଙ୍କ ମନ୍ଦିର ଭିତରେ ପଶିଲେ ମନ ଆନନ୍ଦରେ ଭରି ଉଠେ। କ'ଣ ଦେଖିବି? କାହାକୁ ଦେଖିବି? ଠାକୁରଙ୍କୁ ଦେଖିବି। କ'ଣ ଗୋଟିଏ ଠାକୁର ହେଇଛି? କାରୁକାର୍ଯ୍ୟ ଦେଖିବି, ସେ କ'ଣ କମ୍ ଚମତ୍କାର! ସେ କ'ଣ ଦିନେ କି ମାସେ ଦେଖିଲେ ମନ ଛାଡୁଛି? ଯାତ୍ରୀମାନଙ୍କୁ ଦେଖିବି, ସେ କ'ଣ ଜଣେ କି ଦି'ଜଣ ହେଇଛନ୍ତି? ଅସଂଖ୍ୟ। ଆନନ୍ଦବଜାର ଦେଖିବି, ସେ କି ସୁନ୍ଦର! କେତେ ରକମର ଲୋଭନୀୟ ପାଟିସୁଆଦିଆ ଜିନିଷ ସେଠି ବିକ୍ରି ହଉଛି। କେତେ ପ୍ରକାରର ସୁଗନ୍ଧ ସେଠୁ ବାହାରୁଛି! ଆନନ୍ଦବଜାରରେ ପଶିଲେ ପାଟିରୁ ଲାଳ ଗଡ଼ିଲା। ଖାଲି ମନ ଡ଼ାକିଲା, ଖାଇବି। ଆମେମାନେ ଘରୁ ଯେତେ ଖାଇ ଯାଇଥିଲେ ମଧ ବାବା, ମା ଆମକୁ ପୁଣି ପେଟେ ଖୁଆନ୍ତି। ମୋର ଜଗନ୍ନାଥଙ୍କ ପ୍ରତି ଯେତେ ଭକ୍ତି ନଥାଏ, ଜଗନ୍ନାଥଙ୍କ ପ୍ରସାଦ ପ୍ରତି ବେଶି ଭକ୍ତି ଥାଏ। ଖାଲି ଛକି ଥାଏ କେତେବେଳେ ଧୂପ ଉଠିବ। ଧୂପ ଉଠିଲେ ଚାଲିଲି ଆନନ୍ଦବଜାରକୁ। ଦିନେ ଦିନେ ବାବା, ମା, ମୁଁ, ସାନ ଭଉଣୀ ଦି'ଜଣ ସମସ୍ତେ ମନ୍ଦିରରେ ଅନ୍ନ ମହାପ୍ରସାଦ ପେଟ ଭରି ଖାଉ। ସେଦିନଟା ଆଉ ଘରେ ଖାଉନା। ସେତେବେଳେ ପୁରୀ ମନ୍ଦିରର ମ୍ୟାନେଜର ଥାନ୍ତି, ସଖୀ ଚାନ୍ଦ। ତାଙ୍କ ସମୟରେ ମନ୍ଦିରର ଅନେକ ଉନ୍ନତି ସାଧନ ହେଇଥିଲା। ଯେମିତି ମନ୍ଦିରର ସାମ୍ନାରେ ଗୋଟିଏ tube well ମନ୍ଦିରର ପ୍ରବେଶ ଦୁଆରର ଉପରେ ଗୋଟିଏ ଘଡ଼ି। ମନ୍ଦିର ଭିତରେ ଆବର୍ଜନା ସବୁ ପରିଷ୍କାର କରି, ମନ୍ଦିରର ମୁଖଶାଳା ଭିତର ପାଖରେ ବିଭିନ୍ନ ରକମର ଚିତ୍ରମାନ ସ୍ଥାପନ କରିବା, ଆନନ୍ଦବଜାରକୁ ପରିଷ୍କାର ରଖିବା ଇତ୍ୟାଦି ଇତ୍ୟାଦି।

ମୋର ତ ଛବି ଆଙ୍କିବାରେ ଆଗ୍ରହ ଥିଲା। ମୁଁ ବୁଲି ବୁଲି ସେ ଛବି ସବୁକୁ ଦେଖେ, କେମିତି ଅଙ୍କା

ହେଉଛି ? କେଉଁଠି କେଉଁ ରଙ୍ଗ କେମିତି ବ୍ୟବହାର କରା ହେଉଛି ? ଭାରି ଆନନ୍ଦ ଲାଗେ, ମନହୁଏ ଛବି ଆଙ୍କିବି । ଆମେମାନେ ବୁଲି ବୁଲି ଦିନ ବେଳା ଘରକୁ ଫେରୁ । ପୁଣି ସନ୍ଧ୍ୟାପରେ ଜଗନ୍ନାଥଙ୍କ ମନ୍ଦିରକୁ ବୁଲିବାକୁ ବାହାରୁ । ସେତେବେଳେ ପୁରୀ ସହରରେ ବିଜୁଳି ଆଲୁଅ ନଥିଲା, କି ମନ୍ଦିର ଭିତରେ ବିଜୁଳି ଆଲୁଅ ନଥିଲା । ଜାଗା ଜାଗା ଅନ୍ଧାର, ମୁହଁକୁ ମୁହଁ ଦିଶେନା । ମୁଁ ଦୈନିକ ଜଗନ୍ନାଥଙ୍କୁ ଆଉ ସରସ୍ୱତୀଙ୍କୁ ପ୍ରାର୍ଥନା କରେ, କେମିତି ପୁଣି ପଢ଼ିବି ।

ଯେଉଁଦିନ ବାବା, ମା ସନ୍ଧ୍ୟାପରେ ଆଉ ବୁଲିବାକୁ ଯାନ୍ତି ନାହିଁ, ସେଦିନ ମୁଁ ଏକା ମନ୍ଦିରକୁ ବୁଲିବାକୁ ପଳାଏ । ସେତେବେଳେ ପୁରୀ ସହରରେ ସିନେମା କି ଥିଏଟର ନଥିଲା । କେବଳ ସେହି ମନ୍ଦିର ଥିଲା ଗୋଟିଏ ମାତ୍ର ଆକର୍ଷଣୀୟ ସ୍ଥାନ ଆଉ ସମୁଦ୍ରକୂଳ । ଆମେମାନେ ଦୈନିକ ସନ୍ଧ୍ୟା ପୂର୍ବରୁ ସମୁଦ୍ରକୂଳ ଆଡ଼େ ବୁଲିବାକୁ ଯାଉ । ସୂର୍ଯ୍ୟାସ୍ତ ଦେଖୁ, ସେ କି ଚମତ୍କାର ଦୃଶ୍ୟ । ନୀଳ ଜଳ ରାଶି ଉପରେ ଦିଗ୍‌ବଳୟରେ ରକ୍ତିମ ସୂର୍ଯ୍ୟ ବିଲୀନ ହବାର ଦୃଶ୍ୟ ମନକୁ କେଉଁଆଡ଼େ ଘେନିଯାଏ । ସେ ଆନନ୍ଦକୁ କାଗଜ କଲମରେ ପ୍ରକାଶ କରିବା ଆଦୌ ସମ୍ଭବ ନୁହେଁ । ସେତେବେଳେ ଆଜିକାଲି ପରି ସମୁଦ୍ରକୂଳରେ ଏତେ ପ୍ରକାର ପାଟି ସୁଆଦ ଜିନିଷ, ଚେନାଚୁର ଇତ୍ୟାଦି ବିକ୍ରି ହଉ ନଥିଲା । ସମୁଦ୍ରକୁ ସକାଳ, ସନ୍ଧ୍ୟା ଦୁଇବେଳା ଦେଖି ମଧ ମନବୋଧ ହୁଏନା । ମନହୁଏ, ସବୁବେଳେ ଦେଖିବି ସମୁଦ୍ରର ଢ଼େଉ, କେତେକ ସାମୁଦ୍ରିକ ଚଢ଼େଇ, ସମୁଦ୍ରର ପାଣି ଉପରେ ଉଡ଼ି ବୁଲିବା ଆକାଶରେ ଦିନାନ୍ତର ରଙ୍ଗୀନ ଭସାଭସା ମେଘ, ନୋଳିଆମାନଙ୍କର ଜାଲ ଟଣା, ମାଛ ଧରା, ସବୁ ତ ମନକୁ ଆନନ୍ଦରେ ପୂର୍ଣ୍ଣ କରିଦିଏ ।

ଖୋର୍ଦ୍ଧାରେ ଥିବା ବେଳେ ବରୁଣେଇ ପାହାଡ଼ର ଜଙ୍ଗଲ, ଝରଣାର ଯେମିତି ଆକର୍ଷଣୀୟ ଶକ୍ତି ଅଛି, ଏଠି ମଧ ଖାଲି ଉର୍ମିଳ ନୀଳ ଜଳରାଶିର ସେମିତି ଆକର୍ଷଣୀୟ ଶକ୍ତି ଅଛି, କେହି କାହାକୁ ଊଣା ନୁହେଁ । ଥରେ ମନେ ଅଛି, ମୁଁ ଅତି ସକାଳୁ ଉଠି ସମୁଦ୍ର କୂଳକୁ ପଳେଇଲି, ଘରେ ସମସ୍ତେ ଶୋଇଥାନ୍ତି । ମୁଁ ଏକା ସମୁଦ୍ରକୂଳରେ ଯାଇ ପହଁଚିଲି, ସୂର୍ଯ୍ୟୋଦୟ ଦେଖିଲି, ଖରା ପଡ଼ିଲା । ମୁଁ ସମୁଦ୍ରକୂଳରେ ବୁଲୁବୁଲୁ ଦେଖିଲି, କୂଳରେ ପାଣିର ଅଳ୍ପ ଦୂରରେ ମଟାଳ ବାଲି ଉପରେ ଗୋଟାଏ ଛୋଟିଆ ସାପ ଖେଳୁଛି । ସେ ବୋଧହୁଏ ରାତିର ଜୁଆରରେ ଭାସି ଆସିଥିଲା । ଜୁଆର ଛାଡ଼ିଗଲା ପରେ ଆଉ ଯାଇ ପାରିନି । ସାପଟା ଦେଖିବାକୁ ଅଦ୍ଭୁତ ଧରଣର, ଦେହର ରଙ୍ଗ ଗାଢ଼ ନୀଳ ବର୍ଣ୍ଣ, ମୁହଁଟା ସିଂହ ପରି, ଉପର ତଳ ମାଡ଼ିରେ ଦାନ୍ତ, ଲାଞ୍ଜ ଆଡ଼ଟା ଚେପଟା ହେଇ ଖଣ୍ଡେ ପାତିଆ ପରି । ସେ ଲାଞ୍ଜର ଉପର ଆଉ ତଳ ଅଂଶରେ ଗୁରାଏ ଲୋମ ଆଉ ସେ ଲାଞ୍ଜର ଉଭୟ ପାର୍ଶ୍ୱରେ ତିନିତିନିଟା କଳା ବୁନ୍ଦା । ସାପଟା କାମୁଡ଼ିବା ଭଙ୍ଗିରେ ଆଁ କରି ଖେଳୁଥାଏ । ମୁଁ ତାକୁ ଦେଖି ମୋର ମନରେ ଗୋଟାଏ କୌତୁହଳ ଜନ୍ମିଲା । ଏମିତି ସାପ ତ କେଭେ ଆଗରୁ ଦେଖି ନଥିଲି । ଏ ଗୋଟାଏ ନୂଆ ଧରଣର ସାପ, ଯାକୁ ଘରକୁ ନେବି, ବାବା, ମା, ଭଉଣୀ, ଭିଣେଇ ସମସ୍ତଙ୍କୁ ଦେଖେଇବି । ଭାବିଲି, କେମିତି ନେବି ? କାଳେ କାମୁଡ଼ି ଦବ । ମନରେ ଗୋଟାଏ ଉପାୟ ଠିକ୍ କଲି, ଗୋଟାଏ ବାଲି ଉପରେ ଥୁଆ ହେଇଥିବା ବଡ଼ ଡ଼ଙ୍ଗା ଦେହରୁ ଖଣ୍ଡେ ଲମ୍ବା କତା ଦଉଡ଼ି ଛିଣ୍ଡେଇଲି । ତାକୁ ଆଣି ସାପ ଖେଳୁଥିବା ଜାଗାର ଅଳ୍ପ ଦୂରରେ ଲମ୍ବା କରି ପାରି ଦେଲି, ଭାବିଲି ସାପ ସେ ଦଉଡ଼ି ମଝିକୁ ଆସିଲେ, ସେ ଦଉଡ଼ି ଗୋଟାଏ ଗଣ୍ଠି ପକେଇ ସାପକୁ ମଝିଆ ମଝି ବାନ୍ଧି ଦେବି ।

ସତକୁ ସତ ସାପ ଅଳ୍ପ ସମୟ ମଧ୍ୟରେ ଯେମିତି ସେ ଦଉଡ଼ି ମଝିରେ ହେଉଛି ମୁଁ ଦଉଡ଼ିର ଦି'ପାଖକୁ ଧରି ସାପର ମଝି ଅଂଶରେ ଗୋଟାଏ ଗଣ୍ଠି ପକେଇ ବାନ୍ଧି ଦେଲି । ତା'ପରେ ସେ ଦଉଡ଼ିକୁ ଧରି ଘରକୁ ଦଉଡ଼ିଲି । ସେ ସାପ ଖାଲି ରାଗରେ ଦଉଡ଼ିକୁ କାମୁଡୁ ଥାଏ । ମୋ ମଥା ଉପରେ ପ୍ରାୟ କୋଡ଼ିଏଟା କାଉ କା' କା' କରି ଗୋଡ଼େଇ ଥାନ୍ତି । ମୁଁ ସାପଟାକୁ ନେଇ ଘରକୁ ଆସୁ ଆସୁ ବାଟରେ ଗୋଟାଏ ହୋଟେଲର ଦୋତାଲା ଉପରୁ ଗୋଟାଏ ଗୋରା ଲୋକ ଇଂରାଜୀରେ କ'ଣ ମୋତେ ପଚାରିଲା । ପବନ ପିଟୁଥାଏ, ମୁଁ କିଛି ତା'କଥା ବୁଝି ପାରିଲି ନାହିଁ ।

ଘରେ ଆସି ଯେତେବେଳେ ପହଁଚେ, ବାବା, ମା ଉଠି ବାହାରେ ଦାନ୍ତ ଘଷୁଥାନ୍ତି। ମୁଁ କ'ଣଟାଏ ଧରି ଆଣିଛି ବୋଲି ଦୂରରୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ। ଯେତେବେଳେ ବାବା, ମା'ଙ୍କ ଆଗରେ ଜୀଅନ୍ତା ଅଦ୍ଭୁତ ରକମର ସାପଟା ନେଇ ଥୋଇଦେଲି। ବାବା, ମା ଦେଖି ଯେମିତି ଆଶ୍ଚର୍ଯ୍ୟ ହେଲେ, ସେମିତି ଭୟରେ ଥରିଗଲେ। ମା' ଗାଳି ଦେଇ କହିଲେ, ଏ ସାପଟାଏ ଧରି ଆଣିଛି। ଆଜି ଯଦି କାମୁଡ଼ି ଦେଇଥାନ୍ତା! ମୂର୍ଖ ହୋଇତ ବୁଲିଲା, କ'ଣ ଆଉ କରିବ? ମୂର୍ଖର ଷାଠିଏ ଦୋଷ।

ଭିଣୋଇ, ଭଉଣୀ ଓ ଆଉ ସମସ୍ତେ ଦେଖି ଆଶ୍ଚର୍ଯ୍ୟ ହେଲେ। ମୁଁ ସେ ସାପକୁ ନେଇ ଦୂରରେ ଫୋପାଡ଼ି ଦେଇ ଆସିଲି। ପୁରୀରେ ଥିବା ଭିତରେ ପୁରୀର ଅନେକ ଜାଗା ବୁଲି ଦେଖିଲୁ। ମୋର ମନ ସବୁବେଳେ ସମୁଦ୍ର କୂଳରେ ଆଉ ପୁରୀ ମନ୍ଦିରରେ ଥାଏ। ଅନେକ ସମୟରେ ମୁଁ ଆଉ ଭଣଜା ବାଲି ଉପରେ ଖେଳୁ। ଦିନେ ମନ ଡ଼ାକିଲା, ତାସ୍ ଖେଳିବାକୁ। ତାସ୍ କୁଆଡୁ ଆସିବ? ପଇସା କାହିଁ ତାସ୍ କିଣିବା ପାଇଁ? ପଇସା କାହାକୁ ମାଗିବା? କିଏ ବା ଦବ? ଏଣୁ ଦିହେଁ ବିଚାର କଲୁ, ଚାଲ, ବଡ଼ଦାଣ୍ଡରୁ କୌଣସି ଦୋକାନରୁ ଚୋରି କରି ଆଣିବା। ଦିହେଁ ଗଲୁ। ବଡ଼ଦାଣ୍ଡ ଉପରେ ଥିବା ଅନେକ ଦୋକାନ ବୁଲିଲୁ। ଚୋରି କରି ପାରିଲୁ ନାହିଁ। ଦିହେଁ ଫେରି ଆସିଲୁ। ବଡ଼ ଦାଣ୍ଡ ଉପର ଦୋକାନରୁ ତାସ୍ ଚୋରି କରିବାର ମସୁଦା କରି ନଥାନ୍ତୁ, କଲୁ। କେବଳ ଆମେମାନେ ବହୁବାର ଦେଖିଛୁ କେତେକ ଯାତ୍ରୀ ଶିଖାଶିଖି ହୋଇ ଯାନ୍ତି, ବଡ଼ଦାଣ୍ଡ ଉପର ଉଠା ଦୋକାନରୁ ଜିନିଷ ଚୋରି କରିବା ପାଇଁ, ଜିନିଷ ଚୋରି କରି ଆଣିବା ମଧ ଦେଖିଛୁ। ଇମିତିକି କଂସାବାସନ, ଲୋଟା, ଗରା ମଧ ଚୋରି କରି ଆଣନ୍ତି। ଛୋଟକାଟିଆ ଜିନିଷତ ଚୋରି କରିବା ଅତି ସହଜ କଥା, ଏଣୁ ମନ ଡ଼ାକିଲା ତାସ୍ ଚୋରି କରି ଆଣିବା ପାଇଁ। କିନ୍ତୁ ପାରିଲୁ ନାହିଁ। ମନରେ ଭୟ ହେଲା, ଯଦି ଧରା ପଡୁ, ତା'ହେଲେ ଘରେ ବାବା, ମା, ଭଉଣୀ, ଭିଣୋଇ ଶୁଣିଲେ ଅବସ୍ଥା କ'ଣ ହବ?

ଖୋର୍ଦ୍ଧାରେ ରହିବା ଭିତରେ ଜର ସମ୍ପୂର୍ଣ୍ଣ ଛାଡ଼ି ଯାଇଥିଲା। ପୁରୀରେ ଆଉ ଜର ହୋଇ ନାହିଁ। ବେଶ୍ ଭଲରେ ଭଲରେ କଟିଗଲା। ଯେଉଁ P.W.D. କ୍ୱାଟରରେ ଥିଲୁ, ଭିଣୋଇଙ୍କୁ ସେ କ୍ୱାଟର ଛାଡ଼ିବାକୁ ହେଲା, କାରଣ ଭିଣୋଇଙ୍କର ସାନଭାଇ କେଦାର ବାବୁ ଯେ P.W.D. ଚାକିରୀ କରୁଥିଲେ, ସେ ଅନ୍ୟତ୍ର ବଦଳି ହେଲେ। ଏଣୁ ମୋର ଭିଣୋଇ ପୁରୀ ସଂସ୍କୃତ କଲେଜ ନିକଟସ୍ଥ ଗୋଟିଏ ଭଡ଼ାଘରକୁ ଆସିଲେ। ଆମେମାନେ ମଧ ସେ ବସାକୁ ଆସିଲୁ। ସେ ବସାରେ କିଛିଦିନ ରହିବା ପରେ ଆମେମାନେ ଜଗନ୍ନାଥଙ୍କର ପୁଷ୍ୟାଭିଷେକ ଦିନ ଜଗନ୍ନାଥଙ୍କ ରାଜାବେଶ ଦେଖି ଆସିଲୁ। କି ଚମତ୍କାର ସେ ବେଶ। ମୁଁ ତ ଜଗନ୍ନାଥଙ୍କର ସୁନାର ଅଳଙ୍କାର ଦେଖି ଚମକି ପଡ଼ିଲି। ଏତେ ସୁନା! କେଡ଼େ କେଡ଼େ ବଡ଼ ସୁନାର ଅଳଙ୍କାର! କି ସାଜସଜ୍ଜା!

ଆମେମାନେ ପୁରୀରେ ମାସେ ରହିଲା ପରେ, କଟକ ଫେରିଲୁ। କଟକରେ ଆସି ମୋର ସାଙ୍ଗସାଥୀଙ୍କ ସଙ୍ଗେ ଦେଖା ହେଲା। ମୃଣାଳ, ପ୍ରିୟ ଓ ଆଉ ଅନ୍ୟାନ୍ୟ ସାଙ୍ଗ ଜୁଟିଗଲେ। ମୁଁ ଫକୀର ମୋହନ ସେନାପତିଙ୍କର ବହି ଯୋଗାଡ଼ କରିବାକୁ ଯାଇ "ଛ ମାଣ ଆଠଗୁଣ୍ଠ" ବହି ପାଇ ଏକ ନିଃଶ୍ୱାସରେ ପଢ଼ିଲି। "ମାମୁଁ" ଆଉ "ଛ ମାଣ ଆଠଗୁଣ୍ଠ" ପଢ଼ିଲା ପରେ ମନ ଡ଼ାକିଲା, ଫକୀର ମୋହନ ସେନାପତିଙ୍କ ପରି କିଛି ଲେଖିବି। ଏଣୁ ପ୍ରଥମେ "ଲବଙ୍ଗଲତା" ଗୋଟିଏ ଛୋଟ ଉପନ୍ୟାସ ଲେଖିଲି। ଲେଖିଲି ସିନା, ସେ ଛପା ହବ କିମିତି? ତାକୁ ନେଇ ପି.ଏମ୍.ଏକାଡ଼େମୀର ମୁଖପତ୍ର "ସାହିତ୍ୟ-ସୋପାନ"ର ତତ୍କାଳୀନ ସମ୍ପାଦକ ବାଳକୃଷ୍ଣ କରଙ୍କ ହାତରେ ଦେଇ ଆସିଲି।

ବାଳକୃଷ୍ଣ କର "ମାତୃଭୂମି"ର ପ୍ରତିଷ୍ଠାତା ନୁହନ୍ତି। ଏ ବାଳକୃଷ୍ଣ କର ସେତେବେଳେ ପି.ଏମ୍.ଏକାଡ଼େମୀର ଜଣେ ସହକାରୀ ଶିକ୍ଷକ ଥିଲେ। ଏ ପି.ଏମ୍.ଏକାଡ଼େମୀର ଛାତ୍ରାବାସର ସୁପରିଟେଣ୍ଡେଣ୍ଟ୍ ଥିଲେ ଓ "ସାହିତ୍ୟ ସୋପାନ"ର ସମ୍ପାଦକ ଥିଲେ। ଯାଙ୍କ ମୁଣ୍ଡରେ ଗୋଟିଏ ଚୁଟି ଥିଲା। ପରିଧେୟ ଭିତରେ ଧୋତି, କମିଜ ଓ

ବେକରେ ଖଣ୍ଡିଏ ଧଳା ଚାଦର ପଡ଼ିଥାଏ । ଏ ଯେତେଥର ଝାଡ଼ା ଯାଉଥିଲେ ସେତେଥର ଗାଧେଇବାର ମୋର ମନେ ଅଛି । ଅତି ଅମାୟିକ, ସରଳ, ସୁଦକ୍ଷ ଶିକ୍ଷକ ଥିଲେ ।

ବାଳକୃଷ୍ଣ କରଙ୍କ ହାତରେ "ଲବଙ୍ଗଲତା" ଲେଖା ଦବାର କିଛି ଦିନ ପରେ ଥରେ ମୁଁ ଦିନ ପାଞ୍ଚଟା ବେଳେ ଚୌଧୁରୀ ବଜାର ଆଡୁ ବୁଲି ବୁଲି ଘରକୁ ଫେରୁଛି । ଏଇ ସମୟରେ ଜେଲ୍‌ଖାନା ନିକଟରେ ବାଳକୃଷ୍ଣ ବାବୁଙ୍କ ସହିତରେ ଦେଖା ହେଲା । ବାଳକୃଷ୍ଣ ବାବୁ ମୋତେ ଦେଖି କହିଲେ, ପୁଳିନ୍ ତୁମର ସେ ଲେଖାଟି ଭଲ ହେଇଛି । ଏଇଥର ସାହିତ୍ୟ-ସୋପାନରେ ପ୍ରକାଶ ପାଇବ । ତୁମେ ମୋତେ ଟିକିଏ ସାହାଯ୍ୟ କରିପାରିବ କି? ମୁଁ ପଚାରିଲି, କ'ଣ ସାର୍ କହନ୍ତୁ । ବାଳକୃଷ୍ଣ ବାବୁ କହିଲେ, ରବିବାର କିମ୍ବା ଅନ୍ୟ ଛୁଟି ଦିନରେ ଦି'ପହରେ ଆସିଲେ ଭଲ ହବ । ମୁଁ ରାଜି ହେଲି ।

ବାଳକୃଷ୍ଣ ବାବୁ କହିଲେ, ତମେ ଆସିଲେ ସାହିତ୍ୟ-ସୋପାନ ଲାଗି ଯେତେଲେଖା ଆସୁଛି ତାକୁ ବଛାବଛି କରି ସାହିତ୍ୟ-ସୋପାନରେ ପ୍ରକାଶ କରିବାରେ ସୁବିଧା ହୁଅନ୍ତା । ବାଳକୃଷ୍ଣ ବାବୁଙ୍କ ମୁହଁରୁ ଯେତେବେଳେ ପ୍ରଥମେ ଶୁଣିଲି 'ଲବଙ୍ଗଲତା' ପ୍ରକାଶ ପାଇବ, ସେଦିନ ମୋ ଜୀବନରେ ଗୋଟାଏ ବିଶେଷ ଆନନ୍ଦର ଦିନ । କି ଆନନ୍ଦରେ ସେଦିନ ମୋର କଟିଗଲା । ସେତେବେଳେ ମୋର ଘୋର ଦୁଃଖର ଦିନ ଭିତରେ ଏ ଗୋଟିଏ ଦିନ ମହା ଆନନ୍ଦର ଦିନ । ଜେଲଖାନା ନିକଟରୁ ଥୋରିଆସାହିକୁ କେମିତି ଆସିଛି ମୋତେ ବାଟ ଜଣାଗଲା ନାହିଁ । କିନ୍ତୁ ଏ ଶୁଭ ସମ୍ବାଦଟା ଘରେ ବାବା, ମା'ଙ୍କୁ କହିବାକୁ ଭୟ । କହିଲେ ଗାଳିର ସମ୍ଭାବନା । ଏଣୁ ଆଉ ବାବା, ମା'ଙ୍କୁ କହିଲି ନାହିଁ । ସାଙ୍ଗସାଥୀଙ୍କୁ କହିଲି, 'ଲବଙ୍ଗଲତା'ର ଭାଷା ଠିକ୍ ଫକୀର ମୋହନଙ୍କ ଭାଷାରେ ଲେଖିଥିଲି ଛୋଟ ଉପନ୍ୟାସଟିଏ ।

ବାଳକୃଷ୍ଣ ବାବୁ ମୋତେ ଯେଉଁଦିନ କହିଲେ, ତାଙ୍କୁ ସାହାଯ୍ୟ କରିବା ପାଇଁ, ତା'ପରେ ଛୁଟିଦିନ ଦେଖି ତାଙ୍କ ପାଖକୁ ଦି'ପହରେ ବରାବର ଗଲି । ସାହିତ୍ୟ-ସୋପାନ ପାଇଁ ଯାହା ଲେଖା ଆସିଥାଏ ବାଳକୃଷ୍ଣ ବାବୁ ମୋତେ କହନ୍ତି ପଢ଼ି ଶୁଣେଇବା ପାଇଁ । ମୁଁ ପଢ଼େ, ବାଳକୃଷ୍ଣ ବାବୁ ଯେଉଁଠି ଯାହା ସଂଶୋଧନ କରିବା ପାଇଁ କହନ୍ତି କରେ, ଲେଖା ବଛାବଛିରେ ସାହାଯ୍ୟ କରେ । ଦିନ ଚାରିଟା କିମ୍ବା ପାଞ୍ଚଟା ବେଳକୁ ଘରକୁ ଫେରେ ।

କିଛିଦିନ ପରେ ମୋର ଅନେକଗୁଡ଼ିଏ ଲେଖା ସାହିତ୍ୟ-ସୋପାନରେ ପ୍ରକାଶ ପାଇଲା । ଯେମିତି Wordsworthଙ୍କ The Beggar Maid କବିତାର ଓଡ଼ିଆ ଅନୁବାଦ, 'ଭିକାରିଣୀ', R.C.Duttଙ୍କ Triumph over Faith କବିତାର ଓଡ଼ିଆ ଅନୁବାଦ, ଯମ ସାବିତ୍ରୀ ସମ୍ବାଦ, ସଂଯୁକ୍ତା ସ୍ୱୟମ୍ବର, ସ୍ୱାଗତ ଗୀତିକା ଇତ୍ୟାଦି । ଏସବୁ ଅନୁବାଦ କବିତା ପଢ଼ି ବାବା ମୋତେ ବିରକ୍ତ ହେଇ ଗାଳି ଦିଅନ୍ତି, ଖାଲି ଅନୁବାଦ କରାହଉଛି, ନିଜ ମୁଣ୍ଡରୁ କିଛି ବାହାରୁ ନାହିଁ । ଯଦି ନିଜ ମନରୁ ଲେଖିଲି, ସେଥିରେ ମଧ ଗାଳି, ପରିହାସ ତଥାପି ମୁଁ ଲେଖୁଥାଏ, ସେ ପୁଣି ଲୁଚିଛପି ଲେଖିବା । ଲେଖିବା ଦେଖିଲେ ଗାଳି । ଏଇ ସମୟରେ "ବରୁଣାଇ" ନାମକ ରାଧାନାଥ ବାବୁଙ୍କ ଚିଲିକା କାବ୍ୟ ପରି ଖଣ୍ଡିଏ କାବ୍ୟ ଲେଖିଲି । ଖୋର୍ଦ୍ଧାରେ ଥିବାବେଳେ ବରୁଣାଇ ପାହାଡ଼ ଦେଖିଥିଲି, ତାକୁହିଁ ବର୍ଣ୍ଣନା କରି ବରୁଣାଇ, ବର୍ଣ୍ଣନାତ୍ମକ କାବ୍ୟ ଲେଖିଲି । ତାକୁ ନେଇ ସାହିତ୍ୟ-ସୋପାନର ସମ୍ପାଦକ ବାଳକୃଷ୍ଣ କରଙ୍କୁ ଦେଖେଇଲି । ସେ ପଢ଼ି ଭାରି ଖୁସି ହେଇ କହିଲେ, ପୁଳିନ୍, ତୁମେ ପଢ଼, ଭଲ କରିବ । ମୁଁ କହିଲି ସାର୍, ବାବା ତ ପଢ଼ଉ ନାହାନ୍ତି, କ'ଣ କରିବି ?

ବାବାଙ୍କୁ ଯେ ଯେଉଁଠି ମୋ ବିଷୟରେ ପଚାରିଲେ, ପୁଳିନ୍ କ'ଣ କରୁଛି କିମ୍ବା ପୁଅ କ'ଣ କରୁଛି ? ବାବା କହନ୍ତି, ସେ କ'ଣ ଗୁଡ଼ାଏ ଲେଖାଲେଖି କରୁଛି । ସମସ୍ତେ ଜାଣିଲେ ମୁଁ ସବୁବେଳେ କ'ଣ ଗୁଡ଼ାଏ ଲେଖାଲେଖି କରୁଛି । ମଝିଆ ମାମୁଁ ଗଗନ ବିହାରୀ ରାୟ ଆସି ଯାଜପୁରରୁ ପହଁଚିଲେ । ସେ ମୋତେ ପଚାରିଲେ, ତୁ କ'ଣ ଲେଖାଲେଖି କରୁଛୁ ବୋଲି ଶୁଣିଲି । କ'ଣ ସବୁ ଲେଖିଛୁ, ଦେଖେଇଲୁ । ମୁଁ ମଝିଆ ମାମୁଁଙ୍କୁ "ବରୁଣାଇ" କାବ୍ୟ ଖଣ୍ଡକ ଦେଲି ପଢ଼ିବା ପାଇଁ । ମଝିଆ ମାମୁଁ "ବରୁଣାଇ" କାବ୍ୟ ଖଣ୍ଡକ ପଢ଼ି ଖୁସି ହେଇ ମା'ଙ୍କୁ

କହିଲେ, ଯାକୁ ପଢ଼ା । ଏ ପଢ଼ିଲେ ଭଲ କରିବ । ମା' କହିଲେ, କାହିଁ ପଢ଼ିଲା ତ ନାହିଁ । ପଢ଼ା ଛାଡ଼ି ତ ବୁଲୁଛି । ଅଭିକାତ ଅଭାବ ବେଳ, ପେନ୍‌ସନ୍ ମିଳୁ, ଦେଖିବା ।

ଖଡ଼ଗପୁରରୁ ଗଦାଧର ଘୋଷ ଆସି ପହଁଚିଲେ । ଗଦାଧର ଘୋଷ ସେତେବେଳେ ଖଡ଼ଗପୁରରେ ରେଳବାଇରେ ଚାକିରୀ କରୁଥିଲେ । ଆମର ଅଭାବ, ଅନାଟନର କଥାଶୁଣି ଆସି ପହଁଚିଲେ, ମୋତେ ପଚାରିଲେ, କ'ଣ ପୁଳିନ୍, ମୁଁ ଶୁଣୁଛି ତୁମେ କ'ଣ ଲେଖାଲେଖି କରୁଛ ? କ'ଣ ଲେଖୁଛ, ଦେଖେଇଲ ।

ମୁଁ ବରୁଣାଇ କାବ୍ୟ ଖଣ୍ଡିକ ଦେଲି ପଢ଼ିବା ପାଇଁ । ଗଦାଧର ଘୋଷ କାବ୍ୟ ଖଣ୍ଡିକ ପଢ଼ି ମା'ଙ୍କୁ କହିଲେ, ପୁଳିନ୍‌କୁ ପଢ଼ାଅ । ମା' କହିଲେ, ହଉ ଟଙ୍କା ମିଳୁ । ବର୍ତ୍ତମାନ ତ କିଛି ନାହିଁ, ତାକୁ ପଢ଼େଇବି କୁଆଡୁ ? ସେ ତ ପଢ଼ିଲା ନାହିଁ । ବଡ଼ ଭିଣେଇ ଆସି ସପରିବାରରେ ପହଁଚିଲେ । ତାଙ୍କର ବାଲେଶ୍ୱର ବଦଳି ହେଇଥାଏ । ସେ ଛୁଟି ନେଇ ଆମ ଘରେ ଆସି ରହିଲେ । ଭିଣେଇ ପଚାରିଲେ, ପୁଳିନ୍ କ'ଣ ତୁମେ ଭାରି ଲେଖାଲେଖି କରୁଛ ଶୁଣିଛି । ତୁମର ଲେଖା କ'ଣ ଦେଲ, ପଢ଼ିବା ।

ମୁଁ ବରୁଣାଇ କାବ୍ୟ ଖଣ୍ଡିକ ଦେଲି ପଢ଼ିବା ପାଇଁ । ଆଉ ଯେଉଁ ଡ଼ିଟେକ୍‌ଟିଭ୍ ଉପନ୍ୟାସ ଖଣ୍ଡିଏ ଲେଖି ଅସଂପୂର୍ଣ୍ଣ ଅବସ୍ଥାରେ ପଡ଼ିଥିଲା, ତାକୁ ମଧ ଦେଲି ପଢ଼ିବା ପାଇଁ । ଭିଣେଇ କାବ୍ୟ ଏବଂ ଉପନ୍ୟାସ ପଢ଼ି ମୋତେ କହିଲେ ଚାଲ ତୁମକୁ ଅଲେଖ ମହାନ୍ତିଙ୍କ ନିକଟକୁ ନେଇଯିବି । ସେ "ସହକାର" ପତ୍ରିକାର ସମ୍ପାଦକ ଅଛନ୍ତି । ମୋ ସହିତ ଜଣାଶୁଣା ଅଛି । ସେ ତୁମକୁ ଅନେକ ଏ ଦିଗରେ ସାହାଯ୍ୟ କରିବେ ।

ସେତେବେଳେ ଅଲେଖ ମହାନ୍ତିଙ୍କର ସମ୍ପାଦନାରେ "ସହକାର" ପତ୍ରିକା ଛୋଟ ଆକାରରେ ବାହାରୁଥିଲା । ସେତେବେଳେ ପତ୍ରିକା ଭିତରେ "ଉତ୍କଳ ସାହିତ୍ୟ", "ମୁକୁର" ଆଉ "ସହକାର" ବାହାରୁଥାଏ । ମୁଁ ଥରେ "ମୁକୁର"ର ତତ୍‌କାଳୀନ ସମ୍ପାଦକ ବ୍ରଜସୁନ୍ଦର ବାବୁଙ୍କ ନିକଟକୁ ମୋର ଅସଂପୂର୍ଣ୍ଣ ଡ଼ିଟେକ୍‌ଟିଭ୍ ଉପନ୍ୟାସ ଖଣ୍ଡିକ ନେଇ ଯାଇଥିଲି । ସେ ମୋତେ ପରାମର୍ଶ ଦେଲେ, ଉପନ୍ୟାସ ଖଣ୍ଡିକ ସମ୍ପୂର୍ଣ୍ଣ କରି ତାଙ୍କୁ ଦବା ପାଇଁ, ଆଉ ଭାରି ଦୁଃଖ କଲେ ମୁଁ ପଢ଼ି ପାରୁନି ବୋଲି ।

କେଉଁଦିନର ଖଣ୍ଡିଏ ଅତି ମଇଳା ପଞ୍ଜାବୀ ଆଉ ଖଣ୍ଡେ ଧୋତି ପିନ୍ଧି ମୁଁ ମୁକୁରର ସମ୍ପାଦକଙ୍କ ନିକଟକୁ ଯାଇଥିଲି । ସେ କ'ଣ ଭାବିଥିବେ ! ଏବେ ସେ କଥା ମନେ ପଡ଼ିଲେ, ମୋତେ ଲଜ୍ଜାବୋଧ ହୁଏ । ଏଇ ସମୟରେ "ବାରଣୀ" ପତ୍ରିକା ପ୍ରକାଶ ପାଇବା ପାଇଁ ପ୍ରଚାର ଚାଲିଲା । ବାରଣୀ ପ୍ରକାଶ ପାଇବା ପୂର୍ବରୁ ତା'ର ଖଣ୍ଡିଏ ପରିଚୟ ପୁସ୍ତିକା ପ୍ରକାଶ ପାଏ, ତାକୁ ମୋର ଏକ ସାଙ୍ଗ ଜରିଆରେ ଦେଖିବାକୁ ପାଇଲି । ମନ ଡ଼ାକିଲା, କେମିତି ବାରଣୀ ପତ୍ରିକାର ଗ୍ରାହକ ହେବି । ତା'ର ବର୍ଷକ ପାଇଁ ଦେୟ ଧାର୍ଯ୍ୟ ହେଇଥାଏ ୬ଟଙ୍କା, ଆଉ ଛ'ମାସ ପାଇଁ ଦେୟ ୩ଟଙ୍କା । ଯେ କେହି ବର୍ଷକ ପାଇଁ କିମ୍ବା ଛ'ମାସ ପାଇଁ ଗ୍ରାହକ ହବାର ନିୟମ ଥାଏ । ଏଣୁ ମୁଁ ସବୁବେଳେ ଭାବିଲି, କେମିତି ଛ'ମାସ ପାଇଁ ହେଲେ ଗ୍ରାହକ ହୁଅନ୍ତି । ଟଙ୍କା ତ ବାବାଙ୍କୁ ମାଗିଲେ ଦେବେ ନାହିଁ । କ'ଣ କରିବି ? ଏଇ ସମୟରେ ଦିନେ ମା' ମୋତେ ୩ଟଙ୍କା ଦେଲେ ଦି'ଖଣ୍ଡ ଧୋତି କିଣି ଆଣିବା ପାଇଁ । ଯେଉଁ ସାଙ୍ଗ ମୋତେ ପ୍ରଥମେ ବାରଣୀର ପରିଚୟ ପୁସ୍ତିକା ଦେଖେଇ ଥିଲା, ସେ ଆଉ ମୁଁ ଦିହେଁ ବାହାରିଲୁ ନୟାସଡ଼କରୁ ଧୋତି କିଣି ଆଣିବା ପାଇଁ । ବାଟରେ ଯାଉ ଯାଉ ସେ, ମୁଁ ଦିହେଁ କଥାବାର୍ତ୍ତା ହେଲୁ, ଏଇ ୩ଟଙ୍କାରେ ଛ'ମାସ ପାଇଁ ବାରଣୀ ପତ୍ରିକାର ଗ୍ରାହକ ହେଇ ଯିବି । କିନ୍ତୁ ମନରେ ପୁଣି ଭୟ ହେଲା, ଲୁଗା କିଣିବା ପାଇଁ ଟଙ୍କା ଆଣି ସେଥିରେ ବାରଣୀ ପତ୍ରିକାର ଗ୍ରାହକ ହେବି । ଘରେ ଗଲେ ବାବା, ମା କ'ଣ କହିବେ ? ତଥାପି ଆଗ୍ରହ ଆଉ ସମ୍ଭାଳି ପାରିଲି ନାହିଁ । ଆମେ ଦିହେଁ ଯାଇ ବାଙ୍କା ବଜାରରେ ରାଜ କିଶୋର ଦାସଙ୍କ ଘରେ ପହଁଚିଲୁ । ରାଜ କିଶୋର ଦାସଙ୍କ ସମ୍ପାଦନାରେ ବାରଣୀ ପ୍ରକାଶ ପାଇବ ବୋଲି ଆଗରୁ ପରିଚୟ ପୁସ୍ତିକାରେ ପ୍ରକାଶିତ ହୋଇଥିଲା । ଏଣୁ ଆମେ ରାଜ କିଶୋର ଦାସଙ୍କ ଘରେ ପହଁଚିଲା ମାତ୍ରେ ତାଙ୍କର ବଡ଼ପୁଅଙ୍କ ସହିତରେ ଭେଟ

ହେଲା । ତାଙ୍କ ହାତରେ ୩ଟଙ୍କା ଦେଇ ବାରଣୀ ପତ୍ରିକାର 'ଛ' ମାସର ଗ୍ରାହକ ହେଇ ଆସିଲି । କ'ଣ କରେ ? ଲୁଗା ତ କିଣା ହେଲା ନାହିଁ । ଭୟରେ ଘରକୁ ଆସି ପ୍ରଥମେ ମା'ଙ୍କୁ କହିଲି । ମା' ମୁଁ ଯେଉଁ ୩ଟଙ୍କା ନେଇଥିଲି ଧୋତି କିଣିବା ପାଇଁ, ସେଥିରେ ମୁଁ ବାରଣୀ ପତ୍ରିକାର ଗ୍ରାହକ ହେଇ ଆସିଲି । ମୋର ସୌଭାଗ୍ୟକୁ ମା' ସମ୍ମତିସୂଚକ କଣ୍ଠରେ କହିଲେ, ହଉ ।

ମୋତେ ମା'ଙ୍କର ହଠାତ୍ ଏ ଘଟଣାରେ ସମ୍ମତିର ସୂଚନା ଦେଖି ବଡ଼ ଆଶ୍ଚର୍ଯ୍ୟ ଲାଗିଲା । କିନ୍ତୁ ମା'ସିନା ସମ୍ମତି ଦେଲେ, ବାବା କ'ଣ କରୁଛନ୍ତି ? ଚୋରଟା ପରି ଥାଏ । ରାତିରେ ଅଗଣାରେ ଗୋଟାଏ ତକିଆରେ ମୁଣ୍ଡ ଦେଇ ଖଣ୍ଡେ ମଶିଣାରେ ଶୋଇଛି, ବାବା ମୋର ମୁଣ୍ଡ ଆଡ଼େ ଆଉ ଗୋଟାଏ ମଶିଣାରେ ବସି ମୋତେ ପଚାରିଲେ, ହଇରେ ଲୁଗା ଆଣିଲୁ ? ମୁଁ ନାହିଁ କଲି, କାରଣ ସ୍ୱରୂପ କହିଲି, ମୁଁ ସେଇ ଟଙ୍କାରେ ବାରଣୀ ପତ୍ରିକାର ଛ'ମାସ ପାଇଁ ଗ୍ରାହକ ହେଇଛି ।

ଏତକ କହି ଆଉ ଯିବି କୁଆଡ଼େ ? ଆରମ୍ଭ ହେଲା ଗାଳି । ମୁଁ ବାବାଙ୍କର ଗାଳି ଶୁଣି ଚୁପ୍‌ଚାପ୍ ପଡ଼ିଥାଏ । ଭାବୁଥାଏ, ଯା' ବର୍ଷି ଯିବାର ବର୍ଷି ଯାଉ, ସହିଗଲେ ଗଲା । ବାବାଙ୍କର ଗାଳି ଦବାର ଦେଖି ମା' ବାଧା ଦେଇ କହିଲେ, ସେ କ'ଣ ଖରାପ କାମ କରିଛି ? ପିଲା ମଣିଷ, ମନ ହେଲା ଗୋଟାଏ ପତ୍ରିକାରେ ଗ୍ରାହକ ହେଇ ପଡ଼ିଲା । ସେ କ'ଣ ଅନ୍ୟ କିଛିରେ ପଇସା ସାରି ଦେଇଛି ? ଏତେବେଳକୁ ମୋ ଆଖିରୁ ଲୁହ ଗଡ଼ିଲାଣି । ଚୁପ୍‌ଚାପ୍ ହେଇ ରହିଲି ।

କିଛିଦିନ ପରେ ବାରଣୀ ପତ୍ରିକା ଆସିଲା । କି ସୁନ୍ଦର ! ଆଜି ପର୍ଯ୍ୟନ୍ତ କୌଣସି ଓଡ଼ିଆ ପତ୍ରିକା ତା'ର ସମକକ୍ଷ ହେଇ ପାରିଲା ନାହିଁ । ତା'ର କଳେବର ଆଉ ରୂପ ସଜ୍ଜା ଦେଖିବାକୁ ଠିକ୍ ବଙ୍ଗାଳୀ ପତ୍ରିକା "ଭାରତବର୍ଷ", "ବସୁମତୀ" କିମ୍ବା "ପ୍ରବାସୀ" ପରି । ବାରଣୀ ପତ୍ରିକାରୁ ଖଣ୍ଡେ ଆସିଲା ପରେ ଘରେ ବାବା, ମା, ମଝିଆ ଭଉଣୀ ଦେଖି ଭାରି ଖୁସି ହେଲେ ।

ଏଥି ମଧ୍ୟରେ ମୁଁ ଖଣ୍ଡିଏ ଛବି ଆଙ୍କି ଥାଏ । ଛବିଟିର ନାମ ଦେଇଥାଏ, "ସନ୍ଧ୍ୟା ପ୍ରଦୀପ" ଅର୍ଥାତ୍ ସନ୍ଧ୍ୟା ବେଳେ ଗୋଟିଏ ରମଣୀ ଚଉରା ମୂଳକୁ ସନ୍ଧ୍ୟା ପ୍ରଦୀପଟିଏ ଧରି ବାହାରିଛି । ଛବି ଖଣ୍ଡିକ ମୋର ସାଙ୍ଗ ପ୍ରିୟ ନାଥ ସିଂ ଦେଖି ତାଙ୍କ ଘରେ ଦେଖେଇବା ପାଇଁ ନେଇଥିଲା । ପ୍ରିୟ ନାଥ ସିଂର ବାବା ସେ ଛବିଟିକି ଦେଖିଥିଲେ । ଦିନେ ମୋ ସହିତରେ ରାସ୍ତାରେ ଦେଖା ହବାରୁ ମୋତେ କହିଲେ, ତୁମେ ସେ ଛବି ଖଣ୍ଡକ ନେଇ ମୋ ସାଙ୍ଗରେ ଆସ, ମୁଁ ତୁମକୁ ଜଣେ ଭଦ୍ରଲୋକଙ୍କ ପାଖକୁ ନେଇ ଯିବି । ସେ ଭାରି ଭଲ ମଣିଷ । ସେ ତୁମର ପଢ଼ିବା ପାଇଁ କିମ୍ବା ଚାକିରୀ ପାଇଁ କିଛି ବ୍ୟବସ୍ଥା କରିପାରନ୍ତି ।

ପ୍ରିୟ ବାବାଙ୍କର କହିବା ଅନୁଯାୟୀ, ମୁଁ ସେ ଛବି ଖଣ୍ଡକ ନେଇ ଦିନେ ସନ୍ଧ୍ୟା ପୂର୍ବରୁ ତାଙ୍କ ସହିତରେ ଭଦ୍ରଲୋକଙ୍କ ପାଖକୁ ଗଲି । ପ୍ରିୟର ବାବା ନିମାଇ ଚରଣ ସିଂ ମୋ ବିଷୟରେ ସେ ଭଦ୍ରଲୋକଙ୍କୁ ଅନେକ ପ୍ରଶଂସା କରି କହିଲେ ଆଉ ମଧ୍ୟ ମୋର ଦୁଃଖର କଥା କହିଲେ । ସେ ଭଦ୍ରଲୋକଙ୍କ ନାଁ ମୁଁ ଜାଣି ନଥାଏ । କିନ୍ତୁ ଅତି ଚମତ୍କାର ଲୋକ ! ସେ ମୋର ଛବି ଦେଖି ଭାରି ଆନନ୍ଦ ପ୍ରକାଶ କଲେ । ସେଠି ଆଉ ଜଣେ ଦି'ଜଣ ଯୁବକ ବସିଥିଲେ, ସେମାନେ ମଧ୍ୟ ଛବିକୁ ଦେଖି ବିଶେଷ ଖୁସି ହେଲେ । ଭଦ୍ରଲୋକ ମୋର ଦୁର୍ଗତିର କଥା ଶୁଣି ବିଶେଷ ଦୁଃଖ ପ୍ରକାଶ କଲେ ଏବଂ ମୋ ପାଇଁ କୌଣସି ଦିଗରେ କିଛି ବ୍ୟବସ୍ଥା କରିବେ ବୋଲି ଆଶ୍ୱାସନା ଦେଲେ । ମୁଁ ଏବଂ ନିମାଇ ଚରଣ ସିଂ ସେଠୁ ଫେରିଲୁ । ମୋ ମନରେ ଗୋଟାଏ ଆଶାର ସଂଚାର ହେଲା ଯେ ନିକଟରେ ସେ ଭଦ୍ରଲୋକଙ୍କ ଦ୍ୱାରା ମୋର ଗୋଟାଏ କିଛି ବ୍ୟବସ୍ଥା ହେଇଯିବ । ଭଦ୍ରଲୋକଙ୍କ ଘର ହେଲା, ମଙ୍ଗଳାବାଗ ନିକଟସ୍ଥ ନୂଆପାଟଣାରେ । ପରେ ଜାଣିଲି, ସେ ଭଦ୍ରଲୋକଙ୍କ ନାଁ ହେଉଛି, ଡ଼ାକ୍ତର ଗୌରହରି ପାତ୍ର ।

କିଛି ଦିନ ପରେ ବାବାଙ୍କ ପେନ୍‌ସନ୍ ମିଳିବାର ଖବର ଆସିଲା । କିନ୍ତୁ ବାବାଙ୍କର ଯାହା deposit ଥିଲା ସେଥିରୁ ୧୩୦୦ଟଙ୍କା କାଟି ନେବେ । ଅବଶିଷ୍ଟ ଟଙ୍କା

ମିଳିବ । ଏ ଯେଉଁ ୧୩୦୦ଟଙ୍କା କାଟି ନେବେ, ତା'ର କାରଣ ହେଲା, ବାବାଙ୍କ ଦାୟିତ୍ୱରେ ଯେଉଁ store ଥିଲା, ସେଥିରୁ ଯେ କେତେକ ଜିନିଷ ନଷ୍ଟ ହୋଇ ଯାଇଥିଲା, ତା'ରି କ୍ଷତିପୂରଣ ବାବଦକୁ । ଏଥି ପୂର୍ବେ ପ୍ରତ୍ୟେକ ବର୍ଷ store verification ବେଳେ ଯେତେ ଜିନିଷ ନଷ୍ଟ ହୋଇ ଯାଇଥାଏ, ସେ ବାବଦରେ ଟଙ୍କା କାଟି ନିଆ ହଉ ନଥିଲା, କେବଳ ଏଇଥରକ ଟଙ୍କା କାଟି ନିଆ ହେଲା । ଏହାର କାରଣ ହେଲା, ବାବା ଯେଉଁ "ବୀଣାପାଣି" କ୍ଲବ୍ ଲାଗି ସହଯୋଗ କଲେ ନାହିଁ । ଓଡ଼ିଆଙ୍କର ସେ କ୍ଲବ ଉପରେ ଦାବୀକୁ ସମର୍ଥନ କରିଥିଲେ । ସେଇଥିପାଇଁ ସେତେବେଳର କଟକର P.W.D.ର ବଙ୍ଗାଳୀ କର୍ମଚାରୀମାନେ ବାବାଙ୍କ ବିରୁଦ୍ଧରେ ଏକଜୁଟ ହୋଇ ତାଙ୍କର ଉପରିସ୍ଥ ବଙ୍ଗାଳୀ କର୍ମଚାରୀଙ୍କୁ ଟଙ୍କା କାଟି ନବା ପାଇଁ ପରାମର୍ଶ ଦେଇଥିଲେ । ସେତେବେଳେ ବାବାଙ୍କର ଯେଉଁ ଗୋରା ହାକିମ A.E. Marshal ବଦଳି ହୋଇ ଯାଇଥିଲେ, ଯା'ଙ୍କ ସହିତରେ ବାବାଙ୍କର ମନୋମାଳିନ୍ୟ ଘଟିଥିଲା, ତାଙ୍କ ଜାଗାରେ ଜଣେ ବଙ୍ଗାଳୀ ହାକିମ ଆସିଥିଲେ, ସେହି ଏ ୧୩୦୦ ଟଙ୍କା କାଟି ନବା ପାଇଁ ଆଦେଶ ଦେଲେ । ୧୩୦୦ ଟଙ୍କା କାଟି ନେବେ, ଏ ସମ୍ବାଦ ଶୁଣି ମା' କାନ୍ଦି ପକେଇଲେ । କିନ୍ତୁ ବାବା ଜୀବନ ସାରା ଯେ ପେନ୍‌ସନ୍ ପାଇବେ ଏଥିରେ ଆମେମାନେ କେତେକ ଆଶ୍ୱସ୍ତ ହେଲୁ ।

ଏଥି ମଧ୍ୟରେ ଦିନେ ଦି'ପହରେ ବସି ମୁଁ ଗୋଟାଏ ଉପନ୍ୟାସ ଲେଖୁଥିଲି । ମୋର ସାଙ୍ଗ ଶ୍ରୀ ବିଶ୍ୱନାଥ ମିଶ୍ର ଆସି ପହଁଚିଲା । ବିଶ୍ୱନାଥ ମିଶ୍ର ମୋ ସହିତରେ ପି.ଏମ୍.ଏକାଡ଼େମିରେ ୧୦ମ ଶ୍ରେଣୀରେ ମୋର ସହପାଠୀ ଥିଲା । ବିଶ୍ୱନାଥ ମୋର "ବରୁଣେଇ"କାବ୍ୟ ଆଗରୁ ପଢ଼ିଥିଲା । ସେ ମୋତେ କହିଲା, ପୁଳିନ୍, ଉତ୍କଳ ଛାତ୍ର ସମ୍ମିଳନୀ ହବ, ତୁମର ସେ ବରୁଣେଇ କାବ୍ୟ ଖଣ୍ଡକ ସେଠିକି ପ୍ରତିଯୋଗିତା ପାଇଁ ପଠେଇବା । ମୁଁ କହିଲି, ମୁଁ ତ ବର୍ତ୍ତମାନ ଛାତ୍ର ନୁହେଁ । ମୋର ଲେଖା କେମିତି ପ୍ରତିଯୋଗିତା ପାଇଁ ଦିଆଯିବ ?

ବିଶ୍ୱନାଥ କହିଲା, ତା'ର ନିୟମ ଅଛି, ଯଦି ଜଣେ ମେମ୍ବର କେହି ସେ ଲେଖାକୁ recommend କରିବ, ତାହେଲେ ସେ ଲେଖା ପ୍ରତିଯୋଗିତା ପାଇଁ ଗ୍ରହଣ କରାଯିବ । ମୁଁ ତ ନିଜେ ମେମ୍ବର ଅଛି, ମୁଁ recommend କରି ପଠେଇ ଦେବି । ତୁମେ ତାକୁ ଭଲ କରି ନକଲ କରି ମୋତେ ଦିଅ । ବିଶ୍ୱନାଥ କହିବା ଅନୁଯାୟୀ ମୁଁ ବରୁଣେଇ କାବ୍ୟକୁ ଭଲ ଭାବରେ ନକଲ କରି ଦିନେ ଦୁଇଦିନ ପରେ ବିଶ୍ୱନାଥକୁ ଦେଲି । ସେ ତା'ଉପରେ recommend କରି କ'ଣ ଇଂରାଜୀରେ ଲେଖିଲେ ଆଉ ମୋତେ କହିଲେ, ତଳ ତେଲେଙ୍ଗା ବଜାରରେ ରଘୁନାଥଜୀଉ ମନ୍ଦିରରେ ଜଣେ ଭଦ୍ରଲୋକଙ୍କ ହାତରେ ଦବା ପାଇଁ । ତାଙ୍କର ନାଁ ମୋର ମନେ ନାହିଁ । ସେଥର ଉତ୍କଳ ଛାତ୍ର ସମ୍ମିଳନୀ ଲକ୍ଷ୍ମୀ ନାରାୟଣ ସାହୁଙ୍କ ତତ୍ତ୍ୱାବଧାନରେ ପରିଚାଳିତ ହବାର ଥିଲା ।

ମୁଁ ଦିନେ ଦି'ପହରେ ବରୁଣାଇ କାବ୍ୟକୁ ନେଇ ତଳ ତେଲେଙ୍ଗା ବଜାରରେ ରଘୁନାଥଜୀଉ ମନ୍ଦିରରେ ଜଣେ ଭଦ୍ରଲୋକଙ୍କ ହାତରେ ଦେଲି । କିନ୍ତୁ ସେ ମନ୍ଦିର ପ୍ରାଙ୍ଗଣରେ ଗୋଟାଏ ଦୃଶ୍ୟ ଦେଖି ଭୟରେ ଫେରିଲି । ଦୃଶ୍ୟଟି ହେଲା, ସେ ମନ୍ଦିର ପ୍ରାଙ୍ଗଣରେ ଜଣେ କାଳିସୀ ପରି ମହିଳା ବସି କ'ଣ ଗୁରାଏ ବକୁଥାଏ । ତା ମୁହଁରେ ସିନ୍ଦୁର ଇତ୍ୟାଦି ଲାଗି ବଡ଼ ଭୟଙ୍କର ଦିଶୁଥାଏ । ମୁଁ ତ ତାକୁ ଦେଖି କେମିତି ମୋର ଲେଖା ଖଣ୍ଡକ ଦେଇ ପଳେଇ ଆସିବି, ଭୟରେ ଅସ୍ଥିର ହୋଇ ପଡ଼ିଲି । ସେତେବେଳେ ପୁଣି ତଳତେଲେଙ୍ଗା ବଜାରରେ ହଇଜା ଲାଗି ଥାଏ । ଉଦୁଉଦିଆ ଦି'ପହର ବେଳ, ମୁଁ ତଳତେଲେଙ୍ଗା ବଜାରରୁ ଏକାମୁହଁ ହୋଇ ଆସି ଘରେ ପହଁଚିଲି ।

ବିଶ୍ୱନାଥ ମୋର ଭଲ ସାଙ୍ଗ ଥିଲା । ସେ ୧୦ମ ଶ୍ରେଣୀରେ ପଢ଼ିବା ବେଳୁ ଭଲ ଲେଖାଲେଖି କରିପାରୁଥିଲା । ତା'ର କେତେକ ଲେଖା "ସାହିତ୍ୟ ସୋପାନ"ରେ ପ୍ରକାଶ ପାଇଥିଲା । ବିଶ୍ୱନାଥ ବିଶେଷ ସାହିତ୍ୟାନୁରାଗୀ । ବିଶ୍ୱନାଥ ପି.ଏମ୍.ଏକାଡ଼େମୀର ଗୌରୀଶଙ୍କର ଛାତ୍ରାବାସରେ ରହୁଥିଲା । ମୁଁ ତା' ପାଖକୁ ବେଳେ ବେଳେ ବୁଲିବାକୁ ଯାଉଥିଲି, ତା'ରି ପାଖରେ ପ୍ରଥମେ ମୁଁ ରବୀନ୍ଦ୍ରନାଥଙ୍କର "ଗୀତାଞ୍ଜଳୀ" ବହି ଦେଖେ । ଗୀତାଞ୍ଜଳୀ ବହି ବିଷୟରେ

ସେ ମୋତେ ଅନେକ କଥା କହିଲା । ସେଇଠୁଁ ମୋର "ଗୀତାଞ୍ଜଳୀ" ପଢ଼ିବାକୁ ମନ ଡ଼ାକିଲା ।

ବାବାଙ୍କର ପେନ୍‌ସନନ୍ ମିଳିବା ଖବର ଆସିବା ପୂର୍ବରୁ ଥରେ ବଡ଼ ଭିଣେଇ, ବଡ଼ ଭଉଣୀ, ଭଣଜା ଆମମାନଙ୍କୁ ଦେଖିବା ପାଇଁ ଆସିଥିଲେ । ସେତେବେଳେ ଭାରି ଦୁଃଖର ବେଳ । ମୁଁ ଚିନ୍ତାରେ ବହୁତ ଝଡ଼ି ଯାଇଥାଏ । ମୁଁ ବଡ଼ ଭଉଣୀକୁ ଦେଖି କାନ୍ଦି ପକେଇଲି । ମଝିଆ ଭଉଣୀଟି ମଧ ମୋର କାନ୍ଦିବାର ଦେଖି କାନ୍ଦି ପକେଇଲା । ବାବା କୁଆଡ଼େ ଯାଇଥିଲେ ଆସି ପହଁଚିଲେ । ଭିଣେଇଙ୍କ ସଙ୍ଗେ କଥାବାର୍ତ୍ତା ହେଲେ । ଭିଣେଇ ଯେତେବେଳେ ବାହାରିଲେ, ଆମର ଖଣ୍ଡିଏ ଆରାମ ଚୌକି ନେଇଗଲେ । ଭଉଣୀ ମୋତେ ସାଙ୍ଗରେ ନବା ପାଇଁ କହିଲେ । ତା'ର କାରଣ, ମୁଁ ତାଙ୍କ ପାଖରେ ରହି ଭଣଜାକୁ ପଢ଼େଇବି । ମା' ମନା କଲେ । ଏଣୁ ମୋତେ ଆଉ ଯିବାକୁ ପଡ଼ିଲାନି ।

କିଛିଦିନ ପରେ ବାବାଙ୍କର ପେନ୍‌ସନ୍ ମିଳିଲା । Security deposit ଟଙ୍କାରୁ ୧୩୦୦ଟଙ୍କା କଟି ଯାଇ ଅବଶିଷ୍ଟ ଟଙ୍କା ମିଳିଲା । ପୁଣି ଆକସ୍ମିକ ବାବା ଥରେ କଟକର ମିଶନ ରୋଡ଼ରେ ଯାଉ ଯାଉ ବାଟରୁ ୧୧୦ ଟଙ୍କାର ନୋଟ୍ ପାଇଲେ । ବାବାଙ୍କର ପେନ୍‌ସନ୍ ମିଳିବାର କିଛିଦିନ ଆଗରୁ ସେଟେଲ୍‌ମେଣ୍ଟ ଅଫିସ୍‌ରେ ଅସ୍ଥାୟୀ ଭାବରେ ଖଣ୍ଡେ ଚାକିରୀ ପାଇଥିଲେ । ଏଣୁ ଅବସ୍ଥାର ପରିବର୍ତ୍ତନ ଘଟିଲା । ଯେତେ ଯେଉଁଠି ଧାର କରା ହେଇଥିଲା ସୁଝା ହେଲା । ଅଳଙ୍କାର ଇତ୍ୟାଦି ଯେତେ ଯେଉଁଠି ବନ୍ଧା ପଡ଼ିଥିଲା ମୁକୁଳା ହେଇ ଆସିଲା । ସବୁ କିଛିର ପରିବର୍ତ୍ତନ ହେଲା । ବାବା ମାସିକ ୫୫ଟଙ୍କା ପେନ୍‌ସନ୍ ପାଇଲେ । ଏଣେ ସେଟେଲ୍‌ମେଣ୍ଟ ଅଫିସ୍‌ରୁ କେତେ ଟଙ୍କା ପାଉଥିଲେ । ବାବା ଚାକିରୀ ବେଳେ ଯାହା ଦରମା ପାଉଥିଲେ, ପେନ୍‌ସନ୍ ଆଉ ସେଟେଲ୍‌ମେଣ୍ଟ ଅଫିସ୍ ଟଙ୍କା ମିଶି ପ୍ରାୟ ତା'ଠାରୁ କିଛି ଅଧିକ ଟଙ୍କା ହେଲା । ଅଭାବ ଆଉ ରହିଲାନି । ଦାରିଦ୍ର୍ୟର ଛାୟା ପ୍ରାୟ ଅପସରିଗଲା । ମୋତେ ପୁଣି ପଢ଼େଇବାର ପ୍ରଶ୍ନ ଉଠିଲା । ବାବା ଅନେକ ଲୋକଙ୍କ ସଙ୍ଗେ ପରାମର୍ଶ କଲେ । ମୋତେ ପୁଣି ପଢ଼େଇଲେ ଭଲ ହେବ କି ମନ୍ଦ ହବ ? କେତେକ ମତ ଦେଲେ, ପଢ଼େଇବା ଭଲ । କେତେକ ମତ ଦେଲେ, ଆଉ ପଢ଼େଇବା ଉଚିତ୍ ନୁହେଁ । ଇମିତି ଅବସ୍ଥାରେ ଠିକ୍‌ମତେ କୌଣସି ସମାଧାନ ହେଇ ପାରିଲା ନାହିଁ ।

ବାବା କିଛି ମାସ ପେନ୍‌ସନ୍ ପାଇଲା ପରେ, ଥରେ କ'ଣ ଟ୍ରେଜେରିରେ ଆପତ୍ତି ଉଠିଲା, ବାବା ସେଟେଲ୍‌ମେଣ୍ଟ ଅଫିସ୍‌ରେ ଚାକିରୀ କରୁଛନ୍ତି । ଏଣୁ ବିଭାଗୀୟ କର୍ମକର୍ତ୍ତାଙ୍କ ଠାରୁ ଅନୁମତି ନ ମିଳିବା ଯାଏ ପେନ୍‌ସନ୍ ମିଳି ପାରିବ ନାହିଁ । ପେନ୍‌ସନ୍ ପୁଣି ବନ୍ଦ ହେଲା । ମୁଁ ସେଥର ବାବାଙ୍କ ସଙ୍ଗେ ଟ୍ରେଜେରିକୁ ଯାଇଥିଲି । ପୁଣି ପେନ୍‌ସନ୍ ବନ୍ଦ ହବାର ଶୁଣି ବାବା ମୋତେ ସାଙ୍ଗରେ ନେଇ ମନଦୁଃଖରେ ଫେରି ଆସିଲେ । ସେତେବେଳେ ସେଟେଲ୍‌ମେଣ୍ଟ ଅଫିସ୍ ଗୌରୀଶଙ୍କର ପାର୍କ ନିକଟରେ ଥିଲା । ସେଇଠି ବାବା ଅଫିସ୍‌କୁ ଗଲାବେଳେ ମୋ ହାତରେ କେତେକ ରେଜା ପଇସା ଦେଇ କହିଥିଲେ, ମା'କୁ କହିବୁ ପେନ୍‌ସନ୍ ପୁଣି ବନ୍ଦ ହେଲା ।

ମୁଁ ମନଦୁଃଖରେ ପୁଣି ଗତ ଦୁଃଖର ଅବସ୍ଥାକୁ ଭାବି ଭାବି ଘରକୁ ଫେରି ମା'କୁ କହିଲି ଯେ ବର୍ତ୍ତମାନ ଆଉ ପେନ୍‌ସନ୍ ମିଳିବ ନାହିଁ । କେତେକ ମାସ ଲାଗିବ ପୁଣି ପେନ୍‌ସନ୍ ମିଳିବାକୁ ।

## (୪)

ବାବାଙ୍କର ପେନ୍‌ସନ୍ ବାବଦ ଯାହା ଟଙ୍କା ମିଳିଥିଲା, ସେ ସବୁ ଯେତେ ଧାର ହେଇଥିଲା, ସୁଝାସୁଝିରେ ଖର୍ଚ୍ଚ ହେଇଗଲା । ବାବାଙ୍କ ହାତରେ ଆଉ କିଛି ନ ଥାଏ । ପୁଣି ସେହି ପେନ୍‌ସନ୍ ନ ମିଳିବା ବେଳର ଅଭାବର ଅବସ୍ଥା । ମୋର ଯାହା ଟିକିଏ ଆଶା ହଉଥିଲା ବାବା ପୁଣି ପଢ଼େଇବେ, ସେତକ ମଧ ଗଲା । ପେନ୍‌ସନ୍ ମିଳିବାକୁ କେତେଦିନ ଲାଗୁଛି, ଠିକ୍ ନାହିଁ । ଆଉ କିଏ ମୋତେ ପଢ଼ଉଛି । ସେମିତି ବୁଲିଲି । ସେମିତି ବଜାର ସଉଦା କରିବା ଘରେ ବହି ପଢ଼ିବା, ମନକୁ ଯାହା ଆସିଲା ଗୁରାଏ ଲେଖିବା, ଚାରିଟା ବାଜିଲେ ପୁଣି

ଯାଇ ମେଡ଼ିକାଲ ପଡ଼ିଆରେ ଖେଳିବା । ସେଇ ପୂର୍ବର ବାଲ୍ୟ ଜୀବନର ପୁନରାବୃତ୍ତି ।

ପେନ୍‌ସନ୍ ଯେ କେତେ ମାସ ମିଳିଥିଲା, ସେତେବେଳେ ବାବା ଯାହାଙ୍କୁ ପଚାରିଲେ-ମୋତେ ପଢ଼େଇବେ କି ନାହିଁ? ସେମାନଙ୍କ ମଧ୍ୟରୁ ଯେଉଁମାନେ ମ୍ୟାଟ୍ରିକ୍ ପାସ୍ କରି ନପାରି, ଚାକିରୀ ଖଣ୍ଡେ ପାଇ ଜୀବିକାର୍ଜନ କରୁଥିଲେ, ସେମାନେ ମତ ଦେଲେ, ଆଉ ପଢ଼େଇବା ଉଚିତ୍ ନୁହେଁ, ଏତେଦିନ ଯେତେବେଳେ ପଢ଼ା ଛାଡ଼ିଲାଣି, ସେ ଆଉ ପାରିବନି, ଆଉ ପଢ଼େଇବ କାହିଁକି ? ତାକୁ ଖଣ୍ଡେ ଚାକିରୀରେ ପୂରେଇ ଦେଲେ ଭଲ ହବ ।

ଯେଉଁମାନେ ଜାଣିଥିଲେ ମୁଁ ଭଲ ପଢୁ ନଥିଲି, ସେମାନେ ମତ ଦେଲେ ଆଉ ପଢ଼େଇବା ଉଚିତ୍ ନୁହଁ । ଯେଉଁମାନେ ମ୍ୟାଟ୍ରିକ୍ ପାସ୍ କରି କିମ୍ବା ଆଉ କିଛି ଅଧିକା ପଢ଼ି ଚାକିରୀରେ ପଶି ଥିଲେ, ସେମାନଙ୍କ ମଧ୍ୟରୁ କେତେକ ମତ ଦେଲେ, ପଢ଼ାନ୍ତୁ । କେତେକ ମତ ଦେଲେ ଆଉ ପଢ଼େଇବା ଉଚିତ୍ ନୁହେଁ । ସେ ଯେତେବେଳେ ଏତେଦିନ ପାଠ ଛାଡ଼ି ବୁଲିଲାଣି, ଆଉ ପଢ଼ି ପାରିବନି । ଆଉ କେତେକ ମତ ଦେଲେ, ସେ ଯେତେବେଳେ ପଢ଼ିବ ବୋଲି ନିଜେ କହୁଛି, ତାକୁ ପଢ଼ାନ୍ତୁ, ସେ ତ ଆଉ ଭବିଷ୍ୟତରେ ଆପଣଙ୍କୁ ଦୋଷ ଦେଇ ପାରିବନି ଯେ ବାବା ମୋତେ ପଢ଼େଇଲେ ନାହିଁ । ଗୋଟିଏ ପୁଅ ଆପଣଙ୍କର, ତାକୁ ପଢ଼ାନ୍ତୁ । ସେ ଯଦି ନ ପଢ଼ିବ ତା'ର ଦୋଷ ।

ବାବାଙ୍କର ମତ, ଯାହା ସେ ସମସ୍ତଙ୍କୁ କହିଲେ, ମୋର ତ ବୟସ ହେଲାଣି, ମୁଁ ବା ଆଉ କେତେଦିନ ବଞ୍ଚିବି ? ତାଦ୍ୱାରା ଆଉ ପାଠ ହବ ନାହିଁ । ଯଦି ପଢ଼େଇବି, ମିଛରେ କିଛି ଅର୍ଥ ଶ୍ରାଦ୍ଧ ହବାର କଥା । ମୁଁ ତ ତା'ର କୋଷ୍ଠିରୁ ଦେଖୁଛି ତା'ର ପାଠ ହବ ନାହିଁ । ବାବାଙ୍କ ମୁହଁରୁ ମୁଁ ଏ କଥା ଶୁଣିଲେ, ମୋତେ ଭାରି ହତାଶ ଲାଗେ ଯେ ମୋର କୋଷ୍ଠିରେ ଅଛି, ମୋର ପାଠ ହବ ନାହିଁ । ମୁଁ ଭାବେ ତା'ହେଲେ କ'ଣ ମୁଁ ଆଉ ପଢ଼ି ପାରିବି ନାହିଁ?

ମୋର କିନ୍ତୁ ଦୃଢ଼ ଆତ୍ମବିଶ୍ୱାସ ଥାଏ, ମୁଁ ପଢ଼ିଲେ ନିଶ୍ଚୟ ମ୍ୟାଟ୍ରିକ ପାସ୍ କରିବି । ଏଣେ ପାଠ ପଢ଼ା ସିନା ବନ୍ଦ ଥାଏ, କିନ୍ତୁ football ଖେଳରେ ବେଶ୍ ଉନ୍ନତି ହାସଲ କରି ପାରିଥାଏ । ଏଇ ସମୟରେ ଆଉ ଗୋଟିଏ କାବ୍ୟ ଲେଖିବାକୁ ଆରମ୍ଭ କଲି, ତା'ର ନାମ "ଶୋଚନା", ବଙ୍ଗୀୟ କବି ମାଇକେଲ ମଧୁସୂଦନଙ୍କର "ମେଘନାଦ ବଧ"କାବ୍ୟ ଆଉ ରାଧାନାଥଙ୍କର "ମହାଯାତ୍ରା" କାବ୍ୟ ପଢ଼ିବା ପରେ ମନହେଲା-ଅମିତ୍ରାକ୍ଷର ଛନ୍ଦରେ ଖଣ୍ଡିଏ କାବ୍ୟ ଲେଖିବି । ଏଣୁ "ଶୋଚନା" କାବ୍ୟ ଲେଖିବାକୁ ଆରମ୍ଭ କଲି । କିନ୍ତୁ ମେଘନାଦ ବଧ ଆଉ ମହାଯାତ୍ରା ଚଉଦ ଅକ୍ଷରରେ ଲେଖାଥିବା ସ୍ଥଳେ ମୁଁ ଶୋଚନା କାବ୍ୟର ପ୍ରତ୍ୟେକ ଧାଡ଼ି ବାର ଅକ୍ଷରରେ ଲେଖିବାକୁ ଆରମ୍ଭ କଲି । କିନ୍ତୁ ଅମିତ୍ରାକ୍ଷର ଛନ୍ଦରେ ଅନେକ ଗୁରାଏ ଲେଖିଗଲି । ଶୋଚନା କାବ୍ୟ ବିଷୟ ବସ୍ତୁ ହେଲା, ଦୁର୍ଯ୍ୟୋଧନଙ୍କ ଉରଭଙ୍ଗ ପରର ଘଟଣାକୁ କେନ୍ଦ୍ର କରି । କାବ୍ୟଟି ଶେଷ କରି ପାରି ନଥିଲି । ବାବାଙ୍କର ପୁଣି ଉତ୍କଟ ଅର୍ଥାଭାବ, ପୁଣି ସେହି ପୂର୍ବର ଅବସ୍ଥା, ଦୈନିକ ଧାର କଲେ ଘର ଚଳିବ ।

ଏଇ ସମୟରେ ବଡ଼ ଭିଣେଇଙ୍କର ବାଲେଶ୍ୱର ବଦଳି ହବା ଯୋଗୁଁ ସେ ବାଲେଶ୍ୱର ଚାଲିଗଲେ । ତାଙ୍କର ପରିବାର ଆମ ଘରକୁ ପଠେଇ ଦେଲେ । ଏଣୁ ବଡ଼ ଭଉଣୀ, ଭଣଜା, ଚାକର, ଚାକରାଣୀ ଆଉ ଗୋଟିଏ କୁକୁର ସମସ୍ତେ ଆସି ଆମ ଘରେ ପହଁଚିଲେ । ଘରେ ବେଶ୍ ଗହଳି ହେଲା । କିନ୍ତୁ ବାବାଙ୍କର ଆର୍ଥିକ ଅବସ୍ଥା ଆହୁରି ଜଟିଳ ହେଲା ।

କିଛିଦିନ ପରେ ଭିଣେଇ ବାଲେଶ୍ୱରରେ ଜଏନ୍ କରି ଛୁଟି ନେଇ ଆସି ପହଁଚିଲେ । ଘରେ ବଡ଼ ଭିଣେଇ, ବଡ଼ ଭଉଣୀ ଆସିବା ଦ୍ୱାରା ଯେତେ ଆନନ୍ଦ ଲାଗିଲା, ସେତିକି ହତାଶ ଲାଗିଲା । ଏତେ ଗୁରିଏ ଲୋକଙ୍କ ପାଇଁ ଖର୍ଚ୍ଚ ହବ କୁଆଡ଼ୁ? ସବୁ ଖର୍ଚ୍ଚ ବାବାଙ୍କ ଉପରେ । ବାବାଙ୍କ ହାତରେ ଗୋଟିଏ ପଇସା ନଥାଏ । କାରଣ ପେନ୍‌ସନ୍ ତ ବନ୍ଦ ତା'ଛଡ଼ା ବାବା ଯେଉଁ ସେଟଲମେଣ୍ଟ ଅଫିସରେ ଚାକିରୀ କରୁଥିଲେ ତାକୁ ଛାଡ଼ିବାକୁ ବାଧ

ହେଲେ, କାରଣ ତାକୁ ନ ଛାଡ଼ିଲେ ପେନ୍‌ସନ୍ ମିଳିବା ଆହୁରି ବିଳମ୍ବ ହେବ। ଏଣୁ ଘରର ଜାବତୀୟ ଖର୍ଚ୍ଚ ପୂର୍ବ ଭଳି ଧାର କରଜ ଉପରେ ନିର୍ଭର କରୁଥାଏ।

ମୋର ବହି ପଢ଼ା, ଲେଖାଲେଖି, football ଖେଳ ସହିତରେ ଛବି ଅଙ୍କା ମଧ୍ୟ ଚାଲିଥାଏ। ଦିନେ ଦି'ପହରେ ଗୋଟାଏ କାଳୀ ମୂର୍ତ୍ତି ଆଙ୍କିଲି। କାଳୀ ମୂର୍ତ୍ତି ବଡ଼ ଭୟଙ୍କର ଦେଖାଗଲା। ସମସ୍ତେ ଦେଖିଲେ, ପ୍ରଶଂସା କଲେ। କିନ୍ତୁ ମା' ଯେତେବେଳେ ଦେଖିଲେ, ରାଗରେ କହିଲେ, ଆରେ ଏ ତ କାଳୀମୂର୍ତ୍ତି ଆଙ୍କିଲାଣି। ଏ ତ ବଂଶ ରଖିବ ନାହିଁ। ଆମ ଘରେ କାଳୀଙ୍କ ମୂର୍ତ୍ତି ରହିବା ଆଦୌ ଉଚିତ୍ ନୁହଁ। ମା ମୋତେ ମାରି ଗୋଡ଼େଇଲେ। ଛବି ଅଙ୍କା ସେତିକିରୁ ପୁଣି ବନ୍ଦ ରହିଲା।

ବାବାଙ୍କର ଅର୍ଥାଭାବ ଯୋଗୁଁ ଆଗେ ଯେତେ ପତ୍ରପତ୍ରିକା ଆସୁଥିଲା, ସବୁ ବନ୍ଦ ହେଇଗଲା। ଆଉ କୌଣସି ଖବର କାଗଜ ପଢ଼ିବା ପାଇଁ ନଥାଏ। ଏଇ ଅବସ୍ଥାରେ ମୋର ମନ ଡ଼ାକିଲା କେମିତି ଖବରକାଗଜ ପଢ଼ିବି। ମୋର ସାଙ୍ଗ ମୃଣାଳ ଯଦିଚ ଅନେକ ବହିପତ୍ର ମୋତେ ଯୋଗଉ ଥାଏ ପଢ଼ିବା ପାଇଁ କିନ୍ତୁ ଖବର କାଗଜ କେଭେ ମୋତେ ସେ ଦେଇ ନାହିଁକି, ମୁଁ କେଭେ ମାଗି ନାହିଁ। ମୁଁ ଜାଣେ ତାଙ୍କ ଘରକୁ ଇଂରାଜୀ ଆଉ ବଙ୍ଗଳା ଖବରକାଗଜ ଆସେ। ମୁଁ ବା ତାକୁ କୋଉଠୁଁ ପାଇବି?

ସେତେବେଳେ "ନିର୍ଭୀକ" ଆଉ "ଦେଶକଥା" ପ୍ରାୟ ସବୁଠି କିଣିବାକୁ ମିଳୁଥାଏ। ମୋର ତ ବଜାର ସଉଦା କରିବା ଗୋଟାଏ ଦୈନନ୍ଦିନ କାମ ଥାଏ। ମୁଁ ଗୋଟିଏ ଟଙ୍କା ନେଇ ବଜାର କରିବାକୁ ଗଲେ, ସେଥିରୁ କୋଉ ଆଡୁ ପଇସାଟିଏ କାଟି ଖଣ୍ଡେ "ନିର୍ଭୀକ" ହଉ କିମ୍ବା "ଦେଶକଥା" ଖଣ୍ଡେ କିଣି ଆଣେ। କାରଣ ସେତେବେଳେ ସେ ପତ୍ରିକାର ଦାମ୍ ଥାଏ, ପଇସାଟିଏ। ମାଛୁଆ ବଜାରକୁ ସଉଦା କରିବାକୁ ଗଲେ, ସେଇଠୁଁ ସେ ପତ୍ରିକାରୁ ଖଣ୍ଡେ କିଣି ଆଣେ। "ଦେଶକଥା" ଲାଲା ନଗେନ୍ଦ୍ର କୁମାର ରାୟଙ୍କ ସମ୍ପାଦନାରେ ବାହାରୁଥାଏ। ସେଥିରେ ଅନେକ ସମାଲୋଚନାମୂଳକ ସମ୍ବାଦ ବାହାରୁଥାଏ। ଅନେକ ସରକାରୀ ଅନୁଷ୍ଠାନ ବିରୁଦ୍ଧରେ ଦେଶକଥା ପଢ଼ିବାକୁ ଭାରି ଭଲ ଲାଗୁଥିଲା। ନିର୍ଭୀକ ପତ୍ରିକା ବିଷୟରେ ମୋର ବିଶେଷ କିଛି ମନେ ନାହିଁ। ଦେଶକଥା, ନିର୍ଭୀକ ଯେ ନିତି କିଣି ପଢ଼ିବି ହେଇପାରେନା। କେବେ କେମିତି ଖଣ୍ଡେ ଖଣ୍ଡେ କିଣି ଆଣି ପଢ଼େ। ଭାରି ଆନନ୍ଦ ଲାଗେ। ବାବା ମଧ୍ୟ ପଢ଼ନ୍ତି।

ଆହୁରି ମନ ଡ଼ାକିଲା ଇଂରାଜୀ ଆଉ ବଙ୍ଗଳା ଖବରକାଗଜ ପଢ଼ିବାକୁ। ତାକୁ ବା କିଣିବି କୁଆଡୁ? ତାକୁ କିଣିବାକୁ ହେଲେ ବେଶି ପଇସା ଦରକାର। ଏଣୁ ସଉଦା ଆଣିଲେ ଯେଉଁ ବଙ୍ଗଳା, ଇଂରାଜୀ ଖବରକାଗଜର ଛିଣ୍ଡା ଅଂଶରେ ଦୋକାନୀ ସଉଦା ଦିଏ, ସେଇ ଖବରକାଗଜର ଛିଣ୍ଡା ଅଂଶ ସବୁକୁ ପଢ଼େ। ଏଇ ସମୟରେ ଭିଣେଇ କହିଲେ, ତୁମେ ଦୈନିକ translation କର, ତାଦ୍ୱାରା ତୁମର ଇଂରାଜୀ ଲେଖା ବଦଳିବ। ତାଙ୍କ କଥା ମାନି ମୁଁ ଖଣ୍ଡିଏ translation ବହି କାଢ଼ି ଦୈନିକ ତାରିଖ ଦେଇ translation କଲି ଆଉ ଭିଣେଇଙ୍କୁ ଦେଖାଏ, ସେ ସଂଶୋଧନ କରିଦିଅନ୍ତି। ଏଇ ସମୟରେ ଘରେ ଭାରି "ଲୁଡୁ" ଖେଳ ଆଉ "ତାସ୍" ଖେଳର ଆଡ୍ଡା ଜମିଲା। ବାବା ଆଉ ଭିଣେଇଙ୍କୁ ଛାଡ଼ି ଆମେ ସମସ୍ତେ ଚାରିଜଣ କରି ଲୁଡୁ ହଉ କିମ୍ବା ତାସ୍ ହଉ ନେଇ ବସିଯାଉ। ଖେଳୁ ଖେଳୁ ରାତି ଅନେକ ହେଇ ଯାଏ। ଦି'ପହରେ ମଧ୍ୟ ସେମିତି ଖେଳ ଜମେ।

ଏଇ ସମୟରେ କଟକରେ ବସନ୍ତ ରୋଗର ପ୍ରାଦୁର୍ଭାବ ଦେଖା ଦେଲା। ଘରେ ଘରେ ବସନ୍ତ ରୋଗରେ ଲୋକେ ଆକ୍ରାନ୍ତ ହେଲେ। ଘରକେ ଜଣେ ଦୁଇଜଣ ପ୍ରାୟ ମରୁଥାନ୍ତି। ଏ ହେଲା ୧୯୨୬ ମସିହାର କଥା। କଟକରେ ଯେତେ ଯୁଆଡ଼େ ଲୋକେ ବସନ୍ତ ରୋଗରେ ଆକ୍ରାନ୍ତ ହଉଥିଲେ ମଧ୍ୟ ଥୋରିଆସାହିରେ କିଛି ନଥିଲା। ହଠାତ୍ କେତେକଙ୍କ ଘରେ ଲୋକେ ବସନ୍ତ ରୋଗରେ ଆକ୍ରାନ୍ତ ହବାର ଦେଖାଗଲା। ରାତିରେ କୁଆଡ଼େ ଯିବା ଆସିବାକୁ ଲୋକେ ଭୟ କଲେ। ଜହ୍ନ ରାତିରେ ଲୋକେ ଯାହା ଯୁଆଡ଼େ ଯିବାକୁ ସାହସ କରନ୍ତି। କିନ୍ତୁ ଅନ୍ଧାର ରାତି ହେଲେ ଆହୁରି ଭୟ ଲାଗୁଥାଏ। ସେତେବେଳେ

କଟକ ସହରରେ ଟର୍ଚ୍ଚ ଲାଇଟ୍ ଧରି ଲୋକେ ଯିବା ଆସିବା କରୁ ନଥିଲେ କିମ୍ବା ଟର୍ଚ୍ଚ ଲାଇଟ୍ ଏତେ ଦୋକାନ ବଜାରରେ ବିକ୍ରି ହଉ ନଥିଲା । ମୋର ମନେ ଅଛି ମୋର ଜଣେ ସାଙ୍ଗ ପାଖରୁ ମୁଁ ଥରେ ଗୋଟିଏ ଚାରିକଣିଆ ଟର୍ଚ୍ଚ ଲାଇଟ୍ ମାଗି ଆଣିଲି । ଏ ଟର୍ଚ୍ଚ ଲାଇଟ୍‌ଟି ମୋର ସେ ସାଙ୍ଗର ବଡ଼ ଭାଇ କଲିକତାରୁ କିଣି ଆଣିଥିଲା । ମୁଁ ସେ ଟର୍ଚ୍ଚ ଲାଇଟ୍‌କୁ ଯେତେବେଳେ ଘରେ ଆଣି ଦେଖାଏ ସମସ୍ତେ ଆଶ୍ଚର୍ଯ୍ୟ ହେଲେ । ଆଙ୍ଗୁଳିରେ ଟିପି ଦେଲେ ଜଳୁଛି, ଲିଭୁଛି । ନିଆଁ କାହିଁ ? ପୋଡ଼ି ଯିବାର ଭୟ ନାହିଁ । ପୁଣି କେଡ଼େ ପରିଷ୍କାର ଆଲୁଅ ପଡୁଛି । ମୁଁ ସେ ଟର୍ଚ୍ଚ ଲାଇଟ୍‌କୁ ତକିଆ ତଳେ ରଖି ଶୁଏ । ଯେତେବେଳେ ପରିଶ୍ରା ମଡ଼ାଏ, ଟର୍ଚ୍ଚ ଲାଇଟ୍ ଜାଳି ପରିଶ୍ରା କରିବାକୁ ଯାଏ । ଟର୍ଚ୍ଚ ଲାଇଟ୍ ଜାଳିବା କେବଳ ଦେଖିବା ଲୋଭରେ ମୋର ସାନ ମଝିଆ ଭଉଣୀ "ବୁଢ଼ୀ ମାଉସୀ" ମୋ ପାଖରେ ଶୋଇଥାଏ । ମୁଁ ଯେତେବେଳେ ଉଠି ଜାଳେ, ସେ ଉଠେ ।

ଥୋରିଆସାହିରେ ଅନେକଙ୍କ ଘରେ ବସନ୍ତ ହେଲା । ଆମେ ଶୁଣୁ, କିନ୍ତୁ କାହାରିକୁ ଦେଖି ନଥାଉ । ଯା ଘରେ ବସନ୍ତ ରୋଗୀ ଥାଏ, ଆମେ କେବଳ ଜାଣିପାରୁ ଯେ ତା ଦୁଆରେ ପାଣି ଢ଼ଳା ହେଉଥାଏ । ଆଉ ଦୁଆର ନିକଟ ରାସ୍ତା କଡ଼କୁ ଗୋଟିଏ ଗାତ କରା ହୋଇ ସେଥିରେ ପଣା ଦିଆ ହୋଇ ଫୁଲ ରଖି ପୂଜା କରା ହେଉଥାଏ । ମୁଁ ଭୟରେ ସେ ବାଟରେ କେତେଦିନ ଯା'ଆସ କରେ ନାହିଁ । କିନ୍ତୁ ଅନ୍ଧାର ରାତି ହଉ କି ଜହ୍ନ ରାତି ହଉ, ମୋତେ ସଉଦା ଆଣିବାକୁ ହୁଏ । ସାହି ମୁଣ୍ଡରୁ ସଉଦା ଆଣିବାକୁ ହେଲେ, ମୁଁ ଆଉ ସାନ ମଝିଆ ଭଉଣୀ, ବୁଢ଼ୀ ମାଉସୀ, ଆମେ ଦିହେଁ ଯାଉ । ମୋର ତା'ର ବାଟରେ କଳିକଜିଆ ହୁଏ । ମୁଁ ତାକୁ ଡ଼ରାଏ । ସେ ବଡ଼ ଭୟରେ ମୋ ସାଙ୍ଗରେ ଯା' ଆସ କରେ ।

ଆଜିକାଲି ଯେଉଁଠି ଡ଼:ମାୟାଧର ମାନସିଂଙ୍କ ସଉଧ ଠିଆ ହୋଇଛି, ସେଠି ଗୋଟିଏ ଆମ୍ବ ତୋଟା ଥିଲା । ତା' ନିକଟରେ ଗୋଟିଏ ବଡ଼ ପୋଖରୀ ଥିଲା । ସେ ପୋଖରୀକୁ ସମସ୍ତେ "ବେହେରା ପୋଖରୀ" ବୋଲି କହୁଥିଲେ । କାରଣ ସେ ତୋଟା ଆଉ ପୋଖରୀ ଜମିଦାର "ଧନୀ ବେହେରା"ର ଥିଲା । ସେ ତୋଟାର ଗୋଟିଏ ପାଖକୁ ଘରେ ବାଉରୀ ଥିଲେ । ସେମାନେ ସେ ତୋଟାକୁ ଜଗି ରହୁଥିଲେ । ସେ ବେହେରା ପୋଖରୀକୁ ଆମେ କେବେ କେବେ ଗାଧୋଇ ଯାଉଥିଲୁ । ଥରେ ମା, ମୁଁ, ବଡ଼ ଭଉଣୀ, ସାନ ଭଉଣୀ, ଦି'ଜଣ ଭଣଜା, ଚାକର, ଚାକରାଣୀ ସମସ୍ତେ ଗାଧୋଇ ଯାଇଛୁ । ମୁଁ ଗାଧଉ ଗାଧଉ ଅକସ୍ମାତ ଦେଖିଲି ଯେ ଆମର ଗାଧୋଇବା ତୁଠର ଅଳ୍ପ ଦୂରରେ କିଏ ଗୋଟାଏ ଲୁଗା କାଚୁଛି । ମୋର ହଠାତ୍ ମନେ ହେଲା-ଯେମିତି ଗୋଟାଏ ଶାଗୁଣା ବସିଛି । ସେତେବେଳେ ଦିନ ପ୍ରାୟ ୧୧ଟା ବେଳ ହବ, ମୁଁ କିଛି ସମୟ ଅନେଇଲା ପରେ ଚିହ୍ନି ପାରିଲି-ଆମରି ସାହିର ଗୋଟିଏ ଟୋକା, ତାକୁ ବସନ୍ତ ହୋଇ ତା' ଦେହରୁ ଚମ ଛାଡ଼ି ଯାଇ ଜାଗା ଜାଗା ଲାଲ୍ ଦେଖା ଯାଉଛି । କି ଭୟଙ୍କର ସେ ଦୃଶ୍ୟ ! ! ଏଣେ ବସନ୍ତ ରୋଗରେ ଆକ୍ରାନ୍ତ ହୋଇ ଅତିଶୟ ଝଡ଼ି ଯାଇଛି । ନିଜର ଅସହାୟ ଅବସ୍ଥା ଯୋଗୁଁ ନିଜେ ଦୁର୍ବଳ ଥିଲେ ମଧ ଆସି ଲୁଗା କାଚୁଛି । ମୋତେ ତ ହଠାତ୍ କେମିତି ଗୋଟାଏ ଶାଗୁଣା ପରି ଦେଖାଗଲା, ପରେ ଚିହ୍ନି ପାରିଲି । କିନ୍ତୁ ତାକୁ ଦେଖି ଭୟରେ ଗାଧଉ ଗାଧଉ ପାଣିରୁ ଉଠି ଏକା ଦଉଡ଼ରେ ଘରକୁ ପଳେଇ ଆସିଲି । ସେଦିନ ସେ ଦୃଶ୍ୟ ବାରମ୍ବାର ମୋର ମନେ ପଡୁଥାଏ । ଆଉ ଭୟ ଲାଗୁଥାଏ । ସେହିଦିନ ପ୍ରଥମ ମୁଁ ବସନ୍ତ ରୋଗୀ ଦେଖିଲି । ମା, ବଡ଼ ଭଉଣୀ, ଏମାନେ ସମସ୍ତେ ଗାଧୋଇ ସାରି ପରେ ଘରକୁ ଫେରିଲେ । ମା' କହିଲେ, ଆଉ ସେ ପୋଖରୀକୁ ଗାଧୋଇ ଯିବା ନାହିଁ ।

ସେହିଦିନ ସନ୍ଧ୍ୟା ବେଳକୁ ମୋର ମୁଣ୍ଡ ବଥେଇ ମୋତେ ଜର ହବା ଭଳି ଜଣାଗଲା । ତହିଁ ଆରଦିନ ଯେତେବେଳେ ପାଇଖାନାକୁ ଯାଏ, ଦିହସାରା ଘିମିରି ହେଲା ଭଳି ମୋତେ ଜଣାଗଲା । ଆଉ ଦିହ ସାରା କୁଣ୍ଡେଇ ହେଲା । ତହିଁ ଆରଦିନ ବସନ୍ତ ରୋଗର ବିସ୍ଫୋଟକ ଦିହ ସାରା ବାହାରିପଡ଼ିଲା । ଘରେ ସମସ୍ତେ ଆତଙ୍କିତ ହୋଇ ପଡ଼ିଲେ । ଆରମ୍ଭ ହେଲା..-ଶୀତଳା

ପୂଜା, ପାଣିଢ଼ଳା, ପଣା ଦବା, ଇତ୍ୟାଦି । ଠାକୁରାଣୀ ହେଇଛନ୍ତି ବୋଲି ମୋତେ ସମସ୍ତେ ସମ୍ମାନ ଦେଖେଇଲେ । ମୁଁ ତ ବସନ୍ତ ରୋଗର ଯନ୍ତ୍ରଣାରେ ବିଚଳିତ ହଉଥାଏ । ଦିହସାରା ବିସ୍ଫୋଟକ ଏତେ ବାହାରିଥାଏ ଯେ ଟିପ ରଖିବାକୁ ଜାଗା ନଥାଏ । ସେଥିରେ ପୁଣି ଦିହସାରା ପାଉଁଶ ବୋଳା ହେଲା କାରଣ ବିସ୍ଫୋଟକରୁ ପାଣି ଟାଣି ନବ । ଏଣେ ମୋର ଖାଲି ଥଣ୍ଡା ଜିନିଷ ଖାଇବାକୁ ମନ ଡ଼ାକୁଥାଏ । ମୋତେ ନେଇ ସମସ୍ତେ ବ୍ୟସ୍ତ ହଉଥାନ୍ତି । ଘରେ ସମସ୍ତଙ୍କର ଆମିଷ ଖିଆ ବନ୍ଦ, ନଖ, ବାଳ କେହି କାଟିବେ ନାହିଁ । ଏଣେ ବାବାଙ୍କ ହାତରେ ଗୋଟିଏ ପଇସା ନାହିଁ । ଘରେ ମଣିଷ ଭରା । ସବୁ ଉଧାର ଧାର ଉପରେ ଖର୍ଚ୍ଚ ଚାଲିଥାଏ । ସେ କି କଷ୍ଟର ବେଳ ! ଏମିତି କି ରୁପା ତାଟିଆ, ଅନ୍ୟାନ୍ୟ ଜିନିଷ ବନ୍ଧା ଦେଇ ଖର୍ଚ୍ଚ ଚାଲିଥାଏ । ମୋର ଯେତେବେଳେ ଜ୍ଞାନ ଥାଏ ସବୁ ବୁଝିପାରେ, ପୁଣି ଅନେକ ସମୟରେ ଅଜ୍ଞାନ ଅବସ୍ଥାରେ ରହୁଥାଏ, କିଛି ବୁଝିପାରେନା ।

ରାତି ହେଲେ, ସାହିର ଆନିଆ ଗୋସେଇଁ ଆସି ଶୀତଳା ପୂଜା କରି ପୋଥି ବୋଲନ୍ତି । ଘରେ ଘଟ ବସିଥାଏ । ବିଧି ମତେ ପୂଜା ଚାଲିଥାଏ, ମହାଦୀପ ଜଳୁଥାଏ, ଧୂପ, ଆଳତି ସବୁ ଚାଲିଥାଏ । କୌଣସି ମତେ ୮ଦିନ କଟିଲା, ୯ଦିନରେ ନବରାତ୍ର ପୂଜା । ବାବା କେଉଁଠୁ ଟଙ୍କା ଯୋଗାଡ଼ କରି ନବରାତ୍ର ପୂଜା ବଡ଼ ଆଡ଼ମ୍ବରରେ କଲେ । ମୋର ସେତେବେଳକୁ ରୋଗର ଯନ୍ତ୍ରଣା ଅନେକଟା କମି ଆସିଲାଣି, ତଥାପି ମୁଣ୍ଡ ଠିକ୍ ନଥାଏ । ନବରାତ୍ର ପୂଜା ହେଲାବେଳେ ମୋର ଜ୍ଞାନ ଥିଲା, ସବୁ ଦେଖିଲି । ମୋର ସାନ ମଝିଆ ଭଉଣୀ ବୁଢ଼ୀ ମାଉସୀ ଖୁବ୍ ଉତ୍ସାହ ସହିତ ନବରାତ୍ର ପୂଜାରେ ଯୋଗ ଦେଇଥାଏ ।

ନବରାତ୍ର ପୂଜାର ପରଦିନ ସକାଳେ ମୋତେ ଯେତେବେଳେ ଖଣ୍ଡେ ଦର୍ପଣ ଦେଲେ, ମୁଁ ନିଜେ ମୋର ମୁହଁକୁ ଦେଖିବା ପାଇଁ ମୁଁ ଦର୍ପଣରେ ମୋର ମୁହଁକୁ ଦେଖି ଚମକି ପଡ଼ିଲି । କି ଭୟଙ୍କର ମୁହଁ ! ମୁହଁ ଯାକ କଳା କଳା ଦାଗ, ସେଥିରେ ପାଉଁଶ ସବୁ ପଟୁ ମାଟି ପରି ଲାଗିଛି, ପୁଣି ସେଥିରେ ଚନ୍ଦନ, ହଳଦି, ସିନ୍ଦୁର ଲାଗି ଆହୁରି ଭୟଙ୍କର ଦିଶୁଛି । ମୁଁ ଭାବି ପାରିଲି ନାହିଁ ଯେ ସେ ମୋ ମୁହଁ ।

ନବରାତ୍ର ପରେ ରୋଗର ପ୍ରକୋପ ଯଦିଚ କମି ଆସିଲା ତଥାପି ମୁଣ୍ଡ ଠିକ୍ ହେଲା ନାହିଁ । କେତେବେଳେ କ'ଣ ଭୁଲ୍ କଥା ଗୁରାଏ କହି ପକଉଥାଏ । ମୋର ମନେ ଅଛି-ମୋତେ ବସନ୍ତ ରୋଗ ହବାର ୧୩ ଦିନର ରାତିରେ ମୋର ସାନ ମଝିଆ ଭଉଣୀ ବୁଢ଼ୀ ମାଉସୀ ଆଉ ଜଣେ ବଡ଼ ଭଉଣୀଙ୍କ ସାଙ୍ଗରେ ଆସିଥିବା ଝିଅ, ଉଭୟେ ମୋତେ ସାରା ରାତି ଜଗିଥାନ୍ତି । ସେମାନେ ଉଭୟେ ଲୁଡୁ ଖେଳୁଥିଲେ । ମୁଁ ଯେଉଁଠି ଶୋଇଥିଲି, ସେଠି ଗୋଟିଏ ବଡ଼ ଝରକା ଥିଲା, ଝରକା ଆର ପଟେ ସେମାନେ ଖେଳୁଥିଲେ । ମୋର ମୁଣ୍ଡ ଠିକ୍ ନଥିଲା, ମୁଁ ହଠାତ୍ ଉଠି ଠିଆ ହେଇ ଝରକା ବାଟେ ଅନେଇବାରୁ ସାନ ମଝିଆ ଭଉଣୀ ପଚାରିଲା କ'ଣ ? ମୁଁ କହିଲି, ମୁଁ ବାରଣୀ ଅଫିସ୍‌କୁ ଯିବି ।

ବାରଣୀ ଅଫିସ୍ ଯାଇ କଟକ ସହରର ବାଙ୍କା ବଜାରରେ । ବୁଢ଼ୀ ମାଉସୀ ଆଉ ସେ ଝିଅ ମୋ କଥା ଶୁଣି ଆଶ୍ଚର୍ଯ୍ୟ ହେଲେ । ବସନ୍ତ ରୋଗରେ ଯେଉଁମାନେ ଆକ୍ରାନ୍ତ ହୁଅନ୍ତି ସେମାନଙ୍କ ଲାଗି ୭ଦିନ, ୯ମ ଦିନ ଏବଂ ତ୍ରୟୋଦଶ ଦିନ କୁଆଡ଼େ ଭାରି ବିପଜ୍ଜନକ । ଏଣୁ ୧୩ ଦିନର ରାତିରେ ବୁଢ଼ୀ ମାଉସୀ ଓ ସେ ଝିଅ ମୋତେ ଜଗିଥିଲେ । ମୁଁ ପୁଣି ବୁଢ଼ୀ ମାଉସୀକୁ କହିଲି- ମୁଁ ଯିବି ବାଙ୍କା ବଜାର । ସେତେବେଳେ ରାତି ପ୍ରାୟ ୨ଟା ହବ, ବୁଢ଼ୀ ମାଉସୀ, ମା'ଙ୍କୁ ଯେମିତି ଡ଼ାକ ପକେଇଲେ, ମୁଁ କ'ଣ କହୁଛି ଯିବା ପାଇଁ । ମୁଁ ମା'ଙ୍କ ଭୟରେ ଆଉ କିଛି ନ କହି ବୁଢ଼ୀ ମାଉସୀ ଉପରେ ବିରକ୍ତ ହେଇ ଶୋଇ ପଡ଼ିଲି ।

ଏମିତି ଅନେକ କଥା ମୁଣ୍ଡ ଗୋଳମାଳ ଯୋଗୁଁ କହିଛି । ଆଉ ଥରେ ଜାଣି ଜାଣି ମିଛରେ ଗୋଟାଏ ଲୋକକୁ ଭୟଭୀତ କରେଇଲି । ସେତେବେଳକୁ ମୁଣ୍ଡର ଅବସ୍ଥା ଭଲ ଆଡ଼କୁ ଆସିଲାଣି । ଘଟଣା ହେଲା-ମୋତେ ଠାକୁରାଣୀ ହେଇଛନ୍ତି ବୋଲି ଅନେକ ବୟସ୍କ ଲୋକେ

ଆସି ମୋତେ ନମସ୍କାର କରୁଥାନ୍ତି । ଆମ ଘରେ ସେତେବେଳେ ଜଣେ ପଡ଼ିଶା ଘର ଲୋକ ଚାକର କାମ କରୁଥାଏ, ଆଉ କ୍ଷୀର ଯୋଗଉଥାଏ । ସେ କେତେଦିନ ଭଲ କ୍ଷୀର ଦେଲା ପରେ, ପୁଣି ପାଣିମିଶା କ୍ଷୀର ଦେଲା । ମା' ତା'ଉପରେ ବିରକ୍ତ ହେଲେ, ମୁଁ ଶୁଣିଲି । ତା'ପରେ ସେ ଲୋକ ଯେତେବେଳେ ସନ୍ଧ୍ୟା ବେଳକୁ ଆମ ଘରେ କାମ କରିବାକୁ ଆସିଲା, ମୁଁ ଫିସାଦ କରି ଯେମିତି ଠାକୁରାଣୀ ନିଜେ କହିଲା ଭଳି ତାକୁ ଧମକ ଦେଇ କହିଲି-ହଇରେ ତୁ ଜାଣିଛୁ, ମୁଁ କିଏ ? ତୁ କ୍ଷୀରରେ ପାଣି ମିଶେଇ ଦଉଛୁ ? ଆଚ୍ଛା ହଉ, ମୁଁ ତୋତେ ଦେଖୁଛି ।

ସେ ଲୋକ ଭୟ କରିଗଲା । ମୋତେ ନମସ୍କାର କରି ଭୟରେ ଘରକୁ ପଳେଇଲା । ସେ ଲୋକ ଗଲା ପରେ ମୁଁ ମା'ଙ୍କୁ କହିଲି-ମୁଁ ତାକୁ ମିଛରେ କେମିତି ଡ଼ରେଇଲି ? ମା' ମୋ ଉପରେ ବିରକ୍ତ ହେଲେ । ମୋର ବସନ୍ତ ରୋଗରେ ଆକ୍ରାନ୍ତ ହବାର ପ୍ରାୟ ୧୯ ଦିନରେ ଦିନ ବେଳା ମା, ବୁଢ଼ୀ ମାଉସୀ ଉପରେ ବିରକ୍ତ ହେଇ ତାକୁ ମାଇଲେ । ସେ ଆସି ଖଟ ଉପରେ ଶୋଇ ଅନେକ ସମୟ କାନ୍ଦିଲା । ମୁଁ ବୁଝି ପାରିଲି ଯେ ମା' ମୋରି ପାଇଁ ତାକୁ ମାଇଲେ । ସେ ମୋତେ କ'ଣ କହିବାରୁ ମା' ତା ଉପରେ ରାଗି ତାକୁ ମାଇଲେ ।

ସେହି ଦିନ ସନ୍ଧ୍ୟା ବେଳକୁ ବୁଢ଼ୀ ମାଉସୀକୁ ଜ୍ୱର ହେଲା । ମୋର ଯେଉଁଦିନ ୨୧ ଦିନ, ସେହିଦିନ ବଡ଼ ଭଉଣୀ ତାକୁ ଖଟରୁ ଉଠେଇ ଆଣି ଦେଖନ୍ତି-ତା' ଦିହରେ କେତେ ଜାଗା ବସନ୍ତର ବିସ୍ଫୋଟକ ବାହାରିଛି । ବୁଢ଼ୀ ମାଉସୀ ନିଜେ ଯେତେବେଳେ ଦେଖିଲା ତା ଦିହରେ ବିସ୍ଫୋଟକ ବାହାରିଲାଣି, ସେ କେମିତି ହଠାତ୍ ପାଗଳୀଙ୍କ ପରି ବକିବାକୁ ଆରମ୍ଭ କଲା । ସେ ବିସ୍ଫୋଟକରୁ କେତେଗୁଡ଼ା ରାଗରେ ଛିଣ୍ଡେଇ ପକେଇଲା । ମୋର ବଡ଼ ଭଉଣୀଙ୍କ ପୁଅ-ମୋର ଭଣଜା ହାତକୁ ଧରି ପକେଇ କାମୁଡ଼ିବାକୁ କହିଲା । ଏମିତି କେତେ କ'ଣ କଲା, କିନ୍ତୁ ତା ଦିହରେ ବିସ୍ଫୋଟକ ମୋ ଅପେକ୍ଷା ଅଳ୍ପ ବାହାରିଥିଲା । ପରେ ତା'ର ମୁଣ୍ଡ ମଧ୍ୟ ଠିକ୍ ହେଇଗଲା । ତା'ର ଖାଇବା, ବୁଲିବା, ଖେଳିବା ସବୁ ଠିକ୍ ଥିଲା କିନ୍ତୁ ବିସ୍ଫୋଟକ ବାହାରିବାର ଚତୁର୍ଥ ଦିନ ରାତିରେ ଅଗଣାରେ ବସି ବଡ଼ ଭଉଣୀ ଏମାନଙ୍କ ସଙ୍ଗେ ତାସ୍ ଖେଳିଲା । ତାସ୍ ଖେଳିସାରି ଶୋଇବାକୁ ଗଲା । ସେହିଦିନ ରାତିରେ ତା'ର ପୁଣି ଜ୍ୱର ଆରମ୍ଭ ହେଲା । ପୁଣି ଗୁଡ଼ାଏ ବିସ୍ଫୋଟକ ବାହାରିଲା । ସେ ସେମିତି ଶୋଇ ରହିଥାଏ । କଥାବାର୍ତ୍ତା କରୁଥାଏ । ଦିନେ ସନ୍ଧ୍ୟାବେଳେ ଗୋଟାଏ ଘଟଣା ହେଲା । ସେତେବେଳେ ବଡ଼ ଭିଣେଇ ପୁଅକୁ ନେଇ ତାଙ୍କ ଗାଁକୁ ଚାଲି ଯାଇଥାନ୍ତି । ବଡ଼ ଭଉଣୀ ଆମ ଘରେ ଥାନ୍ତି । ତାଙ୍କର ଗୋଟିଏ ଚାକର ଆମ ଘରେ ଥାଏ । ସେ ସନ୍ଧ୍ୟା ବେଳେ ଗୋଟାଏ ପଡ଼ିଆକୁ ଝାଡ଼ା ଯାଇଥିଲା । ସିଆଡୁ ଫେରିଆସି ବକିବାକୁ ଲାଗିଲା-ମୁଁ ଅମୁକ ଲୋକ, ତମ ଚାକର ଝାଡ଼ା ଯାଇଥିଲା, ମୁଁ ତା ଦିହରେ ଚାଲି ଆସିଛି ।

ବାବା, ବଡ଼ ଭଉଣୀ ତାକୁ ପଚାରିଲେ-କୁ କିଏ ? ସେ ଯାହା ଉତ୍ତର ଦେଲା ସେଥିରୁ ବୁଝାଗଲା ଅନେକ ବର୍ଷ ତଳେ ଆମ ସାହିରୁ ଜଣେ ମାଇପି ମରି ଯାଇଥିଲା, ତା'ର ପ୍ରେତ, ତାରି ଦିହରେ ଆସିଛି । ଚାକର କଣ୍ଠ ସ୍ୱର ମଧ୍ୟ ଭିନେ ଜଣା ପଡୁଥାଏ । ସେ ଫିସାଦ କରି କହୁଛି ବୋଲି ସନ୍ଦେହ କରି ବାବା ତାକୁ ଗୋଟାଏ ଚାପୁଡ଼ା ମାଇଲେ । ସେ ଚାକର ଚାପୁଡ଼ାଟାଏ ଖାଇ ଉତ୍ତର ଦେଲା-ହଉ ମାର, ମାର, ଫଳ ପାଇବ ଯେ ।

ମୁଁ ଏ ଘଟଣାକୁ ଆସି ସାନ ଭଉଣୀ ବୁଢ଼ୀ ମାଉସୀ ଆଗରେ କହିବାରୁ ସେ ରୋଗ ଶଯ୍ୟାରେ ଶୋଇ କହିଲା, ଭୂତ ଲାଗିଛି ? ତାକୁ ମୁଁ ଝାଡୁରେ ବାଡ଼େଇ ଭୂତ ଛଡ଼େଇ ଦେବି । ମୁଁ ସାନ ଭଉଣୀଠାରୁ ଏକଥା ଶୁଣି ସେ ଚାକର ପାଖକୁ ପୁଣି ଗଲା ବେଳକୁ, ସେ ଚାକର କହୁଛି, ତମ ଘରେ ଠାକୁରାଣୀ ଅଛନ୍ତି ? ମୁଁ ଜାଣି ନଥିଲି, ତାହେଲେ ମୁଁ ଯାଉଛି । ଏତକ କହି ସେ ଚାକର ସେହିକ୍ଷଣି ଭଲ କଥାବାର୍ତ୍ତା କଲା । ସାନ ଭଉଣୀ ଘର ଭିତରେ ଥାଇ ଯାହା ଧମକ ଦେଲା, ସେ ତ ଆଦୌ ଶୁଣି ନଥିଲା ତଥାପି ସେ କେମିତି କହିଲା, ତମ ଘରେ ଠାକୁରାଣୀ ଅଛନ୍ତି ? ସମସ୍ତେ ଏ ଘଟଣା ଦେଖି ଆଶ୍ଚର୍ଯ୍ୟ ହେଲେ, ସେ ଚାକରକୁ ସମସ୍ତେ ପଚାରିଲେ, କିରେ ତୁ ଇମିତି କ'ଣ ବକୁଥିଲୁ ? ସେ କହିଲା ମୁଁ କିଛି ଜାଣି ନାହିଁ ।

ଯେଉଁ ମାଇପିଟିର ନାଁ କହିଲା ତା ଦିହରେ ଆସିଛି ବୋଲି, ତାଙ୍କ ଘରେ ପଚାରିବାରୁ ସେମାନେ କହିଲେ, ହଁ ସେ କେତେବର୍ଷ ତଳେ ମରିଯାଇଛି ।

ଚାକରର ଏ ଘଟଣା ଦେଖି ସମସ୍ତେ ଭୟଭୀତ ମଧ୍ୟ ହେଲେ । ଏ ଘଟଣାର ଦିନେ, ଦୁଇଦିନ ପରେ ବୁଢ଼ୀ ମାଉସୀ ଅଜ୍ଞାନ ଅବସ୍ଥାରେ ରହିଲା । ତା ଦିହରେ ବିସ୍ଫୋଟକ ସବୁ କଳା ପଡ଼ିଗଲା । ଜ୍ୱର ସେମିତି ଥାଏ । ଶେଷରେ ବସନ୍ତ ରୋଗରେ ଆକ୍ରାନ୍ତ ହବାର ୭ମ ଦିନର ଦିନବେଳା ତା'ର ରକ୍ତବାନ୍ତି ହୁଏ । ସେହିଦିନ 'ରାତିରେ ତା'ର ମୃତ୍ୟୁ ହୁଏ । ସେହିଦିନ ଥିଲା ତା'ର ୧୪ ବର୍ଷର ଆରମ୍ଭ ଦିନ । ତା'ର ଜନ୍ମଦିନ । ତା'ର ମୃତ୍ୟୁର ରାତି କି ଭୟଙ୍କର ! ମେଘ ଅନ୍ଧାର ରାତି, ସାହି ଘର ସବୁ ନିସ୍ତବ୍ଧ । ରାତି ୧୧ଟା କେତେ ମିନିଟ ହବ । ବୁଢ଼ୀ ମାଉସୀ ଆମକୁ ଛାଡ଼ି ଚାଲିଗଲା । ମୁଁ ସଦ୍ୟ ରୋଗରୁ ଉଠିଥାଏ, ଦେହସାରା ବସନ୍ତର ଦାଗ, ଗୁରାଏ ଘା ମଧ୍ୟ ହେଇଥାଏ, କି ଅପରିଷ୍କାର ଦିହ ! କି ବିଭତ୍ସ ରୂପ ! କି ଦୁର୍ବଳ ଅବସ୍ଥା ! କାନ୍ଦିବାକୁ ଦିହରେ ଶକ୍ତି ନ ଥାଏ ତଥାପି ବୁଢ଼ୀ ମାଉସୀର ମୃତ୍ୟୁରେ ଗୁରାଏ ବାଡ଼େଇ କଚାଡ଼ି ହେଇ କାନ୍ଦିଲି । ବାବା, ମା, ବଡ଼ ଭଉଣୀ, ଚାକର, ଚାକରାଣୀ ସମସ୍ତେ କାନ୍ଦୁଥାନ୍ତି, କିଏ କାହାକୁ ସମ୍ଭାଳିବ ? ବାବାଙ୍କର ଅଳ୍ପ ଅଜ୍ଞାନ ଅବସ୍ଥା ହେଲା ପରି ଜଣାଗଲା । ପୁଣି ଅଳ୍ପ ସମୟ ପରେ କାନ୍ଦିବାକୁ ଲାଗିଲେ ।

ମୋର ସାନ ମଝିଆ ଭଉଣୀ ବୁଢ଼ୀ ମାଉସୀ, ମୋର ତିନି ଭଉଣୀଙ୍କ ମଧ୍ୟରେ ବୁଦ୍ଧିମତୀ ଏବଂ ସୁଗାୟିକା ଥିଲା । ତା'ର ଗୀତ ଶୁଣିବା ପାଇଁ ଆମ ଘରେ ପଡ଼ିଶା ଘରୁ ଅନେକ ଲୋକ ଆସି ଜମା ହଉଥିଲେ । ଗଣିତରେ ତା'ର ବେଶି ଦକ୍ଷତା ଥିଲା । ବୁଢ଼ୀ ମାଉସୀର ଶବ ସେମିତି ରାତି ସାରା ରହିଲା । ରାତି ପାହିଲେ ଯା ହବ । ବାବାଙ୍କ ହାତରେ ପଇସା ବୋଲି କିଛି ନ ଥାଏ । ରାତି ପାହିଲା । ବାବା କୁଆଡୁ ଯାଇ ଟଙ୍କା ଧାର କରି ଆଣିଲେ । ବାବାଙ୍କର ଜଣେ ସହକର୍ମୀ ଗୁରୁ ପ୍ରସାଦଙ୍କୁ ଡ଼ାକି ଆଣିଲେ । ଗୁରୁ ପ୍ରସାଦ ଜଣେ P.W.D.ର କର୍ମଚାରୀ । ସେ ସେତେବେଳେ P.W.D.ର ଅଳ୍ପ ବେତନର କର୍ମଚାରୀ ହେଲେ ମଧ୍ୟ ସମସ୍ତଙ୍କର ପ୍ରିୟପାତ୍ର ଥିଲେ । କାରଣ ତାଙ୍କର ପରୋପକାରିତା, ଉଦାରତା ଯୋଗୁଁ ମାଛୁଆବଜାରରେ ସମସ୍ତେ ତାଙ୍କୁ ଜାଣନ୍ତି । ଦୁର୍ଗା ପୂଜାର ଆୟୋଜନଠାରୁ ଶବ ସତ୍କାର ପର୍ଯ୍ୟନ୍ତ ସବୁ କାମରେ ସେ ଆଗଭର ହେଇ ବାହାରିପଡୁଥିଲେ । ଏଣୁ ବାବା ତାଙ୍କୁ ହିଁ ଡାକି ଆଣିଲେ । ଗୁରୁ ପ୍ରସାଦ ଆସି ବୁଢ଼ୀ ମାଉସୀର ଶବ ସତ୍କାର ପାଇଁ ସବୁ ଆୟୋଜନ କଲେ । ମୋର ଜଣେ ଦୂରସମ୍ପର୍କୀୟ ଦାଦୀ ମଧ୍ୟ ଆସି ପହଞ୍ଚିଲେ । ଗୁରୁ ପ୍ରସାଦ ଯାଇ ମେଡ଼ିକାଲ ସ୍କୁଲ ହଷ୍ଟେଲରୁ କେତେଜଣ ଡ଼ାକ୍ତରୀ ଛାତ୍ରଙ୍କୁ ଡ଼ାକି ଆଣିଲେ, ସେତେବେଳେ ମେଡ଼ିକାଲ ସ୍କୁଲର ଛାତ୍ରମାନେ ଗୋଟିଏ ମହତ୍ କାମ କରୁଥିଲେ । ଡ଼ାକ୍ତରଖାନାରେ ହେଉ ବା କଟକ ସହରର ଯେଉଁଠି ହଉ, ଯେଉଁ ଜାତିର ଶବ ହେଉ, ଶବ ସତ୍କାର ପାଇଁ ଦରକାର ପଡ଼ିଲେ ରାତି ହଉ କି ଦିନ ହଉ ଖବର ପାଇଲା ମାତ୍ରେ ମେଡ଼ିକାଲ ସ୍କୁଲ ଛାତ୍ରମାନେ ବାହାରି ପଡୁଥିଲେ । ଏବେ ମଧ୍ୟ ମେଡ଼ିକାଲ କଲେଜ ଛାତ୍ରମାନେ ଏ ମହତ୍ କାମ କରୁଛନ୍ତି । ତେବେ ବେଶି କରିବାକୁ ପଡୁନି କାରଣ ଅନେକ ସେବା ସଂସ୍ଥା ଦ୍ୱାରା ଏବେ ଏ କାମ ସମାହିତ ହେଇ ପାରୁଛି । ମେଡ଼ିକାଲ ଛାତ୍ରମାନଙ୍କର ଏ ଗୋଟିଏ ଅତି ପ୍ରଶଂସନୀୟ କାର୍ଯ୍ୟ । ଏ କାର୍ଯ୍ୟ ଦ୍ୱାରା ଅନେକ ଲୋକ ଉପକୃତ ହେଉଛନ୍ତି ଏବଂ ଏବେ ମଧ୍ୟ ହଉଛନ୍ତି ।

ଗୁରୁ ପ୍ରସାଦ, ମୋର ଜଣେ ଦାଦା ଏବଂ କେତେକ ମେଡ଼ିକାଲ ସ୍କୁଲ ଛାତ୍ରଙ୍କ ସହାୟତାରେ ବୁଢ଼ୀ ମାଉସୀର ଶବ କଟକର କାଳିଆବୋଦା ଶଶ୍ମାନକୁ ନିଆ ହେଲା । ଘରେ ସମସ୍ତେ ଶୋକାକୁଳ, କିଏ କାହାକୁ ବୁଝେଇବ ? ବାବାଙ୍କର ଆଠଟି ସନ୍ତାନ ମଧ୍ୟରୁ ଆମେ ବର୍ତ୍ତମାନ ତିନିଜଣ ରହିଲୁ । ବଡ଼ ଭଉଣୀ, ମୁଁ ଏବଂ ମୋର ଆଉ ଗୋଟିଏ ସାନ ଭଉଣୀ-ଶଙ୍କରୀବାଳା, ଡ଼ାକ ନାମ - ଟୁକୁନା । ବାବାଙ୍କର ସନ୍ତାନ ସନ୍ତତି ଭିତରେ ଆମେ ଚାରି ଭାଇ, ଚାରି ଭଉଣୀ । ସେଥିମଧ୍ୟରୁ ପୁଅ, ଝିଅ ମିଶି ପାଞ୍ଚ ଜଣ ମୃତ୍ୟୁ ବରଣ କରିଥିଲେ । ସେତେବେଳେ ମୁଁ ଅତି ଛୋଟ । ଭାଇ ଭଉଣୀଙ୍କ ମୃତ୍ୟୁରେ ମୁଁ ସେତେବେଳେ

ଦୁଃଖ ବୋଲି କିଛି ଅନୁଭବ କରି ନଥିଲି । ହିରଣ୍ୟବାଳା (ବୁଢ଼ୀ ମାଉସୀ)ର ମୃତ୍ୟୁରେ ମୁଁ ବିଶେଷ ବ୍ୟଥିତ ହୋଇ ପଡ଼ିଲି । ମୁଁ ରୁଗ୍‌ଣ ଅବସ୍ଥାରେ, ବୁଢ଼ୀ ମାଉସୀ ଆମକୁ ଛାଡ଼ି ଚାଲିଗଲା । ଏବେ ମଧ ସେ ଭଉଣୀଟିକୁ ମୁଁ ଭାବୁଛି । ତା'ର ମୋର ପ୍ରାୟ କଳିକଜିଆ ହୁଏ । ମୁଁ ତାକୁ କେତେଥର ମାରିଛି । ମା'ଙ୍କ ଦ୍ୱାରା ସବୁ ସମାଧାନ ହୋଇଯାଏ । ବିଶେଷତଃ ମୁଁ ମା'ଙ୍କଠାରୁ ବେଶି ମାଡ଼ ଖାଏ । କିନ୍ତୁ ମୁଁ ଜାଣି ନଥିଲି, ମୋର ସେ ଭଉଣୀଟି ଏତେ ଅଳ୍ପ ବୟସରେ ଆମକୁ ଛାଡ଼ି ଚାଲିଯିବ ।

ବୁଢ଼ୀ ମାଉସୀର ମୃତ୍ୟୁରେ ଏତେ ବାଡ଼େଇ ପିଟି ହୋଇ କାନ୍ଦିଲି ଯେ ତା'ର ମୃତ୍ୟୁ ପରେ ମୋର ଦେହ ପୁଣି ଖରାପ ହୋଇ ଗଲା । ପୁଣି ଜର ହେଲା, ରକ୍ତ ପରିଶ୍ରା ହେଲା, ବାବା, ମା, ବଡ଼ ଭଉଣୀ ସମସ୍ତେ ଆତଙ୍କିତ ହୋଇ ପଡ଼ିଲେ, ଭାବିଲେ ଏ କ'ଣ ଆଉ ବଞ୍ଚିବ ନାହିଁ କି? ବାବା ମୋତେ ନେଇ କଟକ ବଡ଼ ଡ଼ାକ୍ତରଖାନାକୁ ଗଲେ । କ'ଣ ଚିକିତ୍ସା କରେଇଲେ, ମୋର ଅବସ୍ଥା ଭଲ ଆଡ଼କୁ ଆସିଲା, ଚାଲବୁଲ କରିପାରିଲି ।

ବଡ଼ ଭିଣେଇ, ଭଣଜା ଆସି ତାଙ୍କ ଗାଁରୁ ପହଁଚିଲେ । ସେ ମଧ ଚିଠି ଦ୍ୱାରା ବୁଢ଼ୀ ମାଉସୀର ମୃତ୍ୟୁ ସମ୍ବାଦ ପାଇ ମର୍ମାହତ ହୋଇ ପଡ଼ିଥିଲେ । ଯା ହଉ, ବୁଢ଼ୀ ମାଉସୀର ମୃତ୍ୟୁ ପରେ ଆମ ପରିବାରର ଆଉ କେହି ବସନ୍ତ ରୋଗରେ ଆକ୍ରାନ୍ତ ହେଲେ ନାହିଁ । କିମ୍ବା ସାହିରେ ମଧ ଆଉ କେହି ବସନ୍ତ ରୋଗରେ ଆକ୍ରାନ୍ତ ହେଲେ ନାହିଁ । ମୁଁ ଭଲ ହୋଇ କ୍ରମେ ବୁଲାବୁଲି କରିବାକୁ ବାହାରିଲି । ସାଙ୍ଗରେ ଭଣଜା ଯାଏ । ସେ ମୋତେ ଖୁବ୍ ସାବଧାନରେ ନିଏ । ଯେତିକି ବାଟ ବୁଲିବାକୁ ବଳ ପାଏ ବୁଲେ, ସେଇଠୁଁ ଘରକୁ ଫେରେ । ଭୋକ ଅସମ୍ଭବ ହେଲା । ଖାଇବା ଟିକିଏ ଡ଼େରି ହେଲେ, ମା'ଙ୍କୁ ବଡ଼ ଭଉଣୀଙ୍କୁ ଅସ୍ଥିର କରି ପକାଏ । ଖାଇବାରେ ଅନେକ ଜିନିଷ ବାରଣ ଥାଏ କିନ୍ତୁ ବାହାରକୁ ଗଲେ ଭଣଜାକୁ ଶିଖାଏ-ଚିନାବାଦାମ, ଚେନାଚୁର ଖାଇବା । ତା ହାତରେ ପଇସା ଥାଏ, ସେ ଧମକାଏ, ଘରେ କହିଦେବି । ଦିନେ ଦିନେ ସେ ଖାଏ, ମୁଁ ଖାଏ, ଘରେ କହୁନା । କିନ୍ତୁ ମନରେ ଭୟ ଥାଏ, କାଳେ ପେଟ ଖରାପ ହବ । କିନ୍ତୁ ପେଟ ଖରାପ ହୁଏନା । କ୍ରମେ ଭଣଜାକୁ ନେଇ କିଲ୍ଲା ପଡ଼ିଆକୁ ଫୁଟବଲ୍ ମ୍ୟାଚ୍ ଦେଖିବାକୁ ଗଲି । ତା'ପରେ ମେଡ଼ିକାଲ ପଡ଼ିଆକୁ ଗଲି । ମୋର ଅନ୍ୟାନ୍ୟ ସାଙ୍ଗମାନେ ମୋ ରୂପ ଏବଂ ସ୍ୱାସ୍ଥ୍ୟ ଦେଖି ଅନେକ ଭୟ କଲେ ଏବଂ ଆଶ୍ଚର୍ଯ୍ୟ ହେଲେ । କିନ୍ତୁ ମୁଁ ଆଉ ବଲ୍ ଖେଳି ପାରିଲି ନାହିଁ । କିଛିଦିନ ପରେ ବଲ୍ ଖେଳିଲି । କିନ୍ତୁ ବେଶି ଦଉଡ଼ି ପାରୁ ନଥାଏ କି ଜୋରରେ ବଲ୍ ମାରି ପାରୁ ନଥାଏ ।

ଅନେକ ଦିନ ପରେ ଦେହ ସମ୍ପୂର୍ଣ୍ଣ ଭଲ ହୋଇଗଲା । କିନ୍ତୁ ରୂପ୍ ହେଲା ଚିତାବାଘ ପରି । ଦେହସାରା ବସନ୍ତ ଦାଗ । ସ୍ୱାସ୍ଥ୍ୟର ପରିବର୍ତ୍ତନ ଘଟିଲା । କିନ୍ତୁ ଯାହା ସ୍ୱାସ୍ଥ୍ୟର ଶୀଘ୍ର ପରିବର୍ତ୍ତନ ଘଟିଥାନ୍ତା, ତାହା ହୋଇପାରିଲା ନାହିଁ । ସେ କେବଳ ସାନ ମଝିଆ ଭଉଣୀ ହିରଣ୍ୟବାଳାର ମୃତ୍ୟୁ ଜନିତ ଦୁଃଖ ଯୋଗୁଁ । ସବୁବେଳେ ତା'ର କଥା ମନେ ପଡୁଥାଏ । ତାର ମୃତ୍ୟୁ ଯେ ଏତେ ନିକଟ ହୋଇ ଆସିଥିଲା, ଆମେମାନେ କେହି ଜାଣି ନଥିଲୁ । ହଠାତ୍ ସେ ଆମକୁ ଶୋକସନ୍ତପ୍ତ କରି ଛାଡ଼ି ଚାଲିଗଲା । କି ଦୁଃଖ ବେଳରେ ସେ ଛାଡ଼ି ଚାଲିଗଲା, ଭାବିଲେ ଏବେ ମଧ ମନ ଦୁଃଖରେ ଭାଙ୍ଗି ପଡ଼େ ।

# ୩ୟ ପର୍ବ
## (ପ୍ରଥମ ଭାଗ)
## (୧)

ବସନ୍ତ ରୋଗରୁ ଉଠିଲା ପରେ, ସେହି ବଜାର ସଉଦା, ବଲ୍ ଖେଳ, ବହିପଢ଼ା, ଲେଖାଲେଖି ଚାଲିଲା । ବାବା ପେନ୍‌ସନ୍ ପାଇଲେ, ପୁଣି କଟକରେ ପି.ଏଚ୍.ଡ଼ି. ବିଭାଗରେ ଖଣ୍ଡେ ଚାକିରୀ ପାଇଲେ । ମାସିକ ବେତନ ୪୦ ଟଙ୍କା । ଆଉ ପେନ୍‌ସନ୍ ପାଇଲେ ମାସିକ ୫୫ ଟଙ୍କା । ଉଭୟ ଟଙ୍କା ମିଶି ୯୫ ଟଙ୍କା । ବାବା ଯାହାର ଯାହା ଧାର ଉଧାର କରିଥିଲେ, ଅନେକ ସୁଝି ଦେଲେ । ଟିକିଏ ସ୍ୱଚ୍ଛଳ ଅବସ୍ଥା ହେଲା । ବଡ଼ ଭିଣେଇ, ବଡ଼ ଭଉଣୀ, ଭଣଜା, ତାଙ୍କର ଚାକର, ଚାକରାଣୀ ନେଇ ଅନ୍ୟତ୍ର ଚାଲିଗଲେ । ବାବା, ମା'ଙ୍କ ପାଖରେ ରହିଲି ମୁଁ ଏବଂ ଆଉ ଗୋଟିଏ ସାନ ଭଉଣୀ-ଶଙ୍କରୀବାଳା ।

ମୁଁ ଅନେକ ସମୟରେ ମୋର ସାଙ୍ଗ ପ୍ରିୟନାଥ ସିଂ ଘରକୁ ବୁଲିବାକୁ ଗଲି । ଯେଉଁ ରୂପ ନେଇ ଯାଉଥିଲି, ସେ ରୂପ ନୁହେଁ ମଣିଷର । ପୂରାପୂରି ଗୋଟିଏ ଚିତା ବାଘର ରୂପ, ସେଥିରେ ପୁଣି ଜାଗା ଜାଗା ବଡ଼ ବଡ଼ ଘା'ର ଦାଗ, ମୁଣ୍ଡ ବାଳ ଜାଗା ଜାଗା ଉପୁଡ଼ି ଯାଇଥାଏ । ପ୍ରିୟର ବାବା ନିମାଇ ଚରଣ ସିଂ ମୋତେ ଦେଖି ଅନେକ ଦୁଃଖ ପ୍ରକାଶ କରନ୍ତି । ମୋତେ ଯଦି କେବେ ସଉଦା କରିବାକୁ ଯିବା ବେଳେ ବାଟରେ ଭେଟନ୍ତି, ଅନେକ ସମୟରେ କହନ୍ତି-ରୋଗରୁ ଉଠିଛ, ମୁଣ୍ଡରେ ଲୁଗାଟା ପକେଇ ଯାଅ, ନଚେତ୍ ଖରାରେ ମୁଣ୍ଡଟା ଗରମ ହେଇଯିବ । ଇମିତି ଆଉ ଦିନେ ବଜାରକୁ ଯାଉଛି, ନିମାଇ ଚରଣ ସିଂ ମୋତେ ଭେଟିଲେ, କହିଲେ-ତୁମକୁ ଗୋଟାଏ କଥା କହିବାର ଅଛି । ମୋତେ ଗୋଟିଏ ଛାଇ ଜାଗାକୁ ଡ଼ାକି ନେଇ କହିଲେ-ଦେଖ ବାବା ତ କିଛି କଲେ ନାହିଁ, ତୁମକୁ ତ ଆଉ ପଢ଼େଇଲେ ନାହିଁ, ତୁମେ ହେଲେ କମ୍ପାଉଣ୍ଡରୀ ଖଣ୍ଡକ ପଢ଼, ବେଶି ଖର୍ଚ୍ଚ ଲାଗିବ ନାହିଁ । ମୁଁ କହିଲି-ମୁଁ ତ କିଛି ଜାଣି ନାହିଁ, କେମିତି କ'ଣ କରିବାକୁ ହବ । ନିମାଇ ସିଂ କହିଲେ-ଖଣ୍ଡେ ଇଂରାଜୀରେ ଦରଖାସ୍ତ ଲେଖି ଅଫିସ୍‌ରେ ଦବାକୁ ହବ, ତା'ପରେ ଗୋଟାଏ ପରୀକ୍ଷା ଦବାକୁ ହବ । ପରୀକ୍ଷାରେ ବଛା ହେଲେ, କମ୍ପାଉଣ୍ଡରୀ ବର୍ଷେ ପଢ଼ିବାକୁ ହବ । ପାସ୍ କଲେ, ତେଣିକି ଯୋଉଠି ଚାକିରୀ ମିଳିବ, କରିବ । ଭଲ ରୋଜଗାର, ଦି'ପଇସା ଭଲ ଉପୁରି ଅଛି । ମୁଁ କହିଲି-ମୁଁ ତ ଇଂରାଜୀରେ କେମିତି ଦରଖାସ୍ତ ଲେଖିବାକୁ ହବ ଜାଣି ନାହିଁ । ସେ କହିଲେ-ମୁଁ ଜଣକଠୁଁ ଦରଖାସ୍ତ ଖଣ୍ଡେ ଲେଖେଇ ଆଣିବି, ତୁମେ ତାକୁ ନକଲ କରି ସିଭିଲ୍ ସର୍ଜନଙ୍କ ଅଫିସ୍‌ରେ ଦେଇ ଆସିବ । ତା'ପରେ ତୁମ ପାଖକୁ ଖଣ୍ଡେ ଚିଠି ଆସିବ, କୋଉ ତାରିଖରେ ପରୀକ୍ଷା ଦବାକୁ ହବ, ସେହି ତାରିଖରେ ଯାଇ ପରୀକ୍ଷା ଦବ । ତା'ପରେ ଜଣାଯିବ ବଛା ହେଲ କି ନାହିଁ । ତୁମେ ଆଗେ ଖଣ୍ଡେ ଦରଖାସ୍ତ ଦିଅ । ମୁଁ ଲେଖେଇ ଆଣି ଦଉଛି ।

ଅଳ୍ପ ଦିନ ପରେ ନିମାଇ ସିଂ ଜଣେ ପୁରୁଣା କମ୍ପାଉଣ୍ଡରଙ୍କଠାରୁ ଖଣ୍ଡିଏ ଦରଖାସ୍ତ ଲେଖେଇ ଆଣି ମୋତେ ଦେଲେ । ବାବା, ମା' ଏ ସବୁ ଦରଖାସ୍ତ କରିବା କଥା କିଛି ଜାଣି ନଥାନ୍ତି । ମୁଁ ଦିନେ ସନ୍ଧ୍ୟାବେଳେ ଲଣ୍ଠନ ଜାଳି ସେ ଦରଖାସ୍ତଟିକୁ ନକଲ କରିବାକୁ ବସିଲି । ସେତେବେଳକୁ ମୋର ଇଂରାଜୀ ଅକ୍ଷର ଲେଖିବାର ଅଭ୍ୟାସ ଛାଡ଼ି ଗଲାଣି, ଯାହା ନକଲ କଲି, ସେଥିରେ ଇଂରାଜୀ ଅକ୍ଷରଗୁଡ଼ିକ କଖାରୁ ମଞ୍ଜି ପରି ଦିଶୁଥାଏ । କ'ଣ କରିବି, ଅତି ଧୀରେ ଧୀରେ ଲେଖୁଥାଏ । ଏଇ ସମୟରେ ମା' ଆସି ହଠାତ୍ ଲଣ୍ଠନଟିକୁ ନେଇଗଲେ, ରାଗରେ କହିଲେ-ମୁଣ୍ଡ ଗଣ୍ଡି ଲେଖୁଛି, ଏଥିଲାଗି ଗୋଟାଏ ଲଣ୍ଠନ ଦରକାର ।

କ'ଣ କରିବି ସେହି ଅନ୍ଧାରରେ ଦରଖାସ୍ତ ନକଲ କରିବା ବନ୍ଦ କରି ଦରଖାସ୍ତକୁ ଲୁଚେଇ ରଖିଲି, ଭାବିଲି-ଯାକୁ ଦିନବେଳା ନକଲ କଲେ ଭଲ ହେବ । ପରେ ସେ ଦରଖାସ୍ତକୁ ନକଲ କରି ସିଭିଲ୍ ସର୍ଜନଙ୍କ ଅଫିସ୍‌ରେ ଯାଇ ଦେଇ ଆସିଲି । କିଛିଦିନ ପରେ, ଦିନେ ସକାଳ ବେଳା ମା', ମୁଁ, ମୋର ଭଣଜା ଆମେ ତିନିହେଁ ଦାଣ

ଆଡ଼େ ବସିଛୁ, ଡ଼ାକବାଲା ଆସି ଖଣ୍ଡେ ଲଫାପାରେ ଥିବା ଚିଠି ଦେଇଗଲା । ମୁଁ ସେ ଚିଠିଟାକୁ ଦେଖି ହଠାତ୍ ବୁଝି ପାରିଲି ଯେ-କମ୍ପାଉଣ୍ଡରୀ ପଢ଼ିବା ପାଇଁ ଯେଉଁ ଦରଖାସ୍ତ କରିଥିଲି, ସେହି ବିଷୟରେ ଚିଠି ଆସିଲା । ମୁଁ ସେ ଚିଠିକୁ ମା'ଙ୍କ ହାତରୁ କାଢ଼ି ନେଲା ବେଳେ, ଭଣଜା ମୋ ସାଙ୍ଗରେ ଲଗେଇଲା-କ'ଣ ସେ ଚିଠି? କ'ଣ ସେ ଚିଠି? ମୁଁ କୌଣସି ମତେ ସେ ଚିଠିକୁ ନେଇ ଲୁଚେଇ ରଖିଦେଲି ।

ତାକୁ ପରେ କାଢ଼ି ଖୋଲି ଲୁଚେଇ ପଢ଼ି ଜାଣିଲି ଯେ-ମୋତେ ପରୀକ୍ଷା ଦବାକୁ ଯିବାକୁ ହବ । ମୋର ତାରିଖ ଠିକ୍ ମନେ ପଡୁନାହିଁ । କିନ୍ତୁ ୧୯୨୭ ମସିହା ନଭେମ୍ବର ମାସ ବୋଲି ମୋର ମନେ ପଡୁଛି । କ'ଣ କରିବି? ବାବା, ମା'ତ ଏକଥା ଜାଣନ୍ତି ନାହିଁ । ତେବେ ଯେଉଁଦିନ ପରୀକ୍ଷା ହବ, ସେଦିନ ଯଦି ବାବା, ମା' ମୋତେ ଅନ୍ୟ କୁଆଡ଼େ ପଠେଇ ଦିଅନ୍ତି । ତା'ହେଲେ ପରୀକ୍ଷା ଦେବି କେମିତି?

ଶେଷରେ ସ୍ଥିର କଲି- ନା, ବାବାଙ୍କୁ ନ ଜଣେଇଲେ ହବ ନାହିଁ । ଏଣୁ ବାବାଙ୍କୁ ଦିନେ ସବୁ କଥା କହିଲି । ବାବା ମୋର କମ୍ପାଉଣ୍ଡରୀ ପଢ଼ିବାକୁ ଆଗ୍ରହ ଥିବାର ଶୁଣି ହସି ହସି କହିଲେ-ତୁ କମ୍ପାଉଣ୍ଡରୀ ପଢ଼ିବୁ? ପଚାସଢ଼ା ଘା ଧୋଇ ପାରିବୁ? କେତେ night duty କରିବାକୁ ହବ, କେତେ ପ୍ରକାର ଔଷଧ ମନେ ରଖିବାକୁ ହବ ।

ମୁଁ କହିଲି-ହଁ ପାରିବି, ଦେଖେ, ପରୀକ୍ଷା ଦିଏ, ଯଦି ବଛା ହେବି, ତା'ପରେ ଦେଖିବି ।

ବାବା କହିଲେ-ହଉ ଦେଖ ।

ଯେଉଁ ଦିନ ପରୀକ୍ଷା ହବାର କଥା, ସେଦିନ ଯାଇ ଠିକ୍ ସମୟରେ ପହଞ୍ଚିଲି । ମୁଁ ଦେଖି ଆଶ୍ଚର୍ଯ୍ୟ ହେଲି, ଏତେ ପିଲା ରୁଣ୍ଡ ହେଇଛନ୍ତି! ମୋରି ପରି ଯେ କେତେ ହତଭାଗାଙ୍କ ସମ୍ମିଳନୀ ସେଠି ହେଇଥାଏ! କେତେକ ଅର୍ଥାଭାବ ଯୋଗୁଁ, ଆଉ ବେଶି ପଢ଼ି ନପାରି ଆସିଥାନ୍ତି, କେତେକ ପଢ଼ିବାବେଳେ ଦୁଷ୍ଟାମି କରି, ପାଠ ନପଢ଼ି, ଅନନ୍ୟୋପାୟ ହେଇ ଆସିଥାନ୍ତି । ସମସ୍ତଙ୍କର ପ୍ରାୟ ଏକା ରୂପ, ଭେକ । ମୁଁ କମ୍ପାଉଣ୍ଡରୀ ପଢ଼ିବା ପାଇଁ ଦରଖାସ୍ତ କରି, ପ୍ରଥମେ ଯେଉଁ ପରୀକ୍ଷା ହେବ, ସେଥିରେ କ'ଣ କେମିତି ପରୀକ୍ଷା କରିବେ ନିମାଇ ସିଂଙ୍କ ଜରିଆରେ ଜଣେ ପୁରୁଣା କମ୍ପାଉଣ୍ଡରଙ୍କଠାରୁ ବୁଝିଲି ଯେ English dictation, arithmetic -rule of three, compound rule of three, English reading ଏବଂ ତାକୁ ଓଡ଼ିଆରେ ବୁଝେଇବା, ଏଇ ସବୁ ପରୀକ୍ଷା ହେବ ।

ମୁଁ ବାବା, ମା'ଙ୍କୁ ଲୁଚେଇ B.V. Gupta Arithmetic ବହିରୁ rule of three, compound rule of three ଇତ୍ୟାଦି କରିବାକୁ ଆରମ୍ଭ କଲି । ଇଂରାଜୀ ବହି -Aesop's Fables ଆଣି ତାକୁ ପଢ଼ିଲି । ମୁଁ କ'ଣ ବହି ପଢୁଛି, କ'ଣ କରୁଛି, ବାବା, ମା' କିଛି ପଚାରି ଯା'ନ୍ତି ନାହିଁ । ମୁଁ ତ ଗୋଟାଏ ବାରବୁଲା ଛତରା ପରି ହେଇଥାଏ । କେବଳ ଓଡ଼ିଆ ବଙ୍ଗଳା ବହିଛଡ଼ା, ଇଂରାଜୀ ବହିତ କେତେ କାଳ ଛୁଇଁ ନାହିଁ । ଏଣୁ ଇଂରାଜୀ ପାଠ ମୋତେ ଅଡୁଆ ଲାଗୁଥାଏ । ଇଂରାଜୀ ଅକ୍ଷର ତ କଖାରୁ ମଞ୍ଜି ଭଳି ଲେଖୁଥାଏ । ଯା'ହେଉ ପରୀକ୍ଷା ପାଇଁ ପ୍ରସ୍ତୁତ ହେଲି ।

ଯେଉଁଦିନ ପରୀକ୍ଷା ହବ, ସେ ଦିନ ତ ପହଞ୍ଚିଥାଏ । ମେଡ଼ିକାଲ ସ୍କୁଲ ହତା ଭିତରେ ଯେଉଁ ଖପରୋଲୀ ଛାତ ବାଲା ଲମ୍ବା ଘରଟାଏ ଥିଲା, ସେଠି drama ହୁଏ ଆଉ ମେଡ଼ିକାଲ ଛାତ୍ରଙ୍କ ପରୀକ୍ଷା ହୁଏ । ସେହି ଘରଟା ଖୋଲି ଦିଆଗଲା, ଯେତେ ପରୀକ୍ଷାର୍ଥୀ ସମସ୍ତେ ଭୁସ୍‌ଭାସ୍ ହେଇ ପଶିଗଲେ, ଯେ ଯାହାର ଜାଗା ନେଇ ବସିଗଲେ, ତଳେ ବସିବାକୁ ହେଲା ନାହିଁ । ବେଞ୍ଚ, ଡ଼େସ୍କ ଥିଲା । ଏଣୁ ସେଇଥିରେ ଗୋଟି ଗୋଟି ହେଇ ବସି ପଡ଼ିଲେ ।

English dictation ଡ଼କା ହେଲା, ସମସ୍ତେ ଲେଖିଲେ । ତା'ପରେ ଅଙ୍କ ଦିଆଗଲା, ସେହି compound rule of three, ସମସ୍ତେ ଯେ ଯାହାର ଉତ୍ତର ଲେଖିଲେ । ଠିକ୍ ସମୟରେ ଆମମାନଙ୍କଠାରୁ ଉତ୍ତର ପତ୍ର କାଢ଼ି ନିଆଗଲା ପରେ ଆମମାନଙ୍କୁ ପଦାକୁ ବାହାର କରି ଦିଆଗଲା । ଆମେମାନେ ମେଳା ମେଳା ହେଇ ପଦାରେ ବୁଲିଲୁ । ପରସ୍ପର ପଚରାଉଚରା ହେଲୁ । କିଏ କ'ଣ

କରିଛି ? ଅଙ୍କର ଉତ୍ତର କେତେ ହେଲା ? ଯେମିତି ପାରାଗୁଡ଼ାଏ ଭାଡ଼ିରୁ ବାହାରି ବୁଲାବୁଲି କରୁ କରୁ ବକ୍ ବକମ୍, ବକ୍ ବକମ୍ ହୁଅନ୍ତି, ମୋତେ ସେମିତି ଲାଗିଲା ।

ଯେଉଁ ବିରାଟ ଲମ୍ୱା ଘରେ ଆମେ ପରୀକ୍ଷା ଦେଇଥିଲୁ, ସେ ଘରର ବର୍ତ୍ତମାନ ଆଉ ସତ୍ତା ନାହିଁ । ସେ ଜାଗାରେ ବର୍ତ୍ତମାନ pathology ବିଭାଗର ବିରାଟ ସୌଧ ଠିଆ ହେଇଛି । ଆମେମାନେ କିଛି ସମୟ ବାହାରେ ବୁଲାବୁଲି କଲାପରେ ପୁଣି ଗୋଟାଏ ଜାଗାକୁ ଦୌଡ଼ିଲୁ, ସେଠି ଇଂରାଜୀ ପଢ଼ି ବୁଝେଇବାକୁ ହବ, ସମସ୍ତେ ଗୋଟି ଗୋଟି ହେଇ ଯାଉଥାନ୍ତି । ମୋତେ ଯେତେବେଳେ ଡ଼ାକରା ହେଲା, ମୁଁ ଗଲି । ସେଇଠି ପ୍ରଥମେ ଡ଼ା: କ୍ଷେତ୍ର ମୋହନ ରାୟଙ୍କୁ ଭେଟିଲି । ସେ ମୋତେ ଖଣ୍ଡେ ଇଂରାଜୀ ବହିରୁ ଗୋଟିଏ ଅଂଶ ପଢ଼ିବାକୁ ଦେଲେ, ପଢ଼ିଲି । ଓଡ଼ିଆରେ ବୁଝେଇବାକୁ କହିଲେ, ବୁଝେଇ ଦେଇ ଆସିଲି ।

ସମସ୍ତେ ଆସିଲୁ, ତହିଁ ଆରଦିନ ଯାଇ ଦେଖିଲୁ ନୋଟିସ୍ ବୋର୍ଡ଼ରେ ବାହାରିଛି-କୋଡ଼ିଏ ଜଣଙ୍କର ନାମ । ସେଥିରେ ମୋର ନାଁ ଅଛି । ଅଫିସରୁ ବୁଝିଲୁ ନାଁ ଲେଖେଇବାକୁ ୧୮ ଟଙ୍କା ଲାଗିବ ।

ନିମାଇ ସିଂ ଶୁଣି ଖୁସି ହେଲେ ଯେ ମୁଁ ସିଲେକ୍ଟ ହେଇଛି । ପରେ ବାବାଙ୍କୁ ସବୁ କଥା କହିଲି । ବାବା ଅଳ୍ପ ଖୁସି ହେଲେ । ବାବା ଅଳ୍ପ ଖୁସି ହେବାର କାରଣ ହେଲା-ମୋତେ M.A. ପର୍ଯ୍ୟନ୍ତ ପଢ଼େଇବା ପାଇଁ ବାବାଙ୍କର ଇଚ୍ଛା ଥିଲା, ସେ ଜାଗାରେ ମୋତେ କମ୍ପାଉଣ୍ଡରୀ ପଢ଼ିବାକୁ ହବ ।

ଯେଉଁଦିନ ଆଡମିସନ୍ ନବାର କଥା, ସେଦିନ ଦି'ପହରେ ବାବା ମୋତେ ସାଙ୍ଗରେ ନେଇ ସିଭିଲ ସର୍ଜନଙ୍କ ଅଫିସ୍‌କୁ ଗଲେ । ସିଭିଲ୍ ସର୍ଜନଙ୍କ ଅଫିସ୍‌ରେ ବାବାଙ୍କୁ ସମସ୍ତେ ଆଗରୁ ଜାଣିଥିଲେ । ସେତେବେଳେ ସିଭିଲ୍ ସର୍ଜନଙ୍କ ହେଡ୍‌କ୍ଲର୍କ ଥିଲେ ମନମୋହନ ବାବୁ । ବାବା ତାଙ୍କ ପାଖରେ ନେଇ ମୋତେ ପହଁଚିଲେ । ମନମୋହନ ବାବୁ ମୋର ଆଡ଼ମିସନ୍ ବେଳେ କହିଲେ-ଏଥର ଡ଼ୋମିସାଇଲ୍ ବଙ୍ଗାଳୀ ପିଲାଙ୍କ ଭିତରୁ ଏଇ ଜଣେ ମାତ୍ର ପିଲା ବଛା ହେଇଛି ।

ମୋର ଆଡ଼ମିସନ୍ କରେଇ ଦେଇ ବାବା ତାଙ୍କର ଅଫିସ୍‌କୁ ଗଲେ । ମୁଁ ଘରକୁ ଆଉ ଫେରିଲି ନାହିଁ । ସେଇଠି ବୁଲାବୁଲି କରି ସମୟ ହେଲାରୁ ବଲ୍ ଖେଳିଲି । ବଲ୍ ଖେଳିସାରି ସନ୍ଧ୍ୟା ପୂର୍ବରୁ ଘରକୁ ଫେରିଲି ।

ବାବା ତାଙ୍କର ଅଫିସ୍‌ରୁ ଫେରିଥିଲେ । ରାତିରେ କମ୍ପାଉଣ୍ଡରୀ ପଢ଼ିବା ବିଷୟରେ ଅନେକ କଥାର ଆଲୋଚନା ହେଲା-କିଏ କମ୍ପାଉଣ୍ଡରୀ ପଢୁଥିଲା, କିଏ ଜୀବନରେ କମ୍ପାଉଣ୍ଡର ହେଇ କେମିତି ନାଁ କରିଥିଲା ।

ତହିଁ ଆରଦିନ ପ୍ରଥମ କମ୍ପାଉଣ୍ଡରୀ କ୍ଳାସକୁ ଯିବାର କଥା । ବାବା ମୋତେ ସାଙ୍ଗରେ ନେଇ ବାହାରିଲେ । ମୋତେ ଆଉଟଡ଼ୋର୍‌ରେ ଛାଡ଼ି ସେ ସିଆଡ଼େ ଅଫିସକୁ ଯିବେ, ମେଡ଼ିକାଲ୍ ହତା ଭିତରେ ବାବାଙ୍କ ସାଙ୍ଗରେ ଯାଉଥାଏ, ମନଟା ମଧ୍ୟ ଟିକିଏ ଦବି ଗଲା ପରି ଜଣା ଯାଉଥାଏ । ପୁଣି ଭୟ ମଧ୍ୟ ଲାଗୁଥାଏ । ମୋତେ ଭୟ ଭୟ ଲାଗିବାକୁ ଏଣେ ଆଉଟ୍‌ଡ଼ୋର ଯେତେ ନିକଟ ହେଲା, ଗୋଟାଏ ଭୟଙ୍କର ଦୃଶ୍ୟ ଦେଖି ମୋତେ ଆହୁରି ଭୟ ଲାଗିଲା, କିନ୍ତୁ ଭୟର କଥା କହିଲେ ତ ବାବା ହସିବେ । ମନ ଦୃଢ଼ କରି ସେ ଦୃଶ୍ୟ ଦେଖି ସହ୍ୟ କରି ରହିଗଲି । ଦୃଶ୍ୟଟା ହେଲା, ଆଉଟଡ଼ୋର୍ ନିକଟରେ ପୂର୍ବ ଆଡେ ୱାର୍ଡ଼ ବାହାରେ ପଦାରେ ଜଣେ କୃଷ୍ଣକାୟ ଲୋକ ଖୋଲା ପଦା ଜାଗାରେ ପଡ଼ିଛି । ନିକଟରେ ଗୋଟାଏ ଗଛ ଉପରୁ କାଉ ଆସୁଛି, ତା' ମୁଣ୍ଡ ଉପରେ ବସୁଛି, ତା'ର ବାଁ ଆଖିକୁ ଖୋଳି ଖୋଳି ଖାଉଛି, ପୁଣି କିଛି ସମୟ ପରେ ଉଡ଼ିଯାଇ ଗଛ ଉପରେ ବସୁଛି, ପୁଣି ସେମିତି କରୁଛି । ମୁଁ ପ୍ରଥମେ ଏ ଦୃଶ୍ୟ ଦେଖି ଭାବିଲି-ବୋଧେ ମୁର୍ଦ୍ଦାରଟାଏ ପଡ଼ିଛି, ଆଉଟ୍‌ଡ଼ୋର୍ ନିକଟ ହେଲାରୁ ଜାଣିପାରିଲି ଯେ ମୁର୍ଦ୍ଦାର ନୁହେଁ, ମଣିଷଟା ବଞ୍ଚିଛି, କାରଣ ମଝିରେ ମଝିରେ ଅନୁଚ୍ଚ ସ୍ୱରରେ ଚିତ୍କାର କରୁଛି । ସମସ୍ତେ ସେଇଠି ଯା ଆସ କରୁଛନ୍ତି । କିନ୍ତୁ ତାକୁ କେହି ଅନେଇ ଯାଉ ନାହାନ୍ତି । ତା'ର ଅବସ୍ଥା ଦେଖି ମୋର ମନରେ ଯେତିକି ଦୁଃଖ ହେଲା, ତା'ଠାରୁ ଅଧିକ ଭୟ ହେଲା । ମୁଁ ମଣିଷର ଏମିତି ଅବସ୍ଥା ଆଗରୁ କେଭେ ଦେଖି ନଥିଲି । ମୁଁ ବା କ'ଣ କରିବି ? ଘରେ ନ ପଶୁଣୁ

ବାଜିଲା ଚାଳ, କମ୍ପାଉଣ୍ଡରୀ ପାଠ ପଢ଼ିବାକୁ ଆସି ପ୍ରଥମ ଦିନ ଏ ଦୃଶ୍ୟ ଦେଖିଲି । ମୁଁ ଭୟରେ ଆଉଟ୍‌ଡ଼ୋର୍ ଭିତରକୁ କଲବଲ ହୋଇ ପଶିଗଲି ସତେ କି ମୋତେ କିଏ ଗୋଡ଼େଇଛି ।

ମୋତେ ଛାଡ଼ି ଦେଇ ବାବା ତାଙ୍କ ଅଫିସକୁ ଚାଲିଗଲେ । ମୋତେ ଭାରି ଅସହାୟ ଜଣାଗଲା । ସେଇ ଆଉଟ୍‌ଡ଼ୋର୍ ନିକଟରେ ଥିବା ପଡ଼ିଆରେ ରୋଜ ମୁଁ ସାଙ୍ଗ ପିଲାଙ୍କ ସାଥୀରେ ବଲ୍ ଖେଳେ, ଅଥଚ କାହିଁକି ସେଦିନ ମୋତେ ଭାରି ଖରାପ ଲାଗିଲା । ମୋ ପରି ଆଡ଼ମିଶନ୍ ନେଇଥିବା ଅନ୍ୟାନ୍ୟ ପିଲାଏ ଗୋଟି ଗୋଟି ହେଇ ଆସିଲେ, କେହି କାହାକୁ ଚିହ୍ନନ୍ତି ନାହିଁ । କିଏ ବୁଲିଲା, କିଏ ବସିଲା । ମୁଁ ଖଣ୍ଡିଏ ବେଞ୍ଚ ଉପରେ ବସିଥାଏ । ମୁଁ ତ କଟକ ଟାଉନ୍‌ର ପିଲା । ଯେଉଁମାନେ ଦୂରଦୂରାନ୍ତରୁ ଆସିଥାନ୍ତି ପଢ଼ିବା ପାଇଁ, ସେମାନେ ଅତି ନୀରିହ ଭାବରେ ବୁଲ୍‌ଚାଲ୍ କରୁଥାନ୍ତି । ଆମେମାନେ ନୂଆ ପିଲା ବୋଲି ପୁରୁଣା କମ୍ପାଉଣ୍ଡରୀ ପଢୁଥିବା ସିନିଅର୍ ପିଲାଏ ଆମ ଆଗରେ ଖୁବ୍ ଆତ୍ମବଡ଼ିମା ଦେଖେଇ ବୁଲୁଥାନ୍ତି, ହସୁଥାନ୍ତି, ବସୁଥାନ୍ତି, କଥାବାର୍ତ୍ତା ହଉଥାନ୍ତି ।

ଏଇ ଆଉଟ୍‌ଡ଼ୋର୍‌କୁ କେତେ ଥର ରୋଗଗ୍ରସ୍ତ ହେଇ ଆସିଥିଲି । ଆଜି ପାଠ ପଢ଼ିବାକୁ ଆସି କେମିତି ନୂଆ ନୂଆ ଲାଗୁଥାଏ । ସେଦିନ ଯେତେ ସମୟ ଆଉଟ୍‌ଡ଼ୋର୍‌ରେ ରହିଲି, ଦେଖିଲି-କର୍ମଚାରୀମାନେ ସମସ୍ତେ ଆସିଲେ, ଆଉଟ୍‌ଡ଼ୋର୍ ଅଫିସର୍ ଆସିଲେ, ଖଣ୍ଡେ ଗୋଟିକିଆ ଘୋଡ଼ାଗାଡ଼ିରେ । ଗାଡ଼ିଟି ଚାରିକୋଣିଆ ନ ହୋଇ ଗୋଲ ପ୍ୟାଟର୍ନର । ଆଉଟଡ଼ୋର୍ ଅଫିସର ହେଲେ, କ୍ୟାପଟେନ୍ କ୍ଷେତ୍ରମୋହନ ରାୟ, ବିରାଟକାୟ ଲୋକ, ଆମେ ସମସ୍ତେ ଯେ ସାମନାରେ ପଡ଼ିଲୁ, ଗୋଟି ଗୋଟି ହେଇ ନମସ୍କାର ହେଲୁ । ରୋଗୀ ଜମିଲେ, ପାଟିତୁଣ୍ଡ, ଆର୍ତ୍ତନାଦ, ଚିତ୍କାର, ଆଇଡ଼ୋଫର୍ମର ଗନ୍ଧ, କ୍ଷୋଭର ଗର୍ଜ୍ଜନରେ ଆଉଟ୍‌ଡ଼ୋର୍ ଜମି ଉଠିଲା । ସିନିୟର୍ କମ୍ପାଉଣ୍ଡରୀ ଛାତ୍ରମାନେ କାମ କରୁଥାନ୍ତି, ହେଡ୍ କମ୍ପାଉଣ୍ଡର ବୁଲୁଥାନ୍ତି । ସେ ମଧ୍ୟ ବିରାଟକାୟ ଲୋକ, ନାଁ-ଶ୍ରୀ ଲିଙ୍ଗରାଜ ନେପାଳ । ସେଦିନ ୧୧ଟା ଯାଏ ଆଉଟ୍‌ଡ଼ୋର୍‌ରେ ରହି ଘରକୁ ଫେରିଲି । ବାବା ଅଫିସ୍‌ରୁ ଦିନ ୧୨ଟାରେ ଫେରିଲେ, ମୋତେ ପଚାରିଲେ-କିରେ କେମିତି ଲାଗିଲା ? ପାରିବୁ ତ ? ମୁଁ ଉତ୍ତର ଦବାକୁ ଯାଇ ମନ ଭିତରେ ଯା' ଥାଉ, ଆଗେ ଦମ୍ଭର ସହିତ କହିଲି, ହଁ ।

କ୍ରମଶଃ ଆମେ ଯେତେ ଜଣ ଆଡ଼ମିସନ୍ ନେଇଥିଲୁ, ଚିହ୍ନାପରିଚ ହେଲୁ, ନୂଆ ପୁରୁଣା ମିଶିଗଲୁ । ଶେଷରେ ଦିନେ duty ବଣ୍ଟା ହେଲା, କେତେକଙ୍କୁ operation theatreରେ, କେତେକଙ୍କୁ dressingରେ, କେତେକଙ୍କୁ compounding roomରେ । ମୋର ପଡ଼ିଲା operation theatreରେ, ଆଉ କେତେଜଣ ମଧ୍ୟ ମୋ ସାଙ୍ଗରେ ଥା'ନ୍ତି, ସିନିଅର୍ ପିଲା ମଧ୍ୟ ଥା'ନ୍ତି । Outdoorରେ ସେତେବେଳେ ସାଧାରଣତଃ operation ହଉଥାଏ । Phymosis Hydrocele, Abscess ଇତ୍ୟାଦି, ସେଥିରେ ଡ଼ାକ୍ତରୀ ଛାତ୍ର ମଧ୍ୟ ଆସି କାମ କରିଥା'ନ୍ତି । ଯେଉଁମାନଙ୍କର outdoor ରେ duty ପଡ଼ିଥାଏ । ମୁଁ ଡ଼ାକ୍ତରୀ ଛାତ୍ରଙ୍କୁ ଦେଖି ମନେ ମନେ ଭାବେ, Matric ପାସ୍ କରିଥିଲେ Medical Schoolରେ ପଢ଼ିଥାନ୍ତି, ପୁଣି ଭାବେ ଟଙ୍କା କାହିଁ ଯେ Medical Schoolରେ ପଢ଼ିବି ? ଡ଼ାକ୍ତର ହେବି ? ମନକଥା ମନରେ ମଉଳି ଯାଏ ।

ଘରୁ ଦୈନିକ ସେତେବେଳେ ଚୁଡ଼ା, ଦୁଧ କିମ୍ବା ଚୁଡ଼ା, ଦହି ପେଟେ ଖାଇଯାଏ । ଗୋଟାଏ Phymosis operation ଦେଖିଲେ, ସେତକ କୁଆଡ଼େ ହଜମ ହେଇଯାଏ, କାରଣ-ରକ୍ତ ପିଚ୍ ପିଚ୍ ହେଇ ବାହାରିବା, ପୁଣି ବହୁତ ରକ୍ତ ଦେଖିବା, ରୋଗୀର ଚିତ୍କାର, ଯାହାକୁ ନିଶା ଦିଆ ହୁଏ, ସେ ଚୁପ୍ କରି ଶୋଇଯାଏ, ଯା'କୁ ନିଶାଦିଆ ହୁଏନା, ତା'ର କି ଚିତ୍କାର, କଷ୍ଟ ! ସେ ସବୁ ମୁଁ ପ୍ରଥମ ପ୍ରଥମ ସହ୍ୟ କରି ପାରୁ ନ ଥିଲି, ପରେ ସହ୍ୟ ହୋଇଗଲା ।

ମୁଁ ପ୍ରଥମେ outdoorକୁ ଖାଲି ଗୋଡ଼ରେ ଯାଉଥିଲି, ମୋ ପରି ଆହୁରି କେତେଜଣ ମଧ୍ୟ ଖାଲି ଗୋଡ଼ରେ ଯାଉଥିଲେ । ଥରେ କଥା ଉଠିଲା-ଏଠିକି ଖାଲି ଗୋଡ଼ରେ କେହି ଆସିବେନି । ଏଣୁ ମୋର ଜୋତା

ହଲେ ଦରକାର ପଡ଼ିଲା, କ'ଣ କରାଯିବ? ବାବାଙ୍କୁ କହିଲି, ମନେ ମନେ ଭାବିଲି, ଏତେ କଷ୍ଟରେ ତ କିଛି ଗୋଟାଏ ପଢ଼ିବାକୁ ପାଇଲି, ଏଥିରେ ପୁଣି ଜୋତା ହଳେ ଦରକାର, ବାବା ଶୁଣିଲେ କ'ଣ କହିବେ? ଶେଷରେ ଦିନେ କହିଲି। ବାବା କହିଲେ, ଜୋତା ନହେଲେ କ'ଣ ଚଳିବ ନାହିଁ? ମୁଁ କହିଲି, ଜୋତା ନ ମଡ଼େଇ ଗଲେ, ସେଠିକି ଯିବାକୁ ମନା କରୁଛନ୍ତି। ବାବାଙ୍କୁ ଏକଥା ଜଣେଇଲା ପରେ ପୁଣି କେତେଦିନ ଗଡ଼ିଗଲା। ଏଥି ମଧ୍ୟରେ outdoorରେ head compounder କେତେଥର କେତେଜଣଙ୍କୁ ପଚାରିଲେ-କାହିଁକି ଜୋତା ମଡ଼େଇ ଆସୁନା? କିଏ କେତେ ପ୍ରକାରର ଉତ୍ତର ଦିଅନ୍ତି, ପୁଣି ଚୁପ୍ ହେଇଯାନ୍ତି। ଏହି ଅବସରରେ ମୋର ଜଣେ ସହପାଠୀ କହିଲା-ପୁଲିନ୍, ଜୋତା କିଣିବୁ? ମୁଁ ହଳେ କାଥିଆବାଡ଼ରୁ ଜୋତା ମଗେଇଥିଲି, ସେ ଜୋତା ମୋ ଗୋଡ଼କୁ ଅଳ୍ପ ଟିକିଏ ବଡ଼ ହଉଛି। ମୁଁ ତାକୁ ବିକି ଦେଇ ଆଉ କିଛି ଟଙ୍କା ମିଶେଇ ଆଉ ହଳେ କିଣିବି। ମୁଁ ସେହି ଜୋତା ହଳକ ୫ଟଙ୍କାରେ ସେ ସହପାଠୀଠାରୁ କିଣିଲି। ସେ ଜୋତା ହଳକ କିଣି ଆଉ ଯିବି କୁଆଡ଼େ? କେତେ ଦିନରୁ ତ ଜୋତା ମଡ଼େଇବା ଛାଡ଼ି ଖାଲି ପାଦରେ ଚାଲବୁଲ କରୁଥିଲି। ଏ ଜୋତା ହଳକ କିଣି, ଜୁତା ମଡ଼େଇ ଚାଲିବାର ଆନନ୍ଦ ପରିବର୍ତ୍ତେ କଷ୍ଟ ମାଡ଼ି ଆସିଲା। କାରଣ ଏ ଜୋତା ହଳକ ଯେମିତି ଲୁହାରେ ତିଆରି। ମୋ ଗୋଡ଼ରେ ଯେମିତି ବେଡ଼ି ପଡ଼ିଲା, ପାଦେ ଚାଲିଲେ ଗୋଡ଼ରୁ ଛେଲକାଏ ମାଂସ ଉଡ଼ିଗଲା। ଖାଲି ପାଦରେ ମୁଁ ଯେତେ ଶୀଘ୍ର ଚାଲୁଥିଲି, ଏ ଜୋତା ହଳକ ମଡ଼େଇ ଯେମିତି ନୂଆବୋହୂମାନେ ଚାଲନ୍ତି, ସେମିତି ଚାଲିବାକୁ ହେଲା। ଯେତେ ଆସ୍ତେ ଚାଲିବି ଭଲ, ଟିକିଏ ଯୋରରେ ଚାଲିଲେ ଛେଲକାଏ ଛେଲକାଏ ମାଂସ ଉଡ଼ିଯିବ। ଏଣୁ ସାଙ୍ଗରେ କିଛି ଭେସ୍‌ଲିନ୍ ରଖିଲି। କିଛି ବାଟ ଗଲେ କ୍ଷତ ଜାଗାରେ ଟିକିଏ ଭେସ୍‌ଲିନ୍ ଲଗେଇଦିଏ, ପୁଣି ଚାଲେ। ଏମିତି କେତେଦିନ ମଡ଼େଇଲା ପରେ ଜୋତା ହଳକ ଅଳ୍ପ ପୋଷା ମାନିଲା। ଶେଷରେ ସ୍ଥିର କଲି, ତାକୁ କେବଳ ଡାକ୍ତରଖାନାକୁ ମଡ଼େଇ ଯିବା ଆସିବା କରିବା ଛଡ଼ା ଆଉ କେତେବେଳେ ହେଲେ ମଡ଼େଇବି ନାହିଁ। ଅନ୍ୟାନ୍ୟ ସହପାଠୀମାନେ ଯାହାର ଯେମିତି କ୍ଷମତାକୁ ଚାହିଁ ଜୋତା ମଡ଼େଇ ଆସିଲେ।

କମ୍ପାଉଣ୍ଡରୀ କ୍ଲାସ୍ ଆରମ୍ଭ ହେଲା। ଡ଼ା:କ୍ଷେତ୍ରମୋହନ ରାୟ କ୍ଲାସର ଶୁଭାରମ୍ଭ କଲେ। ପ୍ରଥମ କେତେଦିନ ଆଳାପ ପରିଚୟ, ହସଖୁସିରେ କଟିଲା, ତା'ପରେ କେଉଁ ବହି ପଢ଼ିବାକୁ ହବ କହିଲେ। ବହି ହେଲା, Whitelaw Meteria Medica, ଆଉ ଖଣ୍ଡେ Incompatibility Meteria Medica ରେ ଔଷଧର ନାମ, ମାତ୍ରା, କ'ଣ କ'ଣ ମିଶି ତିଆରି ହେଇଛି। ଏ ସବୁ ମୁଖସ୍ଥ କରିବାକୁ ହବ। ଆଉ Incompatibility ରେ ପଢ଼ିବାକୁ ହବ କେଉଁ ଔଷଧ କେଉଁ ଔଷଧ ସାଥିରେ ମିଶି ପାରିବ ନାହିଁ। ମିଶିଲେ-ଜଳି ଉଠିବ, ଗ୍ୟାସ୍ ହେଇ ବୋତଲ ଫଟେଇ ଦେବ, ବିଷ ପାଲଟି ଯିବ ଇତ୍ୟାଦି। ଡ଼ା: କେ.ଏମ୍.ରାୟ ପଢ଼େଇବାକୁ ଯାଇ କହିଲେ- Meteria Medica କୁ ଏମିତି ମୁଖସ୍ଥ କରିବ, ଯେମିତିକି ଶୋଇବା ଅବସ୍ଥାରେ ପଚାରିଲେ ମଧ କହିଦବ।

Whitelaw Meteria Medica ଆଉ Incompatibility ବହି ସମସ୍ତେ ମିଶି କଲିକତାରୁ ମଗେଇଲୁ। Meteria Medica ବହି ବେଶ୍ ମୋଟା ବହି ଆଉ Incompatibility ବହି ଖୁବ୍ ପାତଳା। ଆଗେ Meteria Medica ବହି ପଢ଼ା ଆରମ୍ଭ ହେଲା।

Outdoorରେ ସବୁ କାମ ସରିଲେ, କ୍ୟାପଟେନ୍ କେ.ଏମ୍.ରାୟ କ୍ଲାସ ନିଅନ୍ତି। କ୍ଲାସ ହୁଏ ସେହି outdoorର ଗୋଟାଏ ରୁମ୍‌ରେ। କ୍ୟାପଟେନ୍ କେ.ଏମ୍.ରାୟ କ୍ଲାସ ଖୁବ୍ ଜୋର୍‌ସୋର୍‌ରେ ନବାକୁ ଆରମ୍ଭ କଲେ। ଡ଼ା: ରାୟ ଆମକୁ ପଢ଼ଉ ପଢ଼ଉ ବେଳେବେଳେ ଢ଼ୋଳେଇ ପଡ଼ନ୍ତି। ପିଲାଏ ତାଙ୍କର ଢ଼ୋଳେଇବା ଦେଖି ହସନ୍ତି। ପୁଣି ଡ଼ାକି ଦେଲେ ପଢ଼ାନ୍ତି। ପ୍ରତ୍ୟେକ ଦିନ ପଢ଼ାନ୍ତି, ପଢ଼ା ଦିଅନ୍ତି, ପାଠ ପଚାରନ୍ତି। ନ କହିପାରିଲେ ଗାଳି ଦିଅନ୍ତି। ପିଲାଏ ତାଙ୍କ ପାଟି ତୁଣ୍ଡରେ ଭୟଭୀତ ହେଇ ପଡ଼ନ୍ତି। ଆମ ଭିତରୁ ଅନେକ ଛତରା ପିଲା ତାଙ୍କ ତୋଡ଼ରେ କେତେକ ସାବଧାନ ହେଇଗଲେ, ବାଗକୁ ଆସିଲେ। ଆମ ଭିତରେ ଜଣକୁ ଛାଡ଼ି ସମସ୍ତେ ପ୍ରାୟ

କିଏ ୯ମ, କିଏ ୧୦ମ, କିଏ ୧୧ଶ ଶ୍ରେଣୀରୁ ପାଠ ଛାଡ଼ି ପଶିଥାନ୍ତି । କେବଳ ଜଣେ ଥିଲା ମ୍ୟାଟ୍ରିକ ପାଶ୍ କରା ପିଲା । ସେ ପୁଲିସ୍ ଚାକିରୀରେ ଥିବା ବେଳେ କ'ଣ ଗୋଟାଏ ଦୋଷରେ ଚାକିରୀ ଛାଡ଼ି କମ୍ପାଉଣ୍ଡରୀ ପଢ଼ିବାକୁ ଆସିଥାଏ ।

ମୁଁ ଘରେ ରାତିବେଳା ଗୋଟିଏ ଡ଼ିବିରି ଜାଳି Meteria Medica ବସି ପଢେ । ବେଳେବେଳେ ମା' ରାଗରେ ସେ ଡ଼ିବିରିକୁ ଛଡ଼େଇ ନେଇ ଯା'ନ୍ତି, ପୁଣି କେତେ ସମୟ ପରେ ସେ ଡ଼ିବିରିକୁ ଆଣି ପଢ଼େ । ମୁଁ Meteria Medica ପଢ଼ିବାକୁ ବସିଲେ, ମୋର ଭଣଜା ମୋ ପାଖରେ ବସେ । ସେ ମୋତେ ବେଳେବେଳେ ପଚାରେ, ମାମୁଁ, ଏଥିରେ ଗୀତ ନାହିଁ ? ମୁଁ ବେଳେବେଳେ ସେ Latin ଆଉ ଇଂରାଜୀ ମିଶା ଔଷଧର ନାଁ ଗୁଡ଼ାକ ଗୀତ ଗାଇଲା ଭଳି ସ୍ୱରରେ ତାକୁ ଶୁଣାଏ । ସେ ବୁଝେ- Meteria Medica ରେ ଗୀତ ଅଛି । Meteria Medica ଖଣ୍ଡେ ବହି, କ୍ଲାସରେ ଯାହା ପଢ଼ା ହୁଏ, ତାକୁ ଘରେ ମୁଖସ୍ଥ କରୁ କରୁ ସବୁ କଥା ମୋ ତୁଣ୍ଡରେ ରହିଗଲା । କ୍ଲାସରେ ଡ଼ା:କେ.ଏମ୍.ରାୟ ଯେତେବେଳେ ଯାହା ପଚାରନ୍ତି, ସବୁ କହେ । କ୍ରମଶଃ କମ୍ପାଉଣ୍ଡରୀ ପାଠ ଆଉ କାମ ଆରେଇଗଲା । କ୍ୟାପଟେନ୍ କେ.ଏମ୍.ରାୟଙ୍କୁ ଶିକ୍ଷକତାରେ ଯାହା ଦେଖିଲି ଭଲ ଶିକ୍ଷକ । ଆଉ ଗୋଟାଏ କଥା ମୁଁ ନଜର କଲି-ସେ ଜଣେ ଭଲ ଅଭିଭାବକ । ଗୋଟାଏ ଦୁଷ୍ଟ ପିଲାକୁ ତାଙ୍କ ଜିମା ଛାଡ଼ିଦେଲେ, ସେ ତାକୁ ବାଗେଇ ଦେବେ । ତାଙ୍କରି ସମ୍ପର୍କରେ ଆସି ମୋର ନିଜର କେତେକ ପରିବର୍ତ୍ତନ ହେଲା । ସେସବୁ କଥାରେ ଭାରି ଉତ୍ସାହୀ ଥିଲେ । ମେଡ଼ିକାଲ ସ୍କୁଲର ଡ୍ରାମା, ଖେଳ ଇତ୍ୟାଦିରେ ସେ ଖୁବ୍ ଉତ୍ସାହ ଦେଉଥିଲେ । କିନ୍ତୁ ଗୋଟାଏ କଥା ମୁଁ ଏ ପର୍ଯ୍ୟନ୍ତ ଭୁଲି ପାରୁନି, ସେ ହେଲା କ୍ୟାପଟେନ୍ କେ.ଏମ୍.ରାୟଙ୍କ ଅପରେସନ୍ କରିବା, ଯେଉଁଠି ଅପରେସନ୍ କରିବାର କଥା, ସେଠି ଛୁରି ମାରି ଦେଇ, ହାଉଳି ଖାଇ ଯାକୁ ବିଧାଏ, ତାକୁ ଧକାଏ, କାହାକୁ ଗାଳି, କାହାକୁ ଗୋଇଠାଏ । ଏମିତି ଅବସ୍ଥାକୁ ସମ୍ଭାଳିବାକୁ ଯାଇ ଶେଷରେ ମେଡ଼ିକାଲ ଷ୍ଟୁଡ଼େଣ୍ଟ, ହେଡ଼ କମ୍ପାଉଣ୍ଡର ମିଶି ସେ ଅପରେସନ୍‌କୁ ଶେଷ କରନ୍ତି । ଆଉ ଯେମିତି ଅପରେସନ୍ ଶେଷ ହେଲା, ବ୍ୟାଣ୍ଡେଜ ବନ୍ଧା ସରିଲା, ରୋଗୀ ଅପରେସନ୍ ଟେବୁଲ ଉପରୁ ତଳକୁ ନିଆଗଲା, ସେତେବେଳେ ଦେଖିବ କ୍ୟାପଟେନ୍ କେ.ଏମ୍.ରାୟଙ୍କ ହସ, କଥାବାର୍ତ୍ତା, ସତେ ଯେମିତି ସେ ନିଜେ ସବୁ କଲେ । ପୁଣି ଅପରେସନ୍ ପରେ, ସାବୁନରେ ହାତ ଧୋଇଲା ବେଳକୁ, ସେଥିରେ ମଧ ଆମ ଉପରେ ଗାଳି । ଦିନେ ଗୋଟାଏ ଘଟଣାରେ ମୋତେ ଗୋଟାଏ ଗୋଇଠା ମାଇଲେ । ଗୋଇଠାଟା ମୋ ପଛରେ ବସିଲା । ସେତେବେଳେ ଅପରେସନ୍ ହେଇଥିବା ଗୋଟାଏ ରୋଗୀକୁ ମୁଁ ଏବଂ ଅନ୍ୟ ପିଲାମାନେ ମିଶି ଅପରେସନ୍ ଟେବୁଲ ଉପରୁ ତଳକୁ ନଉଛୁ, ମୋର ମନେ ହେଲା-କୋଉ ପିଲାର ଧକା ବାଜିଲା । ଅନ୍ୟାନ୍ୟ ପିଲାଏ ଏ ଘଟଣା ଦେଖି ମୋତେ ପରେ କହିଲେ-ସାର୍ ତୋତେ ଗୋଟାଏ ଗୋଇଠା ମାଇଲେ । ମୁଁ ତ ଭାବିଥିଲି, କାହାର ଧକା ବାଜିଲା ବୋଲି, କିନ୍ତୁ ସେ ତ ଧକା ନୁହେଁ । ପିଲାଙ୍କ ମୁହଁରୁ ଶୁଣିଲି ଗୋଇଠା । ଏ କଥା ଶୁଣି ମନ ଭାରି ଖରାପ ଲାଗିଲା । ଭାବିଲି-ଏତେ ପିଲାଙ୍କ ସାମନାରେ ମୋତେ ଗୋଇଠା ମାଇଲେ । ଭାରି ରାଗ ହେଲା । ଏଣୁ ମନେ ମନେ ସ୍ଥିର କଲି ସାର୍‌ଙ୍କୁ ମାରିବି । ମୁହାଁମୁହିଁ ତ ମାରି ହବନି । କାରଣ ତାଙ୍କ ହାତରେ ପାସ୍, ଫେଲ୍ ଅଛି, କ୍ଷମତା ଅଛି, କ'ଣ କରିବି ? ମୁଁ ତ କିଛି ଦୋଷ କରିନି, ମୋତେ କାହିଁକି ଗୋଇଠା ମାଇଲେ ? ମୁଁ ରୋଗୀକୁ ଧରି ତଳକୁ ଆଣୁ ଥିଲି, ମୋ ସହିତ ଅନ୍ୟ ପିଲାଏ ତ ଥିଲେ, ମୋତେ ଗୋଇଠା ମାରିବାର କାରଣ କ'ଣ ? ଏ ଆଉ କିଛି ନୁହେଁ, କେବଳ ଅହମିକା । ସେତେବେଳେ ଯେଉଁମାନେ କମ୍ପାଉଣ୍ଡରୀ ପଢୁଥିଲେ, ତାଙ୍କ ପ୍ରତି ଏମିତି ବ୍ୟବହାର କରାହଉଥିଲା । ତାଙ୍କୁ ଚାପୁଡ଼ାଟାଏ, ବିଧାଟାଏ, ଗୋଇଠାଟାଏ ମାଇଲେ, ସେମାନେ କିଛି କରିପାରିବେ ନାହିଁ । ଏ ମାଡ଼ ବିଷୟରେ ଯେ ଖାଲି ମୁହଁରେ ପ୍ରତିବାଦ କରିଛି, ସେ କମ୍ପାଉଣ୍ଡରୀ ପରୀକ୍ଷାରେ ଫେଲ୍ । ସେ ଆଉ ଜୀବନରେ କମ୍ପାଉଣ୍ଡରଟିଏ ସୁଦ୍ଧା ହେଇ ପାରିବ ନାହିଁ । ସମସ୍ତେ ତ ତିନି କୂଳ ଖାଇ ଆସି ଶେଷରେ କମ୍ପାଉଣ୍ଡରୀ କୂଳରେ ଆଶ୍ରା ନେଇଛନ୍ତି, ଆଉ ଯିବେ କୁଆଡ଼େ ? ଏଣୁ ଏ ଲାଞ୍ଛନାକୁ ପ୍ରତିବାଦ ନ କରି ନୀରବ ରହିଯାନ୍ତି ।

ମୁଁ ସ୍ଥିର କଲି ସାର୍‌ଙ୍କୁ ଲୁଚି କରି ଅନ୍ଧାରେ ମାରିବି । ସେ ଯେତେବେଳେ କୁଆଡ଼େ ଅନ୍ଧାରରେ ଯାଉଥିବେ, ଢ଼େଲା ଛାଡ଼ିବି । ସେତେବେଳେ ଦେଖିଛି, ଡ଼ା:କେ.ଏମ୍. ରାୟ ସନ୍ଧ୍ୟା ପରେ ତାଙ୍କର ଗୋଟିକିଆ ଘୋଡ଼ା ଗାଡ଼ିରେ କୁଆଡ଼େ ଯାନ୍ତି, ପୁଣି ରାତିକି ଫେରନ୍ତି । ସେତେବେଳେ କଟକ ଟାଉନ୍‌ରେ ବିଜୁଳିବତୀ ନଥିଲା । କାଁ ଭାଁ ଦୋକାନ ଆଲୁଅ, ନଚେତ୍ ଅନ୍ଧାର ଯେ ମୁହଁକୁ ମୁହଁ ଦିଶିବନି । ମୁଁ ଯୋଡ଼ାଏ ଜାଗା ଠିକ୍ କଲି, ଲୁଚି ରହି ତାଙ୍କ ଉପରକୁ ଢ଼େଲା ଛାଡ଼ିବା ପାଇଁ । ଗୋଟାଏ ଜାଗା ହେଲା, ମଙ୍ଗଳାବାଗ୍‌ର କଟକ ଏମ୍‌ପୋରିୟମର ଗଳି କାରଣ ଏ ଗଳିଟା ସେତେବେଳେ ଭାରି ଅନ୍ଧାରୁଆ ଥିଲା । ଏ ଗଳି ମଙ୍ଗଳାବାଗ୍‌ର ପ୍ରଧାନ ରାସ୍ତାରୁ ଏମ୍‌ପୋରିୟମ୍ ପଛ ପଟ ଦେଇ ମେଡ଼ିକାଲ ହତାକୁ ଲାଗିଛି । ଆଉ ଗୋଟିଏ ଜାଗା-ମଙ୍ଗଳାବାଗ୍ ଛକ । ସେଠି ମଧ ଢ଼େଲା ଛାଡ଼ି ଲୁଚିବା ପାଇଁ ଅନ୍ଧାରୁଆ ଜାଗା ଥାଏ । ଏଇ ଦି'ଟା ଜାଗା ସ୍ଥିର କରି ଢ଼େଲା ଧରି ଅନେକବାର ଏମ୍‌ପୋରିୟମ୍ ପଛପଟ ଗଳିରେ ପ୍ରଧାନ ରାସ୍ତାକଡ଼ରେ ଲୁଚି ରହିଛି । କିନ୍ତୁ ଡ଼ା:କେ.ଏମ୍. ରାୟଙ୍କ ଗାଡ଼ିର ଭେଟ ପାଇ ନାହିଁ । ଥରେ ଭୁଲବଶତଃ ଆଉ ଗୋଟାଏ ଗାଡ଼ିକୁ କେ.ଏମ୍. ରାୟଙ୍କ ଗାଡ଼ି ଭାବି ଢ଼େଲା ଛାଡ଼ିବାକୁ ଯାଉଛି, ଏଇ ସମୟରେ ଜାଣି ପାରିଲି ଯେ ଡ଼ା: କେ.ଏମ୍.ରାୟଙ୍କ ଗାଡ଼ି ନୁହଁ । ପୁଣି ସେମିତି ମଙ୍ଗଳାବାଗ୍ ଛକରେ ଅନେକବାର ଢ଼େଲା ଧରି ଲୁଚି ରହିଛି କିନ୍ତୁ ତାଙ୍କ ଗାଡ଼ିକୁ ଭେଟି ପାରିଲି ନାହିଁ । ଘଣ୍ଟା ଘଣ୍ଟା ଧରି ଅପେକ୍ଷା କରିଛି, କିନ୍ତୁ ତାଙ୍କ ଗାଡ଼ିର ଭେଟ ପାଇ ନାହିଁ । ଏଣେ ରାତିରେ ଯଦି ବେଶି ସମୟ ବାହାରେ ରହିଲି, ଘରେ ମଧ ପ୍ରଶ୍ନ ହବ-ରାତିରେ ଏତେବେଳ ଯାଏ କୁଆଡ଼େ ଥିଲୁ ? ଏଣୁ କିଛିଦିନ ଚେଷ୍ଟା କଲାପରେ ମନ ଛାଡ଼ିଗଲା, ଆଉ ରାସ୍ତାକଡ଼ରେ ଅପେକ୍ଷା କଲି ନାହିଁ । ଏଣେ ପରେ ଆଉଟ୍ ଡ଼ୋର୍‌ରେ ତାଙ୍କ ବ୍ୟବହାରରେ ମୋର ରାଗ ଥଣ୍ଡା ପଡ଼ିଗଲା । ପରେ ମୋର ପଢ଼ାପଢ଼ି ଏବଂ କାମକାର୍ଯ୍ୟ ଯୋଗୁଁ ସେ ମୋତେ ଭାରି ଭଲ ପାଇଲେ । ସବୁ କଥାରେ ମୋତେ ଡ଼ାକାହବ, ମୋ ଉପରେ ଭାରି ବିଶ୍ୱାସ ।

ସେତେବେଳେ କମ୍ପାଉଣ୍ଡରୀ ପଢୁଥିବା ପିଲାଙ୍କର ଦିନବେଳା indoor 'ରେ duty ପଡୁଥିଲା, ବିଶେଷତଃ junior ପିଲାଙ୍କର । କମ୍ପାଉଣ୍ଡରୀ ପଢ଼ିବାରେ ଦୁଇଟା ସ୍ତର ଥିଲା-ଗୋଟାଏ junior ଆଉ ଗୋଟାଏ senior । Junior ପିଲାଙ୍କର ଯେଉଁ duty ପଡ଼େ, ସେଥିରେ କେବଳ indoor ରୋଗୀମାନଙ୍କୁ ଦିନବେଳା ଔଷଧ ଖୋଇବାକୁ ହୁଏ । ଆଉ senior ପିଲାଙ୍କର night duty, day duty ପଡେ । ମୁଁ junior ଥିବା ବେଳେ ମୋର କେତେଦିନ indoor ରେ ଦିନବେଳା duty ପଡ଼ିଲା । ସେଥିରେ ରୋଗୀଙ୍କୁ ଔଷଧ ଖୋଇବାର କଥା । ଔଷଧ ଖୋଇବାର ବ୍ୟବସ୍ଥା ଥିଲା, ଗୋଟାଏ କାଠ ବାକ୍ସରେ stock mixture କେତେକ ତିଆରି ହେଇ ରଖା ହେଇଥିବ, ସେଥିରେ ପୁଣି ଖଣ୍ଡେ ଖାତା ଥିବ, ସେ ଖାତାରେ ଲେଖା ଥିବ କେତେ ନମ୍ବର ରୋଗୀଙ୍କୁ କେଉଁ mixture ଦିଆଯିବ । ଯେଉଁ କମ୍ପାଉଣ୍ଡର ପିଲା ଔଷଧ ଖୋଇବ, ସେ ସେ କାଠ ବାକ୍ସରେ ଥିବା stock mixture ସବୁକୁ ଦି'ହାତରେ ଧରିଧରି ପ୍ରତ୍ୟେକ ward କୁ ଯିବ, ସେ ଖାତାରୁ ପଢ଼ି ଯେଉଁ ରୋଗୀକୁ ଯେଉଁ ଔଷଧ ଖୋଇବାର ଖୋଇବ ।

ମୋର ଯେତେବେଳେ duty ପଡ଼ିଲା, ମୁଁ ସେ କାଠ ବାକ୍ସରେ ଥିବା ସମସ୍ତ mixtureକୁ ନେଇ , ଯେତେଟି ward ରେ ଔଷଧ ଖୋଇବାର କଥା, ସେ ward ସବୁରେ ବୁଲି ବୁଲି, ଖାତା ଦେଖି ସମସ୍ତଙ୍କୁ ଔଷଧ ଖୋଇଲି । Wardରେ ଔଷଧ ନେଇ ପହଁଚି ଗଲେ, ଯେଉଁ ରୋଗୀମାନେ ଚାଲବୁଲ କରିପାରନ୍ତି, ସେମାନେ ଆସି ଘେରି ଯାନ୍ତି, ସେମାନେ ସେଇଠି ପାନେ ପାନେ ଔଷଧ ଖାଇ ଯାନ୍ତି, ଆଉ ଯେଉଁ ରୋଗୀମାନେ ଚାଲବୁଲ କରିବାକୁ ଅକ୍ଷମ ସେମାନଙ୍କୁ ତାଙ୍କ ଶେଯରେ ଶୋଇଥିବା ଅବସ୍ଥାରେ ଔଷଧ ଖୋଇ ଆସିବାକୁ ହୁଏ । ଦିନେ ମୁଁ ଗୋଟାଏ ଭୁଲ କରି ବସିଲି । ଜଣେ ରୋଗୀର ଯେଉଁ mixture ଖାଇବାର କଥା, ତାକୁ ଅନ୍ୟ mixture ଭୁଲରେ ଖୋଇଦେଲି । ସେ ରୋଗୀ ପ୍ରତ୍ୟେକ ଦିନ ଯେଉଁ mixture ଖାଏ, ତା'ର ସ୍ୱାଦ ସେ ଜାଣିଛି । ସେ ତା'ର ସ୍ୱାଦ ନପାଇ, ଔଷଧ ଢ଼ୋକି ଦେଇ ମୁଣ୍ଡ ଝାଡ଼ି ହେଇ କହିଲା, ବାବୁ, ଏ ତ ମୋ ଔଷଧ ନୁହଁ ।

ମୁଁ ଆଉ କ'ଣ କରିବି? ମୁଁ ତ ନୂଆ, ଭୁଲ କରି ସାରିଲିଣି, ମୁଁ ପୁଣି ଖାତା ଦେଖି ତା' ଔଷଧିରୁ ପାନେ ତାକୁ ଖୋଇଦେଲି। ମନେ ମନେ ଭାରି ଭୟ କଲି, କିଛି ଖରାପ ହବ ନାହିଁ ତ? କାରଣ ମୁଁ ତ ଜାଣି ନଥାଏ, କେଉଁଥିରେ କ'ଣ ମିଶା ହେଇ mixture ତିଆରି ହେଇଛି। କିଏ ବିଷ, କିଏ ପୀୟୂଷ। ସେ ଯାହା ହଉ, ମୁଁ ଭୟରେ ଶୀଘ୍ର ଅନ୍ୟାନ୍ୟ ରୋଗୀଙ୍କୁ ଔଷଧି ଖୋଇ ଦେଇ ସେ ward ରୁ ବାହାରି ଆସିଲି। ଆଉ କେଭେ ଏମିତି ଭୁଲ କରିନାହିଁ।

କମ୍ପାଉଣ୍ଡରୀ ପଢ଼ିବାର ଦୈନନ୍ଦିନ କାମ ଚାଲିଥାଏ। ବର୍ଷାଦିନ ଆସିଲା, କଲେରା ରୋଗୀ କଲେରା ward କୁ ଆସିବାକୁ ଲାଗିଲେ। ଆଗେ କଲେରା ରୋଗୀ କଟକ ବଡ଼ ଡ଼ାକ୍ତରଖାନାକୁ ଆସିବାକୁ ଆରମ୍ଭ କଲେ। କଲେରା ward ସାମନାରେ ତମ୍ବୁ ପଡ଼େ। ଡ଼ାକ୍ତର, ମେଡ଼ିକାଲ ଷ୍ଟୁଡ଼େଣ୍ଟ, କମ୍ପାଉଣ୍ଡର, ଷ୍ଟୁଡ଼େଣ୍ଟ କମ୍ପାଉଣ୍ଡର, ସମସ୍ତଙ୍କର କଲେରା ward ରେ day duty, night duty ପଡ଼େ। ସେତେବେଳେ କଟକ ଡ଼ାକ୍ତରଖାନାରେ ବିଜୁଳି ଆଲୁଅ ନ ଥିଲା। ଏଣୁ କଲେରା ward ରେ ବିଜୁଳି ଆଲୁଅ ନଥାଏ। ଲଣ୍ଠନ ଆଉ ପେଟ୍ରୋମାକ୍ସରେ କାମ ଚଳୁଥିଲା। ସେତେବେଳେ ଦିନବେଳା,- ରାତିବେଳା କଲେରା ward ଆଡ଼େ ଯିବାକୁ କୋକୁଆ ଭୟ।

ଏହି କଲେରା ସମୟରେ ଥରେ ମୋର ରାତିରେ କଲେରା ward ରେ duty ପଡିଲା। କ'ଣ କରିବି? କଲେରା ward ରେ କେମିତି ରାତିବେଳା duty କରିବି? ପିଲାବେଳୁ ତ କଲେରାକୁ ପ୍ରାଣରେ ଭୟ। କଟକରେ ଯେଉଁ ସାହିରେ କଲେରା ଲାଗିଛି ଶୁଣିଲି, ଆଉ ସେ ବାଟରେ ବର୍ଷେ ଖଣ୍ଡ ପ୍ରାୟ ଯାଏନି। ମା, ବାବା ମଧ୍ୟ ପିଲାବେଳୁ ସେମିତି ମନରେ ଭୟ ଜାତ କରେଇ ଦେଇଛନ୍ତି, ମା'ଙ୍କର ବେଶି ଭୟ କଲେରା ପ୍ରତି। କଟକ ସହରରେ କଲେରା ଲାଗିବା ଶୁଣିଲେ, ଆଉ ମୋତେ ବାହାରକୁ ଛାଡ଼ିବେ ନାହିଁ। ସ୍କୁଲ ଯିବା ମଧ୍ୟ ବନ୍ଦ। ବର୍ତ୍ତମାନ ସେହି କଲେରା ward ରେ କଲେରା ରୋଗୀଙ୍କ ପାଖକୁ ରାତି ବେଳେ ଯିବାକୁ ହବ। ରାତିଟା କଟେଇବାକୁ ହବ। ମା' ଏକଥା ଶୁଣି କହିଲେ, କମ୍ପାଉଣ୍ଡରୀ ପଢ଼ିବା ଛାଡ଼ିଦେ। ବାବା କିଛି କହିଲେ ନାହିଁ। ମୋର ମଧ୍ୟ ଭାରି ଭୟ ହଉଥାଏ। କେମିତି କଲେରା ରୋଗୀଙ୍କ ପାଖକୁ ଯିବି? ମରି ତ ଯିବି। ସେ ରାତିରେ ଆଉ କଲେରା ward କୁ duty କରିବାକୁ ଗଲି ନାହିଁ। ମନରେ ଅନେକ କଥା ଭାବିଲି, କାହିଁକି କମ୍ପାଉଣ୍ଡରୀ ପଢ଼ିବାକୁ ସାହସ କଲି? ମା' ଯେ କହୁଛନ୍ତି, କମ୍ପାଉଣ୍ଡରୀ ପଢ଼ିବା ଛାଡ଼ିଦେ। ଛାଡ଼ି ଦେବିକି? ଛାଡ଼ି ଦେଲେ ସାଙ୍ଗ ପିଲାଏ କ'ଣ କହିବେ? କି ଭୁଲ କଲି! କି ବିପଦ!

ତହିଁ ଆରଦିନ ଯେତେବେଳେ outdoor କୁ ଯାଏ, ସାଙ୍ଗ ପିଲାଙ୍କ ଭିତରୁ ଆଉ ଯାହାଙ୍କର ମୋ ସାଥୀରେ କଲେରା ward ରେ duty ପଡିଥିଲା, ସେମାନେ ମୋତେ ଦେଖି ହାଉହାଉ କଲେ। କାଲି ରାତିରେ ପୁଳିନ କଲେରା ward କୁ duty କରିବାକୁ ଆସିନାହିଁ। ଆମେ duty କରି ଆସିଲୁ, ସେ କାହିଁକି ଗଲା ନାହିଁ? Head compounder ଶୁଣି କହିଲେ, ସେମିତି କେତେଗୁଡ଼ା ପିଲା ଥାନ୍ତି duty ରେ ଅବହେଳା କରନ୍ତି। ଆଚ୍ଛା ହଉ, ତାକୁ ଦିନବେଳା କଲେରା ward ରେ duty ପକେଇବା।

ସତକୁ ସତ, ମୋତେ ଥରେ ଦିନ ବେଳା କଲେରା ward ରେ duty ଦିଆଗଲା। କ'ଣ କରିବି? ଆମକୁ ଆଗରୁ ସତର୍କ କରେଇ ଦିଆ ହେଇଥାଏ। କଲେରା ward ରେ duty କରିବାକୁ ଗଲେ, ପେଟେ ଖାଇ duty କରିବାକୁ ଯିବ, ଖାଲି ପେଟରେ କେଭେ ଯିବ ନାହିଁ।

ଘରେ ବାବା, ମା'ଙ୍କୁ କହିଲି, ମୋର ଆଜି କଲେରା ward ରେ duty। ଦିନ ୧୦ଟାରୁ ରାତି ୮ଟା ଯାଏ। ସେତେବେଳେ ଆମ ଘରେ ଜେଠା ଆଉ ବଡ଼ ଭିଣେଇ ଆସି ପହଁଚିଥାନ୍ତି। ସେମାନେ ମଧ୍ୟ ଶୁଣିଲେ, ବାବା, ମା' ଆଉ କିଛି କହି ପାରିଲେ ନାହିଁ। ମା' ଯେ ଆଜି ମୋତେ କଲେରା ward କୁ ଛାଡୁଛନ୍ତି, ତାଙ୍କର ମନର ଅବସ୍ଥା ଯେମିତି ମୋତେ ସାତ ସମୁଦ୍ରକୁ ଠେଲି ଦେଲା ପରି ଦୁଃଖରେ ଭରା। ଗୋଟିଏ ବୋଲି ପୁଅ, ତାକୁ ଆଜି ପୁଣି କଲେରା ରୋଗୀଙ୍କ ପାଖକୁ କଲେରା

ward କୁ ଛାଡୁଛନ୍ତି, ଯେଉଁ ପୁଅକୁ କଲେରା ନାଁ ଶୁଣିଲେ ପଦାକୁ ଛାଡୁ ନଥିଲେ ।

ମୁଁ ମାଛ, ଭାତ ପେଟେ ଖାଇ ଯେତେବେଳେ ଅଗତ୍ୟା କଲେରା ward କୁ ବାହାରିଲି, ମା' କର୍ପୂର, ଗୋଲମରିଚ ଆଉ ଆମ ଗାଁ ଠାକୁରାଣୀଙ୍କ ପ୍ରସାଦୀ ଫୁଲ ଖଣ୍ଡିଏ ଛୋଟିଆ କନାରେ ବାନ୍ଧି ମୋ ପକେଟ୍‌ରେ ରଖି ଦେଇ କହିଲେ, ଏକୁ ମଝିରେ ମଝିରେ ଶୁଂଘୁ ଥିବୁ ।

ଏଇ ସମୟରେ ମୋର ସାନ ଭଉଣୀ ଆସି ମା'ଙ୍କୁ କହିଲା, ମା' ଭାଇ କଲେରା ward କୁ duty କରିବାକୁ ଯାଉଛନ୍ତି ବୋଲି ଜେଠା ଆଉ ଭିଣେଇ ବାହାରେ ବସି ଥଟ୍ଟା କଲା ଭଳି କହୁଛନ୍ତି, ହୁଁ ପୁଅ କମ୍ପାଉଣ୍ଡରୀ ପାଠ ପଢ଼ି କଲେରା ward କୁ ଯାଉଛି । ମା' ଯେମିତି ଏତକ ଶୁଣିଛନ୍ତି, ମା ସେହି ଘର ଭିତରୁ ଆରମ୍ଭ କଲେ ବଡ଼ ପାଟିରେ ଶୋଧା । ନିର୍ଲଜଙ୍କୁ ସରମ ଅଛି ? ଭାରି କାବୁଆ ଜେଠା, ଭାରି କାବୁଆ ଭିଣେଇ, ମୋ ପୁଅ ଯେ ଏତେ ବର୍ଷ ପଇସା ଅଭାବରେ ପାଠ ଛାଡ଼ି ବୁଲିଲା, ଜେଠା ଆଉ ଭିଣେଇ କ'ଣ ମରିଥିଲେ କି ? ତାଙ୍କ ପୁଅକୁ (ଜେଠା ପୁଅ ବଡ଼ ଭାଇ, ଯେ ଆମ ବସାରେ ରହି ବାବାଙ୍କ ଖର୍ଚ୍ଚରେ entrance ପଢୁଥିଲେ) ପଢ଼େଇ ଆଜି ମୋ ପୁଅକୁ କଲେରା ward କୁ ପଠଉଛି । ମୋ ପୁଅ କମ୍ପାଉଣ୍ଡରୀ ପଢ଼ିଲାରୁ ଜେଠା ଆଉ ଭିଣେଇଙ୍କୁ ସରମ ଲାଗୁଛି । କମ୍ କାବୁଆ ସବୁ ।

ମା ପାଟି କରି ଶୋଧୁଥାନ୍ତି । ମୁଁ ବାହାରି ଚାଲିଗଲି । କଲେରା ward ରେ ଯାଇ ପହଁଚି ଛାତିଭିତରେ ଢେ଼ଙ୍କି ପାହାର ପଡ଼ିଲା ଭଳି ଜଣା ଯାଉଥାଏ । କେବେ ତ କଲେରା ରୋଗୀ ଦେଖି ନଥିଲି, ଆଜି ନୂଆ । କଲେରା ward ସାମନାରେ ତମ୍ବୁ ପଡ଼ିଥାଏ । ସେଥିରେ କଲେରାର ଚିକିତ୍ସା ପାଇଁ ସବୁ ଔଷଧ, ଅନ୍ୟାନ୍ୟ ଉପକରଣ ସବୁ ରଖା ହେଇଥାଏ । ମାଟି ଉପରେ, କଲେରା ward ବାରନ୍ଦାରେ, ନଳାରେ ପ୍ରଚୁର bleaching powder ଢ଼ଳା ହେଇ ଜ୍ୟୋସ୍ନାବିଧୌତ ଧରଣୀ ପରି ମନେ ହଉଥାଏ । Phenyl ପାଣିରେ ଗୋଳାହେଇ ଥୁଆ ହେଇଥାଏ । ଅନ୍ୟାନ୍ୟ ଯାହାଙ୍କର duty ଥାଏ, ସେମାନଙ୍କର କିଛି ଭୟ ନଥାଏ । ଯେତିକି ଭୟ ମୋ'ରି, କଲେରା ରୋଗୀଙ୍କ ପାଖକୁ ଯିବାକୁ ଭାରି ଭୟ ଲାଗୁଥାଏ । ମନେ ମନେ ଭାବୁଥାଏ କେମିତି duty ବେଳଟା କଟିଗଲେ ପଳେଇବି । ଏଣେ ପୁଣି ଚାରିଟା ବେଳକୁ football ଖେଳ ପାଇଁ ମନଟା ଛଟପଟ ହଉଥାଏ । କଲେରା ରୋଗୀଙ୍କୁ ଦେଖିଲି । ଯେଉଁମାନେ ଭଲ ହେଇ ward ରେ ଥାନ୍ତି, ଯା'ଙ୍କୁ ମୃତ୍ୟୁ ନେଇ ପାରିନାହିଁ, ଖାଲି ହାଡ଼, ଚମ, କୋରଡ ଆଖି, ପେଟ ପିଠିରେ ଲାଗି ଯାଇଛି ।

ଦୈବାତ୍ ମୋର ଯେଉଁ ଦିନ duty ପଡିଲା, ସେଦିନ ନୂଆ କଲେରା ରୋଗୀ ଆଉ ward କୁ ଆସିଲେ ନାହିଁ । ନଚେତ୍ ଆଉ କିଛି କାମ କରିବାକୁ ପଡିଥାନ୍ତା । କଲେରା ward ରେ ଯେଉଁ ମେହେନ୍ତର କାମ କରୁଥାଏ, ସେ ଦେଖିବାକୁ ଯେମିତି ଯମ । ତାକୁ କିଛି ଭୟ ନାହିଁ । ତାକୁ କଲେରା ପାଞ୍ଚ ହାତ ଦୂରରୁ ଜୁହାର କରିବ । ମୁର୍ଦ୍ଦାରଟା ବୋହିନବା ତାକୁ କିଛି ନୁହଁ । ମୁଁ ଲୁଚି ଲୁଚି ମା'ଙ୍କର ଦେଇଥିବା କନାରେ ବନ୍ଧା କର୍ପୂର ପୁଟୁଳିକୁ ବେଳେ ବେଳେ ଶୁଂଘି ଦଉଥାଏ ।

ଯା ହଉ ଭଲରେ ଭଲରେ ଦିନଟା କଟିଗଲା ମୋର ଆଉ ଯେଉଁମାନଙ୍କର ମୋ ସାଥିରେ duty ପଡ଼ିଥିଲା ସେମାନଙ୍କୁ ଦେଖି, କଲେରା ward ର ହାଲ୍‌ଚାଲ୍ ଦେଖି, ମନରେ ଅଳ୍ପ କିଛି ସାହସ ହେଲା । ତଥାପି ମୁଁ କେମିତି ସେଠୁଁ ସନ୍ଧ୍ୟା ପୂର୍ବରୁ ଖସିବି ? କୌଣସି ମତେ ସନ୍ଧ୍ୟା ପୂର୍ବରୁ ମୋର ସେଠା senior କର୍ମଚାରୀଙ୍କୁ କହି ଖସି ଆସିଲି । ଆସିଲା ବେଳେ phenyl lotionରେ ଜୋତା ତଳ ଧୋଇ ଆସିବାର ନିୟମ ଥିବା ଯୋଗୁଁ, ଧୋଇ ବିଦାୟ ନେଲି ।

ଘରେ ଆସି ଯେତେବେଳେ ପହଁଚେ, ସେଇ ବାହାର ଆଡ଼େ ଲୁଗାପଟା ଛାଡ଼ି ଘରେ ପଶିଲି । ମା' ମୋତେ ଗାଧେଇ ପଡ଼ିବାକୁ କହୁଥିଲେ, ପୁଣି ସଞ୍ଜ ବେଳଟା ବୋଲି ମନା କଲେ । ଜେଠା ଆଉ ଭିଣେଇ କୁଆଡ଼େ ବୁଲିବାକୁ ଯାଇଥିଲେ । ମା କଲେରା ward ର ସବୁ ହାଲ୍‌ଚାଲ୍ ଶୁଣିଲେ । ମା' ନିଜେ ହିଁ କହିଲେ, ସେମିତି କାମ କରୁ କରୁ ସାହସ ବଢ଼ିଯିବ, ମୁଁ ମନା

କରୁଛି, କମ୍ପାଉଣ୍ଡରୀ ପଢ଼ନା, ତୁ ତ ମାନିଲୁ ନାହିଁ। ଯେମିତି ପଢ଼ିଲୁ, ତା' ଫଳ ଭୋଗୁଛୁ।

Outdoorରେ ସେମିତି ଦୈନନ୍ଦିନ କାମ ଚାଲିଥାଏ। ମୋର ମଧ ଆଗ ଅପେକ୍ଷା କାମ କାର୍ଯ୍ୟରେ ବିଶେଷ ଆଗ୍ରହ ଜନ୍ମିଲାଣି, ଭୟ ନାହିଁ, ଘୃଣା ଅନେକ ପରିମାଣରେ କମିଗଲାଣି। ଦୈନିକ outdoorରେ କାମ କରି ନ ଆସିଲେ ଯେମିତି ଅସ୍ୱସ୍ତି ବୋଧହୁଏ। କେଭେ ଦେହ ଖରାପ କିମ୍ବା ଅନ୍ୟ କୌଣସି କାରଣରୁ ଛୁଟି ନେଇ ଘରେ ରହିବା ପାଇଁ ମୁଁ କୁଣ୍ଠିତ। କ୍ୟାପଟେନ୍ କେ.ଏମ୍.ରାୟ ମୋର ପଢ଼ାପଢ଼ି ଆଉ କାର୍ଯ୍ୟରେ ଆନ୍ତରିକତା ଦେଖି ମୋତେ ବିଶେଷ ଭଲ ପାଉଥାନ୍ତି। କିନ୍ତୁ ଏଥିମଧରେ ଗୋଟାଏ ଦୁର୍ଘଟଣାରେ ପଡ଼ିଲି। ମୁଁ ଏକା ନୁହେଁ, ମୋ ସାଙ୍ଗରେ ଆଉ କେତୋଟି ପିଲା।

ଘଟଣା ହେଲା-ଗଣେଶ ପୂଜା ବେଳ ଆସିଲା, ଗଣେଶ ପୂଜା ହବ। ହେଡ଼ କମ୍ପାଉଣ୍ଡର ପ୍ରସ୍ତାବ ଦେଲେ-ଜଣକେ ୫ଟଙ୍କା ଚାନ୍ଦା ଦବାକୁ ହବ। ସେତେବେଳେ ଅନେକଗୁଡ଼ିଏ କମ୍ପାଉଣ୍ଡରୀ ପଢ଼ାପିଲା ମଲ୍ହା ସାହିରେ ମହାନଦୀ କୂଳ ଆଡ଼େ କାଠ ଗୋଲା ନିକଟରେ ଗୋଟାଏ ଚାଳଘରେ ମେସ୍ କରି ରହୁଥାନ୍ତି। ସ୍ଥିର ହେଲା, ସେଇଠି ଗଣେଶ ପୂଜା ହବ। ଆମେ କେତେ ଜଣ ପିଲା ସେ ପ୍ରସ୍ତାବରେ ରାଜି ହେଲୁ କିନ୍ତୁ ନିର୍ଘଣ୍ଟରେ ଖିଆପିଆ ଛଡ଼ା ସୁରା ଆଉ ସାକୀର ବ୍ୟବସ୍ଥା ରହିଲା। ଗଣେଶ ପୂଜାରେ ତ ଆମେ କମ୍ପାଉଣ୍ଡରୀ ଛାତ୍ରମାନେ ଯୋଗ ଦବୁ, ତା'ଛଡ଼ା କେତେଜଣ ତତ୍‌କାଳୀନ ଲଫଙ୍ଗା ଟୋକା ଡ଼ାକ୍ତର ଯେଉଁମାନେ କି ହେଡ୍ କମ୍ପାଉଣ୍ଡରଙ୍କ ସାଙ୍ଗ, ସେମାନେ ନିମନ୍ତ୍ରିତ ହେବେ। ସେମାନେ ଆଉ ହେଡ୍ କମ୍ପାଉଣ୍ଡର ସେ ସୁରା ଆଉ ସାକୀକୁ ଉପଭୋଗ କରିବେ। ଏସବୁ କାହିଁକି ହବ? ଏଣୁ ପ୍ରତିବାଦ କରି ଆମେ କେତେ ଜଣ ପିଲା ଏ ସୁରା, ସାକୀ ପ୍ରସ୍ତାବରେ ରାଜି ହେଲୁ ନାହିଁ। ଆମେ ବିଚାରିଲୁ-ଆମେ ପିଲାଏ ଚାନ୍ଦା ଦବୁ, ସେଥିରେ ଟୋକା ଡ଼ାକ୍ତର କେତେଜଣ ନିମନ୍ତ୍ରିତ ହେଇ ଆସିବେ, ପୁଣି ସେମାନଙ୍କ ଲାଗି ସୁରା, ସାକୀର ବ୍ୟବସ୍ଥା! ଗଣେଶ ପୂଜା, ନା ଏ କ'ଣ? ଡ଼ାକ୍ତର କେତେଜଣଙ୍କୁ ନିମନ୍ତ୍ରଣ କରିପାର କିନ୍ତୁ ଏ ବ୍ୟଭିଚାରର ବ୍ୟବସ୍ଥା କାହିଁକି? ଆମେ ସ୍ଥିର କଲୁ, ଆମେ ଚାନ୍ଦା ଦବୁ ନାହିଁ କି ସେଠିକି ଯିବୁ ନାହିଁ। ଯଦି ସୁରା ଆଉ ସାକୀର ବ୍ୟବସ୍ଥା ଉଠେଇବେ, ଆମେ ଚାନ୍ଦା ଦବୁ ଆଉ ଯୋଗ ଦବୁ।

ଆମେ କେତେଜଣ ଯେ ଏକଥା ବିଚାର କରି ସ୍ଥିର କଲୁ, ଆମେ ସବୁ ବାହାର ପିଲା, ବାହାରେ ରହି ପାଠ ପଢୁଥିଲୁ। ଆମରି ଭିତରୁ ଥୋକାଏ, ଯେଉଁମାନେ ମେସ୍‌ରେ ରହି ପାଠ ପଢୁଥିଲେ, ସେହିମାନେ ହିଁ ହେଡ୍ କମ୍ପାଉଣ୍ଡରଙ୍କ ପ୍ରସ୍ତାବରେ ରାଜି ହେଲେ। ଏଣୁ ଆମେ କେତେଜଣ ମେସ୍ ପିଲାଙ୍କଠାରୁ ସମ୍ପୂର୍ଣ୍ଣ ଅଲଗା ହେଇଗଲୁ। ଚାନ୍ଦା ଦେଲୁନି କି ଗଣେଶ ପୂଜାରେ ଯୋଗ ଦେଲୁନି। ମେସ୍ ପିଲା ଆଉ ହେଡ୍ କମ୍ପାଉଣ୍ଡର ହେଲେ ଦଳେ, ଆମେ କେତେ ଜଣ ହେଲୁ ଦଳେ। ହେଡ୍ କମ୍ପାଉଣ୍ଡରଙ୍କ ଆମ ଦଳର ଦୁଇଜଣଙ୍କ ଉପରେ ବିଶେଷ ଅକସ ରହିଲା। ଏ ଦୁଇଜଣ ହେଲେ-ମୁଁ ଏବଂ ମୋର ଜଣେ ମୁସଲମାନ ସହପାଠୀ, ଆଉ କେତେ ଜଣ ଆମ ପଛକୁ ଥାନ୍ତି।

ଖବର ନେଲୁ-ଗଣେଶ ପୂଜାରେ ହେଡ୍ କମ୍ପାଉଣ୍ଡରଙ୍କ ପ୍ରସ୍ତାବ ଅନୁଯାୟୀ ଭୂରି ଭୋଜନକୁ ମିଶେଇ ସୁରା, ସାକୀର ଉପଭୋଗ ପୂରା ମାତ୍ରାରେ ପାଳିତ ହେଇଥିଲା। ଆମ ଦଳର ପିଲାଏ କିଏ କୁଆଡ଼େ ବୁଲିଲେ, ଗାଁକୁ କେତେ ଜଣ ପଳେଇଲେ। ମୁଁ ସେ ଗଣେଶ ପୂଜା ଦିନ ଗୋଟିଏ ଛୋଟ ଧରଣର ଗ୍ରାମୋଫୋନ୍‌କୁ ମରାମତି କରିବା ପାଇଁ କଟକ ସହରର କେତେ ଜାଗା ଭାରି ମନସ୍ତାପରେ ବୁଲିଛି। କାରଣ-ମୁଁ ବାବାଙ୍କୁ ନ ଜଣେଇ କଲିକତାର Whiteway Laidlaw କମ୍ପାନୀର ଗୋଟିଏ ଛୋଟ ଧରଣର ଗ୍ରାମୋଫୋନ୍ ମଗେଇ ଦେଲି। ପରେ ବାବାଙ୍କୁ ଜଣେଇଲି। ଗ୍ରାମୋଫୋନ୍‌ଟିର ଦାମ୍ ମୋଟେ ୩୧ ଟଙ୍କା। ଅତି ଛୋଟ ନାଁ- Nirona, କିନ୍ତୁ ସେଥିରେ ସବୁ ସାଇଜର ରେକଡ୍ ବାଜି ପାରିବ। ପାର୍ସଲ୍ ଆସିଲା, ବାବା ଟଙ୍କା ଦେଲେ। ବାବା ଏଥିରେ କିଛି ଆପତ୍ତି କଲେ ନାହିଁ। କାରଣ ବାବାଙ୍କର ଗାଉଣା ବାଜଣା ପ୍ରତି ବିଶେଷ ଆଗ୍ରହ ଥିଲା। ସେତେବେଳେ କଟକ ସହରରେ ଗ୍ରାମୋଫୋନ୍‌ର ଯାହା ଅଭାବ ଥିଲା, ତା'ପୂର୍ବେ ବର୍ଣ୍ଣନା

କରିଛି । ଯା ହଉ ବଡ଼ ହଉ କି ଛୋଟ ହଉ, ଗୋଟିଏ ଗ୍ରାମୋଫୋନ୍ ତ ଘରକୁ ଆସିଲା । ଏଥିରେ ସମସ୍ତେ ଖୁସି । କିନ୍ତୁ ପାର୍ସଲ୍ ଖୋଲି ଗ୍ରାମୋଫୋନ୍ ବଜେଇଲା ବେଳକୁ ବାଜୁ ନାହିଁ । ଅଳ୍ପ ଟିକିଏ ଶବ୍ଦ ହେଇ ବନ୍ଦ, ରେକର୍ଡ଼ ବୁଲୁ ନାହିଁ । ମୁଁ ତ କାନ୍ଦିବା ପରି ହେଲି । ବାବା ମା ସମସ୍ତେ ବିରକ୍ତ ହେଲେ । ଏଣୁ ସେ କାହିଁକି ବାଜୁ ନାହିଁ, ତା'ର କେଉଁଠି କ'ଣ ଅସଜ ଅଛି, ତାକୁ ମରାମତି କରିବା ପାଇଁ, ଗଣେଶ ପୂଜା ଦିନ ତାକୁ ନେଇ କେତେ କାରିଗରଙ୍କ ପାଖକୁ ଯାଇ କେତେ ଜାଗା ଯେ ବୁଲିଛି, ତା'ର ଠିକ୍ ଠିକଣା ରହିଲା ନାହିଁ । ଶେଷରେ ମଙ୍ଗଳାବାଗର ସେତେବେଳର ଜଣେ ବିଶିଷ୍ଟ କାରିଗର ନେତ୍ରାନନ୍ଦ, ତାକୁ ୩ଟଙ୍କା ନେଇ ମରାମତି କରି ଦେଲା । ଘରେ ଆଣି ତାକୁ ବଜେଇଲା ବେଳକୁ କି ଆନନ୍ଦ ! ସେଇ ଛୋଟ ଗ୍ରାମୋଫୋନ୍‌ରେ ଗାଡ଼ିଏ ଗାଡ଼ିଏ ରେକର୍ଡ଼ ବଜେଇଛି, ସେଇ ଗ୍ରାମୋଫୋନ୍‌ରେ ଗୀତ ଶୁଣି ଶୁଣି ରାତି ପାହି ଯାଇଛି ।

ଗଣେଶ ପୂଜା ପର୍ବ ଗଲା । ଏଥର ଆମର out-door ରେ ଆମରି ପର୍ବ ଆରମ୍ଭ ହେଲା । ଆମ ଭିତରେ ଦି'ଦଳ । ଗୋଟାଏ ଦଳ ଆଡ଼େ ହେଡ୍ କମ୍ପାଉଣ୍ଡର ନିଜେ । ଆମ ଦଳରେ ଆମେ ମାତ୍ର କେଇ ଜଣ । ହେଡ୍ କମ୍ପାଉଣ୍ଡର ଆମ ପ୍ରତି ଆକ୍ରୋଶ ରଖି ଆମକୁ ହଇରାଣ କରିବାକୁ ଚେଷ୍ଟା କଲେ । କିନ୍ତୁ ତାଙ୍କ ଦଳକୁ ଟେକି ଧରିଥାନ୍ତି । ଆମେ ଯଦି ଟିକିଏ ବେଞ୍ଚରେ ବସିଲୁ, ସାଙ୍ଗେ ସାଙ୍ଗେ ଆମକୁ ସେଠି ବସିବାକୁ ମନା କରାହୁଏ । ଆମେ ସେଇଠୁ କେତେଜଣ ତଳେ ଧାଡ଼ି ବାନ୍ଧି ବସୁ । ଏ ସବୁ କଥା କ୍ୟାପଟେନ୍ କେ. ଏମ୍. ରାୟଙ୍କ କାନକୁ ଯାଇ ନଥାଏ ଯେ ହେଡ୍ କମ୍ପାଉଣ୍ଡର ଆମ ଭିତରେ ଏମିତି ଦି'ଦଳ କରି ଆମକୁ ହଇରାଣ କରୁଛି । କ୍ରମଶଃ ଆମ ଦୁଇ ଦଳ ଭିତରେ ତିକ୍ତତା ବଢ଼େଇବାରେ ହେଡ୍ କମ୍ପାଉଣ୍ଡର ଚେଷ୍ଟାରେ ଥାଏ କିନ୍ତୁ କିଛି କରିପାରୁ ନଥାଏ । ଆମେ କେତେଜଣ ଭଲ ପଢୁଥାଉ । କ୍ୟାପଟେନ୍ କେ.ଏମ୍.ରାୟଙ୍କ ଆମ ଉପରେ ବିଶେଷ ସୁଦୃଷ୍ଟି ଥାଏ । ହେଡ୍ କମ୍ପାଉଣ୍ଡର ଯେ ଇମିତି ଆମ ଭିତରେ ଦୁଇ ଦଳ କରି ଆମକୁ ଇମିତି ହଇରାଣ କରୁଛି, ତିକ୍ତତା ଯେ ଏତେଦୂର ଘନେଇଲାଣି, କ୍ୟାପଟେନ୍ କେ.ଏମ୍.ରାୟ କିଛି ଜାଣି ନ ଥାନ୍ତି । ଆମେ ମଧ ତାଙ୍କୁ କିଛି କହି ନଥାଉ ।

ହେଡ୍ କମ୍ପାଉଣ୍ଡର କିନ୍ତୁ ଚେଷ୍ଟାରେ ଥାଏ ଆମ ଦୁଇ ଦଳ ଭିତରେ କେମିତି ଥରେ ମାଡ଼ପିଟ ହଉ, କାରଣ ତା'ଦଳରେ ଯେଉଁମାନେ ଥାନ୍ତି ତାଙ୍କର ସଂଖ୍ୟା ବେଶି । ଏଣୁ ମାଡ଼ପିଟ ହେଲେ ଆମେ ନିଶ୍ଚୟ ହାରିଯିବୁ ପୁଣି ଏମିତି ଚେଷ୍ଟା ମଧ ହେଲା ଆମର Meteria Medica ବହି ସବୁ କେମିତି ଚୋରେଇ ନେବେ । ଆମେମାନେ ଏଥିପ୍ରତି ସତର୍କ ରହି କୁଆଡ଼େ ଗଲେ ଅଇଲେ ଆମ ଭିତରୁ ଜଣକଜିମା ସବୁ ବହି ରଖି ଦଉ । ଏଥି ଯୋଗୁଁ ଆମ ଦଳର ବହି ଆଉ ଚୋରେଇ ପାରିଲେ ନାହିଁ ।

ଦିନେ ଏମିତି ଘଟଣା ହେଲା, ଦୁଇ ଦଳର ପିଲାଙ୍କ ଭିତରେ ବଚସା ହଉ ହଉ ଅନ୍ୟ ଦଳର ଗୋଟାଏ ପିଲାର ଆମକୁ ମାରିବାର ଉଦ୍ଦେଶ୍ୟ ବୁଝିପାରି, ତାକୁ ପ୍ରଥମେ ମୁଁ ମାରି ବସିଲି । ତା'ର ଓଠରେ ଗୋଟାଏ ମୁଥ ବସିବା ଯୋଗୁଁ ତା'ର ଓଠ ଫାଟିଗଲା । ମୋ ପଛେ ପଛେ ମୋର ମୁସଲମାନ ସାଙ୍ଗ ହେଡ୍ କମ୍ପାଉଣ୍ଡରକୁ ମାଇଲା । ଏଥିରେ ସେହି outdoor ର compounding room ଭିତରେ ଖୁବ୍ ଗୁରାଏ ଧସ୍ତାଧସ୍ତି ହେଇଗଲା, ଯା'ଫଳରେ compounding room ର କେତେକ ବୋତଲ, ଔଷଧ ପତ୍ର ଭାଙ୍ଗି ଯିବା, ନଷ୍ଟ ହେଇ ଯାଉ ଯାଉ ଅଳ୍ପକେ ରକ୍ଷା ପାଇଗଲା । ମାଡ଼ପିଟ ବନ୍ଦ ହେଲା ପରେ ମୋର ମୁସଲମାନ ସାଙ୍ଗ ମୋତେ ଗୋଟାଏ ବୁଦ୍ଧି ବତେଇଲା । ଆମେ ତ ମାଇଲୁ, ଆମେ ଦୋଷୀ ହବୁ, ଚାଲ ଆଗରୁ ଯାଇ କେ.ଏମ୍.ରାୟଙ୍କ ଆଗରେ ମିଛରେ କହିବା ହେଡ୍ କମ୍ପାଉଣ୍ଡର ଅନ୍ୟ ପିଲାଙ୍କୁ ଲଗେଇ ଆମକୁ ମାଡ଼ ଦେଲା । ସେତେବେଳକୁ କେ.ଏମ୍.ରାୟ outdoor କୁ ଆସି ନଥାନ୍ତି ।

ମୋର ମୁସଲମାନ୍ ସାଙ୍ଗ ହମିଦ ତା'ର ସାଇକେଲ୍‌ରେ ମୋତେ ପଛରେ ବସେଇ ନେଇ ରାଣୀହାଟରେ କେ.ଏମ୍.ରାୟଙ୍କ ଘରକୁ ଦଉଡ଼ିଲା । ଆମେ ଯାଉ ଯାଉ କେ.ଏମ୍.ରାୟ ମେଡ଼ିକାଲ୍ ହତା ଭିତରେ

ସ୍କୁଲ ସାମନାରେ ଦେଖାହେଲେ, ସେ ତାଙ୍କର ସେହି ବଗି ଗାଡ଼ିରେ ଆସୁଥିଲେ । ଆମେ ଦିହେଁ ତାଙ୍କ ଗାଡ଼ିକୁ ଅଟକେଇ କାନ୍ଦି କାନ୍ଦି ତାଙ୍କ ଆଗରେ ସବୁ କଥା ଇମିତି ଭାବରେ ବନେଇ ଚୁନେଇ କହିଲୁ ଯେ ଆମେ କିଛି କରିନାହୁଁ, କେବଳ ହେଡ୍ କମ୍ପାଉଣ୍ଡର ଲିଙ୍ଗରାଜ ନେପାଳ ତାଙ୍କ ଦଳର ପିଲାଙ୍କୁ ଲଗେଇ ଆମକୁ ମାଡ଼ ଦେଇଛି ।

କ୍ୟାପଟେନ୍ କେ.ଏମ୍.ରାୟ outdoor କୁ ଆସି ଆମକୁ ଗୋଟାଏ room କୁ ଡ଼ାକି ଲିଙ୍ଗରାଜକୁ ସାମନାରେ ଠିଆ କରି ଆମକୁ ଜଣ ଜଣ କରି ସବୁ କଥା ପଚାରିଲେ । ଆମେ ଜଣ ଜଣ କରି ଲିଙ୍ଗରାଜ ସାମନାରେ ତା ବିରୁଦ୍ଧରେ ଗଣେଶ ପୂଜା ବେଳର ସବୁକଥା ଏମିତିକି ସୁରା ସାକୀର ଘଟଣା ମଧ୍ୟ ନିର୍ଭୟରେ ସାକ୍ଷ୍ୟ ଦେଲୁ । ତଥାପି କେ.ଏମ୍.ରାୟ ଆମକୁ ଜଣ ଜଣ କରି ରସ୍‌ଟିକେଟ୍ କରିବେ ବୋଲି ଧମକ ଦେଲେ । ଆମେମାନେ ତାଙ୍କର ଧମକ ଶୁଣି ଭୟଭୀତ ହେଲୁ । ହମିଦ୍, ମୁଁ ଏବଂ ଆମ ଦଳର ପିଲାଏ ଠିକ୍ କଲୁ ଯଦି ଆମେ ରସ୍‌ଟିକେଟ୍ ହେଲୁ, ତା'ହେଲେ ଲିଙ୍ଗରାଜକୁ ଭଲ କରି ପାନେ ଦବୁ । ସେଥିଲାଗି ମଧ୍ୟ ଚେଷ୍ଟାରେ ରହିଲୁ । ଏଣିକି ମୋ ନିଜ କଥାକୁ ଭାବିଲି କ'ଣ କରିବି ? ବାବା, ମା କେହି ଏ କଥା ଜାଣନ୍ତି ନାହିଁ । ମୁଁ ରସ୍‌ଟିକେଟ୍ ହବା କଥା ଉଠିଲାଣି । ପାଠ ଛାଡ଼ି ତ ବୁଲୁଥିଲି, କପାଳକୁ କମ୍ପାଉଣ୍ଡରୀ ପାଠ ଜୁଟିଲା, ସେଥିରେ ପୁଣି ରସ୍‌ଟିକେଟ ହବା ପ୍ରଶ୍ନ ଉଠିଲାଣି । ବାବା ମା ଜାଣିଲେ କ'ଣ କହିବେ ?

ଥରେ ମା'ଙ୍କୁ ଖାଲି କହିଲି, ମା, ମୁଁ ବୋଧେ ଆଉ କମ୍ପାଉଣ୍ଡରୀ ପଢ଼ି ପାରିବି ନାହିଁ । ମା' ପଚାରିଲେ କାହିଁ କିରେ ? କ'ଣ ହେଲା ? ମୁଁ କହିଲି, ପରେ କହିବି, କ'ଣ ହଉଛି ଦେଖେ । ମା' କହିଲେ, କ'ଣ କିଛି ଗଣ୍ଡଗୋଳ କରିଛୁ କି ? ବାବା, ମା'ଙ୍କର ମୋ ଉପରେ ସବୁବେଳେ ସନ୍ଦେହ । ମୁଁ କୋଉଠି କ'ଣ ଗଣ୍ଡଗୋଳ କରି ବସିବି । ବାବା, ମା ମୋତେ ଭାରି କଳିହା ବୋଲି ଜାଣନ୍ତି । ହମିଦ୍‌ର ମଙ୍ଗଳାବାଗ୍ ଫାଣ୍ଡିରେ ସେତେବେଳେ ଅନେକ ମୁସଲମାନ ବନ୍ଧୁବାନ୍ଧବ କନେଷ୍ଟବଲ ଥାନ୍ତି । ହମିଦ୍ ସେମାନଙ୍କ ଆଗରେ ଲିଙ୍ଗରାଜର ଦୌରାତ୍ମ୍ୟ କଥା କହିଲା । ସେମାନେ ମଝିରେ ମଝିରେ ଲିଙ୍ଗରାଜକୁ ଯେତେବେଳେ ମଙ୍ଗଳାବାଗ ରାସ୍ତାରେ ଭେଟିଲେ, ଏ ଘଟଣା ବିଷୟରେ ତାକୁ ଧମକ ମିଶା କଣ୍ଠରେ ପଚାରିଲେ, ଲିଙ୍ଗରାଜ ଟିକିଏ ଚପିଲା । ତା'ର ଉଦ୍ଧତପଣିଆ ବେଶ୍ କିଛି ହ୍ରାସ ପାଇଲା । ପୁଣି ଆମେ ଜାଣିଲୁ କ୍ୟାପଟେନ୍ କେ.ଏମ୍.ରାୟ ଆମକୁ ଯେମିତି ଶିକ୍ଷକ ହିସାବରେ ରସ୍‌ଟିକେଟ୍ କରିବେ ବୋଲି ଧମକ ଦେଲେ, ଆମର ଅନୁପସ୍ଥିତିରେ ତାକୁ ଉପରିସ୍ଥ କର୍ମଚାରୀ ଭାବରେ କିଛି ଧମକ ଦେଲେ, ଯା ଫଳରେ ଲିଙ୍ଗରାଜର ମୁହଁଟା ଟିକିଏ ବାସି ଚକୁଳି ପରି ଦେଖାଗଲା । ଆମର ଏଣେ ଭିତରେ ଭିତରେ ଲିଙ୍ଗରାଜ ବିରୁଦ୍ଧରେ ଷଡ଼ଯନ୍ତ୍ର ଚାଲିଲା ।

ହମିଦ୍ କହିଲା-ମୁଁ ଓଡ଼ିଆ ବଜାରରେ କେତେଜଣ ଗୁଣ୍ଡା ଠିକ୍ କରିଛି । ଲିଙ୍ଗରାଜକୁ ରାତିରେ ଗୋଟାଏ ରୋଗୀ ବିଷୟରେ ଡ଼କେଇ ପଠେଇବା, ଲିଙ୍ଗରାଜ ସିଆଡ଼େ ଗଲେ, ତାକୁ ଗୁଣ୍ଡାଙ୍କ ସାହାଯ୍ୟରେ ମାଡ଼ ଦବା ।

କଟକରେ ଓଡ଼ିଆ ବଜାରରେ ହମିଦ୍‌ର ମୁସଲମାନ ବନ୍ଧୁବାନ୍ଧବ ଥାନ୍ତି । ସେ ଠିକ୍ ଗୁଣ୍ଡା ଯୋଗାଡ଼ କରିପାରିବ, ମୁଁ ଏବଂ ଆମର ଦଳର ଅନ୍ୟମାନେ ଏ ପ୍ରସ୍ତାବରେ ରାଜି ହେଲୁ । ଲିଙ୍ଗରାଜ ଉପରେ ତ ରାଗ ଥାଏ । ପୁଣି ଆମେ ସବୁ ଟୋକାଟାକରା ଦଳ ଉଦ୍ଧତ ପ୍ରକୃତି, ଛନଛନା ମତି ।

ହମିଦ୍ ଆଉ ଗୋଟାଏ ପ୍ରସ୍ତାବ ଦେଲା-ଗୁଣ୍ଡାମାନଙ୍କୁ କିଛି ଟଙ୍କା ଦବାକୁ ହବ । ଏଣୁ ଆମ ଭିତରେ କିଛି ଚାନ୍ଦା ସଂଗ୍ରହ କରିବା ଦରକାର । ଏଥିରେ ମଧ୍ୟ ଆମେ ରାଜି ହେଲୁ । ଗଣେଶ ପୂଜାରେ ତ ଆମେ ୫ଟଙ୍କା ଲେଖାଏଁ ଚାନ୍ଦା ଦେଇ ନାହୁଁ । ଲିଙ୍ଗରାଜକୁ ମାଡ଼ ଦବାରେ ସେଇ ଟଙ୍କାଟା ଖର୍ଚ୍ଚ ହଉ, ଏହା ହେଲା ନିଷ୍ପତ୍ତି ।

ଆମେ ଲିଙ୍ଗରାଜକୁ ଏବଂ ତା'ର ଦଳର କେତେଜଣକୁ ମାଡ଼ ଦେଇଥାଉ ବୋଲି ଚାରିଆଡ଼େ ପ୍ରଘଟ ହେଇଗଲା । ଏଥିରେ କେତେଜଣ ଲିଙ୍ଗରାଜର ବିରୁଦ୍ଧ ଲୋକ, ଯେଉଁମାନଙ୍କୁ ଲିଙ୍ଗରାଜ ପୂର୍ବେ ଆମରି ପରି ହଇରାଣ କରିଛି, ସେମାନେ ଆମକୁ ସାହାଯ୍ୟ କରିବା ପାଇଁ ବାହାରି ପଡ଼ିଲେ । ଏମାନେ ସମସ୍ତେ ଚାକିରିଜୀବି

କମ୍ପାଉଣ୍ଡର ଦଳ। ଆମଠୁଁ ବୟସ୍କ ଲୋକ, କିନ୍ତୁ ଆମେ କାହାରିକି ଆମ ଦଳରେ ପଶି ଆମକୁ ସାହାଯ୍ୟ କରିବାକୁ ମନା କଲୁ। ଯାହା କରିବୁ ନିଜେ ନିଜେ, କାରଣ, ସେମାନେ ଆମ ଦଳରେ ଯୋଗ ଦେଇ ଯଦି ଧରା ପଡ଼ନ୍ତି, ତା'ହେଲେ ତାଙ୍କର ଚାକିରି ଯିବ। ଆମେ ତ ହେଲୁ ଛାତ୍ର, ପୁଣି ଟୋକାଗୁରାକ। ଯୌବନ-ଯମୁନା ଦି'କୂଳ ଖାଉଛି। ଜୀବନ-ନୌକା ମେଡ଼ିକାଲ ହତା outdoor ତୁଠରେ ଲାଗିଛି। ଏ ତୁଠ ଛାଡ଼ିଲେ, ଆଉ କେଉଁଠି ଲାଗିବ, ନଚେତ୍ ବୁଡ଼ି ଗଲାତ ଗଲା, ଆଗ ପଛ ବିଚାର ନାହିଁ। କେହି ଆମ ଉପରେ ନିର୍ଭର କରୁ ନାହାନ୍ତି, ଚାକିରୀଆଗୁରାକ ଆମ ସାଙ୍ଗରେ ଯୋଗ ଦେଲେ ଚଳିବ ନାହିଁ। ତାଙ୍କର ବୋଝେଇ ଡଙ୍ଗା, ଯଦି ବୁଡ଼ିଲେ ତ ସମସ୍ତେ ବୁଡ଼ି ଯିବେ, ଯଦି କେହି ବଞ୍ଚିଲା ସେ ବି ଦୁଃଖ ଶୋକରେ ଘାଣ୍ଟି ହବ। ଏଣୁ ଆମ ସାଙ୍ଗରେ ତାଙ୍କର ଯୋଗ ଦବା ଉଚିତ୍ ନୁହଁ। ପୁଣି କିଏ କେଉଁ ପ୍ରକୃତିର ଆମକୁ ଜଣା ନାହିଁ। ଆମ ଷଡ଼ଯନ୍ତ ଜାଣି କିଏ ଯଦି ପୁଣି ଲିଙ୍ଗରାଜକୁ କହିଦିଏ, ସବୁ କାମ ବିଫଳ ହେଇଯିବ। ଏଣୁ ଆମ ଦଳରେ କାହାରିକି ପୂରେଇଲୁ ନାହିଁ, ସେମାନେ ଫେରିଗଲେ।

ଦିନେ ହମିଦ୍ କହିଲା- ଆମମାନଙ୍କୁ ସନ୍ଧ୍ୟା ପରେ ଓଡ଼ିଆ ବଜାରକୁ ଯିବାକୁ ହବ, ଯେଉଁ ଗୁଣ୍ଡା କେଇଜଣ ଯୋଗାଡ଼ ହେଇଛି, ସେମାନଙ୍କ ସଙ୍ଗେ ଆମର କ'ଣ କରିବାକୁ ହବ, ଆଲୋଚନା ହବା ଦରକାର। ଆମେ କିଏ କେଉଁଠି ରହିବୁ, ଲିଙ୍ଗରାଜକୁ ରୋଗୀ ସଂକ୍ରାନ୍ତରେ ରାତିବେଳା କିଏ ଡ଼ାକିବାକୁ ଯିବ, ତାକୁ ମଧ ସ୍ଥିର କରିବାକୁ ହବ, ବିଶେଷତଃ ମୁଁ ରହିବା ଦରକାର।

ଆମେ ହମିଦ୍ କଥା ମାନି ସେଦିନ ସନ୍ଧ୍ୟା ପରେ ଅନ୍ଧକାର ମଧ୍ୟରେ ଗୋଟି ଗୋଟି ହେଇ ଦଳକଯାକ ଓଡ଼ିଆ ବଜାରରେ ପହଞ୍ଚିଲୁ। ଯେଉଁ ଘରେ ଗୁଣ୍ଡାମାନଙ୍କ ସଙ୍ଗେ ଆମର ଆଲୋଚନା ହବ, ହମିଦ୍ ସେ ଘର ଆଗରୁ ଠିକ୍ କରିଥିଲା, ଗୁଣ୍ଡା ତିନି ଜଣ ଉପସ୍ଥିତ ଥିଲେ।

ଆମେମାନେ ସମସ୍ତେ ବସିଲୁ। ଆମ ଭିତରେ ଜଣେ ମାତ୍ର ଚାକିରିଜୀବି କମ୍ପାଉଣ୍ଡର ଥିଲା। ସେ ମୁସଲମାନ୍। ମୋର ଅତି ପିଲାବେଳୁ ଅନ୍ତରଙ୍ଗ ବନ୍ଧୁ। ସେ ପରେ ଡା: ଅସାଦୁଲ୍ଲା ନାମରେ ପରିଚିତ ହେଲେ। ଏଣୁ ସେଇ ଜଣକ କେବଳ ଆମ ଦଳରେ ଯୋଗ ଦେଇଥିଲା। ମୋର ବିଶ୍ୱାସ ଥିଲା, ତାଦ୍ୱାରା କଦାପି ଆମର ଷଡ଼ଯନ୍ତର କଥା ବାହାରେ କେହି ଜାଣି ପାରିବେ ନାହିଁ। ସେ କମ୍ପାଉଣ୍ଡରୀ ପଢ଼ିବା ବେଳେ ତାକୁ ମଧ ଲିଙ୍ଗରାଜ ହଇରାଣ କରିଥିଲା। ଏଣୁ ତା'ର ମଧ ମନ ମଧ୍ୟରେ ଅକସ ଥିଲା, ସେ ତା'ର ପ୍ରତିଶୋଧ ନବା ପାଇଁ ଆମ ଦଳରେ ଯୋଗ ଦେଇଥିଲା।

ମୁଁ ଗୁଣ୍ଡା ତିନିଜଣଙ୍କୁ ଦେଖି ଅବାକ ହେଇଗଲି, ଦେଖିଲେ ମନେ ହବ, ଏମାନେ ନରହନ୍ତା। କି ବିଶାଳ ଶରୀର। ତିନି ଜଣ ଯାକ ଲୁଙ୍ଗି ପିନ୍ଧିଥାନ୍ତି, ଠୋସ୍ କଥା। ନିଶ ରଖିଥାନ୍ତି ଯେମିତି, ଆଖିର ଚାହାଣୀ ସେମିତି। ଜଣେ ଜଣେ ଗୋଟିଏ ଲେଖା ପହିଲୁମାନ, ହମିଦ୍ ଏମାନଙ୍କ ସଙ୍ଗେ ଆମର ପରିଚୟ କରାଇଦେଲା ପରେ ଆଲୋଚନା ଚାଲିଲା-କ'ଣ କରିବାକୁ ହବ, ଲିଙ୍ଗରାଜକୁ କିଏ ଡ଼ାକିବ, ଶେଷରେ ସ୍ଥିର ହେଲା-ଗଙ୍ଗା ମନ୍ଦିର ପୋଖରୀ ନିକଟରେ ଗୁଣ୍ଡା ତିନି ଜଣ ରହିବେ, ଲିଙ୍ଗରାଜକୁ ଗଙ୍ଗାମନ୍ଦିର ପୋଖରୀବାଟେ ଡ଼ାକି ଆଣିବାକୁ ହବ, ସେଇଠି ଗୁଣ୍ଡାମାନେ ତାକୁ ଧରି ମାଡ଼ ଦେଇ ଗଙ୍ଗାମନ୍ଦିର ପୋଖରୀରେ ପକେଇଦେବେ ଏବଂ ତା'ର ସାଇକେଲକୁ ଛଡ଼େଇ ନେବେ।

ମୁଁ ଦେଖିଲି-ତିନିଜଣ ଗୁଣ୍ଡା ନିଯୁକ୍ତ କରିବା ବେଶି ହେଇ ଯାଉଛି କାରଣ ଏ ତିନିଜଣକ ମଧ୍ୟରୁ ଲିଙ୍ଗରାଜ ଜଣକୁ ସରି ନୁହଁ। ଜଣେ ଜଣେ ଲିଙ୍ଗରାଜର ଗୋଟିଏ ଗୋଟିଏ ଯମ। ତିନିଟା ଯମ କ'ଣ ଦରକାର? ଏ ତିନି ଜଣକ ମଧ୍ୟରୁ ଜଣେ ହେଲେ ଲିଙ୍ଗରାଜକୁ ଯଥେଷ୍ଟ, ତା'ପରେ ଏମାନେ ଯେଉଁ ରାଗୀ ଜଣା ଯାଉଛନ୍ତି ଲିଙ୍ଗରାଜକୁ ଏମାନେ ଜୀବନରୁ ମାରି ଦେବେ। ଏମାନେ ଯେଉଁ ଉର୍ଦ୍ଦୁ ଭାଷାରେ କଥାବାର୍ତ୍ତା ହେଲେ, ଶାଳେକୁ ଗଙ୍ଗାମନ୍ଦିର ମେ ଡ଼ାଲ ଦୋଙ୍ଗା ହଡ଼ି ତୋଡ଼ ଦୋଙ୍ଗା, ଉସେ ଲାସ୍ ଖିଞ୍ଚ ଲୋଗା।

ମୁଁ ଶୁଣି କାଠ । ଭାବିଲି-ଏ ଦୁର୍ବୃତ୍ତଙ୍କୁ ଲିଙ୍ଗରାଜର ପ୍ରତିଶୋଧ ନବା ପାଇଁ ନିଯୁକ୍ତ କରିବା ଉଚିତ୍ ହଉ ନାହିଁ । ଏଗୁରାକ ମଣିଷ ନୁହନ୍ତି । ଏଗୁରା ହିଂସ୍ର ଜନ୍ତୁ । ମୁଁ ହମିଦ୍‌କୁ ବାହାରକୁ ଡ଼ାକି ଆଣି ସବୁ କଥା କହିଲି ଯେ ଏମାନଙ୍କୁ ନିଯୁକ୍ତ କରିବା ଠିକ୍ ହଉ ନାହିଁ । ଏମାନେ ଲିଙ୍ଗରାଜଙ୍କୁ ଜୀବନରୁ ମାରି ଦେଇପାରନ୍ତି । ଶେଷରେ ଆମେ ସମସ୍ତେ murder caseରେ ପଡ଼ିବୁ, କାରଣ ନିକଟରେ ତା'ର ଆମର ଧସ୍ତାଧସ୍ତି ହେଇ ଯାଇଛି, ତେଣୁ ଆମେ ନିଶ୍ଚୟ ଅଭିଯୁକ୍ତ ହବୁ । ହମିଦ୍ ମୋ କଥା ମାନିଲା ନାହିଁ । ଶେଷରେ ଜଣେ ଲୋକ ଠିକ୍ ହେଲା, ଲିଙ୍ଗରାଜଙ୍କୁ ଅନ୍ଧାର ରାତିରେ ଗଙ୍ଗା ମନ୍ଦିର ପୋଖରୀ ବାଟେ ଓଡ଼ିଆ ବଜାରକୁ ଡ଼ାକି ଆଣିବା ପାଇଁ । ମୁଁ ମନେ ମନେ ଭଗବାନଙ୍କୁ ଡ଼ାକିଲି-ଲିଙ୍ଗରାଜଟା ବଞ୍ଚି ଯାଉ, କେହି ମୋ କଥା ମାନିଲେ ନାହିଁ କି ଶୁଣିଲେ ନାହିଁ ।

ଯେଉଁ ଦିନ ରାତିରେ ଲିଙ୍ଗରାଜଙ୍କୁ ଡ଼ାକି ଆଣି ମାଡ଼ ଦବାର କଥା, ସେଦିନ ରାତିରେ ମୁଁ ଘରେ ରହିଲି । କଥା ଥିଲା-ଆମ ଦଳର ପିଲାଏ ସେଦିନ କେହି କୁଆଡ଼େ ଯିବୁ ନାହିଁ, ଯେ ଯା'ର ଘରେ ରହିବୁ, ଯା' କରିବାର ଗୁଣ୍ଡାମାନେ କରିବେ । କେବଳ ଲିଙ୍ଗରାଜଙ୍କୁ ତାଙ୍କୁ ଆଗରୁ ଥରେ ଦିନ ବେଳା ଚିହ୍ନେଇ ଦବା ଦରକାର, ସେତକ ମଧ ଦରକାର ହେଲା ନାହିଁ । କାରଣ-ସେ ଗୁଣ୍ଡାମାନେ ଲିଙ୍ଗରାଜଙ୍କୁ ଆଗରୁ ଦେଖିଥିଲେ, ଯେଉଁ ରାତିରେ ଲିଙ୍ଗରାଜଙ୍କୁ ମାଡ଼ ହବାର କଥା, ମୁଁ ଘରେ ଥାଇ ମଧ ବିଶେଷ ଦୁଷ୍ଚିନ୍ତାରେ ପଡ଼ିଲି । କ'ଣ ହେବ? ଲିଙ୍ଗରାଜ ଯଦି ପ୍ରକୃତରେ ମାଡ଼ ଖାଇ ମରେ, ତା'ହେଲେ ଆମ ଅବସ୍ଥା କ'ଣ ହବ? କି ଭୁଲ କାମ ଏସବୁ । ଗୁଣ୍ଡା ଲଗେଇ ତାଙ୍କୁ ମାଡ଼ ଦବା ଉଚିତ୍ ହେଲା ନାହିଁ । ଏସବୁ ଘଟଣା ବାବା, ମା' ଜାଣିଲେ କ'ଣ କହିବେ? କ'ଣ ହବ? ଏକେତ ପାଠ ଛାଡ଼ି ବୁଲୁଥିଲି, କମ୍ପାଉଣ୍ଡରୀ ପାଠ ପଢ଼ିବାକୁ ଆସିଲି, ସେଥିରେ ଏ ବିଡ଼ମ୍ବନା ଘଟିଲା । ଏମିତି କେତେ କ'ଣ ଭାବିଲି, ରାତିରେ ଭଲ ନିଦ ହେଲା ନାହିଁ ।

ରାତି ପାହିଲା । ତହିଁ ଆରଦିନ ଭୟ ଭୟରେ outdoorକୁ ଗଲି ଭାବି ଭାବି-ବୋଧେ କାଲି ରାତିରେ ଲିଙ୍ଗରାଜଙ୍କୁ ଗଙ୍ଗା ମନ୍ଦିର ପୋଖରୀରେ ମାଡ଼-ଅର୍ଚ୍ଚନା ସହିତରେ ଭଲ ଭାବରେ ବିସର୍ଜନ କରା ଯାଇଥିବ କିନ୍ତୁ outdoorରେ ଯାଇ ଦେଖେ ଲିଙ୍ଗରାଜ ବିଷନ୍ନ ବଦନରେ ସେଠି ଯାଇ ହାଜର । ମୁଁ ଦେଖି ଅବାକ ହେଲି । ଏ ଆଉ କିଛି ନୁହଁ । ଲିଙ୍ଗରାଜ ବୋଉର ଦୁତିଆ ଓଷା କରିବା ଫଳ । ଖବର ନେଲି-ଆମ ଦଳର ପିଲାମାନେ ମୋତେ ଗୁପ୍ତ ଭାବରେ ହସିହସି କହିଲେ, କାଲି ରାତିରେ ଜଣେ ଲୋକ ଆସିଥିଲା ଲିଙ୍ଗରାଜଙ୍କୁ ଡ଼ାକି, ଓଡ଼ିଆ ବଜାରକୁ ଗୋଟାଏ ରୋଗୀ ବିଷୟରେ ଯିବା ପାଇଁ କିନ୍ତୁ ଲିଙ୍ଗରାଜ ଆଦୌ ପଦାକୁ ବାହାରିଲା ନାହିଁ । କିଏ ଜଣେ କହିଲା, ତାଙ୍କ ଦିହ ଭଲ ନାହିଁ, ସେ ଯାଇ ପାରିବେ ନାହିଁ । ବୋଧେ ତାକୁ କିଏ ଆଗରୁ ସତର୍କ କରେଇ ଦେଇଥିଲା, ରାତିରେ କେହି ଡ଼ାକିବାକୁ ଆସିଲେ କୁଆଡ଼େ ଯିବ ନାହିଁ ।

ମୁଁ ଭାବିଲି, ଭଲ ହେଇଛି, ଅକାରଣ ମରି ଯାଇଥାନ୍ତା । ଆମେ ଗୁରାଏ ସନ୍ଦୁଳି ହେଇଥାନ୍ତୁ । ହମିଦ୍ ମଧ ମୋତେ ସବୁ କଥା କହିଲା-କେମିତି ଜଣେ ଲୋକ ଆସିଥିଲା ଲିଙ୍ଗରାଜଙ୍କୁ ଡ଼ାକିବା ପାଇଁ, ସେ ଗଲା ନାହିଁ, ଏଣୁ ତାକୁ ମାଡ଼ ଦେଇ ହେଲା ନାହିଁ, ସେ ବଞ୍ଚିଗଲା । ମୁଁ ହମିଦ୍‌କୁ କହିଲି, ଯା' ହବାର ଭଲ ହେଇଛି, ଗୁଣ୍ଡା ଲଗେଇ ତାକୁ ମାଡ଼ ଦବା ଅତି ଗର୍ହିତ କଥା ହେଇଥାନ୍ତା, ଆମେ ତାକୁ ଯା'କରିବାର କରିବା । ହମିଦ୍‌ର ମନ ଏଥିରେ ସନ୍ତୁଷ୍ଟ ନୁହେଁ । ତା'ର ଇଚ୍ଛା ଥିଲା, ଲିଙ୍ଗରାଜଙ୍କୁ ଆହୁରି ଗୁରାଏ ମାଡ଼ ହେଇଥିଲେ ଭଲ ହେଇଥାନ୍ତା ।

ପ୍ରକୃତରେ ଆମେ ଲକ୍ଷ୍ୟ କଲୁ, ଲିଙ୍ଗରାଜ ରାତିରେ କେତେଦିନ ଯାଏ ଆଉ କୁଆଡ଼େ ଗଲା ନାହିଁ । କାରଣ ଆଗେ ଆମେ ବହୁବାର ଦେଖିଛୁ, ଲିଙ୍ଗରାଜ ବୁଲାବୁଲି କରି ଅନେକ ରାତିରେ ଘରକୁ ଫେରୁଥିଲା, ଏବେ ଦେଖିଲୁ ଦିନ ବେଳା ମଧ କୁଆଡ଼େ ବେଶି ବୁଲିବାକୁ ବାହାରିଲା ନାହିଁ । ଝଡ଼ି କଣ୍ଟା ହେଇଗଲା । ଆଗର ସେ ଗୁଣ୍ଡାଳିଆ ଧରଣର କଥାବାର୍ତ୍ତା, ଚାଲିଚଳଣ ଆଉ ନାହିଁ ।

ତା'ର ଉପୁରି ରୋଜଗାର ମଧ୍ୟ କମିଗଲା, କାରଣ କେତେକ ଡ଼ାକ୍ତର ତାକୁ ଆଗେ ରୋଗୀ ସଂକ୍ରାନ୍ତରେ ସାଙ୍ଗରେ ଡ଼ାକି ନେଇ ଯାଉଥିଲେ ଅପରେସନ୍‌ରେ ସାହାଯ୍ୟ କରିବା ପାଇଁ, ଅପରେସନ୍ ପରେ ଦୈନିକ ଡ୍ରେସିଂ କରିବା ପାଇଁ। ଏଥିରେ ତା'ର ଦୈନିକ ବେଶ୍ ଦି'ପଇସା ହାତ ପୈଠ ହଉଥିଲା। ବର୍ତ୍ତମାନ ସବୁ ଆତୁ ବନ୍ଦ। ବାହାରକୁ ଯିବା କ୍ୱଚିତ୍, ସେ ପୁଣି ଦିନବେଳା।

ଆମ ସହିତରେ ଲିଙ୍ଗରାଜର କଥାବାର୍ତ୍ତା ବନ୍ଦ। ଦିନେ ଆମେ ସବୁ ଜାଣି କରି ବେଞ୍ଚରେ ନ ବସି, ଧାଡ଼ି ବାନ୍ଧି ତଳେ ବସିଲୁ। ଏଇ ସମୟରେ କ୍ୟାପଟେନ୍ କେ.ଏମ୍.ରାୟ ଆମକୁ ଦେଖି ପଚାରିଲେ, କିରେ ତଳେ କାହିଁକି ବସିଛ? ଆମେ ମିଛରେ କହିଲୁ, ଲିଙ୍ଗରାଜ ଆମକୁ ବେଞ୍ଚରେ ବସିବାକୁ ମନା କରିଛି। ଏଥିରେ କ୍ୟାପଟେନ୍ କେ.ଏମ୍.ରାୟ ବ୍ୟସ୍ତ ହେଇ କହିଲେ, ନା, ତୁମେମାନେ ବେଞ୍ଚରେ ବସିବ, ଲିଙ୍ଗରାଜ ଗଲା କୁଆଡ଼େ? କାହିଁକି ସେ ତୁମମାନଙ୍କୁ ବେଞ୍ଚରେ ବସିବାକୁ ଦଉନାହିଁ? କେ.ଏମ୍.ରାୟ ଚାଲିଗଲେ, ଆମେ ସଦର୍ପେ ଯାଇ ବେଞ୍ଚରେ ବସିଲୁ।

ଏଇ ଘଟଣାରେ ସେ ବୋଧହୁଏ ଲିଙ୍ଗରାଜକୁ କିଛି ଗାଳିଗୁଲଜ କଲେ। ଲିଙ୍ଗରାଜ ଆହୁରି କିଛି ଦବିଗଲା ପରି ଜଣାଗଲା। ଆମେ ଲିଙ୍ଗରାଜକୁ ବେଳେବେଳେ ଥଟ୍ଟା ପରିହାସ କରିବାକୁ ଆରମ୍ଭ କଲୁ। ସେ ଚିଡ଼ିଗଲେ ମଧ୍ୟ କିଛି କରିପାରେନା, ପାଟି ଖୋଲିଲେ ଆହୁରି ଚିଡ଼େଇବୁ, ଥଟ୍ଟା କରିବୁ।

ଏଥିମଧ୍ୟରେ ଆମେ କମ୍ପାଉଣ୍ଡରୀ ପାଠ ପଢ଼ାରେ ଛ'ମାସ ଅତିକ୍ରମ କରି senior ହେଇଗଲୁ। ଆମର senior ପିଲାଏ ପାସ୍ କରି ଚାଲିଗଲେ। Senior ପିଲାଙ୍କ ଭିତରୁ ଫେଲ୍ ପିଲାଏ ଆମ ସହିତ ମିଶିଲେ। ଆମ ତଳକୁ ନୂଆ ପିଲାଏ କମ୍ପାଉଣ୍ଡରୀ ପାଠରେ ଭର୍ତ୍ତି ହେଇ ଆମର junior ହେଇ ଯୋଗ ଦେଲେ। ଆମେ ବର୍ତ୍ତମାନ senior ପିଲା, ପୂର୍ବର ଭୟ, ଭ୍ରାନ୍ତି, ଘୃଣା ସବୁ ଲୋପ ହେଇ ଯାଇଛି। ଜଣେ ଜଣେ ପୁରୁଖା ଲୋକ ପାଲଟି ଗଲୁ। ମୁଁ ଭାବିଲି-ଥିଲି କି, ହେଲି କି, ଦେଖ ମୋର ଚାଲି କି।

କ୍ୟାପଟେନ୍ କେ.ଏମ୍.ରାୟ ମୋତେ ଏବଂ ହମିଦ୍‌କୁ ବେଶି ଭଲ ପାଉଥାନ୍ତି। ସବୁ କଥାରେ ଆମ ଦି'ଜଣଙ୍କୁ ଡ଼ାକରା, ବିଶ୍ୱାସ। ଆମେ ମଧ୍ୟ ଭଲ ପଢୁଥାଉ। ସେତେବେଳେ କମ୍ପାଉଣ୍ଡରୀ ପାଠ ବର୍ଷେ ପଢ଼ିବାକୁ ହଉଥିଲା। ଏଣୁ ଆଉ ଛ'ମାସ ପରେ ଆମେ ଜଣେ ଜଣେ କମ୍ପାଉଣ୍ଡର ହବୁ। କ୍ୟାପଟେନ୍ କେ.ଏମ୍.ରାୟଙ୍କ ମୋ ପ୍ରତି ବିଶେଷ ଶୁଭ ଦୃଷ୍ଟି ଥାଏ। ସେ ମୋର ପାଠ ପଢ଼ା, କାମ କାର୍ଯ୍ୟରୁ କ'ଣ ନଜର କଲେ ମୁଁ କହି ପାରିବିନି କିନ୍ତୁ ସେ ମୋତେ ମଝିରେ ମଝିରେ କହିଲେ, ତୁ matric ପାସ୍ କରି medical କୁ ଚାଲିଆ, ପଢ଼, ଡ଼ାକ୍ତର ହେଇଯିବୁ। ମୁଁ ମଧ୍ୟ କମ୍ପାଉଣ୍ଡରୀ ପଢ଼ିବା ଅବସ୍ଥାରେ medical ଛାତ୍ରଙ୍କର ଚାଲିଚଳଣ ଦେଖି ମୋର ମନ ହୁଏ-ମୁଁ medicalରେ ପଢ଼ନ୍ତି କି, ପୁଣି ଭାବେ-ମୁଁ medical ରେ ପଢ଼ିବା ଆକାଶ କୁସୁମ। କେତେ କଷ୍ଟରେ ତ କମ୍ପାଉଣ୍ଡରୀ ପଢୁଛି, ଆଉ medical ରେ ପଢ଼ିବି!

ଏଥି ମଧ୍ୟରେ ଆଉ ଗୋଟିଏ ମଜାର ଘଟଣା କରି ବସିଲି-ମୁଁ କମ୍ପାଉଣ୍ଡରୀ ପଢ଼ିବା ବେଳେ ମୃଣାଳ ଏବଂ ପ୍ରିୟ ସହିତରେ ପୂର୍ବ ଭଳି ସଦ୍‌ଭାବ ଥାଏ, ତେବେ ମୃଣାଳ ମୋତେ ବେଳେବେଳେ ପରିହାସ କରେ ଯେ, ମୁଁ କମ୍ପାଉଣ୍ଡରୀ ପାଠ ପଢୁଛି, ତାଚ୍ଛଲ୍ୟ ଭାବ ଦେଖାଏ। ପ୍ରିୟ ସେମିତି କିଛି କରେ ନାହିଁ। ପ୍ରିୟ ଜାଣେ ତା'ର ବାବା ନିମାଇ ଚରଣଙ୍କ ନିର୍ଦ୍ଦେଶନାରେ ମୁଁ କମ୍ପାଉଣ୍ଡରୀ ପାଠ ପଢୁଛି। ମୁଁ ପାଠ ଛାଡ଼ି କାହିଁକି ବୁଲୁଥିଲି, ପ୍ରିୟ ଭଲ କରି ଜାଣେ। ଏଣୁ ସେ କେବେ କିଛି ତାଚ୍ଛଲ୍ୟ ଭାବ ଦେଖାଏ ନାହିଁ କି ପରିହାସ କରେ ନାହିଁ।

ମୁଁ ମନେ ମନେ ସ୍ଥିର କଲି, ମୃଣାଳକୁ ଥରେ ଜଣେ କମ୍ପାଉଣ୍ଡରୀ ଛାତ୍ର ଦ୍ୱାରା ବୋକା ବନେଇବି। ମୋ ସହିତ ଜଣେ ତିଗିରିଆର ପିଲା ପଢୁଥିଲା, ନାଁ-ସଦାନନ୍ଦ ତ୍ରିପାଠୀ, ଭାରି ମଜାର ପିଲା। ତାକୁ ଯେମିତି ସଜେଇବ, ସେ ସେମିତି ସାଜିବ। ଭଲ ଅଭିନୟ କରିବାର ତା'ର ଦକ୍ଷତା ଥିଲା। ସେ ମଧ୍ୟ ଭଲ ଗୀତ ଗାଇ ପାରୁଥିଲା। ସେ ମୃଣାଳକୁ ମୋ ସହିତ ବୁଲିବାର ଦେଖିଛି। ମୃଣାଳ କେମିତି ମୋତେ ଘୃଣା କରୁଛି, ମୁଁ କମ୍ପାଉଣ୍ଡରୀ ପଢୁଛି

ବୋଲି, ତାକୁ ସବୁ କଥା କହିଲି । ଆଉ ମୃଣାଳକୁ କେମିତି ବୋକା ବନେଇବା ସେ କଥା ମଧ କହିଲି । ଶେଷରେ ସଦାନନ୍ଦ, ମୁଁ ସ୍ଥିର କଲୁ । ସଦାନନ୍ଦ ଗୋଟାଏ ନିପଟ ବୋକା ମଫସଲିଆ ସାଜିବ, ମୁଁ ମୃଣାଳ ସହିତରେ ତା'ର ପରିଚୟ କରେଇଦେବି, ତା'ପରେ ମୃଣାଳଠୁ ସେ କିଛି ପଇସା ଝଡ଼େଇ ଖାଇବ । କିଛିଦିନ ଏମିତି ଭାବରେ ଗତ ହେଲେ, ପରେ ସେ ମୃଣାଳକୁ ତା'ର ସ୍ୱରୂପ ଜଣେଇବ । ଏହାଦ୍ୱାରା ମୃଣାଳ ଜାଣିବ, କମ୍ପାଉଣ୍ଡରୀ ଯେଉଁମାନେ ପଢ଼ନ୍ତି ତାଙ୍କ ମୁଣ୍ଡରେ ମଧ ବୁଦ୍ଧି ଅଛି, ସେମାନେ ଏତେ ବୋକା ବା ନିକୃଷ୍ଟ ନୁହନ୍ତି ।

ପ୍ରିୟ କେତେଦିନ ହବ କୁଆଡ଼େ ଯାଇଥାଏ । ସେ ଆମ ସହିତରେ ସେତେବେଳେ ବୁଲାବୁଲି କରୁ ନଥାଏ । ପ୍ରିୟ ଥିଲେ, ମୃଣାଳକୁ ବୋକା ବନେଇବା ଏତେ ସହଜ ହୁଅନ୍ତା ନାହିଁ । କାରଣ ମୃଣାଳ ଯେତେ ସରଳବିଶ୍ୱାସୀ ପ୍ରିୟ ସେତେ ନୁହଁ । ସେ ସଦାନନ୍ଦର ଛଳନା ଧରି ପାରିଥାନ୍ତା ।

ସଦାନନ୍ଦକୁ କହିଲି, ତୁ ଖାଲି ଗୋଟାଏ ଧୋତି ପିନ୍ଧି ତା'ର କୁଞ୍ଚ ଅଂଶଟାକୁ ଖୋଲି ଦିହରେ ପକେଇ ଘୋଡ଼ି ହେଇ ମେଡ଼ିକାଲ ପଡ଼ିଆକୁ ୪ଟା ପରେ ଯିବୁ । ମୁଁ, ମୃଣାଳ ଯୁଆଡ଼େ ଯିବୁ, ତୁ ଆମ ପଛେ ପଛେ ବୁଲିବୁ । ତୋତେ ଯାହା ପଚାରିଲେ, ବୋକା ଭଳି କଥା କହିବୁ, ଚାଲିଚଳନ ଅଙ୍ଗଭଙ୍ଗୀ ଦେଖେଇବୁ । ସତକୁ ସତ ସଦାନନ୍ଦକୁ ଯେମିତି କହିଥିଲି, ସଦାନନ୍ଦ ଅବିକଳ ସେମିତି ଅଭିନୟ କଲା । ଠିକ୍ ୪ଟା ବେଳେ ମେଡ଼ିକାଲ ପଡ଼ିଆରେ ସଦାନନ୍ଦ ରାସ୍ତାକଡ଼ର ଦେବଦାରୁ ଗଛ ମୂଳେ ବୁଲୁଛି, ମୁଁ ମୃଣାଳ ଯେମିତି ମେଡ଼ିକାଲ ପଡ଼ିଆକୁ ଆସିଛୁ, ଆମ ଦି'ଜଣକୁ ଦେଖି ସଦାନନ୍ଦ ଉଭୟଙ୍କୁ ଦି'ଟା ଅତି ଗାଉଁଲି ଧରଣର ଜୁହାର ହେଲା । ମୁଁ ଦେଖିଲି, ସଦାନନ୍ଦ ଠିକ୍ ଅଭିନୟ କରୁଛି ।

ସେତେବେଳେ ମେଡ଼ିକାଲ ପଡ଼ିଆରେ ଆମ କ୍ଲବ୍ ତରଫରୁ କେତେଦିନ football ଖେଳ ବନ୍ଦ ହେଇଥାଏ । ଏଣୁ ଆମେମାନେ ଯେ ଯୁଆଡ଼େ ବୁଲୁଥିଲୁ । ମୁଁ, ମୃଣାଳ ସେହି ମେଡ଼ିକାଲ ପଡ଼ିଆରେ ଖାଲି ବୁଲୁଥିଲୁ, ବସୁଥିଲୁ, ଗପ କରୁଥିଲୁ, ବେଳେବେଳେ ଦେବଦାରୁ ଗଛରେ ଚଢ଼ି ବସୁଥିଲୁ, ସଞ୍ଜ ହେଲେ ଘରକୁ ଫେରୁଥିଲୁ ।

ମୁଁ, ମୃଣାଳ ଯୁଆଡ଼େ ବୁଲିବାକୁ ଯାଉଛୁ, ସଦାନନ୍ଦ ଆମ ପଛେ ପଛେ ବୋକାଟା ଭଳି ଚାଲିଛି । ମୃଣାଳ ମୋତେ ପଚାରିଲା, ଏ କିଏ? ଏ କାହିଁକି ଆମ ପଛେ ପଛେ ବୁଲୁଛି? ମୁଁ ମୃଣାଳକୁ କହିଲି, ମୁଁ ଜାଣେନା ସେ କିଏ? ମୃଣାଳ ତାକୁ ପଚାରିଲା, ତୁ କାହିଁକି ଆମ ପଛେ ପଛେ ବୁଲୁଛୁ? ତୁ ଅନ୍ୟ କୁଆଡ଼େ ଯାଉନୁ? ସଦାନନ୍ଦ ନାହିଁ କଲା, କହିଲା, ନାଁ ମୁଁ ତୁମ ସାଙ୍ଗରେ ବୁଲିବି । ମୃଣାଳ କହିଲା କି ବିଭ୍ରାଟ! ଏ ଆମ ପଛରେ କାହିଁକି ବୁଲିବ? ମୃଣାଳ ତାକୁ ତା'ର ଘର କେଉଁଠି? ସେ କାହିଁକି ଇଆଡ଼େ ଆସିଛି? କ'ଣ ଚାହେଁ? ସବୁ ପଚାରିଲା । ସଦାନନ୍ଦ ନିହାତି ବୋକା ଲୋକଙ୍କ ପରି ଅତି କଞ୍ଚା ଓଡ଼ିଆରେ ଉତ୍ତର ଯା' ଦଉଥାଏ, ମୃଣାଳ କିଛି ବୁଝି ପାରୁ ନ ଥାଏ । ଏଣୁ ମୋତେ ମୃଣାଳକୁ ତା'ର ଭାଷା ସବୁ ବଙ୍ଗଳାରେ ରୂପାନ୍ତର କରି ବୁଝେଇ ଦବାକୁ ହଉଥାଏ ।

ସଦାନନ୍ଦ ପ୍ରକୃତ ଜଣେ ବୋକା ଲୋକ ପରି ଏତେ ସୁନ୍ଦର ଆଉ ନିଖୁଣ ଅଭିନୟ କରୁଥାଏ, ଦେଖିଲେ ଜଣେ ନ ହସି ରହି ପାରିବନି । ମୁଁ କିନ୍ତୁ ବହୁ କଷ୍ଟରେ ହସ ଚାପି ରହିଥାଏ । ସଦାନନ୍ଦ ସାଇକେଲଟା ଦେଖିଲେ ଚମକି ପଡୁଥାଏ, ବଗି ଗାଡିଟା ଦେଖିଲେ ଚମକି ପଡୁଥାଏ । ପଚାରୁଥାଏ, ଏ କ'ଣ? ମୁଁ ତାକୁ ସବୁ ବୁଝେଇ ଦଉଥାଏ । ମୃଣାଳ ତା'ର ବୋକାମି ଦେଖି ଆଶ୍ଚର୍ଯ୍ୟ ହେଇ ବେଳେବେଳେ କହି ପକଉଥାଏ, ଏଡ଼େ ବୋକାଲୋକ ମୁଁ କେଭେ ଦେଖି ନଥିଲି ।

ମୁଁ ଥରେ ମୃଣାଳକୁ କହିଲି, ଏ ଲୋକଟା ରସଗୋଲା, ପୁରି କି ସିଙ୍ଗଡ଼ା କେଭେ ଚାଖି ନଥିବ । ଏ କଥା ମୁଁ ମୃଣାଳକୁ କହିବାର ଉଦ୍ଦେଶ୍ୟ, କିମିତି ତା' ନାଁ କହି ମୃଣାଳଠୁଁ କିଛି ଝଡ଼େଇ ଖାଇବା । ମୃଣାଳ ତାକୁ ପୁରି, ସିଙ୍ଗଡ଼ା, ରସଗୋଲା କଥା ପଚାରିବାରୁ ସଦାନନ୍ଦ

ଇମିତି ଛଳନା କରି କହିଲା, ଯେମିତି ସେ ଆଦୌ ସେସବୁ ଜିନିଷ କେବେ ଦେଖିନାହିଁ, ଖାଇବା ତ ଦୂରର କଥା । ଆଉ ମଧ୍ୟ ସଦାନନ୍ଦ ଏମିତି ଭଙ୍ଗୀ ଦେଖେଇଲା, ସେ ସତେ ଯେମିତି ମୃଣାଳକୁ ମୋ ଠାରୁ ବେଶି ଭଲପାଏ । ମୋ ଉପରେ ମଝିରେ ମଝିରେ ବିରକ୍ତ ହଉଥାଏ । ମୃଣାଳ ମଧ୍ୟ ବୁଝି ପାରିଲା, ସଦାନନ୍ଦ ମୋ ଅପେକ୍ଷା ତାକୁ ବେଶି ଭଲ ପାଉଛି । ଏଣୁ ମୃଣାଳ ତା'ପ୍ରତି ବେଶି ସହାନୁଭୂତିଶୀଳ ହେଇ ପଡ଼ିଲା । ମୃଣାଳ ଶେଷରେ ଦିନେ କହିଲା, ଯାକୁ ଦିନେ ଭଲ ଭଲ ଜିନିଷ ଖୁଆଇବା । ମୁଁ ଭାବିଲି ମୋ ଚକ୍ରାନ୍ତଟା ଏଥର ସଫଳ ହେଲା ।

ମୃଣାଳ କହିଲା, ଏଇଟାତ ଏଡ଼େ ମଫସଲୀ ଯେ ଏଇଟାକୁ ନେଇ କୋଉ ଦୋକାନରେ ବସେଇ ଜଳଖିଆ ଖୋଇ ହବନି । ଏଇଟାକୁ ଏଇ ମେଡ଼ିକାଲ ପଡ଼ିଆରେ ଖୋଇବା । ମୁଁ ଟଙ୍କା ଦେବି, ତୁ ମଙ୍ଗଳାବାଗରୁ କିଣି ଆଣିବୁ । ଏଇ ମେଡ଼ିକାଲ ପଡ଼ିଆରେ ବସି ତିନିହେଁ ଖାଇବା । ଏଇ କଥା ସ୍ଥିର ହେଲା । ଦିନେ ସତକୁ ସତ ମୃଣାଳ ଟଙ୍କା ଦେଲା ମୁଁ ଯାଇ ମଙ୍ଗଳାବାଗରୁ ସବୁ ରକମ ଜଳଖିଆ ପତର ଠୁଙ୍ଗାରେ କିଣି ଆଣିଲି । ଆମେ ତିନିହେଁ ବସି ଖାଇଲୁ । ସଦାନନ୍ଦ ଏମିତି ବୋକାଙ୍କ ଭଳି ନିଖୁଣ ଅଭିନୟ କଲା, ଜଣେ ଦେଖିଲେ ଆଶ୍ଚର୍ଯ୍ୟ ନହେଇ, ନହସି ରହିପାରିବନି । ସଦାନନ୍ଦ ପୁରିରୁ ଖଣ୍ଡେ କାମୁଡ଼ି ଦେଇ ଛିଣ୍ଡେଇ ଫୋପାଡ଼ି ଦେଲା । ସିଙ୍ଗଡ଼ାରୁ ସେମିତି କଲା । ପୁଣି କିଛି ଖାଇଲା । ରସଗୋଲା ଖାଇ ହସିହସି ଗଡ଼ିଗଲା । ମୃଣାଳକୁ ଭାରି ଭଲ ବାବୁ ବୋଲି ପ୍ରଶଂସା କଲା । ମୁଁ ଏ ଅଭିନୟ ଦେଖି ହସ ଆଉ ଚାପି ରଖି ପାରୁ ନଥାଏ । ତଥାପି ରହିଲି । ମୃଣାଳ ସଦାନନ୍ଦର ଖାଇବା ଦେଖି ହସିହସି ମନ୍ତବ୍ୟ କଲା, ଏଟାତ ମାନୁଷ ନୟେରେ, ଏଟା ବାନ୍ଦର । ନିହାତ ଜଙ୍ଗଲୀଟା ।

ପ୍ରତ୍ୟେକ ଦିନ ସଦାନନ୍ଦ ମେଡ଼ିକାଲ ପଡ଼ିଆରେ ଯାହା ଯେମିତି ବୋକାମିର ଭଙ୍ଗୀ ଦେଖାଏ, ଆମେ ତହିଁ ଆରଦିନ outdoor ରେ ଆଲୋଚନା କରି ହସୁ । ସଦାନନ୍ଦ କହେ, ମୃଣାଳଟା ଭାରି ସରଳ ବିଶ୍ୱାସୀ । ଯେଉଁଦିନ ମୃଣାଳଠାରୁ ଜଳଖିଆ ଖାଇଲୁ, ତହିଁ ଆରଦିନ ସଦାନନ୍ଦ, ମୁଁ outdoorରେ କଥାବାର୍ତ୍ତା ହେଇ ସ୍ଥିର କଲୁ ଏଥର ଆଉ ମୃଣାଳକୁ ଠକିବା ନାହିଁ । ସଦାନନ୍ଦ ତା'ର ନିଜର ପରିଚୟ ଦବ । ସେଇଆ କରା ହେଲା । ଯେମିତି ମୃଣାଳ, ମୁଁ, ସଦାନନ୍ଦ ତିନିହେଁ ମେଡ଼ିକାଲ ପଡ଼ିଆରେ ଭେଟ ହଉ, ସେମିତି ଭେଟାଭେଟି ହେଲୁ । ସଦାନନ୍ଦ କିନ୍ତୁ ଖାଲି ଧୋତି ଖଣ୍ଡେ ପିନ୍ଧି ଆସିବା ପରିବର୍ତ୍ତେ ଆଜି ଧୋତି, କମିଜ୍ ପିନ୍ଧି ବେଶ୍ ସଫାସୁତୁରା, ବାଙ୍ଗ ଚତୁରା ହେଇ ଆସିଥାଏ । ମୋ ଛାତିଟା ଖାଲି ଧଡ଼ଧଡ଼ ହଉଥାଏ । କାରଣ ମୃଣାଳ ମୋ ଚକ୍ରାନ୍ତ ଜାଣି ପାରିଲେ ମୋତେ ମାରି ଗୋଡ଼େଇବ । ପୁଣି ଭାବିଲି, ଯା କରିବ, କରିବ, ଏ ତ ଗୋଟାଏ ମଜାର ଘଟଣା ।

ସଦାନନ୍ଦ ପ୍ରତ୍ୟେକଦିନ ଯେମିତି ମୃଣାଳକୁ ମଫସଲୀ ଧରଣରେ ଓଳଗି ହୁଏ ଆଜି ଆଉ ସେମିତି ନୁହେଁ । ପୂରା ଛାତ୍ର ସୁଲଭ ଭଙ୍ଗୀରେ ଓଳଗି ହେଲା । ମୃଣାଳ ଦେଖି ସ୍ତମ୍ଭୀଭୂତ । ଏ କ'ଣ? ଏ ଲୋକଟା ଆଜି ଏମିତି ବେଶରେ କ'ଣ? ମୁଁ ତ ମୃଣାଳର ଆଶ୍ଚର୍ଯ୍ୟ ହବା ଦେଖି ଚୋରଟା ପରି ହଉଥାଏ । ସଦାନନ୍ଦ, ମୁଁ, ମୃଣାଳ ତିନିହେଁ ମେଡ଼ିକାଲ ପଡ଼ିଆରେ ଗୋଟିଏ ଜାଗାରେ ବସିଲୁ । ମୁଁ, ମୃଣାଳ ଚୁପ୍ ହେଇ ବସିବାରୁ ସଦାନନ୍ଦ ମୃଣାଳକୁ ସମ୍ବୋଧନ କରି ହସିହସି କହିଲା, ସଙ୍ଗାତ ଆଜି ଗୋଟିଏ ମୁଁ ଗୀତ ବୋଲିବି, ମୃଣାଳ କିଛି କହିଲାନି । ସେ ବୋଧେ ବୁଝି ପାରିଲା, ଏ ମୋରି ଚକ୍ରାନ୍ତ । ମୁଁ ଜଣକୁ ଇମିତି ସଜେଇ ଆଣି ଏ ସବୁ ଘଟଣା କରିଛି । ମୃଣାଳ ଚୁପ୍ ହେଇ ବସିଥାଏ । ମୁଁ ସଦାନନ୍ଦକୁ କହିଲି, ହଉ ବୋଲ ।

ସଦାନନ୍ଦ ଗୀତ ବୋଲିଲା । ଗୀତର ମର୍ମ ହଉଛି, ସଙ୍ଗାତ, କିଛି ମନେ କରିବନି, ମୁଁ ମଣିଷ, "ବାନ୍ଦର" ନୁହେଁ । ତୁମକୁ ଠକିବା ପାଇଁ ଏମିତି ଗୋଟାଏ ଛଳନା କରିଥିଲୁ । କିଛି ଭାବିବ ନାହିଁ । ଆମକୁ କ୍ଷମା ଦିଅ । ସଦାନନ୍ଦ ଭଲ ଗୀତ ବୋଲି ପାରେ ଜାଣି ମୁଁ ଏ ଗୀତଟା ରଚନା କରି ଦେଇଥିଲି । ସଦାନନ୍ଦର ଗୀତ ବୋଲିବା ଶେଷ ହେଲାରୁ ମୁଁ ହସିଲି । ସଦାନନ୍ଦ ହସିଲା । ମୃଣାଳ ମୋତେ କିଛି ଆଉ ନକହି ରାଗରେ ଜଳୁଥାଏ । ସଦାନନ୍ଦ

ମୃଣାଳକୁ ନିଜର ପରିଚୟ ଦେଲା । ସେ କମ୍ପାଉଣ୍ଡରୀ ପଢୁଛି, ସେ ମୋର ସାଙ୍ଗ । ଆମେ କମ୍ପାଉଣ୍ଡରୀ ପଢୁଛୁ ବୋଲି, ଆପଣ ଯେ ଆମକୁ ଘୃଣା କରନ୍ତି, ସେଇଥିପାଇଁ ମୁଁ ଆଉ ପୁଳିନ ଉଭୟ ମିଶି ଆପଣଙ୍କଠାରୁ କିଛି ଠକି ଖାଇଲୁ ।

ଏ ଘଟଣା ପରେ ମୃଣାଳ ମୋ ଉପରେ ଭାରି ବିରକ୍ତ ହେଲା । ମୃଣାଳ ଯେତେ ବିରକ୍ତ ହେଲେ ମୁଁ ପୁଣି ଉପରେ ପଡ଼ି ମୃଣାଳ ସାଙ୍ଗରେ ମିଶି ସବୁ କଥାକୁ ପୁଣି [illegible] ବନ୍ଧୁ ନେଇ ଆସିଲି । ସେଇ ମୃଣାଳ ସେଇ ମୃଣାଳ, ସେଇ ମୁଁ, ସେଇ ସାଙ୍ଗସାଥୀ କିନ୍ତୁ ମୃଣାଳର ଆଉ ସଦାନନ୍ଦ ସାଥୀରେ ଭେଟ ହେଇନାହିଁ । ଆମେ ଦିହେଁ ଯେମିତି ସାଙ୍ଗ ଥିଲୁ, ସେମିତି ସାଙ୍ଗ । ମୃଣାଳର ମୋର ବହୁବାର ମନାନ୍ତର ହେଇଛୁ କିନ୍ତୁ ସେ କ୍ଷଣସ୍ଥାୟୀ । ମୃଣାଳ, ମୁଁ ଯେମିତି ଅନ୍ତରଙ୍ଗ ବନ୍ଧୁ ସେମିତି ପ୍ରିୟ ସହିତରେ ବିଶେଷ ମନାନ୍ତର କେଭେ ଘଟିନାହିଁ । ସେ ସବୁକଥାକୁ ସହିଯାଏ । ମୃଣାଳ ମଧ ରାଗିଲେ, ରୁଷିଲେ ଅଳ୍ପ ସମୟ ପରେ ଭୁଲିଯାଏ ।

କମ୍ପାଉଣ୍ଡରୀ ପାଠରେ ଆମେ senior ହେଲା ଦିନୁ ଛାତି କୁଣ୍ଢେମୋଟ । Junior ପିଲାଏ sir, sir ବୋଲି ଡ଼ାକି ଦେଲେ ମନ କେତେ ଉପରକୁ ଉଠି ଯାଉଛି । ଆମେ ବର୍ତ୍ତମାନ ଦେଖୁଛୁ, ଆମେ junior ଥିଲାବେଳେ ଯେମିତି ସବୁ କଥାକୁ ଡ଼ରି ଯାଉଥିଲୁ, ସେମାନେ ସେମିତି ହଉଛନ୍ତି । ଆମେ ଯେମିତି ଆମର senior ପିଲାଙ୍କୁ ଟିକିଏ ଟିକିଏ କଥାରେ ପଛରେ ଗୋଡ଼େଇ ଗୋଡ଼େଇ ପଚାରୁଥିଲୁ, ସେମାନେ ସେମିତି ଆମ ପଛରେ ଗୋଡ଼େଇ ଗୋଡ଼େଇ ପଚାରୁଛନ୍ତି । କେତେ ସମ୍ମାନ ଦେଖଉଛନ୍ତି, ଦୈନିକ ଓଳଗି ହଉଛନ୍ତି କିନ୍ତୁ ଲିଙ୍ଗରାଜ ଯେମିତି ଆମ ଉପରେ ହାକିମୀ ଦେଖଉଥିଲା, ଏ junior ପିଲାଙ୍କ ଉପରେ ଆଉ ସେମିତି ହାକିମୀ ଦେଖେଇ ପାରୁନାହିଁ । ଯା ଦେଖାନ୍ତା ଆମେ ଅଛୁ, ଏଣୁ ସରମ ଲାଗୁଛି, ଆମେ ମଧ ନବାଗତ junior ପିଲାଙ୍କୁ ଲିଙ୍ଗରାଜ ବିରୁଦ୍ଧରେ ସବୁ କଥା କହି କରଗତ କରିନେଲୁ ।

ଏଥି ମଧରେ ଆମର କମ୍ପାଉଣ୍ଡରୀ ପାଠର final ପରୀକ୍ଷା ନିକଟ ହେଇ ଆସିଲା । Pharmacology museum ତା ଆଗରୁ ଦେଖିବା କଥା, museum ର ଚାବି କ୍ୟାପଟେନ୍ କେ.ଏମ୍.ରାୟଙ୍କ ହାତରେ । ଏଥି ମଧରେ ଦେଖିଲୁ ଦିନେ କେ.ଏମ୍.ରାୟ ଆମକୁ ଏବଂ ଲିଙ୍ଗରାଜକୁ ଡ଼ାକି ମିଳାମିଶା କରେଇ ଦେଲେ । ଭଲ କଥା, ମିଳାମଶା ନ କରେଇ ବାଟ ନାହିଁ । କାରଣ ଲିଙ୍ଗରାଜର ରୋଜଗାରର ବାଟ ଆଉ ନାହିଁ । ପଦାକୁ ବାହାରି ପାରିଲା ନାହିଁ । ମନସ୍ତାପରେ ଦେହ ମଧ ଶୁଖି ଝଡ଼ିଗଲା ।

ଯେଉଁଦିନ ଲିଙ୍ଗରାଜ ସହିତରେ ମିଳାମିଶା ହେଲା, ତହିଁ ଆରଦିନ ଆମର ଦଳ ହାଣ୍ଡିଏ ରସଗୋଲା ଆଣି ଲିଙ୍ଗରାଜକୁ ଦେଖେଇ ଦେଖେଇ ତା ସାମନାରେ ଜଣେ ଜଣେ କରି ଖାଇଲୁ । ଲିଙ୍ଗରାଜ ଦେଖି ଲଜ୍ଜିତ ହେଲେ ମଧ କିଛି କହିପାରୁ ନଥାଏ । ଲିଙ୍ଗରାଜ ସହିତରେ ମିଳାମିଶା ହେଲା ପରେ ଲିଙ୍ଗରାଜର ଆମ ପ୍ରତି କି ଶ୍ରଦ୍ଧା କି ଆଦର କି ମଧୁର ବାଣୀ । ବାହାରୁ ଦେଖିଲେ କେହି ଜାଣିବ ନାହିଁ ଯେ ତା'ର ଆମର ଏଥି ପୂର୍ବେ କିଛି ଗଣ୍ଡଗୋଳ ହେଇଥିଲା । ତା'ଦଳର ପିଲାଏ ମଧ ଆମ ସହିତରେ ଖୁବ୍ ମିଶିଗଲେ କିନ୍ତୁ ଆମେ ମିଶିଲେ କ'ଣ ହବ? ମନେ ମନେ ସତର୍କ ରହି ଚଳୁଥାଉ । କ୍ୟାପଟେନ୍ କେ.ଏମ.ରାୟଙ୍କ ଆମ ଉପରେ ବିଶେଷ ଶୁଭଦୃଷ୍ଟି ଥାଏ । ବିଶେଷତଃ ମୋ ଉପରେ ଆଉ ହମିଦ୍ ଉପରେ ।

କ୍ୟାପଟେନ୍ କେ.ଏମ.ରାୟ Pharmacology museum ର ଚାବି ମୋ ଜିମା ଆଉ ହମିଦ୍ ଜିମା ଦେଇଦେଲେ । ଯେତେବେଳେ museum ଦେଖିବା ଦରକାର ପଡ଼େ, ମୁଁ କିମ୍ବା ହମିଦ୍ ଯାଇ କେ.ଏମ.ରାୟଙ୍କ ଠାରୁ ଚାବି ନେଇ ଆସୁ । ଆମେ museum ଖୋଲିଲେ ସବୁ ପିଲାଏ ପଶି ଦେଖନ୍ତି । ଆମେ ବିଶେଷ ଯତ୍ନସହକାରେ museum ଦେଖି ପୁଣି ତାଲା ପକେଇ କେ.ଏମ.ରାୟଙ୍କୁ ଫେରେଇ ଦେଇ ଆସୁ । ଏଥିରେ କେ.ଏମ.ରାୟ ଭାରି ଖୁସି । କମ୍ପାଉଣ୍ଡରୀ ପାଠର ପୂର୍ବ ଦିନ ୧ଟାଏ ବେଳେ ଆମେ ସମସ୍ତେ outdoor ଭିତରେ

ଗୋଟିଏ ଜାଗାରେ ବସିଲୁ । କ୍ୟାପଟେନ୍ କେ.ଏମ.ରାୟ ବସିଲେ । ପରୀକ୍ଷା ବିଷୟରେ ଆମକୁ ଅନେକ କଥା କହି ଆମକୁ ପରୀକ୍ଷା କରିବାକୁ ଚାହିଁଲେ, କିଏ କେମିତି ପଢ଼ିଛନ୍ତି ? ପିଲାମାନେ ମୋ ନାଁ କହିଲେ ଯେ ମୁଁ ଭଲ prepare କରିଛି । କ୍ୟାପଟେନ୍ କେ.ଏମ.ରାୟ ମୋତେ ଅନେକ ଗୁଡ଼ିଏ meteria medica ରୁ ପ୍ରଶ୍ନ ପଚାରିଲେ । ମୁଁ ତାଙ୍କର ସବୁ ପ୍ରଶ୍ନର ଉତ୍ତର ସନ୍ତୋଷଜନକ ଭାବରେ ଦେବାରୁ ସେ ମୋ ଉପରେ ଖୁସି ହେଇଗଲେ । ଆଉ କେତେକ ପିଲାଙ୍କୁ କେତେକ ପ୍ରଶ୍ନ ପଚାରିଲେ, କିଏ ଭଲ ଉତ୍ତର ଦେଲା ତ କିଏ ଦେଇ ପାରିଲା ନାହିଁ ।

କମ୍ପାଉଣ୍ଡରୀ ପାଠର final examination ରେ ଲେଖା ପରୀକ୍ଷା କିଛି ନାହିଁ । କେବଳ oral ଆଉ practical । କିଏ oral ରେ ଭଲ କଲେ practicalରେ ଫେଲ୍ ହେଇଯାଏ । କିଏ ପୁଣି practical ରେ ଭଲ ଯଦି କଲା, oral ରେ ଫେଲ୍ । ଏଣୁ କମ୍ ପିଲା ପାସ୍ କରିବା ସମ୍ଭାବନା । କ୍ୟାପଟେନ୍ କେ.ଏମ.ରାୟ ଏସବୁ ବିଷୟରେ ଆମକୁ ସତର୍କ କରେଇ କହିଲେ, ଆଦୌ nervous ହବ ନାହିଁ । ପିଲାଏ ଡ଼ରିଯାନ୍ତି । କାରଣ ସେତେବେଳେ Medical School ରେ ପ୍ରାୟ ଜଣେ ଜଣେ ଗୋରା superintendent ଥାନ୍ତି । ସେହିମାନେ କମ୍ପାଉଣ୍ଡରୀ ଛାତ୍ରଙ୍କୁ ପରୀକ୍ଷା କରନ୍ତି । ଗୋରାଙ୍କୁ ବେଶି ପିଲାଏ ଡ଼ରିଯାନ୍ତି । ତାଙ୍କ କଥା ଭଲ କରି ବୁଝି ପାରନ୍ତି ନାହିଁ । ଏଣୁ ଭଲ ଉତ୍ତର ଦେଇ ନପାରି ଫେଲ୍ ହୁଅନ୍ତି ।

Final ପରୀକ୍ଷା ଦିନ ସଜବାଜ ହେଇ ଗ୍ରାମ ଦେବତୀଙ୍କଠୁଁ ଆରମ୍ଭ କରି ଆମ ଗାଁର ସବୁ ଠାକୁରାଣୀଙ୍କୁ ମନେ ମନେ ପ୍ରାର୍ଥନା କରି ବାହାରିପଡ଼ିଲି । Practical ପରୀକ୍ଷା ଆଗେ ହେଲା । Practical ପରୀକ୍ଷା ସରିଲେ oral ପରୀକ୍ଷା ହବ । Practical ପରୀକ୍ଷା ହଲ୍‌ରେ କ୍ୟାପଟେନ୍ କେ.ଏମ.ରାୟ ଏବଂ ଲିଙ୍ଗରାଜ ଉପସ୍ଥିତ ଥାନ୍ତି । Practical ପରୀକ୍ଷାରେ ମୋର ଗୋଟାଏ throat paint ତିଆରି କରିବାକୁ ପଡ଼ିଲା । ତାକୁ ମୁଁ ସାଙ୍ଗେ ସାଙ୍ଗେ ତିଆରି କରିଦେଇ ଅନ୍ୟ ପିଲାଙ୍କୁ ପରୋକ୍ଷରେ ସାହାଯ୍ୟ କରିବାରେ ଲାଗି ପଡ଼ିଲି । ଲିଙ୍ଗରାଜର ଆମ ପ୍ରତି ଭାରି ସହାନୁଭୂତି ଦେଖିଲି । କ୍ୟାପଟେନ୍ କେ.ଏମ.ରାୟ ତ ସହଜେ ପରୀକ୍ଷା ହଲ୍‌ରେ ଆମର ମା, ବାପ ଅଗାଧ ସ୍ନେହ, ସହାନୁଭୂତି । କିନ୍ତୁ ଗୋଟାଏ ପିଲା ଉପରେ ତାଙ୍କର ଭାରି ରାଗ ଦେଖିଲି । ତା'ର କାରଣ ପୁଣି ଶୁଣିଲେ ନହସି ରହି ହବନି । କାରଣ ହେଲା, ସେ ପିଲାଟି ଜାତିରେ ଖ୍ରୀଷ୍ଟିୟାନ, ଥରେ କମ୍ପାଉଣ୍ଡରୀ ପରୀକ୍ଷାରେ ଫେଲ୍ ହେଇ ପୁଣି ଆମ ସାଙ୍ଗରେ ପଢ଼ି ପରୀକ୍ଷା ଦଉଥାଏ । ଏଥର ପରୀକ୍ଷା ପୂର୍ବରୁ ତାକୁ କ୍ୟାପଟେନ୍ କେ.ଏମ.ରାୟ ଗୋଟିଏ ବିଲାତି କୁକୁର ଛୁଆ ମାଗି ଥିଲେ । ସେ କ୍ୟାପଟେନ୍ କେ.ଏମ.ରାୟଙ୍କୁ ଗୋଟିଏ ବିଲାତି କୁକୁର ଛୁଆ ଦେଇଥିଲା । ସେ କୁକୁର ଛୁଆ କୁଆଡ଼େ ଦିନେ ରାତିରେ କେ.ଏମ.ରାୟଙ୍କ ମୋଜାକୁ କାମୁଡ଼ି ଛିଣ୍ଡେଇ ଦେଇଥିଲା । ଏଣୁ ସେ ପିଲା ଉପରେ କେ.ଏମ.ରାୟଙ୍କର ଭାରି ରାଗ, କାରଣ ଏମିତି କୁକୁର ଛୁଆ ଦେଲା ଯେ, ତାଙ୍କର ମୋଜା ଛିଣ୍ଡେଇ ଦେଲା ! ପୁଣି ଦୈବ ଦୁର୍ଯ୍ୟୋଗକୁ ଆମ ସାଙ୍ଗରେ practical ପରୀକ୍ଷା ଦେଲାବେଳେ ତା'ର castor oil emulsion ତିଆରି କରିବାକୁ ପଡ଼ିଲା । ସେ କେମିତି emulsion ତିଆରି କରିଛି, ପରୀକ୍ଷା କରି ଦେଖିବା ପାଇଁ କେ.ଏମ.ରାୟ ସେ ଶିଶିଟାକୁ ଧରି ହଲେଇ ଦେଲା ବେଳେ, ଶିଶିର ଠିପି ଖୋଲି ଯାଇ ତାଙ୍କର ହାପ୍ ପ୍ୟାଣ୍ଟ ଉପରେ ସେ emulsion ରୁ କିଛି ଅଂଶ ଢ଼ାଳିଗଲା । ସେ ପିଲା ଆଉ ଯିବ କୁଆଡ଼େ ? କାହିଁକି ସେ ଠିପି ଭଲ କରି ଲଗେଇ ନଥିଲା ? ଯାହା ଫଳରେ ତାଙ୍କ ହାପ୍ ପ୍ୟାଣ୍ଟ ଉପରେ castor oil emulsion ଢ଼ାଳିଗଲା । ଏଥି ଯୋଗୁଁ ସେଇ ପରୀକ୍ଷା ହଲ୍ ଭିତରେ ତା'ଉପରେ ପ୍ରଚଣ୍ଡ ରାଗ, ଗାଳି, କାହିଁକି ସେ ଏମିତି କୁକୁର ଛୁଆ ଦେଲା ଯେ କି ତାଙ୍କ ମୋଜା ଛିଡ଼େଇ ଦେଲା ଇତ୍ୟାଦି ଇତ୍ୟାଦି । ସେ ପିଲା ଡ଼ରିମରି କାଠ, ତା'ର ଫେଲ୍ ସୁନିଶ୍ଚିତ । ସେ ପିଲାକୁ ପଚାରି ସବୁ ଘଟଣା ବୁଝିଲି ।

ଆମର practical ପରୀକ୍ଷା ସରିବା ପରେ ସମସ୍ତଙ୍କୁ ଗୋଟି ଗୋଟି କରି ଡ଼କା ହେଲା oral examination ଦବା ପାଇଁ । ପିଲାଏ ଗୋରା examinerଙ୍କ ସାମନାରେ

ବସି oral examination ଦବା ପାଇଁ ଡ଼ରି ମରୁଥାନ୍ତି। ମୋର ପାଳି ପଡ଼ିଲା, ମୋତେ ଡ଼କରା ହେଲା oral ପରୀକ୍ଷା ପାଇଁ। ମୋତେ କାହିଁକି କିଛି ଭୟ ହେଲା ନାହିଁ। ମୁଁ ଯାଇ ଗୋରା examinerଙ୍କ ସାମନାରେ ଖଣ୍ଡିଏ ଟୁଲ୍‌ରେ ବସିଲି। ମୋର ବାଁ ପାଖକୁ କ୍ୟାପଟେନ୍ କେ.ଏମ.ରାୟ ବସିଥାନ୍ତି। ମୋତେ ଗୋରା examiner ଅଳ୍ପ କେତେକ ପ୍ରଶ୍ନ ପଚାରିଲେ। ସବୁ ଉତ୍ତର ଭଲ ଭାବରେ ଦେଲି। Examinerଙ୍କ ପ୍ରଥମ ପ୍ରଶ୍ନଟା ଏକ ସେକେଣ୍ଡ କି ଦୁଇ ସେକେଣ୍ଡ ବୁଝିବା ପାଇଁ ବିଳମ୍ବ ହେଇଥିଲା। ତା'ପରେ ଆଉ କିଛି ବୁଝିବାକୁ କଷ୍ଟ ଲାଗିଲା ନାହିଁ। ମୁଁ oral ପରୀକ୍ଷାରେ ସବୁ ଉତ୍ତର ଦେଇ ବିଦାୟ ନେଇ ବାହାରେ ଆସି ବୁଲିଲି। ଗୋରା examinerଙ୍କ ନାଁ ମୋର ଠିକ୍ ମନେ ପଡୁ ନାହିଁ। ବୋଧେ Howlet ହବ କି କ'ଣ? ଏ ହେଲା ୧୯୨୭ ମସିହା କଥା। ସମସ୍ତଙ୍କର ସବୁ ପରୀକ୍ଷା ସରିଲା। କିଛି କ୍ଷଣ ଅପେକ୍ଷା କରିବା ପରେ ପରୀକ୍ଷାର ଫଳ କେ.ଏମ.ରାୟ ବାହାରେ ଆସି ଜଣେଇ ଦେଲେ କିଏ କିଏ ପାସ୍ କରିଛନ୍ତି। ମୋତେ କହିଲେ, ତୁ ସେକେଣ୍ଡ ହେଇଛୁ, ଜଣେ ବାରିପଦାର ପିଲା ଫାଷ୍ଟ ହେଇଥାଏ ମୋଠୁଁ ୫ ନମ୍ବର ଅଧିକା ରଖି କିନ୍ତୁ ତା'ପ୍ରତି କ୍ୟାପଟେନ୍ କେ.ଏମ.ରାୟ ଏତେ ଖୁସି ନୁହଁନ୍ତି। ମୋ କଥା ଆଉ ସମସ୍ତଙ୍କୁ କହିଲେ, ଏ ସେକେଣ୍ଡ ହେଇଛି। ଆଉ ମଧ ମୋତେ କହିଲେ ତୁ ମ୍ୟାଟ୍ରିକ ପାସ୍ କରି medical କୁ ଚାଲିଆ। ଆମ ଦଳର ସବୁ ପିଲାଏ ପାସ୍ କରିଥାନ୍ତି। ହମିଦ୍ ପାସ୍ କରିଥାଏ। ପରୀକ୍ଷାର ଫଳ ଶୁଣି ଯେ ଯାର ଘରକୁ ଫେରିଲେ। ମୁଁ ଘରେ ଆସି ମା'ଙ୍କୁ କହିଲି, ମୁଁ ପାସ୍ କରିଛି। ବାବା ନଥିଲେ, ବାବା ଅଫିସ୍ ଯାଇଥିଲେ। ସେତେବେଳେ ଦିନ ପ୍ରାୟ ୨ଟା ବେଳ ହବ, ମା'ଶୁଣି ଖୁସି ହେଲେ ଆଉ ବେଶି କିଛି କହିଲେ ନାହିଁ। ସନ୍ଧ୍ୟା ପରେ ବାବା ଅଫିସ୍‌ରୁ ଫେରିଲେ। ବାବା ସିଆଡୁ ମୋ ପାସ୍ ଖବର ଶୁଣି ଆସିଥିଲେ। କାରଣ ବାବା ଅଫିସ୍‌ରୁ ଫେରି ମେଡ଼ିକାଲ ହତା ଭିତର ଦେଇ ପ୍ରତ୍ୟେକ ଦିନ ସନ୍ଧ୍ୟାରେ ଘରକୁ ଆସୁଥିଲେ।

ମା' ସେଦିନ ସନ୍ଧ୍ୟା ବେଳୁ ଭାତ, ଡ଼ାଲି ଚୁଲିରେ ବସେଇ ସାରିଥିଲେ। ବାବାଙ୍କ ମନଟା ମୋର ପାସ୍ ଖବର ନେଇ ଖୁସି ଥାଏ। ବାବା ମା'ଙ୍କୁ କହିଲେ, ଆଜି ଗୋଟାଏ କ'ଣ ଭଲ ଫିଲ୍ମ ଆସିଛି, ଯିବାକି ଦେଖିବାକୁ? ଆଜି କାହିଁକି ବହୁତ ଲୋକ ସିନେମା ଦେଖିବାକୁ ଦଉଡ଼ିଛନ୍ତି? ମା' କହିଲେ ହଉ ଯିବା କିନ୍ତୁ ଭାତ, ଡ଼ାଲି ଯେ ବସେଇ ଦେଇଛି। ବାବା କହିଲେ ହଉ ଜାଳ ଲିଭେଇ ଦିଅ। ସେ ଭାତ, ଡ଼ାଲି ସେମିତି ଚୁଲୀରେ ବସିଥାଉ, ଆସିଲେ ପୁଣି ରନ୍ଧା ହେବ। ବାବା, ମା, ମୁଁ ଏବଂ ସାନ ଭଉଣୀ ସମସ୍ତେ ବାହାରିଲୁ ସିନେମା ଦେଖି।

ସେତେବେଳେ ଗୋଟାଏ cinema party କାକିନଡାରୁ ଆସି କଟକ ମିସନ୍ ରୋଡ଼ରେ ସିନେମା ଦେଖାଉଥାଏ। ସବୁ silent picture, ସେତେବେଳେ ସବାକ୍ ଚିତ୍ର ହେଇ ନଥାଏ। ଏ silent picture ସବୁ ପୂର୍ଣାଙ୍ଗ ଘଟଣା ନେଇ ତିଆରି। ଆଗ ଭଳି କଟା piece ନୁହେଁ। ଯେଉଁଠି ସିନେମା ଆମେ ଆଗେ ଦେଖିଥିଲୁ, ଯେଉଁଠି ଆଜିକାଲି ଗୌରୀଶଙ୍କର ପାର୍କ ହେଇଛି ସେଦିନ 'ରତ୍ନମଞ୍ଜରୀ' ନାମକ ଗୋଟାଏ ଫିଲ୍ମ ଚାଲିଥାଏ। ଲୋକେ ବାଡ଼ିଆବାଡ଼ି ଦେଖିବା ପାଇଁ। Ticket ମିଳିବା କଷ୍ଟକର। କୌଣସି ପ୍ରକାରେ ଆମେ ସିନେମା ହଲ୍‌ରେ ପଶିଲୁ। 'ରତ୍ନମଞ୍ଜରୀ' ଫିଲ୍ମ ଏତେ ଭଲ ଲାଗିଲା ଯେ ଯେମିତି ଅବାକ୍ ହେଉ, ସେମିତି ହସି ହସି ବ୍ୟସ୍ତ ହେଲୁ। ଆଉ ହସି ପାରୁନୁ। କିନ୍ତୁ ହସିବାକୁ ବାଧ। ସେତେବେଳେ ସିନେମାର ଟେକ୍‌ନିକ୍ ଏତେ ଜାଣି ନଥିଲୁ, ତେଣୁ ସବୁ ଦୃଶ୍ୟ ଆଶ୍ଚର୍ଯ୍ୟ ଲାଗୁଥାଏ, ଆନନ୍ଦଦାୟକ ହେଉଥାଏ। ସିନେମା ଦେଖିଲେ, ମନେହୁଏ ଯେମିତି କ'ଣ ଦେଖୁଛୁ। କେମିତି ଆଖି ଆଗରେ ହଠାତ୍ ବିଭିନ୍ନ ରକମର ଦୃଶ୍ୟ ବଦଳି ଯାଉଛି। ତାକୁ ଲେଖି ବୁଝେଇବା ସହଜ ନୁହେଁ।

ସେଦିନ ରାତି ୧୦ଟାରେ ଘରକୁ ଫେରି ଆସି ଦେଖିଲା ବେଳକୁ ଜଣେ ମାମୁଁ ଆସି ବାହାରେ ବିଛଣା ପାରି ଶୋଇଛନ୍ତି। ବାବା, ମା ଚିହ୍ନି ନପାରି ହଠାତ୍ ପଚାରିଲେ କିଏ? ମାମୁଁ ଉଠି ମା'ଙ୍କ ସହିତରେ ଲଗେଇଲେ କଳି। ଏ ମାମୁଁ ହଉଛନ୍ତି, ମା'ଙ୍କର ଦାଦୀ ପୁଅ କି ଜେଠା

ପୁଅ ଭାଇ, ମୋର ଠିକ୍ ମନେ ନାହିଁ। ମଝିରେ ମଝିରେ ଆମ ଘରକୁ ଆସନ୍ତି। ଭାରି ରାଗୀ। ତାଙ୍କର ପ୍ରଚଣ୍ଡ ରାଗ ସକାଶେ postmaster ଚାକିରି ଛାଡ଼ି ବେକାର। ମା'ଙ୍କଠାରୁ ବୟସରେ ସାନ। ମା'ଙ୍କର ମାମୁଁଙ୍କର ଗୁରାଏ କଳି ହେଇଗଲା। କାରଣ ହଉଛି, ମାମୁଁ କହିଲେ, ତୋ ଘରକୁ ଆସିଲେ ମଣିଷ ପଦାରେ ପଡ଼ି ଅପେକ୍ଷା କରିବ। ମା'ତ କମ୍ ରାଗୀ ନୁହଁନ୍ତି। ପୁଣି ବଡ଼ ଭଉଣୀ। ମା' ଆଚ୍ଛା କରି ଶୁଣେଇଲେ।

ସମସ୍ତେ ଘର ଭିତରକୁ ଗଲୁ। ଯେଉଁ ଭାତ, ଡ଼ାଲି, ଚୁଲୀରେ ବସିଥିଲା, ସେ ସବୁ ସିଝି ଯାଉ ପରି ହେଇଥିଲା। କଥା ହେଲା, ଏତେ ରାତିରେ ଆଉ କିଏ ପୁଣି ରୋଷେଇ କରୁଛି? ଗୋଟାଏ ତରକାରୀ କରି ତାକୁ ହିଁ ଖାଇ ଦେଲେ ହବ। ସେଇଆ କରା ହେଲା, ସମସ୍ତେ ଖାଇ ଶୋଇଲୁ।

# (୨)

ରାତି ପାହିଲା ବେଳକୁ ମୁଁ ଜଣେ ପାସ୍ କରା କମ୍ପାଉଣ୍ଡର। ଆଉ outdoor କୁ ଯିବାର ଦରକାର ନାହିଁ। ତଥାପି ପାସ୍ କରିଛି ବୋଲି ଟିକିଏ ବାହାଦୁରି ଦେଖେଇ outdoor ଆଡ଼େ ବୁଲିବାକୁ ଗଲି। ମୋ ସାଙ୍ଗରେ ଅନ୍ୟ ପାସ୍ କରିଥିବା ପିଲାଏ ମଧ୍ୟ ମୋ ପରି ବୁଲିବାକୁ ଯାଇଥାନ୍ତି। ଗତକାଲିର ପରୀକ୍ଷା କଥା ଆଲୋଚନା ପଡ଼ିଲା। କାହାକୁ କ'ଣ oral examination ରେ ପଚାରିଲେ? Practicalରେ କାହାର କ'ଣ ପଡ଼ିଥିଲା? କିଏ କେମିତି ଉତ୍ତର ଦେଲା? ଲିଙ୍ଗରାଜର ଆମ ସହିତରେ ଭାରି ପ୍ରୀତି ସମ୍ଭାଷଣ। ଆଗର ଆଉ ସେ ବୈର ଭାବ ନାହିଁ। ଆଜି ତା'ରି ପରି ଆମେ ଜଣେ ଜଣେ କମ୍ପାଉଣ୍ଡର। ତା'ର ଦଳ, ଆମର ଦଳ ବୋଲି କିଛି ନାହିଁ। ପାଣିରେ ପାଣି ମିଶିଲା ପରି ସବୁ ଏକାକାର। କେବଳ ଉଭୟ ଦଳର ଫେଲ୍ ପିଲାଙ୍କୁ ଛାଡ଼ି ବାକି ସମସ୍ତେ ପାସ୍ କରିଥିବା ଆନନ୍ଦରେ ସହର୍ଷବଦନ। ସମସ୍ତେ ଏକାଠି ଆଉ ଆଗର ସେ ଭେଦଭାବ ନାହିଁ। ଆମେ ପାସ୍ କରିଥିବା ସବୁ ପିଲାଏ ଯାଇ କ୍ୟାପଟେନ୍ କେ.ଏମ.ରାୟଙ୍କୁ ଭେଟିଲୁ। ତାଙ୍କର କି ଆନନ୍ଦ ଆମକୁ ଦେଖି। କି ଗପ! ମୋତେ ସେହି ଗୋଟିଏ ଉପଦେଶ ତୁ ମ୍ୟାଟ୍ରିକ ପାସ୍ କରି medicalକୁ ଚାଲିଆ।

ଆମେମାନେ କମ୍ପାଉଣ୍ଡରୀ ପଢୁଥିବାବେଳେ ଥରେ କେ.ଏମ.ରାୟଙ୍କ ପ୍ରରୋଚନାରେ ଆଉ ଉଦ୍ୟମରେ ଖଣ୍ଡେ group photo ତାଙ୍କର ରାଣୀହାଟ ବାସଭବନରେ ତାଙ୍କୁ ବସେଇ ନେଇଥିଲୁ। ତାଙ୍କର ସେ ବାସଭବନର ନାମ ଆଜିକାଲି କ୍ଷେତ୍ରବାସୀ ସେବା ସଦନ ହେଇଛି। ଆଉ group photo ନବାର ଦରକାର ପଡ଼ିଲାନି।

କିଛିଦିନ outdoor କୁ ଖୁସିରେ ବୁଲାବୁଲି କରିବା ପାଇଁ ଯିବା ବନ୍ଦ ହେଇ ଆସିଲା କାରଣ ଗୋଟିଏ ଗୋଟିଏ ସାଙ୍ଗ ପିଲା ଯେ ଯା'ର ଘରକୁ ବାହୁଡ଼ିଲେ। ମୁଁ, ହମିଦ୍ କେବଳ କଟକରେ ରହିଲୁ। ହମିଦ୍ ବେଳେବେଳେ ମୋ ପାଖକୁ ଆସେ। କେତେ କଥା ଆଲୋଚନା କରେ। ମୂଳ କଥା ଚାକିରୀ କେମିତି ମିଳିବ? ହମିଦ୍‌ର ପରାମର୍ଶରେ ମୁଁ, ହମିଦ୍ ଉଭୟେ Cuttack District Boardରେ ଚାକିରୀ ପାଇଁ ଖଣ୍ଡେ ଖଣ୍ଡେ ଦରଖାସ୍ତ ଦେଲୁ। ସେତେବେଳେ ପୁଣି କମ୍ପାଉଣ୍ଡରମାନଙ୍କ ମାସିକ ଦରମା ଥିଲା ୨୫ଟଙ୍କା ମାତ୍ର। ଏ ବେତନହାର ସରକାରୀ ଚାକିରୀରେ, ଜିଲ୍ଲା ବୋର୍ଡ଼ରେ ବେତନହାର ଆହୁରି କମ୍, ପ୍ରାୟ ମାସିକ ୧୬ଟଙ୍କା ଥିଲା କି କ'ଣ?

ଆମେ ଦିହେଁ ଯେତେବେଳେ ଦରଖାସ୍ତ ଦେଲୁ, ସେତେବେଳେ ସରକାରୀ କିମ୍ବା ଜିଲ୍ଲା ବୋର୍ଡ଼ ଚାକିରୀ କିଛି ଖାଲି ନଥିଲା। ଆଗକୁ ଅନେଇଲେ ଖାଲି ଅନ୍ଧାର ଦିଶୁଥାଏ। କ'ଣ କରିବି? ବାଲୁଙ୍ଗା ହେଇ ତ ବୁଲୁଥିଲି। ସେତେବେଳେ Calcutta School of Arts ର prospectus ମଗେଇ ଦେଖିଥିଲି। ସେଠି ପଢ଼ିଲେ ଯା ଖର୍ଚ୍ଚ ଲାଗିବ, ବାବା ସେଥିଲାଗି ଅକ୍ଷମ। ଏଣୁ ସେ ପ୍ରସ୍ତାବ ସେତେବେଳେ କାଟ ଖାଇଥିଲା। ପୁଣି ବିହାରରୁ Veterinary College ରୁ prospectus ମଗେଇ ସେଠି ପଢ଼ିବା ପାଇଁ ବାବାଙ୍କ ସଙ୍ଗେ ଆଲୋଚନା କଲାବେଳେ,

ବାବା ପରିହାସ କରି କହିଲେ ତୁ ପଶୁଡ଼ାକ୍ତରୀ ପଢ଼ିବୁ? ପଶୁକୁ ଚିକିତ୍ସା କରିବା ପାଇଁ ତୋତେ କିଏ ଡ଼ାକିବ? ଉପାସରେ ଦିନ କଟେଇବୁ। ଏଣୁ ସେ ପ୍ରସ୍ତାବ ମଧ କାଟ ଖାଇଥିଲା। ସେତେବେଳେ Veterinary College ଓଡ଼ିଶାରେ ତ ନଥିଲା। ଓଡ଼ିଶାର ଲୋକେ ମଧ ଆଜିକାଲି ପରି ପଶୁ ଚିକିତ୍ସା ଦିଗରେ ଏତେ ସଚେତନ ନଥିଲେ।

କେତେ ବାଙ୍କ, କେତେ ଆଶା, ହତାଶାର ଝଡ଼ଝଞ୍ଜା ଟପି ଜୀବନ-ପୁଳିନର medical outdoor ତୁଠରେ ପହଁଚିଥିଲି। ସେଠି ଗୋଟିଏ ବର୍ଷ ଆତଯାତ ହେଲାପରେ କମ୍ପାଉଣ୍ଡରଟିଏ ହେଇ ବାହାରିବି ବୋଲି କମ୍ପାଉଣ୍ଡରଟିଏ ତ ହେଲି। ବର୍ତ୍ତମାନ କ'ଣ କରେ? ମୁଁ କମ୍ପାଉଣ୍ଡରୀ ପାସ୍ କରି ମୋ ସୀମାରେ ମୁଁ ମନେ ମନେ ଆନନ୍ଦ ଅନୁଭବ କଲାବେଳେ, ମୋରି ସାଙ୍ଗରେ ଯେଉଁ ପିଲାଏ ପି.ଏମ୍.ଏକାଡ଼େମୀରେ ୧୦ମ ଶ୍ରେଣୀରେ ପଢୁଥିଲେ, ସେମାନଙ୍କ ଭିତରୁ କେତେକ ମ୍ୟାଟ୍ରିକ ପାସ୍ କରି ସାରି କିଏ କଲେଜରେ ପଢିଲାଣି ତ କିଏ ଚାକିରୀ କଲାଣି। ସେମାନଙ୍କ ସଙ୍ଗେ ସାକ୍ଷାତ ହେଲେ ସେମାନେ matriculate ବୋଲି ମୋ ଆଗରେ ଅହମିକାରେ ଫୁଲି ଉଠନ୍ତି। ତାଙ୍କର ମୋ ପ୍ରତି ତାଚ୍ଛଲ୍ୟ ଭାବ ଦେଖି ମୁଁ ମନେ ମନେ ଲଜ୍ଜିତ ହୁଏ। ଦୁଃଖ ଅନୁଭବ କରେ, ପୁଣି ମନେ ମନେ ଭାବେ କ'ଣ କରିବି? ଯା ଭାଗ୍ୟରେ ଯାହା ଅଛି, ମୋ ଭାଗ୍ୟରେ ଯା ଅଛି ମୁଁ ଭୋଗ କରିବି। Matric ତ ପଢୁଥିଲି, ପଢ଼ି ପାରିଲି ନାହିଁ କାହିଁକି? ମୋର ଦୁର୍ଭାଗ୍ୟ, ଏଥିରେ ଦୁଃଖ କ'ଣ?

କମ୍ପାଉଣ୍ଡରୀ ପାସ୍ କଲା ପରେ, ଥରେ ମୁଁ ଏବଂ ମୋର ଜଣେ ସାଥୀ କମ୍ପାଉଣ୍ଡର ଉଭୟେ କେତେଦିନ Ravenshaw College hostel କୁ ଯାଇଥିଲୁ। ମୋ ସାଙ୍ଗରେ ପି.ଏମ୍.ଏକାଡ଼େମୀରେ ପଢୁଥିବା ଗୋଟିଏ ସାଙ୍ଗ ପିଲାର ଗୋଟାଏ ulcer dressing କରିବା ପାଇଁ ଦୈନିକ ୩ଟଙ୍କା କରି ଆଣୁ। ତାକୁ ଉଭୟେ ବାଣ୍ଟି ନଉ। ସେ ସାଙ୍ଗ ପିଲା ସେତେବେଳେ Ravenshaw Collegeରେ B.Sc. ପଢୁଥାଏ।

କମ୍ପାଉଣ୍ଡରୀ ପାସ୍ କଲାପରେ ଏଇ ହେଲା ମୋର ପ୍ରଥମ ରୋଜଗାର। ବଡ଼ ଆନନ୍ଦ ଲାଗିଲା। ବାବା, ମା କିନ୍ତୁ ମୋତେ କମ୍ପାଉଣ୍ଡରୀ ପାସ୍ କଲା ପରେ ଚାକିରୀ କରିବାକୁ କହି ନାହାନ୍ତି କି dressing କରି କେଉଁଠୁ ଟଙ୍କା ଆଣିବାକୁ କହି ନାହାନ୍ତି। ଏ dressing କରିବାକୁ ଯିବାଟା ମୋର ନିଜ ବୁଦ୍ଧି। ଥରେ ମନେ ଅଛି କମ୍ପାଉଣ୍ଡରୀ ପଢିବା ବେଳେ medical କୁ ଥିଏଟର ଦେଖିବାକୁ ଯିବା ବେଳ କଥା। ସେତେବେଳେ medical ରେ ଡ଼ାକ୍ତରୀ ଛାତ୍ର ଆଉ ଡ଼ାକ୍ତର ମିଶି ଯେଉଁ drama କରୁଥିଲେ, ତାକୁ ଦେଖିବା କଥା। ସେତେବେଳେ ପ୍ରତ୍ୟେକ ବର୍ଷ ଡ଼ିସେମ୍ବର ମାସରେ medical ରେ ଥିଏଟର ହଉଥିଲା। ଦୁଇ ଦିନରେ ଦୁଇଟା ଖୁବ୍ ବଡ଼ ବଡ଼ drama ମଞ୍ଚସ୍ଥ ହଉଥିଲା। ପ୍ରଥମ ଦିନ ବଙ୍ଗଳା, ଦ୍ୱିତୀୟ ଦିନ ଓଡ଼ିଆ drama ହଉଥିଲା। କେହି କାହାକୁ ଊଣା ନୁହେଁ। ଦୁଇଟା drama ହିଁ ଖୁବ୍ ଦର୍ଶନୀୟ ଏବଂ ଖୁବ୍ ଉପଭୋଗ୍ୟ ମଧ ହୁଏ। ସେତେବେଳେ medical ର drama ଦେଖିବା ପାଇଁ କଟକ ସହରବାସୀଙ୍କର ଭାରି ଆଗ୍ରହ ଥିଲା। Medical ର drama ମଧ ଖୁବ୍ ଆଡ଼ମ୍ବର ସହକାରେ ହଉଥିଲା। Medical ର drama କରିବାରେ ବେଶ୍ ସୁନାମ ଥିଲା। ଏଥିରେ ଯେ କେବଳ ଡ଼ାକ୍ତରୀ ଛାତ୍ରମାନେ drama କରୁଥିଲେ ତା'ନୁହେଁ, ଡ଼ାକ୍ତରମାନେ ମଧ drama ରେ ପାର୍ଟ ନେଉଥିଲେ, ସହଯୋଗ କରୁଥିଲେ। ମୁଁ ଯେଉଁ ବର୍ଷ କମ୍ପାଉଣ୍ଡରୀ ପଢ଼େ, ସେହି ବର୍ଷ ଆମରି ଦଳ ଭିତରେ ଜଣେ କି ଦି'ଜଣ medical drama ରେ ପ୍ରଥମେ ପାର୍ଟ ନେଇ ସହଯୋଗ କଲେ। ତା'ପୂର୍ବରୁ କମ୍ପାଉଣ୍ଡରୀ ଛାତ୍ରମାନେ medical drama ରେ ଯୋଗ ଦଉ ନଥିଲେ। ସମସ୍ତଙ୍କର ଚେଷ୍ଟା ଥିଲା medical ର drama କେମିତି ସର୍ବାଙ୍ଗସୁନ୍ଦର ହବ, ହଉଥିଲା ମଧ। Medical ପରି ସେତେବେଳେ Ravenshaw College ରେ ମଧ drama ହଉଥିଲା। କିନ୍ତୁ medical ର drama ପରି ଏତେ ସର୍ବାଙ୍ଗସୁନ୍ଦର ହେଇ ପାରୁ ନଥିଲା। ସେଠି medical ପରି ଭଲ management ହଉ ନଥିଲା। Ravenshaw Collegeରେ ବହୁତ ପିଲା। ପରସ୍ପର ମଧରେ medical

ପରି ଏତେ ଚିହ୍ନାପରିଚ ନଥାଏ। Medical ରେ ଅଛ ପିଲା, ପରସ୍ପର ମଧ୍ୟରେ ଭଲ ଚିହ୍ନାପରିଚ, ସହଯୋଗ, ଏକତା। ଏଣୁ drama ମଧ୍ୟ ଭଲ ହୋଇ ପାରୁଥିଲା। ଯେମିତି ଅଭିନୟ ସେମିତି ମଞ୍ଚ ସଜ୍ଜା, ଆଲୋକ ସଜ୍ଜା, ସେମିତି ମଞ୍ଚ ପରିଚାଳନା, ସବୁ ନିଖୁଣ, କିଛି ଦୋଷ ତ୍ରୁଟି ବାଛିବାର ନଥାଏ। ବଙ୍ଗଳା ନାଟକର କଥା ଛାଡ଼, ସେ ମଧ୍ୟ ସର୍ବାଙ୍ଗସୁନ୍ଦର ହଉଥିଲା। ଯେଉଁ ଓଡ଼ିଆ ନାଟକ ମେଡ଼ିକାଲ ରଙ୍ଗମଞ୍ଚରେ ଅଭିନୀତ ହୋଇ ପ୍ରଶଂସା ଅର୍ଜନ କରିପାରିଛି, ତା'ର ଖ୍ୟାତି ସାରା ଓଡ଼ିଶାରେ ବ୍ୟାପି ଯାଏ। ଅନେକ ଓଡ଼ିଆ ନାଟକ ବଙ୍ଗଳା ନାଟକରୁ ଅନୁବାଦ କରି ମଧ୍ୟ ମଞ୍ଚସ୍ଥ ହଉଥିଲା।

ଡା: ସନାତନ ପୂଜାରୀ ଡ଼ା: ଆଶୁ ରକ୍ଷିତ, ଡା: ବିଶ୍ୱନାଥ କର, ଡ଼ା: ଗୋବିନ୍ଦ ଚନ୍ଦ୍ର ମହାନ୍ତି, ଏମିତି ଆହୁରି କେତେକ ଡାକ୍ତର ମଧ୍ୟ ଡାକ୍ତରୀ ଛାତ୍ରଙ୍କ ସଙ୍ଗେ ଅଭିନୟରେ ଅଂଶ ଗ୍ରହଣ କରି ନାଟକକୁ ସର୍ବାଙ୍ଗସୁନ୍ଦର କରୁଥିଲେ। କ୍ୟାପଟେନ୍ କେ.ଏମ.ରାୟ ମେଡ଼ିକାଲ ଥିଏଟର୍‌ରେ ଜଣେ ମହା ଉଦ୍ୟୋଗୀ ଥିଲେ। ଏହି ମେଡ଼ିକାଲ ଥିଏଟର୍ ବିଷୟରେ ପରେ ଆହୁରି କେତେକ କଥା ଲେଖିବି। ଗୋଟାଏ କଥା ଲେଖୁ ଲେଖୁ ଅନ୍ୟ କେତେକ କଥା ଲେଖି ବସିଲି।

ମେଡ଼ିକାଲରେ ଥିଏଟର୍ ହେଲେ ଆମେ ସମସ୍ତେ ଦେଖିବାକୁ ଯାଉ। ବାବାଙ୍କର ସେଠି ସମସ୍ତେ ଚିହ୍ନା ପରିଚ। ସମସ୍ତଙ୍କ ସଂଗେ ସୌହାର୍ଦ୍ଦ୍ୟ। ଏଣୁ ମେଡ଼ିକାଲ ଥିଏଟର ଦେଖିବାକୁ ଯିବା ପାଇଁ ବାବାଙ୍କୁ ଖଣ୍ଡେ pass ପ୍ରତ୍ୟେକ ବର୍ଷ ମିଳିଥାଏ। ଆମେ ଯେ ଖାଲି ମେଡ଼ିକାଲ ଥିଏଟର ଦେଖିବାକୁ ଯାଉ ତା ନୁହେଁ। ବଡ଼ ଭଉଣୀ ତାଙ୍କ ଘରୁ ଆମ ଘରକୁ ଆସନ୍ତି ମେଡ଼ିକାଲରେ ଥିଏଟର୍ ଦେଖିବା ପାଇଁ। ତା'ଛଡ଼ା ସାହି ପଡ଼ିଶା ମଧ୍ୟରୁ କେତେକ ମଧ୍ୟ ଆମ ସାଙ୍ଗରେ ମେଡ଼ିକାଲ ଥିଏଟର ଦେଖିବା ପାଇଁ ଯା'ନ୍ତି।

ମୁଁ ଯେଉଁ ବର୍ଷ କମ୍ପାଉଣ୍ଡରୀ ପଢୁଥାଏ, ସେ ବର୍ଷ ଯେତେବେଳେ ଆମେ ମେଡ଼ିକାଲ ଥିଏଟର୍ ଦେଖିବାକୁ ବାହାରିଲୁ, ମା' ଥିଏଟର ଦେଖିବାକୁ ଯିବା ପାଇଁ ମନା କରି କାନ୍ଦିଲେ କାରଣସ୍ୱରୂପ ବୁଝିଲୁ ଯେ ମୁଁ ଶେଷରେ କମ୍ପାଉଣ୍ଡରୀ ପଢ଼ିଲି! ମା' କହିଲେ ପୁଅ ମୋର ଆଜି ଡ଼ାକ୍ତରୀ ପଢୁଥାନ୍ତା କି, ମୁଁ ଆଗେ ମେଡ଼ିକାଲକୁ ଥିଏଟର୍ ଦେଖିବାକୁ ବାହାରନ୍ତି। ମୁଁ ସେଠିକି ଥିଏଟର୍ ଦେଖିବାକୁ ଯିବି ନାହିଁ।

ମୁଁ ଏକଥା ଶୁଣି ମୋ ମନରେ ବିଶେଷ ଦୁଃଖ ହେଲା। ପୁଣି ଏଠି ମୋ ମନରେ ଗୋଟିଏ ଦାଗ ରହିଲା ଭାବିଲି ମୁଁ କମ୍ପାଉଣ୍ଡରୀ ପଢୁଛି ବୋଲି ସିନା ମା ଦୁଃଖରେ ମେଡ଼ିକାଲ ଥିଏଟର୍ ଦେଖିବା ପାଇଁ ଯିବାକୁ ମନା କଲେ, ମୋ ମନରେ ସେହିଦିନ ଗୋଟିଏ କଥା ଭାବି ସ୍ଥିର କଲି ମୁଁ ମେଡ଼ିକାଲରେ ନିଶ୍ଚୟ ପଢ଼ିବି ଆଉ ସେହି ଡ଼ାକ୍ତରୀ ପାଠ ପଢ଼ିବାବେଳେ ମା'ଙ୍କୁ ମେଡ଼ିକାଲକୁ ଥିଏଟର୍ ଦେଖେଇବାକୁ ନେବି। ଏକଥା ମୋର ସେହି ଦିନଠୁଁ ମନରେ ରହିଲା ପୁଣି ଆଉ ଗୋଟିଏ ଉପଦେଶ କ୍ୟାପଟେନ୍ କେ.ଏମ.ରାୟଙ୍କର ମୋର ମନେ ଥାଏ, ତୁ matric ପାସ୍ କରି medicalକୁ ପଢ଼ିବାକୁ ଚାଲିଆ।

ମନକଥା ମନରେ ରଖିଥାଏ। ସେଥର ମା'ଙ୍କୁ ବୁଝାବୁଝି କରି medical ରେ ଥିଏଟର୍ ଦେଖେଇବାକୁ ନେଲୁ। ସମସ୍ତେ medical ଥିଏଟର୍, ବଙ୍ଗଳା, ଓଡ଼ିଆ, ଦୁଇଟା ନାଟକ ଦୁଇ ଦିନରେ ବେଶ୍ ଭଲ ଭାବରେ ଦେଖିଲୁ। ଏଇ ଘଟଣା ପରେ ମୁଁ matric ପାସ୍ କରି medical ରେ ପଢ଼ିବି ବୋଲି ମନେ ମନେ ସ୍ଥିର କରି ଦିନେ ବାବାଙ୍କୁ କହିଲି, ବାବା ମୁଁ matric ପଢ଼ିବି। ବାବା ଏକଥା ଶୁଣି କହିଲେ, ତୁ କେତେଦିନ ହେଲା ସେ ପାଠ ଛାଡ଼ିଲୁଣି, ତୁ ଆଉ ପାରିବୁନି, ମିଛରେ ଗୁରାଏ ଖର୍ଚ୍ଚାନ୍ତ କରେଇବୁ। ମୁଁ ଦୃଢ଼ ଭାବରେ ବାବାଙ୍କୁ କହିଲି, ମୁଁ ପଢ଼ିଲେ ନିଶ୍ଚୟ ପାସ୍ କରିବି। ମୋ କଥାରେ ବାବା ଆଦୌ ବିଶ୍ୱାସ କରନ୍ତିନି, ସବୁବେଳେ କହନ୍ତି ତୁ ପାରିବୁନି। ବାବାଙ୍କର ଏ କଥା ଶୁଣି ବଡ଼ ହତାଶ ଲାଗେ, ଭାବେ ତା'ହେଲେ କ'ଣ ମୁଁ ଆଉ ମେଡ଼ିକାଲରେ ପଢ଼ିପାରିବିନି ?

ବାବାଙ୍କ ସାଙ୍ଗରେ ବାରମ୍ବାର ପଢ଼ିବା ପାଇଁ ଲଗାଏ। କ୍ୟାପଟେନ୍ କେ.ଏମ.ରାୟ ଯେ କହନ୍ତି ତୁ matric ପାସ୍

କରି medicalକୁ କୁ ଚାଲିଆ । । ସେ କଥା ମଧ ବାବାଙ୍କୁ କହିଲି । ବାବାଙ୍କର ମୋ କଥାରେ ଆଦୌ ବିଶ୍ୱାସ ହୁଏନା । ମୋତେ ପଢ଼େଇବାକୁ ଆଦୌ ରାଜି ହୁଅନ୍ତି ନାହିଁ କିମ୍ବା ଏଣେ କମ୍ପାଉଣ୍ଡରୀ ଚାକିରୀ କରିବାକୁ ମଧ କହନ୍ତିନି । କ'ଣ କରିବି? କୋଉ ଆଡୁ କିଛି କରିହଉନି । ମା'ଙ୍କୁ matric ପଢ଼ିବା କଥା କହିଲେ, ମା' କୁହନ୍ତି, ହଁ ପଢ଼, ମା ବାବାଙ୍କୁ କହନ୍ତି, କାହିଁକି ତାକୁ ପଢ଼ଉନା? ସେତ କହୁଛି matric ପଢ଼ିଲେ ପାସ୍ କରିବ । ତା ପାଇଁ ତ କିଛି କଲନି । ସେ ଯେତେବେଳେ ଲାଗେଇଛି, matric ପଢ଼ିବା ପାଇଁ, ସେ ଯଦି ଭଲ ନପଢ଼ି ଫେଲ୍ ହୁଏ, ସେ ତ ଆଉ ଆମକୁ ଦୋଷ ଦେଇ ପାରିବନି ଯେ ବାବା ମୋତେ ପଢ଼େଇଲେ ନାହିଁ । ତାକୁ ପଢ଼ାଅ, ଦେଖାଯାଉ ସେ କ'ଣ କରୁଛି? ବାବାଙ୍କର ସେହି ଗୋଟାଏ କଥା, ସେ ଆଉ ପାରିବନି । ତଥାପି ମୁଁ ବାବା, ମା'ଙ୍କ ସାଙ୍ଗରେ ଲଗାଏ, ମୁଁ matric ପଢ଼ିବି । ସେତେବେଳେ ଅଭାବ ପଡ଼ିଥିଲା ମୁଁ ପଢ଼ା ଛାଡ଼ିଥିଲି,, ବର୍ତ୍ତମାନ ତ ବାବା ପେନ୍ସନ୍ ପାଉଛନ୍ତି । ତା ଛଡ଼ା ଆଉ ଗୋଟାଏ ଚାକିରୀ କରୁଛନ୍ତି । ବର୍ତ୍ତମାନ ତ ଆଗପରି ଆଉ ସେମିତି ଅଭାବ ନାହିଁ । ମୁଁ କାହିଁକି ପଢ଼ିବି ନାହିଁ? ମୁଁ ପଢ଼ିବି ।

ଏମିତି କେତେଦିନ ବାବାଙ୍କ ସାଙ୍ଗରେ ଲାଗି ଲାଗି ବାବା ଶେଷରେ କହିଲେ, ଆଚ୍ଛା ମୁଁ କେତେଜଣଙ୍କୁ ଟିକିଏ ପଚାରେ, ତୋତେ ପୁଣି matric ପଢ଼େଇବା ଠିକ୍ ହବ କି ନା? କିନ୍ତୁ ବାବା ଯାହାଙ୍କୁ ପଚାରିଲେ ମୋତେ ପୁଣି matric ପଢ଼େଇବା ବିଷୟରେ ସେ ସମସ୍ତେ matric ଫେଲ୍ । ତାଙ୍କ ଭିତରୁ କିଏ କହିଲା, ନା ତାକୁ ଆଉ ପଢ଼ାନ୍ତୁ ନାହିଁ । ସେ କେତେ ବର୍ଷ ହେଲା ପାଠ ଛାଡ଼ିଲାଣି, ସେ ଆଉ ପାରିବନି ।

କିଏ କହିଲା ସେ ଆଉ matric ପାସ୍ କରି ପାରିବନି । କାଦୁଅରୁ ଯେତେବେଳେ ଗୋଡ଼ କାଢ଼ିଛି, ଆଉ କାଦୁଅରେ ଗୋଡ଼ ପୂରେଇବା ଉଚିତ୍ ନୁହେଁ । ଆଉ କିଏ କହିଲା, ନା, ନା ତାକୁ ଆଉ ପଢ଼ାନ୍ତୁ ନାହିଁ । ସେ କମ୍ପାଉଣ୍ଡରୀ ପାସ୍ କରିଛି । ତାକୁ ଚାକିରୀରେ ପୂରେଇ ଦିଅନ୍ତୁ । ଏଭଳି ଉପଦେଶ ସବୁ ଶୁଣି ବାବା ଆଉ ରାଜି ନୁହଁନ୍ତି ମୋତେ ପଢେଇବା ପାଇଁ । ସେଥିରେ ବାବା ପେନ୍ସନ ପାଇବା ପୂର୍ବରୁ ଯେଉଁ ଉତ୍କଟ ଅଭାବ ଆଉ ଦୁରବସ୍ଥା ଭୋଗ କରିଥିଲେ, ସେଥିରେ ବାବାଙ୍କର ମନ ନିଶ୍ଚୟ ଭାଙ୍ଗି ପଡ଼ିବାର କଥା । ମୋତେ ପୁଣି matric ପଢ଼େଇବା ପାଇଁ ବାବାଙ୍କର ସେତେବେଳେ କି ଅସହାୟ ଅବସ୍ଥା! କେହି ଆତ୍ମୀୟସ୍ୱଜନ ଟିକଏ ସାହାଯ୍ୟ କଲେ ନାହିଁ ଏଡ଼େବଡ଼ ଦୁଃଖ ବେଳେ ।

ବାବା ମୋତେ ଆସି କହିଲେ ମୁଁ ଯେତେ ଲୋକଙ୍କୁ ତୋତେ ପୁଣି matric ପଢ଼େଇବା ବିଷୟରେ ପଚାରିଲି, କେହି ତ ମତ ଦେଲେ ନାହିଁ ତୋତେ ପୁଣି ପଢ଼େଇବା ପାଇଁ । ମୁଁ ଖବର ନଉଥାଏ, ବାବା କାହାକୁ କାହାକୁ ପଚାରିଛନ୍ତି । ମୁଁ ଜାଣେ ବାବା ଯେଉଁମାନଙ୍କୁ ପଚାରିଛନ୍ତି ସେମାନେ ନିଜେ matric ଫେଲ୍, ସେମାନେ କୁଆଡୁ matric ପଢିବାକୁ ମତ ଦେବେ? ମୁଁ ବାବାଙ୍କୁ କହିଲି ଯେଉଁମାନଙ୍କର ମତ ନେଲ, ସେମାନେ ନିଜେ matric ପାସ୍ କରିଛନ୍ତି କି?

ମା ଏତିକିବେଳେ ବାବାଙ୍କୁ ଲକ୍ଷ୍ୟ କରି ମୋତେ କହିଲେ-ସେ ନିଜେ matric ପାସ୍ କରିଥିଲେ ସିନା matric ପାସ୍ କରିଥିବା ଲୋକଙ୍କୁ ପଚାରିଥାନ୍ତେ । ସେ ଦି'ଭାଇ ତ (ମୋର ବାବା ଆଉ ଜେଠା) ନିଜେ matric ଫେଲ୍, ସେ କୁଆଡ଼େ ତୋତେ matric ପଢ଼େଇବା ପାଇଁ ରାଜି ହେବେ? ସେ ଦି'ଭାଇ matric ଫେଲ ହେଇ ତାଙ୍କ ଭାଗ୍ୟକୁ ଖଣ୍ଡେ ଖଣ୍ଡେ ଚାକିରୀ ଜୁଟି ଗଲାରୁ ଆଜି ନିଶ ଫୁଲେଇ ବସିଛନ୍ତି । ସେମାନେ କ'ଣ ଜାଣିଛନ୍ତି matric ପାସ୍ କରିବା କଥା? ମୁଁ ବାବାଙ୍କଠାରୁ ଶୁଣିଥିଲି, ବାବା ପି.ଏମ୍.ଏକାଡ଼େମୀରେ ପଢୁଥିଲେ । Entrance ପରୀକ୍ଷାରେ ସେ sanskrit ରେ ଫେଲ୍ ହବା ଯୋଗୁଁ entrance ପ୍ରଥମ ଥର ପାସ୍ ନକରି ପାରି ପୁଣି ଥରେ entrance ପରୀକ୍ଷା ଦବା ପାଇଁ ଘରୁ ଟଙ୍କା ଧରି କଟକ ଆସୁଥିଲେ, ବାଟରେ କେନ୍ଦୁପାଟଣାରେ ମାସିକ ୧୨ଟଙ୍କା ଦରମାରେ ଖଣ୍ଡେ ଚାକିରୀ ଜୁଟିଗଲା । ଏଣୁ ଆଉ entrance ପରୀକ୍ଷା ଦେଲେ ନାହିଁ । ବାବା

ଯେତେବେଳେ ୧୨ଟଙ୍କା ଦରମାରେ ଚାକିରୀ ପାଇଲେ, ସେତେବେଳେ ଚାଉଳ ଟଙ୍କାକୁ ୩୨ ସେର। ଜେଠା entrance ପରୀକ୍ଷାରେ historyରେ ଫେଲ୍ ହେଇ, ସେ ସେମିତି ଜଳକର ଇଲାକାରେ ଚାକିରୀ ପାଇ କେନ୍ଦୁପାଟଣାରେ ଚାକିରୀ କରୁଥିଲେ। ଏଣୁ ଜେଠା ସେହି କେନ୍ଦୁପାଟଣାରେ ବାବାଙ୍କ ପାଇଁ ଚାକିରୀ ଯୋଗାଡ଼ କରି ବାବାଙ୍କୁ ସେଇଠି ଚାକିରୀରେ ରଖେଇ ଦେଇଥିଲେ।

ମା ଏମିତି ଖୋଲାଖୋଲି ବାବାଙ୍କୁ ପରିହାସ କରିବାରେ ବାବା ଟିକିଏ ଲଜ୍ଜିତ ହେଲେ। ମୁଁ ପୁଣି ବାବାଙ୍କୁ କହିଲି ନିମେଇ ସିଂଙ୍କୁ ପଚାର, ସେ ଯଦି ନାହିଁ କରିବେ ମୋତେ ପଢ଼େଇବା ପାଇଁ ମୁଁ ଆଉ କିଛି କହିବି ନାହିଁ। ବାବା କହିଲେ ଆଚ୍ଛା ହଉ କାଲି ନିମେଇ ସିଂକୁ ପଚାରିବି। ତହିଁ ଆରଦିନ ସକାଳୁ ଉଠି ମୁଁ ଲୁଚି ଆଗେ ନିମେଇ ସିଂଙ୍କ ଘରକୁ ପଳେଇଲି। ମୁଁ ତାଙ୍କ କଥା ମାନି କମ୍ପାଉଣ୍ଡରୀ ପଢ଼ି ପାସ୍ କରିଥାଏ ବୋଲି ସେ ମୋ ଉପରେ ଭାରି ଖୁସି ହେଉଥାନ୍ତି। ମୁଁ ନିମେଇ ସିଂଙ୍କ ସଙ୍ଗେ ଦେଖା କରି ତାଙ୍କୁ କହିଲି ଆଜି ବାବା ଆସିବେ ଆପଣଙ୍କୁ ପଚାରିବା ପାଇଁ ମୋତେ ପୁଣି matric ପଢ଼େଇବା କି ନା? ଆପଣ କହିବେ ହଁ ତାକୁ matric ପଢ଼ାନ୍ତୁ। କାରଣ ମୁଁ ପୁଣି matric ପଢିବା ପାଇଁ ବାବାଙ୍କ ସଙ୍ଗେ ଲଗେଇଛି, ବାବା ରାଜି ହଉ ନାହାନ୍ତି, ଆପଣ କହିଲେ ସେ ରାଜି ହେବେ। ସେ ଯଦି ରାଜି ନହୁଅନ୍ତି, ତାଙ୍କୁ ଯେମିତି ହେଲେ ରାଜି କରେଇବେ।

ନିମେଇ ସିଂ ମୋର କଥା ଶୁଣି ବିଶେଷ ଆନନ୍ଦ ପ୍ରକାଶ କରି କହିଲେ ହଉ ଭଲ କଥା। matric ପଢ। ବାବା ଆସନ୍ତୁ। ମୁଁ ତାଙ୍କୁ ଯେମିତି ହେଲେ ରାଜି କରେଇବି। ମୁଁ ପୁଣି ତାଙ୍କୁ କହି ଆସିଲି, ଆଜି ବାବା ଆସିବେ ଆପଣଙ୍କ ସଙ୍ଗେ ପରାମର୍ଶ କରିବାକୁ। ନିମେଇ ସିଂ ମୋତେ ଆଶ୍ୱାସନା ଦେଇ କହିଲେ, ହଉ, ବାବା ଆସନ୍ତୁ, ମୁଁ କହିବି। ମୁଁ ନିମେଇ ସିଂଙ୍କ ପାଖରୁ ଆସିବାର କିଛି ସମୟ ପରେ, ବାବା ତାଙ୍କ ପାଖକୁ ଗଲେ। କ'ଣ ତାଙ୍କର କଥାବାର୍ତ୍ତା ହେଲା ଜାଣିବା ପାଇଁ ପରେ ମୁଁ ଅନ୍ୟ ସମୟରେ ଯାଇ ନିମେଇ ସିଂ ସହିତରେ ଦେଖା କଲି, ନିମେଇ ସିଂ ମୋତେ କହିଲେ ବାବା ଆସିଥିଲେ, ମୁଁ କହିଲି ପୁଅ ଯଦି ଲଗେଇଛି matric ପଢ଼ିବା ପାଇଁ, ତାକୁ ପଢ଼ାନ୍ତୁ। ସେ ଯଦି ନପଢ଼େ, ସେତ ଆଉ ଆପଣଙ୍କ ଦୋଷ ଦେଇ ପାରିବନି ଯେ ବାବା ମୋତେ ପଢ଼େଇଲେ ନାହିଁ। ସେ ଯଦି matric ଫେଲ୍ ହୁଏ, ତେଣିକି ତା'ର ଦୋଷ। ଆଉ ଗୋଟାଏ କଥା, ଆପଣଙ୍କ ଘରର ଯେଉଁ ଖର୍ଚ୍ଚ, ଯେଉଁ ଆଡ଼ମ୍ବର, ଆପଣଙ୍କ ପୁଅ କମ୍ପାଉଣ୍ଡରୀ ଚାକିରୀ କରି ଯାହା ରୋଜଗାର କରିବ, ସେଥିରେ ଆପଣଙ୍କର ଘରର ଆଡ଼ମ୍ବର ଆଉ ଖର୍ଚ୍ଚ ଚଳିବ କି? ଆପଣଙ୍କର ଗୋଟିଏ ପୁଅ, ଆପଣ ତା'ର କ'ଣ କରିଛନ୍ତି? ସେ ଶେଷରେ କମ୍ପାଉଣ୍ଡରୀ ପଢ଼ିଲା। ଯଦି ତା'ର ମନ ହଉଚି matric ପଢ଼ିବାକୁ, ତାକୁ ପଢ଼ାନ୍ତୁ।

ନିମେଇ ସିଂ ପୁଣି କହିଲେ, ବାବା ରାଜି ହେଲେ ତୁମକୁ matric ପଢ଼େଇବା ପାଇଁ। ତୁମର matric ପାଠ ଯେଉଁ କ୍ଲାସରୁ ଛାଡ଼ିଛ, ସେଇ କ୍ଲାସରେ ପୁଣି ନାଁ ଲେଖାହବ।

ନିମେଇ ସିଂ ମୁହଁରୁ ଯେତେବେଳେ ଶୁଣିଲି ବାବା ରାଜି ହେଇଛନ୍ତି, ମୋତେ ପୁଣି matric ପଢ଼େଇବା ପାଇଁ, ମୋର ଆଉ ଆନନ୍ଦର ସୀମା ରହିଲାନି। ମୁଁ ନିମେଇ ସିଂ ଘରୁ ବିଦାୟ ନେଇ କେମିତି ଯେ ଆସି ଘରେ ପହଁଚିଛି, ମୁଁ ଜାଣେନା।

ବାବା ନିମେଇ ସିଂଙ୍କ କଥାରେ ମୋତେ ପଢ଼େଇବା ପାଇଁ ମନ ସ୍ଥିର କରି ଦିନେ ମୋତେ ପଚାରିଲେ ତୁ ଯେ matric ପଢ଼ିବା ପାଇଁ ଲଗେଇଛୁ, ପଢ଼ି ପାସ୍ କରିପାରିବୁ ତ?

ମୁଁ କହିଲି ହଁ, ମୁଁ matric ପାସ୍ କରିବି।

ବାବା କହିଲେ, ତା ହେଲେ ସେହି ପି.ଏମ୍.ଏକାଡ଼େମୀରେ ୧୦ମ ଶ୍ରେଣୀରେ ପଢ଼।

ମୁଁ ମନା କଲି, ମୁଁ ସେଠି ପଢ଼ିବି ନାହିଁ।

ବାବା କହିଲେ, କାହିଁକି? ସେଠି ତ ଭଲ ପଢ଼ାପଢ଼ି ହୁଏ. ଆମେ ସମସ୍ତେ ସେଇଠି ପଢ଼ିଛୁ।

ମୁଁ କହିଲି, ମୋତେ ଯେ କୌଣସି ସ୍କୁଲରେ ନାଁ ଲେଖେଇ ଦିଅ ପଢ଼ିବି, ସେଠି ପଢ଼ିବି ନାହିଁ। ସେଠି ମୋର ତଳ କ୍ଲାସରେ ଯେଉଁମାନେ ପଢୁଥିଲେ, ସେମାନେ ବର୍ତ୍ତମାନ ଆସି ୧୦ମ ଶ୍ରେଣୀରେ ପଢୁଥିବେ। ମୁଁ ତାଙ୍କ ସାଙ୍ଗରେ ପଢ଼ିବାକୁ ମୋତେ ସରମ ଲାଗିବ, ମୁଁ ସେଠି ପଢ଼ିବି ନାହିଁ।

ମୁଁ ପୁଣି matric ପଢ଼ିବି ବୋଲି ମୋର ସାଙ୍ଗ ପିଲାଙ୍କୁ କହି ବସିଲି। ମୃଣାଳ ଏକଥା ଶୁଣି ପରିହାସ କରି କହିଲା, ତୁ ପୁଣି ପଢ଼ିବୁ? ଛିଃ ଛିଃ, ତୋର ତଳ କ୍ଲାସରେ ଯେଉଁମାନେ ପଢୁଥିଲେ ତୁ ପୁଣି ତାଙ୍କରି ସାଙ୍ଗରେ ପଢିବୁ? ତୁ ଆଉ ପଢିଲେ ପାସ୍ କରି ପାରିବୁଟି? ଆଉ ପଢ଼ନା, ଆଉ ପଢ଼ନା। ପ୍ରିୟ ଶୁଣି କିଛି କହିଲାନି, ଅନ୍ୟ ପିଲାଏ ମଧ୍ୟ କିଛି କହିଲେନି। ଆଉ ଦୁଇଜଣ ପିଲା ମୋତେ ଗୋଟାଏ କଥାରେ ପ୍ରବର୍ତ୍ତେଇଲେ। ଏ ଦୁଇ ଜଣ ପିଲା ହଉଛନ୍ତି, ଦୁଇ ସହୋଦର ଭାଇ, ବଡ଼ ଭାଇ ନାଁ ଈଶ୍ୱର ସାହୁ, ସେ ମୋର ଅତି ଭଲ ସାଙ୍ଗ। ସେ ସେତେବେଳେ ମୁସଲିମ ସେମିନାରୀରେ ପଢୁଥିଲା, ଆଉ ତା' ସାନଭାଇ ନାଁ, ଭ୍ରମର ସାହୁ। ସେ Mission High School ରେ ପଢୁଥିଲା। ଈଶ୍ୱର ସାହୁ ମୋତେ ପ୍ରବର୍ତ୍ତେଇଲା, ତୁ ମୁସଲିମ ସେମିନାରୀରେ ନାଁ ଲେଖା, ଭ୍ରମର ସାହୁ ପ୍ରବର୍ତ୍ତେଇଲା, ତୁ Mission (ଆଜିକାଲି Christ Collegiate ନାମରେ ନାମିତ) ସ୍କୁଲରେ ନାଁ ଲେଖା। ଈଶ୍ୱର ସାହୁ, ଭ୍ରମର ସାହୁ ମୋତେ ତାଙ୍କ ସ୍କୁଲରେ ନାଁ ଲେଖେଇବା ପାଇଁ ପ୍ରବର୍ତ୍ତେଇବାର କାରଣ ହେଲା, ମୁଁ ମୋର ବାଲ୍ୟ ଜୀବନ ଭିତରେ Mangalabag Boys' Union Clubରେ ଯୋଗଦେଇ football ଖେଳରେ ସେତେବେଳକୁ ବେଶି ଦକ୍ଷତା ହାସଲ କରି ସାରିଥାଏ। ଈଶ୍ୱର ସାହୁ, ଭ୍ରମର ସାହୁ ଉଭୟଙ୍କର ଇଚ୍ଛା, ତାଙ୍କ ସ୍କୁଲରେ ମୁଁ ନାଁ ଲେଖେଇଲେ ତାଙ୍କ ସ୍କୁଲ ଜଣେ football player ପାଇବ। ସେତେବେଳେ ମୁସଲିମ୍ ସେମିନାରୀରେ football ଖେଳରେ ନାଁ ନଥାଏ କି ପାଠରେ ନାଁ ନଥାଏ। ପୁଣି ଅତି ଗରିବ ଅନୁଷ୍ଠାନ। Mission ସ୍କୁଲର ପାଠରେ ସେତେ ଭଲ ନାଁ ନଥିଲେ ମଧ୍ୟ football ଖେଳରେ ଭାରି ନାଁ। ପ୍ରାୟ କହିବାକୁ ଗଲେ, ସେତେବେଳେ ସେ ଅଦମ୍ୟ, ମୋର ମନ ଥାଏ, Mission ସ୍କୁଲରେ ନାଁ ଲେଖେଇଲେ ପାଠ ପଢ଼ା ମୋ ଉପରେ ନିର୍ଭର କରୁଛି। ମୁଁ ତ ନିଷ୍ଠୟ ଆଗ୍ରହର ସହିତ ପଢ଼ିବି, ତା ସହିତରେ football ଖେଳଟା ମଧ୍ୟ ଆଶାନୁରୂପ ଜମିବ। ଏଣୁ ଭ୍ରମର ସାହୁକୁ କହିଲି, ମୁଁ Mission ସ୍କୁଲରେ ନାଁ ଲେଖେଇବି। ଏଣେ ଈଶ୍ୱର ସାହୁ ତ ପୁଣି ମୋର ଭଲ ସାଙ୍ଗ କିନ୍ତୁ ମୁସଲିମ ସେମିନାରୀ ମୋର ପସନ୍ଦ ନୁହେଁ। କ'ଣ କରେ? ଈଶ୍ୱର ସାହୁ ମୋ ସାଥିରେ ଖୁବ୍ ଲଗେଇ ଥାଏ, ତୁ ମସଲିମ୍ ସେମିନାରିରେ ନାଁ ଲେଖା। ମୋର ମନଟା ବେଳେବେଳେ ମୁସଲିମ୍ ସେମିନାରୀରେ ପଢ଼ିବାକୁ ହଉଥାଏ କାରଣ ମୁସଲିମ୍ ସେମିନାରୀ ଆମ ଘରକୁ ଖୁବ୍ ନିକଟ, Mission ସ୍କୁଲ ଦୂର। ଏଣେ ମୁସଲିମ୍ ସେମିନାରୀରେ ନାଁ ଲେଖେଇଲେ ଈଶ୍ୱର ସାହୁର ମୋର ସୌହାର୍ଦ୍ଦ୍ୟ ଆହୁରି ଦୃଢ଼ୀଭୂତ ହବ। ଈଶ୍ୱର ସାହୁ, ଭ୍ରମର ସାହୁ ଉଭୟେ ମୋର football ଖେଳର ସାଥୀ ମଧ୍ୟ। ସେ ଯା ହଉ, ଈଶ୍ୱର ସାହୁକୁ ଯେତେ ଭଲ ପାଏ, ମୁସଲିମ୍ ସେମିନାରୀକୁ ସେତେ ଭଲ ପାଏନା। ଏଣେ ଭ୍ରମର ସାହୁକୁ ଯେତେ ଭଲ ପାଏନା, କିନ୍ତୁ Mission ସ୍କୁଲକୁ football ଖେଳ ସକାଶେ ଭଲ ପାଏ। ଏଇ ସବୁ ଘଟଣା ନେଇ ମୁଁ ଏକ ମାନସିକ ଦ୍ୱନ୍ଦ୍ୱରେ ପଡ଼ିଲି। କ'ଣ କରିବି? କେଉଁଠି ନାଁ ଲେଖେଇବି? ମୋ ପାଠ ପଢ଼ା ପ୍ରତି ଯେମିତି ଲୋଭ ଥାଏ, ଖେଳ ଲାଗି ମଧ୍ୟ ସେମିତି ଲୋଭ ଥାଏ। ପୁଣି ଭାବେ, matric ପଢ଼ିବାର ତ ସୁଯୋଗ ପାଉ ନଥିଲି, ଯଦି ବାବା ପଢ଼େଇବାକୁ ରାଜି ହେଉଛନ୍ତି, ସେଥିରେ ପୁଣି ଏତେ ସ୍କୁଲ ବାଛିବାର ଉଚିତ୍ ନୁହେଁ। ଯେଉଁ ସ୍କୁଲରେ ନାଁ ଲେଖେଇଲେ ହେଲା।

ଏଥି ମଧ୍ୟରେ ମୋର ଜେଠାଙ୍କର ଗୋଟିଏ ପୁଅ ମୋଠାରୁ ବୟସରେ କମ୍, ସେ ମୁସଲିମ୍ ସେମିନାରୀରେ ୮ମ ଶ୍ରେଣୀରେ ପଢୁଥିଲା। ତାକୁ ମୁଁ ମୋର K.P. Basu Algebra ବହି ଖଣ୍ଡକ ଦେଇଥିଲି। ଏମିତି ଆଉ କେତେଜଣଙ୍କୁ ମଧ୍ୟ କେତେକ ପଢ଼ା ବହି ଦେଇଥିଲି,

ତାଙ୍କୁ ସବୁ ବହି ଫେରେଇ ଦବାକୁ କହିଲି ସେମାନେ ମଧ୍ୟ ମୋର ପୁଣି ପଢ଼ିବାର ଶୁଣି ବହି ଫେରେଇ ଦବାକୁ ରାଜି ହେଲେ।

ବାବାଙ୍କ ସହିତ ଆଲୋଚନା କରି ସ୍ଥିର ହେଲା, ମୁଁ Mission ସ୍କୁଲରେ ନାଁ ଲେଖେଇବି। ବାବା ମୋତେ ସାଙ୍ଗରେ ନେଇ ପି.ଏମ୍. ଏକାଡ଼େମୀକୁ ଗଲେ ମୋର transfer certificate ଆଣିବା ପାଇଁ। ବାବା headmasterଙ୍କ ନିକଟକୁ ଗଲେ। ମୁଁ ପି.ଏମ୍.ଏକାଡ଼େମୀର ଗୌରୀ ଶଙ୍କର ଛାତ୍ରାବାସ ଉପର ମହଲାରେ ଲୁଚି ରହିଲା ପରି ଠିଆ ହେଇ ରହିଲି। ସେଇଠି ଠିଆ ହେଇ ପି.ଏମ୍.ଏକାଡ଼େମୀର ପ୍ରାଙ୍ଗଣ, କୋଠାବାଡ଼ିକି ଅନେଇ ମୋର ପିଲାବେଳର କେତେ କଥା ମନେ ପଡ଼ିଲା। ସେଇଠି ୧୦ମ ଶ୍ରେଣୀ ଯାଏ ପଢ଼ିଥିଲି କି ଅସୁବିଧା ସମୟରେ ପାଠ ଛାଡ଼ି ବୁଲିବାକୁ ହେଲା। ପାଠ ଛାଡ଼ି ବାଲୁଙ୍ଗା ହେଇ ବୁଲିବୁଲି କେତେଦିନ ବିତିଗଲା, କି କଷ୍ଟ। ସେ ପୂର୍ବର headmaster ନିମାଇ ଚରଣ ଚ୍ୟାଉପଟ୍ଟନାୟକ ଆଉ ଇହଧାମରେ ନାହାନ୍ତି। ବର୍ତ୍ତମାନ ବସନ୍ତ କୁମାର ଦାସ headmaster, ପି.ଏମ୍.ଏକାଡ଼େମୀ ଛାଡ଼ିବାର transfer certificate ତାଙ୍କରି ହାତରୁ ଆଣିବାକୁ ହବ। ଇମିତି କେତେ କଥା ଭାବୁଛି, ଏଇ ସମୟରେ ଦେଖିଲି ବାବା headmasterଙ୍କ ରୁମ୍‌ରୁ ବାହାରିଲେ। ମୁଁ ତଳକୁ ଓଲେହି ଆସି ବାବାଙ୍କୁ ଭେଟିଲି। ବାବା କହିଲେ transfer certificate ଆଣିଲି। ଏଇଠି ପଢ଼ିଲୁ ନାହିଁ, ଏଠି ପଢ଼ିଥିଲେ transfer certificate ଆଣିବା ଦରକାର ପଡ଼ି ନଥାନ୍ତା। ମୁଁ କହିଲି, 'ସେ ଯା ହଉ, ମୁଁ ଏଠି ପଢ଼ିବି ନାହିଁ।' ବାବା, ମୁଁ ଉଭୟେ ଘରକୁ ଫେରିଲୁ।

ଏଣେ ଈଶ୍ୱର ସାହୁ, ଭ୍ରମର ସାହୁ ଉଭୟେ ମୋ ସାଙ୍ଗରେ ଲଗେଇ ଥାନ୍ତି, ତାଙ୍କ ସ୍କୁଲରେ ନାଁ ଲେଖେଇବା ପାଇଁ। ମୁଁ ଈଶ୍ୱର ସାହୁକୁ ଅଳ୍ପ ଆଶା ଦେଇଥାଏ, ମୁସଲିମ୍ ସେମିନାରୀରେ ନାଁ ଲେଖେଇବା ପାଇଁ ଆଉ ଭ୍ରମର ସାହୁକୁ ଦୃଢ଼ ଭାବରେ ଆଶା ଦେଇଥାଏ, Mission ସ୍କୁଲରେ ନାଁ ଲେଖେଇବି।

ବାବା ଦିନେ ଭଲ ଦିନ ଦେଖି ସ୍ଥିର କଲେ ମୋର ସ୍କୁଲରେ ନାଁ ଲେଖା ହବା ପାଇଁ। ସେଦିନ ମୁଁ ସକାଳ ବେଳା ବିଛଣାରୁ ଉଠି ନାହିଁ, ବାବା, ମା, ସାନ ଭଉଣୀ ସମସ୍ତେ ଉଠି ସାରିଥିଲେ। ଏଇ ସମୟରେ ମୋର ଜେଠା ପୁଅ ସାନ ଭାଇ ବଙ୍କିମ ବିହାରୀ ରାୟ K.P. Basu Algebra ଫେରେଇବାକୁ ଆସି ବାବାଙ୍କୁ କହିଲା, ପୁଳିନ୍ ଦା'କୁ ମୁସଲିମ୍ ସେମିନାରୀରେ ନାଁ ଲେଖାଅ। ପୁଳିନ୍ ଦା' ତ ୧୦ମ ଶ୍ରେଣୀରୁ ପଢ଼ା ଛାଡ଼ିଥିଲା, ମୁସଲିମ୍ ସେମିନାରୀରେ ୧୧ଶ ଶ୍ରେଣୀରେ ନେଇ ପାରେ, ସେଠି ନାଁ ଲେଖେଇଲେ ଗୋଟାଏ ବର୍ଷ ବଞ୍ଚିଯିବ, Mission ସ୍କୁଲରେ ନାଁ ଲେଖେଇଲେ ସେଠି ବୋଧହୁଏ ୧୧ଶ ଶ୍ରେଣୀରେ ନ ନେଇପାରେ। ତୁମେ ମୁସଲିମ୍ ସେମିନାରୀରେ ପୁଳିନ୍ ଦା'ର ନାଁ ଲେଖେଇଦିଅ। ଭଲ ହବ।

ମୁଁ ସବୁ ଶୁଣିଲି ଭାବିଲି, ଏ ତ କ'ଣ ଆସି ଏମିତି କଥା କହିଲାଣି। ହଉ, ଯଦି ମୁସଲିମ୍ ସେମିନାରୀରେ ୧୧ଶ ଶ୍ରେଣୀରେ ନିଏ, ଭଲ କଥା, ମୁଁ ତ matric ପାସ୍ କଲେ medicalରେ ପଢ଼ିବା କଥା। ଗୋଟାଏ ବର୍ଷ ତ ବଞ୍ଚିଯିବ, ପୁଣି କାହିଁକି ମନ ହଉ ନଥାଏ ମୁସଲିମ୍ ସେମିନାରୀରେ ନାଁ ଲେଖେଇବାକୁ।

ତେଣେ Mission ସ୍କୁଲରେ ଭ୍ରମର ସାହୁ ତାଙ୍କର games teacher, ଆଉ ତା'ର ସାଙ୍ଗ ପିଲାଙ୍କୁ କହିଥାଏ, ଆଜି ଜଣେ player ଆସିବ ନାଁ ଲେଖେଇବା ପାଇଁ।

ଈଶ୍ୱର ସାହୁ, ଭ୍ରମର ସାହୁ ଉଭୟେ ଉଭୟଙ୍କ ସ୍କୁଲରେ ମୋତେ ଅପେକ୍ଷା କରିଥାନ୍ତି, ମୁଁ ନାଁ ଲେଖେଇବାକୁ ଯିବି। ଏ ହେଲା ୧୯୨୮ ମସିହା କଥା। ଦିନ, ମାସ ମୋର ମନେ ପଡୁ ନାହିଁ। ବାବା ମୋତେ ସାଙ୍ଗରେ ନେଇ ବାହାରିଲେ Mission ସ୍କୁଲରେ ନାଁ ଲେଖେଇବା ପାଇଁ।

ବାବା, ମୁଁ ଦିହେଁ ଘରୁ ବାହାରି ଥୋରିଆସାହିର ଗଳି ଟପି ପ୍ରଧାନ ରାସ୍ତା ନିକଟରେ ହେଉଛୁ, ବାବା କହିଲେ, ତୋର ପାଠ ପଢ଼ିବା କଥା ମିଛ, ଖାଲି

ଖେଳିବା ଉଦ୍ଦେଶ୍ୟ, ସେଇଥି ପାଇଁ Mission ସ୍କୁଲରେ ନାଁ ଲେଖେଇବାର ଇଚ୍ଛା। ମୁଁ କହିଲି, ଯଦି ସନ୍ଦେହ ହଉଛି, ମୁଁ Mission ସ୍କୁଲରେ ଖେଳିବା ପାଇଁ ନାଁ ଲେଖେଇବି, ତାହେଲେ ମୋତେ Ravenshaw Collegiateରେ ନାଁ ଲେଖେଇଦିଅ। ସେ ଯେତେ ବାଟ ହଉ, ମୁଁ ଚାଲି ଚାଲି ଯାଇ ପଢ଼ି ଆସିବି। ବାବା ଏଥିରେ ରାଜି ହେଲେ ନାହିଁ କାରଣ Ravenshaw Collegiate ଥୋରିଆସାହିରୁ ବହୁତ ଦୂର, ସେଠିକି ଯାଇ ଆସି ପଢ଼ିବା ମୋ ପକ୍ଷରେ ସହଜ ନୁହେଁ। କାରଣ ମୁଁ ଏଥି ପୂର୍ବେ ବସନ୍ତ ରୋଗ ଭୋଗିଥିଲି, ଖରା ବିଶେଷ ସହ୍ୟ ହଉ ନଥାଏ।

ବାବା ପୁଣି କହିଲେ, ଆଚ୍ଛା ଚାଲତ ଦେଖିବା, ମୁସଲିମ୍ ସେମିନାରୀରେ ଯଦି ୧୧ଶ ଶ୍ରେଣୀରେ ନିଏ, ଭଲହବ। ଯଦି ସେଠି ୧୧ଶ ଶ୍ରେଣୀରେ ନ ନେବେ, ତା'ହେଲେ Mission ସ୍କୁଲକୁ ଯିବା। ମୁଁ ରାଜି ହେଲି। ବାବା, ମୁଁ ଦିହେଁ ଯାଇ ମୁସଲିମ୍ ସେମିନାରୀରେ ପହଁଚିଲୁ। Headmasterଙ୍କ ରୁମ୍‌ରେ ପଶି ଦେଖିଲୁ, ସେଠି Headmaster ଆଲାବକ୍ସ ଆଉ ଜୟରାମ ସ୍ୱାଇଁ ଉଭୟେ ବସିଛନ୍ତି। ମୁଁ ଜୟରାମ ସ୍ୱାଇଁଙ୍କୁ ଆଗରୁ ଦେଖିଥିଲି। ସେ ଯେତେବେଳେ କନିକା ସ୍କୁଲର team ନେଇ କଟକକୁ ଆସିଥିଲେ। କଟକରେ ବାରିପଦା ସ୍କୁଲ ସହିତ Gupta Cupର final match ଖେଳେଇବା ପାଇଁ। ସେ ବର୍ଷ କନିକା ସ୍କୁଲ ବାରିପଦା ସ୍କୁଲ team କୁ Gupta Cup final match ରେ ହରେଇ Gupta Cup ବିଜୟୀ ହେଇଥିଲା। ସେତେବେଳେ ଜୟରାମ ସ୍ୱାଇଁ କନିକା ସ୍କୁଲର headmaster ଥିଲେ। କନିକା ସ୍କୁଲ ଭାଙ୍ଗିଗଲା ପରେ ସେ ଆସି ମୁସଲିମ୍ ସେମିନାରୀରେ mathematics teacher ଭାବରେ ଚାକିରି ଗ୍ରହଣ କରିଥିଲେ କିନ୍ତୁ ତାଙ୍କର ତାଲିମପ୍ରାପ୍ତ କନିକାର କେତେକ player Ravenshaw Collegiateରେ ନାଁ ଲେଖେଇଥିଲେ। ଜୟାରାମ ବାବୁଙ୍କର ଆଶା ଥିଲା ସେ Ravenshaw Collegiateରେ ଚାକିରୀ ପାଇବେ କିନ୍ତୁ ତା' ନ ହେଇ ପାରିବାରୁ ସେ ଅଗତ୍ୟା ମୁସଲିମ୍ ସେମିନାରୀରେ ଚାକିରୀ ଗ୍ରହଣ କଲେ। ଜୟରାମ ସ୍ୱାଇଁ football ଖେଳର ଅତିଶୟ ଆଗ୍ରହୀ ଥିଲେ। ତାଙ୍କ ବିଷୟରେ ମୋର ଅନେକ କଥା ଲେଖିବାର ଅଛି।

ସେଦିନ ନାଁ ଲେଖେଇବାକୁ ଯାଇ ଜୟରାମ ସ୍ୱାଇଁଙ୍କ ହାବୁଡ଼ରୁ ଆଉ ଖସି ହେଲା ନାହିଁ। ବାବା କହିଲେ ମୋତେ ୧୧ଶ ଶ୍ରେଣୀରେ ନବା ପାଇଁ, ଆଲ୍ଲାବକ୍ସ ଆଉ ଜୟରାମ ସ୍ୱାଇଁ ବାବାଙ୍କୁ ବୁଝେଇ ଦେଲେ ଯେ ମୁଁ ଅନେକ ଦିନ ହେଲା ପଢ଼ାପଢ଼ି ଛାଡ଼ିଲିଣି, ବର୍ତ୍ତମାନ ୧୧ଶ ଶ୍ରେଣୀରେ ମୁଁ ନାଁ ଲେଖେଇଲେ ପାରିବି ନାହିଁ। ତାଠୁଁ ୧୦ମ ଶ୍ରେଣୀରେ ନାଁ ଲେଖେଇବା ଭଲ ଇତ୍ୟାଦି ଇତ୍ୟାଦି।

ବିଲେଇ ହାବୁଡ଼େ ମାଛଟିଏ ପଡ଼ିଲେ ଯେମିତି, ଜୟରାମ ସ୍ୱାଇଁଙ୍କ ହାବୁଡ଼େ playerଟିଏ ପଡ଼ିଲେ ସେମିତି, ଆଉ ଖସିବା ସହଜ ନୁହେଁ। ଈଶ୍ୱର ସାହୁ ତ ଆଗରୁ ମୋ ବିଷୟରେ ଭୂମିକା ଦେଉଥିଲା, ଜୟରାମ ସ୍ୱାଇଁ ମୋତେ ଆଉ ଛାଡ଼ୁଛନ୍ତି କୁଆଡ଼ୁ? Headmaster ଆଲ୍ଲାବକ୍ସ ଆଉ ଜୟରାମ ସ୍ୱାଇଁ ଉଭୟେ ବାବାଙ୍କୁ ଇମିତି ପଟେଇ ଦେଲେ ଯେ ବାବା ଆଉ ସେଠି କିଛି କହି ପାରିଲେନି। ଶେଷରେ ସେଇଠି ନାଁ ଲେଖା ହେଲା। ବାବା, ମୁଁ ଦିହେଁ ଘରକୁ ଫେରିଲୁ। ଫେରିଲାବେଳେ ମୁସଲିମ୍ ସେମିନାରୀର ହତା ଭିତରେ ଥିବା ଘର, ଆମ୍ବ ଗଛ, ପୋଖରୀ, ଗୋଟିଏ ଛୋଟ ପଢ଼ିଆକୁ ଦେଖି ଦେଖି ଆସିଲି। ଭାବିଲି, ଶେଷରେ ଏଇଠି ମୋର ପୁଣି matric ପଢ଼ିବା ଯୋଗ ଥିଲା। ପୁଣି ଭାବିଲି, ହଉ, ଯେଉଁଠି ହେଲେ ପଢ଼ିବାର କଥା, ଏଠି ମନ୍ଦ କ'ଣ? ଏଥିରେ ଦୁଃଖ କ'ଣ? ପୁଣିତ ପଢ଼ିବାର ସୁଯୋଗ ପାଇଲି। ପାଠ ଛାଡ଼ି ବାଲୁଙ୍ଗା ହେଇ ବୁଲିବା ବେଳର କେତେକ କଥା ମନେ ପଡ଼ିଲା। ମଝିଆ ଭଉଣୀର ବସନ୍ତ ରୋଗରେ ଆକ୍ରାନ୍ତ ହେଇ ଆମର ଅତି ଦୁଃଖ ବେଳରେ ତା'ର ମୃତ୍ୟୁର ଘଟଣା ମନେ ପଡ଼ିଲା। କମ୍ପାଉଣ୍ଡରୀ ପଢ଼ିବା କଥା ମନେ ପଡ଼ିଲା। ପୁଣି ଭାବିଲି, ମୁସଲିମ୍ ସେମିନାରୀରେ ନାଁ ଲେଖେଇଲେ ଦୁଃଖ କ'ଣ? ଗଛ ମୂଳରେ ଯଦି ପାଠ ପଢ଼ିବାର ସୁଯୋଗ ମିଳିଥାନ୍ତା, ପଢ଼ିଥାନ୍ତି। ପୁଣି ଯେ ମୁଁ

matric ପଢ଼ିବାର ସୁଯୋଗ ପାଇବି, ଏ ତ ମୋତେ ସ୍ୱପ୍ନ ଭଳି ଲାଗୁଛି । ଏ ସୌଭାଗ୍ୟର କଥା, ଏଥିରେ ଦୁଃଖ କ'ଣ ? ମୁସଲିମ୍ ସେମିନାରୀ ତ ଗୋଟାଏ high school, ଏଠିତ ପୁଣି ପିଲାଏ ପାଠ ପଢୁଛନ୍ତି । ଏଠି ପଢ଼ି ପିଲାଏ ତ matric ପାସ୍ କରୁଛନ୍ତି । ମୁଁ କାହିଁକି ଏଠି ପଢ଼ି matric ପାସ୍ ନ କରିବି ?

ସେତେବେଳେ କଟକରେ ଅଳ୍ପ କେତେଟି high school ଥିଲା, ସେଥିମଧ୍ୟରେ ମୁସଲିମ୍ ସେମିନାରୀ ଗୋଟିଏ ଗରିବ high school ଥିଲା । ମୁସଲିମ୍ ସେମିନାରୀ ଆଲ୍ଲାବକ୍ସଙ୍କ ଦ୍ୱାରା ୧୯୧୩ ମସିହାରେ ପ୍ରତିଷ୍ଠିତ ହୁଏ । ଶେଖ୍ ଆଲ୍ଲାବକ୍ସ ଭିକ୍ଟୋରିଆ high schoolରେ ପ୍ରଥମେ ଶିକ୍ଷକତା କରୁଥିଲେ । ସେଠୁ ଚାକିରୀ ଛାଡ଼ି ଆସି ନିଜେ ମୁସଲିମ୍ ସେମିନାରୀ ନାମରେ ଗୋଟିଏ high school ଆରମ୍ଭ କଲେ । ଅତି ସୀମିତ ସମ୍ବଳ ମଧ୍ୟରେ ସ୍କୁଲଟି ଆରମ୍ଭ କଲେ, ସ୍କୁଲଟି କଟକର ଧନୀ ମୁସଲମାନଙ୍କ ଚାନ୍ଦାରେ ଚଳିଲା, ତା'ପରେ ସରକାରୀ ଗ୍ରାଣ୍ଟ ମିଳିଲା । ଆଉ ସ୍କୁଲର ଛାତ୍ରମାନଙ୍କର ବେତନରୁ ଯାହା କିଛି ଆଦାୟ ହୁଏ, ସେଇଥିରେ ଚଳେ । ମୁସଲିମ୍ ସେମିନାରୀ ଗୋଟାଏ ଗରିବ ପୋଷା high school, ଅଧିକାଂଶ ପିଲା free studentshipରେ ପଢ଼ନ୍ତି । ସେତେବେଳେ ଯେଉଁ ଛାତ୍ରର ଆର୍ଥିକ ସ୍ୱଚ୍ଛଳତା ଅଛି, ସେ ଚାଲିଲା ଅନ୍ୟ ସ୍କୁଲରେ ପାଠ ପଢ଼ିବାକୁ, ଯାହାର ଅର୍ଥାଭାବ, ସେ ଆସିଲା ମୁସଲିମ୍ ସେମିନାରୀରେ ପାଠ ପଢ଼ିବାକୁ । ମୁଁ ଦେଖିଛି ଯାହାର ଅର୍ଥାଭାବ ନାହିଁ, ସେ ମଧ୍ୟ ମିଛରେ ଗରିବ ପିଲା ବୋଲି ପରିଚୟ ଦେଇ free studentship ପାଇ ମୁସଲିମ୍ ସେମିନାରୀରେ ପଢୁଛନ୍ତି । ସେତେବେଳେ କଟକର ଅନ୍ୟାନ୍ୟ ସ୍କୁଲ ତୁଳନାରେ ମୁସଲିମ୍ ସେମିନାରୀରେ ପିଲା କମ୍ ପଢୁଥିଲେ । ଏଣୁ ଛାତ୍ର ସଂଖ୍ୟା ବଢ଼େଇବା ପାଇଁ ଅଧିକାଂଶ ପିଲାଙ୍କୁ ହିଁ free studentship ଦେଇ ପଢ଼ା ହଉଥିଲା । ଖୁବ୍ ଅଳ୍ପ ପିଲାଏ ମାସିକ ଦରମା ଦେଇ ପଢୁଥିଲେ । ମୁଁ ମଧ୍ୟ ଚେଷ୍ଟା କରିଥିଲେ free studentship ପାଇ ପଢ଼ିଥାନ୍ତି, କିନ୍ତୁ ବାବାଙ୍କର ମନା free studentship ନେଇ ପଢ଼ିବାକୁ ହବନି । ଅର୍ଥାଭାବ ବେଳେ free studentship ନେଇ ପଢ଼େଇବାକୁ ଇଚ୍ଛା କରିଥିଲେ କୋଉ କାଳରୁ matric ପାସ୍ ହେଇ ସାରନ୍ତାଣି । ଗୋଟିଏ ପୁଅ, ତାକୁ ପୁଣି free ରେ ପଢ଼ାହବ ? ନା, ମାସିକ ଦରମା ଦେଇ ପଢ଼ିବାକୁ ହବ । ସହଜେ ମୁସଲିମ୍ ସେମିନାରୀ ପରି ଗରିବ ଅନୁଷ୍ଠାନ, ସେଥିରେ ପୁଣି ଆର୍ଥିକ ସ୍ୱଚ୍ଛଳତା ଥାଉ ଥାଉ ମିଛରେ free studentship ନେଇ ପଢ଼ିବାକୁ ହବ ନାହିଁ । ମୋର ମାସିକ ଦରମା ଦବାଟା ସ୍କୁଲକୁ ତ କେତେକ ସାହାଯ୍ୟ ହବ, ଏଣୁ ମୁଁ ନିୟମିତ ଭାବରେ ମାସିକ ଦରମା ଦେଇ ପଢ଼ିଲି ।

ମୁସଲିମ୍ ସେମିନାରୀର ହତା ବିସ୍ତୀର୍ଣ୍ଣ, ଆମ୍ବଗଛ, ପଡ଼ିଆ, ଦୁଇଟା ପୋଖରୀ, କେତେକ ଘର, କେତେକର ପକ୍କାଛାତ, କେତେକର ଟିଣ ଛାତ, କେତେକ ପୁଣି ଚାଳ ଘର ଥିଲା । ବିରାଟ ଫାଟକ । ଏ ଜଣକର ଗୋଟାଏ ଗୋଦାମ ଘର ଥିଲା ବୋଲି ଶୁଣିଛି, ପରେ ଏଇଠି ଶେଖ ଆଲ୍ଲାବକ୍ସଙ୍କ ଉଦ୍ୟମରେ ମୁସଲିମ୍ ସେମିନାରୀ ଅନୁଷ୍ଠାନ ଆରମ୍ଭ ହୁଏ । ଶେଖ ଆଲ୍ଲାବକ୍ସ ବହୁ କଷ୍ଟରେ ଏ ସ୍କୁଲଟି ପରିଚାଳନା କରୁଥିଲେ । ଶେଖ ଆଲ୍ଲା ବକ୍ସ ଜଣେ ଦେବ ପ୍ରତିମ ଲୋକ ଥିଲେ । ସେ ଚିରସ୍ମରଣୀୟ, ଅତି ଉଦାର, ଅମାୟିକ ଏବଂ ମିଷ୍ଟଭାଷୀ ଲୋକ ଥିଲେ । ପଢ଼େଇବାରେ ମଧ୍ୟ ସୁଦକ୍ଷ, ସେ ଚିର ନମସ୍ୟ । ମୁଁ କମ୍ପାଉଣ୍ଡରୀ ପାସ୍ କରି ପୁଣି matric ପଢୁଥାଏ ବୋଲି ସେ ମୋତେ ଭାରି ଭଲ ପାଉଥିଲେ । ଆଉ ମୋତେ ନାଁ ଧରି ନ ଡ଼ାକି ଖାଲି "ବଙ୍ଗାଳୀ" ବୋଲି ଡ଼ାକୁଥିଲେ । ମୁଁ ସବୁବେଳେ ଅତି ତରବରିଆ ପ୍ରକୃତିର ଥିଲି । ପଢ଼ିବାରେ ତରବର, ଲେଖିବାରେ ତରବର, ଖେଳରେ ତରବର ହୁଏ ବୋଲି ମୋତେ ବରାବର ପରିହାସ କରି ଅନ୍ୟକୁ କହୁଥିଲେ, "ଓତ ତର୍‌ତର୍ ହୋକର୍ ମରତେ ହେଁ" । କାରଣ ମୁଁ ତରତର ହେଇ ପରୀକ୍ଷାରେ ଭୁଲ କରି ବସେ, ଖେଳରେ ଭୁଲ କରେ, ମୋର ପାଠପଢ଼ା ଆଉ ଖେଳ ପାଇଁ ସେ ମୋତେ ବିଶେଷ ଭଲ ପାଉଥିଲେ ।

ଯେଉଁଦିନ ମୁସଲିମ୍ ସେମିନାରୀର ନାଁ ଲେଖେଇଲି, ସେହିଦିନ ସନ୍ଧ୍ୟା ବେଳକୁ ଭ୍ରମର ସାହୁ ଆସି ମୋତେ ପଚାରିଲା, ତୁ କାହିଁକି mission ସ୍କୁଲରେ ନାଁ ଲେଖେଇଲୁ

ନାହିଁ? ମୁଁ ଆଗରୁ ଆମର games teacher ଙ୍କୁ କହି ଅପେକ୍ଷା କରିଥିଲି।

ମୋର ଯେମିତି ଭାବରେ ମୁସଲିମ୍ ସେମିନାରୀରେ ନାଁ ଲେଖାହେଲା, ସବୁ କହିଲି। ଏଥିରେ ଭ୍ରମର ସାହୁ ମନଦୁଃଖ କରି ଫେରି ଗଲା। କିନ୍ତୁ ଈଶ୍ୱର ସାହୁ ଭାରି ଖୁସି। ଈଶ୍ୱର ସାହୁ, ଭ୍ରମର ସାହୁ ଉଭୟେ ମୋର ନାଁ ଲେଖା ଘଟଣାରେ ବିଶେଷ ମନ କଷାକଷି ହେଉଥିଲେ। ମୁଁ କେଉଁଠି ନାଁ ଲେଖଉଛି ଦେଖିବେ। ମୋର ମୁସଲିମ୍ ସେମିନାରୀରେ ନାଁ ଲେଖେଇବାରେ ଯେମିତି ଈଶ୍ୱର ସାହୁର ଛିଟାପଟ ହେଲା। ମୁଁ ଯେଉଁଦିନ ପ୍ରଥମେ କ୍ଲାସକୁ ଗଲି, ଠିକ୍ ସମୟରେ ଈଶ୍ୱର ସାହୁ ଆସି ମୋ ଘରେ ହାଜର, ସେ ମୁଁ ଏକା ସାଙ୍ଗରେ ସ୍କୁଲକୁ ଯିବୁ। ମୁସଲିମ୍ ସେମିନାରୀ ଥୋରିଆସାହିକୁ ଖୁବ୍ ନିକଟ, ଏମିତିକି ମୁସଲିମ୍ ସେମିନାରୀରେ ଘଣ୍ଟା ବାଜିଲେ ଆମ ଘରକୁ ଶୁଣାଯାଏ। ଈଶ୍ୱର ସାହୁର ଘର ମଙ୍ଗଳାବାଗରେ। ଏଣୁ ସ୍କୁଲକୁ ଗଲାବେଳେ ଦୈନିକ ତା'ର ମୋର ନିଶ୍ଚୟ ଭେଟ ହବାର କଥା। ଈଶ୍ୱର ସାହୁ, ମୁଁ ଦୈନିକ ବେଶ୍ ଆନନ୍ଦରେ ସ୍କୁଲକୁ ଯିବା ଆସିବା କଲୁ। ଖାଲି ସ୍କୁଲକୁ ନୁହେଁ, ଯୁଆଡ଼େ ଗଲୁ ଈଶ୍ୱର ସାହୁ ଆଉ ମୁଁ। ସ୍କୁଲ, ଖେଳ ପଡ଼ିଆ, ସିନେମା, ଯାତ୍ରା ସବୁଠି ଈଶ୍ୱର ସାହୁ, ମୁଁ ଏକ ସାଙ୍ଗରେ ଯାଉ। ଈଶ୍ୱର ସାହୁ ତ ଆଗରୁ ସାଙ୍ଗ ଥିଲା, ମୁସଲିମ୍ ସେମିନାରୀରେ ନାଁ ଲେଖେଇବା ପରେ ସାଙ୍ଗ ହବାଟା ଆହୁରି ବଢ଼ିଗଲା। ଏଇ ସମୟରେ ମୁଁ ମନେ ମନେ ସ୍ଥିର କଲି, ମୃଣାଳ ଆଉ ପ୍ରିୟ ସହିତରେ ଆଉ ବିଶେଷ ବନ୍ଧୁତ୍ୱ ରଖିବି ନାହିଁ। ପ୍ରିୟ ସହିତରେ କିଛି ବା ରଖିପାରେ, ମୃଣାଳ ସହିତରେ ଆଦୌ ନୁହେଁ। କାରଣ ସେ ମୋତେ ପରିହାସ କରିଥିଲା, ମୁଁ ପୁଣି ପଢ଼ିବି ବୋଲି ଯେତେବେଳେ ସେ ଶୁଣିଲା। ପାଠପଢ଼ା ଶେଷ କଲେ ପୁଣି ମୃଣାଳ ସହିତରେ ସାଙ୍ଗ ହେବି। ପାଠପଢ଼ା ଭିତରେ ମୃଣାଳ ସହିତରେ ସାଙ୍ଗ ହେଲେ ବି ପୂର୍ବ ଭଳି ଏତେ ଘନିଷ୍ଠ ଭାବରେ ନୁହେଁ। ମୃଣାଳ ସଙ୍ଗେ ପୂର୍ବ ଭଳି ସୌହାର୍ଦ୍ଦ୍ୟ ରଖିଲେ ସେ କେବଳ ଆସି ଆଡ୍ଡା ଆଉ ଗପ ଜମେଇବ। ଯା' ଫଳରେ ମୋର ପାଠପଢ଼ାର କ୍ଷତି ହବ।

ମୁଁ ପୁଣି matricରେ ନାଁ ଲେଖେଇଲା ବେଳକୁ ମୃଣାଳ ଓ ପ୍ରିୟ ଉଭୟେ matric ପରୀକ୍ଷା ପାଇଁ ବଛାବଛି (test examination) ପରୀକ୍ଷାରେ ଅକୃତକାର୍ଯ୍ୟ ହେଇ ପାଠ ଛାଡ଼ି ସାରିଥିଲେ। ଏଣୁ ସେ ଦିହେଁ ପୂର୍ବ ଭଳି ସାଙ୍ଗରେ ରହିଲେ। ମୁଁ ତାଙ୍କ ପାଖରୁ ଓହରି ଆସି ପୁଣି ପାଠପଢ଼ାରେ ଲାଗିଲି। ନିଜକୁ ମଧ ଟିକିଏ ସରମ ସରମ ଲାଗୁଥିଲା, କିନ୍ତୁ ମୁଁ ମନରୁ ପୂର୍ବର ଘଟଣା ସବୁ ପୋଛି ଦେଲି ଯେ ମୁଁ ପାଠ ଛାଡ଼ି ବୁଲୁଥିଲି। କମ୍ପାଉଣ୍ଡରୀ ପାସ୍ କରିଛି। କେବଳ ମନରେ ରଖିଲି, ମୋତେ ପୁଣି ପଢ଼ିବାକୁ ହବ, ପାଠ ପଢ଼ିବି, football ଖେଳିବି, ଖେଳ ଛାଡ଼ି ପାରିବି ନାହିଁ, ଯେତେ ଯାହା ହଉ।

ମୁସଲିମ୍ ସେମିନାରୀରେ ପଢ଼ିବା ଦ୍ୱାରା ମୋର ଗୋଟାଏ ବିଶେଷ ସୁବିଧା ହେଲା, ମୁଁ ଥୋରିଆସାହିରୁ ବାହାରି ରାହୁସାପାଟଣା ନିକଟସ୍ଥ ମୁସଲିମ୍ ସେମିନାରୀରେ ପାଠ ପଢ଼ିସାରି ଘରେ ପଶିଲି। ପୁରୁଣା ସାଙ୍ଗ ତ ଈଶ୍ୱର ସାହୁ ଅଛି। ନୂଆ ସାଙ୍ଗ ତ କେତେ ଯୁଟିଲେ, medical ପଡ଼ିଆକୁ ଆଉ ଯିବାର ଦରକାର ପଡିଲାନି। Mangalabag Boys' Union ଛାଡ଼ିଲି। ଦୈନିକ football ଖେଳିବା ପାଇଁ ମୁସଲିମ୍ ସେମିନାରୀର ହତା ଭିତର ପଡ଼ିଆ ପଡ଼ିଛି। ଆଉ ପୁରୁଣା ସାଙ୍ଗଙ୍କ ସହିତରେ ଖୁବ୍ କମ୍ ସମୟ ଭେଟ ହେଲା। ସମସ୍ତେ ଜାଣିଲେ ଯେ ପୁଳିନ କମ୍ପାଉଣ୍ଡରୀ ପାସ୍ କରି ପୁଣି matric ପଢୁଛି। କିନ୍ତୁ କାହାରି ହିଂସା ନାହିଁ କି ପରିହାସ ନାହିଁ, କେବଳ ମୃଣାଳ ଛଡ଼ା। ତା'ର ଇଚ୍ଛା ନୁହେଁ ମୁଁ ପଢ଼େ, କାରଣ ମୋ ସାଙ୍ଗରେ ସେ ଯେତେ ସମୟ କଟେଇ ପାରୁଥିଲା, ଆଉ ହେଇ ପାରିଲା ନାହିଁ। ତା'ଛଡ଼ା ତା'ର ମନୋଭାବ ରହିଲା, ସେ ଆଉ ପ୍ରିୟ ତ matric ପାଠ ଛାଡ଼ିଲେ, ମୁଁ ମଧ ଆଗରୁ ଛାଡ଼ିଥିଲି, ପୁଣି ମୁଁ କାହିଁକି ପଢ଼ିବି? ଅର୍ଥାତ୍ ଆମେ ତିନିହେଁ under matric ହେଇ ବୁଲି ବୁଲି ହସଖୁସିରେ ଜୀବନଟା କଟେଇଥାନ୍ତୁ।

ମୃଣାଳ ଧନୀ ଘରର ପିଲା କିନ୍ତୁ ମୁଁ ଆଉ ପ୍ରିୟ ତ ମଧ୍ୟବିତ୍ତ ଘରର ପିଲା। ତା' ସାଙ୍ଗରେ ସବୁଦିନେ ସାଙ୍ଗ ହେଲେ ଚଳିବ କେମିତି?

ଦିନେ ମୁଁ ସ୍କୁଲରେ ଅଛି, ସେତେବେଳକୁ ମୃଣାଳ ସହିତରେ ବହୁତ ଦିନ ଭେଟ ହେଇ ନାହିଁ। ସ୍କୁଲର ପିଅନ ମୋତେ ଜଣେଇଲା, ଆପଣଙ୍କୁ କିଏ ଜଣେ ବାହାରେ ଡାକୁଛନ୍ତି। ମୁଁ ଆଶ୍ଚର୍ଯ୍ୟ ଆଉ ଲଜ୍ଜିତ ମଧ ବୋଧ କଲି। କିଏ ଡ଼ାକୁଛି? କେମିତି ଦେଖା କରିବି? କାରଣ ମୁଁ matric ରେ ପୁଣି ନାଁ ଲେଖେଇଛି। ପୁଣି ଭାବିଲି, ଲଜ୍ଜା କ'ଣ? ମୁଁ ପୁଣି ପଢୁଛି, କିଛି ତ ଏମିତି ଗର୍ହିତ କାମ କରିନାହିଁ, ଦେଖା କଲେ କ'ଣ ହେଲା? ଗଲି ଦେଖା କରିବାକୁ, ଯାଇ ଦେଖେ, ମୋର ବାଲୁଙ୍ଗା ଜୀବନର ବନ୍ଧୁ, ମୋର ଦୁଃଖ ବେଳର ସାଥୀ, କଳାକଳେବର କହ୍ନାଇ ସଙ୍ଗେ ରୋହିଣୀ ସୁତ ନାହାଁନ୍ତି। ସାଇକେଲ ଧରି ଠିଆ ହେଇଛନ୍ତି ଏକା ମୃଣାଳ। ମୁଁ କିଛି କହିଲି ନାହିଁ। ପେନ୍‌ସିଲ୍ ଖଣ୍ଡେ ହାତରେ ଧରି ଠିଆ ହେଲି, ଯେମିତି ମୁଁ ମୃଣାଳ ସହିତରେ କେଭେ ସାଙ୍ଗ ହେଇ ନଥିଲି। ମୁଁ ଯେମିତି ପ୍ରକୃତ ଜଣେ ଧାରାବାହିକ ଛାତ୍ର (regular student) ପାଠ ଛାଡ଼ି ବୁଲି ନଥିଲି। ଏଇ ମୃଣାଳ ସହିତରେ ବାଲୁଙ୍ଗା ଜୀବନରେ କେତେ ଯେ ବହି, ପତ୍ରପତ୍ରିକା ପଢ଼ା ହେଇଛି, କେତେ କୁଆଡ଼େ ବୁଲା ହେଇଛି, କେତେ ଫିଷ୍ଟ କରି ଖାଇଛୁ। ମୃଣାଳ ହିଁ ପ୍ରଥମ ମୋତେ ସାଇକେଲ୍ ପଛରେ ଠିଆ କରି କଟକ ଟାଉନ୍‌ରେ କେତେ ଆଡ଼େ ବୁଲେଇବାକୁ ନେଇଛି। ମୃଣାଳ ହିଁ ପ୍ରଥମ ମୋତେ ବୀଣାପାଣି କ୍ଲବ୍‌ରେ, କାଜିବଜାର ବାସନ୍ତୀ ପେଣ୍ଡାଲରେ ବଙ୍ଗଳା ନାଟକ ଦେଖେଇବାର ଲୋକ। ଭଲ ଭଲ ଫିଲ୍ମ ଆସିଲେ ମୃଣାଳ ହିଁ ମୋତେ ଦେଖେଇଛି, ନିଜ ଖର୍ଚ୍ଚରେ, ଖାଲି ମୋତେ ନୁହେଁ ପ୍ରିୟକୁ ମଧ। ମୃଣାଳ ଧନୀ ଘର ପିଲା, ଖର୍ଚ୍ଚୀ, କୃପଣ ନୁହେଁ। ମୃଣାଳ ଆମକୁ ଭଲ ଜିନିଷ ଖୋଇଲେ ଆନନ୍ଦ ପାଏ। ଭଲ ଜିନିଷ ଦେଖେଇଲେ ଆନନ୍ଦ ପାଏ। ଭାରି ମନସ୍ବୀ, ଆମୋଦୀ, ଦିଲ୍‌ଦାର୍ ପିଲା, ଅଧିକାଂଶ ଧନୀ ଘର ପିଲା ଯେମିତି ହେଇଥାନ୍ତି, ସେମିତି।

ମୁଁ ମୃଣାଳ ସାମନାରେ ଠିଆ ହେଲି ଛାତ୍ରସୁଲଭ ଭଙ୍ଗୀରେ। ମୃଣାଳ ତା ମନକୁ ଯା ଆସିଲା, ମୋତେ ଗୁରାଏ ଶୋଧିଗଲା। ଅବଶ୍ୟ ବଙ୍ଗଳା ଭାଷାରେ, ସେଠି କେହି ନଥିଲେ, କେବଳ ମୃଣାଳ ଆଉ ମୁଁ। ମୃଣାଳ ମୋତେ ଦେଖି ଆଶ୍ଚର୍ଯ୍ୟ ହେଲା, ମୁଁ ପୁରାପୁରି ବଦଳି ଯାଇଛି। ମୁଁ ଯେମିତି ପୂର୍ବେ ତା'ର ସାଙ୍ଗ ନଥିଲି। ଛାତ୍ରସୁଲଭ ଭଙ୍ଗୀ, ନମ୍ରତା, ଶିଷ୍ଟତା ସବୁ ବିଦ୍ୟମାନ। ମୃଣାଳ ଯେମିତି ମୋଠାରୁ ବୟସରେ ବଡ଼, ମୁଁ ତା ସାମନାରେ ଠିଆ ହେଇଛି ଯେମିତି ଜଣେ ଛାତ୍ର ତା'ର ଅଭିଭାବକ ନିକଟରେ ଠିଆ ହୁଏ। ମୃଣାଳ ଶୋଧି ଯାଉଛି, ମୁଁ ନିରୁତ୍ତର, ବିନମ୍ର, ମୃଣାଳ ଯାହା ବଙ୍ଗଳାରେ ମୋତେ ଶୋଧିଲା, ତାକୁ analyse କଲେ ପାଠ ଛାଡ଼ି ଦେବାକୁ ହବ। ମୃଣାଳ ଶୋଧିବା ଭିତରେ ମୋତେ ଯେ ଖାଲି "ପୁଳିନ" ବୋଲି ସମ୍ବୋଧନ କରିଛି ତା' ନୁହେଁ। କେତେ ପ୍ରକାର କ'ଣ ସମ୍ବୋଧନ କରିଛି, ଶେଷରେ ପତ୍ନୀର ଭ୍ରାତା ସମ୍ପର୍କୀୟ କରିବାକୁ କୁଣ୍ଠା ବୋଧ କରି ନାହିଁ। ମୁଁ କିନ୍ତୁ କିଛି କହି ନାହିଁ। ଚୁପ୍ ରହିଛି। ଶେଷରେ ଅନ୍ତରଜ୍ଵାଳାରେ ଆଶୀର୍ବାଦ କରିଛି। ମୁଁ ଯେମିତି matric ପାସ୍ କରି ପାରେ ନା ପୁଣି ବାଲୁଙ୍ଗା ହେଇ ବୁଲେ ଇତ୍ୟାଦି ଇତ୍ୟାଦି।

ମୃଣାଳ ମୋ ଉପରେ ବିକ୍ଷୋଦ୍‌ଗାର କରି ସାଇକେଲ୍‌ରେ ଚଢ଼ି ବିଦାୟ ନେଲା। ମୁଁ ସଂଯତ ହେଇ ସ୍କୁଲ ଭିତରକୁ ଫେରି ଆସିଲି। ମୁଁ ଯାଇ କ୍ଲାସରେ ବସିଲି। ମୋ ମନରେ କାହିଁକି ଟିକିଏ ହେଲେ ଦାଗ ରହିଲାନି, ମୃଣାଳ ଯେତେ ଯାହା ଶୋଧିଗଲା। ମୁଁ ମୃଣାଳକୁ ଜାଣେ, ସେ ଧନୀ ଘର ପିଲା, ପଢ଼ିବାକୁ ଇଚ୍ଛା କରିଥିଲେ କେତେ ପଢ଼ି ପାରିଥାନ୍ତା। କିନ୍ତୁ ତା'ର ଏଇ ବାରବୁଲା ପ୍ରକୃତି ଯୋଗୁଁ ସେ ପଢ଼ି ପାରିଲା ନାହିଁ। ପ୍ରିୟ ଯାହା ପଢ଼ିଥାନ୍ତା, ଏଣେ ଅର୍ଥାଭାବକୁ, ତେଣେ ମୃଣାଳ ପରି ସାଙ୍ଗଟିଏ ଜୁଟିଗଲେ, ସେଠି ସରସ୍ବତୀଙ୍କ ପାଦ ପଡ଼ିବା ଅସମ୍ଭବ। ମୁଁ ତ ଅର୍ଥାଭାବରେ ପାଠ ଛାଡ଼ିଥିଲି, ମୃଣାଳ ପରି ସାଙ୍ଗ ଜୁଟିଲେ କ'ଣ ହବ? ମୋ ସୀମାରେ ମୁଁ, ମୁଁ ଏକବାରେ ଲଗାମ ଛାଡ଼ି ଦେଇ ନାହିଁ। ମୃଣାଳକୁ ଅନେକ ବୁଝେଇଛି, ସେ ଯେମିତି ଧନୀ ଘର ପିଲା, ପଢ଼ାରେ ଅବହେଳା କରିବା ଆଦୌ ଉଚିତ୍ ନୁହେଁ, ପରେ ଭାବିବ, ମୁଁ ମୃଣାଳକୁ ଭଲ କଥା ବୁଝେଇଲେ,

ମୃଣାଳ ମୋ ଉପରେ ବିରକ୍ତ ହୁଏ। ମୋର ବାବା, ମା'ଙ୍କ ଶାସନ ମଧ୍ୟ ମୋତେ ଠିକ୍ ବାଟ ଦେଖେଇଛି, କ'ଣ କରିବେ? ଉକ୍ରଟ ଅର୍ଥାଭାବ, ଅନେକ ତାଙ୍କ ପ୍ରତି ବିଶ୍ୱାସଘାତକତା କରିଛନ୍ତି, ନାଟା, ବାବା, ମା ଭାବି ନଥିଲେ, ତାଙ୍କ ପ୍ରତି ଆତ୍ମୀୟସ୍ୱଜନ ତାଙ୍କ ଦୁଃଖବେଳରେ ଏମିତି ପାଖେଇ ଯିବେ, ନଚେତ୍ ମୁଁ ଗୋଟିଏ ପୁଅ, ମୋତେ କ'ଣ ଧାରାବାହିକ ଭାବରେ ପଢ଼େଇ ପାରି ନଥାନ୍ତେ? ମୋର ଦୁର୍ଭାଗ୍ୟ, ବାବା, ମା କ'ଣ ମୋର ଅନିଷ୍ଟ ଚିନ୍ତା କରି ମୋତେ ପଢ଼ଉନଥିଲେ, ସେ କଥାକୁ ଆଲୋଚନା କଲେ କ'ଣ ହବ? ଦିନ ଯାଏ କଥା ରହେ।

ମୁଁ ପାଠ ପଢ଼ାରେ ଲାଗିବାରେ ମୃଣାଳ, ପ୍ରିୟ ସାଥିରେ କମ୍ ଦେଖା ସାକ୍ଷାତ ହେଲା। କେତେ ନୂଆ ସାଙ୍ଗ ଜୁଟି ଗଲେ। Classmate, playmate କେତେ କ'ଣ। ମୁଁ ଯେମିତି ନଈ ପାଣି ଯାଇ ସମୁଦ୍ରରେ ମିଶିଗଲି। ଏଇଠି ରବୀନ୍ଦ୍ରନାଥଙ୍କ ଉକ୍ତି ମନେ ପଡ଼ିଲା, "କତ ଅଜାନାରେ ଜାନାଇଲେ ତୁମି, କତ ଘରେ ଦିଲେ ଠାଇଁ ଦୂର କେ କରିଲେ ନିକଟ ବନ୍ଧୁ, ପରକେ କରିଲେ ଭାଇ।"

ମୁଁ ମୁସଲିମ୍ ସେମିନାରୀର ଯେଉଁ ୧୦ମ ଶ୍ରେଣୀରେ ନାଁ ଲେଖେଇଲି, ସେ ଶ୍ରେଣୀର ପିଲାମାନେ ଖୁବ୍ ଭଲ ପିଲା, ଭାରି ମିଶାଳ, ନୀରିହ, ଶାନ୍ତ ପିଲା। ପି.ଏମ୍.ଏକାଡ଼େମୀରେ ୧୦ମ ଶ୍ରେଣୀରେ ପଢ଼ିବା ବେଳେ, ସେଠାରେ ଯେଉଁ ପିଲାଙ୍କ ସାଙ୍ଗରେ ପଢ଼ୁଥିଲି, ସେମାନଙ୍କ ଅପେକ୍ଷା ଏମାନେ ଢ଼େର ଭଲ ପିଲା। ମୁଁ ପୂର୍ବେ ଯେ ପି.ଏମ୍.ଏକାଡ଼େମୀରେ ପଢ଼ୁଥିଲି, ପଢ଼ା ଛାଡ଼ିଥିଲି, ପଢା ଛାଡ଼ିବା ପରେ ଯେଉଁ ଦୁଃଖ, ପୁଣି ବର୍ଷେ କମ୍ପାଉଣ୍ଡରୀ ପଢ଼ିଲି, ସବୁ କଥାକୁ ଜାଣି ଜାଣି ମନରୁ ପୋଛି ଦେଇ ମୁସଲିମ୍ ସେମିନାରୀରେ ୧୦ମ ଶ୍ରେଣୀରେ ପଢ଼ିବାକୁ ଭାବି ନେଲି ଯେ ମୁଁ ଯେମିତି ଏଇ ପିଲାଙ୍କ ସାଙ୍ଗରେ ଧାରାବାହିକ ଠିକ୍ ଭାବେ ପଢ଼ି ଆସୁଛି। ପୂର୍ବର ଘଟଣାକୁ ଆଦୌ ମନରେ ସ୍ଥାନ ଦେଲି ନାହିଁ। ମୁଁ ଭାବିଲି ମୋତେ ପୁଣି ନୂଆ ଭାବରେ ଚଳିବାକୁ ହବ, matric ପାସ୍ କରି medicalରେ ପଢ଼ିବାକୁ ହବ। ଏଣୁ କ୍ଲାସ୍‌ର ପାଠକୁ ଅପେକ୍ଷା ନ କରି ଘରେ ଘରେ ପଢ଼ି ଆଗେଇ ଚାଲିଲି, କ୍ଲାସ୍‌ରେ ଯାହା ପଢ଼ା ହଉଛି, ହଉଥାଉ। କ୍ଲାସ୍‌ରେ ପାଠ ପଢ଼ା ଯେମିତି ଅଧିକା ସାହାଯ୍ୟ, କେଉଁଠି ଅଟକିଲେ ଶିକ୍ଷକଙ୍କୁ ପଚାରିବାକୁ ହବ। ମୋତେ ଆଉ ଗୋଟାଏ ସୁବିଧା ମିଳିଲା, ସେ ହଉଛି, ମୁଁ ଯେତେବେଳେ ୧୯୨୮ ମସିହାରେ ମୁସଲିମ୍ ସେମିନାରୀରେ ୧୦ମ ଶ୍ରେଣୀରେ ପୁଣି ନାଁ ଲେଖାଏ, ସେତେବେଳେ Patna Universityର ଗୋଟାଏ ନୂଆ ନିର୍ଦ୍ଦେଶ ହେଇଥାଏ, ଯେ ସଂସ୍କୃତ ପଢ଼ିବ ତ ପଢ଼ିବ, ନଚେତ୍ ତା'ବଦଳରେ ଅନ୍ୟ ଗୋଟାଏ ବିଷୟ ପଢ଼ିପାରେ। ମୋତେ ବିଶେଷ ସୁବିଧା ହେଲା, ମୁଁ ତ medicalରେ ପଢ଼ିବା ପାଇଁ matric ପଢ଼ୁଥାଏ, ମୋର ସଂସ୍କୃତ କ'ଣ ଦରକାର? ପୁଣି ପି.ଏମ୍.ଏକାଡ଼େମୀରେ ପଢ଼ିବା ବେଳଠୁଁ ସଂସ୍କୃତ ମୋତେ ଭାରି କଠିନ ମନେ ହଉଥିଲା, ଆଦୌ ଭଲ ଲାଗୁ ନଥିଲା। ସେଠା ଭୋଳି ପଣ୍ଡିତଙ୍କ ରାଗ, ଗାଳି ସବୁବେଳେ ମନରେ ଗୋଟାଏ ଆତଙ୍କ ସୃଷ୍ଟି କରିଥିଲା। ଏଣୁ ମୁଁ ସଂସ୍କୃତକୁ ଆଗେ ଆନନ୍ଦରେ ବିଦାୟ ଦେଇ ତା' ପରିବର୍ତ୍ତେ ଅତିରିକ୍ତ ଓଡ଼ିଆ ନେଲି, ଆଉ ଏଣେ additional subject ନେଲି additional mathematics। ମୋତେ ଭାରି ସୁବିଧା ହେଲା, ମୁଁ ଦୁଇଟା ଓଡ଼ିଆ ବିଷୟ ନେଲି, ଗୋଟାଏ compulsory ଓଡ଼ିଆ ଆଉ ଗୋଟାଏ ସଂସ୍କୃତ ବଦଳରେ ଓଡ଼ିଆ। ଓଡ଼ିଆ ଲାଗି ମୋତେ ଆଉ ବିଶେଷ ପରିଶ୍ରମ କରିବାକୁ ପଡ଼ିଲାନି। ସଂସ୍କୃତ ଲାଗି ଯେଉଁ ପରିଶ୍ରମ କରିଥାନ୍ତି, ସେହି ପରିଶ୍ରମ additional mathematics ପାଇଁ କଲେ ଭବିଷ୍ୟତରେ ଉପକାର ମିଳିବ। Science ପଢ଼ି ପାରିବି। ମୋର science ପଢ଼ିବା ପାଇଁ ମନରେ ବିଶେଷ ଆଗ୍ରହ ଥିଲା। Additional mathematics ନେଇଥିଲେ ଭବିଷ୍ୟତକୁ ବାଟ ଥିବ।

ମୁଁ ପୁଣି ଗୋଟାଏ ମୋ ନିଜର ମାନସିକ ଓ ଦୈହିକ ପରିବର୍ତ୍ତନ ଲକ୍ଷ୍ୟ କଲି, ସେ ହେଲା ମୁଁ ଆଗେ ଯେତେବେଳେ ପି.ଏମ୍.ଏକାଡ଼େମୀରେ ପଢ଼ୁଥିଲି, ମୁଁ

ଯେତେ ପଢ଼ିଲେ, ମୋର କିଛି ମନେ ରହୁ ନଥିଲା, ମୁଁ ବସନ୍ତ ରୋଗରୁ ଉଠିଲା ପରେ, ଜାଣି ପାରିଲି ଯେ ସ୍ମୃତି ଶକ୍ତି ବଢ଼ିଛି କାରଣ ଯାହା ଥରେ ପଢ଼ିଲି ମନେ ରହିଲା। ପିଲାଦିନୁ ଅଙ୍କକୁ ଯମର ଭୟ ଥିଲା କିନ୍ତୁ ଏବେ ଦେଖିଲି, ମୋ ଦ୍ୱାରା ନହବା ଅଙ୍କ ହେଲା। ଯେତେ ବଡ଼ କଠିଣ ଅଙ୍କ ହଉ, ଅଳ୍ପ କିଛି ସମୟ ଭାବିଲା ପରେ ସେ ଅଙ୍କ କରି ଥୋଇଲି। ସବୁ ବିଷୟ ଭିତରେ ଅଙ୍କ ହିଁ ବିଶେଷ ଭଲ ଲାଗିଲା, ମନ ହେଲା ସବୁବେଳେ ଅଙ୍କ କରିବି। ଆଗେ ପଢ଼ିବା ବେଳେ କେବଳ ଓଡ଼ିଆ ସାହିତ୍ୟ ଛଡ଼ା ଆଉ କିଛି ପଢ଼ିବାକୁ ଭଲ ଲାଗୁ ନଥିଲା। ବର୍ତ୍ତମାନ ମୋତେ ସବୁ ବିଷୟ ପଢ଼ିବାକୁ ଭଲ ଲାଗିଲା କିନ୍ତୁ ସବୁଠୁଁ ଭଲ ଲାଗିଲା ଅଙ୍କ। ମୁଁ ଭାବିଲି, ମୁଁ ବସନ୍ତ ରୋଗରୁ ଉଠିଲା ପରେ ଏ ମୋର ମାନସିକ ପରିବର୍ତ୍ତନ, ଆଉ ଦୈହିକ ପରିବର୍ତ୍ତନ ହେଲା, ମୁଁ ଯେ ଗୁରାଏ ମୋଟା ହେଇଗଲି, ତା'ନୁହେଁ, ଯେମିତି ବାହାରକୁ ଦୁର୍ବଳ ଦେଖାଯାଏ, ସେମିତି ପୁଣି ତା'ଉପରେ ଚିତା ପଡ଼ିଲା ପରି ଗୁରାଏ ବସନ୍ତର ଦାଗ ରହି ଚିତାବାଘ ପରି ଦେଖାଗଲେ କ'ଣ ହବ? ଦିହରେ କିନ୍ତୁ ଚିତାବାଘର ବଳ, ଛାତିରେ ଅସମ୍ଭବ ଦମ, ଯେତେ ଖଟିଲେ କ୍ଳାନ୍ତି ନାହିଁ। ମନ ହଉଛି, ଆହୁରି ଖଟିବି। ବସନ୍ତ ରୋଗ ପରେ ଏତକ ପରିବର୍ତ୍ତନ ମୁଁ ଲକ୍ଷ୍ୟ କରିଛି। କହିବାକୁ ଗଲେ ଏ ମୋର ନୂଆ ଜୀବନ, ଭଗବାନଙ୍କର ଦୟା।

ଅଙ୍କ ପ୍ରତି ମୋର ଆଗ୍ରହ ଜନ୍ମିବାର ଆଉ ଗୋଟିଏ କାରଣ ହଉଛି, ମୁସଲିମ୍ ସେମିନାରୀର ଅଙ୍କ ଶିକ୍ଷକ ଜୟରାମ ସ୍ୱାଇଁଙ୍କ ଯୋଗୁଁ କ୍ଲାସ୍‌ରେ ତାଙ୍କ ପାଖରେ ଅଙ୍କ କଷି ମୋର ଅଙ୍କରୁ ଭୟ ଛାଡ଼ିଗଲା। ପିଲାଙ୍କୁ ଅଙ୍କ କଷେଇବାରେ ତାଙ୍କର ପଢ଼େଇବାର ଧାରା ଏତେ ସହଜ ଯେ, ଯା'ର ଅଙ୍କ ହଉ ନଥିବ ତା'ର ଅଙ୍କ ହବ। ଜୟରାମ ସ୍ୱାଇଁଙ୍କ ଯୋଗୁଁ ମୋତେ ଅଙ୍କ କଷିବା ଭାରି ସହଜ ମନେ ହେଲା ଆଉ ମଧ୍ୟ ଆଗ୍ରହ ଜନ୍ମିଲା। ଜୟରାମ ସ୍ୱାଇଁଙ୍କ ନିକଟରେ ଶିକ୍ଷା ପାଇ ମୋର ଅଙ୍କ ତ ହେଲା, ପୁଣି ତାଙ୍କରି ଦ୍ୱାରା ତାଲିମ ପାଇ ମୋର football ଖେଳରେ ଆହୁରି ଉନ୍ନତି ହେଲା। ମୁଁ ଜଣେ ଭଲ football player ବୋଲି ଗଣ୍ୟ ହେଲି। ଆଗରୁ ଯାହା ଖେଳୁଥିଲି, ସେ ମନ ଇଚ୍ଛା, ମନକୁ ପଣ୍ଡିତ।

ମୁଁ ଯେଉଁଦିନ ମୁସଲିମ୍ ସେମିନାରୀରେ ପ୍ରଥମେ କ୍ଲାସକୁ ଗଲି, ଜୟରାମ ବାବୁଙ୍କ ଅଙ୍କ period ହେଲାରୁ ସେ କ୍ଲାସ୍‌କୁ ଆସିଲେ। ମୁଁ ଯେ ଜଣେ player ଭାବରେ ନାଁ ଲେଖେଇଛି, ସେଥିରେ ତାଙ୍କର ଭାରି ଆନନ୍ଦ। ଜୟରାମ ବାବୁ କ୍ଲାସ୍‌ରେ ଯାହା ଅଙ୍କ ପଢ଼େଇବାର ପଢ଼େଇଲେ, କ୍ଲାସ୍ ଶେଷ ହବା ପୂର୍ବରୁ ମୋତେ କହିଲେ, ଆଜି ବଲ୍ ପଡ଼ିବ, ୪ଟା ବେଳେ school fieldକୁ ଖେଳିବାକୁ ଆସିବ। ମୁଁ ତ ଝୋଟକୁ ନିଆଁ। Football ଖେଳିବାକୁ ଡାକରା! ମୁଁ ସାଗ୍ରହେ ଉତ୍ତର ଦେଲି, ହଉ ସାର୍।

ସେଦିନ ସ୍କୁଲ ଛୁଟି ପରେ ମୁଁ, ଈଶ୍ୱର ସାହୁ ଘରକୁ ଫେରିଲୁ। କିଛି ସମୟ ପରେ ଈଶ୍ୱର ସାହୁ ଥୋରିଆସାହିରେ ମୋ ବସାରେ ଆସି ପୁଣି ହାଜର। କାରଣ ସେ, ମୁଁ ଦିହେଁ football ଖେଳିବାକୁ school field କୁ ଯିବୁ।

ସେଦିନ ଜୟରାମ ବାବୁଙ୍କ ଉପସ୍ଥିତିରେ ଦୁଇ ଦଳ ହେଇ ବଲ୍ ଖେଳିଲୁ। ଜୟରାମ ବାବୁଙ୍କର ଲକ୍ଷ୍ୟ ଥିଲା, ଖେଳରେ ମୋତେ କେଉଁ position ରେ ଦେଲେ ଠିକ୍ ହବ। Forwardରେ କି half backରେ କିମ୍ବା back position ରେ? ଆଉ ମୋର ଖେଳର ଯାହା ଦୋଷ ତ୍ରୁଟି ଅଛି, ତାକୁ ସୁଧାରିବା। ଏଣୁ ଦୈନିକ ଜୟରାମ ବାବୁ କଟକର ଗୋଟିଏ ବିଭିନ୍ନ ଟିମ୍ ସହିତ match ଖେଳେଇ, ମୋତେ ଏବଂ ଅନ୍ୟାନ୍ୟ player ମାନଙ୍କୁ ତାଲିମ ଦେବା ମୋତେ ଭାରି ଆନନ୍ଦ ଲାଗିଲା। ପାଠ ତ ପଢୁଛି ତା'ସହିତରେ ଖେଳ ମଧ୍ୟ ଚାଲିଲା। ମଙ୍ଗଳାବାଗ ଆଡ଼େ ଆଉ ଯିବାକୁ ଦରକାର ପଡ଼ିଲାନି କି ମୃଣାଳ, ପ୍ରିୟ ସହିତ ଆଉ ଭେଟ ହେଲାନି।

ପାଠ ପଢ଼ିବାକୁ ଯାଇ ଭାବିଲି, ମୋତେ ୧୦ମ ଆଉ ୧୧ଶ ଦୁଇ ବର୍ଷ ପଢ଼ିବାକୁ ହବ। ତା'ପରେ matric ପରୀକ୍ଷା ଦବାକୁ ହବ। ଏଣୁ ଦୈନିକ ଜୋର୍‌ସୋର୍‌ରେ ଘରେ ପଢ଼ା ଆରମ୍ଭ କଲି ଯେମିତିକି

ସାମନାରେ ପରୀକ୍ଷା ଅଛି । ୧୦ମ ଶ୍ରେଣୀ ପାଠ ଅଛ କିଛି ନୂଆ ହେଲେ, ଆଉ ସବୁ ପୁରୁଣା । ଏଣୁ ଇଂରାଜୀ ଛଡ଼ା ଆଉ ସବୁ ଘରେ ପଢ଼ି ଆଗେଇ ଯିବାକୁ ଲାଗିଲି । ଅଙ୍କ ପୁଣି ଏତେ ଭଲ ଲାଗିଲା ଯେ ରାତି ରାତି ବସି ଅଙ୍କ କଷିଲି । Additional mathematics ନେଇଥାଏ । Trigonometry, mensuration ସବୁ ଭଲ ଲାଗିଲା । Geometry ତ ଆହୁରି ସହଜ ଲାଗିଲା । Compulsory mathematicsରେ K. P. Basu, Algebra, B. V. Gupta, Arithmetic ତ ଅଛି, ସେ ତ ଆହୁରି ମଜା ଲାଗିଲା । ଏଣେ ଜୟରାମ ବାବୁ କ୍ଲାସ୍‌ରେ ଅଙ୍କ ପଢ଼େଇବା ଦ୍ୱାରା, ଅଙ୍କ କଷିବା ପ୍ରତି ଆହୁରି ଆଗ୍ରହ ବଢ଼ିଗଲା । ମୁଁ ଦେଖିଲି, ଜୟରାମ ବାବୁଙ୍କର K. P. Basu Algebra ଆଉ B. V. Gupta Arithmeticsର ପ୍ରତ୍ୟେକ ନମ୍ବରର ଉତ୍ତର ତାଙ୍କର ମୁହଁରେ । ମୋର ପୁଣି ଅଙ୍କ ଭଲ ହଉଥାଏ, ଏଣେ ମୁଁ ଜଣେ football player । ଏଣୁ ମୋ ପ୍ରତି ଜୟରାମ ବାବୁଙ୍କ ଶ୍ରଦ୍ଧା ବଳେଇ ପଡ଼ିଲା । ଯେ ଭଲ football player, ତାକୁ ଜୟରାମ ବାବୁ ଘରେ ମାଗଣା ଅଙ୍କ tuition କରନ୍ତି ।

ପରେ ପୁଣି ଦେଖିଲି, friendly matchରେ ଜୟରାମ ବାବୁ ନିଜେ forward lineରେ centre positionରେ ଖେଳି ମୋତେ in positionରେ ରଖି ball ଆଣି goalକୁ ମାରିବା ପୂର୍ବରୁ ମୋ ପାଖକୁ ବଢେଇ ଦେଇ କହନ୍ତି, ମାର୍ goalକୁ । ମୁଁ goalକୁ ball ମାଇଲି, ଯଦି goal ନହେଇ ball out ହେଇଗଲା, ସେଇ ପଡ଼ିଆରେ ଖେଳ ଛାଡ଼ି, ଜୟରାମ ବାବୁ ମୋତେ ଗୋଡ଼େଇଲେ ଗୋଇଠାଏ ମାରିବା ପାଇଁ । ମୋତେ ଗୋଇଠାଏ ମାରିବା ସାଙ୍ଗେ ସାଙ୍ଗେ କହିଲେ, କୁଆଡ଼ିକି ball ମାଇଲୁ ? Sure goal ଟା miss କଲୁ ? ଜୟରାମ ବାବୁଙ୍କର ସେ ଗୋଇଠା ମୋର football ଖେଳାଳୀ ଜୀବନରେ ଶୁଭାଶିଷ ଥିଲା । ମୁଁ ଯେ ଏକା ଗୋଇଠା ଖାଇଛି, ତା' ନୁହେଁ । ଆମ team ର ଅନେକ player କୁ ତାଲିମ କରିବାକୁ ଯାଇ ସେ ଅନେକଙ୍କୁ ଗୋଇଠା ମାରିଛନ୍ତି । କାହା ମୁଣ୍ଡରେ ball କୁ କଚାଡ଼ିଛନ୍ତି, କାହାକୁ ଅକଥ୍ୟ ଭାଷାରେ ଗାଳି ଦେଇଛନ୍ତି । ପୁଣି football player ଙ୍କ ପ୍ରତି ତାଙ୍କର ଅଗାଧ ସ୍ନେହ । ସବୁ ଖେଳାଳୀ ଯେମିତି ତାଙ୍କର ଗୋଟିଏ ଗୋଟିଏ ପୁଅ ।

ମୁଁ ମୁସ୍‌ଲିମ୍ ସେମିନାରୀରେ admission ନବା ମୋ ପକ୍ଷରେ ମଙ୍ଗଳକାରକ ହେଲା । ପାଠ ତ ସବୁ ସ୍କୁଲରେ ପଢ଼ା ହଉଛି କିନ୍ତୁ football ଖେଳରେ ଜୟରାମ ବାବୁ ମୁସ୍‌ଲିମ୍ ସେମିନାରୀରେ ସେତେବେଳେ ଯେତେ ଯତ୍ନ ନଉଥିଲେ, ସେମିତି କଟକର ଅନ୍ୟ କୌଣସି ସ୍କୁଲରେ ଏତେ ଯତ୍ନ ନିଆ ହଉ ନଥିଲା । ସେତେବେଳେ ଜୟରାମ ବାବୁଙ୍କ ପରି ଅନ୍ୟ କୌଣସି ସ୍କୁଲରେ ଏତେ ସୁଦକ୍ଷ games secretary ନଥିଲେ । କେବଳ କଟକ କହିଲେ ହବ ନାହିଁ, ସେତେବେଳେ ସାରା ଓଡ଼ିଶାରେ ଯେତେ ହାଇସ୍କୁଲ ଥିଲା, ଜୟରାମ ବାବୁଙ୍କ ଭଳି games secretary କେଉଁଠି ନଥିଲେ । ଖାଲି football ଖେଳ ନୁହେଁ, sports ରେ ମଧ୍ୟ ତାଙ୍କ ଭଳି ପିଲାଙ୍କୁ ତାଲିମ କରିବାରେ ଏତେ ଆଗ୍ରହୀ, ସୁଦକ୍ଷ ଲୋକ ନଥିଲେ ।

ସେତେବେଳେ Orissa Atheletic Association ର annual sports ଆରମ୍ଭ ହବାର ମାସକ ପୂର୍ବରୁ ପିଲାଙ୍କୁ high jump, long jump, flat race, long race ଇତ୍ୟାଦିରେ ତାଲିମ କରିବା ଜୟରାମ ବାବୁ ଆରମ୍ଭ କରୁଥିଲେ । ତାଙ୍କର football ଖେଳରେ ଅକ୍ଲାନ୍ତ ଚେଷ୍ଟା ଆଉ ପରିଶ୍ରମ ଯୋଗୁଁ ମୁସ୍‌ଲିମ୍ ସେମିନାରୀ ପରେ ଅଶ୍ୱମେଧ ଯଜ୍ଞ କଲା ଭଳି ସାରା ଓଡ଼ିଶାରେ football ଖେଳରେ ସ୍କୁଲ team ମାନଙ୍କୁ ହରେଇ ଅଜସ୍ର trophy ଲାଭ କରି ଖ୍ୟାତି ଅର୍ଜନ କରିଥିଲା । ଆମେ football match ଖେଳି ଯେ ଯାହା ଘରକୁ ଆସିବୁ, ଜୟରାମ ବାବୁ ସାଇକେଲ୍‌ରେ ଚଢ଼ି player ମାନଙ୍କ ଘରକୁ ସନ୍ଧ୍ୟା ପରେ ଦଉଡ଼ିଲେ, କାହାର ଅଣ୍ଟା ଦରଜ ହେଇଛି, ତାକୁ ଦେଖିଲେ ଉପଦେଶ ଦେଲେ କେତେକ ଚେର, ମୂଳ, ଘିଅରେ କିମ୍ବା ପାଣିରେ ସିଝେଇ ଖାଇବା ପାଇଁ । କାହାର ଗୋଡ଼ରେ ମାଡ଼ ହେଇଛି, ଗୋଡ଼ ଫୁଲିଛି, ତାକୁ ଦେଖିଲେ ଉପଦେଶ ଦେଲେ କେତେକ ଚେର, ମୂଳକୁ କାଟି, ଗରମ କରି ଫୁଲା ଜଖମ ଜାଗାରେ ଲଦିବା ପାଇଁ ।

ମୋର ମନେ ଅଛି, ୧୯୨୮ ମସିହାରେ ପ୍ରଥମ ଯେଉଁଦିନ school team ର league match ପି.ଏମ୍.ଏକାଡ଼େମୀ ସହିତରେ Sunshine ପଡ଼ିଆରେ ଖେଳେ, ସେଦିନ କେହି କାହାକୁ ଗୋଲ୍ ନଦେଇ ପାରି, ପ୍ରତ୍ୟେକ ଗୋଟିଏ ଲେଖା ପଏଣ୍ଟ ହାସଲ କଲୁ, ଖେଳ ଶେଷରେ ଲେମୋନେଡ୍ ପାଣି ପିଇ ପଡ଼ିଆରୁ ଫେରି କାଠଯୋଡ଼ି କୂଳ ଦେଇ କଟକ Ripon Road ବାଟେ ଆସି, ଜୟରାମ ବାବୁଙ୍କ ମେସ୍‌ରେ ପହଁଚିଲୁ। ଜୟରାମ ବାବୁଙ୍କ ମେସ୍ ନାଁ ଥିଲା "କନିକା ମେସ୍"। ସେ ସେହି କନିକା ମେସ୍‌ରେ କେତେଗୁଡ଼ିଏ ମୁସ୍‌ଲିମ୍ ସେମିନାରୀର ଛାତ୍ରଙ୍କୁ ନେଇ ମେସ୍ କରି କଟକ Ripon Roadରେ ବଙ୍ଗାଳୀ ସାହିରେ ରହୁଥିଲେ।

ସେଦିନ ମୁଁ, ଈଶ୍ୱର ସାହୁ ଓ ଆଉ କେତେଜଣ player ଙ୍କୁ lemonade ପାଣି ପିଇବା ସତ୍ତ୍ୱେ ପଡ଼ିଆରୁ ଫେରି ବାଟରେ ଆହୁରି ଶୋଷ ହେଲା। ଆମେ ସ୍ଥିର କଲୁ, ଜୟରାମ ବାବୁଙ୍କ ମେସ୍‌ରେ ପାଣି ପିଇବୁ। ସେହିଦିନ ପ୍ରଥମ ମୁଁ ଜୟରାମ ବାବୁଙ୍କ କନିକା ମେସ୍ ଦେଖିଲି। ଆମେ ପହଁଚି ଦେଖିଲୁ ଜୟରାମ ବାବୁ ଗୋଟିଏ କଂସାରେ କଂସାଏ ଚୁଡ଼ାଘସା ନେଇ ଖାଇବାକୁ ଯାଉଛନ୍ତି। ଆମେ କହିଲୁ, ସାର୍ ପାଣି ପିଇବୁ।

ଜୟରାମ ବାବୁ ଏତକ ଶୁଣିବା ମାତ୍ରେ ସେ କଂସାରେ କଂସାଏ ଚୁଡ଼ାଘସାକୁ ଆମ ପାଖକୁ ଠେଲି ଦେଇ ଉଠିଯାଇ କହିଲେ, ଖେଳି ଆସିଛ, ଖାଲି ପାଣି ପିଇଲେ ଦେହ ଖରାପ ହବ, ଏ ଚୁଡ଼ାଘସାତକ ଖାଇଦିଅ, ତା'ପରେ ପାଣି ପିଇବ।

ଆମେ ସମସ୍ତେ ସେ ଚୁଡ଼ାଘସା ତକ ବାଣ୍ଟି ଖାଇଦେଇ ପାଣି ପିଇ ଘରକୁ ଫେରିଲୁ। Playerଙ୍କ ଏ ଯତ୍ନ କେଉଁ ସ୍କୁଲରେ କେଉଁ games secretary ନେବେ? ଖାଲି ଏତିକି ନୁହେଁ, playerଙ୍କର ଯଦି କାହାର ଅଣ୍ଟା ଦରଜ ହେଉଛି, ସେ ତାଙ୍କର ମେସ୍‌ରେ ରହୁଥାଉ କିମ୍ବା ତା'ର ଘରେ ରହୁଥାଉ, ଜୟରାମ ବାବୁ ଯାଇ ତା'ର ଅଣ୍ଟା ଚିପିଲେଣି। ପିଲା ଯଦି କୁଣ୍ଠିତ ହୁଏ, ଜୟରାମ ବାବୁ କହନ୍ତି, ଆରେ ମୁଁ ତୋ ବାପ ସମାନ ଲୋକ, ପୁଅର ଅଣ୍ଟା ଦରଜ ହେଲେ, ଚିପି ଦେଲେ ଦୋଷ କ'ଣ?

ଜୟରାମ ବାବୁଙ୍କ ବିଷୟ ଲେଖିବାକୁ ଗଲେ, ଗୋଟିଏ ଅଲଗା ଗ୍ରନ୍ଥ ହବ ତଥାପି ମୁଁ ଯାହା ପାରିବି ଲେଖିବି। ଜୟରାମ ବାବୁ ଚିର ନମସ୍ୟ। ଏ ଜୀବନର ଶେଷ ନିଃଶ୍ୱାସ ଛାଡ଼ିବା ପର୍ଯ୍ୟନ୍ତ ଜୟରାମ ବାବୁଙ୍କୁ ଭୁଲି ହବନି।

ସେତେବେଳେ ଜୟରାମ ବାବୁ ଯଦି ଶୁଣିଛନ୍ତି କଟକକୁ ଗୋଟିଏ ଅନ୍ୟ ସ୍କୁଲର ଭଲ player ଆସିଛି, କୋଉ ସ୍କୁଲରେ ନାଁ ଲେଖେଇବା ପାଇଁ ଅପେକ୍ଷା କରି କଟକରେ ରହିଛି, ସେ player କୁ ଯେ ଯେତେ ପ୍ରବର୍ତ୍ତେଇଲେ, ଆମ ସ୍କୁଲରେ ନାଁ ଲେଖାଅ। କେହି ପାରିଲେ ନାହିଁ। ଜୟରାମ ବାବୁ ଗଲେ ତାକୁ ପ୍ରବର୍ତ୍ତେଇଲେ ମୁଁ ଅଙ୍କ ମାଗଣା tuition କରିବି। ସ୍କୁଲରେ ଦରମା ଛାଡ଼ କରେଇ ଦେବି, ଇଂରାଜୀ ଏବଂ ଅନ୍ୟ ବିଷୟରେ ମଧ୍ୟ ମାଗଣା tuition ର ବ୍ୟବସ୍ଥା କରେଇ ଦେବି, ଇତ୍ୟାଦି ଇତ୍ୟାଦି କହି ତାକୁ ଧରି ଆଣି ମୁସ୍‌ଲିମ୍ ସେମିନାରୀରେ ନାଁ ଲେଖେଇ ଦେଲେ କାରଣ, ସେ ଜଣେ player, ସେ ମୁସ୍‌ଲିମ୍ ସେମିନାରୀ teamରେ ଖେଳିବ।

୧୯୨୮ ମସିହାରେ ମୋତେ ଜୟରାମ ବାବୁ forward lineରେ left in positionରେ ଖେଳେଇଲେ, ସେହି ବର୍ଷ ଜୟରାମ ବାବୁ ପୁଣି ନୂଆ କରି Muslim Seminary team ଗଢ଼ିଲେ। ଜୟରାମ ବାବୁଙ୍କର ଭାରି ଆନନ୍ଦ କିନ୍ତୁ ଦୁର୍ଭାଗ୍ୟବଶତଃ ଆମେ ସ୍କୁଲ league କିମ୍ବା knockout match ରେ ସେ ବର୍ଷ କୌଣସି trophy ପାଇ ପାରିଲୁନି, ଗୋଲ୍ ଦେଲୁ, ଗୋଲ୍ ଖୁଝେଇ ଦେଲେ, କେଉଁଠି ହାରିଗଲୁ। ସେ ବର୍ଷଟା ସେମିତି ଶୂନ୍ୟ ହାତରେ ଫେରିଲୁ। ସେ ବର୍ଷ Mission School ଖେଳରେ ତା'ର ପ୍ରାଧାନ୍ୟ ବିସ୍ତାର କଲା। Mission School ର ଅନ୍ୟାନ୍ୟ ସ୍କୁଲ ତୁଳନାରେ ଖେଳ ଭଲ ହବାର କାରଣ ହଉଛି, ତାଙ୍କ teamରେ ଅନେକ ପୁରୁଣା player ଖେଳନ୍ତି। ଅନେକ ପିଲା Mission Press ରେ ଚାକିରି କରନ୍ତି। ପୁଣି ଖେଳ ବେଳକୁ ସ୍କୁଲ team ରେ ଆସି

ସ୍କୁଲର ଛାତ୍ର ହିସାବରେ ଖେଳନ୍ତି । ଏଥି ଯୋଗୁଁ Mission School team ଅନ୍ୟାନ୍ୟ ସ୍କୁଲ team ତୁଳନାରେ ଟାଣୁଆ ହୁଏ । ଆଉ ଗୋଟାଏ କଥା-ସେମାନେ ପ୍ରାୟ forward game ଖେଳନ୍ତି । ଏଥି ସକାଶେ ଅନ୍ୟ ସ୍କୁଲ team ପିଲାଏ ଡ଼ରିଯାନ୍ତି । ଆଉ ମଧ ଖେଳବେଳେ ମୁଁ ଶୁଣିଛି Mission School teamର ସମର୍ଥକଙ୍କ ତରଫରୁ ପାଟି ହୁଏ, "Press ବାଲା ସମସ୍ତେ ଆସିଛନ୍ତି କିଛି ଭୟ କର ନାହିଁ ।"

ଏଥିଯୋଗୁଁ ମାଡ଼ ଫୌଜଦାରୀ ହବାର ଭୟରେ, ଅନ୍ୟ ସ୍କୁଲର ଖେଳାଳୀମାନେ ଡ଼ରିଯାନ୍ତି । ଆଉ ମଧ Mission School team playerମାନେ ଅନେକ ଫାଜିଲାମୀ କରି ଅନ୍ୟ team ପିଲାଙ୍କର ମିଛରେ ଜର୍ସି ଟାଣି ଦବା, open foul କରିବା, ଏମିତି କେତେ ପ୍ରକାର କାରସାଦି ଦେଖେଇ ଅନ୍ୟ ପକ୍ଷକୁ ଭୟଭୀତ କରାନ୍ତି, ଆଉ ଗୋଟାଏ କଥା, Mission School team ପିଲାଏ ଅନ୍ୟ ସ୍କୁଲ team playerଙ୍କ ତୁଳନାରେ ବେଶ୍ ନିର୍ଭୟରେ ଖେଳନ୍ତି କାରଣ ତାଙ୍କ team ରେ ଅଧିକାଂଶ ପୁରୁଣା, ପୋଖତ player ଥାନ୍ତି । ତାଙ୍କ ଆଗରେ ଅନ୍ୟ ସ୍କୁଲର ନୂଆ player ମାନେ ଟିକିଏ ଭୟଭୀତ ହେଇ ଖେଳିବା ସ୍ୱାଭାବିକ । Mission School ର ଅତି ପୁରୁଣା playerଙ୍କୁ ଏଣୁ ଖେଳବେଳେ ଦର୍ଶକମାନଙ୍କ ମଧରୁ ପରିହାସ କରି କାହାକୁ "ଅଜା", କାହାକୁ "ଆଈ", କାହାକୁ "ବୁଢ଼ା", କାହାକୁ "ସ୍କୁଲ ଛାଡ଼ି ଯିବାକୁ ମନ ହଉ ନାହିଁ କିରେ ?" ଏମିତି କେତେ ପ୍ରକାରର କହିବାର ଶୁଣିଛି ।

Mission ସ୍କୁଲ ସେତେବେଳେ ଅଦମ୍ୟ, ତାକୁ ହରେଇବା ସହଜ ନୁହେଁ । ସେ ବର୍ଷ ଆମେ ମଧ Mission School ନିକଟରେ ହାରିଲୁ । କିନ୍ତୁ ସେ ବର୍ଷ ଗୋଟାଏ ନୂଆ ଘଟଣା ଘଟିଲା । ଦିନେ ସ୍କୁଲ league match ରେ Ravenshaw Collegiate, ଆଉ Mission Schoolର ଖେଳ Sunshine ପଡ଼ିଆରେ ହୁଏ । ସେଦିନ Mission School ଜିତି ପାରିଲେ leagueର Raychaudhury Cup ନେବ । ସେହି ବର୍ଷ ପ୍ରଥମ ନୂଆ କରି Raychaudhury Cup ସ୍କୁଲ team ର league match ର trophy ରୂପେ ଦିଆ ହେଉଥାଏ । କିନ୍ତୁ ଦୁର୍ଭାଗ୍ୟବଶତଃ Mission School same side goalରେ Collegiate ନିକଟରେ ହାରିଯାଏ । ଏଣୁ ଉଭୟଙ୍କର point ସେଥର ସମାନ ହେଇଗଲା । Mission Schoolର league match ସରିଗଲା କିନ୍ତୁ Collegiateର ଗୋଟିଏ match କେବଳ ଆମ ସହିତରେ ଖେଳିବାର ବାକି ଥାଏ । ସେ match ରେ Collegiate ଆମ ସହିତରେ draw ରଖିଲେ Raychaudhury Cup ପାଇବ । କିନ୍ତୁ ଯଦି ଆମଠୁଁ ହାରିଯାଏ, ପୁଣି Mission School ସହିତରେ ଗୋଟିଏ match ଖେଳିବାକୁ ହବ । ସେଥିରେ ଯେ ଯାହାକୁ ହରେଇବ ସେ Raychaudhury Cup ପାଇବ । ଏଣୁ ଯେଉଁ ଦିନ Mission School same side goal ଖାଇ Ravenshaw Collegiate ନିକଟରୁ ହାରିଯାଏ, Collegiate player ମାନେ ଆନନ୍ଦରେ ପଡ଼ିଆରେ ବ୍ୟାଣ୍ଡବାଜା ସହ ଜୟୋଲ୍ଲାସରେ ଉନ୍ମାଦ ହେଇ ସିଙ୍ଗଡ଼ା, କଚୁରି ଖାଇ ଆମର game secretary ଜୟରାମ ବାବୁଙ୍କ ଉପରକୁ ଫୋପାଡ଼ିଲେ । ସେମାନଙ୍କ ମନରେ ଦୃଢ଼ ଆଶା, ଯେଉଁ ଗୋଟିଏ match ଆମ ସାଥୀରେ ଖେଳିବାର ଅଛି, ସେମାନେ ନିଶ୍ଚୟ ଆମକୁ ହରେଇ ଦେବେ କିମ୍ବା draw ରଖିବେ । ସେମାନେ ନିଶ୍ଚୟ Raychaudhury Cup ପାଇବେ । ଏଣୁ ସେମାନେ ସେହି ଗର୍ବରେ ଜୟରାମ ବାବୁଙ୍କୁ ଅପମାନିତ କଲେ, ଅଇଁଠା ତାଙ୍କ ଉପରକୁ ଫୋପାଡ଼ିଲେ । ଏ ଘଟଣା ମୁଁ ଆଖିରେ ଦେଖି ନାହିଁ, ଯଦିଚ ଖେଳ ଶେଷ ପର୍ଯ୍ୟନ୍ତ ମୁଁ ସେଦିନ Sunshine ପଡ଼ିଆରେ ଥିଲି । ଏ ଘଟଣା ମୁଁ ପିଲାଙ୍କ ମୁହଁରୁ ଶୁଣିଲି । ଆହୁରି ଶୁଣିଲି ଜୟରାମ ବାବୁ କାନ ମୋଡ଼ି ହେଇ ସେଦିନ ପ୍ରତିଜ୍ଞା କଲେ ଯେ ଯଦି ମୁଁ Collegiateକୁ ହରେଇବି, ତା'ହେଲେ ଏ ଜୀବନ ରଖିବି, ନଚେତ୍ ଆତ୍ମହତ୍ୟା କରିବି । ମୁଁ ଏକଥା ମୋର ସାଙ୍ଗ player ଏବଂ ଅନ୍ୟ ପିଲାଙ୍କ ମୁହଁରୁ ଶୁଣି ମୋର ଭାରି ରାଗ ହେଲା । Collegiate ପିଲାଏ ସାରଙ୍କ ଉପରକୁ ଅଇଁଠା ଫୋପାଡ଼ିଛନ୍ତି । ଆହୁରି ମଧ ମନରେ

ଭୟ ହେଲା, ଜୟରାମ ବାବୁ ଯେମିତି ଖେଳପ୍ରିୟ ଲୋକ, ଆମେ ଯଦି Collegiateକୁ ହରେଇ ନପାରିବୁ, ସେ ଅଭିମାନରେ ଆତ୍ମହତ୍ୟା କରି ଦେଇପାରନ୍ତି । ପୁଣି ଭାବିଲି Collegiate ପିଲାଏ କ'ଣ ମନେ ମନେ ଏତେ ଦୃଢ଼ ସଂକଳ୍ପ ଯେ ଆମକୁ ହରେଇଦେବେ କିମ୍ବା draw ରଖିଦେବେ ? ସାର୍‌ଙ୍କ ସମ୍ମାନ ରଖିବାକୁ ହବ । ଏ ତ ଅତି ଅପମାନଜନକ ଘଟଣା, ସାର୍‌ଙ୍କ ଉପରକୁ ଅଇଁଠା ସିଙ୍ଗଡ଼ା, କଚୁରି ଫୋପାଡ଼ିବା । ମୁଁ ମନେ ମନେ ଦୃଢ଼ ସଙ୍କଳ୍ପ କଲି, Collegiate କୁ ଆସନ୍ତା match ରେ ନିଶ୍ଚୟ ହରେଇବାକୁ ହବ । ମୁଁ ତ forward line ରେ left in position ରେ ଖେଳୁଥାଏ । ମୋ ପକ୍ଷରେ score କରିବା ସୁବିଧା । ଜୟରାମ ବାବୁ ମନସ୍ତାପରେ ଆମକୁ କହନ୍ତି Collegiate ତ Mission କୁ ହରେଇ ରକ୍ତମୁଖା ହେଉଛନ୍ତି, ତୁମେ କ'ଣ ତାଙ୍କୁ ହରେଇ ପାରିବ ? ଆମେ ସାର୍‌ଙ୍କୁ ଆଶ୍ୱାସନା ଦେଇ କହୁ, ଦେଖିବା ସାର୍, ରହନ୍ତୁ ଖେଳ ହଉ ।

ସାର୍ ଦୁଃଖରେ କହନ୍ତି, ମୋର ବିଶ୍ୱାସ ହଉ ନାହିଁ । Collegiate ସହିତରେ match ହବ, Sunshine ପଡ଼ିଆରେ । ଆମେ ଖେଳିବାକୁ ବାହାରିଲୁ Sunshine ପଡ଼ିଆକୁ । ଜୟରାମ ବାବୁ ଘରେ କବାଟ କିଳି ବସିଲେ । ଯେ ଯେତେ ଡ଼ାକିଲେ ଆଉ ପଡ଼ିଆକୁ ଗଲେ ନାହିଁ, କହିଲେ, ଆଜି ତୁମେ Collegiate କୁ ହରେଇଲେ, ମୁଁ ପଡ଼ିଆକୁ ଯିବି, ନଚେତ୍ ଆତ୍ମହତ୍ୟା କରିବି ।

ଆମେ ସାର୍‌ଙ୍କ କଥା ଶୁଣି ଦୃଢ଼ପ୍ରତିଜ୍ଞ ହେଇ ଖେଳିଲୁ । Collegiate କୁ ଆଜି ହରେଇବାକୁ ହବ । Collegiate ମଧ୍ୟ ଦୃଢ଼ପ୍ରତିଜ୍ଞ, ଆମକୁ ହରେଇବ, ନଚେତ୍ draw ରଖିବେ । Draw ରଖିଲେ, ସେମାନେ Raychaudhury Cup ବିଜେତା ହେବେ । ଏଥିଯୋଗୁଁ ଖେଳ ଆଗରୁ ପଡ଼ିଆରେ ବ୍ୟାଣ୍ଡ୍ ବାଜା ଇତ୍ୟାଦି ଆଣି ରଖିଥାନ୍ତି । ଜିତିଲେ ଜୟୋଲ୍ଲାସରେ ବ୍ୟାଣ୍ଡବାଦ୍ୟ ସହ ଭୂରି ଭୋଜନ କରି ପଡ଼ିଆରୁ ବିଦାୟ ନେବେ । ସିଆଡେ Mission ର player ମାନେ ପଡ଼ିଆରେ ଅନେଇ ବସିଥାନ୍ତି । ସେମିନାରି କେମିତି Collegiateକୁ ହରଉ, Collegiate ହାରିଗଲେ ପୁଣି ଥରେ Mission ସହିତରେ ତାଙ୍କର ଖେଳ ହବ । ସେଥିରେ ଯେ ଯା'କୁ ହରେଇବେ, ସେ Cup ବିଜେତା ହେବ ।

ଖେଳ ହେଲା, referee ଥାନ୍ତି Radhanath Training Collegeର Principal, ଜଣେ ଗୋରା, ତାଙ୍କର ନାମ ମୋର ମନେହୁଏ Whitemoon କି କ'ଣ ହବ । Sunshine ପଡ଼ିଆରେ ଅଜସ୍ର ଲୋକ । ପଡ଼ିଆର ଚାରିଆଡ଼େ ଦର୍ଶକଙ୍କ ଭିଡ଼ । ସମସ୍ତଙ୍କ ମନରେ ଉଦ୍‌ବେଗ ଆଜି କିଏ କାହାକୁ ହରଉଛି ? Collegiate କ'ଣ କରୁଛି ? Seminary କ'ଣ କରୁଛି ? ଉଭୟ ଦଳର ସମର୍ଥକଙ୍କ ଆତୁ ପାଟିତୁଣ୍ଡ, ଗର୍ଜନରେ ପଡ଼ିଆ କମ୍ପମାନ, ଖେଳ ଭାରି ଉତ୍ତେଜନାପୂର୍ଣ୍ଣ ହେଲା । ଖେଳର ପ୍ରଥମାର୍ଦ୍ଧରେ ମି୧୫ନିଟ୍ ସମୟରେ ମୁଁ ଗୋଟିଏ ବେଶ୍ ସୁବିଧାଜନକ ବଲ୍ ପାଇ goal ଭିତରକୁ hard shot ମାଇଲି, ବଲ୍ ଯାଇ net ଭିତରେ, referee ହୁଇସିଲ୍ ଦେଇ goal declare କଲେ । Collegiate ଗୋଟିଏ goal ରେ ହାରିଲା । ଆମର ସମର୍ଥକଙ୍କ ଆତୁ ଆନନ୍ଦରେ ଭୀଷଣ ପାଟିତୁଣ୍ଡ କୋଳାହଳ ହେଲା । କିନ୍ତୁ goal ଶୁଝେଇବାକୁ ବହୁତ ସମୟ ଥାଏ । Collegiate ଆପ୍ରାଣ ଚେଷ୍ଟା କରୁଥାଏ goal ଶୁଝେଇବାକୁ । ମୁଁ goal score କଲା ପରେ half back positionକୁ ଚାଲି ଆସିଲି । ଆମେ ଚାରିଟା half back, ଚାରିଟା forward ରେ ଖେଳିଲୁ । Collegiate ହାରିଛି, ମୁଁ score କରିଛି ଏ ସମ୍ବାଦ ନେଇ ଆମର କେତେକ ପିଲାଏ ଦଉଡ଼ିଲେ ଜୟରାମ ବାବୁଙ୍କ ମେସ୍‌କୁ, ତାଙ୍କୁ ଜଣେଇବା ପାଇଁ । ଜୟରାମ ବାବୁ ଏ ସମ୍ବାଦକୁ ପ୍ରଥମେ ବିଶ୍ୱାସ କରି ପାରିଲେ ନାହିଁ ଯେ ଆମେ Collegiate କୁ ହରେଇଛୁ । ପରେ ବିଶ୍ୱାସ କରି ପଡିଆକୁ ଆସିଲେ । ଏଣେ Mission ସ୍କୁଲର ପିଲାଏ ଯାଇ ଭ୍ରମର ସାହୁକୁ ଖବର ଦେଲେ, ତୋ ଭାଇ score କରିଛି । ସେତେବେଳେ ଅନେକ ମୋତେ ଭ୍ରମର ସାହୁର ଭାଇ ବୋଲି ଜାଣିଥିଲେ କାରଣ ଭ୍ରମର ସାହୁ ଏବଂ ମୋ ଚେହେରା ଭିତରେ ଅନେକ ମେଳ ଥିଲା ।

ଭ୍ରମର ସାହୁ ଏ ଖବର ପାଇ ଜାଣିଲା ଯେ ମୁଁ score କରିଛି, କାରଣ ତା'ର ବଡ଼ ଭାଇ ଈଶ୍ୱର ସାହୁ ସେତେବେଳେ ଆମ team ରେ goalkeeper ହେଇ ଖେଳୁଥିଲା ।

ଏଣେ Sunshine ପଡ଼ିଆରେ Collegiate head-master ଭୀମ ରାଉତ ଜୟରାମ ବାବୁଙ୍କୁ ଖୋଜି ବୁଲିଲେ । ଜୟରାମ ବାବୁଙ୍କୁ ଅନୁରୋଧ କରିବେ, ସେ କେମିତି ଆମ player ଦଳକୁ କହିବେ ଆମେ Collegiateକୁ goal ଦବାକୁ ଛାଡ଼ିଦବୁ, ସେମାନେ ଆମକୁ goal ସୁଝେଇ Raychaudhury Cup ବିଜେତା ହେବେ । ଜୟରାମ ବାବୁ କିନ୍ତୁ ଭୀମ ରାଉତଙ୍କୁ ଧରା ଦେଲେ ନାହିଁ । ପଡ଼ିଆରେ ଏଣେ ତେଣେ ବାଁରେଇ ବୁଲିଲେ ।

ଖେଳ ଶେଷ ହେଲା, Collegiate ହାରିଲା । ଜୟରାମ ବାବୁଙ୍କୁ Collegiate ପିଲାଏ ଅପମାନ ଦବାର ଠିକଣା ପ୍ରତିଶୋଧ ନେଲୁ । ପରେ Mission School ର କେତେକ player ଆମ ସ୍କୁଲକୁ ଆସି ମୋତେ ଏବଂ ଆମ ସ୍କୁଲର ଅନ୍ୟାନ୍ୟ player ମାନଙ୍କୁ ଅଭିନନ୍ଦନ ଜଣେଇ ଗଲେ କାରଣ ମୁଁ score କରିଥିଲି ଏବଂ ଆମ ସ୍କୁଲ Collegiate କୁ ହରେଇବା ଦ୍ୱାରା Mission School ର ସୁବିଧା ହେଲା । ଉଭୟଙ୍କର ପଏଣ୍ଟ ସମାନ ହବା ଯୋଗୁଁ ପୁଣି ଥରେ Mission ଆଉ Collegiate ର Match ହବ । ସେ match ରେ ଯେ ଯାହାକୁ ହରେଇବ, ସେ Raychaudhury Cup ପାଇବ । ସେ match ହବ ପୁଣି କିଲ୍ଲା ପଡ଼ିଆରେ । Mission School ଏଥର ଦୃଢ଼ପ୍ରତିଜ୍ଞ, Collegiateକୁ ନିଶ୍ଚୟ ହରେଇବେ । ଫଳରେ କିନ୍ତୁ ସେଇୟା ହେଲା । କିଲ୍ଲା ପଡ଼ିଆରେ Mission, Collegiate ପୁଣି ଥରେ Match ହେଲା । Mission ଏକ ଗୋଲ୍‌ରେ ବିଜୟୀ ହେଇ ସେ ବର୍ଷ Raychaudhury Cup ବିଜେତା ହେଲେ ।

ସେ ବର୍ଷ ସ୍କୁଲ team ର league match ରେ ପ୍ରଥମ ସ୍ଥାନ ଅଧିକାର କଲା Mission । ଦ୍ୱିତୀୟ ସ୍ଥାନ Collegiate ଆଉ ଆମେ ତୃତୀୟ ସ୍ଥାନରେ ରହିଲୁ । League match ଶେଷ ହେଲା । Knockout matchରେ ମଧ୍ୟ ଆମେ Mission ପାଖରେ ସେ ବର୍ଷ ହାରିଗଲୁ । ସେ ବର୍ଷ league ଆଉ knockout match ରେ Mission, Raychaudhury Cup ଆଉ Gupta Cup ବିଜେତା ହେଲା ।

ସେତେବେଳେ ମୁଁ ଦେଖିଛି, ଗୋଟାଏ ଗୋଟାଏ ସ୍କୁଲ team ର match ଦେଖିବା ପାଇ ଅସଂଖ୍ୟ ଲୋକ ପଡ଼ିଆରେ ଜମା ହଉଥିଲେ । ଦିନ ୩ଟା ବେଳୁ କିଲ୍ଲା ପଡ଼ିଆକୁ ଲୋକେ ଚାଲନ୍ତି ଖେଳ ଦେଖିବା ପାଇଁ । Open team ର match ଦେଖିବାକୁ ଯେତିକି ଲୋକ, ସ୍କୁଲ team ର match ଦେଖିବାକୁ ସେତିକି ଲୋକ । ସେତେବେଳେ କଟକରେ ମାତ୍ର ୫ଟି ହାଇସ୍କୁଲ ଥିଲା । Football knockout match ଖେଳିବା ପାଇଁ ବାହାରୁ କେତୋଟି ସ୍କୁଲ team ଯୋଗ ଦଉଥିଲେ । ସେଥିମଧ୍ୟରୁ ବାରିପଦା ହାଇସ୍କୁଲ କଟକରେ ବେଶ୍ ସୁନାମ ଅର୍ଜନ କରିଥିଲା । ସେ କେତେ ବର୍ଷ Gupta Cup ବିଜେତା ହେଇଥିଲା । ସେତେବେଳେ ବାରିପଦା ହାଇସ୍କୁଲର ଗୋଟିଏ player, ଡ଼ାକ ନାମ "ବରଜା", ର ଖେଳ ଦେଖିବା ପାଇଁ ପଡ଼ିଆରେ ଅସଂଖ୍ୟ ଲୋକଙ୍କର ସମାଗମ ହଉଥିଲା ।

୧୯୨୮ ମସିହାର school team ର ଖେଳ ଶେଷ ହେଲା ପରେ ଆମେମାନେ ଯେ ଯା'ର ପଢ଼ାପଢ଼ିରେ ଲାଗିପଡ଼ିଲୁ । ଆଜିକାଲି ଶୀତ ପଡ଼ିଲେ ବି football ଖେଳ ଯେମିତି ଚାଲିଛି ଆଗେ ସେମିତି ହଉ ନଥିଲା । ପୂଜା ଛୁଟି ପୂର୍ବରୁ football ଆଉ open team ର ସବୁ ଖେଳ ଶେଷ ହେଇ ଯାଉଥିଲା । ଆଗେ December ମାସରେ ସବୁ ସ୍କୁଲର annual examination, test examination ଶେଷ ହେଇ ଯାଉଥିଲା । ଏଣୁ football tournament ପୂଜା ଛୁଟି ପୂର୍ବରୁ ସରିବା ପରେ, ପୂଜା ଛୁଟିରୁ ପିଲାଏ ଫେରିଲା ପରେ ଯେ ଯା'ର annual examination ଆଉ test examination ପାଇଁ ପ୍ରସ୍ତୁତ ହବାକୁ ଲାଗି ପଡୁଥିଲେ । ବଡ଼ଦିନ ଛୁଟି ପୂର୍ବରୁ class promotion ଆଉ test examination ର ଫଳାଫଳ ଘୋଷଣା ପରେ ବଡ଼ଦିନ ଛୁଟି ଆରମ୍ଭ

ହଉଥିଲା । ବଡ଼ଦିନ ଛୁଟି ପରେ ପ୍ରତ୍ୟେକ ବର୍ଷ January ମାସରେ promotion ପାଇ ଯେ ଯା'ର ପରବର୍ତ୍ତୀ ନୂଆ କ୍ଲାସ୍‌ରେ ଯୋଗ ଦଉଥିଲେ । ଆଉ ୧୧ଶ ଶ୍ରେଣୀର ପିଲାଏ test examination ରେ sent up ହେଇ matricର final examination ପାଇଁ ପ୍ରସ୍ତୁତ ହବାରେ ଲାଗି ପଡୁଥିଲେ ।

୧୯୨୮ ମସିହାରେ ୧୦ମ ଶ୍ରେଣୀର ବାର୍ଷିକ ପରୀକ୍ଷାରେ ମୁଁ ୧ମ ସ୍ଥାନ ଅଧିକାର କରି ୧୧ଶ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହେଲି । ୧୧ଶ ଶ୍ରେଣୀରେ ପଢ଼ିବା ମୋ ପକ୍ଷରେ ତ ଆକାଶ କୁସୁମ ପରି ମନେ ହଉଥିଲା । Matric ପାଠରେ ୧୧ଶ ଶ୍ରେଣୀ କିଏ? ମୁଁ କିଏ? କେତେ ଭାବିଛି, ୧୦ମ ଶ୍ରେଣୀରୁ ଯେତେବେଳେ ପଢ଼ା ଛାଡ଼ିଲି, କ'ଣ କରିବି? କେମିତି ପଢ଼ିବି? ୧୧ଶ ଶ୍ରେଣୀରେ ଯେ ଦିନେ ପଢ଼ିବାର ଯୋଗ ଅଛି, ଏ କଥା ମୁଁ ତ ଭାବି ଅକୂଳ ପାରାବାରରେ ଭାସି ବୁଲିଲା ପରି ମୋତେ ମନେ ହଉଥିଲା । Medical outdoor ଠୁଁ ପରେ ପୁଣି Muslim Seminaryର ୧୧ଶ ଶ୍ରେଣୀ ଠୁଠରେ ପହଁଚିଛି । ଏଠୁଁ ପୁଣି ଭାଗ୍ୟ-ବାତ୍ୟାର ତାଡ଼ନାରେ କୁଆଡ଼େ ଯିବି ଜଣା ପଡୁନି । ଭଗବାନଙ୍କ ଦୟା ଉପରେ ହିଁ ନିର୍ଭର କରୁଛି ।

## (୩)

୧୯୨୯ ମସିହା. ୧୧ଶ ଶ୍ରେଣୀରେ ଆହୁରି ଜୋର୍‌ସୋର୍‌ରେ ପାଠ ପଢ଼ା ଆରମ୍ଭ କଲି । କାରଣ ଅଛ କେତେ ମାସ ପରେ test ପରୀକ୍ଷା ଆରମ୍ଭ ହେବ । ତା'ପରେ matric final ପରୀକ୍ଷା ଦବାକୁ ହବ । ମୋର ପାଠପଢ଼ା ଆଉ ଖେଳ ଉଭୟେ ସମାନ୍ତରାଳ ଭାବରେ ଚାଲିଥାଏ । ଦୁଇଟାରେ ସୁନାମ ଥାଏ । ସବୁ ବିଷୟ ଭିତରେ ଅଙ୍କ ହିଁ ବେଶି ଭଲ ଲାଗୁଥାଏ । ପିଲାଦିନେ ଅଙ୍କକୁ ଶତ୍ରୁ ଭଳି ମନେ ହଉଥିଲା । ବର୍ତ୍ତମାନ ସେହି ଅଙ୍କ ମୋର ପରମ ବନ୍ଧୁ, ଏ କ'ଣ। ସବୁ ଭାଗ୍ୟ । ପରେ ଦେଖିଲି କ୍ଲାସ୍‌ରେ ଯା'ର ଅଙ୍କ ଆଦୌ ହୁଏନା, ସେମାନେ ଛୁଟି ଦିନରେ ଦି'ପହରେ ଆସି ମୋ ବସାରେ ଅଙ୍କ କରିବା ପାଇଁ ଗହଳି କଲେ । ଆଉ ଅନେକ ପିଲାଏ ଆସି football ଖେଳ ବିଷୟରେ ଗପ ଜମାନ୍ତି । ମଙ୍ଗଳାବାଗରେ ସେତେବେଳେ କେବଳ ଭିକ୍ଟୋରିଆ ହାଇସ୍କୁଲକୁ ଛାଡ଼ି ଦେଲେ ଆଉ ସବୁ ସ୍କୁଲର ପିଲାଏ ପ୍ରାୟ ଥାନ୍ତି । ଏଣୁ ସେମାନେ ଆସି ଗପ ଜମେଇ ଦିଅନ୍ତି । ଅଙ୍କ କଷା ହୁଏ, ଏଣେ football ଖେଳ ବିଷୟରେ ଗପ ହୁଏ । ପୁଣି ଖେଳିବା ସମୟ ହେଲେ, ଆମେମାନେ ସମସ୍ତେ କିଲ୍ଲା ପଡ଼ିଆକୁ ପଳଉ ନଚେତ୍ ଆମ ସ୍କୁଲ ପଡ଼ିଆକୁ ପଳଉ । ସେତେବେଳେ ମୋର ଖେଳର ସାଙ୍ଗ ଆଉ ବୁଲାବୁଲିର ସାଙ୍ଗ ଥିଲା ଈଶ୍ୱର ସାହୁ, ଆଉ ପାଠ ପଢ଼ାର ସାଙ୍ଗ ଥିଲା ସୁଧୀର କୁମାର ରାୟ, ଏ ରହୁଥିଲା କାଠଗଡ଼ା ସାହିରେ । ପି.ଏମ୍.ଏକାଡ଼େମୀର ଶିକ୍ଷକ ଏବଂ ମୋର ଭିଣେଇ ସମ୍ପର୍କୀୟ ହେବେ ଭଗବାନ ମିତ୍ରଙ୍କ ଘରେ । ଭଗବାନ ମିତ୍ର ରାମଶଙ୍କର ରାୟଙ୍କ ଜ୍ୱାଇଁ, ଏଣୁ ମୋର ଭିଣେଇ ସମ୍ପର୍କୀୟ ହେବେ ।

ସୁଧୀର ଛୁଟି ଦିନରେ ସବୁବେଳେ ମୋ ପାଖକୁ ଆସେ । ଆମେ ଦିହେଁ ଏକ ସାଙ୍ଗରେ ପଢୁ । ପୁଣି ଖେଳ ବେଳେ କିଲ୍ଲା ପଡ଼ିଆକୁ କିମ୍ବା ଆମ ସ୍କୁଲ ପଡ଼ିଆକୁ ମୋ ସାଙ୍ଗରେ ପଳାଏ । ସୁଧୀର ସେତେ ଭଲ ପଢୁ ନଥିଲା । ମୋର ବାବା, ମା ତାକୁ ଭାରି ଭଲ ପାଉଥିଲେ । ସୁଧୀର football ଖେଳୁ ନଥିଲା କିନ୍ତୁ ଖେଳରେ ଭାରି ଆଗ୍ରହୀ ଥିଲା । ଏଇ ସୁଧୀର ଯୋଗୁଁ ମୁଁ ପ୍ରାୟ କାଠଗଡ଼ା ସାହିରେ ଭଗବାନ ମିତ୍ରଙ୍କ ଘରକୁ ଯିବା ଆସିବା ଆରମ୍ଭ କଲି । ପ୍ରାୟ ଦୈନିକ ମୁଁ, ସୁଧୀର, ଈଶ୍ୱର ସାହୁ ଯେତେ ଯୁଆଡ଼େ ଖେଳୁ, ବୁଲୁ, ଭଗବାନ ମିତ୍ରଙ୍କ ଘର ହେଇ ଆସିବାର କଥା । ଭଗବାନ ମିତ୍ର ମୋର ଭିଣେଇ ବୋଲି ତାଙ୍କୁ ଅନେକ ଥଟ୍ଟା, ପରିହାସ କରେ । ପୁଣି ଯାଙ୍କର ପାଖରେ ତଳ କ୍ଲାସରେ ପି.ଏମ୍.ଏକାଡ଼େମୀରେ ମୁଁ ପଢ଼ିଥିଲି ।

ଏଇ କାଠଗଡ଼ା ସାହିକୁ ଯିବା ଆସିବା ଦ୍ୱାରା, ସେଇଠି ଆହୁରି ଅନେକ ପିଲାଙ୍କ ସହିତରେ ପରିଚୟ ହେଲା । ମୋତେ Muslim Seminary player ବୋଲି ସେତେବେଳକୁ ସେମାନେ ଚିହ୍ନି ସାରିଛନ୍ତି ।

ଭଗବାନ ମିତ୍ରଙ୍କ ସାନଭାଇ ହେଲେ ବିପିନ ବିହାରୀ ମିତ୍ର । ସେ ସେତେବେଳେ ଓକିଲାତି କରୁଥାନ୍ତି । ତାଙ୍କର ତିନିପୁଅଙ୍କ ସହିତରେ ମୋର ବିଶେଷ ପରିଚୟ ହେଲା । ସେ ତିନିପୁଅ ହେଲେ, ମନି, ଚୁନି ଓ ଭମ୍ବଲା । ଭମ୍ବଲା ହେଲା, ବୀରେନ ମିତ୍ର । ଏହାଛଡ଼ା ଆଉ ଜଣକ ସଙ୍ଗେ ବିଶେଷ ସୌହାର୍ଦ୍ଦ୍ୟ ଜନ୍ମିଲା, ସେ ହେଲା, ସୁନୀଲ କୁମାର ଘୋଷ । ବର୍ତ୍ତମାନ କଟକରେ ଓକିଲାତି କରୁଛନ୍ତି ।

ଦିନବେଳା ହଉ, ସନ୍ଧ୍ୟାବେଳେ ହଉ କିମ୍ବା ରାତି ବେଳା ହଉ, ଯେତେବେଳେ କାଠଗଡ଼ା ସାହିକୁ ଗଲି ସମସ୍ତେ ଆସି ମୋ ପାଖରେ ରୁଣ୍ଡ ହେଇଯିବେ । ନାନା ରକମର ଗପ ଜମେ । ମୋତେ ସେମାନେ ଛାଡ଼ିବାକୁ ନାରାଜ । ବୀରେନ ମିତ୍ର ଅତି ଛୋଟ ହେଉଥାଏ କିନ୍ତୁ ମୁଁ ଲକ୍ଷ୍ୟ କଲି, ତା'ର କଥାବାର୍ତ୍ତା ଗୋଟାଏ ବଡ଼ ମଣିଷ ପରି । ମୁଁ ତା'ର କଥାବାର୍ତ୍ତା, ବୁଦ୍ଧି, ବିବେକ ଦେଖି ମୋର ସାଙ୍ଗପିଲାଙ୍କୁ ସେତେବେଳେ କହିଥିଲି, ଏ ପିଲାଦିନେ ଖୁବ୍ ବଡ଼ ହବ, ଅର୍ଥାତ୍ ଖୁବ୍ ଖ୍ୟାତି ଅର୍ଜନ କରିବ ।

ଏ ପିଲାଙ୍କ ସହିତରେ ସୌହାର୍ଦ୍ଦ୍ୟ ଜନ୍ମିବା ଆଗରୁ ଗୋଟାଏ ଘଟଣା ଏମାନଙ୍କ ସହିତରେ ଘଟି ଯାଇଥିଲା । ଘଟଣାଟା ହେଲା, ଥରେ ମୁଁ ଚାରିଟା ବେଳେ ଆମ ଘରୁ ଆମ ସ୍କୁଲକୁ ଖେଳିବାକୁ ବାହାରିବା ପୂର୍ବରୁ ଦଳେ ଅନ୍ୟ ସ୍କୁଲର କେତେ ଜଣ ପିଲା ଆମ ଦୁଆର ସାମନା ଦେଇ କୁଆଡ଼େ ଚାଲିଗଲେ । ମୁଁ ଅନୁମାନ କଲି ଏମାନେ ଅନ୍ୟ କୋଉ ସ୍କୁଲର ପିଲା ହେବେ । ବନ୍‌ସି ପକେଇବାକୁ ଆମ ସାହିକୁ ଆସିଥିଲେ । କାରଣ ଦେଖିଲି ତାଙ୍କ ହାତରେ ବନ୍‌ସି ଧରିଥିଲେ । ସେଦିନ ଈଶ୍ୱର ସାହୁ ମୋ ସାଙ୍ଗରେ ନଥାଏ, ମୁଁ ଏକା । ମୁଁ ଘରୁ ବାହାରି ମୁସ୍‌ଲିମ୍ ସେମିନାରି ଆଡ଼େ ଗଲା ବେଳକୁ ଦେଖିଲି, ସେ ପିଲାମାନେ ମୋ ଆଗେ ଆଗେ ଚାଲିଛନ୍ତି । ମୁଁ ତାଙ୍କୁ ଟପି ଚାଲିଗଲି । ଅଳ୍ପ ଦୂର ଗଲା ପରେ ମୋ ପଛରୁ ସେମାନେ ମୋତେ ଥଟ୍ଟା ପରିହାସ କଲେ । ମୁଁ ସେମାନଙ୍କୁ ଫେରିପଡ଼ି ଅନେଇଲି । ସେମାନେ ଆଉ କିଛି ନ କହି ତୁନି ହେଇଗଲେ । ପୁଣି ପଛ କଲାରୁ ଥଟ୍ଟା କଲେ । ଏଣୁ ମୁଁ ଅନୁମାନ କଲି ଏମାନେ ବୋଧେ Collegiate ର ପିଲାହେବେ । ସେ ବର୍ଷ Collegiate କୁ score କରିବା ଦ୍ୱାରା ସେମାନେ Raychaudhury Cup ହରେଇଥାନ୍ତି । ମୁଁ ମନେମନେ ଠିକ୍ କଲି, ଏମାନଙ୍କୁ ମାଡ଼ ଦବା ଦରକାର, କିନ୍ତୁ ମୁଁ ତ ଏକା, ଏମାନେ ଅନେକ ଗୁରାଏ ଅଛନ୍ତି । ଏଣୁ ମୁଁ ସେମାନଙ୍କୁ କିଛି ନ କହି ଆଗେ ଆଗେ ଯାଇ ମୁସ୍‌ଲିମ୍ ସେମିନାରିର ହଷ୍ଟେଲରୁ କେତେଜଣ ପିଲାଙ୍କୁ ସବୁ କଥା କହି ଡ଼ାକି ଆଣିଲି । ସେମାନେ ହଷ୍ଟେଲ୍‌ରୁ ହଣ୍ଟର ବାଡ଼ି ଇତ୍ୟାଦି ଧରି ବାହାରି ଆସିଲେ । ଆମେ ମୁସ୍‌ଲିମ୍ ସେମିନାରି ଛକ ନିକଟରେ ଅପେକ୍ଷା କଲୁ । ଯେମିତି ଏ ଦଳକ ପିଲା ପାଖରେ ଆସି ହେଲେ, ଆମେ ସେମାନଙ୍କୁ ବାଡ଼େଇବା ଉଦ୍ଦେଶ୍ୟରେ ଧମକ ଦେଇ ଯେମିତି ପଚାରିଛୁ, କ'ଣ ଥଟ୍ଟା କରୁଥିଲ ? ଏତିକି ପଚାରିବା ବେଳେ କେତେଗୁରା ପିଲା ଛୋଟ, ବଡ଼ ମିଶି କିଏ କୁଆଡ଼େ ପଳେଇଲେ । ଗୋଟାଏ ପିଲା ଧରା ପଡ଼ିଗଲା, ସେ ହଉଛି, ବୀରେନ୍ ମିତ୍ର ବଡ଼ ଭାଇ 'ମନି' । ତା ତଳ ଭାଇ ଆଉ ବୀରେନ୍ ମିତ୍ର ଆଉ ଅନ୍ୟ ପିଲାଏ ସବୁ ଦୌଡ଼ି ପଳେଇଲେ । ମନିକୁ ଗୁରାଏ ଧମକେଇଲୁ, ସେ କ୍ଷମା ମାଗିଲା । ଏଣୁ ତାକୁ ଆଉ ନ ବାଡ଼େଇ ଛାଡ଼ି ଦେଲୁ । ଏ ଘଟଣାଟା କାଠଗଡ଼ା ସାହିରେ ପିଲାଙ୍କ ମଧ୍ୟରେ ଭାରି ଆନ୍ଦୋଳନ ସୃଷ୍ଟି କଲା । ସେଠି ମୋର ସହପାଠୀ ସୁଧୀର ସବୁ ଶୁଣି ଆସି ତହିଁ ଆରଦିନ ମୋତେ ସ୍କୁଲରେ କହିଲା । ମୁଁ ଯେମିତି କାଠଗଡ଼ା ସାହିକୁ ଯିବା, ଆସିବା କରିବାର କରୁଥାଏ, ମନି ସହିତରେ ଆଉ କଥାବାର୍ତ୍ତା ହୁଏ ନାହିଁ । କିନ୍ତୁ ତା' ତଳ ଭାଇ ଚୁନି, ବୀରେନ୍ ମିତ୍ର, ସୁନୀଲ ଘୋଷ ଏମାନେ ସମସ୍ତେ ଆସି ମୋତେ ଦେଖି ଭାରି ଆନନ୍ଦରେ କୋଳାହଳ କରନ୍ତି । କେତେ ଦିନ ପରେ ଥରେ ଦୁର୍ଗା ପୂଜା ବେଳେ ମନି ସହିତରେ ବୀଣାପାଣି କ୍ଲବ୍‌ରେ ଥିଏଟର୍ ଦେଖିବାକୁ ଯାଇ ମୋର ଭେଟ ହୁଏ । ସେହିଦିନ ମନି ମୋତେ ଆଗେ କଥା କହି, ନିଜ ପାଖରେ ବସାଏ । ତା'ପରେ ସେହି ଦିନଠୁଁ ମନି ସହିତରେ ମୋର ବନ୍ଧୁତ୍ୱ ଜମିଗଲା ।

କାଠଗଡ଼ା ସାହି ମିତ୍ରପଡ଼ାକୁ ମୁଁ ଅଧିକାଂଶ ସମୟରେ ଯାଏ । ବେଶି ଭାଗ ଯେଉଁଦିନ କୁଆଡ଼େ ଯାଏନା,

ମିତ୍ରପଡ଼ାକୁ ପଳାଏ । ସେଠି ଆଜି କାଲି ଯେଉଁଠି ବୀରେନ୍ ମିତ୍ରର ସୌଧ ଠିଆ ହେଇଛି, ସେ ଜାଗା ଖଣ୍ଡେ ପଡ଼ିଆ ଥିଲା, ସେଠି ଗୋଟାଏ parallel bar ଥିଲା । ମୁଁ, ସୁଧୀର, ଚୂନି, ସୁନୀଲ ଆଉ ବୀରେନ ମିତ୍ର ସହିତରେ କିଛି ସମୟ କଟେଇ parallel bar ରେ ବ୍ୟାୟାମ କରି ଘରକୁ ଫେରେ । ପାଠ ପଢ଼ା ଏଣେ ଜୋର୍‌ସୋର୍‌ରେ ଚାଲିଥାଏ । ସବୁଦିନେ ଯେମିତି କୌଣସି ପରୀକ୍ଷା ଲାଗି ପ୍ରସ୍ତୁତ ହଉଛି । ଘରେ ଥିଲା ବେଳେ ସବୁବେଳେ ପଢ଼େ । ସ୍କୁଲରେ ମଧ୍ୟ ପ୍ରତ୍ୟେକ କ୍ଲାସରେ ପାଠପଢ଼ା ଚାଲିଥାଏ । କିନ୍ତୁ ଜୟରାମ ବାବୁଙ୍କ ଅଙ୍କ ପିରିୟଡ୍‌ରେ ଅଳ୍ପ କିଛି ପାଠ ପଢ଼ା ହେଲେ ବେଶି ଭାଗ football ଖେଳ ବିଷୟରେ ଆଲୋଚନା ଚାଲେ । ଜୟରାମ ବାବୁ ୧୧ଶ ଶ୍ରେଣୀର କେତେଜଣ player ଙ୍କୁ ନିଜ ଟେବୁଲ ପାଖକୁ ଡ଼ାକି forward line ରେ player ମାନେ କେମିତି position ରେ ରହିବେ, କିଏ କାହାକୁ କେମିତି pass ଦବ, ସବୁ ଚ୍‌କ ଖଡ଼ିରେ line କାଟି ବୁଝାନ୍ତି । ଯେଉଁମାନେ player ନୁହନ୍ତି, ସେମାନେ ବେଳେ ବେଳେ ଜୟରାମ ବାବୁ କ୍ଲାସରେ ପଢ଼େଇବା ପରିବର୍ତ୍ତେ ଖେଳ କଥା ପକେଇବା ଦ୍ୱାରା ବିରକ୍ତ ହୁଅନ୍ତି । ଲୁଚି ଲୁଚି ହସନ୍ତି । ପିଲାଏ ଲୁଚି ଲୁଚି ହସିବା ଯଦି ଜୟରାମ ବାବୁ ଜାଣି ପାରିଲେ, ସେ ପିଲାକୁ ଡ଼ାକି ତା'ର କାନ ମୋଡ଼ନ୍ତି । ପିଲାଏ ବିରକ୍ତ ହେଲେ ମଧ୍ୟ କେହି କିଛି ଜୟରାମ ବାବୁଙ୍କୁ କହି ପାରନ୍ତିନି ।

୧୧ଶ ଶ୍ରେଣୀରେ ପଢ଼ିବା ବର୍ଷ summer vacation ପଡ଼ିଲା । ମୁଁ, ସୁଧୀର ଉଭୟେ ଆମ ଘରେ ଖୁବ୍ ଜୋର୍‌ସୋର୍‌ରେ ପଢୁଥାଉ ଆଉ ଓଡ଼ିଆରୁ ଇଂରାଜୀରେ translation କରୁ । ସୁଧୀର ଆଉ ମୁଁ ସେ translation କୁ ନେଇ ସୁଧୀରର ସାନ ମାମୁଁ ଶିଶିର କୁମାର ମିତ୍ରଙ୍କୁ correction କରିବା ପାଇଁ ଦେଇ ଆସୁ । ଶିଶିର କୁମାର ମିତ୍ର ଭଗବାନ ମିତ୍ରଙ୍କ ତିନି ପୁଅଙ୍କ ମଧ୍ୟରେ ସବୁଠାରୁ ସାନ ପୁଅ କିନ୍ତୁ ଖୁବ୍ ମେଧାବୀ ଛାତ୍ର ବୋଲି ସେତେବେଳେ ତାଙ୍କର ଭାରି ସୁନାମ ଥିଲା । ସେ ପି.ଏମ୍.ଏକାଡ଼େମୀରେ ପଢ଼ିଲାବେଳୁ ତାଙ୍କର ସୁନାମ । ସେ Ravenshaw Collegeରେ ସେତେବେଳେ B.A. ପଢୁଥାନ୍ତି । ସେ ମୋର ଆଉ ସୁଧୀରର translation correction କରି ଦିଅନ୍ତି । ଥରେ ମୁଁ ତାଙ୍କ ଘରକୁ translation ଖାତା ନେଇ ଯାଇଛି, ଶିଶିର କୁମାର ମିତ୍ରଙ୍କ ମା' (ମୋର ଭଉଣୀ ସମ୍ପର୍କୀୟା)ଙ୍କ ସହିତରେ ଦେଖା ହେଲା । ସେ କହିଲେ, ଶିଶିର କହୁଥିଲା, ପୁଲିନ ଯାହା translation କରୁଛି, ସେଥିରେ କଲମ ଛୁଇଁ ପାରିବନି ।

ସୁଧୀର summer vacation ରେ ଆମ ଘରେ ଦିନ ବେଳା ସବୁଦିନେ ପଢ଼େ । ଏହି ସମୟରେ ସୁଧୀର ସହିତରେ ମୋର ଗୋଟାଏ ଘଟଣାରେ ବନ୍ଧୁତ୍ୱରେ ବ୍ୟାଘାତ ଘଟିଲା । ଘଟଣା ହେଲା, ମୁଁ ଯେତେବେଳେ ୧୧ଶ ଶ୍ରେଣୀରେ ପଢ଼େ, ସେତେବେଳେ Success in Matriculation in Mathematics ନାମକ ଖଣ୍ଡେ ବହି ବାହାରିଥାଏ । ବଡ଼ ଉପାଦେୟ ବହି । ସେଥିରେ ବିଗତ କେତେବର୍ଷର matriculation ପରୀକ୍ଷାର ପ୍ରଶ୍ନ ଓ ତାହାର ଉତ୍ତର ଦିଆ ହେଇଥାଏ । ଏ ବହି କେବଳ compulsory mathematics ପାଇଁ । Additional mathematicsପାଇଁ ନୁହେଁ । ଏ ବହି ଖଣ୍ଡକ ଆମ ସ୍କୁଲର ଜଣେ ମୁସଲ୍‌ମାନ ପିଲା ପାଖରେ ଥିଲା । ସେ ପିଲାର ମୋ ସହିତରେ ଭଲ ସୌହାର୍ଦ୍ଦ୍ୟ ଥିଲା ଆଉ ମଧ୍ୟ ସୁଧୀର ସହିତରେ ଥିଲା । ମୁଁ ସୁଧୀରକୁ କହିଲି, ତୁ ସେ ବହି ଖଣ୍ଡକ ସେ ପିଲାଠୁଁ ମାଗି ଆଣିବୁ । ଆମେ ଦିହେଁ ସେ ବହିକୁ ପଢ଼ିବା । ସୁଧୀର ରାଜି ହେଲା କିନ୍ତୁ ଯେତେବେଳେ ପଚାରେ, କିରେ ସେ ବହି ଆଣିଲୁ? ସୁଧୀର କହେ ସେ, ସେ ବହି ଦବାକୁ ମନା କଲା କିନ୍ତୁ ଏଥି ମଧ୍ୟରେ ସୁଧୀର ମୋତେ ଅନେକ ନୂଆ ନୂଆ ଧରଣର ଅଙ୍କ, ଆଲ୍‌ଜେବ୍ରାର ପ୍ରଶ୍ନ ଆଣି ମୋ ଦ୍ୱାରା ଉତ୍ତର କରେଇ ନିଏ । ମୁଁ ସୁଧୀରକୁ ସନ୍ଦେହ କରି ପଚାରିଲି, ତୁ ଏ ସବୁ ପ୍ରଶ୍ନ କୋଉଠୁ ପାଉଛୁ? ସୁଧୀର ମୋତେ ଏଣ୍ଣୁତେଣ୍ଣୁ କହି ଭୁଲେଇ ଦିଏ । ମୁଁ ଆଉ ଧରି ପାରେ ନା, ଦିନେ ସନ୍ଧ୍ୟା ପରେ ମୁଁ ବୁଲି ବୁଲି ଘରକୁ ଫେରୁଛି ଦୈବାତ୍ ସେ ମୁସଲ୍‌ମାନ ପିଲା ସହିତରେ

ମୋର ଚୌଧୁରୀ ବଜାର ଛକରେ ଦେଖା ହେଲା । ତାକୁ କହିଲି, ତୁମେ ସେ Success in Matriculation in Mathematics ବହି ଖଣ୍ଡକ ଦେଲ ନାହିଁ? ମୁଁ ସୁଧୀରକୁ କହିଥିଲି ତୁମଠୁଁ ମାଗି ନବା ପାଇଁ । ସେ ମୁସଲମାନ ପିଲା ଏକଥା ଶୁଣି କହିଲା, ସୁଧୀର ମୋଠାରୁ ମାସେ ହବ ସେ ବହି ନେଇଗଲାଣି ତୁମକୁ ଦେଇ ନାହିଁ? ମୁଁ କହିଲି, ସୁଧୀର କହିଲା, ତୁମେ କୁଆଡ଼େ ମନା କଲ ସେ ବହି ଦବାକୁ । ମୁସଲମାନ ପିଲା ଆଶ୍ଚର୍ଯ୍ୟ ହେଇ କହିଲା ତୁମେ ସୁଧୀରକୁ ପଚାର, ସେ ମୋଠାରୁ ସେ ବହି ନେଇଛି କି ନା ?

ଏକଥା ଶୁଣି ସୁଧୀର ଉପରେ ମୋର ଭାରି ରାଗ ହେଲା । ଭାବିଲି, ସୁଧୀର ଏତେ ବିଶ୍ୱାସଘାତକତା କରିଛି ! ମୁଁ ବର୍ତ୍ତମାନ ବୁଝି ପାରିଲି, ସୁଧୀର ଯେଉଁ ନୂଆ ନୂଆ ଧରଣର ଅଙ୍କ, ଆଲ୍‌ଜେବ୍ରା, ମୋଠାରୁ କରେଇ ନଉଥିଲା, ବୋଧହୁଏ ସେ ବହିରେ ସେ ସବୁ ପ୍ରଶ୍ନ ଅଛି । ଠିକ୍ କଲି, ସୁଧୀରକୁ ଧରିବି, ସୁଧୀର ଦୈନିକ ମୋ ସାଙ୍ଗରେ ଆମ ଘରେ ପଢୁଛି, ଅଥଚ ସେ ଏ କାମ କରିଛି । ମୁଁ ତ ତା'ର କିଛି ଅନିଷ୍ଟ କରି ନାହିଁ । ମୋର ଭାରି କୌତୁହଳ ଜନ୍ମିଲା, ସୁଧୀରକୁ ଧରିବି । ଏଣୁ ମୁଁ ସେଦିନ ସନ୍ଧ୍ୟା ପରେ ଘରକୁ ଫେରି ଜଳଖିଆ ଇତ୍ୟାଦି ଖାଇ ସୁଧୀରକୁ ପଚାରିବା ପାଇଁ କାଠଗଡ଼ା ସାହି ମିତ୍ରପଡ଼ାକୁ ବାହାରିଲି । ଜହ୍ନ ପଡ଼ିଥାଏ, ସେହିଦିନ ପ୍ରଥମ ମୁଁ ରାତିରେ ସାଇକେଲ ଚଢ଼ି ଗଲି । ସେତେବେଳେ କଟକରେ ଗଳିକନ୍ଦିରେ ଏତେ ଯାନବାହନ କିମ୍ବା ଲୋକଙ୍କର ଏତେ ଚଳାଚଳ ନଥିଲା । ଏଣୁ ବିଶେଷ କିଛି ଅସୁବିଧା ହେଲା ନାହିଁ ।

୧୧ଶ ଶ୍ରେଣୀରେ ପଢ଼ିଲା ବେଳେ ମୋର ପ୍ରଥମେ phoenix ନାମକ ଗୋଟିଏ bicycle ୫୫ଟଙ୍କା ଦାମ୍ ଆଉ କେତେକ ଆନୁସଙ୍ଗିକ ଜିନିଷ ସବୁର ଦାମ୍ ମିଶି ମୋଟ ୭୫ ଟଙ୍କାରେ କିଣା ହେଲା । ବାବା ଏକବାରେ ନାରାଜ, ମୋତେ ସାଇକେଲ କିଣି ଦେବେ ନାହିଁ । କାରଣ ମୁଁ କେଉଁଠି accident କରିବି । ମା' ରାଜି ହେଲେ ମୋତେ ସାଇକେଲ୍ କିଣି ଦବା ପାଇଁ । ଏଣୁ ମା'ଙ୍କ କଥାରେ ମୋର ସାଇକେଲ କିଣା ହେଇଥିଲା । ବେଶ୍ ସୁନ୍ଦର ଆଉ ମଜବୁତ । ସାଇକେଲ୍ ନୂଆ କିଣା ହେଇଥାଏ ବୋଲି ଭାରି ଯତ୍ନରେ ରଖା ହେଇଥାଏ । ବାବା କହିଥିଲେ, ଦିନବେଳା ଯୁଆଡ଼େ ମୁଁ ସାଇକେଲ୍‌ରେ ଯିବି ଆସିବି, ରାତିରେ କୁଆଡ଼େ ଯିବି ନାହିଁ । ସେଦିନ ସୁଧୀରର ବିଶ୍ୱାସଘାତକତା ଧରିବା ପାଇଁ ମୁଁ ବାବା, ମା'ଙ୍କୁ କିଛି ନ କହି ରାତିରେ ଲୁଚି ସାଇକେଲ୍‌ରେ ମିତ୍ରପଡ଼ାକୁ ପଳେଇଲି । ସୁଧୀର ଆସିଲା, ତାକୁ ପ୍ରଥମେ ଭଲରେ ପଚାରିଲି, ସେ ମୁସଲମାନ ପିଲା ତୋତେ ସେ ବହିଖଣ୍ଡକ ଦେଲା ନାହିଁ? ସୁଧୀର ତଥାପି ଖୁବ୍ ସାହସରେ କହିଲା ନା, ମୁଁ ରାଗରେ ଥରିଲି । ସୁଧୀରକୁ ସବୁ କଥା କହି ଗୁରାଏ ଶୋଧିଲି । ସୁଧୀର ଚୋର ପରି ଠିଆ ହେଇଥାଏ । ମୁଁ ସାଇକେଲ୍‌ରେ ଘରକୁ ଫେରିଲି । ସେହିଦିନ ମୋର ଧାରଣା ହେଲା, ଜଣେ କହାରି କିଛି ଅନିଷ୍ଟ ନକରି ଉପକାର କଲେ ମଧ ଦୁନିଆରେ ଏମିତି ଅନେକ ଲୋକ ଅଛନ୍ତି, ବିନା କାରଣରେ ସେ ଲୋକର ଅନିଷ୍ଟ କରିବାକୁ କୁଣ୍ଠାବୋଧ କରନ୍ତି ନାହିଁ ।

ତହିଁ ଆରଦିନଠୁଁ ସୁଧୀର ଲୁଚିଲା ଆଉ ମୋ ପାଖକୁ ପଢ଼ିବା ପାଇଁ ଆସି ନାହିଁ । କିନ୍ତୁ ପରେ ଏକଥା ମୋର ବନ୍ଧୁ ମହଲରେ ସୁଧୀରର ଏମିତି ବିଶ୍ୱାସଘାତକତାର କଥା ଶୁଣି ସୁଧୀରକୁ ବହୁତ ନିନ୍ଦା କଲେ । ଏ ଘଟଣା ପରେ ସେ ବର୍ଷ summer vacation ରେ ସୁଧୀରର ମୋ ସହିତରେ ପଢ଼ା ବନ୍ଦ ହେଲା । ମୁଁ ଏକାହିଁ ପଢ଼ିଲି । ଦିନବେଳା ଯା ଯେମିତି ପଢ଼େ, ରାତିରେ ଅନେକ ବେଳ ଯାଏ additional mathematics- trigonometry ଆଉ mensuration ର ଅଙ୍କ କଷେ । ରାତିବେଳା ଅଙ୍କ କରିବା ମୋତେ ଭାରି ଭଲ ଲାଗିଲା, ମୋର ବେଶି ରାତି ଯାଏ ବସି ଏମିତି ଅଙ୍କ କଷିବାର ଦେଖି ମୋର ବଡ଼ ଭଉଣୀ ମୋଠାରୁ ବହିପତ୍ର ଛଡ଼େଇ ନେଇ କହନ୍ତି, ଯା ଶୋଇବୁ ଯା, ଏତେ ରାତିଯାଏ ବସି କ'ଣ ପଢୁଛୁ? ମୁଣ୍ଡ ଖରାପ ହବ ।

ମୁଁ ବଡ଼ ଭଉଣୀଙ୍କ କଥା ମାନି ପଢ଼ା ବନ୍ଦ କରି ଶୋଇଯାଏ । ମୁଁ ପଢ଼ାରେ ଏତେ ମାତିଗଲି ଯେ ରାତିରେ

ଶୋଇବା ଛାଡ଼ିଦେଲି । ଏଣୁ ବଡ଼ ଭଉଣୀ ଯେତେବେଳେ ମଝିରେ ମଝିରେ ଆମ ଘରେ ଆସି ରହନ୍ତି, ସେ ମୋର ଅନବରତ ପଢ଼ିବା ଦେଖି ବେଳେବେଳେ ବାଧା ଦିଅନ୍ତି । Summer vacation ରେ ବେଶି ସମୟ ପଢ଼ିବାର କାରଣ ହଉଛି, summer vacation ପରେ football season ଆରମ୍ଭ ହେଇଯିବ । Football tournament ପୂଜା ଛୁଟି ପର୍ଯ୍ୟନ୍ତ ଚାଲିବ । ପୂଜା ଛୁଟି ପରେ ପରେ test examination ଆରମ୍ଭ ହେବ । Football season ରେ ତ ବେଶି ପଢ଼ାପଢ଼ି କରି ହେବ ନାହିଁ । କ୍ଲାସ୍‌ରେ ନୁହେଁ କି ଘରେ ନୁହେଁ । କ୍ଲାସ୍‌ରେ ଅନ୍ୟାନ୍ୟ ବିଷୟ ଯଦିବା କିଛି ପଢ଼ାହବ, ଜୟରାମ ବାବୁଙ୍କ କ୍ଲାସରେ ତ ପଢ଼ାପଢ଼ି ଆଦୌ ହବାର ନୁହେଁ । ଘରେ ନ ହବାର କାରଣ ହଉଛି ଖେଳି ଆସି ଥକା ଲାଗିବ, ନିଦ ମାଡ଼ିବ । ଏଣୁ ପଢ଼ିବା ସମ୍ଭବ ନୁହେଁ । ତା'ଛଡ଼ା ଆଉ ଗୋଟାଏ କାରଣ ଅଛି, ଖେଳରେ ଜିତିବା ଦିନ ଆନନ୍ଦରେ ଆଳାପ, ଆଲୋଚନାରେ ପଢ଼ି ହବ ନାହିଁ । ପୁଣି ଖେଳରେ ହାରିବା ଦିନ ମନଦୁଃଖରେ ଘର ଭିତରେ ଘୋଡ଼ିପୋଡ଼ି ହେଇ ଶୋଇବାକୁ ହବ । ଏଣୁ ୧୧ଶ ଶ୍ରେଣୀ ବର୍ଷ ମୁଁ ଆପେ ଆପେ ଅନେକ ବିଷୟ ଆଗେଇ ପଢ଼ିଗଲି କାରଣ ସ୍କୁଲ ଖୋଲିଲେ ଖେଳ ପର୍ବ ।

ମୁଁ ଏହି ୧୧ଶ ଶ୍ରେଣୀରେ ପଢ଼ିବା ବେଳେ ଆମ ଘରେ ବାବାଙ୍କର ଗୋଟିଏ ଗାଉଣାବାଜଣା ଦଳ ଆରମ୍ଭ ହେଲା । ବାବାଙ୍କର ଆଗରୁ ଗୋଟିଏ ଭଲ ଦାମିକା german make ବେହେଲା ଥିଲା । ପୁଣି ସାନ ଭଉଣୀ ଶଙ୍କରୀବାଳା ଗୀତ ଶିଖିବା ପାଇଁ ଏଇ ସମୟରେ ଗୋଟିଏ ଭଲ ହାରମୋନିୟମ ଏବଂ ଡୁବିତବଲା କିଣା ହେଲା କିନ୍ତୁ ଯେତେ ଚେଷ୍ଟା କଲେ ମଧ ସାନ ଭଉଣୀର ଗୀତ ଶିଖିବା ହେଲା ନାହିଁ । ତା'ର ଆଦୌ ଗୀତ ଗାଇବାରେ ମନ ଲାଗିଲା ନାହିଁ । କିନ୍ତୁ ମଝିଆ ଭଉଣୀ ହିରଣ୍ୟବାଳାର ଗୀତ ଗାଇବାରେ ବିଶେଷ ଆଗ୍ରହ ଏବଂ ଦକ୍ଷତା ଥିଲା । ସେ ବଞ୍ଚିଥିବା ବେଳେ ବାବାଙ୍କର କେବଳ ବେହେଲା ଖଣ୍ଡେ ଛଡ଼ା ଆଉ କିଛି ବାଦ୍ୟଯନ୍ତ୍ର ନଥିଲା । ବାବା ବେହେଲା ବଜେଇ ଭଲ ଗୀତ ବୋଲି ପାରୁଥିଲେ କିନ୍ତୁ ଏବେ ବାବାଙ୍କର ଏ ଗାଉଣା ବାଜଣାର ଦଳ ଆକସ୍ମିକ ଭାବରେ ଆରମ୍ଭ ହେଲା । ସନ୍ଧ୍ୟା ପରେ ବାବାଙ୍କର ଜଣେ ଦି'ଜଣ ଅବସରପ୍ରାପ୍ତ ବୁଢ଼ାବୁଢ଼ା ସାଙ୍ଗ, ଆଉ ଆଖପାଖରେ କେତେ ଜଣ ବୁଢ଼ା, ଦରବୁଢ଼ା, ଟୋକା ଆସି ଜମି ଖୁବ୍ ଜମାଟିଆ ହେଇ ଗାଉଣାବାଜଣା ଆରମ୍ଭ ହୁଏ । ବାବା ବେହେଲା ବଜାନ୍ତି । ଅନ୍ୟମାନଙ୍କ ଭିତରୁ କିଏ ହାରମୋନିୟମ, ଡୁବିତବଲା ବଜାନ୍ତି । କେତେକ ଖାଲି ବାଜାର ତାଳେ ତାଳେ କଣ୍ଠ ସଙ୍ଗୀତ ଶୁଣନ୍ତି । ଯଦି ଏ ଦଳ ଭିତରୁ କେହି ଜାଣି ପାରିଲେ ଯେ ଆଜି ଜଣେ ଅମୁକ ଜାଗାକୁ ଭଲ ଗାୟକ ଆସିଛି, ତାକୁ ସନ୍ଧ୍ୟାବେଳକୁ ଡ଼ାକି ଆଣିଲେ, ସେ ଆସି ଯୋଗଦେଇ ଗୀତ ଶୁଣେଇ ଗଲେ । ଏ ଦଳର ଗାଉଣାବାଜଣାର ଆସର ଜମିଲା ଆମର ଦାଣ୍ଡଆଡ଼େ, ଯେଉଁଠି ପିଲାବେଳେ ମୁଁ ଚାଟଶାଳିରେ ପଢୁଥିଲି ।

ଏଠି ଯେତେ ଓଡ଼ିଶୀ, ଚମ୍ପୁ, ଛାନ୍ଦ ବୋଲା ହେଲା କେବଳ ଓଡ଼ିଆ ଗୀତ, ହିନ୍ଦୀ ନୁହେଁ କି ବଙ୍ଗଳା ନୁହେଁ । ଗାଉଣାବାଜଣାରେ ସମସ୍ତେ ଉନ୍ମାଦ ହେଇ ପଡ଼ନ୍ତି ଦି'ତିନି ଘଣ୍ଟା ଯାଏ । ମଝିରେ ମଝିରେ ଗୀତ ବୋଲା, ବାଜା ଅଳ୍ପ ସମୟ ପାଇଁ ବନ୍ଦ କରି ଗପ, ହସ, ପାନଚୋବା, ବାହାରୁ ଆସିବା ଚାଲେ ପୁଣି ଗାଉଣାବାଜଣା ଚାଲେ ।

ଏ ଗାଉଣାବାଜଣା ଯୋଗୁଁ ମୋର ପଢ଼ା ବିଶେଷ ବାଧା ପ୍ରାପ୍ତ ହୁଏ । କିଏ କହିବ ଗୀତ ଗା'ଣ ଯୋଗୁଁ ମୁଁ ପଢ଼ି ପାରୁନି ? ଥରେ ଏ ବିଷୟରେ ବାବା, ମାଙ୍କୁ କହିଲି ଯେ ତା'ର ଉତ୍ତରରେ ମା କହିଲେ, ଯା'ର ପଢ଼ାରେ ମନଥିବ, ତା'ର ଗୀତ ଗା'ଣ ଆଡ଼କୁ ମନ ଯିବ କାହିଁକି ?

ଉତ୍ତରରେ ମୁଁ ଆଉ କିଛି ନ କହି, ଯେତେ ସମୟ ଗାଉଣାବାଜଣା ଚାଲେ, ମୁଁ ସେହି ସମୟରେ ବସି ଅଙ୍କ କରେ । ମୁଁ ଯେଉଁଠି ପଢ଼ିଲେ ମଧ, ଗାଉଣାବାଜଣାର ଶବ୍ଦରେ ପାଠ ପଢ଼ିବା ଅସମ୍ଭବ କିନ୍ତୁ କ'ଣ କରିବି ? ଅଙ୍କ କଷିବା ଦ୍ୱାରା ସେ ସମୟତକ ଭଲରେ କଟିଯାଏ । ଥରେ ମୋର ମନେ ଅଛି ମୁଁ ଘର ଭିତରେ ପଢୁଛି, ମା

ରୋଷେଇ କରୁଛନ୍ତି, ବାହାରେ ଗାଉଣାବାଜଣା ଚାଲିଛି, ହଠାତ୍ ଗାଉଣାବାଜଣା ବନ୍ଦ ହବା ସଙ୍ଗେ ସଙ୍ଗେ ଘୋ ଘା ଶବ୍ଦ ଶୁଣାଗଲା। ମୁଁ ଏବଂ ମା ଆତଙ୍କିତ ହେଇ ଉଠିଲୁ। ଏ ହଟ୍ଟଗୋଳର କାରଣ ସ୍ୱରୂପ ଜଣାଗଲା କଟକର ଡ଼ା ମାନଗୋବିନ୍ଦ ସାହୁଙ୍କର କମ୍ପାଉଣ୍ଡର ସେଦିନ ଆସି ଗୀତ ଗା'ଣରେ ଯୋଗ ଦେଇଥିଲେ। ତାଙ୍କର କମିଜର ଡ଼ାଁଣ ପାଖ ତଳ ପକେଟ୍‌ରେ ଗୋଟାଏ ସାପ ପଶିଥିଲା। ସେ ପାନ ଖାଇବା ପାଇଁ ଡ଼ାହାଣ ପାଖ ପକେଟ୍‌ରେ ହାତ ପୂରେଇ ପାନ ଡବା କାଢ଼ିଲା ବେଳକୁ ସାପଟାଏ। ସାପ ପକେଟ୍‌ରୁ ବାହାରି ପଳେଇଲା। ବିଷାକ୍ତ ସାପ ନୁହେଁ ବୋଲି ଜଣାଗଲା। ତାକୁ କେହି ମାଇଲେ ନାହିଁ। କିଛି ସମୟ ପରେ ଗୀତ ଗା'ଣ ପୁଣି ଚାଲିଲା।

Summer vacation ପରେ ସ୍କୁଲ ଖୋଲିଲା। ପୁଣି ୧୯୨୯ ମସିହାର football season ଆରମ୍ଭ ହେଲା। ଏ ବର୍ଷ ଆମ team ଆହୁରି ବଳୀୟାନ କାରଣ ଆଉ କେତେଜଣ ନୂଆ player ଆସି ନାଁ ଲେଖେଇଥିଲେ। ଜୟରାମ ବାବୁଙ୍କ ଛାତି କୁଣ୍ଢେମୋଟ। ଜୟରାମ ବାବୁଙ୍କ ମୁହଁରେ ସବୁବେଳେ ହସ। ତାଙ୍କ କ୍ଲାସ୍‌ରେ ଆଉ ପାଠ ପଢ଼ାର ନାଁ ଗନ୍ଧ ନାହିଁ। ସବୁବେଳେ football matchର ଆଲୋଚନା। ପୁଣି friendly matchର ଆୟୋଜନ। ବିଭିନ୍ନ ସ୍କୁଲ team ସହିତରେ friendly match ଖେଳେଇ ଜୟରାମ ବାବୁ ନଜର କରନ୍ତି କିଏ କେମିତି ଖେଳୁଛି? କାହାକୁ କୋଉ positionରେ ଦେଲେ ଠିକ୍ ହବ। ଖେଳରେ ଯାହାର ଭୁଲ୍ ଦେଖିଲେ ତାକୁ ଯାହା ତାହା ଗାଳି, କାହାକୁ ଗୋଇଠାଏ। କିନ୍ତୁ ସବୁ ଖେଳାଳୀଙ୍କୁ ତାଙ୍କର ପୁତ୍ର ସ୍ନେହ। ଯା'ହଉ ୧୯୨୮ ମସିହା ଅପେକ୍ଷା ୧୯୨୯ ମସିହାରେ ଜୟରାମ ବାବୁ ଆମକୁ ଆହୁରି ଭଲ ଭାବରେ training ଦେଇ ବେଶ୍ ଗୋଟାଏ ବଳିଷ୍ଠ team ତିଆରି କରି "ଯୁଦ୍ଧଂ ଦେହି" ଅପେକ୍ଷାରେ ବସି ରହିଲେ।

ସ୍କୁଲ team ର league match tournament ଆରମ୍ଭ ହେଲା। ପ୍ରଥମେ ଖେଳ ପଡ଼ିଲା Ravenshaw Collegiate ଆଉ Mission ସ୍କୁଲ ମଧ୍ୟରେ। ଖେଳ ହେଲା କିଲ୍ଲା ପଡ଼ିଆରେ। ଆମ ସ୍କୁଲ team ପିଲାଏ ଓ ଅନ୍ୟାନ୍ୟ ପିଲାଏ ଯାଇଥାନ୍ତି ଖେଳ ଦେଖିବା ପାଇଁ। Mission ଆଉ Collegiate ର player ମାନେ କେମିତି ଖେଳୁଛନ୍ତି? ଆମ ସାଙ୍ଗରେ ଖେଳ ହେଲେ ଆମେ ହରେଇ ପାରିବା କି ନା? ମୁଁ ଯେଉଁଠି ଠିଆ ହେଇ ଖେଳ ଦେଖୁଥିଲି, ମୋ ସାମନାରେ କେତେ ଜଣ ଦର୍ଶକ ଏ ଦୁଇଟା team ର ଖେଳର standard ଦେଖି ମନ୍ତବ୍ୟ କରୁଥାନ୍ତି, ଏମାନଙ୍କ ଅପେକ୍ଷା ଜୟରାମ ବାବୁଙ୍କ ଆଖଡ଼ା ଦଳ ଆହୁରି ଭଲ ଅଛି। ସେଦିନ Mission, Collegiate କୁ ହରେଇ ଦୁଇଟି ପଏଣ୍ଟ ହାସଲ କଲା। ତା'ପରେ ପଡ଼ିଲା league matchରେ ଆମର ପାଳି, Mission, Seminary ଆଉ Collegiate ମଧ୍ୟରେ ଖେଳ ହବ କାଠଯୋଡ଼ି କୂଳ Sunshine ପଡ଼ିଆରେ। ବାବାଙ୍କର ମନା ମୁଁ half pant ପିନ୍ଧିବି ନାହିଁ କାରଣ ଆମ ଘରେ ଆଗରୁ କେହି half pant ପିନ୍ଧି ନଥିଲେ। ଏଣେ ସ୍କୁଲରେ ଜୟରାମ ବାବୁଙ୍କ ମନା ମୁଁ half pant ପିନ୍ଧି ଖେଳିବି ନାହିଁ କାରଣ ମୁଁ ନିହାତି ପାତଳା ହେଇଥିବାରୁ ମୋତେ half pant ପିନ୍ଧିଲେ କୁଆଡ଼େ ଭାରି ଖରାପ ଦେଖାଯିବ। ମୁଁ କାହାରି କଥା ନ ମାନି ମଙ୍ଗଳାବାଗର ଗୋଟିଏ ଦରଜୀ ପାଖରେ ଖଣ୍ଡେ କଳା half pant ଆଉ ଖଣ୍ଡେ ଧଳା କଲାର ଗେଞ୍ଜି ଭଳି ତିଆରି କରେଇ ଘରେ ଆଣି ଲୁଚେଇ ରଖିଲି। ଯେଉଁଦିନ ୪ଟା ବେଳକୁ match ହବ, ସେହିଦିନ ୩ଟା ବେଳକୁ ଜୟରାମ ବାବୁ କିଏ କେଉଁ position ରେ ଖେଳିବ ସବୁ ସଜାଡ଼ି ଆମକୁ ନେଇ ଗୋଟିଏ meeting କଲେ। ଏହି ସମୟରେ ଆମ team ର ଦଲିଲ୍ ଉଲ୍ ରହମାନ, ଯା'ର ସେଦିନ left half ରେ ଖେଳିବାର କଥା, ସେ ହଠାତ୍ ଉଠି କହିଲା, ସାର୍ ମୁଁ ଆଜି ଖେଳି ପାରିବି ନାହିଁ।

ଘଣ୍ଟାକ ପରେ match, ଏତେବେଳେ left half ମନା କରୁଛି ଖେଳି ପାରିବ ନାହିଁ, କ'ଣ କରାଯିବ? ଜୟରାମ ବାବୁ ବିଶେଷ ଭାବନାରେ ପଡ଼ିଲେ, ଥକା ହେଇ ବସିଲେ, କ'ଣ କରିବେ? Left half ରେ ସେହି

ଦଲିଲ୍ ଉଲ୍ ରହମାନ ଛଡ଼ା ତ ଆଉ କେହି ଖେଳେ ନାହିଁ। ସେଇ ଗୋଟାଏ ପିଲା ଯେ କି left half position ରେ ଚଳାଏ, ଆଉ ତ କେହି ନାହିଁ। କାହାରି ତ ସେମିତି left ଚଳେ ନାହିଁ।

ଶେଷରେ ଜୟରାମ ବାବୁ ଘୋଷଣା କଲେ, ଯେ ଆଜି left half position ରେ ଖେଳିବ, ତାକୁ ଗୋଟାଏ football prize ଦିଆଯିବ। ଏତିକିବେଳେ ଈଶ୍ୱର ସାହୁ ମୋତେ କହିଲା, ପୁଳିନ ତୁ କହ left half position ରେ ଖେଳିବୁ। ମୋର ସେଦିନ left in position ରେ ଖେଳିବାର ଥିଲା। ମୋର ଇଚ୍ଛା, ମୁଁ left in ରେ ଖେଳିଲେ score କରିବି। ମୁଁ ପ୍ରଥମେ ନାରାଜ ହେଇ ଈଶ୍ୱର ସାହୁକୁ ମନାକଲି, ମୁଁ forward ରେ left in position ରେ ଖେଳିଲେ score କରିବି। ମୋର କିଏ ଯାଉଛି left half position ରେ ଖେଳିବାକୁ?

ଈଶ୍ୱର ସାହୁ ପୁଣି ମୋ ସାଙ୍ଗରେ ଲଗେଇଲା, ନା, ତୁ କହ, ତୁ ଆଜି left half ରେ ଖେଳିବୁ। ଈଶ୍ୱର ସାହୁ ଜାଣେ ମୁଁ ସ୍କୁଲରେ left in position ରେ ଖେଳିଲେ ମଧ୍ୟ medical field ରେ medical ପିଲାଙ୍କ ସାଙ୍ଗରେ ମିଶି left half position ରେ ଖେଳେ। ଆଉ ମୋର right, left ଦି ଗୋଡ଼ ଚାଲେ। ଏଣୁ ସେ ପୁଣି ମୋ ସଙ୍ଗେ ଲଗେଇଲା ତୁ କହ, ତୁ ଆଜି left half ରେ ଖେଳିବୁ।

ଈଶ୍ୱର ସାହୁର ବାରମ୍ବାର ଅନୁରୋଧ ଏଡ଼ି ନପାରି ଶେଷରେ ମୁଁ ଉଠି ଠିଆ ହେଇ ଜୟରାମ ବାବୁଙ୍କୁ କହିଲି, ସାର୍ ମୁଁ ଆଜି left half ରେ ଖେଳିବି। ଜୟରାମ ବାବୁ ମୋ କଥା ଶୁଣି ଆଶ୍ଚର୍ଯ୍ୟ ହେଲେ କାରଣ ସେ ତ କେଭେ ଦେଖି ନାହାନ୍ତି ମୋତେ left half ରେ ଖେଳିବାର। ତା'ପରେ ମୁଁ ଅତି ଦୁର୍ବଳ, ତାଙ୍କର ବିଶ୍ୱାସ ହେଲା ନାହିଁ ଯେ ମୁଁ left half ରେ ଖେଳି ପାରିବି କାରଣ ଏଥି ପୂର୍ବରୁ Collegiate ଆଉ Mission team match ଦିନ ଆମେମାନେ ଦେଖିଛୁ ଯେ Collegiate right out position ରେ ଖେଳୁଥିଲା, ସେ ବେଶ୍ ମୋଟା ବଳିଷ୍ଠ ପିଲା। ମୁଁ left half ରେ ଖେଳିଲେ ତାକୁ ମିଶିବାକୁ ହବ। ସେ ଯେତିକି ବଳିଷ୍ଠ, ମୁଁ ସେତିକି ଦୁର୍ବଳ, ଜୟରାମ ବାବୁ ଏ ସବୁ ଭାବି ମୋତେ ପରିହାସ କରି କହିଲେ, ବଙ୍ଗାଳୀ ତୁ left half ରେ ଖେଳିବୁ, ତୁ ଦେଖିଛୁ Collegiate ର right out କୁ? ସେ କେଡ଼େ ବଳୁଆ ହେଇଛି, ତାକୁ ଜଗି ପାରିବୁ? ମୋର ବିଶ୍ୱାସ ହଉନି।

ମୁଁ କହିଲି, ସାର୍ ସେ ବଳୁଆ ହେଲେ କ'ଣ ହେଲା? ମୁଁ କ'ଣ ତା ସାଥୀରେ କୁସ୍ତି କରିବାକୁ ଯାଉଛି? ମୋ କାଇଦାରେ ମୁଁ ଖେଳିବି, ତା' କାଇଦାରେ ସେ ଖେଳିବ। ଜୟରାମ ବାବୁ ପଚାରିଲେ, ତୁ କେବେ left half position ରେ ଆଗରୁ ଖେଳିଛୁ? ମୁଁ କହିଲି, ମୁଁ medical field ରେ medical ପିଲାଙ୍କ ସାଥୀରେ ମିଶି left half ରେ ଅନେକବାର ଖେଳିଛି।

ଏତେବେଳେ ଈଶ୍ୱର ସାହୁ କହିଲା, ହଁ ସାର୍ ସେ ଅନେକବାର medical field ରେ left half ରେ ଖେଳିଛି। ତାକୁ ଆଜି left half ରେ ଦିଅନ୍ତୁ। ଜୟରାମ ବାବୁ କହିଲେ, ହଉ ଆଜି left half ରେ ଖେଳ କିନ୍ତୁ ମୋର ବିଶ୍ୱାସ ହଉନି, ତୁ ପାରିବୁ ବୋଲି। ମୋର ସେଦିନ left half ରେ ଖେଳିବା ସ୍ଥିର ହେଲା। ମୋର left in positionରେ ଆଉ ଜଣକୁ ଦିଆଗଲା।

ଜୟରାମ ବାବୁ ମୋତେ ତାଗିଦ୍ କରି କହିଲେ, ତୁ ସେ ପ୍ୟାଣ୍ଟ ପିନ୍ଧି ଖେଳିବୁ ନାହିଁ, ତୋତେ ଭାରି ଖରାପ ଦେଖା ଯାଉଛି। ସେଦିନ ଆମକୁ ଛୁଟି ଦିଆଗଲା। ମୁଁ, ଈଶ୍ୱର ସାହୁ ଘରକୁ ଆସିଲୁ। ଈଶ୍ୱର ସାହୁ ଅଳ୍ପ ସମୟ ପରେ ପ୍ରସ୍ତୁତ ହେଇ ମୋ ପାଖରେ ଆସି ପହଁଚିଲା। ମୁଁ ନୂଆ କଳା half pant ଆଉ ନୂଆ ଧଳା ଗେଞ୍ଜି ପିନ୍ଧି ବାହାରି ପଡ଼ିଲି। ଈଶ୍ୱର ସାହୁ goalkeeper positionରେ, ମୋର left half positionରେ ଖେଳିବାର କଥା, ଆମେ ଦିହେଁ Ripon Road ରେ ଆଗେ ଜୟରାମ ବାବୁଙ୍କ ମେସ୍‌କୁ ବାହାରିଲୁ। ସେଇ ବାଟ ଦେଇ ତ Sunshine field କୁ ଯିବାକୁ ହବ।

ଆମେ ଯେତେବେଳେ ଯାଇ ଜୟରାମ ବାବୁଙ୍କ ମେସ୍‌ରେ ପହଁଚିଲୁ ଜରାରାମ ବାବୁ ମୋତେ half pant

ପିନ୍ଧିବାର ଦେଖି କହିଲେ ହଇରେ ତୋତେ half pant ପିନ୍ଧି ଖେଳିବାକୁ ମନା କରଥିଲି, ତୁ half pant ପିନ୍ଧି ଆସିଛୁ ? ଜୟରାମ ବାବୁ ଏଇ କଥା କହି ମୋତେ ଗୋଇଠାଏ ମାରିବାକୁ ଗୋଡ଼େଇଲେ, ମୁଁ ତାଙ୍କ ସାମନାରୁ ଦୌଡ଼ି ପଳେଇଲି । ସେତେବେଳକୁ ସବୁ player ଜୟରାମ ବାବୁଙ୍କ ମେସ୍‌କୁ ଆସି ଯାଇଥିଲେ ସେଇଠୁ ଜୟରାମ ବାବୁ ଆମକୁ ନେଇ Sunshine ପଡ଼ିଆକୁ ବୀରଦର୍ପରେ ବାହାରିଲେ ।

Sunshine ପଡ଼ିଆରେ ପହଁଚିଲା ବେଳକୁ ଖେଳ ପଡ଼ିଆ ଲୋକାରଣ୍ୟ । କିଛି ସମୟ ପରେ ଖେଳ ଆରମ୍ଭ ହେଲା । ମୁଁ left half ରେ ଖେଳୁଥାଏ । Collegiate ର ବଲ୍‌ରେ ପ୍ରଥମେ ଖେଳ ଆରମ୍ଭ ହେଲା । ଭାରି ସୁନ୍ଦର ବଲ୍ । ମୋତେ ଭାରି ହାଲୁକା ଲାଗୁଥାଏ । କାରଣ ଆମେତ ଗରୀବ ସ୍କୁଲର ପିଲା, ଅଳ୍ପ ଦାମ୍‌ର ପଥର ପରି ବଲ୍ ନେଇ ଖେଳିବା ଆମର ଅଭ୍ୟାସ । Collegiate ସରକାରୀ ସ୍କୁଲ, ତାଙ୍କର ଦାମିକା ବଲ୍ ଯେତେବେଳେ ମିଳିଗଲା, ଏଣେ କାଠଯୋଡ଼ି ନଈର ପବନ ଆମ ସପକ୍ଷରେ ରହିଲା । ଏକେ ବଲ୍ ହାଲୁକା ତେଣେ କାଠଯୋଡ଼ି ପବନ ସପକ୍ଷରେ, Collegiate ଖେଳାଳୀମାନେ ଆଉ ଯିବେ କୁଆଡ଼େ ? ଆମେ ଆମ back area ରୁ kick ମାଇଲେ ball ଯାଇ ତାଙ୍କ back area ରେ ତାଙ୍କ back ତାକୁ return କରୁଥାଏ । ଏଣୁ ଖେଳର ପ୍ରଥମାର୍ଦ୍ଧରେ ହିଁ Collegiate ତିନି ଗୋଲ୍‌ରେ ପରାସ୍ତ ହେଲା, ତା'ପରେ ପୁଣି ଖେଳର ଦ୍ୱିତୀୟାର୍ଦ୍ଧ ଥାଏ, ମୁଁ ଦେଖିଲି ମୋ ସାମନାରେ Collegiate ର right out ଓ right in ଠିଆ ହୋଇଥାନ୍ତି, ଆଦୌ ball ପାଉ ନଥାନ୍ତି । ମୋତେ ପଡ଼ିଆ ନିଅଁଟ ପଡୁଥାଏ, ନିଜ position ରେ ଖେଳି ପୁଣି centre half କୁ ସାହାଯ୍ୟ କରୁଥାଏ ।

ଯେତେବେଳେ ଖେଳର ପ୍ରଥମାର୍ଦ୍ଧ ସରିଲା, half time ହେଲା ମୁଁ ପଡ଼ିଆରେ ବୁଲି, ଅନ୍ୟମାନଙ୍କ player ସଙ୍ଗେ ଗପ କରୁଛି ଏଇ ସମୟରେ ମୋତେ ଜଣେ ଆସି ହଠାତ୍ କୁଣ୍ଢେଇ ପକେଇଲା ପରି ଜଣାଗଲା । ମୁଁ ଅନେଇଲା ବେଳକୁ ଜୟରାମ ବାବୁ । ଜୟରାମ ବାବୁ କହିଲେ, ବଙ୍ଗାଳୀ ଆଜି ତୁ ମୋ ନାଁ ରଖିଦେଇଛୁ । ତୁ left half ରେ ଏମତି ଖେଳିପାରୁ ମୁଁ ତ ଜାଣି ନଥିଲି । ଜୟରାମ ବାବୁଙ୍କ ବେଶି ଖୁସି ହବାର କାରଣ ହଉଛି Collegiate ଉପରେ ଯେଉଁ ପ୍ରଥମ ଗୋଲ୍ ହୁଏ, ସେ କେବଳ ମୋରି ପାଇଁ ହୁଏ । ଖେଳ ଭିତରେ ଆମର centre half ଠୁଁ ମୁଁ ଗୋଟାଏ ବଲ୍ ପାଏ । ସେ ବଲ୍‌କୁ ମୁଁ ଅପର ପକ୍ଷର ଦୁଇ, ତିନି ଜଣକୁ କଟେଇ ନେଇ ଆମର left outକୁ ଦେଇ ତାକୁ କହିଲି ମାର୍ ଗୋଲ୍‌କୁ । Left out ମୋର କହିବା ଅନୁଯାୟୀ ସେଇଠୁଁ ବଲ୍ ମାରେ ଏବଂ ସେଇଥିରେ ପ୍ରଥମ ଗୋଲ୍ ହୁଏ ତା'ପରେ ଆହୁରି ଦୁଇ ଗୋଲ୍ Collegiate ଉପରେ ହୁଏ ।

ଖେଳର ଦ୍ୱିତୀୟାର୍ଦ୍ଧରେ Collegiate ଆମକୁ ଗୋଟିଏ ଗୋଲ୍ ଦିଏ । ଖେଳ ଶେଷରେ ୩-୧ ଗୋଲ୍‌ରେ ଆମେ ସେଦିନ ଜିତି ଦୁଇଟି ପଏଣ୍ଟ ହାସଲ କଲୁ । ଖେଳ ଚାଲିଲା, ଆଲୋଚନା ଚାଲିଲା । ମୋତେ ସେ ବର୍ଷ ଜୟରାମ ବାବୁ ମୋର left in position ପରିବର୍ତ୍ତେ left half ରେ ଖେଳେଇଲେ । ସେ ବର୍ଷତମାମ ମୁଁ left half ରେ ଖେଳିଲି । ସେ ବର୍ଷ ପୁଣି Mission School ସହିତରେ league match ର ପ୍ରଥମ ଖେଳରେ ଆମର ଖେଳ ହେଲା । ସେ ବର୍ଷ Mission, Seminary ର match ଦେଖିବା ପାଇଁ କିଲ୍ଲା ପଡ଼ିଆରେ ବହୁ ଲୋକଙ୍କର ଗହଳି । ପଡ଼ିଆର ଚାରିଆଡ଼େ ଲୋକ । ସେଦିନ Mission ସହିତରେ ବହୁତ ଝଟାପଟା ଖେଳ ପରେ, ଖେଳ ଅମୀମାଂସିତ ରହିଲା । କେହି କାହାକୁ ଗୋଲ୍ ଦେଇ ପାରିଲେ ନାହିଁ । ଜୟରାମ ବାବୁ ଭାରି ଖୁସି । ଆଗେ Mission ସ୍କୁଲ Seminary କୁ ଛ'ଗୋଲ୍‌ରେ ହରଉଥିଲା । ଯା'ହଉ ଏ ବର୍ଷ Mission ସହିତରେ ଖେଳ draw ରହିଲା ।

ଯେଉଁଦିନ Mission ସ୍କୁଲ ସହିତରେ leagueର ପ୍ରଥମ ଖେଳ ହୁଏ, ସେଦିନ କ୍ଲାସରେ ଅନ୍ୟାନ୍ୟ ପିଲାମାନେ କହିଥିଲେ, ଆଜି ଯଦି Mission କୁ ହରେଇବ ତା'ହେଲେ ଆମ ମେସ୍‌ରେ ଆଜି ତୁମମାନଙ୍କୁ ଖାଇବାକୁ

ଦିଆଯିବ । କିଏ କହିଲା ଯେ ଗୋଲ୍ ଦବ, ତାକୁ ଗୋଟାଏ medal ଦିଆଯିବ । ସେତେବେଳେ କଟକରେ ସ୍କୁଲ ପିଲାଙ୍କ ପାଇଁ ଅନେକଗୁଡ଼ିଏ ମେସ୍ ଥିଲା, ଯେମିତି ଦଶପଲ୍ଲା ମେସ୍, ଖଣ୍ଡପଡ଼ା ମେସ୍, ଖୋର୍ଦ୍ଧା ମେସ୍, କନିକା ମେସ୍ ଇତ୍ୟାଦି । ଆମ କ୍ଲାସରେ ବିଭିନ୍ନ ମେସ୍‌ର ପିଲା ପଢୁଥାନ୍ତି । ଏଣୁ ବିଭିନ୍ନ ମେସ୍‌ରୁ ଆମକୁ ନିମନ୍ତ୍ରଣର ପ୍ରଲୋଭନ ଦେଖା ଯାଉଥାଏ, କିନ୍ତୁ ସେ ନିମନ୍ତ୍ରଣର ଆନନ୍ଦଟା ନିର୍ଭର କରେ Mission ସ୍କୁଲକୁ ହରେଇ ବିଜୟ ହାସଲ ଉପରେ । ସେଦିନ ତ ଖେଳ draw ରହିଲା । ଏଣୁ ପ୍ରତ୍ୟେକ ମେସ୍‌ର ନିମନ୍ତ୍ରଣରୁ ଆମେ ବଞ୍ଚିତ ହେଲୁ ତଥାପି ଆନନ୍ଦର ସୀମା ରହିଲାନି କାରଣ Mission ସ୍କୁଲ ସହିତରେ draw ରହିଛି । ଏଠି ଗୋଟାଏ କଥା ଆଗରୁ ଲେଖିବାକୁ ଭୁଲି ଯାଇଛି । ଯେଉଁଦିନ Collegiate ସହିତରେ Sunshine ପଡ଼ିଆରେ ଆମର league match ର ପ୍ରଥମ ଖେଳ ହୁଏ । ସେଦିନ କାଠଗଡ଼ା ସାହିର କେତେଗୁଡ଼ିଏ ମୋର ପରିଚିତ ପିଲା ପଡ଼ିଆ ପାଖରେ ବସି ଆମକୁ encourage କରୁଥିଲେ, ତା'ଭିତରେ ବୀରେନ୍ ମିତ୍ର ଥିଲା । ଖେଳ ଯେତେବେଳେ ଶେଷ ହୁଏ, ସେତେବେଳେ ବୀରେନ୍ ମିତ୍ର ମୋତେ ଆସି କହିଲା, ମୁଁ ତୁମମାନଙ୍କୁ encourage କରୁଥିଲି, ମୋତେ Collegiate ର captain ଆସି ଗୋଟାଏ ଗୋଇଠା ପକେଇଲା ।

ବୀରେନ୍ ମିତ୍ର ସେତେବେଳେ ଭାରି ଛୋଟ । ମୋତେ ତାକୁ ଭାରି ଭଲ ଲାଗେ । ତା' ମୁହଁରୁ ଏକଥା ଶୁଣି ମୋର ରାଗ ଚହଟିଲା । ମୁଁ ବୀରେନ୍ ମିତ୍ରଙ୍କୁ କହିଲି ମୋତେ ସେ ପିଲାକୁ ଚିହ୍ନେଇ ଦିଅ ତ, ମୁଁ ତାକୁ ଦେଖୁଛି । ଏଇ କଥା ପରେ କିଏ କୁଆଡ଼େ ଗଲୁ, ବୀରେନ୍ ମିତ୍ର ଆଉ ଚିହ୍ନେଇଲା ନାହିଁ । କିନ୍ତୁ ମୋର ମନେ ରହିଲା Collegiateର captain ବୀରେନ୍ ମିତ୍ରକୁ ଗୋଇଠାଏ ମାରଛି ।

League matchର Collegiate ସାଥୀରେ ଆମର ଦ୍ୱିତୀୟ ଖେଳ ପଡ଼ିଲା କିଲ୍ଲା ପଡ଼ିଆରେ । ସେଦିନ ମୁଁ ତାଙ୍କର captain କୁ ଚିହ୍ନିଲି । ସେ ତାଙ୍କ team ର back positionରେ ଖେଳୁଥାଏ । ମୁଁ ଆମ team ର left half positionରେ ଖେଳୁଥାଏ । ଏଣୁ ତାକୁ ଖେଳ ମଝିରେ ମାରିବାର ଆଉ ସୁବିଧା ପାଇଲି ନାହିଁ । ସେଦିନ ଭାରି ଝଟାପଟା ଖେଳ ଚାଲିଲା । ଶେଷରେ ସେଦିନ ଖେଳ ଅମୀମାଂସିତ ରହିଲା । ପ୍ରତ୍ୟେକ ଗୋଟିଏ ଲେଖା ପଏଣ୍ଟ ବାଣ୍ଟି ନେଲୁ । ୧୯୨୮ ମସିହାରେ ସେ ବର୍ଷ Collegiate ସ୍କୁଲ league match ରେ ସେଇ ଯେ ଗୋଟିଏ ପଏଣ୍ଟ ପାଇଲା, ସେତିକି ଆମ ବାବଦରେ ଆଉ ସମସ୍ତଙ୍କଠୁଁ ହାରି ସମସ୍ତଙ୍କୁ ପଏଣ୍ଟ ଯୋଗେଇଲା । ସେଦିନ ଖେଳ ଶେଷରେ Collegiate ପିଲାଏ କିଲ୍ଲା ପଡ଼ିଆରେ ମାରପିଟ କରି ଗଣ୍ଡଗୋଳ ଆରମ୍ଭ କଲେ । ମୁଁ ସେହି ଗଣ୍ଡଗୋଳ ଭିତରେ Colleigiate ର captainକୁ ଗୋଟାଏ ମୋଟା ବେତବାଡ଼ିରେ ପାହାର ପକେଇ ବୀରେନ୍ ମିତ୍ରକୁ ଗୋଇଠା ମାରିବାର ପ୍ରତିଶୋଧ ନେଲି । ଏହି ଯୋଗୁଁ Collegiate ତରଫରୁ ମୋ ବିରୁଦ୍ଧରେ Orissa Athletic Association କୁ ଲେଖିଲେ ମୋତେ ଖେଳରୁ ବାହାର କରିବା ପାଇଁ, କିନ୍ତୁ ପରେ ସେ ବିଷୟ association ରେ ଆଲୋଚନା ବେଳେ ଆମର headmaster ଆଲ୍ଲାବକ୍ସ ତାକୁ ଯୁକ୍ତିତର୍କରେ କାଟି ଉଡ଼େଇ ଦେଲେ, ମୋର କିଛି ହେଲା ନାହିଁ ।

ତା'ପରେ ପଡ଼ିଲା Mission ସ୍କୁଲ ସହିତରେ league matchର ଦ୍ୱିତୀୟ ଖେଳ । ସେଦିନ ମଧ Mission ସହିତରେ ଖେଳିବାକୁ ଯିବା ପୂର୍ବରୁ Mission କୁ ହରେଇ ପାରିଲେ, ପ୍ରତ୍ୟେକ ମେସ୍ ତରଫରୁ ପୂର୍ବ ଭଳି ନିମନ୍ତ୍ରଣର ପ୍ରଲୋଭନ ପ୍ରତିଶ୍ରୁତିଗୁଡ଼ାଏ ମିଳିଲା । ସେଦିନ ଖେଳିବାକୁ ଯିବା ପୂର୍ବରୁ ମୁଁ ସ୍କୁଲରୁ ଘରକୁ ଆସିଲି । ମୋ ଦିହଟା କାହିଁକି ସେତେ ଚଞ୍ଚଳ ଲାଗୁ ନଥାଏ । ଶରଦି ହେଲା ପରି ଜଣା ଯାଉଥାଏ । କ'ଣ କରିବି ? ଆଗରୁ ଗୋଟାଏ Muslim Seminary ରେ କଥା ଚାଲି ଆସିଛି ଯେ Mission ସ୍କୁଲ ସହିତରେ match ଥିବା ଦିନମାନ ଭୟରେ ଅନେକ ଖେଳାଳୀ ଫିସାଦ କରି ଅନେକ ରକମ ରୋଗର ଆଳ ଦେଖେଇ ଖେଳନ୍ତି ନାହିଁ । ଏଣୁ ସେଦିନ ମୁଁ ଭାବିଲି ଦିହ ଭଲ ନ

ଲାଗୁଛି ବୋଲି ଯଦି ମୁଁ ଆଜି ଖେଳିବାକୁ ନଯାଏ, ତା'ହେଲେ ପିଲାଏ ସେଇଆ ଭାବିବେ। ମୋର ମନେ ପଡ଼ିଲା, ଚା ଖାଇଲେ ହୁଏତ ଚଞ୍ଚଳ ଲାଗିବ କିନ୍ତୁ ଚା' ଖାଇବି କିମିତି? ଘରେ ତ ଚା'ର ଚଳନ ଆଦୌ ନାହିଁ ତଥାପି ମା'ଙ୍କୁ କହିଲି, ମା' ମୁଁ ଟିକିଏ ଚା' ଖାନ୍ତି, ଦିହଟା କାହିଁକି ଭଲ ଲାଗୁନାହିଁ। ଆଶ୍ଚର୍ଯ୍ୟର କଥା, ମା' କିଛି ବାଧା ନ ଦେଇ କହିଲେ, ହଉ, ଯା ଚା' କିଣି ଆଣ ମୁଁ କରି ଦଉଛି। ମୁଁ ଆଶ୍ଚର୍ଯ୍ୟ ହେଇ ଭାବିଲି ମା କିମିତି ବିନା ଆପତ୍ତିରେ କହିଲେଣି ଚା' କରିଦବାକୁ!

ମୁଁ ଚା'କିଣି ଆଣିଲି, ମା' ଖାଲି ପାଣିରେ ଚିନି, ତେଜପତ୍ର ଦେଇ, ଚା' କରି ଦେଲେ, ମୁଁ ଚା' ପିଇଲି। ସେଇ ମୋର ପ୍ରଥମ ଚା'ଖିଆ। କେବେ ତ ଚା' ଖାଇ ନଥିଲି, ସେଇ ଥରକ ଯେମିତି ଚା' ପିଇଛି, ଦିହ ସଙ୍ଗେ ସଙ୍ଗେ ତେଜ ଜଣାଗଲା। ଥଣ୍ଡାଳିଆ ଭାବ କଟିଗଲା। ମୁଁ ପଳେଇଲି ଖେଳିବାକୁ।

Mission, Seminary ଦୁଇଟା strong team ର ଖେଳ। ଦେଖିବା ପାଇଁ ସେଦିନ ପଡ଼ିଆରେ ଅସଂଖ୍ୟ ଲୋକଙ୍କର ଭିଡ଼। ଖେଳ ଆରମ୍ଭ ହେଲା, କେହି କାହାକୁ ସୂଚ୍ୟଗ୍ର ମେଦିନୀ ଛାଡ଼ିବାର ନୁହଁ। ସେଦିନ ରେଫେରି ଥିଲେ ସେତେବେଳର ନାମକରା ଖେଳାଳୀ-ହରିଦାସ ବାବୁ। ଏଇ ହରିଦାସ ବାବୁ ପରେ କାଠଯୋଡ଼ି ନଈରେ ପହଁରୁ ପହଁରୁ ବୁଡ଼ିଯାଇ ପ୍ରାଣ ହରାଇଥିଲେ ।

ମୁଁ ସେଦିନ left half ରେ ଖେଳୁଥାଏ। ଝଟାପଟା ଖେଳ। ପ୍ରତ୍ୟେକ ମୁହୂର୍ତ୍ତରେ ମନେ ହଉଥାଏ କାହାରି ଉପରେ ଗୋଲ୍ ହେଇଯିବ। ଉଭୟ ଦଳର ସମର୍ଥକଙ୍କ ଆଡୁ ଭୀଷଣ ପାଟିତୁଣ୍ଡ ହଉଥାଏ। କେହି କାହାକୁ ଇଞ୍ଚେ ଛାଡ଼ିବାର ନୁହଁ। ଏହାର ପୂର୍ବ match ରେ Mission ସହିତରେ ଆମର draw ହେଇଥିଲା। ଏଥର Mission କୁ ହରେଇବାର କଥା। ଆଜି Mission କୁ ହରେଇଲେ ଆମର ଗୌରବ ବଢ଼ିଯିବ। Mission ଭାବୁଥାଏ ପୂର୍ବ ଥର ସେ ଆମ ସହିତରେ draw ରଖି ତା'ର ଗୌରବହାନୀ ହେଇଛି। ଏଥର Seminary କୁ ହରେଇଲେ ତା'ର ପୂର୍ବ ଗୌରବ ଅକ୍ଷୁର୍ଣ୍ଣ ରହିବ କିନ୍ତୁ ଦଳବ ସହିଲା ନାହିଁ। ଖେଳର ପ୍ରଥମାର୍ଦ୍ଧରେ କେହି କାହାକୁ ଗୋଲ୍ ଦେଇ ପାରିଲେ ନାହିଁ। ଖେଳର ଦ୍ୱିତୀୟାର୍ଦ୍ଧରେ ତାଙ୍କର ଜଣେ player ର handball ହୁଏ। ସେଇ handball ଯୋଗୁଁ ଆମେ free kick କରିବାର କଥା, ଆମର back ଜଗଦାନନ୍ଦ ସେ free kick କରେ। ଆଉ ସେହି free kick ଦ୍ୱାରା Mission ଉପରେ ଖେଳ ଶେଷ ହବାକୁ ପାଞ୍ଚ ମିନିଟ୍ ପୂର୍ବରୁ ଗୋଟିଏ ବିଜୟସୂଚକ ଗୋଲ୍ ହୁଏ। କି ବିପର୍ଯ୍ୟୟ! Mission ଆଜି ଗୋଟାଏ ଗୋଲ୍‌ରେ ପରାସ୍ତ ହେଲା। ଖେଳର ଯେଉଁ ଶେଷ ପାଞ୍ଚ ମିନିଟ୍ ଥିଲା, Mission ଆପ୍ରାଣ ଚେଷ୍ଟା କଲା ଗୋଲ୍ ଶୁଝେଇବାକୁ କିନ୍ତୁ ପାରିଲା ନାହିଁ। ଆମେ ଗୋଟାଏ ଗୋଲ୍ ଦେଇ, ଆହୁରି ଦ୍ୱିଗୁଣ ଉତ୍ସାହରେ ଖେଳିଲୁ। Mission ଉପରେ ଆହୁରି ଗୋଲ୍ ହେଇ ଯାଇଥାନ୍ତା, ଶେଷକୁ Mission ଚେଷ୍ଟା କଲା, ତା'ଉପରେ ଆଉ ଯେମିତି ଗୋଲ୍ ନହୁଏ। ଖେଳ ଶେଷ ହେଲା। ଆଜି Mission ହାରିଛି। ଆମର ସମର୍ଥକ ଓ ତାଙ୍କର ସମର୍ଥକଙ୍କ ମଧ୍ୟରେ ବିଶେଷ ଉତ୍ତେଜନା ସୃଷ୍ଟି ହେଲା। ଉଭୟ ପଟୁ "ଯୁଦ୍ଧଂ ଦେହି" ଆହ୍ୱାନ। କଟକର ଅନ୍ୟାନ୍ୟ ସ୍କୁଲ ପିଲାଏ ଆମ ସପକ୍ଷରେ, ଆମର ସମର୍ଥକ ଅଧିକାଂଶ ମୁସଲମାନ, ସେମାନେ ହଣ୍ଟର, ଲାଠି, ବଡ଼ ବଡ଼ ଛୁରୀ ଧରି ଆଗେଇ ଗଲେ। Mission ର ସମର୍ଥକମାନେ ଆମର ସଶସ୍ତ୍ର ସମର୍ଥକଙ୍କୁ ଦେଖି ସାହସର ସହିତ ପଛଘୁଞ୍ଚା ଦେଲେ। ଏଣୁ ଖେଳ ପଡିଆ ଶାନ୍ତ ପଡ଼ିଲା, ଆମେ ବିଜୟୋଲ୍ଲାସରେ ପଡ଼ିଆରୁ ଫେରିଲୁ। ମୁଁ ସେଦିନ ଖେଳ ଶେଷରେ ଆଉ ଘରକୁ ଫେରିଲି ନାହିଁ। Mission କୁ ଏଡ଼େ ଦିନେ ହରେଇଛୁ ବୋଲି ଆମ ଗଳାରେ ଫୁଲ ମାଳ ଦିଆଗଲା। ଏଣେ ପ୍ୟାଣ୍ଟରେ କାଦୁଅ, ଛିଣ୍ଡା ଘାସ ସବୁ ଲାଗିଥାଏ। ସମସ୍ତେ ଚାଲିଲୁ କେତେକ ମେସ୍‌ରେ ନିମନ୍ତ୍ରଣ ରକ୍ଷା କରିବା ପାଇଁ। କେତେକ ମେସ୍‌ରେ ନିମନ୍ତ୍ରଣ ରକ୍ଷା କରି ଚାଲିଲୁ ଝୁଲଣ ଯାତ୍ରା ଦେଖିବା ପାଇଁ। ସେତେବେଳେ କଟକରେ ଝୁଲଣ ଯାତ୍ରା ଚାଲିଥାଏ।

ସେଦିନ ଅନେକ ରାତିରେ ମୁଁ ଘରକୁ ଫେରିଲି, ଭୟ ହେଲା, କେମିତି ଘରେ ପଶିବି? Missionକୁ ହରେଇ ଆଜି ମୋ ଭିତରେ ଯେଉଁ ଆନନ୍ଦର ଜୁଆର ଉଠିଛି, ତାକୁ କ'ଣ ବାବା, ମା ବୁଝିବେ? ବାବା ସ୍କୁଲରେ ପଢ଼ିବା ବେଳେ ତ football ଖେଳର ନାଁ ଗନ୍ଧ ନଥିଲା, ସେତ football ଖେଳର କିଛି ବୁଝନ୍ତିନି। ଆଜି ମୋ ଗଳାରେ ଯେଉଁ "ଜୟ ମାଲ୍ୟ" ଲମ୍ବିଛି, ତା'ର ମହତ୍ତ୍ୱ କ'ଣ ବାବା, ମା ବୁଝିବେ? ଏଣୁ ଗଳାରୁ "ଜୟ ମାଲ୍ୟ"ଟା ଘରେ ପଶିବା ଆଗରୁ କାଢ଼ି ପକେଇ ଚୋର ପରି ଗୋଡ଼ ଚିପିଚିପି ଘରେ ପଶିଲି। ଚମ୍ପାଫୁଲ ମାଳଟା ଗଳାରୁ କାଢ଼ି ପକେଇ ମନଟା ଖରାପ ହେଇ ଗଲା। ଘରେ ଲୁଚି ଲୁଚି ପଶି ଦେଖିଲି ବାବା ଶେଯରେ ଶୋଇ ଖଣ୍ଡେ କ'ଣ ବହି ପଢୁଛନ୍ତି। ମୋ ଉପରେ ଯେମିତି ଦୃଷ୍ଟି ପଡ଼ିଛି, ପ୍ରଶ୍ନ ହେଲା, କିରେ ଏତେ ଡେ଼ରି ଯାଏ କୁଆଡ଼େ ଥିଲୁ? ମୁଁ ଶଙ୍କିତ କଣ୍ଠରେ ଉତ୍ତର ଦେଲି, ମୁଁ ଝୁଲଣ ଯାତ୍ରା ଦେଖିବାକୁ ଯାଇଥିଲି। ବେଶ୍ ସେତିକି। ଆଉ କିଛି ବାବାଙ୍କ ଆଡୁ ପ୍ରଶ୍ନ କିମ୍ବା ଗାଳିଗୁଲଜ ନାହିଁ। ମା' ରୋଷେଇ ଘରେ ରାନ୍ଧୁଥିଲେ, ସେ ମଧ୍ୟ କିଛି ପଚାରିଲେ ନାହିଁ। ଏଣୁ ମୋ ଭିତରର ଆନନ୍ଦଟା ଆଉ ବେଶି ବାଧା ପ୍ରାପ୍ତ ହେଲା ନାହିଁ। ଭାବିଲି, କେମିତି ରାତି ପାହିବ କାଲି ସ୍କୁଲକୁ ଗଲେ ଆନନ୍ଦର ଆବର୍ତ୍ତନରେ ସ୍କୁଲ ହତା ଦୋଦୁଲ୍ୟମାନ ହବ। ପୁଣି ଭାବିଲି, ଜୟରାମ ବାବୁଙ୍କ ମେସ୍‌ରେ ଆଜି ରାତିରେ ପିଲାମାନେ ଖାଇ ନଥିବେ, କାରଣ ତାଙ୍କ ମେସ୍‌ର ଅଧିକାଂଶ ପିଲାଏ ମୋ ଆଗରେ କହିଛନ୍ତି, ପୁଳିନ ତୁମେମାନେ ତ ଖେଳିଲ, ପଢ଼ି ପାରିଲ ନାହିଁ। ଆମେମାନେ ନ ଖେଳି ମଧ୍ୟ ପଢ଼ି ପାରିଲୁ ନାହିଁ କି ଖାଇ ପାରିଲୁ ନାହିଁ। ମୁଁ ପଚାରେ କାହିଁକି? ପିଲାଏ କହନ୍ତି, ତୁମେମାନେ ଯେଉଁଦିନ ଖେଳରେ ଜିତିଲ, ସେଦିନ ଆମ ମେସ୍‌ରେ ଗପ ଚାଲିଲା ଯେ ରାତି ଭୋର, ଖାଇବା କଥା କି ପଢ଼ିବା କଥା ସାର୍ ବୁଝିଲେ ନାହିଁ। ତୁମେମାନେ ଯେଉଁ ଦିନ ହାରିଲ, ସେଦିନ ସାର୍ ମେସ୍‌କୁ ଯାଇ କବାଟ କିଳି ଶୋଇଲେ, ଆମର ଖାଇବା, ପଢ଼ିବା କଥା ସାର୍ କିଛି ବୁଝିଲେ ନାହିଁ। ସାରଙ୍କୁ ସେଦିନ କିଛି ପଚାରିଲେ, ସାର୍ ମାରି ଗୋଡ଼େଇଲେ, ସେଦିନ ମେସ୍ ସନ୍ଧ୍ୟାରୁ ଶୂନଶାନ୍, ଏମିତି ହାଲ୍।

ସେଇଥି ପାଇଁ ସେଦିନ ଯେତେବେଳେ ବହୁବର୍ଷ ପରେ Seminary, Missionକୁ ହରେଇଛି ସେଦିନ ରାତିରେ ଜୟରାମ ବାବୁଙ୍କ ମେସ୍ କଥା ମୋ ମନେ ପଡ଼ିଲା। ଆଜି ରାତିରେ ଜୟରାମ ବାବୁଙ୍କ ମେସ୍‌ରେ କ'ଣ ନହଉଥିବ!! ଜୟରାମ ବାବୁଙ୍କ ମେସ୍‌ରେ football ଖେଳର ବିଶେଷ ଆଲୋଚନା ହୁଏ। Open team, school team ଉଭୟଙ୍କ ଖେଳ ବିଷୟ ପଡ଼େ। ସେଠି ରିପନ୍ ରୋଡ଼ର ରଘୁ ରାଉତ ଯାଇ ଆଲୋଚନାରେ ଭାଗ ନିଅନ୍ତି। ମୋର ମନେ ଅଛି ସେତେବେଳେ Morning Star ନାମରେ ଗୋଟିଏ team ଥିଲା, ସେଥିରେ goalkeeperର positionରେ ରଘୁ ରାଉତ ଖେଳିବାର ମୁଁ ଦେଖିଛି। ତା'ପରେ ଯାଙ୍କରି ଉଦ୍ୟମରେ Young Utkal ନାମରେ ଗୋଟିଏ team ଗଢ଼ା ହୁଏ।

Young Utkal Club ସେତେବେଳେ football ଆଉ general sportsରେ ବହୁତ ସୁନାମ ଅର୍ଜନ କରିଥିଲା। ମୋର ମନେ ଅଛି, କିଛି ବର୍ଷ ପରେ ଥରେ ଏହି Young Utkal Athletic Association ତରଫରୁ general sportsର ଆୟୋଜନ କରାହେଇଥାଏ, ସେଥିରେ ଗୋଟାଏ item ଥିଲା 8 miles walking competition। ଏଥିରେ ମଧୁସୂଦନ ଦାସ ଯୋଗ ଦେଇଥାନ୍ତି। ଏଥି ଲାଗି Young Utkal ତରଫରୁ ପ୍ରଚାରପତ୍ର ମଧ୍ୟ ବଣ୍ଟା ହେଇଥିଲା। ଅନ୍ୟାନ୍ୟ ବିଷୟ ମଧ୍ୟରେ ସେଥିରେ ଲେଖାଥିଲା ମଧୁସୂଦନ ଦାସ ତାଙ୍କର ବୃଦ୍ଧ ବୟସରେ 8 miles walking competitionରେ ଯୋଗ ଦଉଛନ୍ତି।

ମୁଁ ଏହି 8 miles walking competitionରେ ଯୋଗ ଦବା ପାଇଁ ନାଁ ଦେଇଥାଏ। ଯେଉଁଦିନ 8 miles walking competition ହବ, ସେଦିନ ଠିକ୍ ସମୟରେ ଯାଇ କିଲ୍ଲା ପଡ଼ିଆରେ ପହଁଚି ଦେଖିଲି, ମଧୁସୂଦନ ଦାସ (Mr. Das) ଆସିଛନ୍ତି, ତାଙ୍କର କି ଦୁର୍ବଳ ଶରୀର! ମୁଁ ଦେଖି ଆଶ୍ଚର୍ଯ୍ୟ ହେଲି ଯେ ଏତେ ବାର୍ଦ୍ଧକ୍ୟରେ Mr. Das ଆସିଛନ୍ତି 8 miles walking competitionରେ ଯୋଗ ଦବା ପାଇଁ।

କ'ଣ ହେଲା ମୁଁ ବୁଝି ପାରିଲି ନାହିଁ, ସେ 8 miles walking competition item ବନ୍ଦ କରି ଦିଆଗଲା । ମୁଁ ଫେରି ଆସିଲି । ସେଥର ମୁଁ କେବଳ ସେଇ ଗୋଟିଏ item ରେ ଯୋଗ ଦବା ପାଇଁ ନାଁ ଦେଇଥିଲି । ୧୯୨୯ ମସିହାରେ Missionକୁ ପ୍ରଥମ ଥର ପାଇଁ Seminary ହରେଇବା ଦ୍ୱାରା ଆମର ଖ୍ୟାତି ବଢ଼ିଗଲା । ସେ ବର୍ଷ ସ୍କୁଲ team ମଧ୍ୟରେ Mission, Seminary ଉଭୟେ strong team ବୋଲି ପରିଗଣିତ ହେଲେ । ସ୍କୁଲ teamର ସେ ବର୍ଷ league match ଶେଷ ବେଳକୁ Mission ଆମଠାରୁ ଗୋଟାଏ ପଏଣ୍ଟରେ ଅଗ୍ରଣୀ ହେଇ ପ୍ରଥମ ସ୍ଥାନ ଅଧିକାର କଲା, ଆମେ ଦ୍ୱିତୀୟ ହେଲୁ । Mission League Cup ପାଇଲା, ଆମେ runners' up cup ପାଇଲୁ ।

League match ପରେ ଆରମ୍ଭ ହେଲା Gupta Cup ର knockout match । ଏଥିରେ ପଏଣ୍ଟ ଗଣା ହୁଏ ନାହିଁ । ଯେ ଯାକୁ ହରେଇବ, ସେ ଜିତିଲା ବୋଲି ଧରାଯିବ । ଏ ବର୍ଷ ଆମ ସ୍କୁଲରେ ଗୋଟାଏ ନୂଆ ଘଟଣା ଦେଖିଲୁ-ଆମ ସ୍କୁଲର ସଂସ୍କୃତ ପଣ୍ଡିତେ, ଲୋକନାଥ ମିଶ୍ରେ football ଖେଳ ପାଇଁ ବିଶେଷ ଆଗ୍ରହ ପ୍ରକାଶ କଲେ, ଯେମିତି କୋଉ ସ୍କୁଲ ଜିତିଲା, କୋଉ ସ୍କୁଲ ହାରିଲା ? ଆମ ସ୍କୁଲର ଖେଳରେ ଅବସ୍ଥା କିମିତି ? ପଣ୍ଡିତେ ଟିକିଏ ସେ ବର୍ଷ ଆମ ସ୍କୁଲର ଖେଳରେ ସୁନାମ ଶୁଣି ମନେ ମନେ ଗର୍ବ ଅନୁଭବ କଲେ । ପଣ୍ଡିତେ ଖେଳାଳୀମାନଙ୍କୁ ଭାରି ଶ୍ରଦ୍ଧାରେ ଅନେକ ଖେଳ ଖବର ପଚାରିଲେ । ଏଣୁ ଆମେ ଥରେ ପଣ୍ଡିତଙ୍କୁ କହିଲୁ, ସାର୍ ଆପଣ ଥରେ ଆମର ଖେଳ ଦେଖିବାକୁ ଗଲେ ନାହିଁ ? ପଣ୍ଡିତେ ଉତ୍ତରରେ କହିଲେ, ଦେଖ ପିଲାଏ, ମୁଁ ଗରିବ ବ୍ରାହ୍ମଣ, ମୁଁ ଖେଳ ପଡ଼ିଆକୁ ଯିବି ଯଦି ମାଡ଼ଗୋଳ ହୁଏ, ମୋତେ କାଳେ କିଏ ବାଡ଼େଇ ପକେଇବ ।

ଆମେମାନେ ପଣ୍ଡିତଙ୍କୁ ଆଶ୍ୱାସନା ଦେଇ କହିଲୁ ସାର୍ ଆମେ ଥାଉ ଥାଉ ଆପଣଙ୍କୁ ବାଡ଼ଇବେ ? ଆପଣ ଥରେ ଚାଲନ୍ତୁ ଖେଳ ପଡ଼ିଆକୁ ।

ପଣ୍ଡିତେ କହିଲେ, ହଉ, ତୁମେମାନେ ଯଦି କହୁଛ, ତା'ହେଲେ ଯିବି । ମୁଁ ତ ଖେଳର କିଛି ବୁଝେ ନାହିଁ । ମୁଁ ଶୁଣୁଛି ଏ ବର୍ଷ ତୁମେମାନେ ଖେଳରେ ସବୁଠି ଜିତୁଛ । ଏଣୁ ମୁଁ ନିଜକୁ ଗୌରବାନ୍ୱିତ ମନେ କରୁଛି । ଆମେ ପଣ୍ଡିତଙ୍କୁ ଖେଳର ସବୁ କଥା ବୁଝେଇ ଦେଲୁ । ଗୋଲ୍ କେମିତି ହୁଏ, ଗୋଲ ପୋଷ୍ଟ କେମିତି ? ସେଥିରେ ଜାଲ କାହିଁକି ବନ୍ଧା ହେଇଥାଏ ? Uniform କ'ଣ ? ସେଥିରୁ ଉଭୟ ଦଳକୁ କେମିତି ଜାଣି ହବ ଇତ୍ୟାଦି ଇତ୍ୟାଦି ବୁଝିଲା ପରେ ପଣ୍ଡିତେ ଦୃଢ଼ପ୍ରତିଜ୍ଞ ହେଲେ, ଆଜି ନିଶ୍ଚୟ ଖେଳ ଦେଖିବାକୁ ଯିବି । ଆମେ ଭାରି ଖୁସି ହେଲୁ ।

ପଣ୍ଡିତଙ୍କ ଉପରେ ଅନେକ ପିଲାଙ୍କ ଭାରି ରାଗ, କାରଣ ପଣ୍ଡିତଙ୍କ ପାଠ ହେଲା ସଂସ୍କୃତ । ଅଧିକାଂଶ ପିଲାଙ୍କର ସେ ପାଠ ଆୟତ୍ତ କରିବା ଭାରି କଷ୍ଟ । ତା'ଛଡ଼ା ପଣ୍ଡିତେ ପୁଣି ପରୀକ୍ଷା ବେଳେ ଅତି ନିଷ୍ଠୁର ହେଇ କପି ଧରନ୍ତି । ଏଣୁ ପିଲାଏ ପଣ୍ଡିତଙ୍କୁ ବାର ରକମର କଥା କହି ପରିହାସ କରନ୍ତି, ରଗାନ୍ତି । ପରୋକ୍ଷରେ ଗାଳି ଦିଅନ୍ତି । ପଣ୍ଡିତେ ସେମିତି ପିଲାଙ୍କୁ ଚିହ୍ନି ପରୀକ୍ଷା ବେଳେ କପି ଧରି ଦାଉ ସାଧନ୍ତି । ମୁଁ କିନ୍ତୁ ସଂସ୍କୃତ ପରିବର୍ତ୍ତେ ଓଡ଼ିଆ ନେଇଥିଲେ ମଧ୍ୟ ପଣ୍ଡିତଙ୍କୁ କେବେ ଅସମ୍ମାନିତ କରି ନାହିଁ । ମନରେ ଆଘାତ ଦେଇ ନାହିଁ । ପଣ୍ଡିତେ ମଧ୍ୟ ମୋତେ ଭାରି ଶ୍ରଦ୍ଧା କରନ୍ତି କିନ୍ତୁ ମୋର ଜେଠା ପୁଅ ସାନ ଭାଇ ବଙ୍କିମ ପଣ୍ଡିତଙ୍କୁ ଭାରି ହଇରାଣ କରେ । ତାଙ୍କ ଉପରକୁ ବଲ୍ ଫୋପାଡ଼େ । ପଣ୍ଡିତେ ପାଖେଇ ଯାଇ ନ୍ୟୂନ ହେଇ କହନ୍ତି, ହେ ବଙ୍କିମ, ମୁଁ ବ୍ରାହ୍ମଣ, ନବକର୍ମରେ ବଡୁ ହେଇଛି, ମୋ ଉପରକୁ ସେଇଟା ପକାନା, ସେଇଟା ଗୋରୁ ଚମଡ଼ାରେ କି କୋଉଥିରେ ତିଆରି ।

ମୋର ଅନ୍ୟାନ୍ୟ ବିଷୟ ଭଲ ହଉଥାଏ ବୋଲି ପଣ୍ଡିତଙ୍କ ମନରେ ଭାରି ଆଶା ମୁଁ ସଂସ୍କୃତ ନେଲେ ଭଲ କରନ୍ତି, ମୁଁ କାହିଁକି ସଂସ୍କୃତ ନେଲି ନାହିଁ ? ଏଇଥିପାଇଁ ମୁଁ ଥରେ ପରୀକ୍ଷା ଦଉଛି, ସେଦିନ ପରୀକ୍ଷାରେ ଗାର୍ଡ଼ ଅଛନ୍ତି ପଣ୍ଡିତେ । ମୁଁ ଉତ୍ତର ଲେଖିବାରେ ବ୍ୟସ୍ତ, ଅବିରାମ

କଲମ ଚାଲିଛି । ପଣ୍ଡିତେ ଆସି ମୋ ପାଖରେ ବସିଲେ, ମୁଁ ତାଙ୍କୁ ଅନେଇବା ପାଇଁ ମୋର ଫୁରସତ ନାହିଁ। ପଣ୍ଡିତେ ସେତିକିବେଳେ ମୋତେ ପଚାରିଲେ, ପୁଲିନ, ମୁଁ ଗୋଟିଏ କଥା କହିବି ।

ମୁଁ କହିଲି କ'ଣ କହନ୍ତୁ ।

ପଣ୍ଡିତେ କହିଲେ, ତୁମେ ସଂସ୍କୃତ ନିଅ । ତୁମେ ଭଲ କରିବ ।

ମୁଁ କହିଲି, ସାର୍ ସଂସ୍କୃତ କାହିଁକି ନେବି ? ମୁଁ ତ matric ପାସ୍ କଲେ medical ରେ ପଢ଼ିବି । ମୁଁ ସଂସ୍କୃତ ନେଇ କାହିଁକି ଘାଣ୍ଟି ହେବି ? ଆପଣ ଯାନ୍ତୁ ସାର୍ । ମୋତେ ବର୍ତ୍ତମାନ ବେଳ ନାହିଁ ଆପଣଙ୍କ ସଙ୍ଗେ ଆଲୋଚନା କରିବା ପାଇଁ । ପଣ୍ଡିତେ ଉଠି ଅନ୍ୟ ଆଡ଼େ ଚାଲିଗଲେ ।

ଆଉ ଥରେ ଗୋଟାଏ ଘଟଣାରେ ପଣ୍ଡିତଙ୍କ ସଙ୍ଗେ ମୁଁ ରହସ୍ୟ କରିଥିଲି । ଘଟଣା ହେଲା, ପଣ୍ଡିତଙ୍କ ଗୋଟିଏ ବଡ଼ hydrocele ଥିଲା । ସେଥିଲାଗି ପଣ୍ଡିତେ ଭାରି କଷ୍ଟ ଭୋଗନ୍ତି । ତାଙ୍କ ଦୁଇ ଜଂଘରେ hydrocele ଘଷି ହେଇ ହେଇ ଦୁଇ ଜଂଘରୁ ଚମଡ଼ା ଛାଡ଼ିଯାଏ । ମୁଁ କମ୍ପାଉଣ୍ଡରୀ ପାସ୍ କରି matric ପଢୁଥାଏ ବୋଲି ମୋ ଉପରେ ବିଶ୍ୱାସ ରଖି ପଣ୍ଡିତେ ମୋତେ କହିଲେ, ପୁଲିନ, ତୁମେ ଥାଉ ଥାଉ ମୁଁ ଏ hydrocele କୁ ଅପରେସନ୍ କରେଇନେଲେ ଭାରି ଭଲ ହବ । ତୁମର ତ ମେଡ଼ିକାଲ ରେ ଅନେକ ଚିହ୍ନାପରିଚ ଥିବେ । ତୁମ ଦ୍ୱାରା ଅନେକ ସାହାଯ୍ୟ ମିଳିବ ।

ମୋତେ ମଧ୍ୟ hydrocele ଦେଖେଇଲେ । ମୁଁ ତ ଦେଖି ଅବାକ୍ । ତାଙ୍କର ଦୁଇ ଜଂଘରେ ଘା ହେଇ ଗଲାଣି । ଏମିତି ଅବସ୍ଥାରେ ପଣ୍ଡିତେ କେମିତି ଚଳାଚଳ ହଉଛନ୍ତି । ମୁଁ ତାଙ୍କୁ କହିଲି, ସାର୍ ଆପଣ ଯେ ଅପରେସନ୍ କରେଇବେ କହୁଛନ୍ତି, ଡ଼ାକ୍ତରଖାନାରେ କେତେଦିନ ରହିବାକୁ ହବ, ସେଇଠି ଖାଇବାକୁ ହବ । ଆପଣଙ୍କର ତ ଅନେକ ବାରଣ । ଆପଣ ସେ ସବୁ ବାରଣ ନମାନି ସେଠି ରହି ଚଳିପାରିବେ କି ?

ପଣ୍ଡିତେ କହିଲେ, ଯେତେବେଳେ ଦେଖୁଛ ମୁଁ ଏମିତି କଷ୍ଟ ଭୋଗୁଛି ଆଉ ବାରଣ ରଖିଲେ ଚଳିବ ? ଗୋଟାଏ କଥା ପୁଲିନ, ମୋତେ ସେଠି ଯା'ଖାଇବାକୁ ଦିଅ ଖାଇବି କିନ୍ତୁ ସେ ବଜାରରେ ଯେଉଁ ବୋତଲରେ ସବୁ ପାଣି ବିକ୍ରି ହଉଛି, ସେଥିରୁ ମୋତେ ପିଇବାକୁ ଦବ ନାହିଁ ।

ପଣ୍ଡିତଙ୍କର କହିବାର ଉଦ୍ଦେଶ୍ୟ, ଲେମୋନେଡ୍, ସୋଡ଼ାୱାଟର ଖାଇବେ ନାହିଁ । କାରଣ ସେ ବୋତଲରେ ବାର ଲୋକ ମୁହଁ ଲଗେଇ ପିଉଛନ୍ତି । ସେତେବେଳେ ଆଜିକାଲି ପରି Pinola, Fanta, Cocacola, Limca ଇତ୍ୟାଦି ତ ବଜାରକୁ ଆସି ନଥିଲା କିମ୍ବା ଏତେ thirst aid centre ସବୁ ଖୋଲା ହେଇ ନଥିଲା । ସେହି ଲେମୋନେଡ଼, ସୋଡ଼ାୱାଟରହିଁ କେବଳ ବିକ୍ରି ହଉଥିଲା । ମୁଁ ପଣ୍ଡିତଙ୍କୁ ଯଥାସାଧ୍ୟ ସାହାଯ୍ୟ କରିବି ବୋଲି କହିଲି । କିଛିଦିନ ପରେ ପଣ୍ଡିତଙ୍କ hydrocele ଅପରେସନ୍ ହେଲା । ମୁଁ ଏବଂ ଅନ୍ୟାନ୍ୟ ପିଲାମାନେ ଜଗି ରହିଲୁ । ପଣ୍ଡିତେ ଅଜ୍ଞାନ ଅବସ୍ଥାରେ surgical ward ରେ ଶୋଇଥିଲେ । ପଣ୍ଡିତଙ୍କ ଯେତେବେଳେ ଜ୍ଞାନ ହୁଏ, ପଣ୍ଡିତେ ପାଣି ମାଗିଲେ ପିଇବାକୁ । ମୋ ସାଙ୍ଗରେ ଯେଉଁ ପିଲାମାନେ ପଣ୍ଡିତଙ୍କ ପାଖରେ ଥିଲେ, ସେମାନେ ଗୋଟାଏ ସୋଡ଼ାୱାଟର ବୋତଲ ଖୋଲି, ଗୋଟାଏ ଗ୍ଲାସରେ ଢ଼ାଳି ପଣ୍ଡିତଙ୍କୁ ଢ଼ୋକେ ଢ଼ୋକେ ପେଇଲେ । ପଣ୍ଡିତେ ଖୁବ୍ ଆନନ୍ଦରେ ଢ଼ୋକେ ଢ଼ୋକେ ପିଇଗଲେ । ମୁଁ ପିଲାଙ୍କୁ ଯେତେ ବୁଝେଇଲି ସାର୍ ମନା କରିଛନ୍ତି, ସେ ସୋଡ଼ାୱାଟର ପିଇବାକୁ, ତାଙ୍କୁ ପିଆଅ ନାହିଁ ।

କିଏ ଶୁଣୁଛି ମୋ କଥା, ମୁଁ ନିରବ ରହିଲି । ଦିନେ ଦୁଇଦିନ ପରେ ପଣ୍ଡିତେ ସେତେବେଳକୁ ଆହୁରି ଟିକିଏ ଚେଙ୍ଗା ହେଲେଣି । ଗପ କଲେଣି, କେତେ ପିଲା କେତେ ରକମର ପଣ୍ଡିତଙ୍କୁ ଥଟ୍ଟା ପରିହାସ କରୁଥାନ୍ତି । ପଣ୍ଡିତେ ସବୁ ଶୁଣି ଖୁସି ହଉଥାନ୍ତି । । ଏମିତି ଅବସ୍ଥାରେ ପଣ୍ଡିତେ ଦିନେ ମୋତେ କହିଲେ, ପୁଲିନ, ସେଦିନ ମୋତେ ଯୋଉ ପାଣି ମନ୍ଦାକ ଦେଇଥିଲେ ପିଇବାକୁ, ମୋତେ ଯେମିତି କେଦାରଗୌରୀ ପାଣି ପରି ଲାଗିଲା ।

ସେହି ପାଣିରୁ ଆଉ ମୁନ୍ଦାଏ ପିଇବାକୁ ମୋର ମନ ହଉଛି। ପଣ୍ଡିତଙ୍କୁ ସୋଡ଼ାୱାଟର କେଦାରଗୌରୀ ପାଣି ପରି ଲାଗିଲା ଶୁଣି ଆମେ ସମସ୍ତେ ହସି ଉଠିଲୁ। ଆମକୁ ହସିବାର ଦେଖି ଅବାକ୍ ହେଇ ପଚାରିଲେ, କିରେ ପିଲେ ହସିଲ କାହିଁକି? ଆମେ କହିଲୁ, ସାର୍, ଆପଣଙ୍କୁ ଆମେ ସୋଡ଼ାୱାଟର ପିଇବାକୁ ଦେଲୁ, ସୋଡ଼ାୱାଟର ଆପଣଙ୍କୁ ଏତେ ସୁଆଦ ଲାଗିଲା? ପଣ୍ଡିତେ ଚମ୍‌କି ପଡ଼ିଲା ପରି କହିଲେ, ହଇରେ, ତୁମେମାନେ ମୋତେ ସୋଡ଼ାୱାଟର ଗୁରା ଦେଇ ଦେଲ? ମୁଁ ମନା କରିଥିଲି ପରା?

ପଣ୍ଡିତେ ପୁଣି କହିଲେ, ହଉ, ଯେତେବେଳେ ଥରେ ପିଇ ସାରିଲିଣି, ସେଇ ପାଣିରୁ ଆଜି ଆଉ ମନ୍ଦାଏ ଦିଅ ପିଇବାକୁ। ମୁଁ ତ ଏଠୁଁ ଗଲେ ପୁରୀ ଯିବି, ପଇତା ବଦଳେଇବି, ହବିଷାନ୍ନ ଖାଇ ଶୁଦ୍ଧ ହେବି। ପଣ୍ଡିତଙ୍କ ଗୋଟିଏ ମାତ୍ର ପୁଅ। ସେ ଆମ ସ୍କୁଲରେ ପଢୁଥିଲା। ସେ ଯଦି ବଲ୍ ଖେଳିଲା, ପଣ୍ଡିତେ ତାକୁ ଗାଳି ଦିଅନ୍ତି, ହେ କୁଳାଙ୍ଗାର, ତୁ ବ୍ରାହ୍ମଣ ପିଲା ହେଇ ସେ ଗୋରୁ ଚମଡ଼ା ନେଇ ଖେଳିଲୁ। ତୁ ମୋ କୂଳରେ କଳଙ୍କ ଲେପିଲୁ।

ସେ ଦିନ ପଣ୍ଡିତେ ତ ପ୍ରତିଶ୍ରୁତି ଦେଇଥିଲେ ଖେଳ ଦେଖିବାକୁ ଯିବା ପାଇଁ। ସେଦିନ ଆମର match ଥାଏ Sunshine ପଡ଼ିଆରେ। କାଠଯୋଡ଼ି କୂଳେ, Collegiate ସାଥିରେ। ଏ match ହେଲା Talcher Cup tournamentର। ଏଇ tournament ବିଷୟରେ ଆହୁରି ଅନେକ ବିଷୟ ପରେ ଲେଖିବି। ସେଦିନ Collegiate ସାଥିରେ Talcher Cupର semifinal match ।

ପଣ୍ଡିତେ ଆଜି ଖେଳ ଦେଖିବାକୁ ଆସିବେ। ଆମେ Sunshine ପଡ଼ିଆରେ ଯାଇ ପହଁଚିଲୁ। ପଣ୍ଡିତଙ୍କୁ ଖୋଜି ଖୋଜି ଦେଖିଲୁ ପଣ୍ଡିତେ ଛତା ଖଣ୍ଡେ ଧରି ସେଠା Gatekeeperର ଘରର କାନ୍ଥକୁ ଆଉଜି ପଡ଼ିଆରୁ କିଛି ଦୂରରେ ତଳେ ବସିଛନ୍ତି। ଆମେ ପଣ୍ଡିତଙ୍କୁ ଡ଼ାକି ନେଇ ଖେଳ ପଡ଼ିଆ ପାଖରେ ପୁଣି ଥରେ ସବୁ କଥା ବୁଝେଇ, ଖେଳ ଦେଖିବା ପାଇଁ ଗୋଟିଏ ସୁବିଧା ଜାଗାରେ ବସେଇ ଖେଳିବାକୁ ବାହାରିଲୁ। ସେଦିନ ଖେଳର ପ୍ରଥମାର୍ଦ୍ଧରେ Collegiateକୁ ହରେଇ ଦୁଇ ଗୋଲ୍‌ରେ ଅଗ୍ରଣୀ ହେଲୁ। ଭାବିଲୁ half time ବେଳେ ପଣ୍ଡିତଙ୍କ ସଙ୍ଗେ ଆନନ୍ଦରେ ଦେଖା କରିବୁ। ଆମେ ଜିତିଛୁ। ପଣ୍ଡିତେ ଭାରି ଖୁସି ହେବେ। Half time ହେଲା, ଆମେ ଆସି ପଡ଼ିଆ ସାରା ପଣ୍ଡିତଙ୍କୁ ଖୋଜିଲା ବେଳକୁ ପଣ୍ଡିତେ କାହାନ୍ତି? ମନ ଭାରି ଖରାପ ଲାଗିଲା। ସେଦିନ ଖେଳର ଦ୍ଵିତୀୟାର୍ଦ୍ଧରେ ଆଉ କେହି କାହାକୁ ଗୋଲ୍ ଦେଇ ପାରିଲୁ ନାହିଁ। ଏଣୁ ସେଦିନ ଆମେ Collegiate କୁ ଦୁଇ ଗୋଲ୍‌ରେ ହରେଇ ବିଜୟୀ ହେଇ ଘରକୁ ଫେରିଲୁ। ତହିଁ ଆରଦିନ ସ୍କୁଲକୁ ଯାଇ ପଣ୍ଡିତଙ୍କୁ ଭେଟି ଯେତେବେଳେ ପଚାରିଲୁ, ସାର୍ କାଲି half time ପରେ ଆପଣଙ୍କୁ କାହିଁକି ପଡ଼ିଆରେ ଖୋଜି ପାଇଲୁ ନାହିଁ? ଆପଣ କ'ଣ ଖେଳ ଶେଷ ଯାଏ ପଡ଼ିଆରେ ନଥିଲେ କି? ଆମର ପ୍ରଶ୍ନର ଉତ୍ତର ଦବାକୁ ଯାଇ ପଣ୍ଡିତେ କହିଲେ, ପୁଳିନ, କାଲି ଯେତେବେଳେ ସେ ଗୋଲାକାର ବସ୍ତୁଟା (ବଲ୍) ଆସି ସେ ଜାଲ ଭିତରେ ପଡ଼ିଲା (ଆମେ ଯେଉଁ ପ୍ରଥମ ଗୋଲ୍‌ଟା ଦେଲୁ) ସମସ୍ତେ ଯେତେବେଳେ ଘୋ କରି ପାଟି କରି ଉଠିଲେ, ମୁଁ ଭିବିଲି ଆମ ସ୍କୁଲ ହାରିଗଲା ବୋଧହୁଏ। ପାଟି ଯେତେବେଳେ କଲେଣି, ମାଡ଼ଗୋଳ ହେଇପାରେ। ଏଇ କଥା ଭାବି ମୁଁ ଏକା ଦୌଡ଼ରେ କାଠଯୋଡ଼ି ବନ୍ଧେ ବନ୍ଧେ ଆସି ଘରେ ପହଁଚି ନିଜକୁ ନିରାପଦ ମନେକଲି। ଆମେ ପଣ୍ଡିତଙ୍କ କଥା ଶୁଣି, ଗୁରାଏ ହସି ହସି ପଣ୍ଡିତଙ୍କୁ କହିଲୁ ସାର୍, ଆମେ ଖେଳରେ ଜିତିଲୁ ପରା। ଆପଣ ପଡ଼ିଆରୁ ଏମିତି ହେଇ ପଳେଇ ଆସିଲେ? ପଣ୍ଡିତେ ଆମ କଥା ଶୁଣି ଆଶ୍ଚର୍ଯ୍ୟ ହେଇ କହିଲେ, ତୁମେମାନେ ଜିତିଛ? ମୁଁ କି ଭୁଲ କଲି? ତୁମେମାନେ ଜିତିଛ ଜାଣିଥିଲେ, ମୁଁ ସମସ୍ତଙ୍କ ସାମନାରେ କାଠଯୋଡ଼ି ବନ୍ଧ ଉପରେ ଛାତି ଫୁଲେଇ ଆସିଥାନ୍ତି। ମୁଁ ଭାବିଲି, ତୁମେମାନେ ହାରିଗଲ, ଯା, ଯା, କି ଭୁଲ କାମ କଲି!! ପଣ୍ଡିତେ ଏତକ କହି ଯେମିତି ଆମ ପାଖରୁ ଚାଲିଗଲେ, କେତେକ ପିଲା ତୁନି ତୁନି ହେଇ ମନ୍ତବ୍ୟ ପ୍ରକାଶ କଲେ, ମଲୁ ନାହିଁ ତୁ? ଏତେ କଥା ବୁଝେଇ ବୁଝେଇ ଶେଷରେ ପଡ଼ିଆରୁ ପଳେଇ ଆସିଲା। ଜୀବନଟା ସାରୁ ପତ୍ରରେ।

ସେ ବର୍ଷ ପୁଣି Mission କୁ ଭେଟିଲୁ Gupta Cup ର knockout tournament ର semifinal match ରେ, ସେ ବର୍ଷ ଜୟରାମ ବାବୁ ଖୁସି ହୋଇ ଆମକୁ ନୂଆ uniform କରିଦେଲେ, ପାଖେ ନାଲି, ପାଖେ ହଳଦିଆ ରଙ୍ଗର ସିଲ୍କ ସାର୍ଟ । ପୁଣି Mission, Seminary match. ଏଥି ପୂର୍ବେ Mission, league match ର ଦ୍ୱିତୀୟ ଖେଳରେ ଆମଠୁଁ ପ୍ରଥମ କରି ସେ ବର୍ଷ ଗୋଟାଏ ଗୋଲ୍‌ରେ ହାରିଥାଏ । ଆମେ Mission କୁ ହରେଇଥାଉ ବୋଲି ଆମର ସାହସ ବଢ଼ିଥାଏ । Mission ହାରିଥାଏ ବୋଲି ତା'ର ଅକସ ଥାଏ । ସେଦିନ ପଡ଼ିଆରେ ଅସଂଖ୍ୟ ଲୋକ, ଭୀଷଣ ଉତ୍ତେଜନା, କିଏ ହାରିବ, କିଏ ଜିତିବ ? ଖେଳ ଭାରି ପ୍ରତିଦ୍ୱନ୍ଦ୍ୱିତାମୂଳକ ହେଲା । ପ୍ରତ୍ୟେକ ମୁହୂର୍ତ୍ତରେ ମନେ ହଉଥାଏ କାହା ଉପରେ ଗୋଟାଏ ଗୋଲ୍ ହେଇଯିବ । Referee Dr. P.C. Ray, ସେ କେତେକ ଘଟଣାରେ ହୁଇସିଲ୍ ଦଉଥାନ୍ତି ତ ପୁଣି କେତେକ ଘଟଣାରେ ଦେଇ ପାରୁନଥାନ୍ତି । ସେଦିନ ପୂରା ସମୟ ଖେଳି, କେହି କାହାକୁ ଗୋଲ୍ ଦେଇ ପାରିଲେ ନାହିଁ । ପୁଣି extra time ଦିଆ ହେଲା, ସେଥିରୁ ମଧ୍ୟ ଅଧେ ସମୟ କଟିଗଲା । କେହି କାହାକୁ ଗୋଲ୍ ଦେଇ ପାରିଲେ ନାହିଁ । ଖେଳର ଦ୍ୱିତୀୟାର୍ଦ୍ଧ ଶେଷ ହେବାକୁ ଦୁଇ ମିନିଟ୍ ଅଛି, ଏଇ ସମୟରେ ଆମ ଉପରେ ଗୋଟିଏ ଗୋଲ୍ ହୁଏ । ଆମେ Mission ଠାରୁ ସେଥର ଗୋଟିଏ ଗୋଲ୍‌ରେ ହାରି Gupta Cupର ଫାଇନାଲ୍‌କୁ ଯିବାର ସୁଯୋଗ ହରେଇଲୁ । ଖେଳ ଶେଷରେ ସେଦିନ ପଡ଼ିଆରେ ଜୟରାମ ବାବୁ ଆଖିରୁ ଦୁଇଟୋପା ଲୁହ ଗଡ଼େଇ ବିଦାୟ ନେଲେ । ମୁଁ ସେଦିନ ଘରକୁ ଫେରି ସେମିତି uniform, half pant ପିନ୍ଧି ମନଦୁଃଖରେ ଶୋଇଗଲି । ମୋର ହଳଦିଆ ନାଲି ସାର୍ଟ ଆଉ କଳା half pant ପିନ୍ଧା ଦେଖି ବାବା କ'ଣ ଭାବିଥିବେ । ମୁଁ ଆଉ ସେ କଥା ନ ଭାବି ଶୋଇଗଲି । ସେଦିନ ରାତିରେ ଆଉ ଖାଇ ନାହିଁ । ତହିଁ ଆରଦିନ ସକାଳେ ଉଠି ଶୁଣିଲି ଯେ ଆମ ସାହିର ଲୋକମାନେ ଆସି ରାତିରେ ବାବାଙ୍କୁ ପଚାରୁଥିଲେ, ବାବୁ କୁଆଡ଼େ ଗଲେ ? ବାବାଙ୍କଠୁଁ ମୁଁ ଶୋଇ ଯାଇଥିବାର ଶୁଣି, ସେମାନେ ଦୁଃଖ କରି କହୁଥିଲେ, ମନ ଖରାପ ହବା କଥା, ଯୋଉ ଖେଳ ଆଜି । ବାବୁ ତ ଅଳ୍ପକରେ ହାରିଗଲେ ।

ତହିଁ ଆରଦିନ ସ୍କୁଲକୁ ଯାଇ ଜୟରାମ ବାବୁଙ୍କ ମେସ୍ ପିଲାଙ୍କ ଠାରୁ ଶୁଣିଲି, କାଲି ରାତିରେ ଜୟରାମ ବାବୁଙ୍କ ମେସ୍‌ରେ ଖିଆ ପିଆ ନାହିଁ । ଜୟରାମ ବାବୁ ମେସ୍‌କୁ ଯାଇ ଗୁଡ଼ାଖୁରେ ଦାନ୍ତ ଘଷୁ ଘଷୁ ବାରନ୍ଦାରେ ଗୋଟାଏ ଖୁଣ୍ଟକୁ ଆଉଜି ବସି ଯେ ଦୁଃଖରେ ଶୋଇ ଯାଇଛନ୍ତି ଯେ ସେଇଠି ରାତି ପାହି ଯାଇଛି । ତାଙ୍କ ମେସ୍‌ରେ ଆଉ ରନ୍ଧାବଢ଼ା ନାହିଁ କି ଖିଆପିଆ ନାହିଁ । ଜୟରାମ ବାବୁ ତାଙ୍କ ମେସ୍‌ରେ ଯାଇ ଖାଲି ଏତିକି କୁଆଡ଼େ ଦୁଃଖରେ କହିଲେ ଯେ ମୁଁ କି ସଜେଇଥିଲି ! କ'ଣ ହେଲା ! ଏତିକି କହି, ସେଇଠି ରାତି ଭୋର ।

ତା'ପରେ ଆମେ ସ୍କୁଲକୁ ଯାଉଥାଉ, ଆସୁଥାଉ କିନ୍ତୁ ଜୟରାମ ବାବୁଙ୍କର ଆଉ ଦେଖା ନାହିଁ । ଛ'ଦିନ ଗତ ହେଲା ପରେ headmaster ଯେତେବେଳେ ତାଙ୍କୁ ଡ଼କେଇ ପଠାନ୍ତି, ସେ ସ୍କୁଲକୁ ଆସିଲାବେଳେ ଆମେ ଦେଖିଲୁ ଜୟରାମ ବାବୁ ଏତେ ଝଡ଼ି ଯାଇଛନ୍ତି ଯେ ଯେମିତି କୌଣସି ରୋଗରେ ପୀଡ଼ିତ ଥିଲେ । ଆମ ଭିତରୁ କେତେକ ପିଲା ଜୟରାମ ବାବୁଙ୍କ ଅବସ୍ଥା ଦେଖି ଲୁଚି ଲୁଚି ହସିଲେ । କାରଣ football matchରେ ହାରିଯିବା ଲାଗି ଏତେ ଦୁଃଖ ! କ'ଣ ଏ ?

ଜୟରାମ ବାବୁ ଯେତେବେଳେ କ୍ଲାସରେ ଆସି ବସିଲେ, ଅତି ଦୁଃଖରେ କହିଲେ, ମୁଁ ଆଉ ବଞ୍ଚିବି ନାହିଁରେ । ପିଲା ଏ କଥା ଶୁଣି ପୁଣି ଲୁଚି ଲୁଚି ହସିଲେ ।

Mission ସହିତରେ Gupta Cup ର semifinal match ରେ ହାରିବାର ଦୁଃଖଟା କ୍ରମଶଃ କମି ଆସିଲା, କାରଣ Talcher Football Association ର tournament ଆରମ୍ଭ ହେଇଯାଇଥାଏ । ଯେକୌଣସି ସ୍କୁଲ ଏଥିରେ ଯୋଗ ଦେଇ ପାରିବେ । ସବୁ match କଟକରେ ହବ । କେବଳ final match ହବ Talcher ରେ । ଏଥିରେ ଆମେ ଭାବିଥିଲୁ ପୁଣି Mission କୁ

ଭେଟିବୁ । Gupta Cup semifinal match ରେ ହାରିବାର ପ୍ରତିଶୋଧ ନେବୁ । କିନ୍ତୁ Mission, Talcher Cup Tournament ରେ ଆଉ ଯୋଗ ଦେଲା ନାହିଁ । କାରଣ ତା'ପୂର୍ବ ବର୍ଷ Mission, Talcher କୁ ଯାଇ ସେଠି final match ଖେଳରେ ଅସଦାଚରଣ ଦେଖେଇ ସେଠି ହାରି, ମାଡ଼ ଖାଇ ଫେରି ଆସିଥିଲେ । Collegiate ଏ ବର୍ଷ ଯୋଗ ଦେଇ ଆମଠୁଁ ହାରିଗଲେ, ଅନ୍ୟାନ୍ୟ ସ୍କୁଲ ମଧ୍ୟ ଆମଠୁଁ ହାରିଗଲେ । ଆମେ final କୁ ଉଠିଲୁ । ଆମ ସହିତରେ Talcher High School ର final match ହବ Talcher ପଡ଼ିଆରେ । ଏଣୁ Talcher ଯିବାକୁ ହବ final match ଖେଳିବା ପାଇଁ । Seminary ର ଆର୍ଥିକ ଅବସ୍ଥା ସେତେବେଳେ ଆଦୌ ସ୍ୱଚ୍ଛଳ ନଥାଏ । ଏଣୁ ଭାବିବାକୁ ହେଲା, Talcher କେମିତି ଯିବୁ ? ଟଙ୍କା କୁଆଡୁ ଆସିବ ? ଜୟରାମ ବାବୁଙ୍କ ହାତରେ ମଧ୍ୟ ଟଙ୍କା ନଥାଏ । ତାଙ୍କ ହାତରେ ଟଙ୍କା ଥିଲେ ସେ ଏକା ଆମକୁ ଟଙ୍କା ଖର୍ଚ୍ଚ କରି ନେଇଯାଇଥାନ୍ତେ । ଅନେକ ଟଣାଓଟରା ଭିତରେ ଶେଷରେ Muslim Seminary ର ତତ୍‌କାଳୀନ Secretary Abdul Jalil ୩୦ଟଙ୍କା ଦେଲେ । Abdul Jalil କଟକର ବଡ଼ ବ୍ୟବସାୟୀ, ଧନୀ ଲୋକ, ସ୍କୁଲ ତରଫରୁ ୩୦ଟଙ୍କା ମିଳିବା ପରେ ଜୟରାମ ବାବୁ କହିଲେ, player ଦଳ ଓ ଅନ୍ୟ ଯେଉଁମାନେ Talcher ଯିବେ, ପ୍ରତ୍ୟେକ ୨ଟଙ୍କା କରି ଦେବେ । ଏ ପ୍ରସ୍ତାବରେ ସମସ୍ତେ ରାଜି ହେଲେ । ଏଣୁ final match ଖେଳିବା ପାଇଁ Talcher ଯିବାର ସ୍ଥିର ହେଲା । ମୋର ବିଶେଷ ଚିନ୍ତା ହେଲା, ମୁଁ ୨ଟଙ୍କା କେମିତି ବାବାଙ୍କୁ ମାଗିବି ? ପୁଣି Talcher ଯିବା ପାଇଁ ବାବା, ମା'ଙ୍କୁ କେମିତି କହିବି ? ଏ ପର୍ଯ୍ୟନ୍ତ କୁଆଡ଼େ ମୋତେ ଏକା ଯିବାକୁ ବାବା, ମା ଛାଡ଼ି ନାହାନ୍ତି, କ'ଣ କରିବି ? ପୁଣି ଖେଳିବା ପାଇଁ ଯିବାକୁ ହବ । ଖେଳ ନାଁ ଶୁଣିଲେ ତ ବାବା, ମା ବିରକ୍ତ ହୁଅନ୍ତି । କେମିତି ଏ କଥା କହିବି ? ଶେଷରେ ଦିନେ ପ୍ରକାରାନ୍ତରେ ବାବା, ମାଙ୍କୁ କହିଲି ଯେ ମୋତେ ତାଳଚେର ଯିବାକୁ ହବ ଖେଳିବା ପାଇଁ । ଆମ ସ୍କୁଲର ଜୟରାମ ବାବୁ ଆଉ ଜଣେ ସାର୍ ଆମ ସାଙ୍ଗରେ ଯିବେ, ଆମେମାନେ ଯିବୁ, ଆହୁରି ଅନେକ ପିଲା ଯିବେ ।

ଏ କଥା ଶୁଣି ବାବା ପଚାରିଲେ, ସେଠି କା' ସାଙ୍ଗରେ ଖେଳିବାକୁ ହବ ? ମୁଁ କହିଲି, Talcher High ସ୍କୁଲ ସାଥିରେ final match ଖେଳିବାକୁ ହବ । ବାବା କହିଲେ, ନା, Talcher ଯିବୁ ଖେଳିବାକୁ ? ଏଇଠି ଯଦି ଖେଳିବୁ ତ ଖେଳ, Talcher ଯିବାକୁ ହବ ନାହିଁ । କ'ଣ କରେ ? ବାବା କ'ଣ ଏକଥା କହିଲେଣି ! ମୁଁ କ'ଣ ତା'ହେଲେ Talcher ରେ final match ଖେଳି ପାରିବି ନାହିଁ ? ମୁଁ ପୁଣି କହିଲି, ଦି'ଜଣ ସାର୍ ଆହୁରି କେତେ ପିଲା ଯାଉଛନ୍ତି, ମୁଁ କ'ଣ ଏକା ଯାଉଛି ଯେ ଭୟ କ'ଣ ? ମୁଁ ଟିକିଏ ଜିଦ୍ କଲା ପରି କହିଲି, ନା, ମୁଁ ଯିବି । ମା ଏ କଥା ଶୁଣି କହିଲେ, ହଉ ଯାଉ, ଏତେ ପିଲା, ମାଷ୍ଟର ଦି'ଜଣ ସାଙ୍ଗରେ ଯିବେ, ଏଥିରେ ମନା କରୁଛ କାହିଁକି ? ଯାଉ ସେ । ବାବା ଆଉ କିଛି କହିଲେ ନାହିଁ । ମୁଁ ଜାଣିଲି ଯେ Talcher ଯିବା ସୁନିଶ୍ଚିତ କିନ୍ତୁ ୨ଟଙ୍କା ଦବାକୁ ହବ । ଏକଥା ତ କହିଲି ନାହିଁ, ପୁଣି ଭାବିଲି ଗଲାବେଳେ ମାଗି ନେବି ।

ଯେଉଁଦବିନ ଭୋର ବେଳକୁ Talcher train ରେ Talcher ଯିବାକୁ ହବ, ତହିଁ ପୂର୍ବ ଦିନ ମୋର ଜନ୍ମଦିନ ଥିଲା । ଏଣୁ ଘରେ ଅନେକ କୁଣିଆ ଆସିଥାନ୍ତି । ଖାଇବା, ପିଇବା, ସତ୍ୟନାରାୟଣ ପୂଜା, ପାଲାରେ ରାତି ପାହିଗଲା । ମୋର ତ Talcher ଯିବାର କଥା, ମୁଁ ତରବରରେ ସବୁ କାମ ସାରି ଧୋତି, ଜାମା ପିନ୍ଧି ବାହାରିଲା ବେଳକୁ ବାବାଙ୍କୁ କହିଲି ମୋତେ ଦି'ଟା ଟଙ୍କା ଦିଅ ।

ବାବା ଟଙ୍କା ମାଗିବା ଶୁଣି ଭାରି ବିରକ୍ତ ହେଇ କହିଲେ, ବାହାରିଲେ ଖେଳିବାକୁ, ପୁଣି ଟଙ୍କା ଦି'ଟା ଦିଅ, ନାହିଁ ଟଙ୍କା ନାହିଁ । ବାବା ଯେମିତି ଏତକ କହିଛନ୍ତି, ମୋର ତ ଭାରି ରାଗ ହେଲା ଏଣୁ କମିଜ ଦିହରୁ କାଢ଼ି ପକେଇ କହିଲି, ସବୁଥିରେ ବାଧା, ନାହିଁ ଯିବି ନାହିଁ । ଏତକ କହି ଭାବିଲି ଯିବା ବେଳେ ବାବା ଯେତେବେଳେ ବାଧା ଦେଲେଣି ଆଉ Talcher ଯାଇ ଖେଳି ଜିତିବା କଥା ନୁହଁ । ମୁଁ କମିଜ କାଢ଼ି ପକେଇଥିଲି, ମା ମୋର କମିଜ କାଢ଼ି ପକେଇବା ଦେଖି କହିଲେ ଯା' ମୁଁ ଟଙ୍କା ଦଉଛି ।

ମା' ବାବାଙ୍କ ଉପରେ ବିରକ୍ତ ହେଇ କହିଲେ, ସେ ତ ବାହାରିଲାଣି ଯିବାକୁ ଆଉ ତାକୁ ବାଧା ଦେଲେ କ'ଣ ହବ? ମା' ଦି'ଟା ଟଙ୍କା ଦେଲେ, ମୁଁ ଷ୍ଟେସନକୁ ବାହାରି ଗଲି। ମଙ୍ଗଳାବାଗରୁ ଈଶ୍ୱର ସାହୁ, ମୁଁ ଦିହେଁ ସାଙ୍ଗ ହେଇ ଷ୍ଟେସନକୁ ଚାଲି ଚାଲି ଗଲୁ। ଷ୍ଟେସନରେ ଯାଇ ଦେଖେ ପ୍ଲାଟଫର୍ମରେ ଜୟରାମ ବାବୁ, ପ୍ରାଣନାଥ ବାବୁ, player ମାନେ ଏବଂ ଅନ୍ୟାନ୍ୟ ପିଲାଏ ସମସ୍ତେ ଆସି Talcher train କୁ ଅପେକ୍ଷା କରିଛନ୍ତି। ସେଦିନ କି ଆନନ୍ଦ! ଭୋର ବେଳ, ବର୍ଷା ଅଳ୍ପ ମାତ୍ରାରେ ଝିପ୍ ଝିପ୍ ହେଇ ପଡୁଥାଏ। ଜୟରାମ ବାବୁ ଆଗରୁ train ରେ Talcher ଯିବା ପାଇଁ concession କରେଇ ନେଇଥାନ୍ତି। ଠିକ୍ ସମୟରେ train ଆସିଲା। ଆମେ ସମସ୍ତେ train ରେ ବସି କଟକ ଛାଡ଼ି Talcher ବାହାରିଲୁ। ସେହିଦିନ ମୋର ପ୍ରଥମ ଘର ଛାଡ଼ି ଏକା ଦୂରକୁ ଯିବା। ସେତେବେଳେ Talcher କୁ train ରେ ଯିବା ଆଜିକାଲି ପରି ଏତେ ସୁବିଧାଜନକ ନଥିଲା। ଢେଙ୍କାନାଳ ଷ୍ଟେସନ ବଖୁରିଏ ଘରରେ ଚଳୁଥିଲା, ଅନ୍ୟାନ୍ୟ ଷ୍ଟେସନମାନଙ୍କର ଅବସ୍ଥା ଆହୁରି ଖରାପ।

ଢେଙ୍କାନାଳ ଷ୍ଟେସନରେ ଗାଡ଼ି କିଛି ସମୟ ଅଟକିଲା, ସେତେବେଳେ ଢେଙ୍କାନାଳ ଷ୍ଟେସନରେ ପତର ଠୁଙ୍ଗାରେ ଭଲ ଦହି ବିକ୍ରି ହଉଥିଲା। ଆମେମାନେ କେତେଜଣ ସେ ଦହିରୁ କିଣି ପିଇଲୁ। ଗାଡ଼ି କିଛି ସମୟ ପରେ ଛାଡ଼ିଲା।

ଜୟରାମ ବାବୁ, ପ୍ରାଣନାଥ ବାବୁ, ଆମେ player ଦଳ, ଆମର ସମର୍ଥକ ଦଳ ସମସ୍ତେ ପ୍ରାୟ ଗୋଟିଏ ଡ଼ବାରେ ବସି ଥାଉ। ହସଖୁସିରେ କ'ଣ ଯେ ଗପ ଚାଲିଥାଏ, ତା'ର କିଛି ବାଛ ବିଚାର ନଥାଏ। ଦି'ଜଣ ଶିକ୍ଷକ ଯେ ସାଙ୍ଗରେ ଅଛନ୍ତି, ସେଥିପ୍ରତି କାହାରି ଦୃଷ୍ଟି ନାହିଁ। ସେ ଦୁଇଜଣ ମଧ୍ୟ ଆନନ୍ଦରେ ବିଭୋର। ଏମିତି କେତେକ ଷ୍ଟେସନ ଅତିକ୍ରମ କଲାପରେ ଯାଇ ତାଳଚେର ଷ୍ଟେସନରେ ପହଁଚିଲୁ। ପୁରୀ ଆଡ଼କୁ ଗଲେ ଯେମିତି ନଡ଼ିଆ ଗଛର ବଣ ଦେଖିବାକୁ ମିଳେ, ଏଆଡ଼େ ସେମିତି ତାଳ ଗଛର ବଣ ଦେଖି ଦେଖି ଆସିଲୁ।

ତାଳଚେର ଷ୍ଟେସନରେ ଗାଡ଼ି ଅଟକିଲା। ଅତି ଛୋଟକାଟିଆ ନିଛାଟିଆ ଷ୍ଟେସନ। ବିଶେଷ କିଛି ଚମକ୍ରାରିତା ନାହିଁ। ଆମ ପାଇଁ ତାଳଚେର ଷ୍ଟେସନରେ ଗୋଟିଏ ଛୋଟିଆ ବସ୍ ହେଇଥିଲା, ସେଥିରେ କେତେଜଣ Talcher High School ର ପିଲା ଆସିଥିଲେ ଆମକୁ ପାଛୋଟି ନବା ପାଇଁ। ଆମେ ସମସ୍ତେ ସେ ଛୋଟିଆ ବସ୍‌ରେ ବସି, ଯାଇ ଗୋଟିଏ ଡ଼ାକବଙ୍ଗଳା ପରି ଘରେ ପହଁଚିଲୁ। ଡ଼ାକବଙ୍ଗଳାର ନାମ Victoria Lodge, ସୁନ୍ଦର ପରିବେଶ, ସାମନାରେ ବ୍ରାହ୍ମଣୀ ନଦୀ ବୋହି ଯାଉଛି। Talcher ସ୍କୁଲ ତରଫରୁ ଆମମାନଙ୍କ ପାଇଁ ଖାଇବାର ବ୍ୟବସ୍ଥା ହୋଇଥାଏ। କିଛି ସମୟ ପରେ ଖାଇବା ପାଇଁ ଡ଼ାକରା ଆସିଲା। ସୁନ୍ଦର ଖାଇବାର ବ୍ୟବସ୍ଥା। ପତର ଠୁଙ୍ଗାରେ ଡ଼ାଲି, ତରକାରୀ ମୁଁ ସେଇଠି ପ୍ରଥମ ଖାଇଲି। ସୁନ୍ଦର ବାସନା ସରୁ ଚାଉଳର ରନ୍ଧା ଭାତରେ ଘର ମହକି ଯାଉଥାଏ। ବର୍ତ୍ତମାନର ବିଶିଷ୍ଟ ରାଜନୈତିକ ନେତା ଶ୍ରୀ ପବିତ୍ର ମୋହନ ପ୍ରଧାନ ସେଠି ୧୧ଶ ଶ୍ରେଣୀର ଛାତ୍ର। ସେ ଏବଂ ଅନ୍ୟପିଲାଏ ଆମର ଖାଇବା ପାଇଁ ବିଶେଷ ଯତ୍ନ ନେଉଥାନ୍ତି। ସେଇଠି ମୁଁ ପ୍ରଥମେ ପବିତ୍ର ମୋହନ ପ୍ରଧାନଙ୍କୁ ଭେଟିଥିଲି। ଆମେ ସେଇଠୁଁ ଶୁଣି ପାରିଲୁ ଯେ ଗତ ବର୍ଷ ତାଳଚେର ରାଜା ସାହେବ ଖାଇବା ପିଇବାରେ ଆହୁରି ଆଡ଼ମ୍ବର ସହକାରେ ଯତ୍ନ ନେଇଥିଲେ। କିନ୍ତୁ ଗତ ବର୍ଷ ଏଠିକି Collegiate ଆଉ Mission ସ୍କୁଲ team ଖେଳିବାକୁ ଆସି ଅନେକ କଟକୀ ଚାଲବାଜି ଆଉ ଅସୌଜନ୍ୟ ଦେଖେଇଥିବାରୁ ରାଜା ସାହେବ ସେଇଥି ପାଇଁ ମନ କ୍ଷୁନ୍ନ ହେଇ, ଏ ବର୍ଷ ଆଉ ସେତେ ଖାଇବା ପିଇବାରେ ଯତ୍ନ ନଉ ନାହାନ୍ତି। ତଥାପି ଆମର ଖାଇବା ପିଇବା ପାଇଁ ରାଜା ସାହେବ ଯାହା ଯତ୍ନ ନେଲେ, ସେ ତ ଆଶାତୀତ। ଗତ ବର୍ଷରେ Collegiate ଆଉ Missionର ବ୍ୟବହାର କଥା ଶୁଣି ଆମେ ଦୁଃଖ ଅନୁଭବ କଲୁ। ଆହୁରି ଶୁଣିଲୁ, ତାଙ୍କର ଦୁର୍ବ୍ୟବହାର ଯୋଗୁଁ Talcher ସ୍କୁଲର ଖେଳାଳୀମାନେ final match ରେ ତାଙ୍କୁ ହରେଇ ଯଥୋଚିତ୍ ଶାସ୍ତି ବିଧାନ ସହ ଯେଉଁ ବାଟେ ଆସିଥିଲେ, ସେହି ବାଟେ ଫେରାଇଛନ୍ତି। ଆମର ନୀତି ଥିଲା, ଆମେ ହାରିଗଲେ

ମଧ ଯେମିତି ଶିଷ୍ଟତା ନ ହରଉ । ଆମର ଖାଇବା ପିଇବା ପରେ କଥା ଉଠିଲା, ଆଜି final match ହବ କି କାଲି ହବ? ଜୟରାମ ବାବୁ ଏଥିରେ ଅସମ୍ମତ ହେଇ କହିଲେ ଆଜି player ମାନେ ପଥଶ୍ରାନ୍ତ ହେଇ ଆସିଛନ୍ତି, ଆଜି ଖେଳିବା ଭଲ ହବ ନାହିଁ । ବିଶେଷତଃ final match, ଅନ୍ୟ କିଛି ନୁହେଁ । ଏଣୁ ଆସନ୍ତା କାଲିକି final match ରଖା ହେଲା ।

ସେଦିନ ୪ଟା ବେଳକୁ ଆମର ଦଳ ଆଉ ତାଳଚେର ସ୍କୁଲ ଟିମ୍‌ର କେତେଜଣ ଖେଳାଳୀ ତାଳଚେର ସ୍କୁଲର ହତା ପଡ଼ିଆରେ ବଲ୍ ବାଡ଼େଇବାକୁ ବାହାରିଲୁ । ସେଇଠି ମୁଁ ପ୍ରଥମେ ଜାଁଳା ଭାଇ ଦେଖିଲି । ଉଭୟେ ଏକାପରି ଦେଖିବାକୁ । ଉଭୟେ ତାଳଚେର ସ୍କୁଲ ଟିମ୍‌ର ନାମଜାଦା player ଜଣେ back ଆଉ ଜଣେ centre half । ସେଇଠି ତାଳଚେର ସ୍କୁଲ ଟିମ୍‌ର ଅନ୍ୟାନ୍ୟ player ମାନଙ୍କୁ ଦେଖିଲି । ସେମାନେ ଆମଠୁଁ ଢ଼େର ବଳିଷ୍ଠ, ଯେମିତି ଉଚା ସେମିତି ନିଟୋଳଗଢଣ ।

ସେଦିନ ସୂର୍ଯ୍ୟାସ୍ତ ପରେ ଆମେ Victoria Lodgeକୁ ଫେରିଲୁ । ସନ୍ଧ୍ୟା ପରେ ଆଲୁଅ ଜଳିଲା । ବିଜୁଳି ଆଲୁଅ ନୁହେଁ । କିରୋସିନି ଲ୍ୟାମ୍ପ । ତାଳଚେର ସ୍କୁଲର କେତେ ଜଣ ପିଲାଏ ଆସି ଆମ ସହିତରେ ବସି ଗପ, ଗୀତ ଓ ବଂଶୀବାଦନ କଲେ । ବେଶ୍ ଭଲ ପିଲା ସେମାନେ, ଭାରି ମିଶାଳ । ଆମର ମନେ ହେଲା, ଯେମିତି ଅନେକ ଆଗରୁ ଆମେ ତାଙ୍କ ସହିତରେ ପରିଚିତ ।

ରାତ୍ରିରେ ଖାଇବା ବେଳ ହେଲାରୁ, ପବିତ୍ର ମୋହନ ପ୍ରଧାନ ଏବଂ ଆଉ କେତେ ଜଣ ପିଲା ଆସି ଆମକୁ ତାଙ୍କ hostel କୁ ଖାଇବା ପାଇଁ ଡ଼ାକି ନେଲେ । ଆମେ ଖାଇ ବସି ଦେଖିଲୁ, ଦିନ ବେଳା ପରି ଖାଇବାର ଚର୍ଚ୍ଚା କିନ୍ତୁ ମୁଁ ଗୋଟିଏ ଅସୁବିଧାରେ ପଡ଼ିଲି । ମୁଁ ସେତେବେଳେ ମାଂସ ଖାଉ ନଥିଲି । ଦେଖିଲି ସମସ୍ତଙ୍କ ପରି ମୋତେ ପତର ଠୁଙ୍ଗାରେ ମାଂସ ତରକାରୀ ଦିଆ ହେଇଛି । ମୁଁ ମାଂସ ଖାଇବି ନାହିଁ ଜଣେଇବାରୁ, ମୋତେ ପୁଣି ଅନ୍ୟ ତରକାରୀ ଦିଆହେଲା । ସେତେବେଳେ ଆମର ଦଳ ମଧରେ ମୁଁ ଏବଂ ଆମର ଜଣେ ଶିକ୍ଷକ ପ୍ରାଣନାଥ ବାବୁ ସବୁଠୁଁ ବେଶି ଖାଉ ଥାଉ । ମୋର ତରକାରୀ ବିଶେଷ ଦରକାର ହୁଏ ନା କିନ୍ତୁ ଭାତ ଚାରିଥର ଦରକାର । ମୁଁ ବାହାରୁ ଦେଖିବାରେ ଖୁବ୍ ଦୁର୍ବଳ ଦିଶୁଥିଲି, କିନ୍ତୁ ମୋର ପାକସ୍ଥଳୀ ଗୋଟାଏ football bladder ପରି ବୋଧ ହୁଏ ଥିଲା । ସେଥିରେ ଯେତେ ଖାଦ୍ୟ ପୂରେଇବ, ସେ ସେତିକି ଫୁଲିବ କିନ୍ତୁ ସବୁ ହଜମ । ସେତେବେଳେ କ୍ଷୁଧାମାନ୍ଦ୍ୟ କ'ଣ ମୁଁ ଜାଣି ନଥିଲି । ତରକାରୀ ମୁଁ ଖୁବ୍ ଜଗି ରଖି ଖାଉଥିଲି କାରଣ ବାବା ମୋତେ ଆଗରୁ ବାରମ୍ବାର ସାବଧାନ କରେଇ ଥାନ୍ତି, ଦେଖ ତରକାରୀ କୋଉଠି ହେଲେ ବେଶି ଖାଇବୁ ନାହିଁ । କାରଣ ଯୋଉ ତରକାରୀ ତୋତେ ଭଲ ଲାଗିବ, ତୁ ଯଦି ତାକୁ ବାରମ୍ବାର ଖାଇବାରେ ଲାଗିବୁ, ତା'ହେଲେ ଯେ ତୋତେ ଖାଇବାକୁ ଡ଼ାକିଥିବ କିମ୍ବା ତୁ ଯା' ଘରେ କୁଣିଆ ହେଇଥିବୁ, ସେ ତୋତେ ଏତେ ତରକାରୀ ଯୋଗେଇବ କୁଆଡୁ?

ଏଣୁ ମୁଁ ବାବାଙ୍କର କଥା ମାନି ତରକାରୀ କମ୍ ଖାଏ । ସେଠି ମୋର ଏବଂ ପ୍ରାଣନାଥ ବାବୁଙ୍କ ଖାଇବା ଦେଖି ଆମ ଭିତରେ ଅନେକ ହସାହସି ହେଲେ, ଶେଷରେ ପ୍ରାଣନାଥ ବାବୁଙ୍କୁ କିଛି ନ କହିପାରି ମୋତେ ଖୋଲି କହିଲେ, ପୁଲିନ୍ ତୁ କେତେ ଭାତ ଖାଉଛୁ? ସେମାନେ କ'ଣ ଭାବିବେ? ମୁଁ ଉତ୍ତରରେ କହିଲି ସେମାନେ ଯା' ଭାବିବେ ଭାବନ୍ତୁ, ମୋର ଖାଇବା ସେମାନେ ଦେଖନ୍ତୁ । ସମସ୍ତେ ଖାଇସାରି ହାତ ଟେକି ବସିଲେଣି, ମୁଁ, ପ୍ରାଣନାଥ ବାବୁ ଖାଉଛୁ, ଖାଇବା ସରୁ ନାହିଁ । ମୁଁ, ପ୍ରାଣନାଥ ବାବୁ ଖାଇ ସାରିଲେ, ସମସ୍ତେ ଉଠି ହାତ ମୁହଁ ଧୁଅନ୍ତି । ମୋର ଦିବ୍ୟ ଭୋଜନ ପାଇଁ ମୁଁ ବିଶେଷ ଖୁସିଥାଏ ।

ସେଦିନ ରାତିରେ ଖାଇ ସାରି ଯେ ଯା'ର ବିଛଣା ପାରି ଶୀଘ୍ର ଶୋଇଗଲୁ, କାରଣ ଜୟରାମ ବାବୁ କହିଲେ ଆଜି ରାତିରେ ବେଶି. ଜଗନାହିଁ । କାଲି final match ଖେଳିବାକୁ ହବ । ଏଣୁ ଆମେ ଜୟରାମ ବାବୁଙ୍କ ସୁପୁତ୍ର ଭଳି ସମସ୍ତେ ଶୋଇଗଲୁ । ନିଦ ମଧ ବେଶ୍ ଗଭୀର ହେଲା ।

ରାତି ପାହିଲା । ଆଜି final match ଖେଳିବାକୁ ହବ । ମୁଁ ଶେଯରୁ ଉଠି ଆସି Victoria Lodgeରେ

ବାରନ୍ଦାରେ ଖଣ୍ଡିଏ ଚୌକିରେ ବସିଲି । ଅତି ଭୋର୍ ବେଳ, ସାମନାରେ ବ୍ରାହ୍ମଣୀ ନଦୀର ନୀର ଆସ୍ତରଣ ଅତି ଅସ୍ପଷ୍ଟ ଜଣାଯାଉଥାଏ । ଆକାଶ ମଧ୍ୟ ତଦ୍ରୂପ କାରଣ ପାତଳା କୁହୁଡ଼ି ଚାରିଆଡ଼େ ଘେରି ରହିଥାଏ । ଅସ୍ପଷ୍ଟ ଆକାଶରେ ନଦୀର ଆରପାରିରୁ ଗୋଟିଏ ଚିଲ ଉଡ଼ି ନଦୀ ଅତିକ୍ରମ କରି Victoria Lodge ଉପର ଦେଇ କୁଆଡ଼େ ଉଭେଇ ଗଲା । ମୁଁ ବଡ଼ ଚିନ୍ତାରେ ପଡ଼ିଲି । ଚିଲଟା ଶଙ୍ଖ ଚିଲ ନା ମାଟିଆ ଚିଲ? ଅନେକ କହନ୍ତି ମାଟିଆ ଚିଲ ମୁହଁ ଦେଖିବା ଭାରି ଖରାପ ପୁଣି ଭୋର୍ ବେଳଟା । ଆଜି final match ଖେଳିବାର ଅଛି, ଯଦି ମାଟିଆ ଚିଲ ହୋଇଥାଏ ପରାଜୟ ସୁନିଶ୍ଚିତ ଯଦି ଶଙ୍ଖଚିଲ ହୋଇଥାଏ, ତା'ହେଲେ ବିଜୟ ଅବଶ୍ୟମ୍ଭବୀ । ଚିଲଟାକୁ ତ ଚିହ୍ନି ପାରିଲି ନାହିଁ । ମନଟା କେତେ ସମୟ ଯାଏଁ ଆନ୍ଦୋଳିତ ହେଲା । ସମସ୍ତେ ଉଠିଲେ । ସକାଳ ହେଲେ ଚଢ଼େଇ ଗୁରାଏ ଯେମିତି କିଚିରିମିଚିରି ହୁଅନ୍ତି, ସେମିତି ଗପ, ଥଟ୍ଟା, ପରିହାସ, ମସୁଦା, ପାଟିତୁଣ୍ଡରେ Victoria Lodge ମୁଖରିତ ହୋଇ ଉଠିଲା । ଚା, ଜଳଖିଆ ଖାଇ କିଏ କୁଆଡ଼େ ବୁଲିବାକୁ ବାହାରିଗଲେ । ଦିନବେଳା ଯେତେବେଳେ ଖିଆପିଆ ସରିଲା, ଜୟରାମ ବାବୁଙ୍କ ମସୁଦା ଚାଲିଲା, ଆଜି କିଏ କେଉଁ position ରେ ଖେଳିବ? ମୋତେ ଆଜି left half ପରିବର୍ତ୍ତେ right in position ରେ ରଖିଲେ । Left half position ରେ ଦଲିଲ୍ ଉଲ୍ ରହମାନ ଖେଳିଲା । ତାକୁ ଆଦୌ ଏ match ରେ ଖେଳେଇବାକୁ ଜୟରାମ ବାବୁଙ୍କର ଇଚ୍ଛା ନଥିଲା । କାରଣ ସେ ଏଥି ପୂର୍ବେ left half position ରେ ଖେଳିବା ପାଇଁ ଖୋଷାମୋଦ ଖୋଜୁଥିଲା । ସେ ଏ ବର୍ଷର କୌଣସି match ଖେଳି ନାହିଁ । ତାକୁ ଜୟରାମ ବାବୁ କେବଳ ଆଜି ଖେଳିବାକୁ ଦେଲେ । ତା'ର କାରଣ ସେ ସ୍କୁଲର assistant headmasterଙ୍କ ଭାଇ, ଆଉ ମଧ୍ୟ ତା'ର ଖୋଷାମୋଦ ଖୋଜିବାର ମନୋଭାବ ଅନେକ କମି ଯାଇଥିଲା, ସେ ଦବି ଯାଇଥିଲା ।

ଖେଳର ଠିକ୍ ସମୟ ପୂର୍ବରୁ ଆମେ ଗୋଟାଏ ଲରିରେ ଯାଇ ଖେଳ ପଡ଼ିଆରେ ପହଁଚିଲୁ । ଖେଳ ପଡ଼ିଆ Victoria Lodge ଠାରୁ କେତେଗୁରା ଦୂର । ମୁଁ ଖେଳ ପଡ଼ିଆରେ ଓଲେହି ଦେଖେ ବନ୍ଧୁଲୋକର ସମାଗମ । କାର୍ ଦି'ତିନି ଖଣ୍ଡ ରହିଛି । ଚାରିଆଡ଼େ ଲୋକ । ମୋର ମନେ ହେଲା, ଯେମିତି କଟକର କିଲ୍ଲା ପଡ଼ିଆରେ match ଦେଖିବା ପାଇଁ ଲୋକଙ୍କର ଭିଡ଼ ।

Talcher ସ୍କୁଲର player ମାନେ ଆସିଲେ । ସମସ୍ତେ ଆମଠୁଁ ଯଥେଷ୍ଟ ସ୍ୱାସ୍ଥ୍ୟବାନ । ସମସ୍ତଙ୍କ ମୁଣ୍ଡରେ ଗାରେ ନେଖା ସିନ୍ଦୁରର ଦାଗ । ସେଦିନ final match ପରିଚାଳନା କରିବା ପାଇଁ coal mineର ଜଣେ ଗୋରା ଅଫିସର୍ referee ନିର୍ବାଚିତ ହୋଇଥାନ୍ତି । ଠିକ୍ ସମୟରେ ଖେଳ ଆରମ୍ଭ ହେଲା । ପ୍ରଥମରୁ ଅତି କ୍ଷିପ୍ର ଏବଂ ପ୍ରତିଦ୍ୱନ୍ଦ୍ୱିତାମୂଳକ ହେଲା । Talcher School teamର ସମର୍ଥକମାନେ ଖୁବ୍ ପାଟିତୁଣ୍ଡ କରୁଥାନ୍ତି, ଆମର ସେଠି କେହି ନାହିଁ ଆମ ସପକ୍ଷରେ ପଦେ କହିବାକୁ । ଖେଳ ଆରମ୍ଭ ହବାର ୧୦ ମିନିଟ୍ ବେଳେ ଆମ ଉପରେ ଗୋଟିଏ ଗୋଲ୍ ହୁଏ । ଆମ ଉପରେ ଗୋଟିଏ ଗୋଲ୍ ହବାର ଦେଖି Talcher ସ୍କୁଲର ସମର୍ଥକଙ୍କ ଆତ୍ମ ପାଟି ଉଠିଲା, ଶଳେ କଟକିଆ ଆସିଛନ୍ତି ଆମକୁ ଗୋଲ୍ ଦେଇ ଜିତି ଯିବେ, ଆମେ ହିଂଗୁଳେଇ ଠାକୁରାଣୀଙ୍କ ନିକଟରେ ବୋଦା ପକେଇଛୁ ।

ଆମେ ଗୋଟିଏ ଗୋଲ୍ ଖାଇ ଟିକିଏ ଲଜ୍ଜିତ ହେଲୁ । କିନ୍ତୁ ହତାଶ ହେଲୁ ନାହିଁ । କାରଣ ଗୋଲ୍ ସୁଝେଇବାକୁ ଅନେକ ସମୟ ଅଛି, ଖେଳ ସେମିତି ଗତିରେ ଚାଲିଥାଏ, କେହି କାହାକୁ ଛାଡ଼ିବାର ନୁହେଁ । ଏଇ ସମୟରେ ଆମର centre forward ଗୋଟିଏ ସଟ୍ ମାରି ସୁନ୍ଦର ଗୋଲ୍ ଦେଲା । ବର୍ତ୍ତମାନ ଉଭୟ ଦଳ ପୁଣି ସମାନ ହେଇଗଲୁ । ଖେଳର ଦ୍ୱିତୀୟାର୍ଦ୍ଧରେ ଖେଳ ଶେଷ ହବାକୁ ମାତ୍ର ଅଳ୍ପ ସମୟ ଅଛି, ଏଇ ସମୟରେ Talcher School Team ର back ର hand ball ହୁଏ । Referee penalty declare କଲେ । Penalty kickରେ ଆମର left out Penalty shot ରେ Talcher School ଉପରେ ଗୋଟିଏ ସୁନ୍ଦର ଗୋଲ୍ ହୁଏ । ଏଇ ହେଲା ଆମର ବିଜୟସୂଚକ ଗୋଲ୍ । ଖେଳ ସରିବାକୁ

ମାତ୍ର କେଇ ମିନିଟ୍ ଥାଏ, ଆମେ ଦୁର୍ଦ୍ଧର୍ଷ ହେଇ ଖେଳିଲୁ । ସେମାନେ ଆପ୍ରାଣ ଚେଷ୍ଟା କଲେ ଗୋଲ୍ ସୁଝେଇବାକୁ କିନ୍ତୁ ପାରିଲେ ନାହିଁ । ଖେଳ ଶେଷ ହେଲା । Referee ଶେଷ ହୁଇସିଲ୍ ଦେଲେ । ଆମର ଆନନ୍ଦ ଦେଖେ କିଏ ? ଅନେକ player ଯାଇ ଜୟରାମ ବାବୁଙ୍କ ଉପରେ ଧୂଲ୍‌ଦାଲ୍ ହେଇ ପଡ଼ିଲେ । ଜୟରାମ ବାବୁ ମଧ ଗୁରାଏ ପିଲାଙ୍କ ସାଥିରେ ପଡ଼ିଆରେ ଗଡ଼ାତଡ଼ା ହେଇଗଲେ । Talcher ଯୁବରାଜଙ୍କ ହାତରୁ Cup ଆଣିଲୁ । ବିଜୟୋଲ୍ଲାସରେ ଆସି ବସ୍‌ରେ ବସିଲୁ । Victoria Lodge କୁ ଫେରିବାକୁ ହବ । ଜୟରାମ ବାବୁଙ୍କୁ ବସ୍‌ରେ ଆସିବାକୁ କହିଲାରୁ ରାଜି ହେଲେ ନାହିଁ । କହିଲେ ମୁଁ Cup ଧରି ଚାଲି ଚାଲି ଯିବି । ଆମେ Hip Hip Hurray ଇତ୍ୟାଦି କିଛି ପାଟିତୁଣ୍ଡ କଲୁନାହିଁ । କାରଣ Talcher ପିଲାଙ୍କ ମନରେ ଆଘାତ ଲାଗିବ । ଆମେ ସନ୍ଧ୍ୟାବେଳେ ଆସି Victoria Lodge ରେ ପହଞ୍ଚିଲୁ । Talcher player ମାନଙ୍କ ମଧ୍ୟରୁ କେତେକ ଆସି ଆମ ସାଙ୍ଗରେ ପହଁଚିଲେ । ଆମେମାନେ ସମସ୍ତେ ବସି ଖେଳର ଆଲୋଚନା କରୁଛୁ, କିଏ କେମିତି ଖେଳିଲା, ଖେଳ କେମିତି ହେଲା ? ଏଇ ସମୟରେ ଜୟରାମ ବାବୁ Cup ଧରି ଚାଲି ଚାଲି ଆସି Victoria Lodge ରେ ପହଁଚି ଆଗେ ଖୋଜିଲେ ମୋର ପୁତୁରା କାହିଁ ? ଜୟରାମ ବାବୁଙ୍କର ଗୋଟିଏ ଛୋଟ ପୁତୁରା ଖେଳ ଦେଖିବା ପାଇଁ ଆମ ସାଙ୍ଗରେ ଯାଇଥିଲା । ଜୟରାମ ବାବୁ ସେ ପୁତୁରାକୁ କାଖେଇ, ତା'ହାତରେ Cup ଧରେଇ ଦେଇ କୁଦିଲେ, କୁଦିବା ସାଙ୍ଗେ ସାଙ୍ଗେ ପାଟି କଲେ Hip Hip Hurray, Hip Hip Hurray.

ଆମେ Talcher ପିଲାଙ୍କ ସାମନାରେ ଲଜ୍ଜାରେ ମରିଗଲା ପରି ହେଲୁ । ଭାବିଲୁ, ଆମେ କିଛି ପାଟିତୁଣ୍ଡ କରୁନୁ, ସାର୍ ଏମିତି କ'ଣ ହଉଛନ୍ତି ! Talcher ପିଲାମାନେ ଆମ ପାଖରୁ ବିଦାୟ ନେଲେ । ରାତି ହେଲା । ସବୁବେଳେ ଆନନ୍ଦରେ କୋଳାହଳ ଚାଲିଥାଏ । କଟକର Victoria High School ର ପିଲାମାନେ ଆମର final match ଦେଖିବେ ଏବଂ Talcher coal mine ଇତ୍ୟାଦି ବୁଲି ଦେଖିବା ପାଇଁ ଠିକ୍ ଏଇ ସମୟରେ ଯାଇ Talcher ରେ ପହଁଚି ଆମର final match ଦେଖିଲେ । ସେମାନେ ମଧ ଆମ ପାଖକୁ ରାତିରେ ଆସି Talcher Cup ଦେଖିଲେ । ଆମର ବେଶି ଗୌରବର କଥା, ଗତବର୍ଷ ଏଇ Talcher କୁ ଆସି Collegiate ଆଉ Mission ଖେଳରେ ହାରି ଏଇ Cup ହରେଇ ଯାଇଥିଲେ । ଏ ବର୍ଷ ଆମ ଦ୍ୱାରା ହିଁ ଏ Cup କଟକକୁ ଯିବ । Talcher ପିଲାଙ୍କ ସଙ୍ଗେ ଖେଳି ଆମେ ଦେଖିଲୁ ଖେଳ ମଧରେ ଗୋଟିଏ ମଧ foul ନ ହେଇ Talcher ପିଲାଙ୍କ ସାଙ୍ଗରେ ଯା'ଗୋଡ଼ ଯା'ଗୋଡ଼ ସହିତରେ ବାଜିଛି ସେ ଜାଗା ଫୁଲି ଯାଇଛି । ଆମର ଗୋଡ଼ ସବୁ ଏତେ ପାଡ଼ା ହେଲା ଯେ, ଯଦି ଦିନେ draw ରହି ଆଉ ଦିନେ ଖେଳ ହେଇଥାନ୍ତା ଆମେ ଆଉ ଖେଳି ପାରିନଥାନ୍ତୁ । ସେଇ ଥରେ match ଖେଳି ଆମର ଗୋଡ଼ ସବୁ ଭୀଷଣ ଜଖମ ହେଇ ଯାଇଥିଲା । ଆମର centre forwardର ଗୋଡ଼ ବିଶେଷ ଜଖମ ହେଇଥିଲା । ତା'ର ଗୋଡ଼ ଦି'ଟାକୁ ଗରମ ପାଣିରେ ସେକ ଦିଆ ହଉଥାଏ । ତାକୁ ଧରାଧରି କରି ନିଆ ଅଣା ହଉଥାଏ । ମୋର ଗୋଡ଼ ଫୁଲି କରି ଥାଏ କିନ୍ତୁ ଗରମ ପାଣି ସେକ ଦବାକୁ ମନା କଲି । Talcher High Schoolର headmaster ଆସିଲେ ଜୟରାମ ବାବୁ ଆଉ ପ୍ରାଣନାଥ ବାବୁଙ୍କ ସଙ୍ଗେ ଗପ କରିବା ପାଇଁ, ଅନେକ ସମୟ ସୁଖାଳାପ କଲାପରେ ସେ ବିଦାୟ ନେଲେ । ସେଦିନ ରାତିରେ Talcher school hostel ରେ ଆମର ରାତ୍ରି ଭୋଜନ ହେଲା । ଯେ ଯେତିକି ଖାଉଥିଲେ ସେଦିନ ରାତିରେ ଆନନ୍ଦରେ ପିଲାଏ ଆହୁରି ଗଣ୍ଡାଏ ଗଣ୍ଡାଏ ଅଧିକା ଖାଇଲେ । ମୁଁ ଏବଂ ପ୍ରାଣନାଥ ବାବୁ ତ ଆଗରୁ ଖାଇବାରେ ନାଁ ପକେଇଥିଲୁ, ସେଦିନ ରାତିରେ ନାଁ ଆହୁରି ବଢ଼ିଗଲା । ମୋର ତ ପେଟ ନୁହେଁ, ଗୋଟିଏ ଗହ୍ୱର । ଖାଇପିଇ ସାରି Victoria Lodgeକୁ ଫେରିଲୁ । ମୁଁ ସେହିଦିନ ରାତିରେ ବୁଝିଲି ଯେ Talcher School hostel ରେ ଛାତ୍ର ଥାନ୍ତି ୭୦ ଜଣ । ସେଦିନ କିନ୍ତୁ ଆମେ ଖାଇବାକୁ ଗଲାବେଳେ ଅଧିକାଂଶ ପିଲାଏ ଶୋଇ ଯାଇଥିଲେ କେବଳ ଅଳ୍ପ କେତୋଟି ପିଲାଙ୍କ ଗହଳି ଛଡ଼ା ଆଉ ସବୁ ଶୂନସାନ, ଅଳ୍ପ କେତୋଟି

ପିଲା ଯେ ଆମର ଖାଇବା ପିଇବା ବୁଝୁଥିଲେ, ତା'ମଧ୍ୟରେ ପବିତ୍ର ମୋହନ ପ୍ରଧାନ ଥିଲେ ।

Victoria Lodge କୁ ଫେରି ଆଉ ଶୋଇ ହେଲା ନାହିଁ । ଆନନ୍ଦର ଜୁଆର ଆହୁରି ଉଦ୍‌ବେଳିତ ହୋଇ ଉଠିଲା । ସେ ଦିନର ରାତି ଭୁଲି ହବ ନାହିଁ । ରାତି ପ୍ରାୟ ୩ଟା ବେଳେ Victoria Lodge ଟିକିଏ ନିସ୍ତବ୍ଧ ହେଲା । ସମସ୍ତେ ପ୍ରାୟ ଶୋଇଗଲେ । ମୁଁ, ଈଶ୍ୱର ସାହୁ ଗୋଟିଏ ଶେଯରେ ଶୋଇଥାଉ । ନିଦ ଲାଗିଛି । ହଠାତ୍ ଶୁଣିଲୁ, Hip Hip Hurray, Hip Hip Hurray.

ଆମର ନିଦ ଭାଙ୍ଗିଗଲା ବେଳକୁ ଦେଖିଲୁ ଯେ ଜୟରାମ ବାବୁ ପ୍ରତ୍ୟେକ ଶୋଇଥିବା ପିଲାଙ୍କ ପାଖରେ ଯାଇ ତାଙ୍କ ମୁହଁ ପାଖରେ Cup ଧରି ନିଜେ Hip Hip କହୁଛନ୍ତି ଆଉ ପିଲାଏ ଯଦି ନ ଉଠି Hurray ନ କହୁଛନ୍ତି ତା'ହେଲେ ତାଙ୍କୁ ଗୋଇଠାଏ ଗୋଇଠାଏ ପକଉଛନ୍ତି । ଯୋଉ ପିଲାଏ ଜୟରାମ ବାବୁ Hip Hip କହିଲା ବେଳକୁ ଉଠିପଡ଼ି Hurray କହୁଛନ୍ତି, ତାଙ୍କୁ ଆଉ ଗୋଇଠା ମାଡ଼ ନାହିଁ । ମୁଁ, ଈଶ୍ୱର ସାହୁ ତ Hip Hip Hurray ଧ୍ୱନିର ଝଙ୍କାର ଶୁଣି ଉଠି ପଡ଼ିଥିଲୁ । ଏଣୁ ଜୟରାମ ବାବୁ ଆମ ପାଖକୁ ଆସି Cup ଧରି Hip Hip କହିଲା ବେଳକୁ ଆମେ Hip Hip Hurray ଧ୍ୱନି କଲୁ । ଆମଠି ଆଉ ଗୋଇଠା ମାଡ଼ ବସିଲା ନାହିଁ । ଜୟରାମ ବାବୁ ପୁଣି କହୁଥାନ୍ତି, ହଇରେ Cup ଜିତିଛ, ଏତେବେଳ ଯାଏ ଶୋଇଛ କ'ଣ ? ଉଠ ।

ଜୟରାମ ବାବୁଙ୍କ ଗୋଇଠା ମୋର ଖେଳାଳୀ ଜୀବନର ଆଶୀର୍ବାଦ । ଜୟରାମ ବାବୁଙ୍କ training ରେ ମୋର ଖେଳର ଧାରା ବଦଳି ଗଲା । ମୁଁ Muslim Seminary ରେ ନାଁ ଲେଖେଇଥିଲି ବୋଲି ଜୟରାମ ବାବୁଙ୍କ ଭଳି ଖ୍ୟାତନାମା game teacher ଙ୍କ ଠାରୁ training ପାଇବାର ସୁଯୋଗ ପାଇଲି । ଅନ୍ୟ ସ୍କୁଲ ହୋଇଥିଲେ ମୋତେ ଜଣେ ଭଲ ଖେଳାଳୀ ଭାବରେ ତିଆରି କରିବା ପାଇଁ କିଏ ଏତେ ଯତ୍ନ ନିଅନ୍ତା ? ଜୟରାମ ବାବୁଙ୍କ ଦ୍ୱାରା ଯେ ଖେଳରେ training ପାଇ ପାରିଲି, ଏ ମୋର ପରମ ସୌଭାଗ୍ୟ ।

ଆଶ୍ଚର୍ଯ୍ୟ କଥା ଜୟରାମ ବାବୁ ସ୍କୁଲ team, open team ର ଖେଳ ଭିତରେ ଯେତେ player ର ଖେଳ ଦେଖିଥିବେ, କା'ର କେଉଁଠି defect ସବୁ ତାଙ୍କର ନଜର ଥାଏ, କୋଉ player କୁ କୋଉ position ରେ ଦେଇଥିଲେ ଭଲ ହୋଇ ଥାନ୍ତା, କୋଉଠି ଦେଇ ଭୁଲ କଲେ ସବୁ ତାଙ୍କୁ ଜଣା । କୋଉ player ର କୋଉ ଗୋଡ଼ ଚାଲେ ନାହିଁ, କିଏ head କରିପାରେ ନାହିଁ । ସବୁ ତାଙ୍କୁ ଜଣା । ଜୟରାମ ବାବୁ ତାଙ୍କର ଦେଖିଥିବା ଗୋଟାଏ ଗୋଟାଏ match ର ଇମିତି ବର୍ଣ୍ଣନା କରିବେ ଶୁଣିଲେ ମନେହବ, ଯେମିତି ପ୍ରକୃତ ସେ match ମୁଁ ଆଖିରେ ଦେଖୁଛି ।

ସେଦିନ Talcher Cup ଜିତିବାର ଆନନ୍ଦ ଭିତରେ ମୋର ମନେପଡ଼ିଲା, ପିଲାବେଳେ ବାବା ମୋତେ ଯେଉଁ ଟେନିସ୍ ବଲ୍ କିଣି ଦେଇଥିଲେ ଗୋଡ଼ରେ ଗଡେଇ ଖେଳିବା ପାଇଁ ମୋର ବହୁତ ଉପକାର କରିଛି । ବୟସ ଯେମିତି ଆଗେଇଛି, ବଲ୍‌ର ଆକୃତି ମଧ୍ୟ ବଦଳିଛି । ଖେଳର ଧାରା ମଧ୍ୟ ବଦଳିଛି । କିନ୍ତୁ ଦୁଃଖର କଥା, ଆମ ଘରେ ବାବା, ଜେଠା football ଖେଳ କ'ଣ ବୁଝନ୍ତି ନାହିଁ । ଓଲଟି football ଖେଳ ନାଁ ଧରିଲେ ମୋ ଉପରେ ରାଗିବେ, ଗାଳିଦେବେ । ସବୁବେଳେ ତାଙ୍କର ଭୟ, ଗୋଡ଼ ହାତ ଭାଙ୍ଗିବି, କା ସାଙ୍ଗରେ ମାଡ଼ଗୋଳ କରିବି । Football ଖେଳିବା ପାଇଁ ବାବାଙ୍କ କଥା ମୁଁ ମାନି ନାହିଁ । ବାବା ଯେତେ ଖେଳିବାକୁ ମନା କଲେ, ମୁଁ ଅବାଧ ହୋଇ ଖେଳିଛି, ଖେଳିବା ଦ୍ୱାରା ଭବିଷ୍ୟତରେ ମୁଁ ଯେଉଁ ଉପକୃତ ହୋଇଛି, ତା'ପରେ ଲେଖିବି ।

Talcher ରେ final match ପରଦିନ ସକାଳୁ ଆମ ନିକଟକୁ ରାଜା ସାହେବଙ୍କଠାରୁ ଖବର ଆସିଲା, ଆଜି Polo ଖେଳ ହବ । ଆମେମାନେ ଦେଖିବାକୁ ଯିବୁ, ତା'ଛଡ଼ା Talcher coal mine ଦେଖିବାକୁ ମଧ୍ୟ ରାଜା ସାହେବଙ୍କଠାରୁ ଅନୁମତି ମିଳିଲା । ଆମେମାନେ ଏ ଖବର ପାଇ ବିଶେଷ ଆନନ୍ଦିତ ହେଲୁ ଏବଂ ଚଞ୍ଚଳ ହୋଇ ପଡ଼ିଲୁ । ଆମ ଭିତରେ ପ୍ରସ୍ତାବ ହେଲା, ବର୍ତ୍ତମାନ Talcher town ଏବଂ Talcher palace ବୁଲି ଦେଖିବା

ଏବଂ ସେଇ ଆଡ଼େ Polo ଖେଳ ଦେଖିବାକୁ ଯିବା । Polo ଖେଳ ହବ କାଲି ଯେଉଁଠି football final match ହେଇଥିଲା ସେଇ ପଡ଼ିଆରେ । ଆମେ ସମସ୍ତେ ବୁଲି ବାହାରିଲୁ । Talcher town ଦେଖିଲୁ, ବିଶେଷ କିଛି ଆକର୍ଷଣୀୟ ନୁହେଁ । କିନ୍ତୁ Talcher ରାଜପ୍ରାସାଦ ବୁଲି ଦେଖିବାରେ ବିଶେଷ ଆନନ୍ଦ ଏବଂ ଚମତ୍କାରିତା ଅନୁଭବ କଲୁ । ଏଥି ପୂର୍ବରୁ ମୁଁ କେଭେ ରାଜପ୍ରାସାଦ ଦେଖି ନଥିଲି । ରାଜପ୍ରାସାଦ ଦେଖିବାକୁ ବେଶ୍ ସୁନ୍ଦର ଓ ବିରାଟ, ଠିକ୍ ରାଜୋଚିତ । କେତେଗୁଡ଼ିଏ ଅସ୍ତାବଳ ଦେଖିଲୁ । ପ୍ରତ୍ୟେକଟିରେ ବେଶ୍ ସୁନ୍ଦର ସୁନ୍ଦର ଘୋଡ଼ା ଥାନ୍ତି । ଆମେ ରାଜପ୍ରାସାଦ ବୁଲି ଦେଖୁ ଦେଖୁ ଦେଖିଲୁ, କେତେଜଣ Polo ଖେଳାଳୀ ଅସ୍ତାବଳରୁ ଘୋଡ଼ା ନେଇ, ତା'ପିଠିରେ ବସି Polo ଖେଳିବାକୁ ପଡ଼ିଆକୁ ବାହାରି ଗଲେ । ଆମେମାନେ ରାଜପ୍ରାସାଦ ଆଉ ବେଶି ନ ବୁଲି Polo ଖେଳ ଦେଖିବାକୁ ବାହାରିଗଲୁ ।

ଖେଳ ପଡ଼ିଆରେ ଯାଇ ପହଁଚି ଦେଖିଲୁ, Polo ଖେଳ ପାଇଁ ଦୁଇ ଦଳ ଯାକ ଅଶ୍ୱାରୋହୀ ପ୍ରତ୍ୟେକଙ୍କ ହାତରେ ଖଣ୍ଡେ ଖଣ୍ଡେ Polo ଖେଳର stick, ବଲ୍‌ଟି କିନ୍ତୁ ଖୁବ୍ ଛୋଟ । Football match ପରି teamର ବ୍ୟବସ୍ଥା କିନ୍ତୁ ଏଥିରେ ଘୋଡ଼ାରେ ଚଢ଼ି ଖେଳିବାକୁ ହୁଏ, ଆଉ ବଲ୍‌କୁ hockey ଖେଳ ପରି stick ସାହାଯ୍ୟରେ ମାରିବାକୁ ହୁଏ । ଖେଳ ଆରମ୍ଭ ହେଲା । ଭାରି ଚମତ୍କାର ଲାଗିଲା । ବେଶି ଚମତ୍କାର ଲାଗିଲା ଘୋଡ଼ାମାନଙ୍କର କ୍ରୀଡ଼ା କୌଶଳ ଆଉ କୌତୂହଳ ଦେଖି । ସେଇଠି ଖେଳ ଦେଖି ମୁଁ ଜାଣି ପାରିଲି ଯେ ଘୋଡ଼ାମାନେ ବୁଝି ପାରୁଛନ୍ତି ଯେ ସେମାନେ ଖେଳୁଛନ୍ତି କାରଣ ବଲ୍ ଯୁଆଡ଼େ ଗଲା ଉଭୟ ଦଳର ଘୋଡ଼ାମାନେ ସିଆଡ଼ିକି ତୀର ବେଗରେ ଛୁଟୁଛନ୍ତି । ଦେଖିଲେ ମନେ ହବ, ଗୋଟାଏ ଘୋଡ଼ା ଦେହରେ ଆଉ ଗୋଟିଏ ଘୋଡ଼ାର ବାଜିଲା ଧକ୍କା, ଆଖି ବୁଜି ହେଇଯାଏ । କିନ୍ତୁ ଆଶ୍ଚର୍ଯ୍ୟ କଥା କାହାରି ଦେହରେ କାହାରି ଧକ୍କା ଲାଗୁ ନାହିଁ । ଯେ ଯା'ର କାଇଦାରେ ପାଖେଇ ଯାଉଛନ୍ତି । ବଡ଼ ଚମତ୍କାର ଦୃଶ୍ୟ । ଏଇଠି ମୁଁ ପ୍ରଥମ Polo ଖେଳ ଦେଖେ । Polo ଖେଳରେ ଉଭୟ ଦଳକୁ uniform ପିନ୍ଧି ଅଶ୍ୱାରୋହୀ ଅବସ୍ଥାରେ ଦେଖିଲେ ମନରେ ବେଶ୍ ଗୋଟାଏ ସମରସଜ୍ଜାର ଧାରଣା ଜନ୍ମେ, କିନ୍ତୁ ଖେଳ ବଡ଼ ବିପଦ ସଙ୍କୁଳ । ଗୋଟିଏ ଦଳ ହାରିଲେ, ଗୋଟିଏ ଦଳ ଜିତିଲେ ଖେଳ ସରିଲା । ଆମେମାନେ Victoria Lodge କୁ ଫେରିଲୁ ।

ଏଥର ଆମମାନଙ୍କର ଖାଇବା ପିଇବା ସରିଲେ Talcher station କୁ ବାହାରିବାକୁ ହବ । Talcher ରେ ରହଣୀ ବେଶ୍ ଭଲରେ ଭଲରେ କଟିଗଲା । Coal mine ଦେଖିବା ପାଇଁ କେତେ ଜଣ ରହିବେ ବୋଲି ସ୍ଥିର କଲେ । ମୁଁ ଏବଂ ଅନ୍ୟମାନେ ସ୍ଥିର କଲୁ ନା, ଫେରିଯିବା, coal mine ତ ଯେତେବେଳେ ସେତେବେଳେ ଦେଖିହବ କିନ୍ତୁ Cup ନେଇ ଆନନ୍ଦ କୋଳାହଳ କରି ଯିବାର ସୁଯୋଗ ଆଉ ନ ମିଳିପାରେ । ଏଣୁ ଆମେମାନେ ଖାଇବାପିଇବା ସାରି ଜିନିଷପତ୍ର ଆଉ Cup ଧରି ଷ୍ଟେସନକୁ ବାହାରି ପଡ଼ିଲୁ । ଗୋଟିଏ ବସ୍ ଆସି Victoria Lodge ପାଖରେ ଠିଆ ହେଲା । ସେଇ ବସ୍‌ରେ ଆମେ ଷ୍ଟେସନ୍‌କୁ ଯିବୁ । Talcher School ପିଲାଏ ମଧ୍ୟ ଆସି ଆମକୁ ବିଦାୟ ଦବା ପାଇଁ ଠିଆ ହେଲେ, ଆମେମାନେ ବସ୍‌ରେ ବସିଲୁ । ବସ୍ ଛାଡ଼ିଲା ମାତ୍ରେ ଆମେ ଆନନ୍ଦରେ Hip Hip Huray ଧ୍ୱନି କରି ବିଦାୟ ନେଲୁ ।

Talcher station ରୁ train ରେ ବସି କଟକ ଅଭିମୁଖେ ବାହାରିଲୁ । ତାଳଚେରଠୁଁ କଟକ ପର୍ଯ୍ୟନ୍ତ ପ୍ରତ୍ୟେକ ଷ୍ଟେସନ୍‌ରେ Hip Hip Huray ଧ୍ୱନି କରି କରି ଆସିଲୁ । ଅନେକ ଆମକୁ ଷ୍ଟେସନ୍‌ରେ ଆସି ଦେଖୁଥାନ୍ତି । କେତେକ ପ୍ରଶଂସା କରି କହୁଥାନ୍ତି, ଯା'ହଉ ଆପଣମାନେ ଜଙ୍ଗଲ ରାଇଜରୁ Cup ଜିଣି ନେଇଗଲେ । ଜଙ୍ଗଲ ରାଇଜର ଖେଳାଳୀଙ୍କୁ ହରେଇବା ସହଜ ନୁହେଁ ।

କଟକ ଷ୍ଟେସନ୍‌ରେ ଓଲେହି ସେମିତି ଗୁରାଏ ଆନନ୍ଦରେ ପାଟିତୁଣ୍ଡ କଲୁ । ଆମେ କଟକରେ ପହଁଚିବା ପୂର୍ବରୁ କେମିତି କଟକରେ ଖବର ହେଇ ଯାଇଥାଏ Muslim Seminary, Talcher Cup ଜିତିଛନ୍ତି । କଟକରେ ପହଁଚି ଯେ ଯା'ଘରକୁ ଗଲୁ । ମୁଁ ଘରେ ଆସି ପହଁଚିଲା ମାତ୍ରେ ବାବା ପଚାରିଲେ, କିରେ ଖେଳରେ

ପୋଷ୍ୟ ପୁତ୍ରଙ୍କ ଉପରେ। କାରଣ ସେ ବେଶି ମତ ଦଉଥାନ୍ତି, ମୋତେ ଆଉ ପଢ଼େଇବା ଉଚିତ୍ ନୁହଁ।

ମୁଁ ଘର ଭିତରେ ବସି ଭାବୁଥାଏ ଟଙ୍କା ଖର୍ଚ୍ଚ ହଉ ନାହିଁ? ମୋତେ ପଢ଼େଇବାରେ ଖାଲି ଟଙ୍କାର ଅପବ୍ୟୟ ହେଇ ଯିବ। ମୁଁ ତ କେଭେ ଫେଲ୍ ହେଇ ନଥିଲି ଏଇ ଥରକ ଫେଲ୍ ହେଇଛି। ଶେଷରେ ମୋତେ ପଚରା ହେଲା ତୋର କ'ଣ ଇଚ୍ଛା? ଆଉ ପଢ଼ିବୁ ନା ଏଇଠୁଁ ପଢ଼ା ଛାଡ଼ିବୁ? ମୁଁ ଚୋରଟା ପରି ଉତର ଦେଲି ମୁଁ ପଢ଼ିବି। ବାବା ମୋର ଉତର ଶୁଣି କହିଲେ ପଢ଼ିବୁ ନା football ଖେଳିବୁ? ସାଙ୍ଗସାଥୀ ନେଇ ବୁଲିବୁ, ତୁ ପାଠ ପଢ଼ିବୁ? ହଉ ପଢ଼, ଏଥର ଫେଲ୍ ହେଲେ ପାଠ ପଢ଼ା ବନ୍ଦ। ଯା ହଉ ଆଉ ବର୍ଷେ ୧୦ମ ଶ୍ରେଣୀରେ ପଢ଼ିବା ସ୍ଥିର ହେଲା।

ମାଉସୀ ପୁଅ ଭାଇର ମୋତେ ପଢ଼େଇବା ବିଷୟରେ ଅସମ୍ମତି ପ୍ରକାଶ ଯୋଗୁହିଁ ତାଙ୍କ ପ୍ରତି ମୋର ସେହି ଦିନଠୁଁ ଅଶ୍ରଦ୍ଧା ଜନ୍ମିଲା ଯେ ସେ ବଞ୍ଚିଥିବା ଯାଏ ତାଙ୍କ ସହିତରେ ମୋର ଆଉ ସଦ୍‌ଭାବ ନଥିଲା।

ସେ ବର୍ଷ ମୋର କ୍ଲାସ ପ୍ରମୋସନ୍ ନ ପାଇବା, ବାବାଙ୍କର ଚାକିରୀରେ ଗଣ୍ଡଗୋଳ ଯୋଗୁଁ ମନସ୍ତାପ ଏଣେ ଋଣ ଭାର ଯୋଗୁଁ ଅଶାନ୍ତି। ଏଣୁ ସବୁ ବର୍ଷ ବଡ଼ଦିନ ଛୁଟିଟା ଯେମିତି ଆନନ୍ଦରେ କଟେ, ସେ ବର୍ଷ ଆଉ ସେମିତି କଟିଲା ନାହିଁ। ସମସ୍ତଙ୍କର ବିମର୍ଷ ଅବସ୍ଥା।

ବଡ଼ଦିନ ଛୁଟି ସରିଲା। ମୁଁ ନୂଆ ବର୍ଷରେ ସେହି ପୁରୁଣା ୧୦ମ ଶ୍ରେଣୀରେ ଯାଇ ବସିଲି। ମୋର ତଳ କ୍ଲାସ ପିଲା ମୋର ସାଙ୍ଗ ଧଇଲେ। ଭାରି ସରମ ଲାଗୁଥାଏ। ମୋର ସାଙ୍ଗ ପିଲାଏ ୧୧ଶ ଶ୍ରେଣୀରେ ସେତେବେଳେ ମ୍ୟାଟ୍ରିକ ଫାଷ୍ଟ କ୍ଲାସ କୁହା ଯାଉଥିଲା, ଯାଇ ବସିଲେ। ତାଙ୍କୁ ମଧ୍ୟ ମୁହଁ ଦେଖେଇବାକୁ ସରମ ଲାଗୁଥାଏ। କ'ଣ କରିବି? କେତେଦିନ ପାଣି ଫୋଟକା ପରି ଭାସି ବୁଲିଲି। ପୁଣି ଫାଟି ଫାଟି ସେଇ ପାଣିରେ ମିଶିଗଲି, ମନସ୍ତାପ କମିଗଲା। ସରମ ଛାଡ଼ିଗଲା। ଏଥର ପାଠ ପଢ଼ାରେ ମନ ଦେଲି। ବଡ଼ ଭୟ ଲାଗୁଥାଏ। ପୁଣି ଯଦି ଫେଲ୍ ହୁଏ ଆଉ ବାବା ପଢ଼େଇବେ ନାହିଁ।

ପାଠ ପଢ଼ାରେ ଭାରି ମନ ଲାଗିଲା। ସବୁତ ପୁରୁଣା ବହି ବାକି କେତେ ଖଣ୍ଡ ନୂଆ ବହି ପଢ଼ିବାକୁ ହେଲା। ଯେତେବେଳେ ସମୟ ମିଳିଲା ପଢ଼ିଲି କିନ୍ତୁ ଏଣେ କାବ୍ୟ କବିତା ମଧ୍ୟ ଲୁଚି ଲୁଚି ପଢୁଥାଏ। Football ଖେଳ ମଧ୍ୟ ଲୁଚି ଛପି ଚାଲିଥାଏ। କିନ୍ତୁ ପାଠପଢ଼ା ପ୍ରତି ଭାରି ଆଗ୍ରହ ଜନ୍ମିଲା।

ସେତିକିବେଳେ ମ୍ୟାଟ୍ରିକ ପାଠ ସାଙ୍ଗକୁ S.L.C.(School Leaving Certificate) ପାଠର ପ୍ରବର୍ତ୍ତନ ହେଲା। ଜଣେ ପିଲା ଯେ ପାରିବ, ସେ ମ୍ୟାଟ୍ରିକ୍ ପରୀକ୍ଷା ଦେଇ ପାରିବ ପୁଣି S.L.C. ପରୀକ୍ଷା ମଧ୍ୟ ଦେଇ ପାରିବ। ସେ ମ୍ୟାଟ୍ରିକ ପରୀକ୍ଷାରେ ପାସ୍ କଲେ ସେ ମ୍ୟାଟ୍ରିକ୍ ବୋଲି ଯେମିତି ଗଣ୍ୟ ହେବ, ସେମିତି S.L.C. ପରୀକ୍ଷାରେ ପାସ୍ କଲେ ସେ ମଧ୍ୟ ମ୍ୟାଟ୍ରିକ୍‌ର ସମକକ୍ଷ ବୋଲି ଗଣ୍ୟ ହେବ। ଜଣେ ପିଲା ଦୁଇଟାଯାକ ପରୀକ୍ଷା ଦେଇପାରିବ। ସେ ଦୁଇଟାରେ ପାସ୍ କଲେ ଭଲ ନଚେତ୍ ଯେ କୌଣସି ଗୋଟାଏ ପରୀକ୍ଷାରେ ପାସ୍ କଲେ ମଧ୍ୟ ଭଲ। ଏଣୁ ମୁଁ ମାଟ୍ରିକ୍ ଆଉ S.L.C.ଦୁଇଟା ଯାକ ପରୀକ୍ଷା ପାଇଁ ପଢ଼ିଲି।

ଏଇ ସମୟରେ ବଡ଼ଭାଇ ପୁଣିଥରେ ରେଙ୍ଗୁନ୍‌ରୁ ଆସି ପହଁଚିଲେ। ଏଥର ସେ ସାଙ୍ଗରେ ଆଣିଥିଲେ ବିଶ୍ୱକବି ରବୀନ୍ଦ୍ର ନାଥଙ୍କର "ଚୟନିକା" କବିତା ସଂକଳନ। ତାକୁ ନେଇ ମୁଁ ପଢ଼ିଲି। "ମୋର ପୁରାତନ ଭୃତ୍ୟ", "ଦୁଇବିଘା ଜମି" ଏ ଧରଣର ଅଳ୍ପ କେତୋଟି କବିତା ବୁଝି ପାରିଲି, ଆଉ କେତେକ ବୁଝି ପାରିଲି ନାହିଁ। ତଥାପି ଅନେକଥର ପଢ଼ିଲି। ମନରେ ଭାରି ଆନନ୍ଦ ଅନୁଭବ କଲି। ମୋ ନିଜର କବିତା ଲେଖିବା ପାଇଁ ଆଗ୍ରହ ଜନ୍ମିଲା।

ଏଥର ବଡ଼ଭାଇ, ବାବା, ମା'ଙ୍କୁ କହିଲେ ଯେ ତାଙ୍କର ସହୋଦର ଜଣେ ସାନଭାଇକୁ ଏବଂ ମୋତେ ସାଙ୍ଗରେ ନେଇ ରେଙ୍ଗୁନ ଯିବେ। ତାଙ୍କର ନିଜର ସାନଭାଇ ବୟସରେ ମୋଠାରୁ ବଡ଼, ମାଇନର ଫେଲ୍

Matric ର test ପରୀକ୍ଷା ଆରମ୍ଭ ହେଲା । Muslim Seminary ରେ ମୁଁ ୧୦ମ ଶ୍ରେଣୀରେ ପଢ଼ିଲା ଦିନୁଁ ସବୁ ପରୀକ୍ଷାରେ ପ୍ରଥମ ହେଇ ଆସୁଥିଲି । ଏଇ ୧୧ଶ ଶ୍ରେଣୀର test ପରୀକ୍ଷାରେ ମୁଁ ତୃତୀୟରେ ରହିଲି । Headmaster ବିରକ୍ତ ହେଇ କହିଲେ, ତୁ ଏଥର ଭଲ କରି ପାରିଲୁ ନାହିଁ ।

ମୋର ଗୋଟାଏ ଦୋଷ, ମୁଁ ପରୀକ୍ଷାରେ ଲେଖୁଥିବି, ଯଦି ଶୁଣିଛି, ସ୍କୁଲ ପଡ଼ିଆରେ ବଲ୍ ପଡ଼ିଲା ମୁଁ ପରୀକ୍ଷାରେ ଯେତିକି ଲେଖିଥିବି ସେତିକିରେ ଖାତା ଦେଇ ଚାଲି ଆସେ । ଏଥିପାଇଁ headmaster ମୋତେ କେତେଥର ବାଧା ଦେଇ କହିଛନ୍ତି, ଲେଖ୍ ବସି, ବାହାରିଲା ଖାତା ପକେଇ ଦେଇ ଖେଳିବାକୁ । ମୁଁ ପୁଣି ବସି ଲେଖେ ।

Test ପରୀକ୍ଷାରେ sent up ହେଲି । ଟଙ୍କା ଦାଖଲ ହେଲା December ମାସରେ । Matric ପରୀକ୍ଷା ହବ February ୧୯୩୦, ପଢ଼ାରେ ଲାଗିଲି । ସବୁ ଛାଡ଼ି ଦେଲି । Sports, football ଖେଳ ସବୁ ବନ୍ଦ, କେବଳ ପଢ଼ିଲି । ବାବା, ମା ମୋର ପଢ଼ା ଦେଖି ବେଳେବେଳେ କହିଲେ, କିରେ, କୁଆଡ଼େ ଯାଉନୁ ବୁଲି ଆସିବୁ, ସବୁବେଳେ କ'ଣ ପଢୁଛୁ ?

ମୁଁ କୁଆଡ଼େ ଆଉ ଗଲି ନାହିଁ । । ବାବା, ମା, ବଡ଼ଭଉଣୀ, ଜେଠା ସମସ୍ତେ ମୋ ଉପରେ ଖୁସିଥାନ୍ତି । ତା'ର କାରଣ ହଉଛି ମୁଁ ଆଗେ ଭଲ ପଢୁ ନଥିଲି କି ପଢାରେ ମନ ଦଉ ନଥିଲି । ଏବେ ଭଲ ପଢୁଛି ପୁଣି ପଢିବାରେ ଭାରି ଆଗ୍ରହ । ମୁଁ matric final ପରୀକ୍ଷା ପାଇଁ ପ୍ରସ୍ତୁତ ହଉଛି । ଏଇ ସମୟରେ ଜେଠା ଦିନେ ସପରିବାରେ ଆସି ଆମ ବସାରେ ପହଁଚିଲେ । ମୁଁ ଯେ Talcher ଖେଳିବାକୁ ଯାଇଥିଲି ଜେଠା ଜାଣିଥିଲେ । ଏଣୁ ଜେଠା ମୋତେ ପଚାରିଲେ, ହଇରେ, ତୁ ଯେ Talcher ଯାଇଥିଲୁ ଖେଳିବାକୁ ହାରିଲୁ ନା ଜିତିଲୁ ? ମୁଁ କହିଲି, ଜିତିଲି । ପୁଣି ପଚାରିଲେ, କ'ଣ ପାଇଲୁ ? ମୁଁ ସେଇଠୁଁ Talcher Cup ଆଣି ଦେଖେଇଲି । ସେତେବେଳେ Talcher Cup ମୋ ପାଖରେ ଥିଲା । ମୁଁ Cup ଆଣିଥିଲି ବାବା, ମା'ଙ୍କୁ ଦେଖେଇବା ପାଇଁ । ଜେଠା Cup ଦେଖି କହିଲେ, ଯାକୁ କ'ଣ ରଖିବୁ ? ମୁଁ କହିଲି ନା, ଏଥିରେ ନାଁ ଲେଖି ଛ'ମାସ ପରେ ଫେରେଇ ଦବାକୁ ହବ । ଜେଠା ଏକଥା ଶୁଣି କହିଲେ, ଫେରେଇ ଦବୁ ? ତା'ହେଲେ ଲାଭ କ'ଣ ହେଲା ?

ଏଇଠି ଗୋଟିଏ ଘଟଣା ମୋର ମନେ ପଡୁଛି । ଘଟଣା ହେଲା, ଥରେ କିଲ୍ଲା ପଡ଼ିଆରେ ଗୋଟିଏ football match ଦେଖେଇବା ପାଇଁ ଜେଠାଙ୍କୁ ନେଇ football ଖେଳର ସବୁ କଥା ବୁଝେଇ ଜେଠାଙ୍କୁ କହିଲି, ତୁମେ ଦେଖୁଥା, ମୁଁ ପୁଣି ଆସିବି । ମୁଁ ଅନ୍ୟ ଆଡ଼େ ଖେଳିବାକୁ ପଳେଇଲି । କିଛି ସମୟ ପରେ ଆସି ଦେଖେ, ଯେଉଁଠି match ଦେଖିବା ପାଇଁ, ଜେଠାଙ୍କୁ ଠିଆ କରେଇ ଯାଇଥିଲି, ସେଠି ଜେଠା ନାହାନ୍ତି । ଯେତେ ଯୁଆଡ଼େ ଖୋଜିଲି, ଆଉ ପାଇଲି ନାହିଁ । ମୁଁ ବୁଝି ପାରିଲି, ଜେଠା ଘରକୁ ଚାଲି ଯାଇଛନ୍ତି ।

ମୁଁ ଘରକୁ ଫେରି ଜେଠାଙ୍କୁ ପଚାରିଲି, ତୁମେ ଚାଲି ଆସିଲ କାହିଁକି ? ଜେଠା କହିଲେ, ହଇରେ ସେ କି ଖେଳ ? ତୋତେ କ'ଣ ଏତେ ଭଲ ଲାଗୁଛି ? ସେ ବଲ୍‌ଟା ସେ ଜାଲ ଭିତରେ ପଡ଼ିଗଲାରୁ "ହୋ" କରି ଗୁରାଏ ପାଟି କରୁଛନ୍ତି । ଏଇ ଖେଳ ? ଫୁଟବଲ୍ ଖେଳ ବିଷୟରେ ଜେଠାଙ୍କର ଇମିତି ମନ୍ତବ୍ୟ ଶୁଣି ମୋତେ ହସ ମାଡ଼ିଲା । କିଛି ଯଦି କହିବି, ତା'ହେଲେ ଗାଳି । ଏଣୁ ଚୁପ୍ ରହିଲି ।

Matric final ପରୀକ୍ଷା ପାଇଁ ତ ସବୁବେଳେ ପଢୁଥାଏ । ଏଇ ସମୟରେ କଟକକୁ "ମିସ୍ ଫରିଦା" ନାମ୍ନୀ ଜଣେ ନର୍ତ୍ତକୀ ଆସି Halmook ସିନେମା ହଲ୍‌ରେ ତା'ର ନୃତ୍ୟ ପ୍ରଦର୍ଶନ କଲା । କଟକବାସୀ ଦଉଡ଼ିଲେ ଦେଖିବାକୁ, ଆମ ଘରୁ ବାବା, ମା ଦଉଡ଼ିଲେ, ମୋତେ ଡ଼ାକିଲେ, ମୁଁ ମନା କଲି । ବାବା, ମା ନାଚ ଫାଷ୍ଟ୍ ସୋ'ରେ ଦେଖି ଆସି ମୋ ସଙ୍ଗେ ଏକା ଜିଦ୍ ଲଗେଇଲେ, ଯା' ତୁ ଦେଖି ଆ । ବାବା ଟିକେଟ୍ କରିବା

ପାଇଁ ପଇସା ଦେଲେ । ମୁଁ ବାଧ୍ୟ ହୋଇ ପଢ଼ା ଛାଡ଼ି ମିସ୍ ଫରିଦାର ନାଚ ସେକେଣ୍ଡ ସୋ'ରେ ଗଲି ଦେଖିଲି, ମିସ୍ ଫରିଦାର ନାଚ ମନୋମୁଗ୍ଧକର । ସେକେଣ୍ଡ ସୋ ଶେଷ ହେଲା ପରେ ଘରକୁ ଫେରି ଆସି ଖାଇଲି, ଯେ ଯୁଆଡ଼େ ଶୋଇଲେ, ମୁଁ ପୁଣି ପଢ଼ିବାରେ ଲାଗିଲି । ଏଇ ସମୟରେ କେତେ ଦିନ ଯାଇ ଜୟରାମ ବାବୁଙ୍କ ପାଖରେ ମୁସ୍‌ଲିମ୍ ସେମିନାରି ହତାରେ English subject ପାଇଁ ଟିଉସନ ହେଲି । ସେତେବେଳେ ଜୟରାମ ବାବୁ କେତେଗୁଡ଼ିଏ ଆମରି ସ୍କୁଲର matric ପରୀକ୍ଷାର୍ଥୀ ପିଲାଙ୍କୁ ସକାଳବେଳା ଟିଉସନ୍ କରୁଥିଲେ । ମୋରି English subject ସେତେ ଭଲ ହଉ ନଥିଲା । ବହୁତ ଦିନ ପଢ଼ା ଛାଡ଼ି ଇଂରାଜୀ ସବୁ ପୋଡ଼ି ଖାଇଥିଲି । ଦୁଇ ବର୍ଷ ପୁଣି matric ପଢ଼ିବାକୁ ଯାଇ ଇଂରାଜୀ ବା କେତେ ବଦଳିବ ? ସ୍କୁଲ ପରୀକ୍ଷାରେ ଇଂରାଜୀରେ ଭଲ ହଉଥିଲେ ମଧ୍ୟ ମନରେ ସେତେ ସାହସ ପାଉ ନଥାଏ । ଏଣୁ ଜୟରାମ ବାବୁଙ୍କ ପାଖରେ English subject ରେ ଟିଉସନ ହେଲି । English ଛଡ଼ା ଅଙ୍କ ମଧ୍ୟ ତାଙ୍କଠାରୁ ଅନେକ ସମୟରେ ବୁଝେ । ଜୟରାମ ବାବୁଙ୍କ ପାଖରେ ଟିଉସନ ହବା ଭିତରେ ପାଠ ପଢ଼ା ତ ହୁଏ, ପଢ଼ା ଶେଷକୁ ପୁଣି football ଖେଳ ବିଷୟ କିଛି କିଛି ଆଲୋଚନା ହୁଏ ।

Matric final ପରୀକ୍ଷା ମାତ୍ର ପାଞ୍ଚ ଦିନ ଅଛି । ଏଇ ସମୟରେ ଗୋଟାଏ ହାସ୍ୟକର ଘଟଣା ଘଟିଲା । ଘଟଣା ହେଲା, ଦିନେ ସକାଳେ ଦାଣ୍ଡ ଆଡ଼େ ପାହାଚ ତଳେ ମୁଁ ଚେୟାର ଟେବୁଲ ପକେଇ ଖରାପିଠିଆ ହୋଇ ବସି ପଢୁଛି ଅଳ୍ପ ଦୂରରେ ସାମନାରେ ଖରାରେ ଆମର ଗୋଟାଏ ଗାଈ ବନ୍ଧା ହୋଇଥାଏ । ଏଇ ସମୟରେ ମା ଆସି କହିଲେ, ଗଲୁ, ସୋରିଷତେଲ ଆଣିଦବୁ ।

ମୁଁ ପଇସା ଆଉ ସୋରିଷତେଲ ବୋତଲ ଧରି ସାହି ମୁଣ୍ଡ ଦୋକାନକୁ ବାହାରି ଗଲି । ମୁଁ ସେଦିନ ସକାଳେ Patna University ର poetry selection ଏବଂ ତା'ର meaning ବହିକୁ ପାଖରେ ରଖି ପଢୁଥିଲି । ସେ ବହି ଦି'ଖଣ୍ଡକୁ ବନ୍ଦ କରି ଟେବୁଲ ଉପରେ ଥୋଇ ଦେଇ ଚାଲିଗଲି । ଅଳ୍ପ ସମୟ ପରେ ଫେରି ଆସି ଦେଖେ, ଅଳ୍ପ ଦୂରରେ ବନ୍ଧା ହୋଇଥିବା ଗାଈ ତା' ବେକ ବଢ଼େଇ ମୋର poetry selection ର meaning ବହିକୁ ଟାଣି ନେଇ ସେଥିରୁ ତିନିଭାଗ ଖାଇ ସାରିଛି । ପୁଣି reflective poems ର ପୂରାପୂରି ଅଂଶ ତକ । ମୁଁ ଦେଖି ମୋତେ ଯେତେ ଆଶ୍ଚର୍ଯ୍ୟ ଲାଗିଲା, ସେତିକି ହସ ମାଡ଼ିଲା, ସେତିକି ଗାଈ ଉପରେ ରାଗ ହେଲା, କ'ଣ କରେ ? ପରୀକ୍ଷା ମାତ୍ର ପାଞ୍ଚଦିନ ରହିଲା, ବାବାଙ୍କୁ କହିଲେ ବାବା କ'ଣ ଆଉ ବହି କିଣି ଦେବେ ? କ'ଣ କରିବି ? ପୁଣି ଅସଲ ଅଂଶତକ ଖାଇଦେଲା ! ଏ ଘଟଣା ମା'ଙ୍କୁ କହିଲି, ଘର ଭିତରେ ତେଲ ବୋତଲ ଥୋଇ ଦେଇ ଆସି ଗାଈକୁ ଗୁରାଏ ବାଡ଼େଇଲି, ଭାବିଲି ଏତେ ଖାଇ ମଧ୍ୟ ପେଟ ପୂରିଲାନି, ମୋର ବହିକୁ ଖାଇବାକୁ ଥିଲା ? ମନ ଭିତରେ କେମିତି ଗୋଟାଏ ଅଶୁଭ ଘଟଣାର ଖିଆଲ ଚାପିଲା । ଇଂରାଜୀରେ ତ ମୋର ଟିକିଏ ସାହସ କମ୍, ପୁଣି ସେଇ ବହିଟା ଗାଈ ଖାଇ ବସିଲା ! ଗାଈଟାକୁ ମାରିବା ଦ୍ୱାରା ମନରେ ମଧ୍ୟ ଦୁଃଖ ଲାଗିଲା, ଗାଈ କ'ଣ ବୁଝିଲା ? ସେ କାହିଁକି ମାଡ଼ ଖାଇଲା ? ମୋର କି ବିପଦ !

Matric ପରୀକ୍ଷା ଯେଉଁ ଦିନ ହବ, ସେଦିନ ତ Ravenshaw Collegiate ସ୍କୁଲକୁ ଯିବାର କଥା, କାରଣ ସେଇଠି matric ପରୀକ୍ଷା ହବ । Matric ପରୀକ୍ଷା ଦବାକୁ ଯିବି । ଏ ତ ମୋ ଜୀବନରେ ଅଦ୍ଭୁତ ଘଟଣା । ବହୁତ ପୂର୍ବ କଥା ମନେ ପଡୁଥାଏ । ଠିକ୍ ସମୟରେ ଖାଇ ପିଇ ପୂର୍ଣ୍ଣକୁମ୍ଭ ଦେଖି ବାବାଙ୍କ ସାଙ୍ଗରେ ବାହାରିଲି Ravenshaw Collegiate ସ୍କୁଲକୁ । ବାବା ବାଟରେ ଖଣ୍ଡେ ବଗି ଗାଡ଼ି ଠିକ୍ କଲେ, ସେଇଥିରେ ବାବା, ମୁଁ ଦିହେଁ ପରୀକ୍ଷା କେନ୍ଦ୍ରକୁ ଗଲୁ । ମୁଁ ଏକା ସାଇକେଲ୍‌ରେ ଯିବାକୁ ବାହାରିଲା ବେଳକୁ ବାବା ରାଜି ହେଲେ ନାହିଁ । ଏଣୁ ବଗି ଗାଡ଼ିରେ ଗଲୁ । Collegiate ରେ ପହଁଚିଲା ବେଳକୁ ପିଲାମାନେ ମେଳା ମେଳା ହଉଛନ୍ତି । ପରୀକ୍ଷା ଆରମ୍ଭ ହବାକୁ ଅଳ୍ପ ସମୟ ଅଛି ମୁଁ ପରୀକ୍ଷାଗାର ଭିତରେ ପଶିଲି । ବାବା ଫେରି ଗଲେ । ସେତେବେଳେ ଆଜିକାଲି ପରି matric ପରୀକ୍ଷାରେ ପୁଲିସ ରହୁ ନଥିଲେ କି ମାଇକ୍ ସାହାଯ୍ୟରେ ଉତ୍ତର କୁହାଯାଉ ନଥିଲା । କିମ୍ବା copy କରିବା ପାଇଁ

ପରୀକ୍ଷାର୍ଥୀଙ୍କୁ ସାଙ୍ଗରେ ଛୁରା ନବାକୁ ପଡୁନଥିଲା। ପରୀକ୍ଷାରେ ଯେ ଗାର୍ଡ଼ ରହୁଥିଲେ, ତାଙ୍କୁ ମନେ ମନେ ଠାକୁରଙ୍କୁ ଡ଼ାକି ଆସିବାକୁ ପଡୁ ନଥିଲା, ପ୍ରଭୁ କେମିତି ଆଜି ପରୀକ୍ଷାରୁ ଭଲରେ ଭଲରେ ଫେରି ଆସେ।

ଆଜି କାଲି ତ ପରୀକ୍ଷାରେ ଯେ ଗାର୍ଡ଼ ହେଲେ, କପି ଧଇଲେ, ଉତ୍ତମ ମଧ୍ୟମର କିମ୍ବା ରକ୍ତାକ୍ତ ହବାର ଖୁବ୍ ସମ୍ଭାବନା। ସେଦିନ ତ ଗାର୍ଡ଼ର ଘାତଚନ୍ଦ୍ର ଯୋଗ। ସ୍ୱାମୀ ଯେ ପର୍ଯ୍ୟନ୍ତ ଗାର୍ଡ଼ ହେଇ ଭଲରେ ନ ଫେରିଛନ୍ତି, ଘରେ ସ୍ତ୍ରୀ ଦୋ' ଦୋ' ପାଞ୍ଚ ହଉଥିବେ। ଆମେ ପରୀକ୍ଷା ଦେଲା ବେଳେ ଏସବୁ କିଛି ନଥିଲା। ଗାମ୍ଭୀର୍ଯ୍ୟପୂର୍ଣ୍ଣ ପରିବେଶ ମଧ୍ୟରେ ପରୀକ୍ଷା ଚାଲିଛି। କେବଳ ଗାର୍ଡ଼ଙ୍କ ଜୋତାର ଶବ୍ଦ ଆଉ ଖାତାର କାଗଜ ଓଲଟେଇବାର ଫଡ଼ ଫଡ଼ ଶବ୍ଦ ପୁଣି ହାତଟଣା ପଙ୍ଖାର ଶବ୍ଦ ଛଡ଼ା ଆଉ କିଛି ନାହିଁ। ସବୁ ନିଃଶବ୍ଦ, ନୀରବ।

ପ୍ରଥମ ଦିନ ଇଂରାଜୀ ପରୀକ୍ଷା। ସମସ୍ତଙ୍କୁ ପ୍ରଶ୍ନ ଦିଆଗଲା। ସବୁ ଚୁପ୍‌ଚାପ୍। ପିଲାଏ ଲେଖା ଆରମ୍ଭ କଲେ। ମୋର ଯେଉଁ ରୁମ୍‌ରେ ସିଟ୍ ପଡ଼ିଥିଲା, ସେଦିନ ସେଠି ପି.ଏମ୍.ଏକାଡ଼େମୀର ଶିକ୍ଷକ ବସନ୍ତ ବାବୁ ଗାର୍ଡ଼ ଥିଲେ। ସେ ମୋତେ ଆଗରୁ ପି.ଏମ୍.ଏକାଡ଼େମୀରେ ପଢ଼ିବା ବେଳୁ ଚିହ୍ନି ଥିଲେ। ଏଠି ତାଙ୍କର ମୋର ପୁଣି ପ୍ରଥମ ଥର ଭେଟ ହେଲା। କିନ୍ତୁ ନ ଚିହ୍ନିଲା ପରି କାରଣ ମୁଁ ପରୀକ୍ଷାର୍ଥୀ, ସେ ଗାର୍ଡ଼। ପ୍ରଥମ ଦିନହିଁ ଇଂରାଜୀ ଫାଷ୍ଟ୍ ପେପରରେ ମୁଁ ଖରାପ କରି ବସିଲି। Letter writing ରେ ଗୋଟାଏ ଭୁଲ କରି ବସିଲି। ପୁଣି essay ଯାହା ପଡ଼ିଥିଲା, ତାକୁ ଲେଖୁ ଲେଖୁ ସମୟ ଅଭାବରେ ପ୍ରାୟ ଅସମ୍ପୂର୍ଣ୍ଣ ରହିଗଲା। ପ୍ରଥମ ପରୀକ୍ଷାର ଶେଷ ଘଣ୍ଟା ବାଜିଲା, ଖାତା ଦେଇ ବାହାରକୁ ଆସିଲି। କିଛି ସମୟ ପରେ ପୁଣି ଇଂରାଜୀ ସେକେଣ୍ଡ୍ ପେପର୍ ପରୀକ୍ଷା ଆରମ୍ଭ ହବ। ପଦାରେ ଆସି ବୁଲିଲି। Muslim Seminary ର football playerଙ୍କ ମଧ୍ୟରୁ ମୁଁ ଏକା ଯାଇଥାଏ matric ପରୀକ୍ଷା ଦବାକୁ। ସେଠି ଅନ୍ୟାନ୍ୟ ସ୍କୁଲର ଅଳ୍ପ ସଂଖ୍ୟକ player ମାନେ ଦେଖା ହେଲେ। Collegiate ର କେତେକ player ଙ୍କ ସହିତରେ ଦେଖା ହେଲା, ତାଙ୍କ ସହିତରେ ଖେଳରେ ମୋର ଅନେକ ସଂଘର୍ଷ ଘଟି ଯାଇଥିଲା। ଏଣୁ ସେମାନେ କେବଳ ମୋତେ ଚାହୁଁଥାନ୍ତି। ଆଉ କଥାବାର୍ତ୍ତା ନାହିଁ।

କିଛି ସମୟ ପରେ ଇଂରାଜୀ ସେକେଣ୍ଡ୍ ପେପର ପରୀକ୍ଷା ଆରମ୍ଭ ହେଲା। ଏ ପରୀକ୍ଷାରେ ଭଲ ହେଲା। ଘରକୁ ଫେରିଲି, ବାବା ପଚାରିଲେ, କେମିତି ହେଲା? ମୁଁ କହିଲି, ଭଲ ହେଲା କିନ୍ତୁ ମନ ଭିତରେ ଫେଲ୍ ହବା ଭୟ ରହିଥାଏ। ପୁଣି ଭାବୁଥାଏ, ଉଭୟ ପେପର୍ ମିଶି ଇଂରାଜୀରେ ପାସ୍ ହେଇ ଯିବ।

କେତେ ବର୍ଷ ପାଠ ଛାଡ଼ି ବୁଲିବା ଭିତରେ ଇଂରାଜୀ ଭାଷାର ସ୍ମୃତି ତର୍ପଣ ବି କରି ନାହିଁ। ଏବେ ଏ ଦୁଇ ବର୍ଷ ପଢ଼ିବା ଭିତରେ ଇଂରାଜୀରେ ବିଶେଷ କ'ଣ ବା ପରିବର୍ତ୍ତନ ହେଇଛି? ଯା ହେଇଛି ସେ ଛୋଟିଆ କାନି ପରି କୁଆଡ଼ିକି ପାଉ ନାହିଁ। ସର୍କସରେ ତାର ଉପରେ ଚାଲିବା ଭଳି। ଯା ହଉ, ଇଂରାଜୀ ପରୀକ୍ଷା ପରେ ଆଉ ସବୁ ବିଷୟରେ ଭଲ ହେଲା। ଓଡ଼ିଆ ସାହିତ୍ୟରେ ବିଶେଷ ଭଲ ହେଲା। (Compulsory Oriya)

Matric ପରୀକ୍ଷା ସରିଲା। ବହୁତ ଦିନର ଉତ୍‌ଥାନ, ପତନ, ଆଶା, ନିରାଶା, ମାନ, ଅପମାନ, ଆକାଶ କୁସୁମ ସବୁ କିଛି ପାଶୋର ଗଲା। ବର୍ତ୍ତମାନ ମୁଁ matric ପରୀକ୍ଷା ଦେଇ ଫଳ ଅପେକ୍ଷାରେ ରହିଛି। ଏଣେ ପୁଣି ମୁଁ ଜଣେ ଭଲ football ଖେଳାଳୀ ଭାବରେ ପରିଚିତ ଏବଂ ଅପରିଚିତଙ୍କ ଆଖିରେ ସୁବିଦିତ, ପୁଣି sports ରେ ଆଗ୍ରହୀ। ଖେଳ ହେଲା ମୁଖ୍ୟ, ପାଠ ପଢ଼ା ଗୌଣ ତଥାପି ପାଠ ପଢ଼ାରେ ମଧ୍ୟ ବିଶେଷ ଆଗ୍ରହ, ନ ଖେଳିଲେ ଯେମିତି ଅଥୟ ଲାଗେ, ନ ପଢ଼ିଲେ ମଧ୍ୟ ସେମିତି ଅଥୟ ଲାଗେ।

Matric ପରୀକ୍ଷା ପରେ ପରୀକ୍ଷାର୍ଥୀମାନଙ୍କୁ ନେଇ କଟକ ରାମଚନ୍ଦ୍ର ଭବନରେ ଗୋଟାଏ ସମ୍ବର୍ଦ୍ଧନା ସଭା ହେଲା। କେତେକ ଗଣ୍ୟମାନ୍ୟ ବ୍ୟକ୍ତି ଆମରି ପରି ପିଲାଙ୍କୁ ବକ୍ତୃତା ଛଳରେ କେତେକ ଉପଦେଶ ଦେଲେ।

ମୁଁ ଯୋଗ ଦେଇଥିଲି । ତା'ପରେ କ'ଣ କରିବି ? ପାଠ ପଢ଼ା ନାହିଁ, ଖେଳ ନାହିଁ । ଏଣୁ ମୁଁ ଆଉ ଈଶ୍ୱର ସାହୁ ଦିହେଁ ସାଙ୍ଗ ହେଇ ଖାଲି ବୁଲିଲୁ । ମଝିରେ ମଝିରେ ଜୟରାମ ବାବୁଙ୍କ ମେସ୍‌ରେ ଯାଇ ଜୁଟି ଯାଉ । ସେଠି ପହଁଚିଲା ମାତ୍ରେ ଖାଲି ଖେଳର ଆଲୋଚନା ପଡ଼ିଯାଏ । ପୁଣି ଆଜି ଯଦି ବୁଲିବାକୁ ପଳେଇଲୁ ମହାନଦୀର ଆନିକଟ୍ ଆଡ଼େ ତ, କାଲି ପଳେଇଲୁ କାଠଯୋଡ଼ିର ବୁରୁଜ ଆଡ଼େ । କିନ୍ତୁ ଏ ବେକାର ବାରବୁଲା ଜୀବନକୁ ମହାନଦୀ ତା'ର ପ୍ରାକୃତିକ ସୌନ୍ଦର୍ଯ୍ୟରେ ଭୁଲେଇ ରଖି ପାରିଲା ନାହିଁ । ପାରିଲା କାଠଯୋଡ଼ି, ତା'ର ବାଲି ଉପରେ ଦୈନିକ ଗାନ୍ଧିଜୀଙ୍କ "ଲୁଣମରା ଅଭିଯାନ"ର ସଭାସମିତି ଦ୍ୱାରା । ସେତେବେଳେ ଦୈନିକ କାଠଯୋଡ଼ି ବାଲିରେ ସଭା ଚାଲି ଥାଏ । ଦଳ ଦଳ ହେଇ ଲୋକେ ସେଇଠୁଁ ଯାଉଥାନ୍ତି ଲୁଣ ମାରିବା ପାଇଁ ବାଲେଶ୍ୱର ଆଡ଼େ । ବ୍ରିଟିଶ ଅମଳ, ଛୁଇଁଲେ ଛ'ଘା । ସେଥିରେ ଯେ ଲୋକେ ସାହସ କରି ଆଇନ ଅମାନ୍ୟ କରି ଲୁଣ ମାରିବାକୁ ଯାଉଥାନ୍ତି । ଏ ବଡ଼ ଆଶ୍ଚର୍ଯ୍ୟ କଥା, ଯେଉଁ ଲୋକମାନେ ଯାଉଥାନ୍ତି ତାଙ୍କୁ ଲୋକଙ୍କର କେତେ ଅଭିନନ୍ଦନ, କେତେ ସହାନୁଭୂତି । ସେମାନଙ୍କର ବେକରେ ଫୁଲମାଳ । ପୁଣି ସେମାନେ ଷ୍ଟେସନକୁ ବାହାରିଲା ବେଳକୁ, ତାଙ୍କ ପଛରେ ଅସଂଖ୍ୟ ଲୋକ ଚାଲିଥାନ୍ତି । ପୁଣି କଟକ ସହରର ଷ୍ଟେସନକୁ ଯିବା ବାଟରେ ପ୍ରତି ଛକ ଜାଗାରୁ ସେଠାର କୀର୍ତ୍ତନିୟା ଦଳ ତାଙ୍କ ସଙ୍ଗେ କୀର୍ତ୍ତନ କରି ଷ୍ଟେସନକୁ ବାହାରୁଥାନ୍ତି, କି ଆନନ୍ଦ, କି ଉତ୍ତେଜନାପୂର୍ଣ୍ଣ ଶୋଭା ଯାତ୍ରା !

ମୁଁ, ଈଶ୍ୱର ସାହୁ ଦୈନିକ ଯାଇ ସନ୍ଧ୍ୟା ପୂର୍ବରୁ କାଠଯୋଡ଼ି ବାଲିରେ ପହଁଚିଯାଉ, ଯେତେବେଳେ ସେଠୁଁ ଲୁଣମରା ଅଭିଯାତ୍ରୀଦଳ ଷ୍ଟେସନକୁ ବାହାରନ୍ତି, ଆମେ ଦିହେଁ ତାଙ୍କ ପଛେ ପଛେ ଶୋଭାଯାତ୍ରାରେ ବାହାରି ଷ୍ଟେସନ୍ ପର୍ଯ୍ୟନ୍ତ ଯାଉ । ଷ୍ଟେସନ୍‌ରୁ ଲୁଣମରା ଅଭିଯାତ୍ରୀଙ୍କୁ ନେଇ ଗାଡ଼ି କଟକ ଷ୍ଟେସନ ଛାଡ଼ିଲେ, ଆମେ ଘରକୁ ଫେରୁ । ଏ ଗୋଟାଏ ଆମକୁ ଭଲ ମଉକା ମିଳିଗଲା । କଟକ ସେତେବେଳେ ସରଗରମ । ଦୈନିକ ଲୁଣ ମାରିବା ପାଇଁ କାଠଯୋଡ଼ି ବାଲିରୁ ଦଳ ଦଳ ହେଇ ବାଲେଶ୍ୱର ଯାଉଥାନ୍ତି । ଦିନେ ଶୁଣିଲୁ ଆଜି ଜଣେ medical student ପାଠ ଛାଡ଼ି ଲୁଣମରା ଅଭିଯାନରେ ଯୋଗ ଦେଇଛନ୍ତି । ଭାରି କୌତୂହଳ ଲାଗିଲା । ମୁଁ, ଈଶ୍ୱର ସାହୁ ସେଦିନ ଯାଇ କାଠଯୋଡ଼ି ବାଲିରେ ଅନେକ ଆଗରୁ ପହଁଚିଗଲୁ । ଭାରି ଇଚ୍ଛା ଦେଖିବୁ, ସେ medical student କେମିତିଆ ଦେଖିବାକୁ ? ଆଶ୍ଚର୍ଯ୍ୟ ମଧ୍ୟ ଲାଗିଲା ଶୁଣି medical ରେ ୨ୟ ବାର୍ଷିକ ଶ୍ରେଣୀରୁ ପାଠ ଛାଡ଼ି ଲୁଣମରାରେ ଯୋଗ ଦେଲା ! କିଏ ମ ସେ ?

କାଠଯୋଡ଼ି ବାଲିରେ ଯାଇ ଦେଖିଲୁ, ଦୈନିକ ଯେମିତି ଦଳେ ଯାନ୍ତି, ସେମିତି ଦଳେ ଫୁଲ ମାଳ ପିନ୍ଧି ସଜବାଜ ହେଇ ବାହାରିଛନ୍ତି । ତାଙ୍କ ଭିତରେ ସେ medical student କୁ ମଧ୍ୟ ଦେଖିଲୁ । ବେଶ୍ ସୁନ୍ଦର ଦେଖିବାକୁ, ଚିଲ୍‌ହା ଆଖି, ଗୌର ବର୍ଣ୍ଣ, ବଳିଷ୍ଠ । ସେଦିନ ସନ୍ଧ୍ୟା ପରେ ଯେତେବେଳେ ସେମାନେ କଟକର ପ୍ରଧାନ ରାସ୍ତା ଦେଇ ଶୋଭାଯାତ୍ରାରେ କଟକ ଷ୍ଟେସନ୍‌କୁ ବାହାରିଲେ, ମୋର ସେଦିନ ମନ କାହିଁକି ଡ଼ାକିଲା, ମା'ଙ୍କୁ ଥରେ ଏ ଶୋଭାଯାତ୍ରା ଆଉ ସେ medical student କୁ ଦେଖେଇବି । ମୁଁ, ଈଶ୍ୱର ସାହୁକୁ କହି ଗୋଟାଏ ନିକଟ ବାଟ ଦେଇ ଘରେ ପହଁଚି ମା'ଙ୍କୁ କହିଲି, ମା' ଦେଖିବ ଆସ, ଆଜି ଜଣେ medical student କେମିତି ଲୁଣ ମାରିବାକୁ ଯାଉଛି, ଯଦି ଦେଖିବ ତ ଶୀଘ୍ର ଆସ ମୋ ସାଙ୍ଗରେ ।

ମା' ମଧ୍ୟ ସାଗ୍ରହେ ମୋ ସଙ୍ଗେ ବାହାରି ପଡ଼ିଲେ । ମୁଁ ମା'ଙ୍କୁ ନେଇ ଷ୍ଟେସନ୍‌କୁ ଚାଲିଗଲି । ସେଠି ଯାଇ ଅଳ୍ପ ସମୟ ଅପେକ୍ଷା କଲା ପରେ, ଶୋଭାଯାତ୍ରା ଜୟଧ୍ୱନି, କୀର୍ତ୍ତନ ସହକାରେ ଆସି medical student ଷ୍ଟେସନ୍‌ରେ ପହଁଚିଲା । ମୁଁ ସେ ଲୋକାରଣ୍ୟ ଭିତରେ ମା'ଙ୍କୁ ସେ medical student କୁ ଆଉ ଚିହ୍ନେଇ ପାରିଲି ନାହିଁ । କିଛିକ୍ଷଣ ପରେ ଗାଡ଼ି ଆସିଲା, ଢହ୍ଲ ପଡ଼ିଥାଏ, ଅଭିଯାତ୍ରୀ ଦଳ ଯାଇ- ଗାଡ଼ିରେ ଉଠିଲେ । ସେତେବେଳେ ସେ ଗାଡ଼ିର ଗୋଟିଏ ଦୁଆର ମୁହଁରେ ଠିଆ ହେଇଥାଏ । ବେକରେ ଗଦାଏ ଫୁଲମାଳ । ମୁଁ ମା'ଙ୍କୁ ଚିହ୍ନେଇ ଦେଲି, ଏଇ ସେ medical student, ସେଠି ଠିଆ ହେଇଛି ।

ଗାଡ଼ି ଛାଡ଼ିବାକୁ ବିଳମ୍ବ ଥାଏ । ଷ୍ଟେସନ୍‌ର ବାହାର ପଟେ ଅସଂଖ୍ୟ ଲୋକ । ମୁଁ ଏବଂ ମା' ପ୍ଲାଟଫର୍ମର ବାହାର ବାଡ଼ ଏପଟେ ଠିଆ ହେଇଥାଉ । ଏଇ ସମୟରେ ଦୈବାତ୍ ସେ medical student ଗାଡ଼ିରୁ ଓଲେହି ଆସି ହାତଯୋଡ଼ି ଲୋକଙ୍କୁ ସମ୍ବୋଧନ କରି କହିଲା, ଭାଇମାନେ ଆପଣମାନେ ଆଶୀର୍ବାଦ କରନ୍ତୁ, ମୁଁ ଯେମିତି ସେଇଆଡ଼େ ମରିଯାଏ ।

ଲୋକମାନେ ଏକଥା ଶୁଣି ସମସ୍ତେ ସମସ୍ୱରରେ କହି ଉଠିଲେ, ଆହା ସେ କଥା କାହିଁକି କହୁଛନ୍ତି ? ସେ କଥା କାହିଁକି ତୁଣ୍ଡରେ ଧରୁଛନ୍ତି ।

ମା ଏତିକି ବେଳେ ସେ medical student କୁ ଜହ୍ନ ଆଲୁଅରେ ଭଲ ଭାବରେ ଦେଖି ପାରିଲେ । ଗାଡ଼ି ଛାଡ଼ିଲା । ଅଭିଯାତ୍ରୀ ଦଳ କଟକରୁ ବିଦାୟ ନେଲେ ।

ମା, ମୁଁ ଘରକୁ ଫେରିବା ବାଟରେ ମା, ମୋତେ କାନ୍ଦ କାନ୍ଦ ହେଇ ପଚାରିଲେ, ସେ କା'ପୁଅ ରେ ? କାହିଁକି ସେ ଲୁଣ ମାରିବାକୁ ଗଲା ? ତାକୁ ତ ମାରିଦେବେରେ ।

ଏଇ medical student ଙ୍କ କଥା ପରେ ଲେଖିବି ।

ଦୈନିକ ଏଇ ଲୁଣମରା ଅଭିଯାତ୍ରୀଙ୍କୁ ଦେଖି ଦେଖି ମୋର ମନ ଡ଼ାକିଲା, ମୁଁ ଲୁଣ ମାରିବାକୁ ଚାଲିଯିବି । ସେତେବେଳେ ମନେ ହଉଥାଏ, ଯେମିତି ଭାରତର ସ୍ୱାଧୀନତାକୁ ଏଇ ଲୁଣ ମାରୁ ମାରୁ ସମୁଦ୍ର କୂଳରୁ କାଖେଇ କୁଣ୍ଢେଇ ନେଇ ଆସିବି । ମୋର ମନ ଭାରି ଉଦ୍‌ବିଗ୍ନ ହେଲା । ମୁଁ ଯିବି । ଈଶ୍ୱର ସାହୁକୁ ଏ କଥା କହିଲି । ଚାଲ ତୁ, ମୁଁ ଦିହେଁ ଲୁଣ ମାରିବାକୁ ଯିବା ।

ଈଶ୍ୱର ସାହୁ ମୋ କଥା ଶୁଣି କହିଲା, ହଇରେ, ତୁ ବାପା, ମା'ର ଗୋଟାଏ ପୁଅ, ତୁ କ'ଣ ଲୁଣ ମାରିବାକୁ ଯିବୁ ? ସିଆଡ଼େ ଯୋଉ ମାଡ଼ ଦିଆ ହଉଛି, ସେଠୁ ବଞ୍ଚି ଫେରିବା ଆଶା କମ୍ । ତୋତେ ତୋ ବାପ, ମା ଭରସା କରିଛନ୍ତି । ତୁ ଲୁଣ ମାରିବାକୁ ଯିବୁ ?

ମୁଁ ଭାବିଲି, ସତ କଥା, ବାପା ମା ତ କଦାପି ମୋତେ ଲୁଣ ମାରିବାକୁ ଛାଡ଼ିବେ ନାହିଁ । ଯଦି ଲୁଚି ପଳାଏ, ବାବା, ମା'ଙ୍କ ପ୍ରତି ଅବିଚାର ହବ । ପୁଣି ମନେ ହେଲା, matric ପରୀକ୍ଷା ଦେଇଛି, ପାସ୍ କରିବି, medical ରେ ପଢ଼ିବି, କେତେ football match ଖେଳିବି । ଲୁଣ ମାରିବାକୁ କିଏ ଯାଉଛି ? ଯେ ଯାଉଛନ୍ତି, ଯା'ନ୍ତୁ ।

ମୋର ଲବଣ ସତ୍ୟାଗ୍ରହ ସେଇଠି ଶେଷ ହେଲା କିନ୍ତୁ ଯେଉଁଦିନ ସେହି କାଠଯୋଡ଼ି ବାଲିରେ ଦେଖିଲି, ବିଲାତି ଲୁଗା ସବୁ ପୋଡ଼ା ହେଲା, ମାଳତୀ ଚୌଧୁରୀ ଭାରତର ସ୍ୱାଧୀନତା ପଣ କରି ତାଙ୍କର ମୁଣ୍ଡର ବାଳକୁ ମୁକୁଳା କରିଦେଲେ, ସେହିଦିନ ମୁଁ ସ୍ଥିର କଲି, ମୁଁ ଏଣିକି ଖଦଡ଼ ପିନ୍ଧିବି । ଆଉ ବିଲାତି ଲୁଗା କିମ୍ବା କୌଣସି ଜିନିଷ ବ୍ୟବହାର କରିବି ନାହିଁ ।

ସେଇ କାଠଯୋଡ଼ି ବାଲିରେ ଶୁଣିଲି, କେତେ ବଡ଼ ବଡ଼ ନେତାଙ୍କ ବକ୍ତୃତା, କେତେ ପିଲା ନେତାଙ୍କର ବକ୍ତୃତା, ଏଇ ପିଲା ନେତା, ଯାହାଙ୍କୁ ମୁଁ ଜାଣେ । ଯେଉଁମାନେ ୧୦ମ ଶ୍ରେଣୀରୁ ଆଉ ଆଗେଇ ପାରିଲେ ନାହିଁ । କିଏ matric test ପରୀକ୍ଷାରେ sent-up ନ ହେଇ ପାରି କୁଆଡ଼େ ପଳେଇ ଥିଲେ । ସେମାନେ ଆଜି ବେଶ୍ ଦି'କଥା କହି ପାରୁଛନ୍ତି, ଯାହାଙ୍କର କଥା କହିଲେ ପାଟି ଲାଗୁଥିଲା, ସେମାନେ ଆଜି ଗଜା ନେତା ପାଲଟି ବଡ଼ ବଡ଼ ନେତାଙ୍କର ଚେଲା ହେଇ ଦି'କଥା ଏତେ ଲୋକଙ୍କ ସାମନାରେ ବେଶ୍ କହି ଶିଖିଛନ୍ତି । ବହୁକାଳ ଏମାନଙ୍କର ଦେଖା ଦର୍ଶନ ନଥିଲା । ଜଣେ ବଡ଼ ନେତାଙ୍କୁ ଦେଖିଲି, ସେ ଏଇ ଧରଣର ଦୁଇଟି ଗଜା ନେତାଙ୍କ ଗହଣରେ ଆସି, ତାଙ୍କ କାନ୍ଧ ଉପରେ ଭରା ଦେଇ ବକ୍ତୃତା ଦେଲେ । ତା'ପରେ ଏଇ ଚେଲା ନେତା ଦି'ଜଣ ମଧ୍ୟ ବକ୍ତୃତା ଦେଲେ । ମୋତେ ଭାରି ଆଶ୍ଚର୍ଯ୍ୟ ଲାଗିଲା । ବାଃ, ବେଶ୍ ଯା ତା' କରି ଦି'କଥା କହି ପାରୁଛନ୍ତି ।

Matric ପରୀକ୍ଷାର ଫଳ ବାହାରି ନ ଥାଏ । ଏଇ ସମୟରେ ଜାଗର ମେଳା ପଡ଼ିଲା । ମୁଁ, ଈଶ୍ୱର ସାହୁ

ଦିହେଁ ବାହାରିଲୁ ଜାଗର ମେଳା ଦେଖିବାକୁ କଟକ ସହରର ପୂର୍ବରେ ପରମହଂସ ମହାଦେବଙ୍କ ପୀଠକୁ। ଚାଲି ଚାଲି ବାହାରିଲୁ। ବିଦ୍ୟାଧରପୁର ଗାଁ ବାଟ ଦେଇ ପରମହଂସ ଆଡ଼େ ଯିବାକୁ ହୁଏ। ଆମେ ଚାଲିଛୁ, ସନ୍ଧ୍ୟା ଅଳ୍ପ ସମୟ ପରେ ହବ। ଗୋଟାଏ ନଈବାଲି ପଡ଼ିଲା। ମୁଁ, ଈଶ୍ୱର ସାହୁ ଦିହେଁ "ସିଂହ" ବିଷୟରେ ଗପ କରି କରି ଚାଲିଛୁ, ସିଂହ ଭାରତରେ କେଉଁଠି ମିଳେ? ପୃଥିବୀରେ କେଉଁଠି ମିଳେ? ବାଘ, ସିଂହ ଭିତରେ ତଫାତ୍ କ'ଣ? ଇତ୍ୟାଦି ଇତ୍ୟାଦି। ଏଇ ସମୟରେ ଗୋଟାଏ ହସର ଘଟଣା ଘଟିଲା, ସିଂହ ବିଷୟରେ ଗପ କରୁ କରୁ ମନରେ କେତେକ ଭୟ ଜାତ ହଉଥିଲା। ନଈ ବାଲିରେ ନିଛାଟିଆ ଲାଗୁଥିଲା, କେହି ନାହାନ୍ତି, ଆମେ ଦିହେଁ କେବଳ। ଏଇ ସମୟରେ ଈଶ୍ୱର ସାହୁ ମୋତେ ଅଳ୍ପ ଦୂରରେ ଥିବା ଗୋଟାଏ ସଚଳ ଜିନିଷକୁ ଦେଖେଇ କହିଲା ହେଇରେ ପୁଲିନ, ସିଂହ। ଏତିକି କହି ଈଶ୍ୱର ସାହୁ ଦୌଡ଼ି ପଳେଇବାକୁ ଆରମ୍ଭ କଲା, ମୋତେ ଛାଡ଼ି ଈଶ୍ୱର ସାହୁ ପଳେଇବାର ଦେଖି ମୋତେ ହସ ମାଡ଼ିଲା। କାରଣ ଏ ନଈ ବାଲିରେ ସିଂହ ଆସିବ କୁଆଡ଼ୁ? ଯେଉଁ ସଚଳ ଜିନିଷଟାକୁ ଦେଖେଇଲା ସିଂହ ବୋଲି, ସେ ସିଂହ ନୁହେଁ। ସେ ହଉଛି ଗୋଟାଏ ମାଇପି ହଳଦିଆ ଶାଢ଼ୀ ପିନ୍ଧି, ନଇଁ ପଡ଼ି ନଈ ବାଲିରେ ଶୁଖେଇଥିବା ଘଷି ଗୋଟାଉଥିଲା। ସେ ମାଇପିଟା ନଇଁ ପଡ଼ି ଘଷି ଗୋଟେଇବା ଦ୍ୱାରା ତା'ର ପଛପଟଟା ଉଚ୍ଚେଇ ରହି ଅଳ୍ପ ଅଳ୍ପ ଘୂରୁଛି। ପଛ ପଟଟା ଅବଶ୍ୟ ଆମ ଆଡ଼କୁ ଥିଲା। ଏ କେମିତି ଈଶ୍ୱର ସାହୁ ଆଖିକି ସିଂହ ପରି ଦେଖାଗଲା, ମୁଁ ଆଶ୍ଚର୍ଯ୍ୟ ହେଲି। ପୁଣି ଏକୁ ସିଂହ ବୋଲି ଭାବି, ଈଶ୍ୱର ସାହୁ ମୋତେ ଛାଡ଼ି ପଳାୟନ। ମୁଁ ଈଶ୍ୱର ସାହୁକୁ ହସି ହସି ଡ଼ାକ ପକେଇଲି, ଆରେ ସେ ସିଂହ ନୁହେଁ। ମାଇପିଟା ଘଷି ଗୋଟଉଛି। ତୁ ଇମିତି ଡ଼ରକୁରା!

ଈଶ୍ୱର ସାହୁ ମୋ ଡ଼ାକ ଶୁଣି ଠିଆ ହେଇ ଦେଖିଲା, ପ୍ରକୃତରେ ମାଇପିଟା ଘଷି ଗୋଟଉଛି। ତା'ପରେ ମୋ ପାଖକୁ ଆସିଲା, ଗୋଟାଏ ଭାରି ହସ ହେଲା। ଈଶ୍ୱର ସାହୁ କହିଲା, ଆଉ ମୋତେ ସେମିତି ଦେଖା ଗଲା, ମୁଁ କ'ଣ କରିବି?

ମୁଁ ଈଶ୍ୱର ସାହୁକୁ କହିଲି, ତୁ ତ ଭଲ ସାଙ୍ଗ! ସିଂହ ଦେଖିଲୁ, ମୋତେ ଛାଡ଼ି ପଳେଇଲୁ କେମିତି? ଭଲ ସିଂହ ଦେଖିଲୁ?

କିଛି ବାଟ ଚାଲିଚାଲି ଯାଇ ପରମହଂସ ମହାଦେବଙ୍କ ପୀଠରେ ସଞ୍ଜ ବେଳକୁ ପହଁଚିଲୁ। ଲୋକେ ଲୋକାରଣ୍ୟ, ବଡ଼ ସୁନ୍ଦର ଜାଗା! ସେଠି ବୁଲା ବୁଲି କରୁ କରୁ ଗୋଟିଏ ଜାଗାରେ ଦେଖିଲି, ଆମ ସାହିର ମୋର ପିଲାଦିନର ସାଙ୍ଗ, ଲୋକନାଥ ରାଉତ ଗୋଟିଏ ଭୁଲ କ୍ରମେ ନିଜ ପାଖରୁ ସବୁ ପଇସାତକ ସାରି ମନଦୁଃଖରେ ହତାଶ ହେଇ ବସିଛି, ପାଖରେ କିଛି ନାହିଁ ଖାଇବା ପାଇଁ। ତାକୁ ତା'ର ଭୁଲ ସକାଶେ ଗାଳି ଦେଲି। ରାତିରେ ଖାଇବା ପାଇଁ ଏବଂ ଅନ୍ୟାନ୍ୟ ଖର୍ଚ୍ଚ କରିବା ପାଇଁ ତାକୁ କିଛି ପଇସା ଦେଲି। ମୁଁ, ଈଶ୍ୱର ସାହୁ କେତେ ଆଡ଼େ ବୁଲାବୁଲି କଲୁ। ରାତି ହେଲାରୁ ଦୋକାନୀମାନଙ୍କ ଆଲୁଅ ଜଳିବାରେ ଜାଗାଟା ଆହୁରି ମନୋରମ ଦେଖାଗଲା, ଥକା ଲାଗିବାରୁ ରାତିରେ ଆଉ ନ ବୁଲି ରାତ୍ରିଭୋଜନ ପାଇଁ ଗୋଟାଏ ଦୋକାନରେ କିଛି ଖାଇ, କିଛି ସମୟ ଗପ କରି ଗୋଟିଏ ଜାଗାରେ ଦିହେଁ ଶୋଇଲୁ। ଲୋକେ ସେମିତି ଘୋ ଘା ହଉଥାନ୍ତି। ସମସ୍ତେ ଅପେକ୍ଷା କରିଥାନ୍ତି, କେତେବେଳେ ମହାଦୀପ ଉଠିବ? ଆମେ ଦିହେଁ ପଥଶ୍ରମରେ କ୍ଳାନ୍ତ ହେଇ ଶୋଇ ପଡ଼ିଥିଲୁ। କିଛି ସମୟ ଶୋଇଲା ପରେ ଆମ ନିଦ ଭାଙ୍ଗିଗଲା। ନିଦ ଭାଙ୍ଗିବାର କାରଣ ହେଲା, ଭୀଷଣ ଗଣ୍ଡଗୋଳ! ଏଣେ ମାଇପିଙ୍କର ଆବହ ହୁଳହୁଳିର ଗର୍ଜନକୁ ତେଣେ ମେଘ ଘଡ଼ଘଡ଼ିର ଭୀଷଣ ଗର୍ଜନ। ଏତିକି ବେଳେ ପୁଣି ମହାଦୀପ ଉଠୁଛି। ଏଣେ ମେଘ, ପବନ, ଘଡ଼ଘଡ଼ିରେ ଜାଗାଟା କମ୍ପି ଉଠୁଛି। ଦୋକାନ ବଜାର ସବୁ ଛିନ୍‌ଛତର ହେଇଗଲା। ଆମେ ଯେଉଁଠି ଶୋଇଥିଲୁ, ଉପରେ ଛାତ ବୋଲି କିଛି ନାହିଁ। ଖୋଲା ଆକାଶ ଏଣୁ ବର୍ଷା ପାଣିରେ ତିନ୍ତିଗଲୁ, କ'ଣ କରିବୁ? ଦିହେଁ ଦୌଡ଼ିଲୁ, କୋଉଠି ଟିକିଏ ମୁଣ୍ଡ ଗୁଞ୍ଜି ଆଶ୍ରୟ ନେବା, ପ୍ରାଣ ବିକଳରେ ବର୍ଷା ପାଣିରୁ ରକ୍ଷା ପାଇବା ପାଇଁ ଯାହା ପିଣ୍ଡା ଉପରକୁ ଉଠି

ଯାଉଛୁ ସେ ନାହିଁ କରୁଛି । ଏଠି ଜାଗା ନାହିଁ । ଏଠି ଠିଆ ହେଇ ପାରିବନି ।

ଏମିତି ଦି' ତିନି ଜାଗାରୁ ତଡ଼ା ଖାଇଲା ପରେ, ଆଉ ଜଣକ ପିଣ୍ଡା ଉପରକୁ ଉଠିଗଲା ବେଳକୁ, ସେ ମଧ୍ଯ ଠିଆ କରି ଦବାକୁ ନାରାଜ । ସେଠି ଆମେ ସେ ଘରର ମାଲିକର କଥା ନ ମାନି, ତାକୁ ଓଲଟି ଧମକେଇଲୁ । ବର୍ଷା ବେଳେ ତୁମ ବାରଣ୍ଡାରେ ଠିଆ ହବାକୁ ମନା କରୁଛ, ଆଚ୍ଛା ହଉ । କଟକ ଟାଉନ୍‌କୁ ଚାଲ, କୋଉଦିନ ଯଦି ହାବୁଡ଼େ ପଡ଼ିଛ, ତୁମକୁ ଦେଖିବୁ । ତୁମେ ଥରେ କଟକ ଟାଉନ୍‌କୁ ଚାଲ । କଟକ ଟାଉନ୍‌କୁ ତ ଦିନେ ହେଲେ ଯିବ । ଆମ ଘର ମଙ୍ଗଳାବାଗ ଜାଣ । ରହ ତୁମକୁ ଦେଖିବୁ । ଇମିତି ଧମକ ଦେଲାରୁ ସେ ଘର ମାଲିକଟା ଆଉ କିଛି କହିଲା ନାହିଁ । ଆମେ ତା' ପିଣ୍ଡାରେ ଭିକାରୀଙ୍କ ପରି ଦି'ଜଣ ବସି ରାତିଟା କଟେଇଲୁ, ସକାଳ ହେଲାରୁ କଟକ ବାହାରିଲୁ, ଗୋଟାଏ କେଳା କହିଲା, ବାବୁ, ଏ ନେଉଳଟା ନିଅ, ଦି'ଅଣା ପଇସା ଦିଅ । ମୁଁ ଈଶ୍ୱର ସାହୁକୁ ଏ ବୁଢ଼ା ନେଉଳଟାକୁ କିଣିବାକୁ ମନା କଲି । ମୋ କଥା ନମାନି ଈଶ୍ୱର ସାହୁ ତାକୁ କିଣି ଗୋଟାଏ ଛୋଟ ତାଳପତ୍ର ପେଡ଼ିରେ ପୁରେଇ ଆଣିଲା । ମୁଁ ଈଶ୍ୱର ସାହୁକୁ କହିଲି, ତୁ ଯେମିତି ଭାବରେ ଏ ନେଉଳକୁ ନଉଛୁ, କଟକ ପହଁଚିବା ଆଗରୁ ଏ ନେଉଳର ପରଲୋକ ପ୍ରାପ୍ତି ହେଇଥିବ । ପ୍ରକୃତରେ ସେଇୟା ହେଲା । ଆମେ ନୂଆ ବଜାରରେ ପହଁଚି ନାହୁଁ, ଈଶ୍ୱର ସାହୁ ଆଶ୍ଚର୍ଯ୍ୟ ହେଇ କହିଲା, ପୁଳିନରେ, ନେଉଳଟା ମରିଗଲା । ପୁଣି ଦୁଃଖ କରି କହିଲା, ଦି'ଅଣା ପଇସାରେ ଏକୁ ନ କିଣି, କିଛି ପେଟକୁ ଖାଇଥିଲେ ହେଇଥାନ୍ତା ।

Matric ପରୀକ୍ଷା ଦେଇ କିଛିଦିନ ବୁଲାବୁଲି କରି ଭଲରେ ଭଲରେ ଦିନଗୁଡ଼ା ଯେତିକି କଟି କଟି ଗଲା, ଏଣେ matric ପରୀକ୍ଷାର ଫଳ ସେତିକି ନିକଟ ହେଇ ଆସିଲା । ଏଣିକି ଛାତି ସବୁବେଳେ ଧଡ଼ ଧଡ଼ ହେଲା, କ'ଣ ହବ ? ପାସ୍ ହବ ନା ନାହିଁ ? ଶୟନେ, ସ୍ୱପନେ, ନିଦ୍ରା, ଜାଗରଣେ ସବୁବେଳେ ସେହି ଚିନ୍ତା, କ'ଣ କରିବି ?

ଦିନେ ଶୁଣିଲି, ଅମୁକ ଲୋକ ପାଖକୁ ଗଲେ matric ଫଳ ଜାଣି ହବ । ସେ ଅମୁକ ଲୋକ ନାଁ ବୋଧହୁଏ, ନୁରୁଲ ହୋଦା । ସେ ସେତେବେଳେ Patna University Syndicate meeting କୁ ଯାଉଥିଲେ । ସେତେବେଳେ ବିହାର, ଓଡ଼ିଶା ଏକାଠି ଥାଏ । ମୁଁ ସେଦିନ ତାଙ୍କ ଘରକୁ ଯିବା ପୂର୍ବରୁ ଆଗେ ମେହେନ୍ଦିପୁରସ୍ଥ ବଡ଼ ଭଉଣୀଙ୍କ ବସାକୁ ଗଲି । ବଡ଼ ଭିଣେଇ ସେତେବେଳେ କଟକ ଅଦାଲତରେ ନାଜର ଥିଲେ । ମୁଁ ବଡ଼ ଭଉଣୀଙ୍କ ବସାରେ ଯାଇ ପହଁଚିଲା ବେଳକୁ ଭିଣେଇ ଅଫିସ୍‌କୁ ଚାଲି ଯାଇଥିଲେ । ଭଉଣୀ ମୋତେ ଦେଖି କହିଲେ ଫଳ କେବେ ବାହାରୁଛି ? ମୁଁ କହିଲି, ଆଜି ଜଣା ଯିବ, ମୁଁ ଯାଉଛି ଜଣକ ଘରକୁ ଫଳ ବୁଝିବା ପାଇଁ, ତା' ଆଗରୁ କାଳୀଗଳିର କାଳୀ ମନ୍ଦିର ହେଇ ଯିବି ।

ମୁଁ ଯେଉଁ କମିଜ୍ ଖଣ୍ଡକ ପିନ୍ଧିଥିଲି, ସେଥିରେ ମୋ ବାଁ କାନ୍ଧ ଉପରେ କେତେକ ଅଂଶ ଛିଣ୍ଡି ଯାଇଥିଲା । ବଡ଼ ଭଉଣୀ ତାକୁ ଦେଖି ଭାରି ଦୁଃଖ କଲେ, ଆଉ ମୋତେ ଅଣାଏ ପଇସା ଦେଇ କହିଲେ ଯା, ଏ ଅଣାଏ ପଇସା କାଳୀ ମନ୍ଦିରରେ ଥୋଇ ଦେଇ, ଫଳ ଜାଣି ପୁଣି ମୋ ପାଖକୁ ଆସିବୁ । ଯଦି ପାସ୍ କରିଥିବୁ ତା'ହେଲେ ଆଉ ପଇସା ନେଇ ଭୋଗ କରିବୁ । ମୁଁ ଅଣାଏ ପଇସା ନେଇ ବଡ଼ ଭଉଣୀଙ୍କଠୁଁ ବିଦାୟ ନେଇ କାଳୀ ମନ୍ଦିରକୁ ଗଲି, ସେ ଅଣାଏ ପଇସାକୁ ଗୋଟାଏ ଜାଗାରେ ଲୁଚେଇ ଥୋଇ ଦେଇ ପ୍ରାର୍ଥନା କରି ଜଣେଇଲି, ମା, ମୁଁ ଯେମିତି ପାସ୍ କରେ, ପାସ୍ କଲେ ଆପଣଙ୍କ ନିକଟରେ ଆହୁରି ଭୋଗ କରିବି । ଏତକ କହି ଭକ୍ତି ପୂର୍ଣ୍ଣ ହୃଦୟରେ ମୁଣ୍ଡିଆଟିଏ ମାରି ନୁରୁଲ ହୋଦାଙ୍କ ଘରକୁ ସାଇକେଲ୍‌ରେ ବାହାରିଲି । ଛାତିଟା ଧଡ଼ଧଡ଼ ହଉଥାଏ । କ'ଣ ହବ ?

ନୁରୁଲ ହୋଦାଙ୍କ ଘର ବାଲୁବଜାରକୁ ନିକଟ । ତାଙ୍କରି ଘର ପାଖ ଦେଇ ଗୋଟାଏ ବାଟ ବୁଢ଼ୀ ଠାକୁରାଣୀଙ୍କ ଆଡ଼କୁ ଯାଇଛି । ନୁରୁଲ ହୋଦାଙ୍କ ଘର ଯେଉଁଠି, ତା'ର ଅଳ୍ପ ଦୂରରେ ଶାରଦାକାନ୍ତ ଗାଙ୍ଗୁଲୀ ପ୍ରଫେସରଙ୍କ ଘର । ମୁଁ ପଚାରି ପଚାରି ଯାଇ ନୁରୁଲ

ହୋଦାଙ୍କ ଘରେ ପହଁଚିଲି । ଦୁଆର ବନ୍ଦ ଥିଲା । ଡ଼ାକିଲି, ନୁରୁଲ୍ ହୋଦା ନିଜେହିଁ ଆସିଲେ । ମୁଁ matric ଫଳ ବିଷୟରେ ତାଙ୍କୁ ପଚାରିଲି, ଫଳ ବାହାରିଛି କି? ସେ କହିଲେ, ହଁ ବାହାରିଛି । ମୁଁ କେବଳ Muslim Seminary ର ଫଳ ଆଣିଛି । ଏଣୁ ମୁଁ ମୋର ରୋଲ୍ ନମ୍ବର କହିଲି, ସେ କହିଲେ, ନାହିଁ, ଅର୍ଥାତ୍ ମୁଁ ଫେଲ୍ । ତାଙ୍କ ମୁହଁରୁ "ନାହିଁ" ଶବ୍ଦଟା ସେଦିନ ଯେମିତି ମୋ ଉପରେ ବଜ୍ରାଘାତ ପରି ମନେ ହେଲା । କ'ଣ ହେଲା, ମୁଁ ଫେଲ୍ ହେଇଛି ! ତାଙ୍କୁ ନମସ୍କାର ଜଣେଇ ବିଦାୟ ନେଲି । ସେ ଦୁଆର ବନ୍ଦ କରି ଭିତରକୁ ଗଲେ । ମୁଁ ଆଉ କାଳୀ ମନ୍ଦିରକୁ ଯିବି କ'ଣ? ବଡ଼ ଭଉଣୀଙ୍କ ପାଖକୁ ଆଉ ଯିବି କ'ଣ? ବାଟେ ବାଟେ ଘରକୁ ଫେରିଲି । ମୁଁ କେମିତି ହେଇ କୋଉ ବାଟେ ଯେ ଘରକୁ ଫେରିଛି ମୁଁ ଜାଣେନା । ସେତେବେଳକୁ ପ୍ରଚଣ୍ଡ ଖରା ପଡ଼ିଥାଏ । ମୁଁ ଘରେ ଆସି ଦେଖେ, ମା' ବଡ଼ି ପାରିବା ପାଇଁ ବିରି ବାଟୁଛନ୍ତି । ମୁଁ ମା'ଙ୍କ ପାଖରେ ବସି ମା'ଙ୍କୁ କହିଲି ମା, ମୁଁ ଫେଲ୍ ହେଇଛି । ମା' ଶୁଣି କହିଲେ, ଫେଲ୍ ହେଇଛୁ? ଏତିକି, ମୁଁ ଆସି ଯେ ଶୋଇଗଲି ଯେ, ଆଉ ଉଠି ନାହିଁ କି ଖାଇନାହିଁ । ମା'ଙ୍କ ଉପରେ ମନ ଭାରି ବିରକ୍ତ ହେଲା, କାରଣ ମା'ଥରେ ଏଥି ପୂର୍ବେ ସାମାନ୍ୟ କଥାରେ ରାଗି ଯାଇ ଅଭିଶାପ ଦେଲା ପରି ମୋତେ କହିଥିଲେ, ତୁ ଫେଲ୍ ହବୁ । ମୋର ସେକଥାଟା ମନେଥିଲା । ଆଜି ପ୍ରକୃତ ଫେଲ୍ ହବାରୁ ସେଇ କଥା ମନେ ପଡ଼ିଲା । ସନ୍ଧ୍ୟା ବେଳକୁ ଉଠିଲି । ଦିନସାରା ଖାଇ ନାହିଁ କିମ୍ବା ଭୋକ ମଧ ନାହିଁ । ବାବା ଅଫିସରୁ ଆସି ଶୁଣିଲେ, ମୁଁ ଫେଲ୍ ହେଇଛି । କିଛି କହିଲେ ନାହିଁ । ସନ୍ଧ୍ୟା ଗଡ଼ିଗଲା ପରେ ବେହେଲା ଧରି ଦାଣ୍ଡ ଆଡ଼କୁ ଚାଲିଲେ ଗା'ଣବାଜଣା କରିବାକୁ । ରାତି ହେଲାରୁ ମୋତେ ଅଳ୍ପ ଜ୍ୱର ଆସିଲା । ମା ଖଣ୍ଡେ ଚାଦର ଘୋଡ଼େଇ ଦେଲେ । ଗା'ଣବାଜଣା ବାହାରେ ନିତ୍ୟ ନୈମିତିକ ଯେମିତି ହୁଏ ସେମିତି ପୂରା ଦମ୍‌ରେ ଚାଲିଛି । କିଛି ଦୁଃଖ ନାହିଁ । ଯେ ସାଙ୍ଗସାଥୀ ଆସୁଛନ୍ତି ମୋର ଫଳ ବୁଝିବା ପାଇଁ, ସେମାନେ ବାବାଙ୍କର ଗା'ଣବାଜଣା ଦେଖି ଭାବିଲେ, ପୁଲିନ୍ ନିଶ୍ଚୟ ପାସ୍ କରିଛି । କାରଣ ଏକେ ତ ମୋର ପାସ୍ କରିବାରେ କୌଣସି ସନ୍ଦେହ ନଥିଲା, କିନ୍ତୁ ବାବାଙ୍କୁ ପଚାରିବାରେ ବାବା ମୁହୂର୍ତ୍ତକ ପାଇଁ ଗା'ଣବାଜଣା ବନ୍ଦ କରି ଉତ୍ତର ଦିଅନ୍ତି, ପୁଲିନ୍ ଫେଲ୍ ହେଇଛି, ସେ ପୁଣି ପଢ଼ିବ । ଏତକ କହି ପୁଣି ବାବାଙ୍କର ଗା'ଣବାଜଣା ଚାଲିଲା । ମୁଁ ଘର ଭିତରେ ଶୋଇ ଦୁଃଖରେ ଭାବୁଥାଏ, କ'ଣ ମୁଁ ଫେଲ୍ ହେଇଛି, ବାବାଙ୍କର ଟିକିଏ ହେଲେ ଦୁଃଖ ନାହିଁ? ଅନେକ କଥା ଭାବୁଥାଏ, ମ୍ୟାଟ୍ରିକ ପରୀକ୍ଷାରେ ତ ଇଂରାଜୀ ଫାଷ୍ଟ୍ ପେପରରେ ଖରାପ କରିଥିଲି, ସେହି ଇଂରାଜୀ ଯୋଗୁଁ ଆଉ ଫେଲ୍ ହେଲି କି? ଚିନ୍ତାରେ ନ ଖାଇ, ନ ପିଇ ଝଡ଼ିଗଲି । ତହିଁ ଆରଦିନ ଆଉ କୁଆଡ଼େ ବୁଲିବାକୁ ନ ଯାଇ ଘରେ ରହିଲି । ଈଶ୍ୱର ସାହୁ ଆସିଲା, ମୁଁ ଫେଲ୍ ହେଇଥିବା ଶୁଣି ସେ ବିଶେଷ ଦୁଃଖିତ । କହିଲା, ତୁ ଯେତେବେଳେ ଏତେ ପଢ଼ାପଢ଼ି କରି ଫେଲ୍ ହେଲୁ, ମୁଁ ଆଉ କେଭେ matric ପାସ୍ କରି ପାରିବି ନାହିଁ । ସ୍କୁଲରେ ମୋର ଫେଲ୍ ଖବର ପହଁଚିଲା ବେଳେ, ସମସ୍ତଙ୍କର ସେହି ଗୋଟିଏ ମନ୍ତବ୍ୟ, ଯାହା ଈଶ୍ୱର ସାହୁଠୁ ଶୁଣିଲି, ସେ ବେଶି ଫୁଟବଲ୍ ଖେଳରେ ମାତିଗଲା । ମୃଣାଳ, ପ୍ରିୟ ଆସିଲେ, ମୁଁ ଫେଲ୍ ହବାରେ ଦୁଃଖ ପ୍ରକାଶ କରିବା ପାଇଁ । ପ୍ରିୟ କହିଲା, ତୋର ବାବାଙ୍କୁ ଧନ୍ୟବାଦ, ତାଙ୍କର ତ ଟିକିଏ ଚିନ୍ତା ନାହିଁ । ଇମିତି ବାପ ପାଇବା ତୋର ସୌଭାଗ୍ୟ, କାଲି ରାତିରେ ଆମେ ଆସିଥିଲୁ ତୋର ଫଳ ଜାଣିବା ପାଇଁ, ତୋର ବାବାଙ୍କର ଗା'ଣବାଜଣା ଦେଖି ଆମେ ଭାବିଲୁ ତୁ ନିଶ୍ଚୟ ପାସ୍ କରିଛୁ । କିନ୍ତୁ ତୋର ବାବା କହିଲେ, ସେ ଫେଲ୍ ହେଇଛି, ପୁଣି ପଢ଼ିବ । ଏତିକି କହି ପୁଣି ଗା'ଣବାଜଣା ଆରମ୍ଭ କଲେ । ଆମେ ଆଶ୍ଚର୍ଯ୍ୟ ହେଲୁ । ମୋର ବାବା ହେଇଥିଲେ ମୋତେ ରକ୍ଷା କରି ନଥାନ୍ତେ । ଅନେକ ସାଙ୍ଗସାଥୀ ଆସିଲେ, ଅନେକ ଆଶ୍ଚର୍ଯ୍ୟ ହେଲେ ମୋର ଫେଲ୍ ହବା ଶୁଣି ।

Patna University ନମ୍ବର ଅଣାହେଲା । ଦେଖିଲା ବେଳକୁ ସବୁଥିରେ ଭଲ ନମ୍ବର ଅଛି, କେବଳ ଇଂରାଜୀରେ ତିନି ନମ୍ବର କମ୍ । ମୋତେ ଭାରି ଦୁଃଖ

ଲାଗିଲା । ଏଇ ତିନିଟା ନମ୍ବର ପାଇଁ କି ବିଭ୍ରାଟ ସୃଷ୍ଟି ହେଲା ! କେତେ ଦୁଃଖ, କେତେ ଲଜ୍ଜା, କେତେ ଅବନତି ! ଭାବିଥିଲି matric final ପରୀକ୍ଷାରେ ଥରକେ ପାସ୍ କଲେ, medical ରେ admission ନେବି । ସବୁ ଓଲଟ ପାଲଟ ହେଇଗଲା । Patna University ରେ ଇଂରାଜୀରେ pass mark ଥିଲା ୭୫, ମୋର ନମ୍ବର ଥିଲା ୭୨ ମାତ୍ର, କେବଳ ତିନି ନମ୍ବର କମ୍ ।

ବାବା ମୋତେ ଦିନେ ସାଙ୍ଗରେ ନେଇ ବଡ଼ ଭିଣେଇଙ୍କ ପାଖକୁ ମେହେନ୍ଦିପୁରକୁ ଗଲେ । ସେଠି ଭଉଣୀ, ଭିଣେଇଙ୍କ ସଙ୍ଗେ ଆଲୋଚନା କରି ସ୍ଥିର ହେଲା, ମୁଁ ପୁଣି matric supplementary ପରୀକ୍ଷା ଦିଏ । ଭିଣେଇଙ୍କ ବସାରୁ ବାବା ପୁଣି ମୋତେ ନେଇ ମୁସ୍‌ଲିମ୍ ସେମିନାରିରେ ହେଡ୍‌ମାଷ୍ଟର ଆଲ୍ଲାବକ୍ସଙ୍କ ଘରକୁ ଗଲେ । ଆଲ୍ଲାବକ୍ସଙ୍କ ଘର ସେତେବେଳେ ମେହେନ୍ଦିପୁରରେ ଥିଲା । ଆଲ୍ଲାବକ୍ସ ମୋତେ ଦେଖି ବାବାଙ୍କ ଆଗରେ ମୁଁ ଫେଲ୍ ହେଇଥିବା ଯୋଗୁଁ ଭାରି ଦୁଃଖ କରି କହିଲେ, ମୁଁ ଭାଗ୍ୟରେ ବିଶ୍ୱାସ କରୁ ନଥିଲି, ଏ ପିଲା ଫେଲ୍ ହବାରେ ଏଥର ମୁଁ ଭାଗ୍ୟ ଉପରେ ବିଶ୍ୱାସ କଲି । ଦୁର୍ଭାଗ୍ୟ ନପଡ଼ିଲେ, ଏ ପିଲା ଫେଲ୍ ହୁଅନ୍ତାନି ।

ସେଠି ମଧ୍ୟ ସ୍ଥିର ହେଲା, ମୁଁ matric supplementary ପରୀକ୍ଷା ଦିଏ । ସେଠୁଁ ବାବା ମୁଁ ଘରକୁ ଫେରିଲୁ । Supplementary ପରୀକ୍ଷା ଫିସ୍ ବାବଦ ଯାହା ଟଙ୍କା ଲାଗିବ ଭିଣେଇଙ୍କ ଠାରୁ ଟଙ୍କା ଧାର୍ କରି ଅଣା ହେଇ ଠିକ୍ ସମୟରେ ଫିସ୍ ଦାଖଲ କରାହେଲା । ଯେଉଁଦିନ supplementary ପରୀକ୍ଷାର ଫିସ୍ ଦାଖଲ କରିବା ପାଇଁ ସ୍କୁଲକୁ ଗଲି ଭାରି ଲଜ୍ଜାବୋଧ ହେଲା । ଜୟରାମ ବାବୁଙ୍କ ସଙ୍ଗେ ଦେଖା ହେଲା । ଜୟରାମ ବାବୁ ମୋତେ ପ୍ରବର୍ତ୍ତେଇଲେ ଯେମିତି ମୁଁ supplementary ପରୀକ୍ଷା ନ ଦିଏ । କାରଣସ୍ୱରୂପ ମୋତେ କହିଲେ, ପରୀକ୍ଷା ଆଉ ମାସକ ପରେ ହବ, ସମୟ ଖୁବ୍ ଅଳ୍ପ, କାଳେ ପୁଣି ଯଦି ଫେଲ୍ ହେଇଯାଏ । ଏଣୁ ତାଙ୍କର ମତ ଯେ ମୁଁ ପୁଣି ପଢ଼ି matric final ପରୀକ୍ଷା ଦିଏ ।

ଜୟରାମ ବାବୁଙ୍କ କଥା ଶୁଣି ମୁଁ ଜାଣି ପାରିଲି ଯେ କେବଳ football team କୁ ଦୃଢ଼ କରିବା ପାଇଁ ଏ ମସୁଧା । ମୁଁ ଜୟରାମ ବାବୁଙ୍କୁ କହିଲି, ନାହିଁ ସାର୍ ମୁଁ ପରୀକ୍ଷା ଦେବି । ମୁଁ ପୁଣି ରହି କ୍ଲାସରେ ବସି ପାଠ ପଢ଼ିବି, ସେ କଥା ହବ ନାହିଁ । ଜୟରାମ ବାବୁ ମୋ କଥା ଶୁଣି ହତାଶ ହେଲେ । ବୋଧହୁଏ ଭାବିଲେ player ଟାଏ ହାତରୁ ଖସିଗଲା । ମୁଁ supplementary ପରୀକ୍ଷା ଫିସ୍ ଦାଖଲ କରି ଘରକୁ ଫେରି ଆସିଲି । ଆଉ ସ୍କୁଲରେ ରହିବାକୁ ଭଲ ଲାଗିଲା ନାହିଁ ।

ଏଥିପୂର୍ବେ ଗୋଟାଏ କଥା ଲେଖିବାକୁ ଛାଡ଼ି ଯାଇଛି । Matric final ପରୀକ୍ଷା ଦବାକୁ କିଛି ଦିନ ବାକି ଥାଏ । ଏଇ ସମୟରେ ସେ ବର୍ଷ ମୁସ୍‌ଲିମ୍ ସେମିନାରିର ପୁରସ୍କାର ବିତରଣ ଉତ୍ସବ ହୁଏ । ମୁସ୍‌ଲିମ୍ ସେମିନାରିରେ ଅନ୍ୟାନ୍ୟ ସ୍କୁଲ ପରି ପ୍ରତ୍ୟେକ ବର୍ଷ ପିଲାମାନଙ୍କୁ ପୁରସ୍କାର ଦିଆ ହୁଏନା । ଗରିବ ସ୍କୁଲ, ଆର୍ଥିକ ଅନାଟନ ଯୋଗୁଁ ହେଇପାରେନା । ମୋ ଭାଗ୍ୟକୁ ସେହି ବର୍ଷ ପୁରସ୍କାର ବିତରଣୀ ଉତ୍ସବ ହେଲା । ଜୟରାମ ବାବୁ ପୂର୍ବେ ଦିନେ ୧୯୨୯ ମସିହା କଲେଜିଏଟ୍ ଆଉ ମୁସ୍‌ଲିମ୍ ସେମିନାରିର ପ୍ରଥମ ଲିଗ୍ ମ୍ୟାଚ୍ ଦିନ ଯାହା କହିଥିଲେ, ଆଜି ଯେ left half ରେ ଖେଳିବ, ମୁଁ ତାକୁ ଗୋଟାଏ football prize ଦେବି । ସେହି ପ୍ରତିଶ୍ରୁତି ଅନୁଯାୟୀ ଜୟରାମ ବାବୁ ମୋତେ ଡ଼କେଇ ଗୋଟାଏ ବଡ଼ English make thermoflask ପୁରସ୍କାର ଦେଇଥିଲେ ।

Matric supplementary ପରୀକ୍ଷା ପାଇଁ ଅକ୍ଷୟତୃତୀୟା ଦିନ ଭଲ ଦିନ ବୋଲି ପୁଣି ପଢ଼ା ଆରମ୍ଭ କଲି । ବହିଗୁଡ଼ାକ ଦେଖିଲା ବେଳକୁ ଭାରି ଦୁଃଖ ଲାଗିଲା । ଯା'ହଉ ଗଭୀର ମନସ୍ତାପରେ ପୁଣି ପଢ଼ିବାକୁ ଲାଗିଲି । ଆଉ ପାଠ ପଢ଼ା ପ୍ରତି ସେତେ ଆଗ୍ରହ ନଥାଏ । କେବଳ ଇଂରାଜୀ ବିଷୟଟା ଖୁବ୍ ଭଲ ଭାବରେ ପଢୁଥାଏ । ଆଉ ସବୁ ଚଳନୀୟ । କେଉଁଥିରେ ତ ମୋର ତ୍ରୁଟି ନଥିଲା କେବଳ final ପରୀକ୍ଷାରେ ଆକସ୍ମିକ ଇଂରାଜୀ ଫାଷ୍ଟ ପେପର୍‌ରେ ଖରାପ କରି ବସିଲି ତଥାପି ଅନ୍ୟାନ୍ୟ ବିଷୟ ତୁଳନାରେ ଇଂରାଜୀ ମୋର ସେତେ ଭଲ ହଉ ନଥିଲା ।

Matric supplementary ପରୀକ୍ଷା final ପରୀକ୍ଷା ପରି ୧୦ଟାରୁ ୪ଟା ଯାଏ ନ ହୋଇ ସକାଳୁ ହବାର ନିର୍ଦ୍ଦେଶ ଆସିଲା। ସେଇ କଲେଜିଏଟ୍ ସ୍କୁଲ୍‌ରେ ହବ। ଜୁନ୍ ମାସରେ ପରୀକ୍ଷା ହବାର କଥା। ସକାଳୁ ୧୧ଟା ଯାଏ ପରୀକ୍ଷା ହବ। ଏ ପରୀକ୍ଷାର ପ୍ରଥମ ଦିନରେ ବାବା ଆଉ ମୋ ସଙ୍ଗେ ଗଲେ ନାହିଁ। ସକାଳୁ ଉଠି ବାବାଙ୍କ ପକ୍ଷରେ ଯିବା ମଧ୍ୟ ସହଜ ନୁହେଁ। ଏଣୁ ମୁଁ ଏକା ସାଇକେଲ୍‌ରେ ଯାଇ ପରୀକ୍ଷା ପ୍ରତ୍ୟେକ ଦିନ ଦେଇ ଆସିଲି। ଏଥର ଇଂରାଜୀ ପରୀକ୍ଷା ଖୁବ୍ ସାବଧାନରେ ଦେଲି କିନ୍ତୁ ଇତିହାସରେ ଗୋଟାଏ ପ୍ରଶ୍ନ ଭୁଲ କ୍ରମେ ଲେଖି ଆସିଲି। ରାତିସାରା ଅନିଦ୍ରା ହୋଇ ପଢ଼ିଥିଲି। ତହିଁ ଆରଦିନ ସକାଳୁ ଉଠିବାକୁ ଟିକିଏ ଡ଼େରି ହୋଇଗଲା। ତଥାପି ଉଠି ସାଇକେଲ୍‌ରେ ଖୁବ୍ ଶୀଘ୍ର ଯାଇ ପରୀକ୍ଷାରେ ଠିକ୍ ସମୟରେ ପହଁଚିଲି। ସେଦିନ ଇତିହାସ ପରୀକ୍ଷା ଥାଏ। ସେତେବେଳେ Indian history ଆଉ British history ଦୁଇଟା ବହି ପଢ଼ିବାକୁ ହଉଥାଏ। ମୁଁ British history ର ପ୍ରଶ୍ନର ଉତ୍ତର ଦବାକୁ ଯାଇ Henry ରାଜତ୍ୱ ଭିତରୁ ଯେଉଁଟାକୁ ଭାବୁଛି ପଢ଼ିଥିଲେ ଭଲ ଭାବରେ ଲେଖିପାରିଥାନ୍ତି, ସେଇଟାହିଁ ପଢ଼ିଛି। କିନ୍ତୁ ମୁଁ ଅନ୍ୟ ଗୋଟାଏ ରାଜତ୍ୱ ଭୁଲ କ୍ରମେ ଲେଖି ଆସିଲି। ମୁଁ ଯେତେବେଳେ ପରୀକ୍ଷା ସେଇ ସାରି ଆସି ସାଇକେଲ୍‌ରେ ଗୌରୀଶଙ୍କର ପାର୍କ ପାଖରେ ପ୍ରଶ୍ନଗୁଡାକ ପୁଣି ଥରେ ଦେଖେ, ସେଇଠି ଜାଣି ପାରିଲି ମୁଁ ଯେଉଁ Henry ରାଜତ୍ୱଟା ଚାହୁଁଥିଲି ସେଇଟା ହିଁ ପଢ଼ିଛି। କିନ୍ତୁ ମୁଁ ଭୁଲ୍ କ୍ରମେ ଆଉ ଗୋଟାଏ Henry ରାଜତ୍ୱଟା ଲେଖି ଆସିଲି। ଅନ୍ୟାନ୍ୟ ପ୍ରଶ୍ନର ସବୁ ଭଲ ଉତ୍ତର ଦେଇଥିଲି। ତଥାପି ମନଟା କେମିତି ବ୍ୟସ୍ତ ହେଲା। କ'ଣ କଲି? ଗତ ଥର ତ ଇଂରାଜୀରେ ଖରାପ କରିଥିଲି। ଏଥର ଇତିହାସରେ ପୁଣି ଗୋଟାଏ ପ୍ରଶ୍ନ ପୂରା ଭୁଲ ହୋଇଗଲା। ତଥାପି ଏଥର ଇତିହାସରେ ପାସ୍ ହବା ସୁନିଶ୍ଚିତ। କିନ୍ତୁ ଆହୁରି ବେଶି ନମ୍ବର ରହିଥାନ୍ତା। ଅକାରଣେ ଗୋଟାଏ ପ୍ରଶ୍ନ ଗଲା। ସେତେବେଳେ ଇତିହାସ, ଭୂଗୋଳ ଦୁଇଟା ମିଶି ପାସ୍ ଧରାଯାଉଥିଲା। ଭୂଗୋଳରେ ସବୁ ପ୍ରଶ୍ନର ଉତ୍ତର ଦେଇଥାଏ। ଯା'ହବାର ହବ, ମନେ ମନେ ଚୁପ୍ ରହିଲି। କାହାକୁ କିଛି କହିଲି ନାହିଁ। ଏତିକି ଭୁଲ ଛଡ଼ା ଆଉ କୌଣସି ପରୀକ୍ଷାରେ କିଛି ଭୁଲ କରି ନାହିଁ। ପରୀକ୍ଷା ସରିଲା, ପୁଣି ମାସେ ଖଣ୍ଡେ ଲାଗିବ ଫଳ ବାହାରିବାକୁ। ଏଥର ମନଟା ଆଉ ଆଗ ପରି ଖୁସି ନଥାଏ। ଏଥିପୂର୍ବେ ଫେଲ ହବା ଯେଉଁ ଆଘାତ, ସେଇଥିରେ ମନ ଦବିଗଲା। ଈଶ୍ୱର ସାହୁ ତ ମୋର ସୁଖଦୁଃଖ ସବୁଥିରେ ସହଚର। ସେ, ମୁଁ ବୁଲାବୁଲି କଲୁ। କିନ୍ତୁ ଆଗ ପରି ନୁହେଁ। କଲେଜ, ମେଡ଼ିକାଲ, ଇଞ୍ଜିନିୟରିଂରେ ନାମ ଲେଖେଇବାର ବେଳ ଆସିଗଲା। ସେତେବେଳେ କଲେଜ କହିଲେ, ରେଭେନ୍‌ସା କଲେଜ କଟକରେ ଗୋଟିଏ ମାତ୍ର କଲେଜ। ମେଡ଼ିକାଲ କହିଲେ, କଟକର ଏକମାତ୍ର ମେଡ଼ିକାଲ ସ୍କୁଲ, ଇଞ୍ଜିନିୟରିଂ କହିଲେ, କଟକର ଏକମାତ୍ର ଇଞ୍ଜିନିୟରିଂ ସ୍କୁଲ। ମୋ ସାଙ୍ଗର matric final ପରୀକ୍ଷାରେ ପାସ୍ କରି ଆମ ସ୍କୁଲର ହରେନ୍ଦ୍ର ନାଥ ରାଉତରାୟ ଏକମାତ୍ର ରେଭେନ୍‌ସା କଲେଜରେ I.Sc. ରେ ନାମ ଲେଖେଇଲା। ହରେନ୍ଦ୍ର ନାଥ ରାଉତରାୟ ମୋର ଭଲ ସାଙ୍ଗ। ଆମ ଘରେ ମଧ୍ୟ ପରିଚିତ। ଆମେ ଯୁଆଡ଼େ ବୁଲିବାକୁ ଯାଉ, ଆମ ସାଙ୍ଗରେ ଯାଏ।

ଆମେ ଥରେ ଜାଗର ମେଳାକୁ ପୁରୀ ଲୋକନାଥଙ୍କ ପାଖକୁ ଯାଇଥିଲୁ। ହରେନ୍ଦ୍ର ଆମ ସାଙ୍ଗରେ ଯାଇଥିଲା। ମୋର ଗୋଟାଏ ହସର ଘଟଣା ମନେ ଅଛି, ସେଥର ମୁଁ, ହରେନ୍ଦ୍ର ପୁରୀ ବଡ଼ଦେଉଳକୁ ଯାଇ, ଆନନ୍ଦବଜାରରେ ଅଭଡ଼ା କିଣି ଗୋଟିଏ ଛେଲୁଆରେ ଦିହେଁ ଅନ୍ନ ମହାପ୍ରସାଦ ଖାଉଛୁ, ଆଉ ଗୋଟାଏ ଛେଲୁଆରେ ଡ଼ାଲି, ତରକାରୀ ରହିଛି। ଖାଉ ଖାଉ ଡ଼ାଲି, ତରକାରୀ ସରିଗଲା, ଅନ୍ନ ଥାଏ। ଏଇ ଅବସରରେ ମୁଁ ହରେନ୍ଦ୍ରକୁ କହୁଛି, ତୁ ଯା' ଡ଼ାଲି, ତରକାରୀ କିଣି ଆଣ। ସେ ମୋତେ କହୁଛି, ତୁ ଯା' କିଣି ଆଣ। ଆମର ଇମିତି କଥାବାର୍ତ୍ତା ଚାଲିଛି, ଏତିକିବେଳେ ଛଅଣା ପରି ଗୋଟାଏ ଦଶ, ବାର ବର୍ଷର ପିଲା ଆମ ଅନ୍ନତକ ନେଇ ପଳେଇଲା। ଆଉ ଖାଇବୁ କ'ଣ? ହରେନ୍ଦ୍ର କହିଲା, ଚାଲ ଅଡୁଆ ତୁଟି ଗଲା। ଦି'ଟା ଯାକ ବିରକ୍ତ ହୋଇ ଆଉ ନ ଖାଇ ସେମିତି ହାତ,

ମୁହଁ ଧୋଇ ଜଗନ୍ନାଥଙ୍କୁ ମୁଣ୍ଡିଆ ମାରି ଅଧା ପେଟରେ ଫେରିଲୁ ।

ହରେନ୍ଦ୍ରର ଉପର ଭାଇଙ୍କର ନାମ, ଶ୍ରୀ ଯୋଗେନ୍ଦ୍ରନାଥ ଛୋଟରାୟ । ସେ ହରେନ୍ଦ୍ରକୁ ପଢ଼ଉଥାନ୍ତି । ସେ ଜଣେ ଓଭରସିୟର । ମୁଁ, ହରେନ୍ଦ୍ର ଯେତେବେଳେ matric ପଢୁ, ସେ ସେତେବେଳେ କଟକର P.H.D. ବିଭାଗରେ ଟ୍ରେନିଂରେ ଥାନ୍ତି । ସେଇଠି ମୋର ବାବାଙ୍କ ସଙ୍ଗେ ତାଙ୍କର ପରିଚୟ ହୁଏ । ବାବା ପେନ୍‌ସନ୍ ପାଇବା ପରେ ପୁଣି କେତେ ବର୍ଷ କଟକର P.H.D. ବିଭାଗରେ ଚାକିରୀ କରୁଥିଲେ । ସେତେବେଳେ ନୂଆ କରି କଟକରେ P.H.D. ବିଭାଗ ଖୋଲିଥାଏ । ସେତେବେଳେ ପ୍ରଥମ କରି ପାଇପ ଯୋଗେ କଟକ ସହରବାସୀଙ୍କୁ ଜଳ ଯୋଗାଣର ବ୍ୟବସ୍ଥା ହଉଥାଏ । ଏଇ P.H.D. ବିଭାଗର ଅଫିସ୍ ସେତେବେଳେ ମେଡ଼ିକାଲ ହତା ବାହାରେ ଯେଉଁଠି ଆଜିକାଲି ମେଡ଼ିକାଲ କଲେଜର "ନେହେରୁ ହଷ୍ଟେଲ" ହେଇଛି, ସେଇଠି ଥିଲା । ବର୍ତ୍ତମାନ ସେ ଅଫିସ୍ ଘରର ଚିହ୍ନ ବର୍ଣ୍ଣ ନାହିଁ ।

ମୁଁ, ହରେନ୍ଦ୍ର ଯେତେବେଳେ matric final ପରୀକ୍ଷା ଦେଇଥାଉ, ଏଇ ଯୋଗେନ୍ଦ୍ର ଛୋଟରାୟ ବାବାଙ୍କୁ P.H.D. ଅଫିସ୍‌ରେ କହିଲେ ମୁଁ ମୋର ସାନଭାଇ ହରେନ୍ଦ୍ରକୁ ରାଧା ଶ୍ୟାମ ଦାସଙ୍କର daily dozen କରିବାକୁ କଟକ ଟାଉନ୍‌ହଲ ପଡ଼ିଆକୁ ପଠଉଛି । ଆପଣ ପୁଳିନ୍‌କୁ ପଠଉ ନାହାନ୍ତି ? ବାବା daily dozen କ'ଣ ବୁଝି ପାରିଲେ ନାହିଁ । ପଚାରିଲେ ସେ କ'ଣ ? ତାକୁ କାହିଁକି କରିବ ? ଯୋଗେନ୍ଦ୍ର ଛୋଟରାୟ daily dozen ର କଥା ସବୁ ବୁଝେଇ ଦେଲେ । ବାବା ମୋତେ ଆସି ଘରେ ପଚାରିଲେ, ହରେନ୍ଦ୍ର ବ୍ୟାୟାମ କରିବାକୁ ଟାଉନ ହଲ୍ ପଡ଼ିଆକୁ ଯାଉଛି, ତୁ ଯିବୁ ? ମୁଁ ବାବାଙ୍କ ଠାରୁ daily dozen ବିଷୟରେ ସବୁ କଥା ଶୁଣିବା ଆଗରୁ ସେ ବିଷୟରେ କେତେକ କଥା ଜାଣିଥିଲି । କାରଣ ସେତେବେଳେ ଖୁବ୍‌ଆଡ଼େ ରାଧାଶ୍ୟାମ ଦାସଙ୍କର daily dozen ର ପ୍ରଚାର ଚାଲିଥାଏ । ସିନେମାରେ, ସଭା, ସମିତିରେ daily dozen ବିଷୟରେ ପ୍ରଚାର କରାଯାଉଥାଏ । ରାଧାଶ୍ୟାମ ଦାସଙ୍କ ଚେହେରା ମଧ୍ୟ ଦେଖିବାକୁ ବେଶ୍ ସୁନ୍ଦର, ବଳିଷ୍ଠ ହେଇଥାଏ । ବେଶ୍ ଜଣେ ବ୍ୟାୟାମକୁଶଳୀ ପରି ଜଣା ଯାଉଥାନ୍ତି ।

ବାବାଙ୍କ ଠାରୁ ଯେତେବେଳେ ଶୁଣିଲି ଯେ ହରେନ୍ଦ୍ର ଯାଉଛି ଟାଉନ୍ ହଲ୍ ପଡ଼ିଆକୁ daily dozen କରିବା ପାଇଁ, ମୋର ମନ ହେଲା ଯିବାକୁ । ଦିନେ ଚାରିଟା ବେଳେ ସାଇକେଲ୍ ଯୋଗେ ଟାଉନ୍ ହଲ୍ ପଡ଼ିଆକୁ ଗଲି । ମୁଁ ଯାଇ ପ୍ରଥମେ ସାଇକେଲ୍ ଥୋଇ ଦେଇ ଟାଉନ୍ ହଲ୍ ବାରନ୍ଦାରେ ବସିଲି, ରାଧାଶ୍ୟାମ ଦାସ daily dozen କ'ଣ କେମିତି କରଉଛନ୍ତି ଦେଖିବା ପାଇଁ । ଖାଉଡ଼େ ପିଲା, ତା'ଭିତରେ ହରେନ୍ଦ୍ର ଅଛି । ରାଧାଶ୍ୟାମ ଦାସ ନିଜେ daily dozen କରିବା ପାଇଁ ଶିକ୍ଷା ଦଉଥାନ୍ତି । ମୁଁ ବସି ବସି ସବୁ ଦେଖିଲି । କିନ୍ତୁ ମୋର ମନ ହେଲା ନାହିଁ ସେଥିରେ ଯୋଗ ଦେବା ପାଇଁ । ମୁଁ ମନେ ମନେ ସ୍ଥିର କଲି, ଏଠି ପଡ଼ିଆଟାରେ କାହିଁକି ଅଭ୍ୟାସ କରିବି ? ନିଜେ ଖଣ୍ଡେ daily dozen ବହି କିଣି ଘରେ କଲି । କିନ୍ତୁ ମୋତେ କାହିଁକି ଭଲ ଲାଗିଲା ନାହିଁ । ଭାବିଲି, କିଏ ଏଗୁରା କରୁଛି ? ଏ ସବୁତକ figure କଲା ବେଳକୁ ବହୁତ ସମୟ ଲାଗୁଛି । ଏଣୁ ବନ୍ଦ କରିଦେଲି । ମୋର football ଖେଳ ପ୍ରତି ବେଶି ମନ ଥାଏ ଆଉ sports ଆଡ଼କୁ । Sports ରେ କେବଳ long race ରେ ଯୋଗ ଦିଏ । High jump ରେ ମଧ୍ୟ ଯୋଗ ଦେଇଛି । କିନ୍ତୁ long race ରେ ଯୋଗ ଦବାକୁ ଭଲ ଲାଗେ ।

Supplementary ପରୀକ୍ଷା ଦେଇ ମୁଁ ଈଶ୍ୱର ସାହୁ ଦିହେଁ ବୁଲାବୁଲି କରୁଥାଉ । କିନ୍ତୁ ଆଗ ପରି ନୁହେଁ । ଦିନେ ଘରେ ଅଛି । ଏଇ ସମୟରେ ଆମ ସ୍କୁଲର କେତେ ଜଣ player ଆସି ମୋତେ ଅନୁରୋଧ କଲେ ଆମର Stewart School ସହିତରେ friendly match ଅଛି ତୋତେ ଖେଳିବାକୁ ହବ, କାରଣ ମୁଁ ତ ସେ ପର୍ଯ୍ୟନ୍ତ Muslim Seminaryର ଛାତ୍ର ଥାଏ । ଏଣୁ ମୁଁ ଖେଳିବା ଅସଙ୍ଗତ ହବ ନାହିଁ । ମୁଁ ପ୍ରଥମେ ରାଜି ହେଲି ନାହିଁ । ମନ ଭଲ ନଥାଏ, ସେମାନେ ମୋତେ

କେତେ କଥା ବୁଝେଇଲେ । ମୁଁ ପୁଣି ରାଜି ହେଲି । Match ହବ Stewart School ପଡ଼ିଆରେ, ସେଠିକି ଗଲି । ସେଦିନ ମୁଁ ଆମ team ର left in position ରେ ଖେଳିଲି । Stewart School ର ଖେଳାଳୀ ସବୁ ଗୋରା ପିଲା । ସମସ୍ତେ boot ପିନ୍ଧିଥାନ୍ତି । ଆମର ଖେଳାଳୀମାନଙ୍କର boot ନ ଥାଏ, ଖାଲି ଗୋଡ଼ । ଆଜିକାଲି ତ ଦେଖୁଛି ସମସ୍ତେ boot ପିନ୍ଧି ଖେଳୁଛନ୍ତି । ସେତେବେଳେ ଏତେ boot ପିନ୍ଧି ଖେଳୁ ନଥିଲେ । ଜଣେ ଦି'ଜଣ କେହି Anglo Indian boot ପିନ୍ଧି ଖେଳୁଥିଲେ । ସେତେବେଳେ ଯଦି କେହି boot ପିନ୍ଧି ଖେଳିଲେ, ତାଙ୍କ ଉପରେ ବିପକ୍ଷ ଦଳର ବିଷ ଦୃଷ୍ଟି । ଆଗେ ଚିନ୍ତା ପଡ଼ିଯାଏ, କେମିତି ତାଙ୍କୁ ମାଡ଼ ଦେଇ, ତାଙ୍କ ଗୋଡ଼ ଜଖମ କରି ତାଙ୍କୁ ଖେଳରୁ ବାହାର କରିବାକୁ ହବ । ଏଣୁ ତାଙ୍କ ଉପରେ ସୁବିଧା ଦେଖି ତାଙ୍କ ଗୋଡ଼କୁ ଜଖମ କରିବାର ଚେଷ୍ଟା କରାହୁଏ । ଫଳରେ ସେମାନେ କିମ୍ୱା ସେମାନଙ୍କ ମଧ୍ୟରୁ କେତେକ ଜଖମ ହେଇ ପଡ଼ିଆରୁ ବାହାରି ଯାନ୍ତି । ସେମାନେ ଯେତେବେଳେ ଜଖମ ହେଇ ପଡ଼ିଆରୁ ଛୋଟେଇ ଛୋଟେଇ ବାହାରି ଯାନ୍ତି, ଏଣୁ ଦର୍ଶକମାନଙ୍କ ମଧ୍ୟରୁ ତାଙ୍କୁ ପରିହାସ କରି ଅନେକ ରକମ ମନ୍ତବ୍ୟ, କଟୁକ୍ତି କରନ୍ତି । ଏ ଘଟଣା କି ସ୍କୁଲ team କି open team ଉଭୟ ଦଳରେ ସେତେବେଳେ ଦେଖା ଯାଉଥିଲା । ସ୍କୁଲ team ରେ କ୍ୱଚିତ୍ boot ପିନ୍ଧି କେହି ଖେଳିବାର ଦେଖା ଯାଉଥିଲା । ନଚେତ୍ open teamରେ ପ୍ରାୟ ମଝିରେ ମଝିରେ ଜଣେ ଦି'ଜଣ boot ପିନ୍ଧା ଖେଳାଳୀ ଦେଖା ଯାଉଥିଲା କିନ୍ତୁ boot ପିନ୍ଧିଲେ ଉରୁଭଙ୍ଗର ସମ୍ଭାବନା ବେଶି ।

ଏଠି Stewart School ସହିତରେ match ଖେଳିବାକୁ ଆସି ଦେଖିଲି, ସମସ୍ତେ boot ପିନ୍ଧିଛନ୍ତି । ଏଣୁ ଆମର ପ୍ରଥମେ ବିଷ ଦୃଷ୍ଟି ପଡ଼ିଲା ତାଙ୍କ ଉପରେ । କ'ଣ କରିବା ? ଆମର ତ ଖାଲି ଗୋଡ଼ ସେମାନେ ଅଧିକାଂଶ ଗୋରା ପିଲା । ଏଣୁ ମନରେ ଆଉ ଗୋଟିଏ ଆକ୍ରୋଶ ଜନ୍ମିଲା । Stewart School ର ଜଣେ ଶିକ୍ଷକ referee ହେଇଥାନ୍ତି । ଖେଳ ଆରମ୍ଭ ହେଲା । ଆମେ ଆମର ଖାଲି ଗୋଡ଼କୁ ଜଗି ଖେଳୁଥାଉ । Stewart School ସେତେବେଳେ school teamର tournament ରେ କେବେ ଯୋଗ ଦେଉ ନାହିଁ । ଏଣୁ କୌଣସି school team ତାଙ୍କ ବିରୁଦ୍ଧରେ ଖେଳିବାର ସୁଯୋଗ ପାଇ ନାହାନ୍ତି । ଆଜି ଆମେ ଏଇ ପ୍ରଥମ ତାଙ୍କ ବିରୁଦ୍ଧରେ ଖେଳିବାର ସୁଯୋଗ ପାଇଲୁ । ଖେଳ ଭାରି ପ୍ରତିଦ୍ୱନ୍ଦିତାମୂଳକ ହଉଥାଏ । ସେମାନେ boot ପିନ୍ଧି ବିଶେଷ କିଛି କରି ପାରୁନଥାନ୍ତି । କାରଣ ଆମେ ଯାହାକୁ ପାଇଲୁ କାଇଦାରେ ଗୋଟାଏ କିଛି ଦୈହିକ ଆଘାତ କରିବାରେ ଛାଡୁ ନଥାଉ । କା'ର ଛାତି, କା'ର ମୁହଁ, କା'ର ପେଟ, ଗୋଡ଼କୁ ଆଘାତ ପରେ ଆଘାତ ଚାଲିଥାଏ । କିନ୍ତୁ referee, foul ବୋଲି declare କରିପାରୁ ନଥାନ୍ତି । Matric final ପରୀକ୍ଷା ଦେଇ କାଠଯୋଡ଼ି ବାଲିରେ ଓଡ଼ିଶାରୁ ଲବଣ ସତ୍ୟାଗ୍ରହ ଆରମ୍ଭ ବେଳେ ଭାରତରେ ବ୍ରିଟିଶ ଅତ୍ୟାଚାର ସମ୍ବନ୍ଧରେ ଯେତେ ଭାଷଣ ଶୁଣିଥିଲୁ ତା'ରି ପ୍ରତିଶୋଧ ନେଲା ଭଳି ଏଇ ଗୋରା ପିଲାଙ୍କୁ ଆଘାତ କରି ଦାଉ ସାଧିଲା ପରି ମନେ ହେଲା । ତଥାପି କେହି କାହାକୁ ଗୋଲ୍ ଦେଇ ପାରିଲୁ ନାହିଁ । ପ୍ରଥମ ଦିନର ଖେଳ ଅମୀମାଂସିତ ଭାବରେ ଶେଷ ହେଲା । ପୁଣି ତହିଁ ଆରଦିନ ଖେଳ ହବାର ସ୍ଥିର ହେଲା । ଆମେ ଦେଖିଲୁ Stewart School team ର goalkeeper ଯୋଗୁଁ ଆମେ ଜିତି ପାରିଲୁ ନାହିଁ । ଭଲ goalkeeper । ଏଣୁ ମସୁଧା କଲୁ କାଲି ଖେଳ ହେଲେ, ଆଗେ ସେ goalkeeper କୁ ମାଡ଼ ଦବା ଦରକାର । ତା'ନହେଲେ, ଜିତି ହବ ନାହିଁ । କେବଳ goalkeeper ଯୋଗୁଁ ଆଜି ଜିତି ହେଲା ନାହିଁ । ଆମେ ଯେତେ ପ୍ରକାର ଚେଷ୍ଟା କଲୁ, goal keeper ସବୁ ଅଟକେଇଲା ।

ତହିଁ ଆରଦିନ ଖେଳ ହେଲା । ସେହି କ୍ଷିତିଶ ରାୟ ଚୌଧୁରୀ, ତାଙ୍କର ଶିକ୍ଷକ referee, ସେହି goalkeeper ଖେଳୁଛି । ମୁଁ ଏବଂ ଆଉ ଜଣେ ପିଲା ଶିଖାଶିଖି ହେଲୁ goalkeeperକୁ କେମିତି ପ୍ରଥମରୁ ଆଘାତ କରିବା । ଖେଳ ଆରମ୍ଭ ହେଲା, ପୂର୍ବ ଦିନ ଅପେକ୍ଷା ଆହୁରି ଜୋରସୋରରେ ଖେଳ ହେଲା । ଏଇ ସମୟରେ

ଗୋଟାଏ ball ନେଇ goal କୁ ମାରିବା ସଙ୍ଗେ ସଙ୍ଗେ ମୁଁ ଏବଂ ଅନ୍ୟ ଜଣେ ପିଲା goalkeeper କୁ ମାରି ପକେଇଦେଲୁ । କିନ୍ତୁ ତଥାପି goal ଦେଇ ପାରିଲୁ ନାହିଁ । ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ଏଇ goalkeeper କୁ ମାରି ପକେଇଦବା ଯୋଗୁଁ ମୋତେ ଏବଂ ମୋ ସାଥୀର ଅନ୍ୟ ଜଣେ ପିଲାକୁ referee କ୍ଷିତିଶ ରାୟ ଚୌଧୁରୀ ଡ଼ାକି warning ଦେଲେ ଯେ ଆଉ ଯଦି ଇମିତି କାହାରିକୁ ଆଘାତ କର୍ବ, ତା'ହେଲେ ଖେଳରୁ ବାହାର କରିଦେବେ । ଖେଳ ପୁଣି ଆରମ୍ଭ ହେଲା । କିନ୍ତୁ ସେଦିନ ମଧ୍ୟ କେହି କାହାରିକୁ goal ଦେଇ ପାରିଲୁ ନାହିଁ । ଅଦମ୍ୟ goal-keeper ! ଖେଳ ପୁଣି ଅମୀମାଂସିତ ଭାବରେ ଶେଷ ହେଲା । Referee କହିଲେ ଆଉ ଖେଳ ହବ ନାହିଁ । ଆମେ ପଡ଼ିଆରୁ ଫେରିବା ପୂର୍ବରୁ ପ୍ରକାରାନ୍ତରେ goal-keeper ର ନାଁ ବୁଝିଲୁ । ତା'ର ନାଁ ଲୁଲୁ ବାର୍ନେଟ । ପରେ ଦେଖିଲୁ ଲୁଲୁ ବାର୍ନେଟ କେତେ ବର୍ଷ ଯାଏ open team ରେ ଖେଳି ଓଡ଼ିଶାର ଶ୍ରେଷ୍ଠ goalkeeper ରୂପେ ସୁନାମ ଅର୍ଜନ କରିଥିଲା ।

Matric final ପରୀକ୍ଷା ଦେଇ ଯେମିତି କାଠଯୋଡ଼ି ବାଲିରେ ଲବଣ ସତ୍ୟାଗ୍ରହର ପ୍ରସ୍ତୁତି ଅଭିଯାନ ଦେଖୁଥିଲୁ ଏବଂ ଭାଷଣ ଶୁଣୁଥିଲୁ, ବର୍ତ୍ତମାନ ଆଉ କିଛି ନାହିଁ । କାଠଯୋଡ଼ି ବାଲି ଥଣ୍ଡା ପାଣିରେ ବୁଡ଼ି ରହିଛି । ଏଣୁ ମୁଁ ଦୈନିକ କଟକ କାଳୀଗଳିର କାଳୀଠାକୁରାଣୀଙ୍କ ନିକଟକୁ ଦୁଇବେଳା ଯିବାକୁ ଆରମ୍ଭ କଲି, କେବଳ ପ୍ରାର୍ଥନା କରି ଜଣେଇବା ପାଇଁ, କେମିତି ମୁଁ ପାସ୍ କରେ । ଖାଲି ଯାଇ ନମସ୍କାରଟିଏ କରି ପ୍ରାର୍ଥନା କରିବାରେ ମନ ମାନିଲା ନାହିଁ । ଏଣୁ ରାଧାନାଥ ଗ୍ରନ୍ଥାବଳିରୁ କାଳୀଙ୍କ ସ୍ତୋତ୍ର ଲେଖିନେଲି । ତାକୁ ପ୍ରତ୍ୟେକ ଦିନ ସକାଳ ସନ୍ଧ୍ୟାରେ ଯାଇ କାଳୀଙ୍କ ନିକଟରେ ପଢ଼ି ପ୍ରାର୍ଥନା କରି ଆସେ । ଏମିତି ଦୈନିକ ସ୍ତୋତ୍ର ପଢୁ ପଢୁ ମୁଖସ୍ତ ହେଇଗଲା ଆଉ ଲେଖା ପଢ଼ିବା ଦରକାର ପଡ଼ିଲାନି । ମୁଁ ଦୈନିକ ଦୁଇବେଳା ଯାଇ କାଳୀଙ୍କ ସାମନାରେ ଥିବା ମଣ୍ଡପର ଗୋଟିଏ କଣରେ ଆଖି ବୁଜି ବସି ମନେ ମନେ ସ୍ତୋତ୍ର ପାଠ କରେ । ତା'ପରେ ନମସ୍କାର କରି ଆସେ । ଦିନେ ସେଠି ଗୋଟିଏ ମଜାର ଘଟଣା ହେଲା । ମୁଁ ଦିନେ ସକାଳ ବେଳା ଯାଇ କାଳୀ ମନ୍ଦିରରେ ପହଁଚିଲା ବେଳକୁ ଦେଖିଲି ଅନେକ ଗୁରିଏ ଅତି ସୁନ୍ଦର ସରୁ ଅରୁଆ ଚାଉଳ ପକ୍କା ଚଟାଣରେ ଖରାରେ ଶୁଖା ହେଉଛି । ଅରୁଆ ଚାଉଳ ବାସନାରେ ମନ ଆନନ୍ଦରେ ଭରି ଯାଉଥାଏ । ମୁଁ ଜାଣିଲି, ଏ ଠାକୁରାଣୀଙ୍କ ଅନ୍ନ ଭୋଗ ହବା ପାଇଁ ଖରାରେ ଶୁଖା ହେଉଛି । ମୁଁ ଆଉ କିଛି ନ ଭାବି ଗୋଟିଏ କ'ଣରେ ଆଖି ବୁଜି ବସି ସ୍ତୋତ୍ର ପାଠ ସାରି ଆଖି ଖୋଲି ଦେଖିଲା ବେଳକୁ ଏକ ବୁଢ଼ା ପାତିମାଙ୍କଡ଼ ସେ ଅରୁଆ ଚାଉଳରୁ ପେଟେ ଖାଇ ସାରିଲାଣି । ତା'ର ଗାଲ ଦି'ଟା ଓହଳି ପଡ଼ିଲାଣି । ଏଇ ସମୟରେ ଜଣେ ପୂଜକ ବାହାରି ଆସି ମୋତେ ପଚାରିଲା, ଆପଣ ପରା ଏଇଠି ବସିଛନ୍ତି ?

ମୁଁ କହିଲି ମୁଁ ତ ଆଖି ବୁଜି ବସିଥିଲି, ମୁଁ ତ ଅନେଇ ନଥିଲି । ସେ ଆଉ କିଛି ନ କହି ମାଙ୍କଡ଼କୁ ଘୋଉଡ଼େଇ ଦେଲା । ମାଙ୍କଡ଼ ପେଟେ ଅରୁଆ ଚାଉଳ ଖାଇ ଥାକୁଲ ଥାକୁଲ ହେଇ ଲାଞ୍ଜ ଟେକି ଏକା କୁଦାରେ ନିରୁଦ୍ଦେଶ ।

କଟକର କାଳୀଗଳିର କାଳୀ ମନ୍ଦିର ଗୋଟିଏ ଅତି ମନୋରମ ସ୍ଥାନ । ମନ ଆନନ୍ଦ ଏବଂ ଶାନ୍ତିରେ ଭରି ଉଠେ । ସେଠାର ପୂଜକମାନେ ମଧ୍ୟ ଭଲ । ମୁଁ ଦେଖିଲି ମୋରି ପରି ସେଠିକି ଦୈନିକ କେତେ ଭକ୍ତ ମନରେ କେତେ ପ୍ରକାର ଦୁଃଖର ଘଟଣା ନେଇଯାନ୍ତି, ଦେବୀଙ୍କୁ ଆରାଧନା କରନ୍ତି, ନିବେଦନ କରନ୍ତି, ଭୋଗ ଲଗାନ୍ତି, ଘିଅ ଦୀପ ଜାଳନ୍ତି, ପ୍ରାର୍ଥନା କରି ଭକ୍ତିରେ ପ୍ରଣାମ ଜଣେଇ ଆସନ୍ତି । ମୁଁ ମନେ ମନେ ୩ଟଙ୍କା ମନାସି ଥାଏ ଯେ ପାସ୍ କଲେ ୩ଟଙ୍କା ଭୋଗ ଲଗେଇବି । ମୁଁ ଦୈନିକ କାଳୀ ମନ୍ଦିରକୁ ଦି'ବେଳା ଯିବା ଦ୍ୱାରା ସେଠା ଗୁଡ଼ିଆ ଦୋକାନୀ, ପୂଜକ ଏମାନେ ମୋର ପରିଚିତ ହେଇଗଲେ । ତାଙ୍କ ସାଙ୍ଗରେ ବେଳେ ବେଳେ ଗପ କରି ଜାଣିଲି ଯେ ସେମାନଙ୍କର କାଳୀଙ୍କ ପ୍ରତି ପ୍ରଗାଢ଼ ଭକ୍ତି । ସେମାନେ ମୋତେ କାଳୀଙ୍କର କେତେ ଦୈବୀ ଶକ୍ତିର ଉଦାହରଣ ଦେଇ କହନ୍ତି, ସେଇ ମା'ଙ୍କୁ ଜଣାନ୍ତୁ ସବୁ ଠିକ୍ ହେଇ ଯିବ । ଏମିତି କେତେ଼େ କେତେ଼େ ବିପଦ

ଆପଦ, ଦୁଃଖ ଯନ୍ତ୍ରଣାରୁ ମା' କେତେ ଲୋକଙ୍କର ମନସ୍କାମନା ପୂର୍ଣ୍ଣ କଲେଣି ନା।

ତାଙ୍କର କଥା ଶୁଣି ମୋର ମନ ଖୁସି ହୋଇଯାଏ। ମନରେ ଗୋଟାଏ କେମିତି ଭରସା ପାଏ। ମନ ଆନନ୍ଦରେ ଭରି ଉଠେ। ଦିନେ ସେଠା ଗୁଡ଼ିଆ ଦୋକାନୀ କହିଲା, ଦେଖ ବାବୁ ଆପଣ ପାସ୍ କଲେ ଯା ଭୋଗ କରିବେ କରିବେ, ଆଗରୁ ଅଳ୍ପ କିଛି ଭୋଗ କରି ଦିଅନ୍ତୁ। କିଛି ନ କଲେ, ଖାଲି କ୍ଷୀର, ପାଚିଲା କଦଳୀ, କନ୍ଦରେ ଅମୃତ କୁଣ୍ଡ କରି ମା'ଙ୍କ ନିକଟରେ ଭୋଗ ଲଗେଇ ଦିଅନ୍ତୁ, ଦେଖିବେ ଆପଣଙ୍କର ମନସ୍କାମନା ନିଶ୍ଚୟ ପୂର୍ଣ୍ଣ ହବ। ମୁଁ ଏକଥା ଶୁଣି ଅମୃତ କୁଣ୍ଡ କରିବା ପାଇଁ ବାବାଙ୍କୁ ପଇସା ମାଗିଲା ବେଳକୁ, ବାବା ବିରକ୍ତ ହୋଇ କହିଲେ, ଆଗରୁ କ'ଣ ଭୋଗ କରିବୁ? ମନସ୍କାମନା ପୂର୍ଣ୍ଣ ହେଲେ ସିନା ଭୋଗ କରନ୍ତି। ବାବା ଏତକ କହି ବିରକ୍ତିରେ ମୋତେ କେତୋଟି ପଇସା ଦେଲେ। ମୁଁ ସେଇ ପଇସାରେ ଠାକୁରାଣୀଙ୍କ ନିକଟରେ ଅମୃତ କୁଣ୍ଡ ଲାଗି କଲି।

ଏହାପରେ ଦିନେ ସକାଳ ବେଳା କାଳୀ ମନ୍ଦିରକୁ ଯାଇ କାଳୀଙ୍କର ସାମନା ମଣ୍ଡପରେ ମୁଣ୍ଡ ତଳେ ଲଗେଇ କାଳୀଙ୍କୁ ନମସ୍କାର କରି ଉଠି କାଳୀଙ୍କୁ ଅନେଇଲା ବେଳକୁ କାଳୀଙ୍କର ରୂପାର ଜିଭ ପଛପଟେ ଲାଗିଥିବା ଗୋଟିଏ ବଡ଼ ନାଲି ରଙ୍ଗର ଗୋଲାପ ଫୁଲ ହଠାତ୍ ତଳେ ଖସି ପଡ଼ିଲା। ମୁଁ ମା'ଙ୍କଠାରୁ ଶୁଣିଥିଲି କୌଣସି ଦେବତାଙ୍କ ଫୁଲ ଯଦି ସାମନା ଆଡ଼େ ଖସି ପଡ଼େ, ତେବେ ଶୁଭ ଲକ୍ଷଣ ବୋଲି ଜାଣିବାକୁ ହବ। ଯଦି ପଛ ଆଡ଼କୁ ଖସି ପଡ଼େ ତା'ହେଲେ ଅଶୁଭ ଲକ୍ଷଣ ବୋଲି ଜାଣିବ। ଏଣୁ କାଳୀଙ୍କର ଫୁଲ ଯେ ସାମନା ଆଡ଼େ ଖସିବାର ଦେଖିଲି, ମୁଁ ଭାବିଲି ଏ ତ ଶୁଭ ଲକ୍ଷଣ। କ'ଣ ପାସ୍ ଖବର ପାଇବି କି? ମୁଁ କାଳୀଙ୍କ ମନ୍ଦିରରୁ ବିଦାୟ ନେଇ ଗୋଟାଏ ବାଟରେ ସାଇକେଲ୍‌ରେ ଘରକୁ ଫେରୁଛି। ଏଇ ସମୟରେ ଜଣେ Collegiateର player ସାଥୀରେ ଭେଟ ହେଲା। ସେ ମୋତେ player ଭାବରେ ଜାଣେ, ମୁଁ ତାକୁ player ବୋଲି ଜାଣେ, ନାଁ ସଦାନନ୍ଦ ବାନାର୍ଜୀ। ଆଗରୁ କେଭେ ଆମେ କଥାବାର୍ତ୍ତା ହୋଇ ନଥିଲୁ। ସେହିଦିନ ସେ ମୋତେ ଦେଖି ହଠାତ୍ ପଚାରିଲା, ପୁଲିନ୍, ତୁମେ ପାସ୍ କରିଛ? ମୁଁ କହିଲି କ'ଣ ଫଳ ବାହାରିଲାଣି? ମୁଁ ତ ଜାଣି ନାହିଁ।

ସଦାନନ୍ଦ, ମୁଁ ଦିହେଁ ସାଇକେଲ୍‌ରେ ଦୌଡ଼ିଲୁ। ସଦାନନ୍ଦ ମୋତେ ଯେଉଁ ଜାଗାକୁ ନେଇଗଲା, ସେ ଜାଗା ହେଉଛି ମୁଁ matric final ପରୀକ୍ଷା ଫଳ ଯେଉଁ ନୁରୁଲ୍ ହୋଦାଙ୍କ ଘରୁ ବୁଝିଥିଲି, ଏ ସେହି ଜାଗା। ଏଥର ତାଙ୍କୁ ଆଉ ଡ଼ାକିବାକୁ ପଡ଼ିଲାନି। ସେ ତାଙ୍କ ଘରର ରାସ୍ତା ଆର ପଟେ, ବୋଧେ ତାଙ୍କରି ଘର ହବ କି କ'ଣ, ଗୋଟିଏ ଘରର କବାଟରେ matric supplementary ପରୀକ୍ଷା ଫଳ type କରି ମଢ଼େଇ ଦେଇଥାନ୍ତି। ଆମେ ଦିହେଁ ସାଇକେଲ୍‌ରୁ ଓଲେହି ପଡ଼ି ପରୀକ୍ଷା ଫଳ ଉପରେ ଆଖି ବୁଲେଇଲା ମାତ୍ରେ ମୋର ରୋଲ୍ ନମ୍ବରଟା ମୋ ଆଖିରେ ପଡ଼ିଲା, ପାସ୍ କରିଛି, କି ଆନନ୍ଦ! ସଦାନନ୍ଦ ପଚାରିଲା ପାସ୍ କରିଛ? ମୁଁ କହିଲି, ହଁ। ସଦାନନ୍ଦ ମଧ ମୋର ରୋଲ୍ ନମ୍ବର ଦେଖିଲା। ସେ ମଧ ଜାଣିଲା ମୁଁ ପାସ୍ କରିଛି। ସଦାନନ୍ଦ ତ ଆଗରୁ ଜାଣିଥାଏ ସେ ପାସ୍ କରିଛି। ଏଣୁ ଆନନ୍ଦରେ hand shake କରି ଉଭୟେ ଉଭୟଙ୍କଠାରୁ ବିଦାୟ ନେଲୁ। ମୁଁ କାଳୀ ମନ୍ଦିରକୁ ଦୌଡ଼ିଲି। ସେଦିନ କାଳୀଙ୍କୁ ବାହାର ଅଗଣାରୁ ଚଟାଣରେ ମୁଣ୍ଡ ତଳେ ଲଗେଇ ମୁଁ ନମସ୍କାର କରି କରି ଯାଇ କାଳୀଙ୍କ ସାମନାରେ ପହଁଚି ସାଷ୍ଟାଙ୍ଗ ପ୍ରଣିପାତ କରି ଫେରିଲା ବେଳକୁ ସେଠା ଗୁଡ଼ିଆ ଦୋକାନୀ, ପୂଜକ ଏମାନେ ସମସ୍ତେ ମୋତେ ପଚାରିଲେ, କ'ଣ ବାବୁ, ପାସ୍ ହୋଇଗଲା? ମୁଁ ଆନନ୍ଦରେ ସମସ୍ତଙ୍କୁ ମୋର ଶୁଭ ଖବର ଜଣେଇ ସେଠୁଁ ବିଦାୟ ନେଇ ମେହେନ୍ଦିପୁରରେ ବଡ଼ଭଉଣୀଙ୍କ ବସାକୁ ଗଲି ତାଙ୍କୁ ମୋର ପାସ୍ ଖବର ଜଣେଇବା ପାଇଁ।

କାଳୀ ମନ୍ଦିରଠୁଁ ମେହେନ୍ଦିପୁର ଅଳ୍ପ ବାଟ। ମୁଁ ବଡ଼ଭଉଣୀଙ୍କ ବସାରେ ଯାଇ ପହଁଚିଲା ବେଳକୁ ଭିଣେଇ ଅଫିସ୍ ଚାଲି ଯାଇଥିଲେ। ବଡ଼ଭଉଣୀ ବସି ପାନ ଭାଙ୍ଗୁଥିଲେ, ଗାଧେଇ ନ ଥାନ୍ତି କି ଖାଇ ନଥାନ୍ତି। ମୁଁ

ଜଣେଇଲି ମୁଁ ପାସ୍ କରିଛି । ବଡ଼ଭଉଣୀ ଖୁସି ହେଲେ । ସେ ମୋତେ ଅନେଇ ନଥାନ୍ତି, ମୋର ପୂର୍ବର ଘଟଣା ସବୁ ମନେପଡ଼ି ମୋ ଆଖିରୁ ଦି'ଟୋପା ଲୁହ ଗଡ଼ି ପଡ଼ିଲା, ମୁଁ ତାକୁ ବଡ଼ଭଉଣୀଙ୍କ ଅଲକ୍ଷରେ ରୁମାଲରେ ପୋଛି ଦେଇ କହିଲି, ମୁଁ ଯାଉଛି, ସନ୍ଧ୍ୟାବେଳକୁ ଆସିବି । ସେତେବେଳକୁ ଦିନ ପ୍ରାୟ ୧୨ଟା ହେଲାଣି । ମୁଁ ବଡ଼ଭଉଣୀଙ୍କ ଠାରୁ ବିଦାୟ ନେଇ ବାବାଙ୍କୁ ଖବର ଦବା ପାଇଁ ବାବାଙ୍କ ଅଫିସ୍‌କୁ ଦୌଡ଼ିଲି । ଆଗରୁ କହିଛି, ବାବା ସେତେବେଳେ P.H.D. ଅଫିସ୍‌ରେ କାମ କରୁଥିଲେ । ସେ ଅଫିସ୍‌ଟା ଥିଲା କଟକ ମେଡ଼ିକାଲ୍‌ର ହତା ବାହାରେ ରାଣୀହାଟ କେନାଲ କୂଳରେ, ଆଜି କାଲି ଯେଉଁଠି "ନେହେରୁ ହଷ୍ଟେଲ" ହେଇଛି । ସେ ଅଫିସ୍‌ର ଏବେ ସେଠି କିଛି ଚିହ୍ନ ବର୍ଣ୍ଣ ନାହିଁ । ମୁଁ ମେହେନ୍ଦିପୁରରୁ ଆସି ମେଡ଼ିକାଲ ହତା ଟପି ଯେତେବେଳେ ବାବାଙ୍କ ଅଫିସ୍‌ରେ ପହଁଚେ, ବାବାଙ୍କୁ ଦେଖିଲି ବାବା ଚେୟାର ଉପରେ ବସି ଢ଼ୋଳେଇ ପଡ଼ିଛନ୍ତି । ମୁଁ 'ବାବା' ବୋଲି ଯେମିତି ଡ଼ାକି ଦେଲି, ବାବା ମୋତେ ଅନେଇ ଦବା ମାତ୍ରେ ମୁଁ କହିଲି "ଥାର୍ଡ଼ ଡ଼ିଭିଜନ୍" । ତା'ପରେ ବାବାଙ୍କୁ କହିଲି, ମୁଁ ଯାଉଛି ଘରକୁ, ବାବା କହିଲେ ହଉ ଯା ।

ମୁଁ ବାବାଙ୍କଠାରୁ ବିଦାୟ ନେଇ ମେଡ଼ିକାଲ ହତା ଭିତର ଦେଇ ଘରକୁ ଫେରିଲି । ମା' ସେତେବେଳେ ପର୍ଯ୍ୟନ୍ତ ମୋର ପାସ୍ ଖବର ଜାଣି ନଥାନ୍ତି । ମୁଁ ଘରେ ଯାଇ ପହଁଚି ମା'ଙ୍କୁ ଜଣେଇଲି ମୁଁ ପାସ୍ କରିଛି । ମା' ଶୁଣି ଖୁବ୍ ଖୁସି ହେଲେ । ମୁଁ ତା'ପରେ ଗାଧେଇ, ଖାଇପିଇ ଶୋଇଲି, କିନ୍ତୁ ନିଦ ହେଲା ନାହିଁ । ସବୁ ଅତୀତ ଘଟଣାଗୁଡ଼ା ଗୋଟିକ ପରେ ଗୋଟିଏ ମନେ ପଡୁଥାଏ । ପି.ଏମ୍.ଏକାଡ଼େମୀରୁ ୧୦ମ ଶ୍ରେଣୀରୁ ପାଠ ଛାଡେ, ତା'ପରେ ଯେତେ ଲାଞ୍ଛନା, କଟୁକ୍ତି-ଏଇଟା ପଢ଼ିଲାନି, ବାଲୁଙ୍ଗାଟାଏ, ମୂର୍ଖଟାଏ, ଛତରାଟାଏ ।

ପିଲାଦିନେ ପାଠ ପଢ଼ାରେ ମନ ଲାଗୁ ନଥାଏ । ଯେତେବେଳେ ପାଠ ପଢ଼ାରେ ମନ ଲାଗିଲା, ଅର୍ଥାଭାବ ଯୋଗୁଁ ମୋର ପାଠପଢ଼ା ବନ୍ଦ କରିଦେଲେ, କ'ଣ କରିବି ? ମଝିଆ ଭଉଣୀ "ହିରଣ୍ୟବାଳା" ର କଥା ମନେ ପଡ଼ିଲା, କି ଦୁଃଖବେଳେ ତା'ର ମୃତ୍ୟୁ ହୁଏ ! ! ପୁଣି ବର୍ଷେ କମ୍ପାଉଣ୍ଡରୀ ପଢ଼ିବା ଘଟଣା । ଏ ସବୁ ଭାବୁ ଭାବୁ ଦିନ ଗଡ଼ିଗଲା । ଚାରିଟା ବେଳକୁ ସାଇକେଲ୍ ନେଇ ପୁଣି ବଡ଼ଭଉଣୀଙ୍କ ବସାକୁ ମେହେନ୍ଦିପୁର ବାହାରିଲି, ଘରେ ଆଉ ରହିବାକୁ ମନ ଭଲ ଲାଗିଲା ନାହିଁ ।

ବଡ଼ଭଉଣୀଙ୍କ ବସାରେ ଯାଇ ପହଁଚିଲି । ଭିଣେଇ ସେ ପର୍ଯ୍ୟନ୍ତ ଅଫିସ୍‌ରୁ ଫେରି ନଥାନ୍ତି । ସେଦିନ ମୁଁ ବଡ଼ଭଉଣୀଙ୍କ ବସାରେ ପହଁଚିଲା ମାତ୍ରେ ଗୋଟାଏ ନୂଆ କଥା ଦେଖିଲି, ମୁଁ ଯେବେ ବଡ଼ଭଉଣୀଙ୍କ ବସାକୁ ଯାଏ, ଯେଉଁଠି ସେଠି ତଳେ ବସି ପଡ଼େ, ଚୌକିରେ ବସିବା ତ ଭିଣେଇଙ୍କ ବସାରେ ମୋଟେ ଉଚିତ୍ ମନେ କରୁନଥିଲି । କାରଣ ସେଟା ହେଲା ଶିଷ୍ଟାଚାର ବିରୁଦ୍ଧରେ । ଏଣୁ ମୁଁ ତଳେ ବସେ କିନ୍ତୁ ମୁଁ ସେଦିନ ଦେଖିଲି, ମୁଁ ତଳେ ବସିବା ପୂର୍ବରୁ ବଡ଼ଭଉଣୀ ମୋତେ ତାଳପତ୍ର ତିଆରି ଚାରିକୋଣିଆ ଆସନ ଖଣ୍ଡିଏ ଦେଲେ ବସିବାକୁ । ମୁଁ ଯେତେ କହିଲି, ନାହିଁ, ମୁଁ ତଳେ ବସୁଛି । ଭଉଣୀ ବାଧ କଲେ ଆସନରେ ବସିବାକୁ । ମୁଁ ସେଦିନ ଆସନରେ ବସି ମନେ ମନେ ଭାବିଲି, ଆଜି ଏ କ'ଣ ? ମ୍ୟାଟ୍ରିକ ପାସ୍ କରିଥିବା ଯୋଗୁଁ ନା କ'ଣ ? କାରଣ ସେତେବେଳେ ମ୍ୟାଟ୍ରିକ ଖଣ୍ଡେ ଜଣେ ପାସ୍ କଲେ ଲୋକେ ଭାବୁଥିଲେ, କେତେ କ'ଣ ପଢ଼ିଛି ! ଆଜିକାଲିକା ପରି ଖଣ୍ଡେ ପିଅନ ଚାକିରୀ ପାଇଁ ମ୍ୟାଟ୍ରିକ ପାସ୍ କରିଥିବା ପିଲା ଏତେ ଆତୁର ହଉ ନଥିଲେ । ମୁଁ ତ ନିଜେ ଦେଖିଛି, ଆମ ଗାଁରେ ଓଡ଼ିଶାର ପ୍ରଥମ entrance ପାସ୍ କରିଥିବା ଗୌରୀଶଙ୍କର ରାୟଙ୍କୁ ଲୋକେ କେତେ ସମ୍ମାନ ଦଉଥିଲେ । ଲୋକେ ଆଶ୍ଚର୍ଯ୍ୟ ହଉଥିଲେ, କଲିକତାରୁ କେତେ ପାଠ ପଢ଼ି କ'ଣ କ'ଣ ପାସ୍ କରି ଆସିଛନ୍ତି । ଗୌରୀଶଙ୍କର ରାୟ ଯେଉଁ ବାଟରେ ଯାଉଥିଲେ, ସେ ବାଟରେ ଅନ୍ୟ ଲୋକେ ଯିବାକୁ କୁଣ୍ଠାବୋଧ କରୁଥିଲେ, କାଳେ ତାଙ୍କ ହାବୁଡ଼େ ପଡ଼ିଯିବେ, କାଳେ ସେ କ'ଣ ପଚାରିଦେବେ ? ଆଜିକାଲି ତ ଛତୁ ଫୁଟିଲା ପରି matric ପାସ୍ କରା ପିଲା । ପାଠ ପଢ଼ା ଯେମିତି, ସମ୍ମାନ ମଧ ସେମିତି ।

ସେଦିନ ଭିଣେଇ ଅଫିସ୍‌ରୁ ଫେରିଲେ, ଆନନ୍ଦରେ ଅନେକ ଗପ ହେଲା । ମୁଁ ରାତିରେ ଘରକୁ ଫେରିଲି । ଘରେ ଫେରି ଦେଖିଲି, ବାବାଙ୍କର ଯେମିତି ଦୈନିକ ଗାଉଣା ବାଜଣା ହୁଏ, ଚାଲିଛି । ମୁଁ ପାସ୍ କଲେ ଯେମିତି, ଫେଲ୍ ହେଲେ ମଧ୍ୟ ସେମିତି । ଗାଉଣା ବାଜଣା ଦୈନିକ ହବାର କଥା । ଫେରିବାକୁ ଅନେକ ରାତି ହେଇଗଲା ବୋଲି, ଅତି ସାବଧାନରେ ଘରେ ପଶିଲି ।

ବାବା, ମା ମୋର matric ପାସ୍ ହବାରେ ବିଶେଷ ଖୁସି । ଯେଉଁଦିନ କମ୍ପାଉଣ୍ଡରୀ ପାସ୍ କରିଥିଲି, ସେଦିନ ଯେତିକି ଆନନ୍ଦ ଅନୁଭବ କରିଥିଲେ ଆଜି ତାଠୁଁ ଆହୁରି ଖୁସି ।

ସାଥୀ ମହଲରେ ମୃଣାଳ, ପ୍ରିୟ ସମସ୍ତେ ଶୁଣି ଆଶ୍ଚର୍ଯ୍ୟ ହେଲେ । ଈଶ୍ୱର ସାହୁ ତ ଚିର ସହଚର, ସେ ସୁଖ ଦୁଃଖର ସାଥୀ, ସେ ବିଶେଷ ଖୁସି ।

ନିମାଇ ଚରଣ ସିଂଙ୍କ ସହିତରେ ବାବାଙ୍କର ଭେଟ ହେଲା । ନିମାଇ ଚରଣ ସିଂ ବାବାଙ୍କୁ କହିଲେ, କ'ଣ, ପୁଅ ତ matric ପାସ୍ କଲା ତାକୁ ପଢ଼େଇବାକୁ ରାଜି ହଉ ନଥିଲେ କାହିଁକି ? ବାବା ଉତ୍ତରରେ କହିଲେ, ହଁ, ପାସ୍ କଲା, ପଢ଼େଇ ନଥିଲେ ଭୁଲ୍ କରିଥାନ୍ତି ।

ନିମାଇ ଚରଣ ସିଂଙ୍କ ସହିତରେ ପରେ ଦେଖା ହେଲା । ସେ ମୋତେ ଦେଖି ଆନନ୍ଦରେ ବିହ୍ୱଳ ହେଇ ପଡ଼ିଲେ । ବାବାଙ୍କର ତାଙ୍କର କ'ଣ କଥାବାର୍ତ୍ତା ହେଇଥିଲା, ତାଙ୍କ ମୁହଁରୁ ଶୁଣିଲି ।

## (୪)

କ୍ୟାପଟେନ୍ କେ.ଏମ୍.ରାୟଙ୍କ କଥା ମନେଥାଏ । ତୁ matric ପାସ୍ କରି medical କୁ ଚାଲିଆ । କ'ଣ କରିବି ? ଘଟଣା ତ ଭିନ୍ନ୍ ପ୍ରକାର ହେଇ ବସିଲା, final ରେ matric ପାସ୍ କରିଥିଲେ medical ରେ admission ନେଇ ପାରିଥାନ୍ତା । କିନ୍ତୁ ଦୈବ ଦୁର୍ଯୋଗକୁ supplementary ରେ matric ପାସ୍ କଲି । Matric supplementary ପରୀକ୍ଷାରେ ପାସ୍ କରିଥିବା ପିଲାଙ୍କ ପାଇଁ medical ରେ ଆଉ ବାଟ ନଥିଲା । କେବଳ କଟକ Engineering School ଆଉ Ravenshaw College ରେ ନାଁ ଲେଖେଇବାର ସୁବିଧା ଥାଏ । ମୋର Ravenshaw College ରେ ପଢ଼ିବାକୁ ମନ ହଉଥାଏ କିନ୍ତୁ Engineering School ରେ ଆଦୌ ପଢ଼ିବାକୁ ମନ ହଉ ନଥାଏ । ଦୈବାତ୍ ମୋର ଜଣେ ସାଙ୍ଗ Collegiate ର player ଶଶାଙ୍କ ମିତ୍ର ସହିତରେ ଭେଟ ହେଲା । ତା'ର ମୋର ସେହି ଖେଳ ପଡ଼ିଆରେ ଚିହ୍ନା ପରିଚୟ, ସାଙ୍ଗ । ସେଇଠି ଯାହା ଭେଟ ହଉଥିଲା, ତା'ଛଡ଼ା ଆଉ ନୁହେଁ କିମ୍ବା କଥାବାର୍ତ୍ତା କେଭେ ଆଉ କେଉଁଠି ହେଇ ନଥିଲା । ସେତେବେଳକୁ final ରେ matric ପାସ୍ କରି Engineering School ରେ ନାଁ ଲେଖେଇ ସାରିଥାଏ । ତା'ର ମୋର ଭେଟ ହେଲା ମଙ୍ଗଳାବାଗ୍‌ରେ । ସେ ମୋର ପାସ୍ କରିଥିବାର ଖବର କେମିତି ଜାଣିଥାଏ । ମୋତେ ଯେମିତି ଦେଖିଛି ଆଗେ ପ୍ରଶ୍ନ କଲା, କ'ଣ ତୁମେ ତ ଏବେ ପାସ୍ କରିଛ, କେଉଁଠି ନାଁ ଲେଖଉଛ ? ଶଶାଙ୍କ ମୋତେ ଏତକ ପ୍ରଶ୍ନ ପଚାରିବାରେ, ମୁଁ ଏକେବାର ଯେମିତି ତରଳିଗଲି । ମୋର ମନେ ହେଲା, ଯେମିତି ତା' ସହିତରେ କେତେ ଆଗରୁ ଆଳାପ କରିଛି । କିନ୍ତୁ ଶଶାଙ୍କ ସହିତରେ ଅଳ୍ପ ପରିଚୟ ଭିତରେ କେତେ ଧସ୍ତାଧସ୍ତି ଯାଇଛି । ମୁଁ ଭାବିଥିଲି, ଶଶାଙ୍କ ମୋତେ କଥା କହିବନି କିନ୍ତୁ ସବୁ ଭୁଲି ଚାଲିଲା ଗପ । ମୁଁ ମୋର medical ରେ ପଢ଼ିବାର ଇଚ୍ଛା ଏବଂ ବର୍ତ୍ତମାନ ସେଥିରେ ଅସୁବିଧା ଉପୁଜିଥିବା କଥା କହିଲି । ଏଣୁ Ravenshaw College ରେ ନାଁ ଲେଖେଇବାର କଥା କହିଲି । ସେ ଏ କଥା ଶୁଣି ମୋତେ engineering school ରେ ନାଁ ଲେଖେଇବା ପାଇଁ ପ୍ରବର୍ତ୍ତେଇଲା । ସେତେବେଳେ Engineering School ରେ football player ବେଶି ନିଆ ଯାଉଥାଏ । ସ୍କୁଲ କର୍ତ୍ତୃପକ୍ଷଙ୍କ ତରଫରୁ football player ଯେ ନାଁ ଲେଖେଇବେ, ତାଙ୍କୁ ବିଶେଷ ସୁବିଧା ଦିଆ ହଉଥାଏ । ଶଶାଙ୍କ ମୋତେ Engineering School ରେ ନାଁ ଲେଖେଇବା ପାଇଁ ବହୁତ ପ୍ରଲୋଭନ ଦେଖେଇଲା, ଯେମିତି ଦରମା ଛାଡ଼ ହବ, ଯନ୍ତ୍ରପାତି ମାଗଣା ଦିଆ ଯିବ, ଇତ୍ୟାଦି ଇତ୍ୟାଦି ।

ମୋର Engineering School ରେ ନାଁ ଲେଖେଇବାକୁ ମନ ନ ଥିଲେ ମଧ୍ୟ ଶଶାଙ୍କର କଥା ଶୁଣି ମନ ଡ଼ାକିଲା Engineering School ରେ ପଢ଼ିବି, ଦରମା ପଡ଼ିବ ନାହିଁ, ଯନ୍ତ୍ରପାତି ମାଗଣା ମିଳିବ, ଖେଳିବି। ମନ ବଦଳିଗଲା ପୂରାପୁରି। ତା'ପରେ ମୁଁ ଶଶାଙ୍କ ସହିତରେ ଗପ ସାରି ମେହେନ୍ଦିପୁର ବଡ଼ଭଉଣୀଙ୍କ ବସାକୁ ସାଇକେଲ୍‌ରେ ପଳେଇଲି। କାରଣ Ravenshaw College ରେ I.Sc.ରେ admission ନବାର ସ୍ଥିର ହୋଇଥିଲା। ସେଥିପାଇଁ admission ନବାରେ ଯେତେ ଟଙ୍କା ଲାଗିବ, ଭିଣେଇଙ୍କ ପାଖରୁ ସେ ଟଙ୍କା ଧାର ଆଣିବାର କଥା ହେଇଥିଲା, ସେଥିଯୋଗୁଁ ଯାଇ ଭିଣେଇଙ୍କ ବସାରେ ପହଁଚିଲି।

ଭଉଣୀ, ଭିଣେଇ ଓ ମୁଁ ବସି ଅନେକ ଗପ ଜମିଗଲା। ମୁଁ ମ୍ୟାଟ୍ରିକ ପାସ୍ କଲା ପରେ ଏବେ ଭଉଣୀ, ଭିଣେଇଙ୍କର ମୋ ପ୍ରତି ମାନ, ସମ୍ମାନ, ଆଦର ଯତ୍ନ ଟିକିଏ ଭିନ୍ନ ଧରଣର। ସମସ୍ତଙ୍କ ଆଖିରେ ମୁଁ ବର୍ତ୍ତମାନ ଧାନ ଆଉ ଆଗପରି ବାଲୁଙ୍ଗା ନୁହେଁ। ପୁଣି କଲେଜରେ I.Sc.ରେ ନାଁ ଲେଖେଇବି। ଏ ଯେମିତି ରଙ୍ଗମଞ୍ଚରେ ଗୋଟାଏ ଅଙ୍କ ପରେ ଆଉ ଗୋଟାଏ ଅଙ୍କ ଆରମ୍ଭ ହବାକୁ ଯାଉଛି। ସେତେବେଳେ matric ଖଣ୍ଡକ ପାସ୍ କଲେ, ଲୋକଙ୍କ ମନରେ କି ଧାରଣା ଥିଲା! Matric ପାଠକୁ ସେତେବେଳେ କେତେ କ'ଣ ଯେ ଭାବୁଥିଲେ! I.A.କିମ୍ୱା B.A. ଯେ ପାସ୍ କଲା, ତାକୁ ତ କେଉଡ଼େ ବିଜ୍ଞ ଲୋକ ବୋଲି ଭାବୁଥିଲେ। ପାଠ ମଧ୍ୟ ସେମିତି ପଢ଼ା ହଉଥିଲା, ପିଲାଏ ପାଠ ମଧ୍ୟ ସେମିତି ପଢୁଥିଲେ।

ସେଦିନ ରାତିରେ ଭିଣେଇଙ୍କ ବସାରେ ଗପ ସରିଲା ପରେ ମୁଁ ଭିଣେଇଙ୍କ ପାଖରୁ ୩୦ଟଙ୍କା ଧାର ସ୍ୱରୂପ ଆଣିଲି। ୩୦ ଟଙ୍କା ଭିଣେଇଙ୍କ ପାଖରୁ ଧାର ଅଣା ହେଲା ଆଉ ଯାହା ଲାଗିବ ବାବା ଦେବେ। ସେଦିନ ରାତିରେ ଭିଣେଇ ମୋ ସହିତରେ ବଜାରକୁ ଆସିଲେ, ବାଟରେ ଅନେକ ଗପ କରି କରି ଆସିଲୁ। ମୋର ମନ ଥିଲା Ravenshaw College I.Sc.ରେ ନାଁ ଲେଖେଇବି। କିନ୍ତୁ ଶଶାଙ୍କ ମୋ ମୁଣ୍ଡରେ ଯେଉଁ Engineering School ରେ ପଢ଼ିବାର ଧାରଣା ପୁରେଇଲା, ସେ ଧାରଣା ମୋ ମୁଣ୍ଡରେ ଗୋଟାଏ ଆନ୍ଦୋଳନ ସୃଷ୍ଟି କଲା, କ'ଣ କରିବି? Ravenshaw College ରେ ପଢ଼ିବି ନା Engineering School ରେ ପଢ଼ିବି? ଏ କଥା ମଧ୍ୟ ଭିଣେଇଙ୍କୁ କହିଲି, ଭିଣେଇ ମୋର ଇଚ୍ଛା ଉପରେ ଛାଡ଼ିଦେଲେ। ମୋର ଯାହା ଇଚ୍ଛା, ସେଇଆ ପଢ଼ିବି।

ସେଦିନ ରାତିରେ ହଳେ ଧଳା କାନ୍‌ଭାସ୍ ଯୋତା କିଣି ଘରକୁ ଫେରିଲି। ଭିଣେଇ ତାଙ୍କ ବସାକୁ ଫେରିଗଲେ। ମୁଁ ଆମ ଘରେ ଆସି ପହଁଚି ବାବାଙ୍କୁ Engineering School ରେ ପଢ଼ିବା କଥା କହିଲି। ବାବା P.H.D. ରେ ଚାକିରୀ କରୁଥିଲେ। ବାବା ଜାଣିଥିଲେ, ସେତେବେଳେ ଜୀବନରେ ଜଣେ overseer ହେଲେ ମନ୍ଦ ନଥିଲା। ଜଣେ ଜଣେ overseer ହେଇ ସେତେବେଳେ କେତେ କ'ଣ କରି ଯାଇଛନ୍ତି। ବାବା ମଧ୍ୟ ମତ ଦେଲେ, ସେ ମନ୍ଦ ହବ ନାହିଁ। ତଥାପି ମୋ ଉପରେ ଛାଡ଼ି ଦେଲେ, ତୋର ଯାହା ଇଚ୍ଛା। କିନ୍ତୁ ମୋର ଆନ୍ତରିକ ଇଚ୍ଛା ନଥାଏ Engineering School ରେ ପଢ଼ିବାକୁ। ମୋର ଏକାନ୍ତ ଇଚ୍ଛା ଥାଏ medical ରେ ପଢ଼ିବା ପାଇଁ। କ୍ୟାପଟେନ୍ କେ.ଏମ୍.ରାୟଙ୍କ କଥା ତ matric ପାସ୍ କରି medical କୁ ଚାଲିଆ ମନ ଭିତରେ ବରାବର ଧକ୍କା ଦଉଥାଏ। I.Sc. ପଢ଼ିଲେ ବରଂ medical ପଢ଼ି ହବ, engineering ପଢ଼ିଲେ ତ ଆଉ ଡାକ୍ତରୀ ପଢ଼ି ହବ ନାହିଁ। ସେଇ overseer ହେଇ ଜୀବନଟା କଟିବ। ବାବା ମୋ ଠାରୁ Engineering School ରେ ପଢ଼ିବା କଥା ଶୁଣି କହିଲେ, ଆଚ୍ଛା, ମୁଁ କାଲି ସକାଳେ ଯାଇ Engineering School ରୁ ସବୁ ବୁଝେ। ତହିଁ ଆରଦିନ ସକାଳେ ବାବା Engineering School କୁ ଗଲେ। ବାବା ଯୋବ୍ରା ୱାର୍କସପ୍‌ରେ ତ ଚାକିରୀ କରି pension ନେଇଥିଲେ। ଏଣୁ Engineering School ରେ ତାଙ୍କର ଭଲ ଚିହ୍ନା ପରିଚୟ ଥିଲା। ବାବା ଯାଇ ବୁଝି ଆସି କହିଲେ, ତାଙ୍କର ନାଁ ଲେଖେଇବା ପାଇଁ ଯେଉଁ ବୟସ ସୀମା ରଖିଛନ୍ତି, ତାଠୁଁ ତୋର ବୟସ

ଟିକିଏ ବେଶି ହଉଛି ବୋଲି ସେଠି ନାଁ ଲେଖେଇ ହବ ନାହିଁ ବୋଲି କହିଲେ। ମୁଁ ଭାବିଲି ଭଲ ହେଇଛି, ମୋର ତ ଆଦୌ ଇଚ୍ଛା ନଥିଲା, ଏଣୁ ସ୍ଥିର ହେଲା Ravenshaw College ରେ I.Sc.ରେ ନାଁ ଲେଖେଇବି। ମନ ଆନନ୍ଦରେ ଭରି ଉଠିଲା।

Ravenshaw College ରେ ନାଁ ଲେଖେଇବା ପୂର୍ବରୁ conduct certificate ଇତ୍ୟାଦି Muslim Seminary ରୁ ଆଣିବାର କଥା। ଏଣୁ ଦିନେ ଯାଇ ସ୍କୁଲରେ headmasterଙ୍କ ସଙ୍ଗେ ଦେଖା କରି conduct certificate ଇତ୍ୟାଦି ଆଣିଲି। ସମସ୍ତେ ମୋ ଉପରେ ଖୁସି କାରଣ ମୁଁ ପାସ୍ କରିଛି। କିନ୍ତୁ ଜୟରାମ ବାବୁ ସେତେ ଖୁସି ନଥିଲା ପରି ଜଣାଗଲା। କାରଣ ମୁଁ ପାସ୍ କରିବା ଦ୍ୱାରା ତାଙ୍କର ସ୍କୁଲ ଟିମ୍‌ର ଗୋଟାଏ player ଖସିଗଲା। ସମସ୍ତଙ୍କର ସେହି ଗୋଟାଏ ପ୍ରଶ୍ନ କ'ଣ ଆଉ ପଢ଼ିବୁ? ମୁଁ ଉତ୍ତରରେ ସମସ୍ତଙ୍କୁ କହିଲି Ravenshaw College ରେ I.Sc.ରେ ନାଁ ଲେଖେଇବି।

ଯେତେବେଳେ ସ୍କୁଲରୁ ବିଦାୟ ନେଇ ଆସେ, ଶିକ୍ଷକ, ସାଙ୍ଗ ପିଲା, player ଦଳ ସମସ୍ତଙ୍କୁ ଯଥୋଚିତ ସମ୍ମାନ, ଶ୍ରଦ୍ଧା ଜଣେଇ ଆସିଲି। ସମସ୍ତଙ୍କ ଅପେକ୍ଷା ଜୟରାମ ବାବୁଙ୍କୁ ବେଶିଭାବେ। ଜୟରାମ ବାବୁଙ୍କଠାରୁ ବିଦାୟ ନେଇ ଆସିବା ବିଶେଷ ଦୁଃଖଦାୟକ ହେଲା। କାରଣ ତାଙ୍କର ସ୍ନେହ ଶ୍ରଦ୍ଧା ଯୋଗୁଁ ତାଙ୍କୁ ଶିକ୍ଷକ ଅପେକ୍ଷା ପିତୃତୁଲ୍ୟ ମନେହୁଏ। ମୋର ବିଶେଷ ସୌଭାଗ୍ୟ, ମୁଁ ଜୟରାମ ବାବୁଙ୍କ ଭଳି ଜଣେ ପାଠର ଗୁରୁ ଏବଂ ଖେଳର ଗୁରୁ ପାଇଥିଲି। ଜୟରାମ ବାବୁ ଆମର ଅଙ୍କ ଶିକ୍ଷକ ଥିଲେ। ତାଙ୍କ ପାଖରେ ଅଙ୍କ କରି ମୋର ଅଙ୍କ କଷିବାର ଭୟ ଛାଡ଼ିଗଲା। ତାଙ୍କରି ଯୋଗୁଁ ମୁଁ additional mathematics ନେଇ ପାସ୍ କରି ପାରିଲି, ପୁଣି football ଖେଳରେ ତାଙ୍କର training ଯେମିତି tuition କଲା ଭଳି। ଖେଳ ପଡ଼ିଆରେ ସାଙ୍ଗରେ ନେଇ ଖେଳେଇ, ପ୍ରତ୍ୟେକ ଅବସ୍ଥାରେ ଭୁଲକୁ ସୁଧାରିବାର ଚେଷ୍ଟା, ଯେମିତି କାଗଜ, କଲମ ଧରି ପଢ଼େଇବାର, ବୁଝେଇବାର ଚେଷ୍ଟା, ଭୁଲ କଲେ ପୁଣି ବେଳେ ବେଳେ ମାଡ଼। ପଡ଼ିଆ ମଝିରେ ଖେଳ ଛାଡ଼ି ଗୋଇଠାଏ ମାରିବାକୁ ଗୋଡ଼େଇଲେଣି। ତାଙ୍କର ଗୋଇଠା ହିଁ ମୋର ଖେଳାଳୀ ଜୀବନର ପରମ ଆଶୀର୍ବାଦ, ସେ ଗୋଡ଼ ଧୂଳି ମୋର ଚିର କାମ୍ୟ। Football player ବୋଲି ମୁଁ ଯେତିକି ସୁନାମ ଅର୍ଜନ କରିଥିଲି, ସେ କେବଳ ଜୟରାମ ବାବୁଙ୍କ ଯୋଗୁଁ। ମୁଁ ଯେତେବେଳେ ଜୟରାମ ବାବୁଙ୍କ ଠାରୁ ବିଦାୟ ନେଇ ଆସେ, ଜୟରାମ ବାବୁ କହିଲେ, ଯା ଏଥର ତ କଲେଜରେ ଖେଳିବୁ। ସେତେବେଳେ କଲେଜ କହିଲେ Ravenshaw College ବୁଝାଉଥିଲା। କଟକରେ ସେତେବେଳେ ପୁଅ ପିଲା ପଢ଼ିବା ପାଇଁ ଅନ୍ୟ କୌଣସି କଲେଜ ନଥିଲା।

ମୁଁ ଜୟରାମ ବାବୁଙ୍କୁ କହିଲି-ସାର୍ ମୁଁ ତ Rovers team ରେ ଖେଳୁଛି, Ravenshaw College ରେ ଖେଳି ପାରୁଛି କି ନା କହି ପାରୁନି। ଜୟରାମ ବାବୁ କହିଲେ, କଲେଜରେ ଯଦି ନ ଖେଳିବୁ Rovers Team ରେ ଖେଳିବୁ, ତେବେ college ର permission ନବାକୁ ହବ, ନଚେତ୍ ଖେଳି ପାରିବୁନି। ମୁଁ କହିଲି college permission ଦେଲେ ତ, ଯଦି ନ ଦିଏ, ତା'ହେଲେ Rovers ରେ ଖେଳି ପାରିବିନି କି କଲେଜରେ ଖେଳି ପାରିବିନି। ଜୟରାମ ବାବୁ କହିଲେ, ଚେଷ୍ଟା କର permission ପାଇଁ।

ମୁଁ କଲେଜରେ admission ନେଲାବେଳକୁ କଟକରେ open team ର league match ଆରମ୍ଭ ହେଇ ଯାଇଥାଏ, ମୁଁ Rovers ତରଫରୁ ମଧ କେତେଟା league match ଖେଳି ସାରିଥାଏ। ଏଇଠି ଗୋଟାଏ ଘଟଣା କହିବାର ମୁଁ ଦରକାର ମନେକରୁଛି। ଘଟଣା ହେଲା, ମୁଁ କେମିତି Rovers Team ରେ ଖେଳିବା ପାଇଁ ସୁବିଧା ପାଇଲି, ମୁଁ ଆଗରୁ ଲେଖିସାରିଛି ଯେ ମୁଁ ଯେତେବେଳେ supplementary matric ପରୀକ୍ଷା ଦେଇ ଫଳ ବାହାରିବା ଅପେକ୍ଷାରେ ଥିଲି। ସେହି ସମୟରେ ଥରେ କଟକର Stewart ସ୍କୁଲ ସହିତରେ ମୋତେ friendly football match ଖେଳିବାକୁ ପଡ଼ିଥିଲା। ସେ matchରେ Stewart ସ୍କୁଲର ଜଣେ ଶିକ୍ଷକ

ଶ୍ରୀ କ୍ଷିତିଶ ଚନ୍ଦ୍ର ରାୟ ଚୌଧୁରୀ ଖେଳର ପରିଚାଳନା ପାଇଁ referee ହୋଇଥିଲେ । ସେହି ଖେଳରେ ମୁଁ ଏବଂ ଆମ team ର ଆଉ ଜଣେ ପିଲା ତାଙ୍କର goalkeeperକୁ ସାଂଘାତିକ ଭାବରେ foul କରିବା ଯୋଗୁଁ କ୍ଷିତୀଶ ବାବୁ ମୋତେ ଏବଂ ମୋ ସାଥିରୁ ଅନ୍ୟ ଜଣେ ପିଲାକୁ ଡ଼ାକି warning ଦେଇଥିଲେ, କ୍ଷିତିଶ ଚନ୍ଦ୍ର ରାୟ ଚୌଧୁରୀଙ୍କ ସଙ୍ଗେ ମୋର ସେତିକି ଦେଖା, ସେତିକି ପରିଚୟ । ତା'ପରେ ଆଉ ତାଙ୍କୁ ଭେଟି ନଥିଲି ।

ମୁଁ supplementary matric ପରୀକ୍ଷା ଦେଇ ସେତେବେଳେ ଦୈନିକ ସକାଳ, ସନ୍ଧ୍ୟା ଦୁଇବେଳା କଟକର କାଳୀଗଳିର କାଳୀ ଠାକୁରାଣୀଙ୍କ ନିକଟକୁ ପ୍ରାର୍ଥନା କରିବାକୁ ଯାଉଥିଲି । ଦିନେ ସକାଳବେଳା ମୁଁ କାଳୀ ମନ୍ଦିରକୁ ଯାଇ, ସେଠୁ ଫେରି କେତେ ଆଡ଼େ ବୁଲାବୁଲି କରି ଦିନ ୧୨ଟାରେ କାଜୀବଜାର ବାଟ ଦେଇ ସାଇକେଲ୍‌ରେ ଘରକୁ ଫେରୁଛି ବାଟରେ ଦେଖିଲି କ୍ଷିତୀଶ ଚନ୍ଦ୍ର ରାୟଚୌଧୁରୀ ତାଙ୍କର ଘର ସାମନାରେ ଠିଆ ହୋଇଛନ୍ତି । ମୁଁ ତାଙ୍କୁ ଚିହ୍ନି ପାରି ସୁଦ୍ଧା, ନ ଚିହ୍ନିଲା ପରି ହୋଇ, ସାଇକେଲ୍‌ରେ ବସି ଅଳ୍ପ ବାଟ ଟପି ଆସିଛି, ସେ ମୋତେ ଡ଼ାକ ପକେଇଲେ । ମୁଁ ତାଙ୍କର ଡାକ ଶୁଣି ଫେରି ଯାଇ ସାଇକେଲ୍‌ରୁ ଓଲେହି ପଡ଼ି ତାଙ୍କୁ ନମସ୍କାର ଜଣେଇ ତାଙ୍କ ସାମନାରେ ଠିଆ ହେଲା ମାତ୍ରେ, ସେ ମୋତେ ପଚାରିଲେ ତୁମେ କ'ଣ କରୁଛ ? ମୁଁ କହିଲି, ମୁଁ supplementary matric ପରୀକ୍ଷା ଦେଇଛି ।

ସେ ଏ କଥା ଶୁଣି କହିଲେ, ତୁମେ ଆମର Rovers Team ରେ ଖେଳ । ମୁଁ ତାଙ୍କ କଥା ଶୁଣି ଅବାକ୍ ହେଲି । ଏ କ'ଣ ମୋତେ Rovers Team ରେ ଖେଳିବାକୁ କହିଲେଣି । ସେ ପୁଣି କହିଲେ, ତୁମେ ସୁରେଶ ବୋଷଙ୍କୁ ଚିହ୍ନି ଥିବ । ସୁରେଶ ବୋଷ ମୋର ଜଣେ ସାଙ୍ଗ । ସେ ପି.ଏମ୍.ଏକାଡ଼େମୀର ଛାତ୍ର ଥିଲା । ସେ ତ ଆମ teamରେ ଖେଳି ବେଶ୍ ନାଁ କଲାଣି, ତୁମେ କାହିଁକି ଖେଳିବ ନାହିଁ ? ତୁମେ ରୋଜ ଆସି Rovers Team ରେ ଖେଳ, ତୁମକୁ କେବଳ ମାସିକ ଆଠ ଅଣା ପଇସା ଚାନ୍ଦା ଦବାକୁ ପଡ଼ିବ । ଆଉ କିଛି ନାହିଁ । କ'ଣ କହୁଛ ? ଆଜି କିଲ୍ଲା ପଡ଼ିଆକୁ ଆସିବ ।

ଏ କଥା ଶୁଣି ମୋ ମନ ଖୁସି ହୋଇଗଲା । Rovers Team ରେ ଖେଳିବି । ମୁଁ କ୍ଷିତୀଶ ଚନ୍ଦ୍ର ରାୟ ଚୌଧୁରୀଙ୍କୁ ମୋର ସମ୍ମତି ଜଣେଇ, ନମସ୍କାର କରି ବିଦାୟ ନେଇ ଘରକୁ ଫେରିଲି । ମନଟା ଆନନ୍ଦରେ ଫାଟି ପଡୁଥାଏ କିନ୍ତୁ ଆଉ ଗୋଟାଏ କଥାରେ ମନର ଆନନ୍ଦଟା କେମିତି ଟିକିଏ ବାଧାପ୍ରାପ୍ତ ହଉଥାଏ । କାରଣଟା ହେଲା, ମାସିକ ଆଠ ଅଣା ପଇସା ଚାନ୍ଦା କୁଆଡୁ ଦେବି ? ପୁଣି ଭାବିଲି, ହଁ ଆଠ ଅଣା ପଇସା ତ, କୁଆଡୁ ହେଲେ ଦିଆଯିବ । ଆଜି ଯାଇ କିଲ୍ଲା ପଡ଼ିଆରେ Rovers Team ରେ ଯୋଗ ଦେବି ।

ସେହି ଦିନ ଚାରିଟା ବେଳକୁ ଯାଇ କିଲ୍ଲା ପଡ଼ିଆରେ Rovers Team ରେ ଖେଳିଲି । ସେ team ର ପୁନା ସିଂ ନାମକ ଜଣେ player ମୋର ଆଗରୁ ପରିଚିତ ଥିଲା ଏବଂ ଆଉ କେତେଜଣ ମଧ୍ୟ ପରିଚିତ ଥିଲେ । କଟକର Rovers Team ପ୍ରଥମେ ଗଢ଼ା ହୁଏ କଟକର କାଜି ବଜାରରେ ଉତ୍ସାହୀ ଯୁବକମାନଙ୍କ ଦ୍ୱାରା । ଏହାର ପୃଷ୍ଠପୋଷକ ଥିଲେ, କ୍ଷିତୀଶ ଚନ୍ଦ୍ର ରାୟଚୌଧୁରୀ ଏବଂ ଅନ୍ୟ କେତେଜଣ ସେହି କାଜିବଜାରର କଟକର ପୁରୁଣା ନାମକରା ଖେଳାଳୀମାନେ । ସେହି ମାନଙ୍କ ଉଦ୍ୟମରେ Rovers Team ର ଜନ୍ମ । ମୁଁ କ୍ଷିତୀଶ ଚନ୍ଦ୍ର ରାୟ ଚୌଧୁରୀଙ୍କୁ ଦେଖିଛି, କଟକ Town Team ରେ ଖେଳିବାର ଏବଂ ଅନ୍ୟ କେତେଜଣଙ୍କୁ ମଧ୍ୟ ଅନ୍ୟାନ୍ୟ team ରେ ଖେଳିବାର ଆଗରୁ ଦେଖିଛି ।

ସେତେବେଳେ Rovers Team ଭାରି ଦୁର୍ଦ୍ଧାନ୍ତ team ଥିଲା । ଅନ୍ୟ team ମାନେ Rovers Team ସହିତରେ ଖେଳିବାକୁ ଭୟ କରୁଥିଲେ । ମୋର ସମସାମୟିକ ଖେଳାଳୀମାନଙ୍କ ମଧ୍ୟରେ ଏ team ର ପୁନା, ଜଗା, କୃଷ୍ଣିଆ ଭାରି ଦୁର୍ଦ୍ଧାନ୍ତ ଖେଳାଳୀ ଥିଲେ । ସେତେବେଳେ ଲୋକେ ଯେଉଁ team ଖୁବ୍ ମାଡ଼ଗୋଳ ଧସ୍ତାଧସ୍ତି କରି ଖେଳିଲା, ସେଇ team କୁ ବେଶି ଭଲ ପାଉଥିଲେ । ଏମିତି ମାଡ଼ଗୋଳ ଧସ୍ତାଧସ୍ତି କରି ଖେଳିବାର ଏକମାତ୍ର team ଥିଲା ସେତେବେଳେ Medical School Team । କିନ୍ତୁ ସେତେବେଳେ Medical School

Team ୧୯୨୯ ମସିହାରେ Ravenshaw College ସହିତରେ ଖେଳରେ ମାଡ଼ଗୋଳ କରିବା ଯୋଗୁଁ ତିନି ବର୍ଷ ପାଇଁ Orissa Atheletic Association ଦ୍ୱାରା ବନ୍ଦ କରି ଦିଆ ଯାଇଥିଲା। ଏଣୁ ସେତେବେଳେ ମାଡ଼ଗୋଳ ଧସ୍ତାଧସ୍ତି କରି ଖେଳିବାର team ଆଉ ନଥିଲା। ଲୋକେ ଭାବୁଥିଲେ Medical Team ର ତ ଖେଳ ବନ୍ଦ ଆଉ ଖେଳ ଦେଖିବ କ'ଣ? କିନ୍ତୁ ଏଇ ସମୟରେ Rovers Team କଟକ କାଜିବଜାରରୁ ବାହାରିଲା। ଯାଙ୍କର ଖେଳିବାର ଧାରା ପ୍ରାୟ Medical Team ଭଳି। ଖେଳରେ ସେମିତି ମାଡ଼ଗୋଳ ଧସ୍ତାଧସ୍ତି କରିବା ଯୋଗୁଁ କେତେକ ଦର୍ଶକଙ୍କ ମନକୁ ପାଇଲା। ଏଣୁ Rovers Team ର ଯେଉଁ ଦିନ କାହାରି ସହିତରେ match ଥିବ, ସେଦିନ କିଲ୍ଲା ପଡ଼ିଆରେ ଦର୍ଶକଙ୍କ ଅଜସ୍ର ଭିଡ଼। ବର୍ତ୍ତମାନ school team ଠୁଁ ଆରମ୍ଭ କରି open team ଯାଏ ସମସ୍ତଙ୍କର ଖେଳର ଧାରା ବଦଳି ଯାଇଛି। ସେତେବେଳେ ଯେଉଁ ଦିହ ଲଢ଼େଇ କରି ଖେଳିଲୁ, ତାକୁ ହିଁ ଲୋକେ ଭାରି ପସନ୍ଦ କରୁଥିଲେ।

ସେତେବେଳେ ସ୍କୁଲ ଭିତରେ Mission School Team, ଆଉ open team ମଧ୍ୟରେ Medical School Team ଭାରି ମାଡ଼ଗୋଳ ଧସ୍ତାଧସ୍ତି, ଦିହ ଲଢ଼େଇ କରି ଖେଳୁଥିଲେ। ଏଣୁ ଲୋକେ ଏଇ teamର ଖେଳକୁ ଭାରି ପସନ୍ଦ କରୁଥିଲେ।

ମୁଁ Muslim Seminaryରୁ ମୋର conduct certificate ଇତ୍ୟାଦି ନେଇ ଯେତେବେଳେ ଘରକୁ ଫେରେ ବାଟରେ ଅନେକ ଦୁଃଖର କଥା ମନେ ପଡ଼ିଲା। ପାଠ ଛାଡ଼ି ବୁଲିବା। Matric ଖଣ୍ଡ ପଢ଼ିବା ପାଇଁ କେତେ ଅନୁତାପ। ମଝିଆ ଭଉଣୀର କଥା, କି ଦୁଃଖ ବେଳରେ ସେ ଛାଡ଼ି ଚାଲିଗଲା, କେତେ ଲାଞ୍ଛନା, ଗାଳି ଇତ୍ୟାଦି ଇତ୍ୟାଦି। ମୁଁ ଯେ matric ପାସ୍ କରିବି, ଏମିତି ଗୋଟାଏ ଦିନ ପୁଣି ଆସିବି। ଏ ମୋର କଳ୍ପନାତୀତ ଥିଲା। ଘରେ ପହଁଚିଲି, ତହିଁ ଆରଦିନ college ରେ ନାଁ ଲେଖେଇବି। College ରେ ନାଁ ଲେଖେଇବା ଦିନଟା ଠିକ୍ ମୋର ମନେ ପଡୁ ନାହିଁ। କିନ୍ତୁ ୧୯୩୦ ମସିହାରେ college ରେ ନାଁ ଲେଖେଇଲି। ଘରୁ ଖାଇ ପିଇ ଟଙ୍କା ଧରି Ravenshaw College କୁ ଗଲି। ସେତେବେଳେ college office ଥାଏ Arts Block ର ଉପର ମହଲାରେ। ଜଗନ୍ନାଥ ବାବୁ, ସାଧୁ ବାବୁ ଦୁଇଜଣ ବୟସ୍କ କିରାଣୀ। ସାଧୁ ବାବୁଙ୍କ ପାଖରେ ନାଁ ଲେଖେଇବାକୁ ହବ। ସାଧୁ ବାବୁ ଅତି ଚମତ୍କାର ଲୋକ। ନିଜ ଲୋକ ଭଳି ମନେ ହେଲା। ମୋର ଇଚ୍ଛା ଥିଲା I.Sc.ରେ ନାଁ ଲେଖେଇବି, କିନ୍ତୁ ସାଧୁ ବାବୁଙ୍କ ଠାରୁ ବୁଝିଲି, I.Sc.ରେ seat ନାହିଁ। ଯଦି I.A.ରେ ନାଁ ଲେଖେଇବି, ତେବେ ନାଁ ଲେଖେଇବା ସମ୍ଭବ ହେବ। ନଚେତ୍ ନାହିଁ। ବଡ଼ ହତାଶ ଲାଗିଲା ଶୁଣି, କ'ଣ କରିବି? ମୁଁ ପୁଣି ବାବାଙ୍କର P.H.D. ଅଫିସ୍‌କୁ ଦୌଡ଼ିଲି। ବାବାଙ୍କୁ ସବୁ କଥା କହିଲି, ବାବା କହିଲେ, ହଉ ତା'ହେଲେ I.A.ରେ ନାଁ ଲେଖା। ମୁଁ ପୁଣି Ravenshaw College କୁ ଗଲି। ସାଧୁବାବୁଙ୍କୁ କହିଲି, ମୁଁ Arts ରେ ନାଁ ଲେଖେଇବି। ସାଧୁ ବାବୁ କହିଲେ କ'ଣ group ନବ ଠିକ୍ କର। ମୁଁ H.L.B. group ଠିକ୍ କଲି ଅର୍ଥାତ୍ History, Logic ଏବଂ Botany। Form ଇତ୍ୟାଦି ପୂରଣ କରି, ଯେମିତି ଯାହା କରିବାର କଥା, ସବୁ କରି, ଯେତିକି ଟଙ୍କା ଦରକାର ସବୁ ଦେଇ college ରେ ନାଁ ଲେଖେଇଲି। କିନ୍ତୁ ମନଟା ଟିକିଏ ଅଶାନ୍ତି ବୋଧ ହେଲା କାରଣ ମୋର ଏକାନ୍ତ ଇଚ୍ଛା ଥିଲା I.Sc. ପଢ଼ିବା ପାଇଁ। I.Sc. ପଢ଼ିଥିଲେ ପରେ medical ରେ ପଢ଼ିବାର ବାଟ ଥାନ୍ତା। I.A. ପଢିଲେ ତ ଆଉ medical ରେ ପଢ଼ିବା ସମ୍ଭବ ନୁହେଁ। ପୁଣି ଭାବିଲି, ମୂଳରୁ ତ ପାଠ ଛାଡ଼ି ବୁଲୁଥିଲି। ପାଠ ପଢ଼ିବାର ଆଶା ନଥିଲା। ଏପରି ସ୍ଥଳେ I.A.ରେ ନାଁ ଲେଖେଇଲେ ଦୁଃଖ କ'ଣ? ସମସ୍ତେ କ'ଣ medical ରେ ପଢୁଛନ୍ତି? ଅନେକ ତ ପୁଣି I.A., B.A., M.A. ପଢ଼ି ମଣିଷ ହେଇଛନ୍ତି। ଏଥିରେ ଦୁଃଖ କରିବାର କ'ଣ ଅଛି? College ରେ ନାଁ ଲେଖେଇ ସିଧା ପୁଣି ବାବାଙ୍କ ପାଖକୁ ଗଲି। ବାବାଙ୍କୁ କହିଲି, I.A.ରେ ନାଁ ଲେଖେଇଲି। ବାବାଙ୍କର ହାକିମ ମୋତେ ଡ଼ାକି, ମୁଁ କି group ନେଲି ପଚାରିଲେ। ଭାରି ଖୁସି ହେଲେ। ବାବାଙ୍କ ଠାରୁ ବିଦାୟ ନେଇ ଘରକୁ ଫେରିଲି। ମୁଁ

college ରେ ନାଁ ଲେଖେଇଲି ଶୁଣି ମା ଭାରି ଖୁସି ହେଲେ । ମା'ଙ୍କର ଆଉ ଆଶା ନଥିଲା ଯେ ମୁଁ college ରେ ପଢ଼ିବି । ମା' କହିଲେ I.A., B.A. ପଢ଼ିଲେ କ୍ଷତି କ'ଣ ? I.A., B.A. ପଢ଼ି ଓକିଲାତି ପଢ଼, ଭଲ ହବ । ଆମ ଘର ତ ଓକିଲ ଘର ଥିଲା । ଏ କଥା ମା'ଙ୍କର କହିବାର ଉଦ୍ଦେଶ୍ୟ ହେଲା, ତାଙ୍କ ବାପ ଘରେ ଓକିଲ ଥିଲେ, ଆମ ଘରେ ମଧ୍ୟ ଆଗେ ଓକିଲ ଥିଲେ । ମୁଁ ସେମାନଙ୍କ ନାମ ମା'ଙ୍କ ଠାରୁ ଶୁଣିଥିଲି କିନ୍ତୁ ମୋର ଆଉ ମନେ ପଡୁନି । ମା' ପୁଣି କହିଲେ ହେଇ ତ ସାନ ଠାକୁରେ (ରାମଶଙ୍କର ରାୟ) ଓକିଲ ହେଇଥିଲେ । ହେଇ ତ ଗିରିଜା (ଗିରିଜାଶଙ୍କର ରାୟ) ଓକିଲାତି ପଢ଼ିଲା । I.A. ପଢ଼ିଲେ ଖରାପ କ'ଣ ?

ତହିଁ ଆରଦିନ ସାଢ଼େ ଦଶଟା ବେଳେ କଲେଜକୁ ଗଲି । Common roomରେ ପଶିଲି, କି ଚମତ୍କାର ପରିବେଶ ! କେବଳ ଅଳ୍ପ କେତେ ଜଣକୁ ଛାଡ଼ି ଦେଲେ ଆଉ ସମସ୍ତେ ଅଚିହ୍ନା । ସେତେବେଳେ ତ ଓଡ଼ିଶାରେ ଏତେ କଲେଜ ନଥିଲା ତଥାପି ଅନେକ ପିଲା I.A., I.Sc. ରେ ନାଁ ଲେଖେଇଥାନ୍ତି । ଆଉ କେତେକ ମୋରି ପରି supplementary matric ପରୀକ୍ଷାରେ ପାସ୍ କରି ନାଁ ଲେଖେଇ ଥାନ୍ତି । ଆମ ସ୍କୁଲରୁ final matric ପରୀକ୍ଷାରେ ପାସ୍ କରି ହରେନ୍ଦ୍ର ନାଥ ରାଉତରାୟ I.Sc. ରେ ଆଗରୁ ନାଁ ଲେଖେଇଥାଏ । ତା'ର ମୋର ଭେଟ ହଉ ନଥାଏ । ଯେଉଁମାନେ supplementary matric ପରୀକ୍ଷାରେ ପାସ୍ କରି H.L.B. group ନେଉଥାନ୍ତି ମୁଁ ତାଙ୍କରି ପିଛା ଧଇଲି । ମୋତେ ଅନେକ Muslim Seminary ର player ବୋଲି ଚିହ୍ନି ଥିଲେ । ବିଶେଷତଃ କଲେଜିଏଟ୍ ସ୍କୁଲ ପିଲାଏ, ଅନ୍ୟାନ୍ୟ ସ୍କୁଲରୁ ପାସ୍ କରି ଆସିଥିବା ପିଲାଙ୍କ ଅପେକ୍ଷା କଲେଜରେ ସେ ବର୍ଷ ତାଙ୍କରି ସଂଖ୍ୟା ବେଶି, ହେଲେ ତାଙ୍କ ସହିତରେ ମୋର ପରିଚୟ ନଥିଲା । କଲେଜିଏଟ୍ ସ୍କୁଲର କେତେକ player ମଧ୍ୟ ନାଁ ଲେଖେଇଥାନ୍ତି । ତାଙ୍କ ମଧ୍ୟରୁ ମୋର କେବଳ ପରିଚିତ ଥାଏ, ସଦାନନ୍ଦ ବାନାର୍ଜି । Muslim Seminary player ଙ୍କ ମଧ୍ୟରୁ ମୁଁ ଏକା, ଆଉ କେହି ନାହିଁ । Ravenshaw College କୁ ଯେ ମୁଁ ଆଜି ନୂଆ ଆସିଛି, ତା' ନୁହେଁ, Commemoration Day, exhibition ଇତ୍ୟାଦିରେ ପାଠ ଛାଡ଼ି ବୁଲିଲା ବେଳେ ଅନେକବାର ଆସିଛି । ଏମିତିକି Ravenshaw College ତିଆରି ହେଲା ବେଳେ, ଦିନ ଚାରିଟା ବାଜିଲା ପରେ ସାଙ୍ଗସାଥୀଙ୍କ ମେଳରେ ଆସି ଏହାର ଅଧା ଅଧା କାନ୍ଥ ଉଠିଥିବା କାନ୍ଥମାନଙ୍କ ଉପରେ ଛେଳିମାନେ ଯେମିତି ଅଧା କାନ୍ଥ ଉପରେ ଚଢ଼ି ବୁଲନ୍ତି, ସେମିତି କେତେଥର ଚଢ଼ି ବୁଲିଛି, ଡେଇଁଛି । ଉଦ୍ଦେଶ୍ୟ, ଦେଖିବା Ravenshaw College କେମିତି ତିଆରି ହଉଛି । ଆଜି ଛାତ୍ର ହିସାବରେ Ravenshaw College କୁ ଆସିଛି ପାଠ ପଢ଼ିବା ପାଇଁ । Ravenshaw College ରେ ଯେ ଦିନେ ମୁଁ ପାଠ ପଢ଼ିବି, ଏ ତ ମୋର କଳ୍ପନାତୀତ ଘଟଣା । College ରେ ପ୍ରଥମ ଦିନ ଯେତେବେଳେ botany classକୁ ଯାଏ, ଭାରି ଆନନ୍ଦ ଲାଗିଲା । କେତେ ପ୍ରକାର ବୃକ୍ଷ, ଲତା, କେତେ ପ୍ରକାର ଶିକ୍ଷାର ସାମଗ୍ରୀ । ସେଇଠି ଭେଟିଲି ଦେବବ୍ରତ ବାବୁ ପ୍ରଫେସରଙ୍କୁ । ଅନେକ ସାଙ୍ଗସାଥୀ । ମୁଁ ଦେଖିଲି ମୋର ନାଁ attendance register ରେ ଉଠି ଯାଇଛି, ସେଇଠି ମୋର roll number ଜାଣିଲି । ତା'ପରେ English class ଇତ୍ୟାଦିକୁ ଗଲି । ଏଠି ଦିନ ଭିତରେ ମୋଟେ ଦି, ତିନିଟା କ୍ଲାସ, ଗୁରାଏ leisure, ସ୍କୁଲରେ ତ ପଢ଼ିବା ବେଳେ ସାଢ଼େ ଦଶଟାରୁ ଚାରିଟା ଯାଏ କ୍ଲାସ । ଏଠି ଏତେ କମ୍ କ୍ଲାସ ଦେଖି ଅଶାନ୍ତି ବୋଧ ହେଲା । ସ୍କୁଲ ତୁଳନାରେ ଏଠି ସବୁ ବିରାଟ, ଆଡ଼ମ୍ବରବହୁଳ । ମୁଁ ତ ଗରିବ ସ୍କୁଲର ଛାତ୍ର । Muslim Seminaryରେ ପଢ଼ିଲା ବେଳେ କ୍ଲାସର ପଛପଟ ଝିଡ଼ିକି ଉପରେ ହନୁମାଙ୍କଡ଼ ଆସି ବସିବାର ଦେଖିଛି । କି ଅପରିଷ୍କାର କ୍ଲାସ ରୁମ୍ ସବୁ । ଏଠି ତ ସବୁ ପରିଷ୍କାର, ପରିଚ୍ଛନ୍ନ, ଚିକ୍ ଚିକ୍, ଝକ୍ ଝକ୍ । ମୁଁ ଯେତେବେଳେ Ravenshaw College ରେ ନାଁ ଲେଖାଏ, ସେତେବେଳେ college ରେ ମୋଟେ ଛ'ସାତଶ ପିଲା । ଗୋଟାଏ ଗୋଟାଏ କ୍ଲାସରେ ଅଧା ବେଞ୍ଚ, ଡେ଼କ୍ସ ଖାଲି ପଡ଼ିଥାଏ । Classroom ସବୁ ଯେମିତି ପରିଷ୍କାର, ପରିଚ୍ଛନ୍ନ

ପିଲାଏ ମଧ୍ୟ ସେମିତି ସୁନ୍ଦର, ପରିଷ୍କାର, ପରିଚ୍ଛନ୍ନ । Class କୁ ପଶିଗଲା ବେଳେ ଯେମିତି କେଉଁ ଫୁଲ ବଗିଚାରେ ଫୁଲର ସୌରଭ ଭଳି ନାନା ପ୍ରକାର ସୁଗନ୍ଧରେ ମନଖୁସି ହେଇ ଯାଉଛି । ପିଲାଏ ଯେମିତି, ପ୍ରଫେସରମାନେ ମଧ୍ୟ ସେମିତି ଫୁଟିଲା ଫୁଲ ଭଳି । ବେଶ ପୋଷାକରେ କେଉଁଠି ଟିକିଏ ତ୍ରୁଟି ପାଇବନି । କିନ୍ତୁ ସ୍କୁଲରେ ଅନ୍ୟାନ୍ୟ ବିଷୟର ଶିକ୍ଷକମାନଙ୍କ ତୁଳନାରେ ଓଡ଼ିଆ ସାହିତ୍ୟ, ସଂସ୍କୃତ ପ୍ରଫେସରଙ୍କ ବେଶ ପୋଷାକର ଅନେକ ପାର୍ଥକ୍ୟ । ପ୍ୟାଣ୍ଟ, ଜାମା ଯେମିତି ରୂପ ଯେମିତି, ତା'ସାଙ୍ଗକୁ ମୁଣ୍ଡ ପଛ ପଟେ ଗୋଟିଏ ଚୁଟି, ସେଥିରେ ଗୋଟିଏ ଗଣ୍ଠି । କିନ୍ତୁ ପାଠ ପଢ଼େଇବାର ଧାରା ଅନେକ ଉନ୍ନତ ଧରଣର ।

ସେତେବେଳେ Ravenshaw College ର ପ୍ରିନ୍‌ସିପାଲ୍ ଗୋରା ଚମତ୍କାର ଲୋକ । ନାଁ T.C. Orgil । ବାଳୀ କି ଅଙ୍ଗଦ ଭଳି ରୂପ । ଚିଲା ଆଖିରେ ଅନେଇ ଦେଲେ ପିଲାଏ ଅଟକି ଯିବେ । ଏଠି ଚପରାସୀଠୁ ଆରମ୍ଭ କରି କିରାଣୀ, ଛାତ୍ର, ପ୍ରଫେସର୍ ସମସ୍ତଙ୍କର ଭାରି ଭଦ୍ର ବ୍ୟବହାର, ଶିଷ୍ଟତା ଶିକ୍ଷଣୀୟ । ବଡ଼ ବଡ଼ ବାରନ୍ଦାରେ ପିଲାଏ class ଶେଷରେ ଯଦି ବାଁ ପଟେ ଧାଡ଼ି ବାନ୍ଧି ଫେରୁଛନ୍ତି ତ ଅନ୍ୟ ପଟେ ଧାଡ଼ି ବାନ୍ଧି ପିଲାଏ ଡ଼ାହାଣ ପଟେ class କୁ ଚାଲିଛନ୍ତି । ସବୁ ଚୁପ୍ ଚାପ୍, କେବଳ ଗୋଡ଼ର ଶବ୍ଦ ଯାହା ଜଣା ପଡୁଛି । ହୋ, ହା ନାହିଁ । ଗଣ୍ଡଗୋଳ ନାହିଁ । ସବୁ ନିରବ, ଗାମ୍ଭାର୍ଯ୍ୟପୂର୍ଣ୍ଣ, କ୍ଲାସ୍‌ରେ ପାଠ ପଢ଼ା ମଧ୍ୟ ସେମିତି । ପ୍ରଫେସର୍ ଯେ ଆସୁଛନ୍ତି, ତାଙ୍କର ସେ ବକି ଚାଲୁଛନ୍ତି, ବୁଝେଇବାରେ ଲାଗିଛନ୍ତି, ପିଲାଏ କେତେ ଯେ କୁଆଡ଼େ ପଛ ବେଞ୍ଚରୁ ଖସି ପଳେଇଲେଣି । ସେଥିପାଇଁ ଭ୍ରୁକ୍ଷେପ ନାହିଁ । ତାଙ୍କର କର୍ତ୍ତବ୍ୟରେ ସେ ଲାଗିଛନ୍ତି । ମୋତେ କୌଣସି class ଖରାପ ଲାଗୁ ନଥାଏ, କେବଳ ଇତିହାସ class ଛଡ଼ା । ଆଉ ସବୁଠୁଁ ଭଲ ଲାଗୁଥାଏ botany class ଏବଂ ଓଡ଼ିଆ ସାହିତ୍ୟ class । ଓଡ଼ିଆ ସାହିତ୍ୟ class ରେ ବେଶି ପିଲା ପଛ ବେଞ୍ଚରୁ ଖସି ପଳାନ୍ତି । ଆର୍ତ୍ତବାବୁଙ୍କ class ବେଶି ଭଲ ଲାଗେ । ସେହି "ଚିଲିକା" କାବ୍ୟ ପଢ଼ିଥିଲି matric classରେ । ଏଠି ସେହି "ଚିଲିକା" କାବ୍ୟ ଆର୍ତ୍ତବାବୁଙ୍କ ମୁହଁରେ ତ ଆହୁରି ରସାଳ ମନେ ହେଲା । ବିଭିନ୍ନ ସାହିତ୍ୟରୁ କେତେ ଉଦାହରଣ, କେତେ reference, କଲେଜକୁ ନ ଆସିଥିଲେ ଏ ସବୁ ଜାଣନ୍ତି କୁଆଡୁ? English class ମଧ୍ୟ ସେମିତି ଭଲ ଲାଗୁଥାଏ । ମୁଁ ସ୍କୁଲର ଶିକ୍ଷକମାନଙ୍କୁ ଦେଖି ଭାବୁଥିଲି, କେଡ଼େ ଉଚ୍ଚ ଶିକ୍ଷିତ ଲୋକ ଏ। କେତେ ଜ୍ଞାନ ଯା ଙ୍କର। କିନ୍ତୁ କଲେଜକୁ ଆସି ଦେଖିଲି, ତାଙ୍କଠୁଁ ଆହୁରି ଦକ୍ଷ ଅଛନ୍ତି ଜ୍ଞାନର ଖଣି, ଯା ପଚାର, ତା' କହିବେ, ଗୋଟାଏ କଥା ପଚାରିଲେ, ଦଶ କଥା ଉତୁରି ପଡୁଛି । ତଥାପି କି ସୁନ୍ଦର ବ୍ୟବହାର। କି ଶାନ୍ତ ପ୍ରକୃତି। କି ଧୈର୍ଯ୍ୟଶୀଳ।

କମ୍ପାଉଣ୍ଡରୀ ପଢ଼ିବା ବେଳେ Medical School ରେ ତ ପଶିଥିଲି, ସେଠିକାର ବାତାବରଣ କିଛି ଜାଣିଛି । Medical Schoolର ବାତାବରଣ Ravenshaw College ର ବାତାବରଣ ସହିତରେ ତୁଳନା କଲେ ସମ୍ପୂର୍ଣ୍ଣ ତଫାତ୍ । Medical School ର ଚପରାସୀ, ବେହେରା, ନର୍ସ, କମ୍ପାଉଣ୍ଡର, ଡାକ୍ତର, ଡାକ୍ତରୀ ଛାତ୍ର, ସମସ୍ତେ ପ୍ରାୟ ଉଗ୍ର ପ୍ରକୃତିର । ତେଜିଆନ, ଭଦ୍ରାମୀ ଅଛି, ଶିଷ୍ଟତା ଅଛି, ପୁଣି ବେଳକେ ଅଭଦ୍ରାମୀ, ଅଶିଷ୍ଟତାର ସୀମା ନାହିଁ । ସମସ୍ତେ ଚଞ୍ଚଳ, ସମସ୍ତେ ଜଣା ଅଧିକେ ମଉନୀ, ହାସ୍ୟରସ ପ୍ରିୟ, ଦୟାଳୁ ଯେମିତି ନିଷ୍ଠୁର ମଧ୍ୟ ସେମିତି । କଟକ Medical School ଏବଂ hospital ର ଗୋଟାଏ ପ୍ରଧାନ ଆଦର୍ଶ ହେଲା, ଏକତା । ଏ ଏକତା ଶିକ୍ଷଣୀୟ, ଇମିତି ଏକତା Ravenshaw College କି କଟକ Engineering School ରେ ଦେଖିବାକୁ ମିଳେନା । Medical ରେ ଯେ କୌଣସି ବିଷୟରେ ଦରକାର ପଡ଼ିଲେ, ସମସ୍ତେ ଏକଜୁଟ, ବେହେରାଠୁଁ ଆରମ୍ଭ କରି ଉଚ୍ଚପଦସ୍ଥ ଅଫିସର ଯାଏ ସମସ୍ତେ ଏକ ।

ମୁଁ ଯଦିଚ I.A. ରେ ନାଁ ଲେଖେଇଲି, କେତେକ ବିଷୟ ଭଲ ଲାଗିଲା ତଥାପି କାହିଁକି ମନଟା ଭଲ ଲାଗୁ ନଥାଏ । କେବଳ ମନ ଡ଼ାକୁଥାଏ I.Sc. ପଢ଼ିବି । ଏଥିଲାଗି principal ଙ୍କ ନିକଟରେ ଦରଖାସ୍ତ ଦିଆହେଲା । ଦରଖାସ୍ତର ଉତ୍ତର କିଛି ମିଳି ନଥାଏ । ମୁଁ I.A.ରେ ନାଁ ଲେଖେଇବା Muslim Seminaryରେ ସମସ୍ତେ ଜାଣିଲେ,

ବନ୍ଧୁବାନ୍ଧବ ସମସ୍ତେ ଜାଣିଲେ । ଥରେ ମୁଁ ଜୟରାମ ବାବୁଙ୍କ ସଙ୍ଗେ ଦେଖା କରିବାକୁ କନିକା ମେସ୍‌କୁ ଗଲି, ସେଠି ମେସ୍‌ର ଅନ୍ୟାନ୍ୟ ପିଲାଏ ଥିଲେ । ଜୟରାମ ବାବୁ ସମସ୍ତଙ୍କ ସାମନାରେ କହିଲେ, ପୁଳିନ I.A.ରେ ନାଁ ଲେଖେଇଛି, ତାକୁ ସେ ବହି ସବୁ କିଛି ନୁହେଁ । ସେ ବର୍ଷଟା ଭିତରେ ସବୁ ବହିତକ ପଢ଼ି ସାରିଦବ ।

ଖେଳ କଥା ପଡ଼ିଲା, Rovers Team ରେ ମୁଁ ଆଉ ଖେଳି ପାରୁନି । ଜୟରାମ ବାବୁ କହିଲେ college principalଙ୍କୁ ଗୋଟିଏ ଦରଖାସ୍ତ ଲେଖି permission ମାଗ, permission ଦେଲେ Rovers Team ରେ ଖେଳି ପାରିବୁ । ନଚେତ୍ ସେମିତି ଖେଳିବା ଅନୁଚିତ । ମୁଁ କିଛି ସମୟ ପରେ ଜୟରାମ ବାବୁଙ୍କଠାରୁ ବିଦାୟ ନେଇ ଆସିଲି ।

କଲେଜରେ I.A.ରେ ନାଁ ଲେଖେଇ ପାଠ ପଢ଼ା ଆରମ୍ଭ କଲେ ସୁଦ୍ଧା ମନରେ କେବଳ ଅଶାନ୍ତି ଉପୁଜିଲା, I.Sc. ପଢ଼ିପାରିଲି ନାହିଁ । ଯେତେବେଳେ ଇଂରାଜୀ ଆଉ ଓଡ଼ିଆ ସାହିତ୍ୟ କ୍ଲାସ ଆରମ୍ଭ ହୁଏ, science ପିଲାମାନେ Science Block ରୁ ଆସି ଆମ ସହିତରେ ଏକାଠି ବସନ୍ତି । ସେତେବେଳେ ମୁଁ ସେମାନଙ୍କଠୁ Physics, Chemistry, Mathematics ଇତ୍ୟାଦି ବହିସବୁ ନେଇ ଦେଖେ ଆଉ ମନେ ମନେ ଦୁଃଖ ଅନୁଭବ କରେ, science ପଢ଼ିପାରିଲି ନାହିଁ । ମୋରି ସାଙ୍ଗ ହରେନ୍ଦ୍ର ନାଥ ରାଉତରାୟ I.Sc. ପଢୁଥାଏ । ପୁଣି ଭାବେ arts ପଢ଼ିବା କ'ଣ କରିବି ? ମୋର ଲକ୍ଷ ଥାଏ medical ରେ ଡାକ୍ତରୀ ପଢ଼ିବି । Captain K. M. Rayଙ୍କ କଥା ବି ମନେ ପଡ଼େ । ଏଇ ସବୁ କଥା ଭାବି ଭାବି ଥରେ ବାବାଙ୍କ ସଙ୍ଗେ ବିଚାର କରି college principal ଙ୍କ ନିକଟରେ I.Sc. class ରେ ଗୋଟାଏ seat ପାଇଁ ଦରଖାସ୍ତ ଦିଆଗଲା । କିଛିଦିନ ପରେ ତା'ର ଉତ୍ତର ଆସିଲା ନାହିଁ seat ମିଳିବ ନାହିଁ ।

ମନ ଭାରି ଖରାପ ଲାଗିଲା, ଏଣେ ମୁଁ ନିଜେ ଗୋଟାଏ principal ଙ୍କ ନିକଟରେ ଦରଖାସ୍ତ ଦେଲି, ମୁଁ Rovers Team ରେ ଖେଳୁଥିଲି, ମୋତେ Rovers Team ରେ ଖେଳିବା ପାଇଁ ଅନୁମତି ଦିଆଯାଉ । କିଛିଦିନ ପରେ ଉତ୍ତର ଆସିଲା Rovers Team ରେ ଖେଳି ପାରିବ ନାହିଁ, ଯଦି ଖେଳିବ, College team ରେ ଖେଳ ।

ମନ ଆହୁରି ଖରାପ ଲାଗିଲା, ଯେଉଁ ପାଠ ପଢ଼ିଲି ସେ ମଧ ଭଲ ଲାଗୁନି, ଯେଉଁ team ରେ ଖେଳୁଥିଲି, ସେଥିରେ ମଧ ଖେଳିପାରିବି ନାହିଁ । ଏଣୁ Ravenshaw College ରେ ପଢ଼ିବାକୁ ଆଦୌ ଭଲ ଲାଗିଲା ନାହିଁ

ଏଥି ମଧରେ ଗୋଟାଏ ନୂଆ ଘଟଣା ଘଟିଲା ଘଟଣା ହେଲା, ମୁଁ ଯେତେବେଳେ I.Sc. ରେ seat ପାଇଁ principal ଙ୍କ ନିକଟରେ ଦରଖାସ୍ତ ଦିଏ, ମୋତେ seat ମିଳିବ ନାହିଁ ବୋଲି ଉତ୍ତର ମିଳିଲା । କିନ୍ତୁ ଏଥି ମଧରେ ବୌଦ ରାଜାଙ୍କର ଏକ ପୁଅ ମୋରି ସାଙ୍ଗରେ matric supplimentary ପରୀକ୍ଷାରେ ପାସ୍ କରି ଆସି college ରେ I.Sc.ରେ ନାଁ ଲେଖେଇଲା । ମୁଁ ଏ କଥା college ରୁ ଶୁଣି ଆସି ବାବାଙ୍କୁ କହିଲି । ବାବା ମୋଠାରୁ ଏକଥା ଶୁଣି ଆଶ୍ଚର୍ଯ୍ୟ ହୋଇ କହିଲେ କ'ଣ ଆମକୁ I.Sc. ରେ seat ନାହିଁ ବୋଲି କହିଲେ, ବୌଦ ରାଜା ପୁଅକୁ କେମିତି seat ଦେଲେ ? ତା'ହେଲେ ପୁଣି principal ଙ୍କୁ ଏ ବିଷୟରେ ଲେଖିବା ।

ବାବା ପୁଣି principal ଙ୍କୁ ଲେଖିଲେ I.Sc. ରେ seat ପାଇଁ । ସେତେବେଳକୁ ମୁଁ I.A. classରେ ପଢ଼ିବା ୧୪ ଦିନ ହେଲାଣି । ଦିନେ ୩ଟା ବେଳେ ମୁଁ ଗୋଟାଏ classରେ ବସିଛି ଜଣେ college ର ପିଅନ ଆସି ଜଣେଇଲା, ବାବା ଆଉ ଗିରିଜା ଶଙ୍କର ରାୟ ଗୋଟାଏ ଜାଗାରେ ବସିଛନ୍ତି, ମୋତେ ଡ଼ାକୁଛନ୍ତି । ମୁଁ ଯାଇ ପହଁଚିଲାରୁ ବାବା କହିଲେ, ତୋର I.Sc. ରେ ନାଁ ଲେଖେଇବା ପାଇଁ principal ଙ୍କ ନିକଟରୁ ଚିଠି ଆସିଛି, ତୋର ଇଚ୍ଛା କ'ଣ ? I.A. ପଢ଼ିବୁ ନା I.Sc. ପଢ଼ିବୁ ? ଗିରିଜା ଶଙ୍କର ରାୟ ମଧ ସେଇ ପ୍ରଶ୍ନ କଲେ, ମୁଁ କହିଲି I.Sc. ପଢ଼ିବି । ବାବା ଆଉ ଗିରିଜା ଶଙ୍କର

ରାୟ ଉଭୟେ କହିଲେ, ତା'ହେଲେ I.A.ରୁ ନାଁ କଟେଇ I.Sc. ରେ ଯା ନାଁ ଲେଖା ।

ବାବା ଟଙ୍କା ଆଉ principal ଙ୍କ ଚିଠି ଧରି ଆସିଥିଲେ । ବାବା ମୋତେ ଟଙ୍କା ଆଉ ଚିଠି ଦେଇ college ରୁ ବିଦାୟ ନେଲେ । ଗିରିଜା ଶଙ୍କର ରାୟ ମଧ୍ୟ ତାଙ୍କର common room କୁ ଗଲେ । ମୁଁ ଉପର ମହଲାକୁ ଯାଇ ସାଧୁ ବାବୁ clerk ଙ୍କୁ ସବୁ କଥା କହିଲି । ସାଧୁବାବୁ ସବୁ କଥା ଶୁଣି ମୋତେ କହିଲେ, ଦେଖ ତୁମେ I.Sc. ରେ ନାଁ ଲେଖେଇବ କହୁଛ, ମୋର ମନେ ହଉଛି, ତୁମେ I.Sc. ରେ ପାରିବ ନାହିଁ । I.Sc. ରେ ଅନେକ ପାଠ ଆଗେଇଯିବଣି । I.Sc. ରେ ମୂଳରୁ ନ ପଢ଼ିଲେ ପରେ ଭାରି କଷ୍ଟ ହୁଏ, କାହିଁକି I.Sc. ରେ ନାଁ ଲେଖେଇବ? ଯେମିତି I.A. ପଢୁଛ ପଢ଼, ଭଲ କରିବ ।

ସାଧୁବାବାଙ୍କ କଥା ଶୁଣି ମୁଁ କହିଲି, ନାହିଁ ସାର୍, ପାରିବି କଷ୍ଟ ହବ ନାହିଁ । I.Sc. ରେ ନାଁ ଲେଖେଇବାକୁ ଯା ଅଧିକା ଟଙ୍କା ଲାଗିଲା, ଟଙ୍କା ଦେଇ I.Sc. ରେ ନାଁ ଲେଖେଇ ଘରକୁ ଫେରିଲି । ମନରେ ଭାରି ଆନନ୍ଦ, କାଲି science class କୁ ଯିବି । ଭାବିଲି college ରେ ଯଦି ପଢ଼ିଲି, ନୂଆ ବିଷୟ ନ ପଢ଼ିବି କାହିଁକି? କ'ଣ ବିଶେଷ କଷ୍ଟ ହବ? I.Sc. ରେ ମୁଁ ନେଲି Physics, Chemistry ଏବଂ Mathematics । ସେତେବେଳେ Ravenshaw Collegeରେ Biology ନଥିଲା, କେବଳ Botany optional ଥିଲା । ମୁଁ Botany ଛାଡ଼ି ଦେଲି । କାରଣ supplimentary chance ରେ ଆସି I.Sc. ନେଲି ସେଥିରେ optional Botany ନେଲେ ପାରିହବ ନାହିଁ ।

ଯା ହଉ, I.Sc. ରେ ନାଁ ଲେଖେଇଲି କିନ୍ତୁ ସେ ବର୍ଷଟା ଆଉ ଖେଳି ପାରିଲି ନାହିଁ । Ravenshaw Collegeରେ ନୁହେଁ କିମ୍ବା Rovers Team ରେ ନୁହେଁ । ସେହି ବର୍ଷ କିନ୍ତୁ Rovers Team, Ravenshaw College କୁ knockout final match ରେ ହରେଇ Art wire Shield ବିଜୟୀ ହୁଏ । Rovers Team ରେ ଖେଳିଥିଲେ ମୁଁ ମଧ୍ୟ final match ରେ ଖେଳି ପାରିଥାନ୍ତି । ବଡ଼ ଦୁଃଖ ଲାଗିଲା, ସେ ବର୍ଷ କେବଳ college ର interclass tournament ରେ କେତେଟା match ଖେଳି ପାରିଲି । ସେଠି Ravenshaw Collegiate ରୁ ପାସ୍ କରି ଆସିଥିବା ପିଲାମାନେ ମୋତେ ବେଶି ସମର୍ଥନ କଲେ । ସେତେବେଳେ Ravenshaw College ର ଯେକୌଣସି ମ୍ୟାଚ୍ ଖେଳିବାକୁ ହେଲେ କିଏ କେଉଁ positionରେ ଖେଳିବ ସେଥିପାଇଁ vote ନିଆ ହଉଥିଲା । ମୁଁ college interclass match ରେ left half positionରେ ଖେଳିଛି । ସେହି Ravenshaw Collegiate ପିଲାଏ ମୋତେ vote ଦେଇଛନ୍ତି । ସେତେବେଳେ Ravenshaw College ରେ ଛାତ୍ର ସଂଖ୍ୟା ମୋଟେ ଛ'ଶହ କି ସାତ ଶହ ହବ, ସେଥି ମଧ୍ୟରୁ ସମାନ ସମାନ ଭଲ team ପ୍ରାୟ ଛ'ଟା ବାହାରିବ । ସେଠି କେହି କାହାକୁ ଚିହ୍ନନ୍ତି ନାହିଁ । ସେଠି ମଧ୍ୟ ଭଲ ଭଲ football player ମାନେ କେମିତି football ଖେଳ ପ୍ରତି ଆଗ୍ରହ ହରେଇ ବସନ୍ତି । ମୁଁ ଯାକୁ matric ପଢ଼ିବା ବେଳେ ଦେଖିଛି football ରେ ସେ ଖୁବ୍ ଭଲ player, ଭବିଷ୍ୟତରେ ଆହୁରି ଉନ୍ନତି କରିବ କିନ୍ତୁ ସେ college କୁ ଆସିଲା ପରେ ଦେଖିଲି ଚେହେରା ବାଗେଇ, ସିଗାରେଟ ଧରି, କମିଜର କଲରକୁ ଟେକି ରାସ୍ତା ରାସ୍ତାରେ ବୁଲା ହଉଛି । ଆଉ ଖେଳ ପ୍ରତି ଆଗ୍ରହ ନାହିଁ । ପୂରା magician style । ଭାଗ୍ୟକୁ ସେତେବେଳେ ନଳି ପ୍ୟାଣ୍ଟ କିମ୍ବା ବେଲ୍‌ବଟମ୍ ଟି କଟ୍ ସାର୍ଟ କିମ୍ବା ହାୱାଇର ଚଳନ ନଥିଲା । କଟକ ବାହାରୁ ଯେଉଁମାନେ ଆସୁଥିଲେ, ସେମାନଙ୍କୁ ବେଶି ସେମିତି ହବାର ଦେଖା ଯାଉଥିଲା । କଟକ ଟାଉନ୍‌ର ପିଲାଙ୍କ ମଧ୍ୟରୁ ଇମିତି କେତକ ଖେଳ ଛାଡ଼ି ବୁଲିବାର ମଧ୍ୟ ଦେଖା ଯାଉଥିଲା । ଯେଉଁମାନେ ସ୍କୁଲରେ ପଢ଼ିବା ବେଳେ ଖେଳରେ ବିପଦ ସୃଷ୍ଟି କରୁଥିଲେ ତାଙ୍କ ମଧ୍ୟରୁ କେତେକ college କୁ ଆସି ଏକେବାରେ ଖେଳ ପ୍ରତି ଉଦାସୀନ ହୋଇ ଖାଲି ବୁଲିବାର ଦେଖା ଯାଉଥିଲା ।

ଆଉ ଗୋଟାଏ କଥା ସେତେବେଳେ Ravenshaw College ରେ ଯେ football team ର captain ହଉଥିଲେ, ସେମାନେ ପିଲାଙ୍କର vote ଦ୍ୱାରା ନିର୍ବାଚିତ ହଉଥିଲେ । ଆଉ ଥରେ ଯେ ଭୋଟ ପାଇ college football team ର captain ହେଲା, ତା'ର ଗର୍ବ କାହିଁରେ କ'ଣ । ଫୁଟବଲ୍ ସିଜିନ୍‌ରେ ତା'ର ଜଳଖିଆ ଆଉ ସିଗାରେଟ୍ ଖର୍ଚ୍ଚ Player ମାନଙ୍କ ଉପରେ ଉଠିଯାଉଥିଲା । captain କୁ ତୋଷାମଦର ସୀମା ନଥିଲା । captain କୁ ତୋଷାମଦ କଲେ କେମିତି ଫୁଟବଲ୍ ଟିମ୍‌ରେ ଖେଳିବାର ସୁଯୋଗ ମିଳିଯିବ । College teamରେ ଥରେ ଯେ ଖେଳିବାର ସୁଯୋଗ ପାଇଲା, ତାର ଗର୍ବ କାହିଁରେ କ'ଣ ? ଏମିତି ପରିସ୍ଥିତିରେ captain ଙ୍କ ମଧ୍ୟ ପ୍ରିୟା ପ୍ରୀତି ତୋଷଣର ବାକି ନଥାଏ । ଯା'ଉପରେ ପ୍ରସନ୍ନ ହେଲେ ତାକୁ ଖେଳେଇଲେ, ଯା'କୁ ଦେଖିଲେ ତୋଷାମଦ କରୁନି କିମ୍ବା ଜଳଖିଆ, ସିଗାରେଟ୍‌ରେ ଆପ୍ୟାୟିତ କରୁନି ତା'ପ୍ରତି ଭ୍ରୂକ୍ଷେପ ନାହିଁ । ସେ ଯେତେ ଭଲ player ହେଇଥାଉ ତାକୁ ନ ଖେଳେଇ, ଆଉ ଜଣକୁ ଖେଳେଇଲେଣି । Player ତ ଅଭାବ ନାହିଁ । ଆଜି ଯଦି ତୋଷାମଦରେ ମୁଗ୍ଧ ହେଇ, ଆଦର ଆପ୍ୟାୟନରେ ତରଳି ଯାଇ ଜଣକୁ ଦି'ତିନିଟା ମ୍ୟାଚ୍ ଖେଳିବାର ସୁବିଧା ଦେଲେ ପୁଣି ଅନ୍ୟ ମ୍ୟାଚ୍ ବେଳକୁ ତାକୁ ବସେଇ ଦେଇ ଆଉ ଜଣକୁ ଖେଳେଇଲେଣି ଏଣୁ ଅନେକ player ମନ କ୍ଷୁନ୍ନ ହେଇ କିଏ captain ପଛରେ ଗୋଡ଼ଉଛି ? କିଏ ତୋଷାମୋଦ କରୁଛି, କିଏ ଜଳଖିଆ, ସିଗାରେଟ୍‌ରେ ପଇସା ଖର୍ଚ୍ଚ କରୁଛି ? ଛାଡ଼ ନ ଖେଳିବା ଭଲ । ଏଥିପାଇଁ ମଧ୍ୟ ଅନେକ ପିଲା ଖେଳ ଛାଡ଼ି ଦିଅନ୍ତି । Football season ରେ college ର captain ଯୁଆଡ଼େ ବୁଲି ବାହାରିଲେ, ତାଙ୍କ ପଛରେ ଗୋଛାଏ ପିଲା ବୁଲି ବାହାରିଲେ । କେମିତି ତୋଷାମୋଦରେ କିମ୍ବା ଜଳଖିଆ, ସିଗାରେଟରେ ତାଙ୍କ ମନକୁ ତରଳେଇ ଟିକିଏ College team ରେ ଖେଳିବାର ସୁବିଧା ମିଳିଯିବ ।

College ରେ ମୋର ଅବସ୍ଥା ହେଲା ଅନ୍ୟ ପ୍ରକାରର କାରଣ ମୁଁ college ରେ ପଢ଼ିବା ବେଳେ ଯେ captain ଥିଲେ ତାଙ୍କ ସହିତରେ ମୋର ଆଗରୁ ବୈର ଭାବ ଥିଲା । କାରଣ ମୁଁ ଯେତେବେଳେ Rovers Team ରେ ଖେଳୁଥିଲି, Ravenshaw College Team ବିରୁଦ୍ଧରେ match ଖେଳିଲାବେଳେ ଯାଙ୍କୁ ଖେଳ ମଧ୍ୟରେ ଅନେକବାର ଆଘାତ କରିବାର ଚେଷ୍ଟା କରିଛି । ମୁଁ Rovers ରେ forward line ରେ ଖେଳି ଏକ ସଙ୍ଗେ ମୁଁ ଏବଂ ଅନ୍ୟ ଦୁଇଜଣ ଯାଙ୍କୁ ବହୁବାର ଆଘାତ କରିଛୁ, ଉଦ୍ଦେଶ୍ୟ ହେଲା, ଯାଙ୍କୁ ଆଘାତ କରି ଦୁର୍ବଳ କରିଦେଲେ, team ଦୁର୍ବଳ ହେଇଯିବ । ଏଣୁ ଆମର goal ଦବାର ସୁବିଧା ହବ । ଏ Ravenshaw College Team ର back position ରେ ଭଲ ଖେଳୁଥିଲେ । ଏ ମଧ୍ୟ ଆମକୁ ସୁବିଧା ଦେଖି ଆଘାତ କରିବାରେ ଛାଡ଼ି ନାହାନ୍ତି । ଏଣୁ ସଂଘର୍ଷ ହବାର କଥା । ସେ ମୋତେ ଭଲ କରି ଆଗରୁ ଜାଣିଥିଲେ । ମୁଁ ମଧ୍ୟ ତାଙ୍କୁ ଭଲ କରି ଆଗରୁ ଜାଣିଥିଲି । କାରଣ ସେତେବେଳେ ସେ College team ର ଜଣେ ସୁଦକ୍ଷ ଖେଳାଳୀ ହିସାବରେ ଖୁବ୍ ସୁନାମ ଅର୍ଜନ କରିଥିଲେ । ମୁଁ college କୁ ଆସିଲା ପରେ, ସେ ମୋତେ ଦେଖନ୍ତି, ମୁଁ ତାଙ୍କୁ ଦେଖେ କିନ୍ତୁ କଥାବାର୍ତ୍ତା ବନ୍ଦ । ସହଜେ ସେତେବେଳେ ଯେ Rovers Team ରେ ଖେଳୁଥିଲେ ତାଙ୍କୁ ଅନ୍ୟ team ର ଖେଳାଳୀମାନେ ସେତେ ଭଲ ପାଉ ନଥିଲେ । କାରଣ ହେଲା Rovers Team player ମାନଙ୍କର ଦିହ ଲଢ଼େଇ ଖେଳିବା ଅଭ୍ୟାସ । ମୁଁ ଖୁବ୍ ଦୁର୍ବଳ ଥିଲି କିନ୍ତୁ ଟାଣୁଆ ଥିଲି । ଦିହ ଲଢ଼େଇ ଖେଳିବାରେ ପଛଉ ନଥିଲି, ବଳରେ ନପାରିଲେ, କୌଶଳରେ ଅନ୍ୟକୁ ଆଘାତ କରିବାରେ ଛାଡୁ ନଥିଲି । ତେବେ ଗୋଟାଏ କଥା, ଯଦି ମୋତେ କେହି ବିନା କାରଣରେ ଆଘାତ କରିଛି, ତାକୁ ଆଉ ମୁଁ ଛାଡ଼ିବି ନାହିଁ । ତେବେ ଅନେକ ସମୟରେ ଏହାର ବ୍ୟତିକ୍ରମ ମଧ୍ୟ ଘଟିଛି । ଦେଖିଲି, ବିପକ୍ଷ ଦଳର ଗୋଟାଏ player ମୋତେ ବେଶି ହଇରାଣ କଲା, ତା'ଯୋଗୁଁ ଆମେ ହାରିଯିବାର ସମ୍ଭାବନା, ଏଣୁ ତାକୁ ଟିକିଏ ଆୟତ୍ତ କରିବା ପାଇଁ referee ଯେମିତି ଧରି ପାରିବ ନାହିଁ, ସେମିତି ସୁଯୋଗ ଦେଖି ତାକୁ ଗୋଟାଏ ଆଘାତ କରିବା । ଆଘାତ ଯେଉଁଠି ନକଲେ ନ ଚଳେ, ନ୍ୟାୟ ଯୁଦ୍ଧରେ ଯେଉଁଠି

ପରାସ୍ତ ହବାର ସମ୍ଭାବନା, ସେଠି ଅନ୍ୟାୟ ଯୁଦ୍ଧରେ ଜୟ ଲାଭ କରିବାର ଆଶାରେ ବିପକ୍ଷ ଦଳର ଖେଳାଳୀଙ୍କୁ ଆଘାତ କରି ଆୟତ୍ତ କରିବାର ପ୍ରୟୋଜନ ଅନିବାର୍ଯ୍ୟ ହୋଇପଡ଼େ। ନ୍ୟାୟ, ଅନ୍ୟାୟ କିଏ ମାନୁଛି? ଜିତିଲେ ହେଲା। କାରଣ ମୁଁ ଦେଖୁଛି, ଭଲ ପଢ଼ି ପରୀକ୍ଷାରେ ଯେ ଫେଲ୍ ହଉଛି, ତା'ର ସମ୍ମାନ ନାହିଁ। କିନ୍ତୁ ଯେ ଭଲ ନ ପଢ଼ି ପରୀକ୍ଷାରେ copy କରି ପାସ୍ କରୁଛି, ସେ ତ ସମ୍ମାନିତ ହଉଛି। ଏଣୁ ନ୍ୟାୟ, ଅନ୍ୟାୟର ମୂଲ୍ୟ ରହିଲା କାହିଁ? ସେତେବେଳେ ମୋର ମତିଗତି ଏହାହିଁ ଥିଲା।

I.Sc.ର ପ୍ରଥମ ବାର୍ଷିକ ଶ୍ରେଣୀରେ ଯୋଗ ଦେଇ ଦେଖିଲି, I.A. ଅପେକ୍ଷା I.Sc. ରେ ବିଷୟଗୁଡ଼ିକ ମୋତେ ଭାରି ଭଲ ଲାଗିଲା। ମୋର group ଥିଲା Physics, Chemistry ଏବଂ Mathematics ସବୁଗୁଡ଼ିକ ନୂଆ ବିଷୟ। ଭାରି ଭଲ ଲାଗିଲା। Mathematics ତ ଆଗରୁ ଭଲ ଲାଗୁଥିଲା କିନ୍ତୁ ଏଠି mathematics ଭିନ୍ନ ପ୍ରକାରର higher algebra, higher trigonometry, calculs, statistics, dynamics ଇତ୍ୟାଦି। ସବୁ ମିଶି ଛ'ଖଣ୍ଡରୁ ବେଶି ବହି। Physics ରେ ସେମିତି, Chemistry ରେ ଏତେ ବେଶି ନୁହେଁ। ଏ ସବୁ ଛଡ଼ା English ଏବଂ Oriya ଅଛି। ପ୍ରଥମେ ମନ ଖୁସି ହୋଇଗଲା କେତେ ପ୍ରକାରର ଯନ୍ତ୍ରପାତି। ଏଠି class ରେ ଗ୍ୟାଲେରିରେ ବସିବାକୁ ହୁଏ, କି ଆଡ଼ମ୍ବର। Arts class ପରି desk ଆଉ ଚେୟାରର ଏଠି ବ୍ୟବହାର ନାହିଁ। ଏଠି ଗୋପୀନାଥ ମହାନ୍ତି, ଘନଶ୍ୟାମ ମହାପାତ୍ର, ବ୍ରଜମୋହନ ନନ୍ଦ, ବ୍ରଜମୋହନ ପଟ୍ଟନାୟକ ଆହୁରି କେତେକଙ୍କ ସାଙ୍ଗରେ ମୋର ବନ୍ଧୁତ୍ୱ ହେଲା।

ମୁଁ ଯେତେବେଳେ I.A. ନେଇଥିଲି, ସେତେବେଳେ ଥରେ English class ରେ ବସିଛି। English class ରେ science ଏବଂ arts ପିଲାଏ ଏକାଠି ବସନ୍ତି। ମୁଁ ଯେଉଁଠି ବସିଥିଲି,. ମୁଁ ଦେଖୁଛି, ମୋ ପଛରେ ବ୍ରଜମୋହନ ପଟ୍ଟନାୟକ ବସିଛି। ବ୍ରଜମୋହନ ପଟ୍ଟନାୟକକୁ ମୁଁ ଭଲ କରି ଜାଣେ କାରଣ ସେ Collegiate ସ୍କୁଲରେ football team ର right out ରେ ଖେଳୁଥିଲା ବେଳେ ମୁଁ Muslim Seminary ର football team ରେ left half position ରେ ଥାଇ ତା'ବିରୁଦ୍ଧରେ ଖେଳୁଥିଲି। ବହୁତ ଧସ୍ତାଧସ୍ତି, ବିହ ଲଢ଼େଇ, ଛକାପଂଝା ବେଳ ଯାଇଛି। Class ରେ ପଢ଼ା ଚାଲିଥିଲା ବେଳେ ମୁଁ ହଠାତ୍ ଅନୁଭବ କଲି ମୋ ପିଠିରେ ଯେମିତି କିଏ ପେନ୍‌ସିଲ୍‌ର ଅଗ ଛୁଇଁ ଦେଲା ପରି, ମୁଁ ପଛକୁ ଅନେଇଲାବେଳକୁ ବ୍ରଜମୋହନ ପଟ୍ଟନାୟକ ମୋତେ ହସି ହସି ପଚାରିଲା, ଚିହ୍ନି ପାରୁଛନ୍ତି? ମୁଁ ମଧ ହସି ହସି ଉତ୍ତର ଦେଲି, କାହିଁକି ଚିହ୍ନି ପାରିବି ନାହିଁ?

ଏତିକି ପ୍ରଶ୍ନୋତ୍ତରରେ ବ୍ରଜ ମୁଁ ସେଇଠୁଁ ଅନ୍ତରଙ୍ଗ ବନ୍ଧୁ ହୋଇଗଲୁ। ସ୍କୁଲରେ ଖେଳିବା ବେଳର ମନ କଷାକଷି ସବୁ ଭୁଲିଗଲୁ।

I.Sc.ର ପ୍ରଥମ ବାର୍ଷିକ ପାଠ ଭିତରେ ମୋତେ physics ଆଉ mathematics ଭାରି ଭଲ ଲାଗିଲା କିନ୍ତୁ chemistry ଆଦୌ ଭଲ ଲାଗୁ ନଥାଏ। ସେତେବେଳେ Ravenshaw College ର physics ର Head of the Department ଥାନ୍ତି ଶ୍ୟାମ ସୁନ୍ଦର ତ୍ରିପାଠୀ ଆଉ ପ୍ରଫେସରମାନଙ୍କ ଭିତରେ ନାରାୟଣ ମିଶ୍ର, ହରିବନ୍ଧୁ ମହାନ୍ତି ଆଉ କିଏ ଥାନ୍ତି ମୁଁ ସେମାନଙ୍କୁ ଜାଣି ନଥିଲି। Chemistry ର ସେମିତି Head of the Department ଥାନ୍ତି ବାବା କର୍ତ୍ତାର ସିଂ, ପ୍ରଫେସରମାନଙ୍କ ଭିତରେ ବଳଭଦ୍ର ପ୍ରସାଦ, ଗୁରୁ ଚରଣ ମହାନ୍ତି ଆଉ ଅନ୍ୟମାନଙ୍କୁ ମୁଁ ଚିହ୍ନି ନଥିଲି। Physics ର ପ୍ରଫେସର ନାରାୟଣ ମିଶ୍ର ଭାରି ଖେଳ ପ୍ରିୟ ଥିଲେ। Football, hockey, cricket ଏବଂ sports ସବୁଥିରେ ସେ ବାହାରି ପଡ଼ନ୍ତି। ଖେଳରେ referee ମଧ ହୁଅନ୍ତି। ଦିନେ ନାରାୟଣ ବାବୁ physics class ରେ ଆମକୁ କହିଲେ, ପିଲେ ଆଜି ସନ୍ଧ୍ୟା ଛ'ଟା ବେଳେ ଆସିବ, ଗାନ୍ଧିଙ୍କ ଭାଷଣ radio ରେ ଶୁଣିବା।

ଗାନ୍ଧି ସେତେବେଳେ Round Table Conference କୁ ବିଲାତ ଯାଇଥାନ୍ତି। ୧୯୩୦ ମସିହାର କଥା, radio ସେତେବେଳେ ଦେଖିବାକୁ ସ୍ୱପ୍ନ। ମୋର ମନେହୁଏ ସେତେବେଳେ କଟକରେ କେବଳ

Ravenshaw Collegeରେ radio ଥାଏ। ଆଜିକାଲି ପରି ପାନଦୋକାନୀ, ଜଳଖିଆ ଦୋକାନୀ radio ବ୍ୟବହାର କରୁ ନଥିଲେ। Radio ରୁ ଗାନ୍ଧିଙ୍କ ଭାଷଣ ଶୁଣିବା ସେ ପୁଣି London ରୁ, କି ଆଶ୍ଚର୍ଯ୍ୟ କଥା। ସେତେବେଳେ ଗ୍ରାମୋଫୋନର ଯୁଗ, radio କ'ଣ ବୋଲି ଲୋକେ ଜାଣି ନଥିଲେ। ମୁଁ ନାଁ ଶୁଣିଥିଲେ ମଧ୍ୟ କେମିତି କ'ଣ radio ରୁ କଥା ଶୁଣାଯାଏ କିଛି ଜାଣି ନଥିଲି। ନାରାୟଣ ବାବୁଙ୍କ କଥା ଶୁଣି ମୁଁ ସେଦିନ college ରୁ ୪ଟା ବେଳେ ଫେରି ଘରେ କିଛି ସମୟ ରହିଲି। ସେତେବେଳେ ମୋର ଜେଠା କୁଞ୍ଜ ବିହାରୀ ରାୟ ଜଗତସିଂପୁରରୁ ଆସି ଆମ ବସାରେ ଥାନ୍ତି। ମୁଁ ୭ଟା ବାଜିବା ପୂର୍ବରୁ ତରବରରେ ଖାଇପିଇ ଧୋତି, ପଞ୍ଜାବୀ ପିନ୍ଧି ଯେତେବେଳେ ଦାଣ୍ଡକୁ ବାହାରି ପଡ଼େ, collegeକୁ ଯିବା ପାଇଁ ଜେଠା ମୋତେ ପଚାରିଲେ, କିରେ କୁଆଡ଼େ ବାହାରିଲୁ? ମୁଁ କହିଲି, collegeକୁ ଯିବି ଆଜି ଗାନ୍ଧିଙ୍କ ଭାଷଣ London ରୁ ଶୁଣାଯିବ radio ରେ। ପ୍ରଫେସର କହିଛନ୍ତି, ୭ଟା ପରେ କଲେଜକୁ ଗଲେ, ଗାନ୍ଧିଙ୍କ ଭାଷଣ ଶୁଣିବା।

ଜେଠା ଏ କଥା ଶୁଣି ଆରମ୍ଭ କଲେ ହଇରେ, ଗାଲୁ ଗପ କରିବାରେ ତ ପକ୍କା, ଆଗରୁ ନାଁ ଅଛି। କଲେଜରେ ପଢ଼ି, ଗାଲୁ ଗପ କରିବା ଆହୁରି ବଢ଼ି ଗଲାଣି। ହଇରେ, ଗୋଟାଏ ଲୋକ London ରେ କହିବ, ତାକୁ ଆମେ ଏଠି ଶୁଣିବୁ! ତୋତେ ଆଉ ପାରି ହବ ନାହିଁ ଯା, ଯା। ମୁଁ ଜେଠାଙ୍କ କଥା ଶୁଣି ଆଉ କି ଉତ୍ତର ଦେବି? ତରବରରେ ଜେଠାଙ୍କ ସାମନାରୁ ଖସି ପଳେଇଲି। ବାବା ଜେଠାଙ୍କ ସମୟ ଥିଲା ସେମିତି। ସିନେମା, ରେଡ଼ିଓ ଏସବୁ ସେମାନେ କିଛି ଜାଣି ନଥିଲେ। ଆଜି କାଲି ତ ସାତ ସମୁଦ୍ର ସେପାରିରେ କେହି ଛିଙ୍କିଲେ କି କାଶିଲେ ଭାରତକୁ ଶୁଣାଯାଉଛି। ସେମାନେ ଯେମିତି ସରଳ ପ୍ରକୃତିର ଲୋକ ଥିଲେ, ତାଙ୍କ ସମୟ ମଧ୍ୟ ସେମିତି ସହଜ ଭାବରେ ବିତି ଯାଉଥିଲା। ସେଦିନ collegeକୁ ଯାଇ physics labratoryରେ ସମସ୍ତେ ଉତ୍‌କର୍ଣ୍ଣ ହୋଇ ଗାନ୍ଧିଙ୍କ ଭାଷଣ ଶୁଣିବାକୁ ଯେତେବେଳେ ଏକାଠି ହଉ, ନାରାୟଣ ବାବୁ ଯେତେ ଚେଷ୍ଟା କଲେ କିଛି ଶୁଣାଗଲା ନାହିଁ। କ'ଣ ଯାନ୍ତ୍ରିକ ଗଣ୍ଡଗୋଳ ହେଲା, ହତାଶ ହୋଇ ଫେରିଲୁ। ଘରେ ଆସି ପହଁଚିଲାରୁ ଜେଠା ପଚାରିଲେ, କିରେ ଗାନ୍ଧିଙ୍କ ଭାଷଣ ଶୁଣିଲୁ? ମୁଁ କହିଲି, ନାହିଁ କିଛି ଶୁଣାଗଲା ନାହିଁ।

ଜେଠା କହିଲେ, ମୁଁ କ'ଣ କହୁଥିଲି? Londonରେ ଜଣେ କଥା କହିବ, ଏଠିକି ଶୁଣାଯିବ? ଯେତେ ଗାଲୁ ଗପ ତୋ'ଠି। ମୁଁ ଆଉ କ'ଣ ଉତ୍ତର ଦେବି? ଚୁପ୍‌କରି ଘର ଭିତରକୁ ପଳେଇଲି।

I.Sc.ର ପ୍ରଥମ ବାର୍ଷିକ ଶ୍ରେଣୀରେ ନାଁ ଲେଖେଇ, ପାଠପଢ଼ା ଆଉ ଖେଳ ଉଭୟ ଚାଲିଥାଏ। ପଢ଼ିବା ପାଇଁ ଅଳ୍ପ କିଛି ବହି ଯାଠୁ, ତା'ଠୁ ସଂଗ୍ରହ କଲି। ଆଉ କ୍ଲାସ୍‌ରେ ନୋଟ ଲେଖି କୌଣସିମତେ ଚଳେଇ ଥାଏ। ସବୁ ବହି କିଣିବାକୁ ବଳ ନଥାଏ। ସାଙ୍ଗସାଥୀ, ଚିହ୍ନାପରିଚ, ଯେତେ ଯା'ଠୁଁ ଖଣ୍ଡେ ଖଣ୍ଡେ ବହି ମାଗି ଆଣି କ୍ଲାସ୍‌ରେ ନୋଟ ଲେଖି ପଢ଼ାପଢ଼ି ଚାଲିଲେ ସୁଦ୍ଧା ତଥାପି ବହିର ଅଭାବ ବିଶେଷ ଅନୁଭବ କଲି। କ୍ଲାସ୍‌ର ସାଙ୍ଗ ପିଲାଙ୍କୁ ଯଦି ଦିନକ ପାଇଁ ଖଣ୍ଡେ ବହି ମାଗିଲି, ସେମାନେ ଦବାକୁ ନାରାଜ। College hostel ରେ ଯାଇ ସନ୍ଧ୍ୟା ପରେ କୌଣସି ସାଙ୍ଗ ପିଲା ସାଥୀରେ ପଢ଼ି ଆସି ପାରନ୍ତି। କିନ୍ତୁ ସେତେବେଳେ college hostel ରେ ଇମିତି ନିୟମ ଥାଏ ଯେ ସନ୍ଧ୍ୟା ପରେ study hour ରେ ବାହାର ପିଲା କେହି hostel ରେ ପଶି ପାରିବେ ନାହିଁ। ଯେଉଁମାନେ ବାହାରେ ଥାଇ କଲେଜରେ ପଢୁଥାନ୍ତି, ସେମାନଙ୍କ ମଧ୍ୟରୁ ଅନେକଙ୍କ ଘର ଦୂରରେ। ପୁଣି ଅଧିକାଂଶଙ୍କର ଇଚ୍ଛା, ସେମାନେ କାହାରି ସାଙ୍ଗରେ ପଢ଼ିବେ ନାହିଁ, ଏକା ଏକା ପଢ଼ିବେ। ଯା ହଉ କୌଣସି ପ୍ରକାରେ ପଢ଼ା ଚାଲିଥାଏ। ମୁଁ ଆଉ ଗୋଟିଏ କଥା ଲକ୍ଷ୍ୟ କରିଛି Ravenshaw Collegeରେ ସେତେବେଳେ hostel ପିଲା ଗୋଟାଏ ଦଳ, ଯେଉଁମାନେ ବାହାରେ ରହି ପଢୁଥାନ୍ତି ସେମାନେ ଗୋଟାଏ ଦଳ। ଉଭୟ ଦଳ ମଧ୍ୟରେ ଭୀଷଣ ମନ କଷାକଷି, ଇମିତିକା hostel ପିଲା, ବାହାର ପିଲାଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ମୂଳକ football

match ହୁଏ, କିଏ କାହାକୁ ହରେଇବ? Hostel ପିଲା ଜିତିବେ କି ବାହାର ପିଲା ଜିତିବେ? ଇମିତି football match ରେ ମୁଁ ବାହାର ପିଲାଙ୍କ ତରଫରୁ hostel ପିଲାଙ୍କ ବିରୁଦ୍ଧରେ ଖେଳିଛି, ତୀବ୍ର ପ୍ରତିଦ୍ୱନ୍ଦିତା, କେହି କାହାକୁ ଇଞ୍ଚେ ଛାଡ଼ିବେ ନାହିଁ। ଖେଳ ପଡ଼ିଆରେ match ବେଳେ ଏଥିପାଇଁ ଭୀଷଣ ଉତ୍ତେଜନା ସୃଷ୍ଟି ହୁଏ। Hostel ପିଲାଏ hostel player ମାନଙ୍କୁ ସମର୍ଥନ କରନ୍ତି। ବାହାର ପିଲାଏ ବାହାର ଖେଳାଳୀଙ୍କୁ ସମର୍ଥନ କରନ୍ତି। ଏଥିପାଇଁ ବେଳେବେଳେ ଗଣ୍ଡଗୋଳର ଆଶଙ୍କା ମଧ୍ୟ ହୁଏ। କେବଳ ଏତିକି ନୁହେଁ ସବୁ ବିଷୟରେ hostel ପିଲା ବାହାର ପିଲାଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦିତା। କିନ୍ତୁ hostel ପିଲାଙ୍କ ମଧ୍ୟରେ କିଛି ଏକତା ଲକ୍ଷ୍ୟ କରାଯାଏ ଆଉ ବାହାର ପିଲାଙ୍କ ମଧ୍ୟରେ ଆଦୌ ଏକତା ନଥାଏ, କେବଳ football match ବେଳେ ପଡ଼ିଆରେ ପାଟିତୁଣ୍ଡ କରିବାରେ ଯା କିଛି ଏକତା ଲକ୍ଷ୍ୟ କରାଯାଏ ନଚେତ୍ ଆଉ କିଛିରେ ନାହିଁ। କିଏ କୁଆଡ଼େ ଗଲେଣି, କିଏ କାହାକୁ ଚିହ୍ନୁଛି? ଇମିତି ଅବସ୍ଥା।

ମୋର I.Sc.ର ପ୍ରଥମ ବାର୍ଷିକ ଶ୍ରେଣୀର final ପରୀକ୍ଷା ଅଳ୍ପଦିନ ଥାଏ, ଏଇ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ, ଦ୍ୱିତୀୟ ବାର୍ଷିକ ଶ୍ରେଣୀ ହେବ। ଆଜି କାଲି ଯେମିତି ପ୍ରଥମ ବାର୍ଷିକ ଶ୍ରେଣୀକୁ pre-university, ଆଉ ଦ୍ୱିତୀୟ ବାର୍ଷିକ ଶ୍ରେଣୀକୁ first year degree କିମ୍ବା preprofessional କୁହାଯାଉଛି। ପୁଣି ପ୍ରତ୍ୟେକ ବର୍ଷ ଗୋଟାଏ ଗୋଟାଏ university ପରୀକ୍ଷା। ସେତେବେଳେ କିନ୍ତୁ I.A. କିମ୍ବା I.Sc.ରେ ପ୍ରଥମ ବର୍ଷଟା collegeରେ ପରୀକ୍ଷା ହେଇ ଦ୍ୱିତୀୟ ବର୍ଷକୁ promotion ଦିଆଯାଉଥିଲା। ସେହି ଦ୍ୱିତୀୟ ବର୍ଷରେ I.A, I.Sc.ରେ university ପରୀକ୍ଷା ହେଉଥିଲା। ସେଥିରେ ଯେ ପାସ୍ କଲା ତାକୁ କୁହାଯାଉଥିଲା I.A. କିମ୍ବା I.Sc. ପାସ୍ କରିଛି। ତାକୁ ମଧ୍ୟ Intermediate Arts କିମ୍ବା Science ପାସ୍ କରିଛି ବୋଲି କୁହାଯାଉଥିଲା, ତା'ପରେ B.A. କିମ୍ବା B.Sc.ରେ ମଧ୍ୟ ସେମିତି ହଉଥିଲା।

ମୋର ଯେତେବେଳେ ପ୍ରଥମ ବାର୍ଷିକ ଶ୍ରେଣୀର ଶେଷ ପରୀକ୍ଷା ପ୍ରାୟ ମାସେ ଖଣ୍ଡ ଥାଏ, ଏଇ ସମୟରେ ମୋର ନିଜର ବଡ଼ମାମୁଁଙ୍କ ଝିଅର ବିଭାଘର ପଡ଼ିଲା। ବାବା ମୋତେ କହିଲେ, ବଡ଼ମାମୁଁଙ୍କ ଝିଅ ବାହାଘରକୁ ଯାଜପୁର ଯିବାକୁ ହବ। ମୁଁ କହିଲି, ମୋର ପରୀକ୍ଷା ନିକଟରେ ହବ, ମୁଁ ଯିବି କିମିତି? ବାବା କହିଲେ, ପରୀକ୍ଷାତ ମାସେ ଅଛି, ଆମେ ଚାରିଦିନ ରହି ତୁ ଓ ମୁଁ ଚାଲି ଆସିବା, ମା' ଯଦି ବେଶିଦିନ ରହିବେ ତ ରହିବେ। ଆମେମାନେ ସମସ୍ତେ ନଗଲେ ମାମୁଁ ମନ ଖରାପ କରିବେ। ଏଣୁ ମୁଁ ରାଜି ହେଲି ଯାଜପୁର ଯିବାକୁ। କିନ୍ତୁ ଦୁଃଖର କଥା, ପୂର୍ବର ସେ ମାମୁଁ ଘରର ଆଉ ସେମିତି ଐଶ୍ୱର୍ଯ୍ୟ ନାହିଁ। ମୋର ମା'ଙ୍କର ଜେଠା ପୁଅ ଭାଇମାନଙ୍କ ମଧ୍ୟରୁ ଅନେକଙ୍କର ଅକାଳ ବିୟୋଗରେ ଘର ଛିନ୍ନ ଭିନ୍ନ, ମାମୁଁ ଘରେ କେବଳ ବିଧବା ମାଈଁ ପଲେ, ମୋର ଅଜା ମଧ୍ୟ ପରଲୋକଗତ। ବର୍ତ୍ତମାନ ଆଈ ମଧ୍ୟ ବିଧବା ସେଥିରେ ପୁଣି ମୋର ନିଜର ସାନ ମାମୁଁ, ବତ୍ରିଶ ବର୍ଷର ବିଧବା ପତ୍ନୀ ଆଉ ଗୋଟିଏ ବାର ବର୍ଷର ପୁଅ ଛାଡ଼ି ଅଳ୍ପ କିଛିଦିନ ପୂର୍ବେ ଇହଧାମ ପରିତ୍ୟାଗ କରିଥାନ୍ତି। ଶୋକର ସଂସାର, ବଡ଼ ମାମୁଁଙ୍କ ଝିଅ ବାହା ହବ। କିନ୍ତୁ ସମସ୍ତେ ଦୁଃଖରେ ବିଷନ୍ନ, ବିଭାଘର ତ ହବାର କଥା ହବ କିନ୍ତୁ ସମସ୍ତେ ବିଷାଦଗ୍ରସ୍ତ। ସାନ ମାଈଁ ଆଉ ତାଙ୍କର ପୁଅକୁ ଦେଖିଲେ ଦୁଃଖରେ ଛାତି ଫାଟି ଯାଉଥାଏ। ସାନ ମାଈଁ ପାଗଳୀ ପରି ଦିଶୁଥାନ୍ତି, ପୁଅଟିକୁ ସମସ୍ତଙ୍କର ବିଶେଷ ଆଦର ଯତ୍ନର ସୀମା ନଥାଏ।

ମୁଁ ଆଗରୁ ଲେଖିବାକୁ ଭୁଲିଯାଇଛି ମୋର ମ୍ୟାଟ୍ରିକ ପାସ୍ କରିବା ପୂର୍ବରୁ ସାନମାମୁଁଙ୍କର ମୃତ୍ୟୁ ହୁଏ। ବର୍ତ୍ତମାନ ମୋର ନିଜର କେବଳ ଦୁଇ ମାମୁଁ ଥାନ୍ତି। ବଡ଼ମାମୁଁଙ୍କର ଗୋଟିଏ ଝିଅ, ସାନମାମୁଁଙ୍କର ଗୋଟିଏ ପୁଅ, ମଝିଆ ମାମୁଁ ଅବିବାହିତ ରହିଲେ। ଅନ୍ୟ ମାମୁଁମାନଙ୍କର କାହାରି ପୁତ୍ର ସନ୍ତାନ ନଥାଏ କେବଳ ଯାହା ମୋର ସାନମାମୁଁଙ୍କର ଗୋଟିଏ ପୁଅ। ତା'ର ଭଲ ନାଁ ଶ୍ରୀ ରାସ ବିହାରୀ ରାୟ, ଡ଼ାକ ନାଁ ରଙ୍ଗ। ମୋର ବଡ଼ମାମୁଁ ଏକାହିଁ ରୋଜଗାରୀ

ଥାନ୍ତି । ତାଙ୍କରି ଉପରେ ବିଧବା ଜେଠେଇ, ମା, ଭାଉଜ, ଭାଇବୋହୂ, ସମସ୍ତଙ୍କ ଭରଣ ପୋଷଣର ଭାର । ଜମିଦାରୀ ଥାଏ, ହେଲେ ନଗଦ ଟଙ୍କା ତ ଦରକାର । ରୋଜଗାରୀ ତ ଚାଲିଗଲେ, ମଝିଆ ମାମୁଁ ଯେ ଥାନ୍ତି, ସେ ଖୁବ୍ ଜ୍ଞାନୀ ଲୋକ ହେଲେ ଭୀଷଣ ରାଗୀ, ଅବୁଝା ଲୋକ । ତାଙ୍କର ସେମିତି କିଛି ବିଶେଷ ରୋଜଗାର ନଥାଏ । ଜମିଦାରୀରୁ ଆୟରୁ କିଛି ଏବଂ ନିଜେ ଅଳ୍ପ କିଛି ରୋଜଗାର କରି ଚଳନ୍ତି । ସେ ରାଧାରମଣ ଦେବଙ୍କର ଭାରି ଭକ୍ତ । ସେ କଟକରେ କାଠଯୋଡ଼ି ତୀରସ୍ଥ ରାସ ବିହାରୀ ମଠକୁ ଭାରି ଭଲ ପାଉଥିଲେ । ସେଠି ପ୍ରତ୍ୟେକ ଉତ୍ସବରେ ସେ ପ୍ରାୟ ଯୋଗ ଦେଉଥିଲେ, ସେଇଥିପାଇଁ ମଝିଆ ମାମୁଁ ମୋର ସାନ ମାମୁଁଙ୍କ ପୁଅର ନାଁ ଦେଇଥିଲେ ରାସ ବିହାରୀ ରାୟ ।

ଯାଜପୁରରେ ବଡ଼ମାମୁଁଙ୍କର ଝିଅର ବିଭାଘର କୌଣସିମତେ ସୁଖଦୁଃଖରେ ସରିଲା । ମା, ବଡ଼ ଭଉଣୀ, ସାନ ଭଉଣୀ, ଭଣଜା ସେଠି ରହିଲେ । ମୁଁ ଏବଂ ବାବା ଚାଲି ଆସିଲୁ । କାରଣ ମୋର ବିଜ୍ଞାନ ପ୍ରଥମ ବାର୍ଷିକ ଶ୍ରେଣୀର ପରୀକ୍ଷା ଆଉ ଅଳ୍ପ ଦିନ ଥାଏ । କଟକ ଆସି ମୋତେ ପରୀକ୍ଷା ଲାଗି ପଢ଼ିବାକୁ ପଡ଼ିଲା ଏବଂ ଅନେକ ଘର କାମ ମଧ୍ୟ କରିବାକୁ ହେଲା । ଚାକରବାକର କେହି ନଥାନ୍ତି । ମୋର ବାଲ୍ୟସାଥୀ ଲୋକନାଥ ରାଉତ ଆସି ଅନେକ ସାହାଯ୍ୟ କଲା । ମୁଁ, ସେ ଦିହେଁ ମିଶି ଅନେକ କାମ କରୁ । ଉଭୟେ ଭାରି କାର୍ଯ୍ୟକ୍ଷମ ହେଉଥାଉ । ଯେ କୌଣସି କାମ ପଡ଼ିଲେ ପଛେଇବୁ ନାହିଁ । ବାବା ରୋଷେଇରେ ଲାଗିଯାନ୍ତି । ବାବା ଦିନବେଳା ଖାଇ ସାରି ଅଫିସକୁ ଯାନ୍ତି । ମୁଁ ଖାଇ ସାରି କଲେଜକୁ ପଳାଏ, ବାବା ଦିନ ୪ଟାରେ ଅଫିସରୁ ଫେରନ୍ତି । ମୁଁ କଲେଜରୁ ଆଗରୁ ଫେରି ଆସି ପଢ଼ାପଢ଼ି କରୁଥାଏ, ପୁଣି ଲୋକା ଆସି ଜୁଟି ଯାଏ । ସନ୍ଧ୍ୟା ପରେ ଯେ ଯାହା କାମରେ ଲାଗି ଯାଉ, ରୋଷେଇବାସ ସରିଲେ, ମୁଁ ପଢ଼ିବାରେ ଲାଗିଯାଏ । ବେଶି ରାତିହେଲେ ବାବା, ମୁଁ ଓ ଲୋକା ତିନିହେଁ ଖାଉ । ଲୋକା ଖାଇ ସାରି ଦିନେ ଦିନେ ରାତିରେ ଆମରି ଘରେ ଶୋଇ ଯାଏ । ମୁଁ ନିଜ ହାତରେ ଗୋରୁଙ୍କୁ ଖୁଆଏ । ମୁଁ ଯେତେ ଯାହା କରେ, ଗୋରୁ ଖୋଇବା ମୋର ପ୍ରଧାନ କାମ ହେଉଥାଏ ।

ମୋର ପ୍ରଥମ ବାର୍ଷିକ ଶ୍ରେଣୀ ପରୀକ୍ଷା କ୍ରମଶଃ ନିକଟ ହେଇ ଆସିଲା । ବହିପତ୍ର ଯା କେଇ ଖଣ୍ଡ ଥାଏ, ଆଉ କ୍ଲାସ୍ ନୋଟ ଉପରେ ଭରସା କରି ପଢୁଥାଏ । Physics, Chemistry, Mathematics ପଢ଼ିବାରେ ଅନେକ ସମୟ କଟି ଯାଏ । English ଆଉ M.I.L. ପଢ଼ିବାକୁ ବେଳ ମିଳେ ନା ।

ପରୀକ୍ଷା ହେଲା, ପରୀକ୍ଷା ଦେଲି । Chemistry ଛଡ଼ା ଆଉ ସବୁ ବିଷୟରେ ପ୍ରାୟ ମୁଣ୍ଡାମୁଣ୍ଡି ପାସ୍ କରିବାର ଆଶା । ପରୀକ୍ଷାର ଫଳ ଶୁଣିବା ପାଇଁ ଉତ୍କଣ୍ଠା, ଚିନ୍ତା, ଆଲୋଚନା ଚାଲିଲା । ଆଜିକାଲି ପରି ଏ pre-university ନୁହେଁ, ଏ class promotion ଦ୍ୱିତୀୟ ବାର୍ଷିକ ଶ୍ରେଣୀକୁ ।

ଯେଉଁଦିନ କଲେଜରେ ପ୍ରଥମ ବାର୍ଷିକ ଶ୍ରେଣୀର ଫଳ ଘୋଷଣା କରାଯିବ, ସେଦିନ ଆମେ ସମସ୍ତେ ଯାଇ କଲେଜ ସାମନା ପଟେ ମେଳା ମେଳା ହେଇ ବୁଲୁଥାଉ । ହରେନ୍ଦ୍ର ଆଉ ମୁଁ ଏକା ସ୍କୁଲରୁ ଯାଇଥାଉ, ଏଣୁ ତା'ର ମୋର ସାଙ୍ଗ ହେଉଥାଉ । ତା'ଛଡ଼ା ଆହୁରି କେତେକ ପିଲାଙ୍କ ସହିତ ସୌହାର୍ଦ୍ଦ୍ୟ ବଢ଼ିଯାଇଥାଏ । Football ଖେଳାଳୀ ଭାବରେ ଅନେକ ନୂଆ ନୂଆ ସାଙ୍ଗ ଜୁଟି ଯାଇଥାନ୍ତି । ସେଦିନ ଅଳ୍ପ କେତେକ ପିଲାଙ୍କୁ ଛାଡ଼ିଦେଲେ ଅଧିକାଂଶ ପିଲାଏ ଉତ୍କଣ୍ଠାରେ ବୁଲୁଥାନ୍ତି ।

Physics Professor ନାରାୟଣ ମିଶ୍ରେ ଆମ ବିଜ୍ଞାନ ଛାତ୍ରଙ୍କ ପ୍ରତି ବିଶେଷ ସହାନୁଭୂତିଶୀଳ ଥାନ୍ତି । ଅନେକ ପିଲା ତାଙ୍କୁ ଅନୁରୋଧ କରି କହୁଥାନ୍ତି, ସାର୍ ଟିକିଏ ଦେଖିବେ, ମୁଁ ଅନେକ ଅନେକ ବିଷୟରେ ଭଲ କରି ନାହିଁ । କେମିତି ପ୍ରମୋଶନ ପାଇବି ।

ନାରାୟଣ ମିଶ୍ରେ ଦୟା ପରବଶ ହେଇ ଅନେକ ପିଲାଙ୍କ roll no. ଟିପି ନଉଥାନ୍ତି । Professor ମାନଙ୍କ meeting ରେ consideration ବେଳେ ଦରକାର ପଡ଼ିଲେ recommend କରିବା ପାଇଁ । ନାରାୟଣ ବାବୁ ତ

ମୋତେ ଖେଳାଳୀ ଭାବରେ ଏବଂ class ରେ ପଢ଼େଇଲା ବେଳେ ଭଲ ଭାବରେ ଚିହ୍ନିଥାନ୍ତି । ଏଣୁ ମୁଁ ଏଇ ସୁଯୋଗରେ ମୋ roll no. ଟିପି ତାଙ୍କ ହାତକୁ ଦେଇଦେଲି । ସେ ଏମିତି ଅନେକ ପିଲାଙ୍କର roll no. ଟିପି ନେଇ meeting ରେ ଯୋଗ ଦେବା ପାଇଁ Professors' Common Room ଭିତରକୁ ଚାଲିଗଲେ । ଆମେମାନେ ପରୀକ୍ଷା ଫଳ ଶୁଣିବା ଅପେକ୍ଷାରେ ଉତ୍କଣ୍ଠିତ ହୋଇ ବାହାରେ ବୁଲୁଥାଉ ।

ପ୍ରାୟ ଦିନ ୨ଟା ବେଳକୁ ପରୀକ୍ଷା ଫଳ type କରା ଖଣ୍ଡେ କାଗଜ ଧରି କଲେଜ ଅଫିସର କିରାନୀ ଯଦୁ ବାବୁ କଲେଜ ନୋଟିସ ବୋର୍ଡ଼ରେ ମଡ଼େଇ ଦବା ପାଇଁ ଆସିଲେ । ଆମେମାନେ ସମସ୍ତେ ଆଗ୍ରହରେ ଯଦୁବାବୁଙ୍କୁ ଘେରିଗଲୁ । ଯଦୁବାବୁ ବାଙ୍ଗରା ଲୋକଟିଏ ଏବଂ ଅତି ଭଦ୍ର ଆଉ ନୀରିହ । କ'ଣ କରିବେ ? ସେ କେମିତି ନୋଟିସ ବୋର୍ଡ଼ରେ ପରୀକ୍ଷା ଫଳ କାଗଜ ଖଣ୍ଡିକ ମଡ଼େଇବେ ? ସେ କୌଣସି ମତେ ପିଲାଙ୍କୁ ଆଡ଼େଇ ଯେତେବେଳେ କାଗଜ ଖଣ୍ଡକ ନୋଟିସ ବୋର୍ଡ଼ରେ ଟଙ୍ଗାନ୍ତି, ତାଙ୍କ ପଛପଟୁ ପିଲାଏ ତାଙ୍କୁ ଇମିତି ଚାପି ଦେଲେ ଯେ, ସେ ଅଣନିଃଶ୍ୱାସୀ ହୋଇ କୌଣସି ମତେ ମାରକଦଶାରୁ ବଞ୍ଚିଗଲେ ।

ପରୀକ୍ଷା ଫଳ କେବଳ ଯେଉଁମାନେ ପାସ୍ କରିଥାନ୍ତି ତାଙ୍କରି roll no. ସବୁ type କରା ହୋଇଥାଏ । ଯେ ଯା'ର roll no. ଦେଖିଲେ, ସେ ଆନନ୍ଦରେ ବିଭୋର, ଚିତ୍କାର ଖୁସିରେ ପରସ୍ପରକୁ କୁଣ୍ଢେଇ ପକେଇଲେ । ମୁଁ, ହରେନ୍ଦ୍ର ଦିହେଁ ଆମର roll no. ଦେଖିଲୁ, କି ଆନନ୍ଦ ! Second year ହୋଇଗଲା । ଏଇ ସମୟରେ ଯାଜପୁରର କୃଷ୍ଣ ପ୍ରସାଦ ବସୁଙ୍କର ସାନ ଭାଇ ଆସି ମୋ ପାଖରେ ପହଁଚିଗଲେ । ସେ ତାଙ୍କର ପରୀକ୍ଷା ଫଳ ଦେଖି ସାରିଥାନ୍ତି । ମୋର ତାଙ୍କର ସମ୍ପର୍କ ଯାଜପୁରରେ ମୋର ମାମୁଁଘର ଯୋଗୁଁ । ଏଣୁ ଆମେ ଦିହେଁ ଖୁସିରେ କୁଣ୍ଢାକୁଣ୍ଢି ହୋଇଗଲୁ । ସେ ଏତେ ଦୁର୍ବଳ ବୋଲି ମୁଁ ଜାଣି ନ ଥିଲି । ମୁଁ ତାଙ୍କୁ ଏତେ ଜୋର୍‌ରେ କୁଣ୍ଢେଇ ଚାପି ଧରିଲି ଯେ ସେ ଅଣନିଃଶ୍ୱାସୀ ହେଲା ପରି ହୋଇଗଲେ, ତା'ପରେ ମୁଁ, ହରେନ୍ଦ୍ର ଆଉ କୃଷ୍ଣ ପ୍ରସାଦ ବସୁଙ୍କ ସାନ ଭାଇ ଆମେ ତିନିହେଁ ମିଶି ଯାଇ କଲେଜ ସାମନାରେ ରାସ୍ତାର ଆର ପାଖରେ ଗୋଟାଏ ଗୁଡ଼ିଆ ଦୋକାନରେ ପ୍ରାୟ ସେରେ ଖଣ୍ଡେ ରସଗୋଲା ଖାଇଲୁ, ତା'ପରେ ଯେ ଯାହା ଘରକୁ ଫେରିଲୁ ।

ମୁଁ ଘରକୁ ଫେରିଲି, ଘରେ ବାବା ନଥାନ୍ତି କି ଲୋକା ମଧ୍ୟ ଆସି ନଥାଏ । ଏଣୁ ମୁଁ ଏକା, ଆମର ଯେଉଁ ଗାଈଟା, ମୋର ମ୍ୟାଟ୍ରିକ ପରୀକ୍ଷାର ଅଳ୍ପଦିନ ଆଗରୁ ମୋର English poetry ବହିର meaning ବହିକୁ ଚୋବେଇ ଖାଇଥିଲା, ସେତେବେଳେ ତ ତାକୁ ଖୁବ୍ ବାଡ଼େଇଥିଲି । ସେ ସେଦିନ କୁଆଡ଼େ ନଯାଇ ଘରେ ଥିଲା, କ'ଣ ମନ ହେଲା, ତାକୁ ନଡ଼ା କାଟି, କୁଣ୍ଡା ତୋରାଣୀ ଦେଇ ପେଟେ ଖୋଇଲି । ଭାରି ଆନନ୍ଦ ଲାଗିଲା । ସେହି କ୍ଷଣି କଲେଜରୁ first year ରୁ second year କୁ ପ୍ରମୋଶନ ପାଇବାର ଫଳ ଶୁଣି ଆସିଥାଏ । ମନ ତ ଆନନ୍ଦରେ ଫୁଲି ଫାଟିଗଲା ପରି ହୋଇଥାଏ । ସେଥିରେ ପୁଣି ଗାଈଟିକୁ ଭୂରି ଭୋଜନ ଦବାରେ ଅତିରିକ୍ତ ଆନନ୍ଦ ଲାଭ କରି ମନଟା ଶେଷରେ ଦଳେଇ ଘାଉ ପରି ଜଣାଗଲା । ତା'ପରେ ଏକା ଯାଇ ଶୋଇ ରହିଲି, ନିଦ ହଉ ନଥାଏ । ମନରେ କେତେ ଅତୀତର ଘଟଣା ସବୁ ଦେଖାଦେଇ ଉଭେଇ ଯାଉଥାଏ, ପୁଣି ମନେ ମନେ ଭାବୁଥାଏ, କେତେବେଳେ ବାବା ଅଫିସ୍‌ରୁ ଫେରିବେ ? ତାଙ୍କୁ କେମିତି ଏ ସୁସମ୍ବାଦଟା ଜଣେଇବି । ଲୋକା କେତେବେଳେ ଆସିବ ? ରସଗୋଲା ତ ପେଟେ ଖାଇ ଆସିଥାଏ, ଭୋକ ଆଦୌ ନଥାଏ । ବେଳ ବୁଡ଼ିଲା, ବାବା ଅଫିସରୁ ଫେରିଲେ, ତାଙ୍କୁ ମୋର second yearକୁ promotion ହବାର କଥା ଜଣେଇଲି । ବାବା ଶୁଣି ଖୁସି ହେଲେ, ଲୋକା ତା'ପରେ ଆସି ପଚାରିଲା, ବାବୁ, ତୁମର କ'ଣ ହେଲା ? ମୁଁ ଆନନ୍ଦରେ ସୁସମ୍ବାଦ ଜଣେଇଲି । ଲୋକା ତ ସୁଖ, ଦୁଃଖର ସାଥୀ, ଲୋକାକୁ ସବୁ କଥା ଜଣା, ମା'ତ ସେତେବେଳେ ଯାଜପୁରରେ ଥାନ୍ତି । ତହିଁ ଆରଦିନ ମା'ଙ୍କ ପାଖକୁ ମୋର ପ୍ରମୋଶନ ବିଷୟରେ ଚିଠିଗଲା ।

ବର୍ତ୍ତମାନ ଆଉ ପାଠ ପଢ଼ା ନାହିଁ। କଲେଜ ବନ୍ଦ, ଗ୍ରୀଷ୍ମ ଛୁଟି। ପ୍ରତ୍ୟେକ ଦିନ ଯେମିତି ବାବା, ମୁଁ, ଲୋକା ଯେ ଯାର କାମ କରୁ, ସେମିତି କରି ରୋଷେଇବାସ ସରିଲେ, ବାବା ଖାଇ ପିଇ ଅଫିସ ବାହାରି ଗଲେ ମୁଁ ଘରେ ଏକା, ମୋ ପାଖରେ ବେଳେବେଳେ ଲୋକା ଥାଏ କିମ୍ବା ଦିନେ ଦିନେ ଆମ ସାହିର ଜଣେ ବାଉରୀ ଟୋକା ଆସି ଜୁଟେ, ତାକୁ 'କୁଶା' ବୋଲି ସମସ୍ତେ ଡ଼ାକନ୍ତି। ସେ ଗୀତ ବୋଲିବାରେ ଓସ୍ତାଦ, ପାଠଶାଠ କିଛି ପଢ଼ି ନାହିଁ। ମୂର୍ଖ କିନ୍ତୁ ଶୁଣି ଶୁଣି ଭଲ ଭଲ ଗୀତ ମନେ ରଖି ବଙ୍ଗଳା, ଓଡ଼ିଆ, ହିନ୍ଦି ସବୁ ପ୍ରକାର ଗୀତ ବୋଲେ। କଣ୍ଠ ଅତି ମଧୁର। ଲୋକା ମଧ ସେମିତି ଗୀତ ବୋଲିବାରେ ସୁଦକ୍ଷ। ଲୋକା କିଛି ବହି ପଢ଼ିପାରେ, ବେଶି ପଢ଼ି ନାହିଁ। କିନ୍ତୁ ଯେ କୌଣସି ଗୀତ ବୋଲିପାରେ। ସେତେବେଳେ ଆମ ସାହିରେ ଲୋକା, କୁସା ଯଦି ଏକାଠି ହେଇ ଗୀତ ବୋଲିବାକୁ ଆରମ୍ଭ କରିଛନ୍ତି, ସେଠି ଲୋକ ଗଦା ହେଇଯିବେ। ପାଲା, ଭଜନ, ଓଡ଼ଶୀ, ଜଣାଣ, ପଲ୍ଲୀ ଗୀତ ସବୁ ଜଣା। ତା'ଛଡ଼ା ବଙ୍ଗଳା, ହିନ୍ଦୀ ମଧ। ଉଭୟଙ୍କର ପଖଜ, ତବଲା ଆଉ ଖଞ୍ଜଣୀ ବଜେଇବାରେ ମଧ ଦକ୍ଷତା ଥିଲା। କିଛି ନମିଳିଲେ ମଧ ଖାଲି ଟିଣ ଡ଼ବାଟାଏ ବଜେଇ ଜମେଇ ଦେବେ। ଉଭୟେ ସମବୟସ୍କ ପ୍ରାୟ। ମୁଁ ଘରେ ଏକାଥିବା ଯୋଗୁଁ, କେତେବେଳେ ଲୋକା, କେତେବେଳେ କୁଶା, ଉଭୟେ ଆସି ହାଜର। ଉଭୟଙ୍କର ଇଛା, ଆମର ହାରମୋନିୟମଟା ଦେଲେ, ହାରମୋନିୟମ ବଜେଇ ଶିଖିବେ। ମୁଁ ଦିଏନା କାରଣ ବାବା ଜାଣିଲେ କ'ଣ କହିବେ? କୁଶା ବେଶି ଜିଦ୍ କରେ, ବାବୁ ଡୁବି ତବଲା ଦିଅନ୍ତୁ ମୁଁ ବଜେଇ ଗୀତ ଶୁଣେଇବି। ମୋତେ କୁଶାର ଗୀତ ବୋଲିବା ଭାରି ଭଲ ଲାଗେ, ଏଣୁ ମୁଁ ବାବାଙ୍କର ଅନୁପସ୍ଥିତିରେ ତାକୁ ଡୁବି ତବଲା ଦିଏ। ସେ ଦି'ପହର ତମାମ ଡୁବିତବଲା ବଜେଇ ଗୀତ ବୋଲେ, ମୁଁ ଶୋଇ ଶୋଇ ଶୁଣେ, ବେଳେବେଳେ କୁଶା ଗୀତ ବୋଲୁ ବୋଲୁ ମୋତେ ନିଦ ହେଇଯାଏ, ମୁଁ ଶୋଇ ଉଠି ଦେଖିଲା ବେଳକୁ କୁଶା ଡୁବି ତବଲା ବଜେଇ ଗୀତ ବୋଲୁଛି।

ବେଳେବେଳେ କୁଶା, ଲୋକା କୋଉଠୁ ପଟେ ଖଞ୍ଜଣୀ ଆଣି ଆମ ଦାଣ୍ଡ ଆଡ଼େ ବସି ପାଲା କରନ୍ତି। ଅବିକା ପାଲାବାଲାଙ୍କ ପରି ଗାଇବା ଭଙ୍ଗୀରେ କୁଶା ଗାଏ, ଲୋକା ତା'ର ପାଳିଆ ହୁଏ। ସାହିର କେତେ ଲୋକ ଆସି ପାଲା ଶୁଣିବା ପାଇଁ ଆମ ଦୁଆରେ ଜମା ହୁଅନ୍ତି।

ଏଇ ଗ୍ରୀଷ୍ମ ଛୁଟିରେ ମା ଯାଜପୁରରୁ କଟକ ଆସିଲେ। ଘରେ ଆଉ ବାବାଙ୍କୁ ମୋତେ ବେଶି କାମ କରିବାକୁ ପଡ଼ିଲାନି। ମା ଅନେକ କାମ ନିଜେ ସମ୍ଭାଳି ନେଲେ। ଲୋକା କିନ୍ତୁ ଆସି କେତେକ କାମ କରେ, ବସେ, ଖାଏ, ଗପ କରେ, ଯେମିତି ନିଜ ଘରର କେହି ଜଣେ ଆତ୍ମୀୟ ଲୋକ ପରି।

ଏଇ ଗ୍ରୀଷ୍ମ ଛୁଟିରେ ଦିନେ ମୁଁ ବାବାଙ୍କୁ କହିଲି, ମୁଁ ଜଗତସିଂପୁର ଯିବି। ଜେଠା ଜଗତସିଂପୁରରେ ଥାନ୍ତି। ସେ ଅନେକବାର କହିଛନ୍ତି ମୋତେ ଜଗତସିଂପୁର ଯିବା ପାଇଁ। ଏଣୁ ମୁଁ ଏଇ ମଉକାରେ ବାବାଙ୍କୁ ଜଗତସିଂପୁର ଯିବା ପାଇଁ କହିଲି। ଏ ପର୍ଯ୍ୟନ୍ତ ବାବା, ମା ମୋତେ ଏତେ ବାଟ ଏକା ଯିବା ପାଇଁ ଛାଡ଼ି ନାହାନ୍ତି। ମୋର ଜଗତସିଂପୁର ଯିବା କଥା ଶୁଣି କହିଲେ, କେବେ ତ ଏତେ ବାଟ ଏକା ଯାଇନୁ, କେମିତି ଯିବୁ? ମୁଁ କହିଲି, କେତେ ବାଟ ଯେ? ମୁଁ ସାଇକେଲ୍‌ରେ ଯିବି। ବାବା, ମା ଉଭୟେ କହିଲେ, ସାଇକେଲ୍‌ରେ ଗଲେ ଦେହ ଖରାପ ହବ, ବସ୍‌ରେ ଯା। ମୁଁ କହିଲି, ନା, ମୁଁ ସାଇକେଲ୍‌ରେ ଯିବି।

ବାବା, ମା ମୋ ଉପରେ ଖୁସିଥାନ୍ତି। ଏଣୁ ଉଭୟେ ରାଜି ହେଲେ। ମୁଁ ଦିନେ ସକାଳେ, ଜଳଖିଆ ଇତ୍ୟାଦି ଖାଇ ସାଇକେଲ୍ ଧରି ଜଗତସିଂପୁର ବାହାରିଲି। ମେଘ ଉଠେଇ ଥାଏ, ମୁଁ ଘରୁ ବାହାରି ଗଲି। କଟକ ଷ୍ଟେସନ ଟପି ବିଦ୍ୟାଧରପୁର ବାଟରେ ଯାଉଛି, ବର୍ଷା ଆରମ୍ଭ ହେଲା ମୂଷଳ ଧାରାରେ, ଭାବିଲି ଘରକୁ ଫେରିଯାଏ, ପୁଣି ଭାବିଲି ଘରକୁ ଫେରିଲେ ମଧ ବର୍ଷାରେ ଭିଜିବାକୁ ହବ ଆଉ ଫେରିଗଲେ, ବାବା, ମା' ଆଉ କେଭେ ଜଗତ୍‌ସିଂପୁର ଯିବାକୁ ଛାଡ଼ିବେନ। ଏଣୁ ମୁଁ ଠିକ୍

କଲି, ନା ଘରକୁ ଫେରିବିନି, ଜଗତ୍‌ସିଂପୁର ଯିବି। ବର୍ଷା ଛାଡ଼ି ଯିବ ଯେ, ଏଣୁ କେଉଁଠି ଟିକିଏ ଗଛ ମୂଳେ ଠିଆ ନହେଇ ମୁଁ ସାଇକଲ ଛାଡ଼ିଥାଏ। ମେଘ ଡ଼ାକୁଛି। ବର୍ଷା ଆଉ ବନ୍ଦ ହବାକୁ ନାହିଁ। ମୁଁ ଗୋଟା ସୁଦ୍ଧା ବର୍ଷା ପାଣିରେ ଭିଜି ଗାଧେଇଲା ପରି ଅବସ୍ଥା। ବାଟରେ ଯାଉ ଯାଉ ଦିନବେଳା ବିଲୁଆଗୁରା ସଡ଼କ ମଝିରେ ପାଚିଲା ଜାମୁକୋଳି ଖାଉଥାନ୍ତି। ସେମାନେ ମୋତେ ଦେଖି ଟିକିଏ କାହିଁକି ପାଖେଇବାକୁ ଯିବେ, ବରଂ ମୁଁ ଭୟରେ ପାଖେଇ ବାଟ କଟେଇ ଚାଲିଥାଏ। ବର୍ଷା ମୂଷଳ ଧାରାରେ ହଉଛି, ମୁଁ ତ ପୂରା ଭିଜି ସାରିଲିଣି, ଦେହରେ ଯଥେଷ୍ଟ ବଳ ଥିବା ଲାଗୁ ନଥାଏ। ମୁଁ ସାଇକେଲ୍ ଛାଡ଼ିଥାଏ। ଦିନ ପ୍ରାୟ ୧୨ଟା ବେଳେ ଜଗତସିଂପୁରରେ ପହଞ୍ଚିଲି। ଜେଠା ମୋତେ ଦେଖି ଆଶ୍ଚର୍ଯ୍ୟ ହେଇ ପଚାରିଲେ, କିରେ ତୁ କେମିତି ଏ ବର୍ଷାରେ ଭିଜି ଭିଜି ଆସିଲୁ? ପୁଣି ସାଇକେଲ୍‌ରେ! ଜେଠା ଆଶ୍ଚର୍ଯ୍ୟ ହେବାର କାରଣ, ସେ ଜାଣନ୍ତି, ବାବା, ମା' ମୋତେ ଏକା କେଉଁଠି କି ଛାଡ଼ନ୍ତିନି, ପୁଣି ଏତେ ବାଟ ସାଇକେଲ୍‌ରେ ଆସିବା ସହଜ ନୁହେଁ। କେବଳ ଜେଠାଙ୍କ ପାଖରେ କେତେଦିନ ରହି, ସମସ୍ତଙ୍କୁ ଦେଖି ଗପ କରି ଆସିବା କଥା, ନଚେତ୍ ଜଗତସିଂପୁର କିଛି ଏମିତି ଦର୍ଶନୀୟ ସ୍ଥାନ ନୁହେଁ। ପୁଣି ସେତେବେଳେ ଜଗତସିଂପୁରର ଯା ଅବସ୍ଥା! ସାମାନ୍ୟ କେତେଜଣ ସରକାରୀ କର୍ମଚାରୀଙ୍କ ସେଠି ବସବାସ। ଡ଼ାକ୍ତରଖାନା ଅତି ଛୋଟ। ପୋଷ୍ଟ ଅଫିସ ସେମିତି, ରାସ୍ତା ଘାଟର ଅବସ୍ଥା ଅତି ଖରାପ। ସଞ୍ଜ ପରେ "ନାହିଁରେ ସେଠି ତାମସା ନାଟ, ସଞ୍ଜରୁ ପଡ଼େ ତାଟି କବାଟ" ଅବସ୍ଥା। ସେତେବେଳେ ଯା'କୁ ବଡ଼ବଜାର ବୋଲି କୁହାଯାଉଥିଲା, ତା'ର ଅବସ୍ଥା ଅତି ଶୋଚନୀୟ। କାଁ ଭାଁ କେତୋଟି ଦୋକାନ, କିରୋସିନ ଆଲୁଅରେ ଦୋକାନର କାରବାର। ୧୦ ନମ୍ବର ବୋଲି ଗୋଟିଏ ଜାଗା, ସେତେବେଳେ ଡ଼ଙ୍ଗାରେ ଯେଉଁମାନେ କଟକରୁ ଜଗତସିଂପୁର ଯାଉଥିଲେ ସେଠି ସେମାନେ ଓଲହୁ ଥିଲେ। ଆଗେ ଜଗତସିଂପୁରକୁ ଲୋକେ କଟକରୁ ଡ଼ଙ୍ଗାରେ ଯାଉଥିଲେ। ସେ ଡ଼ଙ୍ଗା କେତେ ବାଟ କାତ 'ମାରି ଗଲା ପରେ, ପୁଣି କେତେ ବାଟ ଟଣା ହେଇ ଯାଉଥିଲା। ସେଥିରେ ପୁଣି ଜାଗାଜାଗା ଅଟକିବାକୁ ପଡୁଥିଲା। ଗୋଟିଏ ଡ଼ଙ୍ଗାରୁ ଓଲେହି, ଆଉ ଗୋଟିଏ ଡ଼ଙ୍ଗାରେ ବସିବାକୁ ପଡୁଥିଲା। ଇମିତି ଟଣା ଓଟରା, ଓଲେହିବା, ବସିବା, ଠେଲାପେଲାରେ କଟକରୁ ଯାଇ ଜଗତସିଂପୁର ପହଁଚିବାକୁ ହଉଥିଲା। ତା'ର କିଛି କାଳ ପରେ ଯାତ୍ରୀବାହୀ କୁଜି ବସ୍ କେଇ ଖଣ୍ଡ ଚାଲିଲା। ବର୍ତ୍ତମାନ ତ ଜଗତସିଂପୁର କାହିଁରେ କ'ଣ, ପୂରାପୂରି ବଦଳି ଗଲାଣି। ସବୁ କିଛିରେ ପରିବର୍ତ୍ତନ ଘଟିଲାଣି।

ମୁଁ ସେ ଥର ଜଗତସିଂପୁରରେ ଚାରିଦିନ ରହି ଭଲରେ କଟକ ଫେରିଲି। ଦେହ ଭଲ ଥିଲା କିନ୍ତୁ ପହଁଚିବାର ଦିନେ ଦୁଇଦିନ ପରେ ଆରମ୍ଭ ହେଲା ଭୀଷଣ ଜ୍ୱର ଆଉ ସର୍ଦ୍ଦି। ଜଗତସିଂପୁରକୁ ଯେଉଁ ବର୍ଷା ମାଡ଼ ଖାଇ ଯାଇଥିଲି, ଏ ତା'ରି ଫଳ ବୋଲି ଜାଣିଲି। ଏଥି ଲାଗି ବାବା, ମା'ଙ୍କଠାରୁ ଗାଳି ଶୁଣିବାକୁ ହେଲା। କେତେଦିନ ଭୋଗିଲା ପରେ ଭଲ ହେଇଗଲି କିନ୍ତୁ ଭୀଷଣ ଦୁର୍ବଳ ହେଇ ପଡ଼ିଲି। ଭାବିଥିଲି, ଗ୍ରୀଷ୍ମ ଛୁଟିରେ ଖୁବ୍ ପଢ଼ିବି, ତା'ହେଇ ପାରିଲା ନାହିଁ। ଦୁର୍ବଳତା ଯୋଗୁଁ ସେ ବର୍ଷ ଗ୍ରୀଷ୍ମ ଛୁଟିଟା ବ୍ୟର୍ଥ ହେଇଗଲା।

କିଛି ଦିନ ପରେ ଗ୍ରୀଷ୍ମ ଛୁଟି ସରିଲା, କଲେଜ ଖୋଲିଲା। ବିଜ୍ଞାନର ଦ୍ୱିତୀୟ ବାର୍ଷିକ ଶ୍ରେଣୀ, କ୍ଲାସରେ ପାଠପଢ଼ା ଆରମ୍ଭ ହେଇଗଲା। ଏଣେ friendly match, inter college class match, hostel ଆଉ day scholar competition match ସବୁଥିରେ ଖେଳିଲି। କିନ୍ତୁ କଲେଜର team ବୋଲି ଯାହାକୁ କୁହାଯାଏ, ସେଥିରେ ଖେଳିବାର ସୁଯୋଗ ପାଇଲି ନାହିଁ। କାରଣ କଲେଜରେ ସେତେବେଳେ ଯେଉଁ captain ଥିଲେ, ତାଙ୍କ ସହିତରେ ମୁଁ Rovers Team ରେ ଖେଳିବା ବେଳୁଁ ବୈର ଭାବ ଥିଲା। ତା'ଛଡ଼ା ଆଗରୁ କହିଛି କଲେଜ team ରେ ଖେଳିବା ପାଇଁ captain କୁ ଅନେକ ତୋଷାମୋଦ କରିବାକୁ ପଡୁଥିଲା। କଲେଜ team ରେ ଖେଳିବା ପାଇଁ ମୁଁ captain କୁ ତୋଷାମୋଦ କରିବି, ସେ କଥା ହବ ନାହିଁ। ସେଥିରେ ପୁଣି ତାଙ୍କ ସହିତରେ ମୋର କଲେଜକୁ ଆସିବା ପୂର୍ବରୁ

ମନୋମାଳିନ୍ୟ ଥିଲା । ଏଣୁ କଲେଜ team ରେ ଯଦିଓ କେତେକ friendly match ଖେଳିଲି, ଅସଲ tournament ବେଳକୁ ଖେଳି ପାରିଲି ନାହିଁ । ତଥାପି B team ରେ ଖେଳିଲି । Ravenshaw Collegeରେ ସେତେବେଳେ ଛ'ଟା ସମାନ ସମାନ A team ର ଖେଳାଳୀ ଥିଲେ । କିନ୍ତୁ ଯେଉଁ ଦଳଟା A team ବୋଲି ଖେଳନ୍ତି, ତାକୁ ସମସ୍ତେ A team ବୋଲି ଧରି ନିଅନ୍ତି, ହଁ ଖେଳୁଛନ୍ତି ତ ଖେଳନ୍ତୁ । ସେଥିରେ ପ୍ରାୟ hostel ପିଲାଙ୍କ ଭିତରୁ ଅଧିକାଂଶ player ଖେଳନ୍ତି । ଆଉ ଜଣେ ଦି'ଜଣ ବାହାର ପିଲାଥାନ୍ତି । ଆଗରୁ କହିଛି Ravenshaw Collegeରେ hostel ପିଲା ଆଉ ବାହାର ପିଲାଙ୍କ ଭିତରେ ଭୀଷଣ ବାଦବିବାଦ, ମନୋମାଳିନ୍ୟ । ଇମିତିକି ପ୍ରକାଶ୍ୟରେ hostel ପିଲା ଆଉ ବାହାର ପିଲାଙ୍କ ମଧ୍ୟରେ ଭୀଷଣ ପ୍ରତିଦ୍ୱନ୍ଦ୍ୱିତାମୂଳକ football match ହୁଏ । ସେଥିରେ କେତେ ଧସ୍ତାଧସ୍ତି ମାଡ଼ଗୋଳ ମଧ୍ୟ ହେଇଯାଏ । ମୁଁ ପୁଣି ବାହାରେ ରହି ପଢୁଥିଲି । ମୁଁ କଲେଜରେ ପଢିବାବେଳେ ପ୍ରିୟ ଆଉ ମୃଣାଳ ଅବସର ଦେଖି ମୋ ପାଖକୁ ଆସନ୍ତି, ବସନ୍ତି, ଗପ କରନ୍ତି, କିନ୍ତୁ ଆଗପରି ନୁହେଁ । ମୋର ତ ଆଗ ପରି ଆଉ ବେଶି ଅବସର ନଥାଏ । ପ୍ରିୟ ସେତେବେଳକୁ medical ରେ X-ray ବିଭାଗରେ assistant ରୂପେ ଚାକିରୀ କଲାଣି । ମୃଣାଳ କିଛି କରୁ ନଥାଏ, ଖାଲି ବୁଲୁଥାଏ । ମୁଁ ପାଠପଢ଼ା ଛାଡ଼ିଥିଲା ବେଳେ ମୋ ପାଖରେ ତା'ର ଅନେକ ସମୟ କଟି ଯାଉଥିଲା । ବର୍ତ୍ତମାନ ଆଉ ସେତେ ସମୟ ମୋ ପାଖରେ କଟେ ନା । ଅନ୍ୟ ସାଙ୍ଗ ଯୋଗାଡ଼ କରି ସେ ବୁଲୁଥାଏ । କେତେଦିନ Mission Road ରେ କଟକର ରଘୁ କର୍ପନଙ୍କ ଦ୍ୱାରା ପ୍ରତିଷ୍ଠିତ Cinema Palace ରେ booking clerk ରୂପେ କାମ କରୁଥିଲା । Cinema Palace ବନ୍ଦ ହବା ଦିନୁ ସେ କେବଳ ବୁଲେ । ମୁଁ ତ ତାଙ୍କ ମେଳରୁ ଓହରି ଆସିଲି । ବର୍ତ୍ତମାନ ପ୍ରିୟ, ସେ ଦିହେଁ ସାଙ୍ଗ କେବେ କେମିତି ଅବସର ଦେଖି ଆସି ମୋ ପାଖରେ ଜୁଟି ଯାନ୍ତି ।

ଦିନେ ପ୍ରିୟ ଓ ମୃଣାଳ ମୋ ପାଖକୁ ବୁଲିବାକୁ ଆସିଥାନ୍ତି । ପ୍ରିୟ ହଠାତ୍ ମୋତେ ଗୋଟାଏ କଥା କହି ବସିଲା । ପୁଳିନ, ବ୍ୟାୟାମ କରିବୁ ? ମୁଁ ପଚାରିଲି କି ବ୍ୟାୟାମ ? ପ୍ରିୟ କହିଲା Mullar ର "daily fifteen minutes" ଅର୍ଥାତ୍ "ଦୈନିକ ପନ୍ଦର ମିନିଟ୍" କରି ବ୍ୟାୟାମ କରିବାକୁ ହବ । କଲେ, ଶରୀର ବଦଳିଯିବ ।

ମୁଁ ସେ ପର୍ଯ୍ୟନ୍ତ ବ୍ୟାୟମ ପ୍ରତି ଅନ୍ୟମନସ୍କ ଥିଲି । କେତେଦିନ ରାଧାଶ୍ୟାମ ଦାସଙ୍କର "daily dozen" ନେଇ ମାତି ଥିଲି, ଭଲ ନ ଲାଗିବାରୁ ତାକୁ ଛାଡ଼ି ଦେଲି । ମୁଁ କେବଳ football ଖେଳେ, sports ରେ join କରେ, sports ରେ କେବଳ long race ଏବଂ high jump ରେ ଯୋଗ ଦିଏ ।

ପ୍ରତିଦିନ ବ୍ୟାୟାମ କିଏ କରୁଛି ? Football ଖେଳିବା ତାଠୁଁ ଆହୁରି ଭଲ । ଏଇ ଧାରଣା ନେଇ ମୁଁ ବ୍ୟାୟାମ ପ୍ରତି ମନ ଦଉ ନଥିଲି ବାବା କେତେଥର ଦୁଃଖ କରି କହିଛନ୍ତି, ତୁ ଜୀବନରେ କ'ଣ କରିବୁ ? ସକାଳୁ ତ କେଭେ ଉଠିଲୁ ନାହିଁ । ସକାଳୁ ଉଠିଲେ ଦେହ ପକ୍ଷରେ ଭଲ । ଦେହର ତ କିଛି ପରିବର୍ତ୍ତନ ହେଲା ନାହିଁ । ଅନ୍ୟାନ୍ୟ ପିଲାଙ୍କର ସ୍ୱାସ୍ଥ୍ୟ କେତେ ସୁନ୍ଦର !

ମୁଁ ଯେତେବେଳେ football ଖେଳରେ ମାତିଲି, ବାବା ବରାବର ଭୟ କଲେ । ମୁଁ କେଉଁଦିନ ହାତ, ଗୋଡ଼ ଭାଙ୍ଗି ଆସିବି ନଚେତ୍ କା' ସଙ୍ଗେ କଳିଗୋଳ କରିବି । ମୋର ସ୍ୱାସ୍ଥ୍ୟର କେମିତି ପରିବର୍ତ୍ତନ ହେବ, ବାବା ସେ ଚିନ୍ତା କରିବେ । କିନ୍ତୁ ଖେଳ କସରତରେ ମାତିଲେ, ବାବା ଅନିଚ୍ଛା ପ୍ରକାଶ କରିବେ କିମ୍ବା ଭୟଭୀତ ହେବେ । ରାଧାଶ୍ୟାମ ଦାସଙ୍କର daily dozen କଲାବେଳେ ବାବା ସେମିତି ଅନିଚ୍ଛା ପ୍ରକାଶ କରିଥିଲେ, ତାକୁ ମଧ୍ୟ ମୁଁ ଛାଡ଼ି ବସିଲି କାରଣ ମୋତେ ଭଲ ଲାଗିଲା ନାହିଁ ।

ବର୍ତ୍ତମାନ ପ୍ରିୟ ଯେଉଁ daily fifteen minutes କଥାଟି ଆରମ୍ଭ କଲା ମୁଁ ତାକୁ ଦୈନିକ କରିବା ପାଇଁ ଆଗ୍ରହ ପ୍ରକାଶ କଲି, ଭାବିଲି ଦୈନିକ ପନ୍ଦର ମିନିଟ କରିବାକୁ ହବ । ବେଶି ତ କିଛି ନୁହେଁ । ମୁଁ ରାଜି ହେଲି । ପ୍ରିୟ କହିଲା, ମୁଁ daily fifteen minutes ବହି

ଆଣି ଦେବି, କିଛିଦିନ କରି ଦେଖ। କ'ଣ ହଉଛି ନହେଲେ ଛାଡ଼ି ଦବୁ। କିଛିଦିନ ପରେ ପ୍ରିୟ Mullar ଙ୍କ Daily Fifteen Minutes ବହି ଆଣି ଦେଲା, ବହି ଖଣ୍ଡକ ଆମୂଳଚୂଳ ଭଲ ଭାବରେ ପଢ଼ିଲି, ଦେଖିଲି ସେ ବ୍ୟାୟାମ ଗୁଡ଼ିକରେ ଅଙ୍ଗ ଚାଳନା ସହିତରେ breathing exercise ଜଡ଼ିତ। ଏଣୁ ଭଲ ଉପାଦେୟ ବ୍ୟାୟାମ ପ୍ରଣାଳୀ ବୋଲି ମନେ ହେଲା, ଭାବିଲି ଭଲ ଜିନିଷଟାଏ ପ୍ରିୟ ମୋତେ ଆଣି ଦେଲା। ବଡ ଆଗ୍ରହ ସହିତରେ Daily Fifteen Minutes ବ୍ୟାୟାମ ଆରମ୍ଭ କଲି। ବଡ଼ ଭଲ ଲାଗିଲା। ଲୋଭରେ ଦିନକୁ ତିନି ଚାରି ଥର daily fifteen minutes ବ୍ୟାୟାମ କଲି। ମନେ ମନେ ଭାବିଲି କେମିତି ଶୀଘ୍ର ଦେହ ବଦଳି ଯିବ। ବହି ଖଣ୍ଡକ ମୋରି ପାଖରେ ଥାଏ। ତାକୁ ତନ୍ନତନ୍ନ କରି ପ୍ରତ୍ୟେକ ବ୍ୟାୟାମ କରେ। କିନ୍ତୁ ଗୋଟାଏ ଅସୁବିଧା, ପ୍ରିୟ ଅଳ୍ପ ଦିନ ପରେ ତା'ର ବହି ନେଇଯିବ। ଏଣୁ ଏ ବହିରୁ ଖଣ୍ଡେ କିଣିବାକୁ ହବ। ଏଣୁ ସେତେବେଳର କଟକ ସହରର ଯେତେ ବହି ଦୋକାନ, ସବୁଠି ଖୋଜିଲି। କିନ୍ତୁ ଦେଖିଲି ଅନେକ ବହି ଦୋକାନୀ ସେ ବହିର ନାଁ ଜାଣନ୍ତି ନାହିଁ। ଶେଷରେ ଦେଖିଲି ବାଙ୍କା ବଜାରରେ ସେତେବେଳେ ଗ୍ରନ୍ଥମନ୍ଦିର ବହି ଦୋକାନ ନୂଆ ଆରମ୍ଭ ହେଇଥାଏ। ସେଇଠି ମିଳିଲା, ଦାମ୍ ୩ଟଙ୍କା। ବହି ଖଣ୍ଡେ କିଣିଲି, ବଡ଼ ଆନନ୍ଦ ଲାଗିଲା, ପାଠପଢ଼ା, ଖେଳ ଚାଲିଥାଏ। ଏଣେ ଦୈନିକ ତିନି ଚାରି ଥର daily fifteen minutes ବ୍ୟାୟାମ କରୁଥାଏ। କିଛିଦିନ କଲା ପରେ ଅନେକେ ମୋର ଅଳ୍ପ ଶାରିରୀକ ଉନ୍ନତି ଲକ୍ଷ୍ୟ କଲେ। ଅନେକେ ପଚାରିଲେ ପୁଲିନ ବାବୁ କିଛି ବ୍ୟାୟାମ କରୁଛନ୍ତି କି? ମୁଁ ତାଙ୍କୁ daily fifteen minutes ବିଷୟରେ କହିଲାରୁ ଅନେକ ବନ୍ଧୁ ମୋତେ ଅନୁରୋଧ କଲେ ଆମକୁ ଟିକିଏ ଶିଖେଇ ଦିଅନ୍ତୁ, ଆମେ କରିବୁ।

ମୁଁ ମଧ ଅନେକଙ୍କୁ ଶିଖେଇଲି। ସେମାନେ ମଧ ଦୈନିକ ମୋର କହିବା ଅନୁଯାୟୀ ଅଭ୍ୟାସ କଲେ। ସେମାନଙ୍କର ମଧ ଶାରିରୀକ ଉନ୍ନତି ଜଣା ପଡ଼ିଲା। ପ୍ରିୟ ମଧ ମୋର ଶାରିରୀକ ଉନ୍ନତି ଦେଖି ଆଶ୍ଚର୍ଯ୍ୟ ହେଲା। ପ୍ରିୟକୁ କହିଲି, ମୁଁ ଦୈନିକ ଚାରିଥର daily fifteen minutes ବ୍ୟାୟାମ କରୁଛି। ପ୍ରିୟ ଆଉ ଗୋଟାଏ ନୂଆ କଥା କହିଲା, ଏଇ Mullar ଙ୍କ Daily Five Minutes ବୋଲି ଖଣ୍ଡେ ବହି ଅଛି, ତାକୁ କଲେ ଆହୁରି କମ୍ ସମୟ ଲାଗିବ।

ପ୍ରିୟ ମୁହଁରୁ ଏକଥା ଶୁଣି ମୋର ମନ ଲାଗିଲା Daily Five Minutes ବହି କେଉଁଠୁ ଯୋଗାଡ଼ କରିବି? ସେଦିନ ତ ୩ଟଙ୍କା ଦେଇ ବହି ଖଣ୍ଡେ କିଣିଛି, ଅଭିଜ୍ଞା ଯାକୁହିଁ କିଛି ଦିନ ଅଭ୍ୟାସ କରେ। ତା'ପରେ Daily Five Minutes ବହି ଯୋଗାଡ କରି ଅଭ୍ୟାସ କରିବି।

ଏଥି ମଧରେ ଜଣେ ବନ୍ଧୁଙ୍କ ମୁହଁରୁ ଶୁଣିଲି ଯେ ସୁଭାଷ ଚନ୍ଦ୍ର ବୋଷ ତାଙ୍କର ଖଣ୍ଡେ ବହିରେ ଲେଖିଛନ୍ତି, ସେ Daily Five Minutes ବ୍ୟାୟାମ କରୁଥିଲେ। ମୋର ଏ ବନ୍ଧୁ ଅନେକ ବହି ପଢ଼େ, ନାଁ ଶ୍ରୀ ଫଣୀ ଗୋପାଳ ସିଂହ। ମୋର ମଧ ପଢ଼ା ବହି ଛାଡ଼ି ଅନ୍ୟ ବହି ପଢ଼ିବାର ନିଶା ପ୍ରବଳ। ଆମେ ଉଭୟେ ପଢ଼ିଥିବା ବହି ବିଷୟରେ ବେଳେବେଳେ ଅନେକ ଆଲୋଚନା କରିଥାଉ। କିନ୍ତୁ ସୁଭାଷ ବୋଷଙ୍କର ସେ ବହି ଖଣ୍ଡକ ମୁଁ ପଢ଼ି ନଥାଏ। କିନ୍ତୁ ଏ ବନ୍ଧୁଙ୍କ ମୁହଁରୁ ସୁଭାଷ ଚନ୍ଦ୍ର daily five minutes କରୁଥିବାର ଶୁଣି ମୋର ବିଶେଷ ଆଗ୍ରହ ଜନ୍ମିଲା। କେମିତି ସେ ବହି ଖଣ୍ଡକ ଯୋଗାଡ଼ କରିବି? ଗ୍ରନ୍ଥମନ୍ଦିରରେ ଯାଇ ପଚାରିଲି, ସେ ବହି ତାଙ୍କ ପାଖରେ ନାହିଁ ବୋଲି କହିଲେ। ବଡ଼ ହତାଶ ଲାଗିଲା। ଏହି ସମୟରେ ଦିନେ ପ୍ରିୟ ଆସି କହିଲା, Daily Five Minutes ବହି ପାଇଲୁ? ମୁଁ କହିଲି, ନା କେଉଁଠି ମିଳୁ ନାହିଁ। ପ୍ରିୟ କହିଲା, ସେ ବହି ଜଣେ ବଙ୍ଗାଳୀ ଭଦ୍ରଲୋକଙ୍କ ଘରେ ଅଛି, ତାଙ୍କଠୁ କେମିତି ଆଣିଲେ ହବ।

ପ୍ରିୟ ଯେଉଁ ବଙ୍ଗାଳୀ ଭଦ୍ରଲୋକଙ୍କ ନାଁ କହିଲା, ତାଙ୍କର ପୁଅମାନେ ଭଲ football player, ସେମାନଙ୍କ ମଧରୁ ସାନପୁଅ ମୋର ଭଲ ପରିଚିତ। ମୁଁ ଆଉ ପ୍ରିୟ ଠିକ୍ କଲୁ ତାକୁ କହିବା, ଦେଖିବା ସେ ଦଉଛିକି ନା?

କିଛିଦିନ ପରେ ସେ ଭଦ୍ରଲୋକଙ୍କ ସାନପୁଅକୁ କହିବାରେ ସେ ହଠାତ୍ ରାଜି ହେଇଗଲା । କିନ୍ତୁ ଖୁବ୍ ଅଳ୍ପ ଦିନ ଭିତରେ ସେ ବହି ଖଣ୍ଡକ ଫେରେଇ ଦବାକୁ ହବ । ମୁଁ ଏ କଥାରେ ମଧ ରାଜି ହେଲି । କାରଣ ସେ ବହି ଖଣ୍ଡକ ତାଙ୍କ ଘରର ସମସ୍ତଙ୍କ ଅଗୋଚରରେ ସେ ଦବ ।

ସେ ବହି ଖଣ୍ଡକ ଦିନେ ତା'ଠାରୁ ଆଣି ଖୁବ୍ ଭଲ ଭାବରେ ଆମୂଳଚୂଳ ପଢ଼ିଲି । ମୁଁ ତ ଆଗରୁ daily fifteen minutes ଅଭ୍ୟାସ କରିଥିଲି । ମୋତେ ବେଶି କିଛି ଦୁର୍ବୋଧ ମନେ ହେଲା ନାହିଁ । ମୁଁ ଠିକ୍ କଲି କେବଳ ବ୍ୟାୟାମ ପଦ୍ଧତି ସବୁ ଉତାରି ପକେଇ ରଖିବି । ଏଣୁ ଖଣ୍ଡେ ଖାତା କରି, ସେଥିରେ daily five minutes ର ବ୍ୟାୟାମ ପଦ୍ଧତି ଆଉ ପ୍ରତ୍ୟେକ ବ୍ୟାୟାମର ଅଙ୍ଗଚାଳନାର ଚିତ୍ର ସହିତରେ ଉତାରି ପକେଇଲି । ତା'ପରେ ସେ ପିଲାକୁ ବହି ଖଣ୍ଡକ ଫେରେଇ ଦେଲି । Daily Five Minutesକୁ ପାଇ, Daily Fifteen Minutesକୁ ଛାଡ଼ି ଦୈନିକ daily five minutes ବ୍ୟାୟାମ ଅଭ୍ୟାସ କଲି । ଏ ବ୍ୟାୟାମ ପ୍ରଣାଳୀ ପ୍ରକୃତ ପାଞ୍ଚ ମିନିଟରେ ସରିଯାଏ । ଯାକୁ ମଧ ଦିନ ମଧରେ ଅନେକବାର କଲି, ଲକ୍ଷ୍ୟ ରହିଲା ଦେହ କେମିତି ଶୀଘ୍ର ବଦଳିବ ।

ପାଠ ପଢ଼ା, ବ୍ୟାୟମ କରା, ଖେଳ ସବୁ ଚାଲିଥାଏ । I.Sc.ର ପ୍ରଥମ ବାର୍ଷିକ ଶ୍ରେଣୀ ପରେ ମେଡ଼ିକାଲ ସ୍କୁଲରେ ନାଁ ଲେଖେଇ ଡ଼ାକ୍ତରୀ ପଢ଼ିଥିଲେ ଭଲ ହେଇଥାନ୍ତା । କିନ୍ତୁ ମୁଁ ଭାବିଲି ପ୍ରଥମ ବାର୍ଷିକ ଶ୍ରେଣୀରୁ ଯେତେବେଳେ ଖୁବ୍ ସହଜରେ ଉତ୍ତୀର୍ଣ୍ଣ ହେଇ ଦ୍ୱିତୀୟ ବାର୍ଷିକ ଶ୍ରେଣୀକୁ ଆସିଲିଣି, ଆଉ ଗୋଟାଏ ବର୍ଷ କୌଣସି ମତେ କଟେଇ I.Sc. ପାସ୍ କରି ପାରିଲେ M.B.B.S. ପଢ଼ି ପାରିବି, କିନ୍ତୁ ସେତେବେଳେ ତ ଓଡ଼ିଶାରେ Medical College ନଥିଲା । ଭାବିଲି ଆଗେ I.Sc.ପାସ୍ କରେ, ତା'ପରେ ଦେଖାଯିବ । କେଉଁ ଆଡୁ କିଛି ସାହାଯ୍ୟ ନେଇ ମଧ ଅନ୍ୟତ୍ର କେଉଁଠି M.B.B.S. ପଢ଼ିପାରିବି ।

ସେତେବେଳେ କଟକରେ ଏକ ମାତ୍ର Medical School ଥିଲା । ସେଥିରେ ପଢ଼ିଲେ L.M.P. ପାଠ ପଢ଼ିବାକୁ ହବ । I.Sc. ତ ପଢୁଛି, ବର୍ଷଟିଏ ପଡି ଯାକୁ ଛାଡ଼ି ଦେବି କାହିଁକି ? କିନ୍ତୁ ଏଇ ସମୟରେ ବାବା ପେନ୍‌ସନ୍ ପାଇଲା ପରେ ଯେଉଁ P.H.D. ବିଭାଗରେ କଟକରେ ଚାକିରୀ କରୁଥିଲେ, ସେହି ବିଭାଗରେ ବାବାଙ୍କର ପୁରୀ ବଦଳି ହେଲା । କ'ଣ କରାଯିବ ? ବାବା ଆମକୁ କେଭେ ଏକା ଛାଡ଼ି କେଉଁଠି ରହି ନାହାନ୍ତି । ଏ ବୁଢ଼ା ବୟସରେ ବାବା ଆମକୁ ଛାଡ଼ି କେଉଁଠି ଏକା ରହିବେ ? ଖାଇବା ପିଇବାରେ ଅସୁବିଧା ହବ । ଦିହ ଖରାପ ହବ କିନ୍ତୁ ବାବାଙ୍କର ବୁଢ଼ା ବୟସ ହେଲେ ମଧ ସେ ଖୁବ୍ କାର୍ଯ୍ୟକ୍ଷମ ଥାନ୍ତି । ଖାଲିରେ ବସିବା ତାଙ୍କୁ ଭଲ ଲାଗେ ନାହିଁ । ତା'ପରେ ମୁଁ ପଢୁଛି ବାବା ଯଦି ସେ ଚାକିରୀ ଛାଡ଼ି ଦଉଛନ୍ତି, ଖାଲି ପେନ୍‌ସନ୍‌ରେ ତ ଘର ଚଳେଇ, ମୋତେ ପଢ଼େଇବା ଅସମ୍ଭବ ହେଇ ପଡ଼ିବ । ଏଇ ସବୁ ଭାବି ବାବା ପୁରୀ ଗଲେ । ମୁଁ, ମା ଓ ସାନଭଉଣୀ କଟକରେ ରହିଲୁ । ବାବା ପୁରୀରେ ଯାଇ ଆମ ଗାଁର ପୁରୋହିତ ଶ୍ରୀ ଭଗବତୀ ଚରଣ ଚକ୍ରବର୍ତ୍ତୀଙ୍କ ନିକଟରେ ରହିଲେ । ସେ ପୁରୀରେ ପାଇକପଡ଼ା ଷ୍ଟେଟ୍‌ରେ ଚାକିରି କରୁଥିଲେ । ଅତି ଉଦାର, ଅମାୟିକ, ସ୍ନେହୀ ଲୋକ, ବାବାଙ୍କୁ ବଡ଼ ଭାଇ ବୋଲି ଡ଼ାକନ୍ତି । ଯାଙ୍କର ଗୋଟାଏ ମହତ୍ ଗୁଣ ହେଲା ଯାଙ୍କ ଘରକୁ ଯେ ଯିବେ, ସେ ତାକୁ କିଛି ହେଲେ ନଖୋଇ ଛାଡ଼ିବେ ନାହିଁ । ଏ ପୁରୀରେ ଥିବା ଯୋଗୁଁ ଯାଙ୍କ ପାଖରେ ବହୁତ ଅତିଥି ଅଭ୍ୟାଗତ ଯାଇ ପହଁଚନ୍ତି, କିଏ କେତେଦିନ ରହିଲାଣି ତା'ର ମଧ ଚିନ୍ତା ନାହିଁ । ସେ ସମସ୍ତଙ୍କୁ ଖୋଇପେଇ ଚଳେଇବେ । ଯେତେ ଲୋକ ତାଙ୍କ ବସାରେ ପହଁଚିବେ, ତାଙ୍କର ସେତେ ଆନନ୍ଦ । ତାଙ୍କର ରୋଜଗାର ତୁଳନାରେ ଖର୍ଚ୍ଚ ବହୁତ । ଋଣଗ୍ରସ୍ତ ହେଲେ ମଧ ସେ ସବୁ ଖର୍ଚ୍ଚ ତୁଲେଇବେ । ନିଜେ ପୁରୀରେ ହେରାଗୋହିରି ସାହିରେ ଖଣ୍ଡିଏ ଘର କରିଥିଲେ । ଇମିତି ଖର୍ଚ୍ଚ କରି ଋଣଗ୍ରସ୍ତ ହେଇ, ସେ ଘର ଖଣ୍ଡିକ ବିକି ଦେଲେ । ଭଗବତୀ ଚରଣ ଚକ୍ରବର୍ତ୍ତୀଙ୍କ ଭଳି ଲୋକ

ଆଜିକାଲି ଦେଖିବା ବିରଳ। ଆମେ ତାଙ୍କୁ ଦାଦୀ ବୋଲି (କୁନାକାକା) ବୋଲି ଡ଼ାକୁଥିଲୁ। ଏକ ଅବିସ୍ମରଣୀୟ ଲୋକ। ଯା ହଉ ବାବା କୁନା କାକାଙ୍କ ପାଖରେ ରହିଲେ, ଆମେ ଟିକିଏ ନିଶ୍ଚିନ୍ତ ହେଲୁ।

ଆଉ ଗୋଟାଏ ଘଟଣା। ମୁଁ ଦ୍ୱିତୀୟ ବାର୍ଷିକ କଲେଜରେ ପଢ଼ୁଥାଏ। ଦିନେ ସକାଳ ବେଳା ମୁଁ ସାଇକେଲ୍‌ରେ ରାଣୀହାଟ ଯାଉଛି, ରାଣୀହାଟ ଛକ ମୁଣ୍ଡରେ ହଠାତ୍ ମୁଁ ଦେଖିଲି ମୋର ପୂର୍ବତନ ପ୍ରାଇଭେଟ ଟିଉଟର ଗଦାଧର ଘୋଷ ମେଡିକାଲ ଆଡୁ ରାଣୀହାଟ ଛକ ଆଡକୁ ଆସୁଛନ୍ତି। ମୁଁ ହଠାତ୍ ଚିହ୍ନି ପାରିଲି ନାହିଁ। କାରଣ ତାଙ୍କର ରୂପ ଏକବାରେ ବଦଳି ଯାଇଛି। ଜୀର୍ଣ୍ଣଶୀର୍ଣ୍ଣ ଅବସ୍ଥା, ଗାଲ ଠାକରା, ମୁହଁ ଶୁଷ୍କ, ଆଖି ନିଷ୍ପ୍ରଭ, କଣ୍ଠ ସ୍ୱର ଅତି କରୁଣ। ମୁଁ ସାଇକେଲ୍‌ରୁ ଓଲେହିପଡ଼ି ତାଙ୍କୁ ନମସ୍କାର କରି କହିଲି, ଆପଣ ଏତେ ରୁଗ୍ଣ କ'ଣ ହେଇଛନ୍ତି? ଆପଣ ଆମ ଘରକୁ ନଯାଇ ଇଆଡ଼େ କାହିଁକି ରହିଛନ୍ତି? ସେ ଉତ୍ତର ଦେଲେ ହଁ, ମୁଁ ବେମାର ଅଛି।

ମୁଁ ତାପରେ ସେହି ରାଣୀହାଟ ଛକରୁ ଫେରି ତାଙ୍କୁ ଆମ ଘରକୁ ଡ଼ାକିନେଲି। ମାଷ୍ଟ୍ରେ ଆମ ଘରକୁ ଆସି ମା'ଙ୍କୁ ପ୍ରଣାମ କଲେ। ମା' ମଧ୍ୟ ତାଙ୍କୁ ଦେଖି ଆଶ୍ଚର୍ଯ୍ୟ ହେଇ ଗଲେ। ମା ସେତେବେଳେ ରୋଷେଇରେ ବ୍ୟସ୍ତ ଥିଲେ। ମାଷ୍ଟ୍ରେ ସେହି ରୋଷେଇ ଘରେ ବସି ମା'ଙ୍କ ଆଗରେ କାନ୍ଦିବାକୁ ଆରମ୍ଭ କଲେ। ମା' କାରଣ ପଚାରି ବୁଝିଲେ। ମାଷ୍ଟ୍ରଙ୍କ କାଶରେ ରକ୍ତ ପଡୁଛି। ଡ଼ାକ୍ତରମାନେ ମତ ଦେଇଛନ୍ତି ତାଙ୍କୁ ଯକ୍ଷ୍ମା ରୋଗ ଧରିଛି। ମା' ତାଙ୍କୁ ଅନେକ ସାନ୍ତ୍ୱନା ଦେଲେ, ଅନେକ କଥା ବୁଝେଇଲେ, ବେଶିଗୁରାଏ ଅଧୈର୍ଯ୍ୟ ହବାକୁ ମନାକଲେ। ମୁଁ ମେଡ଼ିକାଲରେ କମ୍ପାଉଣ୍ଡରୀ ପାଠ ପଢ଼ିବା ବେଳେ ଯକ୍ଷ୍ମାରୋଗୀ ସମ୍ବନ୍ଧରେ ଯାହା ଜାଣିଥିଲି, ସେଇଥିରୁ ଅନୁମାନ କଲି, ମାଷ୍ଟ୍ରେ ଚାଲିଲେ, ଆଉ ବେଶିଦିନ ନୁହେଁ।

ସେଦିନ ମାଷ୍ଟ୍ରେ ଆଉ ଆମ ଘରେ ରହିଲେ ନାହିଁ କି ଖାଇଲେ ନାହିଁ। ଆସିବି ବୋଲି କହି କୁଆଡ଼େ ଯେ ଗଲେ ଆଉ ଫେରିଲେ ନାହିଁ। କିନ୍ତୁ ମୁଁ ମ୍ୟାଟ୍ରିକ ପାସ୍ କରି କଲେଜରେ ପଢ଼ିବା ଶୁଣି ବିଶେଷ ଆନନ୍ଦ ପ୍ରକାଶ କରିଥିଲେ।

ମାଷ୍ଟରଙ୍କ ସହିତରେ ଆମର ସେତିକି ଶେଷ ଦେଖା।

କଲେଜରେ ଦ୍ୱିତୀୟ ବାର୍ଷିକ ଶ୍ରେଣୀରେ ମୋର ପାଠ ପଢ଼ା ସଙ୍ଗେ ସଙ୍ଗେ ଘରେ daily five minutes ବ୍ୟାୟାମ କରା ଚାଲିଥାଏ। ତା'ଦ୍ୱାରା ଅଳ୍ପ ପରିମାଣରେ ଶାରିରୀକ ଉନ୍ନତି ମଧ୍ୟ ଦେଖାଗଲା। ତା'ପରେ ମନରେ ଗୋଟାଏ ଧାରଣା ହେଲା-ଏତେ ଅଳ୍ପ ବ୍ୟାୟାମ କରିବା ଦ୍ୱାରା, ଶରୀରର ଅଳ୍ପ ପରିବର୍ତ୍ତନ ହେଉଛି, କଠିଣ ବ୍ୟାୟାମ କଲେ, ଶରୀରର ମଧ୍ୟ ଶୀଘ୍ର ଆହୁରି ଉନ୍ନତି ହବ। ଏହାଛଡ଼ା football ଖେଳ, sports ରେ ଯୋଗ ଦବା ଚାଲିଥାଏ, ମନରେ ଯେଉଁ ଧାରଣା ପଶିଲା-କଠିଣ ବ୍ୟାୟାମ କଲେ, ଶରୀରର ଶୀଘ୍ର ଉନ୍ନତି ଜଣା ପଡ଼ିବ, ଏଥି ଯୋଗୁଁ ଠିକ୍ କଲି କୁସ୍ତି ଶିଖିବି, କିମ୍ବା ଅନ୍ୟ କିଛି କଠିଣ ବ୍ୟାୟାମ କରିବି। କୁସ୍ତି ଶିଖିବି କେଉଁଠି? ମନେ ମନେ ଭାବି ସ୍ଥିର କଲି କଟକ ଚୌଧୁରୀ ବଜାରର ବନା ପହିଲୁମାନ ଆଖଡ଼ାକୁ ଯିବି। ସେତେବେଳେ କଟକରେ ବନା ପହିଲୁମାନର ଆଖଡ଼ା ନାମଜାଦା ଆଖଡ଼ା। ଏଠି ଅନେକ ଲୋକ ଆସି କୁସ୍ତି ଶିଖନ୍ତି। ମୁଁ ପିଲାବେଳେ ଗିରିଜା ଶଙ୍କର ରାୟଙ୍କ ଠାରୁ ଶୁଣିଥିଲି-ସେ ଏହି ବନା ପହିଲୁମାନଙ୍କ ଆଖଡ଼ାରେ କିଛି ଦିନ ଶିଖିଥିଲେ। ଏଣୁ ମୋର ମଧ୍ୟ ମନ ହେଲା-ଏଇଠି କୁସ୍ତି ଶିଖିବି। ଦିନେ ସକାଳୁ ଉଠି ସାଇକେଲ୍‌ରେ ବନା ପହିଲୁମାନଙ୍କ ଆଖଡ଼ାକୁ ଗଲି। ବନା ପହିଲୁମାନ ଆଖଡ଼ା ସେତେବେଳେ କଟକ ଟାଉନ୍‌ହଲ୍ ପଛ ପଟେ ଥାଏ। ବେଶ୍ ନିରୋଳା ଜାଗା, ଚାରିଆଡ଼େ ବଣ ଥାଏ, ସେଠି ଯାଇ ଦେଖିଲି ଅନେକ ଲୋକ କୁସ୍ତି କରିବା ଅପେକ୍ଷାରେ ଠିଆ ହୋଇଛନ୍ତି, ଦି'ଜଣ କୁସ୍ତି କରୁଛନ୍ତି। ଫୁଲ୍‌କା ମଧ୍ୟ ଅତି ଚମତ୍କାର, ମାଟି ମଧ୍ୟ ଖୁବ୍ ନରମ, ତେଲରେ ଯେମିତି ଚକଟା ହେଇଛି। ମୁଁ ଠିଆ ହେଇ କୁସ୍ତିର ଯା' ଧାରା ଦେଖିଲି, ସେଥିରେ ମୋର ମନ ମାନିଲା ନାହିଁ। କାରଣ ଏଠି କୁସ୍ତି

କରି ଲୋକ କ୍ଳାନ୍ତ ହୋଇ ପଡ଼ିଲେ ମଧ୍ୟ ଛାଡୁ ନାହାନ୍ତି । ପୁଣି କୁସ୍ତି କରୁଛନ୍ତି । ବ୍ୟାୟାମ କରିବା ନୀତି ବିରୁଦ୍ଧ କାରଣ ଯେ ପର୍ଯ୍ୟନ୍ତ ଲୋକ କ୍ଳାନ୍ତ ନ ହୋଇଛି, ବ୍ୟାୟାମ କରିପାରେ । କିନ୍ତୁ ଯେତେବେଳେ ଲୋକଟା ଅତ୍ୟଧିକ କ୍ଳାନ୍ତ ହୋଇ ପଡ଼ିଲାଣି ତା'ର ଆଉ କୁସ୍ତି କରିବା ଉଚିତ୍ ନୁହେଁ । ଏଠି କିନ୍ତୁ ଓଲଟା ନିୟମ । କ୍ଳାନ୍ତ ହେଲେ ମଧ୍ୟ କେହି କାହାକୁ ଛାଡୁ ନାହାନ୍ତି । ମୁଁ ଏସବୁ ଦେଖି ଭାବିଲି-ମୁଁ ତ ପହିଲିମାନ ହେବାକୁ ଚାହୁଁ ନାହିଁ । କେବଳ ଶାରୀରିକ ଉନ୍ନତି ଆଉ ସୌଷ୍ଠବ ଚାହୁଁଛି । ଏଥି ଲାଗି ଏ ଧରଣର ବ୍ୟାୟାମ କରିବା କି ଦରକାର ? ନା, ଏଠି କୁସ୍ତି ଶିଖିବା ଉଚିତ୍ ନୁହେଁ । ସେଠୁଁ ସେଦିନ ଫେରିଲି, ତା'ପରେ ଦିନେ ଗଲି ଉତ୍କଳଭୀମ ପଦ୍ମଚରଣଙ୍କ ବ୍ୟାୟାମଶାଳାକୁ । ସେଠି ଯାଇ ଦେଖିଲି କେହି ନାହାନ୍ତି । ସେତେବେଳେ ସେ ବ୍ୟାୟାମଶାଳା ବାଲୁବଜାରର ଶେଷରେ ଅଦାଲତ ନିକଟବର୍ତ୍ତୀ ନୟାସଡ଼କ ଆଡୁ ଗଲେ ଡ଼ାଆଁଣ ହାତି ଗୋଟାଏ ଗଳି ଟପିଲେ, ଏକ ପ୍ରଶସ୍ତ ଜାଗାରେ ଥିଲା । ସେଠି ଗୋଟାଏ parallel bar ପୋତା ହୋଇଥିବାର ଦେଖିଲି, ଆଉ କିଛି ନାହିଁ । ଫୁଲକା ଇତ୍ୟାଦି କିଛି ଦେଖିଲି ନାହିଁ । ପଚରା ଉଚରା କରି ବୁଝିଲି ସେଠି parallel bar, ମୁଦ୍ଗର ଇତ୍ୟାଦି ଦ୍ୱାରା ବ୍ୟାୟାମ କରାଯାଏ । ମୁଁ ସେଠିକି ଯାଇ କିଛି ସମୟ ଠିଆ ହୋଇ ଭାବିଲି- ଯଦିଚ ଏଠି ବ୍ୟାୟାମ କରେ, ଦୈନିକ ଠିକ୍ ସମୟରେ ଯୋରିଆସାହିରୁ ଏଠିକି ଆସିବା ସମ୍ଭବପରର ନୁହେଁ । ଏଣୁ ସେଠୁଁ କ୍ଷୁନ୍ନ ମନରେ ଫେରିଲି । ଶେଷରେ ସ୍ଥିର କଲି ନିଜ ଘରେ ଯାହା କରିବାର କରିବା ଭଲ । କୁଆଡ଼େ ଯାଇ ବ୍ୟୟାମ କରିବା ଉଚିତ୍ ନୁହେଁ । ଏଣୁ ନିଜ ବାଗିରେ କେତେକ କଦଳୀ ଗଛ ମଝିରେ ସାହିର ସମବୟସ୍କ ଜଣକୁ ନେଇ ଗୋଟାଏ ଫୁଲକା ତିଆରି କଲି । ବେଶ୍ ନିରୋଳା ଜାଗା, ଏଠି କୁସ୍ତି କଲେ ଭଲ । ଏଣୁ ସାହିର ସମବୟସ୍କ ଟୋକା ସାଙ୍ଗରେ କୁସ୍ତି କରିବା ଆରମ୍ଭ କଲି । କୁସ୍ତି କରିବା ପରେ ପ୍ରତ୍ୟେକ ଦିନ ସକାଳେ କିଛି ପୁଷ୍ଟିକର ଖାଦ୍ୟ ଖାଇବା ଦରକାର । ଏଣୁ ପ୍ରତ୍ୟେକ ଦିନ ସକାଳେ କୁସ୍ତି ପରେ ଖାଇବା ପାଇଁ ଗତ ରାତିରୁ ବୁଟ କିଛି ଭିଜା ହୋଇ ରଖା ହୋଇଥାଏ । କେଉଁଦିନ କାବୁଲି ବାଦାମ, ମିଶ୍ରି ସହିତରେ ଭିଜା ହୋଇଥାଏ । କୁସ୍ତି କରି ସାରିଲେ ମୁଁ ଏବଂ ସେ ସାହିର ଟୋକା ଉଭୟେ ସେ ଭିଜା ବୁଟ ଖାଉଥିଲୁ । ଗୋଟାଏ ଘଟଣା ଦେଖିଲି, ଯେଉଁ ଟୋକା ସହିତରେ କୁସ୍ତି କଲି, ତା'ର କୁସ୍ତି କରିବା ପ୍ରତି ଯେତେ ଆଗ୍ରହ ନଥାଏ, ଭିଜାବୁଟ ଖାଇବା ପାଇଁ ତାଠୁଁ ବେଶି ଆଗ୍ରହ । ସେ ଚାହିଁଲା ଦୈନିକ ଅଧସେର ଭିଜାବୁଟ ଖାଇବ । ମୁଁ ତା'ସହିତରେ କୁସ୍ତି କଲାବେଳେ ଦିନେ ମୋର ବଡ଼ ଭଉଣୀ ଦେଖି ମୋ ଉପରେ ବିରକ୍ତ ହୋଇ କହିଲେ-ତୁ ସେହି ଟୋକା ସାଥିରେ କୁସ୍ତି କରୁଛୁ ? ତୁ କଲେଜରେ ପାଠ ପଢ଼ିଲୁଣି, ତୋର ଆଉ ଇଜ୍ଜତ, ମହତ, ଜ୍ଞାନ ନାହିଁ...... । ସେହି ଦିନଠୁଁ ମନଟା ମୋର ଦବିଗଲା । ପ୍ରକୃତ କଥା, ତା' ସହିତରେ କୁସ୍ତାକୁସ୍ତି ହବା ଭଲ ନୁହେଁ । ଏଣୁ କୁସ୍ତି କରିବା ବନ୍ଦ ହେଲା । ମୁଁ ସେ ଟୋକା ସହିତରେ କୁସ୍ତି କରିବା ଶୁଣି, ସାହିର ଅନ୍ୟାନ୍ୟ ଟୋକାଏ ଆଗ୍ରହ ପ୍ରକାଶ କଲେ । ଆମେ କୁସ୍ତି କରିବୁ । ମୁଁ କାହାରିକୁ ଆଉ ପ୍ରଶୟ ନ ଦେଇ କୁସ୍ତି କରିବା ବନ୍ଦ କରି ଦେଲି । କିନ୍ତୁ daily five minutes ବ୍ୟାୟାମ କରିବା ଚାଲିଥାଏ । ଏଣେ football ଖେଳ ଆଉ sports ରେ ଯୋଗ ଦବା ମଧ୍ୟ ବେଳ ଦେଖି ଚାଲିଥାଏ ।

ଏଇ ସମୟରେ ଏକ ଅସୁବିଧା ଉପୁଜିଲା । ଶୁଣିଲି, ବାବା ପୁରୀରେ ଯେଉଁ P.H.D.ବିଭାଗରେ ଚାକିରି କରୁଥିଲେ, ସେ ଚାକିରିରେ ବାବା ଆଉ ରହିବେ ନାହିଁ । ଅନ୍ୟ ଜଣେ ରହିବ । ବାବା ପେନ୍‌ସନ୍ ପାଉଥିଲେ, ତା'ଛଡ଼ା P.H.D. ବିଭାଗରେ ଚାକିରି କରୁଥିଲେ ବୋଲି ମୋର ପଢ଼ିବାରେ ସୁବିଧା ହଉଥିଲା । ବାବା ପୁରୀରୁ ଚାକିରି ଛାଡ଼ି ଆସିଲେ । କେବଳ ପେନ୍‌ସନ୍ ଭରସା । ଏଥିରେ ମୁଁ ପଢ଼ିବି କେମିତି ? ମନ ଏକବାର ଭାଙ୍ଗି ପଡ଼ିଲା, ଭାରି ହତାଶ ଲାଗିଲା-କେମିତି ପଢ଼ିବି ?

ବାବା କିଛିଦିନ୍ ପରେ ପୁରୀରୁ ଚାକିରି ଛାଡ଼ି, ଜିନିଷ ପତ୍ର ନେଇ ଆସି ପହଞ୍ଚିଲେ, ସେଥିରେ ପୁଣି ଦିହରେ ପ୍ରବଳ ଜ୍ୱର । ମା', ମୁଁ ଭୟରେ ହତାଶ ହୋଇ ପଡ଼ିଲୁ । ବାବା ପୁରୀରେ ଥିଲା ବେଳେ ସାମାନ୍ୟ ଟିକିଏ

ଦିହ ଅସୁସ୍ଥ ହବାର ଚିଠି ପାଇଲେ, ମୁଁ ଯାଇ ବାବାଙ୍କ ପାଖରେ ପହଞ୍ଚିଥିଲି । ପେନ୍‌ସନ୍ ଟଙ୍କାରେ ଘର ଚଳି ମୁଁ ପାଠ ପଢ଼ିବା ତ ଅସମ୍ଭବ । ଏଣିକି ଉପାୟ କ'ଣ? ମୋର ପୁଣି ଦ୍ୱିତୀୟ ବାର୍ଷିକ ଶ୍ରେଣୀ । ଏଇ ବର୍ଷ I.Sc.ର final ପରୀକ୍ଷା ହବାର କଥା । ବହି ତ କିଛି ନଥାଏ, ଏଠୁ ସେଠୁ ମାଗି ଆଣି ପଢ଼ିବା ଛଡ଼ା ଉପାୟ ନାହିଁ । ବହି ପୁଣି ମାଗି ଆଣିଲେ, ଦିନେ କି ଦି'ଦିନ ପରେ ଫେରେଇବାର କଥା । ତା'ଠୁ ବେଶି ରଖି ହବନି । ନିଜର ବହି ଥିଲେ ଯେମିତି ସୁବିଧା, ସେ ସୁବିଧା ବା ମିଳୁଛି କୁଆଡ଼ୁ? କେବଳ ଧାର ଉଧାର କରି ମାସିକ କଲେଜ ଦରମାଗଣ୍ଡାକ ଦେଇ ଦେଲେ ତ ପାଠ ପଢ଼ା ହୁଏନା । ବାବା କ'ଣ କରିବେ? ଆଉ ଅଲଗା ଚାକିରୀ ବା ମିଳୁଛି କାହିଁ? ବଡ଼ କଷ୍ଟରେ ଚଳିବାକୁ ହେଲା । ମୋର ଯେଉଁ ବିଷୟରେ ଛ'ଖଣ୍ଡ ବହି ଦରକାର, ସେଥିରୁ ମୋ ପାଖରେ ମାଗିଯାଚି ଆଣି ମାତ୍ର ତିନିଖଣ୍ଡ ବହିଥାଏ । ଏ ଅବସ୍ଥାରେ ପରୀକ୍ଷାରେ ପ୍ରଶ୍ନ ପାଇଲେ, ମୋ ପାଖରେ ଯେଉଁ ବହି ଥାଏ, ସେଥିରୁ ଯେତେଟା ପ୍ରଶ୍ନ ଥାଏ, ତା'ରି ଉତ୍ତର ଦିଏ, ଆଉ ଅନ୍ୟ ବହିର ପ୍ରଶ୍ନ ସବୁର ଉତ୍ତର ଦେଇ ପାରେନା, ଏଣୁ ମନଦୁଃଖରେ କାନ୍ଦିବା ଅବସ୍ଥାରେ ପରୀକ୍ଷା ହଲ୍‌ରୁ ଫେରେ । ଏଥିରେ ପରୀକ୍ଷାରେ ପାସ୍ କରିବି କେମିତି? ଏତେବେଳେ ବୁଝିଲି- I.A. ନେଇଥିଲି ଭଲ କରିଥିଲି, I.A.ରେ ବେଶି ବହିର ଦରକାର ନଥିଲା । I.Sc.ରେ ଅନେକ ଗୁଡ଼ାଏ ବହିର ଦରକାର । କାହିଁକି I.Sc.ନେଲି? କିଏ ବା ଆଗରୁ ଜାଣିଥିଲା-ମୋର ଠିକ୍ ଦ୍ୱିତୀୟ ବାର୍ଷିକ final ପରୀକ୍ଷା ବେଳକୁ ବାବାଙ୍କର P.H.D. ବିଭାଗର ଚାକିରୀ ଖଣ୍ଡିକ ଯିବ । ଏମିତି ଅର୍ଥାଭାବ ଘଟିବ? ତଥାପି ବାବା ମୋତେ କହି ନାହାନ୍ତି-ତୁ ପଢ଼ା ଛାଡ଼ି ଦେ, ମୁଁ ଆଉ ପଢ଼େଇ ପାରିବି ନାହିଁ ବରଂ ବାବା କହନ୍ତି-ତୁ ପଢ଼, ତୁ କିଛି ଭାବନା, ମୁଁ ତ ଅଛି ।

ମୁଁ ବାବାଙ୍କୁ ବହିର ଅଭାବ କଥା କହିଲେ, ବାବା କହନ୍ତି, ଦେଖ, ବହି ଯୋଗାଡ଼ କରି ଚଳେଇ ନେ, ବହି ସବୁ ଆଉ କିଣି ହବ କୁଆଡ଼ୁ?

ମୁଁ ବହି ଯୋଗାଡ଼ କରିବାକୁ ଯାଇ ଦେଖେ ଯେ- ବହି ଦିନେ ଦୁଇଦିନ ପଢ଼ିବା ପାଇଁ ଦବାକୁ ପିଲାଏ ନାରାଜ । କଲେଜର lending libraryରୁ ବହି ଆଣି ଦେଖିଲି ଯେ, ଯେଉଁ ସମୟରେ ବହିର ବେଶୀ ଦରକାର, ସେଇ ସମୟରେ ବହି libraryରେ ଫେରେଇ ଦବାକୁ ହେବ । ଅର୍ଥାତ୍ ଲମ୍ବା ଛୁଟିରେ ପଢ଼ିବା ପାଇଁ କିମ୍ବା ବେଶି ଦିନ ରଖି ପଢ଼ି ହବନି, ସେଥିରେ ପୁଣି ଆଉ ଗୋଟାଏ ଅସୁବିଧା- lending libraryରେ ମୋର ଯେଉଁ ବହି ଦରକାର, ସେ ବହି ନାହିଁ । ଅନ୍ୟ କେତେକ ବହି ଅଛି । I.Sc.ର ପ୍ରଥମ ବର୍ଷଟା ଯେମିତି ଖୁରୁଖୁରୁରେ କଟିଗଲା, ମୁଁ ଭାବିଥିଲି ଦ୍ୱିତୀୟ ବର୍ଷଟା ସେମିତି ଭଲରେ ଭଲରେ କଟିଯିବ କିନ୍ତୁ ଏମିତି ବିଷମ ଅବସ୍ଥା ଉପୁଜିବ ମୁଁ ଜାଣି ନଥିଲି । ମୁଁ ଭାବିଥିଲି-I.Sc.ରେ ମୁଁ ନିହାତି ତୃତୀୟ ଶ୍ରେଣୀରେ ପାସ୍ କରି ଖସି ଯିବି କିନ୍ତୁ ତା'ହେଇ ପାରିଲା ନାହିଁ । ଏ ଦୈବ ଦୁର୍ଯୋଗ, ମନୁଷ୍ୟର ଭାଗ୍ୟରେ ଯା ଥିବ, ତାହା କେହି ଏଡ଼ି ପାରିବେ ନାହିଁ । I.Sc.ନେଇ ମୁଁ ଜଳି ପୋଡ଼ି ହେଇଗଲି । I.A. ଯେମିତି ପ୍ରଥମରୁ ନେଇଥିଲି, ମୁଁ ଭଲରେ ଅଳ୍ପ ଖର୍ଚ୍ଚରେ ପାସ୍ କରି ଯାଇଥାନ୍ତି । ସେତେବେଳେ I.Sc.ରେ ମାସିକ college fees ସାତ ଟଙ୍କା ଥିଲା, I.A.ରେ ଥିଲା ଛ'ଟଙ୍କା ମାତ୍ର, I.A.ରେ ବହି ମଧ ଅଳ୍ପ ଦରକାର, କିନ୍ତୁ ଆପଣା ହସ୍ତେ ଜିହ୍ୱା ଛେଦିଛି, କହିବି କାହାକୁ? ମନ ଡ଼ାକିଲା science ପଢ଼ିବି । ଏଣୁ I.Sc. ପାସ୍ କରିଥିଲେ, M.B.B.S.ପଢ଼ି ପାରିବି, ନଚେତ୍ I.Sc.ରେ ଫେଲ୍ ହେଲେ ଶେଷରେ କଟକ ମେଡ଼ିକାଲ୍ ସ୍କୁଲରେ L.M.P. ପଢ଼ିବି । ଶେଷକୁ ସେଇୟା ହେଲା । ଯା' ଭାଗ୍ୟରେ ଯାହା ଅଛି, ମୁଁ ବଡ଼ ହବାକୁ ଆଶା କଲେ ହଉଛି କୁଆଡ଼ୁ? ଭାଗ୍ୟ ଡ଼ୋରି ପଛକୁ ଭିଡୁଛି । ଶେଷରେ I.Sc.ରେ ଅକୃତକାର୍ଯ୍ୟ ହେଇ କଲେଜ ଛାଡ଼ିବାକୁ ବାଧ ହେଲି । ୧୯୩୩ରେ କଲେଜ ଛାଡ଼ିଲି । କିନ୍ତୁ ମନରେ ସବୁବେଳେ ଭାବିଲି-ମେଡ଼ିକାଲରେ କେମିତି ପଢ଼ିବି? କଲେଜ ଛାଡ଼ି ଘରେ ବସିଲି, ଆଉ ମେଡ଼ିକାଲରେ ପଢ଼ିବା ସମ୍ଭବ ନୁହେଁ । ମେଡ଼ିକାଲରେ କେମିତି ପଢ଼ିବି ଭାବି ଭାବି ରାତିରେ ନିଦ ହୁଏନା, ବାବାଙ୍କୁ ବା କେମିତି ଏକଥା କହିବି? କ'ଣ ବା ସମ୍ବଳ ଅଛି? କେବଳ ବାବାଙ୍କର ପେନ୍‌ସନ୍ ଗଣ୍ଡାକ ଭରସା । ମନରେ ଭାରି ଦୁଃଖ ଲାଗିଲା-କି ଭୁଲ କଲି । କାହିଁକି

I.Sc. ନେଲି ? I.A. ନେଇ ଥିଲେ ତ ଅଭିକା ଭଲରେ B.A.ପଢ଼ିପାରନ୍ତି । ବର୍ତ୍ତମାନ ଏ କୁଳ ହେଲି ନାହିଁ କି ସେକୁଳ ହେଲି ନାହିଁ । ଆଉ medicalରେ ପଢ଼ି ହେବ ନାହିଁ । କେମିତି ବାବାଙ୍କୁ କହିବି ମେଡ଼ିକାଲରେ ପଢ଼ିବା ପାଇଁ ? ବାବା କେମିତି ବା ପଢ଼େଇବେ ? କେହି ତ ସାହାଯ୍ୟକାରୀ ବନ୍ଧୁବାନ୍ଧବ ନାହାନ୍ତି । ସେମାନେ ବରଂ ପରିହାସ କରି ପାରନ୍ତି, ମୁଁ I.Sc.ରେ ଅକୃତକାର୍ଯ୍ୟ ହେଇ କଲେଜ ଛାଡ଼ିଛି ବୋଲି । ଏଣୁ ଚାରି ଆଡ଼ ଅନ୍ଧକାର ଦିଶିଲା । କ'ଣ କଲି ? କ'ଣ କରିବି ?

## (୪)

କଲେଜ ଛାଡ଼ିଲା ପରେ, ମୋର ବେକାର ଅବସ୍ଥା, ପାଠପଢ଼ା ବର୍ତ୍ତମାନ ବନ୍ଦ, କେବଳ ବୁଲିବା, ଖେଳିବା, ବ୍ୟାୟାମ କରିବା, ଘରର ବଜାର ସଉଦା କରିବା ଇତ୍ୟାଦି, ଇତ୍ୟାଦି । ସେଇ ସାଙ୍ଗ ମୃଣାଳ ପ୍ରିୟ ଆସି ଜୁଟିଲେ । ମୋର ଯେତେବେଳେ ପାଠ ପଢ଼ା ବନ୍ଦ, ସେମାନେ ମୋ ପାଖରେ ବେଶି ସମୟ କଟେଇ ପାରିଲେ । ପ୍ରିୟ ସେତେବେଳକୁ Medical ରେ x-ray departmentରେ ଚାକିରୀ କରୁଥାଏ । ମୃଣାଳ କିଛି ନ କରି ଖାଲି ବୁଲୁଥାଏ ।

ଗୋଟାଏ କଥା ଏଥିପୂର୍ବରୁ ଲେଖିବାକୁ ଭୁଲିଯାଇଛି । ୧୯୩୧ ମସିହାରେ ମୁଁ ସେତେବେଳେ କଲେଜରେ ପଢୁଥାଏ । ମୃଣାଳ, ପ୍ରିୟ ଉଭୟେ ମୋ ପାଖକୁ ମଝିରେ ମଝିରେ ଯିବା ଆସିବା କରୁଥାନ୍ତି, ତେବେ ଆଗ ପରି ନୁହେଁ । ଅଳ୍ପ ସମୟ ପାଇଁ ଯିବା, ଆସିବା, ବସିବା, ଗପ କରିବା ସବୁ ଚାଲିଥାଏ । ଦିନେ ମୃଣାଳ ଗୋଟାଏ ପ୍ରସ୍ତାବ ଉଠେଇଲା-ଚାଲ ଥରେ କଲିକତା ବୁଲି ଆସିବା । ଏଣୁ ଆମେ ତିନିହେଁ କଲିକତା ଯିବା ପାଇଁ ଖର୍ଚ୍ଚ କଥା ପଡ଼ିଲା, ଟଙ୍କାତ ବହୁତ ଦରକାର । ମୃଣାଳ କହିଲା-ତୁ ଆଉ ପ୍ରିୟ ଯେତିକି ଟଙ୍କା ଦବାର ଦିଅ, ବାକି ସବୁ ଖର୍ଚ୍ଚ ମୁଁ କରିବି ।

ମୁଁ ଆଗରୁ କହିଛି-ମୃଣାଳ ଭାରି ମନସ୍ୱୀ, ଉଚ୍ଚମିଜାଜୀ, ଭାରି ଖର୍ଚ୍ଚୀ, ତା'ର ଆଉ ଗୋଟାଏ ଇଚ୍ଛା, ଲୋକଙ୍କୁ ଖୋଇବ, ଦେଖେଇବ, ବୁଲେଇବ । ଏଣୁ ଆମକୁ, ବିଶେଷତଃ ମୋତେ କଲିକତା ବୁଲେଇ ଦେଖେଇବା ଏକାନ୍ତ ଇଚ୍ଛା । କାରଣ, ମୃଣାଳ ତ କଲିକତାର ଅଧିବାସୀ କହିଲେ ଚଳେ, ତା'ର ବନ୍ଧୁ ବାନ୍ଧବ ସିଆଡ଼େ ବେଶି । ଏଣୁ କଲିକତା ସେ ବହୁବାର ଦେଖିଛି । ଆଉ ପ୍ରିୟ, ସେ ମଧ୍ୟ ଗୋଟାଏ କି ଟ୍ରେନିଂରେ ଯାଇ କଲିକତା, ପାଟନା ଇତ୍ୟାଦି ବୁଲି ଆସିଛନ୍ତି । କେବଳ ମୁଁ କିଛି ଦେଖି ନାହିଁ । ଯାଜପୁରରେ ମାମୁଁ ଘରକୁ ଗଲାବେଳେ ଯାଜପୁର ରୋଡ଼ ଷ୍ଟେସନ୍ ପର୍ଯ୍ୟନ୍ତ ଯାଇଛି, ତାଠୁଁ କଲିକତା ଲାଇନ୍‌ରେ ଆଉ ବେଶି ବାଟ ଟ୍ରେନ୍‌ରେ ଯାଇନାହିଁ । ଏଣୁ ମୋତେ ସାଙ୍ଗରେ ନେଇ କଲିକତା ବୁଲେଇ ଦେଖେଇବା ମୃଣାଳର ଏକାନ୍ତ ଇଚ୍ଛା । ଏଣୁ ସେ, ମୁଁ ତ ଯିବୁ, ଆଉ ପ୍ରିୟ କାହିଁକି ବା ନ ଯିବ ? ଆମେ ତିନିହେଁ ଯେତେବେଳେ ସାଙ୍ଗ, ଏକ ସାଙ୍ଗରେ ତିନି ଜଣ ଗଲେ, ଆମୋଦପ୍ରମୋଦ ବେଶି ହେବ ।

ତା'ପରେ ଆଉ ଗୋଟାଏ କଥାରେ ମୁଁ ପଡ଼େଇଲି । ତା'ର କାରଣ ହେଲା, ବାବା ମୋତେ କଲିକତା ଯିବା ପାଇଁ ଛାଡ଼ିବାକୁ ରାଜି ହେବେ କି ନା ? ଏକେ ତ ଟଙ୍କା କିଛି ସାଙ୍ଗରେ ନବାକୁ ହବ । ତା'ପରେ ଆମେ ତିନିଟା ଟୋକା କଲିକତା ଯିବୁ, ବାବା କେଭେ ଏତେ ଦୂରକୁ ଯିବା ପାଇଁ ଛାଡ଼ି ନାହାଁନ୍ତି । କ'ଣ କରିବେ ? କ'ଣ କହିବେ ? ମୋର ସନ୍ଦେହ ହଉଥାଏ । ଏଣୁ ମୁଁ ମୃଣାଳକୁ କହିଲି, ବାବା ଛାଡୁଛନ୍ତି କି ନା ମୁଁ ଜାଣି ପାରୁନି । ମୃଣାଳ କହିଲା, ତୁ କହ ବାବାଙ୍କୁ, କ'ଣ କହୁଛନ୍ତି, ତା'ପରେ ନ ହେଲେ ଆମେ କହିବୁ । ଟଙ୍କା ଯଦି ଦେବେ ତ ଭଲ, ନଚେତ୍ ମୁଁ ସବୁ ଖର୍ଚ୍ଚ କରିବି । ତୁ କହ ଥରେ ବାବାଙ୍କୁ ।

ସେତେବେଳକୁ ବାବା ପୁରୀରୁ ଚାକିରି ଛାଡ଼ି ଆସି ଘରେ ବସିଲେଣି । କେବଳ ପେନ୍‌ସନ୍‌ରେ ଚଳିବା କଥା । ମୁଁ ଭାବିଲି, କେମିତି କଲିକତା ଯିବା ପାଇଁ କହିବି ? ଟଙ୍କା ମାଗିବି ? ସେତେବେଳକୁ ମଧ୍ୟ ମୁଁ I.Sc.ରେ ପାଠପଢ଼ାରେ ତଳେଇ ଗଲିଣି । ମୋର ଆଦୌ ମନ ହଉ ନଥାଏ ବାବାଙ୍କୁ ଏକଥା କହିବା ପାଇଁ, ତଥାପି ମୃଣାଳର

କଥା ଶୁଣି ମନ ମାତି ଉଠୁଥାଏ-କଲିକତା ଯିବି, କଲିକତା ଦେଖିବି ।

ଦିନେ ଅତି ଶଙ୍କିତ ଭାବରେ ବାବାଙ୍କୁ କଲିକତା ଯିବା କଥା କହିଲି । ମୋର ସୌଭାଗ୍ୟକୁ ବାବା କିଛି ବାଧା ନ ଦେଇ କହିଲେ, ହଉ ଯା' ।

ବାବାଙ୍କୁ ଆଗରୁ ସବୁ କଥା କହିଥିଲି ଯେ ମୃଣାଳ, ପ୍ରିୟ ଓ ମୁଁ ତିନିହେଁ ଯିବୁ । ମୁଁ ଅଳ୍ପ କିଛି ଟଙ୍କା ନେଲେ ଚଳିବ, ଆଉ ସବୁ ଖର୍ଚ୍ଚ ମୃଣାଳ କରିବ । ବାବା ଯିବା ଆସିବା ଖର୍ଚ୍ଚ ଦବା ପାଇଁ ମଧ ରାଜି ହେଲେ । ମୁଁ ବାବାଙ୍କ ମନୋଭାବ ଦେଖି ବିଶେଷ ଆଶ୍ଚର୍ଯ୍ୟ ହେଲି । ବାବା ହଠାତ୍ ମୋର କଲିକତା ଯିବା କଥାରେ କେମିତି ରାଜି ହେଲେ ? ପୁଣି ଟଙ୍କା ମଧ ଦେବେ । ମୁଁ ବାବାଙ୍କର ଗୋଟାଏ କଥା ଲକ୍ଷ୍ୟ କଲି । ମୁଁ ଯେତେବେଳେ ପାଠ ଛାଡ଼ି କେତେ ଦିନ ବୁଲି ପୁଣି matric ପଢ଼ି ପାସ୍ କଲି, ସେହି ଦିନଠୁ ମୁଁ ଦେଖିଲି, ମୁଁ ଯାହା କହିଲେ ବାବା ସେଥିରେ ରାଜି ହେଇ ଯା'ନ୍ତି । ଯା ହଉ, ବାବା ମୋତେ ମାତ୍ର ୧୩ ଟଙ୍କା ଦେଲେ । କଲିକତା ଯିବା ଆସିବାର ଖର୍ଚ୍ଚ କେବଳ । ସେତେବେଳେ କଲିକତାକୁ ପୁରୀ-ହାବଡ଼ା ଏକ୍ସପ୍ରେସ୍‌ରେ ଯିବା ପାଇଁ ତୃତୀୟ ଶ୍ରେଣୀର ଭଡ଼ା ଥିଲା ୬ ଟଙ୍କା କେତେ ଅଣା ମାତ୍ର ।

ଦିନେ ସନ୍ଧ୍ୟା ପରେ ମୁଁ, ମୃଣାଳ, ପ୍ରିୟ ଏକଜୁଟ ହେଇ ପୁରୀ-ହାବଡ଼ା ଏକ୍ସପ୍ରେସ୍‌ରେ କଲିକତାକୁ ବାହାରି ପଡ଼ିଲୁ । ଯା'ହେଉ ଆମେ ତିନିହେଁ କଲିକତା ଅଭିମୁଖେ ଏକ୍ସପ୍ରେସ୍‌ର ତୃତୀୟ ଶ୍ରେଣୀରେ ବସି ବାହାରିଲୁ । ଏଇ ହେଲା ମୋର ପ୍ରଥମ ଏକା ଏତେ ଦୂର ଜାଗାକୁ ଯିବା, ବଡ଼ ଆନନ୍ଦ ଲାଗୁଥାଏ । ସେଥିରେ ପୁଣି ତିନି ସାଙ୍ଗ ଏକାଠି ହେଇ ଯାଉଛୁ । ଆହୁରି ଆନନ୍ଦ, ଯେଉଁ ଯେଉଁ ଷ୍ଟେସନ୍‌ରେ ଏକ୍ସପ୍ରେସ ଠିଆ ହଉଥାଏ, ମୁଁ ଟ୍ରେନ୍ ବାହାରକୁ ମୁହଁ କାଢ଼ି ଦେଖୁଥାଏ । କେତେକ ସମୟ ପରେ ଆମ ତିନିଙ୍କୁ ଢ଼ୋଳ ମାଡ଼ିଲା । ତିନିହେଁ ବସି ଢ଼ୋଳେଇଲୁ । ମୃଣାଳ ଖର୍ଚ୍ଚ କରିବା ପାଇଁ ବିଡ଼ାଏ ନୋଟ୍ ସାଙ୍ଗରେ ନେଇଥାଏ । ଯେତେବେଳେ ଖଡ଼ଗପୁର ଷ୍ଟେସନ୍‌ରେ ଗାଡ଼ି ପହଞ୍ଚିଲା, ଆମମାନଙ୍କର ଢ଼ୋଳେଇବା ଛାଡ଼ିଗଲା । ମୁଁ ଟ୍ରେନ ଭିତରୁ ମୁହଁ କାଢ଼ି ଖଡ଼ଗପୁର ଷ୍ଟେସନକୁ ଦେଖିଲି, କି ବିରାଟ ! ଏ ପର୍ଯ୍ୟନ୍ତ ଏଡ଼େ ବଡ଼ ଷ୍ଟେସନ୍ ଦେଖି ନଥିଲି । ମୃଣାଳ, ପ୍ରିୟକୁ ନୂଆ ନୁହେଁ । ସେମାନେ ଆଗରୁ ଦେଖିଥିଲେ । ଆମ କୋଠରୀରେ ଲୋକ ପଶି ଆସିଲେ । ଏଇଠି ମୃଣାଳ ଗୋଟାଏ ନୂଆ ଫିସାଦ ଆରମ୍ଭ କଲା । ଡ଼ିସେମ୍ବର ମାସ, ପ୍ରବଳ ଶୀତ । ମୃଣାଳ ଗୋଟାଏ ନେଳି ରଙ୍ଗର ଘୋଡ଼ି ହବା ଚାଦର ସାଙ୍ଗରେ ନେଇଥିଲା । ସେ ଚାଦର ଦେଖିବାକୁ ଖଣ୍ଡେ ଶାଢ଼ି ପରି, ମୃଣାଳ ତାକୁ ମୁଣ୍ଡରେ ଉରଣା ଭଳି ପକେଇ ସାରା ଦେହ ଘୋଡ଼ିଘାଡ଼ି ହେଇ ଗୋଟିଏ ନବବଧୂ ଭଳି ସାଜି ବସିଲା । ଉଦ୍ଦେଶ୍ୟ ହେଲା-ନବାଗତ ଯାତ୍ରୀମାନେ "ଜନାନା ଆଦମୀବୈଠା ହେ" ଭାବି, କେହି ଆଉ ତା'ପାଖରେ ବସିବେ ନାହିଁ । ଏଣୁ ସେ ବେଶ୍ ଫାଙ୍କାରେ ବସି ପାରିବ । ମୃଣାଳ ତ ସାଜି ବସିଲା, ମୁଁ ଏବଂ ପ୍ରିୟ ଉଭୟେ ଯେମିତି ତା'ର ଦି'ଟା ଦିଅର କି ଆଉ କେହି ଆତ୍ମୀୟସ୍ୱଜନ । ସେହି ଲଜ୍ଜାଶୀଳା ବଧୂଟିକି ସାଙ୍ଗରେ ନେଇ କଲିକତାରେ କେଉଁଠି ପହଁଚେଇ ଦେଇ ଆସିବାକୁ ଯାଉଛୁ । ଆମକୁ ହସ ମାଡୁଥାଏ । ଯାତ୍ରୀମାନେ ଯେ ପଶି ଆସୁଥାନ୍ତି, ସେମାନେ ମଧ ଜନାନା ଆଦମୀ ପାଖରେ ନ ବସି ଅନ୍ୟତ୍ର ବସୁଥାନ୍ତି । ରାତି ପାହିବା ପର୍ଯ୍ୟନ୍ତ "ଶାମକୁ ନାରୀ ବେଶ" କଲା ଭଳି ମୃଣାଳକୁ ନବବଧୂ ରୂପେ ପାଇ, କଲିକତାକୁ ଯିବା ବାଟ ବେଶ୍ ଆନନ୍ଦରେ କଟିଗଲା । ରାତି ଅନିଦ୍ରା ବେଶି କିଛି ଜଣା ପଡୁ ନଥାଏ । ରାତି ପାହିଲା, ପୌଷ ପ୍ରଭାତ, ବଙ୍ଗ ଦେଶରେ ପ୍ରଥମ ପ୍ରଭାତ । ମୁଁ ତ ଓଡ଼ିଶାର ପିଲା, ପ୍ରାକୃତିକ ସୌନ୍ଦର୍ଯ୍ୟର ଗନ୍ତାଘର ଓଡ଼ିଶାରେ ମୋର ଜନ୍ମ । ଓଡ଼ିଶାରେ ବଢ଼ି ସେଦିନ ପ୍ରଥମେ ବଙ୍ଗଦେଶରେ ପ୍ରଥମ ସୂର୍ଯ୍ୟୋଦୟର ଶୋଭା ଦେଖିବି ବୋଲି ଯେତେ ଚେଷ୍ଟା କଲି, ହେଲା ନାହିଁ । ବଙ୍ଗ ଜନନୀ ଲଜ୍ଜାରେ ଯେମିତି କୁହେଳିକାର ଅବଗୁଣ୍ଠନରେ ମୁହଁ ଢ଼ାଙ୍କି ରଖିଥିଲେ, କିମ୍ବା ତାଙ୍କର ପ୍ରକୃତ ·ନିଦ୍ରା ଭଙ୍ଗ ହେଇ ନଥିଲା, ଅଳସ ଛାଡ଼ି ନଥିଲା, ପ୍ରବଳ କୁହୁଡ଼ି ଯୋଗୁଁ ଭଲ କରି ସୂର୍ଯ୍ୟୋଦୟର ଶୋଭା ଉପଭୋଗ କରିପାରିଲି ନାହିଁ । ତଥାପି ବଙ୍ଗଦେଶରେ ପ୍ରବେଶ କରି ଯାହା ଦେଖିଲି-ଚାରିଆଡ଼େ ଧାନକ୍ଷେତ, ଦିଗନ୍ତବିସ୍ତାରୀ ଧାନକ୍ଷେତ, ପାହାଡ଼ ପର୍ବତର

ସରା ନାହିଁ, ସୁନ୍ଦର, ଅତି ସୁନ୍ଦର! ଷ୍ଟେସନ୍ ଗୁରା ଗୋଟାକ ପରେ ଗୋଟାଏ ଚାଲି ଯାଉଥାଏ। ଏ ଷ୍ଟେସନଗୁରାକରେ ଏକ୍ସପ୍ରେସ୍ ଗାଡ଼ି ଠିଆ ହୁଏନା। ତା'ପରେ ପଡ଼ିଲା ବଡ଼ ବଡ଼ ଷ୍ଟେସନ–ଲିଲୁଆ, ସନ୍ତରାଗାଛି, ସନ୍ତରାଗାଛିଠୁଁ ସବୁ ଯାତ୍ରୀଙ୍କ ପାଖରୁ ଟିକେଟ୍ ସବୁ ରେଲ କର୍ମଚାରୀ ଆସି ନେଇଗଲେ। ଗାଡ଼ି ଶେଷରେ ଯାଇ ହାବଡ଼ା ଷ୍ଟେସନରେ ପହଞ୍ଚିଲା। ମୁଁ ତ ଖୋର୍ଦ୍ଧାରୋଡ଼, କଟକ ଷ୍ଟେସନକୁ ଦେଖି ମନେ ମନେ କେଡ଼େ ବଡ଼ ବୋଲି ଭାବୁଥିଲି, ହାବଡ଼ା ଷ୍ଟେସନ ତ ତାଙ୍କ ଜେଜେ ପରି କି ବିରାଟ! କି ଜନଗହଳି! ମୁଁ ତ ଘାବରା ହୋଇଗଲି। ମୃଣାଳ, ପ୍ରିୟକୁ ଏସବୁ ନୂଆ ନୁହେଁ। ମୋତେ ସବୁ ନୂଆ, ଚମତ୍କାର, ବିରାଟ, ଭୟଙ୍କର, ସୁନ୍ଦର! କ'ଣ ଦେଖିବି? କାହାକୁ ଦେଖିବି? ଏଣେ ଅନେଇଲାବେଳକୁ ଅନ୍ୟ ଆଡ଼େ କେତେ ଦେଖିବା ଜିନିଷ ଛାଡ଼ି ଗଲିଣି। ମୃଣାଳକୁ ଅନୁସରଣ କରି କରି ଚାଲିଥାଏ, କାରଣ ମୃଣାଳ ଆମ ଭିତରେ ବଡ଼ ପଣ୍ଡା ଭଳି ସବୁ ଦେଖେଇ ଦେଖେଇ ନଉଥାଏ। ଗୋଟିଏ ଜଳଖିଆ ଦୋକାନରେ ମୃଣାଳ ଆମକୁ ନେଇ ଜଳଖିଆ ଖୋଇଲା। ୧୯୩୧ ମସିହାର ଘଟଣା, ଜଣକେ ଦଶ ଅଣାର କରି ଜଳଖିଆ ଖାଇଲୁ। ପେଟରେ କୁଆଡ଼େ ସେ ଜଳଖିଆ ପଡ଼ିଲା କିଛି ଜାଣି ପାରିଲି ନାହିଁ। ଜଳଖିଆ ଯାହା ଖାଇଲି, ତା'ଠୁଁ ବେଶି ସୁଆଦ ଜଣାଗଲା ଦୋକାନୀର ବ୍ୟବହାର, କଥାବାର୍ତ୍ତା– 'ଆସୁନ', 'ବସୁନ' କହି ଭଦ୍ରଲୋକ ଆମମାନଙ୍କୁ ଏକବାରେ ନିଜ ଲୋକ ଭଳି ବ୍ୟବହାର କଲେ କିନ୍ତୁ ପେଟ ପୂରିଲା ନାହିଁ। ଯାହଉ, ସେଠୁଁ ବାହାରିଲା ପରେ ମୃଣାଳ ଆମକୁ ରତନ ସର୍କାର ଗାର୍ଡେନ ଷ୍ଟ୍ରୀଟରେ ନେଇ ତା'ର ଏକ ପିଇସୀପୁଅ ଭାଇଙ୍କ ବସାରେ ପହଞ୍ଚେଇଲା।

ମୃଣାଳର ପିଇସୀପୁଅ ଭାଇଙ୍କର ପାଞ୍ଚ ତାଲା କୋଠା, ସବୁ ଭଡ଼ା ଲାଗିଛି। କେବଳ ଦି'ବଖରା ଘରେ ସେ ଥା'ନ୍ତି। ଆମେ ଯାଇ ପହଞ୍ଚିବାରେ ଭଦ୍ରଲୋକ ଭାରି ଖୁସି ହେଇଗଲେ। ଆମେ ରହିବାର ବ୍ୟବସ୍ଥା କରିଦେଲେ, ଆମେ ତାଙ୍କର ଶେଷ ତଳ ମହଲାକୁ ଯାଇ, ଆମର ନିତ୍ୟକର୍ମ ଶେଷ କଲୁ। ତଳ ମହଲାରେ ସୂର୍ଯ୍ୟକିରଣ ପଡ଼ୁ ନାହିଁ। କି ଥଣ୍ଡା!! ସେଇଠି ଗାଧେଇଲୁ। ଚାରିଆଡ଼େ ଭଡ଼ାଟିଆ ଖୁନ୍ଦି ହେଇ ରହିଥାନ୍ତି। ଆମେ ନିତ୍ୟକର୍ମ ସାରି ଆସିଲାବେଳକୁ, ଭଦ୍ରଲୋକ ଆମକୁ ଜଳଖିଆ ଦେଲେ। ଆମେ ଜଳଖିଆ ଖାଇସାରି ବାହାରିଲୁ ମିନର୍ଭା ଥିଏଟରରେ ଟିକେଟ୍ କିଣିବା ପାଇଁ। ସନ୍ଧ୍ୟା ବେଳର ଅଭିନୟ ପାଇଁ ଅଗ୍ରୀମ ଟିକେଟ ବିକ୍ରି ହଉଥାଏ। ମିନର୍ଭା ଥିଏଟରରେ ଟିକେଟ କିଣିବାକୁ ଯାଇ ତା'ର ପ୍ରବେଶଦ୍ୱାରରେ ପହଞ୍ଚି, ତା'ର ଆଡ଼ମ୍ବର ଦେଖି ମୁଁ ଆଶ୍ଚର୍ଯ୍ୟ ହେଇଗଲି। ମୋତେ ସେଠି ନିଜକୁ ଗାତୁଆ ମୂଷା ପରି ମନେ ହଉଥାଏ। ମୁଁ ଯେ କଟକ ଟାଉନ୍‌ର ମଙ୍ଗଳାବାଗ୍‌ର ପିଲା, ରେଭେନ୍‌ସା କଲେଜର ସାଇନସ୍ ଷ୍ଟୁଡ଼େଣ୍ଟ, ସବୁ ଗର୍ବ, ଦମ୍ଭ, ଅଭିମାନ କ୍ଷଣକେ ଲୀନ ହୋଇଗଲା। ଲଜ୍ଜାରେ ମୋ ମନକଥା ଖୋଲି ମୃଣାଳକୁ କିଛି କହୁ ନଥାଏ। କାରଣ ମୃଣାଳ ମୋତେ ଥଟ୍ଟା କରିବ, ଚାରିଆଡ଼େ କହିବ, ମନକଥା ମନରେ ରଖି, ବାହାରେ ମୃଣାଳ, ପ୍ରିୟ ସହିତ ତାଳ ରଖି ଚାଲିଥାଏ। ମିନର୍ଭା ଥିଏଟର୍‌ରେ ଟିକେଟ୍ କିଣା ସାରିବା ପରେ, ମୃଣାଳ ଆମକୁ କୁଆଡ଼େ କୁଆଡ଼େ ନେଇ ବୁଲେଇଲା। ସେଇଠି ଟ୍ରାମ୍, ଦୋତାଲା ବସ୍ ପ୍ରଥମେ ଦେଖି ଅବାକ୍ ହେଲି। ଗୋଟାଏ ଜାଗାକୁ ଯିବା ପାଇଁ ଟ୍ରାମ୍‌ରେ ଉଠିବାକୁ ହେଲା। ମୁଁ ତ କେଭେ ଟ୍ରାମ୍‌ରେ ଚଢ଼ି ନଥିଲି। ମୁଁ ଭାବିଲି ଟ୍ରାମ୍ ବନ୍ଦ ହେବ, ମୁଁ ଉଠିବି କିନ୍ତୁ ତା'ନୁହେଁ। ଟ୍ରାମ୍ କେବଳ ତା'ର speed କିଛି କମେଇଦିଏ, ସେଇଥିରେ ଲୋକେ ଉଠିଯାନ୍ତି। ଟ୍ରାମ୍ speed କମେଇ ଦେଲା। ମୃଣାଳ, ପ୍ରିୟ ଧଡ଼୍‌ଧାଡ଼୍ ଉଠି ଗଲେ। ମୁଁ ଉଠିଲା ବେଳକୁ ଟ୍ରାମ୍ ତା'ର ପୂର୍ବ speedରେ ଚାଲିବାକୁ ଆରମ୍ଭ କଲା ବେଳକୁ ମୁଁ ଉଠିଗଲି। କିନ୍ତୁ ଗୋଟାଏ ଗୋଡ଼ ରଖି, ଆଉ ଗୋଟାଏ ଗୋଡ଼ ରଖି ପାରୁନି। ଏଣେ ତା'ର ଗୋଟାଏ ବାଡ଼ାକୁ ଧରିଛି। ମୁଁ ପଡ଼ି ଯାଇଥାନ୍ତି, ହଠାତ୍ ମୋତେ ଟ୍ରାମ୍ କର୍ମଚାରୀ ଜଣେ ଅଣ୍ଟାରୁ ଧରି ନେଲା, ଏଣୁ ମୁଁ ପଡ଼ିବାରୁ ରକ୍ଷା ପାଇ ଟ୍ରାମ୍ ଭିତରକୁ ପଶିଗଲି। କିନ୍ତୁ ଡ଼ାହାଣ ହାତର ନେଡ଼ି ମକଚି ହେଇଗଲା। ବଡ଼ ଯନ୍ତ୍ରଣା ହେଲା, ମୁଁ ଟ୍ରାମ୍ ଭିତରେ ମୃଣାଳ ଉପରେ ବିଶେଷ ବିରକ୍ତ ହେଲି। ମୃଣାଳ ହସିଲା। ମୁଁ ହାତର ଯନ୍ତ୍ରଣାରେ ରାଗିଯାଇ ତାକୁ ମାରିବାକୁ ମନ

ହେଲା । କିନ୍ତୁ ମାରିବି କେମିତି ? ଡ଼ାଆଁଣ ହାତଟି ଜଖମ ହେଲା । ଯାହଉ, ଦିନ ବାରଟା ଯାଏ କଲିକତା ଟାଉନ୍‌ରେ ବୁଲି ବୁଲି ପୁଣି ମୃଣାଳର ପିଇସୀପୁଅ ଭାଇଙ୍କ ଘରକୁ ଫେରିଲୁ । ଭଦ୍ରଲୋକ ଆମମାନଙ୍କ ପାଇଁ ଖାଇବାର ବ୍ୟବସ୍ଥା କରିଥିଲେ । ତାଙ୍କର କି ଆଦର ଅଭ୍ୟର୍ଥନା । ମୁଁ, ମୃଣାଳ, ପ୍ରିୟ ତିନିହେଁ ହାତ ଧୋଇ ଖାଇବାକୁ ଗଲାବେଳକୁ ମୋ ମୁଣ୍ଡରେ ଢାଏ କରି ଗୋଟାଏ ଖିଲାଣ ବାଜିଲା । ମୁଣ୍ଡର ଯନ୍ତଣାରେ କଲ୍‌ବଲ୍ ହୋଇଗଲି । ଏଣେ ହାତର ଯନ୍ତଣା, ତେଣେ ମୁଣ୍ଡର ଯନ୍ତଣା । ମନେ ମନେ ଭାବିଲି କାହିଁକି ଆଇଲି ଏ ସୁଦୂର କଲିକତାକୁ ? ବାହାରେ ଯା'ଯାନବାହନ, ଜନସମୁଦ୍ର ଦେଖି ଆସିଲି, ସେଥିରେ ମୋର ଶ୍ୱାସରୋଧ ହୋଇ ଯାଉଥାଏ । ଏଣେ ହାତ ଜଖମକୁ, ତେଣେ ଘରେ ନ ପଶୁଣୁ ବାଜିଲା ଚାଳ । ମୁଣ୍ଡରେ ଆଘାତ, ମନ ଭାରି ବିରକ୍ତ ଲାଗିଲା, ଭାବୁଥାଏ-ଅଭିକା କଟକ ଫେରି ଯାନ୍ତି କି । କିନ୍ତୁ ଲଜ୍ଜାରେ କିଛି କହି ପାରୁ ନଥାଏ । ଯା'ହଉ, ଖାଇ ବସିଲି, ଭଦ୍ରଲୋକ ଆମମାନଙ୍କ ପାଇଁ ବେଶ୍ ଖାଇବାର ଆୟୋଜନ କରିଥାନ୍ତି । ସରୁ ଅନ୍ନ, ତା'ସହିତରେ ଅନେକ ପ୍ରକାରର ତରକାରୀ । ମୁଁ ତ ଦେଖି ଖୁସି ହୋଇଗଲି । କାରଣ ପେଟ ଭୋକରେ ଜଳୁଥାଏ । ସକାଳେ ଯା ଜଳଖିଆ କରିଥିଲି, ସେ କିଛି ନୁହେଁ । ମୁଁ ପୁଣି ମୃଣାଳ, ପ୍ରିୟ ତୁଳନାରେ ବେଶି ଖାଇଲାବାଲା । ମୃଣାଳ, ପ୍ରିୟ ଉଭୟେ ଯା ଖାନ୍ତି, ମୁଁ ତାଠୁ ଦୁଇଗୁଣ ଅଧିକା ଖାଏ । ଯା'ହଉ, ବଡ଼ ଆଗ୍ରହରେ ବସି ପଡ଼ିଲି ଖାଇବା ପାଇଁ । କିନ୍ତୁ କ'ଣ ହେବ ? ଭାତଗୁଣ୍ଡା ଯେମିତି ପାଟିରେ ଦେଇଛି, ମନ ଖରାପ ହୋଇଗଲା, ଖାଇବି କ'ଣ ? ଡାଲି, ତରକାରୀ ସବୁ ପାଟିକି ଭଲ ଲାଗିଲା, କିନ୍ତୁ ଭାତ ଗୁଣ୍ଡାକ ପାଟିକି ଲାଗିଲା-ଯେମିତି କାଗଜ ପୁଳାଏ ପାଟିରେ ପୂରେଇ ଚୋବୋଉଛି । କେମିତି ଖାଇବି ? ପେଟରେ ପେଟେ ଭୋକ, କିନ୍ତୁ ଖାଇ ପାରୁନି । ମନେ ମନେ ଭାବିଲି-ଓଡ଼ିଶାରେ ଆମେ ଯେଉଁ ଚାଉଳ ଖାଉ, ସେ'ତ କେଡ଼େ ସୁଆଦ ଲାଗେ, ଏଠି ଚାଉଳର ସୁଆଦ ଏମିତି କାହିଁକି ? ପୁଣି ମୋତେ ଯେତେ ଭାତ ଦିଆ ହୋଇଥିଲା, ମୁଁ ତା'ର ଦଶଗୁଣ ଖାଇବାର ଲୋକ । ଏଣେ ଡ଼ାଆଁଣ ହାତ ନେଡ଼ି ଜଖମ, ମୁଣ୍ଡ ଦରଜ, ତା'ପରେ ଅସହ୍ୟ ଭୋକ, ମନ ଭାରି ବିରକ୍ତ ଲାଗିଲା । ଖାଲି ମନ ହଉଥାଏ-କେମିତି ପଳେଇ ଆସିବି । ଯା'ହଉ, ମୁହଁରେ ଲାଜ, ପେଟରେ ଭୋକ, ଇମିତି ଅବସ୍ଥାରେ ଯେତିକି ଖାଇ ପାରିଲି, ସେତିକିରେ ଉଠିଲି । ମୃଣାଳ, ପ୍ରିୟକୁ କିଛି କହିଲି ନାହିଁ । ମୃଣାଳ, ପ୍ରିୟ, ମୁଁ ତିନିହେଁ ଖାଇସାରି କିଛି ସମୟ ଶୋଇଲୁ । କିନ୍ତୁ ଶୋଇ ପାରିଲି ନାହିଁ । ଗତ ରାତ୍ରୀ ଟ୍ରେନରେ ଆସିବା ଯୋଗୁଁ ରାତିସାରା ଅନିଦ୍ରା, ଏଣେ କଲିକତାରେ ପହଞ୍ଚି, ବୁଲାବୁଲି କରି କ୍ଳାନ୍ତ ହୋଇ ପଡ଼ିଥାଏ, ନିଦରେ ଟଳମଳ ହଉଥାଏ । କିନ୍ତୁ ହାତର ଯନ୍ତଣା, ପେଟରେ ଭୋକ ଯୋଗୁଁ ଭଲ କରି ଶୋଇ ପାରୁ ନଥାଏ । ଯା'ହଉ, କିଛି ସମୟ ବିଶ୍ରାମ ନେଲା ପରେ ସନ୍ଧ୍ୟା ପୂର୍ବରୁ କଲିକତାର ଜନସମୁଦ୍ର ଭିତରେ ଢ଼େଉ ଭାଙ୍ଗିବାକୁ ପୁଣି ତିନି ଭେଣ୍ଡିଆ ବାହାରି ପଡ଼ିଲୁ । ସକାଳେ ତ ମିନର୍ଭା ଥିଏଟର୍‌ରେ ସନ୍ଧ୍ୟା ସୋ ପାଇଁ ଟିକେଟ କିଣା ହୋଇ ସାରିଥାଏ । ଗଲେ ଦେଖିବା । କଲିକତା ସହରର ଜନସମୁଦ୍ରରେ ତିନିଚାରିଟା ଢ଼େଉ ଭାଙ୍ଗି ଅଣନିଃଶ୍ୱାସୀ ହୋଇ ଯାଇ ପହଞ୍ଚିଗଲୁ ମିନର୍ଭା ଥିଏଟର୍‌ରେ । ମୃଣାଳ, ପ୍ରିୟକୁ କ'ଣ ଲାଗୁଥାଏ କହିପାରୁନି । ମୁଁ କିନ୍ତୁ ଏ ଜନସମୁଦ୍ରରେ ଉବେଇଟୁବେଇ ହୋଇଗଲି । ସେଦିନ ମିନର୍ଭା ଥିଏଟର୍‌ରେ ଅଭିନୀତ ହବାରଥାଏ ନାଟକ-ବାସୁକୀ । ମହାଭାରତ ବର୍ଣ୍ଣିତ ରାଜା ଜନ୍ମେଜୟଙ୍କର ସର୍ପଯଜ୍ଞର ଘଟଣା । ଅଭିନୟର ସମୟ ହବା ବେଳକୁ ଆମେ ତିନିହେଁ ଯାଇ ପ୍ରେକ୍ଷାଳୟରେ ଯେ ଯା'ର ଜାଗା ନେଇ ବସିଗଲୁ । ମଞ୍ଚ, ପ୍ରେକ୍ଷାଳୟ, ଦର୍ଶକମଣ୍ଡଳି ଦେଖି ତ ମୁଁ ଅବାକ୍ । କି ବିରାଟ ରଙ୍ଗମଞ୍ଚ ! କି ବିରାଟ ପ୍ରେକ୍ଷାଳୟ ! ଏଥି ପୂର୍ବେ ମୁଁ ତ ଏସବୁ ଦେଖି ନଥିଲି । ଗାଁରେ ଦଶହରାବେଳେ ଯେ କେତେବର୍ଷ ଥିଏଟର୍ ହୋଇଥିଲା, ସେ ରଙ୍ଗମଞ୍ଚ ଦେଖିଥିଲି । କଟକରେ ରେଭେନ୍‌ସା କଲେଜ ରଙ୍ଗମଞ୍ଚ, ମେଡ଼ିକାଲ ସ୍କୁଲର ରଙ୍ଗମଞ୍ଚ, ବୀଣାପାଣି କ୍ଲବ୍‌ର ରଙ୍ଗମଞ୍ଚ, ଇଞ୍ଜିନିୟରିଂ ସ୍କୁଲର ରଙ୍ଗମଞ୍ଚ ଆଉ କାଜି ବଜାରର ବାସନ୍ତୀ ପେଣ୍ଡାଲର ରଙ୍ଗମଞ୍ଚ ଆଉ ଖଟ ଉପରେ ମୋ ଦ୍ୱାରା ନିର୍ମିତ ରଙ୍ଗମଞ୍ଚ, ଏତିକି ମାତ୍ର ଦେଖିଥିଲି । ଆଜି ମିନର୍ଭା ଥିଏଟର୍‌ର ରଙ୍ଗମଞ୍ଚ ଦେଖି ଭାବିଲି-ଗୋଟାଏ ଗୁହାଳ ସହିତରେ

ଗୋଟାଏ ବଡ଼ପ୍ରାସାଦକୁ ତୁଳନା କଲେ ଯା, ଏ ସେଇୟା। ଅଭିନୟ ଆରମ୍ଭ ହବା ପୂର୍ବରୁ ମଞ୍ଚ ସମ୍ମୁଖରେ ବସିଥିବା concert party ବାଦ୍ୟ ଆରମ୍ଭ କଲେ। ମୁଁ ଭାବିଲି ତାଙ୍କର ଐକତାନ ବାଦନରେ ମୁଁ ଯେତିକି ଦାମ୍ ଦେଇ ଅଭିନୟ ଦେଖିବା ପାଇଁ ଟିକେଟ କିଣିଥିଲି, ସେ ଟଙ୍କା ଆଦାୟ ହେଇଗଲା। ଆଉ ଅଭିନୟ ଦେଖିବି କ'ଣ? କିଛି ସମୟ ପରେ ଅଭିନୟ ଆରମ୍ଭ ହେଲା, କି ଚମତ୍କାର! ଗଛ, ପକ୍ଷୀ, ମେଘ, ଆକାଶରୁ ବାସୁକୀର ମେଘ ଭିତର ଦେଇ ଅବତରଣ, ସର୍ପଯଜ୍ଞ, ଅଭିନେତାମାନଙ୍କର ଉଚ୍ଚକୋଟୀର ଅଭିନୟ, ସେଇଠି ଦେଖିଲି ପ୍ରଥମେ ମଞ୍ଚ ଉପରେ ଅହିନ୍ଦ୍ର ଚୌଧୁରୀ ଏବଂ ଯୁଥିକା ରାୟଙ୍କ ଅଭିନୟ। ଏଥିପୂର୍ବରୁ କେବଳ ନିର୍ବାକ୍ ଚଳଚିତ୍ରରେ ଏମାନଙ୍କର ଅଭିନୟ ଦେଖିଥିଲି। ମଞ୍ଚରେ କି ଆଲୋକ ସଜ୍ଜା! ଦିନ ପ୍ରକୃତ ଦିନ ପରି ମନେ ହେଲା, ସନ୍ଧ୍ୟା, ସକାଳ ସବୁ ବାସ୍ତବ ପରି ମନେ ହେଲା। ସେତେବେଳେ କଟକରେ ମେଡ଼ିକାଲ ସ୍କୁଲର drama ସବୁଠାରୁ ସବୁଦିଗରେ ଉଚ୍ଚସ୍ଥାନ ଅଧିକାର କରିଥାଏ, କିନ୍ତୁ ଏ କ'ଣ? ଏଠିତ ସବୁ ବାସ୍ତବ ବୋଲି ମନେ ହଉଛି, ମୁଁ କିନ୍ତୁ ମଝିରେ ମଝିରେ ଢୋଳେଇ ପଡୁଥାଏ। ଏଣେ ହାତର ଯନ୍ତ୍ରଣାରେ ବ୍ୟତିବ୍ୟସ୍ତ ହଉଥାଏ ତଥାପି ଆନନ୍ଦର ବାକି ନଥାଏ।

ସେହି କଲିକତା ନଗରୀରେ ପ୍ରଥମେ ଦେଖିଲି- ସବାକ୍ ଚଳଚ୍ଚିତ୍ର, ଔପନ୍ୟାସିକ ଶରତଚନ୍ଦ୍ରଙ୍କ ଷୋଡ଼ଶୀ ବହିର ଅବଲମ୍ୱନରେ "ଦେନା, ପାଓ୍ୟାନା" ସବାକ ଚଳଚ୍ଚିତ୍ର। ମୁଁ ତ ଆତ୍ମହରା ହେଇ ପଡ଼ିଲି, ଭାବିଲି- ଲୋକେ ଆଉ ଥିଏଟର୍ ଦେଖିବେ କାହିଁକି? ତଥାପି ଭାବିଲି- ନା, କଲିକତାର ସବାକ୍ ଚିତ୍ର ଯୁଗରେ ମଧ୍ୟ ଲୋକେ ଥିଏଟର୍ ଛାଡ଼ି ପାରିବେ ନାହିଁ। କଲିକତାର ଥିଏଟର୍‌ର ସ୍ୱତନ୍ତ୍ର ଆକର୍ଷଣ ରହିଛି, "ଦେନ, ପାଓ୍ୟାନା" ପରେ ଆଉ ଗୋଟାଏ ସବାକ୍ ଚଳଚ୍ଚିତ୍ର ଦେଖିଲି- "ତୃତୀୟ ପକ୍ଷ"। କି ଚମତ୍କାର! ହାସ୍ୟରସମୟ ସବାକ୍ ଚଳଚ୍ଚିତ୍ର! ହସି ହସି ଥକା ହେଇ ପଡ଼ିଲି, ଆଉ ହସି ପାରୁନି, ତଥାପି ହସିବାକୁ ବାଧ୍ୟ ହଉଛି। "ଦେନା, ପାଓ୍ୟାନା" ଆଉ "ତୃତୀୟ ପକ୍ଷ", ଏଇ ଦୁଇଟି ସବାକ୍ ଚଳଚ୍ଚିତ୍ର ଦେଖିବା ମୋର ପ୍ରଥମ।

କଲିକତା ରହଣି ଭିତରେ ଆଉ ଗୋଟିଏ ଭଲ ଜିନିଷ ଦେଖିଲି: ରବୀନ୍ଦ୍ର ଜୟନ୍ତୀ। କଲିକତା town hall ରେ ଅନୁଷ୍ଠିତ ହଉଥାଏ ରବୀନ୍ଦ୍ର ଜୟନ୍ତୀ। ଦେଖି ଭାବିଲି- କଲିକତାକୁ ବୁଲିବାକୁ ଆସିବା ମୋର ସାର୍ଥକ ହେଇଛି। ରବୀନ୍ଦ୍ରନାଥଙ୍କ କେତେ ଖଣ୍ଡ ବହି ପଢ଼ିଥିଲି ମାତ୍ର, କିନ୍ତୁ ରବୀନ୍ଦ୍ରନାଥଙ୍କ ଖ୍ୟାତିର ପରିଚୟ ପାଇ ନଥିଲି, ଏଇଠି ପାଇଲି। ରବୀନ୍ଦ୍ରନାଥଙ୍କ ପୂର୍ବରୁ ଭାରତୀୟ କୌଣସି କବି ବୋଧହୁଏ ବିଶ୍ୱରେ ଏତେ ଖ୍ୟାତି ଅର୍ଜନ କରି ନଥିଲେ। କ'ଣ ଦେଖିବି? କାହାକୁ ଦେଖିବି? ବିଭିନ୍ନ ବଖରାରେ ବିଭିନ୍ନ ଜିନିଷର ପ୍ରଦର୍ଶନୀ।

Presents to the poet-ରବୀନ୍ଦ୍ରନାଥ ଦେଶ ବିଦେଶରେ ଯେତେ ଯେଉଁଠି ପୁରସ୍କାର ପାଇଥିଲେ, ଏଠି ସେ ସବୁର ସମାବେଶ। ଏ ବିଭାଗରେ ସବୁ ଉପହାର ତ ଦେଖିବା ଭଳି, ଆଶ୍ଚର୍ଯ୍ୟଜନକ, ଆମୋଦଦାୟକ। କିନ୍ତୁ ଗୋଟାଏ ସବୁଠୁଁ ଭଲ ଜିନିଷ ଦେଖିଲି-ରବୀନ୍ଦ୍ରନାଥଙ୍କୁ ନୋବେଲ ପୁରସ୍କାର ପ୍ରଦାନର Stockholm ରୁ ଚିଠି ଏବଂ ସ୍ୱର୍ଣ୍ଣ ପଦକ।

Photos of the poet-ଏ ବିଭାଗରେ ଦେଶ ବିଦେଶରେ ରବୀନ୍ଦ୍ରନାଥଙ୍କର ଯେତେ ଯେଉଁଠି ଫଟୋ ଉଠା ହେଇଛି, ସେ ସବୁର ସମାବେଶ, ଦେଖିବାର ଜିନିଷ।

Manuscripts of the poet-ଏ ବିଭାଗରେ ରବୀନ୍ଦ୍ରନାଥଙ୍କ ଲିଖିତ ଯେତେ ବହି, ସେ ସବୁର ରବୀନ୍ଦ୍ରନାଥଙ୍କ ସ୍ୱହସ୍ତ ଲିଖିତ ପାଣ୍ଡୁଲିପି ଗଚ୍ଛିତ ରହିଛି। ରବୀନ୍ଦ୍ରନାଥଙ୍କ ହାତ ଲେଖାରେ ଦେଖିଲି-ଅନେକ ପାଣ୍ଡୁଲିପିରେ ଜାଗା ଜାଗା ରବୀନ୍ଦ୍ରନାଥ ନିଜେ କଲମରେ କେତେକ ଅଦ୍ଭୁତ ଚିତ୍ର ଆଙ୍କିଛନ୍ତି। ଏଥିରେ ମଧ୍ୟ ଚମତ୍କାରିତା ଅଛି।

Transalations of the poet-ଏ ବିଭାଗରେ ରବୀନ୍ଦ୍ରନାଥଙ୍କ ଯେତେ ବହି ଦେଶୀ ଓ ବିଦେଶୀ ଭାଷାରେ ଅନୁଦିତ ହେଇଛି ସେ ସବୁର ସମାବେଶ। ରବୀନ୍ଦ୍ରନାଥଙ୍କ ବହି ସବୁ କେତେ ଯେ ବିଦେଶୀ ଭାଷାରେ ଅନୁଦିତ

ହେଉଛି, ଏଇଠି ଦେଖି ଆଶ୍ଚର୍ଯ୍ୟ ହେଲି, ଏଥି ପୂର୍ବେ ଏ ବିଷୟରେ ମୋର କିଛି ଧାରଣା ନଥିଲା, କେବଳ ଜାଣିଥିଲି- ଗୀତାଞ୍ଜଳୀ କେତେକ ବିଦେଶୀ ଭାଷାରେ ଅନୁଦିତ ହେଉଛି । ଏସବୁ ମଧ୍ୟ ଦେଖିବାର ଜିନିଷ ।

Paintings of the poet-ଏ ବିଭାଗରେ ରବୀନ୍ଦ୍ରନାଥଙ୍କ ସ୍ୱହସ୍ତଅଙ୍କିତ ସବୁ ଚିତ୍ରର ସମାବେଶ । ଏ ଚିତ୍ରରେ ନୂତନତ୍ୱ କେବଳ ଦେଖିଲି କିନ୍ତୁ କିଛି ବୁଝି ପାରିଲି ନାହିଁ । କାଳ ଠାର କାଳ ମା ଜାଣେ । ଏଇ କଥା ଭାବି ନିରବରେ ଚିତ୍ରସବୁ ବୁଲି ଦେଖିଲି ।

ଏଇ ରବୀନ୍ଦ୍ର ଜୟନ୍ତୀରେ ପ୍ରଥମେ ଦେଖିଲି- କେତେକ ଶ୍ୱେତାଙ୍ଗିନୀ ବୃଦ୍ଧା ଆଉ ତରୁଣୀମାନେ ଶାଢ଼ି ପିନ୍ଧି ଏ ଘର ସେ ଘର ବୁଲୁଛନ୍ତି । ମୁଁ ମୃଣାଳକୁ ଏମାନଙ୍କ ବିଷୟରେ ପଚାରିବାରେ, ମୃଣାଳ କହିଲା-ଏମାନେ ରବୀନ୍ଦ୍ରନାଥଙ୍କ ଭକ୍ତ, ବୋଧେ ଶାନ୍ତିନିକେତନରୁ ଆସିଛନ୍ତି ।

ସନ୍ଧ୍ୟା ପରେ ଏଇଠି ଦେଖିଲି-ନଦିଆ କୀର୍ତ୍ତନ । ନଦିୟା କୀର୍ତ୍ତନ ଶୁଣି ପ୍ରାଣ ଆନନ୍ଦରେ ଭରି ଉଠିଲା । ଏଇଠି ମୃଣାଳ ସହିତରେ ମୋର ଗୋଟାଏ ବିଷୟରେ ଟିକିଏ ଅଳ୍ପ ସମୟ ପାଇଁ ମନକଷାକଷି ହେଇଗଲା । ବିଷୟଟା ହେଲା, କଟକରେ ମୃଣାଳ ମୋତେ ଅନେକ ବାର ପରିହାସ କରି କହିଛି-ଓଡ଼ିଶାରେ ପୁରୁଷ ଲୋକେ ମାଇପିଙ୍କ ଭଳି ମୁଣ୍ଡରେ ଚୁଟି ରଖନ୍ତି । ମୋର ଏକଥା ବରାବର ମନେଥାଏ । ଏଇଠି ନଦିଆ କୀର୍ତ୍ତନ ଦଳରେ ଜଣେ ଲୋକକୁ ଦେଖିଲି, ତା'ମୁଣ୍ଡରେ ଗୋଟାଏ ଦୀର୍ଘ ଚୁଟି ରଖିଛି, ସେ କୀର୍ତ୍ତନ କଲାବେଳେ ବିହ୍ୱଳ ହୋଇ ଏତେ ନାଚକୁଦ କଲାଯେ, ତା'ର ଚୁଟିଟି ପୂରାପୂରୀ ଖୋଲିଗଲା । ଏଇ ଅବସ୍ଥାରେ ମୁଁ ମୃଣାଳକୁ ପଚାରିଲି- କିରେ ଓଡ଼ିଶାରେ ତ ପୁରୁଷ ଲୋକ ଚୁଟି ରଖନ୍ତି, ଏଠି ଏ କ'ଣ? ଏତିକିରେ ମୃଣାଳ ଲଜ୍ଜିତ ହେଇ ମୋତେ ଗାଳିଗୁଲଜ କରି ଚୁପ୍ ହେଇ ବସି ଦେଖିଲା । ଏଥି ପୂର୍ବରୁ ପ୍ରିୟ ସହିତରେ ଗୋଟାଏ ଘଟଣାରେ ମନୋମାଳିନ୍ୟ ଘଟି ପ୍ରିୟ ରାଗିଯାଇ ଦୂରରେ ବସିଥାଏ, ତାକୁ କଥା କହିଲେ ସେ ଫଁ କରି ହଉଥାଏ ।

କଲିକତା ଭ୍ରମଣ ବିଷୟରେ ଲେଖିବାକୁ ବସିଲେ, ଖଣ୍ଡେ ବଡ଼ ଗ୍ରନ୍ଥ ହେବ । କଲିକତା ଭ୍ରମଣ ତ ମୋର ଲେଖିବାର ଉଦ୍ଦେଶ୍ୟ ନୁହେଁ । ଏଣୁ ଆଉ ବିଶଦ ଭାବରେ ନ ଲେଖି ସଂକ୍ଷେପରେ ଶେଷ କରିବାହିଁ ଭଲ । କଲିକତାର ଦର୍ଶନୀୟ ସ୍ଥାନ-ଯାଦୁଘର, ଚିଡ଼ିଆଖାନା ଦେଖିଲି । ଯାଦୁଘରେ ଯାଇ ପ୍ରଥମେ archeological departmentରେ ପଶିଗଲି । ଏଇଠି ଗୁରାଏ ସମୟ ଅଟକିଗଲି । କ'ଣ ଦେଖିବି? କାହାକୁ ଦେଖିବି? ଏଇଠି ଆଉରଙ୍ଗଜେବ୍‌ଙ୍କର ସ୍ୱହସ୍ତ ଲିଖିତ କୋରାନ, ଆଫ୍ରିକାର ମମି ଦେଖିଲି । ମୁଁ ତ ଗୋଟିଏ ଜିନିଷ ପାଖରେ ଠିଆ ହେଇ ଅଟକି ଯାଉଥାଏ । ଏଠି ଯେ ସମୁଦ୍ର ଭଳି ଜିନିଷ ରହିଛି । ଦେଖିବାକୁ ମୁଁ ଭୁଲି ଯାଉଥାଏ । କ'ଣ ନାହିଁ ଏଠି? କୋଣାର୍କର ଲୁହାକଡ଼ି ଏଇଠି ଦେଖିଲି । ଏଠି ହୀରା, ସୋରିଷଠୁଁ ଆରମ୍ଭ କରି ଅତି ମୂଲ୍ୟବାନ ଓ ଗୁରୁତ୍ୱପୂର୍ଣ୍ଣ ଦର୍ଶନୀୟ ଜିନିଷ ସବୁ ଅଛି । ଏସବୁ ଜିନିଷକୁ ତନ୍ନ ତନ୍ନ କରି ଦେଖିବା ସମୟ ସାପେକ୍ଷ । ଏସବୁ ଜିନିଷ ଗୋଟାଏ ଦିନରେ ଦେଖି ହବ ନାହିଁ ।

ତା'ପରେ ଦିନେ ଆମେ ତିନିହେଁ ଯାଇ ଚିଡ଼ିଆଖାନାରେ ପଶିଲୁ । ଏଠି ମଧ୍ୟ ସେଇ ଅବସ୍ଥା । କ'ଣ ଦେଖିବି? କାହାକୁ ଦେଖିବି? ଏଠି ଗଣ୍ଡା, ଓଟ ପକ୍ଷୀ, ଧଳା ଭାଲୁ, ଧଳା ମୟୂର, ବିଭିନ୍ନ ରକମର ସାପ, ଚଢ଼େଇ, ମାଙ୍କଡ଼, ନେଉଳ ପରି କେତେ ଜୀବଜନ୍ତୁ ଦେଖି ମୋତେ ଭାରି ଆଶ୍ଚର୍ଯ୍ୟ ଲାଗିଲା । ଏଠି ଲୋକଙ୍କ ଗହଳି ଯେ କାହିଁରେ କ'ଣ? ଠେଲାପେଲା, ସମସ୍ତେ ଦେଖିବାକୁ ଉଦଗ୍ରୀବ । ଏ ମଧ୍ୟ ଦିନରେ ବୁଲି ଦେଖିବାର ନୁହେଁ । ଯା ହଉ ସେଠୁଁ ବୁଲାବୁଲି କରି ଫେରିଲୁ ।

ଦିନେ Victoria Memorial Hall ଦେଖିବାକୁ ଯାଇ ହତାଶ ହେଇ ଫେରିଲୁ । କାରଣ ସେଦିନ Victoria Memorial Hall ବନ୍ଦ ଥିଲା । ଏଣୁ ବାହାରେ କେବଳ ବୁଲାବୁଲି କରି ଫେରିଲୁ ।

ଦିନେ କଲିକତାର ଗଡ଼େରମାଠ ଦେଖିବାକୁ ଯାଇ ସେଠି ହାଇଦ୍ରାବାଦ ଆଉ କଲିକତା ମଧ୍ୟରେ ଅନୁଷ୍ଠିତ ହେଉଥିବା ପୋଲୋ ଖେଳ ଦେଖିଲୁ । ଏ ମୋତେ

ବିଶେଷ କିଛି ନୂଆ ମନେ ହେଲା ନାହିଁ । କାରଣ ମୁଁ ତାଳଚେରରେ ଏଥି ପୂର୍ବରୁ ପୋଲୋ ଖେଳ ଦେଖିଥିଲି ।

ଯା ହଉ, ମୃଣାଳର ସହାୟତାରେ କଲିକତା ବୁଲି ଦେଖିବାର ସୁବିଧା ପାଇ, କଲିକତା ବୁଲି ଫେରିବା ପୂର୍ବରୁ ଦିନେ ମୃଣାଳ କହିଲା-ଚାଲ ବର୍ଦ୍ଧମାନ ଲାଇନ୍‌ରେ କିଛି ବାଟ ବୁଲି ଆସିବା । ଏଣୁ ଦିନେ ଆମେ ତିନିହେଁ ବର୍ଦ୍ଧମାନ ଲାଇନ୍‌ରେ ଯାଇ ସେଓଡ଼ା ଫୁଲି ଷ୍ଟେସନ ପର୍ଯ୍ୟନ୍ତ ଯାଇ ବୁଲି ଫେରି ଆସିଲୁ । ଦିନେ କଲିକତାରେ କାଳୀ ଦେଖିବାକୁ ଗଲି । ଏଠି କେତେକ ଘଟଣା ଦେଖି ମନ ବିରକ୍ତ ହେଲା । ଗୋଟାଏ ଘଟଣା ହେଲା-ଏଠା କାଳୀଙ୍କର ସେବାୟତମାନେ ପଇସା ନନେଲେ କାଳୀଙ୍କର ମନ୍ଦିର ଭିତରକୁ ଛାଡୁ ନାହାନ୍ତି । ଆଉ ଗୋଟାଏ ବୀଭତ୍ସ ଦୃଶ୍ୟ । କାଳୀଙ୍କ ସାମନାରେ ବୋଦା ପଡ଼ିବା । ଏଠା ସେବାୟତମାନଙ୍କ ଜୁଲୁମ ଦେଖି ମୁଁ ମୃଣାଳକୁ ପଚାରିଲି-ଏ କ'ଣ ? ଓଡ଼ିଶାରେ ଆମର ଜଗନ୍ନାଥ ମନ୍ଦିରରେ ତ ଯାତ୍ରୀମାନଙ୍କଠାରୁ ପଇସା ଆଦାୟ ପାଇଁ ଏତେ ଜୁଲୁମ ନାହିଁ କି ଜବରଦସ୍ତି ନାହିଁ । ପଣ୍ଡାମାନେ ବିରକ୍ତ କରନ୍ତି ପଇସା ପାଇଁ । ସେମାନେ କାମ କରନ୍ତି, ପଇସା ମାଗନ୍ତି । ଏଠିତ ଦୁଆର ଓଗାଳି ଠିଆ ହେଇଛନ୍ତି । ପଇସା ନ ଦେଲେ ଭିତରକୁ ଛାଡୁ ନାହାନ୍ତି । ମୋର ଏ ପ୍ରଶ୍ନରେ ମୃଣାଳ ଟିକିଏ ଲଜ୍ଜିତ ହେଲା । ଆମେ କାହାରିକୁ ପଇସା ନ ଦେଇ କାଳୀଙ୍କ ମନ୍ଦିର ସାମନାରେ ପ୍ରଣାମ କରି ଫେରିଲୁ ।

ଆଉ ଦିନେ ଗଲୁ କଲିକତାର ଶ୍ମଶାନ ଗଙ୍ଗାକୂଳରେ ନିମତଲାର ଘାଟ ଦେଖିବା ପାଇଁ । ଏଠାରେ ଶବ ଦାହର ବ୍ୟବସ୍ଥା ଦେଖି ମୁଁ ଆଶ୍ଚର୍ଯ୍ୟ ହେଲି କାରଣ ମୁଁ ଏଥିପୂର୍ବେ ଇମିତି ଶ୍ମଶାନ ଦେଖି ନଥିଲି କି ଇମିତି ବ୍ୟବସ୍ଥା ଦେଖି ନଥିଲି । ଏଠି ଶବର କ୍ୟୁ ଲାଗିଛି, ଯା'ର ପାଳି ପଡ଼ିବ, ସେ ଯାଇ ଶବ ଦାହ କରିପାରିବ । ଚାରି ପାଞ୍ଚଟା ଶବ ଏକ ସମୟରେ ଦାହ ହେଇ ପାରିବ ନାହିଁ । ଏକ ସମୟରେ ଦୁଇଟି ଶବ ଦାହ ହେଇ ପାରିବ । ଏଠି ଶବ ପାଇଁ photographer ଠାରୁ ଆରମ୍ଭ କରି ଶବଦାହ ପାଇଁ ସବୁ ଜିନିଷ ମିଳୁଛି । ପୁଣି ଶବ ଦାହ ପରେ ଚିତାଭସ୍ମ ବିସର୍ଜନ ପାଇଁ ନିକଟରେ ସ୍ୱଚ୍ଛସଲିଳା ଗଙ୍ଗା ପ୍ରବାହିତା, ସବୁ ସୁବିଧା ଏଠି । କିନ୍ତୁ ଶବଟିଏ ଦାହ କରିବା ପାଇଁ ଏଠି ଘଣ୍ଟା ଘଣ୍ଟା ଅପେକ୍ଷା କରି ପଡ଼ି ରହିବାକୁ ହୁଏ ।

ଆଉ ଗୋଟାଏ ଘଟଣା ନ ଲେଖି ରହିପାରୁନି । ଘଟଣା ହେଲା-ମୁଁ ଆଗରୁ ଲେଖିଛି-ଯେଉଁଦିନ ମୁଁ ମୃଣାଳର ବନ୍ଧୁଙ୍କ ଘରେ ପ୍ରଥମ ଦିନ ଭାତ ଖାଏ, ସେଦିନ ମୁଁ କିଛି ଖାଇ ପାରି ନଥିଲି । କାରଣ ଭାତଗୁରା ସୁଆଦ ଲାଗିଲା ନାହିଁ । କିନ୍ତୁ ପରେ ଭାତରେ ଟିକିଏ ଲୁଣ ମିଶେଇ ଖାଇବାରୁ ଭାତ ଖାଇ ହେଲା । ମୁଁ ତ ମୃଣାଳ, ପ୍ରିୟ ଅପେକ୍ଷା ଅନେକ ଭାତ ଖାଇବାର ଲୋକ । ଏଣୁ ମୁଁ ଲଜ୍ଜା ସରମ ଛାଡ଼ି ସେ ଭଦ୍ରଲୋକ ଯା ଭାବନ୍ତୁ ପଛେ ଭାତ ଗୁରାଏ ଗୁରାଏ ଖାଇଲି । ଦିନେ ମୁଁ ଭାତ ଖାଉ ଖାଉ ମୃଣାଳ ମୋତେ ଥଟ୍ଟା କରି କହିଲା-ଏ ଆଉ କାହାରିକୁ ଖାଇବାକୁ ଦବ ନାହିଁ ।

ମୁଁ ଏକଥା ଶୁଣି ଲଜ୍ଜିତ ହେଇ ଆଉ ନଖାଇବାରୁ ସେ ଭଦ୍ରଲୋକ ମୋତେ ନଛାଡ଼ନ୍ତି । ଅନୁରୋଧ କଲେ, ନା ଆପଣଙ୍କ ଖାଇବା ହେଇନି, ଆପଣ ଖା'ନ୍ତୁ, ଲଜ୍ଜା କରନ୍ତୁ ନାହିଁ । ଭଦ୍ରଲୋକ କିଛିରେ ଛାଡ଼ିଲେ ନାହିଁ । ପୁଣି ଭାତ ମଗେଇଲେ, ମୁଁ ପୁଣି ଗୁରାଏ ଭାତ ଖାଇଲି । ମୃଣାଳ, ପ୍ରିୟ ହସୁଥାନ୍ତି ।

ସେମିତି ଆଉ ଗୋଟାଏ ଘଟଣା ମନେ ପଡୁଛି । ଥରେ କଲିକତା ରାସ୍ତାରେ ବୁଲୁବୁଲୁ ମୃଣାଳ ମୋତେ କହିଲା, ତୁ ଆଜି କେତେ ଭାତ ଖାଇବୁ ଦେଖିବା । ସେଦିନ ଆମେ ଆଉ ସେ ଭଦ୍ରଲୋକଙ୍କ ଘରକୁ ନଫେରି ହୋଟେଲରେ ଖାଇ Crown Cinemaକୁ ଯିବାର ପ୍ରସ୍ତାବ ଥାଏ । Crown Cinemaରେ "ତୃତୀୟ ପକ୍ଷ" (Third Wife) ଫିଲ୍ମର ମ୍ୟାଟିନ୍ ସୋ ହଉଥାଏ । ଏଣୁ ମୃଣାଳର କଥା ଶୁଣି ମୁଁ କହିଲି, ତା'ହେଲେ ତୁ ଦହି କିଣ, ଆଉ ମୁଁ ଯେ ପର୍ଯ୍ୟନ୍ତ ଖାଉଥିବି ତୁମେମାନେ ବସିଥିବ, ମୁଁ ଖାଇସାରି ଉଠିଲେ ତୁମେମାନେ ମୋ ସହିତରେ ଉଠିବ ।

ଏ କଥା ଶୁଣି ମୃଣାଳ କହିଲା, ହଉ । ଏଣୁ ବାଟରେ ଦହି କିଣି ଆମେ ତିନିହେଁ ଯାଇ ଗୋଟିଏ ହୋଟେଲରେ ପଶିଲୁ । ହୋଟେଲଟି ଛୋଟ ଧରଣର,

ପରିଷ୍କାର ପରିଚ୍ଛନ୍ନ । ମାଲିକ ଜଣେ ଓଡ଼ିଆ ବ୍ରାହ୍ମଣ । ଆମେ ଓଡ଼ିଆରେ କଥାବର୍ତ୍ତା କଲାରୁ ସେ ଭାରି ଖୁସି ହେଇଗଲା, ଜାଣି ପାରିଲା ଆମେ ଓଡ଼ିଶାରୁ ଆସିଛୁ । ଆସନ ତିନି ଖଣ୍ଡ ପକେଇ ଖୁବ୍ ଆଦର ଯତ୍ନରେ ବସେଇଲା, ଆମେ ବରାଦ କଲୁ-ମାଛ ମିଲ୍ । ସେତେବେଳେ କଟକ, କଲିକତାରେ ନିରାମିଷ ମିଲ୍-ଛ'ପଇସା, ମାଛ ମିଲ୍-ଦଶ ପଇସା, ମାଂସ ମିଲ୍-ତିନି ଅଣା ମାତ୍ର ହେଇଥାଏ ।

ବ୍ରାହ୍ମଣ ଆମକୁ ଖାଇବାକୁ ବସେଇ, ପରିବେଷଣ କଲା । ଆମେ ଯେଉଁ ଦହି ନେଇଥିଲୁ ତାକୁ ମଧ ପରଷିଲା । ମାଛ ମିଲ୍ ସାଙ୍ଗକୁ ଦହି, ସେଥିରେ ପୁଣି ବାଟ ଚାଲି ଚାଲି ପଥଶ୍ରମ ପରେ ଦିନ ଗୋଟାଏ ବେଳକୁ ଭୋଜନ । ମୋ ଭାତଗୁଣ୍ଡାଗୁରାକ ଖାଲି କୁଦା ମାରି ଅଳ୍ପ ସମୟ ଭିତରେ ମୋର ପ୍ରଥମ ଥର ଭାତ ଶେଷ, ଦ୍ୱିତୀୟ ବାର ଭାତ ବ୍ରାହ୍ମଣ ପରଷିଲା । ମୃଣାଳ, ପ୍ରିୟ ସେଇ ପ୍ରଥମ ଥର ଭାତ ନେଇ ଖାଉଥାନ୍ତି, ଏଣେ ମୋତେ ଅନେଇ ମୁରୁକି ମୁରୁକି ହସୁଥାନ୍ତି । ବ୍ରାହ୍ମଣ କିଛି ବୁଝି ପାରୁ ନଥାଏ । ମୋତେ ଦିଆ ଯାଇଥିବା ଦ୍ୱିତୀୟ ଥରର ଭାତ ଆଗ ପରି କୁଦା ମାରି ପେଟ ଭିତରକୁ ଚାଲି ଯାଉଥାଏ । ଦ୍ୱିତୀୟ ଥରର ଭାତ ଶେଷ । ବ୍ରାହ୍ମଣକୁ ପୁଣି ଭାତ ମାଗିଲି । ବ୍ରାହ୍ମଣ ଆଣି ତୃତୀୟ ଥର ଭାତ ପରଷିଲା, ଟିକିଏ ବିଷର୍ଣ୍ଣ ଭାବରେ । ଏତେବେଳକୁ ମୃଣାଳ, ପ୍ରିୟ ଦ୍ୱିତୀୟ ଥର ଭାତ ନେଇ ଖାଉଥାନ୍ତି, ଦହି ତ ଯେମିତି ବଳଦ ପଛରେ ପାଞ୍ଚଣ ବାଜିଲା ପରି, ମୋ ଭାତ ଗୁଣ୍ଡାଗୁରାକୁ ଅଡ଼େଇ ନେଇ ଯାଉଥାଏ । ମୋର ତୃତୀୟ ଥରର ଭାତ ଶେଷ । ଯେତେବେଳେ ଚତୁର୍ଥ ଥର ପାଇଁ ବ୍ରାହ୍ମଣକୁ ଭାତ ମାଗେ ବ୍ରାହ୍ମଣ ଅଳ୍ପ ହସି ପକେଇ ପଚାରିଲା- କ'ଣ ବାବୁ ସତରେ ଭାତ ମାଗୁଛନ୍ତି ନା କ'ଣ ? ମୁଁ କହିଲି ହଁ । ବ୍ରାହ୍ମଣ ବିଚାରା ହତାଶ ହେଇ ପୁଣି ଭାତ ପୁଳାଏ ଆଣି ମୋ ପତରରେ ଅଜାଡ଼ିଲା । ମୁଁ ଏ ଚତୁର୍ଥ ଥରର ଭାତ ଅଧା ଖାଇ ସାରିଲା ବେଳେ, ମୃଣାଳ, ପ୍ରିୟ ତାଙ୍କର ଦ୍ୱିତୀୟ ଥରର ଭାତ ଖାଇ ସାରି, ମୃଣାଳ କହିଲା-ଆଜି ପୁଳିନ୍ ଏ ହୋଟେଲକୁ ଦେବାଳିଆ କଲା । ଏତକ କହି ମୃଣାଳ, ପ୍ରିୟ ଉଭୟେ ପତରରୁ ଉଠିଗଲେ । ମୃଣାଳର ଇମିତିଆ ପରିହାସରେ ମୁଁ ଲଜ୍ଜିତ ହେଇ ଆଉ ନ ଖାଇ ପତର ଛାଡ଼ି ଉଠି ଆସିଲି । ଶୀଘ୍ର ସେ ହୋଟେଲର ପଇସା ତୁଟେଇ ଦେଇ ଆମେ ସେଠୁଁ ବିଦାୟ ନେଲୁ ।

ଯା' ହଉ ତେର ଦିନ ପ୍ରାୟ କଲିକତାରେ ରହି ଭଲରେ ଆମେ କଟକ ଫେରିଲୁ । ମୋତେ ମନେ ହେଲା-ଯେମିତି ଗୋଟାଏ ବନ୍ଦୀଶାଳାରୁ ମୁକ୍ତି ପାଇଲି । ମୁଁ ଓଡ଼ିଶାର ଲୋକ, ଖୋଲା ଆକାଶ ତଳର ଉଡ଼ିଲା ଚଢ଼େଇ । କଲିକତା କି ଜନଗହଳି ! ସବୁ ଅଛି, ମଣିଷ ଦ୍ୱାରା କଲିକତାର ସମୃଦ୍ଧି, ସୌନ୍ଦର୍ଯ୍ୟ, ବିଶାଳତା କିନ୍ତୁ ମଣିଷ ଜୀବନର ମୂଲ୍ୟ ସେଠି କିଛି ନାହିଁ । ଯେ କୌଣସି ମୁହୂର୍ତ୍ତରେ ଜୀବନଟା ଯାଇ ପାରେ ।

ଏ ହେଲା ୧୯୩୧ ମସିହାର କଲିକତା । ବର୍ତ୍ତମାନ ଯେ କ'ଣ ହେଇଥିବ କହି ପାରୁନି । ମୁଁ ଆଉ କଲିକତା ଦେଖି ନାହିଁ । ଯା କିଛି କଲିକତା ବିଷୟରେ ପଢୁଛି, ଶୁଣୁଛି, ଛବିରେ ଦେଖୁଛି । ସେତେବେଳେ ହାବଡ଼ା ପୋଲ ଗଙ୍ଗାନଦୀ ଉପରେ ଭାସମାନ ଅବସ୍ଥାରେ ଥିଲା । ଏବେ ଗୋଟିଏ ସ୍ଥାୟୀ ପୋଲ ହେଇ ସାରିଲାଣି । କିନ୍ତୁ ମୁଁ ଆଉ ଦେଖି ପାରିନାହିଁ । ଆମର କଟକ ଟାଉନ୍ ତ କେତେ କ'ଣ ବଦଳି ଗଲାଣି, କଲିକତା ବର୍ତ୍ତମାନ କ'ଣ ନ ବଦଳିଥିବ ? କଲିକତାରୁ ଫେରି ବାବା, ମା'ଙ୍କ ପାଖରେ ଚର୍ତ୍ତୁମୁଖ ହେଇ କେତେ କ'ଣ ବକିଗଲି । କଲିକତାରୁ ସାଙ୍ଗରେ ତ କିଛି ଆଣି ପାରି ନଥିଲି, କେବଳ ଟ୍ରାମ୍ ଟିକେଟଗୁରିଏ ପାଖରେ ଥିଲା, ସେଇ ସବୁ ମା', ବାବାଙ୍କୁ ଦେଖେଇଲି ।

ବାବା, ମା ସେ ପର୍ଯ୍ୟନ୍ତ କଲିକତା ଦେଖି ନଥିଲେ କି ତାଙ୍କ ଜୀବନ କାଳରେ ସୁଦ୍ଧା କଲିକତା ଦେଖି ପାରିଲେ ନାହିଁ । ବାବାଙ୍କର ଇଚ୍ଛା ସସ୍ତ୍ରୀକ କଲିକତା ଯିବେ, ନଚେତ୍ ଯିବେ ନାହିଁ । କିନ୍ତୁ ସେମିତି ସୁବିଧା ହେଇ ପାରିଲା ନାହିଁ କି ସେ କଲିକତା ଆଉ ଗଲେ ନାହିଁ ।

ମୁଁ କଲିକତାରୁ ଫେରି ପୁଣି ବର୍ଷେ I.Sc. ପଢ଼ିଲି। କିନ୍ତୁ ବର୍ଷେ ଅଧିକା ପଢ଼ିବାକୁ ଯାଇ ଆହୁରି ଅସୁବିଧାରେ ପଡ଼ିଲି। ବହି ସବୁ ବଦଳିଗଲା, କିଣି ପାରିଲି ନାହିଁ। ଶେଷରେ ପରୀକ୍ଷାରେ ଅକୃତକାର୍ଯ୍ୟ ହେଇ, ମନ ଦୁଃଖରେ ଜଳିପୋଡ଼ି ହେଇ କଲେଜ ଛାଡ଼ିଲି। ସବୁବେଳେ ଭାବିଲି- କାହିଁକି I.Sc. ନେଲି? I.A.ତ ନେଇଥିଲି, କାହିଁକି ଛାଡ଼ିଦେଲି? I.A.ରେ ତ ଏତେ ବହିର ଦରକାର ନଥିଲା, ଯା ହଉ, ଶେଷରେ କଲେଜ ଛାଡ଼ିବାକୁ ବାଧ ହେଲି। ମୋ ମନରେ ଥାଏ, ମେଡ଼ିକାଲ୍‌ରେ ପଢ଼ିବି। I.Sc.ରେ ଆଉ ଚେଷ୍ଟା ନ କରି ବରଂ ମେଡ଼ିକାଲରେ ପଢ଼ିବା ଉଚିତ୍। କିନ୍ତୁ ହବ କ'ଣ? ବାବା ରାଜି ହେଲେ ତ। ଅର୍ଥାଭାବ ତ ଉତ୍କଟ, ବାବା ପେନ୍‌ସନ୍ ପାଇ ପଡ଼ଉଥାନ୍ତି। ବାବାଙ୍କୁ ସାହାଯ୍ୟ କରିବାକୁ କେହି ନାହିଁ। I.Sc.ପାସ୍ କରିଥିଲେ Patna Medical College ରେ କାହାରି ସାହାଯ୍ୟ ନେଇ M.B.B.S. ପଢ଼ିବି ବୋଲି ମନେ ମନେ ସ୍ଥିର କରିଥିଲି କିନ୍ତୁ ସେ'ତ ହେଲାନାହିଁ। ଏଣୁ ମନ ହେଲା-ନିହାତି ବେଳକୁ Cuttack Medical School ରେ L.M.P. ପାଠ ହେଲେ ପଢ଼େ। ବଡ଼ ଆଶା କରି କିଛି ତ ହେଇ ପାରିଲା ନାହିଁ କିନ୍ତୁ ବର୍ତ୍ତମାନ କଟକ Medical School ରେ ପଢେଇବାକୁ ରାଜି ହଉଛନ୍ତି କି ନା? ବାବାଙ୍କୁ ଏ କଥା ବା କହିବି କେମିତି? ଘରର ଅବସ୍ଥା ତ ମୁଁ ବୁଝି ପାରୁଛି।

ବାବା ଯେତେବେଳେ ପୁରୀରେ P.H.D. ବିଭାଗରେ ଚାକିରି କରୁଥିଲେ, ସେଠି ତାଙ୍କର ହାକିମ ଜଣେ ବଡ଼ ବିଲାତ ଫେରନ୍ତା ଇଞ୍ଜିନିୟର ଥିଲେ। ବାବା ସେଠୁଁ ଚାକିରି ଛାଡ଼ି ଆସିବା ବେଳେ ସେ ଭଦ୍ରଲୋକ ବାବାଙ୍କୁ ଦୃଢ଼ ଭାବରେ କହିଥିଲେ ମୋତେ ଯେ କୌଣସି ମତେ ଖଣ୍ଡେ ଚାକିରି କରେଇ ଦେବେ। ତାଙ୍କ ନାଁ ହେଲା-C.R.Das. ଅତି ଅମାୟିକ ଲୋକ। ସେ ବାବାଙ୍କର ଗୋଟାଏ ବଡ଼ ଭରସା ଥିଲେ, କିନ୍ତୁ ସେ ହଠାତ୍ କାହିଁକି ଆତ୍ମହତ୍ୟା କଲେ, ବାବା ତାଙ୍କର ମୃତ୍ୟୁ ସମ୍ବାଦରେ ହତାଶ ହେଇ ପଡ଼ିଲେ।

ମୁଁ କଲେଜ ଛାଡ଼ିବା ପୂର୍ବରୁ ବାବା କେତେ ମାସ ପାଇଁ କଟକରେ ଜଣେ ବଡ contractor ମଦନ ସେନଙ୍କ ନିକଟରେ କାମ କରୁଥିଲେ। ଏ ସମୟରେ ବାବାଙ୍କ ନିର୍ଦ୍ଦେଶମତେ ମୁଁ କଟକ ଅଦାଲତରେ ଗୋଟାଏ ଚାକିରି ପାଇଁ ଦରଖାସ୍ତ କରିଥିଲି। ଚାକିରି ହେଲା ନାହିଁ। ମୋର ବଡ଼ ଭିଣେଇ ସେତେବେଳେ କଟକ ଅଦାଲତରେ ନାଜର ଥିଲେ, ଆହୁରି କେତେକ ବାବାଙ୍କର ପରିଚିତ ଲୋକ ଅଦାଲତରେ କାମ କରୁଥିଲେ। କିନ୍ତୁ କାହାରି ଦ୍ୱାରା କିଛି ହେଲା ନାହିଁ। ମୁଁ ଏବଂ ବାବା ଏଥିରେ ବିଶେଷ ହତାଶ ହେଇ ପଡ଼ିଲୁ।

କଲେଜ ଛାଡ଼ିବା ପରେ ମୁଁ ଘରେ ରହି ଖାଇବା, ଖେଳିବା, ବୁଲିବା ଆହୁରି ବିଭିନ୍ନ ରକମର ବହି ପଢ଼ିବାରେ ଦିନ କଟୁଥାଏ। ସେଇ ମହାନଦୀ କୂଳ, ସେଇ ମୃଣାଳ, ପ୍ରିୟ, ସେଇ କିଲ୍ଲା ପଡ଼ିଆ, ମେଡ଼ିକାଲ ପଡ଼ିଆ ତଥାପି ଆଉ ଗୋଟିଏ ଜାଗାରେ ସନ୍ଧ୍ୟା ସମୟରେ ତାସ୍ ଖେଳ ବିଶେଷ ଜମୁଥାଏ, ଜାଗାଟା ହେଲା-ଆମ ଗାଁର ଦୟାନିଧି ମହାନ୍ତିଙ୍କ ବସା। ଦୟାନିଧି ମହାନ୍ତି ଟେଲିଫୋନ୍ ବିଭାଗରେ କର୍ମଚାରୀ, ଭାରି ଖର୍ଚ୍ଚୀ, ଉଚ୍ଚମନା, ଅମାୟିକ ଲୋକ। ମୁଁ ତା'ବସାରୁ ଟିକିଏ ରାତିକରି ଫେରେ। ବାବା ବିଶେଷ ବିରକ୍ତ ହୁଅନ୍ତି ନାହିଁ।

ଏଣେ କିଛିଦିନ ପରେ Medical Schoolରେ ନାଁ ଲେଖେଇବା ସମୟ ନିକଟ ହେଇ ଆସିଲା। କ'ଣ କରିବି? ବାବାଙ୍କୁ Medical School ରେ ପଢ଼ିବା କଥା କେମିତି କହିବି? ଦିନେ ବାବାଙ୍କୁ କହିଲି ମୁଁ Medical School ରେ ପଢ଼ିବି। ବାବା ଶୁଣି ମୋତେ କହିଲେ, ପାରିବୁଟି? ସେଠି ମୁର୍ଦ୍ଦାର କଟା ଅଛି, ପାଠ ମଧ ଭାରି କଠିଣ। ମେଡ଼ିକାଲରେ ପଢ଼ିଲେ ମନ୍ଦ ହୁଅନ୍ତାନି, ତେବେ ପାରିବୁ କି ନା ମୋର ସନ୍ଦେହ। ପୁଣି ଚାରିବର୍ଷ ପଢ଼ିବାକୁ ହବ। ବାବା ପୁଣି କହିଲେ, ମୋର ମଧ ଇଚ୍ଛା ଥିଲା ଡାକ୍ତରୀ ପଢ଼ିବା ପାଇଁ। କେବଳ ମୋର ମା' (ବୁଢ଼ୀ ମା') ବାଧା ଦେଇ କହିଲେ, ତୁ ଯଦି ଡାକ୍ତରୀ ପଢ଼ିବୁ, ମୁଁ ବେକରେ ଦଉଡ଼ି ଲଗେଇ ଦେବି। ମା'ଙ୍କର ବାଧା ଯୋଗୁ ହିଁ ମୁଁ ଡାକ୍ତରୀ ପଢ଼ି ପାରିଲି ନାହିଁ, ତୁ ଡ଼ାକ୍ତରୀ ପଢ଼ିଲେ ମନ୍ଦ ହୁଅନ୍ତା ନାହିଁ। ହଉ, ତା'ର application form ଇତ୍ୟାଦି ଆଣ, କିନ୍ତୁ ତୁ ନିଜେ ଭାବି ଦେଖ, ପାରିବୁ କି ନା?

ବାବାଙ୍କର କଥା ଶୁଣି ମୁଁ ଆଶ୍ଚର୍ଯ୍ୟ ହେଲି। ରୋଜଗାର ନାହିଁ, କେବଳ ଯା' ପେନ୍‌ସନ୍ ମିଳୁଛି। ଉତ୍କଟ ଅର୍ଥାଭାବ ତଥାପି ବାବା ରାଜି ହଉଛନ୍ତି ମୋତେ ଡାକ୍ତରୀ ପଢ଼େଇବା ପାଇଁ। ବାବାଙ୍କ ମୁହଁରୁ ଏଥି ପୂର୍ବେ ଅନେକ ଲୋକଙ୍କୁ ଅନେକବାର କହିବାର ଶୁଣିଛି, ସେ ପଢୁ, ଯଦି ତା'ର ପଢ଼ିବାକୁ ମନ ହଉଛି, ସେ ବର୍ତ୍ତମାନ ଚାକିରି କଲେ ମୋର ଟିକିଏ ସୁବିଧା ହେଇପାରେ, କିନ୍ତୁ ତା' ଜୀବନଟା କ'ଣ ହବ? କିରାଣୀଟିଏ ହେଲେ ଦରମା ପାଇବା ଦିନ revenue stamp ଖଣ୍ଡିଏ କିଣିବାକୁ ପାଖରେ ଅଣାଏ ପଇସା ଥିବ ନାହିଁ।

ମେଡ଼ିକାଲରେ ନାଁ ଲେଖେଇବାର ଦିନ କ୍ରମେ ନିକଟ ହେଇ ଆସିଲାରୁ ମୁଁ Medical School officeରୁ form ଇତ୍ୟାଦି ଆଣିଲି।

ଏଥି ମଧ୍ୟରେ ମୋର ଜେଠାଙ୍କ ବଡ଼ ପୁଅ, ମୋର ବଡ଼ଭାଇ ବର୍ମାରୁ କିଛିଦିନ ପାଇଁ ଆସିଥାନ୍ତି। ଦିନେ ରାତିରେ ବାବାଙ୍କ ସାଥିରେ ତାଙ୍କର ଆଲୋଚନା ବେଳେ ସେ କହିଲେ, ମୋତେ ପୁଲିସ ବିଭାଗରେ ଚାକିରି କରିବାକୁ ଛାଡ଼ିବା ପାଇଁ। ବାବା ତାଙ୍କ କଥା ଶୁଣି କହିଲେ, ଆରେ ବାପ, ତାକୁ ପୁଲିସ ଚାକିରିରେ ଛାଡ଼ିବା ଉଚିତ୍ ନୁହେଁ। ସେ ବରଂ ୩୦ଟଙ୍କିଆ କିରାଣୀ ହବ, ଭଲ, ପୁଲିସ ଚାକିରିରେ ପଶିଲେ ସେ କାହାକୁ ମାରିବ, କ'ଣ କରିବ? ଶେଷକୁ ନିଜେ ଜେଲ୍‌ରେ ପଶିବ। ତାକୁ ପୁଲିସ୍ ବିଭାଗରେ ଛାଡ଼ିବାକୁ ଅଛି? ବଡ଼ଭାଇ ବାବାଙ୍କ ମୁହଁରୁ ମୋର କଡ଼ା ମିଜାଜ କଥା ଶୁଣି କହିଲେ, କାହିଁକି? ସେ ତ ଭାରି cool-headed(ଥଣ୍ଡା ମିଜାଜ) ପରି ଜଣାଯାଏ। ବାବା କହିଲେ, ତୁ ଜାଣି ନାହୁଁ, ତା' ମିଜାଜ କଥା। ବାବା ପୁଣି କହିଲେ, ଦେଖିଲୁ ନାହିଁ ଆମ ଗାଁର କ୍ଷୀରଦା'ଙ୍କ ପୁଲିସ ଚାକିରି କରି କି ଅବସ୍ଥା ହେଲା?

କ୍ଷୀରଦା'ଙ୍କ ଭଲ ନାଁ ହେଲା, କ୍ଷୀରୋଦ ଚନ୍ଦ୍ର ରାୟ, ଗୌରୀ ଶଙ୍କର ରାୟଙ୍କ ଭଣଜା। ଏ ପୁଲିସ ଚାକିରି କରି ଜଣକୁ ମାଡ଼ ମାରି ମକଦ୍ଦମାରେ ପଡ଼ି ନିଜେ ଜେଲ୍ ଖଟି ଶେଷରେ ଭିକ ମାଗିବା ଅବସ୍ଥାରେ ପଡ଼ିଥିଲେ। ବାବା ତାଙ୍କରି ଅବସ୍ଥା ଦେଖି ପୁଲିସ ଚାକିରି ପ୍ରତି ଏକବାରେ ଭୟ କରିଗଲେ। ବଡ଼ଭାଇ ମୋତେ ପଚାରିଲେ, ତୋର ଇଚ୍ଛା କ'ଣ? ମୁଁ କହିଲି, ମୁଁ ଡାକ୍ତରୀ ପଢ଼ିବି। ବଡ଼ଭାଇ କହିଲେ, ଘରର ଆର୍ଥିକ ଅବସ୍ଥା ଦେଖିବା ଦରକାର। ମୁଁ ଉତ୍ତର ଦେଲି, ତୁମେ ଘରର ଆର୍ଥିକ ଅବସ୍ଥା ସମ୍ଭାଳ, ତୁମେ କାହିଁକି ଅଛ? ବଡ଼ଭାଇ ମୋର ଏ ଉତ୍ତର ଶୁଣି ଚୁପ୍ ରହିଲେ।

ବଡ଼ଭାଇଙ୍କୁ ମୁଁ ଏମିତି ଉତ୍ତର ଦବାର କାରଣ ହଉଛି, ସେ entrance ପଢ଼ିବା ବେଳେ ବାବା ତାଙ୍କୁ କଟକରେ ଆମ ବସାରେ ରଖି ତାଙ୍କ ପିଛା ବହୁତ ଟଙ୍କା ଖର୍ଚ୍ଚ କରିଥିଲେ କିନ୍ତୁ ବଡ଼ଭାଇ ଚାକିରି କଲା ପରେ ବାବାଙ୍କ ଦୁରବସ୍ଥା ବେଳେ ପଇସାଟିଏ ବି ସାହାଯ୍ୟ କରି ନାହାନ୍ତି ବରଂ ନିରବ ରହିଛନ୍ତି।

ମୁଁ cool-headed ବୋଲି ବଡ଼ଭାଇଙ୍କ ଧାରଣା ହବାର କାରଣ, ସେ ଯେତେବେଳେ ଆମ ଘରେ ଥିଲେ ବା ଏବେ ଯେତେବେଳେ ଆମ ଘରକୁ ଆସନ୍ତି, ମୁଁ ଖୁବ୍ ଶାନ୍ତ, ଶିଷ୍ଟ ଭାବରେ ଚଳେ। କିନ୍ତୁ ମୁଁ ପ୍ରକୃତ ତା ନୁହେଁ, ମୁଁ ଭାରି ଦୁଷ୍ଟ, ଭାରି ରାଗୀ, କଡ଼ା ମିଜାଜୀ। ମୋତେ କେବଳ ମୋର ମା'ହିଁ ଜବଦ କରିବାର ଲୋକ। କଥାରେ ହଉ ବା ମାଡ଼ରେ ହଉ, ଯେ କୌଣସି ଉପାୟରେ ହଉ, ସେହି ଏକା ମୋତେ ଆୟତ୍ତ କରିବାର ଲୋକ। ବାବା ତ ଅତି ଶାନ୍ତିପ୍ରିୟ ଲୋକ। ସେ ମୋତେ କଥାରେ ଯାହା ଆୟତ୍ତ କରନ୍ତି, ମୁଁ ତାଙ୍କ କଥାକୁ ଭୟ କରେ, କଥା ମାନେ, ବେଳେବେଳେ ମାନେ ନା, କିନ୍ତୁ ଯେତେବେଳେ ବାବାଙ୍କ କଥା ମାନି ନାହିଁ ତା'ର କୁଫଳ ଭୋଗିଛି। ବାବା କେଭେ ମୋତେ ମାରନ୍ତି ନାହିଁ। ମୁଁ ଡାକ୍ତରୀ ପଢ଼ିବି ବୋଲି ଶୁଣି ବଡ଼ ଭଉଣୀ ଦିନେ ମୋତେ କହିଲେ, ତୁ ଯଦି ଡାକ୍ତରୀ ପଢ଼ିବୁ, ଏ ଘର କେମିତି ଚଳିବ? ମୁଁ ବଡ଼ ଭଉଣୀଙ୍କର ଏକଥା ଶୁଣି କହିଲି, ତୁମେ କାହିଁକି ବଡ଼ ଝିଅ ହେଇଅଛ? ମନେକର ତୁମର ସାନଭାଇ ବୋଲି କେହି ନାହିଁ। ବାବା, ମା'ଙ୍କର ଭାର ତୁମରି ଉପରେ, ତୁମେ ହିଁ ତାଙ୍କର ଏକମାତ୍ର ସନ୍ତାନ।

ବଡ଼ ଭଉଣୀ ମୋର ଏ ଉତ୍ତର ଶୁଣି ଚୁପ ରହିଗଲେ। ଆମର ଯେତେ ଆତ୍ମୀୟସ୍ୱଜନ, ମୁଁ ପ୍ରାୟ

ସମସ୍ତଙ୍କ ଉପରେ ରାଗି ଥାଏ । ଏମାନେ ସୁଖର ସାଥୀ । ଆସୁଛନ୍ତି, ରହୁଛନ୍ତି, ଖାଉଛନ୍ତି, ନଉଛନ୍ତି, ଚର୍ଚ୍ଚା ହଉଛନ୍ତି କିନ୍ତୁ ଦୁଃଖ ବେଳେ, ଅଭାବବେଳେ କେହି ଟିକିଏ ସାହାଯ୍ୟ କରିବାକୁ ନାହାନ୍ତି । ବାବାଙ୍କ ହାତରେ ଅର୍ଥ ନଥିବା ଯୋଗୁଁ, ମୁଁ ପାଠ ଛାଡ଼ି ବୁଲିଛି । ଯେତେବେଳେ ପରୋକ୍ଷରେ ଆମକୁ ପରିହାସ କରିବାକୁ ଏମାନେ ମଧ ପଛେଇ ନାହାନ୍ତି । ବାବା ତ ନୀରିହ ଲୋକ, କାହାରିକୁ କିଛି କହନ୍ତି ନାହିଁ । ଯା ହେଲା ନିଜେ ସହ୍ୟ କରିଯାନ୍ତି । ମୁଁ କିନ୍ତୁ ଆମର ଆତ୍ମୀୟସ୍ୱଜନଙ୍କ ବ୍ୟବହାର ସହି ପାରିଲି ନାହିଁ । ମୁଁ ଏଣିକି ବଡ଼ ହେଲାରୁ ମୋର ମୁହଁ ଖୋଲିଗଲା । ମୁଁ କଥାଏ ଦି'କଥା ଯାହାକୁ ଯେମିତି କହିବାରେ ବାକି ରଖିଲି ନାହିଁ । ମୁଁ ଦେଖିଲି ଯେଉଁମାନେ ଦୁଃଖ ବେଳେ ଅନେଇ ଯାଇ ନାହାନ୍ତି, ସେମାନେ ପୁଣି ଆସି ପୂର୍ବ ଭଳି ଆସ୍ଥାନ ଜମେଇଲେଣି । ମୋର ମା' ଏବଂ ମୁଁ ଏଣିକି ଅନେକ ବନ୍ଧୁବାନ୍ଧବଙ୍କୁ ଅନେକ କଥା ଶୁଣେଇବାରେ ବାକି ରଖିଲୁ ନାହିଁ । ବାବା କିନ୍ତୁ ନିରବ । ଯେଉଁମାନେ ତାଙ୍କ ଉତ୍କଟ ଅଭାବ ବେଳେ ବିଶ୍ୱାସଘାତ କରିଛନ୍ତି, ସେମାନଙ୍କୁ ପୂର୍ବ ଭଳି ସମ୍ମାନ, ଆଦର ଆପ୍ୟାୟନ । ବାବାଙ୍କ ଏ ଆଦର୍ଶ ଅବଶ୍ୟ ଶିକ୍ଷଣୀୟ, ଗ୍ରହଣୀୟ ତଥାପି ସବୁ ବୁଝିଲେ ସୁଦ୍ଧା ମୁଁ ଏବଂ ମା କାହିଁକି ଆଉ ସହି ପାରିଲୁ ନାହିଁ । ଦି'କଥା ସେମାନଙ୍କୁ ଚେତେଇ କହିବାକୁ ବାଧ ହେଲୁ ।

କେବଳ ମୋର ମାମୁଁ ଘରର ଲୋକଙ୍କୁ ଛାଡ଼ି । ତାଙ୍କର ଅବସ୍ଥା ଯଦି ଆଗ ଭଳି ସ୍ୱଚ୍ଛଳ ଥାନ୍ତା, ମୋତେ ପାଠ ଛାଡ଼ି ବୁଲିବାକୁ ହେଇନଥାନ୍ତା । ତାଙ୍କର ଅବସ୍ଥା ମଧ ଖରାପ ହେଇ ଯାଇଥାଏ । ଆଗର ଐଶ୍ୱର୍ଯ୍ୟ ପ୍ରାୟ ଅସ୍ତମିତ ଅବସ୍ଥାରେ ।

ମୁଁ ମେଡ଼ିକାଲ ସ୍କୁଲରେ ପଢ଼ିବି ବୋଲି ଶୁଣି ମୋର ବନ୍ଧୁ ଜର୍ଜ ପଟ୍ଟନାୟକ (ଏବେ ଦନ୍ତ ଚିକିତ୍ସକ ଡାକ୍ତର ଜର୍ଜ ପଟ୍ଟନାୟକ ବୋଲି ସର୍ବସାଧାରଣରେ ପରିଚିତ) ମୋତେ କହିଲେ, ପୁଳିନ ବାବୁ, ରେଭେନ୍‌ସା କଲେଜରୁ ଖଣ୍ଡେ game certificate ନେଇ ଯାଇଥିବ । ଯେତେବେଳେ ମେଡ଼ିକାଲ ସ୍କୁଲରେ apply କରିବ ସେ game certificateର ଖଣ୍ଡେ true copy ତା' ସହିତରେ ଦେଇଥିବ । Game certificate ଦେଇଥିଲେ admission ନେବାକୁ ସହଜ ହେବ । ମୁଁ ମଧ ମେଡ଼ିକାଲ ସ୍କୁଲର Superitendent ଙ୍କୁ ତୁମର admission ଯେମିତି ହୁଏ କହିଥିବି ।

ଏଣୁ ଜର୍ଜ ପଟ୍ଟନାୟକଙ୍କ ନିର୍ଦ୍ଦେଶାନୁଯାୟୀ ମେଡିକାଲ ସ୍କୁଲରେ admission ପାଇଁ ଯେତେବେଳେ application ଦେଲି, ତା'ସହିତରେ ଅନ୍ୟାନ୍ୟ ପ୍ରମାଣପତ୍ର ସହ game certificateର ଖଣ୍ଡେ ପ୍ରମାଣପତ୍ର ଦେଇଥିଲି । ଜର୍ଜ ପଟ୍ଟନାୟକଙ୍କ ସହିତରେ ରେଭେନ୍‌ସା କଲେଜରେ ପଢ଼ିବା ପୂର୍ବରୁ ମୋର ପରିଚୟ ଥିଲା । ପରିଚୟଟା ଖେଳ ପାଇଁ । ସେ ମୋ ଆଗରୁ ରେଭେନ୍‌ସା କଲେଜରେ ପଢୁଥିଲେ । ସେ ଯେତେବେଳେ ରେଭେନ୍‌ସା କଲେଜ ଟିମ୍‌ରେ ଖେଳୁଥିଲେ ମୁଁ ତାଙ୍କ ବିରୁଦ୍ଧରେ Rovers Team ତରଫରୁ ଖେଳିଛି । Football matchରେ ତାଙ୍କ ସହିତ ଅନେକ ଧସ୍ତାଧସ୍ତି, ସଂଘର୍ଷ ହୋଇଛି । ମୁଁ ରେଭେନ୍‌ସା କଲେଜ ଛାଡ଼ି Medical Schoolରେ ପଢ଼ିବାକୁ ଯିବା ପୂର୍ବରୁ ସେ ରେଭେନ୍‌ସା କଲେଜ ଛାଡ଼ି Medical School ରେ ପଢୁଥିଲେ । ମୁଁ Medical School ରେ ନାଁ ଲେଖାଇବା ବେଳକୁ ସେ Medical School football teamର captain ଥିଲେ । ପରେ ମୁଁ ଯାହା ଦେଖିଛି, ସେ Medical Schoolର football teamର captain ହବାର ଜଣେ ଯୋଗ୍ୟ ବ୍ୟକ୍ତି । ତାଙ୍କ ବିଷୟରେ ଗୋଟାଏ ଘଟଣା ପରେ ବର୍ଣ୍ଣନା କରିବି ।

ମୁଁ Medical Schoolରେ ଡାକ୍ତରୀ ପଢ଼ିବାକୁ ଯିବାର ସ୍ଥିର ହବା ପୂର୍ବରୁ ଦିନେ ମା' ମୋ ପାଖରେ ବସି ମୋତେ ବୁଝେଇଲେ, ଦେଖ, ତୁ ଡାକ୍ତରୀ ପାଠ ପଢ଼ ନା, ମୁଁ ଏତେ ପବିତ୍ର ଭାବରେ ଘର ଚଳଉଛି, ତୁ ଡାକ୍ତରୀ ପଢ଼ିଲେ ମୁର୍ଦ୍ଦାର ଛୁଆଁ ହେଇ ଆସି ଘରେ ପଶିବୁ । ସବୁ ଅପବିତ୍ର ହବ । ତୁ ସେ ପାଠ ପଢ଼ ନା, ମୋର କଥା ମାନ ।

ମୁଁ ମା'ଙ୍କର ଏ ଧରଣର କଥା ଶୁଣି ଭାବିଲି ବାବାଙ୍କଠାରୁ ଶୁଣିଥିଲି, ତାଙ୍କର ମା' (ମୋର ବୁଢ଼ୀ ମା') ତାଙ୍କୁ ମଧ ଏମିତି ବାଧା ଦେଇ କହିଥିଲେ, ତୁ ଡାକ୍ତରୀ

ପଢ଼ିଲେ, ମୁଁ ବେକରେ ଦଉଡ଼ି ଦେଇ ମରିବି । ମୋର ମା' ବର୍ତ୍ତମାନ ସେମିତି କଥା ଉତ୍‌ଥାପନ କଲେଣି । କ'ଣ କରିବି ? ବଡ଼ ଚିନ୍ତାରେ ପଡ଼ିଲି । କ'ଣ କଲେ ମୁଁ ମେଡ଼ିକାଲରେ ପଢ଼ି ପାରିବି ? ଭାବିଲି, ବାବା ଯେ ତାଙ୍କ ମା'ଙ୍କ କଥା ରକ୍ଷା କରି ଡାକ୍ତରୀ ପଢ଼ିଲେ ନାହିଁ । ତା'ର ଫଳ କ'ଣ ହେଲା ? ଜୀବନ ସାରା ଅର୍ଥାଭାବ ଭୋଗିଲେ । ତାଙ୍କ ସମୟରେ ପଢ଼ିଥିଲେ କେତେ କ'ଣ କରି ପାରିଥାନ୍ତେ । ବାବା ଯେତେବେଳେ ଡାକ୍ତରୀ ପଢ଼ିବାକୁ ମନ କରିଥିଲେ, ସେତେବେଳେ L.M.P. ପାଠ ଶେଷ କରିବାକୁ ମୋଟେ ଦି'ବର୍ଷ ଲାଗୁଥିଲା । ସେତେବେଳେ ଯେଉଁମାନେ ଡାକ୍ତରୀ ପଢ଼ିଥିଲେ ତାଙ୍କ ଅବସ୍ଥା ତ ବର୍ତ୍ତମାନ କେତେ ସ୍ୱଚ୍ଛଳ ! ସେମାନେ କେତେ ଧନ, ସମ୍ପତ୍ତି କରି ପାରିଛନ୍ତି । ବାବାଙ୍କର ଅବସ୍ଥା କ'ଣ ? ମୁଁ ଗୋଟାଏ ପୁଅ । ମୋତେ ପଢ଼େଇବାକୁ ଅର୍ଥ ନଥିବା ଯୋଗୁଁ ମୁଁ ପାଠ ଛାଡ଼ି ବୁଲିଛି । ବାବା ତ ସେତେବେଳେ ଅଳ୍ପ ଖର୍ଚ୍ଚରେ ଡ଼ାକ୍ତର ହେଇ ପାରିଥାନ୍ତେ । ସେତେବେଳେ ଜଣେ ଡାକ୍ତରର ପାଠ ପଢ଼ିବା ପାଇଁ ସରକାରଙ୍କ ତରଫରୁ ଅନେକ ସୁବିଧା ଦିଆ ଯାଉଥିଲା । ବାବାଙ୍କର ଆଜିର ଏ ଅବସ୍ଥା କେବଳ ତାଙ୍କର ମା'ଙ୍କର କଥା ରକ୍ଷା କରି । ପୁଅ ଡାକ୍ତରୀ ପଢ଼ିଲେ ମା' ବେକରେ ଦଉଡ଼ି ଦେବେ, ଏ କି କଥା ? ମୁଁ ତ ପୁଣି ଅର୍ଥାଭାବରେ କମ୍ପାଉଣ୍ଡରୀ ପାଠ ପଢ଼ିଛି । କେତେ ମୁର୍ଦ୍ଦାର ଛୁଆଁ ହେଇ ତ ଘରେ ବସିଛି । ସେତେବେଳେ ଆଉ ଘରର ପବିତ୍ରତା ନଷ୍ଟ ହେଇଗଲା ନାହିଁ । ଏସବୁ ମା'ଙ୍କର ଗୋଟାଏ ଅବାନ୍ତର କଥା । ମୁଁ ଠିକ୍ କଲି ଡାକ୍ତରୀ ପଢ଼ିବି । ମୁଁ ମା'ଙ୍କୁ ପରିଷ୍କାର କହିଲି, ମୁଁ ମେଡ଼ିକାଲ ପଢ଼ିବି, ଘରେ ପବିତ୍ରତା ଥାଉ କି ଅପବିତ୍ର ହଉ, ମୁଁ ସେସବୁ ମାନେନା ।

ମା'ମୋ ମୁହଁରୁ ଏମିତିଆ କଥା ଶୁଣି ରାଗରେ କହିଲେ, ତୁ ମୋ କଥା ମାନିବୁ ନାହିଁ ? ହଉ, ତୁ ମେଡ଼ିକାଲ ପଢ଼, ମୁଁ କହୁଛି, ତୁ ପାରିବୁ ନାହିଁ, ଫେଲ୍ ହେଇ ଆସିବୁ । ମା'ଙ୍କ ମୁହଁରୁ ଏ ଅଭିଶାପ ପରି କଥା ଶୁଣି ମୁଁ ମା'ଙ୍କ ଉପରେ ଭାରି ବିରକ୍ତ ହେଇ କହିଲି, ତୁମେ ଯଦି ଏକଥା କହିବ ମୁଁ ଆଉ କ'ଣ କରିବି ? ପୁଣି ରାଗରେ କହିଲି, ଫେଲ୍ ହେଲେ ହେବି ପଛେ, ମୁଁ ମେଡ଼ିକାଲ୍‌ରେ ପଢ଼ିବି । ମା'ଙ୍କୁ ପୁଣି କହିଲି, ତୁମ ପରି ଲୋକ ସବୁ ଯେଉଁ ଘରେ ଥିବେ, ସେଠି କିଛି କରି ହେବ ନାହିଁ ।

ମା' ମଧ ରାଗରେ କହିଲେ, ହଉ ପଢ଼, ତୋ ଇଚ୍ଛା । ମୋ ମନ ଟିକିଏ ଦବି ଗଲା ମା'ଙ୍କ କଥା ଶୁଣି, ତୁ ପାରିବୁ ନାହିଁ, ଫେଲ୍ ହେଇ ଆସିବୁ । ମୁଁ ଭାବିଲି, ସତେ ଯଦି ନ ପାରେ, ଫେଲ୍ ହେଇ ଆସେ, ମା'ତ ପରିହାସ କରିବେ । ପୁଣି ଭାବିଲି ହଉ, ଆଗେ admission ହଉ, ତା'ପରେ ଦେଖାଯିବ । ମୋର admission ବିଷୟରେ ମୁଁ ନିଶ୍ଚିନ୍ତ ହେଇଥାଏ କାରଣ କମ୍ପାଉଣ୍ଡରୀ ପାସ୍ କରିଛି, I.Sc.ପାଠ ଶେଷ କରିଛି ପୁଣି football player ହିସାବରେ ମଧ ମୋ ପାଇଁ ନିଶ୍ଚୟ ଅଲଗା ବିଚାର ହେବ । କାରଣ ସେତେବେଳେ Medical School ରେ ଯେ football player ତା ପାଇଁ ଅଲଗା ବିଚାର ହେଇ ତାକୁ ନିଆ ଯାଉଥିଲା, ଯେ theatre ରେ ଭଲ ଅଭିନୟ କରିପାରୁଥିଲା ତାକୁ ନିଆଯାଉଥିଲା । ଆଉ ଯାର ଭଲ academic career ଥିଲା, ତାକୁ ନିଆ ଯାଉଥିଲା । ସେତେବେଳେ L.M.P. ପାଠ ପଢ଼ିବା ପାଇଁ ସର୍ବ ନିମ୍ନ ଯୋଗ୍ୟତା ଥିଲା matric, ମୁଁ ତ I.Sc. ପରେ ନାଁ ଲେଖେଇବା ପାଇଁ ଦରଖାସ୍ତ କରିଥାଏ । ମୋର admission ନ ହବ କାହିଁକି ? ସେତେବେଳେ ବିହାର, ଓଡ଼ିଶା ଏକତ୍ର ଥାଏ । ଓଡ଼ିଶାରେ କଟକରେ ଗୋଟିଏ Medical School, ଆଉ ବିହାରର ଦରଭଙ୍ଗାରେ ଗୋଟିଏ Medical School ଥାଏ । ଏମିତି ବିହାର, ଓଡ଼ିଶାରେ ମାତ୍ର ଦୁଇଟି Medical School ଥାଏ । କଟକ ମେଡ଼ିକାଲ ସ୍କୁଲରେ ନାଁ ଲେଖେଇବା ପାଇଁ ଭାରି ଭିଡ଼ ହଉଥାଏ କାରଣ ବିହାରରୁ ପିଲାମାନେ ଆସି କଟକ Medical Schoolରେ ନାଁ ଲେଖେଇବା ପାଇଁ ଚେଷ୍ଟା କରୁଥାନ୍ତି । ଆଉ କେତେକ ପଢୁଥାନ୍ତି ମଧ । ମୁଁ Medical School ରେ କେବେ admission ହବ, ତା'ରି ଅପେକ୍ଷାରେ ରହିଥାଏ ।

## (୬)

କିଛିଦିନ ପରେ Medical Schoolରୁ ଚିଠି ଆସିଲା-ଅମୁକ ତାରିଖରେ, ଅମୁକ ବେଳେ ଆସି ଦେଖା କର। ତାରିଖଟା ଠିକ୍ ମୋର ମନେ ନାହିଁ। କିନ୍ତୁ ୧୯୩୩ ମସିହା ଜୁନ୍ ମାସ, Medical School managing committe ଆଗରେ ମୋତେ ହାଜର ହବାକୁ ହବ। ସେମାନେ ସ୍ଥିର କରିବେ ବଛାବଛି ଲାଗି କିଏ ଯୋଗ୍ୟ, କା'ର ଯୋଗ୍ୟତା ନାହିଁ। ମୋର admission ପାଇଁ ମୁଁ ତ ନିଶ୍ଚିନ୍ତ ଥାଏ। ଏଣୁ ଚିଠି ଖଣ୍ଡେ ପାଇ, ବିଶେଷ ଖୁସି ହେଲି, ବାବା ମଧ ଖୁସି ହେଲେ। କିନ୍ତୁ ମା' ନୁହନ୍ତି, ସେ ବିମର୍ଷ ଥାନ୍ତି। ମୋର ବେଶି ଖୁସି ହବାର କାରଣ-ଏମିତି ଦିନେ କମ୍ପାଉଣ୍ଡରୀ ପଢ଼ିବା ପାଇଁ ଚିଠି ଆସିଥିଲା। ତା'କୁ ଲୁଚେଇ ଦେଇଥିଲି କାଳେ ମା' ଜାଣିବେ। ମା' ମଧ ମୋ ସାଙ୍ଗରେ ଲଗେଇଥିଲେ କ'ଣ ସେ ଚିଠି ଆସିଲା ଦେଖା ମୋତେ। ମୁଁ ଦେଖେଇଲି ନାହିଁ। କାରଣ କମ୍ପାଉଣ୍ଡରୀ ପଢ଼ିବା ପାଇଁ ବାବା, ମା'ଙ୍କୁ ନ ଜଣେଇ ଦରଖାସ୍ତ କରିଥିଲି। ବର୍ତ୍ତମାନ ଡାକ୍ତରୀ ପଢ଼ିବା ପାଇଁ ବଛାବଛି ଲାଗି ଏ ଯେଉଁ ଚିଠି ଆସିଛି, ଯାଙ୍କୁ ଆଉ ଲୁଚେଇବାର ଦରକାର ପଡ଼ିଲାନି, ସମସ୍ତେ ଜାଣିଥିଲେ ମୁଁ ଡାକ୍ତରୀ ପଢ଼ିବା ପାଇଁ ଦରଖାସ୍ତ କରିଥିଲି।

ଚିଠିରେ ଯେଉଁ ତାରିଖ, ଯେଉଁ ସମୟ ଦିଆ ହେଇଥିଲା managing committe ଆଗରେ ହାଜର ହବାକୁ, ଠିକ୍ ସେହିଦିନ ଠିକ୍ ସମୟରେ Medical Schoolର ନୂଆ ଦୋ ତାଲା ଅଫିସ୍ ଘରର ତଳ ମହଲାରେ ଦୁଆର ମୁହଁରେ ଯାଇ ପହଞ୍ଚ ଦେଖେ ମୋ ପରି କେତେ ଭେଣ୍ଡିଆ ଗଦା ହେଇଛନ୍ତି। ଓଡ଼ିଶାର ଅଧିକାଂଶ ଜାଗାରୁ ଏବଂ ବିହାରରୁ ମଧ ପିଲାଏ ଆସିଛନ୍ତି, ଝିଅ ପିଲା ମଧ କେତେକ ଆସିଛନ୍ତି।

ଅଫିସ୍ ଘରର ତଳ ମହଲାରେ managing committe memberମାନେ ବସିଥାନ୍ତି। Head clerk କେତେ file ପତ୍ର ନେଇ ଏପଟ, ସେପଟ ଇସର ପସର ହଉଥାନ୍ତି। ସମୟଟା କେମିତି ଗୋଟାଏ ସରଗରମ ଜଣା ଯାଉଥାଏ। ମୋତେ କିଛି ଜଣା ଯାଉ ନଥାଏ କାରଣ ମେଡ଼ିକାଲ ସ୍କୁଲ ହତାରେ ତ ୯ମ ଶ୍ରେଣୀରେ ପଢ଼ିବାବେଳୁ ଆତଯାତ, ପୁଣି ଦିନେ କମ୍ପାଉଣ୍ଡରୀ ପାଠ ପଢ଼ିବା ପାଇଁ ବଛାବଛି ଲାଗି ଏମିତି କେତେ ପିଲାଙ୍କ ସାଥିରେ ଏଇ ହତା ଭିତରେ ବୁଲିଛି।

ଓଡ଼ିଶା ଏବଂ ଓଡ଼ିଶା ବାହାରୁ ବିହାରରୁ ଯେଉଁମାନେ ଆସିଥାନ୍ତି ସମସ୍ତେ ଦଳ ଦଳ ହେଇ ଗପ କରୁଥାନ୍ତି, ସମସ୍ତଙ୍କ ଗପର ବିଷୟ ବସ୍ତୁ ହେଲା admission ହବ କି ନା? Managing committe memberମାନଙ୍କ ସାଥୀରେ ଦେଖା କରିବା ପାଇଁ ଗୋଟିକ ପରେ ଗୋଟିକୁ ଡ଼କରା ଚାଲିଲା। ଜଣେ clerk ଆସି ନାଁ ଧରି ଡ଼ାକୁଥାନ୍ତି, ଜଣେ ଜଣେ ଯାଉଥାନ୍ତି, ଜଣେ ଜଣେ ଦେଖା କରି ଫେରି ଆସିଲା ବେଳକୁ ଅନ୍ୟ ପିଲାମାନେ ତାଙ୍କୁ ଘେରି ଯାଉଥାନ୍ତି, ପଚାରୁଥାନ୍ତି-କ'ଣ ପଚାରିଲେ? କ'ଣ କହିଲ? admission ହବାର ଆଶା ଅଛି ତ?

ମୁଁ ସେଠି ବୁଲାବୁଲି କରି ବୁଝିଲି Senior Cambrige, B.Sc., I.Sc. ପାସ୍ କରା, ଫେଲ୍ କରା ପିଲା ଅନେକ ଆସିଥାନ୍ତି Medical School ରେ ନାଁ ଲେଖେଇବା ପାଇଁ। ମୁଁ ମୋର admission ବିଷୟରେ ଯେତେ ନିଶ୍ଚିନ୍ତ ଥିଲେ ମଧ ତଥାପି ବେଳେବେଳେ ମନଟା କାହିଁକି ଦବି ଯାଉଥାଏ, କ'ଣ ହବ? Admission ହବ କି ନା?

ମୋ ନାଁ ଡକା ହେଲା, ଗଲି ଦେଖା କରିବାକୁ। ଖଣ୍ଡେ ଧୋତି, ଖଣ୍ଡେ ଟସର୍ ପଞ୍ଜାବୀ ପିନ୍ଧିଥାଏ। ବଡ଼ ନମ୍ର ଭାବରେ ଠିଆ ହେଲି। District Magistrate କେବଳ ମୋତେ ପଚାରିଲେ କେବେ matric ପାସ୍ କଲ? କେବେ I.Sc. ପାଠ ଛାଡ଼ିଲ? ଘର କେଉଁଠି? ଇମିତି କେତେଟା କଥା ପଚାରି ମୋତେ କହିଲେ ହଉ ଯାଅ। ମୁଁ ବିଦାୟ ନେଇ ଆସିଲି। ମନ ଭିତରେ କେତେକ କଥାର ଦ୍ୱନ୍ଦ୍ୱ ଚାଲିଲା। Managing committeର ଅନ୍ୟାନ୍ୟ member ମାନଙ୍କୁ ମୁଁ ପ୍ରାୟ ଅନେଇ ନାହିଁ। ଯା ପଚାରିଲେ, ତାରି ଉତ୍ତର ଦେଇ, ସିଧାସଳଖ ତଳ ମୁହାଁ ହେଇ ଫେରି ଆସିଲି। ସମସ୍ତଙ୍କର

ଯେତେବେଳେ interview ସରିଲା, ତା'ର କିଛି ସମୟ ପରେ କିଏ କିଏ ବଛା ହେଲେ, ତାଙ୍କର ନାଁ type କରି ନୋଟିସ୍ ବୋର୍ଡ଼ରେ ଟାଙ୍ଗି ଦିଆ ହେଲା । ସେ ନୋଟିସ୍ ବୋର୍ଡ଼ ସାମନାରେ ପିଲା ଗଦା ହେଇଗଲେ । ପ୍ରତ୍ୟେକ ନିଜ ନାଁ ଖୋଜି ପକେଇଲେ । ମୁଁ ମୋ ନାଁ ଖୋଜିବାକୁ ଦେଖେ ମୋ ନାଁ ସେଥିରେ ନାହିଁ । ଅର୍ଥାତ୍ ମୋର ହେଇ ନାହିଁ ବୋଲି ମୁଁ ଜାଣିଲି । ଆଉ ଯିବି କୁଆଡ଼େ ? ମନରେ ତ ଖୁବ୍ ନିଶ୍ଚିନ୍ତ ଥିଲି ଯେ ମୋର admission ରେ କୌଣସି ବାଧା ଉପୁଜିବ ନାହିଁ । କିନ୍ତୁ ଏ ହେଲା କ'ଣ ? କାହିଁକି ହେଲା ନାହିଁ ? କ'ଣ ତ୍ରୁଟି ରହିଲା ? ଏ ଜୀବନରେ ଆଉ ଡାକ୍ତରୀ ପଢ଼ି ପାରିବି ନାହିଁ । ଏମିତି ଭାବି ଭାବି ସମସ୍ତଙ୍କ ମଝିରୁ ଛତାଟିଏ ଧରି ଚୋର ପରି ଘରକୁ ଫେରିଲି । ମେଡ଼ିକାଲ୍‌ର ହତା, ଖେଳ ପଡ଼ିଆ, ମଙ୍ଗଳାବାଗର ଦୋକାନ ବଜାର ମୋତେ ଜଣାଗଲା ସବୁ ଯେମିତି ଝାପ୍‌ସା, ବିଷନ୍ନ, ମନସ୍ତାପର କୁହୁଡ଼ିରେ ଆଚ୍ଛନ୍ନ ।

ଘରେ ପହଞ୍ଚିବା ମାତ୍ରେ ବାବା ପଚାରିଲେ, କ'ଣ ହେଲା ? ମୁଁ ବିଷନ୍ନ ଭାବରେ ଉତ୍ତର ଦେଲି, ମୋର ହେଲା ନାହିଁ । ବାବା ମୋ କଥା ଶୁଣି ଟିକିଏ ମନ ଦୁଃଖରେ କିଛି ସମୟ ନିରବ ରହିଗଲେ । ମୁଁ ବସିପଡ଼ିଲି । ମା' କିନ୍ତୁ ବେଶ୍ ଖୁସି ଯେ ମୋର ହେଇ ନାହିଁ । ବାବା ମୁଁ ବସି କେତେକ କଥାର ଆଲୋଚନା କଲୁ । କାହିଁକି ହେଲା ନାହିଁ ? କାରଣ କ'ଣ ? ଏମିତି ଆଲୋଚନା କରୁଛୁ, ମା' ଭାତ ବାଢ଼ିବାକୁ ଯାଉଛନ୍ତି, ଏଇ ସମୟରେ ବାହାରେ କିଏ "ପୁଲିନ୍" ବୋଲି ଡ଼ାକିବାର ଶୁଣାଗଲା । ମୁଁ ଉଠିଯାଇ ବାହାର କବାଟ ଖୋଲି ଦେଖେ, ମୋର I.Sc. ପଢ଼ିବା ବେଳର ଦୁଇ ଜଣ ସାଙ୍ଗ, କଲ୍ୟାଣ କୁମାର ଗୁପ୍ତ ଓ ଶାନ୍ତିମୟ ସେନ୍ ସାଇକଲ୍ ଧରି ଠିଆ ହେଇଛନ୍ତି । ମୁଁ ତାଙ୍କୁ କାରଣ ପଚାରିଲା ବେଳକୁ, ସେମାନେ କହିଲେ-ତୋତେ ବାନାର୍ଜୀ ବାବୁ ଡାକିଛନ୍ତି, ତୁ ଯାଇ ତାଙ୍କ ସାଙ୍ଗରେ ଦେଖା କରିବୁ । ଆମକୁ ବାନାର୍ଜୀ ବାବୁ ପଠେଇଛନ୍ତି, ତୋତେ ଏ କଥା ଜଣେଇବା ପାଇଁ ।

ମୁଁ ସେମାନଙ୍କୁ କହିଲି, ହଉ, ମୁଁ ଯାଉଛି ବର୍ତ୍ତମାନ ଦେଖା କରିବି । ସେମାନେ ଚାଲିଗଲେ । ମୁଁ ଘର ଭିତରକୁ ଯାଇ ବାବାଙ୍କୁ କହିଲି, ମୋତେ କାହିଁକି ବାନାର୍ଜୀ ବାବୁ ଡ଼ାକିଛନ୍ତି ତାଙ୍କ ସାଥୀରେ ଦେଖା କରିବା ପାଇଁ । ବାବା ପଚାରିଲେ, ବାନାର୍ଜୀ ବାବୁ କିଏ ? ମୁଁ କହିଲି, ମୁଁ ବାନାର୍ଜୀ ବାବୁଙ୍କ ପୁରା ନାଁ ଜାଣି ନାହିଁ, ତାଙ୍କୁ ସମସ୍ତେ ବାନାର୍ଜୀ ବାବୁ ବୋଲି ଡ଼ାକନ୍ତି । ସେ ହଉଛନ୍ତି Medical School ର deputy superitendent । ବାବା କହିଲେ, ବୋଧହୁଏ, ତୋର admission ସଂକ୍ରାନ୍ତରେ କ'ଣ ହେଇଛି, ବୁଝିଆ ଯା ।

ମୁଁ ଆଉ ଖାଇ ବି କ'ଣ ? ସାଙ୍ଗେ ସାଙ୍ଗେ ସାଇକଲ୍ ଧରି ବାହାରିଲି ବାନାର୍ଜୀ ବାବୁଙ୍କ ସଙ୍ଗେ ଦେଖା କରିବା ପାଇଁ । ମୁଁ ଯାଇ Medical School ଅଫିସ୍‌ରେ ପହଞ୍ଚି ଦେଖେ ବାନାର୍ଜୀ ବାବୁ ତାଙ୍କ ଘରକୁ ଗଲେଣି । ମୁଁ head clerk ଙ୍କୁ ଦେଖା କରି ପଚାରିଲି, ମୋତେ ବାନାର୍ଜୀ ବାବୁ କାହିଁକି ଡକେଇଥିଲେ ଦେଖା କରିବା ପାଇଁ ? Head clerk କହିଲେ, ହଁ, ସେ ତ ଚାଲିଗଲେଣି, ତୁମେ କାଲି ସକାଳେ ଆସି ତାଙ୍କ ସଙ୍ଗେ ଦେଖା କରିବ ।

ମୁଁ ଘରକୁ ଫେରି ବାବାଙ୍କୁ ସବୁ କଥା କହିଲି । ବର୍ତ୍ତମାନ ଏ head clerk ଙ୍କ କଥା ଟିକିଏ କହେ । ତତ୍କାଳୀନ ଏ head clerk ହଉଛନ୍ତି ଆମର ବନ୍ଧୁବାନ୍ଧବ । ଗୌରୀଶଙ୍କର ରାୟଙ୍କ ଝିଅର ପୁଅ, ନାତି । ଏଣୁ ବାବାଙ୍କର ମଧ୍ୟ ନାତି ସମ୍ପର୍କୀୟ, ଚିହ୍ନାଜଣା । ବାବାଙ୍କୁ ଅଜା ବୋଲି ଭାରି ସମ୍ମାନ କରନ୍ତି । କିନ୍ତୁ ଯାଙ୍କ କାର୍ତ୍ତି-ଅଖା ଧୋଉଥିବ, ଗୁଣ ଗାଉଥିବ । ଏ ଆମର ବନ୍ଧୁବାନ୍ଧବ ହେଲେ କ'ଣ ହବ ? ଏ ଆମରି ପରି ଓଡ଼ିଶାର ବହୁକାଳର ବାସିନ୍ଦା ବଙ୍ଗାଳୀ, କିନ୍ତୁ ଏ ଚାହାନ୍ତି ନାହିଁ ଯେ ଆମ ଓଡ଼ିଶାର ବାସିନ୍ଦା ବଙ୍ଗାଳୀଙ୍କ ଭିତରୁ କେହି ମୁଣ୍ଡ ଟେକୁ କି ବଡ଼ ହଉ । ମୋର Medical School ରେ ଡ଼ାକ୍ତରୀ ପଢ଼ିବା ପାଇଁ ଦରଖାସ୍ତ କରିବା ଦିନଠୁଁ ଯାଙ୍କ ବ୍ୟବହାରରେ ମନରେ ଆଘାତ ପାଇ ଯେତେଥର ଯାଙ୍କ ବିରୁଦ୍ଧରେ ବାବାଙ୍କ ଆଗରେ ଅଭିଯୋଗ କରିଛି, ସେତେଥର ବାବା ମୋତେ ଗାଳି ଦେଇ କହିଛନ୍ତି, ନା, ସେ ଭଲ ମଣିଷ, ତୁ ନିଜେ କଳିହୁଡ଼ା, ଯେଉଁଠି ଯିବୁ ତୋର ଗୋଟାଏ କଳିଗୋଳ କରିବା ପ୍ରକୃତି । ସେ ସେମିତି ଲୋକ ନୁହେଁ ।

ବାବା ତାଙ୍କ ବିରୁଦ୍ଧରେ ମୋର ଅଭିଯୋଗକୁ ଆଦୌ ବିଶ୍ୱାସ କରନ୍ତି ନାହିଁ। ମୁଁ ଓଲଟା ଗାଳି ଖାଇ ଚୁପ୍ ରହେ। ମୋର ଯେ ମେଡ଼ିକାଲ ସ୍କୁଲରେ admission ହେଲା ନାହିଁ, ଏଥିରେ ମୋର ସେହି head clerk କୁ ସନ୍ଦେହ। ତାଙ୍କରି କାର୍ଯ୍ୟ, ସେହି କ'ଣ ପେଞ୍ଚପାଞ୍ଚ କରିଛନ୍ତି। କାରଣ ଆମେ ତ ଓଡ଼ିଶାର ପୁରୁଣା ବାସିନ୍ଦା ବଙ୍ଗାଳୀ। ଏ ବିହାରର ବାସିନ୍ଦା ବଙ୍ଗାଳୀଙ୍କୁ ବରଂ ସାହାଯ୍ୟ କରିବେ, ଆମକୁ ନୁହେଁ।

ଏ head clerk ଙ୍କ ନାଁ ହେଉଛି, ଯାମିନୀ ବଲ୍ଲଭ ରାୟ, ଘର ଯାଜପୁର। ଏ ଅନେକ ଦିନ ମେଡ଼ିକାଲ ସ୍କୁଲରେ head clerk ଭାବେ ଚାକିରୀ କରୁଥିଲେ। କିନ୍ତୁ ପରେ ଯାଙ୍କ ପରିଣାମ ଯା ହେଲା, ସ୍ଥଳ ବିଶେଷରେ ସେ ସବୁ ସଂକ୍ଷେପରେ ବର୍ଣ୍ଣନା କରିବି। କାରଣ ଯାଙ୍କର ଗୁଣାବଳୀ ବିଷଦ ଭାବରେ ବର୍ଣ୍ଣନା କଲେ ଖଣ୍ଡିଏ ବଡ଼ ବହି ହେବ।

ସେଦିନ ବାନାର୍ଜୀ ବାବୁଙ୍କ ସଙ୍ଗେ ଦେଖା ନକରି ଫେରି ଆସି, ଖାଇ ସାରି ଘରେ ଚୁପଚାପ୍ ରହିଲି। ମେଡ଼ିକାଲ ସ୍କୁଲରେ admission ନହବା ଯୋଗୁଁ ଭାରି ଲଜ୍ଜାବୋଧ ହଉଥାଏ, କେବଳ ଭାବୁଥାଏ, କେତେବେଳେ ଆଜି ଦିନଟା ଗତ ହେବ, ରାତି ପାହିବ ମୁଁ ଯାଇ ବାନାର୍ଜୀ ବାବୁଙ୍କ ସଙ୍ଗେ ଦେଖା କରିବି।

ରାତି ପାହିଲା, ମୁଁ ନିତ୍ୟ କର୍ମ ସାରି ଚିକ୍କଣଚାକଣ ହେଇ ସକାଳୁ ମେଡ଼ିକାଲ ସ୍କୁଲ ଅଫିସରେ ବାନାର୍ଜୀ ବାବୁଙ୍କ ସଙ୍ଗେ ସଙ୍ଗେ ଦେଖା କରି କହିଲି ଆପଣ ମୋତେ କହିଥିଲେ, ଆଜି ଆପଣଙ୍କ ସଙ୍ଗେ ଦେଖା କରିବା ପାଇଁ। ତାଙ୍କର ମନେ ପଡ଼ିବାରୁ କହିଲେ-Yes, ପଚାରିଲେ Are you anxious to read in Medical School ? ମୁଁ ଭାବିଲି-ମୁଁ ତ ପଢ଼ିବା ପାଇଁ ଦରଖାସ୍ତ କରିଥିଲି, ଏ ପୁଣି କ'ଣ ଏକଥା ପଚାରୁଛନ୍ତି ? ମୁଁ ଉତ୍ତର ଦେଲି Yes Sir, ସେ ପୁଣି ପ୍ରଶ୍ନ କଲେ Which game do you prefer ? ମୁଁ ଉତ୍ତର ଦେଲି football, ସେ ପୁଣି ପ୍ରଶ୍ନ କଲେ, In which team did you play ? ମୁଁ ଉତ୍ତର ଦେଲି, In my school team, Ravenshaw College team, Rovers Team and Town team also. ସେ କିଛି ସମୟ କ'ଣ ଭାବି କହିଲେ, Then you do one thing, you submit one application in plain paper narrating your ambition to read in Medical School and get yourself admitted on the due date.

ତାଙ୍କର ନିର୍ଦ୍ଦେଶ ଅନୁସାରେ ମୁଁ ଖଣ୍ଡେ ସାଦା କାଗଜରେ ସାଙ୍ଗେ ସାଙ୍ଗେ ଦରଖାସ୍ତ ଲେଖି ସେହି head clerk ଜିମା ଦେଇ ଆସିଲି। ତା'ପରେ ଯେତେବେଳେ ଘରକୁ ଫେରେ କି ଆନନ୍ଦ! କାଲି ଯେଉଁ ମେଡ଼ିକାଲ ପଡ଼ିଆ, ହତା, ମଙ୍ଗଳାବାଗ ବଜାର ବିଷାଦ କୁହୁଡ଼ିରେ ଆଚ୍ଛନ୍ନ ହେଇ ଅସ୍ପଷ୍ଟ ଦେଖା ଯାଉଥିଲା, ଯେଉଁ ବାଟ ଦେଇ ଛତା ଖଣ୍ଡିଏ ଧରି ଚୋର ପରି ଫେରିଥିଲି, ଆଜି ସେଇ ବାଟେ ମନର ଆନନ୍ଦରେ ଛାତି ଫୁଲେଇ ସବୁ ଜିନିଷ ସ୍ପଷ୍ଟ ଭାବରେ ଦେଖି ଦେଖି ଆସିଲି, ମନେ ହଉଥାଏ, କେତେବେଳେ ଏ ବାଟ ସରିବ? ଘରେ ପହଞ୍ଚି ବାବାଙ୍କୁ ଖବର ଦେବି ଯେ ମେଡ଼ିକାଲ ସ୍କୁଲରେ ମୋର admission ହବା ସ୍ଥିର ହେଇଗଲା। ବାଟ ସରିଲା। ଘରେ ପହଞ୍ଚିବା ମାତ୍ରେ ବାବା ପଚାରିଲେ, କ'ଣ ହେଲା? ମୁଁ ସବୁ କଥା ବର୍ଣ୍ଣନା କରି କହିଲି ଯେ ଯେଉଁ ତାରିଖ ସବୁ ପିଲାଙ୍କର admission ନବା ପାଇଁ ସ୍ଥିର ହେଇଛି, ସେହି ତାରିଖରେ admission ନବାକୁ ହବ। ବାବା କହିଲେ, ମେଡ଼ିକାଲରେ ପଢ଼ିବା ପାଇଁ ତ ଆଗରୁ ଦରଖାସ୍ତ ଦିଆଯାଇଥିଲା, ପ୍ରଥମେ କାହିଁକି ହେଲା ନାହିଁ? ପରେ ପୁଣି ଡ଼କେଇ, ଏତେ କଥା ପଚାରିବା ପରେ admission ନବା ସ୍ଥିର ହେଲା କାହିଁକି? ଏ ସବୁ କ'ଣ? କିଛି ତ ବୁଝା ଯାଉନି।

ମୁଁ କହିଲି, ସେ ଯାମିନୀ ବାବୁ କ'ଣ ପେଁଚପାଁଚ କରିଥିବ। ସେ ତ ଆମ domicile ବଙ୍ଗାଳୀଙ୍କର ଉନ୍ନତି ଚାହେଁ ନାହିଁ। ବାବା ମୋ ଉପରେ ବିରକ୍ତ ହେଇ କହିଲେ, ତୋର ଗୋଟାଏ ଅଯଥା ତା' ବିରୁଦ୍ଧରେ ଅଭିଯୋଗ, ସେ ଭାରି ଭଲ ମଣିଷ। ଯା' ହଉ, ବାବା ଭାରି ଖୁସି ହେଲେ। ମା' କିନ୍ତୁ ନିରବ, ବିମର୍ଷ।

ତା'ପରେ ଯେଉଁଦିନ admission ପାଇଁ ଧାର୍ଯ୍ୟ ହୋଇଥିଲା, ସେହିଦିନରେ ଟଙ୍କା ଧରି ଗଲି admission ପାଇଁ। ପୂର୍ବର କେତେ କଥା ମନେ ପଡୁଥାଏ। ଏଇ ହତାକୁ ଦିନେ ଆସିଥିଲି କମ୍ପାଉଣ୍ଡରୀ ପଢ଼ିବା ପାଇଁ, admission ନବାକୁ। ଏଇ ହତାରେ, medical ward, surgical ward, cholera ward, କେତେ compounding room ରେ night duty, day duty କରିଛି। Captain K. M. Rayଙ୍କ କଥା ମନେ ପଡୁଥାଏ। ତୁ matric pass କରି medical କୁ ଚାଲି ଆ, ଡାକ୍ତରୀ ପଢ଼, ଭଲ କରିବୁ। କମ୍ପାଉଣ୍ଡରୀ ପଢ଼ିବା ବେଳେ ଯେଉଁଦିନ ପ୍ରଥମେ cholera ward କୁ duty କରିବାକୁ ଆସେ, ମା କେତେ ଅନୁତପ୍ତ ନହେଉଛନ୍ତି। କେତେ ଦୁଃଖ କରିଛନ୍ତି। ସେତେବେଳେ ମା medical theatre ଦେଖିବା ପାଇଁ ନାରାଜ ହେଇ ଦୁଃଖ କରି କାନ୍ଦି କହିଥିଲେ, କୋଉ ସୁଖରେ ଯିବି ମେଡ଼ିକାଲ ଥିଏଟର୍ ଦେଖିବାକୁ? ମୁଁ କ'ଣ ଭାବିଥିଲି, ଶେଷରେ ମୋ ପୁଅ କମ୍ପାଉଣ୍ଡରୀ ପଢ଼ିବ? ମଝିଆ ଭଉଣୀ ହିରଣ୍ମୟୀ କଥା ମଧ ମନେ ପଡ଼ିଲା-କି ଦୁଃଖ ବେଳରେ ସେ ଭଉଣୀ ଆମକୁ ଛାଡ଼ି ଚାଲିଗଲା। ସେତେବେଳେ ମୁଁ ପାଠ ଛାଡ଼ି ବାଲୁଙ୍ଗା ହେଇ ବୁଲୁଥାଏ, ଇତ୍ୟାଦି ଇତ୍ୟାଦି ଅନେକ କଥା ମନେପଡୁଥାଏ।

ସେହି head clerk ଯାମିନୀ ବାବୁଙ୍କ ପାଖରେ admission ନବାକୁ ହେଲା। ନାଁ ଲେଖା ସରିଲା, ଟଙ୍କା ଦେଇ, ରସିଦ୍ ନେଇ ଘରକୁ ଫେରିଲି। ପୁଅ ପିଲା, ଝିଅ ପିଲା ମିଶି ଚାଳିଶ ଜଣ ପିଲା admission ନେଲେ। ମେଡ଼ିକାଲ ସ୍କୁଲରେ ମୋ ନାଁ ଲେଖାର ଜଞ୍ଜାଳ ତୁଟିଲା। ମେଡ଼ିକାଲ ସ୍କୁଲରେ admission ନବା ପାଇଁ ଦରଖାସ୍ତ କଲା ଦିନଠୁଁ ମୁଁ ବହି ଯୋଗାଡ଼ରେ ଲାଗି, ଦୁଇ ଖଣ୍ଡ ବହି ଯୋଗାଡ଼ କରି ରଖିଥିଲି। ଖଣ୍ଡେ Gray's Anatomy ଆଉ ଖଣ୍ଡେ Pharmacology, ତା'ପରେ ମନେ ମନେ ଭାବି ସ୍ଥିର କରିଥିଲି Medical School hostel ତ ଆମ ଘରକୁ ନିକଟ। ଏଣୁ medical hostel କୁ ଯାଇ ସାଙ୍ଗ ପିଲାଙ୍କୁ ବହି ମାଗି ପଢ଼ି ଚଳେଇ ଦେବି, ତା'ପରେ ଆଉ ଗୋଟାଏ ସମସ୍ୟା-ଗୋଟାଏ ମଣିଷର କଙ୍କାଳ ଯୋଗାଡ଼ କରିବାକୁ ହବ। Anatomy ପଢ଼ିବାକୁ ହେଲେ, ମଣିଷ ଶରୀରର ପ୍ରତ୍ୟେକ ହାଡ଼ ଦରକାର। ସେ ମଧ ସୌଭାଗ୍ୟକ୍ରମେ ଯୋଗାଡ଼ ହେଇଗଲା, କିଣିବାକୁ ପଡ଼ିଲାନି। ସେତେବେଳେ Medical School ରେ ଉଷାରଞ୍ଜନ ଦାସଗୁପ୍ତ ନାମକ 3rd year ରେ ଜଣେ ଛାତ୍ର ଥିଲେ, ତାଙ୍କ ବଡ଼ ଭାଇ C. R. Dasgupta ଙ୍କ ନିକଟରେ ବାବା ପୁରୀରେ P.H.D. ବିଭାଗରେ ଚାକିରୀ କରୁଥିଲେ, ଯେକି ପରେ ଆତ୍ମହତ୍ୟା କରିଥିଲେ। ସେତିକିବେଳେ ଉଷାରଞ୍ଜନ ଦାସଗୁପ୍ତଙ୍କ ସହିତରେ ବାବାଙ୍କର ପରିଚୟ ହୋଇଥିଲା। ଏଣୁ ମୋର Medical School ରେ admission ସରିବା ପରେ ବାବା ଯାଇ ତାଙ୍କ ସହିତରେ କଥାବାର୍ତ୍ତା କଲାରୁ ସେ ନିଜେ କହିଲେ ଯେ ତାଙ୍କର ଯେଉଁ skeleton ସେ ବ୍ୟବହାର କରୁଥିଲେ, ତାକୁ ମୋତେ ଦେଇଦେବେ। ଏଣୁ ମୋତେ ଆଉ skeleton କିଣିବାକୁ ପଡ଼ିଲାନି, କିଣିବାକୁ ମଧ ବଳ ନଥିଲା। କାରଣ ସେତେବେଳେ ଅତି ନିକୃଷ୍ଟ ଧରଣର skeleton ର ଦାମ୍ ଥିଲା ୧୦ଟଙ୍କା, ମଧମ ଧରଣର skeleton ର ଦାମ୍ ଥିଲା ୧୫ଟଙ୍କା, ଆଉ ଅତି ଉତ୍କୃଷ୍ଟ ଧରଣର skeleton ଯେ କି ପରିଷ୍କାର, ବାସି ଲୁଗା ପରି ସଫା ଦେଖିବାକୁ, ତା'ର ଦାମ୍ ଥିଲା ୨୦ଟଙ୍କା। ଆଉ ଗୋଟାଏ ମଣିଷର ପ୍ରତ୍ୟେକ ହାଡ଼ ଖଞ୍ଜା ଯାଇଥିବା skeleton ର ଦାମ୍ ଥିଲା ୮୦, ୯୦, ୧୦୦ ଟଙ୍କା। ଏବେ ତ ଅତି ନିକୃଷ୍ଟ ଧରଣର skeleton ର ଦାମ୍ ହେଉଛି ୫୦ଟଙ୍କା, ଆଉ ତା'ଉପରକୁ ୧୦୦, ୧୫୦ ଟଙ୍କା।

# ତୃତୀୟ ପର୍ବ
## (ଦ୍ୱିତୀୟ ଭାଗ)

ଯା ହଉ ମୋର skeleton ଯୋଗାଡ଼ ହୋଇଗଲା । ମୁଁ ଯାଇ ଉଷା ରଞ୍ଜନ ଦାସଗୁପ୍ତାଙ୍କଠାରୁ ନେଇ skeleton ଆସିଲି । କିନ୍ତୁ ଘରେ ଆଣି ବାବା, ମା'ଙ୍କୁ ଦେଖେଇଲା ପରେ ବାବା କିଛି କହିଲେ ନାହିଁ । ମା' କିନ୍ତୁ ଘରେ ପୁରେଇବାକୁ ନାରାଜ । ଶେଷକୁ ଆମର ବାହାର ଘରେ ଗୋଟାଏ କାଠ ବାକ୍ସରେ ରଖିଲି । ମା' କହିଲେ-ତୁ ଏଇ ବାହାର ଆଡ଼େ ଗାମୁଛା ପିନ୍ଧି ପଢ଼ିବୁ । ପଢ଼ିସାରି ଗାଧେଇ ଘରେ ପଶିବୁ । ନଚେତ୍ ଅଗାଧୁଆରେ କିଛି ଛୁଇଁ ପାରିବୁ ନାହିଁ ।

ବାହାର ଘରେ ଯେଉଁଠି ହାଡ଼ଗୁଡ଼ା ରଖା ହେଲା, ସଞ୍ଜ ପରେ ସେ ଘରେ ଏକା ଯିବାକୁ ସମସ୍ତେ ଭୟ କଲେ । ମୋତେ ମଧ୍ୟ ସେ ଘରଟା କେମିତି ଭୟ ଭୟ ଲାଗିଲା ।

ମେଡ଼ିକାଲ ସ୍କୁଲରେ ଅଳ୍ପ କିଛି ଦିନ ପରେ କ୍ଲାସ୍ ଆରମ୍ଭ ହେଲା । ଯେଉଁମାନେ admission ନେଇଥିଲେ, ସମସ୍ତେ ଏକଜୁଟ ହେଲେ । ମୁଁ ଦେଖିଲି କେତେକ ନୂଆ matric ପାସ୍ କଲା ପିଲା ନାଁ ଲେଖେଇଛନ୍ତି । ପୁଣି ମୋରି ପରି I.Sc.ରେ ଅକୃତକାର୍ଯ୍ୟ ହୋଇ କେତେକ ନାଁ ଲେଖେଇଛନ୍ତି । ବିହାରର ମଧ୍ୟ କେତେଜଣ ପିଲା ନାଁ ଲେଖେଇଛନ୍ତି । ଏମାନଙ୍କ ମଧ୍ୟରେ ଜଣେ B.Sc. 3rd year ର Ravenshaw Collegeର ଛାତ୍ର, ଆଉ ଜଣେ Senior Cambridge ପାସ୍ କଲା ପିଲା ମଧ୍ୟ ଥାଏ ।

ପ୍ରଥମେ anatomy class ଆରମ୍ଭ ହେଲା । ଆମେ ସମସ୍ତେ ଯାଇ anatomy classର gallery ରେ ବସିଲୁ । ଡାକ୍ତର ରାଜକିଶୋର ନନ୍ଦ ସେଦିନ ଆମକୁ ଉଦ୍‌ବୋଧନ ଭାଷଣ ଦେଲେ । ତାଙ୍କ ଭାଷଣର ଗୋଟାଏ କଥା ମୋର ଏ ପର୍ଯ୍ୟନ୍ତ ମନେ ଅଛି । "ଦିଲ୍ଲୀକା ଲଡୁ ଯୋ ଖାୟା ଓ ବି ପସ୍ତାୟା, ଯୋ ନେହି ଖାୟା ଓ ବି ପସ୍ତାୟା", ଅର୍ଥାତ୍ ଯେ Medical School କୁ ପାଠ ପଢ଼ିବାକୁ ଆସିଛି, ସେ ଭାବୁଛି କେମିତି ଏଠୁଁ ପାଠପଢ଼ି ପାସ୍ କରି ମୁକ୍ତି ପାଇ ଯିବି । ଯେ Medical School ରେ ପାଠ ପଢ଼ିବାର ସୁବିଧା ନପାଇଲା, ସେ ଭାବୁଛି-କେମିତି Medical School ରେ ପାଠ ପଢ଼ିବାର ସୁବିଧା ପାଇଥାନ୍ତା କି, ଡାକ୍ତରୀ ପାଠ ପଢ଼ି ଡାକ୍ତର ହେଇଥାନ୍ତା ।

ସେ ପୁଣି କହିଲେ-ଡାକ୍ତରୀ ପାଠ ଭାରି କଠିଣ, ଆଜିଠୁ ଲାଗିପଡ଼ । ଠିକ୍ ଭାବରେ ନପଢ଼ିଲେ, ଏଠୁ ପାସ୍ କରି ଯିବା ଭାରି କଷ୍ଟ, ଇତ୍ୟାଦି, ଇତ୍ୟାଦି, ଆହୁରି କେତେ କ'ଣ କହିଲେ । ସେଦିନ ଆଉ କିଛି ପାଠ ପଢ଼ା ହେଲାନି । ଆମେ ବାହାରିଲୁ dissection hall ଦେଖିବାକୁ, ଅର୍ଥାତ୍ ଯେଉଁ ଘରେ ମୁର୍ଦ୍ଦାର କଟା ହୁଏ । ଆମେ ଦଳକଯାକ ସେ ହଲ୍‌ରେ ପଶି ଦେଖିଲୁ-ମାର୍ବଲ ପଥର ବିଛା ହେଇଥିବା ଲୁହାର କେତେଗୁଡ଼ା ଟେବୁଲ, ତା'ରି ଉପରେ ମୁର୍ଦ୍ଦାରକୁ ରଖି କାଟିବାକୁ ହୁଏ । ସେଦିନ ସେ ଟେବୁଲ ଉପରେ ମୁର୍ଦ୍ଦାର କିମ୍ବା ମୁର୍ଦ୍ଦାରର କୌଣସି ଅଂଶ ନଥିଲା । ମୁର୍ଦ୍ଦାର ସବୁ store ରେ ଥାଏ । କି ଉତ୍କଟ ଗନ୍ଧ ! ମୋତେ ଭାରି ଘୃଣା ଲାଗୁଥାଏ । ଭୟ ଭୟ ମଧ୍ୟ ଲାଗୁଥାଏ । ସମସ୍ତେ ସେ ହଲ୍‌ରୁ ବାହାରି ଅନ୍ୟ ଗୋଟାଏ କ୍ଲାସ୍‌କୁ ଗଲୁ । ସେଠି ମଧ୍ୟ ସେମିତି ବିଭିନ୍ନ ଡାକ୍ତରଙ୍କ ମୁହଁରୁ ବିଭିନ୍ନ ଭାଷଣ ଶୁଣିଲୁ । ସମସ୍ତଙ୍କ ମୁହଁରୁ ଯାହା ଶୁଣିଲୁ, ତା'ର ସାର କଥା ହେଲା-ଡାକ୍ତରୀ ପାଠ ଭାରି କଷ୍ଟ, ଆଜିଠୁ ରୀତିମତ ନପଢ଼ିଲେ ପାସ୍ କରିବା ଭାରି କଷ୍ଟ । ଏକଥା ଶୁଣି, ମୋ ମନ ପୋଖରୀଛୁଆଁ ହେଲା । କ'ଣ କରିବି ? ଏ ତ ମହରଗରୁ ଯାଇ କାନ୍ତାରରେ ପଡ଼ିବା କଥା । I.Sc.ରେ ତ ଅକୃତ କାର୍ଯ୍ୟ ହୋଇ ଏଠିକି ଆସିଲି । ଏଠି ପୁଣି ଏକଥା ଶୁଣୁଛି । ଘରେ ମା' ପୁଣି ଅଭିଶାପ ଦେଲା ଭଳି କହିଛନ୍ତି-ତୁ ପାରିବୁ ନାହିଁ, ଫେଲ୍ ହୋଇ ଆସିବୁ । କୁଆଡ଼େ ଯିବି ? ପୁଣି ଭାବିଲି-ହଉ, ଦେଖେ, ଭଗବାନ ଯେତେବେଳେ ଏତେ ବାଟକୁ ଆଣିଲେଣି, ସେ କ'ଣ ଏମିତି ଭାସମାନ ଅବସ୍ଥାରେ ମୋତେ ଛାଡ଼ି ଦେବେ ? କୂଳରେ ଲଗେଇବେ ନାହିଁ ?

ଦେଖାଯାଉ କ'ଣ ହଉଛି? ମନ ଭିତରେ ପୁଣି ଗୋଟାଏ ହତାଶା ଭାବ ଆସୁଥାଏ। ମୁର୍ଦ୍ଦାର କେମିତି କାଟିବି? ମୁର୍ଦ୍ଦାର ନକାଟି ପାରିଲେ ତ anatomy ରେ ପାସ୍ କରି ପାରିବ ନାହିଁ। ମନେ ମନେ ଗୋଟାଏ ଉପାୟ ଚିନ୍ତା କରି ସ୍ଥିର କଲି। ଆମ ଦଳରେ ଗୋଟିଏ ମୁସଲମାନ ପିଲା ନାଁ ଲେଖେଇଥାଏ। ତା ସହିତରେ ଭାବ ଆଳାପ କରି ବୁଝିଲି- ତା' ନାଁ ଆସାନୁଲ ଗନି, ଘର କେନ୍ଦ୍ରାପଡ଼ା। କେନ୍ଦ୍ରପଡ଼ା ହାଇ ସ୍କୁଲରୁ ମ୍ୟାଟ୍ରିକ୍ ପାସ୍ କରି ଆସିଥାଏ। ମିଆଁ ପୁଅ କାହାରି ସହିତରେ ମିଶୁ ନଥାଏ। ମୁଣ୍ଡରେ ଗୋଟାଏ ଲମ୍ୱା ଲାଲ୍ ରଙ୍ଗର ଟୋପି ମଡ଼େଇଥାଏ, ସେଥିରୁ ଗୋଛାଏ କଳା ସୂତା ଝୁଲୁଛି। ମିଆଁପୁଅ ତ ଅଲଗା ଅଲଗା ରହୁଥାଏ। ମୁଁ ମନେ ମନେ ଠିକ୍ କଲି ଯାକୁ partner କଲେ ମୁର୍ଦ୍ଦାର କାଟିବାକୁ ପଡ଼ିବ ନାହିଁ। ମୁଁ ବହି ପଢ଼ିବି। ଏ ମୁର୍ଦ୍ଦାର କାଟିବ। ଏଇ କଥା ଭାବି ବୃଦ୍ଧ ଜରଦ୍‌ଗବ ସହିତ ଦୀର୍ଘକର୍ଣ୍ଣ ମାର୍ଜାର ଭଳି ସୌହାର୍ଦ୍ଦ୍ୟ ଜମେଇ ଯେତେବେଳେ ପରିଚୟ ଦେଲି-ମୋ ଘର କେନ୍ଦ୍ରାପଡ଼ା ନିକଟ ଅସୁରେଶ୍ୱରରେ, ମିଆଁପୁଅ ତ କେନ୍ଦ୍ରାପଡ଼ାରୁ ଆସିଥାଏ, ଯେତେବେଳେ ଶୁଣିଲା-ମୋ ଘର ଅସୁରେଶ୍ୱରରେ, ଖୁସି ହୋଇଗଲା, ଯେମିତି କେତେଦିନର ପରିଚିତ। ମୁଁ ମନ ଭିତରେ ଯେଉଁ ଅଭିପ୍ରାୟ ନେଇ ତା ସହିତରେ ବନ୍ଧୁତ୍ୱ ଜମଉଛି, ତାକୁ ଆଉ କଣା ନାହିଁ। ଆମେ ଦିହେଁ ଖୁବ୍ ସାଙ୍ଗ ହେଇଗଲୁ, ଏକାଠି ବସିବା, ଏକାଠି ଗପ କରିବା, ମୁଁ କୁଆଡ଼େ ଗଲେ ସେ ମୋତେ ଖୋଜିଲା, ମୁଁ ମଧ ସେମିତି ତାକୁ ଖୋଜିଲି। ମନେ ମନେ ଭାବେ-ମିଆଁ ପୁଅ କେମିତି ଟିକିଏ ରାଜି ହେଉ ମୁର୍ଦ୍ଦାର କାଟିବାକୁ।

ଅଳ୍ପ କିଛିଦିନ ପରେ anatomy କ୍ଲାସ ଆରମ୍ଭ ହେଲା। ଏଥିରେ ମୁର୍ଦ୍ଦାର କାଟିବାକୁ ପଡୁ ନଥାଏ। କେବଳ bone ବିଷୟରେ ପଢ଼ା ଆରମ୍ଭ ହେଲା। ଆରମ୍ଭ କଲେ-ଡ଼ା.ହରନାଥ ଜୀ, ଚମତ୍କାର ଲୋକ, ଟୋକାଳିଆ କଥାବାର୍ତ୍ତା, ଅଙ୍ଗଭଙ୍ଗୀ। ସେ ଥିଲେ demonstrator, 1st year ପିଲାଙ୍କୁ ପଢ଼ାନ୍ତି। 2nd year ପିଲାଙ୍କର demonstrator ଥିଲେ ଡା. ଅମୂଲ୍ୟଧନ ଦତ୍ତ। ଏ ମଧ ଚମତ୍କାର ଲୋକ। ଅବିସ୍ମରଣୀୟ। ଡା. ହରନାଥ ଜୀ ଏବଂ ଡା. ଅମୂଲ୍ୟଧନ ଦତ୍ତଙ୍କ କଥା ସ୍ୱଳ୍ପ ବିଶେଷରେ ବର୍ଣ୍ଣନା କରିବି। ଏ ଦୁହିଁଙ୍କ ବିଷୟରେ ବହୁତ କଥା ଲେଖିବାର ବାସନା ଅଛି। ତେବେ ଆମେ ସେତେବେଳେ 1st yearରେ ପଢୁଥାଉ ବୋଲି ଡ଼ା.ଅମୂଲ୍ୟଧନ ଦତ୍ତଙ୍କ ସଂସ୍ପର୍ଶରେ ଆସି ନଥାଉ। 2nd year ହେଲେ ଯାଙ୍କ ପାଖେ ପଢ଼ିବାକୁ ହେବ। ଗୋଟାଏ ଘଟଣା ମୋର ମନେ ଅଛି-ଯେଉଁଦିନ floating rib ବିଷୟରେ ଡା:ଜୀ ପଢ଼େଇଲେ। ସେ କହିଲେ ଅନ୍ୟାନ୍ୟ rib ଭଳି ଯାର ଶେଷ ଅଂଶଟା କେଉଁଠି ନ ଲାଗି କେବଳ ମାଂସପେଶୀ ମଧ୍ୟରେ ଭାସମାନ ଅବସ୍ଥାରେ ଅଛି। ଅନେକ ସମୟ ଏ rib ଟା fracture ହୋଇଯାଏ। ଏଇକଥା ଡା:ଜୀଙ୍କ ମୁହଁରୁ ଶୁଣିସାରି କ୍ଲାସ ଶେଷ ହେଲାପରେ ଚାରିଟା ବେଳକୁ କିଲ୍ଲା ପଡ଼ିଆକୁ ପଳେଇଲି। ସେଠି Rovers Teamରେ Town Team ବିରୁଦ୍ଧରେ ଗୋଟାଏ friendly match ଖେଳିଲି। ଦୈବାତ୍ ମୋର ଡ଼ାଆଁଣ ପାଖ ପିଠିର ଶେଷ ଅଂଶରେ ଯେଉଁଠି floating rib ଥାଏ, ସେଇଠି ଗୋଟାଏ ମାଡ଼ ବାଜିଲା। ସାଙ୍ଗେ ସାଙ୍ଗେ ଭୀଷଣ ଦରଜ ହୋଇଗଲା। କୌଣସି ମତେ ଖେଳ ଶେଷରେ ସାଇକେଲ୍ ଚଢ଼ି ଅତି କଷ୍ଟରେ ଘରକୁ ଆସିଲି। ଯନ୍ତ୍ରଣାରେ ରାତିରେ ଭଲ ନିଦ ହେଲାନି। ରାତି ତମାମ୍ ଭାବିଲି-ମୋର floating rib ବୋଧେ ଭାଙ୍ଗିଗଲା। ତହିଁ ଆରଦିନ ଯେତେବେଳେ ଡା:ଜୀଙ୍କ କ୍ଲାସକୁ ଯାଏ ଅଧା ନଇଁ ନଇଁ ଗଲି, ଡା:ଜୀ ପଚାରିଲେ-ପୁଲିନ କ'ଣ ହେଲା ତୁମର? ମୁଁ କହିଲି-ସାର୍ ମୋର ବୋଧହୁଏ floating rib fracture ହୋଇଗଲା। ଡା: ଜୀ ଶୁଣି ହୋ ହୋ କରି ହସି ଉଠିଲେ। କହିଲେ, ଆରେ ଆଗରୁ ଜାଣିଥିଲକି floating rib ଗୋଟାଏ ଅଛି ବୋଲି। ଜାଣିଲାରୁ ଆଜି କହିଲ floating rib fracture ହୋଇଗଲା। Floating rib fracture ହବା ଏତେ ସହଜ ନୁହେଁ, ସେ ନିଜେ ପୁଣି ପରୀକ୍ଷା କରି ଦେଖି କହିଲେ-ନାଁ ଏ muscular pain, ଔଷଧ ସଙ୍ଗେ ସଙ୍ଗେ ଲେଖି ଦେଲେ କହିଲେ- ଯାକୁ ମାଲିସ୍ କର ଭଲ ହୋଇଯିବ। Football ଖେଳରେ ଇମିତି ତୁମ ପିଠିରେ କେତେ ମାଡ଼ ବାଜିଥିବ, ଆଜି ଜାଣିଲ ବୋଲି ଏକଥା କହୁଛ। ଜୀ'ଙ୍କର କହିବା ମତେ ଔଷଧ ବ୍ୟବହାର କରି ଭଲ ହୋଇଗଲି।

ଡା:ହରନାଥ ଜୀଙ୍କର bone classରେ ମୋର ଖୁବ୍ ସୁନାମ ହେଲା । ଯେଉଁ bone ଖଣ୍ଡକ ପଢ଼ା ହୁଏ, ମୋର ବେଶ୍ ଭଲ ଭାବରେ ମନେ ରହିଯାଏ । ଡା:ଜୀ ଯାହା ପଚାରନ୍ତି, ମୁଁ ଖୁବ୍ ଭଲ ଭାବରେ ଉତ୍ତର ଦିଏ । ଏଣୁ ସେ ମୋ ଉପରେ ଖୁବ୍ ଖୁସି ହେଲେ । କାରଣ ଅନ୍ୟାନ୍ୟ ପିଲାଏ କେତେ କଥା କହି ପାରନ୍ତିନି । ଏଣୁ ମୁଁ bone classକୁ ଗଲେ, ଜଣେ ଦୁଇଜଣ ପିଲାଏ କହିବାର ଶୁଣିଛି-ଏ କାଳ ଅଇଲା, ଯାକୁ ଯାହା ପଚାରିବ ସବୁ କହିବ ।

ଡା:ଜୀ ପ୍ରଥମେ anatomy lecture theatreରେ class ନଉଥିଲେ ପରେ dissection hall ଭିତରେ bone class ନେଲେ । ଏହାର ପରିବେଶ ବଡ଼ ବିଭୀଷିକାମୟ । କାରଣ ସେତେବେଳକୁ store room ରୁ କେତେଗୁଡ଼ାଏ ମୁର୍ଦ୍ଦାରକୁ ଆଣି dissection hallର ଟେବୁଲ ଉପରେ ରଖା ହେଲାଣି । ଏମାନଙ୍କୁ ଟେବୁଲ ଉପରେ lethotomy position ରେ ରଖା ହୋଇଥାଏ । ଅର୍ଥାତ୍ ଗୋଟାଏ କାଠର ଫ୍ରେମରେ ଏମାନଙ୍କର ପିଚାକୁ ଭର୍ତ୍ତିକରି ଗୋଡ଼ ଦୁଇଟାକୁ ଉପରକୁ ଟେକି ରଖି ହାତ ଦୁଇଟାକୁ ଦୁଇଆଡ଼େ ଲମ୍ବ କରି ରଖି ଚିତ୍ କରି ଶୁଆ ହୋଇଥାଏ । ଆଉ ଯାଙ୍କର ଗୁହ୍ୟ ଦ୍ୱାରର ଠିକ୍ ତଳକୁ ତଳ ଗୋଟିଏ ଲେଖା basin ଥୁଆ ହୋଇଥାଏ । ଏ ମୁର୍ଦ୍ଦାର ସବୁକୁ ସଦ୍ୟ store room ଭିତରୁ ଗୋଟାଏ ପାଣି କୁଣ୍ଡ ଭିତରୁ ପାଣି ଗୁରାଏ ବାହାରି ଟପ୍ ଟପ୍ ହୋଇ basin ରେ ପଡୁଥାଏ । କି ଦୁର୍ଗନ୍ଧ । ଏ ମୁର୍ଦ୍ଦାରମାନଙ୍କର ଦେହରୁ ଜାଗା ଜାଗା ଫଡ଼ାଏ ଫଡ଼ାଏ ଚମଡ଼ା ଛାଡ଼ି ଝୁଲୁଥାଏ । ଏମାନେ ସବୁ ପାଣିରେ ପଡ଼ି ଫୁଲି ରହିଥାନ୍ତି । ଏହି ମୁର୍ଦ୍ଦାର ସବୁକୁ ଆମକୁ କାଟିବାକୁ ହେବ । ଏଇ ମୁର୍ଦ୍ଦାରମାନଙ୍କ ମଝିରେ ଡା:ଜୀ ଆମର bone class ନେଲେ । କି ଭୟଙ୍କର ପରିବେଶ! ପିଲାଦିନେତ ଯଦି ଶୁଣିଛି କାହାଘରେ କିଏ ମରିଛି, ସେ ବାଟରେ ତିନି ଚାରି ମାସ ଯାଏ ଯାଉନଥିଲି । ବର୍ତ୍ତମାନ ତ ମୋ ଚାରିଆଡ଼େ ଗଣ୍ଡା ଗଣ୍ଡା ମୁର୍ଦ୍ଦାର । ସେଇମାନଙ୍କ ମଝିରେ ବସି ପାଠ ପଢ଼ିବାକୁ ହେଉଛି । ଏ କି ସମୟ । ପୁଣି ଏଇମାନଙ୍କୁ ନିଜ ହାତରେ କାଟିବାକୁ ହେବ । ମନେ ମନେ ଭାବେ- ଭଗବାନ ତୁମେ ହିଁ ଭରସା, ଏ ମୁର୍ଦ୍ଦାର-ମହୋଦଧି ପାରି କରିବାକୁ ତୁମେ ହିଁ ଏକା କର୍ଣ୍ଣଧାର । ମିଆଁ ପୁଅ ଯଦି କାଟିଲା ତ ଭଲ କଥା, ନଚେତ୍ ଏଇଠି ନାଆ ବୁଡ଼ିଲା । ଡାକ୍ତରୀ ପାଠପଢ଼ି ଡାକ୍ତର ହବା ସ୍ୱପ୍ନ ଏଇଠି ଦୁଃସ୍ୱପ୍ନରେ ପରିଣତ ହେବ । ତେଣେ ମା'ତ ଅଭିଶାପ ଦେଲା ଭଳି କହିଛନ୍ତି-ତୁ ପାରିବୁ ନାହିଁ, ଫେଲ୍ ହୋଇ ଆସିବୁ । ସତେ କ'ଣ ସେଇଯା ହେବ କି?

କିଛିଦିନ ପରେ ମୁର୍ଦ୍ଦାର କଟା ଆରମ୍ଭ ହେଲା ।

ପ୍ରଥମେ ଆମକୁ thorax ଦିଆଗଲା କାଟିବାକୁ, ଅର୍ଥାତ୍ ଛାତି ଅଂଶ ଆଗେ କାଟିବାକୁ ହେବ । ସେତେବେଳେ 1st year ପିଲାଏ ପ୍ରଥମ ବର୍ଷରେ ଛାତି ଆଉ ପେଟ କାଟିବେ । 2nd year ରେ ମୁଣ୍ଡ ବେକ ଆଉ ହାତ ଗୋଡ଼ କାଟିବେ । ଏଣୁ ଆମର ପ୍ରଥମ ବର୍ଷ ବୋଲି ଆମକୁ ପ୍ରଥମେ ଛାତି, ତା'ପରେ ପେଟ କାଟିବାକୁ ହେବ ।

ମୁଁ anatomy practical ବହି ପଢ଼ିଲି । ମିଆଁ ପୁଅ କାଟିବାକୁ ଆରମ୍ଭ କଲା । ସେ ଜୀବନର ଗୋଟାଏ ଅବିସ୍ମରଣୀୟ ଦିନ । ମୁଁ ପୁଣି ମୁର୍ଦ୍ଦାର କଟାରେ ଯୋଗଦେଲି । ମୋ ପରି ଭୟାଳୁ ପିଲା ।

ସେତେବେଳେ ଗୋଟାଏ ପ୍ରଥା ଥିଲା-ପିଲାମାନେ dissection କଲାବେଳେ demonstrator ନିଜେ ଆସି ଯେଉଁ ଅଂଶ dissection ହଉଥିବ, ତାରି ଉପରେ ପ୍ରଶ୍ନ ପଚାରି ଖଣ୍ଡେ card ଉପରେ ତାଙ୍କର ମନ୍ତବ୍ୟ ଲେଖି ରଖୁଥିଲେ । ମନ୍ତବ୍ୟ ଦିଆ ଯାଉଥିଲା-ଯେ ଖୁବ୍ ଭଲ ଉତ୍ତର ଦେଇ ପାରିଲା, ତାକୁ good, ଯେ ମଧ୍ୟ ଭଳିଆ ଉତ୍ତର ଦଉଥିଲା, ତାକୁ fair, ଯେ ତାଠୁ ଖରାପ ଉତ୍ତର ଦେଲା, ତାକୁ tolerable ଆଉ ଯେ ନିହାତି ଖରାପ ଉତ୍ତର ଦେଲା, ତାକୁ bad । ଆମର dissection ଚାଲିଥାଏ, ଦିନେ ଦି'ଦିନ ଛଡ଼ାରେ ଆସି ଆମର demonstrator ଡା:ଜୀ ମୁର୍ଦ୍ଦାର ନିକଟରେ ପରୀକ୍ଷା କରି ମନ୍ତବ୍ୟ ଦେଇ ଯାଉଥାନ୍ତି । ମୋର ଉତ୍ତର ଶୁଣି ଡା:ଜୀ

ବରାବର good ଲେଖୁଥାନ୍ତି। କିନ୍ତୁ ମୋର partner ଅସାବୁଲ ଗନିକୁ କେତେବେଳେ fair, କେତେବେଳେ tolerable ବୋଲି ମନ୍ତବ୍ୟ ଦେଉଥାନ୍ତି। ଏଇ ମନ୍ତବ୍ୟ ଲାଗି ଅସାବୁଲ ଗନି ମୋ ପ୍ରତି ଈର୍ଷାନ୍ୱିତ ହେଲା ଯେ---ମୁଁ dissection ନ କରି ଭଲ ମନ୍ତବ୍ୟ ପାଉଛି, ଆଉ ସେ dissection କରି ଭଲ ମନ୍ତବ୍ୟ ପାଉନାହିଁ।

ଏଣୁ ତା'ର ମୋର ଟିକିଏ ମନୋମାଳିନ୍ୟ ଘଟିଲା। ଏହାର କିଛିଦିନ ପରେ ଅସାବୁଲ ଗନି ଗାଁକୁ ପଳେଇଲା। ମୁଁ ବଡ଼ ଅସୁବିଧାରେ ପଡ଼ିଲି। କାରଣ ମୁଁ ତ ମୁର୍ଦ୍ଦାର ଦେହରେ ସେ ପର୍ଯ୍ୟନ୍ତ ହାତ ଦେଇନାହିଁ। କରେ କ'ଣ? ମୁଁ ତ dissectionରେ ପଛେଇଗଲି। Dissection ନକଲେ ପରୀକ୍ଷା ଦେଇପାରୁନି। Dissection ବନ୍ଦ ରହିଲା। କାରଣ ମୁଁ ଯଦି dissection କରୁଛି, ସେ ଆସିଲେ କ'ଣ କରିବ? ଦିନେ ଡା:ଜୀ ଆସି ମୋତେ ପଚାରିଲେ-ତୁମର dissection ବନ୍ଦ କାହିଁକି? ମୁଁ ଉତ୍ତର ଦେଲି-partner ନାହିଁ। ଡା:ଜୀ ଅସାବୁଲ ଗନି ଉପରେ ବିରକ୍ତ ହୋଇ କହିଲେ-ସେ କାହିଁକି ଏତେଦିନ absent ରହିଲା?

କିଛିଦିନ ପରେ ଅସାବୁଲ ଗନି ଆସିଲା। ପୁଣି dissection ଚାଲିଲା। ଡା:ଜୀ ଆସି ଗନି ମିଆଁ ଉପରେ ଖୁବ୍ ବିରକ୍ତ ହେଲେ, କାହିଁକି ସେ ଏତେଦିନ absent ରହିଲା? କାହିଁକି dissection ବନ୍ଦ ରହିଲା? ପୁଣି ଯେତେବେଳେ ଡା:ଜୀ ଆସି ମୋତେ ଆଉ ଗନି ମିଆଁକୁ ପରୀକ୍ଷା କରନ୍ତି। ମୁଁ ବି ଭଲ ମନ୍ତବ୍ୟ ପାଇଲି ନାହିଁ କି ଗନି ମିଆଁ ମଧ୍ୟ ଭଲ ମନ୍ତବ୍ୟ ପାଇଲା ନାହିଁ। ଏଣୁ ମୋତେ ଡ଼ା:ଜୀ କହିଲେ, ଦେଖ ପୁଳିନ୍, You are going down day by day ଆଉ ଗନି ମିଆଁ ଉପରେ ଭାରି ବିରକ୍ତ ହେଲେ ତାର ଅନୁପସ୍ଥିତି ଯୋଗୁଁ। ଇତି ମଧ୍ୟରେ ଦିନେ ଗନି ମିଆଁ ଆଉ ମୋର ଭାରି କଳିକଜିଆ ହେଲା। ଗନି ମିଆଁ କହିଲା, ତୁ ଏଣିକି କାଟ, ମୁଁ ବହି ପଢ଼ିବି, ମୁଁ କଣ ସବୁଦିନେ କାଟୁଥିବି? ମୁଁ ଜିଦ୍ ଉପରେ କହିଲି, ହଁ ମୁଁ କାଟିବି, ତୁ ବହି ପଢ଼।

ଏଇ କଥା କହି ମୁଁ ତାକୁ ବହି ଦେଇ forceps ଆଉ scalpel ଧରି କାଟିବାକୁ ଆରମ୍ଭ କଲି। ସେ ହେଲା ମୋର ମୁର୍ଦ୍ଦାର କାଟିବାର ପ୍ରଥମ ଦିନ। ହାତକୁ ବି ଥଣ୍ଡା ଥଣ୍ଡା ଲାଗୁଥାଏ। ଆଙ୍ଗୁଳି ହାତ ପାପୁଲି ସବୁ କେତେକ ପାଣି ଅଂଶରେ ଜୁଡ଼ବୁଡ଼ ହୋଇଗଲା।

ମନେ ମନେ ଘୃଣାରେ ଭାବିଲି କି ଅସନା ପାଠ ପଢ଼ିବାକୁ ଆସିଲି? କେମିତି ଘରେ ଯାଇ ଭାତ ଖାଇବି? କେମିତିଆ ଗୋଟାଏ ଔଷଧ ମିଶା ଦୁର୍ଗନ୍ଧ ଚାରିଆଡ଼େ! କି ବୀଭତ୍ସ ପରିବେଶ! ପୁଣି ଭାବିଲି ଆମେ ବି ମଣିଷ, ଏମାନେ ବି ମଣିଷ। ଦିନେ ଏମାନେ ମଧ୍ୟ ଆମରି ଭଳି ସୁଖଦୁଃଖ ଅନୁଭବ କରୁଥିଲେ। ଏମାନେ ଯେଉଁଦିନ ଜନ୍ମ ହୋଇଥିବେ, ଯାଙ୍କ ବାପ, ମା'ର କି ଆନନ୍ଦ! ଷଠି, ପଞ୍ଚୁଆତି, ଏକୋଇଶିଆ ତ ପାଳନ କରା ହୋଇଥିବ। ଆଜି ଏମାନଙ୍କର ଏ କି ଅବସ୍ଥା! କି ଦୁଃଖଦାୟକ ପରିଣତି। ଆମେ ଯେତେ ପିଲା ଏଠି ମୁର୍ଦ୍ଦାର କାଟୁଛୁ କେହି ତ ଭାବୁ ନାହାନ୍ତି ଆମର ଦିନେ ଏମିତି ଅବସ୍ଥା ହୋଇପାରେ। କିନ୍ତୁ ଏ କଣ? ଏଠିତ କାହାରି ସାଜସଜ୍ଜା, ଏସେନ୍‌ସ ଲଗେଇବା, ସ୍ନୋ, ପାଉଡ଼ର ଲଗେଇବା, ସିଗାରେଟ ଖାଇବା କିଛି ତ ଉଣା ନାହିଁ। ସମସ୍ତେ ଭାବୁଛନ୍ତି ସେହି ମାନେ ହିଁ ମଣିଷ। ଯେଉଁ ମୁର୍ଦ୍ଦାରକୁ କାଟୁଛନ୍ତି ସେମାନେ କେଭେ ମଣିଷ ନଥିଲେ ସବୁଦିନେ ଏମିତି ମୁର୍ଦ୍ଦାର ଥିଲେ। ଭାବୁ ନାହାନ୍ତି ଆମେ ବି ଦିନେ ମରିବୁ, ଏମିତି ମୁର୍ଦ୍ଦାର ହେବୁ।

ମୁଁ ଯେତେବେଳେ ମେଡ଼ିକାଲ ସ୍କୁଲରେ ପଢ଼େ ସେତେବେଳେ ସେଠି ନିୟମ ଥିଲା ଯଦି ଜଣେ ରୋଗୀ ୱାର୍ଡ଼ରେ ମଲା ତାକୁ ଚବିଶ ଘଣ୍ଟା ଭିତରେ ଯଦି କେହି ତା'ର ଆତ୍ମୀୟ ସ୍ୱଜନ ଆସି ନନେଲେ, ନଖୋଜିଲେ ତାହେଲେ ସେ ମୁର୍ଦ୍ଦାରକୁ ନେଇ ଷ୍ଟୋରରେ ରଖିଦେବେ dissection ହବା ପାଇଁ। ଆଉ ସେତେବେଳେ କଟକ ଜେଲ୍‌ରେ ଯାକୁ ଫାଶୀ ଦିଆ ଯାଉଥିଲା ସେ ମୁର୍ଦ୍ଦାରକୁ ମଧ୍ୟ ମେଡ଼ିକାଲକୁ ପଠେଇ ଦିଆ ହଉଥିଲା ଡ଼ାକ୍ତରୀ ପିଲାଏ dissection କରିବା ପାଇଁ। ଆଉ ଯଦି କେତେବେଳେ ମୁର୍ଦ୍ଦାର ଅଭାବ ପଡ଼ିଲା, dissection କରିବାକୁ Anatomy ବିଭାଗର ସୁଇପର୍‌ମାନେ ରାତିବେଳା ଯାଇ ଖାନ୍‌ନଗର, କାଳିଆବୋଦା ମଶାଣିରୁ ପୋତା

ହୋଇଥିବା ମୁର୍ଦ୍ଦାର ଖୋଲି ଲୁଚେଇ ନେଇ ଆସୁଥିଲେ । ସେ ମୁର୍ଦ୍ଦାରକୁ ପିଲାଏ କାଟୁଥିଲେ । ଝିଅ ପିଲାଏ ମଧ୍ୟ ମୁର୍ଦ୍ଦାର କାଟୁଛନ୍ତି । ସେମାନଙ୍କୁ ପ୍ରାୟ ମହିଳା ମୁର୍ଦ୍ଦାର କାଟିବାକୁ ଦିଆଯାଏ । ଏ ଝିଅ ପିଲାଏ ମଧ୍ୟ ଭାବୁ ନାହାନ୍ତି ତାଙ୍କର ଦିନେ ଏମିତି ଅବସ୍ଥା ମଧ୍ୟ ହୋଇପାରେ । ତାଙ୍କର ତ ପୁଅ ପିଲାଙ୍କ ଅପେକ୍ଷା ବେଶି ସାଜସଜ୍ଜା, ବେଶି ଆଡ଼ମ୍ବର । ଅଧରରେ ଲିପସ୍‌ଟିକ୍, ନୟନେ କଜ୍ଜଳଗାର, କେଶରେ ସୁଗନ୍ଧ ତେଲ, ଶାଢ଼ି, ଗହଣା କେଉଁଠି ବାଛିବାକୁ ନାହିଁ । ସେହି ମୁର୍ଦ୍ଦାର ପାଖେ ଠିଆ ହେଇ ପୁଅ ପିଲାଙ୍କ ସାଥିରେ ପ୍ରେମାଳାପ ଚାଲିଛି । ମୃତ୍ୟୁ ଯେ ତାଙ୍କୁ ଛାଡ଼ିବ ନାହିଁ ଏକଥା ସେ ଭାବୁ ନାହାନ୍ତି । ସେମାନେ ଭାବୁଛନ୍ତି ଏ ଦୁନିଆ ତାଙ୍କରି, ସେମାନଙ୍କର ମୃତ୍ୟୁ ନାହିଁ । ସେମାନେ ଅମର, ଅକ୍ଷୟ, ତାଙ୍କର ଜୀବନଟା ଚିର ବସନ୍ତମୟ । ମୁଁ ମୁର୍ଦ୍ଦାର କାଟୁ କାଟୁ ବେଳେବେଳେ ଏମିତି ଅନେକ କଥା ଭାବିଛି । ମନ ମୋର ଏଇ ସବୁ ଭାବନାରେ ଅବଶ ହେଇ ପଡ଼ିଛି, ଭାବିଛି ଏ ସଂସାର ଛାଡ଼ି ଚାଲିଯିବି । କଣ ମିଳିବ ଏ ଦୁନିଆରୁ ? କିଏ କଣ ନେଇଗଲେ ଏ ଦୁନିଆରୁ ? ଏଇ ତ ମୋର ଚାରିଆଡ଼େ କେତେ ମୋରି ଭଳି ମଣିଷ ମୁର୍ଦ୍ଦାର ହେଇ ପଡ଼ିଛନ୍ତି । ଆମେ ତାଙ୍କୁ କାଉ, ଶାଗୁଣା ଭଳି ଖଣ୍ଡ ଖଣ୍ଡ କରି କାଟୁଛୁ । କଣ ଏ ମଣିଷ ଜୀବନ ? ଏଥିରେ କଣ ଅଛି ? ଏମିତି ଅନେକ ଭାବନାରେ ମନ ଭାଙ୍ଗି ପଡ଼ିଛି । ଭାବିଛି ପଳେଇବି କିନ୍ତୁ ପୁଣି ଭାବିଛି ମୁଁ ପଳେଇଲେ ବାବା, ମା କଣ କରିବେ ? ତାଙ୍କର ତ ଏକମାତ୍ର ପୁତ୍ର ସନ୍ତାନ ମୁଁ । ଆଉ କେହି ଭରସା ନାହିଁ । ତାଙ୍କର ତ ଅନେକ ପିଲା ମୃତ୍ୟୁ ବରଣ କରି ତାଙ୍କୁ ଛାଡ଼ି ଚାଲି ଗଲେଣି । ବର୍ତ୍ତମାନ କେବଳ ବଡ଼ ଭଉଣୀ, ମୁଁ ଏବଂ ସାନ ଭଉଣୀ ଅଛୁ । ବଡ଼ ଭଉଣୀ ବିଭା ହେଇ ଯାଇଛନ୍ତି, ସାନ ଭଉଣୀ ବିଭା ହେଇ ନାହିଁ । ମୁଁ ପଢୁଛି, ମୁଁ ଯଦି ମଣିଷ ଜୀବନର ଚରମ ପରିଣତି ଦେଖି ଜୀବନ ପ୍ରତି ବୀତସ୍ପୃହ ହେଇ କୁଆଡ଼େ ପଳାଏ । ତା'ହେଲେ ବାବା, ମା'ଙ୍କର ଶେଷ ପରିଣତି କଣ ହବ ? ଏଇ ସବୁ ଭାବି ଚିନ୍ତାରୁ ନିବୃତ୍ତ ହେଇ ପୁଣି ପଢ଼ିବି ବୋଲି ସ୍ଥିର କଲି ।

ଅଳ୍ପଦିନ dissection କଲାପରେ ଏତେ ଘୃଣା ଲାଗିଲା ଯେ ମୁଁ ଆଉ ଘରେ ଭାତ କି ଜଳଖିଆ କିଛି ଖାଇ ପାରିଲି ନାହିଁ । କିଛି ନଖାଇପାରି କ୍ରମେ ଝଡ଼ିଗଲି, ଦୁର୍ବଳ ଲାଗିଲା । ମା ମୋର ଅବସ୍ଥା ଦେଖି କହିଲେ ଯଦି ହାତରେ ଖାଇବାକୁ ଘୃଣା ଲାଗୁଛି ମୁଁ ଖୋଇଦିଏ, ମୁଁ ମନାକରି କହିଲି ନାହିଁ ମୁଁ ହାତରେ ଖାଇବି । ବାବା ମୋର ଅବସ୍ଥା ଦେଖି କହିଲେ ଯଦି ଘୃଣା ହଉଛି ତା'ହେଲେ ଛାଡ଼ି ଦେ । ମୁଁ ମନା କଲି ନାହିଁ ପାଠ ଛାଡ଼ିବି ନାହିଁ, ପଢ଼ିବି । ମାଡ଼ି ମକଚି କେତେଦିନ ସେମିତି ଟାଣି ଓଟାରି dissection ଚଳେଇଲି । ମୁଁ ଦେଖିଲି dissection ଯେ ଭଲ କରି ନକରିବ, ତା'ପକ୍ଷରେ anatomy ରେ ପାସ୍ କରିବା କଷ୍ଟ । କଣ କରେ ? Dissection ତ ଭଲ ଭାବରେ କରିବାକୁ ଇଚ୍ଛା ହଉ ନାହିଁ । କେମିତି anatomy ରେ ପାସ୍ କରିବି ? ଏଣିକି ପ୍ରଥମେ ପ୍ରଥମେ anatomy ରେ ଯାହା ମୁଁ ଭଲ କରୁଥିଲି ପରେ ଦବିଗଲି କେବଳ dissection ସକାଶେ । କିଛିଦିନ ପରେ ଦିନେ ମୁଁ dissection କରୁଛି, ଯେଉଁ ମୁର୍ଦ୍ଦାରଟାକୁ କାଟୁଛି ସେ ଗୋଟାଏ ଫାଶୀ ପାଇଥିବା ଲୋକ । ଫାଶୀ ପାଇଥିବା ଲୋକ ମୁଁ ଆଗରୁ କେଭେ ଦେଖି ନଥିଲି । ଏଇ ପ୍ରଥମ, କି ବୀଭତ୍ସ ଦେଖା ଯାଉଥାଏ । ତାର ଶ୍ୱାସନଳୀର ସାମନା ଅଂଶଟା କଟିଯାଏ, ମୁଣ୍ଡର ଶିରାଗୁଡ଼ାକ ମୋଟା ମୋଟା ହେଇ ଫୁଲି ଯାଇଥାଏ, ଆଖି ଦି'ଟା ନଷ୍ଟ ହୋଇ ଯାଇଥାଏ ମୁଁ ସେ ମୁର୍ଦ୍ଦାରର ଛାତି ଅଂଶଟା କାଟୁଛି ଏଇ ସମୟରେ ଗୋଟାଏ ସୁଇପର ପଟେ କଟୁରୀ ଧରି ଆସି ତା'ବେକରେ ଚୋଟେ ପକେଇ ବେକ କାଟି ମୁଣ୍ଡଟାକୁ ବଲ୍ ପରି ହାତରେ ନଚେଇ ନଚେଇ ନେଇ ଅନ୍ୟ ଦି'ଟା ପିଲାଙ୍କୁ ଦେଲା dissection କରିବା ପାଇଁ ।

ମୋର ମୁଣ୍ଡ କାହିଁକି ଟିକିଏ ବିଚଳିତ ହୋଇଗଲା । ଭାବିଲି, ନା ଏଠି ଆଉ ପଢ଼ିବି ନାହିଁ । Medical ଛାଡ଼ି ଚାଲିଯିବି । ଛୁରୀ, ଚିମୁଟା ଟେବୁଲ ଉପରେ ଥୋଇ ଦେଇ ଏମିତି ଭାବୁଛି । ଏଇ ସମୟରେ ମୋର ଡାହାଣ ପଟକୁ ଅନାଏ ତ କେତେ ଝିଅପିଲା ମିଶି ଗୋଟାଏ ମୁର୍ଦ୍ଦାର କାଟୁଛନ୍ତି । ହାତର କାଚ ଚୂଡ଼ି ଟେକି ଦେଇ ବେଶ୍ ସାହସ ସହିତରେ dissection କରୁଛନ୍ତି । ମୁଁ ତାଙ୍କୁ ଦେଖି ପୁଣି ଭାବିଲି କଣ ଝିଅ ପିଲାଏ ମୁର୍ଦ୍ଦାର

କାଟୁଛନ୍ତି ମୁଁ ପୁଅପିଲା ପୁଣି ମଙ୍ଗଳାବାଗର ପିଲା । ମୁଁ dissection କୁ ଭୟ କରି ପାଠ ଛାଡ଼ି ଚାଲିଯିବି । ଏ ତ ଅତି ଲଜ୍ଜାକର ଘଟଣା ହବ । ମା'ଙ୍କ କଥା ମଧ୍ୟ ମନେ ପଡ଼ିଲା ତୁ ପାରିବୁ ନାହିଁ, ଛାଡ଼ି ଚାଲି ଆସିବୁ, ଫେଲ୍ ହବୁ । ଏଣୁ ପୁଣି ମନକୁ ଦୃଢ଼ କରି ଭାବିଲି, ନା ଛାଡ଼ିବି ନାହିଁ, ରହିଲି । ପୁଣି dissection କଲି । କିଛିଦିନ ପରେ dissection ଏତେ ଆରେଇ ଗଲା ଯେ ଯେଉଁଦିନ dissection ନକରିଛି ସେ ଦିନଟା ଭଲ ଲାଗେ ନାହିଁ । ଘୃଣା, ଭୟ କୁଆଡ଼େ ଉଭେଇ ଗଲା । ଆଉ ଗୋଟାଏ କଥା ମନେ ପଡ଼ିଲା, ଯେତେବେଳେ ନୂଆ ନୂଆ dissection କଲି ଭୟ ଅପେକ୍ଷା ବେଶି ଘୃଣା ଲାଗୁଥାଏ । ଦିନେ ଚାରିଟା ବାଜିବା ପୂର୍ବରୁ ମୁଁ dissection ବନ୍ଦ କରି ସିଧା ସଳଖ ମୁଁ medical ରୁ କିଲ୍ଲା ପଡ଼ିଆକୁ ପଳେଇଲି । ସେଦିନ Rovers Team ସାଥୀରେ ଆଉ ଗୋଟାଏ team ମ୍ୟାଚ୍ ଥାଏ । ମୁଁ ତ Rovers Teamରେ ଆଗେ ଖେଳୁଥିଲି । ଏଣୁ Rovers Team ପ୍ରତି ମୋର ଭାରି ସହାନୁଭୂତି ଥାଏ । ମୁଁ କିଲ୍ଲା ପଡ଼ିଆରେ ପହଁଚି ମ୍ୟାଚ୍ ଦେଖିଲା ବେଳେ ମୋ ନାକକୁ ଖାଲି ସେହି dissection hall ଗନ୍ଧ ଜଣା ପଡୁଥାଏ । ମୁଁ ଅନେକବାର ଭାବିଲି ଏ କଣ? କାହିଁକି ଏମିତି ଗନ୍ଧ ଜଣା ପଡୁଛି? ମ୍ୟାଚ୍ ପରେ ମୁଁ ଯେତେବେଳେ ଘରକୁ ଫେରେ, ମା କହିଲେ ତୋ କମିଜ ପଛରେ କଣ ଗୁରାଏ ଲାଗିଛି । ମୁଁ ଆଶ୍ଚର୍ଯ୍ୟ ହୋଇ କହିଲି, ଲାଗିଛି ସତେ? ମା କହିଲେ ହଁ । ମୁଁ ବୁଝିପାରିଲି ସେହି dissection hall ର ମୁର୍ଦ୍ଦାର ଦେହର ପାଣି ଗୁରାକ । ତାରି ଗନ୍ଧ ନାକକୁ ଜଣା ପଡୁଥିଲା । କଣ କରିବି? କାମିଜକୁ କାଢ଼ିବି କେମିତି? ଏ ତ ଦେହସାରା ଲାଗିଯିବ । କାମିଜ ଖଣ୍ଡକୁ ଚିରି ପକେଇ କାଢ଼ିବାତ ଉଚିତ୍ ନୁହେଁ । ମୁଁ କୌଣସିମତେ ଅନନ୍ୟୋପାୟ ହେଇ ମୁଣ୍ଡ ବାଟେ କାଢ଼ି ପକେଇଲି । ସେ ପାଣିରୁ କେତେକ ଦେହସାରା ଜାଗା ଜାଗା ଲାଗିଗଲା । ମା ସେ କାମିଜକୁ କାଟିଲେ । ମୁଁ ସନ୍ଧ୍ୟା ପୂର୍ବରୁ ପୁଣି ଥରେ ଗାଧେଇ ସଫା ସୁତୁରା ହେଇ ଘରେ ପଶିଲି ।

କିଛିଦିନ ପରେ ଘରେ ମା ଆଉ ସେତେ ବାରଣ ରଖିଲେ ନାହିଁ । ଖଟ ଉପରେ ମଧ୍ୟ ହାଡ଼ ନେଇ ପଢ଼ାପଢ଼ି କଲି । ସେତେବେଳେ first year ପିଲାଙ୍କୁ anatomy, physiology, pharmacology ଆଉ physics, chemistry ପଢ଼ିବାକୁ ପଡୁଥିଲା । ପ୍ରଥମ ବର୍ଷ physics, chemistry ରେ ପାସ୍ କରିବା ବାଧ୍ୟତାମୂଳକ ଥିଲା । Physics, chemistry ରେ ପାସ୍ କରି ନପାରିଲେ medical ରୁ ବାହାର କରି ଦଉଥିଲେ । Anatomy, physiology ଆଉ pharmacology ଶେଷ ପରୀକ୍ଷା ଦବାକୁ ହଉଥିଲା ଦ୍ୱିତୀୟ ବର୍ଷ ଶେଷରେ । Medical ରେ ପାଠ ପଢ଼ା ସାଥୀରେ football ଖେଳ ମଧ୍ୟ ଚାଲିଥାଏ । ମୁଁ ଯେଉଁଦିନ medical team ରେ ମ୍ୟାଚ୍ ଖେଳେ, ସେ ଗୋଟାଏ friendly match । କଟକର ବୀଣାପାଣି team ସାଥୀରେ । ସେତେବେଳେ କଟକରେ ବୀଣାପାଣି team ବେଶ୍ ଟାଣୁଆ ଥିଲା, ବିଖ୍ୟାତ ଥିଲା । ମୁଁ ଦିନେ ବଜାରକୁ ଯାଇଥିଲି ଖଣ୍ଡେ ଲୁଙ୍ଗି କିଣିବା ପାଇଁ । ବଜାରରୁ ଫେରିଲା ପରେ ବାବା କହିଲେ ତୋର ଗୋଟାଏ କ'ଣ ଚିଠି ଜଣେ ଦେଇଗଲା, କ'ଣ match ଖେଳିବାକୁ ହବ ।

ମୁଁ ଚିଠିଟା ଖୋଲି ଦେଖେ ଜର୍ଜ ପଟ୍ଟନାୟକ ଲେଖିଛନ୍ତି, ଶୀଘ୍ର ଆସିବ । ବୀଣାପାଣି ସାଥୀରେ match ଅଛି । ମୁଁ ସାଙ୍ଗେ ସାଙ୍ଗେ ଦୌଡ଼ିଲି medical fieldକୁ । ମୁଁ ଯାଇ ପହଞ୍ଚିଲା ବେଳକୁ ଖେଳ ଆରମ୍ଭ ହବା ଉପରେ । ଉଭୟ ଦଳ ପଡ଼ିଆରେ ଠିଆ ହୋଇ ସାରିଲେଣି । ମୁଁ ଯାଇ uniformଟା ପିନ୍ଧି ପକେଇ ଖେଳିଲି । ଖେଳ ଅମୀମାଂସିତ ରହିଲା । ମୁଁ ସେଦିନ centre half position ରେ ଖେଳିଲି ।

ପରେ competitive match, friendly match, medical team ରେ ଅନେକ ଖେଳିଲି । Football match ଯେତେ ଖେଳିଛି, ଗୋଟି ଗୋଟି କରି ବର୍ଣ୍ଣନା କଲେ ଅଲଗା ଖଣ୍ଡିଏ ଗ୍ରନ୍ଥ ହବ । ଏଣୁ ସେ ସବୁ ଲେଖିବା ଅନାବଶ୍ୟକ ମନେ କରୁଛି । ତଥାପି କେତେଗୁଡ଼ିଏ ବିଶିଷ୍ଟ ଘଟଣା ସ୍ଥଳବିଶେଷରେ ଉଲ୍ଲେଖ କରିବି ।

ଅଳ୍ପ କିଛିଦିନ ପରେ ପୁଣି ଥରେ ସେହି ବୀଣାପାଣି team ସହିତରେ friendly football match ଖେଳିବାକୁ

ହେଲା । ସେଦିନ ମୁଁ medical team ତରଫରୁ left half position ରେ ଖେଳୁଥାଏ । ମୁଁ ସେତେବେଳକୁ ଅଳ୍ପଦିନ ହେଲା medical ରେ ପଢୁଛି । ସେଦିନ ପ୍ରଥମେ ବୀଣାପାଣି team ଆମକୁ ଗୋଟିଏ ଗୋଲ୍ ଦିଏ । ଆମେମାନେ ଚେଷ୍ଟା କରିଥିଲେ ଗୋଲ୍‌ଟା ସୁଝେଇ ପାରିଥାନ୍ତୁ । ଅଯଥା medical team ରାଗି ଯାଇ foul game ଖେଳିଲେ । ମେଡ଼ିକାଲ ପଡ଼ିଆରେ ତ ଖେଳ ହଉଥାଏ । ଏଣୁ ମେଡ଼ିକାଲ teamର ଖେଳାଳୀମାନେ ଚଢ଼ଉ ହେଇ ବୀଣାପାଣି team ଖେଳାଳୀଙ୍କୁ ମାରପିଟ କରି ଭୟଭୀତ କରି ଦବେଇ ଦବାକୁ ଚାହିଁଲେ । ଆମରି ମେଡ଼ିକାଲ ଛାତ୍ର ଯେଉଁମାନେ ଖେଳ ଦେଖୁଥାନ୍ତି, ଦିନେ କାଳେ football ଖେଳନ୍ତି ନାହିଁ, ସେମାନଙ୍କର ଦେଖିବ କି ପାଟି ! କି ଉତ୍ତେଜନା ।

ମୁଁ ମୋର position ରେ ଖେଳୁଛି । ମୋତେ ଜଣେ ମେଡ଼ିକାଲ ଛାତ୍ର ଡାକିଲେ । ମୁଁ ତାଙ୍କ ପାଖକୁ ଗଲାରୁ ସେ କହିଲେ ଆପଣ ଆପଣଙ୍କ ବିପକ୍ଷ ଖେଳାଳୀଙ୍କୁ ମାରୁ ନାହାନ୍ତି କାହିଁକି ? ମୁଁ କହିଲି ମାରିବା ତ ମୁଁ ଦରକାର କରୁନାହିଁ । ଏଣୁ ଏ ଛାତ୍ର ଜଣକ ମୋତେ ପରିହାସ କରି କହିଲେ ଏ, ଆପଣ ମେଡ଼ିକାଲରେ ପଢ଼ିବାକୁ ଯୋଗ୍ୟ ନୁହନ୍ତି । ମୁଁ ତାଙ୍କ ପାଖରୁ ଚାଲି ଆସି ଖେଳୁ ଖେଳୁ ଭାବିଲି ଯେ, ଖେଳରେ ବିନା କାରଣରେ ବିପକ୍ଷ ଦଳକୁ ଯେ ମାରପିଟ କରିବ ସେହି ତାହେଲେ କଣ ମେଡ଼ିକାଲରେ ପଢ଼ିବାକୁ ଯୋଗ୍ୟ । ଏ କି ଅବାନ୍ତର କଥା !

ଏ ଛାତ୍ର ଜଣକର ଟିକିଏ ଏଇଠି ପରିଚୟ ଦିଏ । ଯାଙ୍କର ନାଁ ହେଉଛି ଶ୍ରୀ ରାମଚନ୍ଦ୍ର ମିଶ୍ର । ସେତେବେଳେ ଏ ବୋଧହୁଏ ମେଡ଼ିକାଲ ସ୍କୁଲର ତୃତୀୟ ବାର୍ଷିକ ଶ୍ରେଣୀର ଛାତ୍ର । ଅଧୁନା "ଫତୁରାନନ୍ଦ" ନାମରେ ଓଡ଼ିଶା ସାହିତ୍ୟ କ୍ଷେତ୍ରରେ ହାସ୍ୟରସାତ୍ମକ ଲେଖକ ଭାବରେ ସୁପରିଚିତ, ଡଗର ପତ୍ରିକାର ସହକାରୀ ସମ୍ପାଦକ । ମୋର ଅନ୍ତରଙ୍ଗ ବନ୍ଧୁ । ଏ ମେଡ଼ିକାଲରେ ପଢ଼ିବା ସମୟରେ ବିଭିନ୍ନ ନାଟକରେ ଅଭିନେତା ଓ ଅଭିନେତ୍ରୀ ଭୂମିକାରେ ଅଭିନୟ କରି ମେଡ଼ିକାଲ ସ୍କୁଲ ରଙ୍ଗମଞ୍ଚରେ ଖୁବ୍ ସୁନାମ ଅର୍ଜନ କରିଥିଲେ । ଏ ଯେତେବେଳେ ନାରୀ ଭୂମିକାରେ ଅଭିନୟ କରୁଥିଲେ କେହି ବିଶ୍ୱାସ କରିବ ନାହିଁ ଯେ ଏ ଜଣେ ପୁରୁଷ ପିଲା, ଏତେ ଚମତ୍କାର ଅଭିନୟ କରୁଥିଲେ । ପୁରୁଷ ଭୂମିକାରେ ମଧ୍ୟ ସେହିପରି ଚମତ୍କାର ଅଭିନୟ । ସବୁବେଳେ ହାସ୍ୟରସରେ ବୁଡ଼ି ରହିଥାନ୍ତି । ମନଗଢ଼ା ଯେତେ ଅବାନ୍ତର ଗପ କରି ଅନ୍ୟମାନଙ୍କୁ ହସେଇବାରେ ଧୁରନ୍ଧର । କିନ୍ତୁ କେଭେ football ଖେଳନ୍ତି ନାହିଁ । କିନ୍ତୁ football field ରେ ଦର୍ଶକ ଭାବରେ ଠିଆ ହେଲେ ବାହାରିଲା ପାଟି, ଚିତ୍କାର, କଟୁକ୍ତି, ମାରପିଟ କରିବା ପାଇଁ ସ୍ୱରକରି ପିଲାଙ୍କୁ ଆହ୍ୱାନ, ବିପକ୍ଷଦଳଙ୍କୁ ଗାଳି । Football match ବେଳେ ରାମବାବୁ ଲାଇନ୍‌ରେ ଠିଆ ହେଇ ଉତ୍ତେଜନାରେ ଖାଲି ଉଠିବେ ପଡ଼ିବେ । Medical team ଯଦି ଖେଳରେ ଜିତିଛି ସେଦିନ ଆନନ୍ଦରେ ରାମବାବୁ hostel କମ୍ପମାନ କଲେ । ଆଉ ଯଦି medical team ଖେଳରେ ହାରିଛି ସେଦିନ ରାମ ବାବୁଙ୍କର ମନସ୍ତାପରେ ଖାଇବା ପିଇବା, ପାଠପଢ଼ା ସବୁ ବନ୍ଦ । ଖେଳାଳୀମାନଙ୍କୁ ଅଶ୍ଳୀଳ ଭାଷାରେ ଗାଳି ରଷା ଇତ୍ୟାଦି ।

ପରେ ମେଡ଼ିକାଲରେ ପଢ଼ିବା ସମୟରେ ତାଙ୍କର ମୋର ପରିଚୟ ହେଇଥିଲା କିନ୍ତୁ ବିଶେଷ ଘନିଷ୍ଠତା ନଥିଲା । କିଛି କାଳ ପରେ ସେ ମୋର କେମିତି ଅନ୍ତରଙ୍ଗ ବନ୍ଧୁ ହେଲେ ସେ ଘଟଣା ପରେ ବର୍ଣ୍ଣନା କରିବି ।

ମୁଁ anatomy ରେ dissection ଯୋଗୁ କେତେକ ପରିମାଣରେ ଦବି ଗଲି । ତା'ପରେ ଆଉ ଏକ ବିଷୟ physiology । ଏ ବିଷୟଟା ପ୍ରଥମେ ମୋତେ ଭାରି ଅଡୁଆ ଲାଗିଲା । ବହି ନଥାଏ, କେବଳ କ୍ଲାସରେ ଯେଉଁ ନୋଟ ଦକା ହୁଏ ତାକୁ ହିଁ ପଢ଼େ । ସେତେ ଭଲ ଲାଗେ ନାହିଁ । ଆଉ pharmacologyଟା ଭାରି ସହଜ ମନେ ହେଲା । କାରଣ ମୁଁ ତ ଆଗରୁ ଏ ବିଷୟ ପଢ଼ିଥିଲି । କମ୍ପାଉଣ୍ଡରୀ ପଢ଼ିବା ବେଳେ materia medica ରେ ଯାହା ପଢ଼ିଥିଲି ଏଥିରେ ସେହି ବିଷୟ । କିନ୍ତୁ ବିଷଦ୍ ଭାବରେ । ଆଉ ଗୋଟାଏ ବିଷୟ physics, chemistry, ଏ ମଧ୍ୟ ସହଜ ମନେ ହେଲା । କାରଣ ମୁଁ I.Sc. course ଶେଷ କଲା ପରେ Medical School ରେ

admission ନେଇଥିଲି। ମୁଁ Medical School ରେ first year ରେ ପଢ଼ିବା ବେଳେ ମୋର ସାନ ଭଉଣୀ ଶଙ୍କରୀବାଲା(ଟୁକୁନା)ର ବିବାହ କାର୍ଯ୍ୟ ସମାପନ ହୁଏ। ବାବା କେତେ ଟଙ୍କା ମାତ୍ର ପେନ୍‌ସନ୍ ପାଉଥାନ୍ତି, ଅନ୍ୟ କିଛି ରୋଜଗାରର ପନ୍ଥା ନାହିଁ। ସେଥିରେ ପୁଣି ଝିଅକୁ ବିବାହ ଦବାକୁ ହେବ। ବାବା ଟଙ୍କା ଋଣ କରିବା ପାଇଁ ଖୋଜି ବୁଲିଲେ, କିଏ ବା ଖାଲି ହାତରେ ଋଣ ଦେଉଛି? ଏକେ କନ୍ୟାଦାୟ ସେଥିରେ ପୁଣି ମୁଁ ପଢୁଛି। ମୁଁ ମଧ ବାବାଙ୍କୁ କିଛି ସାହାଯ୍ୟ କରିପାରୁନି। ବାବାଙ୍କର ଅବସ୍ଥା ଦେଖି ଦୁଃଖ ଲାଗୁଥାଏ।

ସାନ ଭଉଣୀର ବିବାହ ଅକସ୍ମାତ ଠିକ୍ ହୋଇଗଲା। ସାନ ଭଉଣୀ ବିବାହ ଯୋଗ୍ୟ ହବା ଦିନଠୁଁ ମା ବାବାଙ୍କ ସହିତରେ ଦୈନିକ ଦଫାଏ କଳି ଲଗେଇ କହନ୍ତି ତୁମେ ଝିଅ ପାଇଁ ଗୋଟିଏ ପାତ୍ର ଖୋଜୁନ କାହିଁକି? ବାବା ଅନ୍ୟମନସ୍କ ଭାବରେ ଉତ୍ତର ଦିଅନ୍ତି, ମୋ ହାତରେ ଟଙ୍କା କାହିଁ ଝିଅ ଲାଗି ପାତ୍ର ଖୋଜିବି, ଝିଅ ବାହା ଦେବି? ମା କହନ୍ତି ଝିଅ କଣ ତାହେଲେ ବାଡୁଅ ରହିବ? ବାହା ଦବ ନାହିଁ? ବାବା ଉତ୍ତର ଦିଅନ୍ତି ମୁଁ କିଛି କରିପାରିବି ନାହିଁ। ଭଗବାନ ଯେତେବେଳେ ସୁବିଧା କରିବେ ସେତେବେଳେ ବାହା ହବ।

ତଥାପି ବାବାଙ୍କର ବିନା ଚେଷ୍ଟାରେ ଅନେକ ଜାଗାରୁ ପାତ୍ର ଆସିଲେ। କନ୍ୟା ଦେଖି ପସନ୍ଦ କଲେ। କିନ୍ତୁ ବାବାଙ୍କର ସେ ଜାଗାରେ ପସନ୍ଦ ହେଲାନି। ଘର, ପାତ୍ରର ଯୋଗ୍ୟତା, ରୋଜଗାର ଇତ୍ୟାଦି ବିଚାର କରି ବାବା ଅନେକ ଜାଗାରେ ନାହିଁ କଲେ। କିନ୍ତୁ ଗୋଟାଏ ଜାଗାରେ ବାବାଙ୍କର ବିନା ଚେଷ୍ଟାରେ ବିବାହ ଅକସ୍ମାତ୍ ସ୍ଥିର ହେଇଗଲା। ଘଟଣା ହେଲା ଯାଜପୁର ସବ୍‌ଡ଼ିଭିଜନର ପୁରୁଷୋତ୍ତମପୁର କବିରପୁର (ବଗୁଆଁ) ନିବାସୀ ଗୋକୁଳ ଚନ୍ଦ୍ର ଘୋଷ ବାବାଙ୍କର ଅନେକ ଦିନର ପରିଚିତ, ଅନ୍ତରଙ୍ଗ ବନ୍ଧୁ। ସେ ଯେତେବେଳେ କଟକ ଆସନ୍ତି ଆମରି ବସାରେ ରହନ୍ତି। ଅତି ଉଚ୍ଚକୋଟୀର ଅମାୟିକ ଲୋକ। ମା'ଙ୍କ ତରଫରୁ ମା'ଙ୍କର କିମିତି ଦୂରସମ୍ପର୍କୀୟ ଭାଇ ହେବେ। ଏଣୁ ସେ ଭଦ୍ରଲୋକ ଆମ ଘରକୁ ଆସିଲେ ଆମେ ତାଙ୍କୁ ମାମୁଁ ବୋଲି ଡ଼ାକୁ। ତାଙ୍କ ସହିତରେ ଆମର କୌଣସି ରକ୍ତର ସମ୍ପର୍କ ନାହିଁ। କିନ୍ତୁ ସେ ଯେତେବେଳେ ଆମ ଘରକୁ ଆସନ୍ତି ଆମକୁ ଭାରି ଭଲ ଲାଗେ। ସେ ମୋର ସାନଭଉଣୀକୁ ଅନେକ ବାର କାଖେଇ ବୁଲିଛନ୍ତି। ସେଇ ଯେ ତାଙ୍କର ପୁତ୍ରବଧୂ ହବ ଏକଥା କାହାରିକୁ ଜଣା ନଥିଲା।

ଗୋକୁଳ ଚନ୍ଦ୍ର ଘୋଷ ଥରେ କଟକ ଆସି ଆମ ବସାରେ ପହଞ୍ଚିଲେ। ସାଙ୍ଗରେ ଆଉ ଜଣେ ବ୍ରାହ୍ମଣ ଯୁବକ, ନାଁ ଗୋବିନ୍ଦ ଚନ୍ଦ୍ର ବାନାର୍ଜୀ। ଉଭୟ କଟକ ଆସିଥାନ୍ତି। ଆମରି ବସାରେ ରହିଲେ। କଟକ ଆସିବାର କାରଣ ତାଙ୍କର ସେଠି ଗୋଟିଏ ମାଇନର ସ୍କୁଲ ପ୍ରତିଷ୍ଠା କରିବେ। ସେଥିଲାଗି କିଛି ଅର୍ଥ ସାହାଯ୍ୟ ସଂଗ୍ରହ ପାଇ ଆସିଥାନ୍ତି। ତଦାନୀନ୍ତନ ସ୍କୁଲ ଇନ୍‌ସପେକ୍ଟର ଶ୍ରୀ ଭବନାଥ ମୁଖାର୍ଜୀଙ୍କ ନାମାନୁସାରେ ମାଇନର ସ୍କୁଲର ନାମ "ଭବନାଥ ଏମ୍:ଇ:ସ୍କୁଲ" ରଖାଯିବ। ଏ ହେଲା ୧୯୩୩ ମସିହାର ଘଟଣା। ବର୍ତ୍ତମାନ ଭବନାଥ ଏମ୍:ଇ:ସ୍କୁଲ କବୀରପୁର ହାଇସ୍କୁଲରେ ପରିଣତ ହେଲାଣି। ଗୋକୁଳ ବାବୁ ଓ ଗୋବିନ୍ଦ ବାନାର୍ଜୀ ଉଭୟ ଆମ ଘରେ ଥାଆନ୍ତି। ମୁଁ ଦିନେ ମେଡ଼ିକାଲରୁ ଆସି ଖାଇପିଇ ଶୋଇଲା ବେଳେ ଭାବିଲି ଗୋକୁଳ ବାବୁଙ୍କର ଗୋଟିଏ ପୁଅ ଥାଆନ୍ତା କି, ତା'ରି ସଙ୍ଗେ ମୋର ସାନ ଭଉଣୀର ବିଭାଘର ହେଲେ ଭଲ ହୁଅନ୍ତା। ମୁଁ ଯେତେବେଳେ ଶୋଇ ଉଠି ମେଡ଼ିକାଲକୁ ଯିବା ପାଇଁ ପ୍ରସ୍ତୁତ ହେଉଛି, ମା କହିଲେ ଶୁଣିଛୁ ଏଇ ଗୋକୁଳ ବାବୁଙ୍କର ଗୋଟିଏ ପୁଅ ଅଛି, ସେ ମାଟ୍ରିକ ପାସ୍ କରିଛି। ଗୋବିନ୍ଦ ବାନାର୍ଜୀଙ୍କୁ ଗୋଟିଏ ପାତ୍ର ଯୋଗାଡ଼ କରି ଦେବାକୁ କହିଲାରୁ ସେ କହିଲେ ଗୋକୁଳ ବାବୁଙ୍କର ପୁଅ ସାଙ୍ଗରେ କରୁ ନ?

ମୁଁ ଏକଥା ମା'ଙ୍କଠାରୁ ଶୁଣି ମୁଁ ଶୋଇବା ପୂର୍ବରୁ ଏଇ କଥା ଭାବିଥିଲି ବୋଲି କହିଲି। ଆହୁରି କହିଲି ମା, ଭଲ ହବ ଗୋକୁଳ ବାବୁଙ୍କୁ ପଚାରି ସ୍ଥିର କରିବା ଦରକାର। ମୁଁ ଏତକ କହି ମେଡ଼ିକାଲକୁ ଚାଲିଗଲି। ସେଦିନ ରାତିରେ ବାବା, ମା, ମୁଁ ବଡ଼ ଭଉଣୀ ଏବଂ ଗୋବିନ୍ଦ ବାନାର୍ଜୀ ସମସ୍ତେ ଗୋକୁଳ ବାବୁଙ୍କୁ ଏ ପ୍ରସ୍ତାବ

ଶୁଣେଇଲୁ । ଗୋକୁଳ ବାବୁ ଶୁଣି ଖୁସି ହେଇ କହିଲେ ମୁଁ ଟିକିଏ ଘରେ ବୁଝେ । ଆଉ ଥରେ କଟକ ଆସିଲା ବେଳେ ଏ ବିଷୟରେ ମତାମତ କହିବି ।

କିଛିଦିନ ପରେ ଗୋକୁଳ ବାବୁ କଟକ ଆସି ଆମ ଘରେ ରହିବା ଅବସ୍ଥାରେ ଏ ବିବାହ ପ୍ରସ୍ତାବରେ ନିଜର ମତାମତ ଜଣେଇ ଦେଲେ । ସାନ ଭଉଣୀର ବିଭାଘର ସ୍ଥିର ହୋଇଗଲା । ବାବା, ମା'ଙ୍କର ଚିନ୍ତା ହେଲା ଟଙ୍କା କେମିତି ଯୋଗାଡ଼ ହେବ ? ଟଙ୍କା କୋଉଠୁ ଆସିବ ? ବାବା ଟଙ୍କା ପାଇଁ ଅନେକ ଆଡ଼େ ବୁଲିଲେ କିନ୍ତୁ ଟଙ୍କା କେଉଁଠି ଯୋଗାଡ଼ ହୋଇ ପାରିଲା ନାହିଁ । ବାବା ହତାଶ ହେଲେ, କଣ କରିବେ ? କଟକ ନିକଟସ୍ଥ ଗୋପାଳପୁରରେ ଆମର ଧାନ ଜମି ଥିଲା, ପ୍ରାୟ ବର୍ଷକ ଯାଉଥିଲା । ଏ ଜମିକୁ ବାବା ଅନେକ ଦିନରୁ ଭାବୁଥିଲେ ବିକି ଦେବା ପାଇଁ । କାରଣ ଏ ଜମି ବିଷୟରେ ବାବା କିଛି ବୁଝୁ ନଥିଲେ । ଜେଠା ବୁଝୁଥିଲେ । ସେ ଯେତିକି ପଠେଇଲେ ସେତିକି, ବାବା କିଛି କହନ୍ତି ନାହିଁ । ଜେଠା ବେଶି ଭାଗ ନେଇ ଆମକୁ ଅଳ୍ପ କିଛି ପଠାନ୍ତି । ବାବା ଏଥି ଯୋଗୁ ଅନେକବାର ଭାବିଲେ ଏ ଜମିକୁ ବିକି ଦେଲେ ଯିବ । କିନ୍ତୁ ଧାନ ଜମି ବୋଲି ସେତିକି, ଆଉ ନାହିଁ । ଏଣେ ଝିଅ ବିଭାଘର ଟଙ୍କା ଦରକାର । କେହି ତ ବାବାଙ୍କୁ ପଇସାଟିଏ ସାହାଯ୍ୟ କରିବାକୁ ନାହିଁ ।

ଏଣୁ ସ୍ଥିର ହେଲା ଜମି ବିକ୍ରି ନକଲେ ଆଉ ଉପାୟ ନାହିଁ । ଏଣେ ଜମି ବିକ୍ରିର ଟଙ୍କା ଝିଅ ବିଭାଘରେ ଲାଗିବ । ତେଣେ ଜମିକୁ ବିକି ଦେଲେ, ଜେଠାଙ୍କ ସହିତରେ ଆଉ ବାଦ ବିସମ୍ବାଦର ବାଟ ଥିବ ନାହିଁ । ଜମିରୁ ତ ସେ ଲାଭବାନ ହେଲେ ଆମେ ତ କିଛି ପାଇଲୁ ନାହିଁ । ଏଣୁ ଜମି ବିକି ଦେଲେ ଯିବ, ଜମି ବିକ୍ରି ହେଲା । ବାବା ଜମି ବିକ୍ରି ଟଙ୍କା ଆଣି ଘରେ ଥୋଇ ବିଶେଷ ଦୁଃଖ ଅନୁଭବ କଲେ । ତା'ପରେ ମୋତେ ମଝିରେ ମଝିରେ କହିଲେ ତୁ ପଢ଼, ତୁ ପାସ୍ କଲେ ଆମର ଅବସ୍ଥା ବଦଳିବ । ନୁହେଁ ତ ଆଉ କିଛି ସମ୍ବଳ ନାହିଁ । ବାବାଙ୍କର ଏକଥା ଶୁଣି ମୋତେ ଭାରି ଦୁଃଖ ଲାଗେ । ସାନ ଭଉଣୀର ବିଭାଘର ଭଲରେ ସମାହିତ ହେଇଗଲା । କିନ୍ତୁ ଗୋଟାଏ କଥାରେ ଅନେକଙ୍କ ମନ ବିଷର୍ଣ୍ଣ ହେଇ ପଡ଼ିଲା । ତା'ର କାରଣ ହେଲା ଯେ ବର ଆସିଲେ ତ୍ରିପଣ୍ଡ କଳା, କନ୍ୟାକୁ ବର ମାନିଲା ନାହିଁ । କନ୍ୟାର ରଙ୍ଗ ଚମ୍ପାଫୁଲ ପରି । ସମସ୍ତେ କୁହାକୁହି ହେଲେ କନ୍ୟାକୁ ବର ଆଦୌ ସାଜିଲା ନାହିଁ । ଯା ହଉ ଯାହା ଭାଗ୍ୟରେ ଯାହା ଅଛି ।

ମୋର ବଡ଼ ଭିଣୋଇଙ୍କର ରୂପ, ସ୍ୱାସ୍ଥ୍ୟ ଅତି ଚମତ୍କାର ଥିଲା । ଏ ଯେ ସାନ ଭିଣେଇ ହେଲେ ଏ ବଡ଼ ଭିଣେଇଙ୍କର ରୂପ ଆଉ ସ୍ୱାସ୍ଥ୍ୟ ତୁଳନାରେ ସମ୍ପୂର୍ଣ୍ଣ ବିପରୀତ । ମା ଯଦିଓ ମନ ଖରାପ କଲେ ତଥାପି ନିଜ ମନକୁ ବୋଧ ଦେଇ କହି ହେଲେ ବଡ଼ ଜୋଇଁ ତ ମାଟ୍ରିକ୍ ଫେଲ ଏ ଜୋଇଁ ତ ମାଟ୍ରିକ ପାସ୍ । ପୁଣି କହିଲେ ବଡ଼ ଜୋଇଁ ବଳଦେବ, ସାନ ଜୋଇଁ ଶ୍ରୀକୃଷ୍ଣ ।

ସାନ ଭଉଣୀ ବିଭା ହୋଇଗଲା ବେଳେ ବାବା କହିଲେ, ମୁଁ ଝିଅ ସାଙ୍ଗରେ ଯିବି । ପୁଣି ଅଷ୍ଟମଙ୍ଗଳା କାର୍ଯ୍ୟ ସଇଲେ ଝିଅକୁ ସାଙ୍ଗରେ ନେଇ ଫେରିବି । ଏଣୁ ବରକନ୍ୟା ସହିତରେ ବାବା ମଧ ଗଲେ । ବରୁଆଁ, ପୁରୁଷୋତ୍ତମପୁର ଏବଂ ଯାଜପୁର ମୋ ମାମୁଁଘର । ମୋର ଅଜାଙ୍କର ନିଜ ଘର ଥିଲା ବରୁଆଁ, ପୁରୁଷୋତ୍ତମପୁର । ସେ ଯାଜପୁରକୁ ଘରଜୋଇଁଆ ହେଇ ଆସି ରହିଥିଲେ । ବରୁଆଁରେ ମୋର ମାଉସୀଙ୍କ ଘର । ବରୁଆଁ ପୁରୁଷୋତ୍ତମପୁର ବେଶ ସୁନ୍ଦର ଜାଗା । ବାସିନ୍ଦାଙ୍କ ଭିତରୁ ଅନେକ ଶିକ୍ଷିତ । କେବଳ ବନ୍ୟା ସମୟରେ ବରୁଆଁର ଅବସ୍ଥା ଖରାପ ହୁଏ । ବୁଢ଼ା, ଖରସୁଆଁ ନଦୀରେ ବନ୍ୟା ଆସିଲେ ବରୁଆଁର ଅନେକ କ୍ଷତି ହୁଏ । ନଚେତ୍ ଅନ୍ୟ ସମୟରେ ଅତି ସୁନ୍ଦର ପରିବେଶ ।

ସାନ ଭଉଣୀ ବିଭା ହେଇ ଶଶୁର ଘରକୁ ଗଲା ପରେ ଆମେ ଘରେ ରହିଲୁ ବାବା, ମା ଏବଂ ମୁଁ ଆଉ ଜଣେ ଚାକର । ଗୋଟାଏ କଥା ଲେଖିବାକୁ ଭୁଲି ଯାଇଛି । ସାନ ଭଉଣୀ ବିଭା ହେବାର କିଛି ଦିନ ଆଗରୁ ତାକୁ ଏକ ଅଦ୍ଭୁତ ପ୍ରକାର ରୋଗ ଧରିଥିଲା । ରୋଗ ହଠାତ୍ ଦିନେ ଆରମ୍ଭ ହେଲା । ଦିନେ ସନ୍ଧ୍ୟା ପୂର୍ବରୁ ମା, ମୁଁ, ବଡ଼ ଭଉଣୀ, ସାନ ଭଉଣୀ ସମସ୍ତେ ବାହାର ଆଡ଼େ

ବସିଛୁ, ଗପ କରୁଛୁ ହଠାତ୍ ସାନ ଭଉଣୀ କହିଲା ମୋ ଛାତି କ'ଣ ହେଉ ଯାଉଛି। ଆମେ ସମସ୍ତେ ତାକୁ ପଚରା ଉଚୁରା କଲୁ, କ'ଣ ହଉଛି ଡାକ୍ତର ଡାକିବା? ସାନ ଭଉଣୀ ମୋ ହାତକୁ ବିକଳ ହେଇ ଧରି ପକେଇ କହିଲା ହଁ ଡାକ। ଆମେ ସବୁ ଆତଙ୍କିତ ହେଇ ପଡ଼ିଲୁ, କଣ ହେଲା? ସାନ ଭଉଣୀ ବସି ଗପ କରୁଥିଲା ହଠାତ୍ ଏମିତି କଣ ହେଲା? କିନ୍ତୁ ଅଳ୍ପ ସମୟ ପରେ ତାକୁ ସୁସ୍ଥ ଜଣାଗଲା। ତାକୁ ପଚାରିବାରୁ ସେ କହିଲା ତା'ର ଛାତି ଅତି ମାତ୍ରାରେ ଧଡ଼ପଡ଼ ହେଲା।

ସାନ ଭଉଣୀର ଏ ଯେଉଁ ରୋଗ ଆରମ୍ଭ ହେଲା, ଏମିତି କିଛିଦିନ ବ୍ୟବଧାନରେ ବାରମ୍ୱାର ହେଲା। ଯେଉଁ ସମୟରେ ଏମିତି ଯନ୍ତ୍ରଣା ଆରମ୍ଭ ହୁଏ, ତା'ର ମୁହଁ ନେଳି ପଡ଼ିଯାଏ। ବାରମ୍ୱାର ହାଇ ଉଠେ। ହାତ ଗୋଡ଼ର ଶିରା ସବୁ ଫୁଲି ଉଠି ବଡ଼ ଦେଖାଯାଏ। ଛାତି ଧଡ଼ ପଡ଼ ହୁଏ। ଏଇ ସମୟରେ ମା ତାକୁ ଧରି ବସନ୍ତି। ପୁଣି କିଛି ସମୟ ପରେ ଭଲ ଲାଗେ। ପୁଣି ଭଲ ମଣିଷ ପରି କଥାବାର୍ତ୍ତା କରେ। ସାନ ଭଉଣୀର ଏଇ ରୋଗ ପରେ ଯେ କେତେ ମାରାତ୍ମକ ହେଲା ତା' ପରେ ବର୍ଣ୍ଣନା କରିବି। ସାନ ଭଉଣୀ ବିଭା ବେଳକୁ ମେଡ଼ିକାଲରେ ମୁଁ 1st year ରେ ପଢୁଥାଏ। ମୁଁ ମ୍ୟାଟ୍ରିକ୍ ଆଉ କଲେଜରେ ପଢ଼ିବା ବେଳେ ମୋର ସ୍ୱାସ୍ଥ୍ୟ ଭାରି ଦୁର୍ବଳ ଥିଲା। କିନ୍ତୁ ମେଡ଼ିକାଲରେ 1st year ପଢ଼ିବା ବେଳକୁ ମୋର ସ୍ୱାସ୍ଥ୍ୟ ଅନେକ ବଦଳି ଗଲାଣି। ତା'ର କାରଣ ହେଲା ମୁଁ ମ୍ୟାଟ୍ରିକ୍ ପରୀକ୍ଷା ଦେଲା ପରଠୁ ବାର ରକମର ବ୍ୟାୟାମ କରିବା ପାଇଁ ମନ ବଳେଇଲି। ଯେମିତି କୁସ୍ତି, ନିତି ବାର (daily dozen) Mullar ଙ୍କ daily fifteen minutes, daily five minutes, parallel bar ଇତ୍ୟାଦି। ତାଛଡ଼ା football ଖେଳ ତ ଥାଏ। ମୁଁ ମେଡ଼ିକାଲରେ admission ନବା ଆଗରୁ ଥରେ କଟକ ଇଞ୍ଜିନିୟରିଂ ସ୍କୁଲର sports ଦେଖିବାକୁ ଗଲି। ସେଠି ଯା ଯେମିତି କ୍ରୀଡ଼ା ପ୍ରତିଯୋଗୀତା ଦେଖିଲି ସେଥି ମଧ୍ୟରେ ଇଞ୍ଜିନିୟରିଂ ସ୍କୁଲର ଜଣେ ଛାତ୍ର ଅମର ଦେ'ଙ୍କର weight lifting ଦେଖି ବିଶେଷ ଚମତ୍କୃତ ଏବଂ ଆକୃଷ୍ଟ ହେଲି। ମୋର ମନେ ହେଲା ଏମିତି barbell ଦ୍ୱାରା ବ୍ୟାୟାମ କରି weight lifting କରିବି। ସେଠି ମଧ୍ୟ ଆଲୋଚନା ଶୁଣିଲି ଯେ ଅମର ଦେ କେବଳ barbell ସାହାଯ୍ୟରେ ବ୍ୟାୟାମ କରି ଏମିତି ସୁନ୍ଦର ବଳିଷ୍ଠ ଶରୀର ଗଢ଼ିପାରିଛି। ଇଞ୍ଜିନିୟରିଂ ସ୍କୁଲର sports ଦେଖି ଆସି ମନ ଗୋଳେଇ ଘାଣ୍ଟି ହେଲା। ଗୋଟାଏ bar bell କେମିତି କୋଉଠୁ ଯୋଗାଡ଼ କରିବି? ମୋର ସାଙ୍ଗ ମୃଣାଳକୁ ଏକଥା କହିଲି।

ମୃଣାଳ ମୋର barbell ସାହାଯ୍ୟରେ ବ୍ୟାୟାମ କରିବାର ଆଗ୍ରହ ଦେଖି କହିଲା ଚାଲ ଅମର ଦେ ସହିତରେ ଇଞ୍ଜିନିୟରିଂ ସ୍କୁଲରେ ଦେଖାକରି ତାଠୁ ବୁଝିବା barbell ର ଦାମ୍ କେତେ? କେଉଁଠି ମିଳିବ। ସେ ନିଶ୍ଚୟ କହିପାରିବ।

ଏହି ପ୍ରସ୍ତାବ ଅନୁଯାୟୀ ଦିନେ ସନ୍ଧ୍ୟାପରେ ମୁଁ ମୃଣାଳ ଉଭୟେ ଇଞ୍ଜିନିୟରିଂ ହଷ୍ଟେଲକୁ ଯାଇ ଅମର ଦେ ସହିତରେ ଦେଖା କଲୁ। ଅମର ଦେ ସମ୍ପୂର୍ଣ୍ଣ ଅପରିଚିତ। ସେଇଦିନ ପ୍ରଥମ ଦେଖା। ମୁଁ ଅମର ଦେ'ଙ୍କୁ ତାଙ୍କର weight lifting ର ପ୍ରଶଂସା କରି କହିଲି ଆପଣଙ୍କର weight lifting ଦେଖି ମୋର ମନ ହଉଛି barbell exercise କରିବି। କିନ୍ତୁ barbell ଖଣ୍ଡିଏ କେମିତି ଯୋଗାଡ଼ କରିବି। ସେଇ ଉଦ୍ଦେଶ୍ୟରେ ଆପଣଙ୍କ ପାଖକୁ ଆସିଛି।

ଅମର ଦେ ମୋ ପ୍ରତି ବେଶ୍ ସହାନୁଭୂତି ଦେଖେଇ କହିଲେ ମୁଁ ଗୋଟାଏ ଆପଣଙ୍କୁ rod ଏବଂ ଦୁଇଟା disc ଦେଇପାରେ। ଆପଣ ତାକୁ ନେଇ ଆଗେ ଆରମ୍ଭ କରନ୍ତୁ। ଆହୁରି barbell exercise ବିଷୟ କେତେକ ବହିର ଠିକଣା ଦେଲେ ଯେଉଁ ସବୁ ବହିରେ barbell exercise ର ବ୍ୟାୟାମ ପଦ୍ଧତି ଅନୁସରଣ କଲେ ଶରୀରର ଉନ୍ନତି ହବ। ମୁଁ ଏବଂ ମୃଣାଳ ଉଭୟେ ଅମର ଦେ'ଙ୍କ ନିକଟରୁ ବିଦାୟ ନେଇ ଆସିଲୁ। ମନ ସବୁବେଳେ ଗୋଳେଇ ଘାଣ୍ଟି ହେଲା କେମିତି ପୁରା barbell ଗୋଟାଏ ଯୋଗାଡ଼ ହେବ। ଆଉ କୌଣସି ବ୍ୟାୟାମ କରିବାକୁ ମନ ହେଲା ନାହିଁ।

ଯେତେବେଳେ ମୁଁ ମେଡ଼ିକାଲ ସ୍କୁଲରେ admission ନିଏ ସେଠି କିଛିଦିନ ପରେ ଦିନେ ମେଡ଼ିକାଲ ସ୍କୁଲର hostel କୁ ଯାଇ ଦେଖେ କେତେକ ପିଲା barbell ନେଇ ବ୍ୟାୟାମ କରୁଛନ୍ତି । ତାଙ୍କ ସାଙ୍ଗରେ ଯାଇ ମିଶି barbell ଟେକା ଟେକି କଲି । ଭାରି ଖୁସି ଲାଗିଲା । କିନ୍ତୁ barbell ଦ୍ୱାରା ଯେତେ ପ୍ରକାର ଶରୀରର ସବୁ ଅଂଶ ପାଇଁ ବ୍ୟାୟାମ କରିବା ଦରକାର ସେଠିତ ସବୁ କରି ହେଲା ନାହିଁ । ଏଣୁ ମନ ଡାକିଲା ନିଜର ଗୋଟାଏ barbell ଥିଲେ ଶରୀର ପାଇଁ ସବୁ ପ୍ରକାର ବ୍ୟାୟାମ ନିଜ ଘରେ କରି ହବ । କିନ୍ତୁ barbell କିଣିବା କଣ ସହଜ ହେଉଛି ? ବାବାଙ୍କୁ ତ ଏ ବିଷୟ କହିବା ଅର୍ଥ ଗାଳି ଖାଇବା । Barbell କେମିତି କେଉଁଠୁ ଯୋଗାଡ କରିବି ଭାବି ଭାବି ମୁଣ୍ଡ ପାଗଳ ହେଲା ଭଳି ଜଣାଗଲା କିନ୍ତୁ ଠିକ୍ ଏଇ ସମୟରେ ଭଗବାନ ଯେମିତି barbell ଗୋଟିଏ କିଣିବାର ସୁବିଧା କରିଦେଲେ । ଗୋଟାଏ ଘଟଣା ହେଲା ସେତେବେଳେ ମେଡ଼ିକାଲ ସ୍କୁଲରେ ପ୍ରଥମ ବାର୍ଷିକ ଶ୍ରେଣୀରେ ପ୍ରଥମ ପରୀକ୍ଷାର ନମ୍ବର ଅନୁପାତରେ କେତେକ schlorship, free studentship ଦିଆ ଯାଉଥିଲା । ଏଣୁ ପ୍ରଥମ ବାର୍ଷିକ ଶ୍ରେଣୀରେ ପ୍ରଥମ ପରୀକ୍ଷାରେ ମୋର ଯେତିକି ନମ୍ବର ରହିଲା ତା'ରି ଉପରେ ମୋତେ Mayurabhanj schlorship ବର୍ଷକ ପାଇଁ ମାସିକ ଦଶ ଟଙ୍କା ମିଳିବାର କଥା କିନ୍ତୁ ମୋର ଦୁର୍ଭାଗ୍ୟକୁ ମୋର ଯେତିକି ନମ୍ବର ଥିଲା ଆଉ ଜଣେ ପିଲା ଅଲେଖ ପ୍ରସାଦ ମହାନ୍ତିର ସେତିକି ନମ୍ବର ଥିଲା । ଏଣୁ ସେ ଦଶ ଟଙ୍କା ଦୁଇ ଭାଗ ହୋଇଗଲା । ମୁଁ ପାଞ୍ଚ ଟଙ୍କା ମାସିକ ପାଇଲି । ସେ ମଧ ପାଞ୍ଚ ଟଙ୍କା ପାଇଲା । ମାସିକ ଦଶଟଙ୍କା ପାଇଥାନ୍ତି । ଦୁର୍ଭାଗ୍ୟକୁ ପାଞ୍ଚଟଙ୍କା ପାଇଲି । ଏକଥା ମୁଁ ଆଉ ଭାବିଲି ନାହିଁ । ଯେଉଁ ପାଞ୍ଚଟଙ୍କା ମାସିକ ପାଇଲି ସେଇଥିରେ ମୋ ଛାତି କୁଣ୍ଢେମୋଟ, ମନ ଖାଲି ଆକାଶକୁ ଉଠିଲା । ମୁଁ କିଏ ? ଟଙ୍କା କିଏ ? ମାସିକ ପାଞ୍ଚ ଟଙ୍କା ପାଇଲି । ସେ ପୁଣି ବର୍ଷେକାଳ । ଆଗେ ଚିନ୍ତା କଲି ଟଙ୍କା ଜମେଇ ଗୋଟାଏ barbell କିଣିବି ।

ଏଇ ସମୟରେ ଦିନେ ମୃଣାଳ ଆସି ଖବର ଦେଲା ହଇରେ barbell କିଣିବୁ ବୋଲି କହୁଥିଲୁ, କିଣିବୁ ? ମୁଁ ମୃଣାଳକୁ ପଚାରିଲି କୋଉଠି ମିଳୁଛି ? ମୃଣାଳ କହିଲା ରଘୁ କର୍ସନ ଘରେ ତା'ର ଜଣେ ପୁତୁରା ଭଗବାନ କି ରାଠୋର ଗୋଟାଏ barbell କିଣିଥିଲା, barbell ଟା ଏକେବାର ନୂଆ ଅଛି । ସେ କିଛି barbell ରେ exercise କଲା ଆଉ କରୁନାହିଁ । ସେମିତି ପକେଇ ଦେଇଛି କହୁଥିଲା ବିକି ଦେବ । ସେ ୧୬ଟଙ୍କାରେ କଲିକତାର Whiteway Laudlaw କମ୍ପାନୀରୁ କିଣିଥିଲା । ମୁଁ ତାକୁ ଅଳ୍ପ ଟଙ୍କାରେ କିଣେଇ ଦେବି ।

ମୃଣାଳର ପ୍ରସ୍ତାବ ଅନୁଯାୟୀ ଦିନେ ମୃଣାଳ, ମୁଁ ୭ଟଙ୍କା ଧରି ଗଲୁ । ଏ ଯେଉଁ ୭ଟଙ୍କା ନେଲି ଏଥିରେ ମୋର Mayurabhanj schlorship ୫ଟଙ୍କା ଆଉ ୨ଟଙ୍କା ମା'ଙ୍କ ଠାରୁ ନେଇ ଇମିତି ମୋଟ ୭ଟଙ୍କା ନେଇ ଗଲି । ମୁଁ, ମୃଣାଳ ଯାଇ ଭଗବାନକୁ ଭେଟିଲୁ । ଭଗବାନ ଭାରି ଅମାୟିକ ଉଚ୍ଚମନା ପିଲା । ସେ ମୃଣାଳର ପରମ ବନ୍ଧୁ, ମୋର କେବଳ ପରିଚିତ । Barbell ମୁଁ କିଣିବି ବୋଲି ମୃଣାଳ ତାକୁ କହିଲା । ଦର ଛିଣ୍ଡିଲା ୭ଟଙ୍କା । କିନ୍ତୁ ମୁଁ ତାକୁ ଦେଲି ଛ ଟଙ୍କା ବାରଣା ଆଉ ୩ ଅଣାରେ ରିକ୍ସା ଖଣ୍ଡେ ଭଡ଼ା କରି ଭଗବାନଙ୍କ ଘରୁ Ravenshaw କଲେଜ ନିକଟରୁ ରିକ୍ସାରେ ଲଦି ଆମ ଘରକୁ ନେଇ ଆସିଲି । ମନ ଆନନ୍ଦରେ ଫୁଲି ଉଠୁଥାଏ । ଯା ହଉ barbell ଗୋଟାଏ କିଣିଲି । ଏ barbell କିଣିବା ସମ୍ଭବ ହୋଇ ପାରିଲା କେବଳ ମୃଣାଳ ଯୋଗୁଁ । ମୃଣାଳ ପ୍ରତି କୃତଜ୍ଞତାରେ ଅନ୍ତର ଭରି ଉଠୁଥାଏ ।

ଘରେ ଆସି barbell ନେଇ ପହଞ୍ଚିଲା ବେଳକୁ ବାବା, ମା ଘରେ ଥାନ୍ତି । ମନେ ମନେ ଟିକିଏ ଚପିଗଲି କାରଣ ବାବା ଦେଖିଲେ ଅଭିକା ବିରକ୍ତ ହେବେ । ତଥାପି ନିଜକୁ ସମାଳି ନପାରି barbell କୁ ଠିକ୍ କରି ଅଳ୍ପ ଓଜନ ଦେଇ ବାବାଙ୍କ ଆଗରେ ଟେକିଲି, ବାବା ଦେଖି ପାଟି କରି କହିଲେ ହଁ ଏଇ ସବୁ କରି ହାତ ଗୋଡ଼ ଭାଙ୍ଗିବୁ, ପାଠ ପଢ଼ିବା ମିଛ, କେବଳ ଏଇ ସବୁରେ ମାତି ପାଠ ପଢ଼ା ନଷ୍ଟ କରିବୁ ।

Barbell କିଣିଲି କିନ୍ତୁ ତାକୁ ନେଇ ଶରୀରର ସବୁ ଅଂଶର କେମିତି ବ୍ୟାୟାମ କରାଯିବ, ସେ ବିଷୟରେ

ଚିନ୍ତା ଆରମ୍ଭ ହେଲା । କେତେକ ସାଙ୍ଗଙ୍କୁ ପଚାରି କେତେକ ବହିର ଠିକଣା ସଂଗ୍ରହ କଲି କିନ୍ତୁ ସେ ବହି କିଣିବି କେମିତି ? ସେ ସବୁ ବହି ଖଣ୍ଡକର ଦାମ୍ ପ୍ରାୟ ୫ଟଙ୍କା ଭଳି । କିଣିବାର ଉପାୟ ନାହିଁ । ଏଣୁ ଖଣ୍ଡେ ବହି ଯୋଗାଡ଼ କରି ତାକୁ ପୂରା ନକଲ କରି ପକେଇଲି । ତା'ପରେ ଯା'ଠୁ ବହି ମାଗି ଆଣିଥିଲି ତାକୁ ଫେରେଇ ଦେଲି । ତା'ପରେ barbell ରେ ବ୍ୟାୟାମ କରିବା ଆରମ୍ଭ ହେଲା । ଗୋଟିଏ exercise କଲାପରେ ଥକା ଲାଗେ । ଏଣୁ ମଶିଣା ଖଣ୍ଡିଏ ଆଗରୁ ପାରି ରଖିଥାଏ । ତା ଉପରେ ଅଳ୍ପ ସମୟ ଶୁଏ ପୁଣି କିଛି ସମୟ ପରେ ଉଠି ଆଉ ଗୋଟାଏ exercise କରେ । ମୋର ବଡ଼ ଭଉଣୀ ମୋତେ ଥରେ ଶୋଇବା, ପୁଣି ଉଠି ବ୍ୟାୟାମ କରିବା ଦେଖି କହନ୍ତି ଯଦି ନପାରୁଛୁ ତାହେଲେ ସେ ଲୁହାଗୁରା ଟେକି ଏତେ କଷ୍ଟ ଭୋଗୁଛୁ କାହିଁକି ?

ବାବା, ମା ମଧ୍ୟ ସେମିତି ମଝିରେ ମଝିରେ ମନ୍ତବ୍ୟ ପ୍ରକାଶ କରନ୍ତି । ମୁଁ କାହାରି କଥା ଶୁଣେ ନା । ମୋର ମୁଁ ଯେତେଟା ପାରେ କିଛି କିଛି barbell ଦ୍ୱାରା ଦୈନିକ ସନ୍ଧ୍ୟାବେଳେ ବ୍ୟାୟାମ କରେ । Barbell ଦ୍ୱାରା ବ୍ୟାୟମ କରିବା ପ୍ରଥମେ ପ୍ରଥମେ ଭାରି କଷ୍ଟ ଲାଗୁଥାଏ । ଏମିତି କି ମନ ହଉଥାଏ, barbell ଦ୍ୱାରା ଆଉ ବ୍ୟାୟମ କରିବି ନାହିଁ ।

ପୁଣି ମନେ ମନେ ଭାବେ ବର୍ତ୍ତମାନ କଷ୍ଟ ଲାଗୁଛି । ପରେ ଯେତେବେଳେ ଅଭ୍ୟାସ ହେଇଯିବ ଆଉ କଣ ଏତେ କଷ୍ଟ ଲାଗିବ ? ତିନିମାସ କୌଣସି ମତେ କଷ୍ଟ କରି ବ୍ୟାୟାମ କରି ଦେଲେ ଶରୀରର ଅଦ୍‌ଭୁତ ପରିବର୍ତ୍ତନ ହବ ନାହିଁ । ଯେତେ କଷ୍ଟ ଲାଗୁ ପଛେ ଦୈନିକ ଅଳ୍ପ ଅଳ୍ପ କରି ବ୍ୟାୟାମ କରିବି । Barbell ଦ୍ୱାରା ଦୈନିକ ବ୍ୟାୟାମ କଲି । Barbell ଦ୍ୱାରା ବ୍ୟାୟାମ କରିବା ପାଇଁ ବାରିଆଡ଼େ ଗୋଟାଏ ଏକୁଟିଆ ଜାଗା ଠିକ୍ କରି ତାକୁ ଲିପା ପୋଛା କରେଇ ବେଶ୍ ଗୋଟିଏ ଚଉତୁରା ପରି କଲି । ବ୍ୟାୟାମ କଲା ବେଳେ barbell କୁ ସେଠିକି ଗୋଟିଏ ଚାକର ଦ୍ୱାରା ବୁହାଇ ନେଇଯାଏ । ଏ ଚାକରଟିର ନାମ ଅରକ୍ଷିତ । ପ୍ରକୃତ ଅରକ୍ଷିତ ସେ । ମା, ବାପ ସମସ୍ତେ ମରି ଯାଇଥାନ୍ତି । ବିଚାରା ସଂସାରରେ ଏକା । ଯାକୁ ଯେତେବେଳେ ମୁଁ ଆମ ଘରକୁ ଆଣେ ସେ ଏତେ ରୁଗ୍‌ଣ ଏବଂ ଅପରିଷ୍କାର ଥିଲା ଯେ ସେ ଆଗ ଦାଣ୍ଡ ଆଡ଼ ପାହାଚ ଉପରେ ବହୁ କଷ୍ଟରେ ଉଠିଲା । ଯାର ଅପରିଷ୍କାର ଏବଂ ରୁଗ୍‌ଣ ଅବସ୍ଥା ଦେଖି ମୋର ବଡ଼ ଭଉଣୀ, ସାନ ଭଉଣୀ ଉଭୟେ ନାକ ଟେକି କହିଲେ ଛି ଛି ଏ କଣ ଆମ ଘରେ ରହିବ ? ମୁଁ ସେମାନଙ୍କ ଉପରେ ବିରକ୍ତ ହେଇ କହିଲି କ'ଣ ଘୃଣା ଲାଗୁଛି ? ମଣିଷ ସେ, ରୋଗରେ ପଡ଼ି ସେମିତି ହେଇଛି । ଆମ ଘରେ ରହି ଖାଇଲେ ପିଇଲେ ପୁଣି ସୁସ୍ଥ ସବଳ, ପରିଷ୍କାର ହବନି ? ଆଜି ତୁମର ଏମିତି ଅବସ୍ଥା ହେଇଥାନ୍ତା ? ତୁମକୁ କ'ଣ ଘରୁ ବାହାର କରି ଦିଆଯାନ୍ତା ? ନାହିଁ ସେ ରହିବ ।

ମୋର କଥା ଶୁଣି ଆଉ କେହି କିଛି ପ୍ରତିବାଦ କଲେ ନାହିଁ । ଅରକ୍ଷିତା ରହିଲା । ଆମର ସେତେବେଳେ ଗୋଟିଏ କୋବି ବଗିଚା ହେଉଥାଏ । ସେ ବଗିଚା ଶେଷ ମୁଣ୍ଡରେ ବଖରାଏ ଛୋଟ ଚାଳଘର ଥାଏ । ସେଇ ଘର ନିକଟରେ ଖଣ୍ଡିଏ ଚୁଆ ଥାଏ, ସେଥିରେ ଡେଙ୍କା ଲାଗିଥାଏ ।

କୋବି କିଆରିକୁ ପାଣି ମଡ଼ା ହବା ପାଇଁ ଅରକ୍ଷିତାକୁ କାମ ଦିଆ ଗଲା । ସେ ସେଇ ଛୋଟ ଚାଳ ଘରଟିରେ ରହିବ । ସେ ସେଇଠି ବସି କୋବି କିଆରି ଜଗିବ । ମାଙ୍କଡ଼ ପଶିଲେ ଡାକ ପକେଇବ କାରଣ ତା'ର ତ ବଳ ପାଉ ନଥାଏ ଚାଲବୁଲ କରିବା ପାଇଁ । ଏଣୁ ସେ ଖାଲି ଡାକ ପକେଇବ । ଅରକ୍ଷିତା ସେଇ ଚୁଆ ଖଣ୍ଡିକରେ ଗାଧାଏ । ଖାଇଲା ବେଳେ ମୋର ସାନ ଭଉଣୀ ନେଇ ତାକୁ ଭାତ ଦେଇ ଆସେ । ମୁଁ ଘରେ ସମସ୍ତଙ୍କୁ ମନା କରିଥାଏ ତାକୁ ବେଶି ଗୁରାଏ ଖାଇବାକୁ ଦବ ନାହିଁ । କାରଣ ଦୁର୍ବଳ ଅବସ୍ଥା ବେଶି ଗୁରାଏ ଖାଇଲେ ଜୀର୍ଣ୍ଣ କରି ପାରିବନି । ଅରକ୍ଷିତ କିନ୍ତୁ ଗୁରାଏ ଖାଇବାକୁ ଚାହୁଁଥାଏ ।

କିଛିଦିନ ପରେ ଅରକ୍ଷିତ ସୁସ୍ଥ ସବଳ ହେଇ ଉଠିଲା । ପରିଷ୍କାର ପରିଚ୍ଛନ୍ନ ମଧ୍ୟ ହେଲା । ତା'ପରେ ଘରେ ଆସି କାମଧନ୍ଦା କଲା । ତାକୁ ମୁଁ କାମ ଦେଉଥାଏ ।

ମୁଁ ଦୈନିକ ସନ୍ଧ୍ୟାରେ ବ୍ୟାୟାମ କରିବା ପୂର୍ବରୁ ଅରକ୍ଷିତ barbell କୁ ଅଳ୍ପ ଅଳ୍ପ କରି ବୋହି ଆଣି ବାରିଆଡ଼ ଚଉତୁରା ଉପରେ ରଖୁବ । ପୁଣି ବ୍ୟାୟାମ କଲା ପରେ, barbell କୁ ଅଳ୍ପ ଅଳ୍ପ କରି ବୋହି ନେଇ ଯେଉଁଠି ରଖା ହୁଏ, ସେଇଠି ରଖୁବ । ମୁଁ ତାକୁ ଏମିତି ଦୈନିକ barbell ନବା ଆଣିବା କରେଇବା ଦ୍ୱାରା ତାକୁ ତା'ର ବ୍ୟାୟାମ କରିବା ବୋଲି ଧରି ନେଲି । ଅରକ୍ଷିତ ମଧ୍ୟ ଦୈନିକ barbell ନବା ଆଣିବା କରେ ।

ଅରକ୍ଷିତକୁ ମୁଁ ଆଣିଥିଲି ଡାକ୍ତରଖାନାରୁ । ତା'ର ଘର କଟକ ଜିଲ୍ଲା ଫତେଗଡ଼ । ସେ ରୋଗରେ ପଡ଼ି ତା' ଗାଁରୁ କଟକ ବଡ଼ ଡାକ୍ତରଖାନାକୁ ଆସିଥିଲା ଚିକିତ୍ସା ହବା ପାଇଁ । ଅରକ୍ଷିତର ବୟସ ସେତେବେଳେ ପ୍ରାୟ ୧୬/ ୧୭ ହବ । ତାର ଗୋଟିଏ ଗୋଡ଼ ପିଲାବେଳୁ polio ରୋଗରେ ସରୁଆ ହୋଇ ଯାଇଥିଲା । ମୁଁ medical ରେ ପଢ଼ିବା ଦିନୁ ଅନେକ ସମୟରେ ସେ ଯାଇ ରୋଗୀଙ୍କ bedside chart ଦେଖେ । କା'ର ଅବସ୍ଥା କେମିତି ? କିଏ ଅଛି ନ ଅଛି ? କିଏ ସମ୍ପୂର୍ଣ୍ଣ ଅସହାୟ । ଯେ ସମ୍ପୂର୍ଣ୍ଣ ଅସହାୟ ଡାକ୍ତରଖାନାରୁ ତଡ଼ି ଦେଲେ ଆଉ କିଛି ଉପାୟ ନାହିଁ ଚଳିବାକୁ । ସେମିତି ଲୋକ ଦେଖି ମନ ମାନିଲେ ତାଙ୍କୁ ଘରେ ଆଣି ରଖେ ।

ଅରକ୍ଷିତ କିଛିଦିନ ପରେ ବେଶ୍ ସୁସ୍ଥସବଳ ହେଇ ଉଠିଲା । ପେଟ, ବାହୁ, ଛାତି, ଜଂଘ ସବୁ କିଛିର ଅତି ଅଦ୍ଭୁତ ପରିବର୍ତ୍ତନ ଦେଖା ଗଲା । ନିଶ ଗଜୁରି ଆସିଲା, ତାରୁଣ୍ୟ ଫୁଟି ଉଠିଲା । ସେ ଛୋଟେଇ ଛୋଟେଇ ଚାଲିଲେ ମଧ୍ୟ ତା'ର ଚାଲି ଦେଖୁଲେ ବରାବର ମନେ ପଡ଼ିଲା ଥିଲି କି ହେଲିକି । ଦେଖ ମୋର ଚାଲିକି । ଅରକ୍ଷିତା ସମ୍ପୂର୍ଣ୍ଣ ପରିବର୍ତ୍ତନ ହବା ପରେ ମୋର ଦୁଇ ଭଉଣୀଙ୍କୁ କହିଲି ଅରକ୍ଷିତକୁ ଦେଖୁଲ ତ ? ଘୃଣା କରୁଥିଲ କାହିଁକି ? ମଣିଷ ସେ, ଖାଇଲେ ପିଇଲେ ତା'ର ପରିବର୍ତ୍ତନ ହବ ନାହିଁ ? ଦିନେ ମୁଁ barbell ଦ୍ୱାରା ବ୍ୟାୟାମ କରିବା ପୂର୍ବରୁ ବଡ଼ଭଉଣୀଙ୍କୁ କହିଲି ତୁମେ ଆସ ବସି ଦେଖୁବ ମୁଁ ବ୍ୟାୟାମ କରିବି । ସେତେବେଳକୁ barbell ଦ୍ୱାରା ଶରୀରର ସବୁ ଅଂଶର ବ୍ୟାୟାମ କରି ପାରିଲିଣି । ମୋର ମଧ୍ୟ ଶରୀରରେ ସାମାନ୍ୟ ଜୋର ଆସି ଗଲାଣି । ବଡ଼ଭଉଣୀ ଯାଇ ବସିଲେ । ମୁଁ barbell ଦ୍ୱାରା ସବୁପ୍ରକାର ବ୍ୟାୟାମ କରି ଦେଖେଇଲି । ବଡ଼ଭଉଣୀ ମୋର ବ୍ୟାୟାମ କରିବା ଦେଖି ଶେଷରେ ମନ୍ତବ୍ୟ କଲେ ତୁ ଯାକୁ ଦୈନିକ କଲେ ତ ଗୋଟାଏ ଗୁଣ୍ଡା ପରି ପହିଲୁବାନ୍ ପାଲିଟି ଯିବୁ । ମୁଁ ସବୁଦିନ barbell ଦ୍ୱାରା ବ୍ୟାୟାମ କରେ । କେବଳ ରବିବାର ଦିନଟା ବ୍ୟାୟାମ ବନ୍ଦ କରେ । Barbell ସାହାଯ୍ୟରେ ଦୈନିକ ତିନିମାସ ଯାଏ ବ୍ୟାୟାମ କରିବା ଦ୍ୱାରା ମୋର ଶରୀରର ଅଦ୍ଭୁତ ପରିବର୍ତ୍ତନ ହେଲା । ବାବା ଯାହା ବିରକ୍ତ ହଉଥିଲେ ଏଣିକି ମୋର ଶରୀରର ପରିବର୍ତ୍ତନ ଦେଖି ଯେଉଁ ରବିବାର ମୁଁ ବ୍ୟାୟାମ କରା ବନ୍ଦ କରେ ବାବା ମୋତେ ଓଲଟି ପଚାରିଲେ ଆଜି କାହିଁକି ବ୍ୟାୟାମ କଲୁ ନାହିଁ ? ମୁଁ କହେ ସପ୍ତାହରେ ଦିନେ ବନ୍ଦ କରି ବିଶ୍ରାମ ନବା କଥା । ଏଣୁ ପ୍ରତି ରବିବାରଟା ମୁଁ ବ୍ୟାୟାମ ବନ୍ଦ କରୁଛି । ମୁଁ ବାବାଙ୍କ କଥାରୁ ବୁଝି ପାରିଲି ମୋର ଶାରୀରିକ ପରିବର୍ତ୍ତନ ଦେଖି ବାବାଙ୍କର ମଧ୍ୟ ମୋର ବ୍ୟାୟାମ କରିବା ପ୍ରତି ଆଗ୍ରହ ଜନ୍ମିଲାଣି । Barbell ଦ୍ୱାରା ମୋର ବ୍ୟାୟମ କରିବା ବିଷୟ ପରେ ଆହୁରି ଲେଖିବି ।

ମେଡ଼ିକାଲରେ 1st year ର physics, chemistry ପରୀକ୍ଷା ଭଲରେ ଭଲରେ ପାସ୍ କରିଗଲି । ଏଣୁ ମେଡ଼ିକାଲରେ ପଢ଼ିବା ଦୃଢ଼ ହେଲା । ନଚେତ୍ ମେଡ଼ିକାଲରୁ ତଡ଼ା ଖାଇଥାନ୍ତି । ଅଳ୍ପ କେତେକ ପିଲା ଫେଲ୍ ହେଇଗଲେ ।

ଏଇଠି ଗୋଟାଏ କଥା ମନେ ପଡ଼ିଲା ମୁଁ ମେଡ଼ିକାଲରେ admission ନେଇ କିଛିଦିନ ଗତ ହେଲା ପରେ football field ରେ, hostel ରେ ଯଦି କେହି first year ପିଲା ଟିକିଏ ଔଦ୍ଧତ୍ୟ ଦେଖେଇଲା କିମ୍ବା ଫାଜିଲାମି କରି କଥା କହିଲା, ତାକୁ senior ପିଲାଏ ଥଟ୍ଟା କରି କହିବାର ଶୁଣିବାକୁ ପାଇଲି ମାଗୁଣି ଖାତାରେ ନାଁ ଉଠି ନାହିଁ । ପିଲା ଫାଜିଲାମି ଦେଖଉଛି । ପ୍ରଥମେ ପ୍ରଥମେ ମାଗୁଣି ଖାତାରେ ନାଁ ଉଠି ନାହିଁ, ଏହାର ଅର୍ଥ କିଛି ବୁଝି ପାରିଲି ନାହିଁ । ପରେ ଅନ୍ୟାନ୍ୟ ପିଲାଙ୍କଠୁଁ

ବୁଝିଲି ଯେ ମାଗୁଣି ହେଲା ଜଣେ ବାରିକ। ସେ medical hostel ରେ ପିଲାଙ୍କୁ ଖିଅର କରେ। ତା'ର ଗୋଟିଏ ଖାତା ଅଛି। ଯେଉଁ ପିଲା ତା'ପାଖରେ ଧାର ଉଧାରରେ ବାଳ କଟାନ୍ତି ତାଙ୍କ ନାଁ ସେ ତା ଖାତାରେ ଲେଖି ରଖେ। କିନ୍ତୁ first year ପିଲାଏ ଯେ ପର୍ଯ୍ୟନ୍ତ physics, chemistry ପାସ୍ କରି ନଥାନ୍ତି ତାଙ୍କୁ ଧାର ଉଧାରରେ ଖିଅର କରେନା କିମ୍ବା ତାଙ୍କ ନାଁ ତା ଖାତାରେ ଲେଖେନା। କାରଣ ମାଗୁଣି ଜାଣେ first year ପିଲାଏ physics, chemistry ରେ ପାସ୍ କରି ନପାରିଲେ ତାଙ୍କୁ medical ରୁ ତଡ଼ିଦେବେ। First year ପିଲାଏ physics, chemistry ରେ ପାସ୍ କଲାପରେ ତାଙ୍କୁ ଧାର ଉଧାରରେ ଖିଅର କରି ତା ଖାତାରେ ନାଁ ଲେଖି ରଖେ। ଏଇ ହେଲା ମାଗୁଣି ଖାତାରେ ନାଁ ଉଠିବା କଥା। ମାଗୁଣିକୁ ପରେ ଚିହ୍ନିଲି। ବୁଢ଼ା, ଗୋଟିଏ ଆଖି କଣା, ଦି'କାନରେ ଦି'ଟା ସୁନାର ନୋଳି। ସେ ନୋଳି ଦି'ଟା ଝୁଲି ଦି' କାନ୍ଧ ଉପରେ ଲାଗିଲା ପରି ହେଲାଣି। ମାଗୁଣିକୁ ଅନେକ ପ୍ରକାରର ଖିଅର ଜଣା। First year ପିଲାଙ୍କର ବାଳ କଟା ଭିନେ। ସେତେ ମନ ଦେଇ ବାଳ କାଟେନା, ତାଙ୍କର 2nd year ହେଲେ ମନ ଦେଇ ବାଳ କାଟେ। First year ପିଲାଏ ମାଗୁଣି ଖିଅର କଲାବେଳେ ଯଦି କିଛି ମାଗୁଣିର ଦୋଷ ତ୍ରୁଟି ଦେଖାନ୍ତି, ମାଗୁଣି ସେମାନଙ୍କୁ କହେ, ବାବୁ ମେଡ଼ିକାଲକୁ ପାଠ ପଢ଼ିବାକୁ ଆସିଛ ମନଦେଇ ପାଠ ପଢ଼, ବାଳ କାଟିବ ପରେ। ଯେ ମେଡ଼ିକାଲ ଟିମ୍‌ର ଭଲ ଖେଳାଳୀ ବୋଲି ସୁନାମ ଅର୍ଜନ କରିଛି, ମାଗୁଣି ତାକୁ ଭାରି ଶ୍ରଦ୍ଧାରେ, ମନ ଦେଇ ତାକୁ ଖିଅର କରେ। ଯେ ଭଲ ଖେଳାଳୀ ନୁହଁ ତାକୁ ମାଗୁଣି ସେତେ ମନ ଦେଇ ଖିଅର କରେନା। ଯଦି ସେ କିଛି ମାଗୁଣିର ଖିଅର କରିବାରେ ଦୋଷ ତ୍ରୁଟି ଦେଖେଇଲା ମାଗୁଣି ତାକୁ କହେ ଯା, ଯା ବାବୁ, ଯା ଖେଳୁଚନା ତୁମ ଯୋଗୁଁ ଆମେ ବାହାରେ ମୁହଁ ଦେଖେଇ ପାରୁନୁ।

ଯେ ମେଡ଼ିକାଲ ଥିଏଟର୍‌ରେ ଭଲ ଅଭିନୟ କରେ, ତା'ର ଖୁବ୍ ଯତ୍ନ ନେଇ ମାଗୁଣି ବାଳ କାଟେ ଆଉ ଯେ ଭଲ ଅଭିନୟ କରିପାରେନା ସେ ବାଳ କଟେଇବାକୁ ଆସିଲେ ମାଗୁଣି ତାକୁ ସେତେ ମନ ଦେଇ ଖିଅର କରେନା। ଯଦି ସେ କିଛି ମାଗୁଣିର ଖିଅର କରିବାରେ ଦୋଷ ତ୍ରୁଟି ଦେଖେଇଛି, ମାଗୁଣି ସାଙ୍ଗେ ସାଙ୍ଗେ କହେ ଯାଅ, ଯାଅବାବୁ, ଥିଏଟର୍‌ରେ ଯେଉଁ ପାର୍ଟ କରୁଛ ନା? ମୋତେ ସେମିତିଆ ପାର୍ଟ ଦେଲେ ମୁଁ କେତେ ଭଲ କରନ୍ତି। ମାଗୁଣି ଯାହାକୁ ଯାହା କହେ କେହି କିଛି ତାକୁ କହନ୍ତି ନାହିଁ। ମାଗୁଣି ବିଷୟରେ ଅନେକ କିଛି ଲେଖିବାର ଅଛି। ସବୁ ଘଟଣା ଲେଖି ବସିଲେ ଖଣ୍ଡିଏ ବହି ହେବ।

ମେଡ଼ିକାଲ ସ୍କୁଲରେ first year ଯାଇ 2nd year ହେଲା। ଏଥର physics, chemistry ଆଉ ପଢ଼ିବାକୁ ନାହିଁ। ସେ first year ରେ କଟିଗଲା। ଏଣିକି କେବଳ anatomy, physiology ଆଉ pharmacology ପଢ଼ିବାର କଥା। ଏଇ ତିନିଟା ବିଷୟରେ 2nd year ର ଶେଷରେ ପରୀକ୍ଷା ଦେଇ ପାସ୍ କଲେ 3rd year ହବ। ମୋତେ ଉପରୋକ୍ତ ତିନିଟା ବିଷୟ ମଧ୍ୟରୁ physiology ଟା ଆଦୌ ଭଲ ଲାଗୁ ନଥାଏ କି ଆଗ୍ରହ ହଉ ନଥାଏ। Anatomy ରେ ମୁର୍ଦ୍ଦାର କଟା ସରି ନାହିଁ। First yearରେ ଛାତି, ପେଟ କଟା ସରି ଯାଇଛି। ଏଣିକି ମୁଣ୍ଡ, ବେକ ଆଉ ହାତ, ଗୋଡ଼ କାଟିବାକୁ ହେବ। ମୁର୍ଦ୍ଦାର କଟା ଆରେଇ ଗଲା, ଆଉ ଘୃଣା ନାହିଁ କି ଭୟ ନାହିଁ। ମଣିଷ ଦେହର ଛାତି ଏବଂ ପେଟର ଯନ୍ତ୍ରପାତି ଭଲ ଭାବରେ ଦେଖିଲି। ବଡ଼ ଆନନ୍ଦ ଲାଗିଲା। ମେଡ଼ିକାଲରେ ପଢ଼ିଲି ବୋଲି ଏତକ ଦେଖିଲି, ବୁଝି ପାରିଲି। ନଚେତ୍ ବାହାରେ ତ ଅନେକ କଳକବଜା ଦେଖୁଛି, ଦେଖିବି କିନ୍ତୁ ନିଜ ଭିତରର କଳକବଜା ବିଷୟରେ ଆଜୀବନ ଅନଭିଜ୍ଞ ଥାନ୍ତି। ମଣିଷ ଦେହ ଭିତରର କଳକବଜା ଭାରି ସୁନ୍ଦର। ହୃତ୍‌ପିଣ୍ଡ ଜନ୍ମ ସମୟରୁ ଥରେ ଯେ ଚାଲିବାକୁ ଆରମ୍ଭ କରିଛି, ଚାଲିଛି। ମୃତ୍ୟୁ ବେଳେ ଏହି ହୃତ୍‌ପିଣ୍ଡ ବନ୍ଦ ହେଇଯାଏ। ଥରେ ବନ୍ଦ ହେଲେ ଆଉ ଚାଲିବ ନାହିଁ। ହୃତ୍‌ପିଣ୍ଡ ଭିତରେ କେତେ କାରିଗରୀ! ଏଇ ହୃତ୍‌ପିଣ୍ଡକୁ ପ୍ରଥମରୁ କିଏ

ଚଳେଇଲା ? ଥରେ ଚାଲିବା ଆରମ୍ଭ ହେଲେ ପଚାଶ, ଷାଠିଏ ଇମିତିକି ଶହେ ବର୍ଷ ଯାଏ ଚାଲୁଛି । ହୃତ୍‌ପିଣ୍ଡର ଉଭୟ ପାର୍ଶ୍ୱରେ ଫୁସ୍‌ଫୁସ୍ ଥାଇ ହୃତ୍‌ପିଣ୍ଡ କିମିତି ଜନ୍ମ କାଳରୁ ଛାତି ଭିତରେ ସୁରକ୍ଷିତ ହେଇ ରହିଛି । କି ବିଚିତ୍ର କାରିଗରୀ ! ଏ କାରିଗରୀ ଦେଖିଲେ ଯେତେ ବଡ଼ ନାସ୍ତିକ ହଉ, ସେଇ ବିଶ୍ୱନିୟନ୍ତା କାରିଗରଙ୍କ ପ୍ରତି ତାର ମଧ ମୁଣ୍ଡ ନଇଁ ପଡ଼ିବ । କିନ୍ତୁ ଗୋଟାଏ କଥା, ଏଠି ସିନା କାରିଗରୀ ଦେଖି ମୁଗ୍ଧ ହଉଛି । ଏଣେ ଏ କାରିଗରୀ ବିଷୟରେ ପାଠ ପଢ଼ି ମନେ ରଖି ପରୀକ୍ଷା ଦେଇ ପାସ୍ କରିବାକୁ ହୃତ୍‌ପିଣ୍ଡ ଧଡ଼ପଡ଼ ହଉଛି । ଫୁସ୍‌ଫୁସ୍‌ରେ ପବନ ପଶି ଧଇଁ ସଇଁ ଲାଗୁଛି । ପେଟ ଭିତରେ ସେମିତି କେତେ କଳକବ୍‌ଜା, ପାକସ୍ଥଳୀ, ଯକୃତ, ପ୍ଲୀହା, ଅନ୍ତର୍ନଳୀ ସବୁ ବିଚିତ୍ର ବିରାଟ କାରଖାନା । ପୁଣି ଭାବୁଛି 2nd year ରେ ମୁଣ୍ଡ, ବେକ କାଟି ଦେଖିବାକୁ ଯେମିତି ଆଶ୍ଚର୍ଯ୍ୟ ଲାଗିବ ସେମିତି ପାଠ ମନେ ରଖି ପରୀକ୍ଷା ଦେଇ ପାସ୍ କରିବା ଭାରି କଷ୍ଟ ।

ତଥାପି anatomy ରେ ମୁର୍ଦ୍ଦାର କଟା ଯେତିକି ଘୃଣାର କାର୍ଯ୍ୟ, ସେତିକି ଆନନ୍ଦଦାୟକ । ଯେ ଇଂଜିନିୟରିଂ ପଢ଼ି ଇଂଜିନିୟର ହେଇଛି ସେ ବାହାର କଳକବ୍‌ଜା ବୁଝିପାରୁଛି । କିନ୍ତୁ ନିଜ ଦେହ ଭିତରର କଳକବ୍‌ଜା କେମିତି ଚାଲୁଛି, କାମ କରୁଛି ସେ ବୁଝି ନାହିଁ । ଜଣେ ଇଂଜିନିୟରଙ୍କୁ ଲୋକେ ପରିହାସ କରିବାର ମୁଁ ଶୁଣିଛି । ସେ ଇଂଜିନିୟର ଜଣକ ନିଃସନ୍ତାନ । ତାଙ୍କୁ ଲୋକେ ପରିହାସ କରି କହନ୍ତି କଣ ଆଜ୍ଞା, ବାହାରେ କଳକବ୍‌ଜା ସଜାଡୁଛନ୍ତି, ଘର କଳକବ୍‌ଜା ଆଉ ସଜାଡ଼ି ପାରୁନାହାନ୍ତି ? ପ୍ରକୃତ କଥା ନିଜ ଦେହ କଳକବ୍‌ଜା ସଜାଡ଼ିଲାବେଳକୁ ଡାକ୍ତରଙ୍କୁ ଡାକ, ବାହାର କଳକବ୍‌ଜା ବିଷୟରେ ଜ୍ଞାନ ଥାଇ କଣ ହବ ? ନିଜ ଦେହ କଳ ବିଗିଡ଼ିଗଲେ ତ ଜୀବନ ମରଣ ସମସ୍ୟା । ଏ କଳକବ୍‌ଜା ପରିପୂର୍ଣ୍ଣ ଜଗତକୁ ମୁହୂର୍ତ୍ତକେ ଛାଡ଼ି ଅଲଗା ହେଇ ଯିବାକୁ ପଡ଼ିବ । ସବୁ ଅନ୍ଧାର, ଆଉ ତିଳେ ଏ ଜଗତରେ ରହିବାର ଅଧିକାର ନାହିଁ । ଚାଲ, ଛୁଟି, ସେ ଛୁଟିର ଶେଷ ନାହିଁ । ପୁଣି ପରଜନ୍ମରେ ନୂଆ କଳକବ୍‌ଜାରେ ସଜ୍ଜିତ ହେଇ ଏ ଜଗତକୁ ଆସିବାକୁ ପଡ଼ିବ ।

Physiology ବିଷୟ ଯଦିଚ ପ୍ରଥମରୁ ମତେ ଖରାପ ଲାଗୁଥିଲା କିନ୍ତୁ କମ୍ ଆନନ୍ଦଦାୟକ ବିଷୟ ନୁହେଁ । ହୃତ୍‌ପିଣ୍ଡରେ କେମିତି ରକ୍ତ ସଞ୍ଚାଳନ ହଉଛି ? ଶରୀରର ଖରାପ ରକ୍ତ ଆସି ଫୁସ୍‌ଫୁସ୍‌ରେ କେମିତି ଶୋଧନ ହଉଛି ? ଶିରା ଦ୍ୱାରା କେଉଁ ରକ୍ତ ପ୍ରବାହିତ ହଉଛି ? ଧମନୀ ଦ୍ୱାରା କେଉଁ ରକ୍ତ ପ୍ରବାହିତ ହଉଛି ? ସ୍ନାୟୁର କାମ କଣ ? ରକ୍ତ କ'ଣ ? ରକ୍ତରେ କି କି ଜୀବାଣୁ ଅଛନ୍ତି ? ତାଙ୍କର କାମ କଣ ? ପୁଣି ଭୋକ କେମିତି ଜଣା ଯାଉଛି ? ପେଟ କାହିଁକି ଫମ୍ପାଉଛି ? ଝାଡ଼ା କେମିତି ମଡ଼ଉଛି ? ପ୍ଲୀହା କେମିତି ବଢୁଛି ? ଯକୃତ୍ କେମିତି କାମ କରୁଛି ? ପରିସ୍ରା କେମିତି ମଡଉଛି ? ସବୁ ଚମତ୍କାର, ଶିକ୍ଷଣୀୟ, ଆନନ୍ଦଦାୟକ, ଆଶ୍ଚର୍ଯ୍ୟଜନକ । ସେହି ଜଣେ କାରିଗର ଦ୍ୱାରା ସବୁ ହଉଛି, ସବୁ ଚାଲିଛି । Pharmacology ମଧ ସେମିତି ଆନନ୍ଦଦାୟକ ବିଷୟ । ଏଥିରେ କେଉଁ ଔଷଧି କେମିତି କାମ କରୁଛି, କେଉଁ ଔଷଧି କଣ କଣ ମିଶି ହେଇଛି, ତାକୁ କେଉଁ ପରିମାଣରେ ଖାଇବା ଉଚିତ୍ ଇତ୍ୟାଦି ବିଷୟ ବର୍ଣ୍ଣିତ ଅଛି । ସବୁ ଜାଣିବାର କଥା, କିନ୍ତୁ ମନେ ରଖିବା ଭାରି କଷ୍ଟ ।

ସାନଭଉଣୀ ବିବାହ ପରେ ଶାଶୁ ଘରକୁ ଯାଇ ଅଷ୍ଟମଙ୍ଗଳାରେ ଶାଶୁଘରୁ ଆସି ଆମ ଘରେ ଥାଏ । ବଡ଼ଭଉଣୀ ସାନଭଉଣୀର ବିବାହ ପରେ ପୁରୀ ଚାଲିଗଲେ । ସେତେବେଳେ ବଡ଼ଭିଣେଇ ପୁରୀ ଅଦାଲତ୍‌ରେ ନାଜର ଥାନ୍ତି । କେତେ ମାସ ଗତ ହେଲା ପରେ ବଡ଼ଭଉଣୀଙ୍କ ପାଖରୁ ଚିଠି ଆସିଲା ତାଙ୍କ ଦେହ ଅସୁସ୍ଥ । ମଝିରେ ମଝିରେ କଣ କେମିତି ଅସ୍ୱସ୍ତି ବୋଧ କରୁଛନ୍ତି । ନିହାତି ବଳେଇଲାରୁ ବାବା, ମା, ସାନଭଉଣୀ ପୁରୀ ଗଲେ ବଡ଼ଭଉଣୀଙ୍କୁ ଦେଖିବା ପାଇଁ । ଯଦି ଦରକାର ପଡ଼େ ସାଙ୍ଗରେ କଟକ ନେଇ ଆସିବେ । ମୁଁ ଏବଂ ଅରକ୍ଷିତ ଚାକର ବସାରେ ରହିଲୁ । ବାବା, ମା ପୁରୀ ଯାଇ ବଡ଼ଭଉଣୀଙ୍କୁ ସାଙ୍ଗରେ କଟକ ନେଇ ଆସିଲେ । ବଡ଼ଭଉଣୀଙ୍କ ଗର୍ଭାବସ୍ଥା । ବଡ଼ଭଉଣୀ ଆସି କଟକରେ ରହିଲେ । ଭଲ ଥାନ୍ତି । କିନ୍ତୁ ଦିନେ ସନ୍ଧ୍ୟାପରେ ଦହିବରା ଖାଉ ଖାଉ କଣ ତାଙ୍କ ତଣ୍ଟିରେ ଲାଗିଲା, କାଶ ଉଠିଲା ।

କାଶ କିଛିରେ ଆଉ ବନ୍ଦ ହୁଏନା । ଯେତେ ଯା ଉପାୟ କଲେ ମଧ୍ୟ କାଶ ବନ୍ଦ ହଉ ନାହିଁ । ଗର୍ଭାବସ୍ଥାରେ କାଶ ହବା ଭୟର କାରଣ । ଗର୍ଭ ଅନେକ ସମୟରେ ନଷ୍ଟ ହେଇଯାଏ । କିଛି ସମୟ ଗତ ହେଲା ପରେ କାଶ ବନ୍ଦ ହେଲା । କିନ୍ତୁ ସେହିଦିନ ରାତିରେ ଆମେ ସମସ୍ତେ ଶୋଇଛୁ ବଡ଼ଭଉଣୀ ଯେଉଁଠି ଶୋଇଥିଲେ ତାଙ୍କ ପାଖରେ ତାଙ୍କର ଚାକରାଣୀ ଶୋଇଥିଲା । ବଡ଼ଭଉଣୀ ହଠାତ ଉଠି ପଡ଼ି ତାକୁ ଡାକ ପକେଇଲେ ଶଶୀ ଉଠିଲୁ, ଉଠିଲୁ ଏ କଣ ହେଲା ? ବଡ଼ଭଉଣୀ ତାଙ୍କ ଚାକରାଣୀ ଶଶୀକୁ ଏମିତି ଛାନିଆ ହୋଇ ଡାକିବାର ଶୁଣି ଆମେ ସମସ୍ତେ ଭୟଭୀତ ହୋଇ ଉଠି ପଡ଼ିଲୁ, କଣ ହେଲା ?

ବଡ଼ଭଉଣୀର ଶୋଇବାବସ୍ଥାରେ ତାଙ୍କର ରକ୍ତସ୍ରାବ ହେଇ ରକ୍ତ ଯାଇ ନଳାରେ ପହଞ୍ଚିଲାଣି ତାଙ୍କୁ ଜଣା ନାହିଁ । ସମସ୍ତେ ଉଠି ଦେଖିଲା ବେଳକୁ ଅଜସ୍ର ରକ୍ତସ୍ରାବ । କଣ କରାଯିବ ? ମାର୍ଗଶୀର ମାସ ରାତି, ଚାରିଆଡ଼େ ନିସ୍ତବ୍ଧ, ସାହିଘର ଶୁନଶାନ୍ । ବଡ଼ଭଉଣୀଙ୍କର ଗର୍ଭ ବେଦନା ନାହିଁ । କେବଳ ଅଜସ୍ର ରକ୍ତସ୍ରାବ । ଏ ତ ନୂଆ କଥା, ବଡ଼ଭଉଣୀ ଭୟରେ ବ୍ୟତିବ୍ୟସ୍ତ । ମା, ସାନଭଉଣୀ, ମୁଁ, ଶଶୀ ସମସ୍ତେ ଆତଙ୍କିତ । ଏତେ ରକ୍ତସ୍ରାବ ଦେଖି ବାବା କହିଲେ ଗର୍ଭ ନଷ୍ଟ ହେଇଗଲା । ପୁଣି କହିଲେ ଡାକ୍ତର ଡାକିବା । ଡାକ୍ତର ଡାକିଲେ ବା କୋଉ ଡାକ୍ତର ଏତେ ଶୀତ ରାତିରେ କିଏ ଆସିବ ? ସକାଳ ହଉ, ଯା କରିବାର କରାଯିବ । ସକାଳ ହେଲା, ମୁଁ ଦୌଡ଼ିଲି ଡାକ୍ତର ଡାକିବା ପାଇଁ । ସେତେବେଳେ କଟକ ଡାକ୍ତରଖାନାର ପ୍ରସୂତି ସମ୍ପର୍କରେ ବଡ଼ ଡାକ୍ତର ହେଉଛନ୍ତି Dr. Prafulla Chandra Ray । ସେ ନଥିଲେ । ସେ Patna ଯାଇଥିଲେ । ଯେତେ ଯାହାକୁ ଖୋଜିଲି, କେହି ନାହାନ୍ତି Patna ଯାଇଥାନ୍ତି । ସେତେବେଳେ କଟକ ବଡ଼ ଡାକ୍ତରଖାନାରେ ଏତେ ଅଭିଜ୍ଞ ଡାକ୍ତର ନଥିଲେ । ଡାକ୍ତରଖାନାର ଏତେ ପ୍ରସାର ନଥିଲା । ବାହାରେ ମଧ୍ୟ ସେମିତି ପ୍ରସୂତି ସମ୍ପର୍କରେ ଅଭିଜ୍ଞ ଡାକ୍ତର ନଥିଲେ । କେବଳ କଟକ female hospital ରେ ଜଣେ lady ଡାକ୍ତରାଣୀ ଥାନ୍ତି । ସେ L.M.P. ତାଙ୍କ ନାଁ ଶ୍ରୀମତି ପ୍ରମିଳା ସେନ୍ । ସେ ଭଲ ଡାକ୍ତରାଣୀ ନୁହଁନ୍ତି ବୋଲି ସେତେବେଳେ ତାଙ୍କର ଭାରି ଦୁର୍ନାମ । ତାଙ୍କର ବ୍ୟବହାର ଯେମିତି ଚିକିତ୍ସା ମଧ୍ୟ ସେମିତି । ଅଗତ୍ୟା ତାଙ୍କୁ ହିଁ ଯାଇ ଡାକି ଆଣିଲି । ସେ ଆସି ଦେଖି କହିଲେ ଏ ବଡ଼ କଠିଣ ବ୍ୟାପାର । ଯାଙ୍କୁ ଶୀଘ୍ର ଡାକ୍ତରଖାନାକୁ ନେଇ ଚାଲ ।

ଏଥି ପୂର୍ବରୁ ସକାଳ ହବା ମାତ୍ରେ କଟକ ମଣି ସାହୁ ଛକରେ ଥିବା ଡାକ୍ତର ମାନଗୋବିନ୍ଦ ସାହୁଙ୍କ ନିକଟକୁ ବାବା ଯାଇ ରକ୍ତସ୍ରାବ ଇତ୍ୟାଦିର ଘଟଣା କହିବାରୁ ସେ କହିଲେ ଏ placenta previa ରୋଗ । ଏ ରୋଗରେ ରକ୍ତସ୍ରାବ ହବାର କଥା ।

ଡାକ୍ତରଖାନାକୁ ରୋଗୀକୁ ନେଇ ଶୀଘ୍ର ପ୍ରସବ କରେଇ ଦବା ଉଚିତ୍ । ବାବା, ମା କହିଲେ ଘରେ ଡାକ୍ତର ଡକେଇ ପ୍ରସବ କରେଇବାକୁ ହବ । ଡାକ୍ତରଖାନାକୁ ପଠେଇବା ନାହିଁ । ଏଣୁ ବଡ଼ଭଉଣୀଙ୍କୁ ଅନେକ ସମୟ ଘରେ ରଖାଗଲା । କିନ୍ତୁ ଡାକ୍ତର ନମିଳିବାରୁ ଅନନ୍ୟୋପାୟ ହେଇ ଡାକ୍ତରାଣୀ ପ୍ରମିଳା ସେନ୍ କହିବା ଅନୁଯାୟୀ ବଡ଼ ଡାକ୍ତରଖାନାରୁ ambulance ଅଣା ଯାଇ ବଡ଼ଭଉଣୀଙ୍କୁ ଦିନ ଚାରିଟା ବେଳେ ବଡ଼ ଡାକ୍ତରଖାନାର female hospitalକୁ ନିଆ ହେଲା । ମୁଁ ବଡ଼ଭଉଣୀଙ୍କୁ ଡାକ୍ତରଖାନାରେ ଛାଡ଼ି ତାଙ୍କ ପାଖରେ ମା, ସାନଭଉଣୀ ଏବଂ ବଡ଼ଭଉଣୀଙ୍କ ଚାକରାଣୀ ଶଶୀକୁ ରଖେଇ ଟେଲିଗ୍ରାଫ୍ ଅଫିସକୁ ଦୌଡ଼ିଲି ବଡ଼ଭିଣେଇଙ୍କୁ ଟେଲିଗ୍ରାମ୍ କରିବା ପାଇଁ । ସେଦିନ ସନ୍ଧ୍ୟା ପରେ ଟେଲିଗ୍ରାମ୍ ପାଇ ବଡ଼ ଭିଣେଇ ଏବଂ ଭଣଜା ଆସି ପହଞ୍ଚିଲେ । ସେଦିନ ରାତିରେ ବଡ଼ଭଉଣୀଙ୍କର ଆଉ କୌଣସି ଚିକିତ୍ସା ନକରେଇ ଡାକ୍ତରଖାନାରେ ସେମିତି ରଖି ଦେଲେ । ସକାଳ ହେଲା ମୁଁ medical ସ୍କୁଲକୁ ବାହାରିଲିଣି । ବାବା, ବଡ଼ ଭିଣେଇ ଏବଂ ଭଣଜା ଡାକ୍ତରଖାନାକୁ ବାହାରିଲେ । ବାବା, ଭିଣେଇ, ଭଣଜା ଯାଇ ବଡ଼ଭଉଣୀଙ୍କ ସଙ୍ଗେ ଦେଖା କଲେ ।

ସେଦିନ ୧୨ଟା ବେଳକୁ ବଡ଼ଭଉଣୀଙ୍କୁ operation theater କୁ ପିଲା ପ୍ରସବ କରେଇବା ପାଇଁ ନେଲେ । Operation ପରେ ଖବର ପାଇଲୁ ଯାଆଁଳା ମଲା ପୁଅ ପିଲା ଦି'ଟା ଜନ୍ମ ହେଲେ । ଏ କଥା ଶୁଣି

ସମସ୍ତେ କହିଲେ ହଉ ପିଲା ଦି'ଟା ମରିଗଲେ ଗଲା, ମା' କେମିତି ବଞ୍ଚିଯାଉ। ବାବା, ଭିଣେଇ, ମୁଁ ଏବଂ ଭଣଜା ସମସ୍ତେ ବାହାରେ ଅପେକ୍ଷା କରି ରହିଥିଲୁ। ପିଲା ପ୍ରସବ କରେଇବା ପରେ ବଡ଼ଭଉଣୀଙ୍କୁ ଆଣି ଗୋଟିଏ କୋଠରୀରେ ରଖିଦେଲେ। ବଡ଼ଭଉଣୀଙ୍କ ପାଖରେ ମା, ସାନଭଉଣୀ, ଶଶୀ ସମସ୍ତେ ଘେରି ବସିଲେ। ଆମେମାନେ ବାହାରେ ଥିଲୁ, ହଠାତ୍ ସାନଭଉଣୀ ମୋତେ ଡ଼ାକ ପକେଇଲା ଦୌଡ଼ିଆ ବଡ଼ଭଉଣୀ ଏମିତି କଣ ହଉଛନ୍ତି। ମୁଁ ଦୌଡ଼ିଲି, ମୋ ପଛେ ପଛେ ବାବା, ଭିଣେଇ, ଭଣଜା, ବଡ଼ଭଉଣୀଙ୍କ ଦିଅର ସମସ୍ତେ ଦୌଡ଼ିଲେ। ଆମେମାନେ ଯାଇ ଦେଖିଲା ବେଳକୁ ବଡ଼ଭଉଣୀଙ୍କର ହିକା ଉଠୁଛି। Choloroform ନିଶାରେ ଅଚୈତନ୍ୟ ଅବସ୍ଥା saline ଦବାର ଯନ୍ତ୍ରପାତିର ନଳୀ ଲାଗିଛି। ନାଡ଼ିର ଅବସ୍ଥା ଅତି ଖରାପ। ମୁଁ ଏ ଅବସ୍ଥା ଦେଖି ଅନ୍ୟ କୌଣସି ଡାକ୍ତରଙ୍କୁ ନିକଟରେ ନପାଇ ଯେଉଁ ବୁଢ଼ା ଡାକ୍ତର ନିଶା ଦଉଥିଲେ ତାଙ୍କ ପାଖକୁ ଯାଇ ଭୟଭୀତ ହେଇ ପଚାରିଲାରୁ ସେ କହିଲେ- ସେ ତୁମର କ'ଣ ହୁଅନ୍ତି? ମୁଁ କହିଲି ବଡ଼ଭଉଣୀ, ସେ କହିଲେ ତାଙ୍କର ଅବସ୍ଥା ଭଲ ନୁହେଁ। ବଂଚିବା ସନ୍ଦେହଜନକ।

ସେ ବୁଢ଼ା ଡାକ୍ତରଙ୍କ ମୁହଁରୁ ଏକଥା ଶୁଣି ଯିବି କୁଆଡ଼େ? ସେଇଠି ପଡ଼ିଗଲା ପରି ମନେହେଲା। ସାଇକେଲରେ ତ ଯାଇଥିଲି, ସାଇକେଲରେ ଫେରିବି କେମିତି ବଳ ପାଇଲା ନାହିଁ। ଫେରିଲେ ଅନ୍ୟଙ୍କୁ ଏ ସମ୍ବାଦ ଦେବି କେମିତି? କଣ କରିବି? ତାହେଲେ ବଡ଼ଭଉଣୀ କ'ଣ ଆମକୁ ଛାଡ଼ି ଚାଲିଯିବେ? କୌଣସି ମତେ ଆସି ବଡ଼ଭଉଣୀଙ୍କ ପାଖେ ପହଞ୍ଚିଲି। ସମସ୍ତେ ଉତ୍କଣ୍ଠିତ ଭାବରେ ବଡ଼ଭଉଣୀଙ୍କୁ ଘେରି ବସିଛନ୍ତି। ମୁଁ ଯାଇ ପହଞ୍ଚିଲା ମାତ୍ରେ ସମସ୍ତେ ପଚାରିଲେ ଡାକ୍ତର କ'ଣ କହିଲେ? ମୁଁ କ'ଣ ସେମାନଙ୍କୁ ଉତ୍ତର ଦେବି? ତଥାପି ଧୈର୍ଯ୍ୟ ରଖି କହିଲି କିଛି ସମୟ ପରେ ଅବସ୍ଥା ଭଲ ଆଡ଼କୁ ଆସିବ। ଏ କଥା ତ ଅନ୍ୟଙ୍କୁ କହିଲି, ନିଜ ମନ ବୁଝୁଛି କୁଆଡ଼େ? ବାହାରେ ଯାଇ ଡାକ୍ତରଖାନା କାନ୍ଥକୁ ଆଉଜି ଠିଆ ହେଇ ମେଡ଼ିକାଲ ହତାକୁ ଅନେଇଲା ବେଳକୁ ଚାରିଆଡ଼ ଯେମିତି ଘୂରି ଯାଉଥାଏ। କ'ଣ ହେଲା? ବଡ଼ଭଉଣୀ ଛାଡ଼ି ଚାଲିଲେ! ଦିହରୁ ଗୋଟା ଗୋଟା ଝାଳ ବୋହି ଯାଉଥାଏ। ମନେ ମନେ ଯେତେ ଦିଅଁ ଦେବତାଙ୍କୁ ଡାକୁଥାଏ କେମିତି ବଡ଼ଭଉଣୀ ବଞ୍ଚିଯାନ୍ତୁ।

ବଡ଼ଭଉଣୀଙ୍କର ଯେଉଁ ହିକା ଉଠୁଥିଲା ଟିକେ ବନ୍ଦ ହୋଇଗଲା। କିନ୍ତୁ ନାଡ଼ିର ଅବସ୍ଥା ଭଲ ଆଡ଼କୁ ଆସି ନଥାଏ। ତଥାପି ଭାବିଲୁ ବୋଧେ ଅବସ୍ଥା ଭଲ ଆଡ଼କୁ ଆସି ଯିବ।

କଥା ହେଲା ମଲାପିଲା ଦି'ଟାଙ୍କୁ ଏଠୁ ନେଇ ଯିବା ଦରକାର। ମୋର ସାଙ୍ଗ ଦି'ଜଣ ମେଡ଼ିକାଲ ଛାତ୍ର ଶାନ୍ତିମୟ ସେନ୍ ଓ ବାଣୀ ବୋଷଙ୍କୁ ଆଣିଲି। ତାଙ୍କରି ଦ୍ୱାରା ଏ ମଲା ପିଲା ଦି'ଟାଙ୍କୁ ମଶାଣିକୁ ପଠେଇ ଦେବି। ମା କହିଲେ ମୁଁ ସେ ପିଲା ଦି'ଟାଙ୍କୁ ଟିକେ ଦେଖିବି। ଏଣୁ ମା, ମୁଁ ଉଭୟେ operation theater ଭିତରକୁ ଯାଇ ସେ ପିଲା ଦି'ଟାଙ୍କୁ ଦେଖିଲୁ। ଗୋଟାଏ ଟ୍ରେରେ ଥୁଆ ହେଇଥାନ୍ତି। ବେଶ୍ ସୁନ୍ଦର, ସୁସ୍ଥ ସବଳ ପିଲା। ମୁଁ ସେ ଟ୍ରେ ସୁଦ୍ଧା ଦୁଇଟା ମଲା ପିଲାଙ୍କୁ operation theaterରୁ ଆଣି ମୋର ସାଙ୍ଗ ଦି'ଜଣଙ୍କ ଦ୍ୱାରା ମଶାଣିକି ପଠେଇବି ବୋଲି ଯେମିତି ବାରନ୍ଦାରେ ଥୋଇଛି ଏଇ ସମୟରେ ବଡ଼ଭଉଣୀ ଚିତ୍କାର କରି ଉଠିଲେ ଆମର ସବୁ କୋଉଠି? ଆମର ସବୁ କୋଉଠି? ମୁଁ ଚିତ୍କାର ଶୁଣି ଘର ଭିତରକୁ ଦୌଡ଼ି ଯାଇ ଦେଖେ ବଡ଼ଭଉଣୀ ଚିତ୍କାର କରୁ କରୁ ତାଙ୍କର ଜୀବନ ପ୍ରଦୀପ ଆସ୍ତେ ଆସ୍ତେ ଲିଭିଗଲା। ବଡ଼ଭଉଣୀ ଆଖି ବୁଜି ଚିର ନିଦ୍ରାରେ ଶୋଇଗଲେ। ସରିଗଲା। କିଏ କା'କୁ ସମ୍ଭାଳିବ? ବୋଧ ଦବ? ସାନ୍ତ୍ୱନା ଦବ? ସମସ୍ତେ ହା ହା କରି ବାଡ଼େଇ ପିଟି କାନ୍ଦିବାକୁ ଲାଗିଲେ।

ବାବା, ମା, ବଡ଼ ଭିଣେଇ ତାଙ୍କ ସାନ ଭାଇ, ଭଣଜା, ସାନ ଭଉଣୀ, ମୁଁ, ଚାକରାଣୀ, ପଡ଼ିଶାରୁ ଦୁଇ ଜଣ, ଲୋକନାଥ ରାଉତ (ଲୋକା), ପରମାନନ୍ଦ ମୂଳିଆ (ପଇ) ବାବାଙ୍କୁ ଧରିଥାନ୍ତି। ଭିଣେଇଙ୍କ ସାନଭାଇ ଭଣଜାକୁ କୁଣ୍ଢେଇ ଧରିଥାନ୍ତି। ଥୋରିଆସାହିରେ ଏ ସମ୍ବାଦ ପହଞ୍ଚଗଲା ମାତ୍ରେ କେତେକ ପୁରୁଷ ଓ ସ୍ତ୍ରୀଲୋକ ଯାଇ ଡାକ୍ତରଖାନାରେ ପହଞ୍ଚଗଲେ। ମୋର ସାଙ୍ଗସାଥୀମାନଙ୍କ

ଭିତରୁ କେତେକ ମେଡ଼ିକାଲ ଛାତ୍ର, ଛାତ୍ରୀ ପହଁଚିଗଲେ । ବଡ଼ଭଉଣୀଙ୍କୁ ଦେଖିଲେ । ବଡ଼ଭଉଣୀ ଶୋଇଥାନ୍ତି ଯେମିତି ଭଲ ମଣିଷ ନିଦରେ ଶୋଇଛି । ମୃତ୍ୟୁର କାଳିମା ତାଙ୍କ ମୁହଁରେ କିଛି ନଥାଏ । ଭିଣେଇ, ମା ଏବଂ ସାନଭଉଣୀ, ଚାକରାଣୀଙ୍କୁ ଗୋଟାଏ ବଗି ଗାଡ଼ିରେ ଘରକୁ ପଠେଇ ଦିଆ ହେଲା । ବଡ଼ଭଉଣୀଙ୍କ ପାଖରେ ରହିଲୁ ବାବା, ମୁଁ, ଭଣଜା ଏବଂ ଭିଣେଇଙ୍କ ସାନଭାଇ ।

ବାବା ପେନ୍‌ସନ୍ ପାଇବା ପରେ ଯେଉଁ P.H.D. department ରେ ଚାକିରି କରୁଥିଲେ । ସେଠା ହାକିମ ମଧ ବାବାଙ୍କୁ ସାନ୍ତ୍ୱନା ଦବା ପାଇଁ ଆସି ପହଞ୍ଚିଗଲେ । ସମସ୍ତେ ବଡ଼ଭଉଣୀଙ୍କ ପାଖରେ ରହିଲେ । ମୁଁ ଧୈର୍ଯ୍ୟ ରଖି କେମିତି ଶବ ମଶାଣିକୁ ନିଆଯିବ ତା'ର ଯୋଗାଡ଼ରେ ଲାଗିଲି । କେତେଜଣ ମେଡ଼ିକାଲ ଛାତ୍ରଙ୍କୁ ଡାକିବା ଶବକୁ କାନ୍ଧେଇ ନବା ପାଇଁ, ମଶାଣିରେ କି କି ଜିନିଷ ଦରକାର ତାକୁ ସବୁ କିଣିବା ପାଇଁ ରାଣୀହାଟ ବଜାରକୁ ଦୌଡ଼ିଲି । କେତେଥର ଦୌଡ଼ାଦୌଡ଼ି କରିବା ପରେ ଥରେ ମୁଁ ରାଣୀହାଟରୁ ଫେରିବା ପରେ ଦେଖିଲି ବଡ଼ଭଉଣୀଙ୍କ ଦୁଇପାଖରେ ଦୁଇଟା ମୃତ ପିଲାଙ୍କୁ ରଖି ତାଙ୍କୁ ମଶାଣିକୁ ନବା ପାଇଁ ପୂରାପୂରି ବାନ୍ଧି ସାରିଲେଣି । ଏ ଦୃଶ୍ୟ ଦେଖି ଛାତି ଫାଟି ଯାଉଥାଏ । କଣ ଆଉ କରିବି ?

ମୁଁ ନିଜେ ଦୁଃଖରେ ବାଡ଼େଇ ପିଟି ହେଇ ମରି ଗଲେ ବି ବଡ଼ଭଉଣୀ ଆଉ ଫେରିବେ ନାହିଁ । ଆମେ ସମସ୍ତେ ଶବକୁ ନେଇ ଖାନ୍‌ନଗର ମଶାଣିକି ଚାଲିଲୁ । ଲୋକା, ପଇ ମଧ ଆମ ସଙ୍ଗରେ ମଶାଣିକୁ ଚାଲିଲେ । କାରଣ ଏ ଦୁଇ ଜଣ ପିଲା ବେଳୁଁ ଆମ ଘରେ ଆତଯାତ । କେବଳ ବାବା ଘରକୁ ଫେରିଗଲେ । ମୁଁ ଭଣଜାକୁ ପାଖେ ପାଖେ ରଖିଥାଏ । ତାକୁ ଦେଖି ଭାରି ଦୁଃଖ ଲାଗୁଥାଏ । କାରଣ ଭଣଜା ସେତେବେଳେ ମାଟ୍ରିକ ପଢୁଥାଏ । ଏତେ ଅଳ୍ପ ବୟସରୁ ସେ ମାତୃହୀନ ହେଲା ।

ମଶାଣିରେ ବଡ଼ଭଉଣୀଙ୍କୁ ମୁଖାଗ୍ନି ଦେଲା ବେଳେ ଭଣଜାର କାନ୍ଦଣାରେ ମଶାଣି ଭୂଇଁ ସେଦିନ ଫାଟିଗଲା ପରି ମନେ ହେଲା । ବଡ଼ଭଉଣୀଙ୍କୁ ମୁଖାଗ୍ନି ଦବା ପରେ ମୁଁ ଭଣଜାକୁ ସାଙ୍ଗରେ ନେଇ ଘରକୁ ଫେରିଲି । ବାଟରେ ଉଭୟେ କାନ୍ଦି କାନ୍ଦି ଫେରିଲୁ । ବଡ଼ଭଉଣୀଙ୍କଠୁଁ ମୁଁ ଦଶ ବର୍ଷର ସାନ । ବଡ଼ଭଉଣୀ ମୋତେ କାଖ କୋଳ କରି ମଣିଷ କରିଥିଲେ । ଆଜି ଖାନ୍‌ନଗର ମଶାଣିରେ ଜୁଇ ଉପରେ ଶୋଇ ଦେଇ ତାଙ୍କୁ ଚିରବିଦାୟ ଦେଇ ଆସିଲି । ବଡ଼ଭଉଣୀ ଗଲେ ଆମେ ରହିଲୁ ମାତ୍ର ଦୁଇଜଣ ମୁଁ ଏବଂ ସାନଭଉଣୀ । ଆମେ ଚାରି ଭାଇ, ଚାରି ଭଉଣୀ ସେଥିରୁ ସାନ ବଡ଼ ହୋଇ ଛ'ଜଣ ଗଲେ । ଆଗରୁ ଲେଖିଛି ମଝିଆ ଭଉଣୀ ବସନ୍ତ ରୋଗରେ ଚଉଦ ବର୍ଷରେ ତା'ର ଜନ୍ମଦିନରେ ମୃତ୍ୟୁ ବରଣ କରିଥିଲା । ଆମେ ଥିଲୁ ମାତ୍ର ତିନିଜଣ ସେଥିରୁ ଜଣେ ଗଲେ । ମୁଁ, ଭଣଜା ଯେତେବେଳେ ମଶାଣିରୁ ଆସି ଘରେ ପହଞ୍ଚିଲୁ ଆମେ ସମସ୍ତେ ଦୁଃଖରେ ପୁଣି ଗୁରାଏ କାନ୍ଦିଲୁ । ରାତିସାରା କାହାରିକି ଆଉ ଭଲ ନିଦ ହେଲା ନାହିଁ ।

ବାବା ରାତି ତିନିଟା ବେଳୁଁ ଉଠି ପୁଣି କାନ୍ଦିବାକୁ ଆରମ୍ଭ କଲେ । ରାତିସାରା ମୁଁ ଭଣଜାକୁ ପାଖରେ ନେଇ ଶୋଇଲି । ରାତି ପାହିଲା, ସେଇ କାନ୍ଦଣା । ବନ୍ଧୁବାନ୍ଧବ ଆସିଲେ ସାନ୍ତ୍ୱନା ଦେବା ପାଇଁ । ମା'ଙ୍କର ଅହରହ କାନ୍ଦଣା, ଖିଆପିଆ ବନ୍ଦ, କି ଦୁଃଖର ଦିନ ସେ । ମୁଁ ନିଜେ ଯେଉଁଦିନ ମୃତ୍ୟୁ ବରଣ କରିବି ସେ ଦୁଃଖର ଦିନ ପାଶୋର ଯିବ ।

ଦିନେ ଦୁଇଦିନ ପରେ ଭିଣେଇ, ଭଣଜା ବଡ଼ଭଉଣୀଙ୍କ ଜିନିଷପତ୍ର ଗହଣା ଇତ୍ୟାଦି ନେଇ ପୁରୀ ଗଲେ । ତାଙ୍କ ପାଖରେ ଆଉ କେହି ନାହାନ୍ତି କେବଳ ଜଣେ ଚାକର ଥାଏ । ମାସକ ପରେ ବଡ଼ଭଉଣୀଙ୍କର ଶୁଦ୍ଧିକ୍ରିୟା ହବ । ଏଣୁ ମାସେକାଳ ଭଣଜାକୁ ସଞ୍ଜ ପୂର୍ବରୁ ହବିଶାନ୍ନ ଖାଇବାକୁ ହବ । ହବିଶାନ୍ନ ତ ଚାକର ରାନ୍ଧି ଦବାର ନୁହଁ । ତଥାପି ପୁରୀ ସହର ବୋଲି ହବିଶାନ୍ନ ଘରେ ନରାନ୍ଧି ଜଗନ୍ନାଥଙ୍କ ପ୍ରସାଦ ଖାଇ କେତେଦିନ ଚଳିଗଲା ପରେ ବାବା, ମା, ସାନଭଉଣୀ ପୁରୀ ଚାଲିଗଲେ । କାରଣ ଭଣଜା ପିଲା, ସଦ୍ୟ ମାତୃହୀନ ହେଇଛି । ତାକୁ ହା ହୁତାଶ ଲାଗିବାର କଥା । ଏଣୁ ବାବା, ମା, ସାନଭଉଣୀ ସେଠିକି ଗଲେ । ଭିଣେଇ ଭଣଜାକୁ ଟିକିଏ ଭଲ ଲାଗିବ, ଏ ହେଲା ଉଦ୍ଦେଶ୍ୟ ।

ଏଠି ରହିଲି ମୁଁ ଏବଂ ଅରକ୍ଷିତ ଚାକର। ଲୋକା ବରାବର ମୋ ପାଖରେ ଚଳାଚଳ ହଉଥାଏ। ପଇ ମଧ୍ୟ ଆସୁଥାଏ। ମୋର ଆଉ ପଢ଼ାପଢ଼ି ପାଇଁ ସେତେ ଆଗ୍ରହ ନଥାଏ। କେବଳ ବଡ଼ଭଉଣୀଙ୍କ କଥା ଭାବି ଭାବି ଅହରହ ଦୁଃଖ ଆଉ ନୈରାଶ୍ୟରେ ଭାଙ୍ଗି ପଡ଼ିବା ପରି ହେଇଗଲି। ଦିନଟା ଯେମିତି ସେମିତି କଟିଯାଏ ରାତି ହେଲେ ଯୁଆଡ଼େ ଅନାଏ ଖାଲି ବଡ଼ଭଉଣୀଙ୍କ ମୁହଁ ଦେଖାଯାଏ। ବଡ଼ ଭୟ ଲାଗେ। ଅରକ୍ଷିତ ନିଜେ ଘରେ ରାନ୍ଧି ଖାଏ। ମୁଁ ମେଡ଼ିକାଲ ହଷ୍ଟେଲ୍‌ରେ ମୋର ଜଣେ ସାଙ୍ଗର ମେସ୍‌ରେ ଦିନ, ରାତି ଦୁଇବେଳା ଖାଏ। ସନ୍ଧ୍ୟାରୁ ହଷ୍ଟେଲରେ ପଢ଼ାପଢ଼ି କରେ। ରାତି ୯ଟା କିମ୍ବା ୧୦ଟାରେ ଖାଇ ସାରିଲା ବେଳକୁ ଲୋକା ଯାଇ ହଷ୍ଟେଲ୍‌ରେ ପହଞ୍ଚିଯାଏ ମୋତେ ଆଣିବା ପାଇଁ। ଆମେ ଉଭୟେ ମୋ ସାଇକେଲ୍‌ରେ ଘରକୁ ଆସୁ। ଲୋକା ମୋତେ ରାତିରେ ଜଗି ଶୁଏ, ଅରକ୍ଷିତ ଶୁଏ।

ଏଇଠି ସେତେବେଳର ମେଡ଼ିକାଲ ହଷ୍ଟେଲ୍‌ର ମେସ୍‌ମାନଙ୍କ ସମ୍ବନ୍ଧରେ କେତେକ କଥା ଲେଖିବା ଦରକାର ମନେ କରୁଛି। ସେତେବେଳେ ମେଡ଼ିକାଲ ହଷ୍ଟେଲ୍‌ରେ ପ୍ରାୟ ୧୨ଟା ପ୍ରାଇଭେଟ ମେସ୍ ଥାଏ। ରେଭେନ୍‌ସା କଲେଜ ଭଳି government ଦ୍ୱାରା ଏ ମେସ୍ ସବୁ ପରିଚାଳିତ ନୁହେଁ। ପିଲାଙ୍କ ଦ୍ୱାରା ପରିଚାଳିତ ଏ ୧୨ଟା ମେସ୍‌ର ସବୁ ନାଁ ମୋର ମନେ ନାହିଁ। ତଥାପି କେତେଟା ମନେ ଅଛି ଯେମିତି ଓଡ଼ିଆ ମେସ୍, ବଙ୍ଗାଳୀ ମେସ୍, ବାଲେଶ୍ୱର ମେସ୍, କଟକ ମେସ୍, ମହମଡ଼ାନ୍ ମେସ୍ ଏମିତି ଆହୁରି କେତେଟା ପ୍ରତ୍ୟେକ ମେସ୍‌ରେ ପୂଜାରୀ, ଚାକର ଭରା। ପୂଜାରୀମାନେ ଯେମିତି ଚାକରମାନେ ମଧ୍ୟ ସେମିତି କାର୍ଯ୍ୟଦକ୍ଷ। ପୂଜାରୀଙ୍କ ହାତର ରାନ୍ଧଣା ମଧ୍ୟ ଚମତ୍କାର। ମହାମଡ଼ାନ ମେସ୍‌ର ମୁସଲମାନ ରୋଷେଇଆ। କେତେ ଜଣ ପୂଜାରୀଙ୍କ ନାମ ମୋର ମନେ ଅଛି, ପୂର୍ଣ୍ଣାନନ୍ଦ, ନେତ୍ରାନନ୍ଦ। ପୂର୍ଣ୍ଣାନନ୍ଦ ଓଡ଼ିଆ ମେସ୍‌ର ପୂଜାରୀ। ଏ ପୁଣି ତା'ହାତ ତଳେ ଆଉ ଜଣେ ଟୋକା ପୂଜାରୀକୁ ମାସିକ ପାଞ୍ଚଟଙ୍କା ଦରମାରେ ରଖିଥାଏ। ଏ ଟୋକା ପୂଜାରୀ ଭାତ, ଡାଲି ଆଉ ଅଳ୍ପ କେତେଟା ତରକାରୀ କରେ। ପୂର୍ଣ୍ଣାନନ୍ଦ ମାତ୍ର ଗୋଟାଏ ଦି'ଟା ତରକାରୀ କରେ। ପିଲାଏ ଖାଇ ବସିଲେ ପୂର୍ଣ୍ଣାନନ୍ଦ ହାତର ତରକାରୀ ଅଲଗା ଜଣାପଡ଼ିଯାଏ। ପୂଜାରୀମାନେ ମାସିକ ଖାଇପିଇ ମାତ୍ର ଆଠ, ଦଶ ଟଙ୍କା ଦରମାରେ ରହୁଥିଲେ। ନେତ୍ରାନନ୍ଦ ହାତର ରୋଷେଇ ମଧ୍ୟ ସେମିତି ଚମତ୍କାର। ମୁଁ ପଢ଼ିଲାବେଳେ ଏ ପୂଜାରୀମାନଙ୍କ ହାତର ରୋଷେଇ ଖାଇଛି। ଏମାନଙ୍କର ରାନ୍ଧଣାର ଚମତ୍କାରିତା ଏ ପର୍ଯ୍ୟନ୍ତ ଭୁଲିପାରୁନି।

ମୋର ଯଦି କେତେବେଳେ ଦରକାର ହୁଏ ମୁଁ ମେଡ଼ିକାଲ ହଷ୍ଟେଲର ମେସ୍‌ରେ ଦିନେ ଦିନେ ଖାଏ। ମୁଁ ଅନ୍ୟାନ୍ୟ ମେସ୍‌ରେ ଖାଇଲେ ସୁଦ୍ଧା ବେଶି ଭାଗ ବାଲେଶ୍ୱର ମେସ୍‌ରେ ଖାଏ। ତାର କାରଣ ବାଲେଶ୍ୱରର ଜଣେ ପିଲା ମୋ ସାଙ୍ଗରେ ପଢୁଥାଏ, ତା'ର ନାଁ ଶଚିକାନ୍ତ ପଣ୍ଡା। ପେଟମରା ରୋଗରେ ସେ ପ୍ରାୟ ଦୁର୍ବଳ। ତାକୁ କେହି ପଢ଼ିବା ପାଇଁ partner କରିବାକୁ ନାରାଜ। ମୁଁ ତାକୁ partner କଲି। ସେ ଆମ ଘରକୁ ଆସି ମୋ ସହିତରେ ପଢ଼େ ପୁଣି dissection କଲାବେଳେ ତାକୁହିଁ ମୁର୍ଦ୍ଦାର କାଟିବାରେ ଲଗାଏ। ସେ ମୋର ଭାରି ଅନୁଗତ ହୋଇପଡ଼ିଲା। ତା'ସହିତରେ ସୁଖଦୁଃଖର କଥା ମଧ୍ୟ ହୁଏ। ଭଲ ପିଲା, ଧନୀ ପିଲା। ସେ କଥା ଯାହା କହେ ନାକରେ କହିଲା ପରି ଶୁଣାଯାଏ। ଅତି ନୀରିହ ପ୍ରକୃତିର। ତା'ଉପରେ ସମସ୍ତେ ଚଢ଼ଉ। ଏଣୁ ମୋର ଦରକାର ପଡ଼ିଲେ ଶଚି ପଣ୍ଡାକୁ କହେ ଆଜି ମୁଁ ତମ ମେସ୍‌ରେ ଖାଇବି। ଶଚି ପଣ୍ଡା ରାଜି ହୁଏ। ସେତେବେଳେ ମେଡ଼ିକାଲ ହଷ୍ଟେଲ ମେସ୍‌ରେ ପ୍ରତ୍ୟେକ ପିଲାର ଓଳିକର meal ବାବଦର ଖର୍ଚ୍ଚ ପଡୁଥିଲା ପୁରୁଣା ଦଶ ପଇସା ଆଉ extra meal ଅର୍ଥାତ୍ ଯଦି କୌଣସି ପିଲାର ଅଭିଭାବକ କିମ୍ବା କେହି ବନ୍ଧୁ ଆସି ଖାଇଲେ ତାଙ୍କର ଓଳିକର meal ବାବଦ ଖର୍ଚ୍ଚ ପଡୁଥିଲା ତିନିଅଣା ମାତ୍ର। ସେଥିରେ ପୁଣି ଯାହା ଖାଇବାକୁ ଦିଆଯାଏ ଅତି ଚମତ୍କାର। ଦୈନିକ ଯେମିତି କୌଣସି ଭୋଜିର ଆୟୋଜନ। ମାଛ, ମାଂସ ଦି'ବେଳା। ତା'ଛଡ଼ା ଅନ୍ୟ ତରକାରୀପତ୍ର ବିଭିନ୍ନ ପ୍ରକାରର। ସେତେବେଳେ ଯେଉଁ ପିଲାମାନେ ଦୈନିକ

ମେସ୍‌ରେ ଖାଉଥିଲେ ତାଙ୍କର ମାସିକ ମେସ୍ ଖର୍ଚ୍ଚ ଥିଲା ଖୁବ୍ ବେଶି ହେଲେ ବାରଟଙ୍କା । କୌଣସି କୌଣସି ମେସ୍‌ରେ ମାସିକ ଦଶଟଙ୍କା ମଧ୍ୟ ପଡୁଥିଲା । ସେଥିରେ ପୁଣି ପ୍ରତ୍ୟେକ ମାସର ଅଧାରେ ଗୋଟାଏ feast ହଉଥିଲା, ଯାକୁ demi feast କୁହାଯାଉଥିଲା । ପୁଣି ମାସର ଶେଷଦିନ ଗୋଟାଏ ବଡ଼ feast ହଉଥିଲା । ସେତେବେଳେ ମେଡ଼ିକାଲ୍ ହଷ୍ଟେଲ୍‌ରେ ମେଡ଼ିକାଲ୍ ଛାତ୍ରମାନଙ୍କ ପାଇଁ କୌଣସି canteen ନଥିଲା । ଜଣେ ଖାଇବାକୁ ହେଲେ ରାଣୀହାଟ ବଜାରକୁ ଚାକରମାନେ ଯାଇ ଆଣି ଦଉଥିଲେ । ନଚେତ୍ ପିଲାଏ କେହି କେହି ଯାଇ ରାଣୀହାଟ କିମ୍ବା ମଙ୍ଗଳାବାଗ ବଜାରରେ ଜଳଖିଆ କରି ଆସୁଥିଲେ । ସେତେବେଳେ ଜଣେ ମେଡ଼ିକାଲ ଛାତ୍ର ଯାହା ଦି'ବେଳା ଜଳଖିଆ କରୁଥିଲେ, ସେତେବେଳକାର ଜଣେ ମାସିକ ବେତନ ଯାହାର ତିନି ଶହ ଟଙ୍କା ଥିବ, ସେ ମଧ୍ୟ ସେମିତି ଖାଉ ନଥିବ ।

ମୁଁ ପ୍ରାୟ ଶଚି ପଣ୍ଡା ମେସ୍‌ରେ extra meal ବାବଦ ତିନି ଅଣା ଦେଇ ଖାଉଥିଲି । କେତେଥର ଏମିତି ବାଲେଶ୍ୱର ମେସ୍‌ରେ ଖାଇଲା ପରେ ଆଉ ଥରେ ଦରକାର ପଡ଼ିବାରୁ ଦିନେ ଶଚି ପଣ୍ଡାକୁ କହିଲି ପଣ୍ଡା, ମୁଁ ତୋ ମେସ୍‌ରେ ଖାଇବି । ଶଚି ପଣ୍ଡା ସେଥର ରାଜି ନହେଇ କହିଲା, ନାହିଁ, ଅନ୍ୟ ପିଲାଏ ମୋ ଉପରେ ବିରକ୍ତ ହଉଛନ୍ତି । କହୁଛନ୍ତି ତୁ ଗୋଟାଏ meal ର charge ଦଉଛୁ, ଦି'ଟା meal ଖାଉଛୁ । ମୁଁ ଶଚି ପଣ୍ଡା ମୁହଁରୁ ଏକଥା ଶୁଣି ତାକୁ ଖୁବ୍ ଗାଳି ଦେଇ କହିଲି ତୁମେ ବାଲେଶ୍ୱରିଆ ପିଲା ଏତିକି ହୀନ ପ୍ରକୃତିର । ଜଣେ ମଣିଷ ଯାହା ଖାଇବାର ଖାଇବନା ଆଉ ତମରି ପରି ଏତିକି ଗଣ୍ଡାଏ ଗଣ୍ଡାଏ ଖାଇ ଉଠିବ । ମୁଁ ଏଇ କଥାବାର୍ତ୍ତା ଶଚି ପଣ୍ଡା ସାଙ୍ଗରେ ହଉଛି ଏଇ ସମୟରେ ମୋର ଜଣେ ସାଙ୍ଗ ଜିତେନ୍ଦ୍ର କୁମାର ରାୟ ଆସି ପହଞ୍ଚିଯାଇ ମୋତେ ପଚାରିଲା ପୁଲିନ୍, କଣ ହେଇଛି ? ଶଚି ପଣ୍ଡା ମୋତେ ଯାହା କହିଲା, ମୁଁ ଜିତେନ୍‌କୁ କହିଲି । ଜିତେନ୍ ଏକଥା ଶୁଣି ଶଚୀ ପଣ୍ଡାକୁ ଚଢ଼ଉ ହେଇ କହିଲା ପଣ୍ଡା, ମୁଁ ଆଜି ତୋ ମେସ୍‌ରେ ଖାଇବି । କଣ କହୁଛୁ ? ଶଚି ପଣ୍ଡା ନାସିକା ଧ୍ୱନିରେ ଉତ୍ତର ଦେଲା ହଉ, ଖାଇବୁ ତ ଖାଇବୁ । ସେଦିନ ଜିତେନ୍ ମୁଁ ଶଚି ପଣ୍ଡା ମେସ୍‌ରେ ଖାଇଲୁ । ଜିତେନ୍ ଭାରି ଖାଇଲାବାଲା । ମୁଁ ଜିତେନ୍ ଭାତ ସମାନ ସମାନ ଖାଇଲୁ । କିନ୍ତୁ ଜିତେନ୍ ଦୁଷ୍ଟାମି କରି ଅଧ ହାଣ୍ଡିଏ ଡ଼ାଲି ପିଇଗଲା । ଶଚି ପଣ୍ଡା କିମ୍ବା ତାଙ୍କ ମେସ୍‌ର ପିଲାଏ କିଛି ଆପତ୍ତି କଲେ ନାହିଁ ।

ମୁଁ barbell exercise ନିୟମିତ ଭାବେ କରିବା ଦ୍ୱାରା ମୋର ଶାରୀରିକ ପରିବର୍ତ୍ତନ ସଙ୍ଗେ ସଙ୍ଗେ ଭୋକ ଏବଂ ହଜମ ଶକ୍ତି ବିଶେଷ ଭାବରେ ବଢ଼ିଗଲା । Barbell exercise କରିବା ପୂର୍ବରୁ ମୋର ଖାଇବା ଚଳନୀୟ ଥିଲା । କିନ୍ତୁ ତା'ପରେ ଅସମ୍ଭବ ବଢ଼ିଗଲା । ଶଚି ପଣ୍ଡା ଯେ କହିଲା ତୁ ଗୋଟାଏ meal ର charge ଦେଇ ଦୁଇଟା meal ଖାଉଛୁ । ସତକଥା, ମୁଁ ସେତେବେଳେ ଦି'ଜଣଙ୍କର meal ଏକା ଖାଉଥିଲି । ଯାହା ଖାଇଲି । ଭାତ, ଡାଲି, ତରକାରୀ ଯେମିତି ଗୁରାଏ ଖାଇବାକୁ ଆରମ୍ଭ କଲି । ଜଳଖିଆ ଖାଇଲେ ମଧ୍ୟ ସେମିତି ଗୁରାଏ । ଚୂଡ଼ା ଖାଇଲେ କଂସାଏ, ମୁଢ଼ି ଖାଇଲେ ସେରେ, ପୁରୀ, ପିଠା ଇତ୍ୟାଦି ସେମିତି । ମୋର ଖାଇବା ବିଷୟରେ ଅନେକ ଘଟଣା ଅଛି । ସ୍ଥଳ ବିଶେଷରେ ସେ ସବୁ ଲେଖିବି ।

ମା, ବାବା ଯେତେଦିନ ପୁରୀ ଗଲେ ମୁଁ ସେତେଦିନ ଶଚି ପଣ୍ଡା ମେସ୍‌ରେ ଖାଇଲି । ଅରକ୍ଷିତା ଘରେ ହାତରେ ରାନ୍ଧି ଖାଏ । ଲୋକା ମୋତେ ପ୍ରତ୍ୟେକ ଦିନ ରାତିରେ ଯାଏ ମେଡ଼ିକାଲ ହଷ୍ଟେଲରୁ ଆଣିବା ପାଇଁ । ଦିନେ ରାତିରେ ମୁଁ, ଲୋକା ମେଡ଼ିକାଲ ହଷ୍ଟେଲରୁ ଫେରିବା ପରେ ପରେ ପହଞ୍ଚ ଗୋଟାଏ ଘଟଣାରେ ଉଭୟେ ବିଚଳିତ ହେଇଗଲୁ । ଘଟଣା ହେଲା ମୁଁ ଲୋକା ଘରକୁ ଫେରିଲେ ଅରକ୍ଷିତକୁ ଡ଼ାକୁ । ଅରକ୍ଷିତ କବାଟ ଖୋଲେ ଆମେ ଘରେ ପଶୁ । ସେଦିନ ରାତିରେ ଅରକ୍ଷିତ କବାଟ ଖୋଲିଲା ବେଳକୁ ମୁଁ ଲୋକା ଆଉ ଅରକ୍ଷିତକୁ ଚିହ୍ନି ପାରୁନୁ ।

ଅରକ୍ଷିତ ମୁହଁଟା ଭିନ୍ନ ପ୍ରକାର ଦୁ'ଛି । ଦେଖିଲେ ଭୟ ଲାଗୁଛି କିନ୍ତୁ ଆମେ କିଛି ବୁଝି ପାରୁନୁ । କାହିଁକି ଭୟ ଲାଗୁଛି ? ଅରକ୍ଷିତର ମୁହଁ ତ କିନ୍ତୁ ସେଥିରେ କଣ

ଏମିତି ପରିବର୍ତ୍ତନ ହେଉଛି ଯେ ମୁହଁଟାକୁ ଅନେଇଲେ କାହିଁକି ଭୟ ଲାଗୁଛି ? ଅରକ୍ଷିତର ଦାନ୍ତ ବଡ଼ ବଡ଼ ଥିଲା । ସେ ପୁଣି ଏ ଭୀଷଣତାକୁ ଆହୁରି ବଢ଼େଇ ଦଉଛି । ମୁଁ କିଛି କ୍ଷଣ ଲକ୍ଷ୍ୟ କଲାପରେ ବୁଝି ପାରିଲି ଅରକ୍ଷିତ ତାର ଆଖିର ଉଭୟ ପାଖର ଭୁରୁ ବାଳ ଗୁଡ଼ାକ କାଟି ସଫା କରି ଦେଇଛି । ଏ କି ଘଟଣା ? ଲୋକା ତ ତା'ର ମୁହଁକୁ ଦେଖି ମୋତେ କହିଲା ବାବୁ, ଏକୁ ବାଡ଼ାଅ । ଯା ମୁହଁ ଏମିତି କାହିଁକି ଦୁ'ଛି ? ମୋତେ ଭାରି ଭୟ ଲାଗୁଛି ।

ଅରକ୍ଷିତ ମୋର ଅନୁପସ୍ଥିତିରେ ମୋର ଖିଅର ହବା କ୍ଷୁରକୁ ନେଇ ଆଖିର ଭୁରୁ ବାଳକୁ କାଟି ସଫା କରିଛି । ମୁଁ ଅରକ୍ଷିତାକୁ ପଚାରିଲି ଆଖି ଭୁରୁ ବାଳ କାହିଁକି କାଟିଲୁ ? ଅରକ୍ଷିତା ଉତ୍ତର ଦେଲା ବଢ଼ିଗଲା । ଅରକ୍ଷିତର ଏ ଉତ୍ତର ଶୁଣି ମୁଁ, ଲୋକା ଯେତିକି ଆଶ୍ଚର୍ଯ୍ୟ ହେଲୁ ସେତିକି ହସିଲୁ । କାରଣ ଆଖିର ଭୁରୁ ବାଳ କା'ର ଏତେ ବଢ଼ିଯାଏ ଯେ, ତାକୁ ପୁଣି ଖିଅର ହବାକୁ ପଡ଼େ ? ଏ କିଛି ନୁହେଁ, ଅରକ୍ଷିତ ଘରେ ଏକା ବସି ବସି କିଛି କାମ ନଥିବାରୁ ଏଇ କାମ କରିଛି । ପୁଣି ମୋର ଖିଅର ହବାର କ୍ଷୁରକୁ ନେଇ ଆଖିର ଭୁରୁ ବାଳ କଟା ହେଉଛି ? ମୋର କ୍ଷୁର କାହିଁକି ବ୍ୟବହାର କଲା ବୋଲି ମୁଁ ଅରକ୍ଷିତକୁ ଦି'ଟା ମାଇଲି । ତା'ପରେ ଅରକ୍ଷିତ ଆଉ ସେମିତି କାମ କେବେ କରିନାହିଁ ।

ଆଉ ଗୋଟାଏ ଘଟଣାରେ ଅରକ୍ଷିତକୁ ମାରିଥିଲି । ଘଟଣା ହେଲା ବାବା, ମା, ସାନ ଭଉଣୀ ପୁରୀରେ ଥାନ୍ତି, ବଡ଼ଭଉଣୀଙ୍କ ଶୁଦ୍ଧିକ୍ରିୟା ଯାଇ ନଥାଏ । ଆମର ସେତେବେଳେ ବାରିଆଡ଼େ ଫୁଲ କୋବି ଗଛ ହେଉଥାଏ । ଲୋକା ତେଣ୍ଡାରେ କୋବି କିଆରିରେ ପାଣି ମଡ଼ାଏ । ମୁଁ, ଲୋକା ଯୁଆଡ଼େ ଗଲେ ଅରକ୍ଷିତ ଏକା ସେ କୋବି କିଆରିକୁ ଜଗେ । କିଛିଦିନ ପରେ ଦେଖାଗଲା ଗଛ ଠିଆ ହେଉଛି, ଫଳ ନାହିଁ । ଫଳ ଗଛରୁ କଟା ହେଉଛି । ମୁଁ, ଲୋକା, ଅରକ୍ଷିତକୁ ପଚାରିଲୁ କିରେ ଏ ଫୁଲ ସବୁ କୁଆଡ଼େ ଗଲା ? ଅରକ୍ଷିତ ଉତ୍ତର ଦିଏ ମାଙ୍କଡ଼ ଖାଇଗଲା । ମୁଁ ଲୋକା ଆଶ୍ଚର୍ଯ୍ୟ ହଉ କ'ଣ ? ମାଙ୍କଡ଼ ଖାଇଥିଲେ ତ ଖଣ୍ଡିଆ ଖାବରା ହେଇଥାନ୍ତା । ଏ ତ କଟା ହେଲା ପରି ଜଣା ଯାଉଛି । ଏମିତି ସନ୍ଦେହ କରୁ, ଚୁପ୍ ରହୁ । ଅରକ୍ଷିତକୁ କିଛି ଆଉ କହି ହୁଏନା । ଲୋକା ବ୍ୟସ୍ତ ହେଇ କହେ ବାବୁ ମୁଁ ପାଣି ମଡ଼େଇ ମଡ଼େଇ ଥକିଲିଣି, କୋବି ଫୁଲ ଯଦି ମାଙ୍କଡ଼ ଖାଇଲା, ଏ କ'ଣ କରୁଛି ?

ଦିନେ ଏଇ ଘଟଣାରେ ମୁଁ ଅରକ୍ଷିତକୁ ଲୋକା ସାମନାରେ କେତେକ ପ୍ରଶ୍ନ କରୁଛି । ଅରକ୍ଷିତା କିଛିରେ ମାନୁ ନାହିଁ । ଏଇ ସମୟରେ ଜଣେ ପଡ଼ୋଶୀ ମାଇପି ଆମ ଘର ଭିତରକୁ ପଶି ଆସି କହିଲା ବାବୁ, ସେ ମୋତେ ଚାରି ପାଞ୍ଚଟା କୋବି ବିକି ସାଇଲାଣି । ସେ ପଇସାତକ ତମକୁ ଦଉଛି ନା ନାହିଁ ।

ମୁଁ ଲୋକା ଏ କଥା ଶୁଣି ଅବାକ୍ । ଆମେ ଭଲ ଭାବରେ ବୁଝି ପାରିଲୁ ଅରକ୍ଷିତା ଲୁଚେଇ କୋବି ବିକି ମାଙ୍କଡ଼ ଖାଇଗଲା ବୋଲି କହୁଛି । ଅରକ୍ଷିତ ଏଥର ଭୟରେ ଅସ୍ଥିର । ମୁଁ ଅରକ୍ଷିତକୁ ପଚାରିଲି ତୁ ତା'ହେଲେ କୋବି ବିକିଛୁ ? ଅରକ୍ଷିତ ସ୍ୱୀକାର କଲା । ମୁଁ ପୁଣି ପଚାରିଲି ସେ ପଇସା କାହିଁକି ମୋତେ ଦେଲୁନାହିଁ ? ଅରକ୍ଷିତ ଆଉ କିଛି ଉପାୟ ନପାଇ କହିଲା ବାବା, ମା ଆସିଲେ ତାଙ୍କୁ ଦେବି । ମୋତେ ହସ ମାଡ଼ିଲା । ମୁଁ ପୁଣି ପଚାରିଲି କିରେ, ମୋତେ ପଇସା ନଦେଇ ବାବା, ମା'ଙ୍କୁ ଦବୁ କଣ ? ଲୋକା ରାଗରେ କହିଲା ଶଳା ଖେଳୁଛି । ମୁଁ ପାଣି ମଡ଼େଇ ମଡ଼େଇ ଥକା ଏ ଶଳା ଲୁଚେଇ କୋବି ବିକି ପଇସା ମୁଠି କରୁଛି । ତା'କୁ ମାର ଦି'ଟା ବାବୁ ।

ମୁଁ ଅରକ୍ଷିତକୁ ରାଗରେ ଦି'ଟା ଚାପୁଡ଼ା ପକେଇଲି । ଅରକ୍ଷିତ ପଇସାତକ ମୋତେ ଦେଇ ଦେଲା । ଅରକ୍ଷିତ ବିଷୟରେ ଆହୁରି କେତେକ ଘଟଣା ପରେ ଲେଖିବି । ବଡ଼ଭଉଣୀଙ୍କର ଶୁଦ୍ଧିକ୍ରିୟା ନିକଟ ହେଇ ଆସିବାରୁ ମୁଁ, ଲୋକା ଆଉ ଅରକ୍ଷିତ ଜିମା ଘର ଛାଡ଼ି ଦେଇ ପୁରୀ ଚାଲିଗଲି । ସେତେବେଳେ ବଡ଼ଭିଣେଇ ପୁରୀ ଜିଲ୍ଲା ସ୍କୁଲର ପଶ୍ଚିମପଟେ ପ୍ରଧାନ ରାସ୍ତାର ଆରପାଖେ ଗୋଟିଏ ଭଡ଼ା ଘରେ ରହୁଥିଲେ । ସେଇଠି ବଡ଼ଭଉଣୀଙ୍କର ଶୁଦ୍ଧିକ୍ରିୟା ଭଲ ଭାବରେ ସମାହିତ ହେଇଗଲା । ବଡ଼ଭଉଣୀଙ୍କ ଜନ୍ମ-ମୃତ୍ୟୁ ପୁରା ସମାପ୍ତି ଘଟିଲା । ବଡ଼ଭଉଣୀଙ୍କ ଶୁଦ୍ଧିକ୍ରିୟା

ପରେ ବାବା, ମା, ମୁଁ ସାନଭଉଣୀ ସମସ୍ତେ ଶୋକ ସନ୍ତପ୍ତ ଚିତ୍ତରେ କଟକ ଫେରିଲୁ।

ବଡ଼ଭଉଣୀଙ୍କ ମୃତ୍ୟୁରେ ମନ ଭାଙ୍ଗି ପଡ଼ିଥିଲେ ସୁଦ୍ଧା ମୋର ପଢ଼ାପଢ଼ି, football ଖେଳ, barbell ଦ୍ୱାରା ବ୍ୟାୟାମ କରିବା ସବୁ ଗତାନୁଗତିକ ଭାବରେ ଚାଲିଥାଏ। କେବଳ ଯେତେ ସମୟ medical ହତା ଭିତରେ ଥାଏ ବଡ଼ଭଉଣୀଙ୍କ କଥା କେତେକାଂଶରେ ପାଶୋର ଯାଏ। ନଚେତ୍ ଘରକୁ ଆସିଲେ ବଡ଼ଭଉଣୀଙ୍କ କଥା ସବୁବେଳେ ମନେପଡ଼େ। ସାନଭଉଣୀ ଥାଏ କିନ୍ତୁ ସେ କେତେଦିନ ଆଉ ରହିବ? ସେ'ତ ତା' ଶାଶୁ ଘରକୁ ଚାଲିଯିବ। ଘରେ ରହିବୁ କେବଳ ବାବା, ମା, ମୁଁ ଆଉ ଅରକ୍ଷିତ। କିଛିଦିନ ପରେ ସାନଭଉଣୀ ତା' ଶାଶୁ ଘରକୁ ଗଲା। ସାନ ଭିଣେଇ ଆସିଥିଲେ। ସାନ ଭିଣେଇ, ସାନ ଭଉଣୀ, ମୁଁ ଏକ ସାଙ୍ଗରେ ସାନଭଉଣୀ ଶାଶୁ ଘରକୁ ଗଲୁ। ସାନ ଭଉଣୀ ଶାଶୁ ଘର ହେଲା ବରୁଆ ପୁରୁଷୋତ୍ତମପୁର।

ମୋର ମାମୁଁ ଘର ରାଇଜ। ଅଜାଙ୍କର ନିଜର ଜନ୍ମସ୍ଥାନ। ସେ ଯାଜପୁରକୁ ଘରଜୋଇଁଆ ହେଇ ଯାଇ ସେଇଠି ରହିଥିଲେ। ବରୁଁଆ ପୁରୁଷୋତ୍ତମପୁର ପିଲା ବେଳେ ମା'ଙ୍କ ସଙ୍ଗେ ଅନେକବାର ଆସିଛି। ଏଠି ମୋର କେତେକ ମାଉସୀ, ମାମୁଁଙ୍କ ଘର ମଧ୍ୟ। ଅଧିକାଂଶ ଚିହ୍ନା। ମୋର ସାନ ଅଜା ଗୋପୀ ବଲ୍ଲଭ ରାୟ ଏଇଠି ଥାନ୍ତି। ତାଙ୍କ ସଙ୍ଗେ ଯାଇ ଦେଖାକଲାରୁ ସେ ଆନନ୍ଦରେ ଗଦଗଦ ହେଇ ପଡ଼ିଲେ। ଗାଁ ଭିତରେ ବୟୋଜ୍ୟେଷ୍ଠ ଲୋକ, ସାର୍ବଜନୀନ ଅଜା, ମାନ ସମ୍ମାନ ଖାତିର ସବୁ ଠିକ୍ ଅଛି। ସେ ଯୁଗର I.A. ପାସ୍ କରା ଲୋକ। କଥାଏ କଥାଏ ମୁହଁରୁ ଇଂରାଜୀ ବାହାରି ପଡ଼େ। ମୋତେ ଯେମିତି ଦେଖିଛନ୍ତି ହଠାତ୍ ତାଙ୍କ ମୁହଁରୁ ଆନନ୍ଦରେ ବାହାରି ପଡ଼ିଲା Hallo, good morning, come on। ଆଜିକାଲିତ I.A. ପାସ୍ କଲା ପିଲାଙ୍କ ମୁହଁରୁ ପଦେ ଇଂରାଜୀ କହିବାମାନେ ଗୋଟିଏ ଭୁଲ ଉଚ୍ଚାରଣ କରିବା କିମ୍ବା ଇଂରାଜୀ ଆଦୌ ଶୁଣିବାକୁ ମିଳେନା। ଗୋପୀବଲ୍ଲଭ ରାୟ ଦୀର୍ଘକାୟ ଲୋକ, ବଳିଷ୍ଠ ବପୁ, ବୟସ ପ୍ରାୟ ୮୦ ହେବ।

ମୋର ସାନଭଉଣୀର ଶଶୁର ଘର ପାଖରେ ରହୁଥାନ୍ତି ମୋର ମଝିଆ ମାମୁଁ ଗଗନ ବିହାରୀ ରାୟ। ସେ ମୋତେ ଦେଖି ଆନନ୍ଦରେ ଗଦ୍ ଗଦ୍। ଏମିତି କେତେ ମାଉସୀ, କେତେ ମାମୁଁଙ୍କ ସଙ୍ଗେ ଦେଖା କରି ସାନଭଉଣୀ ଶଶୁର ଘରେ କେତେଦିନ ଆନନ୍ଦରେ କଟେଇ ଏକା ଏକା ହରିଦାସପୁର ଷ୍ଟେସନ୍‌କୁ ଫେରୁଛି ବାଟରେ ଜଣେ ବୁଢ଼ା ଚୌକିଆ ସଙ୍ଗେ ଭେଟ ହେଲା। ସେ ମଧ୍ୟ ହରିଦାସପୁର ଷ୍ଟେସନ୍‌କୁ ଯାଉଥିଲା। ତା' ସହିତରେ ଟିକିଏ ଆଳାପ କଲି। ମୁଁ କୁଆଡ଼େ ଯାଇଥିଲି? ସେ କୁଆଡ଼େ ଯାଇଥିଲା? ଏମିତି କେତେଗୁଡ଼ିଏ ପ୍ରଶ୍ନ ବିନିମୟ ମଧ୍ୟରେ ମୁଁ ତା'କୁ ପଚାରିଲି ତୁମେ ଗୋପୀବଲ୍ଲଭ ରାୟଙ୍କୁ ଜାଣ? ସେ ଉତ୍ତର ଦେଲା-କିଏ, ସେ ଘିଅ, ଦୁଧ ଖିଆ ଗୋପୀ ବାବୁ? ମୁଁ ତା'ର ଉତ୍ତର ଶୁଣି ଅବାକ୍ ହେଲି କାରଣ ସାନଅଜାଙ୍କୁ ତ ଆମେ ଜାଣୁ ସେ ଭାରି ଘିଅ, ଦୁଧର ଲୋଭୀ। ତାଙ୍କୁ ଅନ୍ୟ ଲୋକେ ମଧ୍ୟ ଏମିତି ଜାଣନ୍ତି ଯେ ଏ ଚୌକିଆ ଜଣକ ମଧ୍ୟ କହୁଛି ଘିଅ, ଦୁଧ ଖିଆ ଗୋପୀ ବାବୁ।

କଟକ ଫେରିଲି। ଘରେ ବାବା, ମା, ମୁଁ ଏବଂ ଅରକ୍ଷିତ ଚାକର। ଆଉ କେହି ନାହିଁ। ମୁଁ ତ ଅନେକ ସମୟ ପଢ଼ାପଢ଼ି କରିବା ପାଇଁ ମେଡ଼ିକାଲ ହଷ୍ଟେଲକୁ ପଳାଏ। କେବଳ ଖାଇବା, ଶୋଇବା ବେଳତକ ଘରେ ରହେ। ଏଣୁ ଘରେ କେବଳ ବାବା, ମା ଆଉ ଅରକ୍ଷିତ। ଦିନେ ଦିନେ ମେଡ଼ିକାଲରୁ ଘରକୁ ଆସି ଦେଖେ ବାବା ଚୁପ୍ ହେଇ ବାହାର ବାରନ୍ଦାରେ ବସିଛନ୍ତି। ମା'ଙ୍କର ବାବାଙ୍କ ଉପରେ ଗାଳି ବର୍ଷଣ ଚାଲିଛି। ନଚେତ୍ ଅରକ୍ଷିତକୁ ବିନା କାରଣରେ ଗୁରାଏ ବାଡ଼େଇଛନ୍ତି। ମୁଁ ପୁଣି ସେ ସବୁର ସମାଧାନ କରେ। ମା'ଙ୍କୁ ଚୁପ୍ କରାଏ। ମା'ଙ୍କର ଅଭ୍ୟାସ କାହାରିକି ଗାଳି ଦେବେ, କାହାରିକି ମାରିବେ, ବିନା କଳିରେ, ବିନା ଗଣ୍ଡଗୋଳରେ ସେ ରହିପାରିବେ ନାହିଁ। ବାବା ଗାଳି ଶୁଣିଲେ ମଧ୍ୟ କିଛି କହନ୍ତି ନାହିଁ। ଚୁପ୍ ହେଇ ବସିଥାନ୍ତି। ମା'ଙ୍କର ଗାଳି ଏମିତି ଯେ ପଥର ହେଲେ ବି ଦୋହଲି ଯିବ। କିନ୍ତୁ ବାବା ନିରବ,

ନିଷ୍ଫଳ । ସେଥିରେ ପୁଣି ଅଛ ହସି ହସି କହନ୍ତି ଯା ବର୍ଷି ଯିବାର ବର୍ଷି ଯାଉ । ଘଡ଼ଘଡ଼ି ତୋଫାନ ଯେମିତି ନହଉ । ଏଣୁ ମା'ଙ୍କର ବକର ବକର ହବା ଗାଳି ଦବା ବ୍ୟର୍ଥ ହୁଏ । ପୁଣି ବାବା ବେଳେବେଳେ କହନ୍ତି ଗାନ୍ଧିଙ୍କ ପରି ମୋର ଅହିଂସା ନୀତି । ସବ୍‌ସେ ଚୁପ୍ ଭଲା ।

ବଡ଼ଭଉଣୀଙ୍କର ଶୁଦ୍ଧିକ୍ରିୟା ଯିବାର ମାସକ ପରେ ଦିନେ ବାବା ବକ୍ସିବଜାରରୁ ପରିବାପାତି କିଣି ଦିନ ପ୍ରାୟ ୧୦ଟା ବେଳେ ଘରକୁ ଫେରି ମା'ଙ୍କୁ ଖଣ୍ଡେ ବିବାହର ନିମନ୍ତ୍ରଣ ପତ୍ର ଦେଇ କହିଲେ ଜୋଇଁ ପୁଣି ବିଭା ହଉଛି । ବିବାହ ଆଉ ଛ'ଦିନ ରହିଲା । ହଁ, ମୋର ତ ଝିଅ ମରିଗଲା । ଜୋଇଁ ବିଭା ହେଲେ କେତେ ନ ହେଲେ କେତେ ମୋର ସେଥିରେ କଣ ଅଛି ?

ବାବାଙ୍କର ଏ କଥା ଶୁଣି ମା କହିଲେ କଣ ଜୋଇଁ ପୁଣି ବିଭା ହଉଛି, କୋଉଠି ? ବାବା କହିଲେ ବଡ଼ଭାଇଙ୍କ ସାନ ଝିଅକୁ । ମା ଶୁଣି ଅବାକ୍ ହେଇ କହିଲେ କଣ ଦେଢ଼ଶୁରଙ୍କ ସାନ ଝିଅକୁ ? ସେ ଝିଅ ମୋର ନାତିଠୁ ସାତ ମାସର ସାନ । ତା'ପରେ ଦେଢ଼ଶୁରଙ୍କ ପରିବାର ସହିତ ଆମର ବର୍ତ୍ତମାନ ଅପଡ଼, ବିରୋଧଭାବ ଚାଲିଛି । ସେ ମୋ ନାତିକୁ ବିଷ ଦେଇ ପାରନ୍ତି । ତା'ର ମା'ର ଗହଣା ଅଛି, ବାପର ଟଙ୍କା ଅଛି । ମୋର ନାତିକୁ ବିଷ ଦେଇ ସବୁ ଗହଣା, ଟଙ୍କା ମାରି ନେବେ । ନା, ଏ ବିଭାଘର ଭାଙ୍ଗିବାକୁ ହବ ।

ଚାଲ ପୁରୀ ଯିବା । ବାବା ଏଥିରେ ଅସମ୍ମତ ହେଇ କହିଲେ ନା ବିଭାଘର ଭାଙ୍ଗିବା ଆମର କଣ ଦରକାର ? ଜୋଇଁ ଯା ଇଚ୍ଛା ସେ କରୁ । ବାବା, ମା'ଙ୍କର ଏହିପରି ବାଦାନୁବାଦ ଭିତରେ କିଛି ସ୍ଥିର ହେଇ ପାରିଲା ନାହିଁ । ସେଇଦିନ ସନ୍ଧ୍ୟାବେଳକୁ ଭିଣେଇଙ୍କର ସାନଭାଇ କେଦାର ବାବୁ ଆସି ବାବାଙ୍କୁ ନମସ୍କାର କରି ଜଣେଇଲେ ଭାଇ ପୁଣି ବାହା ହଉଛନ୍ତି । ଆପଣ ଜାଣିଛନ୍ତି ? କେଦାର ବାବୁ P.W.D.ର ଜଣେ କର୍ମଚାରୀ । ସେ କଟକରେ ରହୁଥିଲେ ।

ବାବା, ମା, କେଦାର ବାବୁଙ୍କର ବିଚାର ପରେ ସ୍ଥିର ହେଲା ଏ ବିବାହ ଭାଙ୍ଗିବାକୁ ହବ । ଏଣୁ କେଦାର ବାବୁ ଆଗେ ତାଙ୍କର ଜଣେ ଚପରାସୀ ହାତରେ ଚିଠି ଜଗତସିଂହପୁରକୁ ମୋର ଜେଠାଙ୍କ ନିକଟକୁ ପଠେଇ ଦେଲେ । ମୋର ଜେଠା କୁଞ୍ଜ ବିହାରୀ ରାୟ ସେତେବେଳେ ଚାକିରିରୁ ଅବସର ନେଇ ଜଗତସିଂହପୁରରେ ରହୁଥିଲେ । ତାଙ୍କର ସବା ସାନଝିଅ ସହିତରେ ମୋର ବଡ ଭିଣେଇଙ୍କର ବିବାହର ଉଦ୍ୟୋଗ ପର୍ବ ।

ବାବାଙ୍କର ଅନିଚ୍ଛା ସତ୍ତ୍ୱେ କେଦାର ବାବୁ ଆଉ ମୋର ମା'ଙ୍କର ପ୍ରସ୍ତାବ ସ୍ଥିର ହେଲା ଏ ବିବାହ ଭାଙ୍ଗିବାକୁ ହବ । ଏଣୁ ପୁରୀ ଯିବା ସ୍ଥିର ହେଲା । ତହିଁ ଆରଦିନ ମୁଁ ମେଡ଼ିକାଲକୁ ଗଲି । ମୁଁ ଜାଣି ନାହିଁ ଯେ ଆଜି ବାବା, ମା ପୁରୀ ଯିବେ । ମୁଁ ମେଡ଼ିକାଲରୁ ଦିନ ୧୦ଟା ବେଳେ ଫେରି ଘରେ ଆସି ଦେଖେ ବାବା, ମା, ସାନଭଉଣୀ କେହି ନାହାନ୍ତି । ଅରକ୍ଷିତା ଏକା ଅଛି । ମୁଁ ଅରକ୍ଷିତକୁ ପଚାରି ବୁଝିଲି ଯେ ବାବା, ମା ପୁରୀ ଗଲେଣି । ମୋତେ ବଡ଼ ହତାଶ ଲାଗିଲା । ଏଇ ସମୟରେ ଲୋକା ଆସି ପହଞ୍ଚିଗଲା । ସେ ମଧ୍ୟ ଶୁଣି ଅବାକ୍ ହେଲା ଯେ ଭିଣେଇ ପୁଣି ବାହା ହଉଛନ୍ତି । ସେ ବାହାଘର ଭାଙ୍ଗିବା ପାଇଁ ବାବା, ମା ପୁରୀ ଗଲେଣି ।

ମୁଁ ଲୋକାକୁ ପଚାରିଲି ଲୋକା ପୁରୀ ଯିବା କିରେ ? ଲୋକା କହିଲା ହଉ ଯିବା, କୋଉଥିରେ ଯିବା ? ମୁଁ କହିଲି ଟ୍ରେନରେ ଆମେ ଦିହେଁ ଯିବା ପାଇଁ ତ ଟଙ୍କା ନାହିଁ, ଗଲେ ସାଇକେଲ୍‌ରେ ଯିବା ।

ଲୋକାର ସାଇକେଲ୍ ନଥାଏ । ଗଲେ ମୋରି ସାଇକେଲ୍‌ରେ ଦି'ଜଣ ଯିବା । ଲୋକାକୁ ସାଙ୍ଗରେ ନବାର ଅର୍ଥ ହଉଛି ଲୋକା ଭଲ ସାଇକେଲ୍ ମରାମତି ଜାଣେ । ସାଇକେଲ୍ ବାଟରେ ଖରାପ ହେଲେ ଲୋକା ସାଇକେଲ୍ ମରାମତି କରିବ । ଲୋକା ମୋର ଭଲ ସାଙ୍ଗ । ପୁଣି ଦରକାର ପଡ଼ିଲେ ଭୃତ୍ୟ ପାଚକର କାମ ମଧ୍ୟ ଚଳେଇଦବ । ଲୋକାକୁ ସାଙ୍ଗରେ ନବା ଏକାନ୍ତ ଆନନ୍ଦଦାୟକ । ଏଥି ପୂର୍ବରୁ ମୁଁ କିମ୍ବା ଲୋକା କେବେ ଏକା ସାଇକେଲରେ ଯାଇ ନାହୁଁ । ପୁଣି ବାଟ ମଧ୍ୟ ଜାଣି ନାହୁଁ । ତଥାପି ବାହାରିଲୁ । ଦିନ ୧୦ଟା ବେଳେ ଲୋକା ତା'ଘରୁ ଖାଇ ଆସିଲା, ମୁଁ ମେଡ଼ିକାଲ ହଷ୍ଟେଲରୁ ଖାଇ

ଆସିଥିଲି । ସେତେବେଳେ ମୁଁ barbell exercise କରି ମୋର ପ୍ରକାଣ୍ଡ ସ୍ୱାସ୍ଥ୍ୟ, ଦେହରେ କାଠିଏ ବଳ । ପୁରୀକୁ ସାଇକେଲ୍‌ରେ ଯିବା ପାଇଁ ମୋର କିଛି ଖାତିରି ନଥାଏ । ଚାଲିଲୁ ପୁରୀକୁ ବେଳ ୧୦ଟା April ମାସ ଖରା ।

ମୋର ମନଟା ପୁଣି ବିଶେଷ ଖରାପ ଥାଏ । ତା'ର କାରଣ ମୁଁ ମେଡ଼ିକାଲର 2nd year test examinationରେ physiology ରେ ଫେଲ୍ ହେଇଥାଏ । ମୁଁ ଜାଣିଛି physiologyରେ ପାସ୍ କରିଛି । ଶିକ୍ଷକ ଜାଣନ୍ତି । ପିଲାଏ ଜାଣନ୍ତି ମୁଁ physiology ରେ ପାସ୍ କରିଛି କିନ୍ତୁ ଯେତେବେଳେ notice board ରେ ନାଁ type ହେଇ ଟଙ୍ଗା ହୁଏ ସେତେବେଳେ ମୋର ନାଁ ନାହିଁ । କାରଣ କଣ ବୁଝାବୁଝି କଲା ବେଳକୁ ବୁଝିଲି ଯେ ମୁଁ physiology ରେ ଫେଲ୍ ହେଇଥିବା ଯୋଗୁଁ sent up ହେଇ ପାରି ନାହିଁ । ଏ ବିଷୟରେ ଅନେକ ଅନୁସନ୍ଧାନ କଲି । ଶିକ୍ଷକଙ୍କୁ କହିଲି, superintendent ଙ୍କୁ କହିଲି ମୁଁ physiology ରେ ପାସ୍ କରିଥିଲି କିନ୍ତୁ ପୁଣି ଫେଲ୍ ହେଲି କେମିତି? ଏ ବିଷୟରେ ଯେତେ ଘଣ୍ଟା ଚକଟା କଲି କିଛି ଫଳ ହେଲା ନାହିଁ । ଶେଷରେ ବୁଝି ପାରିଲି ଯେ head clerk ଯାମିନୀ ବାବୁଙ୍କ କାରସାଦି ।

ସେ ଆମର ସ୍ୱଜାତି ହେଲେ ମଧ୍ୟ ଆମେ ଯେମିତି କେହି ଉନ୍ନତି ନକରୁ ତାଙ୍କର ଇଚ୍ଛା । ସେଇ physiology mark ଖାତାରେ ଚଢ଼େଇଲା ବେଳେ ଗଣ୍ଡଗୋଳ କରିଛନ୍ତି, କଣ ଆଉ କରିବି? ମୋର ଏମିତି ଗୋଟିଏ ଘଟଣା ନୁହେଁ, ଅନେକ ପିଲାଙ୍କର ସେ ଏମିତି ପୂର୍ବେ କରିଛନ୍ତି । ସେ ଘଟଣାବଳୀରୁ ଗୋଟାଏ ଘଟଣା ପରେ ବର୍ଣ୍ଣନା କରିବି । ସେଇ ଦିନଠୁ ମୁଁ ଯାମିନୀ ବାବୁଙ୍କ ବିରୁଦ୍ଧରେ ରହିଲି । ମୁଁ ଏକା ଯାମିନୀ ବାବୁଙ୍କ ବିରୁଦ୍ଧରେ ନୁହେଁ ଅନେକ ମେଡ଼ିକାଲ ପିଲା ଅନେକ ଘଟଣା ନେଇ ଯାମିନୀ ବାବୁଙ୍କ ବିରୁଦ୍ଧରେ ଥାନ୍ତି । ଶେଷ ନିଷ୍ପତ୍ତି ହେଲା ମୋତେ ପୁଣି ଥରେ anatomy, physiology ଆଉ pharmacology ରେ test examination ଦବାକୁ ହବ । ଏ ହେଲା ମନ ଖରାପର ପ୍ରଥମ କାରଣ ।

ଦ୍ୱିତୀୟ କାରଣ ହେଲା ବଡ଼ ଭଉଣୀ ମରିବାର ମାସକ ପରେ ଭିଣେଇ ପୁଣି ବିଭା ହେଉଛନ୍ତି । ସେ ପୁଣି ଜେଠାଙ୍କ ସାନ ଝିଅକୁ । ଯା'ଙ୍କ ସହିତରେ କିଛିଦିନ ପୂର୍ବରୁ ଆମର ବୈର ଭାବ ଜନ୍ମିଥାଏ ।

ଲୋକାକୁ ସାଇକେଲ୍ ପଛରେ ବସେଇ ମୁଁ ସାଇକେଲ୍ ଚଲଉଥାଏ । ମୋର ପିନ୍ଧିବା ଭିତରେ ଖଣ୍ଡେ କାଳିଆ ରଙ୍ଗର ହାପ୍‌ପେଣ୍ଟ ଖଣ୍ଡେ ଧଳା ହାପ୍ ସାର୍ଟ । ମୁଣ୍ଡରେ ଖଣ୍ଡେ ରୁମାଲ ବାନ୍ଧି ଦେଇଥାଏ । ଗୋଡ଼ରେ ହଳେ ରବର ଜୋତା । ଲୋକା ସାଇକେଲ୍ ପଛରେ ବସି ମୋ ଅଣ୍ଟା ଉପରେ ମୁଣ୍ଡ ରଖି ଢୁଳେଇବାକୁ ଆରମ୍ଭ କଲା । ତାକୁ ମଝିରେ ମଝିରେ ଗୋଟାଏ ନେଖା ଚାପୁଡ଼ା ପକଉଥାଏ । ଗପ କରୁଥାଏ । ଉଦୁଉଦିଆ ଖରା, ଦିନ ତିନିଟା ବେଳକୁ ଯାଇ ସାକ୍ଷୀଗୋପାଳ ବଜାରରେ ପହଞ୍ଚିଲୁ । ସେଠି ଓହ୍ଲେଇ ଗୋଟାଏ ପୋଖରୀରେ ଗୋଡ଼, ମୁହଁ, ହାତ ଧୋଇଲୁ । ଜଳଖିଆ କଲୁ । ପଇଡ଼ ପାଣି ପିଇଲୁ । ସେତେବେଳେ ପଇଡ଼ ଗୋଟାକୁ ପଇସାଏ । ପୁଣି ସାଇକେଲ ଛାଡ଼ିଲୁ । ସିଆଡ଼କୁ ସାଇକେଲ୍ ଚଳେଇବା ଭାରି କଷ୍ଟକର ହେଲା । କାରଣ ବିପରୀତ ଆଡୁ ପବନର ଜୋର ଜଣାଗଲା । ସାଇକେଲ୍ ଠେଲି ହେଇଗଲା ପରି ଜଣାଗଲା । ଦିନ ୫ଟା ହେବ ପ୍ରାୟ ସେତେବେଳେ ଆମେ ନରେନ୍ଦ୍ର ପୋଖରୀର କଡ଼ ଦେଇ ଯାଇ ବଡ଼ଦାଣ୍ଡରେ ପହଞ୍ଚି ଦେଖିଲୁ ବାବା, ମା, ସାନଭଉଣୀ ନରେନ୍ଦ୍ର ପୋଖରୀ ଆଡ଼େ ବୁଲିବାକୁ ଆସିଛନ୍ତି । ବାବା, ମା, ସାନଭଉଣୀ ମୋତେ ଲୋକାକୁ ଦେଖି ଆଶ୍ଚର୍ଯ୍ୟ ହେଲେ । କାରଣ ଆମେ ସାଇକେଲ୍‌ରେ ପୁରୀ ଚାଲି ଆସିଛୁ । ବାବା, ମା, ସାନଭଉଣୀ, ମୁଁ ଏବଂ ଲୋକା ସମସ୍ତେ ସେତେବେଳର ପୁରୀ ଜିଲ୍ଲା ସ୍କୁଲ ନିକଟସ୍ଥ ଭିଣେଇଙ୍କ ବସାକୁ ଫେରିଲୁ ।

ବାବା, ମା'ଙ୍କଠାରୁ ବୁଝିଲି ଯେ ବିବାହ ଭାଙ୍ଗିଗଲା । ଜଗତସିଂହପୁରରୁ ଜେଠା ରାଜକୃଷ୍ଣ ବୋଷଙ୍କୁ ସାଙ୍ଗରେ ନେଇ ପୁରୀ ଆସିଥିଲେ । ରାଜକୃଷ୍ଣ ବୋଷ ହଉଛନ୍ତି ମୋର ଜେଠେଇଙ୍କର ସାନଭଉଣୀଙ୍କର ପୁଅ । ଏଣେ ପୁଣି ନେତା, କଂଗ୍ରେସ କର୍ମୀ । କିନ୍ତୁ କିଛି ହେଲା ନାହିଁ । ବିବାହ ଭାଙ୍ଗିଗଲା । ଜେଠା, ରାଜକୃଷ୍ଣ ବୋଷ ହତାଶ

ହେଇ ଫେରିଗଲେ । ଏ ବିବାହ ଭାଙ୍ଗିବାରେ ମା'ଙ୍କର ବିଶେଷ ବାହାଦୁରି । ଏଇ ଘଟଣାରୁ ମୋର ଭିଣେଇ ଆଉ ଭଣଜାଙ୍କ ମଧ୍ୟରେ ମନୋମାଳିନ୍ୟର ପ୍ରଥମ ସୂତ୍ରପାତ ଘଟିଲା । ମା'ଙ୍କ ଶିକ୍ଷାରେ ଭଣଜା ପାଟି ତୁଣ୍ଡ କରିବାରେ ଏ ବିବାହ ଭାଙ୍ଗିଗଲା । ଭଣଜା ହତାଶ ହେଇ ବୁଲୁଥିଲା । ମା'ଙ୍କର ସାହସ ପାଇ ଭଣଜା ଏ ବିବାହ କରେଇ ଦବ ନାହିଁ ବୋଲି ଧମକ ଦେବାରେ ଏ ବିବାହ ଭାଙ୍ଗିଲା ।

ଭିଣେଇଙ୍କୁ ଦେଖିଲି ବିବାହ ପାଇଁ ମୁଣ୍ଡର ବାଳ, ନିଶ ଇତ୍ୟାଦି ଚମତ୍କାର ଭାବରେ ଖିଅର ହେଇ ଚକ୍‌ଚକ୍ ଦିଶୁଥାନ୍ତି । ଆମ ଉପରେ ଟିକିଏ ବିରକ୍ତ ଭାବ । କାରଣ ବାହାଘରଟା ଭାଙ୍ଗି ଦେଲୁ । ମୁଁ ଟିକିଏ ଥଟ୍ଟାରେ କହିଦେଲି କ'ଣ ଚମତ୍କାର ବର ବେଶ ହେଇଛ ? କିନ୍ତୁ ଭିଣେଇଙ୍କ ଆଡୁ କୌଣସି ଉତ୍ତର ମିଳିଲା ନାହିଁ । ସେ ଗମ୍ଭୀର ରହିଲେ ।

ମୁଁ, ବାବା, ମା, ସାନଭଉଣୀ ଟ୍ରେନରେ କଟକ ଆସିଲୁ । ଲୋକା ମୋ ସାଇକେଲରେ କଟକ ଫେରିଲା । ମୁଁ ପୁଣି test ପରୀକ୍ଷା ଦେଇ 2nd year final ପରୀକ୍ଷା ପାଇଁ sent up ହେଲି । 2nd year ରେ final examination ଦବା ପାଇଁ ପ୍ରସ୍ତୁତ ହବାକୁ ପଡ଼ିଲା । Anatomy, physiology, pharmacology ତିନିଟା ବିଷୟରେ ପରୀକ୍ଷା ଦବାକୁ ହବ । ଯେଉଁ anatomy ପ୍ରଥମେ ଭାରି ଭଲ ଲାଗୁଥିଲା ପରୀକ୍ଷା ବେଳକୁ ପାହାଡ଼ ପରି ମନେ ହେଲା ।

Physiology, pharmacology ଦୁଇଟା ବିଷୟ ଯେତିକି ଏକା anatomy ସେତିକି, କଣ କରିବି ? ଶେଷରେ ସ୍ଥିର କଲି anatomy, pharmacology ଭଲ ଭାବରେ ପଢ଼ିବି । Physiology ପଢ଼ିବି କିନ୍ତୁ ସେତେ ଜୋର୍ ଦେଇ ପଢ଼ିବି ନାହିଁ । ଯଦି physiology ରେ ପାସ୍ କଲି ତ କଲି ନଚେତ୍ physiology ରେ ଫେଲ୍ ହେଲେ ଆଉ ଛ ମାସ ପରେ single subject ଦେଇ ପାସ୍ କରିବି । ଏଣୁ anatomy, pharmacology କୁ ଭଲ ଭାବରେ ପଢ଼ିଲି । Physiology ର ଖଣ୍ଡେ ଛୋଟିଆ sketch ବହି Vegibdar Physiology ପଢ଼ିଲି ।

2nd year ର final ପରୀକ୍ଷା ଆରମ୍ଭ ହେଲା । Anatomy, physiology ଆଉ pharmacology ରେ written examination ରେ ଭଲ ହେଲା । ତିନିଟା ବିଷୟରେ ପାସ୍ କରିବା ସୁନିଶ୍ଚିତ । ଏ ଗଲା theory ପରୀକ୍ଷା । ପୁଣି oral, practical ପରୀକ୍ଷା ଅଛି ।

Oral, practical ପରୀକ୍ଷା ଆରମ୍ଭ ହେଲା । Anatomy ର practical ପରୀକ୍ଷାରେ ପାସ୍ କଲି କିନ୍ତୁ oral ରେ ଫେଲ୍ । Pharmacology ରେ oral, practical ପରୀକ୍ଷାରେ ପାସ୍ କଲି । ବାକି ରହିଲା physiology । Anatomy କୁ ଭଲ ଭାବରେ ପଢ଼ି ତ ଫେଲ୍ ହେଲି । ଆଉ physiology ତ ଭଲ ଭାବରେ ପଢ଼ି ନାହିଁ । ପାସ୍ କରିବି କୁଆଡୁ ? ତଥାପି physiology ର practical ପରୀକ୍ଷାରେ ପାସ୍ କଲି । ବାକି ରହିଲା physiology oral ଯେଉଁଦିନ ହୁଏ ସେଦିନ ମୋର evening batch ରେ ପରୀକ୍ଷା ଥିଲା । ଆମର internal examiner ଥାନ୍ତି Dr. Gopal Chandra Patnaik. ଆଉ external examiner ଆସିଥାନ୍ତି Dr. Rudrendra Kumar Pal । ଏ ନିଜେ ଖଣ୍ଡେ physiology ବହି ଲେଖିଥିଲେ । ମୁଁ ସେ ବହି ଖଣ୍ଡକ କିଣିଥିଲି । କିନ୍ତୁ ମୁଁ ସେ ବହି ଖଣ୍ଡକ ପରୀକ୍ଷା ପୂର୍ବରୁ ଆଉ ଜଣେ ମୋର ସହପାଠୀ ପଦ୍ମନାଭ ତ୍ରିପାଠୀଙ୍କୁ ଦେଇ ତା'ଠୁ Vegibdar Physiology ଆଣି ପଢୁଥିଲି ।

ସେଦିନ ମୋର evening batch ରେ ପରୀକ୍ଷା ଥିବା ଯୋଗୁ ମୁଁ ଆଗରୁ ଟିକିଏ ଘରୁ ବାହାରି ଯାଇ hostel କୁ ଚାଲିଗଲି । ସେଠି ଯାଇ ପିଲାଙ୍କଠୁ ବୁଝିଲି ଯେ external examination morning batch ରେ what is indigo ବିଷୟରେ ପଚାରିଛନ୍ତି । କେବଳ ତାଙ୍କରି ଲିଖିତ physiology ବହିରେ ଏ ବିଷୟରେ ବିଷଦ୍ ଭାବରେ ଲେଖାଅଛି । ଏକଥା ଶୁଣି ମୁଁ ପଦ୍ମନାଭ ତ୍ରିପାଠୀଙ୍କୁ ଯାଇ ମୋର physiology ବହି ମାଗିଲି । Oral ପରୀକ୍ଷା ପୂର୍ବରୁ indigo ବିଷୟରେ ପଢ଼ି ନେବି । ପଦ୍ମନାଭ ତ୍ରିପାଠୀ ମଧ୍ୟ କହିଲା ଭାଇ, indigo ବିଷୟରେ ପଢ଼ିନେ, ଆଜି morning batch ରେ indigo ବିଷୟରେ

ପଚାରି ବହୁତ ପିଲାଙ୍କୁ ଫେଲ୍ କରେଇଛି । ମୁଁ ପଦ୍ମନାଭ ତ୍ରିପାଠୀ ପାଖରୁ ବହି ଆଣି କ୍ଲାସକୁ ଯାଇ ଏକୁଟିଆ ବସି indigo ବିଷୟରେ ପଢ଼ି ନେଲି । ବିଷୟଟା ଖୁବ୍ ଭଲ ଭାବରେ ମନେ ରହିଗଲା । ତେଣେ physiology ର oral examination ଆରମ୍ଭ ହେଇ ଯାଇଥାଏ । ମୋତେ ଯେତେବେଳେ oral examination କୁ ଡ଼କା ହୁଏ ମୁଁ ଯାଇ ଧୀରସ୍ଥିର ଭାବରେ ବସିଲି । Physiology ତ ମୁଁ ଭଲ ଭାବରେ ପଢ଼ି ନଥାଏ, ଫେଲ୍ ହବାକୁ ସୁନିଶ୍ଚିତ ଜାଣିଲି । ଛାତିଟା ଧଡ଼ଧଡ଼ ହେଉଥାଏ । ମୋତେ external examiner ପ୍ରଥମ ପ୍ରଶ୍ନ ପଚାରିଲେ what is indigo? ମୁଁ ତ ଅଳ୍ପ ସମୟ ପୂର୍ବରୁ ପଢ଼ିଥିଲି । ଆମୂଳଚୂଳ ଗାଇ ଦେଇଗଲି । External examiner ଭାରି ଖୁସି ହେଇଗଲେ ଯେ ସେ ଏ ପର୍ଯ୍ୟନ୍ତ କାହାରିଠୁ ଏପରି ଉତ୍ତର ଶୁଣି ନଥିଲେ । External examiner ଖୁସି ହବା ଦେଖି ମୋତେ ଜଣାଗଲା ଯେମିତି "ବହିତ୍ର ଲାଗିଲା ଯାଇ ସିଂହଳ ଦ୍ୱୀପରେ ।"

Physiology ରେ ଖସିଲି ବୋଧହୁଏ । ହେଲା ପାସ୍, external examiner ଆଉ ଗୋଟାଏ ଦି'ଟା କଣ ପଚାରିଲେ ତାକୁ ମଧ କହିଲି କିନ୍ତୁ ମଝିରେ ଗୋଟାଏ ଜାଗା ଟିକିଏ ଅଟକି ଯାଉଥିଲି ତାକୁ ଆମର internal examiner ଡାକ୍ତର ଗୋପାଳ ଚନ୍ଦ୍ର ପଟ୍ଟନାୟକ ବାଗେଇ ନେଇଗଲେ । ତା'ପରେ external examiner କହିଲେ Alright, you go । ମୁଁ ନିଶ୍ଚିତ ଜାଣିଲି ଯେ physiology ରେ ପାସ୍ । କିନ୍ତୁ ମୁଁ ସେତେବେଳେ physiology ର କିଛି ଜାଣି ନଥାଏ । Anatomy ରେ ଏତେ ପଢ଼ି ପଢ଼ି ଫେଲ୍ ହେଲି କିନ୍ତୁ physiology ରେ ସାମାନ୍ୟ କିଛି ପଢ଼ି ପାସ୍ କରିଗଲି । ମେଡ଼ିକାଲ୍ ପରୀକ୍ଷାରେ ପରୀକ୍ଷକମାନେ oral examination ଉପରେ ବେଶି ଗୁରୁତ୍ୱ ଦିଅନ୍ତି । Written examination ରେ ଯେ ଯେତେ ନମ୍ବର ରଖିଥାଉ ପଛେ oral ରେ ଯଦି ଖରାପ କରିଛି ତାହେଲେ ଫେଲ୍ । Oral examination ବଡ଼ ଭୟଙ୍କର । ବେଶି ପଢ଼ି ମଧ ଫେଲ୍ ହେଇପାର, ଅଳ୍ପ ପଢ଼ି ମଧ ପାସ୍ କରିପାର । Oral examination ରେ ପିଲାଏ nervous ହେଇ ବେଶି ଫେଲ୍ ହୁଅନ୍ତି, ଜାଣିବା ବିଷୟ ଭଲ ଭାବରେ କହି ପାରନ୍ତିନି ।

ମୁଁ barbell exercise କରିବା ପୂର୍ବରୁ Mullar ର ଯେଉଁ daily fifteen minutes, daily five minutes breathing exercise କରୁଥିଲି ତାପରେ ମୁଁ ଦେଖିଲି ଶରୀରର ଯେତିକି ଉନ୍ନତି ଘଟିଲା ତା ସଙ୍ଗେ ସଙ୍ଗେ nervousness ବିଶେଷ ବଢ଼ିଗଲା । Anatomy oral examination ଫେଲ୍ ହବାର କାରଣ ହେଲା ଏଇ nervousness । ଏମିତିକି football ଖେଳରେ ମଧ nervous ମନେ ହେଲା । ଯେଉଁଟାକି ମୁଁ school team ରେ ଖେଳିଲା ବେଳେ କି ପଢ଼ିବା ବେଳେ ଅନୁଭବ କରୁ ନଥିଲି । Breathing exercise କଲା ପରେ ଏ nervousness ଅନୁଭବ କଲି । ଯେ କୌଣସି କାମ କରିବା ପୂର୍ବରୁ ଛାତି ଧଡ଼ପଡ଼ ହେଲା । ପାଟିରୁ କଥା ବାହାରିଲା ନାହିଁ । ଏ ସବୁ ଆଗେ ନଥିଲା । ତଥାପି medicalର ଯେ କୌଣସି oral ପରୀକ୍ଷାରେ ଯେତେ ବଡ଼ ଦାମ୍ଭିକ ପିଲା ହେଇଥାଉ ନିଜକୁ ପ୍ରଥମେ nervous ଅନୁଭବ କରେ । ଏଇ nervousness ଯୋଗୁଁ ଅନେକ ପିଲା oral examination ରେ ଫେଲ୍ ହୁଅନ୍ତି ।

2nd year final examinationର ଫଳ ଯେତେବେଳେ Bihar Orissa Medical Board ରୁ ଆସେ ଦେଖିଲି ମୁଁ physiology, pharmacology ରେ ପାସ୍ କରିଛି । Anatomy ରେ ଛ'ମାସ ପରେ ପୁଣି ଥରେ final examination ରେ ଦବାକୁ ହବ ।

ଏ ଛ'ମାସରେ ଖାଲି ward duty କରିବା କଥା ଆଉ anatomy ପଢ଼ିବାକୁ ହବ । ମୋର ସହପାଠୀ ଜିତେନ୍ଦ୍ର କୁମାର ରାୟ ମଧ anatomy ରେ ଫେଲ୍ ହୋଇଥାଏ । ସେ, ମୁଁ ଦିହେଁ ଠିକ୍ କଲୁ ଏକ ସାଙ୍ଗରେ ପଢ଼ିବୁ ।

ଏଥି ମଧରେ ମୁଁ ଯାହା football ଖେଳୁ ଥିଲି ଆଉ barbell exercise କରୁଥିଲି । ମୁଁ hockey ଖେଳରେ ଯୋଗଦେଲି । ଏଥିରେ ଡା:ଅମୂଲ୍ୟଧନ ଦତ୍ତଙ୍କ

ଗୋଟାଏ ପାର୍ଟି ଆଉ ଗୋଟାଏ ଡ଼ା:ହରନାଥ ଜିଙ୍କ ପାର୍ଟି । ଏ ଦିହେଁ ତ anatomy ର demonstrator, ଅମୂଲ୍ୟ ବାବୁ football player ଥିଲେ, ପୁଣି hockey ମଧ୍ୟ ଖେଳନ୍ତି ।

ହରନାଥ ବାବୁ football player ନଥିଲେ । ଏବେ hockey ଖେଳିଲେ । ଅମୂଲ୍ୟ ବାବୁଙ୍କ ଦଳରେ ମୋଟା ମୋଟା ଗୁଣ୍ଡାଳିଆ ପିଲା ଖେଳନ୍ତି । ଆଉ ହରନାଥ ବାବୁଙ୍କ ଦଳରେ ସାଧାରଣ ପୁଣି ଦୁଷ୍ଟ ପିଲା ମଧ୍ୟ ଖେଳନ୍ତି । ମୁଁ ଅମୂଲ୍ୟ ବାବୁଙ୍କ ଦଳରେ ଥିଲି । ଏଇ hockey ଖେଳରେ ଆମ ଭିତରେ ପଛେ ରଗାରଗି ମାଡ଼ପିଟ୍ ନହେଉ, ଅମୂଲ୍ୟ ବାବୁ, ହରନାଥ ବାବୁଙ୍କ ମଧ୍ୟରେ ମରାମରି ହୋଇଯାନ୍ତି । ମୁଁ hockey ରେ football ଭଳି left half ରେ ଖେଳିଲି । Hockey ର ଆଇନ୍ କାନୁନ୍ ଯାହା ଥାଉ ଯେ ମୋ ସାମନାରେ ପଡ଼ିଲା ବଲ୍ ସହିତ hockey stick ରେ ଏକା ପାହାରକେ ତାକୁ ମୂଳପୋଛ କରେ । ଅମୂଲ୍ୟ ବାବୁ ମୋର ଏ ଧରଣର ଖେଳ ଦେଖି ଭାରି ଖୁସି ହୁଅନ୍ତି । ଥରେ ଖେଳ ଚାଲିଛି, ହରନାଥ ବାବୁଙ୍କ ଦଳର ଗୋଟାଏ player ବଲ୍ ଆଣୁଛି ମୁଁ ତାକୁ ଅପେକ୍ଷା କରିଛି ମୋ ସାମନାକୁ ଆସିଲେ ଏକା ପାହାରକେ ତାକୁ ମୂଳପୋଛ କରିବି । ଏଣୁ ମୁଁ hockey stick କୁ ଉଁଚେଇ ପିଟିବା ଭଙ୍ଗିରେ ରହିଛି । ମୁଁ ସେ player ଉପରେ ଦୃଷ୍ଟି ରଖିଛି । ମୁଁ ହଠାତ୍ ଜାଣି ପାରିଲି ଉଭୟ ଦଳର ଖେଳାଳୀମାନେ କାହିଁକି ନିରବରେ ଠିଆ ହୋଇଗଲେ । ମୁଁ ସମସ୍ତଙ୍କୁ ଅନେଇ ଦେଖାବେଳେ ଅମୂଲ୍ୟ ବାବୁ ମୋତେ ଦେଖି ହସିଲେ ଏବଂ ମୁଁ ଜାଣି ପାରିଲି ଯେ ଅମୂଲ୍ୟ ବାବୁ ହିଁ ମୁଁ କେମିତି hockey stick ଧରି ମାରିବାକୁ ଠିଆ ହେଇଛି ଉଭୟ ଦଳକୁ ଦେଖେଇବା ପାଇଁ ଇସାରା ଦେଇ ଖେଳ ବନ୍ଦ କରେଇଛନ୍ତି । ଥରେ ଏମିତି ଖେଳୁ ଖେଳୁ ଗୋଟାଏ ଗୋଳମାଳିଆ ପରିସ୍ଥିତିରେ ଆମରି ପକ୍ଷର back ବଲ୍‌କୁ ମାରିବାକୁ ଗଲାବେଳେ ମୋରି ବାଁ ହାତର ବୁଢ଼ା ଆଙ୍ଗୁଳିରେ ତା'ର hockey stickର ଆଘାତ ଲାଗିଲା । ଯା ଫଳରେ ମୋରି ବାଁ ହାତର ବୁଢ଼ା ଆଙ୍ଗୁଳି ଦୁଇ ଫାଳ ହେଇଗଲା । ଭାରି ଯନ୍ତ୍ରଣା ହେଲା । ମୁଁ ସେଇଦିନଠୁଁ hockey ଖେଳ ଛାଡ଼ି ଦେଲି ।

ଜିତେନ୍ ରାୟ, ମୁଁ ବେଶ୍ ଜୋର୍‌ସୋର୍‌ରେ anatomy ପଢ଼ିବା ଆରମ୍ଭ କଲୁ । ଥରେ ମୋର ମନେ ଅଛି anatomy ପରୀକ୍ଷା ଅଳ୍ପଦିନ ଥାଏ ମୁଁ ଏକା ପଢୁଛି ଜିତେନ୍ ଆସି ନାହିଁ । ଦିନ ୧୨ଟା ବେଳ ମୃଣାଳ ଆସି ପହଞ୍ଚିଲା, ମୋ ସହିତରେ ଗପ କରିବ । ମୁଁ ମୃଣାଳ ସହିତରେ ବିଶେଷ ଗପ ନକରି ପଢ଼ାରେ ଲାଗିଥାଏ । ମୃଣାଳ କିଛି ସମୟ ବସି ବସି ମୋତେ କହିଲା ହଇରେ ପୁଳିନ୍, ତୁ, ମୁଁ, ପ୍ରିୟ ତିନିହେଁ ସାଙ୍ଗ । ଆମେ ଦି'ଜଣ matric ପାସ୍ ନକରି under matric ହେଇ ରହିଲୁ । ତୁ ଆମ ମୁଣ୍ଡକୁ ଖାଇ ପୁଣି ପାଠ ପଢ଼ି matric ପାସ୍ କରି କଲେଜରେ I.Sc. ପଢ଼ି ପୁଣି medical ରେ ଆସି ପଢ଼ିଲୁ । ମୁଁ ଟିକିଏ ଗପ କରିବାକୁ ଆସିଲି, ତୁ ମୋ ସାଙ୍ଗରେ ଟିକିଏ ଗପ କଲୁ ନାହିଁ । ହଉ ।

ମୃଣାଳ ଏତକ କହି ଆମ ବାହାରଆଡ଼ର ତଳ ପାହାଚରେ ଠିଆ ହେଇ ସୂର୍ଯ୍ୟଙ୍କ ଆଡ଼କୁ ଅନେଇ ହାତ ଯୋଡ଼ି ପ୍ରାର୍ଥନା କରିବା ଭଙ୍ଗିରେ କହିଲା ହେ ପ୍ରଭୁ, ପୁଳିନ୍ ଫେଲ୍ ହଉ, ପୁଳିନ୍ ଫେଲ୍ ହଉ । ମୃଣାଳ ଏତକ କହି ସାଇକେଲ୍‌ରେ ଉଠି ପଳେଇଲା । ମୋତେ ଯେତିକି ହସ ମାଡ଼ିଲା, ସେତିକି ମନେ ମନେ ଟିକିଏ ଚପି ଗଲି । ଭାବିଲି ପରୀକ୍ଷା ଆଉ ଅଳ୍ପଦିନ ରହିଲା, ମୃଣାଳ ଏମିତି କଥା କହି ଗଲା । ସତେ ଆଉ ଫେଲ୍ ହେବିକି ?

ଜିତେନ୍, ମୁଁ ଯେତେବେଳେ ସମୟ ପାଉ ପଢୁ । ଜିତେନ୍ ଠିକ୍ ସମୟରେ ମୋ ପାଖକୁ ଆସେ । ଦିନ, ରାତି ଦୁଇବେଳା ଜିତେନ୍ ଆସେ । ଆମେ ରାତି ଜଗି ମଧ୍ୟ ପଢୁ । ରାତି ଜଗି ପଢ଼ିବା ବେଳେ ମୁଁ ଜିତେନ୍ ବାହାର ଆଡେ ପଢୁ । ପାଖରେ ପାଖରେ ଗୋଟାଏ ଲୋଟାରେ ଲୋଟାଏ ପାଣି ଗୋଟାଏ ଗ୍ଲାସ ଥୋଇ ଥାଉ । ଯେତେ ରାତି ଜଗି ପଢ଼ିଲେ ମଧ୍ୟ କ୍ଳାନ୍ତି ବୋଧ ହୁଏନା । ଯଦି ନିଦ ମାଡ଼େ, ଉଭୟେ ବିଧା ମରାମରି ହଉ । ଜିତେନ୍‌ର ବେଶ୍ ବଳିଷ୍ଠ ଦେହ । ମୁଁ ମଧ୍ୟ bar bell exercise କରି ବଳିଷ୍ଠ ହେଇଥାଏ । ବିଧା ମରାମରି ହବାକୁ ଖୁବ୍ ଭଲ ଲାଗେ । ନିଦ ଛାଡ଼ି ଯାଏ । ଜିତେନ୍ ବେଳେବେଳେ ଗୋଡ଼ ଦୁଇଟାକୁ ଉପରକୁ ଟେକି, ହାତ

ଦୁଇଟାରେ ଆମ ପାହାଚ ଗୁରାକ ଉପରେ ଓଲେହିଯାଏ ପୁଣି ସେହି ହାତ ସାହାଯ୍ୟରେ ଉଠି ଆସେ ।

Anatomy ପରୀକ୍ଷା ଆରମ୍ଭ ହେଲା । ଆମେ କେତେଜଣ single subject ବାଲା ପିଲାଏ ପରୀକ୍ଷା ଦେଇ ପାସ୍ କଲୁ । 2nd year ସରିଲା । ମେଡ଼ିକାଲ ସ୍କୁଲରେ ଏଥର 3rd year ହେଲା । ଏ ବର୍ଷ pathology, hygiene ଆଉ juris ପଢ଼ି ଶେଷ ପରୀକ୍ଷା ଦେଇ ପାସ୍ କଲେ 4th year ହବ । Final ପରୀକ୍ଷାରେ ଏଇ pathology, hygiene ଏବଂ juris ରେ ପରୀକ୍ଷା ଦବାକୁ ହବ । Pathology ଯେମିତି ଚମତ୍କାର ବିଷୟ, juris ମଧ ସେମିତି ଚମତ୍କାର ବିଷୟ ପଢ଼ିବାକୁ । କାହାକୁ କେହି ଊଣା ନୁହେଁ । ପଢ଼ିବାକୁ ଭାରି ଆଗ୍ରହ ଜନ୍ମିଲା । Pathology ବିଷୟ ହେଲା ମଣିଷ ଦେହରେ ରୋଗ ହେଲେ ତା ଯୋଗୁଁ ମଣିଷ ଶରୀରରେ କଣ ପରିବର୍ତ୍ତନ ଘଟୁଛି । ଯେମିତି ମେଲେରିଆ ଜର ହେଲେ ପ୍ଲୀହା ବଢ଼ିଯାଏ, ସେମିତି ଅନେକ ରୋଗରେ ମଣିଷ ଶରୀରରେ ଅନେକ ରକମର ପରିବର୍ତ୍ତନ ହୁଏ । ଯେଉଁ ପରିବର୍ତ୍ତନ ମଧ ମଣିଷ ଶରୀରର କ୍ଷତିକାରକ । ରୋଗର ଚିକିତ୍ସା କରିବାକୁ ହେଲେ ରୋଗ ଜନିତ ପରିବର୍ତ୍ତନକୁ ମଧ ଜଗିବାକୁ ହବ ।

Hygiene ବିଷୟ ହେଲା ସ୍ୱାସ୍ଥ୍ୟ ରକ୍ଷାର ଉପାୟ ସଂକ୍ରାମକ ରୋଗର ପ୍ରତିଷେଧକ ବ୍ୟବସ୍ଥା । ଘରର ସ୍ୱାସ୍ଥ୍ୟରକ୍ଷା ଠାରୁ ଆରମ୍ଭ କରି ମେଳା ମଉଛବରେ ଲୋକଙ୍କର ସ୍ୱାସ୍ଥ୍ୟରକ୍ଷା କିପରି ହୋଇ ପାରିବ, ତା'ର ବ୍ୟବସ୍ଥା ଇତ୍ୟାଦି ଇତ୍ୟାଦି ।

Jurisprudence ବିଷୟ ଆହୁରି ଚମତ୍କାର । ଏଥିରେ ଗୋଟିଏ ଲୋକର ସନ୍ଦେହଜନକ ମୃତ୍ୟୁର କାରଣ ନିର୍ଣ୍ଣୟ କରିହବ । Post mortem (ଶବ ବ୍ୟବଛେଦ) କରିବାର ବ୍ୟବସ୍ଥା । ମୁମୂର୍ଷୁ ଅବସ୍ଥାରେ ଜଣେ ଆହତ ରୋଗୀ ଠାରୁ କେମିତି dying declaration (ମୃତ୍ୟୁ ବେଳର ଜମାନବନ୍ଦି) ନବାକୁ ହୁଏ । ତା'ର ବ୍ୟବସ୍ଥା ଇତ୍ୟାଦି ଇତ୍ୟାଦି । ଅନେକ ଆକର୍ଷଣୀୟ ବିଷୟ ପଢ଼ିବାକୁ ହୁଏ ।

3rd year ରେ ନିୟମିତ ଭାବରେ ପଢ଼ାପଢ଼ି ଚାଲିଲା । ପାଠପଢ଼ା ସାଙ୍ଗକୁ football ଖେଳ । Sports ରେ ଯୋଗ ଦେବା । ପୁଣି ଘରେ ନିୟମିତ ଭାବରେ barbell exercise ମଧ ଚାଲିଥାଏ । Barbell exercise କରିବା ଦ୍ୱାରା ଶରୀରରେ ଚମତ୍କାର ପରିବର୍ତ୍ତନ ପରିଲକ୍ଷିତ ହେଲା । ଯେ ଦେଖିଲା ସେ କହିଲା ଯା ହଉ barbell exercise କରିବା ଦ୍ୱାରା ତୁମର ସ୍ୱାସ୍ଥ୍ୟର ବେଶ୍ ପରିବର୍ତ୍ତନ ହେଇଛି ।

ମେଡ଼ିକାଲ୍ ସ୍କୁଲରେ ମୋର ସହପାଠୀମାନେ ମଧ କହିଲେ । ଅନେକ ମୋତେ barbell exercise କେମିତି କରିବାକୁ ହୁଏ ମଧ ପଚାରି ବୁଝିବାକୁ ଚାହିଁଲେ, କେତେକ ମଧ ପରିହାସ କରି କେତେ ରକମର ନାଁରେ ଡ଼ାକିଲେ । କିଏ କହିଲା Gama, କିଏ କହିଲା Pullam କିଏ କହିଲା Chittan ଇତ୍ୟାଦି । Gama ଜଣେ ପୃଥିବୀ ବିଖ୍ୟାତ ପହିଲ୍ମାନ, ଆଉ Chittan ହେଲେ bar bell ବ୍ୟାୟାମ ବିଶାରଦ ।

ବାବା ମଧ ମୋର ଶାରିରୀକ ଉନ୍ନତି ଦେଖି ମନେ ମନେ ଆନନ୍ଦ ଅନୁଭବ କଲେ । ମୁଁ ସପ୍ତାହରେ ଦିନେ barbell exercise ବନ୍ଦ କରେ । ସେଦିନ ମୁଁ barbell exercise ନକରିବାର ଦେଖି ବାବା ପଚାରିଲେ କିରେ ଆଜି କାହିଁକି barbell exercise କଲୁ ନାହିଁ? ମୁଁ ବାବାଙ୍କୁ ବୁଝେଇ କହିଲି barbell exercise ର ନିୟମ ହଉଛି ସପ୍ତାହରେ ଦିନେ rest ନବା । ଏଣୁ ମୁଁ ଆଜି barbell exercise କଲି ନାହିଁ । ଏଇଥିରୁ ମୁଁ ବୁଝିପାରିଲି ଯେ ବାବା ଏଣିକି ବୁଝିପାରିଛନ୍ତି barbell exercise ଦ୍ୱାରା ମୋର ଶାରିରୀକ ପରିବର୍ତ୍ତନ ଘଟିଛି । ବାବା ଦିନେ ଦୁଇଟା ବଡ଼ ବଡ଼ ଆଇନା କିଣି ଆଣି ଦେଲେ । କାରଣ ଏଥି ପୂର୍ବେ ବାବାଙ୍କୁ ମୁଁ କେତେଥର କହିଥିଲି barbell exercise ହଉ କିମ୍ବା ଅନ୍ୟ କୌଣସି ଯନ୍ତ୍ର ସାହାଯ୍ୟରେ ବ୍ୟାୟାମ କଲେ, ସାମନାରେ ଏବଂ ପଛରେ ଦୁଇଟା ଆଇନା ରଖି ବ୍ୟାୟାମ କଲେ ଶରୀରର ଖୁବ୍ ଶୀଘ୍ର ପରିବର୍ତ୍ତନ ହୁଏ । କାରଣ ଶରୀର ଯେଉଁ ଅଂଶର ବ୍ୟାୟାମ କରିବ ସେହି ମାଂସପେଶୀ ଉପରେ ଦୃଷ୍ଟି ରଖି ଏବଂ

ମନୋନିବେଶ କରି ବ୍ୟାୟାମ କଲେ ଶରୀରର ସେହି ଅଂଶର ଖୁବ୍ ଶୀଘ୍ର ପରିବର୍ତ୍ତନ ହୁଏ । ଏଥିଲାଗି ଦୁଇଟା ବଡ଼ ଆଇନା ଦରକାର । ଏଣୁ ବାବା ମୋତେ ନିଜ ଇଚ୍ଛାରେ ଦୁଇଟା ବଡ଼ ଆଇନା କିଣି ଦେଇଥିଲେ ।

ମୁଁ ସନ୍ଧ୍ୟାପରେ ତଳେ ଖଣ୍ଡେ ମଶିଣା ପାରି ଜଗି ଶୋଇଛି । ମା ମୋ ପାଖରେ ବସି ମୋ ପିଠି ଆଉଁସୁ ଆଉଁସୁ ଦୁଃଖ କରି କହିଲେ ଦେଖ, ତୁ ସେ barbell exercise କାହିଁକି କରୁଛୁ ? ସେ ବ୍ୟାୟାମ ଭାରି କଠିନ ମୁଁ ଦେଖୁଛି । ତାକୁ କଲେ ସେମିତି ପୁଷ୍ଟିକର ଖାଦ୍ୟ ଖାଇବା ଦରକାର । ଖାଦ୍ୟ ତ ସେମିତି କିଛି ଖାଇବାର ନାହିଁ । ଘିଅ, ଦୁଧ ତ ଖାଇବାର ସୁବିଧା ନାହିଁ । ଯା ଭାତ, ଡ଼ାଲି, ମାଛ ଏଇୟା ଖାଉଛୁ । ଏଇୟା ଖାଇ ସେ ବ୍ୟାୟାମ କରିବା ଉଚିତ୍ ନୁହେଁ । ତୁ ସେ ବ୍ୟାୟାମ କରନା ।

ମୁଁ ଶୁଣି ମା'ଙ୍କୁ କିଛି କହିଲି ନାହିଁ । ମନେ ମନେ ଭାବିଲି ମା ଯା କହୁଛନ୍ତି ଠିକ୍ କଥା । କାରଣ ବାବାଙ୍କର ଚାକିରୀ ଥିଲା ବେଳେ ଗୋରୁ ବହୁତ ଥିଲା । ଏଣୁ ଘରେ ଦୁଧ, ଦହି, ମଖନ, ଛେନା, ଘିଅ ଇତ୍ୟାଦି ପ୍ରଚୁର ପରିମାଣରେ ହଉଥିଲା । ଏଣୁ ଭାତ, ଡାଲି, ମାଛ ସାଙ୍ଗକୁ ଘିଅ, ଦୁଧ ଖାଇବା ଦ୍ୱାରା ଖାଦ୍ୟ ପୁଷ୍ଟିକର ହଉଥିଲା । ବର୍ତ୍ତମାନ ଘିଅ, ଦୁଧତ ଖାଇପାରୁନୁ । ଏଣୁ ଭାତ, ଡାଲି, ମାଛ ଖାଇବା ଦ୍ୱାରା ଖାଦ୍ୟତ ସେମିତି ପୁଷ୍ଟିକର ନୁହେଁ । ମାଂସ କିମ୍ବା ଅଣ୍ଡା ଖାଇବା ଆମ ଘରେ ଅନେକ ଆଗରୁ ପ୍ରଚଳନ ନଥିଲା । ଏଣୁ ଆମ ଘରେ ମାଂସ କି ଅଣ୍ଡା ଆଦୌ ପଶୁ ନଥିଲା । ପରିଶ୍ରମ ଅନୁପାତରେ ସାରବାନ ଖାଦ୍ୟ ଖାଇବା ଦରକାର । ଏକଥା ସତ । ନଚେତ୍ ଶରୀରରେ ଅନେକ ପ୍ରକାର ରୋଗ ଲକ୍ଷଣ ଦେଖାଦେବ । ଶରୀର ନଷ୍ଟ ହେଇଯିବ । ମୁଁ ମଧ୍ୟ ଏକଥା ଭାବେ ମୁଁ ଯେମିତି କଠିନ ବ୍ୟାୟାମ କରୁଛି ସେ ଅନୁପାତରେ ତ ଖାଦ୍ୟ ଖାଉ ନାହିଁ । ଖାଲି ଭାତ, ଡାଲି, ସାଦା ତରକାରୀ, ମାଛ ତରକାରୀରେ ଶରୀରର କେମିତି ଉନ୍ନତି ହବ ?

କିନ୍ତୁ ସେହି ଖାଦ୍ୟରେ ତ ଉନ୍ନତି ହେଲା । ତେବେ ଆଉ ଗୋଟାଏ କଥା ଏ ଶାରିରୀକ ଉନ୍ନତି କେତେଦିନ ରହିବ ? କିନ୍ତୁ ଏଇ ସମୟରେ ମୁଁ ଖଣ୍ଡେ ବ୍ୟାୟାମ ସଂକ୍ରାନ୍ତୀୟ ବହି କିଣିଲି ନାଁ 'ଶରୀର' । ଏ ବହିରେ free hand exerciseର କେତେଗୁଡ଼ିଏ ଚିତ୍ର ସହ ବ୍ୟାୟାମ କରିବାର ବ୍ୟବସ୍ଥା ଅଛି । ଏ ଜଣେ ବଙ୍ଗୀୟ ବ୍ୟାୟାମ ବିଶାରଦଙ୍କ ଦ୍ୱାରା ଲିଖିତ । ଏଇ ବହିର ଭୂମିକାରେ ପଢ଼ିଲି, ବହିର ପ୍ରଣେତା ଲେଖିଛନ୍ତି ବ୍ୟାୟାମକାରୀର ପୁଷ୍ଟିକର ଖାଦ୍ୟ ବିଶେଷ ଦରକାର ନାହିଁ । ଆମେ ଯେଉଁ ଭାତ, ଡାଲି, ତରକାରୀ ଖାଉଛୁ ସେଇ ଖାଦ୍ୟ ଖାଇ, ବ୍ୟାୟାମ କଲେ ଶରୀରର ଉନ୍ନତି ଘଟିବ ଏବଂ ନିୟମିତ ଭାବରେ ବ୍ୟାୟାମ କଲେ ସେଇ ଶାରିରୀକ ଉନ୍ନତି ତିଷ୍ଠି ରହିବ । ଉଦାହରଣ ସ୍ୱରୂପ ଆମେ ଯାହା ଖାଉଛୁ ତଳିଆ ଶ୍ରେଣୀ ଲୋକମାନେ ତ ସେତିକି ଖାଦ୍ୟ ନପାଇ ଆମଠୁଁ କଠିନ ପରିଶ୍ରମ କରୁଛନ୍ତି । ଅଥଚ ଆମ ଶାରିରୀକ ଗଠନ ଅପେକ୍ଷା, ସେମାନଙ୍କ ଶାରିରୀକ ଗଠନତ ବେଶ୍ ଚମତ୍କାର । ପୁଣି ସେମାନେ ଆମଠୁଁ ବେଶି ବଳୁଆ । ଏହାର କାରଣ ହେଲା ଆମେ ଯେଉଁ ଧରଣର ଖାଦ୍ୟ ଖାଉଛୁ ସେଥିରେ ଯେତିକି ଖାଦ୍ୟସାର ଅଛି ସେ ଆମ ଶରୀରରେ ସମ୍ପୂର୍ଣ୍ଣ ଭାବେ ମିଶୁ ନାହିଁ । ଅଳ୍ପ କିଛି ମିଶି ବାକି ଅଂଶଟା ମଳ ସହିତରେ ଶରୀରରୁ ବାହାରି ଯାଉଛି । କିନ୍ତୁ ତଳିଆ ଶ୍ରେଣୀ ଲୋକମାନେ ଯେଉଁ ଧରଣର ଖାଦ୍ୟ ଖାଉଛନ୍ତି ସେଥିରେ ଯେତିକି ଖାଦ୍ୟସାର ଅଛି ସେ ସବୁ ତାଙ୍କ ଶରୀରରେ ମିଶୁଛି । କାରଣ ସେମାନେ ଆମଠୁ କଠିଣ ପରିଶ୍ରମ କରୁଛନ୍ତି । ମୋଟା ମୋଟି କହିବାକୁ ଗଲେ ଯେ ବ୍ୟାୟାମ କରିବ ତା'ର ସାଧାରଣ ଖାଦ୍ୟରେ ମଧ୍ୟ ଶାରିରୀକ ଉନ୍ନତି ଘଟିବ । ଏଣୁ ମୋର ମନଟା ଆଉ ପୁଷ୍ଟିକର ଖାଦ୍ୟ ପାଇଁ ବିଶେଷ ଆନ୍ଦୋଳିତ ହେଲା ନାହିଁ । ଯା ଖାଉଛି ସେଇ ଯଥେଷ୍ଟ । କିନ୍ତୁ ଖାଇବା କ୍ରମଶଃ ଏତେ ବଢ଼ିଗଲା ଯେ ଅନ୍ୟ ଲୋକଙ୍କ ସାମନାରେ ଖାଇବାକୁ ସରମ ବୋଧ ହେଲା । ମୁଁ ଯେଉଁ ପରିମାଣ ଭାତ ଖାଇଲି ତାକୁ ତିନୋଟି ଲୋକ ଖାଇବେ । ଡ଼ାଲି, ତରକାରୀ ମୁଁ ଜଗି ରଖି ଖାଏ । ଡାଲି, ତରକାରୀକୁ ଜଗି ରଖି ଖାଇବା ଏ ବିଷୟରେ ବାବା ମୋତେ ଅନେକବାର ସାବଧାନ କରେଇଛନ୍ତି । ବାବାଙ୍କ ଉପଦେଶ ହେଲା ତୁ ଯା ଘରେ ଖାଇବାକୁ ଯିବୁ ତୁ ଯେତେ ଭାତ ଖାଇବୁ ସେ ଦେଇପାରେ କିନ୍ତୁ ତୁ ଯଦି

ଭାତ ଅଳ୍ପ ଖାଇବୁ ଆଉ ତରକାରୀ ଗୁରାଏ ଖାଇବୁ ବିଶେଷତଃ ସୁଆଦିଆ ତରକାରୀକୁ ଆଗେ ଚାଟି ସଫା କରିଦେବୁ ସେ କୁଆଡୁ ଯୋଗେଇ ପାରିବ? ତରକାରୀକୁ ଲଗେଇ ଖାଇବା ଦରକାର।

ବାବାଙ୍କର ଏ ଉପଦେଶକୁ ମାନି ମୁଁ ତରକାରୀ ଅଳ୍ପ ଖାଇବା ମୋର ଅଭ୍ୟାସରେ ପଡ଼ି ଯାଇଥିଲା। ବାବା ଆହୁରି ଗୋଟାଏ ଉପଦେଶ ଦିଅନ୍ତି ଖାଇବାକୁ ବସି ପତରରେ ଭାତ, ଡାଲି, ତରକାରୀ ଯା କିଛି ହଉ କିଛି ନଷ୍ଟ କରିବାର ନୁହେଁ। ଅଳ୍ପ ଅଳ୍ପ ପତରରେ ନଷ୍ଟ କରି ଯେଉଁଦିନ ଗୋଟିଏ ଲୋକର ଆହାରର ପରିମାଣ ତୁ ନଷ୍ଟ କରିବୁ, ତାପରେ ଯେମିତି ହେଲେ ତୁ ଦିନେ ଉପାସ ରହିବୁ।

ବାବାଙ୍କର ଏ କଥାକୁ ମାନି ମୁଁ ଆଜି ପର୍ଯ୍ୟନ୍ତ ଖାଇ ବସି ପତରରେ କେବେ କିଛି ନଷ୍ଟ କରେନା। ଯେଉଁଦିନ ପତରରେ ବାଧ ହେଇ କିଛି ନଷ୍ଟ କରେ ସେଦିନ ମୋତେ ଭାରି ଅଶାନ୍ତି ବୋଧ ହୁଏ।

ମୋର ମାଂସ ଖାଇବା କଥା ଏଇଠି କହି ରଖେ, ମେଡ଼ିକାଲରେ ପଢ଼ିବା ଭିତରେ ପ୍ରଥମ ବର୍ଷରୁ ସାଙ୍ଗସାଥୀଙ୍କ ପାଖକୁ ଯିବା ଆସିବା ଦ୍ୱାରା ମେଡ଼ିକାଲ ହଷ୍ଟେଲକୁ ପ୍ରାୟ ଗଲି। ମେଡ଼ିକାଲ ହଷ୍ଟେଲର ପ୍ରତ୍ୟେକ ମେସ୍‌ରେ ଅନ୍ୟାନ୍ୟ ତରକାରୀ ଅପେକ୍ଷା ମାଂସ ତରକାରୀ ଅତି ଚମତ୍କାର ଭାବରେ ରନ୍ଧା ହଉଥିଲା। ମାଂସ ତରକାରୀ ବାସନାରେ ସାରା ହଷ୍ଟେଲ ମହକି ଉଠୁଥିଲା। ମୁଁ ଏଇ ମାଂସ ତରକାରୀ ବାସନାରେ ମାଂସ ଖାଇବା ପାଇଁ ବିଶେଷ ଆକୃଷ୍ଟ ହେଲି। ମନେ ମନେ ଭାବି ସ୍ଥିର କଲି ମାଂସ ଖାଇବି କିନ୍ତୁ ପୁଣି ଭାବିଲି ବାପ, ଅଜାଙ୍କ ଅମଳରୁ ତ ଆମ ପରିବାରରେ ତ କେହି ମାଂସ ଖାଇ ନାହାନ୍ତି। ମୁଁ କେମିତି ଖାଇବି? ପୁଣି ଭାବିଲି ଆମ ପରିବାରରେ ତ ସମସ୍ତଙ୍କର (କେବଳ ବିଧବା ସ୍ତ୍ରୀ ଲୋକଙ୍କୁ ଛାଡ଼ି) ପ୍ରଚୁର ମାଛ ଖାଇବାର ଅଭ୍ୟାସ। ଏଣୁ କେହିତ ନିରାମିଷାସୀ ନୁହନ୍ତି। ତାହେଲେ ମାଂସ ଖାଇବାରେ ବାଧା କଣ? କୌଣସି ଧର୍ମସମ୍ବନ୍ଧୀୟ କାରଣ ଯୋଗୁଁ ତ ମାଂସ ଖାଉ ନାହାନ୍ତି। କେବଳ ମାଂସ ନଖାଇବା ଏମିତି ଗୋଟିଏ ବାରଣରେ ପଡ଼ି ଯାଇଛି। ମୋର ମନ ଡାକୁଛି ଖାଇବା ପାଇଁ। ମୋର ଘୃଣା ନାହିଁ। ମାଂସ ତ କିଛି ମନ୍ଦ ଖାଦ୍ୟ ନୁହେଁ। ଏଣୁ ଦୃଢ଼ ଭାବରେ ମନରେ ସ୍ଥିର କଲି ମାଂସ ଖାଇବି। ପୁଣି ଭାବିଲି ବାବା, ମା'ଙ୍କୁ ନ ଜଣେଇ ଖାଇବି? ପୁଣି ଭାବିଲି ଜଣେଇଲେ ତ ବାଧା ଦେବେ। ତା'ହେଲେ ଖାଇବି କିମିତି? ପୁଣି ଭାବିଲି ବଡ଼ ଭିଣେଇ ତ ବହୁତ ଚେଷ୍ଟା କରିଛନ୍ତି ମୋତେ ମାଂସ ଖୋଇବା ପାଇଁ, ଖାଇ ନାହିଁ। କାରଣ ବାବା, ମା'ଙ୍କର ବାଧା, ବଂଶର ପରମ୍ପରାକୁ ମାନି ଆଉ ମୋତେ ମଧ୍ୟ ଘୃଣା ଲାଗୁଥିଲା। ବର୍ତ୍ତମାନ ମାଂସ ଖାଇବାର ଉପାଦେୟତା ବୁଝିଲିଣି। ଏହା ବିଶେଷ ପୁଷ୍ଟିକର ଖାଦ୍ୟ। ଆମେ ତ ବର୍ତ୍ତମାନ ବିଶେଷ ପୁଷ୍ଟିକର ଖାଦ୍ୟ ପାଉନାହୁଁ। ଦୁଧ, ଘିଅ ଖାଇବାତ ପ୍ରାୟ ବନ୍ଦ। ଏଣୁ ତା'ବଦଳରେ ମାଂସ ଖାଇଲେ ଦୋଷ କଣ?

ପୁଣି ମୋତେ ବର୍ତ୍ତମାନ ମାଂସ ଖାଇବାକୁ ମନ ଡାକୁଛି। ଘୃଣା ଲାଗୁ ନାହିଁ। ଏଣୁ ସ୍ଥିର କଲି ବାବା, ମା'ଙ୍କୁ ନ ଜଣେଇ ଥରେ ଖାଏ। ଯଦି ଭଲ ନଲାଗେ ଆଉ ଖାଇବି ନାହିଁ। ଆଉ ଯଦି ଭଲ ଲାଗିଲା ତା'ପରେ ବାବା, ମା'ଙ୍କୁ ବୁଝେଇ କହି ପ୍ରକାଶ୍ୟ ଭାବରେ ଖାଇବି। ଯେଉଁ ଘରେ ଏତେ ବାରଣ ଥିଲା, ସେ ଘରେ ତ ମୁର୍ଦ୍ଦାର କାଟି ଘରେ ପଶିଲି। ମଣିଷ ମୁଣ୍ଡ ଖପୁରି, ପଞ୍ଜରା ହାଡ଼, ହାତଗୋଡ଼ର ହାଡ଼ ସବୁ ଶେଯ ଉପରେ ଥୋଇ ପଢ଼ିଲି। ଆଉ ମାଂସ ଖାଇଲେ ବିଶେଷ କଣ କ୍ଷତି ହେଇ ଯିବ? ଏମିତି କେତେଦିନ ଯାଏ ମନ ଭିତରେ ମାଂସ ଖାଇବା ସପକ୍ଷରେ ବିପକ୍ଷରେ ଆନ୍ଦୋଳନ ଚାଲିଲା। କିନ୍ତୁ ଶେଷରେ ସ୍ଥିର କଲି ଦିନଟାଏ ଖାଇ ଦେଖେ କେମିତି ଲାଗୁଛି? ସେତେବେଳେ ମେଡ଼ିକାଲରେ ମୋର 2nd year class ଆରମ୍ଭ। ବାବା, ମା ପୁରୀ ଯାଇଥାନ୍ତି ବଡ଼ ଭଉଣୀଙ୍କ ପାଖକୁ। ମୁଁ ମେଡ଼ିକାଲ ହଷ୍ଟେଲରେ ବାଲେଶ୍ୱର ମେସ୍‌ରେ ମୋର ସହପାଠୀ ଶଚୀକାନ୍ତ ପଣ୍ଡା ଜରିଆରେ ଖାଉଥାଏ। ଦିନେ ଶଚୀ ପଣ୍ଡାକୁ କହିଲି ମୁଁ ଆଜି ମାଂସ ଖାଇବି। ଶଚି ପଣ୍ଡା କହିଲା ତୁ ପରା ମାଂସ ଖାଉନା? ଆଜି କେମିତି ମାଂସ ଖାଇବୁ? ମୁଁ କହିଲି ଦିନଟାଏ ଖାଇବି। ମାଂସ ତରକାରୀର ବାସନା ଯୋଗୁଁ ହିଁ ମୋର ବେଶି ମନ

ଡ଼ାକୁଛି ଖାଇବା ପାଇଁ । ଶଚି ପଣ୍ଡା କହିଲା ହଉ ଖା, ମୁଁ ଆଜି ଭାଇନାକୁ କହିଦେବି ।

ସେଦିନ ରାତି ବେଳା ମୁଁ ମେଡ଼ିକାଲ ମେସ୍‌ରେ ଖାଇ ବସିଲି । ଭାତ, ଡାଲି ଅନ୍ୟାନ୍ୟ ତରକାରୀ ସହିତରେ ମାଂସ ତରକାରୀ ଡାଟିଆଏ ପାଖରେ ଥୁଆ ହେଲା । ଯେମିତି ତରକାରୀର ରୂପ ସେମିତି ବାସନା, କଣ କରିବି ? ମାଂସ ଖାଇବି ? ପୁଣି ମନ ଭିତରେ ଆଗପଛ ହେଲି, ବାପ, ଅଜା ଅମଳରୁ ଆମ ପରିବାରରେ ମାଂସ କେହି ଖାଇ ନାହାନ୍ତି । ମୁଁ ଆଜି ଖାଇବି ? ସାଙ୍ଗସାଥୀ ମିଶି feast କଲେ ମୋତେ ମାଂସ ଖୋଇବାକୁ ଅନେକ ଚେଷ୍ଟା କରିଛନ୍ତି, ଖାଇ ନାହିଁ । ତାଳଚେର ଖେଳିବାକୁ ଯାଇ ସେଠି ମଧ୍ୟ ଭୁଲରେ ମୋତେ ମାଂସ ତରକାରୀ ଦିଆଯାଇଥିଲା ତାକୁ ଫେରେଇ ଦେଇଥିଲି । ଆଜି ଖାଇବି ? ପିଲାବେଳେ ବକ୍ସିବଜାର market କୁ ଗଲେ ଯେଉଁ ପାଖରେ ମାଂସ ବିକ୍ରି ହୁଏ ସିଆଡ଼ିକୁ ଅନେଇବାକୁ ଇଚ୍ଛା ହୁଏନା । ଭୁଲରେ ଯଦି ଅନେଇ ଦେଇଛି ଭାରି ଘୃଣା ଲାଗୁଥିଲା । ଏ ତ ଗଲା ପିଲାବେଳର କଥା । ଏବେ ତ ମେଡ଼ିକାଲ୍‌ରେ anatomy marketରେ ନିଜେ ମୁର୍ଦ୍ଦାର କାଟୁଛି । କିଛି ଘୃଣା ଲାଗୁ ନାହିଁ । ପୁଣି ମାଂସ ତରକାରୀ ଡାଟିଆଏ ପାଖରେ ଥୁଆ ହେଇଛି । କଣ କରିବି ? ଶଚି ପଣ୍ଡା ପାଖରେ ବସି ଖାଉଥାଏ । ଅନ୍ୟାନ୍ୟ ପିଲାଏ ଖାଉଥାନ୍ତି । ଶଚି ପଣ୍ଡା କହିଲା, କିରେ ମାଂସ ଖାଇବୁ କହିଲୁ ଖାଉନୁ । ନଷ୍ଟ କରିବୁ ନା କଣ ? ଖା ।

ମୁଁ ମାଂସ ଡାଟିଆରେ ହାତ ବୁଡ଼େଇ ଖଣ୍ଡିଏ ମାଂସ ଆଣି ପାଟିରେ ଦେଲି, ଝୋଳରୁ ହାପୁଡ଼ାଏ ଦେଲି ଆଉ ଯିବି କୁଆଡ଼େ ? କି ସୁଆଦ ! ! କିନ୍ତୁ ସୁଆଦ ଯେମିତି ଲାଗିଲା ମନରେ ଗୋଟାଏ କେମିତି ଅଯଥା ଭୟ ଜାତ ହେଲା, କଣ କଲି ? ମାଂସ ଖାଇଲି ପୁଣି ବାବା, ମା'ଙ୍କ ଅଗୋଚରରେ । ଦିହରୁ ଗୋଟାଏ ଝାଳ ଭାସି ଗଲା । ପୁଣି ଭାବିଲି ଖାଇଲିଣି ତ ଆଉ ଦ୍ୱିଧା କାହିଁକି ? ତା'ପରେ ଖାଇଲି, ମାଂସରୁ ଖଣ୍ଡେ ଝୋଳରୁ ହାପୁଡ଼ାଏ, ଆହୁରି ହାପୁଡ଼ାଏ, ଭାତ ଗୁଣ୍ଡାଗୁଡ଼ାକ high jump, long jump କରି ପାଟି ଭିତରୁ ପେଟକୁ ଚାଲିଗଲା । ମାଂସ ତରକାରୀ ସୁଆଦ ତୁଳନାରେ ତ ମାଛ ତରକାରୀର ସୁଆଦ କିଛି ନୁହେଁ । ତଥାପି ମାଛକୁ ଯେତେ ପ୍ରକାର ତରକାରୀ କରି ହବ ମାଂସକୁ ସେତେ ପ୍ରକାର କରି ହବ ନାହିଁ । ସେଦିନ ମାଂସ ଭାତ ଖାଇ ଉଠିଲି । ଅଣ୍ଡା କେମିତି ଖାଇଲି ପରେ ଲେଖିବି ।

Third year ରେ ପାଠ ପଢ଼ା ସହିତରେ foot-ball ଖେଳ, barbell exercise ଇତ୍ୟାଦି ସବୁ ଚାଲିଥାଏ । କିନ୍ତୁ ଲେଖାଲେଖି ମେଡ଼ିକାଲରେ ପଢ଼ିବା ଦିନଠୁଁ ବନ୍ଦ କରି ଦେଇଥାଏ । ତା'ର କାରଣ ହଉଛି ବାବା ଅନେକବାର କହିବାର ମୁଁ ଶୁଣିଛି ପାଠପଢ଼ା ପିଲା ଯଦି ଲେଖା ଲେଖିରେ ମନ ଦବ ତା'ର ପାଠ ପଢ଼ା ହବ ନାହିଁ ।

ବାବାଙ୍କର ଏଇ କଥା ମୋ ମନରେ ଏଣିକି ବିଶେଷ ପ୍ରଭାବ ପକେଇଲା । ମୁଁ ଭାବିଲି ତଳ କ୍ଲାସରେ ପଢ଼ିବା ବେଳୁ ମୁଁ ତ ଲେଖାଲେଖିରେ ମନ ଦେଇଛି । ପ୍ରକୃତରେ ପାଠ ପଢ଼ାରେ ଅନେକ ବାଧା ସୃଷ୍ଟି ହଉଛି । ଅନେକ ଘାତପ୍ରତିଘାତର ସମ୍ମୁଖୀନ ହବାକୁ ପଡୁଛି । ଦେଖେ, ମେଡ଼ିକାଲରେ ଯେତେଦିନ ପଢ଼ିବି, ଆଉ ଲେଖାଲେଖି କରିବି ନାହିଁ । ମେଡ଼ିକାଲ୍‌ରୁ ପାସ୍ କରି ବାହାରିଲେ ପୁଣି ଲେଖାଲେଖିରେ ଲାଗିବି । ଏଣୁ ଲେଖାଲେଖି ବନ୍ଦ କରିଦେଲି ।

ମେଡ଼ିକାଲରେ third year ରେ ପଢ଼ିବା ବର୍ଷ ମୁଁ ନିଜେ ଯାଇ ସାନଭଉଣୀକୁ ତା'ର ଶାଶୁ ଘରୁ ନେଇ ଆସିଲି । ତା'ର କାରଣ ହେଲା ସାନଭଉଣୀର ସାବତ ଶାଶୁ ସାନ ଭଉଣୀକୁ ଅନେକ ରକମ ହଇରାଣ କଲେ । ଇମିତି କି ଆମେ ସାନ ଭଉଣୀର ସକାଳ, ସନ୍ଧ୍ୟା ଜଳଖିଆ ଖାଇବା ବାବଦରେ ଟଙ୍କା ପଠେଇଲେ ମଧ୍ୟ ତାକୁ ଜଳଖିଆ ଖାଇବାକୁ ଦେଲେ ନାହିଁ । ତାକୁ ଚିଠିପତ୍ର ଲେଖିବାକୁ ଦେଲେ ନାହିଁ । ସାନଭଉଣୀର ତ ବିବାହ ହବା ପୂର୍ବରୁ ସେ ଗୋଟାଏ ରୋଗରେ ଆକ୍ରାନ୍ତ ହେଇଥିଲା ସେ କଥା ଏଥି ପୂର୍ବେ ଲେଖିଛି ।

ରୋଗର ଲକ୍ଷଣ ହେଲା, ଛାତି ଧଡ଼ପଡ଼ ହବା, ଦେହ ଥରିବା । ମୁହଁ ନେଳି ପଡ଼ିଯିବା । ରାତିରେ ନିଦ

ନହବା । ଦେହ ହାତ ଥରିବା ଇତ୍ୟାଦି । ଆମେ ଏ ସବୁ ଖବର ପାଉଥାଉ । ବାବା ଯାଇଥିଲେ ସାନ ଭଉଣୀକୁ ତା'ଶାଶୂ ଘରେ ଦେଖି ଆସିଲେ । ସାନ ଭଉଣୀ ବାବାଙ୍କୁ କହିଲା ମୋତେ ଏଠୁ ନେଇଯାଅ । ବାବା ଫେରି ଆସି ଘରେ ସବୁ କଥା କହିବାରୁ ମୋ ମନ ଥୟ ହେଲା ନାହିଁ । ଭାବିଲି ସାନଭଉଣୀକୁ ହଇରାଣ କରୁଛନ୍ତି, କାହିଁକି ? ମୁଁ ନିଜେ ଯିବି ସାନ ଭଉଣୀକୁ ଥରେ ଦେଖି ଆସିବି । ଇମିତି ଭାବି ସ୍ଥିର କରିଛି ଥରେ ଯିବି କିନ୍ତୁ ସେହିଦିନ ସନ୍ଧ୍ୟା ବେଳକୁ ଗୋଟାଏ ଫିଲ୍ମ 'ହଳମୁକ' ସିନେମା ଘରେ ଦେଖିବାକୁ ଗଲି । ସେ ଫିଲ୍ମ ନାଁ ମୋର ମନେ ପଡୁନାହିଁ । ବଙ୍ଗଳା ଫିଲ୍ମ । ସେ ଫିଲ୍ମରେ ଯେତେବେଳେ ଦେଖିଲି ଗୋଟିଏ ଘରର ବୋହୂ, ଶାଶୁ, ଶଶୁର, ନଣନ୍ଦ ଏମାନଙ୍କ ଦ୍ୱାରା ଉତ୍ପୀଡିତା ହୋଇ ତା'କୁ ଦେଖିବାକୁ ଆସିଥିବା ତା'ର ଭାଇକୁ ଗୋପନରେ କହୁଛି, ମୋତେ ଏଠୁ ନେଇଯାଅ । ଏ ଘଟଣା ଦେଖି ମୋର ଶ୍ୱାସରୋଧ ହେଇଗଲା । ରାଗରେ ଦେହ ଥରିଲା । ମୋର ସାନଭଉଣୀ କଥା ମନେ ପଡ଼ିଲା । ସେ ବି ହଇରାଣ ହଉଛି ଶାଶୁ ଘରେ । ସେଦିନ ସିନେମାରୁ ଫେରି ଘରେ ଖାଇସାରି ବାହାରିଲି ସାନ ଭଉଣୀର ଶାଶୁ ଘରକୁ । ପାଖରେ ଦେଢ଼ଟଙ୍କା ମାତ୍ର ଥାଏ । ବାବା, ମା ଯେତେ ଅଟକେଇଲେ କିଛି ମାନିଲି ନାହିଁ । ବାବା, ମା ଭୟ କରୁଥାନ୍ତି । ମୁଁ ସେଠିକି ଯିବା ଅର୍ଥ କିଛି ଗୋଟାଏ ଗଣ୍ଡଗୋଳ କରି ବସିବି । ବାବା, ମା ଯେତେ ମନାକଲେ ମାନିଲି ନାହିଁ ।

ଘରୁ ବାହାରି ଷ୍ଟେସନ୍‌କୁ ଚାଲିଲି । କାରଣ ସାନଭଉଣୀର ଶାଶୁ ଘରକୁ ଯିବାକୁ ହେଲେ କଟକ ଷ୍ଟେସନ୍‌ରେ ଟ୍ରେନରେ ବସି ହରିଦାସପୁର ଷ୍ଟେସନ୍‌ରେ ଓହ୍ଲେଇ ସେଠୁ ଚାଲି ଚାଲି କିମ୍ୱା ଶଗଡ଼ରେ ବରୁଆ ପୁରୁଷୋତମପୁରକୁ ଯିବାକୁ ହୁଏ । ମୁଁ ସ୍ଥିର କରିଥିଲି ହରିଦାସପୁରରେ ଓହ୍ଲେଇ ନିଶବ୍ଦ ରାତି ହେଲେ ମଧ ଚାଲି ଚାଲି ପଳେଇବି । ଶଗଡ଼ରେ ଯିବାର ତ ଉପାୟ ନାହିଁ । କାରଣ ପାଖରେ ମାତ୍ର ଦେଢ଼ଟଙ୍କା ଥାଏ । କଟକରୁ ହରିଦାସପୁରକୁ ଯିବା ପାଇଁ ଟ୍ରେନର ଯେଉଁ ଡବାରେ ଉଠିଲି ସେ ଡବାରେ ମୁଁ ଏବଂ ଆଉ ଜଣେ । ସେ ଜଣକ ହେଲା ଜଣେ ବଙ୍ଗାଳୀ ବ୍ରାହ୍ମଣ ଯୁବକ । ମୋରି ସାନଭଉଣୀ ଗାଁର ଲୋକ । ମୋର ସାନ ଭିଣେଇର ସାଙ୍ଗ । ଏ ଯେତେବେଳେ କଟକ ଆସନ୍ତି ଆମ ବସାରେ ରହି ଖାଇପିଇ ଯାନ୍ତି । ଏ ଥରେ ଆସି ଆମ ବସାରେ ଚାରିଦିନ ପ୍ରାୟ ରହି ପୁଣି ବାପକୁ ଆଣି ପହଁଚେଇ ଥିଲେ । ବାପ ଦଶବାରଦିନ ରହିବେ, ତାଙ୍କର କଣ ଚିକିତ୍ସା ହବ । ଆମେ ବାପକୁ ଦଶବାର ଦିନ ଆମ ବସାରେ ରଖିବାକୁ ନାରାଜ ହେଲୁ । ଏଣୁ ରାଗରେ ଏ ବ୍ରାହ୍ମଣ ଯୁବକ ତା'ର ବାପକୁ ଆମ ଘରୁ ନେଇଯାଇ ତାଙ୍କ ଗାଁରେ ମୋର ସାନଭଉଣୀ ଶାଶୁ ଘରେ ଆମ ବିରୁଦ୍ଧରେ ଅନେକ ଖଚ, ଚୁଗୁଲି କରିବା ଦ୍ୱାରା ଆମ ଘର ଆଉ ସାନ ଭଉଣୀର ଶାଶୁ ଘର ମଧ୍ୟରେ ତିକ୍ତତା ଆହୁରି ଉତ୍କଟ ହେଇଥାଏ । ଏ ବ୍ରାହ୍ମଣ ଯୁବକ ଏତକ କଳାପରେ ଆଉ ଆମ ବସାକୁ ଆସିଲେ ନାହିଁ । ଲୁଚିଲେ । ଦୈବାତ୍ ସେଦିନ ରାତିରେ ଟ୍ରେନ ଡ଼ବା ଭିତରେ ସେ ମୋର ହାବୁଡ଼େ ପଡ଼ିଲେ । ତାଙ୍କୁ ସବୁ କଥା ପଚାରିଲି ।

ସେ ଆମ ବିରୁଦ୍ଧରେ କହି ନାହାନ୍ତି ବୋଲି କହିଲେ । ସେ ଯା ହଉ ତାଙ୍କୁ ଅନେକ ଗାଳିଗୁଲଜ କଲି । ବାଡ଼େଇବି ବୋଲି ଧମକ ଦେଲି । ସେ ସେତିକିରେ ଥଣ୍ଡା ହେଇ ବସିଲେ । ଏଇ ବଙ୍ଗାଳୀ ବ୍ରାହ୍ମଣ ଯୁବକ ସାନ ଭିଣେଇର ସାଙ୍ଗ ବୋଲି ଏ ଯେତେବେଳେ ପ୍ରଥମେ ଡାକତାର ବିଭାଗରେ ଚାକିରି ପାଆନ୍ତି, ଆମ ବସାରେ ଆସି ଥିଲେ । ୟାଙ୍କର physical fitness certificate ପାଇଁ ମୁଁ ୟାଙ୍କୁ ସାଇକେଲ୍ ପଛରେ ବସେଇ ମୋତେ ଅନେକ ଦୌଡ଼ାଦୌଡ଼ି କରିବାକୁ ପଡ଼ିଥିଲା । ସେତେବେଳେ ଆମ ପ୍ରତି କେତେ କୃତଜ୍ଞତା ଜଣଉଥିଲେ । ସେ ବେଳ ଆଉ ନାହିଁ । ସେ ଯା ହଉ ସେଦିନ ରାତ୍ରି ଟ୍ରେନ ଡବା ଭିତରେ ମୁଁ ତାଙ୍କୁ ବାଡ଼େଇବାର ଧମକ ଦେଲା ପରେ ତାଙ୍କର ମୋର ଚିରକାଳ ପାଇଁ କଥାବାର୍ତ୍ତ ବନ୍ଦ ହେଲା ।

ନିଃଶବ୍ଦ ରାତି, ଜହ୍ନ ପଡ଼ିଥାଏ । ହରିଦାସପୁର ଷ୍ଟେସନ୍‌ରେ ଓହ୍ଲେଇ ଦେଖେ ଶଗଡ଼ କେତେକ ରହିଛି । । ମୋରି ପରି କେତେକ ଯାତ୍ରୀ ଖଣ୍ଡେ ଖଣ୍ଡେ ଶଗଡ଼ ଭଡ଼ା କରି ଷ୍ଟେସନ ଛାଡ଼ି ଚାଲିଗଲେ । ମୁଁ ଚେଷ୍ଟା କରୁଥାଏ

ଯଦି ଶଗଡ଼ ଖଣ୍ଡେ ମିଳନ୍ତା ତାହେଲେ ଶଗଡ଼ରେ ଚାଲିଯାନ୍ତି । କିନ୍ତୁ କିଛି ମିଳିଲା ନାହିଁ । ଜଣେ ଭଦ୍ରଲୋକ ଖଣ୍ଡେ ଶଗଡ଼ ଭଡ଼ା କରି ଯାଉଥିଲେ ସେ ମୋତେ ଡ଼ାକିଲେ ଆସନ୍ତୁ ମୋ ଶଗଡ଼ରେ ଯିବେ । ମୁଁ ତ ଖଣ୍ଡେ ଶଗଡ଼ ଭଡ଼ା କରି ଯାଉଛି । ଭଦ୍ରଲୋକ ବରୁଆଁ ପୁରୁଷୋତ୍ତମପୁର ଯିବେ, ଭଲ ହେଲା । କାଣି ବିଲେଇ କପାଳକୁ ଶିକା ଛିଡ଼ିଲା । ହାତରେ ତ ପଇସା ନଥାଏ ମୁଁ ତାଙ୍କ ଶଗଡ଼ରେ ବସିଲି । ଜୋଡା ହଳକ ଶଗଡ଼ ତାଟରେ ଗୁଞ୍ଜିଦେଲି ।

ମୁଁ ସାମନାକୁ ବସିଲି । ଭଦ୍ରଲୋକ ମୋ ପଛକୁ ବସିଥାନ୍ତି । ଶଗଡ଼ ଚାଲିଥାଏ । ଅଳ୍ପ କିଛି ବାଟ ଆସିଲା ପରେ ଶଗଡ଼ିଆ କହିଲା ମୁଁ ଜଣକୁ ନେବି ବୋଲି ଭଡ଼ା ଛିଡ଼େଇ ଥିଲି, ଦି'ଜଣ କାହିଁକି ବସିଲେ? ମୁଁ ଏକଥା ଶୁଣି ଶଗଡ଼ିଆକୁ କହିଲି ଯଦି ତୋର ଜଣକୁ ଆଣିବାର ଇଚ୍ଛାଥିଲା, ସେ କଥା ଷ୍ଟେସନ ପାଖରେ କହିଲୁ ନାହିଁ? ଏତେ ବାଟ ଆଣିଲା ପରେ କହୁଛୁ । ଶଗଡ଼ ସବୁ ତ ଚାଲିଗଲା ମୁଁ ଅଭିକା ଯିବି କେମିତି? ଯଦି ଭଲ ଚାହୁଁ ନେଇ ଚାଲ ନୁହେଁ ତ ଶଗଡ଼ ତାଟରୁ ଯୁଣ କାଢ଼ିବି । ଶଗଡ଼ିଆ ମୋ ମୁହଁରୁ ଏତକ ଧମକ ଶୁଣି ଆଉ କିଛି ନ କହି ଭଲରେ ଶଗଡ଼ ନେଇ ଚାଲିଲା । ରାତି ପାହିଲା ବେଳକୁ ବ୍ରାହ୍ମଣୀ ନଈ କୂଳରେ ପହଞ୍ଚିଲେ, ଶଗଡ଼ ରହିଲା । ସେ ଭଦ୍ରଲୋକ ତାଙ୍କ ନିତ୍ୟକର୍ମ ସାରିବାକୁ କୁଆଡ଼େ ଗଲେ । ମୁଁ ଆଉ ଅପେକ୍ଷା ନକରି ବରୁଁଆ ପୁରୁଷୋତ୍ତମପୁର ବାଟ ଧରି ଚାଲିଲି । ବ୍ରାହ୍ମଣୀ ନଈରେ ସେଠି ସାମାନ୍ୟ ପାଣିଥାଏ । ମୁଁ ସେଥିରେ ପଶି ବାହାରି ଗଲି । ସାନ ଭଉଣୀର ଶଶୁର ଘରେ ପହଞ୍ଚିଲି । ସାନଭଉଣୀକୁ ଦେଖିଲି କଥାବାର୍ତ୍ତା କଲି । ମୋତେ ସାନଭଉଣୀ ଶଶୁର ଘରେ ଖାଇବା ପାଇଁ ଅଟକେଇଲେ । ମୁଁ ରାଗରେ ସେଠି ଖାଇଲି ନାହିଁ । ମୋର ସାନ ଅଜା ଗୋପୀବଲ୍ଲଭ ରାୟଙ୍କ ନିକଟକୁ ବାହାରିଗଲି । ସେ ମୋତେ ଦେଖି ଆନନ୍ଦରେ ଉତ୍‌ଫୁଲ୍ଲ ହେଇ ଉଠିଲେ । ସାନ ଆଈଙ୍କୁ ଦେଖିଲି । ତାଙ୍କର ଦୁଇ ଆଖି ଅନ୍ଧ । ତାଙ୍କ ସହିତରେ କଥାବାର୍ତ୍ତା କଲି ।

ସେଇଠି ମୋ ଅଜା ମୋତେ ଖାଇବା ପାଇଁ କହିଲେ, ମୁଁ ସେଇଠି ଖାଇଲି । ସେଠି ଖାଇସାରି ସାହି ସାହି ବୁଲି ଆମର ଯେତେ ସମ୍ପର୍କୀୟ ବନ୍ଧୁବାନ୍ଧବ ସମସ୍ତଙ୍କ ସହିତରେ ଦେଖା କରି ପୁଣି ଭଉଣୀ ପାଖକୁ ଆସିଲି । ବରୁଆଁ ପୁରୁଷୋତ୍ତମପୁର ମୋର ଖୋଦ ମାମୁଁ ଘର ରାଇଜ । ସେଠି ଅନେକ ମାମୁଁ, ମାଇଁ, ମାଉସୀ, ମଉସାଙ୍କର ଘର । ଯେଉଁଠି ଗଲି ସେଠି ଆଦର ଯତ୍ନ । ମୁଁ ତ କେବେ ପିଲା ବେଳେ ମା'ଙ୍କ ସହିତରେ ବରୁଆଁ ଯାଇଥିଲି । ଦି'ବେଳା ଅଜା ପାଖରେ ଖାଇଲି । ଖାଇ ସାରିଲେ ସାନ ଅଜା ନିଜେ ଦିନରେ କଣ ରାତିରେ କଣ ଦି'ବେଳା ହାତରେ ଠେଙ୍ଗା ଖଣ୍ଡେ ଧରି ନିଜେ ଆସି ମୋତେ ଭଉଣୀର ଶଶୁର ଘରେ ଛାଡ଼ି ଦେଇ ଯାନ୍ତି । ଅଜା ଦୀର୍ଘକାୟ ଲୋକ, ଗୋଡ଼ରେ ଜୋତା ମୋଜା, ଦେହରେ ଲମ୍ବା କୋଟ, ପରିଧାନରେ ଧୋତି, ବେକରେ ମଫଲର । ମୁଣ୍ଡରେ ମଙ୍କି କ୍ୟାପ୍ । ଗାଁ ଭିତରେ ପ୍ରକାଣ୍ଡ ଲୋକ । ସମସ୍ତଙ୍କଠୁ ବୟସ୍କ, ମୁଣ୍ଡରେ ପାଚିଲା ବାଳ, ମୁହଁରେ ଅଳ୍ପ ଅଳ୍ପ ପାଚିଲା ଦାଢ଼ି । ଗାଁ ଭିତର ଦେଇ ଚାଲି ଆସିଲାବେଳେ ମାଟି ଦବି ଯିବା ଭଳି ଲାଗୁଥାଏ । ଚାଲିବାରୁ ମନେହବ ଶକ୍ତିଶାଳୀ ଲୋକ । ସେ ଯୁଗର I.A. ପାସ୍ । କଥାଏ କଥାଏ ଇଂରେଜୀ ଶବ୍ଦ । ଯାଙ୍କ ବିଷୟରେ ଏଥି ପୂର୍ବରୁ ଅନେକ କଥା ଲେଖିଛି । ଯାଙ୍କର ସବୁବେଳେ ମୋର ସାନଭଉଣୀର ଶଶୁରଙ୍କ ଉପରେ ଚଢ଼ଉ ଭାବ । ଦିହେଁ ବୁଢ଼ା, କିନ୍ତୁ ଏ ପର୍ଯ୍ୟନ୍ତ ମୋର ସାନ ଅଜାଙ୍କ ପାଖରେ ଭଉଣୀର ଶଶୁର କଥାବାର୍ତ୍ତା କଲାବେଳେ ଯେମିତି ପିଲା, ଅତି ନମ୍ର ଭାବାପନ୍ନ । ମୋର ମାମୁଁ ଘରର ଲୋକମାନଙ୍କର ସବୁବେଳେ ଚଢ଼ଉ କଥା । ମାଇପି ଯେମିତି ମରଦ ସେମିତି ।

ଅନେକ ସେ ଗାଁରେ ମୋର ମାମୁଁ ଘର ବଂଶକୁ ରାବଣ ବଂଶ ବୋଲି କହନ୍ତି । ସାନ ଭିଣେଇ ଘରେ ନଥାଏ । ସେ ଆସି କଟକରେ private candidate ଭାବରେ I.A. ପରୀକ୍ଷା ଦେବା ପାଇଁ ପ୍ରସ୍ତୁତ ହଉଥାଏ । ତେଣେ ଘରେ ସାନଭଉଣୀକୁ ଏକା ଛାଡ଼ି ଆସି କଟକରେ ବେଶ୍ ଆରାମରେ ପଢ଼ାପଢ଼ି କରୁଥାଏ । ସାନଭଉଣୀ ଶାଶୁ

ଘରେ ବଡ଼ ମନସ୍ତାପରେ ଦିନ କାଟୁଥାଏ । ଶାଶୁ ଘରେ ତା ସପକ୍ଷରେ ଜଣେ ହେଲେ କେହି ନଥାନ୍ତି । ସେତେବେଳେ ପୁଷମାସ କି କଣ ପଡ଼ିଥାଏ ମୋର ଠିକ୍ ମନେପଡୁ ନାହିଁ । ଯେଉଁ ମାସରେ କି କୌଣସି ବୋହୂ ଶାଶୁଘରୁ ଆସିପାରିବ ନାହିଁ । ଏଣୁ ସାନଭଉଣୀକୁ ସାଙ୍ଗେ ସାଙ୍ଗେ ଶାଶୁଘରୁ ଆଣିପାରିଲି ନାହିଁ । ଦିନେ ସନ୍ଧ୍ୟାପରେ ସାନଭଉଣୀର ଶଶୁରଙ୍କୁ କହିଲି, ଏ ମାସରେ ତ ଭଉଣୀର ଶାଶୁ ଘରୁ ଯିବାର ନୁହେଁ, ଏ ମାସଟା ଗଲେ ମୁଁ ଆସି ଭଉଣୀକୁ କିଛିଦିନ ପାଇଁ ନେଇଯିବି । ଶଶୁର କହିଲେ ମୁଁ ବର୍ତ୍ତମାନ ତାକୁ ବାପ ଘରକୁ ପଠେଇବି ନାହିଁ । ତୁମ ବିଭାବେଳକୁ ଯିବ । ମୁଁ ଉତ୍ତର ଦେଲି ମୁଁ ତ ବର୍ତ୍ତମାନ ପଢୁଛି କେବେ ବିଭା ହେବି ସେ ପର୍ଯ୍ୟନ୍ତ ସେ ଆଉ ଆମ ଘରକୁ ଯାଇ ପାରିବ ନାହିଁ? ଏତେଦିନ ଯାଏ ସେ ଏଠି ରହି ପାରିବ ନାହିଁ । ତାକୁ ଯେ ପଠେଇବେ ନାହିଁ କହୁଛନ୍ତି ସେ ତ ସବୁ ଦିଗରୁ ଏଠି ହଇରାଣ ହଉଛି । ତାଛଡ଼ା ତା'ର ରୋଗର ଚିକିତ୍ସା ହବା ଦରକାର (ସାନ ଭଉଣୀର ବିବାହ ପୂର୍ବରୁ ତା'ର ଯେଉଁ ରୋଗର ଲକ୍ଷଣ ଦେଖା ଦେଇଥିଲା ବିବାହ ପରେ ସେ ରୋଗ ଆହୁରି ବଢ଼ିବାରେ ଲାଗିଲା । ସାନଭଉଣୀର ଏ ରୋଗର ଲକ୍ଷଣ ମୁଁ ଏଥି ପୂର୍ବେ ବର୍ଣ୍ଣନା କରିଛି)

ଏଠିତ ସେ ରୋଗର ଚିକିତ୍ସା ପାଇଁ କୌଣସି ସୁବିଧା ନାହିଁ । କଟକ ନେଲେ ବରଂ ଚିକିତ୍ସାର ସୁବିଧା ହେବ । ଶଶୁର ମୋ କଥାର ଉତ୍ତର ଦବାକୁ ଯାଇ କହି ବସିଲେ ଏଠି ଚିକିତ୍ସାର ଯେତିକି ସୁବିଧା ଅଛି, କରିବି । ଯଦି ଭଲ ନହବ ମରିଗଲେ ଫୋପାଡ଼ି ଦେବି । ସାନଭଉଣୀର ଶଶୁରଙ୍କ ଏ ଧରଣର ଉତ୍ତର ଶୁଣି ମୋର ଗୋଡ଼ରୁ ମୁଣ୍ଡ ପର୍ଯ୍ୟନ୍ତ କମ୍ପି ଉଠିଲା । ମୁଁ ରାଗରେ କହି ଉଠିଲି କଣ କହିଲେ ଆପଣ? ମରିଗଲେ ଫୋପାଡ଼ି ଦେବେ? ମୋର ଭଉଣୀ ମରିଗଲେ ପୁଣି ଗୋଟାଏ ବୋହୂ ମିଳିପାରେ, ମୋତେ ଆଉ ଭଉଣୀ ମିଳିବ ନାହିଁ । ମୁଁ ଏତକ କହି ମନ ହେଲା ତାକୁ ପାହାରେ ପକେଇବି । କେଡ଼େ ଦମ୍ଭରେ କହୁଛନ୍ତି, ମରିଗଲେ ଫୋପାଡ଼ି ଦେବି । ମୁଁ ଶେଷକଥା ତାକୁ କହି ଆସିଲି । ଏ ମାସଟା ଯାଉ ଆର ମାସରେ ଆସି ମୋର ଭଉଣୀକୁ ନେଇଯିବି ।

ମୁଁ ତହିଁ ଆରଦିନ ସାନ ଭଉଣୀକୁ ବୁଝେଇ ଶୁଝେଇ କହିଲି, ମୁଁ ଆର ମାସରେ ଆସି ତୋତେ ନେଇଯିବି । ମୁଁ ତାଙ୍କ ଘରୁ ବିଦାୟ ନେଇ କଟକ ଫେରି ଆସି ବାବା, ମା'ଙ୍କୁ ସବୁକଥା କହିଲି । ଏ ମାସଟା ସରିଗଲେ ସାନଭଉଣୀକୁ ଯେମିତି ହେଲେ ନେଇ ଆସିବା ସ୍ଥିର ହେଲା ।

ଏଇ 4th year ରେ ପଢ଼ିବା ବର୍ଷ ଗୋଟାଏ ଦୁର୍ଘଟଣା ଘଟିଲା । ଦୁର୍ଘଟଣାଟା ହେଲା, ବଡ଼ ଭିଣେଇଙ୍କ ମୃତ୍ୟୁ । ବଡ଼ ଭଉଣୀଙ୍କ ମୃତ୍ୟୁର ଅଢ଼େଇ ବର୍ଷ ପରେ ବଡ଼ ଭିଣେଇଙ୍କ ମୃତ୍ୟୁ ହୁଏ । ବଡ଼ ଭିଣେଇଙ୍କର ଏକମାତ୍ର ପୁତ୍ର ସନ୍ତାନ ମୋର ଭଣଜା ସେତେବେଳେ ମେଡ଼ିକାଲରେ 2nd year ରେ ପଢୁଥାଏ ।

ସେ ମେଡ଼ିକାଲ ହଷ୍ଟେଲରେ ରହୁଥାଏ । ବଡ଼ଭିଣେଇ ଏବଂ ତାଙ୍କର ଗୋଟିଏ ଚାକର ସେମାନେ କଟକ କାଫଲା ବଜାରରେ ଘର ଭଡ଼ା ନେଇଥିଲେ । ବଡ଼ ଭିଣେଇ ଏବଂ ତାଙ୍କର ଚାକର ଥୋରିଆସାହିରେ ଆମରି ବସାରେ କେତେ ମାସ ରହିଥିଲେ କିନ୍ତୁ ମୃତ୍ୟୁର ଅଳ୍ପ କେତେ ମାସ ଆଗରୁ ଭଡ଼ାଘର ଯୋଗାଡ଼ କରି କାଫଲା ବଜାରରେ ରହୁଥିଲେ । ଦିନେ ସନ୍ଧ୍ୟା ବେଳେ football ଖେଳସାରି ଘରକୁ ଫେରିବା ବେଳକୁ ଶୁଣିଲି, ଭିଣେଇଙ୍କ ଦିହ ଭାରି ଅସୁସ୍ଥ । ଭଣଜା ambulance ନେଇ ଗଲାଣି । ତାଙ୍କୁ ଚିକିତ୍ସା ପାଇଁ medical କୁ ଆଣିବାକୁ ହେବ । ଏ ସମ୍ବାଦରେ ମୁଁ ବିଶେଷ ବିଚଳିତ ହୋଇଗଲି । ମୁଁ ସଙ୍ଗେ ସଙ୍ଗେ ଘରକୁ ଆସି ବାବାଙ୍କୁ ଏ ସମ୍ବାଦ ଦେଇ ପୁଣି ସାଇକେଲ୍‌ରେ medical କୁ ଚାଲିଗଲି । ମୁଁ ପହଞ୍ଚିବାର ଅଳ୍ପ ସମୟ ପରେ ଭଣଜା ambulance ରେ ଭିଣେଇଙ୍କୁ ନେଇ ଆସି ପହଞ୍ଚିଲା । ଭଣଜା ସେତେବେଳେ medicalର 2nd year ର ଛାତ୍ର । ଭଣଜାର ନାମ ଶ୍ରୀ ରବୀନ୍ଦ୍ର ନାଥ ଦାସ ।

ଭିଣେଇ ସଙ୍ଗେ ସଙ୍ଗେ medical ward ରେ ଭର୍ତ୍ତି ହେଲେ । ଭିଣେଇଙ୍କର ଅବସ୍ଥା ଅତି ସଙ୍କଟାପନ୍ନ ଦେଖି ମୁଁ ଦୁଃଖରେ ଭାଙ୍ଗି ପଡ଼ିଲି । ଭଉଣୀତ ଆଗରୁ ବିଦାୟ ନେଇଛନ୍ତି । ଭିଣେଇ ଯଦି ଏ ରୋଗରୁ ମୁକ୍ତ

ନପାଆନ୍ତି ତାହେଲେ ଭଣଜାର ଅବସ୍ଥା କଣ ହବ? ଏଇ ଚିନ୍ତାରେ ମୁଁ ମର୍ମାହତ ହେଲି।

ଭିଣେଇଙ୍କ ସାନ ଭାଇ ଶ୍ରୀ କେଦାରନାଥ ଦାସ ସେ ମଧ ଆସି ପହଞ୍ଚିଲେ। ଭିଣେଇଙ୍କର ରୋଗ ହେଲା ନ୍ୟୁମୋନିଆ। ସେତେବେଳେତ ଆଜି କାଲି ପରି pencillinର ଉଦ୍ଭାବନ ହେଇ ନଥିଲା। ସେତେବେଳେ ଜର୍ମାନର Bayers Company ର Prontocil ର ଭାରି ଖ୍ୟାତି ଥିଲା। ଯଦି କୌଣସି ଔଷଧ ଫଳପ୍ରଦ ନହେଲା ତାହେଲେ Prontocil ଫୋଡ଼। ସେ ଯଦି କାମ ନଦେଲା ତାହେଲେ ଆରପାରିକି ପେଡ଼ି ପୁଟୁଳା ଧରି ଯିବା ପାଇଁ ପ୍ରସ୍ତୁତ ହୁଅ। ଆଉ ଏ ପାରିରେ ରହିବାର ତିଳେ ସ୍ଥାନ ନାହିଁ। ସେଦିନ ରାତିରେ ଭିଣେଇଙ୍କ ଚିକିତ୍ସାର ସବୁ ବ୍ୟବସ୍ଥା ହେଲା ପରେ ମୁଁ ଘରକୁ ଫେରି ବାବା, ମା'ଙ୍କୁ ଖବର ଦେଲି ଯେ ଭିଣେଇଙ୍କର ଅବସ୍ଥା ଭାରି ଖରାପ।

ଭିଣେଇ ପ୍ରଥମ ଦିନ ଏବଂ ତହିଁ ପରଦିନ ଲୋକ ଚିହ୍ନି ପାରୁଥିଲେ। କିନ୍ତୁ ତାପରେ ତାଙ୍କର ଅବସ୍ଥା ଖରାପ ଆଡ଼କୁ ଗତି କଲା ଆଉ ଲୋକ ଚିହ୍ନି ପାରିଲେ ନାହିଁ କି କଥା କହି ପାରିଲେ ନାହିଁ। ବାଉଳା ବକିଲେ। ମୃତ୍ୟୁର ପୂର୍ବଦିନ ସନ୍ଧ୍ୟାବେଳେ ବାବା, ମା ଗଲେ ଭିଣେଇଙ୍କୁ ଦେଖିବା ପାଇଁ। ଭିଣେଇ ବାବା, ମା'ଙ୍କୁ ଅଳ୍ପ ଚିହ୍ନି ପାରିଲେ କିନ୍ତୁ ଭଲ ଭାବରେ କଥା କହି ପାରିଲେ ନାହିଁ। ବଡ଼ ଝିଅ ତ ଆଗରୁ ବାବା, ମା'ଙ୍କଠାରୁ ଚିରକାଳ ପାଇଁ ବିଦାୟ ନେଇ ଯାଇଥିଲା କିନ୍ତୁ ବଡ଼ଝିଅ ଗଲେ କଣ ହେଲା ବଡ଼ ଜ୍ୱାଇଁତ ଥିଲା ସେ ମଧ ବାହାରିଲେ। ବାବା, ମା'ଙ୍କର ବାର୍ଦ୍ଧକ୍ୟରେ ବଡ଼ ଜ୍ୱାଇଁର ଆସନ୍ନ ମୃତ୍ୟୁର ଆଶଙ୍କା ବଡ଼ ଦୁଃଖଦାୟକ ହେଲା।

ମା କାନ୍ଦିଲେ, ବାବା ତ ବିଶେଷ ଧୈର୍ଯ୍ୟଶୀଳ ଲୋକ ଥିଲେ। ସେ ନକାନ୍ଦି ଚୁପ୍ ହେଇ ବସି ରହିଲେ। ବାବା, ମା ବିଶେଷ ଦୁଃଖିତ ହେଲେ ନାତିର କଥା ଭାବି। ସେ କଣ କରିବ? ଏତେ ଅଳ୍ପ ବୟସରେ ପିତୃମାତୃହୀନ ହେବ। କ'ଣ ତା'ର ଭାଗ୍ୟ? ସେ ସେତେବେଳେ ଭଣଜାକୁ ପ୍ରାୟ ୨୧ କିମ୍ବା ୨୨ ବର୍ଷ ମାତ୍ର ହବ।

ଭିଣେଇଙ୍କର ଅବସ୍ଥା ଆହୁରି ଖରାପ ଆଡ଼କୁ ଗତି କଲା। ଭିଣେଇ ଯେଉଁଦିନ ଭୋର ବେଳକୁ ଶେଷ ନିଃଶ୍ୱାସ ତ୍ୟାଗ କରିବେ, ତା'ର ପୂର୍ବଦିନ ସନ୍ଧ୍ୟା ବେଳୁ ମୁଁ, ଅନେକ ମେଡ଼ିକାଲ ଛାତ୍ର, ଭିଣେଇଙ୍କର ଜ୍ଞାତି ମଧ୍ୟରୁ ସମସ୍ତେ ଜଗି ରହିଲୁ। ଭଣଜା ପାଖରେ ବସିଥାଏ, ମୁଁ ଏଣେ ତେଣେ ଦୌଡ଼ାଦୌଡ଼ି କରୁଥାଏ। ପୁଣି ବସି ବହେ କାନ୍ଦୁଥାଏ। ସେଦିନର ରାତି କି ଭୟଙ୍କର, କି କାଳ ରାତି ସେ। Ward ନିକଟ ବିଜୁଳି ଖୁଣ୍ଟରୁ ଅସ୍ପଷ୍ଟ ବିଜୁଳି ଆଲୁଅରେ ଗୁରାଏ ପେଚା ଚିତ୍କାର କରି ଉଡ଼ି ବୁଲୁଥାନ୍ତି। ଏଣେ ପୁଣି medical ହତା ଭିତରେ ବାରବୁଲା କୁକୁରଙ୍କ ସମସ୍ୱରରେ ଭୁକିବାକୁ ତେଣେ ରାଣୀହାଟ କେନାଲ କୂଳରୁ ବିଲୁଆଙ୍କ ସମସ୍ୱରରେ ବିକଟାଳ ଚିତ୍କାର ଏଣେ ward ଭିତରେ ଖଟିଆରେ ଶୋଇ ଭିଣେଇଙ୍କର ଆସନ୍ନ ମୃତ୍ୟୁର ଶେଷ ଚିତ୍କାର। କି ମର୍ମନ୍ତୁଦ ପରିବେଶ।

ଶେଷକୁ ସେତେବେଳର ଅମୋଘ ଔଷଧ Prontocil ଭିଣେଇଙ୍କ ଦେହରେ ଡାକ୍ତରଙ୍କ ଆଦେଶାନୁଯାୟୀ ମୁଁ ଫୋଡ଼ିଲି କିନ୍ତୁ କିଛି ଫଳ ହେଲା ନାହିଁ। ଶେଷ ନିଃଶ୍ୱାସ ଛାଡ଼ିବା ପୂର୍ବରୁ ଭଣଜାକୁ ଡକା ହେଲା, ବାପ ମୁହଁରେ ଟିକିଏ ପାଣି ଦବା ପାଇଁ। ଭଣଜା ବାପ ମୁହଁରେ ଚଳେ ପାଣି ଦେବା ସଙ୍ଗେ ସଙ୍ଗେ ଭିଣେଇ ଶେଷ ନିଃଶ୍ୱାସ ତ୍ୟାଗ କରି ଆଖି ବୁଜି ଦେଲେ। ମୁଁ, ଭଣଜାର ଦାଦି, କେଦାର ବାବୁ, ଜ୍ଞାତି ଶ୍ରୀ ଦୁର୍ଗାଚରଣ ଦାସ ଓ ଆଉ କେତେକ ବାଡ଼େଇ ପିଟି ହେଇ କାନ୍ଦିଲୁ। Wardର ଅନ୍ୟାନ୍ୟ ରୋଗୀମାନେ ଆମକୁ ସାନ୍ତ୍ୱନା ଦଉଥାନ୍ତି। ମୁଁ ଘରକୁ ଆସି ବାବା, ମା'ଙ୍କୁ ଭିଣେଇଙ୍କ ମୃତ୍ୟୁ ସମ୍ବାଦ ଦେଲି। ମା କାନ୍ଦିଲେ, ସାନଭଉଣୀ କାନ୍ଦିଲା। ବାବା ଶୋକ ସନ୍ତପ୍ତ ହେଇ ଦୁଃଖରେ କହି ପକେଇଲେ ଟିମି ଗୋସେଇଁ ଭାଗ୍ୟରେ ଏଇଆ ଥିଲା। ଏତେ ଅଳ୍ପ ବୟସରୁ ବାପମା'ଙ୍କୁ ହରେଇଲା। ଭଣଜାର ନାମ ରବୀନ୍ଦ୍ରନାଥ ଦାସ ହେଲେ ମଧ ବାବା ତାକୁ ଶ୍ରଦ୍ଧାରେ ଡାକୁଥିଲେ, ଟିମି ଗୋସେଇଁ। ଶବ ସତ୍କାରର ଆୟୋଜନ ପାଇଁ ମୁଁ ପୁଣି medical କୁ ପଳେଇଲି। Ward ରେ ଯାଇ ପହଞ୍ଚି ଦେଖେ ଭିଣେଇ ଆପାଦମସ୍ତକ କମ୍ବଳ ଘୋଡ଼ା ହେଇ ଚିର ନିଦ୍ରାରେ ଶୋଇଛନ୍ତି। ଭିଣେଇ ଆଜି

ନିଶ୍ଚିନ୍ତ ହୋଇ ଶୋଇଛନ୍ତି । ସଂସାର ବାରିଧି ପାରି ହୋଇ ଆରପାରିରେ ପହଞ୍ଚି ସାରିଛନ୍ତି । ବର୍ତ୍ତମାନ ତାଙ୍କର ମର ଦେହକୁ ଶ୍ମଶାନକୁ ନେବାର ଯୋଗାଡ଼ ଚାଲିଛି । କ'ଣ କ'ଣ କିଣା ହେବ? କିଏ କିଏ କାନ୍ଧେଇ ନେବେ ଇତ୍ୟାଦି । ସବୁ ଯୋଗାଡ଼ କରି ଆମ୍ଭେମାନେ ସମସ୍ତେ ବିରାଟ ପଟୁଆର ସହ ଭିଣେଇଙ୍କର ଶବକୁ ଖାନ୍‌ନଗର ଶ୍ମଶାନରେ ନେଇ ଶବସତ୍କାର କରି ଯେ ଯା'ର ଘରକୁ ଫେରିଲୁ । ପିତୃମାତୃହୀନ ଭଣଜା ତା'ର ଦାଦି କେଦାର ବାବୁଙ୍କ ସଙ୍ଗେ ତାଙ୍କ ଘରକୁ ଗଲା । କେଦାର ବାବୁ ସେତେବେଳେ କଟକସ୍ଥ ଶେଖ୍ ବଜାରରେ ରହୁଥିଲେ ।

ଏଥି ମଧ୍ୟରେ ମୋର 3rd year ପରୀକ୍ଷା ପଡ଼ିଲା । ଏଥର pathology, jurisprudence ଏବଂ hygiene ପରୀକ୍ଷା ଦବାକୁ ହବ । ଏଥି ପୂର୍ବରୁ final ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥିଲି । ଉପରୋକ୍ତ ୩ଟା ବିଷୟରେ ଲେଖା ପରୀକ୍ଷା ଆରମ୍ଭ ହେଲା । ପରୀକ୍ଷା ଦେଲି । ପ୍ରତ୍ୟେକ ବିଷୟରେ ଲେଖା ପରୀକ୍ଷାରେ ଭଲ ହେଲା । Hygiene, juris ର ମୌଖିକ ପରୀକ୍ଷା ହେଇଗଲା । ଭଲ ହେଲା । ଯେଉଁଦିନ pathology ର ମୌଖିକ ପରୀକ୍ଷା ହବ ତହିଁ ପୂର୍ବଦିନ ରାତିରେ ମା ଆଦୌ ରାନ୍ଧିଲେ ନାହିଁ । ମୁଁ କହିଲି, ମା କାଲି ପରୀକ୍ଷା ଅଛି, ଆଜି ରାତିରେ ଦି'ଟା ଭାତ ନଖାଇଲେ ହବ ନାହିଁ । ମା ଶୁଣି ଆଦୌ ଗଲେ ନାହିଁ । କହିଲେ ଯାଉଥିଲି ତୋ ପାଇଁ ରାନ୍ଧିବାକୁ? ଏଣୁ ସେଦିନ ରାତିରେ ବାବା, ମା, ମୁଁ ଜଳଖିଆ ଖାଇଲୁ । ମୁଁ ରାତି ସାରା ପଢ଼ିଲି । ମୁଁ ଭାତ ଖାଇ ରାତି ଜଗିଲେ ମୋତେ ଭାରି ଭଲ ଲାଗେ କିନ୍ତୁ ଜଳଖିଆ ଖାଇ ରାତି ଜଗିଲେ ଭାରି ଦୁର୍ବଳ ଲାଗେ ।

ତହିଁ ଆରଦିନ ସକାଳେ ପରୀକ୍ଷାକୁ ଯିବି, ଘରେ କିଛି ଜଳଖିଆ ନଥିଲା । ସାହିରେ ଯେଉଁ ଗୁଡ଼ିଆ ଘର ଥିଲା, ସେଠି ମଧ୍ୟ କିଛି ମିଳିଲା ନାହିଁ । ଏଣୁ ଖାଲି ଦୁଧ କିଛି ପିଇ କରି ଗଲି । ସକାଳ ୭ଟାରେ ପରୀକ୍ଷା ଆରମ୍ଭ ହବାର ଥିଲା । ଆମେ ଯେତେ ପରୀକ୍ଷାର୍ଥୀ ଥିଲୁ ସମସ୍ତେ ଗୋଟିଏ ହଲ୍ ଭିତରେ ବସିଲୁ । ପରୀକ୍ଷା ଆରମ୍ଭ ହବାର ଉତ୍କଣ୍ଠାରେ ରହିଲୁ । ପରୀକ୍ଷା ଆରମ୍ଭ ହବାକୁ ଡେରି ହେଲା । କାରଣ external examiner ଆସି ନଥାନ୍ତି ।

ତାଙ୍କୁ ଅପେକ୍ଷା କରାଗଲା । ଏଣେ ବେଳ ବଢ଼ିଲା । ମତେ ଭୋକ ଲାଗିଲା, କଣ କରିବି? ପାଖରେ ପଇସା ନଥାଏ ଯେ ମଙ୍ଗଳାବାଗ କି ରାଣୀହାଟ ଯାଇ ଜଳଖିଆ କରି ଆସିବି । ପରୀକ୍ଷା ହଲ୍ ଛାଡ଼ି ଯିବା ମଧ୍ୟ ଅନୁଚିତ୍ । କେତେବେଳେ ଡାକରା ପଡ଼ିବ । ପୁଣି ଭାବିଲି ଭଣଜା ପାଖକୁ ଯିବି । ସେ hostel ରେ ରହି medical school ରେ ପଢୁଥାଏ । ପୁଣି ଭାବିଲି ତାକୁ ଯାଇ କଣ ଗୋଟାଏ କହିବି ମୋ ପାଇଁ ଜଳଖିଆ ଆଣ, ଘରୁ ଜଳଖିଆ ଆସିନାହିଁ ମୁଁ ଜଳଖିଆ ଖାଇବି, ନା ଯିବି ନାହିଁ ଏମିତି ରହିଯିବି, କିଛି ସମୟ ଗଲେ ଭୋକ ମରିଯିବ ଆଉ କିଛି କଷ୍ଟ ଜଣା ଯିବ ନାହିଁ । ଏମିତି ଭାବି ଭୋକରେ ରହିଲି ।

ସେଦିନ ଆଉ external examiner ଆସିଲେ ନାହିଁ । ତାଙ୍କ ବଦଳରେ ସ୍ଥିର ହେଲା ଆମର ତତ୍‌କାଳୀନ superintendent P.L.O'Neil, pathology ର oral examination କରିବେ । P.L.O'Neil ଆସିଲେ, ତାଙ୍କ ପାଖରେ ଆମର internal examiner ରୂପେ Dr. Jaganath Das ବସିଲେ । ସେତେବେଳକୁ ଦିନ ପ୍ରାୟ ଗୋଟାଏ ହବ । ଗୋଟିଏ ଗୋଟିଏ ପିଲାଙ୍କୁ ଡକରା ହେଲା ପରୀକ୍ଷା ଦବା ପାଇଁ । ସେତେବେଳେ ନିୟମ ଥିଲା ଯେ ପରୀକ୍ଷା ଦବାକୁ ଯିବ ତା'ର ପରୀକ୍ଷା ପରେ ସେ ସେଇଆଡ଼େ ରହିବ ଆଉ ବାହାରକୁ ଆସି ପାରିବ ନାହିଁ । ତା'ର କାରଣ ସେ ବାହାରକୁ ଆସିଲେ ତାକୁ କ'ଣ ପଚରା ଉଚରା ହେଲା ସେ ଅନ୍ୟ ପିଲାମାନଙ୍କୁ ଯଦି କହେ ଅନ୍ୟ ପିଲାମାନେ ହୁସିଆର ହେଇଯିବେ, ଜାଣିଯିବେ, କି ଧରଣର ପ୍ରଶ୍ନ ପରୀକ୍ଷକ ପଚାରୁଛନ୍ତି । କେଉଁ ବିଷୟ ଉପରେ ତାଙ୍କର ବେଶୀ ଝୁଙ୍କ୍ ଚାପିଛି । ତେଣୁ ଯେ ପରୀକ୍ଷାକୁ ଗଲା ସେ ସବୁ ପିଲାଙ୍କ ଶେଷ ଯାଏ ସିଆଡ଼େ ରହିଲା ଆଉ ବାହୁଡ଼ି ନୋହିଲା ।

ମୋତେ ପରୀକ୍ଷାକୁ ଡ଼ାକଟା ପଡ଼ିଲା । ସେତେବେଳକୁ ଭୋକରେ ପେଟ ଜଳୁଛି, ପାଟି ଅଠା ଅଠା ଲାଗୁଛି । ତଣ୍ଟି ଶୁଖି ଗଲାଣି, ଗଲି ପରୀକ୍ଷାକୁ ।

O'Neil ସାହେବ ପ୍ରଥମ ପ୍ରଶ୍ନ ଯା ପଚାରିଲେ ମୁଁ ହଠାତ୍ ବୁଝି ପାରିଲି ନାହିଁ। Dr. Jaganath Das ମୋତେ ଓଡ଼ିଆରେ ସେ ପ୍ରଶ୍ନକୁ କହିଲେ। ମୁଁ ପ୍ରଶ୍ନ ବୁଝିଲି କିନ୍ତୁ କିଛି ମନେ ପଡ଼ିଲାନି କି କିଛି ଭଲ ଭାବରେ ଉତ୍ତର ଦେଇ ପାରିଲି ନାହିଁ। ମଥା ଶୂନ୍ୟ ଏଣେ ପାଟି ଖନି ବାଜିଲାଣି। କଥା କହିଲା ବେଳକୁ ଟାଣି ହେଇ କହିବାକୁ ହଉଥାଏ। ପ୍ରଥମ ପ୍ରଶ୍ନ ହୁଡ଼ିଲି, ମଥା ଆହୁରି ଘୁରିଲା। କଣ କଲି! Oral examination ରେ ଯଦି ପ୍ରଥମ ପ୍ରଶ୍ନ ଭଲ ଭାବରେ ଉତ୍ତର ଦେଇ ନପାରିଛି ତାହେଲେ ପାସ୍ କରିବା ସନ୍ଦେହଜନକ। ଆଉ କ'ଣ ଗୋଟାଏ ଦି'ଟା ପ୍ରଶ୍ନ ପଚାରିଲେ। ତାକୁ ମଧ୍ୟ ସେମିତି ସନ୍ତୋଷଜନକ ଉତ୍ତର ଦେଇ ପାରିଲି ନାହିଁ। ମୋତେ ଆଉ ପ୍ରଶ୍ନ ନପଚାରି କହିଲେ ଯାଅ। ମୁଁ ପରୀକ୍ଷକଙ୍କ ସାମନାରୁ ଉଠି ଆସି ଯେଉଁମାନେ ପରୀକ୍ଷା ଦେଇ ସାରି ସେଠି ଦଳ ବାନ୍ଧି ବସି ରହିଥିଲେ ତାଙ୍କରି ଦଳରେ ବସିଲି। ମନେ ମନେ ଜାଣିଲି, ମୁଁ pathology oral ପରୀକ୍ଷାରେ ଫେଲ୍ ହେଲି। ମୁଁ ସେମିତି ଭୋକ ଉପାସରେ ଦିନ ତିନିଟା ଯାଏ ବସି ରହିଲି। ପରୀକ୍ଷା ସମସ୍ତଙ୍କର ସରିଲା। ଘରକୁ ଯେତେବେଳେ ଫେରେ ଦିନ ଚାରିଟା। ମନେ ମନେ ସନ୍ଦେହରେ ରହିଲି, ମୁଁ pathology ପରୀକ୍ଷାରେ ଫେଲ୍ ହେଲି।

କିଛିଦିନ ପରେ ଯେତେବେଳେ 3rd year ର final ପରୀକ୍ଷାର ଫଳ ବାହାରିଲା ମୁଁ pathology ରେ ଫେଲ୍। ପୁଣି ଛ'ମାସ ପରେ pathology ରେ ପରୀକ୍ଷା ଦେଇ ପାସ୍ କଲେ 4th year ହବ। ବରାବର ମନରେ ଦୁଃଖ ରହିଲା ମୁଁ ଭଲ ଭାବରେ ପେଟେ ଖାଇ ପରୀକ୍ଷାକୁ ଯାଇଥିଲେ pathology oral ପରୀକ୍ଷାରେ ମୁଁ ଫେଲ୍ ହୋଇ ନଥାନ୍ତି।

3rd year ର final ପରୀକ୍ଷାରେ ଯାହା ହବାର ହେଲା। ଏଥର ସାନ ଭଉଣୀକୁ ତା'ର ଶାଶୁ ଘରୁ ଆଣିବାକୁ ହବ। ସେତେବେଳେ ପୁଷ ମାସ କି କ'ଣ ଗତ ହେଇଗଲାଣି ଆଉ ବୋହୂ ଝିଅ ବାପ ଘରୁ ଶାଶୁ ଘରକୁ, ଶାଶୁ ଘରୁ ବାପ ଘରକୁ ଯିବା ଆସିବାରେ ବାଧା ନାହିଁ। ସେତେବେଳେ ବଡ଼ ଭିଣେଇ ଆମ ବସାରେ ଆସି ଥାଆନ୍ତି। ଦିନେ ସନ୍ଧ୍ୟା ବେଳେ ବଡ଼ ଭିଣେଇକୁ ସାଙ୍ଗରେ ନେଇ ସାନ ଭିଣେଇ ପାଖକୁ ଗଲି। ତାଙ୍କୁ ସାଙ୍ଗରେ ନେଇ ବଗୁଁଆ ପୁରୁଷୋତ୍ତମପୁରକୁ ଗଲେ ସାନ ଭଉଣୀକୁ ଶଶୁର ଘରୁ ଆଣିବାକୁ ହେବ।

ସେତେବେଳେ ସାନ ଭିଣେଇ କଟକସ୍ଥ ରାଣୀହାଟ କେନାଲର ଆରପଟେ, ସେତେବେଳେ କେନାଲର ଯେଉଁ ପଟେ ଗୋଟିଏ rice mill ଥିଲା ସେହି ପଟେ ଲତା, ପାଦପ ବେଷ୍ଟିତ ନିଭୃତ ଅଞ୍ଚଳରେ ଖଣ୍ଡେ ପକ୍କା କୋଠାଘର, ସେଇଠି ଗୋଟିଏ ମେସ୍ ଥାଏ। ସେ ମେସ୍ ନାଁ ନୀଳାଚଳ ମେସ୍ କି ହଳାହଳ ମେସ୍ ମୋର ଠିକ୍ ମନେ ପଡୁନାହିଁ। ସେଇଠି ରହି ପଢୁଥାନ୍ତି। ମୁଁ ବଡ଼ ଭିଣେଇ ଯାଇ ସେଠି ପହଞ୍ଚି ଦେଖିଲୁ ସାନ ଭିଣେଇ କୁଆଡ଼େ ସାନ୍ଧ୍ୟ ଭ୍ରମଣରେ ଯାଇଛନ୍ତି। ଆମେ ଅପେକ୍ଷା କଲୁ, କିଛି ସମୟ ପରେ ସାନ ଭିଣେଇ ହାତରେ ବହି ଧରି ଅନ୍ଧକାର ମଧ୍ୟରେ ମେସ୍ ଆଡ଼କୁ ଗଡ଼ିଲେ।

ଆମ ସହିତରେ ଭେଟ ହେଲା। ମୁଁ ସେ ଦୁହେଁ ତାଙ୍କ ଗାଁକୁ ଯାଇ ମୋର ଭଉଣୀକୁ ଆଣିବାର କଥା। ସାନ ଭିଣେଇ ଏଥିରେ ଟିକିଏ ମୋଡ଼ ଦବା ଭଳି କହିଲାରୁ ମୁଁ ରାଗିଲି ଏମିତିକି ଏଠି ପଢ଼ି ପାରିବ ନାହିଁ ବୋଲି ଧମକ ଦେଲି। କହିଲି ମୋର ଭଉଣୀକୁ ଏଠି ଆଣି ପହଞ୍ଚେଇଲେ ତୁମେ ପଢ଼ି ପାରିବ ନଚେତ୍ ତୁମେ ଏଠି ପଢ଼ି ପାରିବ ନାହିଁ। ଶେଷରେ ସାନ ଭିଣେଇ ତାଙ୍କ ଗାଁକୁ ସେହି ରାତିରେ ମୋ ସହିତରେ ଯିବାକୁ ରାଜି ହେଲେ। ଏଣୁ ମୁଁ, ବଡ଼ ଭିଣେଇ, ସାନ ଭିଣେଇ ଏକ ସାଙ୍ଗରେ ଆମର ଥୋରିଆସାହି ବସାକୁ ଆସିଲୁ।

ସେହି ରାତିରେ ମୁଁ ସାନ ଭିଣେଇକୁ ସାଙ୍ଗରେ ନେଇ ତାଙ୍କ ଗାଁ ବଗୁଆଁ ପୁରୁଷୋତ୍ତମପୁରକୁ କଟକ ଷ୍ଟେସନରୁ ଟ୍ରେନ ଯୋଗେ ହରିଦାସପୁରକୁ ଗଲୁ। ସେଠୁ ଗୋରୁ ଗାଡ଼ିରେ ରାତିରେ ଯାଇ ତହିଁ ଆରଦିନ ସକାଳେ ତାଙ୍କ ଗାଁରେ ପହଞ୍ଚିଲୁ। ସାନଭଉଣୀର ଶାଶୁ, ଶଶୁର ସାନଭଉଣୀକୁ ଛାଡ଼ିବା ପାଇଁ ମୋର ପରୋକ୍ଷରେ ବାଧା ସୃଷ୍ଟି କରିବା ପାଇଁ ଚେଷ୍ଟା କରୁଥିଲେ। କିନ୍ତୁ ମୁଁ

ସାନଭଉଣୀକୁ ଯେ କୌଣସିମତେ ସେଠୁ ନେଇ ଆସିଲି। ମୁଁ ସାନ ଭିଣେଇ, ସାନ ଭଉଣୀ ଏକ ସାଙ୍ଗରେ ବରୁଆଁ ପୁରୁଷୋତ୍ତମପୁରରୁ ଖୁବ୍ ସକାଳୁ ହରିଦାସପୁର ଷ୍ଟେସନକୁ ବାହାରି ସେଠୁ ଟ୍ରେନ ଧରି ଆସି କଟକ ଷ୍ଟେସନରେ ପହଞ୍ଚି ଘରେ ପହଞ୍ଚିଲା ବେଳକୁ ଦିନ ଦୁଇଟା ପ୍ରାୟ। ମୁଁ ସାନଭଉଣୀ, ସାନ ଭିଣେଇକୁ ନେଇ ଘରେ ପହଞ୍ଚିଲା ପରେ ଗୋଟାଏ ଆନନ୍ଦର ଢେ଼ଉ ଖେଳିଗଲା। ସାନ ଭିଣେଇକୁ ବାଟରେ ଜ୍ୱର ଆରମ୍ଭ ହୋଇଥିଲା। ଏଣୁ ସେ ଆମ ଘରେ ଦିନେ ଖଣ୍ଡେ ରହିଲା ପରେ ପଢ଼ାପଢ଼ି କରିବା ପାଇଁ ତାଙ୍କ ମେସ୍‌କୁ ଚାଲିଗଲେ।

ସେତେବେଳେ ବଡ଼ ଭିଣେଇ କେତେଦିନ ପାଇଁ ଆସି ଆମ ବସାରେ ଥିଲେ। ବାବା, ମା, ବଡ଼ଭିଣେଇ, ମୁଁ ସାନ ଭଉଣୀ ବିଷୟରେ ଟିକିଏ ନିଶ୍ଚିନ୍ତ ହେଲୁ। ବଡ଼ ଭିଣେଇ ଏବଂ ତାଙ୍କ ଚାକର କିଛିଦିନ ଆମ ବସାରେ ରହିବା ପରେ କଟକର କାଫଲା ବଜାରରେ ଗୋଟିଏ ଭଡ଼ା ଘର ଠିକ୍ କରି ସେଠିକି ଚାଲିଗଲେ। ସେତେବେଳେ ମୋର ଭଣଜା ରବୀନ୍ଦ୍ରନାଥ ଦାସ ମେଡ଼ିକାଲ ସ୍କୁଲର ହଷ୍ଟେଲରେ ରହୁଥିଲା। କିଛି ମାସ ପରେ ମୋର ଯେଉଁ pathology single subject ରେ ପରୀକ୍ଷା ଦବାର ଥିଲା ସେ ପରୀକ୍ଷା ଦେଇ ପାସ୍ କଲି।

ଏଥର ମେଡ଼ିକାଲ ସ୍କୁଲରେ 4th year ହେଲା। ଏଥର medicine, surgery ଏବଂ midwifery ଏଇ ତିନିଟା ବିଷୟ ପଢ଼ି ପରୀକ୍ଷା ଦେଇ ପାସ୍ କଲେ ଡ଼ାକ୍ତର ହେବି। ଏଣୁ କେତେ ଅତୀତର ଘଟଣା ମନେପଡ଼ି ମନଟା ଦୁଃଖରେ ଭରିଲା ବେଳକୁ ପୁଣି ଆଉ ଗୋଟାଏ ବର୍ଷ ପରେ ଡାକ୍ତର ହେବି ଭାବି ମନ ଆନନ୍ଦରେ ଭରି ଉଠୁଥାଏ। ଏଇ 4th year ବେଳକୁ ବଡ଼ ଭଉଣୀ କିରଣବାଳା, ମଝିଆ ଭଉଣୀ ହିରଣବାଳା ଆଉ ନାହାନ୍ତି। ଚାରି ଭାଇ, ଚାରି ଭଉଣୀ ଭିତରୁ ମୁଁ ଆଉ ସବା ସାନ ଭଉଣୀ ଅଛୁ। ବାବା, ମା, ମୁଁ ଏବଂ ସାନଭଉଣୀ, ଏଇ ହେଲା ଆମ ସଂସାର। ସାନ ଭଉଣୀ ତା' ଶାଶୁ ଘରୁ ଆସି ଆମ ଘରେ ଅଛି। ସେ ତା' ଶାଶୁଘରକୁ ଚାଲିଗଲେ ଘରେ ବାବା, ମା ଓ ମୁଁ, ଏଇ ତିନି ଜଣ ମାତ୍ର।

କେତେ ବଡ଼ ସଂସାର! କେତେ ଲୋକ ଗହଳି! କେତେ ଯିବା ଆସିବା, କେତେ ଖାଇବା ପିଇବା ସବୁ କେମିତି ଆପେ ଆପେ କମିଗଲା। ଅଭାବ ଭୀଷଣ ବଢ଼ିଲା। ଆମ୍ଭ ଭିତରେ ପେନ୍‌ସନ୍ ଗଣ୍ଡାକ ଆଉ କିଛି ନାହିଁ। ଘରୁ କେମିତି ଲକ୍ଷ୍ମୀ ଛାଡ଼ିଗଲା ପରି ଜଣା ପଡୁଥାଏ। ମଝିଆ ଭଉଣୀ ତ ଅନେକ ଆଗରୁ ବସନ୍ତ ରୋଗରେ ମୃତ୍ୟୁ ବରଣ କରିଥିଲା। ତା'ର ଶୋକ କେତେ ବର୍ଷ ପରେ ପାଶୋରି ଗଲା ବେଳକୁ ବଡ଼ ଭଉଣୀଙ୍କ ମୃତ୍ୟୁର ଦାରୁଣ ଆଘାତରେ ଆମେ ସମସ୍ତେ ଯେମିତି ଭାଙ୍ଗି ପଡ଼ିଲୁ। ସବୁ ହଉଛି କିନ୍ତୁ ଯେମିତି ଉତ୍ସାହ ନାହିଁ। ନକଲେ ନଚଳେ ଗତାନୁଗତିକ କାହାରି ମନରେ ସରସତା ନାହିଁ ଇମିତି ଅବସ୍ଥା।

ମୋର ଏଇ 4th year ରେ ପଢ଼ିବା ବର୍ଷ Captain K.M. Ray ଯେଉଁଠି ଚାକିରି କରୁଥିଲେ ସେଠୁ ପୁଣି Medical School କୁ ବଦଳି ହୋଇ ଆସିଲେ। Captain K.M. Ray ଙ୍କ ପୁଣି Medical School କୁ ଫେରି ଆସିବାରେ ମୋର ଆନନ୍ଦର ସୀମା ରହିଲା ନାହିଁ। କାରଣ ସେହି ହଉଛନ୍ତି ମୋର Medical School ରେ ଡାକ୍ତରୀ ପଢ଼ିବାର ମୂଳ କାରଣ। ତାଙ୍କରି ପ୍ରେରଣା, ତାଙ୍କରି ଉତ୍ସାହରେ ମୋରି ଡାକ୍ତରୀ ପଢ଼ିବାର କଥା। ମୁଁ କମ୍ପାଉଣ୍ଡରି ପଢ଼ିବା ବେଳେ ଏବଂ ତା'ପରେ ତାଙ୍କ ସହିତରେ ମୋର ଯେତେଥର ଭେଟ ହୋଇଛି ସେ ବରାବର ମୋତେ କହିଛନ୍ତି ତୁ ମାଟ୍ରିକ ପାସ୍ କରି ମେଡ଼ିକାଲକୁ ଡାକ୍ତରୀ ପଢ଼ିବା ପାଇଁ ଚାଲିଆ। ତାଙ୍କରି କଥାରେ ମୋର ଆଗ୍ରହ ଜନ୍ମିଲା ମେଡ଼ିକାଲରେ ଡାକ୍ତରୀ ପଢ଼ିବା ପାଇଁ।

Captain K.M. Ray ଏଠିକି ଆସିଲେଣି ତାଙ୍କ ସହିତରେ ଯାଇ ଦେଖା କରିବି ଭାବେ ପୁଣି କେତେକ କାର୍ଯ୍ୟବଶତଃ ଅଟକି ଯାଏ। ଏଥି ମଧ୍ୟରେ ଦିନେ ମୁଁ clinical laboratory ରେ କେତେକ କାମ କରି ସେଇ laboratory ରେ ଥିବା pipe ରେ ମୁଁ ହାତ ଧୋଉଛି ଏଇ ସମୟରେ K.M. Ray laboratory ଭିତରକୁ ପଶି ଆସିଲେ। ମୁଁ ହାତ ଧୋଇ ସାରି ନମସ୍କାର କଲି।

ମୋତେ ଦେଖି ହସି ହସି ପଚାରିଲେ କୋଉ year ହେଲା ? ମୁଁ ଉତ୍ତର ଦେଲି 4th year ହେଲା । K.M. Ray ଖୁସି ହେଇ କହିଲେ ଆଉ ତେବେ କଣ ? Qualification ହେଇଗଲା । ସେ ମୋତେ ଏତକ କହି ଆଉ କେତେ ଜଣକ ସାଙ୍ଗରେ ଅଳ୍ପ କଥାବାର୍ତ୍ତା କରି ଅନ୍ୟ କୁଆଡ଼େ ଗଲେ । ତାଙ୍କୁ ଦୀର୍ଘ କେତେ ବର୍ଷ ପରେ ଦେଖି ମୋର ମନ ଆନନ୍ଦରେ ଫୁଲି ଉଠିଲା । ମନେ ହେଲା ଯେମିତି ଜଣେ ଆତ୍ମୀୟସ୍ୱଜନଙ୍କୁ ଭେଟିଲି । ମନରେ ମଧ୍ୟ କେତେକ ସାହାସ ପାଇଲି ।

Captain K.M. Ray ମେଡ଼ିକାଲ ଛାତ୍ରଙ୍କ ମା, ବାପ । ପିଲାଙ୍କୁ ସାହାଯ୍ୟ କରିବାରେ ସବୁବେଳେ ସେ ଆଗଭର । Football match ହଉ drama ହଉ, ସଭାସମିତି ହଉ ସବୁଥିରେ Captain K.M. Rayଙ୍କ ଆଗ୍ରହ ପିଲାଙ୍କୁ ଉତ୍ସାହ ଦବା, ପ୍ରେରଣା ଦବା ଏମିତିକି ପରୀକ୍ଷାରେ ମଧ୍ୟ ସାହାଯ୍ୟ କରିବାରେ ସେ କୁଣ୍ଠିତ ନୁହନ୍ତି । ଏଥି ପୂର୍ବେ Captain K.M. Rayଙ୍କ ବିଷୟରେ କେତେ କଥା ଲେଖିଛି ।

ଏଇ 4th year ରେ ପଢ଼ିବା ବେଳେ medical ରେ ଗୋଟାଏ ଘଟଣା ହୁଏ, ଏଥି ପୂର୍ବେ Medical Schoolର head clerk ଯାମିନୀ ବାବୁଙ୍କ ବିଷୟରେ କେତକ କଥା ଲେଖିଛି । ଆଉ କିଛି ଲେଖିବାର ବାକି ଥିଲା ତାକୁ ଏଇଠି ଲେଖି ଶେଷ କରେ । ଯାମିନୀ ବାବୁଙ୍କ ଦୌରାତ୍ମ୍ୟ ଯୋଗୁ ତାଙ୍କ ବିରୁଦ୍ଧରେ ଅନେକ medical student ଏବଂ ଅନେକ କର୍ମଚାରୀ ଥିଲେ । Captain K.M. Ray ମେଡ଼ିକାଲ ସ୍କୁଲକୁ ପୁଣି ଆସିବା ପରେ ତାଙ୍କର ଅନ୍ୟାନ୍ୟ କାର୍ଯ୍ୟ ଛଡ଼ା Medical School ଅଫିସ ଦାୟିତ୍ୱରେ ରହିଲେ ।

Captain K.M. Ray ଅଫିସକୁ ଗଲେ ଯାମିନୀ ବାବୁ ତାଙ୍କୁ ବିଶେଷ ଖାତିରି କଲେ ନାହିଁ । ଏମିତିକି ଚୌକି ଛାଡ଼ି ମଧ୍ୟ ଠିଆ ହେଲେ ନାହିଁ । ଯାମିନୀ ବାବୁଙ୍କ ଏପରି ବ୍ୟବହାରରେ ଡା:କ୍ଷେତ୍ର ମୋହନ ରାୟ କ୍ଷୁବ୍ଧ ହୋଇ ଦିନେ wardକୁ ଆସି medical student ମାନଙ୍କୁ କହିଲେ ଏ ପିଲେ ଶୁଣିଛ ମୁଁ ଅଫିସକୁ ଗଲାରୁ ଯାମିନୀଟା ଚେଆର ଛାଡ଼ି ଠିଆ ହଉ ନାହିଁ । ତାକୁ ଏକେବାରେ ଚୌକିରୁ ଉଠେଇ ଦେଲେ ଯିବ । Medical students ମାନେ ତ ଆଗରୁ ଅନେକ head clerk ଯାମିନୀ ବାବୁଙ୍କ ଦୁର୍ବ୍ୟବହାର ଯୋଗୁଁ ବିରକ୍ତ ହୋଇ ତାଙ୍କ ବିରୁଦ୍ଧରେ ଥିଲେ । ଡାକ୍ତର କ୍ଷେତ୍ର ମୋହନ ରାୟଙ୍କ ପ୍ରତି ଏପରି ଦୁର୍ବ୍ୟବହାର କଥା ଶୁଣି ଅନେକେ ମାତି ଉଠିଲେ । ପିଲାଏ Dr. K.M. Rayଙ୍କୁ ପାଇ ଯେମିତି ଯାମିନୀ ବାବୁଙ୍କ ବିରୁଦ୍ଧରେ କିଛି କାମ କରିବା ପାଇଁ ବଳ ପାଇଗଲେ । ଯାମିନୀ ବାବୁ ତାଙ୍କ ଚାକିରିକାଳ ମଧ୍ୟରେ ତାଙ୍କ ବିଭାଗୀୟ ଚପରାସିଠୁ ଆରମ୍ଭ କରି ତାଙ୍କର ତଳିଆ କିରାଣୀ medical students, compounder, students ଯେତେ ଯାହାଙ୍କୁ ନିର୍ଯ୍ୟାତିତ କରିଥିଲେ ସମସ୍ତେ ଯେମିତି ମାତି ଉଠିଲେ । ସମସ୍ତେ Dr. K.M. Rayଙ୍କ ପାଖରେ ଏକଜୁଟ ହେଇଗଲେ ।

ଯାମିନୀ ବାବୁ ସସ୍‌ପେଣ୍ଡ ହେଲେ, ଲାଗିଲା ତାଙ୍କ ବିରୁଦ୍ଧରେ ତଦନ୍ତ । ସାକ୍ଷ୍ୟ ଗ୍ରହଣ, କିଏ କଣ ତାଙ୍କ ବିରୁଦ୍ଧରେ ଜାଣିଛ କୁହ । ଲେଖିକିଦିଅ କିଏ କୋଉ ଘଟଣାରେ କେତେ ଲାଞ୍ଚ ଦେଇଛି କୁହ, ଲେଖିକିଦିଅ । ଯାମିନୀ ବାବୁ ତ ସମସ୍ତଙ୍କୁ ଭୟଭୀତ କରି ରଖିଥିଲେ କେହି ମୁହଁ ଖୋଲି କିଛି କହି ପାରୁ ନଥିଲେ । ବର୍ତ୍ତମାନ ଯିବେ କୁଆଡ଼େ ?

ପ୍ରତ୍ୟେକ ଦିନ ରାତି ହେଲେ Dr. K.M. Rayଙ୍କ କଟକର ରାଣୀହାଟସ୍ଥିତ ତାଙ୍କ ବାସଭବନ ଭିତରେ ତାଙ୍କ ବୈଠକଖାନାରେ କବାଟ ବନ୍ଦକରି ଯାମିନୀ ବାବୁଙ୍କ ବିରୁଦ୍ଧରେ ଯେତେ ଲୋକ ଥିଲେ ସମସ୍ତଙ୍କୁ ନେଇ ଚାଲେ ଆଲୋଚନା, ତଦନ୍ତ । ସେତେବେଳେ ହାରାଚାନ୍ଦ, ଗୁଣନିଧି ଦୁଇଜଣ ଯାମିନୀ ବାବୁଙ୍କ ହାତ ତଳେ Medical School ଅଫିସରେ କାମ କରୁଥିଲେ । ହାରାଚାନ୍ଦ librarian, ଗୁଣନିଧି subordinate clerk । ସେମାନେ ଅଫିସର କାଗଜପତ୍ରରେ କେଉଁଠି ଯାମିନୀ ବାବୁ କ'ଣ ଗଲତି କରିଛନ୍ତି ସବୁ ଦେଖେଇଲେ । ଦିନେ ରାତିରେ ମୁଁ ଦାଣ୍ଡଆଡ଼େ ବସି ପଢୁଛି ମୋର ଜଣେ ସହପାଠୀ ରାମଚନ୍ଦ୍ର ମିଶ୍ର (ଯାଙ୍କୁ ସମସ୍ତେ "କାଳିଆରାମ" ବୋଲି ଡାକୁଥିଲେ

କାରଣ ଏ ଦେଖିବାକୁ ତ୍ରିପଣ୍ଡ କଳା ଭାରି ହାସ୍ୟରସ ପ୍ରିୟ କଥାଏ କଥାଏ ହସେଇ ଦବାର ଲୋକ) ଏବଂ ଆଉ ଜଣେ ରାମ ଚନ୍ଦ୍ର ମିଶ୍ର (ଯାଙ୍କୁ ସେତେବେଳେ ସମସ୍ତେ "ନାଟୁଆ ରାମ" ବୋଲି ଡାକୁଥିଲେ କାରଣ ଭାରି ନାଟକ ପ୍ରିୟ ଥିଲେ। ସେତେବେଳେ ମେଡ଼ିକାଲ ଷ୍ଟେଜ୍‌ରେ ପୁରୁଷ, ସ୍ତ୍ରୀ ଉଭୟ ଭୂମିକାରେ ଖୁବ୍ ଦକ୍ଷତାର ସହିତ ଅଭିନୟ କରି ପାରୁଥିଲେ, ନାଚି ପାରୁଥିଲେ ମଧ୍ୟ। ସେତେବେଳକାର medical dramatic partyରେ ଯାଙ୍କର ଖୁବ୍ ଖ୍ୟାତି ଥିଲା। ଦେଖିବାକୁ ସୁନ୍ଦର, ଚମ୍ପାଫୁଲ ପରି ଦେହର ରଙ୍ଗ। ବର୍ତ୍ତମାନ "ଫତୁରାନନ୍ଦ" ନାମରେ ଓଡ଼ିଶାର ସାହିତ୍ୟ କ୍ଷେତ୍ରରେ ପରିଚିତ) ଉଭୟ ଆସି ମୋତେ ଡାକିଲେ। ମୁଁ ଆଶ୍ଚର୍ଯ୍ୟ ହୋଇ ପଚାରିଲି, କ'ଣ ତୁମେ ଦିହେଁ କାହିଁକି ଏତେବେଳେ ମୋତେ ଡାକିବାକୁ ଆସିଛ ?

ମୋର ଆଶ୍ଚର୍ଯ୍ୟ ହେବାର କାରଣ ହେଲା, କାଳିଆ ରାମ ମୋର ସହପାଠୀ। ସେ ବରାବର ମୋ ପାଖକୁ ଆସେ ଯାଏ, ନାଟୁଆରାମ ତ କେଭେ ମୋ ପାଖକୁ ଆସନ୍ତି ନାହିଁ। ସେ ସେତେବେଳେ ମୋ ଉପର କ୍ଲାସରେ ପଢୁଥିଲେ। ଆଳାପ, ପରିଚୟ, ସୌହାର୍ଦ୍ଦ୍ୟ ସବୁଥିଲେ ମଧ୍ୟ ସେ ଆମ ଘରକୁ ଆସିବା ଏଇ ପ୍ରଥମ। କ'ଣ ଘଟଣା। ଉଭୟେ କହିଲେ ତୁମକୁ Dr. K.M. Ray ଡାକୁଛନ୍ତି। ମୁଁ ଏକଥା ଶୁଣି ଆହୁରି ଆଶ୍ଚର୍ଯ୍ୟ ହେଇ ପଚାରିଲି କାହିଁକି ? ଉଭୟେ କହିଲେ ଆମେ କିଛି ଜାଣୁନା। Dr. K.M. Ray କେବଳ କହିଲେ ପୁଳିନ୍‌କୁ ଡାକି ଆଣ। ଆମେ ସେଥିପାଇଁ ଆସିଛୁ।

ଡା: କ୍ଷେତ୍ର ମୋହନ ରାୟ ଯେତେବେଳେ ଡାକି ପଠେଇଛନ୍ତି ନଯିବି କେମିତି ? ତେଣୁ ମୁଁ ବହିପତ୍ର ବନ୍ଦ କରି ବାବାଙ୍କୁ ଯାଇ କହିଲି Dr. K.M. Ray ମୋତେ କାହିଁକି ଡାକି ପଠେଇଛନ୍ତି, ମୁଁ ଯାଉଛି। ମୁଁ ଉଭୟ ରାମଙ୍କ ଗହଣରେ ଡା: କ୍ଷେତ୍ର ମୋହନ ରାୟଙ୍କ ପାଖକୁ ବାହାରିଲି। ବାଟରେ ମୋତେ କାଳିଆ ରାମ କହିଲା ଯାମିନୀ ବାବୁଙ୍କୁ ଖୁବ୍ ଜୋର୍‌ସୋର୍ ଧରା ହେଉଛି। ତା'ର ଚାକିରି ଯିବ ଆଉ ସେ ମଧ୍ୟ ଜେଲ୍ ଯିବାର ସମ୍ଭାବନା। ସେ ତ ତୁମକୁ ଅନେକ ହଇରାଣ କରିଛନ୍ତି। ତୁମେ ତାଙ୍କ ବିରୁଦ୍ଧରେ ଯା' ଜାଣ କହିବ। ଏଇଥି ପାଇଁ Dr. K.M. Ray ତୁମକୁ ଡକେଇଛନ୍ତି। ମୁଁ କାଳିଆରାମଠାରୁ ଏ ସମ୍ବାଦ ଶୁଣି ମନେ ମନେ ଭାବିଲି ଯାମିନୀ ବାବୁ ମଜା ଏଥର, ଭଲ ହେଉଛି, ଯା ହେଉଛି। ସେ ମେଡ଼ିକାଲ ସ୍କୁଲ ଅଫିସରୁ ତଡ଼ା ଖାଇବା ଦରକାର କିନ୍ତୁ ମୁଁ କେମିତି କ'ଣ କହିବି ଏ ପରିସ୍ଥିତିରେ। ଯାମିନୀ ବାବୁ ଗୌରୀଶଙ୍କର ରାୟଙ୍କ ନାତି। ଏଣୁ ଦାଦା ପୁତୁରା ସମ୍ପର୍କ। ବାବାଙ୍କ ସହିତରେ ଖୁବ୍ ସଦ୍‌ଭାବ। ଯାମିନୀ ବାବୁ ମୋତେ ଯେତେ ହଇରାଣ କରିଛନ୍ତି ସେ ସବୁ କଥା ଯାମିନୀ ବାବୁଙ୍କ ବିରୁଦ୍ଧରେ ବାବାଙ୍କ ଆଗରେ କହି ବାବାଙ୍କଠୁଁ ଗାଳି ଖାଇଛି। ବର୍ତ୍ତମାନ ମୁଁ ଯଦି ଯାମିନୀ ବାବୁଙ୍କ ବିରୁଦ୍ଧରେ ସାକ୍ଷୀ ହୁଏ, ବାବା ଜାଣିଲେ ମୋ ଉପରେ ରାଗିବେ। କେମିତି କ'ଣ କରିବି ? ଯାମିନୀ ବାବୁଙ୍କ ବିରୁଦ୍ଧରେ ତ ଅନେକ ଅଭିଯୋଗ, ଅନେକ ସାକ୍ଷୀ ବାହାରିବେ। ସେ ସ୍ଥଳେ ମୁଁ ଗୁଣ୍ଡୁଚି ମୂଷା ପରି ଫାଟ ବୁଜିବି କଣ, ଫାଟ ତ ସବୁ ପଲସ୍ତରା ହୋଇଯିବ, ଧୂଳିରେ ଫାଟ ବୁଜିବା ନିରର୍ଥକ।

ଆମେ ତିନିହେଁ ଯାଇ Dr. K.M. Ray ଙ୍କ ବୈଠକ ଖାନାରେ ପହଞ୍ଚି K.M. Rayଙ୍କୁ ନମସ୍କାର କଲାରୁ K.M. Ray ବସିବାକୁ କହିଲେ। ମୁଁ ଗୋଟାଏ ବେଞ୍ଚ ଉପରେ ବସିଲି। ସେଠି ଯେଉଁମାନଙ୍କୁ Dr. K.M. Rayଙ୍କ ପାଖରେ ବସିବାର ଦେଖିଲି ସେଥିରୁ ମୋର ମନେ ହେଲା ଯାମିନୀ ବାବୁଙ୍କ ରାଶିରେ ଏଥର ଅଷ୍ଟଗ୍ରହ କୂଟ ଆରମ୍ଭ ହେଲା ଆଉ ରକ୍ଷା ନାହିଁ। Dr. K.M. Ray ସମସ୍ତଙ୍କ ଆଗରେ ଖୁବ୍ ପ୍ରଶଂସା କଲେ ଆଉ ପଚାରିଲେ ତୁ ଯାମିନୀ ବାବୁଙ୍କ ବିରୁଦ୍ଧରେ କଣ ଜାଣୁ କହ। ମୁଁ କହିଲି ସାର୍ ମୁଁ ଯାହା ଜାଣେ ବୋଲି ଭାବୁଥିଲି ସେ ସବୁ ଆପଣଙ୍କ ଆଗରେ ପଡ଼ିସାରିଲାଣି ମୁଁ ଆଉ ଅଧିକ କ'ଣ କହିବି ?

ମୁଁ ଦେଖିଲି Dr. K.M. Rayଙ୍କ ଟେବୁଲ ଉପରେ ଅଫିସର ଫାଇଲପତ୍ର ସବୁ ଗଦା ହେଉଛି। ହାରାଚାନ୍ଦ, ଗୁଣନିଧି ବସିଛନ୍ତି। ଅନ୍ୟାନ୍ୟ ମେଡ଼ିକାଲ ଛାତ୍ର ବସିଛନ୍ତି

ମୁଁ ବା ସେଠି କ'ଣ? ସବୁ ଗଳତି ତ ପଦାରେ ପଡ଼ିଲାଣି ପୁଣି ପ୍ରମାଣ ସହ। ଆଉ ହଲ୍‌ଚଲ୍ ହବାର ବାଟ ନାହିଁ।

ମୁଁ କୌଣସି ପ୍ରକାରେ Dr. K.M. Rayଙ୍କ ପାଖରେ ସଂକ୍ଷେପରେ କଥା କହି ଖସି ଆସିଲି। କାରଣ ମୁଁ ଦେଖୁଛି ଏଣେ ମାଇଲେ ଗୋହତ୍ୟା, ତେଣେ ମାଇଲେ ବ୍ରହ୍ମହତ୍ୟା। ମୁଁ ଯଦି ଯାମିନୀ ବାବୁଙ୍କ ବିରୁଦ୍ଧରେ ସାକ୍ଷୀ ହଉଛି, ତେବେ ବାବା ରାଗିବେ। ପୁଣି ଏଣେ ଯଦି ଯାମିନୀ ବାବୁଙ୍କ ବିରୁଦ୍ଧରେ କିଛି ନକହି ଚୁପ୍ ରହୁଛି ଡ଼ା:କ୍ଷେତ୍ରମୋହନ ରାୟ ମୋ ଉପରେ ବିରକ୍ତ ହେବେ। ଏପରି ଅବସ୍ଥାରେ ଡା:କ୍ଷେତ୍ରମୋହନ ରାୟଙ୍କଠାରୁ କୌଣସି ପ୍ରକାରେ ବିଦାୟ ନେଇ ଯେତେବେଳେ ଘରକୁ ଫେରେ ବାଟରେ ଭାବିଲି ଉଭୟ ରାମ ମୋତେ ଡାକି ନେଇ କି ବିପଦରେ ପକେଇଲେ। ପୁଣି ଭାବିଲି ଯାମିନୀ ବାବୁଙ୍କୁ ଏ ଭଳି ଦଣ୍ଡ ହେବା ଦରକାର।

ଦୁଷ୍ଟର ଦମନ ପାଇଁ ତ ଭଗବାନ ଯୁଗେ ଯୁଗେ ଅବତାର ଗ୍ରହଣ କରିଛନ୍ତି। ଘରେ ପହଞ୍ଚି ବାବାଙ୍କୁ କହିଲି ଯାମିନୀ ବାବୁଙ୍କ ଅବସ୍ଥା ଅତି ଗୁରୁତର, ତାଙ୍କର ଚାକିରି ରହେ କି ନା ସନ୍ଦେହ। ବାବା ଆଶ୍ଚର୍ଯ୍ୟ ହେଇ ପଚାରିଲେ କାହିଁକି? ମୁଁ କହିଲି ସେମିତି କାମ କରିଛନ୍ତି।

ବାବା ପୁଣି କହିଲେ ଯାମିନୀଟା ତ ଭଲ ମଣିଷ ଥିଲା, କ'ଣ ଏମିତି କଲା। ମୁଁ କହିଲି ହଁ ଯାମିନୀ ବାବୁ ତ ଭଲ ମଣିଷ, ଏଇବାର ଜାଣିବ। ମୁଁ ତାଙ୍କ ବିରୁଦ୍ଧରେ କହିଲେ ମୋ ଉପରେ ରାଗୁଥିଲ ଏଥର ଭଲ ମଣିଷ କି ମନ୍ଦ ମଣିଷ ଜଣା ପଡ଼ିବ ଯେ।

ଯାମିନୀ ବାବୁଙ୍କ ବିରୁଦ୍ଧରେ ଏ ସବୁ ଘଣ୍ଟାଚକଟା ଫଳରେ ଯାମିନୀ ବାବୁ ଶେଷ ପର୍ଯ୍ୟନ୍ତ ଜେଲ୍ ଗଲେ, ତାଙ୍କର ଚାକିରି ଗଲା, ସେ ମେଡ଼ିକାଲ୍‌ରୁ ବିଦାୟ ନେଲେ।

ଏଥି ମଧ୍ୟରେ ସାନ ଭିଣେଇ I.A. ପରୀକ୍ଷା ଦେଇ ତାଙ୍କର ମେସ୍‌ରୁ ବିଦାୟ ନେଇ ଆମ ବସାରେ ଆସି ରହିଲେ। ଅତି ନିରବ ଲୋକ। ଗପ ହେଲା ତ ହେଲା ନଚେତ୍ ଭଲ ବହି ଖଣ୍ଡେ ଧରେଇ ଦେଲେ ଆଉ କିଛି ଗପ କରିବାର ଦରକାର ନାହିଁ। ସେ ବହି ଖଣ୍ଡକ ନିରବରେ ବସି ପଢ଼ିଲେ, ଆମେ ଆମ କାମରେ ଲାଗିଲୁ। ମଣିଷ ଜଣେ ଘରେ ଅଛି ବୋଲି ଜଣା ଯାଏ ନାହିଁ। ଦିନ ୪ଟା ବେଳେ ତାଙ୍କୁ ସାଙ୍ଗରେ ନେଇ ମେଡ଼ିକାଲ ପଡ଼ିଆକୁ ଯାଏ। ତାଙ୍କୁ ଗୋଟିଏ ଜାଗାରେ ବସେଇ ଦେଇ ମୁଁ ବଲ୍ ଖେଳେ ପୁଣି ବଲ୍ ଖେଳି ସାରିଲେ ସାଙ୍ଗରେ ନେଇ ଘରକୁ ଆସେ। ସେ ପ୍ରାୟ ମାସେ ଖଣ୍ଡ ରହିଲା ପରେ ତାଙ୍କ ଗାଁ କୁ ଗଲେ। ସାନଭଉଣୀ ଆମ ଘରେ ରହିଲା କାରଣ ତା'ର ରୋଗର ଚିକିତ୍ସା ପାଇଁ। ତା'ର ରୋଗ ପ୍ରାୟ ବଢ଼ିବାକୁ ଲାଗିଲା। ତା'ର ରୋଗ ତ ବିବାହ ପୂର୍ବରୁ ଆରମ୍ଭ ହୋଇଥିଲା। ତା'ର ରୋଗର ଲକ୍ଷଣ ବିଷୟରେ ଏଥି ପୂର୍ବେ ଲେଖିଛି।

ମୁଁ ଲେଖା ଲେଖି ବନ୍ଦ କରି ଦେଇଥିଲି। 4th year ହେଲାରୁ ପୁଣି ଲେଖାଲେଖି ଆରମ୍ଭ କଲି। ମନରେ ଟିକିଏ ସାହସ ହେଲା 4th year ଯେତେବେଳେ ହେଲାଣି ଥରେ ଦି'ଥର ଫେଲ୍ ହେଲେ ମଧ୍ୟ ଯେମିତି ହେଲେ ପାସ୍ କରିବି। ସେଇ ଦୀର୍ଘକାଳ ପୂର୍ବେ ବାବା କହିଥିଲେ ଯିଏ ଲେଖାଲେଖିରେ ମନ ଦବ ତା'ର ପାଠ ହବ ନାହିଁ। ସେଇ କଥା ମୋ ମନରେ ଗୋଟାଏ ଦାଗ ପରି ରହି ଯାଇଥିଲା। ଏଣୁ ମୁଁ medicalରେ ପଢ଼ିବା ଦିନୁ ଲେଖାଲେଖି ବନ୍ଦ କରି ଦେଇଥିଲି। ବାବାଙ୍କର ସେଇ କଥା ଯୋଗୁଁ ମନେ ମନେ ଭାବିଲି ରେଭେନ୍‌ସା କଲେଜରେ I.Sc.ପଢ଼ିବା ବେଳେ ଲେଖାଲେଖି କରୁଥିଲି। ତାରି ଫଳରେ ଆଉ I.Sc.ରେ ଅକୃତକାର୍ଯ୍ୟ ହେଲି କି। ଏମିତି ଧାରଣା ଯୋଗୁଁ medicalରେ ପଢ଼ିବାଦିନୁ ଲେଖାଲେଖି ବନ୍ଦ କରିଦେଲି। ଏଥର ପୁଣି ଲେଖାଲେଖି ଆରମ୍ଭ କଲି। ପ୍ରଥମେ ଲେଖିବାକୁ ଆରମ୍ଭ କଲି କବିତା, ଛନ୍ଦମୟ କବିତା। ସେତେବେଳେ ଚନ୍ଦ୍ରମଣି ଦାସଙ୍କ ସମ୍ପାଦନାରେ ପ୍ରଗତି ପତ୍ରିକାରେ ପ୍ରଥମ କରି ଶ୍ରୀ ଶଚି ରାଉତରାୟ ଗଦ୍ୟ କବିତା ଲେଖା ଆରମ୍ଭ କରିଥାନ୍ତି। ସେ ନେଇ ଅନେକ ଆଲୋଚନା ସମାଲୋଚନା ଚାଲିଥାଏ। ମୁଁ ଏଥି ପୂର୍ବରୁ ରବୀନ୍ଦ୍ରନାଥଙ୍କ ବଙ୍ଗଳାରେ ଗଦ୍ୟ କବିତା ପଢ଼ି ସାରିଥାଏ। ରବୀନ୍ଦ୍ରନାଥ ଯେତେବେଳେ ପ୍ରଥମେ ବଙ୍ଗଳା ଗଦ୍ୟ କବିତା ଲେଖା ଆରମ୍ଭ କଲେ ତାଙ୍କ

ବିରୁଦ୍ଧରେ ମଧ୍ୟ ବଙ୍ଗଳା ପତ୍ରିକା "ଶନିବାରେର୍ ଚିଠି"ରେ ଅନେକ ସମାଲୋଚନା ପ୍ରକାଶ ପାଇଥିଲା । ତାକୁ ମଧ୍ୟ ପଢ଼ି ସାରିଥାଏ । ଶେଷକଥା ହେଲା ମୋତେ କାହିଁକି ଗଦ୍ୟ କବିତା ଲେଖିବା ଭଲ ଲାଗିଲା ନାହିଁ । ଛନ୍ଦମୟ କବିତା ଲେଖିବାକୁ ବିଶେଷ ଭଲ ଲାଗିଲା । କେତେଟା କବିତା ଲେଖିଲି, ସାଙ୍ଗସାଥୀ ପଢ଼ିଲେ ଭାରି ପ୍ରଶଂସା କଲେ । ଅନେକ କହିଲେ ତୁମେ କ'ଣ କବିତା ଲେଖିପାର ? ଏତେଦିନ ଆମ ସାଙ୍ଗରେ ପଢ଼ିଲଣି ଆମେ ତ କାହିଁ ଜାଣି ନଥିଲୁ ।

ସେ କବିତା ସବୁକୁ ଖଣ୍ଡିଏ ଛୋଟ ଖାତା କିଣି ଭଲ ଭାବରେ ଲେଖି ରଖିଲି । ଏହି କବିତାଗୁଡ଼ିକୁ ପଢ଼ି ଜଣେ ମୋର ସହପାଠୀ କୃତ୍ତିବାସ ସାହୁ ମୋତେ କହିଲା ପୁଲିନ୍ ତୁମକୁ ବି.ବର୍ମାଙ୍କ ସହିତରେ ପରିଚୟ କରାଇ ଦେବି । ସେ ଲେଖାଲେଖି କରନ୍ତି ଏବଂ ତାଙ୍କ ସାଥୀରେ ଯେଉଁମାନେ ଅଛନ୍ତି ସେମାନେ ମଧ୍ୟ ଲେଖାଲେଖି କରନ୍ତି । ତାଙ୍କ ସହିତରେ ପରିଚିତ ହେଲେ ତୁମର ଲେଖାଲେଖି ଦିଗରେ ଆହୁରି ଭଲ ହେବ । ମୁଁ ମଧ୍ୟ ଏ ପ୍ରସ୍ତାବରେ ଆଗ୍ରହ ପ୍ରକାଶ କଲି । କୃତ୍ତିବାସ ସାହୁ ସେତେବେଳେ ବି.ବର୍ମାଙ୍କ କଟକସ୍ଥ ରାଣୀହାଟ ବସାରେ ରହି ମେଡ଼ିକାଲରେ ପଢୁଥାଏ । ଦିନେ ସନ୍ଧ୍ୟାପରେ କୃତ୍ତିବାସ ସାହୁ ସହିତରେ ମୋର କବିତା ସବୁକୁ ନେଇ ବି.ବର୍ମାଙ୍କ ବସାକୁ ଗଲି । ବି.ବର୍ମା ସେତେବେଳେ ରହୁଥାନ୍ତି ରାଣୀହାଟରେ ଯେଉଁଠି ସେତେବେଳେ Crown Medical Hall ଥିଲା । ତା'ରି ପାଖ ଦେଇ ଶଗଡ଼ିଆ ସାହିକୁ ଯେଉଁ ଗଳି ରାସ୍ତା ଯାଇଛି ସେହି ଗଳିରେ ଗୋଟିଏ ଦୋତାଲା କୋଠାଘରେ ବି.ବର୍ମା ଉପର ମହଲାରେ ରହନ୍ତି । କୃତ୍ତିବାସ ସାହୁ ତଳ ମହଲାରେ ଗୋଟିଏ ବଖରାରେ ରହି ପଢୁଥାଏ ।

ବି.ବର୍ମା ଦୋତାଲା ଉପରେ ଖଣ୍ଡିଏ ଆରାମ ଚୌକିରେ ବସିଥିଲେ । ପାଖରେ ଜ୍ଞାନୀନ୍ଦ୍ର ବର୍ମା ଖଣ୍ଡେ ଚୌକିରେ ବସିଥାନ୍ତି । ମୁଁ କୃତ୍ତିବାସ ସାହୁ ଉଭୟେ ଯାଇ ଦୋତାଲା ଉପରେ ବି.ବର୍ମାଙ୍କୁ ଭେଟିଲୁ । ନମସ୍କାର ଜଣେଇଲୁ । ବି.ବର୍ମା ବସିବାକୁ କହିଲେ, ବସିଲୁ । ମୋର କବିତା ସବୁକୁ ବି.ବର୍ମା ଏବଂ ଜ୍ଞାନୀନ୍ଦ୍ର ବର୍ମା ପଢ଼ିଲେ । ମୋତେ ଆହୁରି ଲେଖିବାକୁ କହିଲେ । ପ୍ରଥମ ପରିଚୟରେ ଯେମିତି କେତେକ କଥା ପଚରାଉଚରା ହୁଅନ୍ତି ସେମିତି ପରସ୍ପର ମଧ୍ୟରେ ପରିଚିତ ହେଲୁ । ସେ ଜାଣିଲେ ମୋ ଘର ହେଉଛି କଟକ ଜିଲ୍ଲା ଅସୁରେଶ୍ୱର ଦୀକ୍ଷିତପଡ଼ାରେ । ମୁଁ ଜାଣିଲି ବି.ବର୍ମାଙ୍କ ଘର କୁସୁପୁର । ଉଭୟେ ବିଶେଷ ଆନନ୍ଦ ଅନୁଭବ କଲୁ । ବି.ବର୍ମାଙ୍କୁ ପ୍ରଥମ ଦେଖାରେ ଅତି ଆପଣାର ବୋଲି ମନେ ହେଲା । ଅତି ଅମାୟିକ ଲୋକ, ମିଷ୍ଟଭାଷୀ । ପ୍ରଥମ ଦେଖାରେ ସେଦିନ ଅବଶ୍ୟ ଏତେ ଖୋଲାଖୋଲି ଗପ ହୋଇ ପାରିଲାନି । ପ୍ରଥମ ଦେଖାରେ ଯେମିତି ଟିକିଏ ଲଜ୍ଜାବୋଧ ହୁଏ, ଟିକିଏ ଉଭୟ ପକ୍ଷରୁ ସଂଯତ ଭାବ ସେମିତି ଲାଗିଲା । କୃତ୍ତିବାସ ସାହୁ ମୋତେ ବି.ବର୍ମାଙ୍କ ସହିତରେ ପରିଚୟ କରାଇ ଦେଇ ଅଳ୍ପ ସମୟ ଗପ କରି ତଳମହଲାକୁ ଚାଲିଗଲା । ମୁଁ ଆହୁରି ଅନେକ ସମୟ ବସି ଗପ କରି ସେଦିନ ବିଦାୟ ନେଇ ଆସିଲି ।

କଟକରେ ଗୋଟାଏ exhibitionରେ ବି.ବର୍ମାଙ୍କ ଅଙ୍କିତ କେତେଗୁଡ଼ିଏ ଚିତ୍ର ଦେଖି ମୁଁ ଆନନ୍ଦରେ ବିହ୍ୱଳ ହୋଇ ଯାଇଥିଲି । ମନହେଉଥିଲା ଥରେ ତାଙ୍କୁ କେମିତି ଦେଖନ୍ତି । ଆଜି ଦେଖି ତାଙ୍କ ସଙ୍ଗେ ପରିଚିତ ହେଇ ଯାହା ଆନନ୍ଦ ଅନୁଭବ କଲି ତା' ଲେଖି ବୁଝେଇ ହବନି ।

ସେହି ପ୍ରଥମ ପରିଚୟ ଦିନଠୁ ଦୈନିକ ଯେତେବେଳେ ହେଲେ ଥରେ ବି.ବର୍ମାଙ୍କ ବସାକୁ ଯାଇ କିଛି ସମୟ ତାଙ୍କ ସହିତ ଗପ କରି ଆସିବା ମୋର ଗୋଟାଏ ଅଭ୍ୟାସରେ ପରିଣତ ହେଇଗଲା । ଯେକୌଣସି କାରଣରୁ ନଯାଇ ପାରିଲି ଭାରି ଅସ୍ୱସ୍ତି ଜଣାଯାଏ । ମନ ଭିତରେ ଯେତେ ଦୁଃଖ ଥାଉ ଥରେ ବି.ବର୍ମାଙ୍କ ପାଖରେ ଯାଇ ବସି ଗପ କରି ଆସିଲେ ସବୁ ଦୁଃଖ ମନରୁ ନିଷ୍କାସନ ହୋଇଯାଏ ।

ବି.ବର୍ମା ଦୋତାଲା ଉପରେ ଥାନ୍ତି । ଅଧିକାଂଶ ସମୟରେ ଚୌକିରେ ବସିଥାନ୍ତି । ସାମନାରେ ଖଣ୍ଡେ ଟେବୁଲ୍ ତା'ଉପରେ ଗୋଟିଏ ଦର୍ପଣ ଥୁଆ ହେଇଥିବ । ସେ ଦର୍ପଣକୁ ଦେଖି ଦାନ୍ତ ଖୁଣ୍ଟା ହଉଥିବ । ମୁଁ ଯାଇ

ପହଞ୍ଚିଗଲେ ଦାନ୍ତ ଖୁଣ୍ଟା ବନ୍ଦ ହେଇ ଆରମ୍ଭ ହେଲା ଗପ । ସେ ଗପର କିଛି ଆଦି ଅନ୍ତ ନାହିଁ । କଳା, ସାହିତ୍ୟଠୁଁ ଆରମ୍ଭ କରି ରାଜନୀତି ପୁଣି ରାଜନୀତିଠୁଁ ନିଜ ନୀତି ଏମିତି ଗୁରାଏ ଗପ ହୁଏ । ପାନଖିଆ, ପୁଣି ଗପ ସେଇଠୁଁ ଘରକୁ ଫେରେ । ବି.ବର୍ମାଙ୍କର ମନରେ ଯେତେ ଦୁଃଖ ଥାଉ ପ୍ରଥମେ ଯାଇ ତାଙ୍କ ପାଖରେ ପହଞ୍ଚିଗଲେ ଆଗେ ହସ, ତାପରେ ବାକ୍ୟାଳାପ । ମୁଁ ଗୋଟାଏ ଗୋଟାଏ ହସର କଥା କହିଲେ ବି.ବର୍ମା ଏତେ ହସନ୍ତି ଯେ ତାଙ୍କ ଆଖିରୁ ପାଣି ଗଡ଼ି ପଡ଼େ ।

ମୋର ମନେ ଅଛି ସେତେବେଳେ ବି.ବର୍ମାଙ୍କ ସହିତରେ ପରିଚୟ ହବା ଅଳ୍ପ ଦିନ ହେବ । ମୋର 4th year ହେଇଥାଏ । କାଳିଆରାମ (ରାମକୃଷ୍ଣ ମିଶ୍ର)ର ମଧ୍ୟ 4th year ହୋଇଥାଏ କିନ୍ତୁ ତା'ର କିଛି ଦିନ ଆଗରୁ କାଳିଆରାମର ମୋର ମନୋମାଳିନ୍ୟ ଘଟି କଥାବାର୍ତ୍ତା ବନ୍ଦ ଥାଏ । କାଳିଆରାମର ମୋର ପ୍ରାୟ ଭେଟ ହୁଏନା, ଭେଟ ହେଲେ ମଧ୍ୟ ତା ମୁହଁ ସିଆଡ଼େ ତ ମୋ ମୁହଁ ଇଆଡ଼େ । କିନ୍ତୁ କାଳିଆରାମର ମୋର କଥାବାର୍ତ୍ତା ବନ୍ଦ ହବାଟା ଭାରି ଖରାପ ଲାଗୁଥାଏ । ମୋର ଇଚ୍ଛା ରାମ ଆଗେ କଥା କହିଲେ ମୁଁ କଥା କହିବି, ରାମ ଅପେକ୍ଷା କରିଥାଏ ମୁଁ ଆଗ କଥା କହିଲେ ରାମ କଥା କହିବ । କିନ୍ତୁ କେହି ଆଗେ କଥା ଆରମ୍ଭ କରୁନା । ଯେ ଯା'ର ଆଣ୍ଟରେ ଥାଉ । କିନ୍ତୁ ଦିନେ ଗୋଟାଏ ଘଟଣା ହେଲା ଉଭୟଙ୍କର night duty ପଡ଼ିଲା । ତା'ର ମେଡ଼ିକାଲ ୱାର୍ଡ଼ରେ ମୋର ସର୍ଜିକାଲ ୱାର୍ଡ଼ରେ । ଯେ ଯାର duty କରି ସାରି duty room ରେ ଶୋଇବାକୁ ହବ । Duty roomରେ ଦିହିଙ୍କ ପାଇଁ ଦି'ଟା bed ଥାଏ । ଯେ ଯାର duty କରି ସାରି ସେଇ room ରେ ଶୋଇଲୁ । ବଡ଼ ଖରାପ ଲାଗୁଥାଏ କାରଣ ଉଭୟଙ୍କର ଇଚ୍ଛା ଗପ କରିବାକୁ କିନ୍ତୁ କିଏ ଆଗ କଥା କହିବ । ସେ ଅପେକ୍ଷା କରିଛି ମୁଁ ମଧ୍ୟ ଅପେକ୍ଷା କରିଛି ।

ମୁଁ ମୋ bed ରେ କାନ୍ଥ ଆଡ଼କୁ ମୁହଁ କରି ଶୋଇଛି । ଏଣେ ଆଉ ନିଦ ହଉନି, ମନ ଡ଼ାକୁଛି ଗପ କରିବା । ଆମ ଦିହିଙ୍କ ଭିତରେ ବହୁତ ଦିନରୁ ବହୁତ ଗପ ଜମିଲାଣି । ରାମ, ମୁଁ ଉଭୟେ ଗପୁଡ଼ି । ବିଶେଷତଃ ହାସ୍ୟରସାତ୍ମକ ଗପ କରିବାକୁ କେହି କାହାକୁ ଊଣା ନୁହେଁ । ରାତି କ୍ରମଶଃ ଆଗେଇ ଚାଲିଲା ଆଲୁଅ ଜଳୁଛି, ପଙ୍ଖା ଘୁରୁଛି କିନ୍ତୁ ନିଦ ଆସୁନି । ଏଣେ କାନ୍ଥ ଆଡ଼କୁ ମୁହଁ କରି ଶୋଇ ମୁଁ ହସୁଛି । ଯେତେବେଳେ ରାତି ତିନିଟା ହେଲା ମୁଁ ଅନୁଭବ କଲି ରାମ ତା' bedରେ ଶୋଇ ଗୋଡ଼ ବଢ଼େଇ ମୋ ଅଣ୍ଟାରେ ଗୋଟାଏ ଗୋଇଠା ମାଇଲା । ମୁଁ ଫେରିପଡ଼ି ହସି ହସି ପଚାରିଲି କାହିଁକି ଗୋଇଠା ମାଇଲ ? ସେଇଠୁଁ ଖୋଲିଗଲା ଉଭୟଙ୍କର ଗପର ପେଡ଼ି, ଚାଲିଲା ଗପ ଯେମିତି ଦକେଇ ଘାଇ ଖୋଲିଗଲା । ବହୁତ ଦିନର ସାଇତା ଗପ । ରାତି ପାହିଲା । ସେହିଦିନ ପୁଣି ବଡ଼ଦିନ (X-mas day) । ରାମ କହିଲା ପୁଳିନ୍ ଘରକୁ ନଯାଇ ଆଜି କୁଆଡ଼େ ବୁଲିଯିବା ଚାଲ । ମୁଁ କହିଲି କୁଆଡ଼େ ବୁଲିଯିବା ? ରାମ କହିଲା ଚାଲ ଆନିକଟ ତଳକୁ ପୋଲ ଆଡ଼େ, ସେଇଠି କିଛି ବେଳଯାଏ ବସିବା, ସେଇଠି ଦାନ୍ତପତ୍ର ଘସିବା, ତା'ପରେ ଖରା ପଡ଼ିଲେ ଘରକୁ ଫେରିବା । ମୁଁ କହିଲି ହଉ, ଚାଲ ଯିବା । ଉଭୟଙ୍କର ସାଇକଲ୍ ଥାଏ କିନ୍ତୁ ରାମ ସାଇକେଲ୍‌ରେ ହାୱା ନଥାଏ । ମୁଁ କହିଲି ତୁମେ ସାଇକେଲ୍‌ରେ ଯିବ କେମିତି ଚକାରେ ତ ହାୱା ନାହିଁ । ରାମ କହିଲା ଚାଲ ମୁଁ pump ଯୋଗାଡ଼. କରିବି ।

ଆମେ ଦିହେଁ ସାଇକେଲ୍ ଗଡ଼େଇ ଗଡ଼େଇ ରାଣୀହାଟ M.E.School ଆଡ଼େ ଗଲୁ । ସେତେବେଳେ ରାଣୀହାଟ M.E.School Hind Cinemaର ପଛପଟେ ଗୋଟିଏ ଆମ୍ବତୋଟା ଭିତରେ ଗୋଟିଏ ପକ୍କା ଧାଉଡ଼ି ଘରେ ହଉଥାଏ । ସେଠି ଜଣେ ଭଦ୍ରଲୋକ, ବୋଧହୁଏ M.E.Schoolର ଜଣେ ଶିକ୍ଷକ ହେବେ, ଖଣ୍ଡେ ଦାନ୍ତକାଠି ଧରି ଦାନ୍ତ ଘଷୁ ଘଷୁ ବୁଲୁଥିଲେ । ସେ ଆମର ଅପରିଚିତ କିନ୍ତୁ ରାମ ତାଙ୍କୁ ଯାଇ ପଚାରିଲା ଆଜ୍ଞା ସାଇକେଲ୍ pump ଟିକିଏ ଦେବେ କି ? ମୋ ସାଇକେଲ୍‌ରେ ଟିକିଏ pump ଦେଇଥାନ୍ତି ।

ସେ ଭଦ୍ରଲୋକ ମନା କଲେ pump ନାହିଁ । ରାମ ତାଙ୍କୁ ଥଟ୍ଟା କରି କହିଲା ଆଜି ବଡ଼ଦିନ ପରାଦିନେ

ଆପଣ ସକାଳଟାରୁ ପବନ ଟିକିଏ ଦବାକୁ ମନା କଲେ।

ସେଠୁ ଆମେ ଦୁହେଁ ଚାଲି ଚାଲି ଗଲୁ ଯୋବ୍ରା ବଜାରକୁ। ସେଠି ସକାଳୁ ଜଣେ ପରିବା ଦୋକାନୀ ତା'ର ଦୋକାନ ଖୋଲୁଥିଲା। ଟୋକାଟାଏ, ତାକୁ ରାମ କହିଲା ଦେଖ, ଆମର ଏ ଦି'ଟା ସାଇକେଲ୍ ରହିଲା। ଆମେ ଆସିଲେ ପରିବା ନବୁ। ସେ ଦୋକାନୀ ଭାବିଲା ବାବୁମାନେ ସତରେ ପରିବା ନେବେ। ଏଣୁ ସେ ଲୋଭରେ ସାଇକେଲ୍ ଦି'ଖଣ୍ଡର ଦାୟିତ୍ୱ ନେଲା। ମୁଁ, ରାମ ଉଭୟେ ଆମର ଦି'ଖଣ୍ଡ ସାଇକେଲ୍‌କୁ ତା'ଦୋକାନ ଖୁଣ୍ଟରେ ଡେ଼ରି ଦେଇ ଚାଲିଗଲୁ।

ଉଭୟଙ୍କର ସାଇକଲ୍‌ରେ ତାଲା ପକେଇବାର ସୁବିଧା ନଥାଏ। ସେତେବେଳେ ମଧ୍ୟ ଆଜିକାଲି ପରି ଏତେ ସାଇକଲ୍ ଚୋରି ହଉ ନଥିଲା। ଯେଉଁଠି ସେଠି ସାଇକଲ୍ ଥୋଇ ଦେଇ ଗଲେ କେହି ନଉ ନଥିଲେ କିମ୍ବା ଯଦି କେହି ନକହି ନେଇଗଲା ସେ ଆଣି ପୁଣି ସେ ଜାଗାରେ ଥୋଇ ଦଉଥିଲା।

ଆମେ ଦିହେଁ ସାଇକଲ୍ ରଖି ଦେଇ ମହାନଦୀର ଆନିକଟ୍ ତଳକୁ ଗୋଟାଏ ଜାଗାରେ ମହାନଦୀର ବାଲିକୁ ଗଡ଼ି ଚାଲି ଚାଲି ଯାଇ ରେଲ୍ ପୋଲର ଗୋଟାଏ ଖୁଣ୍ଟର ଅଳ୍ପ ଦୂରରେ ବାଲିରେ ବସିଲୁ। ସେଠି ମହାନଦୀର ଧାରେ ପାଣି ବୋହି ଚାଲିଥାଏ। ସେଥିରେ କେତେଟା ପିଲା ବାଡ଼େଇ କଚାଡ଼ି ହେଉଥାନ୍ତି। ଗପ କରୁ କରୁ ମୁଁ ରାମକୁ କହିଲି ମୋର ବି.ବର୍ମାଙ୍କ ସହିତରେ ପରିଚିତ ହବାର ଘଟଣା। ରାମର ବି.ବର୍ମାଙ୍କ ସହିତରେ ଆଗରୁ ପରିଚୟ ଥିଲା। ରାମ କହିଲା ପୁଳିନ୍ ଆଜି ଏଠୁ ଯାଇ ବି.ବର୍ମାଙ୍କ ବସାକୁ ଯିବା। ସେଠି ତାଙ୍କର ସବୁ ଛବି ଗୁରା ଦେଖିବା। ମୁଁ ରାଜି ହେଲି। କିଛି ସମୟ ବସିଲା ପରେ ଖରା ପଡ଼ିଲା, ଶୀତ, କୁହୁଡ଼ି ଛାଡ଼ିଗଲା। ଆମେ ପୁଣି ଯୋବ୍ରା ବଜାରକୁ ଫେରିଲୁ। ମହାନଦୀ ବାଲିରୁ ବନ୍ଧ ଉପରକୁ ଉଠିଲା ବେଳକୁ ରାମ କହିଲା ପୁଳିନ୍ କ'ଣ ଖାଇଲେ ହୁଅନ୍ତା, ମୁଁ କହିଲି କ'ଣ ଖାଇବା, ଆମ ଦି'ଜଣ ଖାଇଲା ଭଳି ପଇସା କାହିଁ।

ରାମ ପଚାରିଲା ତମ ପାଖରେ କେତେ ପଇସା ଅଛି? ମୁଁ କହିଲି ନ'ଟା ପଇସା। ରାମ କହିଲା ଏ ତ ଯଥେଷ୍ଟ। ମୁଁ କହିଲି କେମିତି? ଆମ ପରି ଯୋଡ଼ାଏ ଭେଣ୍ଡିଆ ନ'ଟା ପଇସାରେ କ'ଣ ଖାଇବା ଯେ ପେଟ ପୂରିବ। ରାମ ଉତ୍ତରରେ କହିଲା ଦେଖ, ମୁଁ ତୁମକୁ ବୁଝେଇ ଦଉଛି ବରା ଖାଇଲେ ପଇସାକୁ ଦି'ଖଣ୍ଡ ହିସାବରେ ଅଠର ଖଣ୍ଡ ହବ ଆଉ ଗୁଲୁଗୁଲା ଖାଇଲେ ପଇସାକୁ ଚାରିଟା ହିସାବରେ ଛତିଶଟା ହବ କିନ୍ତୁ ଦେଖ ଆମେ ଗୁଲୁଗୁଲା କି ବରା ଯାହା ଖାଇବା ତୁମେ କାହା ଆଗରେ କହିବ ନାହିଁ।

ରାମର ଏ ବିଷୟରେ ମୋତେ ସତର୍କ କରେଇବାର କାରଣ ହେଲା ସେତେବେଳେ ମେଡ଼ିକାଲ ଷ୍ଟୁଡ଼େଣ୍ଟ ବରା, ଗୁଲୁଗୁଲା, ଚକୁଳି, ଚୂଡ଼ା ଇତ୍ୟାଦି ଖାଇବା ଅତି ନିକୃଷ୍ଟ କଥା, ଲଜ୍ଜାର କଥା। ଆମେ ଘରେ ରହି ପଢୁଥାଉ ବୋଲି ସବୁ ରକମ ଖାଉଥାଉ କିନ୍ତୁ ମେଡ଼ିକାଲ ହଷ୍ଟେଲ୍‌ରେ ଯେଉଁମାନେ ପଢୁଥାନ୍ତି ସେମାନେ ସେତେବେଳେ ଯେଉଁ ଜଳଖିଆ କରୁଥାନ୍ତି ବର୍ତ୍ତମାନର ଜଣେ ଉଚ୍ଚବେତନଭୋଗୀ କର୍ମଚାରୀ ପକ୍ଷରେ ଅସମ୍ଭବ। ସେତେବେଳେ ମେଡ଼ିକାଲ ଷ୍ଟୁଡ଼େଣ୍ଟମାନଙ୍କ ଯୋଗୁଁ ରାଣୀହାଟର ଗୁଡ଼ିଆ ଦୋକାନୀ, ପାନ ଦୋକାନୀ, ପରିବା ଦୋକାନୀ, ଚାଉଳ, ଡାଲି ଦୋକାନୀ ଧନୀ ହୋଇ ଯାଇଛନ୍ତି।

ଆମେ ଦିହେଁ ରାସ୍ତାରେ ଆସୁ ଆସୁ ଦେଖିଲୁ ଗୋଟିଏ ବୁଢ଼ୀ ବସି ଚକୁଳି ତିଆରି କରୁଛି। ବୁଢ଼ୀଟି ଭାରି ପରିଷ୍କାର। ଚକୁଳି ଦେଖି ଆମର ଭାରି ଲୋଭ ହେଲା, ଶୀତର ସକାଳକୁ ଗରମ ଚକୁଳି। ଆମେ ଦିହେଁ ଯାଇ ବୁଢ଼ୀକୁ ପଚାରିଲୁ ମାଉସୀ ଚକୁଳି କରୁଛ କି? ବୁଢ଼ୀ ଆମକୁ ଦେଖି ଭାରି ଖୁସି ହେଇ କହିଲା ହଁ ଲୋ ବାପ ଖାଇବୁ କି? ଆମେ କହିଲୁ ହଁ। ବୁଢ଼ୀ ଆନନ୍ଦରେ ଗଦ୍‌ଗଦ୍ ହେଇ କହିଲା ହଉ ବ' ଲୋ ବାପ ବ' ସେଇଟି ପିଢ଼ା ଦି'ଖଣ୍ଡ ଅଛି। ସେଇଥିରେ ବ। ବୁଢ଼ୀ ଗୋଟାଏ ଥାଳିରେ ଗରମ ଚକୁଳି କେଇ ଖଣ୍ଡ ଆଉ ଫୁଲକୋବି ଦଣ୍ଡା ତରକାରୀ କିଛି ଆମକୁ ଖାଇବାକୁ ଦେଲା। ବୁଢ଼ୀଟି ଭାରି ସରଳ ପ୍ରକୃତିର, ସ୍ନେହୀ। ଚକୁଳି

ତରକାରୀ ଖାଇବା ବେଳେ ବୁଢ଼ୀ ବ୍ୟବହାରରେ ମନ ଆନନ୍ଦରେ ଭରି ଉଠିଲା ।

ବୁଢ଼ୀ କହିଲା ବାପ ତମେ ହିସାବ ରଖ ମୁଁ କିଛି ହିସାବ ରଖି ପାରିବି ନାହିଁ । ବୁଢ଼ୀ ଖଣ୍ଡିଏ ଖଣ୍ଡିଏ ଗରମ ଚକୁଳି କରି ଦଉଛି ଆମେ ଖାଉଛୁ ପୁଣି ତା'ସାଙ୍ଗକୁ ଟିକାଏ ଟିକାଏ ତରକାରୀ ଢାଳୁଥାଏ କି ସୁଆଦ । ଶେଷରେ ଆମେ ହିସାବ କଲୁ ଅଠରଖଣ୍ଡ ଚକୁଳି ଖାଇଲୁ ନ'ଟି ପଇସା ଦେଇ ଆସିଲୁ । ସେଇଥିରେ ବୁଢ଼ୀ ଭାରି ଖୁସି । ଆମେ ବୁଢ଼ୀଠୁଁ ବିଦାୟ ନେଇ ଯେତେବେଳେ ବାହାରକୁ ଆସିଲୁ ଦିହେଁ ହସିଲୁ କାରଣ ନ' ପଇସାକୁ ଅଠର ଖଣ୍ଡ ଚକୁଳି । ବୁଢ଼ୀ ସେଇଥିରେ ଖୁସି ।

ରାମ ଯେଉଁ ପରିବା ଦୋକାନରେ ତା'ର, ମୋର ସାଇକଲ୍ ରଖେଇଥିଲା ସେଠୁଁ ବେଶ୍ ଗମ୍ଭୀର ଭାବରେ ଆମେ ଦିହେଁ ସାଇକଲ୍ ନେଇ ଚାଲି ଆସିଲୁ । ପରିବା ଦୋକାନୀ ବିଚାରା ଆଶାରେ ବସିଥିଲା, ବାବୁମାନେ ପରିବା ନେବେ । ବାବୁମାନଙ୍କ ହାତରେ ଯେ ଖଡ଼ା ନାହିଁ, ନ'ପଇସାକୁ ଅଠର ପଟ ଚକୁଳି ଖାଇଲାବାଲା, ସେ କଥା କ'ଣ ଜାଣିଛି ?

ଆମେ ଦିହେଁ କିଛି ବାଟ ଆସି ଗୋଟାଏ ମରାମତି ଦୋକାନରୁ pump ମାଗି ତା'ର ସାଇକଲ୍‌ରେ pump ଦେଲା । ସେତେବେଳେ କଟକ ଟାଉନ୍‌ରେ ସାଇକଲ୍‌ରେ pump ଦବା ପାଇଁ pump ମାଗିଲେ ସାଇକେଲ୍ ଦୋକାନୀ ଆଜି କାଲି ପରି ପଇସା ମାଗୁ ନଥିଲେ ।

ମୁଁ ରାମ ଉଭୟେ ସାଇକଲ୍‌ରେ ଯାଇ ରାଣୀହାଟରେ ବି.ବର୍ମାଙ୍କ ବସାରେ ପହଞ୍ଚିଲୁ । ବି.ବର୍ମା, ଜ୍ଞାନୀନ୍ଦ୍ର ବର୍ମା ଉଭୟ ଥିଲେ । ବି.ବର୍ମା ମୋତେ ଆଉ ରାମକୁ ଦେଖି ଆନନ୍ଦରେ ଗଦ୍‌ଗଦ୍ ହୋଇପଡ଼ିଲେ । ଆମେ ଦିହେଁ ଅନୁରୋଧ କଲୁ ଆମେ ଆପଣଙ୍କର ସବୁ ଛବି ଗୁଡ଼ିକ ଦେଖିବୁ ।

ବି.ବର୍ମା ଆହୁରି ଆନନ୍ଦିତ ହୋଇ କହିଲେ ହଉ ବସନ୍ତୁ । ଆମେ ଦୋତାଲା ଉପରେ ବାହାରେ ବସିଲୁ । କିଛି ସମୟ ପରେ ବି.ବର୍ମା ଆମ ଉଭୟଙ୍କୁ ଡ଼ାକିଲେ ଭିତରକୁ ଆସନ୍ତୁ । ମୁଁ, ରାମ ଉଭୟେ ଛବି ସବୁ ଦେଖି ତନ୍ମୟ ହେଇଗଲୁ । କି ସୁନ୍ଦର ! ପଲ୍ଲୀବଧୂ, ପୌଷ ପ୍ରଭାତ, ସନ୍ଧ୍ୟା, ଗୋଧୂଳି ରାଗିଣୀ, ଶୂନ୍ୟ ଓ ପୂର୍ଣ୍ଣ, ବୋଇତ ବନ୍ଦାଣ, ଅର୍ଦ୍ଧ ଶତାବ୍ଦୀ ପରେ, କରୀ ଓ କମଳ ଇତ୍ୟାଦି । ପୁଣି ବଙ୍ଗଳା ପତ୍ରିକା "ଶନିବାରେର ଚିଠି"ରେ ଦେଖିଲୁ ବି.ବର୍ମାଙ୍କର ଅର୍ଦ୍ଧ ଶତାବ୍ଦୀ ବର୍ଷ ପରେ ଛବିର ଉଚ୍ଚକୋଟୀର ପ୍ରଶଂସା ।

ମନେ ମନେ ଭାବିଲୁ ଆଜି ବଡ଼ଦିନର ସକାଳବେଳଟା ଖୁବ୍ ଆନନ୍ଦଦାୟକ ହେଲା । ମୁଁ ବି.ବର୍ମାଙ୍କର ଛବି ସବୁ ଦେଖି ମନେ ମନେ ଭାବିଲି ଯା'ର କଳା ପ୍ରତି ଆଗ୍ରହ ନଥିବ, ଯେ କଳାପ୍ରେମୀ ହେଇଥିବ ସେ ଚିର କାଳ ବି.ବର୍ମାଙ୍କର ଶତ୍ରୁ ହେଇ ରହିପାରିବନି ।

ଛବି ସବୁ ଦେଖି ସାରି ବି.ବର୍ମାଙ୍କ ସହିତରେ କିଛି ସମୟ ଗପ କରି ତାଙ୍କଠୁଁ ବିଦାୟ ନେଇ ଆମେ ଉଭୟେ ଯେ ଯା ଘରକୁ ଫେରିଲୁ ।

ସାନଭଉଣୀର ରୋଗ ବିଷୟରେ ଯାହା ଆଗରୁ ଲେଖିଥିଲି ସେ ରୋଗ କ୍ରମଶଃ ପୁଣି ଗୁରୁତର ଆକାରରେ ଦେଖାଦେଲା । ସେମିତି କିଛି ସମୟ ପାଇଁ ଜୋର୍‌ରେ ଛାତି ଧଡ଼ପଡ଼ ହେବା, ମୁହଁ ନେଳି ପଡ଼ିଯିବା, ପୁଣି କିଛି ସମୟ ପରେ ସବୁ ଠିକ୍ ହେଇଯାଏ । ସୁସ୍ଥ ଭାବ ଆସେ, ରାତିରେ ଭଲ ନିଦ ହୁଏ ନାହିଁ । ଅନେକ ସମୟରେ ଅସୁସ୍ଥ ଭାବ ଦେଖାଦିଏ ।

କିଛିଦିନ ପରେ ସାନ ଭିଣେଇ ତାଙ୍କର I.A. ପରୀକ୍ଷା ଦେଇ ଯେଉଁ ମେସ୍‌ରେ ଥିଲେ, ସେ ମେସ୍ ଛାଡ଼ି ଆମ ବସାରେ ଆସି ରହିଲେ । ପ୍ରାୟ ମାସେ ଖଣ୍ଡେ ରହିଲା ପରେ ତାଙ୍କ ଗାଁକୁ ଗଲେ । ଏଥି ମଧ୍ୟରେ କେତେକ କାରଣ ଯୋଗୁଁ medical student ମାନେ strike କଲେ । ପାଠପଢ଼ା ବନ୍ଦ, ward duty ବନ୍ଦ, କେବଳ ସଭା, ଆନ୍ଦୋଳନ, ରାତି ହେଲେ medical hostel ରେ ଦଳ ଦଳ ହେଇ ବସି ଗପ, ଯା'ର ଯୁଆଡ଼େ ଇଚ୍ଛା ଦଳ ଦଳ ହେଇ ବୁଲିବା ଇତ୍ୟାଦି ଚାଲିଲା । ଏ strikeରେ ପୁରୋଧା ଥିଲେ ରବି ଘୋଷ,

ନୃସିଂହ ସାମନ୍ତସିଂହାର, ମୋତିଲାଲ ତ୍ରିପାଠୀ ଓ ଆଉ ଜଣେ ଦୁଇ ଜଣ ପିଲା।

ମେଡ଼ିକାଲ ସ୍କୁଲରେ ଛାତ୍ରମାନଙ୍କ ତରଫରୁ strike ହେଲେ, strike ର ମୂଳ କାରଣ ଯେ ବୁଝିଥାଉ ଯେ ନବୁଝିଥାଉ ସମସ୍ତେ strike ରେ ଯୋଗଦେବେ। ଖାଲି ଦେବେ ନାହିଁ, ଦବାକୁ ବାଧ୍। ସମସ୍ତେ ଏକଜୁଟ, ଏକାମନ, ଏକା ହୃଦୟ। ଭାଇ ଭାଇ, ମେଡ଼ିକାଲର lady student ମାନେ ମଧ ପୁଅ ପିଲାଙ୍କ ସାଥିରେ ଏକାମନ, ଏକା ହୃଦୟ, ଏକଜୁଟ, ଭାଇ ଭଉଣୀ ପରି। ସେତେବେଳେ medical schoolର ଏକତା ଗୋଟାଏ ଆଦର୍ଶ ସ୍ଥାନୀୟ ଥିଲା। ଏମିତିକି medical hostel ଚାକର, ପୂଜାରୀ, hospitalର ବେହେରା, ମେହେନ୍ତରମାନେ ମେଡ଼ିକାଲ ଛାତ୍ରଙ୍କ ସଙ୍ଗେ ଏକଜୁଟ ହେଇ ଯାଉଥିଲେ। କେବଳ ଶିକ୍ଷକ ଗୋଷ୍ଠୀ, ଅଫିସ, କିରାଣୀ, ଚପରାସୀମାନେ ଅଲଗା ରହୁଥିଲେ। ତଥାପି, ଅଫିସ୍‌ର କେତେକ କିରାଣୀ, ଚପରାସୀ ଭିତରେ ଭିତରେ ମେଡ଼ିକାଲ ଛାତ୍ରଙ୍କୁ strikeରେ ସହଯୋଗ କରୁଥିଲେ। ବିଶେଷତଃ ଶିକ୍ଷକଗୋଷ୍ଠୀ ପ୍ରକାଶ୍ୟରେ ଅଲଗା ରହୁଥିଲେ। କିନ୍ତୁ medical student strike ଆରମ୍ଭ କଲେ ତାଙ୍କର ହୃତ୍‌କମ୍ପ ହଉଥିଲା। ଆଉ ଗୋଟାଏ କଥା ମୁଁ ଦେଖିଛି, ମେଡ଼ିକାଲରେ strike ଆରମ୍ଭ ହେଲେ ଗୋଇନ୍ଦା ବିଭାଗର କର୍ମଚାରୀମାନେ ଦଳ ଦଳ ହେଇ ମେଡ଼ିକାଲ ହତା ଭିତରେ ଲୁଚି ଛପି ଖବର ସଂଗ୍ରହ କରିବାରେ ଲାଗି ପଡୁଥିଲେ। ଏମାନେ ଲୁଚି ରହୁଥିଲେ। କୋଠା କଡ଼ରେ, ନାଳ ନର୍ଦ୍ଦମା ନିକଟରେ, ରାସ୍ତାକଡ଼ ଗଛ ଉପରେ ପୁଣି light post ତଳେ ଧୋବ ଧାଉଳିଆ ସାଜି ବସି ଗପ କରୁଥିଲେ। ଅନେକ କେବଳ ଅନ୍ଧାରୁଆ ଜାଗା ଦେଖି ଲୁଚି ରହୁଥିଲେ।

ମେଡ଼ିକାଲ ଛାତ୍ରମାନଙ୍କ ତରଫରୁ ମଧ ଦଳଦଳ ହେଇ ହାତରେ ଖଣ୍ଡେ ଖଣ୍ଡେ ଛୋଟିଆ ଛୋଟିଆ ବାଡ଼ି ଧରି ପାଖରେ ଗୋଟାଏ whistle ଏମାନଙ୍କୁ ଧରି ମାଡ଼ ଦବା ପାଇଁ ସନ୍ଧ୍ୟା ପରେ ଅଭିଯାନ ଆରମ୍ଭ ହଉଥିଲା। ଯେଉଁ ଦଳ ଯେଉଁଠି ଯେ କୌଣସି ଗୋଇନ୍ଦା ବିଭାଗ କର୍ମଚାରୀଙ୍କୁ ଧରିଲେ ସଙ୍ଗେ ସଙ୍ଗେ whistle ମାରିଲେ। ଏଣୁ ଅନ୍ୟାନ୍ୟ ମେଡ଼ିକାଲ ଛାତ୍ର ସେଠି ଯାଇ ଏକଜୁଟ ହେଇ ସେ ଗୋଇନ୍ଦା ବିଭାଗ କର୍ମଚାରୀଙ୍କୁ ହେଲା ମାଡ଼। ତା'ର ସର୍ବାଙ୍ଗ କ୍ଷତ ବିକ୍ଷତ ହେଇଗଲା ବେଳେ ପୁଣି ମାଡ଼ ପରେ ତା'କୁ କାନ ଧରି ଉଠ ବସ ହବାକୁ କୁହାଗଲା। ସେ ଉଠବସ ହେଲା ପରେ ତା'କୁ ଛାଡ଼ି ଦିଆଗଲା। ଯେ ଗୋଇନ୍ଦା ବିଭାଗ କର୍ମଚାରୀ ମେଡ଼ିକାଲ ଛାତ୍ରଙ୍କ ହାବୁଡ଼େ ଧରା ପଡ଼ିଲା ତାକୁ ମାରଜଦଶା ପଡ଼ିଲା।

ଥରେ ଗୋଟାଏ ଘଟଣା ମୋର ମନେ ଅଛି ଦିନେ ସନ୍ଧ୍ୟା ପରେ ମୁଁ medical school hostel କୁ ଯାଇଛି, କେତେକ ମେଡ଼ିକାଲ ଛାତ୍ର ଗୋଇନ୍ଦା ବିଭାଗ କର୍ମଚାରୀଙ୍କୁ ଧରିବା ପାଇଁ ବାହାରି ଗଲେ। ମୁଁ ଓ ଅନ୍ୟାନ୍ୟ ମେଡ଼ିକାଲ ଛାତ୍ର ସବୁ hostel ବାହାରେ ଅନ୍ଧାରରେ ବୁଲୁଥିଲୁ। ହଠାତ୍ ଦୂରରୁ ମେଡ଼ିକାଲ ଛାତ୍ରଙ୍କ ଆଡ଼ୁ whistle ଶବ୍ଦ ଶୁଣାଗଲା। ଆମେ ଜାଣିଲୁ କେହି ଗୋଟାଏ ଗୋଇନ୍ଦା ବିଭାଗ କର୍ମଚାରୀ ଧରା ପଡ଼ିଛି। ତେବେ whistleଟା କେଉଁ ଆଡ଼ୁ ଶୁଣାଗଲା ହଠାତ୍ ବାରି ନପାରି ଆମେ ସମସ୍ତେ ମେଡ଼ିକାଲ ସ୍କୁଲ କୋଠା ସାମନାକୁ ଗଲା ବେଳକୁ ସିଆଡ଼ୁ ଦଳେ ମେଡ଼ିକାଲ ଛାତ୍ର ଗୋଟାଏ ଗୋଇନ୍ଦା ବିଭାଗର constableକୁ ଧରି ଆସୁଛନ୍ତି। ସେ କର୍ମଚାରୀ ଖସି ଯିବା ପାଇଁ ନିରୁପାୟ।

ତା'ଉପରେ ଟର୍ଚ୍ଚ ଲାଇଟ୍ ପକେଇ ଦେଖିଲା ବେଳକୁ ଗୋଟାଏ ପୋଖତ ଗୁଣ୍ଡା ପରି ରୂପ। ବିହାରୀ ଲୋକଟାଏ। ଯୋଡ଼ାଏ ଧରା ହେଇଥିଲେ ସେଥିରୁ ଗୋଟାଏ ଖସି ଯାଇଛି। ଏ ଗୋଟାକ ଧରା ପଡ଼ିଛି। କଥା ହେଲା ତାକୁ hostel ଭିତରକୁ ନେଇ ଯାଇ, ତା ଦିହରେ ତତଲା ଲୁହାରେ ଚିହ୍ନ ଦବା। ଏଥି ମଧ୍ୟରେ ତା ମୁଣ୍ଡରେ କଠଉମାଡ଼, ପିଠି, ଗାଲ, ଛାତିରେ ବିଧା, ମୁଥ, ଚାପୁଡ଼ା ଚାଲିଥାଏ। ତାକୁ ଥୋଡ଼ା ବାଟ ହଷ୍ଟେଲ ଆଡ଼କୁ ଘୋଷାରି ଘୋଷାରି ନଉଥାନ୍ତି ପୁଣି ଠିଆ କରି ବାଡ଼ଉଥାନ୍ତି। ମୁଁ ମଧ ସାଙ୍କ ଦଳରେ ମିଶି ତାକୁ କେତେ ବିଧା, ଚାପୁଡ଼ା ମାରିଲି। ଏମିତି ମାଡ଼ ହଉ ହଉ ଲୋକଟା ଅନ୍ଧାରରେ କେମିତି ଖସିଗଲା। ଲୋକଟା ଖସି ଯାଇ

administrative block ରେ ପଶିଗଲା । ଆମେ ସବୁ ଯେ ଯାର ଯାଇ hostel ରେ ପଶିଲୁ । ଯେଉଁ ଲୋକଟା ଆଗରୁ ଖସି ଯାଇଥିଲା ସେ police stationକୁ phone ଯୋଗେ ଏଠା ଘଟଣା ଜଣେଇ ଦେଇଥିଲା । ଆମେମାନେ hostelର ଦୋତାଲା ଉପରେ ଅଛୁ ଏଇ ସମୟରେ ଗୋଟାଏ ଲରିରେ ବୋଝେଇ ହେଇ ଦଳେ ସଶସ୍ତ୍ର police ପହଞ୍ଚି administrative block ଭିତରକୁ ଗଲେ । Street light ସବୁ ଜଳି ଉଠିଲା । ଏଥି ପୂର୍ବରୁ street light ସବୁ ଜଳୁ ନଥିଲା । ମୁଁ ଦୋତାଲା ଉପରୁ ଏସବୁ ଘଟଣା ଦେଖି ମଧୁ ରାଓଙ୍କ "ଲିସବନ୍ ଭୂମିକମ୍ପ"ରୁ ଧାଡ଼ିଏ ମନେ ପଡ଼ିଲା ସମୁଦ୍ର ମାଡ଼ି ଆସୁଛି, ଆଉ ରକ୍ଷା ନାହିଁ । ଅର୍ଥାତ୍ ଆମ ଉପରେ ଦରକାର ପଡ଼ିଲେ ଗୁଳି ଚାଲିପାରେ । ସଶସ୍ତ୍ର ପୁଲିସ୍ ଲରିରେ ପହଞ୍ଚିବା ପରେ ଖଣ୍ଡେ ଦି'ଖଣ୍ଡ କାର୍ ମଧ୍ୟ ପହଞ୍ଚି ଅଫିସ୍ ଆଡ଼କୁ ଗଲା । ମୁଁ ଭାବିଲି ଗୁଳିମାଡ଼ରେ ମରିବି ତ ମରିବି କିନ୍ତୁ ଘରେ ତ କେହି ଜାଣିଲେ ନାହିଁ । କାରଣ ମୁଁ ତ ସନ୍ଧ୍ୟା ପୂର୍ବରୁ hostel କୁ ଆସିଛି । ମୋର ଭଣଜା ରବୀନ୍ଦ୍ରନାଥ ଦାସ ଏ ଗଣ୍ଡଗୋଳର ପ୍ରାରମ୍ଭରେ ଆମ ଥୋରିଆସାହି ଘରକୁ ସାଇକେଲ୍‌ରେ ଖସି ଆସି ବାବା, ମା'ଙ୍କୁ ଖବର ଦେଇ ସାରିଛି ଯେ ମାମୁଁ ଆଜି ଗୋଟାଏ ଗୋଇନ୍ଦା ବିଭାଗ କର୍ମଚାରୀଙ୍କୁ ବାଡ଼େଇଛନ୍ତି ।

ମୋତେ ଏ କଥା ଜଣା ନାହିଁ । ଆମ ଭିତରେ ହଷ୍ଟେଲ୍‌ରେ ସ୍ଥିର ହେଲା ଯେ ଯାର roomକୁ ଯାଇ ବହି ଖଣ୍ଡେ ଖଣ୍ଡେ ଧରି ପଢ଼ିବା ଭଳି ବସି ଯିବା । ସେମିତି ପଢ଼ିବା ଭଙ୍ଗିରେ ଯେ ଯାର roomରେ ବସିଗଲେ । ମୁଁ ଏବଂ ମୋ ଭଳି ଆହୁରି କେତେକ ବାହାର ପିଲାଏ ହଷ୍ଟେଲ୍‌ରେ ଥିଲେ । ଆମେମାନେ ମଧ୍ୟ ଖଣ୍ଡେ ଖଣ୍ଡେ ବହି ମେଲେଇ ଭଲ ପିଲା ଭଳି ଯେ ଯେଉଁଠି ବସିଗଲୁ । କିନ୍ତୁ ଏଣେ ଦିହ ମୁଣ୍ଡ ସବୁ ଗରମ ଲାଗୁଥାଏ ।

ଏହି ସମୟରେ ଖବର ପାଇଲୁ ଯେ ହଷ୍ଟେଲ ଆଡ଼କୁ ବଡ଼ବଡ଼ିଆ କେତେକ ଲୋକ ସବୁ ଆସୁଛନ୍ତି । ଏ ଖବର ପାଇ ମନେ ମନେ ଶଙ୍କିତ ହେଲୁ ଯେ ଆମମାନଙ୍କ ଭିତରୁ ବୋଧେ କେତେକଙ୍କୁ ଆରେଷ୍ଟ କରିବାକୁ ଆସୁଛନ୍ତି । କେତେଜଣ ସତକୁ ସତ ଆସିଲେ । ଏମାନଙ୍କ ମଧ୍ୟରେ ଥିଲେ P.L.O'Neil ତତ୍‌କାଳୀନ principal, ଡା: କାଶୀନାଥ ମିଶ୍ର hostel superintendent, S.P., D.S.P., District Magistrate, ଡ଼ା: ଧନେଶ୍ୱର ପଟ୍ଟନାୟକ ଇତ୍ୟାଦି । ଏମାନେ ପ୍ରଥମେ hostel ଉପର ମହଲାକୁ ଆସି ଆଗେ hostel common room ବୁଲି ଦେଖିଲେ । ଆମେ ସବୁ ବହି ମେଲେଇ ପଢୁଛୁ ଅତି ଭଲ ପିଲା ପରି ।

ଯେତେବେଳେ ସେମାନେ ଓଲେହି hostel ଛାଡ଼ି ଯାନ୍ତି, ପିଲାଙ୍କ ଆଡୁ ଉଠିଲା ପାଟି କାଶିଆରେ, ଧନିଆରେ ଯାବତୀୟ ଅଶ୍ଲୀଳ ଭାଷାରେ ଗାଳି । ସେମାନେ ଏ ଗାଳି ଶୁଣି ସାପ ଲାଙ୍ଗୁଡ଼ରେ ହାତ ମାଇଲେ ସେ ଯେମିତି ଫଁ ଫଁ ହେଇ ଲେଉଟି ଆସେ ସେମିତି ଦି'ତିନି ଥର ଲେଉଟି ଆସିଲା ପରି ହେଲା ବେଳକୁ ଦୋତାଲା ଉପରୁ ଗୋଟାଏ ପିଲା କିଏ ତାଙ୍କ ଉପରେ ଗୁରାଏ ପାନପିକ ଥୁକାଡ଼ି ଦେଲା । ଯା ଫଳରେ ତାଙ୍କ ସୁଟ୍ କେତେକ ରକ୍ତାକ୍ତ ହେଲା ପରି ଦେଖାଗଲା । ସେମାନେ କ'ଣ ବକାବକି କରି ବାହୁଡ଼ିଲେ ।

ଆମେ ପରେ ଜାଣିଲୁ ତାଙ୍କୁ କିଏ ଭିତିରି ଖବର ଦେଇଥିଲା ଯେ ଅମୁକ ନମ୍ବର room ରେ ପିଲାଏ ହାତ ହତିଆର ଠେଙ୍ଗା ବାଡ଼ି ଗଚ୍ଛିତ କରି ରଖିଛନ୍ତି । ସେହି room ହେଲା hostel common room । ସେଠି ଯେତେବେଳେ କିଛି ନପାଇଲେ ସେମାନେ ଫେରିଗଲେ ।

ତା'ପରେ ସେ ସଶସ୍ତ୍ର ପୁଲିସ୍ ସବୁ ଫେରିଗଲେ । କାର୍ କେତେଟା ଫେରିଗଲା । ଅବସ୍ଥା ଶାନ୍ତ ପଡ଼ିଗଲା । ମୁଁ ତା'ପରେ ଘରକୁ ଫେରିବା ପାଇଁ ବାହାରିଲାରୁ କେତେକ ପିଲା ମୋ ସହିତରେ ଆସି ମଙ୍ଗଳାବାଗ ଫାଣ୍ଡି ପର୍ଯ୍ୟନ୍ତ ଛାଡ଼ି ଦେଇଗଲେ । କାରଣ ତାଙ୍କ ପକ୍ଷରୁ ହୁଏତ କିଏ କେଉଁଠି ଲୁଚି ଛପି ମୋତେ ଆଘାତ କରିପାରେ ।

ମୁଁ ଯେତେବେଳେ ଘରକୁ ଆସେ ବାବା ମୋତେ ପଚାରିଲେ କିରେ ଆଜି କଣ ହେଲା ? ମୁଁ କହିଲି କିଛି ନାହିଁ । ସାନଭଉଣୀ କହିଲା ତୁମେ ଆଜି ଗୋଟାଏ C.I.D. କୁ ବାଡ଼େଇଛ ବୋଲି "ନେନୁ" କହିଗଲା ।

ଭଣଜା ରବୀନ୍ଦ୍ର ନାଥ ଦାସର ଡାକ ନାମ ହେଲା ନେନୁ। ତାକୁ ସମସ୍ତେ ନେନୁ ବୋଲି ଡାକନ୍ତି। ମୁଁ ସାନଭଉଣୀ ମୁହଁରୁ ଏକଥା ଶୁଣି ମନେ ମନେ ଭାରି ଲଜ୍ଜିତ ହେଲି। କାରଣ ବାବାଙ୍କ ଆଗରେ ମିଛୁଆ ହେଲି। ଆଗରୁ ମଧ ମେଡ଼ିକାଲ ହତା, ମେଡ଼ିକାଲ ହଷ୍ଟେଲରେ ପାଟିତୁଣ୍ଡ କରି କଣ୍ଠ ପଡ଼ି ଯାଇଥାଏ। ରାଗରେ ଦେହର ଉତ୍ତେଜନା ସେ ପର୍ଯ୍ୟନ୍ତ କମି ନଥାଏ। କଥା କହିବା ଢଙ୍ଗରୁ ନିଶ୍ଚୟ ମନେ ହବ ଯେ ଗଣ୍ଡଗୋଳରେ ମୁଁ ଭାଗ ନେଇଥିଲି। ଏଣୁ ବାବାଙ୍କ ଆଗରେ ଫାଙ୍କି ଦବାର କିଛି ଉପାୟ ରହିଲା ନାହିଁ। ବାବା ଏଣୁ ବକିବାକୁ ଆରମ୍ଭ କଲେ ଏଇ ସବୁ କାମ କରା ହଉଛି। C.I.D. ଜଣକୁ ମାରିବା ସହଜ କଥା ହେଉଛି? ତୋର ସେଇ ଗଣ୍ଡଗୋଳିଆ ପ୍ରକୃତି ଆଉ ଗଲା ନାହିଁ। ତୋ ଇଚ୍ଛା, ତୁ କ'ଣ କରିବୁ କରୁଥା, ଯେମିତି କରିବୁ ସେମିତି ଫଳ ପାଇବୁ। କିଏ କଣ କରିବ।

ମୁଁ ଆଉ କିଛି ଉତ୍ତର ନଦେଇ ନିରବ ରହିଲି। ଖାଇ ପିଇ ସାରି ମଧ ରାତିରେ ଭଲ ନିଦ ହେଲା ନାହିଁ। ଏ ଘଟଣାର ଦିନେ ଦି'ଦିନ ପରେ ଧର୍ମଘଟ ପ୍ରତ୍ୟାହୃତ ହେଲା। ସବୁ ସମାଧାନ ହୋଇ ଗଲା। ନିୟମିତ ଯେମିତି କାମ ଚାଲୁଥିଲା ସେମିତି ଚାଲିଲା।

ସାନଭଉଣୀ ଯେଉଁ ରୋଗରେ ଆଗରୁ ଭୋଗୁଥିଲା ସେ ରୋଗ ଆହୁରି ଉତ୍କଟ ଆକାର ଧାରଣ କଲା। ଏଣେ ପୁଣି ଗର୍ଭାବସ୍ଥା। ଆମେମାନେ ବିଶେଷ ଉତ୍କଣ୍ଠିତ ହେଇ ପଡ଼ିଲୁ ଯେ ସାନ ଭଉଣୀ ଆଉ ବଞ୍ଚିବ ନାହିଁ।

ଏଥି ମଧରେ ଘରର ଆର୍ଥିକ ଦୁରବସ୍ଥା ଅତି ଉତ୍କଟ ହେଲା। କେବଳ ବାବାଙ୍କର ପେନ୍‌ସନ୍ ଛଡ଼ା ଅନ୍ୟ ଆୟ ନଥିଲା।

ଏଣୁ ମୁଁ ନିଜେ ନିଜେ ଖଣ୍ଡେ ଟିଉସନ୍ ଯୋଗାଡ଼ କଲି। ମୋର ସାଙ୍ଗ ଡ଼ାକ୍ତର ଅସାଦୁଲ୍ଲାର ସାନଭାଇ ନାଁ ଓରାସତ୍ ଉଲ୍ଲା। ମାସିକ ୭ଟଙ୍କା ପାଇବି। ଦୈନିକ ସନ୍ଧ୍ୟା ପରେ ଛଟାରୁ ସାତଟା କିମ୍ବା ସାତଟାରୁ ଆଠଟା ଘଣ୍ଟାଏ ପଢ଼ାଇବି। ମୁଁ ମେଡ଼ିକାଲ୍‌କୁ ସକାଳ ୭ଟାରେ ଯାଇ କ୍ଲାସରେ ଯୋଗ ଦେଇ ward duty କରି ଦିନ ୧ଟାରେ ଘରକୁ ଫେରେ। ୧ଟାଏ ଠାରୁ ୨ଟା ଭିତରେ barbell exercise କରି ଗାଧୋଇବା ଖାଇବା ଇତ୍ୟାଦି କାମ ସାରି ଅଳ୍ପ ସମୟ ଶୋଇ ପୁଣି ୨ଟାରେ ମେଡ଼ିକାଲ୍‌କୁ ଚାଲିଆସେ। ୨ଟାରୁ ୩ଟାଯାଏ କ୍ଲାସରେ ଯୋଗ ଦିଏ। କ୍ଲାସ ପରେ ପୁଣି ମୋର ଜଣେ ସାଙ୍ଗ ଦିବାକର ମହାନ୍ତି ସହିତରେ ହଷ୍ଟେଲରେ ୪ଟା କିମ୍ବା ୫ଟା ପର୍ଯ୍ୟନ୍ତ ପଢ଼ି football ଖେଳରେ ଯୋଗଦିଏ। ଦିବାକର ସହିତରେ ମୋର ଆଗରୁ ବ୍ୟବସ୍ଥା ହୋଇଥାଏ ଯେ ମୁଁ ସନ୍ଧ୍ୟା ପରେ ୭ଟା କିମ୍ବା ୮ଟାରେ ଆସିବି। ଏଇ ସମୟ ମଧରେ ତା'ର ଯାହା ଏକାକୀ ପଢ଼ିବାର କଥା ସେ ପଢୁଥିବ ପୁଣି ମୁଁ ଆସିଲେ ଦି'ଜଣ ଏକା ସଙ୍ଗେ ପଢ଼ିବା। ମେଡ଼ିକାଲ୍ ପାଠର କେତେକ ବିଷୟକୁ ଦି'ଜଣ ନପଢ଼ିଲେ ପାଠ ଆୟତ୍ତ କରିବା ଭାରି କଷ୍ଟକର ମନେହୁଏ। ମୁଁ ଗୁରାଏ ପଢ଼ିଲି ସେ ଶୁଣିଲା। ଉଭୟେ ଆଲୋଚନା କଲୁ ପୁଣି ମୁଁ ଥକିଲେ ସେ ପଢ଼ିଲା ମୁଁ ଶୁଣିଲି। ଉଭୟେ ଆଲୋଚନା କଲୁ। ଏମିତି ଭାବରେ ନ ପଢ଼ିଲେ ବହି ସରେ ନାହିଁ। ମୁଁ ଦୈନିକ ଖେଳି ସାରି ସନ୍ଧ୍ୟା ପରେ ଯାଇ ଓରାସତ୍ ଉଲ୍ଲାକୁ ତାଙ୍କ ଘରେ ଘଣ୍ଟାଏ ପଢ଼ାଇ ପୁଣି ଆସି ୭ଟା କିମ୍ବା ୮ଟାରେ ଦିବାକର ସହିତରେ ପଢ଼ାରେ ଯୋଗ ଦିଏ। ମେଡ଼ିକାଲ ହଷ୍ଟେଲରେ ଦିବାକର ସହିତରେ ପଢ଼ି ରାତି ୧୨ଟା କିମ୍ବା ୧ଟାରେ ଘରକୁ ଫେରେ। ସେତେବେଳେ ଚାରିଆଡ଼ ନିସ୍ତବ୍ଧ। ମୁଁ ମେଡ଼ିକାଲ ହଷ୍ଟେଲରୁ ବାହାରି ମେଡ଼ିକାଲ ପଡ଼ିଆରେ ଚାଲି ଚାଲି ଏକା ଘରକୁ ଫେରେ। ସେତେବେଳେ ତ ମେଡ଼ିକାଲ ସ୍କୁଲ ଥିଲା। ଏଣୁ ଏତେ କୋଠା ଏତେ ଗହଳି ନଥିଲା। ଏତେ ଜନସମାଗମ ନଥିଲା। କେବେ ଅନ୍ଧାର ରାତି, କେବେ ଜହ୍ନ ରାତି ମୁଁ ଏକା ଏକା ମେଡ଼ିକାଲ ହତାରୁ ଅଧ ରାତିରେ ଆସିଲା ବେଳେ ମୋରି ଗୋଡ଼ ଶବ୍ଦ ଶୁଣି ମନେ ହୁଏ ଯେମିତି କିଏ ପଛରେ ଜଣେ ଆସୁଛି। ଆଗକୁ ପଛକୁ ଅନାଏ କେବେ ବର୍ଷା ଋତୁରେ ଛତା ଖଣ୍ଡେ ମୁଣ୍ଡରେ ଦେଇ ଚାଲିଥାଏ। ମେଘ ବର୍ଷୁଥିଲେ ମଧ ମୁଁ ଚାଲିଥାଏ। ଆଜି କାଲି ସେ ମେଡ଼ିକାଲ ପଡ଼ିଆର ଚିହ୍ନ ବର୍ଣ୍ଣ ନାହିଁ। ସେଠି gynaec wardର ସୌଧ ବିରାଜମାନ। ଯେତେବେଳେ ମେଡ଼ିକାଲ ହତା ଟପି

ମଙ୍ଗଳାବାଗର ରାସ୍ତାକୁ ଆସେ ସେତେବେଳେ କେତେକଟା ଭଲ ଲାଗେ । କିନ୍ତୁ ସେହି ନିଛାଟିଆ । ଆଜି କାଲି ପରି ତ ଆଉ ସେତେବେଳର ମଙ୍ଗଳାବାଗର ବଜାର ଦୋକାନ ନଥିଲା । ରାସ୍ତାରେ ବିଜୁଳି ଆଲୁଅ ନଥିଲା । ରାତି ୧୨ଟା, ୧ଟାଏ ବେଳକୁ ସବୁ ନିଶୂନ୍ । ମଝିରେ ମଝିରେ କୁକୁର ଭୁକିବା କିମ୍ବା ପିଲା କାନ୍ଦିବା କିମ୍ବା ମଣିଷ ଆସିବାର ଶବ୍ଦ ଛଡ଼ା ଆଉ କୌଣସି ଶବ୍ଦ ନାହିଁ । ଯାନବାହାନର ଧାଉଡ଼ି ନାହିଁ । କିଛି ନାହିଁ । ଘରେ ଆସି ପହଞ୍ଚିବା ପର୍ଯ୍ୟନ୍ତ ବାବା ମୋତେ ଅନାଇ ବସିଥାନ୍ତି । ମୁଁ ପହଞ୍ଚିଲେ ଖିଆପିଆ ହୁଏ । ତା'ପରେ ଶୋଇ ଯାଉ ।

ସାନଭଉଣୀର ରୋଗ ଏବଂ ତା'ର ଗର୍ଭାବସ୍ଥା ଯୋଗୁ ଆମେମାନେ ସମସ୍ତେ ଉଦ୍‌ବିଗ୍ନ ହେଇ ପଡ଼ିଥିଲୁ କାରଣ ରୋଗ ତ ଆଗରୁ ଥିଲା । ସେଥିରେ ପୁଣି ଗର୍ଭାବସ୍ଥା ଆରମ୍ଭ ହେଲା । ଏଥିଲାଗି ସମସ୍ତେ ଚିନ୍ତିତ୍ ଥିଲୁ । ଯା ହଉ ଭଗବାନଙ୍କ କୃପାରେ ଦିନେ ମୁଁ ରାତିରେ ମେଡ଼ିକାଲରୁ ପଢ଼ି ଫେରିବାର କିଛିକ୍ଷଣ ପରେ ସାନଭଉଣୀର ଝିଅଟିଏ ଜନ୍ମ ହେଲା । ସେଦିନ ରାତିରେ ଆମ ଘରେ ମୋର ସାନ ଅଜା ଗୋପୀ ବଲ୍ଲଭ ରାୟ ଆସି ପହଞ୍ଚିଥାନ୍ତି । ଝିଅଟି ଭଲରେ ଯେ ଜନ୍ମ ହେଲା ଏଥିରେ ସମସ୍ତେ ଆନନ୍ଦିତ ହେଲୁ । କିନ୍ତୁ ଗୋଟାଏ ଦୁଃଖର କଥା ସେହିଦିନ ରାତିରେ ଝିଅଟି ଜନ୍ମ ହବାର କିଛି ସମୟ ପରେ ବାବା ହଠାତ ଜ୍ୱରରେ ଆକ୍ରାନ୍ତ ହେଲେ । ଏଥିଲାଗି ସମସ୍ତେ ଚିନ୍ତିତ ହେଇ ପଡ଼ିଲୁ । ତହିଁ ଆରଦିନ ଗୋପୀବଲ୍ଲଭ ରାୟ ଆମ ଘରୁ ଚାଲି ଗଲେ । ଗଲା ବେଳେ ମତେ କହିଗଲେ ବାବାଙ୍କର ଜ୍ୱର କେମିତି ଶୀଘ୍ର ଛାଡ଼େ ତା'ର ବ୍ୟବସ୍ଥା କରିବୁ । ମୁଁ ମେଡ଼ିକାଲରୁ ଔଷଧ ଆଣି ବାବାଙ୍କୁ ଦଉଥାଏ । ଏଥି ମଧ୍ୟରେ ଦିନେ ବାବା ହଠାତ୍ ସଞ୍ଜ୍ଞାହୀନ ହେଇ ପଡ଼ିଲେ । ମା, ମୁଁ ଉଭୟେ ହଠାତ୍ ଭାବି ନେଲୁ ଯେ ବାବାଙ୍କର ବୋଧେ ପ୍ରାଣବାୟୁ ଉଡ଼ିଗଲା । ମୁଁ ବାଡ଼େଇ କଚାଡ଼ି ହେଇ କାନ୍ଦିଲି । ମା କାନ୍ଦିଲେ । ସାନଭଉଣୀର ଝିଅଟି ଜନ୍ମ ହବା ମାତ୍ର ୩ଦିନ ।

ସେ ମଧ୍ୟ ବାବାଙ୍କର ପ୍ରାଣବାୟୁ ଉଡ଼ିଗଲା ଭାବି ଏନ୍ତୁଡ଼ି ଘରୁ ବାବାଙ୍କ ପାଖକୁ ଦୌଡ଼ି ଆସି ବାବାଙ୍କୁ ଦେଖି କାନ୍ଦିବାକୁ ଆରମ୍ଭ କଲା । ଏଇ ସମୟରେ ଅଚ୍ୟୁତାନନ୍ଦ ତେଜ ମୋତେ ବୁଝେଇ କହିଲେ ଯେ ବ୍ୟସ୍ତ ହ' ନାହିଁ । ବାବା ଅଜ୍ଞାନ ହେଇ ଯାଇଛନ୍ତି । ତାଙ୍କର କିମିତି ଜ୍ଞାନ ଫେରିବ ତା'ର ଚେଷ୍ଟାକର । ମୁଁ ଟିକିଏ ଧୈର୍ଯ୍ୟ ଧରି ଦେଖିଲି ବାବାଙ୍କର ଅତି କ୍ଷୀଣ ଭାବରେ ନାଡ଼ି ଚାଲୁଛି କିନ୍ତୁ ଦେହ ସାରା ଥଣ୍ଡା, ଝାଳ ଭାସି ଯାଉଛି । ମୁଁ stimulant mixture ଆଣି ରଖିଥିଲି ସେଥିରୁ ପାନେ ହଠାତ୍ ଖୋଇଦେଲି । ଏଇ mixtureରୁ ପାନେ ଖୋଇଲା ପରେ ବାବାଙ୍କର ଜ୍ଞାନ ଫେରିଲା । ଡ଼ାକିଲେ ଶୁଣିଲେ । ମୁଁ ବାବାଙ୍କୁ ମା, ସାନଭଉଣୀ ଏବଂ ଅଚ୍ୟୁତାନନ୍ଦ ତେଜଙ୍କ ଜିମା ଛାଡ଼ି ଦେଇ ଡାକ୍ତର ଡାକିବାକୁ ମେଡ଼ିକାଲକୁ ଦୌଡ଼ିଲି ।

ମେଡ଼ିକାଲରେ ଡାକ୍ତର ଶରତ ଚନ୍ଦ୍ର ମିଶ୍ରଙ୍କୁ ଭେଟିଲି । ତାଙ୍କ ଆଗରେ ହଠାତ୍ ଗୁରାଏ କାନ୍ଦି ପକେଇ ସବୁ କଥା କହି ତାଙ୍କୁ ବାବାଙ୍କୁ ଦେଖିବା ପାଇଁ ସାଙ୍ଗରେ ଡାକି ଆଣିଲି । ଡାକ୍ତର ଶରତ ଚନ୍ଦ୍ର ମିଶ୍ର ମୋ ସହିତରେ ତତ୍‌କ୍ଷଣାତ୍ ସାଇକେଲରେ ଆମ ଘରକୁ ଆସି ବାବାଙ୍କୁ ପରୀକ୍ଷା କରି ଦେଖି କହିଲେ ବାବାଙ୍କର ନିମୋନିଆ ରୋଗ ଆରମ୍ଭ ହେଇଛି ।

ସେ ଔଷଧପତ୍ର ଲେଖିଦେଇ ବାହାରିଲେ । ମୁଁ ତାଙ୍କୁ ମେଡ଼ିକାଲରେ ଯାଇ ଛାଡ଼ି ଔଷଧପତ୍ର ଧରି ଆସିଲି । ବାବାଙ୍କୁ ଡା:ଶରତ ଚନ୍ଦ୍ର ମିଶ୍ରଙ୍କ ଚିକିତ୍ସାରେ ରଖିଲି । ଡା:ଶରତ ଚନ୍ଦ୍ର ମିଶ୍ର ସେଦିନ ମୋର ଯାହା ଉପକାର କରିଛନ୍ତି ତାଙ୍କର ଋଣ ଅପରିଶୋଧ୍ୟ । ତାଙ୍କ ପରି ମହତ୍ ଲୋକ ଅତି ବିରଳ ।

ଅଚ୍ୟୁତାନନ୍ଦ ତେଜଙ୍କର ଏଇଠି ଟିକିଏ ପରିଚୟ ଦିଏ । ମୋର ମା ଅଚ୍ୟୁତାନନ୍ଦ ତେଜଙ୍କର ଦୂରସମ୍ପର୍କୀୟା ପିଉସୀ ହେବେ । ସେ ସେତେବେଳେ ଆମ ବସାରେ ରହି health inspector trainingରେ ଯୋଗ ଦେଇଥାନ୍ତି । ଯାଜପୁରରେ ମୋର ମାମୁଁ ଘରକୁ ଲାଗି ଅଚ୍ୟୁତାନନ୍ଦ ତେଜଙ୍କର ଘର । ତାଙ୍କୁ ଆମେ "ପାଣ୍ଡୁ ଦା" ବୋଲି ଡାକୁ । ପିଲାବେଳେ ମୁଁ ତାଙ୍କ ପାଖରେ ପଢ଼ିଥିଲି । ମୁଁ ତାଙ୍କୁ ଭାଇ ସମ୍ପର୍କରେ ଡାକିଲେ ମଧ୍ୟ ଥଟ୍ଟା ପରିହାସ କରିବାରେ ବାକି ରଖେ ନାହିଁ । ମୁଁ କାହିଁକି ଅନ୍ୟମାନେ

ମଧ୍ୟ । ପାଣ୍ଡୁ ଦା ଥଟ୍ଟା ପରିହାସ ମଧ୍ୟ ଖୁବ୍ ସହ୍ୟ କରନ୍ତି । ପାଣ୍ଡୁ ଦା ଅତି ଭଲ ଲୋକ, ପରୋପକାରୀ, ସାହିତ୍ୟାନୁରାଗୀ, ଜ୍ଞାନୀ । ଏ ବହୁତ ଦିନ କୃଷ୍ଣ ପ୍ରସାଦ ବସୁଙ୍କର ଅପେରା ପାର୍ଟିରେ ରହି ଅନେକ ଜାଗା ବୁଲିଛନ୍ତି । ପାଣ୍ଡୁଦା ପିଲାବେଳୁ ପିତୃହୀନ । ଅନେକ ଦୁଃଖ ଯନ୍ତ୍ରଣା ଭୋଗ କରିଥିଲେ । ପାଣ୍ଡୁଦାଙ୍କୁ ତ ମୁଁ ବରାବର ଥଟ୍ଟା ପରିହାସ କରେ । ଏଠି ଟିକିଏ ପାଣ୍ଡୁଦାଙ୍କର ଜୀବନର କେତେଟା ମଜାର ଘଟଣା ନଲେଖି ରହି ପାରୁନି । ଘଟଣା ହେଲା ପାଣ୍ଡୁଦା ପ୍ରଥମେ ଯେତେବେଳେ ବିଭା ହବାକୁ ଯାନ୍ତି ସେ କାର୍‌ରେ ଯାଇଥିଲେ । ସେ ସ୍ତ୍ରୀ ଅଳ୍ପ କେତେ ବର୍ଷ ପରେ ଦୁଇଟି ପୁତ୍ର ସନ୍ତାନ ଛାଡ଼ି ଆତ୍ମହତ୍ୟା କଲେ । ପାଣ୍ଡୁଦା ଦ୍ୱିତୀୟ ବିଭା ହବାକୁ ଗଲାବେଳେ ପାଲିଙ୍କିରେ ଯାଇଥିଲେ । ସେ ସ୍ତ୍ରୀ ବର୍ଷେ କି ଦି'ବର୍ଷ ପରେ ପିଲାଟିଏ ପ୍ରସବ କରି ପରଲୋକ ପ୍ରାପ୍ତି ହୁଏ । ପାଣ୍ଡୁଦା ତୃତୀୟ ବିଭା ହବାକୁ ଗଲାବେଳେ ରିକ୍ସାରେ ଯାଇଥିଲେ । ସେ ସ୍ତ୍ରୀଙ୍କର ବର୍ଷେ କି ଦି'ବର୍ଷ ପରେ ବସନ୍ତ ରୋଗରେ ପରଲୋକ ପ୍ରାପ୍ତି ହୁଏ । ପାଣ୍ଡୁଦା ତା'ପରେ ଗୋଟିଏ ସାହାଡ଼ା ଗଛକୁ ବିଭା ହୁଅନ୍ତି । ତା'ପରେ ପୁଣି ପାତ୍ରୀ ଖୋଜା ହୁଏ ପାଣ୍ଡୁଦାଙ୍କ ପାଇଁ । ଏଇ ସମୟରେ ପାଣ୍ଡୁଦାଙ୍କ ସଙ୍ଗେ ମୋର ଭେଟ ହୁଏ । ମୁଁ ପାଣ୍ଡୁଦାଙ୍କୁ କହିଲି ପାଣ୍ଡୁଦା, ତିନିଥର ବିଭା ହେଲେ, ପ୍ରଥମେ କାର୍, ଦ୍ୱିତୀୟରେ ପାଲିଙ୍କି, ତୃତୀୟରେ ରିକ୍ସାରେ ବିଭା ହବାକୁ ଗଲେ । ତିନୋଟିଯାକ ସ୍ତ୍ରୀ କେହି ବଞ୍ଚିଲେ ନାହିଁ । ଏଥର ତୁମେ କୋକେଇରେ ବିଭା ହବାକୁ ଯାଅ, ଦେଖିବ ଏ ଚତୁର୍ଥ ସ୍ତ୍ରୀଟି ବଞ୍ଚିବ । ପାଣ୍ଡୁଦାଙ୍କ ଚତୁର୍ଥ ସ୍ତ୍ରୀଟି ବର୍ତ୍ତମାନ ଜୀବିତା । ପାଣ୍ଡୁଦା ବର୍ତ୍ତମାନ କାର୍ଯ୍ୟରୁ ଅବସର ଗ୍ରହଣ କରି ଭଲରେ ଅଛନ୍ତି ।

ସାନଭଉଣୀର ଝିଅଟିଏ ଜନ୍ମ ହବାର ଯେଉଁ ଆନନ୍ଦ, ସେ ବାବାଙ୍କର ଅସୁସ୍ଥତା ଯୋଗୁଁ ଆଉ ଉପଭୋଗ କରି ହେଲା ନାହିଁ । ମା ବାବାଙ୍କର ସେବା ଆଉ ସାନଭଉଣୀ ତା'ର ନବଜାତ ଶିଶୁର ଚର୍ଚ୍ଚାରେ ରହିଲେ । ମୁଁ, ପାଣ୍ଡୁଦା ସନ୍ଧ୍ୟା ପରେ ମାଛୁଆ ବଜାର କିମ୍ବା ବକ୍ସି ବଜାରରୁ ସଉଦା କରି ଆଣିବା, ମୁଁ ନିଜେ ରୋଷେଇ କରିବା, ଗାଈଗୁରାଙ୍କୁ ଖୋଇବା ଇତ୍ୟାଦି କରି ସାରି ବାବାଙ୍କ ପାଖରେ ସାରା ରାତି ଜଗି ବସି ପାଠ ପଢ଼ିବା । ମୁଁ ରୋଷେଇ କରି ବସିଲେ ପାଣ୍ଡୁଦା ମୋ ପାଖରେ ବସି ଗପ କରନ୍ତି । ମୋତେ ପୁଣି ଅନେକ ପ୍ରକାର ରୋଷେଇ କରିବାକୁ ହୁଏ । ସାନଭଉଣୀ କ'ଣ ଖାଇବ, ବାବା କ'ଣ ଖାଇବେ, ମା କ'ଣ ଖାଇବେ ? ମୁଁ, ପାଣ୍ଡୁଦା ପ୍ରାୟେ ରାତିରେ ଭାତ ଖାଉ, ମା କେବେ କେବେ ରାତିରେ ଭାତ ଖା'ନ୍ତି କେବେ ଜଳଖିଆ ଖା'ନ୍ତି । ବାବାଙ୍କ ପାଇଁ ବାର୍ଲି କିମ୍ବା ସାଗୁ, ସାନଭଉଣୀ ସେହିପରି କିଛି ହାଲୁକା ପଥ୍ୟ ଖାଇ ରହେ ।

ଘରର ଏପରି ଅବସ୍ଥାରେ ମୋର ପୁଣି ଗୋଟାଏ terminal ପରୀକ୍ଷା ଥାଏ । କ'ଣ କରିବି ? ଭାଗ୍ୟ ଉପରେ ନିର୍ଭର କରି ପଢୁଥାଏ । ରାତି ସାରା ପଢୁ ପଢୁ ବେଳକେ ଶୋଇପଡ଼େ ପୁଣି ଉଠି ପଢ଼େ । ଏମିତି ଜଗିବା, ଶୋଇବା ଭିତରେ ରାତିସାରା ଯେତିକି ପଢ଼ି ପାରେ ପଢ଼େ ।

କିଛିଦିନ ପରେ ବାବା ସୁସ୍ଥ ହେଇ ଉଠିଲେ । ସାନଭଉଣୀ ଏବଂ ତାର ଝିଅଟି ମଧ୍ୟ ଭଲ ଭାବରେ ସୁସ୍ଥ ହେଇ ଉଠିଲେ । ବାବାଙ୍କର ଅସୁସ୍ଥତା ଯୋଗୁଁ ସାନଭଉଣୀ ତାର ନବଜାତ ଶିଶୁ ଉପରେ ଦୋଷାରୋପ କଲା ଯେ ଏଇ ପିଲାଟା ଜନ୍ମ ହବାର ସଙ୍ଗେ ସଙ୍ଗେ ବାବା ରୋଗରେ ପଡ଼ିଲେ । ଏଣୁ ପିଲାଟି ଉପରେ ବୀତଶ୍ରଦ୍ଧ ହେଇ ପଡ଼ିଲା । ଯା ହଉ ବାବା ବର୍ତ୍ତମାନ ସୁସ୍ଥ ହେଇ ଉଠି ଚେୟାରରେ ବସି ପାରିଲେ । ଆମେ ସମସ୍ତେ ସନ୍ଧ୍ୟା ପରେ ବାବାଙ୍କ ପାଖରେ ବସୁ । ମୁଁ ପିଲାଟିକୁ ବେଳେବେଳେ କୋଳରେ ନେଇ ବସି ପଢ଼େ । ଭାରି ଭଲ ଲାଗେ । ମା ଘର କାମରେ ଲାଗନ୍ତି ।

ଅଳ୍ପ କେତେଦିନ ପରେ ମୋର terminal ପରୀକ୍ଷା ହେଲା । ବାବାଙ୍କର ଦୃଢ଼ ଧାରଣା ଥିଲା ମୁଁ ସେଥର ପରୀକ୍ଷାରେ ଭଲ କରିପାରିବିନି । କିନ୍ତୁ ଦୈବୀକ୍ରମେ ସେଥର ପରୀକ୍ଷାରେ ଭଲ ଫଳ ହେଲା ।

ପରେ ଯେତେ ଯାହା ହଉ, ମନର ଅବସ୍ଥା ଯାହା ଥାଉ ଦିନ ଭିତରେ ଥରେ ବି. ବର୍ମାଙ୍କ ସହିତରେ ଦେଖା କରି କିଛି ସମୟ ଗପ କରି ଆସିଲେ ମୋର ମନର ଅବସ୍ଥା, ଦେହର ଅବସ୍ଥା ଯେମିତି ସବୁ ବଦଳି ଯାଏ ।

ବି. ବର୍ମାଙ୍କ ସହିତରେ ଗପ ତା'ର କୌଣସି ଆରମ୍ଭ ନାହିଁ କି ଶେଷ ନାହିଁ। ବିଭିନ୍ନ ବିଷୟରେ ଗପ ହେଲେ ମଧ୍ୟ ସାହିତ୍ୟ ବିଷୟରେ ବେଶି ଗପ ହୁଏ। ତା'ଛଡ଼ା ହାସ୍ୟ ପରିହାସ, ମୁଁ ଯଦି କିଛି ଗପ ଲେଖିଥାଏ ତାକୁ ନେଇ ପଢ଼େଇ ଶୁଣାଏ, ଜ୍ଞାନୀନ୍ଦ୍ର ବର୍ମା ଯଦି କିଛି ଗପ ଲେଖିଥାନ୍ତି, ସେ ମଧ୍ୟ ପଢ଼େଇ ଶୁଣାନ୍ତି। ବି. ବର୍ମା ସେତେବେଳେ "ପତିପତ୍ନୀ" ନାମକ ଖଣ୍ଡେ ଉପନ୍ୟାସ ଲେଖିବା ଆରମ୍ଭ କରିଥାନ୍ତି। ସେ ମଧ୍ୟ ତା'ର କିଛି କିଛି ଅଂଶ ପଢି ଶୁଣାନ୍ତି।

ଅନେକ ସମୟରେ ଯେ ଯାହା ଲେଖିଥାନ୍ତି ତାକୁ ଶୁଣିବା ପରେ ପରସ୍ପର ମଧ୍ୟରେ ତା'ର ସମାଲୋଚନା ହୁଏ। ଏଇଥିରୁ ସାହିତ୍ୟିକ ଝଗଡ଼ା ମଧ୍ୟ ହୁଏ। ମତାନ୍ତର ହୁଏ, ମନ କଷାକଷି ହୁଏ, କେତେ ସମୟ ପାଇଁ କଥାବାର୍ତ୍ତା ବନ୍ଦ ହେଇଯାଏ। ପୁଣି ଅଳ୍ପ ସମୟ ପରେ ଯେଉଁ କଥାବାର୍ତ୍ତା, ହଟ୍ଟଗୋଳ, ରଙ୍ଗରସ, ହାସ୍ୟ ପରିହାସ, ପାନଖିଆ ସବୁ ଚାଲେ। ମୁଁ ଗପ କଲେ ତ ବି. ବର୍ମା ହସି ହସି ତାଙ୍କ ଆଖିରୁ ପାଣି ଗଡ଼ି ପଡ଼େ। ମୁଁ ମୁହଁ ଖୋଲିଲେ ବି. ବର୍ମା ନହସି ରହି ପାରନ୍ତିନି।

ବି. ବର୍ମା ଭାରି ଆମୋଦୀ ଲୋକ। ତାଙ୍କର ଉତ୍କଟ ଅର୍ଥାଭାବ, ଅନ୍ୟାନ୍ୟ ଅସୁବିଧା ମଧ୍ୟରେ ତାଙ୍କୁ କେବେ ମୁଁ ବିଷନ୍ନ ହବାର ଦେଖିନାହିଁ। ତାଙ୍କ ପାଖରେ ପହଁଚିଗଲେ ସେ ଆନନ୍ଦରେ ଗଦ୍‌ଗଦ୍ ହେଇ ପଡ଼ନ୍ତି। ବି. ବର୍ମାଙ୍କ ବସାରେ ଅନେକ ଲୋକ ଆସନ୍ତି। ତାଙ୍କ ସହିତରେ ମୋର ଆଳାପ, ଆଲୋଚନା, ପରିଚୟ ହୁଏ। ମୁଁ ଯେ ଏକା ବି. ବର୍ମାଙ୍କ ପାଖକୁ ଯାଏ, ତା' ନୁହଁ। ମୋ ସହିତରେ ମୋର ସହପାଠୀ ଦିବାକର ମହାନ୍ତି ମଧ୍ୟ ଯାଏ। ମେଡ଼ିକାଲ ସ୍କୁଲରେ ପଢ଼ିବା ବେଳେ ଦିବାକର ମହାନ୍ତି ମୋର ବିଶେଷ ଅନ୍ତରଙ୍ଗ ବନ୍ଧୁ ଥିଲେ। ସେ ଅନୁଗୁଳରୁ ଆସିଥିଲେ କଟକ ମେଡ଼ିକାଲ ସ୍କୁଲରେ ପଢ଼ିବା ପାଇଁ। ଦିବାକର ହଷ୍ଟେଲ୍‌ରେ ରହୁଥିଲେ। ମୁଁ ଦୈନିକ ହଷ୍ଟେଲ୍‌କୁ ଯାଇ ଦିବାକର ମୁଁ ଏକାଠି ପଢୁଥିଲୁ। କାରଣ ମୋର ତ ସବୁ ବହି ନଥିଲା, ଦିବାକରର ମଧ୍ୟ ସବୁ ବହି ନଥିଲା। ତଥାପି ମୋ ଅପେକ୍ଷା ଦିବାକରର ବହି କିଛି ବେଶିଥିଲା। ଆମ ଦୁହିଁଙ୍କର ଯେଉଁ ବହି ନଥାଏ ଦିବାକର ହଷ୍ଟେଲ୍‌ର ଅନ୍ୟ ପିଲାଙ୍କଠୁଁ ମାଗି ଆଣେ। ମୁଁ ମଧ୍ୟ ଦରକାର ବେଳେ ଅନ୍ୟ ପିଲାଙ୍କଠୁଁ ମାଗି ଆଣେ। ଦିହେଁ ଦି'ଖଣ୍ଡ ବହି ଧରୁ ପଢୁ। ବେଳକେ ଦିବାକର ପଢ଼େ ମୁଁ ଶୁଣେ ପୁଣି ଦିବାକର ଥକି ପଡ଼ିଲେ ମୁଁ ପଢ଼େ ଦିବାକର ଶୁଣେ। ଯେମିତିକି ଯୋଡ଼ାଏ ମେସିନ୍ ଲାଗିଥାଏ, ଗୋଟାଏ ମେସିନ୍ ଅଚଳ ହେଇଗଲେ ଆଉ ଗୋଟାଏ ମେସିନ୍ ଚାଲୁ କରାହୁଏ। ମଝିରେ ମଝିରେ ଗପ କରୁ, ପଢ଼ି ପଢ଼ି ବିରକ୍ତ ଲାଗିଲେ ବେଳେ ବେଳେ ମୁଁ, ଦିବାକର ଦିହେଁ ବି. ବର୍ମାଙ୍କ ବସାକୁ ଚାଲି ଯାଉ। ସେଠି କିଛି ସମୟ ବସି ଗପ କରି ଆସିଲେ ମନର ବିରକ୍ତିଭାବ କଟିଯାଏ ପୁଣି ପଢ଼ାରେ ଲାଗିଯାଉ। ବେଳେବେଳେ ଦିବାକର, ମୁଁ କଟକ ଷ୍ଟେସନ୍ ଆଡ଼େ ଚାଲି ଯାଉ। ସେତେବେଳେ ସନ୍ଧ୍ୟାପରେ ଷ୍ଟେସନ୍ ଆଡ଼େ ବୁଲିବାକୁ ଯିବା ଏକ ବିପଦ। କାରଣ ରାସ୍ତାରେ ଆଲୁଅ ନଥାଏ। କାଁ ଭାଁ କେଉଁଠି କେମିତି ମ୍ୟୁନିସପାଲଟିର କିରୋସିନି ଆଲୁଅର ଖୁଣ୍ଟ, ସେଇଠି ଟିକିଏ ବାଟ ଦିଶେ। ନଚେତ୍ ଘିଟଘିଟିଆ ଅନ୍ଧାର, ମୁହଁକୁ ମୁହଁ ଦିଶେନା। ବେଶି ଅନ୍ଧାରୁଆ ଜଣାଯାଏ କଟକ ଜିଲ୍ଲା ବୋର୍ଡ଼ ଡ଼ାକବଙ୍ଗଳାର ସାମନା ରାସ୍ତାର ଅଧିକାଂଶ ଅଂଶ। ଭୟ ଲାଗେ, ମୁଁ, ଦିବାକର ଉଭୟେ ଦିହକୁ ଦିହ ଲଗେଇ ଚାଲୁ। କାରଣ ମନରେ ଭୟ ହୁଏ ଯେମିତି ଅନ୍ଧାରରେ ଚଣ୍ଡୀ, ଚାମୁଣ୍ଡାଙ୍କୁ ଭେଟି ଯିବୁ କି କିଏ ପଛରୁ ଆସି ମାଡ଼ି ବସିବ। ଷ୍ଟେସନ୍ ଟିକିଏ ନିକଟ ହେଲେ ଆଲୁଅ ଦେଖାଯାଏ, ଭୟ କମିଯାଏ। ସେ ଆଲୁଅ କ'ଣ ବିଜୁଳି ଆଲୁଅ? ସେ ଆଲୁଅ ହେଲା ସେତେବେଳକାର ରାସ୍ତାକଡ଼ର ଦୋକାନୀଙ୍କ ଦୋକାନର ଆଲୁଅ। କାହାର କିରୋସିନି ଜଳା ଆଲୁଅ ତ କା'ର ପେଟ୍ରୋମାକ୍ସ ଆଲୁଅ, ଷ୍ଟେସନ୍‌ର ଆଲୁଅ ହେଲା ଗ୍ୟାସ ଆଲୁଅ କିମ୍ବା ବଡ଼ ବଡ଼ କିରୋସିନି ଜଳା ଓହଳା ଲ୍ୟାମ୍ପର ଆଲୁଅ। ଷ୍ଟେସନ୍ ଭିତରକୁ ପଶି ଯାଇ Wheeler bookstall ରେ ଠିଆ ହେଇ କେତେକ ବହି, ପତ୍ରପତ୍ରିକା ଖେଳେଇ ଏଥିରୁ ଟିକିଏ, ସେଥିରୁ ଟିକିଏ ପଢ଼ି ପୁଣି ଆସି ପ୍ଲାଟଫର୍ମରେ କିଛି ସମୟ ବସି ଗାଡ଼ି ଯିବା ଆସିବା, ଯାତ୍ରୀମାନଙ୍କର ଯିବା ଆସିବା ଦେଖି ମେଡ଼ିକାଲ୍ ହଷ୍ଟେଲକୁ ଫେରି ପୁଣି ପଢ଼ାରେ ଲାଗୁ।

ବି. ବର୍ମାଙ୍କ ବସାରେ ମୋର ଅବାଧ ପ୍ରବେଶ ଅବାଧ ପ୍ରସ୍ଥାନ। ଏମିତିକି ମେଡ଼ିକାଲ ପଢ଼ିଆରେ football match ଖେଳି uniform ପିନ୍ଧି ସିଧାସଳଖ ବି. ବର୍ମାଙ୍କ ବସାକୁ ଗଲି। ବି.ବର୍ମା ଚେୟାରେ ବସିଛନ୍ତି ମୋତେ uniform ପିନ୍ଧିବାର ଦେଖି ପଚାରିଲେ କଣ ପୁଲିନ୍ ବାବୁ ମ୍ୟାଚ୍ ଥିଲା କି? ମୁଁ କେବଳ 'ହଁ' କହି ଘର ଭିତରକୁ ଯାଇ ଖଣ୍ଡେ ମଶିଣା ଆଣି ତାକୁ ବି. ବର୍ମାଙ୍କ ପାଖରେ ତଳେ ପାରି ଦେଇ ଲମ୍ବ ହେଇ ପଡ଼ିଯାଏ। Uniform ସେମିତି ଦେହରେ ଥାଏ। ଦେହ ଝାଳରେ ବୁଡ଼ି ରହିଥାଏ। କିଛି ସମୟ ନିରବ ହେଇ ପଡ଼ି ରହିଲା ପରେ ଦେହର କ୍ଲାନ୍ତି ଦୂର ହେଲେ ବି.ବର୍ମାଙ୍କ ସହିତରେ ଚାଲେ ଗପ, ହସ ପରିହାସ, ପାନଖିଆ ଇତ୍ୟାଦି। ଗପ ସରିଲେ, ଭଲ ଲାଗିଲେ ପୁଣି ମେଡ଼ିକାଲ ହଷ୍ଟେଲ୍‌କୁ ଫେରି ପାଠ ପଢ଼ା ଚାଲେ।

ବେଳେବେଳେ ସନ୍ଧ୍ୟା ପରେ ଯାଇ ବି.ବର୍ମାଙ୍କ ପାଖରେ ପହଞ୍ଚିଲା ବେଳକୁ, ଦୋତାଲା ଉପରେ ବି.ବର୍ମା ଖଣ୍ଡେ ଚେୟାରରେ ଏକା ଅନ୍ଧାରରେ ବସିଛନ୍ତି। କେହି କୋଉଠି ନାହାନ୍ତି, ଶୂନ୍ୟପୁରୀ। ବି.ବର୍ମା ମୋତେ ଅନ୍ଧାରରେ ପଚାରନ୍ତି କିଏ? ମୁଁ ଉତ୍ତର ଦିଏ ମୁଁ, ତାପରେ ମୁଁ ପଚାରେ ଆଜି କାହିଁକି ଅନ୍ଧାରରେ ଏକା ବସିଛନ୍ତି? ଜ୍ଞାନୀନ୍ଦ୍ର ବର୍ମା, ରାଜେନ୍ଦ୍ର ବର୍ମା କେହି ନାହାନ୍ତି କଣ? ବି.ବର୍ମା କହନ୍ତି ହଁ କିଏ କୁଆଡ଼େ ଯାଇଛନ୍ତି ମୋତେ ପୁଣି କହନ୍ତି ପୁଲିନ୍ ବାବୁ ତୁମ ପାଖରେ ପଇସା ଅଛି କି? କିଛି କିରୋସିନି ତେଲ ଆଉ ପାନ ଆଣିଲେ ଆଲୁଅ ଲଗେଇ ପାନ ଖାନ୍ତେ। ମୁଁ ବୁଝିପାରେ ଆଜି ବୋଧହୁଏ କିଛି ଅସୁବିଧା ହେଇଛି। ବୁଝିଲେ କଣ ହବ? ମୁଁ ତ ଯେଉଁ ଧନାଢ଼୍ୟ ଲୋକଟାଏ, ଯା ମୋ ପାଖେ ଦି'ଅଣା ଥାଏ ସେଇଥିରେ ପାନ, କିରୋସିନି ଆଣେ। ସେଇଥିରେ ଲଣ୍ଠନ ଲଗେଇ ପାନ ଭାଙ୍ଗି ଖାଉ, ଗପ କରୁ।

ବି.ବର୍ମା ବେଳେବେଳେ ଏମିତି ଅସୁବିଧାରେ ପଡ଼ିବାର ଅନେକବାର ଦେଖିଛି। ବି.ବର୍ମା ବେଳେବେଳେ ଶୂନ୍ୟ ହସ୍ତରେ ଥିବେ, ସବୁ ଚୁପଚାପ୍, ସବୁ ନିରାଡ଼ମ୍ବର କିନ୍ତୁ ଯଦି କୋଉ ଆଡୁ କିଛି ଟଙ୍କା ପୁଳାଏ ମିଳିଯାଇଛି ଚାଲିଲା ଅବାଧ ଖର୍ଚ୍ଚ, ନିମନ୍ତ୍ରଣ, ରିକ୍ସାରେ ବୁଲିବା ଇତ୍ୟାଦି। ମୁଁ, ଦିବାକର ଅନେକବାର ନିମନ୍ତ୍ରିତ ହେଇଛୁ। ବି.ବର୍ମା ଅତି ଖର୍ଚ୍ଚୀ, ମଉଜୀ ଲୋକ ଥିଲେ।

ବି. ବର୍ମାଙ୍କ ବସାରେ ଅନେକ ଗୁରାଏ ବଙ୍ଗଳା "ପ୍ରବାସୀ" ପତ୍ରିକା ଥିଲା। ମୁଁ ସେଥିରୁ ବି.ବର୍ମାଙ୍କୁ କହି ମଝିରେ ମଝିରେ ଦି'ଖଣ୍ଡ ଆଣେ ତାକୁ ପଢ଼ି ସାରି ଫେରେଇ ଦେଇ ପୁଣି ଦି'ଖଣ୍ଡ ଆଣେ। ତାକୁ ପଢ଼ିସାରି ଫେରେଇ ଦେଇ ପୁଣି ଦି'ଖଣ୍ଡ ଆଣେ, ଦି'ଖଣ୍ଡ ଆଣିବାର ଉଦ୍ଦେଶ୍ୟ ହେଲା ଖଣ୍ଡେ ବାବା ପଢ଼ନ୍ତି, ଖଣ୍ଡେ ମୁଁ ପଢ଼େ। ବାବା ପଢ଼ି ସାରିଲେ ବାବା ମୋତେ ତାଙ୍କ ଖଣ୍ଡକ ଦିଅନ୍ତି ପଢ଼ିବା ପାଇଁ ମୁଁ ପଢ଼ି ସାରିଲେ ମୋ ଖଣ୍ଡକ ବାବାଙ୍କୁ ଦିଏ ପଢ଼ିବା ପାଇଁ। ଏମିତି ଉଭୟେ ଦି ଖଣ୍ଡ ପତ୍ରିକାକୁ ପଢ଼ି ଶେଷ କରି ବି.ବର୍ମାଙ୍କୁ ଫେରେଇ ଦେଇ ପୁଣି ଦି'ଖଣ୍ଡ "ପ୍ରବାସୀ" ଆଣେ। ବାବା ପଢ଼ିବା ଭିତରେ ତାଙ୍କୁ ଗଳ୍ପ, କବିତା, ପ୍ରବନ୍ଧ ଇତ୍ୟାଦି ମଧ୍ୟରୁ ଯେଉଁଟା ଅତି ଭଲ ଲାଗେ ସେ ମୋତେ କହନ୍ତି ଅମୁକଟା ପଢ଼ିଛୁ? ମୁଁ ଯଦି ନାହିଁ କରେ ବାବା କହନ୍ତି ସେଇଟା ଭଲ ଲେଖା ତାକୁ ପଢ଼ିବୁ। ମୁଁ ପଢ଼ିବା ଭିତରେ ମୋତେ ଯେଉଁଟା ଅତି ଭଲ ଲାଗେ ମୁଁ ବାବାଙ୍କୁ କହେ ବାବା ସେଇଟା ଭାରି ଭଲ ଲେଖା। ବାବା ତାକୁ ପଢ଼ି ତାଙ୍କର ମତାମତ ଦିଅନ୍ତି ପ୍ରକୃତ ଭଲ କି ମନ୍ଦ। ଏମିତି ପ୍ରବାସୀରେ ପ୍ରକାଶିତ ଲେଖା ବିଷୟରେ ବାବାଙ୍କର ମୋର ଖୁବ୍ ଆଲୋଚନା ହୁଏ। ଭାରି ଆନନ୍ଦ ଲାଗେ। ଏ ସବୁ କିନ୍ତୁ ପୁରୁଣା ପ୍ରବାସୀ ପତ୍ରିକା ପଢ଼ି ହୁଏ।

ଦିନେ ବାବା ତାଙ୍କ ଖଣ୍ଡକ ପଢ଼ିସାରି ମୋତେ ଦେଲେ। ମୁଁ ମୋ ଖଣ୍ଡକ ପଢ଼ି ସାରି ତାଙ୍କୁ ଦେଲି। ମୁଁ କିଛି ଅଂଶ ପଢ଼ିଲା ପରେ ବାବା ଦିନେ ସନ୍ଧ୍ୟା ପରେ ମୋତେ କହିଲେ ଆରେ "ବନଫୁଲ"ଙ୍କ ସେ "ପାଶାପାଶି" ଗଳ୍ପଟା ପଢ଼ିଲୁ? ମୁଁ କହିଲି ନା, ମୁଁ ସେ ଗଳ୍ପ ପଢ଼ିନାହିଁ। ବାବା କହିଲେ ସେ ଗଳ୍ପଟା ପଢ଼ିବୁ, ଭାରି ମଜାର ଗଳ୍ପ।

ବାବାଙ୍କ କହିବାନୁଯାୟୀ ମୁଁ "ବନଫୁଲ"ଙ୍କ "ପାଶାପାଶି" ଗଳ୍ପ ପଢ଼ି ଆଉ ନହସି ରହି ପାରିଲି ନାହିଁ।

ଆଜି ପର୍ଯ୍ୟନ୍ତ ସେ ଗଳ୍ପର ବିଷୟବସ୍ତୁ ମୋର ମନେ ପଡ଼ିଲେ ମୁଁ ନହସି ରହି ପାରେନା । ସେହିଦିନଠୁଁ ମୋର ମନ ହେଲା ବନଫୁଲଙ୍କ ପରି ଲେଖିବି । ହାସ୍ୟରସ ଲେଖା ପ୍ରତି ପ୍ରଥମେ ମନ ସେହି ଆଡ଼କୁ ଢଳିଲା । ସେଇଠୁଁ ବନଫୁଲଙ୍କର ଅନ୍ୟାନ୍ୟ ଲେଖା ପଢ଼ିବାକୁ ମନହେଲା । ଯୋଗାଡ଼ କରି ମଧ ପଢ଼ିଲି । ବାବାଙ୍କୁ ଦେଲି, ବାବା ମଧ ପଢ଼ିଲେ । ବି.ବର୍ମାଙ୍କ ବସାରେ ଯେତେ ପୁରୁଣା "ପ୍ରବାସୀ" ପତ୍ରିକା ଥିଲା ମୁଁ ସେଥିରୁ ଦୁଇ ଦୁଇ ଖଣ୍ଡ ଆଣି ଆଣି ମୁଁ, ବାବା ଉଭୟେ ତାକୁ ସବୁ ପଢ଼ି ଶେଷ କଲୁ ।

ବାବାଙ୍କର, ମୋର ଦୈନିକ ବହି ପଢ଼ିବାର ନିଶା ଯୋଗୁଁ ମୁଁ ଯେଉଁଠୁ ହେଲେ ଦୁଇଖଣ୍ଡ ବହି କିମ୍ବା ପତ୍ରିକା ଆଣେ । ବାବା ପଢ଼ନ୍ତି ଆଉ ମୁଁ ପଢ଼େ । ଘରେ ତ ଅନେକ ପୁରୁଣା ବହି ଆଉ ପତ୍ରିକା ଥିଲା । ସେଥିରୁ ଅନେକ ବହିପତ୍ର ଆମ ଘରେ ଯେତେବେଳେ ୧୯୨୦ ମସିହାରେ ଚୋରି ହୁଏ ସେତେବେଳେ ନଷ୍ଟ ହୋଇ ଯାଇଥିଲା । ଯେତିକିଥିଲା ସେ ସବୁ ବାବା ପଢ଼ି ସାରିଥିଲେ । ଏଣୁ ନୂଆ ବହି ଆଣିବାକୁ ହୁଏ । ଥରେ ମୋର ମନେ ଅଛି ପୁରୁଣା କାଳିଦାସ ଗ୍ରନ୍ଥାବଳି ଖଣ୍ଡେ ବାହାରେ ପଡ଼ିଥିଲା ସେଥିରେ ସଂସ୍କୃତ ଶ୍ଳୋକ ଓ ତା'ର ବଙ୍ଗଳା ଅନୁବାଦ ଥିଲା । ମା ସେଥିରୁ ଖଣ୍ଡେ ଖଣ୍ଡେ ପୃଷ୍ଠା ଛିଣ୍ଡେଇ ଦୈନିକ ଲଣ୍ଠନ ପୋଛିବାରେ ଲାଗିଛନ୍ତି । ଇମିତି କରି ଯେତେବେଳେ "ରଘୁବଂଶ" କାବ୍ୟ ଲଣ୍ଠନ ପୋଛାରେ ଶେଷ ହବା ଉପରେ ସେତେବେଳେ ମୋର ଦୃଷ୍ଟି ପଡ଼ିଲା । ମୁଁ ମା'ଙ୍କୁ କହିଲି ମା ଏ କ'ଣ କଲ? ଏପରା କାଳିଦାସ ଗ୍ରନ୍ଥାବଳି । ମା ବଙ୍ଗଳା ପଢ଼ି ଜାଣିଥିଲେ ମଧ କିଛି ନପଢ଼ି ଛିଣ୍ଡେଇ ଲଣ୍ଠନ ପୋଛିବାରେ "ରଘୁବଂଶ"କୁ ନିପାତ କରିବାରେ ଲାଗିଛନ୍ତି । ମା କହିଲେ ମୁଁ ଜାଣିବି କେମିତି? ମୁଁ ଭାବିଲି ପୁରୁଣା ବହି ଖଣ୍ଡେ ପଡ଼ିଛି । ଏଣୁ ମୁଁ ଛିଣ୍ଡେଇବାରେ ଲାଗିଛି । ଯା ହଉ ମୁଁ କାଳିଦାସ ଗ୍ରନ୍ଥାବଳିର ବାକିତକ ନେଇ ଯତ୍ନରେ ଟ୍ରଙ୍କରେ ରଖିଦେଲି ।

ମୋର ସାନଭଉଣୀର ଝିଅଟିଏ ହବାର ଅଳ୍ପ ଦିନ ପରେ ସାନଭଉଣୀ ଓ ତା'ର ଝିଅଟିକୁ whooping cough ଧରେ । ସେତେବେଳେ whooping cough ର allopathic ଔଷଧ କିଛି ଭଲ ସେମିତି ନଥିଲା । ଅନେକ ଔଷଧି ଏଣୁ ତେଣୁ ଖୋଜ ଖୋଜ homeopathic ଔଷଧି ଖାଇ ଉଭୟେ ଭଲ ହେଇଗଲେ । ତା'ର କିଛିଦିନ ପରେ ମୋତେ ଆଉ ସାନଭଉଣୀକୁ amoebic dysentery ଧରେ ।

ପୁଣି ଆମର ଗୋଟାଏ ବିଲେଇକୁ ମଧ dysentery ଧରେ । ବିଲେଇକୁ dysentery ଧରିଥିଲା ବୋଲି କାହିଁକି କହୁଛିକି, ଆମେ ଝାଡ଼ା ବସିଲେ ଯେମିତି କୁନ୍ଥଉ, ବିଲେଇ ମଧ ଝାଡ଼ା ବସିଲେ ସେମିତି କୁନ୍ଥାଏ । ଏଣୁ ମୁଁ ତାକୁ dysentery ଝାଡ଼ା ବୋଲି କହୁଛି । କିନ୍ତୁ ଆଶ୍ଚର୍ଯ୍ୟ କଥା ବିଲେଇ ଥରେ ଝାଡ଼ା ବସି କୁନ୍ଥେଇବାରେ ଲାଗିଛି ଏହି ସମୟରେ ଗୋଟାଏ ମୂଷା ତା' ସାମନାରେ କୁଆଡୁ ବାହାରିପଡ଼ିଲା । ବିଲେଇ ଝାଡ଼ା ଫେରୁ ଫେରୁ ତାକୁ ଆଖି ପିଛୁଳାକେ ଚଟ୍ କରି ଖାଇଦେଲା ।

ତା'ପରେ ଦେଖିଲି ବିଲେଇର ଝାଡ଼ା ଭଲ ହେଇଗଲା । ସେଇଠୁଁ ମୋର ମନର ଧାରଣା ବିଲେଇକୁ dysentery ଝାଡ଼ା ଧଇଲେ ମୂଷା ବୋଧେ ତା'ର ଏକମାତ୍ର ଔଷଧି । ଆଉ ଗୋଟାଏ କଥା ମୂଷାର କେଭେ ତରଳ ଝାଡ଼ା ହବାର ମୁଁ ଦେଖି ନାହିଁ । ସବୁଦିନ କଠିନ ଝାଡ଼ା । ଏଣୁ ତାକୁ ଖାଇ ବୋଧେ ବିଲେଇର ଝାଡ଼ା ଧରିଗଲା । ଏଣୁ ମୋର ଏ ଧାରଣା ଯେ ବିଲେଇର ଝାଡ଼ାର ଔଷଧି ମୂଷିକ ସେବନ । ବିଲେଇ ସିନା dysentery ଝାଡ଼ାରୁ ମୁକ୍ତି ପାଇଲା ଆମେ ଭାଇ, ଭଉଣୀ dysentery ଝାଡ଼ାରୁ ମୁକ୍ତି ପାଉନ୍ତୁ କେମିତି? ଆଜିକାଲି ପରି amoebic dysentery ର ଏତେ ଭଲ ଔଷଧି ସେତେବେଳେ ନଥିଲା । ଏଣୁ allopathic, homeopathic ଔଷଧିରେ କିଛି ହେଲା ନାହିଁ । ଏଣୁ ଗାଉଁଲୀ ଔଷଧ ଖାଇଲୁ ଯେ ଯା' ବତେଇଲା । ଶେଷରେ ଓସ୍ତ ଗଛର ଛେଲିର ରସ ସହିତରେ ଦିନେ ଚୂନ, ଦିନେ ଲୁଣ ଆଉ ଦିନେ କନ୍ଦ ଇମିତି ତିନିଦିନ ଖାଇଲୁ । ଏହା

ଫଳରେ ମୋର dysentery ଝାଡ଼ା ବନ୍ଦ ହୋଇଗଲା କିନ୍ତୁ ସାନ ଭଉଣୀର ଝାଡ଼ା ବନ୍ଦ ହେଲା ନାହିଁ । କ୍ରମଶଃ ତା'ର ଏ ଝାଡ଼ା ଯୋଗୁଁ ସେ ଦୁର୍ବଳ ହବାକୁ ଆରମ୍ଭ ହେଲା । ଶେଷରେ ତା'ର ସ୍ୱାସ୍ଥ୍ୟର ଅବନତି ଘଟିଲା । ତଥାପି ସେ ଝାଡ଼ା ଯାଇ ଆସି ପାରୁଥିଲା ।

ଏଇ ସମୟରେ ମୋର 4th year ର final ପରୀକ୍ଷାର ସମୟ ଘନେଇ ଆସିଲା । Medical hostel କୁ ଯାଇ ଆଗପରି ପଢ଼ାପଢ଼ି କରୁଥାଏ, ସାନଭଉଣୀ ପାଇଁ ଏଠି ସେଠି ଦୌଡ଼ି ଔଷଧ ଆଣି ଦଉଥାଏ । ସାନ ଭଉଣୀର ଦୈନିକ ସ୍ୱାସ୍ଥ୍ୟର ଅବନତି ଘଟିବାର ଦେଖି ମନରେ ଗଭୀର ଦୁଃଖ ବଢ଼ିବାକୁ ଆରମ୍ଭ ହେଲା । ବେଳେବେଳେ ମନେ ମନେ ଭାବେ ଭଉଣୀ ଆଉ ବଞ୍ଚିବ ନାହିଁ । ସବୁ ଭାଇ, ଭଉଣୀ ତ ଗଲେଣି କେବଳ ଏଇ ସାନ ଭଉଣୀ ଆଉ ମୁଁ ଅଛି । ଏ ଗଲେ କଣ ହବ? ପୁଣି ଭାବେ ନାହିଁ, ଭଉଣୀ ଭଲ ହୋଇଯିବ ।

ଭଉଣୀର ଏ ଭଳି ଅସୁସ୍ଥତା ବେଳେ ଅର୍ଥାଭାବ ଉତ୍କଟ । ଘରେ ଆଉ କିଛି ନାହିଁ । କେବଳ ବାବାଙ୍କର ପେନ୍‌ସନ୍ ଗଣ୍ଡାକ, ଆଉ ଧାରଉଧାର । କେତେବା ଧାରଉଧାରରେ ଚଳିବ? ବାବା ଯୋଗାଡ଼ କରି ଟଙ୍କା ଧାର କରି ଆଣନ୍ତି । ମୁଁ ଯୋଗାଡ଼ କରି ଟଙ୍କା ଧାର କରି ଆଣେ । ଦୋକାନରୁ ସଉଦା ଧାର କରି ଅଣାଯାଏ । କୌଣସି ପ୍ରକାରେ ଚଳିଯାଏ । ମୁଁ କେବଳ tuition କରି ୭ଟଙ୍କା ପାଉଥାଏ । ସେଇ ୭ଟଙ୍କାରେ ଅତି କଷ୍ଟରେ ମୁଁ ଚଳୁଥାଏ । ମୋର ଜଳଖିଆ ଖର୍ଚ୍ଚ ତାରି ଭିତରେ । ପେଟରେ ବିଶେଷ ଭୋକ ଥିଲେ ମଧ୍ୟ ଜଳଖିଆ ଦୋକାନରେ ଅଳ୍ପ କିଛି ଖାଇ ଉଠି ଆସେ । ପେଟରେ ସବୁବେଳେ ଭୋକ । କିନ୍ତୁ ଏଣେ ବ୍ୟାୟାମ, ଖେଳ ଗତାନୁଗତିକ ଭାବେ ଚାଲିଥାଏ ।

ଆଉ ଗୋଟାଏ କଥା ମୋର 4th year ବର୍ଷ ମୁଁ ପୁଣି କିଛି କିଛି ଲେଖିବାକୁ ଆରମ୍ଭ କଲି । କେତେଗୁଡ଼ିଏ କବିତା ରଚନା କଲି । ସାଙ୍ଗସାଥୀ ପଢ଼ି ଭାରି ଖୁସି ହେଲେ । ଅନେକ କହିଲେ ପୁଲିନ୍, ତୁମଠି ଏ ଗୁଣ ଅଛି, ଆମେ ତ ଜାଣି ନଥିଲୁ । ମୁଁ କହେ ମୁଁ ଲେଖାଲେଖି ବନ୍ଦ କରି ଦେଇଥିଲି । ଉତ୍କଟ ଅର୍ଥାଭାବ, ଭଉଣୀର ରୁଗ୍‌ଣ ଅବସ୍ଥା, ଏସବୁ ମନର ଅଶାନ୍ତି, ଦୁଃଖ ସତ୍ତ୍ୱେ ଭଉଣୀ ପାଇଁ କୁଆଡ଼େ ଔଷଧ ଆଣିବାକୁ ଗଲେ ପକେଟ୍‌ରେ ଖଣ୍ଡେ କବିତା, ଗଳ୍ପର ପାଣ୍ଡୁଲିପି ନେଇ ଯାଇଥାଏ । କୌଣସି ପତ୍ରିକାର ସମ୍ପାଦକଙ୍କୁ ଦେଖେଇବି କିମିତି ପ୍ରକାଶ ପାଇବ । ଘରେ ପଶିଲେ ଦୁଃଖର ଛାୟା ।

ଭଉଣୀ ରୁଗ୍‌ଣ ଅବସ୍ଥାରେ ଶୋଇଛି । ଉତ୍କଟ ଅର୍ଥାଭାବ ଯୋଗୁଁ ଘର ଶ୍ରୀହୀନ ଦେଖା ଯାଉଥାଏ । ମୁଁ ଲକ୍ଷ୍ୟ କରିଛି, ଲୋକର ଧନ ଥିଲା ବେଳେ ତା'ର ରୂପ ଯେପରି ସୁଶ୍ରୀ ଦେଖାଯାଏ ପୁଣି ଗରିବ ହୋଇଗଲେ ତାର ରୂପ ସେମିତି ଶ୍ରୀହୀନ । ସେଇ ମଣିଷ କିନ୍ତୁ ଦୈନ୍ୟର ଚାପରେ ପୂରାପୁରି ବଦଳି ଯାଏ । ସେମିତି ଘର ଯେତେବେଳେ ଐଶ୍ୱର୍ଯ୍ୟରେ ଭରପୂର ଘର ସୁନ୍ଦର ଦେଖାଯାଏ କିନ୍ତୁ ଦୁଃଖବେଳେ ଘର କି ଶ୍ରୀହୀନ ଦେଖାଯାଏ । ଯେ ପ୍ରକୃତ ଲକ୍ଷ୍ୟ କରିଥିବ ସେ ବୁଝିଥିବ, ଐଶ୍ୱର୍ଯ୍ୟ ବେଳେ ଘରର ଚଟାଣ, କାନ୍ଥ ଛପର, ଅଗଣା ସବୁ ଝକ ଝକ ଦିଶୁଥିବ କିନ୍ତୁ ଦୈନ୍ୟ ବେଳେ ଘରର ଛପର ଉଡ଼ିଯାଇ ବାଉଁଶ ଜାଳି ବାଟେ ଆକାଶ ଦିଶୁଛି, କାନ୍ଥ ଭାଙ୍ଗିଗଲାଣି, ଚଟାଣ ଆବଡ଼ାଖାବଡ଼ା, ଗୁହାଳରୁ ଗାଈ ବଳଦ ମରି ଗୁହାଳ ପଦା, ବିଲେଇର ବଂଶ ବୁଡ଼ିଲାଣି, ପୋଷା ଚଢ଼େଇ ପଞ୍ଜୁରୀରୁ ମରି ପଞ୍ଜୁରୀ କେଉଁଠି ପଡ଼ିଛି, ଭଙ୍ଗା ଅଧାକାନ୍ଥି ଉପରେ ପଡ଼ିଶା ଘର କିମ୍ବା ନିଜର ପୋଷା ଛେଳି ଉଠି ବୁଲିଲେଣି । କୂଅ ତୁଣ୍ଡାରେ ଭାଙ୍ଗି ଭିତରେ ଅତଡ଼ା ଖାଇ ଗଲାଣି, ଅଗଣାରେ କେତେ ଅନାବନା ଲଟା ବୁଦା ମାଡ଼ିଗଲାଣି, ତା'ଭିତରେ ସାପ, ନେଉଳ ବେଳେବେଳେ ପଇଁତରା ମାଉଲେଣି, କାପତା କପଟୀ ଆସି ଅଗଣାରେ ଚରି ବୁଲି ଉଡ଼ି ଯାଉଛନ୍ତି । ହାଣ୍ଡିଶାଳ ନିସ୍ତବ୍ଧ, ଛେଁ, ଛାଁ ଶବ୍ଦ ଆଉ ନାହିଁ । ଧୂଆଁ କେବେ କେମିତି ବାହାରିବା ଆଖିରେ ପଡୁଛି, ପେଜ ନଳା ଶୁଖି ଠୋ ଠୋ, ପେଜ ଢ଼ଳା ନାହିଁ କି ପାଣି ଢ଼ଳା ନାହିଁ । ବର୍ଷା ବେଳେ ଚାଳରୁ ପାଣି ଗଳି ମୁଣ୍ଡ ଗୁଞ୍ଜିବାକୁ ଜାଗା ନାହିଁ । ଘରର ମାଲିକ ତା'ର ପିଲା ଛୁଆ ସମସ୍ତେ ଝଡ଼ି ହାଡ଼ ଚମ ଦିଶିଲାଣି । ଦୁଃଖବେଳେ ବର୍ଷା ପାଣି ବେଶି ଭଗାରୀ ହୁଏ । ଯେଉଁଠି ଯେତେ

ଅନାବୃଷ୍ଟି ହଉଥାଉ, ଗରିବ ଘର ଉପରେ ପ୍ରବଳ ବର୍ଷା, ଘରର ଭଙ୍ଗା ଅଂଶରେ ଅଖା, ତଳେଇ ଟିଣ ପତର ଚପା ହେଲାଣି । ଘର ଲୋକଙ୍କର ଅଳଙ୍କାରପତ୍ର ବନ୍ଧା ପଡ଼ି, ବିକ୍ରି ହେଇ ଆଉ କିଛି ନାହିଁ । କଂସା, ଥାଳି, ଲୋଟା ବିକ୍ରିବଟା ହେଲାଣି, ବନ୍ଧା ପଡ଼ିଲାଣି । ବେଳେବେଳ ଉପାସ ରହିବା ପୁଣି ବେଳେବେଳେ ଅତି ବିଳମ୍ବରେ ବେଳାଏ ଖାଇ ରହିବାକୁ ପଡ଼ିଲାଣି । ଦିନବେଳେ କିମ୍ବା ରାତିରେ ଭାତ ବଦଳରେ ବେଳେବେଳେ ଜଳଖିଆ ଖାଇ ରହିବାକୁ ପଡ଼ିଲାଣି । ବନ୍ଧୁବାନ୍ଧବ କାହାରି ଦେଖା ନାହିଁ । ଏମିତି ଅବସ୍ଥାରେ ପୁଣି କୁଣିଆ ଜଣେ ଦି'ଜଣ ଆସି ପହଞ୍ଚିଲେଣି ।

ଦୁଃଖ ବେଳେ ଯମ ପୁଣି ବେଶି ଦାଉ ସାଧେ । ଜଣେ ଦି'ଜଣ କେହି ମଲେଣି, ତାଙ୍କର ଶବ ସତ୍କାର କରିବାକୁ ସମ୍ବଳ ନାହିଁ । ଏମିତି କେତେ ଘଟଣା ଆଖିରେ ପଡ଼ିଛି, ଅଙ୍ଗେ ଲିଭେଇଛି । ଦିନ ଦିନକର ଘଟଣା ମନେପଡ଼ିଲେ ଦୁଃଖରେ ଛାତି ଫାଟିଯାଏ ।

ମୁଁ 4th year ରେ ପଢ଼ିବା ବେଳେ ଅତି ଦୈନ୍ୟର ବେଳ ବିତେଇବାକୁ ପଡ଼ିଲା । ଦିନକର ଘଟଣା ଏ ପର୍ଯ୍ୟନ୍ତ ଭୁଲି ପାରୁ ନାହିଁ । ସେଦିନ ସକାଳେ କ'ଣ ଚୁଡ଼ା ମୁଢ଼ି ଖାଇଲୁ କିନ୍ତୁ ରୋଷେଇ କେମିତି କ'ଣ ହବ କିଛି ଘରେ ନାହିଁ । ଟଙ୍କା ଧାର କରିବାକୁ ଯାଇ ଟଙ୍କା ମଧ ମିଳିଲା ନାହିଁ । ରୋଷେଇ ହବାର ଉପାୟ ନାହିଁ । ବାବା ନିରବରେ ବାହାରେ ବସିଥାନ୍ତି । କଣ କରିବେ? ନିରୁପାୟ । ମୁଁ ସେଦିନ ମେଡ଼ିକାଲ ସ୍କୁଲକୁ ନଯାଇ ଘରେ ଥାଏ, କ'ଣ ଗୁରାଏ ଲେଖୁଥାଏ । ମା ଘରେ ଏଣେତେଣେ ହଉଥାନ୍ତି । ସେ ବି କିଛି ଯୋଗାଡ଼ କରି ପାରୁ ନଥାନ୍ତି । ଏଥି ଭିତରେ ଜଣେ ଦି'ଜଣ ପଡ଼ିଶା ଘରର ମାଇପି ଘର ଭିତରେ ଆସି ବୁଲି ଗଲେଣି ଗପ କରିବା ବାହାନାରେ । ଏଣେ ଉଦ୍ଦେଶ୍ୟ ହେଲା ଦେଖିବେ ଆମର ରୋଷେଇ ହଉଛି କି ନା? ମା ମନେ ମନେ ଲଜ୍ଜିତ ହଉଥାନ୍ତି । ଶେଷରେ ମୋତେ ଥରେ କହିଲେ ଦେଖୁଛୁ, ଏମାନେ ଆସି ବୁଲି ନଜର କରି ଯାଉଛନ୍ତି ଆମର ରୋଷେଇ ହଉଛି କି ନା?

ମୁଁ କିଛି ନକହି ଚୁପ୍ ରହୁଥାଏ । ଦିନ କ୍ରମଶଃ ବଢ଼ିବାକୁ ଲାଗିଲା, ଜଠରାଗ୍ନି କ୍ରମଶଃ ଟିକିଏ କୁହୁଳିବାକୁ ଲାଗିଲା । କ'ଣ କରିବି? ଏଣେ ବ୍ୟାୟାମ କରି କରି ଦିହ ଗୋଟାଏ ମାଳ ପରି ହେଇଥାଏ । ସେଇ ଅନୁପାତରେ ଜଠରାଗ୍ନିର ପ୍ରାବଲ୍ୟ ଅସମ୍ଭାଳ । ମୁଁ ସେଦିନ ବାବାଙ୍କୁ ଅନେଇ ଲକ୍ଷ୍ୟ କରି ଭାବୁଥାଏ ଏଇ ମଣିଷତ ବଡ଼ ଆକାରରେ ଭୋଜିଭାତ କରି କେତେ ଲୋକଙ୍କୁ ଖୋଇ କେତେ ଆପ୍ୟାୟିତ କରିଛନ୍ତି । ଆଜି ଏମିତି କାହିଁକି ଅବସ୍ଥା! ମଣିଷ ଜୀବନରେ କେତେବେଳେ କଣ ଘଟିପାରେ, କହିବା ଅସମ୍ଭବ ।

କେତେ ବନ୍ଧୁବାନ୍ଧବ ଆସି ଆମ ଘରେ ମାସେ ମାସେ ବସି ଖାଇ ପିଇ ଯାଇଛନ୍ତି । ଆଜି ତ କାହାରି ଦେଖା ନାହିଁ? ସେହି ମଣିଷ ତ ଆମେ ଏହି ଘରେ ଅଛୁ, ତେବେ ଘରଟା ନିସ୍ତବ୍ଧ ଲାଗୁଛି କାହିଁକି? କେବଳ ଅର୍ଥ ନାହିଁ ବୋଲି, ଦୈନ୍ୟର ଅବସ୍ଥା ବୋଲି ନା କଣ? ମୁଁ ଏମିତି କେତେ କଥା କ'ଣ ଭାବୁଥାଏ । ପୁଣି ବେଳେବେଳେ ବାବା, ମା'ଙ୍କ ଉପରେ ମନେ ମନେ ବିରକ୍ତ ହଉଥାଏ । ଭାବୁଥାଏ, ହାତରେ ଅର୍ଥ ଥିଲା ବେଳେ ଆଗପଛ ନ ଭାବି ମନଇଚ୍ଛା ଖର୍ଚ୍ଚ । ସେଇ ଅପବ୍ୟୟର ଫଳ ଭୋଗ ହଉଛି । କି ଖାଇବାପିଇବା! କି ଖର୍ଚ୍ଚ! କି ଅତିଥି ଚର୍ଚ୍ଚା! ଯେ ଅତିଥି ଆସିଲେ ଯା'ର ଯେଉଁ ଜିନିଷ ଖାଇବାର ଇଚ୍ଛା ସେ ସେହି ଜିନିଷ ବରାଦ କଲେ, ତାଙ୍କୁ ସେଇ ଜିନିଷ ତିଆରି କରି ଦିଆ ହେଲା । ସେ ଖାଇପିଇ ଖୁସିରେ ଗଲେ । କେତେକ ଅତିଥି, କୁଣିଆ ମନ୍ତବ୍ୟ କରିବାର ଶୁଣିଛି, ଯେ ଯେତେବେଳେ ଆମ ଘରକୁ ଆସୁ ଭାତ ଗଣ୍ଡାଏ ଯେମିତି ହେଲେ ଖାଇବାକୁ ମିଳିବ ।

ଅତିଥି, ଅଭ୍ୟାଗତଙ୍କ ପାଇଁ ମା ସବୁ ଦିନେ ଭାରି ସଜାଗ ଥାନ୍ତି । ଆମ ଘର ଲୋକଙ୍କ ପାଇଁ ଯା ରନ୍ଧା ହବାର କଥା, ତାଠୁଁ ମା ଯେମିତି ହେଲେ କିଛି ଅଧିକା ରାନ୍ଧି ଥିବେ, କାଳେ କିଏ କେତେବେଳେ ଆସି ପହଁଚିଯିବ । ଆଜି ତ ସେଇ ଘର, ସେଇ ମଣିଷ ଆମେ ଅଛୁ । ଆମେ ଥିଲେ କଣ ହବ? ଅର୍ଥ ନାହିଁ । ମଣିଷର

ଅର୍ଥବଳ ନିକଟରେ ଦୈହିକ ଶକ୍ତି କିଛି ନୁହେଁ। ଅର୍ଥାଭାବ ଯୋଗୁଁ ମଣିଷ ଖାଇବାକୁ ନପାଇ କ୍ରମଶଃ ଦୁର୍ବଳ ହୋଇ ମୃତ୍ୟୁ ମୁଖରେ ପଡ଼ିବ। ମୁଁ ତ ବ୍ୟାୟାମ କରି ଦୈହିକ ଶକ୍ତି ବଢ଼େଇଛି କିନ୍ତୁ ଆଜି ବେଳାଏ ଖାଇବାର ଅଭାବ ଯୋଗୁଁ ଦିହ ତ କେମିତି ଅସ୍ୱସ୍ତି ଲାଗିଲାଣି। ପିଲାବେଳେ ତ ନଖାଇବା ଯୋଗୁଁ ମାଡ଼ ଖାଇଛି ଆଜି ଭୋକ ଦେଖେଇଲେ, ଖାଇବାକୁ ଇଛା ହେଲେ ମଧ ଖାଇବାକୁ କିଛି ନାହିଁ। ଜଠରାଗ୍ନି ତ ହୁତ୍‌ହୁତ୍ ହୋଇ ଜଳିଲାଣି। ଏ ନିଆଁକୁ ତ ନିଆଁଲିଭାଳି ଦଳର ଶକ୍ତି ନାହିଁ ଲିଭେଇବାକୁ। ଏ ନିଆଁ ତ ପାଣିରେ ଲିଭିବାର ନୁହଁ। କିଛି ଖାଦ୍ୟର ଆହୁତିରେ ଲିଭିପାରେ, ଶାନ୍ତ ପଡ଼ିପାରେ।

ଦିନ ଗୋଟାଏ ବେଳକୁ ମା କୁଆଡୁ କ'ଣ ଯୋଗାଡ଼ କରି ବାବାଙ୍କୁ ଡାକିଲେ ଆସ ଖାଇବ। ମୁଁ ସେତେବେଳକୁ ଖଟରେ ଜଗି ଶୋଇଥିଲି। ମା ଆସି ମୋ ପାଖରେ ବସି ଅତି ନ୍ୟୁନ ଭାବରେ କହିଲେ ଆ ଖାଇବୁ, କ'ଣ କରିବା, ଦୁଃଖର ବେଳ। ମା ଲଜ୍ଜିତ ହେଉଥାନ୍ତି। କାରଣ ମୁଁ ଏଡ଼େ ବଡ଼ ପୁଅ, ଏତେ ବେଳ ହେଲାଣି ଅଖିଆ ରହିଛି। ମୁଁ ମନେ ମନେ ଟିକିଏ ବିରକ୍ତ ହେଲି। କାରଣ ହେଲା, ବାପା, ମା'ଙ୍କ ହାତରେ ପଇସା ଥିଲା ବେଳେ ଆଗପଛ ବିଚାର ନକରି ଖର୍ଚ୍ଚ କରନ୍ତି। ଏତେବେଳକୁ ନିଜେ ଖାଇବାକୁ ପଇସା ନାହିଁ। ପୁଣି ଭାବିଲି ଏଇ ବାବା, ମା ତ କେତେ କାହାକୁ ଖୋଇଛନ୍ତି, ସାହାଯ୍ୟ କରିଛନ୍ତି, ମଣିଷ କରିଛନ୍ତି, ଆଜି ନିଜେ ଖାଇବାକୁ ହଇରାଣ ହଉଛନ୍ତି, କଣ କରିବେ? ମନ୍ଦ ଦିଗରେ ତ ପଇସା ଖର୍ଚ୍ଚ କରି ନାହାନ୍ତି। ଯାହାଙ୍କର କରିଥିଲେ ସେମାନେ ଆଜି ଅସୁବିଧା ବେଳେ, ଅଭାବ ବେଳେ ସାହାଯ୍ୟ ନକଲେ, ବେଇମାନୀ କଲେ, ଓଲଟି ମଜା ଦେଖିଲେ ଆମେ କେମିତି ହଇରାଣ ହଉଛୁ। ଏଥିରେ ବାବା, ମା'ଙ୍କର ଦୋଷ କଣ? ବାବା, ମା ତ କେତେ ଲୋକଙ୍କୁ ଆଶ୍ରୟ ଦେଇଛନ୍ତି। କେତେ ଲୋକଙ୍କର ଅଭାବ, ଅସୁବିଧା ବେଳେ ସାହାଭରସା ହେଇଛନ୍ତି, କଣ କରିବେ? ଆଜି ତାଙ୍କ ବେଳକୁ କେହି ସାହା ଭରସା ନାହିଁ। ଏ ତ ନୂଆ କଥା ନୁହେଁ। ଏମିତି ମଣିଷ ଜୀବନରେ ବେଳ ଆସିଥାଏ। ଏ ବେଳ କଣ ସବୁଦିନେ ଥିବ? ମୋର ଏତିକି ବେଳେ ବାବାଙ୍କର ଗୋଟାଏ କଥା ମନେପଡ଼ିଲା ମୁଁ ଅତି ପିଲାବେଳେ ରାତିରେ ରୋଷେଇ ସରିବା ଆଗରୁ ଯେତେବେଳେ ଭୋକ ହୁଏ ଖାଇବା ପାଇଁ କାନ୍ଦେ। ବାବା ମୋତେ ବୁଝେଇ କହନ୍ତି ଆଉ ଟିକିଏ ରହ। ରୋଷେଇ ଅଭିକା ସରିଯିବ, ଖାଇବୁ। ମୁଁ ଜିଦ୍ କରି କାନ୍ଦି କାନ୍ଦି କହେ, ମୁଁ ଆଉ ରହିପାରିବି ନାହିଁ।

ବାବା କହନ୍ତି, ଆଜି ତ ଅଳ୍ପ ସମୟ ଭୋକ ସମ୍ଭାଳି ରହି ପାରୁନୁ, ଯୋଉଦିନ ଉପାସ ରହିବାକୁ ପଡ଼ିବ କେମିତି ରହିବୁ? ମୁଁ ତୁନି ହେଇଯାଏ। ମୁଁ ସେତେବେଳେ ଭାବିଛି ଉପାସ କାହିଁକି ରହିବାକୁ ପଡ଼ିବ? ନା, ପ୍ରକୃତ କଥା, ବାବା ଏଇଥିପାଇଁ ସେତେବେଳେ ମୋତେ ବୁଝେଇ କହୁଥିଲେ, ମଣିଷ ଜୀବନରେ କେତେବେଳେ କଣ ଘଟିପାରେ, କୋଉ ଅବସ୍ଥାରେ ପଡ଼ିବାକୁ ହୁଏ କିଛି ଠିକ୍ ନାହିଁ। ମୁଁ ବାବା, ମା'ଙ୍କର ଗୋଟିଏ ପୁଅ, ଖୁବ୍ ଐଶ୍ୱର୍ଯ୍ୟରେ ବଢ଼ିଥିଲି। ବେଳେବେଳେ ଖାଇବି ନାହିଁ କହିଲେ, ମା ମୋତେ ଖୋଇବା ପାଇଁ ବାଡ଼େଇଛନ୍ତି। ମାଡ଼ ଦେଇ ଖୋଇଛନ୍ତି। ଆଜି ପୁଣି ଏ ଅବସ୍ଥା କାହିଁକି?

ମୁଁ ସେଦିନ ମା'ଙ୍କ ଡାକରାରେ ଉଠି ଯାଇ ପଖାଳ କିଛି ଖାଇଲି। ବାବା, ମା ସମସ୍ତେ କିଛି କିଛି ଖାଇ ରହିଲୁ। ରାତିକି ଟଙ୍କା ଧାର ମିଳିଲା। ପୁଣି ଭଲ କରି ରୋଷେଇବାସ ହେଲା, ଭଲ ଭାବରେ ଖାଇଲୁ।

ମୋର ମନେ ଅଛି ଥରେ ଇମିତି ଉତ୍କଟ ଅଭାବ ବେଳେ ମୁଁ ଦିନେ ସନ୍ଧ୍ୟାପରେ କର ମାଡ଼ି ଜଗି ଶୋଇଛି, ବାବା ନିକଟରେ ବସିଛନ୍ତି, ମା ମୋ ପାଖରେ ବସି ମୋ ପିଠିକି ଆଉଁସୁ ଆଉଁସୁ କହିଲେ ବର୍ତ୍ତମାନ ତ ଆମେମାନେ ଖାଇବା ପାଇଁ ହଇରାଣ ହେଉଛୁ, ଇମିତି ଅବସ୍ଥାରେ ତୁ ଆଉ ସେ ଲୁହା ଗୁରାକ ଟେକା ଟେକି କରି ବ୍ୟାୟାମ (barbell exercise) କରନା, ସେଥିରେ ଦେହ ଖରାପ ହେଇଯିବ।

ବ୍ୟାୟାମ କରିବା ଦ୍ୱାରା ମୋର ଭୋକ ମଧ ଖୁବ୍ ବଢ଼ିଗଲା। ପ୍ରଚୁର ପରିମାଣରେ ଖାଇବାର ଇଛା କିନ୍ତୁ

ପ୍ରଚୁର ପରିମାଣ ମିଳୁଛି କାହିଁ? ଏଣୁ ସବୁବେଳେ ପେଟରେ ଭୋକ, ଯା ଖାଇଲେ ମୁହୂର୍ତ୍ତକେ ହଜମ, ପେଟ ଖାଲି, ପୁଣି ଭୋକ। ଭାତ ଖାଇ ବସିଲେ ତିନୋଟି ଲୋକର ଆହାର ଏକା ଖାଇଦେବି। ପୁରି, ରୋଟି, ପରଟା ଖାଇଲେ ମୋର ଏକା ସେରେ ପୁରି, ପରଟା ଦରକାର, ମିଳୁଛି କାହିଁ? ଏଣୁ ମୁଁ ଏ ସବୁବେଳେ ଭୋକ ଜ୍ୱାଳାରୁ ରକ୍ଷା ପାଇବା ପାଇଁ, ଗୁରାଏ ବୁଟ ଭିଜେଇ ପକେଟ୍‌ରେ ରଖିଲି। ଯେତେବେଳେ ସେତେବେଳେ ଗୁରାଏ ଚୋବେଇ ଦିଏ।

ଥରେ ମନେ ଅଛି 4th year ରେ ପଢ଼ିବା ବେଳେ class ଆଉ ward duty ଶେଷ କରି ବାହାରେ ରହି ଯେଉଁ ପିଲାମାନେ medical ପଢ଼ନ୍ତି ସେମାନେ ଦିନ ୧ଟାଏ ବେଳେ ଘରକୁ ଖାଇବା ପାଇଁ ଚାଲିଯାନ୍ତି ପୁଣି ଦିନ ୨ଟା ବେଳକୁ medical କୁ ଆସନ୍ତି। ଦିନେ କାହିଁକି, ଏମିତି କେତେଥର ଘଟିଛି। ଦିନ ୧ଟାଏ ଠାରୁ ଦିନ ୨ଟା ଭିତରେ ମୋର ଆଉ ଘରକୁ ଯିବାର ଦରକାର ପଡ଼େନା। ଘରକୁ ଯିବା ଅର୍ଥ ଘରୁ ଖାଇ ପିଇ ଆସିବା। ଘରକୁ ଗଲେବା କ'ଣ ଖାଇବି? ଏଣୁ ସେହି ସମୟ ଭିତରେ ରାଣୀହାଟକୁ ଯାଇ ଚାରିଅଣାରେ ଯେତିକି ଜଳଖିଆ ମିଳିଲା ସେଥିରେ ଦାମିକା ଜଳଖିଆ ବା କ'ଣ ଖାଇବି? ଏଣୁ ବରା, ପିଆଜି, ଗୁଲୁଗୁଲା ଯାହା ମିଳିଲା ଖାଇ ରହିଯାଏ। ଦିନେ ଦିନେ କେବଳ ଭିଜାବୁଟ ଚୋବେଇ ଚୋବେଇ ରହିଯାଏ। ପେଟରେ ଭୋକ ପ୍ରବଳ ଅନୁଭବ କଲେ କ'ଣ ହବ? ପେଟର ନିଆଁ ତ ପାଣି ପିଇଲେ ଲିଭୁ ନାହିଁ। କିଛି ସମୟ ଥମିଗଲେ ପୁଣି ଦିଗୁଣ ହେଇ ଜଳୁଛି। କିନ୍ତୁ ଯେତେ ଯାହା ଖାଇବାର ଅଭାବ ହେଉ, ଭୋକ ଯେତେ ପ୍ରବଳ ହଉ, football ଖେଳ, ବ୍ୟାୟାମ, ପାଠପଢ଼ା ବନ୍ଦ ନଥାଏ, ସବୁ ଗତାନୁଗତିକ ଭାବରେ ଚାଲିଥାଏ। ଅନେକ ସମୟରେ ମୁଁ ଦେଖିଛି football ଖେଳରେ ପଶିଗଲେ ଭୋକ ଭୁଲିଯାଏ ଅବଶ୍ୟ ଦେହର ଜୋର୍ କିଛି ଊଣା ଜଣାପଡ଼େ।

ଏଥର 4th year ର ଶେଷ ପରୀକ୍ଷା (final examination) ନିକଟ ହେଇ ଆସିଲା। ସବୁ କାମ ଭିତରେ ପଢ଼ାପଢ଼ି ଆହୁରି ଜୋର୍‌ସୋର୍ ଚାଲିଲା। ଦିବାକର ମହାନ୍ତି ମୁଁ ଦିହେଁ ଯେମିତି ଆଗରୁ ପଢୁଥିଲୁ, ସେମିତି ପଢୁଥାଉ, ସନ୍ଧ୍ୟାବେଳେ ଟିଉସନ୍ ମଧ୍ୟ ଚାଲିଥାଏ। ମୋର ସାଙ୍ଗ ପିଲାଏ କେହି ଜାଣନ୍ତି ନାହିଁ, ମୁଁ ଟିଉସନ୍ କରୁଛି।

Final examination ପାଇଁ test ପରୀକ୍ଷା ଆରମ୍ଭ ହେଲା। ମୁଁ ଦିବାକର ଦିହେଁ test ପରୀକ୍ଷା ଦେଲୁ। ଦିହେଁ final ପରୀକ୍ଷା ପାଇଁ test ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲୁ ଅର୍ଥାତ୍ ଇଂରାଜୀରେ କହିଲେ sent-up ହେଲୁ। ଭାରି ଆନନ୍ଦ ଲାଗିଲା। ମନ ଭିତରେ କେତେ କଥା ଉଠିଲା ପଡ଼ିଲା। Barbell exercise କରି କରି ଶରୀରର ଖୁବ୍ ଉନ୍ନତି ହେଇଥାଏ। ମୋର ଶରୀରର ଉନ୍ନତି ଦେଖି ଅନେକ ସାଙ୍ଗ ପିଲାଏ ମୋତେ କେତେ ପ୍ରକାର ପରିହାସ କଲେ। କେତେ ପିଲା ଅନୁରୋଧ କଲେ, ପୁଳିନ୍ ଆମକୁ ଟିକିଏ barbell exercise ଶିଖେଇଦେ।

Barbell exercise ସହିତରେ football ଖେଳ, ସନ୍ଧ୍ୟା ପରେ tuition ଗତାନୁଗତିକ ଭାବରେ ଚାଲିଥାଏ। ଏଇ ସମୟରେ ଗୋଟାଏ ଦୁଃଖର ଘଟଣାରେ ମନ କିନ୍ତୁ ଚପି ଯାଉଥାଏ। ଘଟଣା ହେଲା, ସାନ ଭଉଣୀକୁ ଯେ ନାଳଶୂଳା ପୋଖରୀ ଧଇଲା ସେ ଆଉ ବନ୍ଦ ହେଲା ନାହିଁ, ସେ ସେମିତି ଚାଲିଥାଏ। ସେ ଚଲାବୁଲା କରୁଥାଏ କିନ୍ତୁ କ୍ରମଶଃ ଦୁର୍ବଳ ହେଇ ପଡ଼ିଲା। ତା'ର ଶିଶୁ ଝିଅଟି ଆମର ମନର ଦୁଃଖକୁ ଅନେକ ଲାଘବ କରୁଥାଏ। ତା'ର ଶିଶୁସୁଲଭ ଚପଳତା, ହସ କୌତୁକ, ସବୁ ଆନନ୍ଦଦାୟକ। ତାକୁ ବାବା, ମୁଁ, ମା ଅନେକ ସମୟ କୋଳକାଖ କରି ବୁଲୁ। ମୋର ସାନଭଉଣୀ ତା'ର ଦୁର୍ବଳତା ଯୋଗୁଁ ତାକୁ ବିଶେଷ କୋଳକାଖ କରି ପାରୁ ନଥାଏ। ମା ହିଁ ସେ ଝିଅଟିର ବିଶେଷ ଯତ୍ନ ନଉଥାନ୍ତି।

ଏଥି ମଧ୍ୟରେ ତା'ର ନାଁ କଣ ଦିଆଯିବ ସେ ନେଇ ବାବାଙ୍କର ମୋର ବିଶେଷ ଆଲୋଚନା ପଡ଼ିଲା। କଣ ନାଁ ଦିଆଯିବ? ଏଥି ମଧ୍ୟରେ ତା'ର ଡ଼ାକ ନାଁ ଗୋଟାଏ ଘଟଣାରେ ସ୍ଥିର ହେଇ ସାରିଥାଏ। ଘଟଣା ହେଲା ସେ ଝିଅଟି ଥରେ ଝାଡ଼ା ରୋଗରେ ବିଶେଷ ଭାବେ ଆକ୍ରାନ୍ତ ହେଲା। ଇମିତିକି ଦିନେ ରାତିରେ ତା'ର

ପ୍ରବଳ ଝାଡ଼ା ଯୋଗୁଁ ତା'ର ଅବସ୍ଥା ସଙ୍କଟାପନ୍ନ ହେଲା । ମନେହେଲା ଆଉ ବଞ୍ଚିବ ନାହିଁ । ସାନଭଉଣୀ ମନେ ମନେ ଦୃଢ଼ ଭାବରେ ଜାଣିଗଲା ଯେ ଝିଅ ଆଉ ବଞ୍ଚିବ ନାହିଁ । ଘୋର ବର୍ଷାର ରାତି । ସାନଭଉଣୀ ଭୟରେ କାନ୍ଥ ଆଡ଼କୁ ମୁହଁ କରି ତଳେ ଶୋଇଗଲା । ମା ଝିଅଟିକି ଧରି ବସିଥାନ୍ତି । ମୁଁ ପାଖରେ ବସିଥାଏ । ବାବା ଖଟ ଉପରେ ବସିଥାନ୍ତି । ସମସ୍ତଙ୍କର ଉତ୍କଣ୍ଠାରେ ଖିଆପିଆ ବନ୍ଦ । ଭଗବାନଙ୍କ ଦୟାରୁ ରାତିର ଶେଷ ଆଡ଼କୁ ଝାଡ଼ା ବନ୍ଦ ହେଲା । ସାନଭଉଣୀର ନିଦ ଭାଙ୍ଗିଲା । ସେ ଭାବିଲା, ଝିଅ ଆଉ ନାହିଁ । କିନ୍ତୁ ଉଠିପଡ଼ି ଝିଅକୁ ଯେତେବେଳେ ଦେଖେ ଝିଅ ଝାଡ଼ା ବନ୍ଦ ହେଇଗଲାଣି । ଝିଅକୁ କୋଳକୁ ନେଇ ଟିକିଏ ଆନନ୍ଦ ଅନୁଭବ କଲା । ଏଇ ଝାଡ଼ା ଯୋଗୁଁ ଝିଅର ସ୍ୱାସ୍ଥ୍ୟ ଏକବାରେ ଖରାପ ହେଇଗଲା । ଖାଲି ହାଡ଼ ଚମ । ମୁଁ ଦିନେ ତା'ର ଓଠକୁ ଧରି କହିଲି, ମା ଏକବାରେ ବୁଢ଼ୀ ହେଇଗଲୁ? ସେହିଦିନଠୁଁ ତାକୁ 'ବୁଢ଼ୀ' ବୋଲି ସମସ୍ତେ ଡ଼ାକିଲେ । ତା'ସହିତରେ ମୁଁ ସବୁବେଳେ ଓଡ଼ିଆରେ କଥାବାର୍ତ୍ତା କଲି । ସେ ମୋ ସହିତରେ ମଧ ଓଡ଼ିଆରେ କଥାବାର୍ତ୍ତା କଲା ।

ତା'ର ଭଲ ନାଁ କଣ ଦିଆଯିବ, ଏଥିଲାଗି ମୁଁ ବି.ବର୍ମାଙ୍କ ବସାରୁ କେତେକ ପୁରୁଣା "ପ୍ରବାସୀ" ପତ୍ରିକାରୁ କେତେକ ଭଲ ଭଲ ନାଁ ଲେଖି ଆଣିଲି, ତାରି ଭିତରୁ ବାବା, ମୁଁ ବାଛି କରି ଗୋଟିଏ ଭଲ ନାଁ ତା'ର ରଖାଯିବ । ସେ ନାଁ ସବୁ ବାବାଙ୍କୁ ଦେଖେଇଲାରୁ ବାବା କହିଲେ, ତା'ର ନାଁ ସୁଜାତା ଘୋଷ ରଖାଯାଉ । ମୁଁ ଦେଖିଲି ବାବା ଯେତେବେଳେ ଏ ନାଁ ପସନ୍ଦ କରିଛନ୍ତି ମୁଁ ଆଉ କିଛି ନକହି ସେହି "ସୁଜାତା" ନାଁ ଟି ରଖିବାରେ ରାଜି ହେଲି । କିନ୍ତୁ ଦୁଃଖର କଥା ଝିଅଟି ଯେତେ ବଢ଼ିବାରେ ଲାଗିଲା ଏଣେ ସାନଭଉଣୀର ସେତିକି ଶାରିରୀକ ଅସୁସ୍ଥତା ବଢ଼ି ଦୁର୍ବଳ ହବାକୁ ଲାଗିଲା ।

4th year ର final examination ପାଇଁ ମୁଁ sent-up ହେଲା ପରେ ପରୀକ୍ଷା ଫିସ୍ ସବୁ ପିଲାଏ ଦାଖଲ କଲେ । କିନ୍ତୁ ମୋର ଫିସ୍ ଦାଖଲ ହେଇ ପାରୁ ନଥାଏ । ଯେଉଁଦିନ ଫିସ୍ ଦାଖଲ କରିବାର ଶେଷ ଦିନ ମୁଁ ହତାଶ ହେଇ ଆସି ଘରେ ଚୁପ୍‌ଚାପ୍ ଶୋଇ ରହିଲି । ମୁଁ ନିଶ୍ଚିତ ଭାବିଲି ମୋର ଫିସ୍ ଦାଖଲ ନହେଇ ପାରିବା ଯୋଗୁଁ ମୁଁ ପରୀକ୍ଷା ଦବାରୁ ବଞ୍ଚିତ ହେଇ ରହିଲି । କିନ୍ତୁ ମୁଁ କିଛି ସମୟ ଶୋଇ ଉଠିବା ପରେ ଦେଖିଲି ସାନଭଉଣୀ ତା'ର ଅଳଙ୍କାରରୁ ଖଣ୍ଡେ ନେଇ ପଡ଼ିଶା ଘରେ ବନ୍ଧା ପକେଇ ମୋର ଫିସ୍ ଦାଖଲ ପାଇଁ ଟଙ୍କା ଆଣି ସାରିଛି । ମା ଦେଖି ଆଶ୍ଚର୍ଯ୍ୟ ହେଲେ, ମୁଁ ମଧ ଆଶ୍ଚର୍ଯ୍ୟ ହେଲି । ଯାହଉ, ଫିସ୍ ଦାଖଲର ସେତେବେଳକୁ ସମୟ ଥିଲା । ପରୀକ୍ଷା ଫିସ୍ ଥିଲା ସେତେବେଳେ ମାତ୍ର ୧୮ଟଙ୍କା । ମୁଁ ୧୮ ଟଙ୍କା ନେଇ ମେଡ଼ିକାଲକୁ ଯାଇ ଦାଖଲ କରି ଆସିଲି । ମନରେ ଟିକିଏ ଦମ୍ଭ ଆସିଲା, ପରୀକ୍ଷା ଦେବି ।

ପରୀକ୍ଷା ଫିସ୍ ଦାଖଲ ପରେ ଗୋଟାଏ ଭଲ ଦିନ ଦେଖି ଦିବାକର, ମୁଁ ଉଭୟେ final ପରୀକ୍ଷା ପାଇଁ ପଢ଼ାପଢ଼ି ଆରମ୍ଭ କଲୁ । କେବଳ ରାତି ୧ଟାଏ ଠାରୁ ତହିଁ ଆରଦିନ ସକାଳ ୭ଟା କିମ୍ବା ଆଠଟା ଯାଏ ଘରେ ରହିବା ଛଡ଼ା ଆଉ ସବୁବେଳେ ମେଡ଼ିକାଲ ହତାରେ ଦିନ କଟିଯାଉଥିଲା । ଦିବାକର, ମୁଁ ପଢ଼ି ପଢ଼ି ବିରକ୍ତ ଲାଗିଲେ ଦିନେ ଦିନେ ସନ୍ଧ୍ୟା ପୂର୍ବରୁ ଯାଇ ଅଳ୍ପ ସମୟ ବି.ବର୍ମାଙ୍କ ବସାରେ ଗପ କରି ଆସୁ । ସେତିକି ସମୟ ମଧରେ ରାଜନୀତି, କଳା, ସାହିତ୍ୟ ସବୁ ବିଷୟରେ ଗପ ପଡ଼ିଯାଏ । ବି.ବର୍ମାଙ୍କ ବସାରୁ ସନ୍ଧ୍ୟା ପୂର୍ବରୁ ଫେରିଆସି ମୁଁ ଘଣ୍ଟାକ ପାଇଁ ମେଡ଼ିକାଲ୍ ହତା ଭିତରେ କମ୍ପାଉଣ୍ଡର ମୋତିଉଲ୍ଲାଙ୍କ ପୁଅ ଓର୍‌ସାଡ୍‌ଉଲ୍ଲାକୁ ଟିଉସନ୍ କରିବା ପାଇଁ ଚାଲିଯାଏ । ଦିବାକର କିମ୍ବା ଅନ୍ୟ କେହି ଏକଥା ଜାଣନ୍ତି ନାହିଁ । ଟିଉସନ୍‌ରୁ ଫେରି ଦିବାକର ସହିତରେ ପଢ଼େ ।

ଦିନବେଳା ଦିବାକର, ମୁଁ ଉଭୟେ ହଷ୍ଟେଲ୍‌ରେ ପଢ଼ାପଢ଼ି କରି ଦିନେ ଦିନେ medical ward ଆଉ surgical ward କୁ ଚାଲିଯାଉ କାରଣ ସେଠି ଦେଖିବାକୁ ହବ କି ଧରଣର ରୋଗୀ ସବୁ ward ରେ ଅଛନ୍ତି । ସେହି ରୋଗୀଙ୍କ ଭିତରୁ ପରୀକ୍ଷାରେ ଆମକୁ long case ଆଉ short case ରେ ପ୍ରଶ୍ନ ପଚରା ଯାଇପାରେ । ସେତେବେଳେ ଢେଙ୍କାନାଳରେ ପ୍ରଜା ବିଦ୍ରୋହ ଲାଗି ଅନେକ ଗୁଳି ମାଡ଼ ଖାଇ ଲୋକ ଆସୁଥାନ୍ତି । ଆମେ

ବୁଲି ବୁଲି ଅନେକ gun-shot injury case (ଗୁଳି ମାଡ଼ରେ ଆହତ ଲୋକ) ସବୁ ଦେଖୁ । ବଡ଼ ମର୍ମନ୍ତୁଦ ଘଟଣା, ଦେଖିଲେ ଦିହ ସହୁ ନଥାଏ । ଥରେ ଏମିତି ଜଣେ ରୋଗୀ ପାଖକୁ ଯାଇ ମୁଁ ଠିଆ ହେଲାରୁ ସେ ରୋଗୀ ମୋତେ ଅନୁରୋଧ କଲା, ବାବୁ ମୋତେ ଟିକିଏ ପଛକୁ ଘୁଞ୍ଚେଇ ବସେଇ ଦେଇ ପାରିବକି ?

ରୋଗୀ ଜଣଙ୍କର ବିରାଟ ବଳୁଆ ଦିହ । ଖଟ ଉପରେ ବସିଥାଏ । ଗୁଳି ତା'ର ତଳିପେଟରେ ବସିଥାଏ ଆଉ ବାଁ ହାତରେ ବସିଥାଏ । ମୁଁ ରୋଗୀକୁ କୁଣ୍ଢେଇ ଯେତେବେଳେ ପଛକୁ ଘୁଞ୍ଚେଇ ଖଟ ଉପରେ ବସାଏ, ମୋ ଦେହ ପୋଡ଼ିଗଲା ପରି ମନେହେଲା କାରଣ ରୋଗୀ ଦେହରେ ଭୀଷଣ ଉତ୍ତାପ । ରୋଗୀଟି ଭଲ ଭାବରେ ମୋ ସଙ୍ଗେ କଥାବାର୍ତ୍ତା କଲା, ତହିଁ ଆରଦିନ ଯେତେବେଳେ ସେ ରୋଗୀ ପାଖକୁ ଯାଏ, ରୋଗୀଟି ଖଟ ଉପରେ ଶୋଇବା ଅବସ୍ଥାରେ ଅଛି, ତା'ଉପରେ କମ୍ବଳ ଘୋଡ଼ା ହେଇଛି । ମୁଁ ଭାବିଲି, ରୋଗୀଟି କମ୍ବଳ ଘୋଡ଼ି ହେଇ ଶୋଇଛି, କମ୍ବଳ ଟେକି ଦେଇ ଦେଖିଲାବେଳକୁ ମରି ଶୋଇଛି । ବଡ଼ ଦୁଃଖ ଲାଗିଲା । ଆଉ ଦିନେ ଦେଖିଲି ଷାଠିଏ ବର୍ଷର ମା ବୁଢ଼ୀ ତଳେ ward ବାରନ୍ଦାରେ ପାଗଳୀ ପରି କାନ୍ଥକୁ ଆଉଜି ବସିଛି, ପାଖରେ ଖଟ ଉପରେ ଏକମାତ୍ର ପୁଅ ମରି ଶୋଇଛି ।

କି ମର୍ମନ୍ତୁଦ ଦୃଶ୍ୟ ! ଦୁଃଖରେ ଛାତି ଘାଣ୍ଟି ହେଇଗଲା । ଆଉ ଥରେ ଦେଖିଲି ଗୋଟିଏ ଲୋକର ବେକ ସାମନାରେ ଗୁଳି ମାଡ଼ ହେଇଛି, ରକ୍ତଧାର ବୋହି ଛାତି ଉପରେ ଦାଗ ରହିଛି । ଗୁଳିଟା ଚମ ତଳେ ରହିଛି । କିନ୍ତୁ ଲୋକଟା ରାଗରେ ଠୋସ୍ କଥାବର୍ତ୍ତା କରୁଛି । ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ପୁଣି ଦୁଃଖରେ ମନ ଭାଙ୍ଗି ପଡ଼ିଲା । କି ନିର୍ମମ ଅତ୍ୟାଚାର, ଏ ଦୃଶ୍ୟ ଅସହ୍ୟ ବୋଧ ହେଉଥାଏ । ଏମିତି ଗୁଳିମାଡ଼ରେ ଆହତ ରୋଗୀଙ୍କୁ କେତେ ଦେଖିଲି । ସେହି ସମୟରେ ଢେଙ୍କାନାଳରେ ବାଜି ରାଉତକୁ ହତ୍ୟା କରାହୁଏ । ଏଇ ଧରଣର ଆହତ ଲୋକଙ୍କୁ କଟକ ଆଣି ଚିକିତ୍ସା କରେଇବା, ମୃତ୍ୟୁ ପରେ ତାଙ୍କର ଶବ ସତ୍କାର କରିବାରେ ଆମର ମେଡ଼ିକାଲ ଛାତ୍ରମାନଙ୍କ ମଧ୍ୟରୁ କେବଳ ରବି ଘୋଷର ନାମ ସେତେବେଳେ ବିଶେଷ ଭାବରେ ଶୁଣା ଯାଉଥାଏ । ରବି ଘୋଷ ମେଡ଼ିକାଲ୍ ଛାତ୍ର ହେଲେ ମଧ୍ୟ ତା'ର କୀର୍ତ୍ତି ବହୁମୁଖୀ । ରବି ଘୋଷ ମୋର ଅନ୍ତରଙ୍ଗ ବନ୍ଧୁ ଥିଲା । ତା'ର ଶରୀର ବାହାରୁ ଦେଖିଲେ ଅତି ଦୁର୍ବଳ କିନ୍ତୁ ଭାରି ଟାଣୁଆ, ଭାରି ବଳୁଆ । ତାକୁ ଅଛକେ ଚିହ୍ନି ହବନାହିଁ । ସେ, ମୁଁ ଏକା ସାଙ୍ଗରେ ବହୁତ ଦିନ ପଢ଼ିଛୁ । ତା'ର ମୋର ବହୁତ ଥଟ୍ଟା ପରିହାସ ହୁଏ । ରବି ଘୋଷ ବିପ୍ଲବୀ ।

ଆମର 4th year ର ଶେଷ ପରୀକ୍ଷା ଆରମ୍ଭ ହେଲା । ଦିବାକର, ମୁଁ ପରୀକ୍ଷା ଦେଲୁ । ଲେଖା ଏବଂ ମୌଖିକ ଉଭୟ ପରୀକ୍ଷା ସରିଲା । ଦିବାକର, ମୁଁ ଉଭୟେ ଭାବିଛୁ ପାସ୍ କରିବୁ । ସେତେବେଳେ Bihar-Orissa Medical Board ଦ୍ୱାରା ଆମର ସବୁ ପରୀକ୍ଷା ପରିଚାଳିତ ହଉଥିଲା । ସେତେବେଳେ ମେଡ଼ିକାଲ୍ ସ୍କୁଲ କେବଳ ବିହାରର ଦରଭଙ୍ଗାରେ ଗୋଟିଏ ଆଉ ଓଡ଼ିଶାରେ ଗୋଟିଏ, ଏମିତି ଦୁଇଟି ମାତ୍ର ଥିଲା ।

ମୁଁ, ଦିବାକର ଉଭୟେ ପରୀକ୍ଷା ଦେଇ ଫଳ ବାହାରିବା ପର୍ଯ୍ୟନ୍ତ ବୁଲିଲୁ । ମୋର ବୁଲିବାର ସ୍ଥାନ ହେଲା, ମେଡ଼ିକାଲ୍ ହତା, ମେଡ଼ିକାଲ ହଷ୍ଟେଲ୍ ଆଉ ବି.ବର୍ମାଙ୍କ ବସା । ଦିବାକର, ମୁଁ ବି.ବର୍ମାଙ୍କ ବସାରେ ଯାଇ ଦିନ ବେଳା, ରାତି ବେଳା ଅନେକ ସମୟ ଗପ କରି ଆସୁ । ଘରେ ଆସି ଯେ କେହି ମୋତେ ଖୋଜିଲେ, ବାବା କହିଦିଅନ୍ତି, ତାକୁ ପାଇବ ମେଡ଼ିକାଲ ହଷ୍ଟେଲ୍‌ରେ କିମ୍ବା ରାଣୀହାଟରେ ବି.ବର୍ମାଙ୍କ ବସାରେ । ଏଣୁ ମୋତେ ଯେ ଖୋଜନ୍ତି ସେ ମୋର ଭେଟ ପା'ନ୍ତି ମେଡ଼ିକାଲ ହଷ୍ଟେଲ୍‌ରେ କିମ୍ବା ବି.ବର୍ମାଙ୍କ ବସାରେ । ମେଡ଼ିକାଲ ହଷ୍ଟେଲ୍ ଅପେକ୍ଷା ବି.ବର୍ମାଙ୍କ ବସାରେ ମୁଁ ବେଶି ଆନନ୍ଦ ଅନୁଭବ କରେ ।

ଆଗରୁ କହିଛି; ବି.ବର୍ମାଙ୍କ ବସାରେ ସବୁ ରକମ ଆଲୋଚନା ପଡ଼େ । ଅନେକ ସମୟରେ ବି.ବର୍ମାଙ୍କ ସହିତରେ ସାହିତ୍ୟ ଆଲୋଚନାରେ ମୋର ମତାନ୍ତର ଘଟେ । ଏଣୁ କେତେ ସମୟ ମୁହଁ ବଙ୍କାବଙ୍କି ହଉ, କଥାବାର୍ତ୍ତା ବନ୍ଦ ହୁଏ ପୁଣି ଅଳ୍ପ ସମୟ ପରେ କଥାବାର୍ତ୍ତା

ହୁଏ । ପାନଖିଆ ହୁଏ, ହସ, ଗପ ଚାଲେ । ମୋର ମନେ ଅଛି ବି.ବର୍ମା ସେତେବେଳେ "ପତିପତ୍ନୀ"ନାମକ ଖଣ୍ଡେ ଉପନ୍ୟାସ ଲେଖୁଥାନ୍ତି । ମୁଁ ତାଙ୍କ ପାଖରେ ଗୋଟାଏ ବେଞ୍ଚ ଉପରେ ଶୋଇଥାଏ । ବି.ବର୍ମା ଉପନ୍ୟାସର କିଛି ଅଂଶ ଲେଖି ସାରିଲେ ମୋତେ ପଢ଼ି ଶୁଣାନ୍ତି । ମୋତେ ଯେଉଁଠି ଭଲ ଲାଗେ, ଭଲ କହେ, ଯେଉଁଠି ଭଲ ଲାଗେ ନାହିଁ ଖୋଲାଖୋଲି କହେ । ଏଣୁ ଅନେକ ସମୟରେ ତାଙ୍କର ମୋର ମନ କଷାକଷି ହଉ ପୁଣି କିଛିକ୍ଷଣ ପରେ ଯୋଉ କଥାକୁ ସେଇ କଥା । ଏମିତି କେତେ ଘଟଣା ଯାଇଛି । କେତେ ମନ କଷାକଷି ହସ ଖୁସିରେ ପରିଣତ ହେଇଛି । ମୋ ତୁଣ୍ଡରେ ବାଛବିଚାର ନଥାଏ । ଯା ମନକୁ ଆସିଲା ଖୋଲାଖୋଲି କହେ । ଥରେ ଗୋଟାଏ ଘଟଣାରେ ବି.ବର୍ମା ସେତେବେଳର ଖ୍ୟାତନାମା ଚଳଚିତ୍ର ଅଭିନେତ୍ରୀ "ଯମୁନା"କୁ କହିଲେ, ଯମୁନା, ତନ୍ୱୀ । ମୁଁ ପ୍ରତିବାଦ କରି କହିଲି ଯମୁନା ତନ୍ୱୀ? ସେ ମାର୍ଜାରକଟୀ, ବାନରସ୍ତନୀ । ଏଇ କଥାରୁ ସେଦିନ ଅନେକ ସମୟ ମନ କଷାକଷି ହେଲୁ । ପୁଣି ସବୁ ହସ ପରିହାସରେ ରୂପାନ୍ତରିତ ହେଲା ।

ପରୀକ୍ଷାର ଫଳ ବାହାରିବାର ଦିନ ନିକଟ ହେଇ ଆସିଲାରୁ ଛାତି ଧଡ଼ଧଡ଼ ହେଲା । ରାତିରେ ନିଦ ହେଲା ନାହିଁ । ମନ "ପାସ୍" "ଫେଲ୍" ଘଟଣାକୁ ନେଇ ଚକ୍ର ଖାଇଲା । କଣ ହବ? କଣ କରିବି?

କିଛିଦିନ ପରେ ଫଳ ବାହାରିଲା, ମୁଁ, ଦିବାକର ଉଭୟେ ଫେଲ୍, ସରିଗଲା । ମନ ଦୁଃଖରେ, ଲଜ୍ଜାରେ ଭାଙ୍ଗି ପଡ଼ିଲା । ଏ ଦୁଃଖର ଝଡ଼ ପରେ ଦିବାକର ସହିତରେ ମୋର ଆଉ ଭେଟ ହେଲା ନାହିଁ । ମେଡ଼ିକାଲ ହଷ୍ଟେଲ କିଏ? ମୁଁ କିଏ? ବି.ବର୍ମାଙ୍କ ପାଖକୁ ଆଉ ଲଜ୍ଜାରେ କେତେଦିନ ଗଲି ନାହିଁ । କୁଆଡ଼େ ବାହାରିଲି ନାହିଁ । ବ୍ୟାୟାମ କରି ଯେଉଁ ଶରୀର ଗଢ଼ିଥିଲି, ସେଥିରୁ ଅଧେ ଚିନ୍ତା-ପୋକ ଖାଇଗଲେ । ଘରେ ବାବା, ମା ସାନଭଉଣୀ ସମସ୍ତେ ଚାହିଁ ବସିଥିଲେ ମୁଁ ପାସ୍ କଲେ ଆନନ୍ଦର ଢ଼େଉ ଉଛୁଳିବ, ଦୁଃଖ ଯିବ, ଅଭାବ ଦୂର ହେବ, କିନ୍ତୁ କାହିଁ? ସବୁ କଳ୍ପନା, ଜଳ୍ପନା, ଆଶା ଆକାଂକ୍ଷା ଦୁଃଖରେ ପରିଣତ ହେଲା । ଏତେବେଳକୁ ସାନ ଭଉଣୀ ରୋଗରେ ବିଛଣା ଧରିବା ପରି ହେଲାଣି । ବସିଲେ ଉଠିବା କଷ୍ଟ, ବେଶି ଆଉ ଚାଲବୁଲ କରି ପାରୁ ନଥାଏ । ବେଳେବେଳେ ତା'ର କଣ ହୁଏ, ମନେହୁଏ ବର୍ତ୍ତମାନ ତା'ର ପ୍ରାଣବାୟୁ ଉଡ଼ିଯିବ କିନ୍ତୁ କିଛି ସମୟ ପରେ ପୁଣି ଭଲ ଆଡ଼କୁ ଆସେ । କିନ୍ତୁ ସେ ଭଲକୁ ଆସିବା କିଛି ନୁହଁ । ଦିନକୁ ଦିନ ତା'ର ଅବସ୍ଥା ଖରାପ ଆଡ଼କୁ ଗତି କଲା । ସାନଭଉଣୀର ଇମିତି ଅବସ୍ଥାକୁ ମୁଁ ଫେଲ୍, ଦୁଃଖର ଚରମ ସୀମାରେ ପହଁଚିଲା ପରି ମନେହେଲା ।

ଘରେ ବାବା, ମା, ସାନଭଉଣୀ ସମସ୍ତେ ଅତିଶୟ ଭାଙ୍ଗିପଡ଼ିଲେ । ମୁଁ ଆଉ କଣ କରିବି? ମନସ୍ତାପରେ କୁଆଡ଼େ ବୁଲିବାକୁ ନଯାଇ ଘରେ ବସି ରହିଲି । କିଛିଦିନ ଗତ ହେଲା ପରେ ସମସ୍ତଙ୍କ ମନର କେତେକ ପରିବର୍ତ୍ତନ ହେଲା । ବାବା, ମା, ସାନଭଉଣୀ ସମସ୍ତେ ମନକୁ ବୁଝେଇଲେ, ହଉ ଫେଲ୍ ତ ହେଇଛି, ଡ଼ାକ୍ତରୀ ପାଠ କଷ୍ଟ ପାଠ, ପୁଣି ପଢ଼ିଲେ ପାସ୍ ହବ । ଏତେ ବାଟ ଯେତେବେଳେ ଭଗବାନ ଆଣିଲେଣି ସେ କଣ ଆଉ ଥରେ ପରୀକ୍ଷା ଦେଲେ ସଫଳକାମ କରେଇବେ ନାହିଁ । ଭଲ ଭାବରେ ପଢ଼ି ପୁଣି ଥରେ ନିଶ୍ଚୟ ପାସ୍ ହବ । ମୋର ମନ ମଧ ସେମିତି ବୁଝିଗଲା କିନ୍ତୁ ଅର୍ଥ ଚିନ୍ତାରେ ମନ ଦବିଯାଉଥାଏ । କାରଣ ଉତ୍କଟ ଅର୍ଥାଭାବ ଭିତରେ ମୋତେ ପଢ଼ିବାକୁ ହଉଥାଏ । ଯେତେ ଅର୍ଥାଭାବ ଥାଉ ପଛେ, ବାବାଙ୍କର ମନବଳ ଭାଙ୍ଗି ନଥାଏ, ସେ ଅଟଳ । ତାଙ୍କର ପ୍ରାୟ କହିବାର ମୁଁ ଶୁଣିଛି, ଦୁଃଖ ସବୁଦିନ ଥାଏ ନାହିଁ, ଏ ଅଭାବ, ଅନାଟନ ସବୁଦିନେ ରହିବ ନାହିଁ । ପୁଣି ସ୍ୱଚ୍ଛଳତା ଆସିବ ।

ମୁଁ ଯେ ଅନ୍ୟାନ୍ୟ ପରୀକ୍ଷାରେ ଫେଲ୍ ନହେଇଛି ତା'ନୁହେଁ କିନ୍ତୁ ବାବା ମୋତେ କେବେ କିଛି ଗାଳି କିମ୍ବା କଟୁ କଥା କହି ନାହାନ୍ତି ବରଂ କହନ୍ତି ଫେର୍ ପଢ଼, ପାସ୍ ନିଶ୍ଚୟ ହବ । ଯା' ହଉ ମୋର ମନ ପୁରାପୁରି ବଦଳିଗଲା । ଯେମିତି ଖେଳ, ବ୍ୟାୟାମ, ପାଠ ପଢ଼ା, ବି.ବର୍ମାଙ୍କ ବସାକୁ ଯାଇ ଗପ କରିବା ଇତ୍ୟାଦି । କିନ୍ତୁ

ଗୋଟାଏ କାମ ବନ୍ଦ ହେଇଗଲା, ଦୈନିକ ଯେ ଟିଉସନ୍ କରୁଥିଲି ଆଉ ଟିଉସନ୍ କରିବାକୁ ବାବା ମନାକଲେ ।

ଯେଉଁ ପିଲା ଓରାସାତ୍‌ଉଲ୍ଲାକୁ ବୁଝି ଟିଉସନ୍ କରୁଥିଲି ସେ ମଧ ତାର ୧୧ଶ ଶ୍ରେଣୀ ଟପିଗଲା । ସେ ମ୍ୟାଟ୍ରିକ ପାସ୍ କରିବା ଯାଏ ଟିଉସନ୍ କରିଥିଲେ ଚଳିଥାନ୍ତା କିନ୍ତୁ ଆଉ ଟିଉସନ୍ କଲିନାହିଁ । ଏଥି ପୂର୍ବରୁ ତାର ବାପ ମୋତିଉଲ୍ଲାର ପରଲୋକ ହେଇ ଯାଇଥିଲା । ତଥାପି ତାଙ୍କର ଦୁଇ ପୁଅ, ଅସାଦ୍‌ଉଲ୍ଲା (ଡାକ୍ତର) ଏବଂ ତା'ର ସାନଭାଇ ଯାକୁବ (କମ୍ପାଉଣ୍ଡର) ମୋର ଦୁଇ ବନ୍ଧୁ । ତାଙ୍କର ସାନ ଭାଇ ଓରସାତ୍ ଉଲ୍ଲା ଟିଉସନ୍ କରିବା ପାଇଁ ମୋତେ ନିଯୁକ୍ତ କରିଥିଲେ, ଯା ହଉ ମୁଁ ଟିଉସନ୍ ନକଲେ ମଧ ସେ ନିଜେ ଆଉ କେତେଦିନ ପଢ଼ି ଯେ ମ୍ୟାଟ୍ରିକ ପାସ୍ କରିବ ମୋର ଦୃଢ଼ ବିଶ୍ୱାସ ଥିଲା ସେଇୟା ହେଲା । ସେ ପିଲା ମ୍ୟାଟ୍ରିକ ପାସ୍ କଲା ଏବଂ football ଖେଳରେ ମଧ ବେଶ୍ ସୁନାମ ଅର୍ଜନ କରିଥିଲା ।

ଏଇ ସମୟରେ ଆଉ ଗୋଟାଏ ଘଟଣା ଘଟିଲା । ଘଟଣା ହେଲା, ମୋର ଭଣଜା ରବୀନ୍ଦ୍ରନାଥର ବିବାହ ଘଟଣା । ସେ ମଧ ମେଡ଼ିକାଲ ରେ ପଢୁଥାଏ । ସେ ସେତେବେଳକୁ ପିତୃମାତୃହୀନ । ମେଡ଼ିକାଲ ହଷ୍ଟେଲରେ ରହି ପଢୁଥାଏ । କିନ୍ତୁ ସେ ବିବାହ କରିବ । ତା'ର ପାତ୍ରୀର ପିତ୍ରାଳୟ ହେଲା ପୁରୀରେ । ଏ ବିବାହର ଘଟଣା ବଡ଼ ରହସ୍ୟମୟ । ପୁରୀରେ ଭଣଜା ବିଭାହବ କିନ୍ତୁ ବିଭାଘରକୁ ଆମ ତରଫରୁ ଯିବ କିଏ ? ସାନଭଉଣୀ ବିଶେଷ ଭାବରେ ଅସୁସ୍ଥ । ତାକୁ ଛାଡ଼ି ବାବା, ମା ଯାଇ ପାରିବେ ନାହିଁ । ମୋତେ କହିଲେ ତୁ ଯା । ମୋର ସାନଭଉଣୀକୁ ଛାଡ଼ି ଯିବା ପାଇଁ ମନ ହଉ ନଥାଏ । କିନ୍ତୁ ଯେମିତି ହେଲେ ଯିବାକୁ ପଡ଼ିବ । ସାନଭଉଣୀ ନିଜେ ମଧ ମୋତେ ବାରଣ କଲା ତାକୁ ଛାଡ଼ି ଯିବା ପାଇଁ । କାରଣ ତା'ର ସନ୍ଦେହ ହଉଥାଏ କେତେବେଳେ ତାର ପ୍ରାଣବାୟୁ ଉଡ଼ିଯିବ । ମୁଁ ନଥିଲେ ବାବା, ମା କ'ଣ କରିବେ ? ଶେଷ ମୁହୂର୍ତ୍ତରେ ମୁଁ ତାକୁ କାଳେ ନଦେଖି ପାରିବି ।

କଟକରେ ଭଣଜାର ଦାଦି କେଦାର ବାବୁ, ତାଙ୍କରି ବସାରେ ଶେଖ୍‌ବଜାରରେ ଭଣଜାର ବିବାହର ଆନୁସଙ୍ଗିକ କାର୍ଯ୍ୟ ଆରମ୍ଭ ହେଇଥାଏ । ମୁଁ ସେଠି ଯାଇ ଭଣଜାକୁ ଦେଖି ମୋର ବଡ଼ଭଉଣୀ, ବଡ଼ ଭିଣେଇଙ୍କ କଥା ମନେ ପଡ଼ିଲା । ଗୁରାଏ କାନ୍ଦିଲି । ଭଣଜାର ବିବାହ ଭଉଣୀ, ଭିଣେଇ ଦେଖିପାରିଲେ ନାହିଁ । ଆଜି ସେମାନେ ଥିଲେ ଭଣଜାର ବିବାହ କେଡ଼େ ସୁଖମୟ ହେଇଥାନ୍ତା । କିଛି ସମୟ ପରେ କାନ୍ଦଣା ବନ୍ଦ କରି ବିବାହରେ ଯୋଗ ଦେଇ, ଖାଇପିଇ ସେଠୁଁ ଘରକୁ ଫେରିଲି । ତହିଁ ଆରଦିନ ପୁରୀକୁ ବର ଯିବାର କଥା । ତହିଁ ଆରଦିନ ବର ଏବଂ ବରଯାତ୍ରୀଙ୍କ ସଙ୍ଗେ ପୁରୀ ଗଲି । ସାନଭଉଣୀର ଅବସ୍ଥା ଦେଖି ମୋର ଯିବାକୁ ଆଦୌ ମନ ହଉ ନଥିଲା । କାରଣ ଭଉଣୀର କେତେବେଳେ କଣ ହବ । କାଳେ ତା'ର ଶେଷ ମୁହୂର୍ତ୍ତରେ ଦେଖି ପାରିବି ନାହିଁ । ମୁଁ ପୁରୀକୁ ବାହାରିଲା ବେଳେ ଭଉଣୀ ମଧ ଆତଙ୍କିତା ହେଇ ଅନୁରୋଧ କରି କହିଲା ମୁଁ ଯେମିତି ଶୀଘ୍ର ଫେରି ଆସେ । ମୁଁ ଭଉଣୀର କାତରୋକ୍ତି ଶୁଣି ଅନିଚ୍ଛା ସତ୍ତ୍ୱେ ପୁରୀ ଗଲି । ବାବା, ମା, ସାନଭଉଣୀକୁ ଜଗି ରହିଲେ ।

ପୁରୀରେ "ନାରୀ ସେବା ସଦନ" ନିକଟରେ ଗୋଟାଏ ପ୍ରକାଣ୍ଡ ଦ୍ୱିତଳ କୋଠା ଭଡ଼ା ନିଆ ହେଇଥିଲା । ସେଇଠୁଁ ବର ଏବଂ ବରଯାତ୍ରୀ ସମସ୍ତେ ଆଲୁଅ ଏବଂ ବାଜାର ସମାରୋହରେ କନ୍ୟା ଘରକୁ ପଟୁଆର କରି ବାହାରିଲେ । କନ୍ୟା ଘର ଦୁଆରେ ପହଁଚିବା ମାତ୍ରେ ଗୋଟାଏ ବିଶେଷ ଅଶାନ୍ତିକର ଘଟଣା ଘଟିଲା । ଘଟଣା ହେଲା କନ୍ୟାପକ୍ଷ ବରକୁ ସମାଦରରେ ନେଇ ଗୋଟିଏ ସୁସଜ୍ଜିତ ସ୍ଥାନରେ ବସେଇଲେ । କିନ୍ତୁ ବରଯାତ୍ରୀଙ୍କୁ ଡ଼ାକିଲାରୁ କେହି ଆଉ କନ୍ୟା ଘରକୁ ଗଲେ ନାହିଁ । ସମସ୍ତେ ଅନ୍ୟ ଆଡ଼େ ପଳେଇଲେ । ମୁଁ ଏ ଘଟଣାରେ ବିଶେଷ ଦୋ'ଘାଇରେ ପଡ଼ିଲି । ମୋର ତ କନ୍ୟା ଘର ସାଙ୍ଗରେ କୌଣସି ମନୋମାଳିନ୍ୟ ନାହିଁ । ମୁଁ କାହିଁକି କନ୍ୟା ଘରକୁ ନଯିବି ? କିନ୍ତୁ ଯାଉଛି କିମିତି ? ଅନ୍ୟ ମାନେ ତ କୁଆଡ଼େ ଚାଲିଗଲେ । ମୁଁ ତ ମାମୁଁ । ମୋର ଏ ବିବାହରେ ଉପସ୍ଥିତ ରହିବା ଏକାନ୍ତ ଉଚିତ୍ ।

ମୁଁ ମାତୃପକ୍ଷର ଲୋକ । ମୁଁ ତ ଏକା ରହିଲେ ହବ ନାହିଁ । ଭଣଜାର ବାପ, ମା ସିନା ନାହାନ୍ତି, ନିଜର

ଦାଦି କେଦାରବାବୁ ଅଛନ୍ତି। ଅନ୍ୟମାନେ ଅଛନ୍ତି। ଅନ୍ତତଃ ଦାଦିଙ୍କର ଏ ଶୁଭ କାର୍ଯ୍ୟରେ ଉପସ୍ଥିତ ରହିବା ଦରକାର କିନ୍ତୁ ଦାଦି ତ ଅନ୍ୟମାନଙ୍କୁ ନେଇ ପଳେଇଲେ। କଣ କରିବି? ମନ ମୋର ଦୁଃଖରେ ଅବଶ ହୋଇ ପଡ଼ିଲା କାରଣ ମୋର ଭଉଣୀ, ଭିଣେଇ ଥିଲେ ଆଜି ଭଣଜାର ବିବାହ ରାତ୍ରରେ ଏମିତି ଘଟଣା ଘଟି ନଥାନ୍ତା।

କନ୍ୟା ପକ୍ଷର ଲୋକଙ୍କର ମତିଗତି ଦେଖିଲି ଯେ ସେମାନେ ଭଣଜାର ଦାଦିଙ୍କୁ ଖାତିର କରୁ ନାହାନ୍ତି। ତାଙ୍କର ମନୋଭାବ ଦାଦି ଆସିଲେ ଆସନ୍ତୁ ନହେଲେ ନାହିଁ ବରତ ଆସି ଯାଇଛି। କନ୍ୟାପକ୍ଷର କେତେକ ଭଦ୍ରଲୋକ ମୋତେ ବୁଝେଇଲେ ସେମାନେ ନଆସିଲେ ନାହିଁ। ଆପଣତ ବରର ମାମୁଁ ଆସିଛନ୍ତି, ଆପଣଙ୍କ ଉପସ୍ଥିତିରେ ବିବାହ କାର୍ଯ୍ୟ ସମ୍ପନ୍ନ ହବ।

ମୋର ମନ ମାନିଲା ନାହିଁ। ମୁଁ ଭାବିଲି ଭଣଜାର ବାପ ଅଂଶର କେହି ନଆସିଲେ ସେ ଗୋଟାଏ ଭିନ୍ନ କଥା। ଯେତେବେଳେ ନିଜର ଦାଦି ଏବଂ ତାଙ୍କର ଅନ୍ୟ ବନ୍ଧୁବାନ୍ଧବ କଟକରୁ ପୁରୀ ଆସିଲେ ଏଇଠି କନ୍ୟା ଘରେ ଆସି ପହଁଚି ଏ ଉପଦ୍ରବ କାହିଁକି? ମୁଁ ଭିତିରି ଖବର ନେଇ ବୁଝିଲି ଯେ ଭଣଜାର ଦାଦି ସହିତ ବିବାହର ଖର୍ଚ୍ଚପତ୍ରରେ କଣ ମନୋମାଳିନ୍ୟ ଘଟିଛି। ଆଉ ଗୋଟାଏ କଥା ଭଣଜାର ଏ କନ୍ୟାକୁ ବିବାହ କରିବା ସ୍ୱେଚ୍ଛାକୃତ। ସେ ନିଜେ ହିଁ ଏ କନ୍ୟା ସ୍ଥିର କଲା କାହିଁକି? ମୁଁ ଏ ସବୁ ଜାଣି ଭାବିଲି ଯା'ତ ହବାର ହେଉଛି, ମୂଳରୁ ଦାଦି କଟକରୁ ନ ଆସିଥିଲେ ହୋଇଥାନ୍ତା। ବର୍ତ୍ତମାନ ଏଠି ଆସି ବିବାହର ଠିକ୍ ଅଳ୍ପ ସମୟ ପୂର୍ବେ ଇମିତି ହବା ଠିକ୍ ନୁହେଁ। ପୁଣି ବୁଝି ପାରିଲି ଭଣଜା ନିଜର ଟଙ୍କା ବିବାହର ଖର୍ଚ୍ଚ ବାବଦରେ ଦାଦିଙ୍କୁ ନଦେଇ ନିଜ ହାତରେ ଖର୍ଚ୍ଚ କରୁଛି କାହିଁକି?

ସେ ଯା ହଉ ମୁଁ ଏପଟ ସେପଟ ହୋଇ ବିବାହର ଠିକ୍ ଲଗ୍ନ ପୂର୍ବରୁ ଦାଦିଙ୍କୁ ଆଣି ବିବାହର ବେଦୀ ପାଖରେ କିମିତି ବସେଇବି ତା'ର ଚେଷ୍ଟା କଲି। ଶେଷରେ ଦାଦି ମୋତେ କହିଲେ ତୁମେ ଯଦି ତାଙ୍କ ଘରେ ନଖାଇବ ପ୍ରତିଜ୍ଞା କର ତାହେଲେ, ଆମେ ସେଠିକି ଯିବୁ, ଆମେ କିନ୍ତୁ ସେଠି ଖାଇବୁ ନାହିଁ। ମୁଁ ଦାଦିଙ୍କର ଏ ପ୍ରସ୍ତାବ ଶୁଣି ଭାବିଲି ହଉ ନ ଖାଇବି ନାହିଁ। ଦାଦି ଆଉ ଅନ୍ୟମାନେ ସେଠି ଯାଇ କେମିତି ବିବାହବେଳେ ବସନ୍ତୁ ହେଲେ।

ମୋର ଭଣଜାର ଦାଦି କେଦାର ବାବୁ ମୋତେ ଭାରି ଭଲ ପାଉଥିଲେ। ଯା'ହଉ ମୋ କଥାରେ ରାଜି ହୋଇ କେଦାର ବାବୁ ଏବଂ ତାଙ୍କର ଅନ୍ୟ ସହଚରବୃନ୍ଦ ଭଣଜାର ବିବାହ ବେଦୀ ପାଖକୁ ଆସିଲେ। କିନ୍ତୁ ମୋତେ କନ୍ୟାପକ୍ଷର ଲୋକଙ୍କୁ ଭାରି ବିରକ୍ତ ଲାଗିଲା। କାରଣ ବରର ନିଜର ଦାଦି ଏବଂ ଅନ୍ୟାନ୍ୟ ଭଦ୍ରଲୋକମାନେ ଯେ ବେଦୀ ପାଖକୁ ଆସିଲେ ସେମାନଙ୍କର ଖାତିର ନାହିଁ। ଭାବିଲି ମୁଁ ନିଜେ ଯଦି କନ୍ୟାପକ୍ଷ ଲୋକଙ୍କ ବେଖାତିର ଭାବ ଯୋଗୁ ରାଗି ଗୋଟାଏ ଅନର୍ଥ ସୃଷ୍ଟି କରେ ତା'ହେଲେ ବିବାହ ଉତ୍ସବଟା ପୁରାପୁରି ଭଣ୍ଡୁର ହୋଇ ଯିବ। ମୁଁ ଟିକିଏ ନିଜକୁ ସମ୍ଭାଳି ନେଲି। କନ୍ୟା ଘରେ କେହି ଖାଇଲୁ ନାହିଁ। କେବଳ ଭଣଜାର ସାଙ୍ଗ ପାଞ୍ଚ ଜଣ ମେଡ଼ିକାଲ ଛାତ୍ର କନ୍ୟା ଘରେ ଖାଇଲେ। ବିବାହର ଭୋଜିଟା ସେଦିନ ରାତିରେ ଛାରଖାର ହୋଇଗଲା।

ଭଣଜାର ବିବାହ କୌଣସି ପ୍ରକାରେ ସେଦିନ ରାତିରେ ସମ୍ପନ୍ନ ହୋଇଗଲା। ମୁଁ ତହିଁ ଆରଦିନଟା ପୁରୀରେ ବରଯାତ୍ରୀଙ୍କ ସଙ୍ଗେ ରହି, ବର କନ୍ୟାଙ୍କୁ ନେଇ ସମସ୍ତେ କଟକ ଫେରିଲୁ। ମୋର ମନଟା ବ୍ୟସ୍ତ ହଉଥାଏ କେମିତି ଯାଇ ସାନ ଭଉଣୀଙ୍କୁ ଦେଖିବି କାରଣ ମୁଁ ପୁରୀ ଗଲାବେଳେ ତା'ର ଅବସ୍ଥା ଭଲ ନଥିଲା। ବର, କନ୍ୟା, ବରଯାତ୍ରୀମାନେ କଟକରେ ଓଲେହି ଯେ ଯୁଆଡ଼େ ଗଲା ପୂର୍ବରୁ ମୁଁ ଆଗେ ସମସ୍ତଙ୍କଠୁଁ ବିଦାୟ ନେଇ ଘରକୁ ଆସି ସାନ ଭଉଣୀ କି ଦେଖିଲି। ଭଉଣୀର ଅବସ୍ଥା ଭଲ ଅଛି। ବାବା, ମା, ସାନ ଭଉଣୀ ଆଗରେ ଭଣଜାର ବିବାହର କେମିତି କଣ ହେଲା, କେମିତି ଗଣ୍ଡଗୋଳ ହେଲା, ମୁଁ କେମିତି କନ୍ୟା ଘରେ ନଖାଇ ବିବାହ ରାତିରେ ଦି'ଗ୍ଲାସ ପାଣି ପିଇ ରାତି କଟେଇଲି ସବୁ ବିଷଦ ଭାବେ ବର୍ଣ୍ଣନା କଲି।

ଯା'ହଉ ଭଣଜାର ବିବାହ ସରିଲା, ଭାବିଲି ଏଇ ବିବାହ ଯୋଗୁଁ ଭଣଜା ଏବଂ ଭଣଜାର ବାପ ଉଭୟଙ୍କର

କେତେ କଳି କଜିଆ, ମନ କଷାକଷି, ଅନର୍ଥ ଯାଇଛି। କେତେ କଳିକଜିଆ ମୁଁ ଭାଙ୍ଗିଛି। ଯା ହଉ ଶେଷ ପର୍ଯ୍ୟନ୍ତ ଭଣଜା ସେଇ କନ୍ୟାକୁ ବିବାହ କଲା କିନ୍ତୁ ଭିଣେଇ ଦେଖିଲେ ନାହିଁ। ସେ ପରଲୋକରେ।

ଏଇ ସମୟରେ ମେଡ଼ିକାଲ ସ୍କୁଲରେ ଆଉ ଗୋଟାଏ ବଡ଼ ଧରଣର ଦୁର୍ଘଟଣା ଘଟିଲା। ଦୁର୍ଘଟଣାଟା ହେଲା ମେଡ଼ିକାଲ ସ୍କୁଲରେ ବଡ଼ ଧରଣର strike ଅର୍ଥାତ୍ ବଡ଼ ଧରଣର ଧର୍ମଘଟ। ଏ ଧର୍ମଘଟର କାରଣ ମୋତେ କିଛି ଜଣା ନଥାଏ। କେବଳ ଶୁଣିଛି ତତ୍କାଳୀନ medical school hostel ର ତତ୍କାଳୀନ superintendent ଡା: ନାରାୟଣ ଦାସ ଦତ୍ତଙ୍କ ବିରୁଦ୍ଧରେ କେତେକ ଅଭିଯୋଗ। ମେଡ଼ିକାଲ ସ୍କୁଲ hostelର room ଗୁଡ଼ାକ 4-seated ଥିବା ସ୍ଥଳେ 3-seated କରାହବ। ଏମିତି ଆଉ କେତେଟା ଅଭିଯୋଗକୁ ଭିତ୍ତି କରି strike ଆରମ୍ଭ ହେଲା। ୧୯୩୯ ମସିହା, ସେତେବେଳେ ଡା: ନରସିଂହ ଚରଣ ସାମନ୍ତ ସିଂହାର, ରବି ଘୋଷ, ମୋତିଲାଲ ତ୍ରିପାଠୀ ଏବଂ ଆଉ କେତେଜଣ ମେଡ଼ିକାଲ ସ୍କୁଲର ଛାତ୍ର। ଏଇମାନେ ହିଁ ଏ strikeର ଉଦ୍ୟୋକ୍ତା। ସେମାନେ ଯା କରିବେ, ଯା ନିର୍ଦ୍ଦେଶ ଦେବେ ସମସ୍ତେ ତାକୁ ମାନିବେ। ତାଙ୍କରି ନିର୍ଦ୍ଦେଶନାରେ ମେଣ୍ଢାପଲ ପରି ନିର୍ଦ୍ୱନ୍ଦ୍ୱରେ ପରିଚାଳିତ ହେବେ। ସବୁ କାରଣ, ସବୁ ଦାବୀ, ସବୁ ଅଭିଯୋଗ ସମସ୍ତଙ୍କୁ ଜଣା ଥାଉନଥାଉ କିନ୍ତୁ ତାକୁ ମାନିବାକୁ ହବ। Strikeରେ ଯୋଗ ଦବାକୁ ହବ। Strikeକୁ ସଫଳ କରେଇବାକୁ ହବ। ନଚେତ୍ ତା ଜୀବନ ବିପନ୍ନ। ତାକୁ ଅନେକ ନିର୍ଯ୍ୟାତନା ଭୋଗ କରିବାକୁ ହେବ। ଏଣୁ ସମସ୍ତେ ସର୍ବାନ୍ତଃକରଣରେ ସହଯୋଗ କରି strikeରେ ଯୋଗ ଦେଲେ। ମୁଁ ମଧ୍ୟ ଯୋଗ ଦେଲି। କେବଳ ମାତ୍ର ଦୁଇଜଣ ପିଲାଙ୍କୁ ଛାଡ଼ି, ଜଣେ ହେଲା ରାମକୃଷ୍ଣ ମିଶ୍ର (ପୂର୍ବ ବର୍ଣ୍ଣିତ ମୋର ସାଙ୍ଗ ଡାକ ନାମ କାଳିଆରାମ) ଆଉ ଜଣେ ହେଲା ଶ୍ରୀ ଚକ୍ରଧର ଶତପଥୀ (ଯାଙ୍କ ବିଷୟରେ ପୂର୍ବେ ବର୍ଣ୍ଣନା କରିଛି)। ୧୯୨୯ ମସିହାରେ ମେଡ଼ିକାଲ ସ୍କୁଲର ପାଠ ପଢ଼ା ଛାଡ଼ି ତତ୍କାଳୀନ ଲୁଣମରା ଅଭିଯାନରେ ଯୋଗ ଦେଇ ଲୋକଙ୍କ ମଧ୍ୟରେ ସେତେବେଳେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲେ। ଏ ସେତେବେଳେ ଲୁଣମରା ଅଭିଯାନରେ ବାଲେଶ୍ୱରକୁ ଟ୍ରେନ୍ ଯୋଗେ ଗଲା ବେଳେ ମୁଁ ଯାଙ୍କୁ ଦେଖେଇବା ପାଇଁ ମୋର ମା'ଙ୍କୁ କଟକ ରେଲ୍ ଷ୍ଟେସନ୍‌କୁ ନେଇଥିଲି। ଏଇ ଚକ୍ରଧର ଶତପଥୀ ସେତେବେଳେ ଫୁଲମାଳ ଗଳାରେ ପିନ୍ଧି ଟ୍ରେନ୍ ଉପରେ ଠିଆ ହେଇ, ଜନତାକୁ ଉଦ୍‌ବୋଧନ ଦେଇ କହିଥିଲେ ଆପଣମାନେ ଆଶୀର୍ବାଦ କରନ୍ତୁ ମୁଁ ଯେମିତି ସେଇଆଡ଼େ ମରେ। ଲୋକମାନେ ଏ କଥା ଶୁଣି ସେତେବେଳେ କହିଥିଲେ ଆହା, ସେମିତି କଥା କହନ୍ତୁ ନାହିଁ। ଆପଣ ଜୟଯୁକ୍ତ ହେଇ ଫେରି ଆସନ୍ତୁ। ସେତେବେଳେ ଲୁଣମରା ଅଭିଯାନରେ ଯେଉଁମାନେ ଯାଉଥିଲେ, ଲୋକେ ଭାବୁଥିଲେ ଏଇମାନେ ହିଁ "ଭାରତର ସ୍ୱାଧୀନତା" ସେଇ ବାଲେଶ୍ୱରର ସମୁଦ୍ରକୂଳରୁ ସାଙ୍ଗରେ ଧରି ଫେରି ଆସିବେ।

କାଳିଆ ରାମ ଆଉ ଚକ୍ରଧର ଶତପଥୀ ଉଭୟେ strikeରେ ଯୋଗ ନଦବାର କାରଣ ହଉଛି ଆମେମାନେ ଯେଉଁ 4th yearର final ପରୀକ୍ଷାରେ ଫେଲ୍ ହେଲୁ, ଆମେମାନେ ତିନିଟା subject ରେ ଫେଲ୍ ହେଲୁ ଆଉ କେତେକ ପିଲା ଗୋଟାଏ ଗୋଟାଏ subject ରେ ଫେଲ୍ ହେଲେ। ସେତେବେଳେ ନିୟମ ଥିଲା ଯେଉଁମାନେ ତିନିଟା ଯାକ subject ରେ ଫେଲ୍ ହେବେ ତାଙ୍କୁ ତିନିଟା ଯାକ subject ପୁଣି ପରୀକ୍ଷା ଦେଇ ପାସ୍ କରିବାକୁ ହବ। ଆଉ ଯେଉଁମାନେ ୨ଟା subject ରେ ପାସ୍ କରି ଗୋଟାଏ subject ରେ ଫେଲ୍ ହେବେ ତାଙ୍କୁ ସେହି ଗୋଟାଏ subject ରେ ପୁଣି ପରୀକ୍ଷା ଦେଇ ପାସ୍ କଲେ ତାଙ୍କୁ ଡାକ୍ତରୀ ପରୀକ୍ଷାରେ ପାସ୍ କରି ଡାକ୍ତର ବୋଲି ଧରାଯିବ।

ଚକ୍ରଧର ଶତପଥୀ ଲୁଣମରା ବେଳେ ମେଡ଼ିକାଲ୍ ପାଠପଢ଼ା ଛାଡ଼ି ଏଣେତେଣେ ବୁଲାବୁଲି କରି ଅନନ୍ୟୋପାୟ ହୋଇ ପୁଣି ଆସି ମେଡ଼ିକାଲରେ 3rd yearରେ ନାଁ ଲେଖେଇ ପଢୁଥିଲା। ସେ ମନେହୁଏ 3rd yearରେ ପାଠପଢ଼ା ଛାଡ଼ି ଯାଇଥିଲା। ସେ ଓ କାଳିଆରାମ ଉଭୟେ ଆମ ସାଙ୍ଗରେ 4th yearର final ପରୀକ୍ଷା

ଦେଇ ଦୁଇ ଦୁଇଟା subject ରେ ପାଶ୍ କରି ଗୋଟାଏ subject ରେ ଫେଲ୍ ହୋଇଥାନ୍ତି । କାଳିଆରାମ surgeryରେ ଓ ଚକ୍ରଧର ଶତପଥୀ ବୋଧହୁଏ medicineରେ । ସେମାନେ ଏଇ ଗୋଟାଏ subject ରେ ପରୀକ୍ଷା ଦେଇ ଆଶା କଲେ ଡାକ୍ତର ହୋଇଯିବେ । ତେଣୁ ସେ ଦୁହେଁ strikeକୁ ବାହାରେ ମୌଖିକ ସମର୍ଥନ କରିଥିଲେ ସୁଦ୍ଧା ଅନ୍ତରରେ ଏହାର ବିରୁଦ୍ଧାଚରଣ କରୁଥାନ୍ତି । ସେମାନେ ଦୂରେଇ ଦୂରେଇ ରହୁଥାନ୍ତି । Strikeରେ ପ୍ରତ୍ୟକ୍ଷ ସହଯୋଗ କରୁନଥାନ୍ତି । କାଳିଆରାମ ସେତେବେଳେ ବର୍ତ୍ତମାନ ଯେଉଁଠି କଟକର ହିନ୍ଦ୍ ସିନେମା ଅବସ୍ଥିତ ତାରି ପଛପଟେ କୋଠାଘରେ ରହି ପୁଣି ଥରେ ପରୀକ୍ଷା ଦେବା ପାଇଁ ପଢୁଥାଏ । ଚକ୍ରଧର ଶତପଥୀ ତା' ନିଜ ଘରେ କି ଆଉ କେଉଁ ଆତ୍ମୀୟଙ୍କ ଘରେ ରହି ପଢୁଥାଏ । ମୋତେ ସଠିକ୍ ଜଣା ନାହିଁ । ସେ କିନ୍ତୁ ମେଡ଼ିକାଲ୍‌କୁ ସାଇକେଲ୍‌ରେ ଯିବା ଆସିବା କରିବା ମୁଁ ଦେଖିଛି । ମୁଁ ତିନିଟା subject ରେ ଫେଲ୍ ହେଲା ପରେ ଘରେ ରହି medical hostelକୁ ଯା' ଆସ କରି ଦିବାକର ସହିତରେ ପୁଣି ପଢ଼ାପଢ଼ି କରୁଥାଏ ଆଉ ଥରେ final ପରୀକ୍ଷା ଦବା ପାଇଁ । ପରୀକ୍ଷା ଏଣେ ନିକଟ ହେଇ ଆସିଲା ବେଳକୁ ଜୋର୍‌ସୋର୍ strike ଆରମ୍ଭ ହେଇଗଲା । କଣ କରିବି ? ପରୀକ୍ଷା କେମିତି ଦେବି ? ମୁଁ ଯେତେ ଶୀଘ୍ର ପାସ୍ କରି ଚାକିରୀ କରିବି, ଆର୍ଥିକ ଅବସ୍ଥା ସେତିକି ସୁଧୁରି ଯିବ । କିନ୍ତୁ ଏ କି ଦୈବୀ ଦୁର୍ଘଟଣା । Final ପରୀକ୍ଷା ବେଳକୁ ଏ strike ର ଆନ୍ଦୋଳନ ।

ଏ strikeକୁ ସଫଳ କରେଇବା ପାଇଁ ଜଣେ ଛାତ୍ର ପୁଣି ଆମରଣ ଅନଶନ ଆରମ୍ଭ କରିଦେଲା, ନାଁ ସୁଧୀର କବି । ସେ ବାଲେଶ୍ୱରରୁ ଆସି ପଢୁଥିଲା । ମେଡ଼ିକାଲ୍ ସ୍କୁଲର ଏ strike ବେଳେ ଗୋଟାଏ ଛାତ୍ର କ୍ରିୟାନୁଷ୍ଠାନ କମିଟି ଗଢ଼ା ହେଲା । ସେଥିରେ ସ୍ଥିର ହେଲା ଆସନ୍ତା final ପରୀକ୍ଷା ବନ୍ଦ କରିବାକୁ ହେବ । Final ପରୀକ୍ଷା ମାନେ ଆମରି 4th yearର final ପରୀକ୍ଷା ବନ୍ଦ କରାଯିବ । କେହି ପରୀକ୍ଷା ଦବୁ ନାହିଁ । ଏ ଘୋଷଣାରେ ମୋ ମୁଣ୍ଡରେ ବଜ୍ରପାତ ହେଲା ଭଳି ମନେହେଲା । କଣ ହବ ? କେବେ ଆଉ ପାସ୍ କରିବି ? ପରୀକ୍ଷା ଆଉ ମାତ୍ର ସାତ ଆଠ ଦିନ ବାକି ଥାଏ । ଆମେ ଯେଉଁମାନେ 4th year ର final ପରୀକ୍ଷାର୍ଥୀ ଥିଲୁ ଆପତ୍ତି କଲୁ, ଯଦି ଆମେ ପରୀକ୍ଷା ଦବୁ ନାହିଁ ତା'ହେଲେ କାଳିଆରାମ ଆଉ ଚକ୍ରଧର ଶତପଥୀ ଉଭୟଙ୍କୁ ପରୀକ୍ଷା ଦବାରୁ ବନ୍ଦ କରାଯାଉ । କାରଣ ଏ ଉଭୟଙ୍କର ଗୋଟାଏ ଗୋଟାଏ subject ରେ ପରୀକ୍ଷା ଦବାର କଥା । ସେମାନେ ପରୀକ୍ଷା ଦବାରୁ ନିବୃତ୍ତ ହେଲେ ତ, ନଚେତ୍ strike ଭଣ୍ଡୁର ହେଇଯିବ । ଏଥିପାଇଁ କେତେକ ପିଲା ରାଣୀହାଟସ୍ଥ କାଳିଆରାମ ବସାକୁ ଦୌଡ଼ିଲେ । ତାକୁ ସବୁ କଥା କହିଲେ, ସେ ପରୀକ୍ଷା ଦବ ନାହିଁ ବୋଲି କହିଲା । କିନ୍ତୁ ତଥାପି ପିଲାଏ ସନ୍ଦେହ କରି ତା'ର ବସା ଚାରିପଟେ ଘଣ୍ଟା ଘଣ୍ଟା ଧରି ଦଳକୁ ଦଳ ପିଲା ପହରା ଦେଲେ । ଶତପଥୀ ଘରକୁ ମଧ ଦୌଡ଼ିଲେ । ସେ ପରୀକ୍ଷା ନଦବାକୁ ସମ୍ମତ ହେଲେ ମଧ ତାକୁ ଜଗି ରହିଲେ । କିନ୍ତୁ ଯେଉଁଦିନ ରାତି ପାହିଲେ ପରୀକ୍ଷା ବର୍ଜନ କରାଯିବ, ତହିଁ ପୂର୍ବଦିନ ସନ୍ଧ୍ୟା ପରଠାରୁ କାଳିଆରାମ ଆଉ ନାହାନ୍ତି । ଉଭୟେ ନିଖୋଜ ହେଲେ । ମେଡ଼ିକାଲ ହଷ୍ଟେଲରେ ଖବର ପହଞ୍ଚିଲା । ଏ ସମ୍ବାଦରେ ଆମେ ଯେତେ ପରୀକ୍ଷାର୍ଥୀ ଥିଲୁ ସମସ୍ତେ ହତାଶ ହୋଇ ପଡ଼ିଲୁ । କାରଣ ଏ ଦୁଇଜଣ ଯଦି ପରୀକ୍ଷା ଦିଅନ୍ତି ତା'ହେଲେ ତ ଆମ କଥା ସରିଯିବ । ଏଣୁ ପିଲାଏ ଏ ଦୁଇ ଜଣଙ୍କୁ ଖୋଜିବାରେ ଲାଗିଲେ । ଅନେକ ପ୍ରସ୍ତାବ କଲେ ଯଦି ଏ ଦୁଇଜଣ ଆମ କଥା ନମାନି ପରୀକ୍ଷା ଦେଲେ, ତାହେଲେ ଏ ଉଭୟଙ୍କୁ ମାରି ଛୋଟା ଲେଙ୍ଗଡ଼ା କରିଦବୁ । କିଏ କହିଲା ତାଙ୍କୁ ଜୀବନରୁ ମାରିଦବୁ, ଇତ୍ୟାଦି ଇତ୍ୟାଦି ।

ରାତି ପାହିଲେ ପରୀକ୍ଷା । ସବୁ ମେଡ଼ିକାଲ୍ ଛାତ୍ର ମେଡ଼ିକାଲ ହଷ୍ଟେଲରେ ଏକଜୁଟ ହେଇଥାନ୍ତି । କେହି ଘରକୁ ଯାଇ ପାରିବେ ନାହିଁ । ଯେଉଁମାନେ ବାହାରେ ରହି final ପରୀକ୍ଷା ଦବା ପାଇଁ ପ୍ରସ୍ତୁତ ହେଉଥିଲେ, ସେମାନେ ସମସ୍ତେ ମେଡ଼ିକାଲ ହଷ୍ଟେଲ୍‌ରେ ରହିବେ । ଏଣୁ ମୁଁ ମଧ ଘରୁ ଯାଇ ପରୀକ୍ଷା ପୂର୍ବ ଦିନ ରାତିଟା ହଷ୍ଟେଲ୍‌ରେ ରହିଲି । ଆମମାନଙ୍କର ସମସ୍ତଙ୍କର ଖାଇବା

ପିଇବାର ବନ୍ଦୋବସ୍ତ ମଧ୍ୟ ସେଦିନ ରାତି ପାଇଁ ହଷ୍ଟେଲ୍‌ରେ ହେଇଥାଏ । Strikeରେ ଯାହା ଯାହା ମେଡ଼ିକାଲରେ ହଉଥାଏ, ମୁଁ ସବୁ କଥା ବାବାଙ୍କୁ କହୁଥାଏ । ପରୀକ୍ଷା ବର୍ଜନ କରିବା କଥା ମଧ୍ୟ ବାବାଙ୍କୁ କହିଲି । ବାବା ସବୁ କଥା ଶୁଣି ମୋତେ କହିଲେ ଯା ସମସ୍ତେ କରିବେ ତୁ ସେଇୟା କରିବୁ । ଯା ହବ ସମସ୍ତଙ୍କ ପାଇଁ ହବ । ପରୀକ୍ଷା ଯଦି ସମସ୍ତେ ଦେବେ ନାହିଁ, ତୁ ଏକା ଆଉ କେମିତି ପରୀକ୍ଷା ଦବୁ? ଯା ଦେଖ, ଯା ଭାଗ୍ୟରେ ଥିବ ହବ ।

ଏଣେ ମେଡ଼ିକାଲ୍ ସ୍କୁଲ ହତାରେ ପିଲାଏ ଉଦ୍‌ବିଗ୍ନ ହେଇ ଖବର ବୁଝୁଥାନ୍ତି । କାଳିଆ ରାମ ଆଉ ଶତପଥୀ ମିଳିଲେ କି ନା? ଏମାନେ ନିଖୋଜ ହବାରେ ବଡ଼ ହତାଶ ଲାଗୁଥାଏ । ଅନେକ ରାତିକି ଖବର ମିଳିଲା କାଳିଆ ରାମ ଆଉ ଶତପଥୀ ଉଭୟେ ମିଳିଛନ୍ତି । ଉଭୟେ ଡା: ନାରାୟଣ ଦାସ ଦତ୍ତଙ୍କ ଘରେ ଆତ୍ମଗୋପନ କରିଥିଲେ । ସେଠୁ ବାହାରି ଗୋଟାଏ ହାତଟଣା ରିକ୍ସାରେ ଢଙ୍କା ଘୋଡ଼ା ହେଇ "ଜନାନା ଆଦମି" ଗଲା ଭଳି ଅବସ୍ଥାରେ ଅନ୍ୟତ୍ର ଗଲା ବେଳେ ଧରାପଡ଼ି, ପିଲାଙ୍କ ଜଗୁଆଳରେ ମେଡ଼ିକାଲ ହଷ୍ଟେଲ୍‌କୁ ଅଣା ହଉଛନ୍ତି । ଏ ସୁସମ୍ବାଦରେ ଆମମାନଙ୍କ ଭିତରେ ଗୋଟାଏ ଆନନ୍ଦର ଢେଉ ଖେଳିଗଲା ।

ମେଡ଼ିକାଲ ହଷ୍ଟେଲ୍‌ର ଯେତେ ପିଲା ଏବଂ ବାହାରର ଯେତେ ଛାତ୍ର ସେଦିନ ରାତିରେ ସେଠି ଯେତେ ଉପସ୍ଥିତ ଥିଲେ ସମସ୍ତେ ଉଦ୍‌ବିଗ୍ନ ହେଇ ଚାହିଁ ରହିଲେ କାହିଁ କାଳିଆରାମ ଆଉ ଶତପଥୀ କେତେବେଳେ ଆସୁଛନ୍ତି? ଯେତେବେଳେ ପ୍ରକୃତ କଳାକଳେବର କହ୍ନାଇ କାଳିଆରାମ ସଙ୍ଗେ ରୋହିଣୀସୁତ ଶତପଥୀ ଉଭୟେ ଗୋଟିଏ ରିକ୍ସାରେ କେତେକ ମେଡ଼ିକାଲ ଛାତ୍ରଙ୍କ ଗହଣରେ ହଷ୍ଟେଲ ସୀମାରେ ପ୍ରବେଶ କଲେ ।

କେତେକ ପିଲାଏ ବ୍ୟଙ୍ଗ କରି ସମସ୍ୱରରେ ହୁଳହୁଳି ପକେଇଲେ । କାଳିଆରାମ ଆଉ ଶତପଥୀଙ୍କୁ କିଛି ହଷ୍ଟେଲ୍‌ରେ ରଖି ପୁଣି ଝାଞ୍ଜିରମଙ୍ଗଳା ରାମଚନ୍ଦ୍ର ମିଶ୍ର ଯେ କି ସେତେବେଳେ ନାଟୁଆ ରାମ ବୋଲି ପରିଚିତ ଅଧୁନା ଫତୁରାନନ୍ଦ ନାମରେ ଖ୍ୟାତ, ତାଙ୍କରି ଘରକୁ ସ୍ଥାନାନ୍ତର କରାହେଲା । ସେଠି ମଧ୍ୟ ତାଙ୍କୁ କେତେକ ମେଡ଼ିକାଲ ଛାତ୍ର ଜଗି ରହିଲେ । ଯା ହଉ ଏ ଘଟଣାରେ ଆମେ ବେଶ୍ ଆଶ୍ୱସ୍ତ ହେଲୁ । ସେଦିନ ରାତିଟା ମେଡ଼ିକାଲ ହଷ୍ଟେଲରେ ଖାଇ ଗୋଟାଏ ଟେନିସ୍ କୋର୍ଟ ଉପରେ ମୁଁ ଏବଂ ମୋର ଜଣେ ବନ୍ଧୁ କାଳୀଚରଣ ମିତ୍ର ଉଭୟେ ଶୋଇ ରାତି କଟେଇଲୁ । କିନ୍ତୁ ସାରା ରାତି ଭଲ ଭାବରେ ଶୋଇପାରିଲୁ ନାହିଁ । କାରଣ ପିଲାଙ୍କ ରାତିସାରା ହୋ ହା ଶବ୍ଦ ପୁଣି ମୁଣ୍ଡରେ ବିଷମ ଚିନ୍ତା କଣ ହବ? ରାତି ପାହିଲେ ପରୀକ୍ଷା ଦେଇ ହବନି । ଏହାର ପରିଣତି କଣ ହବ? କେତେଦିନ ମେଡ଼ିକାଲରେ ଆଉ ଘୋଷାରି ହେବି? ଘରର ଅବସ୍ଥା ଯେ କଣ ହେଲାଣି! ଘରେ ସମସ୍ତେ ଚାହିଁ ବସିଛନ୍ତି ମୁଁ ପାସ୍ କରି ଚାକିରିରେ ପଶିଲେ ଘରର ଆର୍ଥିକ ଅବସ୍ଥା ସୁଧୁରିବ କିନ୍ତୁ ଏ ବାଧା କାହିଁକି?

ରାତି ପାହିଲା, ନିଦ ନହେଲେ ବି ରାତିଟା ବେଶ୍ ଭଲରେ କଟିଗଲା । ସମସ୍ତେ ଯେ ଯା'ର ତରବର ହେଇ ନିତ୍ୟକର୍ମ ସାରିବାରେ ଲାଗି ପଡ଼ିଲେ । କାରଣ ମିଟିଂ ହବ । ମେଡ଼ିକାଲ୍ ହଷ୍ଟେଲ୍ ସାମନାରେ ମିଟିଂ ହେଲା । ସେତେବେଳକାର ମେଡ଼ିକାଲ ଛାତ୍ର ଶ୍ରୀ ନୃସିଂହ ସାମନ୍ତସିଂହାର ଜ୍ୱାଳାମୟୀ ଭାଷଣ ଦେଲେ । ମିଟିଂ ପରେ ପିଲାଏ ମେଡ଼ିକାଲ୍ ହଷ୍ଟେଲ୍‌ରୁ ପରୀକ୍ଷା ହଲ୍ ଚାରିପଟେ କଡ଼ା ପହରା ଦେଲେ । କେହି ଯେମିତି ଜଣେ ହେଲେ ପରୀକ୍ଷାର୍ଥୀ ପରୀକ୍ଷା ଦେଇ ପାରିବେ ନାହିଁ । ପରୀକ୍ଷାର ବେଳ ହେଲା, ଘଣ୍ଟା ବାଜିଲା । ମୋର ଏବଂ ମୋ ପରି ଅନ୍ୟ ପରୀକ୍ଷାର୍ଥୀମାନଙ୍କ ଛାତିରେ ଯେମିତି ଢେଙ୍କି ପାହାର ପଡ଼ିଲା, କଣ ହେଲା? ସତକୁ ପରୀକ୍ଷା ଦେଇ ହେଲାନି! କି ବିପଦ! ମୁଁ ହତାଶ ହେଇ ଭାବିଲି କାହିଁକି ମେଡ଼ିକାଲରେ ଆସି ପଶିଲି? ଏଠୁଁ ପାସ୍ ନକରି ବିଦାୟ ହେଇଗଲେ ତ ସବୁ ଅକାରଣ ହେବ । କଣ କରିବି? ମୋତେ ଚାରିଆଡ଼ ଅନ୍ଧାର ଦିଶିଲା, କି ବିପଦ! ପରୀକ୍ଷା ହଲ୍‌କୁ ନିରୀକ୍ଷକମାନେ ଗଲେ । ପରୀକ୍ଷା ହଲ୍‌ରେ କେହି ନାହାନ୍ତି । ଡା: ନାରାୟଣ ଦାସ ଦତ୍ତ ଭାବିଥିଲେ ପରୀକ୍ଷା ହଲ୍‌କୁ କେହି ନଗଲେ କାଳିଆ ରାମ ଆଉ ଚକ୍ରଧର

ଶତପଥୀ ଉଭୟେ ଯେମିତି ହେଲେ ଯିବେ। କିନ୍ତୁ ସେ ମଧ୍ୟ ହେଇ ପାରିଲା ନାହିଁ।

ଶେଷରେ ପରୀକ୍ଷାର ସମୟ ଶେଷ ହେଲାରୁ ପରୀକ୍ଷାର ଶେଷ ଘଣ୍ଟା ବାଜିଲା। ଘଣ୍ଟାର ପ୍ରତ୍ୟେକ ନାଦରେ ଛାତି ଯେମିତି ଉଠିଲା, ପଡ଼ିଲା। ପରୀକ୍ଷା ବନ୍ଦ ପରେ ପିଲାଏ ଭାବିଲେ ଏଥର ଯେମିତି ହେଲେ ଆମର ଦାବୀ ପୂରଣ ହେଇଯିବ। ମେଡ଼ିକାଲରେ ଏବଂ ଚାରିଆଡ଼େ ଗୋଟାଏ ଚାଞ୍ଚଲ୍ୟ ସୃଷ୍ଟି ହେଇଗଲା। ଏଇ strike ସମୟରେ ଆମକୁ ସାହାଯ୍ୟ କରିବା ପାଇଁ ସଚ୍ଚି ରାଉତରା, ବୀରେନ୍ ମିତ୍ର ଆହୁରି କେତେ ଜଣ ବାହାରର ଲୋକ ଆସି ଯୋଗ ଦେଲେ। ମେଡ଼ିକାଲ ହଷ୍ଟେଲ୍‌ରେ ଦିନ ରାତି ସବୁବେଳେ ଗୋଟାଏ ହଟ୍ଟଗୋଳ ଲାଗି ରହିଲା।

ଏଇ ସମୟରେ ସଚ୍ଚି ରାଉତରାଙ୍କ ସମ୍ପାଦନାରେ "ଛାତ୍ର" ନାମକ ଖଣ୍ଡେ ଛୋଟ ପତ୍ରିକା ପ୍ରକାଶ ପାଇଲା। ଏମିତି ଅବସ୍ଥାରେ କିଛିଦିନ ଗତ ହେଲାରୁ କର୍ତ୍ତୃପକ୍ଷଙ୍କ ଆଡୁ ମେଡ଼ିକାଲ ହଷ୍ଟେଲ୍‌ର ଆଲୁଅ, ପାଣି ସରବରାହ ବନ୍ଦ କରି ଦିଆଗଲା। ନୋଟିସ୍ ବାହାରିଲା ମେଡ଼ିକାଲ ସ୍କୁଲ ଅନିର୍ଦ୍ଦିଷ୍ଟ କାଳ ପାଇଁ ବନ୍ଦ କରି ଦିଆଗଲା ଆଉ ହଷ୍ଟେଲନିବାସୀ ଛାତ୍ରଙ୍କୁ ନିର୍ଦ୍ଦେଶ ଦିଆଗଲା ହଷ୍ଟେଲ୍ ଖାଲି କରିବା ପାଇଁ।

କର୍ତ୍ତୃପକ୍ଷଙ୍କ ଏ ନିର୍ଦ୍ଦେଶନାକୁ ପିଲାଏ କେହି ମାନିଲେ ନାହିଁ। ହଷ୍ଟେଲ୍‌ରେ ଜବରଦସ୍ତ ରହିଲେ। ଆଲୁଅ ଏବଂ ପାଣିର ଯେ ଅଭାବ ଘଟିଲା ଏ ଅଭାବକୁ ପୂରଣ କଲେ ଜଣେ କଟକର ବଦାନ୍ୟ ଦାତା ମାରୱାଡ଼ି ଭଦ୍ରଲୋକ। ତାଙ୍କର ନାଁ ମୋର ମନେ ନାହିଁ। ରାତିରେ ଜଳିବା ପାଇଁ ସେ ଗୁରାଏ ପେଟ୍ରୋମାକ୍ସ ଯୋଗେଇଦେଲେ ଏବଂ ପାଣି ଯୋଗେଇବା ପାଇଁ କେତେଗୁରା ଲୋକ ଯୋଗେଇ ଦେଲେ। ଏଥିରେ ପିଲାଙ୍କର ଆଉ ଆଲୁଅ ପାଣିର ଅଭାବ ରହିଲା ନାହିଁ। ପିଲାଏ ଆନନ୍ଦରେ ଆହୁରି ମାତିଲେ। ଦିନଟା ହଟ୍ଟଗୋଳରେ ବିତିଲା। ରାତି ହେଲେ ପେଟ୍ରୋମାକ୍ସ ଆଲୁଅରେ ହଷ୍ଟେଲ ସାମନାରେ ଦଳ ଦଳ ବସି ଆଲୋଚନା, ଗପ ଇତ୍ୟାଦି ଚାଲିଲା।

କିନ୍ତୁ ଦାବୀ ପୂରଣ ହେଲା ନାହିଁ। ଏଣୁ ଏହାର ପରବର୍ତ୍ତୀ ପଦକ୍ଷେପ ନିଆଗଲା। ସେକ୍ରେଟେରିଏଟ୍ ସାମନାରେ ସତ୍ୟାଗ୍ରହ କରି ଧାରଣା ଦେବା। ସେତେବେଳେ ସେକ୍ରେଟେରିଏଟ୍ ଥାଏ ବର୍ତ୍ତମାନ କଟକରେ ଯେଉଁଠି ସିଟି ହସ୍ପିଟାଲ୍ ହେଇଛି।

ଛାତ୍ର ସୁଧୀର ଜବି ଅନଶନ କରି ରହିଥାଏ। ତା'ର ସ୍ୱାସ୍ଥ୍ୟ କ୍ରମଶଃ ଖରାପ ଆଡ଼କୁ ଗତି କଲା। ସେ ଜୀର୍ଣ୍ଣଶୀର୍ଣ୍ଣ ହେଇ ପଡ଼ିଲା। ତାକୁ ଡାକ୍ତରମାନେ ଆସି ଦେଖି ଯାଉଥାନ୍ତି। ଏଣେ ସତ୍ୟାଗ୍ରହ ଆରମ୍ଭ ହେଲା। ପ୍ରଥମ ଦଳ ଚାଲିଲେ ସେକ୍ରେଟେରିଏଟ୍ ସାମନାକୁ ସତ୍ୟାଗ୍ରହ କରି ଧାରଣା ଦବାକୁ। ସେକ୍ରେଟେରିଏଟ୍ ସାମନାରେ ଧାରଣା ଦେଲେ। ସେ ଦଳଙ୍କ ଆରେଷ୍ଟ ହେଇ ଗଲେ। ଦଳେ ଛାତ୍ର ଆରେଷ୍ଟ ହେଇ ଗଲା ପରେ କଟକ ସହରରେ ଆହୁରି ଚାଞ୍ଚଲ୍ୟ ସୃଷ୍ଟି ହେଲା। ଏଇ ସମୟରେ କଲିକତାର ସୁଭାଷ ବୋଷଙ୍କ ଫରଓ୍ୱାର୍ଡ଼ ବ୍ଲକ୍ ଦଳର ଛାତ୍ର ନେତା ବିଶ୍ୱନାଥ ମୁଖାର୍ଜି ଆସି କଟକରେ ପହଁଚିଲେ। ସେ ଆମର ଧର୍ମଘଟକୁ ସମର୍ଥନ କରି ଇଂରାଜୀରେ ଜ୍ୱାଳାମୟୀ ଭାଷଣ ଦେଲେ। ସେ ମଧ୍ୟ ଆମ ପିଲାଙ୍କ ସହିତରେ ସତ୍ୟାଗ୍ରହ କରି ଜେଲ୍ ବରଣ କରିବାକୁ ପ୍ରସ୍ତୁତ ହେଲେ। ସେ ତାଙ୍କ ଭାଷଣରେ କହିଲେ ଆମମାନଙ୍କର ଦାବୀ ଯଦି ପୂରଣ ନହୁଏ ଏମିତି ଛାତ୍ରମାନଙ୍କୁ ଗିରଫଦାରି ଚାଲେ, ତା'ହେଲେ ବେଙ୍ଗଲରୁ ମଧ୍ୟ ଛାତ୍ରମାନେ ଆସି ଏ ସତ୍ୟାଗ୍ରହରେ ଯୋଗ ଦେବେ।

ଏହାପରେ ଦେଖାଗଲା ଦଳେ ମେଡ଼ିକାଲ ଛାତ୍ର ସତ୍ୟାଗ୍ରହ କରି ଧାରଣା ଦେବାକୁ ପଟୁଆର କରି ବାହାରିଲା ବେଳକୁ ତାଙ୍କୁ ବାଟରୁ ପୁଲିସ ଆରେଷ୍ଟ କରିନେଲେ। ଏଇ ସମୟରେ ରବୀନ୍ଦ୍ରନାଥ ଠାକୁର ଓଡ଼ିଶାକୁ ଆସି ପୁରୀରେ କିଛିଦିନ ଅବସ୍ଥାନ କଲେ। ମୋର ଆନ୍ତରିକ ଇଚ୍ଛା ହେଲା ମୁଁ ପୁରୀ ଯାଇ ଥରେ ରବୀନ୍ଦ୍ରନାଥଙ୍କୁ ଦେଖିବି। କିନ୍ତୁ ଆମର ଛାତ୍ର କ୍ରିୟାନୁଷ୍ଠାନ କମିଟି ତରଫରୁ ଜଣେଇ ଦିଆଗଲା କେହି ପୁରୀକୁ ଯାଇ ପାରିବେ ନାହିଁ। କାରଣ ଦଳଦଳ ପିଲା ଯଦି ପୁରୀକୁ ଯିବେ କର୍ତ୍ତୃପକ୍ଷ

ଆମର ଧର୍ମଘଟକୁ ଭଣ୍ଡୁର କରି ଦେବେ । ଏଣୁ ମୁଁ ଆଉ ପୁରୀ ଯାଇ ରବୀନ୍ଦ୍ରନାଥଙ୍କୁ ଦେଖି ପାରିଲି ନାହିଁ ।

ଏହାପରେ ଆଉ ଦଳେ ଛାତ୍ର ସେକ୍ରେଟେରିଏଟ୍ ସାମନାରେ ଧାରଣା ଦବାକୁ "ଇନ୍‌କ୍ଲାବ ଜିନ୍ଦାବାଦ" ଧ୍ୱନୀ ଦେଇ ପଟୁଆର କରି ଯାଇ କଟକ ଜେଲ୍ ନିକଟବର୍ତ୍ତୀ ହେବା ବେଳେ ଜେଲ୍ ଭିତରେ ଆରେଷ୍ଟ୍ ହେଇଥିବା ଛାତ୍ରମାନେ ମଧ ଆମ ସାଙ୍ଗରେ ସମସ୍ୱରରେ "ଇନ୍‌କ୍ଲାବ ଜିନ୍ଦାବାଦ" ଧ୍ୱନୀ ଆରମ୍ଭ କଲେ । ଜେଲ୍ ବାହାର, ଜେଲ୍ ଭିତରର ଉଭୟପଟର "ଇନ୍‌କ୍ଲାବ ଜିନ୍ଦାବାଦ" ଧ୍ୱନୀରେ ଗଗନପବନ ଉଛୁଳି ପଡ଼ିଲା ପରି ମନେ ହେଲା । ଏ ଦୃଶ୍ୟ ଦେଖିବାକୁ ଏଣେ ଅସଂଖ୍ୟ ଦର୍ଶକଙ୍କର ଭିଡ଼ ଜମିଲା । କଟକ ସହର ହୁଲ୍‌ସ୍ଥୂଲ୍, ସମସ୍ତଙ୍କ ମନରେ ଆଗ୍ରହ ଆଜି କଣ ହଉଛି, ଦେଖିବା ।

ମେଡ଼ିକାଲ୍‌ର ଛାତ୍ରମାନେ ରାଣୀହାଟର ଯେଉଁ ଦୋକାନରୁ ପାନ ଖାଉଥିଲେ ସେମାନେ ମଧ ଆମ ସାଙ୍ଗରେ ପଟୁଆର ସହିତରେ ଯାଇ ପତରରେ ବାନ୍ଧି ପୁଳାଏ ପୁଳାଏ ଖିଲି ପାନ ଜେଲ୍ ପାଚେରୀ ଟପେଇ ଜେଲ୍ ଭିତରେ ଥିବା ପିଲାଙ୍କ ପାଇଁ ଫୋପାଡ଼ିଲେ । କାରଣ ଜେଲ୍ ଭିତରେ ଥିବା ଛାତ୍ରମାନେ ଖାଇବେ । ରାଣୀହାଟର ପାନ ଦୋକାନୀମାନେ ସତ୍ୟାଗ୍ରହ କରି ଜେଲ୍ ଯିବାକୁ ଉଦ୍ୟତ ହେଲେ । କାରଣ ସ୍ୱରୂପ ତାଙ୍କର ମତ ଯେଉଁ ବାବୁମାନଙ୍କୁ ପାନବିକି ଆମେ ପୋଷି ହଉଥିଲୁ ସେମାନେ ଯେତେବେଳେ ଜେଲ୍ ଗଲେ ଆମେ କାହିଁକି ଆଉ ବାହାରେ ରହିବୁ? ସେମାନଙ୍କୁ ଅଟକା ହେଲା, ସେମାନଙ୍କୁ କୁହାଗଲା ଦରକାର ପଡ଼ିଲେ ତୁମେମାନେ ଜେଲ୍ ଯିବ, ଅପେକ୍ଷା କର । ମେଡ଼ିକାଲ ହଷ୍ଟେଲ୍‌ର ପୂଜାରୀ, ଚାକରମାନେ ମଧ ଜେଲ୍ ଯିବାକୁ ଉଦ୍ୟତ ହେଲେ । ତାଙ୍କର ମତ ହେଲା ଯେଉଁ ବାବୁମାନଙ୍କ କାମ କରି ଆମେ ପୋଷି ହଉଥିଲୁ ସେମାନେ ଯେତେବେଳେ ଜେଲ୍ ଗଲେ ଆମେ ଆଉ କାହିଁକି ବାହାରେ ରହିବୁ? ସେମାନଙ୍କୁ ମଧ ଧୈର୍ଯ୍ୟ ରଖି ଅପେକ୍ଷା କରିବାକୁ କୁହାଗଲା ।

ସେଦିନ ଯେଉଁ ଦଳକ ଧାରଣା ଦବାକୁ ଯାଇଥିଲେ ସେମାନଙ୍କୁ ସେକ୍ରେଟେରିଏଟ୍ ଫାଟକ ସାମନାରୁ ଆରେଷ୍ଟ କରି ନେଇଗଲେ । ଏହା ପରେ ଆହୁରି ଉତ୍ତେଜନା ସୃଷ୍ଟି ହେଲା ।

ଏହାପରେ ଆଉ ଗୋଟାଏ ଘଟଣା ହେଲା ଆରେଷ୍ଟ ହେଇଥିବା ଛାତ୍ରମାନଙ୍କୁ କଟକ ଜେଲ୍‌ରୁ ଅନୁଗୁଳ ଜେଲ୍‌କୁ ସ୍ଥାନାନ୍ତର କରି ନେଇଗଲେ । ଏହାଦ୍ୱାରା କଟକ ସହରର ଛାତ୍ରମହଲରେ ଆହୁରି ଉତ୍ତେଜନା ଦେଖା ଗଲା । ସମସ୍ତେ ଯେମିତି ଆମକୁ ସମର୍ଥନ କରି ଜେଲ୍ ଯିବାକୁ ଉଦ୍ୟତ ହେଲେ ।

ଏଇ ସମୟରେ ମେଡ଼ିକାଲ୍‌ର ତତ୍‌କାଳୀନ ସୁପରିଟେନ୍‌ଡ଼େଣ୍ଟ P. L. O'Neil ଯେତେବେଳେ ଯୁଆଡ଼େ କାର୍‌ରେ ଯିବା ଆସିବା ବେଳେ ମେଡ଼ିକାଲ୍ ଛାତ୍ରଙ୍କ ହାବୁଡ଼େ ପଡ଼ଲେ, ଛାତ୍ରମାନେ ଧମକ ଦେଇ ଶୁଣେଇ ଶୁଣେଇ କହିଲେ "You will be Bezelgette."

ଏ କଥା କହିବାର କାରଣ ହଉଛି କଟକରେ ଏ ଆନ୍ଦୋଳନ ପୂର୍ବରୁ ରଣପୁରରେ political agent Bezelgetteଙ୍କୁ ହତ୍ୟା କରା ହେଇଥାଏ । ଏଣୁ ସେତେବେଳେ ଏଠା ଗୋରା କର୍ମଚାରୀଙ୍କ ମନରେ ଭାରି ଆତଙ୍କ ଜନ୍ମିଥାଏ । କାଳେ କିଏ ମାରି ଦେବକି?

ମେଡ଼ିକାଲ୍‌କୁ ଏଥି ପୂର୍ବରୁ ଯେତେବେଳେ Bezelgetteଙ୍କ ଶବ post-mortem ପାଇଁ ଅଣା ହେଇଥିଲା ମୁଁ ସେ ଶବକୁ ଦେଖିଥିଲି । କି ବୀଭତ୍ସ ଦୃଶ୍ୟ ସେ। Post-mortem କରିଥିଲେ ନିଜେ P. L. O'Neil. Post-mortem ପରେ ଯେତେବେଳେ Bezelgette ଙ୍କ ଶବ ଗୋଟାଏ ଟ୍ରକରେ ସଶସ୍ତ୍ର ପୁଲିସ ଜଗୁଆଳରେ ମେଡ଼ିକାଲ ହତାରୁ ବାହାରକୁ ନିଆ ହେଉଗଲା । ଆମେ ସେ ଟ୍ରକ୍ ପଛରେ "Three cheers for Ranpur" ଧ୍ୱନୀ ଦେଇ ସେତେବେଳର ମଙ୍ଗଳାବାଗ ଫାଣ୍ଡି ପର୍ଯ୍ୟନ୍ତ ଯାଇଥିଲୁ । ଟ୍ରକରେ ଯେଉଁ ସଶସ୍ତ୍ର ପୁଲିସ ବାହିନୀ ଥିଲେ, ସେ ଆମର "Three cheers for Ranpur" ଧ୍ୱନି ଶୁଣି ଦାନ୍ତ ଚୋବେଇ ଆମକୁ ଅନେଇ

ରାଗରେ ଜଳୁଥାନ୍ତି । ତାଙ୍କୁ ନିର୍ଦ୍ଦେଶ ଥିଲେ ସେ ଆମକୁ ତତ୍‌କ୍ଷଣାତ୍ ଗୁଳି କରି ମାରିଦେଇ ଥାନ୍ତେ ।

ଏ ସତ୍ୟାଗ୍ରହ ଆନ୍ଦୋଳନର ଶେଷ ବେଳକୁ ଆମକୁ ରଖା ହେଇଥାଏ । କାରଣ ଆମେ ସେତେବେଳକୁ ଥରେ 4th year ର final ପରୀକ୍ଷା ଦେଇ ଫେଲ୍ ହେଇ ପୁଣି ଥରେ final ପରୀକ୍ଷା ଦବା ପାଇଁ ପ୍ରସ୍ତୁତ ଥାଉ । ଏଣୁ ଆମେ ସବୁ ପୋଖତ ପିଲା ବୋଲି ଗଣ୍ୟ ହେଉଥାଉ । କଥା ହେଲା ଆଗେ ତଳ କ୍ଲାସ ପିଲାଏ ସତ୍ୟାଗ୍ରହ କରନ୍ତୁ, କେତେ ଜେଲ୍ ଯାଉଛନ୍ତି ଯା'ନ୍ତୁ । ଶେଷକୁ ଦରକାର ପଡ଼ିଲେ ଆମେ ପୋଖତ ପିଲା ସବୁ ସତ୍ୟାଗ୍ରହ କରି ଧାରଣା ଦବାକୁ ବାହାରିବୁ ।

କିନ୍ତୁ ଶେଷ ପର୍ଯ୍ୟନ୍ତ ଆମକୁ ଯିବାକୁ ପଡ଼ିଲାନି । କାରଣ ଛାତ୍ର କ୍ରୀୟାନୁଷ୍ଠାନ କମିଟି ଦ୍ୱାରା ଥରେ ସ୍ଥିର ହେଲା ଏ ପୁଅ ପିଲାଏ ସିନା ସତ୍ୟାଗ୍ରହ କରି ଧାରଣା ଦେଲା ବେଳକୁ ଆରେଷ୍ଟ କରି ନଉଛନ୍ତି । ଥରେ ଗୋଟାଏ ଦଳ ଝିଅ ପିଲାଏ ସତ୍ୟାଗ୍ରହ କରି ଧାରଣା ଦିଅନ୍ତୁ । ଦେଖା ଯାଉ କଣ ହଉଛି ।

ଏଇ କଥା ସ୍ଥିର ହେଲା ପରେ ଦିନେ ସକାଳୁ ଗୋଟିଏ ମେଡ଼ିକାଲ ଛାତ୍ରୀ ଦଳ ବାହାରି ସତ୍ୟାଗ୍ରହ କରିବାକୁ ସେକ୍ରେଟେରିଏଟ୍ ଫାଟକ ସାମନାରେ ଧାରଣା ଦେଲେ, ସେ କି ଦୃଶ୍ୟ !! କି ଲୋକ ଗହଳି !! କି ଉତ୍ସାହ ! କି ଉନ୍ମାଦନା ! ମେଡ଼ିକାଲ ଛାତ୍ରୀ ଦଳ ସେକ୍ରେଟେରିଏଟ୍ ଫାଟକ ସାମନାରେ କେତେକ ତଳେ ବସିଛନ୍ତି, କେତେକ ଠିଆ ହେଇଛନ୍ତି ହାତରେ କଂଗ୍ରେସର ତ୍ରିରଙ୍ଗା ପତାକା ଜଣେ ଧରିଛି । ଝିଅ ପିଲାମାନେତ କେଭେ କେଉଁଠି ଏମିତି ଧାରଣା ଦେଇ ନଥିଲେ । ଏ ତ ନୂଆ କଥା !! ପୁଲିସମାନେ ମଧ୍ୟ ଝିଅ ପିଲାଙ୍କୁ ଧରି ଆରେଷ୍ଟ କରି ନେଇ ପାରୁ ନାହାନ୍ତି । ଝିଅ ପିଲାଙ୍କ ଦିହରେ ହାତ ଛୁଇଁଲେ ଏଣେ ପୁଅ ପିଲାଏ, ଜନସାଧାରଣଙ୍କ ଆଡୁ ବିଷମ ପ୍ରତିକ୍ରିୟା ସୃଷ୍ଟି ହେଇ ମହା ଗଣ୍ଡଗୋଳର ସୂତ୍ରପାତ ହେବ । ଏଣେ ମଝିରେ ମଝିରେ ସ୍ଲୋଗାନ ଉଠୁଥାଏ, ଇନ୍‌କ୍ଲାବ ଜିନ୍ଦାବାଦ ।

ଶେଷରେ ସ୍ୱାସ୍ଥ୍ୟ ବିଭାଗର ଡାଇରେକ୍ଟର, ଏସ୍.ପି, କଟକ ଜିଲ୍ଲା ମାଜିଷ୍ଟ୍ରେଟ୍, ସମସ୍ତଙ୍କର ଉପସ୍ଥିତିରେ ଆମର ଦାବୀ ପୂରଣ ହେଲା । ସେଇଠି ସବୁ ସମାଧାନ ହେଲା । ଝିଅ ପିଲାଏ ଆଉ ଆରେଷ୍ଟ ହେଲେ ନାହିଁ । ସେଦିନ ଆମେମାନେ ଜୟଯୁକ୍ତ ହେଇ ସମସ୍ତେ ମହୋଲ୍ଲାସରେ ମେଡ଼ିକାଲ୍ ହଷ୍ଟେଲ୍‌କୁ ଫେରିଲୁ ।

ଦିନେ ଦୁଇଦିନ ପରେ ଅନୁଗୁଳ ଜେଲ୍‌କୁ ଯେଉଁ ଛାତ୍ରମାନେ ଆରେଷ୍ଟ ହେଇ ଯାଇଥିଲେ ସେମାନେ ମଧ୍ୟ ଦିନେ ସନ୍ଧ୍ୟା ପରେ ଅନଗୁଳ ଜେଲ୍‌ରୁ ଖଲାସ ହେଇ ତାଳଚେର ଟ୍ରେନ୍‌ରେ କଟକକୁ ଫେରି ଆସିଲେ । ଆମେମାନେ ସମସ୍ତେ ଯାଇ ସେମାନଙ୍କୁ କଟକ ଷ୍ଟେସନ୍‌ରୁ ସସମ୍ମାନେ ପାଛୋଟି ଆଣିଲୁ । ସେଦିନ କି ଆନନ୍ଦ ! ଏମାନଙ୍କ ଭିତରେ ମୋର ଜଣେ ବିଶିଷ୍ଟ ବନ୍ଧୁ କାଳୀ ଚରଣ ମିତ୍ର ଥିଲା । ବର୍ତ୍ତମାନ ସେ ପୁରୀ ଜିଲ୍ଲାରେ ଡାକ୍ତରୀ ଚାକିରି କରି ଗଳିତ ନଖଦନ୍ତ ଅବସ୍ଥାରେ ଅବସର ନବାର ବେଳ ନିକଟ ହେଇ ଆସିଲାଣି, ବାର୍ଦ୍ଧକ୍ୟରେ ରୂପାୟିତ ।

ଏହାପରେ କ୍ରମେ କ୍ରମେ ସବୁ ସାଧାରଣ ଅବସ୍ଥାକୁ ଫେରି ଆସିଲା । ଛାତ୍ର ସୁଧୀର କବି ତାଙ୍କର ଆମରଣ ଅନଶନ ଭାଙ୍ଗିଲେ । ଏ ସମସ୍ୟା ସମାଧାନ ହବାକୁ ଆଉ ଦିନେ ଦୁଇ ଦିନ ବିଳମ୍ବ ହେଇଥିଲେ ତା'ର ପ୍ରାଣବାୟୁ ଉଡ଼ିଯାଇଥାନ୍ତା । ସେ ଅତି ଜୀର୍ଣ୍ଣଶୀର୍ଣ୍ଣ ଅବସ୍ଥାରେ ଆମରଣ ଅନଶନରୁ ନିବୃର ହେଲା । ତାକୁ ସୁସ୍ଥ ସବଳ କରିବା ପାଇଁ ଚିକିତ୍ସା ଚାଲିଲା । ଏ strike ରେ ମେଡ଼ିକାଲ ଛାତ୍ରମାନେ ଜୟଯୁକ୍ତ ହେଲେ, କିନ୍ତୁ ଏହା ଫଳରେ ଡା: ନାରାୟଣ ଦାସ ଦତ୍ତଙ୍କ ସୁନାମରେ ଆଞ୍ଚ ଆସିଲା । ସେ ମଧ୍ୟ ପିଲାଙ୍କ ଉପରେ ଅନ୍ତରରେ ଦାଉ ସାଧିବା ମନୋଭାବ ପୋଷଣ କଲେ । ମେଡ଼ିକାଲ ହଷ୍ଟେଲ୍‌ରେ ପୂର୍ବ ପରି ଆଲୁଅ, ପାଣିର ସରବରାହ ଚାଲିଲା, ଆଉ କିଛି ନାହିଁ ସବୁ ଭଲ ।

ମୋର ସାନଭଉଣୀର ଅବସ୍ଥା ପୂର୍ବାପେକ୍ଷା ଆହୁରି ଖରାପ ଆଡ଼କୁ ଗତି କଲା । ସେ ଆଉ ବାହାରକୁ ଯିବା ଆସିବା କରିବାରେ ଅକ୍ଷମ ହେଲା । ଦିନ, ରାତି

ସବୁବେଳେ ବିଛଣାରେ ପଡ଼ି ରହିଲା। ତା'ର ସେହି ଶେଯ ନିକଟରେ ଝାଡ଼ା ଫେରିବା, ପରିଶ୍ରା କରିବା ଇତ୍ୟାଦିର ବ୍ୟବସ୍ଥା କରିଦିଆଗଲା। ତା'ର ଶରୀର ଏତେ ଜୀର୍ଣ୍ଣଶୀର୍ଣ୍ଣ ହେଇଗଲା ଯେ ବାହାରୁ ଦେଖିଲେ ଗୋଟିଏ ଯକ୍ଷ୍ମା ରୋଗୀ ପରି ଦେଖାଗଲା। କିନ୍ତୁ ଯକ୍ଷ୍ମା ରୋଗୀ ନୁହେଁ, ନାଳଶୂଳା ପୋଖରୀରେ ତା'ର ଅବସ୍ଥା ଇମିତି ହେଲା। ସେତେବେଳେ ନାଳଶୂଳା ପୋଖରୀ ପାଇଁ ତ ଆଜିକାଲି ପରି ଏତେ ଭଲ ଔଷଧ ବାହାରି ନଥିଲା। କେତେବେଳେ ଡାକ୍ତରୀ ଔଷଧି ଗୁରାଏ ଦିନ ଖାଇଲାଣି ତ ପୁଣି କେତେଦିନ କବିରାଜୀ ଔଷଧି ଖାଇଲାଣି। କିନ୍ତୁ କୌଣସି ଔଷଧିରେ କିଛି ଫଳ ହେଲା ନାହିଁ। ଅବସ୍ଥା ଦିନକୁ ଦିନ ଖରାପ ହେଲା।

ଶେଯରେ ଶୋଇ କଥାବାର୍ତ୍ତା କରୁଥାଏ। ମୁଁ, ବାବା, ମା ସମସ୍ତେ ତା'ର ଯେତେବେଳେ ଯା ଦରକାର ଯୋଗେଇ ଦଉଥାଉ। ତା'ର ଝିଅଟି ସେତେବେଳେ ଗୁରୁଣ୍ଡୁ ଥିଲେ ମଧ ସେ ଯେତେବେଳେ ଆମକୁ କିଛି ଦରକାର ବେଳେ ଡ଼ାକିଲେ ସେ ଝିଅଟି ଗୁରୁଣ୍ଡି ଗୁରୁଣ୍ଡି ତା ପାଖକୁ ଯାଇ, ତା'ପାଦରେ ହାତ ବୁଲାଏ। ମା ଏ ଘଟଣା ଦେଖି ଲୁଚି ଲୁଚି କାନ୍ଦି କାନ୍ଦି କହନ୍ତି ତା'ର ମା'ର ଧାର ଶୁଝୁଛି। ଏଡ଼େ ଟିକିଏ ପିଲା ତା ମା'ର ପାଦ ଆଉଁସି ଦଉଛି। ସେ କି ଦୁଃଖର ବେଳ। ଆଜି ତାକୁ ବର୍ଣ୍ଣନା କରି ଲେଖିବାକୁ ମୋର ହାତ ଚଳୁ ନାହିଁ। ଆଉ ଦିନେ ଏ ଝିଅଟି ଆଉ ଗୋଟିଏ ଘଟଣା କରି ବସିଲା। ଘଟଣାଟି ହେଲା ମୋର ସାନଭଉଣୀକୁ ଜର ହଉଥିଲା। ତା'ର temperature ଦେଖିବା ପାଇଁ ତା'ର ମୁଣ୍ଡ ପାଖରେ thermometer ଥୁଆ ହେଇଥାଏ। ଆମେ ଦରକାର ବେଳେ ସାନଭଉଣୀର ପାଟିରେ thermom-eter ଦେଇ ତା'ର ଦେହର temperature ଦେଖୁ। ତା'ର ସେ ଝିଅଟି ଏ ଘଟଣା ଲକ୍ଷ୍ୟ କରିଛି। ଦିନେ ଆମେ ସକାଳୁ ଉଠିଲା ବେଳକୁ ସେ ଝିଅ ତା ମୁଣ୍ଡ ପାଖରେ thermometer କାଢ଼ି, ତାକୁ ଖୋଲି ସାନଭଉଣୀର ଗାଲରେ ସେ thermometerକୁ ଲଗେଇ ଭାଙ୍ଗି ସାରିଛି। ସେ thermometerର ପାରଦଗୁରାକ ଏଣେ ତେଣେ ବିଛେଇ ହେଇ ପଡ଼ିଛି। Thermometer ଭାଙ୍ଗିଲା ବେଳକୁ ସାନଭଉଣୀର ନିଦ ଭାଙ୍ଗି ଗଲାରୁ ସେ ଏ ଘଟଣା ଜାଣି ପାରିଲା। ଏଡ଼େ ଟିକିଏ ପିଲାର ଏ କାମ କରିବାର ଦେଖି ଆମେ ସମସ୍ତେ ଆଶ୍ଚର୍ଯ୍ୟ ହେଲୁ। ସେ ଝିଅଟିକୁ ଆମେ "ବୁଢ଼ୀ" ବୋଲି ଡ଼ାକୁଥିଲୁ।

ଆମର 4th yearର ଯେଉଁ final ପରୀକ୍ଷା strike ବେଳେ ବନ୍ଦ କରା ହେଇଥିଲା ସେ ପୁଣି ହବାର କଥା, ସେଥିଲାଗି ଆମେ 4th yearର ପିଲାଏ ପୁଣି ପଢ଼ାପଢ଼ିରେ ଲାଗି ପଡ଼ିଲୁ। ମୁଁ, ଦିବାକର ପୂର୍ବ ପରି ଏକ ସାଙ୍ଗରେ ପଢ଼ିଲୁ।

ପରୀକ୍ଷାର ଦିନ ଘନେଇ ଆସିଲା। ଏଣେ ଘରେ ସାନଭଉଣୀର ଅବସ୍ଥା ଆହୁରି ଖରାପ ଆଡ଼କୁ ଗତିକଲା। ସେ କେବଳ ଶେଯରେ ଶୋଇଥାଏ। ଯା ଦରକାର ପଡ଼ିଲେ ଆମକୁ ଡାକେ ଆମେ ଯାଇ ତାକୁ ସବୁ ଯୋଗେଇ ଦେଇ ଆସୁ। ପାଖରେ ବସି ଗପ କରୁ। ମୁଁ ବେଳେ ବେଳେ ଗ୍ରାମୋଫୋନ୍ ବଜେଇ ଶୁଣାଏ। ତାକୁ ମା ଖୋଇ ଦିଅନ୍ତି। ସେ କିନ୍ତୁ ଭଲ କଥାବାର୍ତ୍ତା କରୁଥାଏ।

ଏଥି ମଧରେ ପରୀକ୍ଷା ଆହୁରି ନିକଟ ହେଇ ଆସିଲା। ମୁଁ ବେଳେବେଳେ ସାନଭଉଣୀ ପାଖରେ ବସି ପଢ଼େ, ବେଳେବେଳେ ମେଡ଼ିକାଲ ହଷ୍ଟେଲ୍‌କୁ ଯାଇ ପଢ଼େ।

ପରୀକ୍ଷା ଆରମ୍ଭ ହେଲା। ସମସ୍ତେ ପରୀକ୍ଷା ଦେଲୁ। ସେତେବେଳେ ପାଟନାରୁ external examiner ଆସୁଥିଲେ। Strikeର ଗଣ୍ଡଗୋଳରେ କେତେଦିନ ବିତି ଯାଇଥିଲା। ପୁଣି ପଢ଼ାପଢ଼ି କରି ଅଳ୍ପ ଦିନରେ ପରୀକ୍ଷା ଦିଆ ହେଲା। ଆମରି ଭିତରୁ କେତେ ପିଲାଙ୍କ ନାଁରେ ଡା:ନାରାୟଣ ଦାସ ଦତ୍ତଙ୍କ ପାଖରେ କାଳିଆ ରାମ ଏବଂ ଚକ୍ରଧର ଶତପଥୀଙ୍କ ଦ୍ୱାରା strike ବେଳେ ଖଚ ଚୁଗୁଲି କରା ହେଇଥିଲା। Strikeରେ କିଏ କଣ କରୁଛି, କିଏ କଣ କହୁଛି, କିଏ ମୁଖିଆ, କିଏ ଅଳ୍ପ ମୁଖିଆ ଇତ୍ୟାଦି ଇତ୍ୟାଦି।

ଲେଖା ପରୀକ୍ଷା ସରିଲା। ତା'ର କିଛିଦିନ ପରେ oral ପରୀକ୍ଷା ହେଲା। ବାହାରୁ examiner ଆସିଲେ, ଡା: ନାରାୟଣ ଦାସ ଦତ୍ତ ଆମର medicineରେ inter-nal examiner ହେଇଥାନ୍ତି।

Surgery, medicine ଏବଂ midwifery ତିନିଟା ବିଷୟରେ ଲେଖା ଏବଂ ମୌଖିକ ପରୀକ୍ଷା ସରିଲା । ଡା: ଦାସ ଦତ୍ତ medicineର oral ପରୀକ୍ଷାରେ ମୋତେ ଏବଂ ମୋ ପରି ମୋଟା ମୋଟା ପିଲାଙ୍କୁ ଖୁବ୍ ଗୁରାଏ କଡ଼ା ପ୍ରଶ୍ନ ପଚାରି oral ପରୀକ୍ଷା ବେଳେ ହଇରାଣ କଲେ । ଯା'ହଉ ପରୀକ୍ଷା ସରିଲା, ଫଳ ବାହାରିବ ତା'ରି ଅପେକ୍ଷାରେ ରହିଲୁ । ଯେ ଯା କରୁ ମୋର କାମ ହେଲା ସାନ ଭଉଣୀ ପାଇଁ ଔଷଧ ଆଣିବା, ତା'ର ଝିଅଟିକୁ ନେଇ ବେଳେବେଳେ ବୁଲିବା ଆଉ କେବେ କେବେ ସନ୍ଧ୍ୟା ପରେ କି ଦିନ ବେଳା ଘରେ ନିୟମିତ barbell ଦ୍ୱାରା ବ୍ୟାୟାମ କରିବା, କେବେକେବେ football ଖେଳିବା । ମୁଁ ଯେତେ ଯା'କରେ, ମନ ମୋର ଏକା ବେଳକେ ଦୁଃଖରେ ଅବସନ୍ନ ହେଇ ପଡ଼ିଲା, ଭଉଣୀର ଅବସ୍ଥା ଦେଖି । କି ସୁନ୍ଦର ତା' ଦେହ! କଣ ହେଲାଣି ସେ! ଖାଲି ହାଡ଼, ଚମ ଯେମିତି ଖଣ୍ଡେ କଙ୍କାଳ । କେତେ ଭାଇଭଉଣୀ ତ ଗଲେଣି, ସେ ଯା ହେଲା, ହେଲା ଏ ସାନଭଉଣୀଟି ହେଲେ ବଞ୍ଚିଥାନ୍ତା କେମିତି । ଏ ମଧ୍ୟ ବାହାରିଲାଣି, ଏ ଗଲେ ମୁଁ ଏକା ଆଉ ଭାଇ ଭଉଣୀ ନାହାନ୍ତି । ଭଗବାନ କ'ଣ କଲେ? ଆମେ ଚାରି ଭାଇ, ଚାରି ଭଉଣୀ, ସମସ୍ତେ ଯାଇ ଶେଷକୁ ଥିଲା ଏଇ ସାନ ଭଉଣୀଟି, ଏ ମଧ୍ୟ ଯିବ । କଣ କରିବି? ମନର ଦୁଃଖ ମନରେ ମାରି ଏଣେ ତେଣେ ବୁଲେ । ବେଳକେ ତା' ପାଖରେ ବସି ତାକୁ ଗ୍ରାମୋଫୋନ୍ ବଜେଇ ଶୁଣାଏ । ତା'ସହିତରେ ଗପ କରେ । ସାନ ଭଉଣୀ କଙ୍କାଳ ପରି ପଡ଼ିଥିଲେ ମଧ୍ୟ କଥାବର୍ତ୍ତା ଭଲ କରୁଥାଏ । ତା'ର ଝିଅଟି ତା'ପାଖକୁ ଆସିଲେ ତାକୁ ଧରି କାନ୍ଦେ, କହେ ମୋ ମରିବା ପରେ ମୋ ଝିଅ କ'ଣ କରିବ? ସେ କେମିତି ଚଳିବ?

ଏ ଦୁଃଖ ବେଳରେ ଦିନେ ପରୀକ୍ଷା ଫଳ ବାହାରିଲା । ଆମେ ଯେତେ ପରୀକ୍ଷା ଦେଇଥିଲୁ, ତା ଭିତରୁ ଅଧିକାଂଶ ପିଲା ଫେଲ୍ । ମୁଁ, ଦିବାକର ମଧ ଫେଲ୍ । ଏ ସମ୍ବାଦରେ ମୋ ମୁଣ୍ଡରେ ଆକାଶ ଛିଣ୍ଡି ପଡ଼ିଲା, କ'ଣ କରିବି? କ'ଣ ହେଲା? ଏଣେ ଭଉଣୀର ଅବସ୍ଥା ଏମିତି, ତା ଉପରେ ମୁଁ ପରୀକ୍ଷାରେ ଫେଲ୍ । ଏ କି ଦୁଃଖ! ଦୁଃଖରେ ଥଳକୂଳ ରହିଲାନି । ଘରେ ବାବା, ମା, ସାନ ଭଉଣୀ ସମସ୍ତେ ଜାଣିଲେ । ବାବା, ମା ଶୁଣି କିଛି ଆଉ କହିଲେନି । ସାନ ଭଉଣୀ ମଧ ଚୁପ୍ ରହିଲା । ମୋର ଛାତି ଫାଟିଗଲା ପରି ମନେ ହେଲା । ଏଥର ପରୀକ୍ଷାରେ ଫେଲ୍ ହେଇ ସେଦିନ ଦି'ପହରେ ମୁଁ ସମସ୍ତଙ୍କ ପରୋକ୍ଷରେ କାନ୍ଦିଲି, କାନ୍ଦିଲେ ବା କଣ ହବ? ଏ ତ ଦୁଃଖ ବେଳ, ତା'ଉପରେ ଆହୁରି ଦୁଃଖ, ମୁଁ ଫେଲ୍ ।

ସେଦିନ ତମାମ ସମସ୍ତଙ୍କର ବଡ଼ ଦୁଃଖରେ କଟିଲା । ସଞ୍ଜ ବେଳକୁ ମୋର ବାଲ୍ୟ ବନ୍ଧୁ ଆମର ପଡ଼ିଶା ଲୋକନାଥ ରାଉତ (ଲୋକା) ଆସିଲା ଆମ ଘରକୁ । ଲୋକା ଦୈନିକ ଆମ ଘରକୁ ଆସେ, ସବୁ କଥା ବୁଝେ, ବସେ । ଆମର ଅବସ୍ଥା ଦେଖି ଦୁଃଖ କରେ । ସେଦିନ ସଞ୍ଜ ପରେ ଲୋକାକୁ କହିଲି ଚାଲ ଟିକିଏ ବୁଲି ଆସିବା । ଏଇ ସମୟରେ ସାନ ଭଉଣୀ ତା'ର ଶେଯରେ ଶୋଇ ଲୋକାକୁ ଅତି ଦୁଃଖରେ କହିଲା, ଦାଦା ଅଭିକା ସିନା ଫେଲ୍ ହଉଛି, ଦାଦା ପାସ୍ କରିବ, ଚାକିରି କରିବ, ଅନେକ ସୁଖ କରିବ, ଆମେ ଆଉ ଦେଖିବୁ ନାହିଁ ।

ତା' ମୁହଁରୁ ଏ କଥା ଶୁଣି ମୋତେ ଦୁଃଖରେ ମନେ ହେଲା ଯେମିତି ମୋର ହୃଦ୍‌ଯନ୍ତ୍ରକ୍ରିୟା ବନ୍ଦ ହେଇଯିବ । କ'ଣ କରିବି? ଦୁଃଖୀକୁ ମରଣ ନାହିଁ, ହୃଦ୍‌ଯନ୍ତ୍ରକ୍ରିୟା ବନ୍ଦ ହେଲା ନାହିଁ । ସେ ସେମିତି ନିର୍ଲଜ ଭାବରେ ଅବିରାମ ଗତିରେ ଚାଲିଥାଏ । ଲୋକା କହିଲା, ଆସ ବାବୁ ଟିକିଏ ବୁଲି ଆସିଲେ ଭଲ ଲାଗିବ ।

ଆମେ ଦୁହେଁ ବୁଲିବାକୁ ବାହାରିଲୁ, ଅନ୍ଧାର ରାତି ସେତେବେଳେ କଟକ ସହରରେ ବିଜୁଳି ଆଲୁଅ ନଥିଲା । ଆମେ ଦିହେଁ ସେଇ ଅନ୍ଧାରରେ ମହାନଦୀର ଆନିକଟ ଆଡ଼କୁ ଗଲୁ । ସେତେବେଳେ ମହାନଦୀରେ ପ୍ରବଳ ବନ୍ୟା, ବିପଦ ସଙ୍କେତ ଟପିବା ଉପରେ । ମୁଁ ଲୋକା ଉଭୟେ ଆନିକଟରୁ ଅଳ୍ପ ଦୂରରେ ଗୋଟାଏ ପାଚେରି ଉପରେ ମହାନଦୀର ରେଲ୍ ପୋଲ ଆଡ଼କୁ ମୁହଁ କରି ଗୋଡ଼ ଝୁଲେଇ ବସିଲୁ ତଳେ ପାଚେରି ଦେହରେ ମହାନଦୀର ବନ୍ୟା ପାଣି 'ଥଡ଼ ଥଡ଼' ଶବ୍ଦ କରି ବାଡ଼େଇ ହଉଥାଏ । ଅନ୍ଧାର ମଧ୍ୟରେ ଆଉ କିଛି ଦିଶୁ ନଥାଏ । କି ଅନ୍ଧକାର!

କି ବିଭୀଷିକା ! ମୁଁ ଏଇ ସମୟରେ ଲୋକାକୁ କହିଲି ତୁ ଗଲୁ ଚିନାବାଦାମ କିଛି ଆଣିବୁ ଚୋବେଇବା । ଲୋକାକୁ ପଇସା ଦେଲି, ଲୋକା ଗଲା ଚିନାବାଦାମ କିଣିବାକୁ । ସେଠୁଁ ଅଳ୍ପ କିଛି ଦୂରରେ ଜଣେ ଲୋକ ଗୋଟିଏ ଆଲୁଅ ଜାଳି ତଳେ ବସି ଚିନାବାଦାମ ବିକୁଥିଲା । ଲୋକ ଗଲା ପରେ ମୁଁ ସେଠି ଏକା ଆଉ କେହି ନାହିଁ । ଏ ଅବସରରେ ମୋ ମୁଣ୍ଡରେ ଗୋଟାଏ ପାପ ବୁଦ୍ଧି ପଶିଲା ପାଣିକୁ ଡେ଼ଇଁ ଆତ୍ମହତ୍ୟା କରିବି । ଆଉ ଏ ଜୀବନ ରଖିବି ନାହିଁ । ଅଳ୍ପଦିନ ପରେ ତ ସାନ ଭଉଣୀଟିର ମୃତ୍ୟୁ ଘଟିବା ନିଶ୍ଚିତ । ମୁଁ ଆଉ ଏ ଦୁଃଖ ସହି ପାରିବି ନାହିଁ । ନିଜେତ ବହୁତ କଷ୍ଟ ଭୋଗ କଲିଣି । ପୁଣି ଭାବିଲି ବାବା, ମା'ଙ୍କର ସନ୍ତାନ ସନ୍ତତି ମଧ୍ୟରୁ ବର୍ତ୍ତମାନ ମୁଁ ଆଉ ସାନ ଭଉଣୀ । ସାନ ଭଉଣୀ ତ ନିଶ୍ଚୟ ଯିବ, ମୁଁ ଯଦି ଆତ୍ମହତ୍ୟା କରେ ବାବା, ମା ଏ ବୟସରେ ନିଃସନ୍ତାନ ହେଇ ତାଙ୍କର ଜୀବନ କଣ ହବ ? ନା, ପାଣିକି ଡେଇଁବି, ନା ସାନ ଭଉଣୀ ଗଲେ ମଧ୍ୟ ମୁଁ ଥିଲେ ତ ବାବା, ମା ଧୈର୍ଯ୍ୟ ଧରି କିଛି କାଳ ବଞ୍ଚି ରହିବେ ନଚେତ୍ ମୁଁ ଆତ୍ମହତ୍ୟା କରିବା ମାନେ ସେମାନଙ୍କୁ ମାରିଦେବା । ବାବା, ମା ତ ବହୁତ କଷ୍ଟ ସହ୍ୟ କଲେଣି । ପୁଣି ଭାବିଲି, କଷ୍ଟ ସହ୍ୟ କଲେ କଣ ହେଲା ? ମୁଁ ନିଜେ ଆଉ ଏତେ କଷ୍ଟ ସହ୍ୟ କରିପାରିବି ନାହିଁ । ମୁଁ ବର୍ତ୍ତମାନ ଫେଲ୍ ହେଇଛି । ପୁଣି ପାସ୍ କରିବି । କଲେ କଣ ହବ ? ସାନ ଭଉଣୀ ତ ଦେଖିଲା ନାହିଁ । ନା ସାନ ଭଉଣୀ ନଦେଖିଲେ ବାବା, ମା ତ ଦେଖିବେ । ବାବା, ମା ମୋ ପାଇଁ ତ ବହୁତ କଷ୍ଟ କଲେଣି । ମୁଁ ପୁଣି ପାସ୍ କରି ଚାକିରି କଲେ ତ ତାଙ୍କର କଷ୍ଟର କିଛି ଉପଶମ ହେବ । ନା, ସେ ଯା'ହଉ ମୁଁ ଆଉ ଏ ଜୀବନ ରଖିବି ନାହିଁ ।

ଏମିତି ବିଚଳିତ ହେଇ ଏଣୁ ତେଣୁ ଭାବୁଛି, ଗୋଡ଼ ତଳେ ଗଭୀର ବନ୍ୟା ଜଳ ଧପାସ୍ ଧପାସ୍ ଶବ୍ଦ କରି ପଥର କାନ୍ଥରେ ବାଡ଼େଇ ହଉଛି । ପୁଣି ଭାବୁଛି ପାଣି କି ଡେ଼ଇଁବି । ଏଇ ସମୟରେ ଲୋକା ଦୌଡ଼ି ଆସି ମୋ ପାଖରେ ଚିନାବାଦାମ ଧରି ପହଁଚି ଗଲା । ଲୋକା ପହଁଚି ଗଲାରୁ ଆଉ ପାଣିକି ଡେ଼ଇଁ ପାରିଲି ନାହିଁ । ଲୋକା ମୋତେ ଚିନାବାଦାମ କିଛି ଦେଇ ସେ କିଛି ରଖି ମୋ ପାଖରେ ପଥର ବନ୍ଧ ଉପରେ ବସିଲା । ମୁଁ ଯେଉଁ ପାଣି କି ଡେ଼ଇଁ ଆତ୍ମହତ୍ୟା କରିବାକୁ ଭାବୁଥିଲି ସେକଥା ଲୋକାକୁ କହିଲି । ଲୋକା ମଧ୍ୟ କହିଲା ବାବୁ ମୋତେ କାହିଁକି ସେମିତି ମନେ ହେଲା । ମୁଁ ଭାବିଲି ବାବୁ କଣ ପାଣିକି ଡେଇଁ ପଡ଼ିବେ କି ? ମୋତେ କଣ ମିଛରେ ଆଉ ଚିନାବାଦାମ କିଣିବାକୁ ପଠେଇ ଦେଲେ କି ? ମୁଁ ସେଇଥିପାଇଁ ତରବରରେ ଚିନାବାଦାମ କିଣି ପଳେଇ ଆସିଲି । ପାଣିକି ଡେ଼ଇଁଥିଲେ ବାବୁ ଭଲ କାମ କରି ନଥାଆନ୍ତ । ଭଲ କରିଛ ବାବୁ ପାଣିକି ଡେଇଁ ଜୀବନ ଦେଇ ନା । ବାପ, ମା ବୁଢ଼ାବୁଢ଼ୀ ଦି'ଟା ଅକାରଣେ ମରି ଯାଇଥାନ୍ତେ । ସାନଝିଅର ତ ଅବସ୍ଥା ଏମିତି ଆଉ ତୁମେ ଯାଇଥିଲେ ବୁଢ଼ାବୁଢ଼ୀ ଦି'ଟାଙ୍କୁ ମାରି ଦବା କଥା ।

ସେ ଦିନକର ସେ ଅନ୍ଧକାରାଚ୍ଛନ୍ନ ଭରା ନଈ । ସେ ରାତି ମୋର ସେ ପାଣି କି ଡେଇଁ ଆତ୍ମହତ୍ୟା କରିବାର ଚିନ୍ତା, ଏବେ ମଧ୍ୟ ମନେ ପଡ଼ିଲେ ଦିହ ଥରି ଉଠେ । ସେଦିନ ମୁଁ ଲୋକା ଦିହେଁ ଘରକୁ ଫେରିଲୁ । ସାନ ଭଉଣୀର ଅବସ୍ଥା ଦିନକୁ ଦିନ ଆହୁରି ଖରାପ ହେଲା । ସେ ଯା ତା ଶେଯ ନିକଟରେ ଉଠି ବସି ଝାଡ଼ା, ପରିଶ୍ରା କରୁଥିଲା ଆଉ ପାରିଲା ନାହିଁ । ସେଇ ଶେଯରେ ଝାଡ଼ା, ପରିଶ୍ରା କଲା । ମା ତା'ର ସେବାରେ ଅନବରତ ଖଟିଲେ । ତା'ର ସାନଝିଅଟିକୁ ସମାଳିଲେ । ମା ଆଉ ଅନ୍ୟ କାମ ଧନ୍ଦା କରିପାରିଲେ ନାହିଁ । ବାବା ମୁଠାଏ ଯାହା ତାହା କରି ରାନ୍ଧି ଥୋଇ ଦିଅନ୍ତି । ଯା'ର ଇଚ୍ଛା ହେଲା ସେ ଖାଇଲା । ନଚେତ୍ ସେମିତି ରୋଷେଇ ହେଇ ଥୁଆ ହେଲା । ମୁଁ ଡାକ୍ତର ଡାକିବା, ଔଷଧ ଆଣିବାରେ ରହିଲି । ବେଳକେ ତା'ର ଝିଅଟିକି କାଖକୋଳ କରି ଭୁଲେଇ ରଖିଲି । ବନ୍ଧୁବାନ୍ଧବ ଯେ ସାନ ଭଉଣୀକୁ ଦେଖିବାକୁ ଆସିଲେ, ସାନଭଉଣୀ ନିଜେ ସେମାନଙ୍କୁ ଅନୁରୋଧ କରି କହିଲା, ଆଜି ରାତିଟା ମୋତେ ଜଗି ରୁହ, ମୋତେ ଜଣା ଯାଉଛି ଆଜି ରାତିରେ ମୋ ପ୍ରାଣ ରହିବ ନାହିଁ ।

ବାବା, ମା, ମୁଁ, ମାଉସୀପୁଅ ଭାଇ ବୀରେନ୍ଦ୍ରନାଥ ବୋଷ, ମାମୁଁ ପୁଅ ଭାଇ ରାସ ବିହାରୀ ରାୟ, ମା'ଙ୍କର

ଜଣେ ଦୂର ସମ୍ପର୍କୀୟ ଭାଇ କାର୍ତ୍ତିକ ଚନ୍ଦ୍ର ସର୍ଖେଲ (କମ୍ପାଉଣ୍ଡର), ମୋର ବାଲ୍ୟ ବନ୍ଧୁ ପଡ଼ିଶା, ଲୋକନାଥ ରାଉତ (ଲୋକା) ସମସ୍ତେ ରାତି ଜଗିଲୁ। ରାତିଟା କୌଣସି ପ୍ରକାରେ ପାହି ଯାଉଥିଲା। ସାରା ରାତି ଅନିଦ୍ରାରେ କଟି ଯାଉଥିଲା କିନ୍ତୁ ଗୋଟାଏ ବିପଦସଙ୍କୁଳ ଦିନ ଆସି ପହଞ୍ଚିଲା। ଯେଉଁଦିନ ସାନ ଭଉଣୀର କଥାବାର୍ତ୍ତା ବନ୍ଦ, ନିଶ୍ଚଳ, କ୍ଷୀଣ ନିଶ୍ୱାସ ଚାଲୁଥାଏ। ଅବସ୍ଥା ଅତି ଖରାପ। ମୁଁ କଟକ ବଡ଼ ଡାକ୍ତରଖାନାକୁ ଦୌଡ଼ିଯାଇ ଡାକ୍ତର ଗୋପାଳ ଚନ୍ଦ୍ର ପଟ୍ଟନାୟକଙ୍କୁ (ଯେ କି ପରେ ସ୍ୱାସ୍ଥ୍ୟ ବିଭାଗର ଡାଇରେକ୍ଟର ହୋଇ ଚାକିରିରୁ ପରେ ଅବସର ନେଲେ) ଡାକି ଆଣିଲି। ସେ ସାନ ଭଉଣୀର ଅବସ୍ଥା ଦେଖି କେତେକ ବ୍ୟବସ୍ଥା କରି ନିରାଶ ହୋଇ ଫେରିଗଲେ।

ଡାକ୍ତର ଗୋପାଳ ଚନ୍ଦ୍ର ପଟ୍ଟନାୟକ ଫେରିଗଲାର କିଛି ସମୟ ପରେ ସାନ ଭଉଣୀର ଉର୍ଦ୍ଧ୍ୱନିଃଶ୍ୱାସ ଚାଲିଲା। ସେ ଆଉ ଆଖିରେ କିଛି ଦେଖି ପାରିଲା ନାହିଁ। ଆମେମାନେ ସବୁ କାନ୍ଦିବାକୁ ଆରମ୍ଭ କଲୁ। ଭଉଣୀ ବୁଝି ପାରି କାନ୍ଦ କାନ୍ଦ ହୋଇ କହିଲା ସମସ୍ତେ କାନ୍ଦିଲେଣି, ମୋତେ ପୁଣି କହିଲା ମୋର ଉର୍ଦ୍ଧ୍ୱନିଃଶ୍ୱାସ ବନ୍ଦ କର। ମେଡ଼ିକାଲରୁ ଭଣଜା ରବିନ୍ଦ୍ରନାଥ ଦାସ ଆସି ପହଞ୍ଚିଲା। ମାଉସୀ ପୁଅ ଭାଇ ବୀରେନ୍, ଲୋକା ସମସ୍ତେ ଆସିଲେ। ସେଦିନ ସାନ ଭଉଣୀର ଏମିତି ଅବସ୍ଥାକୁ ତା'ର ଝିଅଟିର ପ୍ରବଳ ଝାଡ଼ା, ସେ ଝାଡ଼ା ଦେଖିଲେ ଭୟ ହବ। ମା' ତା'ର ଅବସ୍ଥା ଦେଖି ଆହୁରି କାନ୍ଦିଲେ। ଏ କଣ ହେଲା? ମା, ଝିଅ କଣ ଉଭୟେ ଯିବେ କି? ଭଣଜା ସେ ଝିଅ ହାତରେ ଗୋଟାଏ ଲୁହାର କଡା ପିନ୍ଧେଇ ଦେଇ ମା'ଙ୍କୁ କହିଲା ତୁମେ ସେ ଝିଅକୁ ନେଇ ଦୂରରେ ରୁହ।

ମା ସେ ଝିଅଟିକି ନେଇ ଅନ୍ୟ ଆଡ଼େ ରହିଲେ। ଆମେ ସବୁ ଭଉଣୀ ପାଖରେ ଜଗି ବସିଲୁ। ଦିନ ଚାରିଟା ବେଳକୁ ଭଉଣୀ ଏକବାର ଚେତାଶୂନ୍ୟ ଅବସ୍ଥାରେ ନିଶ୍ଚଳ ହୋଇ ପଡ଼ି ରହିଲା। ମା ଭଉଣୀ କପାଳରେ ସିନ୍ଦୁର ପିନ୍ଧେଇ ଦେଇ ଅତି କରୁଣ ସ୍ୱରରେ କାନ୍ଦିବାକୁ ଲାଗିଲେ। ବାବା ତା'ର ଝିଅଟିକି ନେଇ ଅନ୍ୟ ଆଡ଼େ ବୁଲିଲେ। ଝିଅଟିକୁ ତା'ର ମା'ର ଅବସ୍ଥା ଆଉ ଦେଖିବାକୁ ଦିଆ ହେଲା ନାହିଁ। ଝିଅଟିର ଝାଡ଼ା ମଧ୍ୟ ବନ୍ଦ ହୋଇ ଯାଇଥାଏ।

ଭଉଣୀର ମୃତ୍ୟୁର ନିକଟ ସମୟ ହୋଇ ଆସିଲାରୁ ବାବା ଆସି ତା'ପାଖରେ ବସିଲେ। ସାରାଦିନ ବାବା ଉପାସରେ ଥାନ୍ତି। ତାଙ୍କ ଦିହରୁ ଗୋଟା ଗୋଟା ଝାଳ ବୋହି ଯାଉଥାଏ। ମୁଁ ଭଉଣୀ ଦେହରେ ହାତ ରଖି ବାଡ଼େଇ ପିଟି ହୋଇ ଗୁରାଏ କାନ୍ଦିଲି। ରାତି ୧୧ଟା ବେଳକୁ ଭଉଣୀ ଶେଷ ନିଃଶ୍ୱାସ ତ୍ୟାଗ କରି ଆମକୁ ଛାଡ଼ି ଚାଲିଗଲା। ଏଇ ସାନଭଉଣୀର ମୃତ୍ୟୁ ପରେ ମୁଁ ଏକା ହୋଇ ପଡ଼ିଲି। ମୋର ତଳ ଉପର ଭାଇ ଭଉଣୀମାନେ ସବୁ ଚାଲିଗଲେ। ମୋତେ ଭବିଷ୍ୟତରେ ସାହାଯ୍ୟ କଲା ଭଳି ଆଉ ଭାଇ ଭଉଣୀ କେହି ରହିଲେ ନାହିଁ। ସାନ ଭଉଣୀର ପ୍ରାଣବାୟୁ ଉଡ଼ିଗଲାର ଠିକ୍ ପର ମୁହୂର୍ତ୍ତରେ ମୋର ବଡ଼ ଭିଣେଇଙ୍କର ସାନ ଭାଇ କେଦାର ବାବୁ ଆସି ପହଞ୍ଚିଲେ। ଭଉଣୀର ମୃତ ଶରୀରକୁ ଦେଖି ଥକା ହୋଇ ବିଷନ୍ନ ଭାବରେ ଠିଆ ହେଲେ।

ସେଦିନ ବାବାଙ୍କ ହାତରେ ଗୋଟିଏ ପଇସା ନଥାଏ। ଶବ ସତ୍କାର କେମିତି ହବ? ଏଣୁ ଭଣଜା ମୋତେ ଡ଼ାକି ନେଇ ମେଡ଼ିକାଲ ହଷ୍ଟେଲକୁ ଯାଇ ତା'ର ଏକ ସାଙ୍ଗଠାରୁ କିଛି ଟଙ୍କା ଧାର ଆଣିଲା। ସେ କି ଦୁଃଖର ରାତି! ଝୁଲଣଯାତ୍ରା ବେଳ, ଜହ୍ନ ରାତି ତଥାପି କି ବିଭୀଷିକାମୟ ଲାଗୁଥାଏ। ସବୁ ଜିନିଷ ଯୋଗାଡ଼ କରି ଶବକୁ ମଶାଣିକୁ ନବା ପାଇଁ ରାତି ପ୍ରାୟ ତିନିଟା ହୋଇଗଲା।

ଶବ ସହିତରେ ମୁଁ, ଭଣଜା, ମାଉସୀ ପୁଅ ଭାଇ ବୀରେନ୍, କେଦାର ବାବୁ ଏବଂ ତାଙ୍କର ଜଣେ ଜ୍ଞାତି ଦୁର୍ଗାଚରଣ ଦାସ, ଜଣେ ବାରିକ ସମସ୍ତେ ଖାନ୍‌ନଗର ମଶାଣିକୁ ଚାଲିଲୁ। ବାବା, ମା'ଙ୍କ ପାଖରେ ରହିଲେ ଲୋକନାଥ ରାଉତ ଏବଂ ମୋର ମାମୁଁ ପୁଅ ଭାଇ ରାସ ବିହାରୀ ରାୟ।

ଭୋର ବେଳକୁ ମୁଁ ଏବଂ ଭଣଜା ଉଭୟେ ମଶାଣିରୁ ଫେରିଲୁ। ସାନ ଭଉଣୀର ମୃତ୍ୟୁ ପରେ ଘର

ଏକବାରେ ଶୂନ୍ୟ ଲାଗିଲା । ଘରେ କେବଳ ବାବା, ମା, ମୁଁ ଆଉ ସାନ ଭଉଣୀର ସେ ଝିଅଟି, ଏତିକି । ଚାକର ଇତ୍ୟାଦି କେହି ନାହାନ୍ତି । ବାବା, ମା'ଙ୍କର ଚାରି ପୁଅ, ଚାରି ଝିଅଙ୍କ ଭିତରୁ ତାଙ୍କ ଜୀବନ କାଳ ମଧ୍ୟରେ ସାତ ଜଣଙ୍କର ମୃତ୍ୟୁ ଘଟିଲା । କେବଳ ଶେଷକୁ ରହିଲି ମୁଁ । ସେ ବି ଦୁଃଖର ଦିନ । କିଏ କାହାକୁ ସାନ୍ତ୍ୱନା ଦବ? ବୁଝେଇବ? ସମସ୍ତେ ଶୋକାକୁଳ । ସାନ ଭଉଣୀର ସେ ଝିଅଟିକି ଦେଖିଲେ ଛାତି ଫାଟି ଯାଉଥାଏ । ତାକୁ ସେତେବେଳେ ମୋଟେ ଦେଢ଼ ବର୍ଷ । ବାବା, ମା ଓ ମୁଁ ତାକୁ କୌଣସି ପ୍ରକାରେ ଖୋଇପେଇ କାଖକୋଳ କରି ଭୁଲେଇ ରଖୁ । ସେଇ ଝିଅଟି ସେତେବେଳେ ଆମର ଏକମାତ୍ର ଅବଲମ୍ବନ ହେଲା ।

ସାନ ଭଉଣୀର ମୃତ୍ୟୁ ପରେ ଘର ଛାରଖାର ହେଇଗଲା । ଘରେ କେବଳ ବାବା, ମା, ମୁଁ ଓ ସାନ ଭଉଣୀ ଛାଡ଼ି ଯାଇଥିବା ତା'ର ଦେଢ଼ ବର୍ଷର ସାନ ଝିଅଟି, ଆଉ କେହି ନାହିଁ । ସମସ୍ତେ ଶୋକାକୁଳ, କେହି କାହାକୁ ସାନ୍ତ୍ୱନା ଦେବା ଭଳି ଅବସ୍ଥାରେ ନାହାନ୍ତି । ବାବା, ମା ତାଙ୍କର ଶେଷ ଝିଅକୁ ହରେଇ ଶୋକାକୁଳ । ମୁଁ ମୋର ଶେଷ ଭଉଣୀକୁ ହରେଇ ଶୋକ ସନ୍ତପ୍ତ । ଭଉଣୀର ସାନ ଝିଅଟି ତା'ର ମା'କୁ ହରେଇ ମାତୃହରା ଶିଶୁର ଅବସ୍ଥା । ମା ମନେ ପଡ଼ିଲେ, ତାକୁ କି ସମ୍ଭାଳି ରଖି ପାରିବ?

ଏ ଘୋର ଦୁଃଖ ବେଳରେ ବାବା କେବଳ ଧୈର୍ଯ୍ୟ ରଖି ଶୋକ ସମ୍ଭାଳି ମୁଠାଏ ନିଜ ହାତରେ ରାନ୍ଧି ଥୋଇ ଦିଅନ୍ତି । କେବଳ ଭାତ, ଡାଲି ଆଉ ବାଇଗଣ ଭଜା ଏତିକି । କିଏ ଖାଇବ, ନଖାଇବ ତାକୁ ଆଉ ଅପେକ୍ଷା କରିବାକୁ ନାହିଁ । ଯାର ଇଚ୍ଛା ସେ ହାତରେ ବାଢ଼ି ଖାଇଲା ନଚେତ୍ ସେ ଭାତ, ଡାଲି ରନ୍ଧା ହେଲା ସେମିତି ଥୁଆ ହେଲା । ମୋର କେବଳ ମନେ ପଡୁଥାଏ ମୁଁ କି ବେଳରେ ଭଉଣୀକୁ ତା'ର ଶଶୁର ଘରୁ ଆଣିଲି । ଆଉ ସେ ଶଶୁର ଘରକୁ ଫେରିଗଲା ନାହିଁ । ମା ତ ଶୋକରେ ଭାଙ୍ଗି ପଡ଼ିଲେ । ତାଙ୍କର ଚାରି ଝିଅ, ଚାରି ପୁଅ ଭିତରୁ ତାଙ୍କରି ଆଗରେ ସାତଟି ସନ୍ତାନ ଗଲେ, କେବଳ ରହିଲି ମୁଁ ।

ଝିଅଟି କାନ୍ଦିବ ବୋଲି ଆମେ ବେଶି କାନ୍ଦି ପାରୁ ନା । ତାକୁ ବେଶି ଭାଗ ମା ସମ୍ଭାଳି ରଖନ୍ତି । ତା'ପରେ ବାବା ତା'ପରେ ମୁଁ । ତାକୁ ଟିକିଏ ତଳେ ଓହ୍ଲେଇବାକୁ ଦିଆ ହୁଏନା । ବନ୍ଧୁବାନ୍ଧବ ଯେ ଯୁଆଡ଼େ ଆସନ୍ତି ଆମକୁ ଦେଖି ଦୁଃଖ ପ୍ରକାଶ କରଥାନ୍ତି । ପଡ଼ିଶା ଭିତରୁ ଲୋକ ଆସେ, ବସେ ଦୁଃଖ କରେ । ଝିଅଟିକି କୋଳକାଖ କରେ, ଲୋକ ହିଁ ତା'ର ପିଲାଦିନୁ ଦେଖି ଆସିଛି ଆମ ଘରର ଗହଳି, ଆଜି ବି ଦେଖୁଛି । ଲୋକ ବିଶେଷ ଦୁଃଖ କରେ, ବେଳକେ ଅନ୍ୟାନ୍ୟ କାମ କରିଦିଏ । ଆମର ଖାଇବା ପିଇବା କଥା ବୁଝେ । ପୁଣି ତା' ଘରକୁ ସେ ଚାଲି ଯାଏ, ପୁଣି ଆସେ ।

ଝିଅଟିର ବେଳେ ବେଳେ ତା'ର ମା ମନେ ପଡ଼ିଲେ ଭାରି ଜିଦ୍ ଧରି କାନ୍ଦେ । ଯେତେ ତାକୁ ଭୁଲାଭୁଲି କଲେ ମଧ୍ୟ ସେ ଥୟ ହୁଏ ନା, ମା ତା'ର ଏ ଅବସ୍ଥା ଦେଖି କାନ୍ଦନ୍ତି, ଆମେ ମଧ୍ୟ । ଇମିତି ଅବସ୍ଥାରେ ସେ ଝିଅ କିମିତି ତା'ର ମା'କୁ ଭୁଲିବ । ଏଥିଲାଗି ପଡ଼ିଶା ଘରର ଗୋଟିଏ ଗରିବ ପିଲା ନାଁ ରାମ, ତାକୁ ଆଣି ତା'ସାଙ୍ଗରେ ଖେଳିବା ପାଇଁ ଛାଡ଼ି ଦିଆଗଲା । ରାମର ମା ଆମ ଘରେ ବେଳେବେଳେ ଆସି କେତେକ କାମ କରିଯାଏ । ରାମ ଦିନ ସାରା ସେ ଝିଅଟି ସାଙ୍ଗରେ ଖେଳେ, ଆମ ଘରେ ଦିନ ବେଳା ଖାଏ ସନ୍ଧ୍ୟା ହେଲେ ରାମର ମା ରାମକୁ ନେଇଯାଏ । ରାତି ପାହିବା ମାତ୍ରେ ଝିଅଟି ରାମକୁ ଖୋଜେ, ରାମ ଡକା ହେଇ ଆସେ । ଉଭୟେ ଖେଳନ୍ତି । ରାମର ବୟସ ସେତେବେଳେ ଅଢ଼େଇ କି ତିନି ବର୍ଷ ମାତ୍ର ହବ । ଭାରି ବଳିଷ୍ଠ, ଭାରି ଦୁଷ୍ଟ, ଅପରିଷ୍କାର । ଯା'ହଉ, ରାମ ସହିତରେ ଝିଅଟି କଣ୍ଢେଇ ଇତ୍ୟାଦି ନେଇ ଖେଳିଲେ ଆମେ ଟିକିଏ ଆଶ୍ୱସ୍ତ ହଉ ।

ସାନ ଭଉଣୀର ମୃତ୍ୟୁର ଏକମାସ ପରେ ଯେଉଁ ଦିନ ତା'ର ଶୁଦ୍ଧିକ୍ରିୟା, ଝିଅଟିକୁ ମା ଗାଧେଇ ଦଉଛନ୍ତି ଏଇ ସମୟରେ ଜଣେ ଲୋକ ଆସି ପହଁଚିଲା, ତାକ ନାଁ ହରିଆ । ହରିଆର ଘର ଜଗତସିଂପୁର । ସେ ମୋର ଜେଠାଙ୍କ ପାଖରେ ଚପରାସୀ କାମ କରୁଥିଲା । ହରିଆ ଭାରି କାମିକା, ମେଳାପୀ, ଗପୁଡ଼ି । ତା'ର ସେତେବେଳେ

କଟକ ବଦଳି ହେଉଥାଏ। ଏଣୁ ସେ କଟକକୁ ଆସି ଆମ ବସାରେ ପହଁଚିଲା। ହରିଆ ଜେଠାଙ୍କ ସାଙ୍ଗରେ ବହୁତବାର ଆସି ଆମ ଘରେ କାମଧନ୍ଦା କରି ରହି ଖାଇଛି। ହରିଆକୁ ଆମେ ସମସ୍ତେ ଭଲ ପାଉ। ହରିଆ ଖାଲିରେ କେତେକ ମିଛ, ସତ କଥା କହି ହସେଇବା ପାଇଁ ଗପ କରି ଘରକୁ ଜମେଇଦିଏ।

ମା ହରିଆକୁ ଦେଖି କାନ୍ଦିଲେ। ହରିଆ ଜଗତସିଂପୁରରେ ଥାଇ ମୋର ସାନ ଭଉଣୀର ମୃତ୍ୟୁ ଖବର ଜେଠାଙ୍କ ପାଖରୁ ଶୁଣିଥିଲା। ହରିଆ ମା'ଙ୍କୁ ସାନ୍ତ୍ୱନା ଦେଇ ଅନେକ କଥା ବୁଝେଇଲା। ନିଜେ ଭାରି ଦୁଃଖ କଲା। ହରିଆ ଆମ ଘର ଗହଳି ଆଗେ ଦେଖିଛି, ଆମର ସେ ଦୁଃଖ ବେଳରେ ହରିଆ ଭଳି ଗୋଟାଏ ଲୋକର ଦରକାର ଥିଲା। ହରିଆକୁ ଯେମିତି ଭଗବାନ ପଠେଇଦେଲେ। ହରିଆକୁ ମଧ୍ୟ ସୁବିଧା ହେଲା, କଟକରେ ତା'ର ଚାକିରି କରିବ, ଆମ ଘରେ ରହିବ, କାମଧନ୍ଦା କରିବ, ଖାଇ, ପିଇ ଚଳିଯିବ। ଖାଇବା ଖର୍ଚ୍ଚ ଆମ ଉପରେ ଚଳିଗଲେ, ତା'ର ଅନେକ ସୁବିଧା ହବ। ହରିଆ ସେତେବେଳେ ଆମ ଘରକୁ ଆସିବା ଦ୍ୱାରା ଆମେ ସମସ୍ତେ ଯେମିତି ଟିକିଏ ଜୀବନ ପାଇଗଲୁ। ହରିଆ କେବଳ ରୋଷେଇ ଛାଡ଼ି ଆଉ ସବୁ କାମ ସମ୍ଭାଳି ନେଲା। ସବୁ କାମ ସାରି ଝିଅଟିକି କୋଳକାଖ କରି ବୁଲେଇବା, ବାବାଙ୍କୁ ଘଷା ମୋଡ଼ା କରିବା, ପଙ୍ଖା କରିବା ଇତ୍ୟାଦି ସବୁ କାମ କଲା। ଲୁଗା କାଚିବା, ବାସନ ମାଜିବା, ଗାଧେଇବାକୁ ପାଣି ଦବା, ଗାଈଗୋରୁର ସେବା କରିବା ସବୁ କାମ କଲା। ତା'ଛଡ଼ା ହରିଆ ହସଖୁସିର ଗପ କରି ଆମକୁ ହସେଇବା ତା'ର ଆଉ ଗୋଟାଏ ଗୁଣ। ହରିଆର ଉପସ୍ଥିତିରେ ଆମର ସେତେବେଳକାର ଦୁଃଖ କେତେକାଂଶରେ ଲାଘବ ହେଲା।

ଭଉଣୀର ମୃତ୍ୟୁର କିଛିଦିନ ଗତ ହେଲା ପରେ ମୁଁ ଥରେ ଥରେ ରାତି ହେଲେ ଖଣ୍ଡେ ମେଡ଼ିକାଲ ପଢା ବହିକୁ ଧରି ଲଣ୍ଠନ ଯେଉଁ ଚୌକାଠ ଉପରେ ଜଳୁଥାଏ, ସେଇ ଚୌକାଠକୁ ଆଉଜି ବସି ପଢୁ ପଢୁ ସେଇଠି ଦୁଃଖରେ ଶୋଇଯାଏ। ଉଠିଲା ବେଳକୁ ସକାଳ। ରାତିରେ ଆଉ ଖାଏନା। ବାବା, ମା ଖାଇଲେକି ନା ମୁଁ ଆଉ ଜାଣେନା। ବାବା, ମା ମଧ୍ୟ ଦିନେ ଦିନେ ରାତିରେ ସେମିତି ଶୋଇଥାନ୍ତି। ସେ ଝିଅଟିକି କେବଳ ଠିକ୍ ସମୟରେ ଖୋଇ ଦିଆଯାଏ। ହରିଆ ଆସିବା ପୂର୍ବରୁ କେତେଦିନ ଆମର ଇମିତି ଅବସ୍ଥାରେ କଟିଥିଲା। ହରିଆ ଆସିବା ପରେ ଆମର ମନର ପରିବର୍ତ୍ତନ ହେଲା। ମୁଁ ଥରେ ବାବାଙ୍କୁ କହିଲି ମୁଁ ପରୀକ୍ଷା ଦେବି। ବାବା ମୋ କଥା ଶୁଣି କହିଲେ ତୋର ଯଦି ଇଚ୍ଛା ହଉଛି ଦେ କିନ୍ତୁ ମୋର ବିଶ୍ୱାସ ହଉନି ତୁ ଏଥର ପାସ୍ କରିବୁ ବୋଲି।

ମୁଁ ପରୀକ୍ଷା ପାଇଁ ଏଥର ଅଳ୍ପ ଅଳ୍ପ ପଢ଼ିବାକୁ ଆରମ୍ଭ କଲି। ମା ରୋଷେଇରେ ଲାଗିଲେ। ଝିଅଟିକି ହରିଆ କେତେ ସମୟ ଭୁଲାଭୁଲି କରି ନିଜ ପାଖରେ ରଖେ। ଆମ ସଙ୍ଗେ ବାର ପ୍ରକାର ଗପ କରେ। ବାବା କେବଳ ରାତି ହେଲେ ବସି ରହନ୍ତି। ଦିନେ ଦିନେ ମୁଁ ବାହାରକୁ ବୁଲିବାକୁ ଗଲି। ଦିନେ ଯାଇ ବି.ବର୍ମାଙ୍କ ବସାରେ ପହଁଚିଲି। ବି.ବର୍ମା ଆଗରୁ ମୋ ଭଉଣୀର ମୃତ୍ୟୁ ଖବର ଦିବାକର ଏବଂ ଅନ୍ୟାନ୍ୟ ସାଙ୍ଗଙ୍କଠାରୁ ପାଇଥିଲେ। ବି.ବର୍ମା ମୋତେ ଅନେକ ସାନ୍ତ୍ୱନା ଦେଇ ବୁଝେଇଲେ। ବି.ବର୍ମାଙ୍କ ବସାକୁ ଯିବା ଦ୍ୱାରା ମୋର ମନର ଆଉ ଟିକିଏ ପରିବର୍ତ୍ତନ ହେଲା।

ପରେ ଯେମିତି ଆଗେ ବି.ବର୍ମାଙ୍କ ବସାକୁ ଯାଉଥିଲି, ସେମିତି ଯିବା ଆସିବା କଲି। ବି.ବର୍ମାଙ୍କ ରାଣୀହାଟ ବସାରେ ସେତେବେଳେ ଜ୍ଞାନୀନ୍ଦ୍ର ବର୍ମା ଆଉ ରାଜେନ୍ଦ୍ର ବର୍ମା ରହୁଥିଲେ। ରାଜେନ୍ଦ୍ର ବର୍ମା ଦିନେ ମୋତେ କହିଲେ ପୁଲିନ୍ ବାବୁ ଆପଣ ଯଦି ଗୋଟାଏ ଜିନିଷ ବ୍ୟବହାର କରିବେ ଆପଣ ନିଶ୍ଚୟ ପାସ୍ କରିଯିବେ। ମୁଁ ପଚାରିଲି କଣ ଜିନିଷ କୁହନ୍ତୁ। ନିଶ୍ଚୟ ବ୍ୟବହାର କରିବି। ରାଜେନ୍ଦ୍ର ବର୍ମା ମୋତେ ସେ ଜିନଷକୁ ମଗେଇବା ପାଇଁ ମୋତେ ଠିକଣା ଦେଲେ। ଜିନିଷକୁ ଦିଲ୍ଲୀରୁ ମଗେଇବାକୁ ହବ। ଜିନିଷର ଦାମ୍ ମାତ୍ର ପାଁ ଟଙ୍କା ଆଉ ଡାକଖର୍ଚ୍ଚ ଯା ପଡ଼ିବ। ବାବାଙ୍କୁ ଏ କଥା ମଧ୍ୟ କହିଲି, ବାବା ରାଜି ହେଲେ। ଜିନିଷ ମଗେଇଲି, ଜିନିଷ v.p.p. ରେ ଆସିଲା। ଗୋଟିଏ ତମ୍ବା ତିଆରି ଡେଉଁରିଆ। ତା'ସାଥିରେ ତା'ର

ବ୍ୟବହାର ବିଧି ଏବଂ କି କି ସ୍ୱପ୍ନ ଦେଖିଲେ କି କି ଫଳାଫଳ ହବ, ସେ ବିଷୟରେ ଗୋଟିଏ ଛୋଟ ଇଂରାଜୀରେ ଅଭିଧାନ। ବ୍ୟବହାର ବିଧିରେ ଯେମିତି ଆଦେଶ ଥିଲା ତାକୁ ମାନି ତାଆଁଣ ହାତ ବାହୁରେ ବାନ୍ଧି ରଖିଲି। ଏଥି ମଧ୍ୟରେ ବାବା, ମା ଏବଂ ମୋର ବେଶ୍ ଟିକିଏ ମନର ପରିବର୍ତ୍ତନ ଦେଖାଗଲା। ଝିଅଟି ମଧ୍ୟ ରାମ ସହିରେ ଖେଳାଖେଳି କରି ଆଉ ସେତେ କନ୍ଦାକଟା କଲା ନାହିଁ। ମୁଁ ବେଶ୍ ଟିକିଏ ପଢ଼ାପଢ଼ିରେ ଜୋର ଦେଲି। ସମସ୍ତେ ଗଣ୍ଡାଏ ଗଣ୍ଡାଏ ଭଲ ଭାବରେ ଖାଇ ପାରିଲୁ। ରୋଷେଇ ଠିକ୍ ମତେ ଦି'ବେଳା ହେଲା। ହରିଆ ଅନେକ କାମ ସମ୍ଭାଳି ନେଲା। ଲୋକ ଆସି ମଝିରେ ମଝିରେ କେତେ ସମୟ ବସି ଗପ କରି ଯାଏ। ଝିଅଟିକି ବହୁତ ଆଦର ଯତ୍ନ କରେ। ଆମର ସମସ୍ତଙ୍କର ଚେଷ୍ଟା ରହିଲା, ଝିଅଟି କେମିତି ତା'ର ମା'କୁ ଭୁଲିବ ଆଉ ନକାନ୍ଦିବ। ଝିଅଟି ଦିନ ତମାମ ରାମ ସହିତରେ ଖେଳେ, ସନ୍ଧ୍ୟା ହେଲେ ରାମର ମା ରାମକୁ ତା' ଘରକୁ ନେଇଗଲେ ଝିଅଟି ଖାଇପିଇ କ୍ରମଶଃ ମା'ଙ୍କ ପାଖରେ ଶୋଇ ପଡ଼େ।

ହରିଆ ଆସିବାର ଆଉ କିଛି ଦିନ ପରେ ଯାଜପୁରରୁ ମଝିଆ ମାମୁଁ ଆସି ପହଁଚିଲେ। ମା ତାଙ୍କୁ ଦେଖି ଅତିଶୟ ଅଧୈର୍ଯ୍ୟ ହୋଇ କାନ୍ଦିବାକୁ ଆରମ୍ଭ କଲେ। ମଝିଆ ମାମୁଁ ମା'ଙ୍କୁ ଅନେକ କଥା ବୁଝେଇ ସାନ୍ତ୍ୱନା ଦେଇ କାନ୍ଦଣାରୁ ନିବୃତ୍ତ କରେଇଲେ। ମଝିଆ ମାମୁଁ ଭାରି ଜମାଟିଆ ଲୋକ। ବହୁତ କଥା ଜାଣନ୍ତି। ଅନେକ କଥା କହି ହସେଇ ପାରନ୍ତି। ଯା'ହଉ ମଝିଆ ମାମୁଁ ଆସିଲା ପରେ ଆମର ଆହୁରି ମନର ପରିବର୍ତ୍ତନ ହେଲା। ମଝିଆ ମାମୁଁ ଆମ ଘରେ କେତେ ଦିନ ରହିବେ ବୋଲି ଜାଣିଲୁ। ସାନ ଭଉଣୀର ମୃତ୍ୟୁ ଜନିତ ଶୋକର ଛାୟା କ୍ରମଶଃ ଅପସରି ଆସିଲା।

ଝିଅଟି ମଧ୍ୟ ଆଉ ବେଶି କନ୍ଦାକଟା କଲା ନାହିଁ। ମୁଁ ନିୟମିତ ଭାବରେ ପଢ଼ାପଢ଼ି କରୁଥାଏ। ଏଇ ସମୟରେ ପରୀକ୍ଷା ଦବାର ଫିସ୍ ଦାଖଲର ବେଳ ହେଲା। ଏଣେ ବାବାଙ୍କ ହାତରେ ଟଙ୍କା ନଥାଏ। ଅଠର ଟଙ୍କା ମାତ୍ର ଦାଖଲ କରିବାକୁ ହେବ। ଠିକ୍ ସମୟରେ ଦାଖଲ ନକଲେ ପୁଣି ପରୀକ୍ଷା ଦେଇ ହବ ନାହିଁ। ବାବାଙ୍କର ଆଉ ଅନ୍ୟ କୌଣସି ରାହା ନଥାଏ ଟଙ୍କା ଆଣିବା ପାଇଁ। କଣ କରିବି? ମୁଁ ଭାବି ଭାବି ସ୍ଥିର କଲି ଯାଉଛି ମେଡ଼ିକାଲ୍‌ର କୌଣସି ଶିକ୍ଷକଙ୍କୁ କହିବି କିଛି ଟଙ୍କା ଧାର ଆଣିବି। ଅନେକ ଆଗରୁ ଶୁଣିଥିଲି ଡ:ପ୍ରଫୁଲ୍ଲ ଚନ୍ଦ୍ର ରାୟ(gynaecologist)ସେ ଅନେକ ପିଲାଙ୍କୁ ଅର୍ଥ ସାହାଯ୍ୟ କରନ୍ତି। ଏଣୁ ଦିନେ ସକାଳେ ଯାଇ ଡ:ପି.ସି.ରାୟଙ୍କ କ୍ୱାର୍ଟରରେ ପହଁଚି ତାଙ୍କୁ ଭେଟି ସବୁ କଥା କହି ତାଙ୍କୁ ୫୦ ଟି ଟଙ୍କା ଧାର ମାଗିଲି। ୫୦ଟଙ୍କା ମାଗିବାର କାରଣ ହଉଛି ୧୮ଟଙ୍କା ପରୀକ୍ଷା ଫିସ୍ ଯିବ ବାକି ଟଙ୍କା ଘର ଖର୍ଚ୍ଚରେ ଲାଗିବ। କାରଣ ବାବା ତ ଅନନ୍ୟୋପାୟ ହୋଇ ବସିଥାନ୍ତି। ବାବା ମାସିକ ଯେଉଁ ପେନ୍‌ସନ୍ ପାନ୍ତି, ସେ ମିଳିବାକୁ ଆହୁରି କେତେଦିନ ଡ଼େରିଥାଏ।

ଡ:ପି.ସି.ରାୟ ମୋ କଥା ଶୁଣି କହିଲେ ତୁମେ ଟଙ୍କା ନବ ଯେ ସୁଝିବ କିମିତି? ମୁଁ କହିଲି ବାବା ଯେଉଁ ପେନ୍‌ସନ୍ ପାନ୍ତି, ସେଇ ଟଙ୍କାରୁ ଅଳ୍ପ ଅଳ୍ପ କରି ଦେଇ ସୁଝି ଦେବି। ଡ:ପି.ସି.ରାୟ ମୋଠୁଁ ଏକଥା ଶୁଣି କହିଲେ, ଆଚ୍ଛା ତୁମେ ମୋତେ ଅଫିସ୍‌ରେ ଦେଖା କର। ଏଣୁ ମୁଁ ତାଙ୍କ କ୍ୱାର୍ଟରରୁ ବିଦାୟ ନେଇ ଆସି ଘରେ ପହଁଚି ବାବାଙ୍କୁ କହିଲି ମୁଁ ଡ:ପି.ସି.ରାୟଙ୍କ ପାଖକୁ ଯାଇଥିଲି। ତାଙ୍କୁ ୫୦ଟଙ୍କା ଧାର ମାଗିଲି। ସେ କହିଛନ୍ତି ଦେବେ। ତାଙ୍କୁ ଅଫିସ୍‌ରେ ଦେଖା କରିବାକୁ ହବ। ବାବା କହିଲେ ହଉ ଦେଖ। ସେଇ ଦିନ ଡ:ପି.ସି.ରାୟଙ୍କୁ ଅଫିସ୍‌ରେ ଦେଖା କରିବାରୁ ସେ ଅଧର ସିଂ ବୋଲି କିରାଣୀ ଥିଲେ, ତାଙ୍କୁ କହିଦେଲେ ମୋତେ ୫୦ଟଙ୍କା ଦବା ପାଇଁ। ଅଧର ସିଂ ମୁଁ ୫୦ଟଙ୍କା ନେଲି ବୋଲି ମୋଠୁଁ ଲେଖେଇ ରଖି ମୋତେ ୫୦ଟଙ୍କା ଦେଇଦେଲା।

ସେଇଦିନ ମୋର ପରୀକ୍ଷା ଫିସ୍ ଦାଖଲ କାମ ସରିଗଲା। ବାକି ଟଙ୍କା ତକ ବାବାଙ୍କୁ ଦେଇଦେଲି। ପଢ଼ାପଢ଼ି ଜୋର୍‌ସୋର୍‌ରେ ଆରମ୍ଭ କଲି। ଏମିତିକି ଦିନ ତମାମ ପଢ଼ି ପଢ଼ି ପୁଣି ସନ୍ଧ୍ୟାରୁ ରାତି ବାରଟା ଯାଏ ପଢ଼େ। ରାତି ବାରଟାରେ ଶୁଏ। ବାବାଙ୍କୁ କହେ ମୋତେ ଗୋଟାଏ ବେଳେ ଉଠେଇ ଦବ। ବାବା ଗୋଟାଏ

ପର୍ଯ୍ୟନ୍ତ ଜଗି ରହନ୍ତି । ମୋତେ ଗୋଟାଏ ବେଳେ ଉଠେଇ ଦେଇ ସେ ଶୋଇଯାନ୍ତି । ମୁଁ ରାତି ଗୋଟାଏରେ ଉଠିଲା ବେଳକୁ ନିଦରେ ଆଖିକୁ କିଛି ଦିଶେନା । ଭାରି ନିଦ ମାଡ଼େ, ଅତି କଷ୍ଟରେ ମୁହଁ ଧୋଇ ପଢ଼ିବାକୁ ବସେ । ଘରେ ଅନ୍ୟ ସମସ୍ତେ ଶୋଇଥାନ୍ତି । ରାତି ଗୋଟାଏ ବେଳେ ଉଠି ପଢ଼ିବା ବେଳେ ନିଦ ମାଡ଼ିବାରୁ ବଡ଼ ଅସୁବିଧା ଲାଗିଲା । ଏଣୁ ମୋରି ସାଙ୍ଗ ଡା:ଜଗଦାନନ୍ଦ ମହାନ୍ତି (ହୋମିଓପ୍ୟାଥି)ସେତେବେଳେ କଟକ ସାରସ୍ୱତ ପ୍ରେସ୍ ସାମନାରେ ଗୋଟିଏ ହୋମିଓପ୍ୟାଥି ଔଷଧର ଦୋକାନ ଖୋଲି ବସିଥାଏ । ମୁଁ ଏଥି ପୂର୍ବରୁ ସାରସ୍ୱତ ପ୍ରେସ୍‌କୁ ମୋର "ମା" ନାମକ ଗୋଟିଏ କ୍ଷୁଦ୍ର ଗଳ୍ପ 'ସହକାର'ରେ ପ୍ରକାଶ କରିବା ପାଇଁ ତତ୍‌କାଳୀନ 'ସହକାର'ର ସମ୍ପାଦକ ବାଳକୃଷ୍ଣ କରଙ୍କ ନିକଟକୁ ଅନେକ ବାର ଦୌଡ଼ିଛି କାରଣ ସେ ଉକ୍ତ ଗଳ୍ପ ପ୍ରକାଶ କରିବାକୁ ନାହିଁ କରନ୍ତିନି କିମ୍ବା ହଁ କରନ୍ତିନି । ଖାଲି କହନ୍ତି ଅମୁକ ଦିନ ଆସ ଦେଖିବା । ମୁଁ ପୁଣି ସାରସ୍ୱତ ପ୍ରେସ୍‌କୁ ଦୌଡ଼େ । ସେଇଠି ଡା:ଜଗଦାନନ୍ଦ ସଙ୍ଗେ ଭେଟ ହୁଏ । ମୁଁ ଜଗଦାନନ୍ଦ ଦୋକାନରେ ବସି ଗପ କରେ । ମୁଁ ମୁସଲିମ୍ ସେମିନାରୀରେ ପଢ଼ିବା ବେଳେ ଜଗଦାନନ୍ଦ ମୋର ସହପାଠୀ ଥିଲା ଏବଂ ମୁଁ, ଜଗଦାନନ୍ଦ ଉଭୟେ ମୁସ୍‌ଲିମ୍ ସେମିନାରୀ football teamରେ ଏକାଠି ଖେଳୁଥିଲୁ । ସେତେବେଳେ ଜଗଦାନନ୍ଦ ଭଲ back ବୋଲି ସୁଖ୍ୟାତି ଅର୍ଜନ କରିଥିଲା । ଜଗଦାନନ୍ଦ ମୋର ଗୋଟିଏ ଭଲ ସାଙ୍ଗ । ମୁଁ ସେଇଠି ବସି ଜଗଦାନନ୍ଦ ସଙ୍ଗେ ଗପ କରୁ କରୁ ରାତିରେ ପଢ଼ିବାବେଳେ ମୋର ନିଦ କିମିତି ଛାଡ଼ିବ ଜଗଦାନନ୍ଦକୁ କହିଲି । ଜଗଦାନନ୍ଦ ମୋତେ ଗୋଟିଏ ଶିଶିରେ ହୋମିଓପ୍ୟାଥି ଔଷଧର ଛୋଟ ଗୁଳି ଗୁଡ଼ିଏ ଦେଇ କହିଲା ନିଦରୁ ଉଠି ପଢ଼ିବା ପୂର୍ବରୁ ଏ ଗୁଳିରୁ ଆଠଟା ଖଣ୍ଡେ ଖାଇ ଦେଇ ପଢ଼ିବ ଆଉ ନିଦ ହବ ନାହିଁ । ଜଗଦାନନ୍ଦ ମୋଠୁଁ ଔଷଧର ଦାମ୍ ନେଲା ନାହିଁ । ଜଗଦାନନ୍ଦର ନିର୍ଦ୍ଦେଶାନୁଯାୟୀ ମୁଁ ସେ ଔଷଧ ବ୍ୟବହାର କଲି । ବଡ଼ ଭଲ ଫଳ ଦେଲା । ନିଦ ନହେବାରୁ ଭଲ ଭାବରେ ପଢ଼ି ପାରିଲି । ମୁଁ ପଢୁ ପଢୁ ସକାଳ ହେଇଯାଏ । ଘରେ ସମସ୍ତେ ଉଠନ୍ତି, ସକାଳର ଧନ୍ଦା ପୁଣି ଚାଲେ ।

ପରୀକ୍ଷା କ୍ରମଶଃ ନିକଟ ହେଇ ଆସିଲା । ମୁଁ ସେ ଡେଉଁରିଆକୁ ଡାଆଁଣ ହାତ ବାହୁରେ ପିନ୍ଧିଥାଏ । କିଛିଦିନ ପରେ ଲେଖା ପରୀକ୍ଷା ଆରମ୍ଭ ହେଲା । ପରୀକ୍ଷା ଦବାକୁ ଗଲି । ଲେଖା ପରୀକ୍ଷା ଚାରିଦିନରେ ସରିଗଲା । ପ୍ରତ୍ୟେକ ଦିନ ପରୀକ୍ଷାରେ ଭଲ ହେଲା । ଲେଖା ପରୀକ୍ଷା ପରେ oral ଏବଂ practical ପରୀକ୍ଷା ହବାର କଥା । ସେ ପନ୍ଦର ଦିନ ପରେ ହବ ବୋଲି ଜଣାଗଲା । ମୁଁ ଟିକିଏ ଆଶ୍ୱସ୍ତ ହେଲି । ଏଥର ମୁଁ ଏକା ଘରେ ରହି ପଢ଼ିଲି । ଦିବାକର ସଙ୍ଗେ ପଢ଼ିନାହିଁ ।

ଲେଖା ପରୀକ୍ଷା ସରିବା ପରେ ଟିକିଏ ବୁଲାବୁଲି କଲି । ବି.ବର୍ମାଙ୍କ ବସାକୁ ଯାଇ ସେଠି ଗପ କରି ଆସେ । ସେଠି ତ ଅନେକ ରକମ ଗପ ପଡ଼େ । ବି.ବର୍ମା ମୋ ପରୀକ୍ଷା ବିଷୟରେ ଭଲ ମନ୍ଦ ପଚାରନ୍ତି । ବି.ବର୍ମାଙ୍କ ବସାରେ କିଛି ସମୟ ବସି ଗପ କରି ଆସିଲେ ଭାରି ଭଲ ଲାଗେ । ମନେହୁଏ ଦେହରୁ ଏବଂ ମନରୁ ଯେମିତି କେତେ ଅବସାଦ, ଦୁଃଖ ଉଭେଇ ଗଲା ।

ସାନ ଭଉଣୀର ମୃତ୍ୟୁ ଜନିତ ଦାରୁଣ ଦୁଃଖ ତ କେଭେ ଭୁଲି ହବନି ତଥାପି କେତେକାଂଶରେ କମି କମି ଆସିଲା । ତା'ର ଝିଅଟି ସେତେବେଳେ ଆମର ପ୍ରଧାନ ଅବଲମ୍ବନ ହେଇଥାଏ । ଯୁଆଡ଼େ ଯାଅ ଘରକୁ ଆସି ତାକୁ କୋଳକାଖ କଲେ ମନର ଦୁଃଖ ଅନେକ ହାଲୁକା ହେଇଥାଏ । ବାବା, ମା, ମୁଁ, ମଝିଆ ମାମୁଁ ଏବଂ ହରିଆ ଯେତେବେଳେ ଯା'ର ସୁବିଧା ହେଲା ତାକୁ କୋଳକାଖ କରି ବୁଲିଲୁ, ଖେଳେଇଲୁ । ତା'ଛଡ଼ା ତା'ର ଖେଳିବାର ସାଥୀ ରାମକୁ ନିଯୁକ୍ତ କରା ହେଇଥାଏ ତା'ସାଥୀରେ ଖେଳିବା ପାଇଁ ।

ମୁଁ ପଢ଼ାପଢ଼ିରେ ଲାଗିଥାଏ, ଖେଳ ଇତ୍ୟାଦି ସବୁ ବନ୍ଦ କରି ଦେଇଥାଏ । କେତେବେଳେ କେମିତି medical hostelକୁ ଯାଇ ବୁଲି ଆସେ । କେବଳ ଦିନ ରାତି ପାଠପଢ଼ା । ଅଳ୍ପ କିଛି ସମୟ ପାଇଁ ବୁଲାବୁଲି କରେ । Barbell exercise ଇତ୍ୟାଦି ସବୁ ବନ୍ଦ । Barbell exercise କରି ଯାହା ସ୍ୱାସ୍ଥ୍ୟର ପରିବର୍ତ୍ତନ ହେଇଥିଲା ସାନ ଭଉଣୀର ମୃତ୍ୟୁ ଜନିତ ଦୁଃଖରେ କୁଆଡ଼େ ମିଳେଇ

ଗଲା । ତା'ପରେ ପୁଣି ଅହରହ ପାଠ ପଢ଼ା, ପରୀକ୍ଷାର ଚିନ୍ତାରେ ସ୍ୱାସ୍ଥ୍ୟର କ୍ରମଶଃ ଅବନତି ଘଟିଲା ।

ଆମର oral examination କ୍ରମଶଃ ନିକଟ ହେଇ ଆସିଲା, କଣ କରିବି ? କଣ ହବ ? ଏଥର ପାସ୍ କରିବି କି ନା ? ସବୁବେଳେ ଏଇ ଚିନ୍ତା । Oral examination ଆରମ୍ଭ ହେଲା । Medicine, surgery, midwifery ତିନିଟା ବିଷୟରେ ପରୀକ୍ଷା ଦବାକୁ ହବ । ପରୀକ୍ଷା ଦେଲି । Surgery ପରୀକ୍ଷା ଦିନ long case ରେ ମୋତେ ଗୋଟିଏ ମହିଳା ରୋଗୀ ଦିଆଗଲା female wardରେ । ଅନ୍ୟମାନେ ସବୁ male ward ରେ ରହିଲେ । ମୁଁ ସେ ରୋଗୀ ବିଷୟରେ ସବୁ ପରୀକ୍ଷା କରି ଲେଖାଲେଖି ସାରି ଚାହିଁ ବସିଲି ପରୀକ୍ଷକ ଆସିବେ, କଣ ପଚରା ଉଚରା କରି ଗଲେ ମୋତେ ସେଠୁଁ ଯିବାକୁ ହବ । କ୍ରମଶଃ ବେଳ ବଢ଼ିଲା, ପରୀକ୍ଷକଙ୍କ ଦେଖା ନାହିଁ । ପରୀକ୍ଷକ ସିଆଡେ male ward ରେ ପିଲାଙ୍କୁ ପରୀକ୍ଷା କରୁଥାନ୍ତି । ଦିନ ବଢ଼ି ବଢ଼ି ଯେତେବେଳେ ଗୋଟାଏ ବାଜିଲା ମୁଁ ଭୋକରେ ଛଟପଟ ହେଲି । ଏ ଅବସ୍ଥାରେ ଯଦି ପରୀକ୍ଷକ ଆସି ମୋତେ ପରୀକ୍ଷା କରନ୍ତି ମୁଁ କଣ କହିବି ? ଜଳଖିଆ ଯାହା ଘରୁ ଖାଇ ଆସିଥିଲି, ସେତିକି । ସେ ଜଳଖିଆ କୁଆଡ଼େ ହଜମ ହେଇ ଧୂଳି ହେଇ ଗଲାଣି । Male wardରେ ପରୀକ୍ଷା ସରିଲାଣି କି ନାହିଁ, examiner ଅଛନ୍ତି କି ଗଲେଣି କିଛି ଜାଣି ହଉ ନଥାଏ । ଏଣେ ପ୍ରବଳ ଭୋକ, ସେଇ female ward ରେ ବାଧ ହେଇ ଭୋକ ମାରିବା ପାଇଁ ସେଠା ଜଣେ head nurseକୁ ଖଣ୍ଡେ ପାଉଁରୁଟି ଦବା ପାଇଁ କହିଲି । ସେ ଦୁଃଖ ପ୍ରକାଶ କରି ନାହିଁ କଲା କାରଣ ସେତେବେଳକୁ ଦିନ ଗୋଟାଏ, ଯା ରୋଟି ଥିଲା ସବୁ ବଣ୍ଟା ସରିଲାଣି । ଏଇ ସମୟରେ ମନ ଦୁଃଖରେ ମୋର ରୋଗୀ ପାଖରେ ବସିଛି examiner କୁ ଅପେକ୍ଷା କରି ଜଣେ ନର୍ସ ତା'ର apronର ପକେଟ୍‌ରେ କେତେଗୁଡ଼ିଏ କମଳା ଲେମ୍ବୁ, ଅଙ୍ଗୁର, ଖଜୁର ନେଇ ଆସି ମୋତେ କହିଲା ପୁଳିନ୍ ବାବୁ ଆପଣ ଏଠି ଏତେ ବେଳ ଯାଏ ବସିଛନ୍ତି କାହିଁକି ? କିଏ କୁଆଡ଼େ ଗଲେଣି । ଆପଣଙ୍କୁ ଭୋକ ହେଉଥିବ ଅନୁମାନ କରି ମୁଁ କେତେଗୁଡ଼ିଏ ଫଳ ଆପଣଙ୍କ ପାଇଁ ଆଣିଛି । ମୁଁ ଏକଥା ଶୁଣି ସେ ନର୍ସ ପ୍ରତି ଅତିଶୟ କୃତଜ୍ଞ ହେଇ ପଡ଼ିଲି । ମୁଁ ସେ ନର୍ସକୁ ଶଶୀଦି ବୋଲି ଡାକୁଥିଲି । ଶଶୀଦି ପ୍ରକୃତ ମୋର ବଡ଼ ଭଉଣୀ ପରି ସେଦିନ କାମ କରିଛି । କି ଭୋକ ବେଳରେ ସେ ମୋ ପାଇଁ କେତେଗୁଡ଼ିଏ ଫଳ ଧରି ଆସି ପହଁଚିଛି । ଏହି ନର୍ସକୁ କେତେ ପିଲାଏ କେତେ ପ୍ରକାର ପରିହାସ କରି କଥା କହନ୍ତି । ତା'ର ପରୋକ୍ଷରେ ତା' ନାଁରେ କୁତ୍ସା ରଟନା କରନ୍ତି । କିନ୍ତୁ ଦିନେ କାହିଁ ଶଶୀଦିକୁ ପରିହାସ କରି କହିବାକୁ ମୋର ମୁହଁ ଖୋଲି ନାହିଁ । ଅଳ୍ପବୟସ୍କା ନର୍ସମାନଙ୍କୁ ମୁଁ ନାଁ ଧରି ଡାକୁଥିଲି । ଯେଉଁମାନେ ବୟସ୍କା ତାଙ୍କୁ ଦିଦି ବୋଲି ଡାକୁଥିଲି । ଶଶୀଦି କହିଲା ଆପଣ ଯାନ୍ତୁ ଘରକୁ, ପୁଣି ୨ଟା ବେଳକୁ ଆସିବେ । ସେ କାଗଜପତ୍ର ସେଇଠି ଥାଉ ।

ଶଶୀଦି ଆଣିଥିବା ଫଳ ସବୁକୁ ମୁଁ ଏକ ନିଃଶ୍ୱାସରେ ଖାଇ ସଫାକରି ଦେଲି । ତା'ପରେ ସେଠି କାଗଜପତ୍ର ଥୋଇ ଘରକୁ ଆସି ଭାତ ଖାଇବାକୁ ବସିବା ବେଳେ ମା'କହିଲେ ଜଣେ କିଏ ଭଦ୍ରଲୋକ ଆସିଥିଲେ, ତାଙ୍କ ଝିଅ ସହିତରେ ମୋର ବିବାହ ପ୍ରସ୍ତାବ ନେଇ । ମୁଁ ଖୁବ୍ ଶୀଘ୍ର ଖାଇ ଦେଇ ପୁଣି ମେଡ଼ିକାଲ୍‌କୁ ସାଇକେଲ୍‌ରେ ଚାଲି ଆସିଲି । ମୁଁ ଦେଖିଲି ଯେ ମୋତେ ଆଉ ସେ ରୋଗୀ ପାଖରେ ପରୀକ୍ଷା କରା ହେଲା ନାହିଁ । ମୋତେ ମୌଖିକ ପରୀକ୍ଷା ଦବାକୁ ହେଲା । Dr. Bhargab ନାମକ ଜଣେ examiner ପାଟଣା ମେଡ଼ିକାଲ୍ କଲେଜରୁ ଆସିଥାନ୍ତି external examiner ହେଇ । ଭୀଷଣ ରାଗୀ ଲୋକ । ମୁଁ ତାଙ୍କ ପାଖରେ oral examination ବେଳେ ଉତ୍ତର ଦଉ ଦଉ ଥରେ କାଶି ପକେଇଲାରୁ ମୋ ଉପରେ ରାଗି ଗଲେ । ତାଙ୍କ ରାଗ ଦେଖି ମୁଁ ଭାବିଲି ଏ ମୋତେ ଫେଲ୍ କରେଇଲେ । Surgery ରେ oral examinationରେ ଯା ପଚାରିଲେ ଯା କହିବାର କହିଲି । ମନରେ ପୁରା ସନ୍ଦେହ ରହିଲା ମୁଁ ଫେଲ୍ ହେବି ।

Surgery ର oral examination ର ଦିନେ ଦୁଇଦିନ ପରେ ଆରମ୍ଭ ହେଲା midwifery oral

examination ଜଣେ ଗୋରା external examiner ଆସିଥାନ୍ତି । ନାଁ କେବଳ ଶୁଣିଥିଲି, ମେହନି, ଚେହେରା ବଡ଼ ଭୀଷଣ, ଦେଖିଲେ ଭୟ ହେବ । Midwifery oral examination କୁ ମୋତେ ଡକା ହେଲା, ଗଳି, ଛାତି ଧଡ଼ଧଡ଼ ହଉଥାଏ । ମୁଁ ଯାଇ examinerଙ୍କ ବସିବା ସମୟରେ examiner କୁଆଡ଼େ ବାହାରକୁ ଗଲେ । Dr. P. C. Ray କେବଳ ସେ ଘର ଭିତରେ ବୁଲୁଥାନ୍ତି । ଟେବୁଲ ଉପରେ ପରୀକ୍ଷା କରିବା ପାଇଁ ବହୁତ ଜିନିଷ ରଖା ହୋଇଥାଏ । Model, specimen, ଯନ୍ତ୍ରପାତି, ମୁଁ ଟେବୁଲ ଉପରେ ଆଖି ବୁଲେଇ ଦେଖିଲା ବେଳକୁ ଗୋଟାଏ ପ୍ରକାରର ଛୁଇଁ ଭଳି କେତେଗୁଡ଼ାଏ ଜିନିଷ ଅନ୍ୟ instrument ମାନଙ୍କ ଭିତରେ ଥୁଆ ହେଇଛି । ମୁଁ ସେଗୁଡ଼ାକ ଆଗରୁ କେଭେ ଦେଖି ନଥିଲି । ଭାରି ଭୟ ହେଲା କାଳେ ସେଇ ଜିନିଷରୁ ଯଦି ପ୍ରଶ୍ନ ପଚାରେ କିଛି ତ କହି ପାରିବି ନାହିଁ । ମୁଁ Dr. P. C. Ray କୁ ସେଇଠି ପଚାରିଲି ଯେ ମୁଁ ଏ ଜିନିଷକୁ ତ ଦେଖି ନଥିଲି । Dr. P. C. Ray କିଛି ମୋତେ ନକହି ନିରୁତ୍ତର ରହିଲେ । External examiner ତ କୁଆଡ଼େ ଯାଇଥିଲେ, ପୁଣି Dr. P. C. Ray ମଧ୍ୟ କୁଆଡ଼େ ବାହାରକୁ ଚାଲିଗଲେ । ମୁଁ ସେ room ରେ ଏକା । ଏଇ ସମୟରେ ସେ ଛୁଇଁ ଭଳି ଗୋଛାକ ଜିନିଷକୁ ଧରି ଟେବୁଲ୍ ତଳକୁ ଛାଟିଦେଲି । ବିରାଟ secretariat table । କୁଆଡ଼େ ସେ ଗୁଡ଼ାକ ଟେବୁଲ୍ ତଳେ ପଡ଼ିଲା । ମନରେ ପୁଣି ଭୟ ହଉଥାଏ । କାଳେ examiner ଯଦି ତାକୁ ଖୋଜନ୍ତି, କଣ କଲି, କାହିଁକି ସେଗୁଡ଼ାକ ଫୋପାଡ଼ି ଦେଲି ? ଏମିତି ଭାବୁଛି, ଏଇ ସମୟରେ external examiner, P. C. Ray ଦିହେଁ ସେ ଘରେ ପଶିଲେ । ମୋର oral examination ଆରମ୍ଭ ହେଲା । Dr. Mehani ମୋତେ କେତେକ ପ୍ରଶ୍ନ ପଚାରିଲେ, କହିଲି । ମୋର ପରୀକ୍ଷା ସରିଲା । ତାଙ୍କଠୁଁ ବିଦାୟ ନେଇ ଆସିଲି । ମନରେ ସନ୍ଦେହ ରହିଲା, ପାସ୍ ହବ କି ନାହିଁ ? କିନ୍ତୁ ଭଗବାନଙ୍କ ଦୟାରୁ ସେ ଛୁଇଁ ଭଳି ଜିନିଷଗୁଡ଼ାକୁ ଡା: ମେହନି କିମ୍ବା ଡା: ପି. ସି. ରାୟ କେହି ଖୋଜିଲେ ନାହିଁ ।

Midwifery oral examination ର ଦିନେ ଦି'ଦିନ ପରେ ଆରମ୍ଭ ହେଲା medicine oral examination । ଏଥିରେ external examiner ହେଇ ଆସିଲେ ପାଟଣା ମେଡ଼ିକାଲ କଲେଜରୁ Dr. Ghosal । ଯେମିତି ଚେହେରା, ସେମିତି ବ୍ୟବହାର । ତାଙ୍କ ସାଙ୍ଗରେ ଆସିଥାନ୍ତି ଡା: ଘନଶ୍ୟାମ ମହାପାତ୍ର, ଯେ କି ପରେ ଓଡ଼ିଶାର Director of Health Services and Family Planning Bureau ହେଇ ଅବସର ଗ୍ରହଣ କଲେ । ଡା: ଘନଶ୍ୟାମ ମହାପାତ୍ର ପାଟଣା ମେଡ଼ିକାଲ କଲେଜରେ medicine ରେ Dr. Ghosalଙ୍କ ଭାରି ପ୍ରିୟ ଛାତ୍ର । ଡା: ଘନଶ୍ୟାମ ମହାପାତ୍ର ସେତେବେଳକୁ ବୋଧହୁଏ M.B.B.S. ପାସ୍ କରି ପାଟଣା ମେଡ଼ିକାଲ କଲେଜରେ କଣ କରୁଥାନ୍ତି କହିପାରିବି ନାହିଁ । ଡ଼ା: ଘନଶ୍ୟାମ ମହାପାତ୍ର Ravenshaw Collegeରେ I.Sc. ପଢ଼ିବା ବେଳେ ମୋର ସହପାଠୀ ଥିଲେ । ମୋର ତାଙ୍କ ସହିତରେ ବିଶେଷ ଘନିଷ୍ଠତା ଥିଲା । ଏଇ medicine oral examination ବେଳେ କେତେ ବର୍ଷ ପରେ ମୋ ସହିତରେ ଡା: ଘନଶ୍ୟାମ ମହାପାତ୍ରଙ୍କ ଭେଟ ହୁଏ । ସେ ମୋତେ medicine oral examination ରେ ବହୁତ ସାହାଯ୍ୟ କଲେ । Medicine oral examination ସରିଲା । ସେଦିନ ରାତି ହେଇଗଲା । ମନରେ କେତେକ ବିଶ୍ୱାସ ଜନ୍ମିଲା, ପାସ୍ ହେଇଯିବି ।

ପରୀକ୍ଷା ସରିବା ପରେ ମୁଁ ଯେତେବେଳେ ଘରକୁ ଫେରେ, ଜଣେ ସ୍ତ୍ରୀଲୋକ ଏ ମେଡ଼ିକାଲ ହତା ଭିତରେ ଅତି କରୁଣ ଭାବରେ କାନ୍ଦୁଥାଏ । ତାର କାନ୍ଦଣା ଶୁଣି ମୋର ମନ ଭାରି ବିକଳ ହେଇ ଉଠିଲା । ଏଣେ ମୁଣ୍ଡରେ ପରୀକ୍ଷାରେ ପାସ୍, ଫେଲ୍‌ର ଚିନ୍ତା, ଏଣେ ସେ ସ୍ତ୍ରୀଲୋକର କରୁଣ କାନ୍ଦଣା ଶୁଣି ମନ ଦୁଃଖରେ ସାଇକେଲ୍‌ରେ ଘରକୁ ଫେରିଲି । ପରୀକ୍ଷା ସରିଲା, ପରୀକ୍ଷାର ଫଳକୁ ଅପେକ୍ଷା କରି ବସିବା କଥା । ଏମିତି ତ କେତେଥର ପରୀକ୍ଷା ଦେଲିଣି, ସବୁଥର ଫେଲ୍ । ତେବେ ଏଥର ପାସ୍ କରିବି ବୋଲି ଗୋଟାଏ ଡ଼େଉଁରିଆ ମଗେଇ ହାତରେ ବାନ୍ଧିଛି, ପୁଣି ତାର ବିଧି ବିଧାନ ମାନି ଚଳିଛି,

କଣ ହଉଛି ? ଭଗବାନ ଭରସା, ପରୀକ୍ଷାର ଫଳ ବାହାରିବାକୁ ଏକ ମାସ ପ୍ରାୟ ଅପେକ୍ଷା କରିବାକୁ ପଡ଼ିବ । ଫଳ ବାହାରିବ, ବିହାର ପାଟଣା ମେଡ଼ିକାଲ ବୋର୍ଡ଼ରୁ ।

ପରୀକ୍ଷାର ଫଳ ବାହାରିବାକୁ ଯେଉଁ ମାସଟା ଅପେକ୍ଷା କଲି, ସେ ମାସଟା ବୁଲାବୁଲି, ଘରର କେତେକ କାମ, ବ୍ୟାୟାମ କରିବା, ଫୁଟ୍‌ବଲ୍ ଖେଳିବା ଇତ୍ୟାଦିରେ କଟିଗଲା । ଘରେ ରହିଲେ ଅନ୍ୟାନ୍ୟ କାମ ସହିତରେ ବେଶି ସମୟ ଭାଣିଜୀଟିକୁ ଆଦର ଯତ୍ନ କରେ । ବୁଲିବାକୁ ବାହାରିଲେ ବି. ବର୍ମାଙ୍କର ବସାରେ ସାହିତ୍ୟ ଚର୍ଚ୍ଚା, ଅନ୍ୟାନ୍ୟ ଗପ କରେ ଆଉ ବେଳେ ବେଳେ ମେଡ଼ିକାଲ ହଷ୍ଟେଲ୍‌କୁ ଯାଏ । ଆଉ ବେଳେବେଳେ ଲୋକାକୁ ସାଙ୍ଗରେ ନେଇ ମହାନଦୀ ଆନିକଟ ଆଡ଼କୁ ଯାଏ । ଘରେ ହରିଆ ଚପରାସୀ କାମ କରୁଥାଏ । କିଛିଦିନ ଇମିତିରେ କଟିଗଲା ପରେ ପରୀକ୍ଷା ଫଳ ବାହାରିବା ନିକଟ ହେଇ ଆସିଲା । ଏଣକି ଛାତି ଧଡ଼ପଡ଼, ରାତିରେ ଅନିଦ୍ରା ହବା ଦେଖାଗଲା । ନିଦ ଆଉ ଆଖିରେ ନାହିଁ । ପରୀକ୍ଷା ପାଇଁ ପଢ଼ିବା ବେଳେ କି ନିଦ! ସେଥିପାଇଁ ହୋମିଓପ୍ୟାଥି ଔଷଧ ଖାଇବାକୁ ପଡୁଥିଲା । ସେଥିଯୋଗୁଁ ପରୀକ୍ଷା ସରିଗଲା ପରେ ମଧ ନିଦ ହେଲା ନାହିଁ । ପୁଣି ନିଦ ହବା ପାଇଁ ଔଷଧି ଖାଇଲି । ବର୍ତ୍ତମାନ ପୁଣି ଅନିଦ୍ରା ହବା ଆରମ୍ଭ ହେଇଛି । ଏ ଅନିଦ୍ରା କେବଳ ଚିନ୍ତାରେ । ଘରେ ସମସ୍ତେ ଶୋଇଗଲେ ମଧ ମୁଁ ଅନେଇଥାଏ ଛାତର କଡ଼ି କାଠକୁ । ରାତି ଶେଷ ଆଡ଼କୁ କେବେକେବେ ନିଦ ହେଉଥାଏ । ଏଥି ମଧରେ ଦିନେ ରାତିରେ ନିଦ ହେଇ ଯାଇଛି, ଗୋଟାଏ ସ୍ୱପ୍ନ ଦେଖିଲି ଛାତର କଡ଼ିରେ ହାତେ ଲମ୍ବ ହବ ଗୋଟାଏ ବିଛା ବୁଲୁଛି । ସେ ବିଛାଟା ଖସି ପଡ଼ିଲା । ମୁଁ ପାଇକଛା ମାଇଲା ପରି ମାଇଲି । ମୋର ନିଦ ଭାଙ୍ଗିଗଲା । ମୋର ମନେ ପଡ଼ିଲା ସେ ଯେଉଁ ସ୍ୱପ୍ନ ବିଷୟରେ ଗୋଟାଏ dictionary ଦିଲ୍ଲୀରୁ ଅଣେଇଥିଲି । ସେଥିରେ ଲେଖା ଥିଲା ବିଛା ସ୍ୱପ୍ନ ଦେଖିଲେ a sign of success, ଆଉ ଭଲ ସ୍ୱପ୍ନ ଦେଖିଲେ ନିଦ ଭାଙ୍ଗି ଗଲେ ଆଉ ଶୋଇବ ନାହିଁ, ତାହେଲେ ସେ ସ୍ୱପ୍ନର ଭଲ ଫଳ ମିଳିବ କିନ୍ତୁ ଶୋଇ ପଡ଼ିଲେ ଭଲ ଫଳ ମିଳିବ ନାହିଁ । ଏଣୁ ମୁଁ ସେ ବିଛା ସ୍ୱପ୍ନ ଦେଖି ଶେଯରୁ ଉଠି ଦୃଢ଼ ଭାବରେ ଶେଯ ଉପରେ ବସିଲି । ଆଉ ଶୋଇଲି ନାହିଁ । ସେତେବେଳେ ରାତି ତିନିଟା । ଘରେ ସମସ୍ତେ ଶୋଇଥାନ୍ତି, ରାତି ପାହିଲା । ଏ ଘଟଣା ପରେ ମୋର ମନରେ ଗୋଟାଏ କେମିତି ଦୃଢ଼ ଧାରଣା ଜାତ ହେଲା, ଏଥର ପାସ୍ ହେଇଯିବ । ପୁଣି ସେ ବହିରେ ଲେଖା ଥିଲା ଭଲ ସ୍ୱପ୍ନ ଦେଖିଲେ କାହାରିକି କିଛି କହିବ ନାହିଁ । କହିଲେ ଭଲ ଫଳ ହୁଏନା । ଏଣୁ ମୁଁ ଏ ସ୍ୱପ୍ନ ବୃତାନ୍ତ କାହାରିକୁ କହିଲି ନାହିଁ । ମନେ ମନେ ଅପେକ୍ଷା କରିଥାଏ, ପରୀକ୍ଷାର ଫଳ କଣ ହଉଛି ଦେଖାଯାଉ ।

ଯେଉଁଦିନ ପରୀକ୍ଷା ଫଳ ବାହାରିବ ତହିଁ ପୂର୍ବଦିନ ରାତିରେ ଆଉ ନିଦ ନାହିଁ । ଶୋଉଛି, ଉଠୁଛି, ବସୁଛି, ଘରେ ସମସ୍ତେ ଶୋଇଛନ୍ତି ମୁଁ ଏକା ଜଗିଛି । ମୋତେ କେତେ ନିଦ ହୁଏ, ଏଇ ଶୋଇବା ସକାଶେ ବାବା ମା'ଙ୍କଠୁଁ କେତେ ଗାଳି ଖାଇଛି । ଆଜି ନିଦ ନାହିଁ । ଚିନ୍ତା ରାତି ପାହିଲେ ଫଳ ବାହାରିବ । ଥରେ ଅଳ୍ପ ନିଦ ହେଇଛି ଏଇ ସମୟରେ ପରିସ୍ରା ମଡ଼େଇଲା । ଗୋଟାଏ ଅଦ୍ଭୁତ ଘଟଣା ଦେଖିଲି, ଯେଉଁ ତେଉଁରିଆ ପିନ୍ଧିଥିଲି, ତାର ନିୟମ ଥିଲା ଯେଉଁ ବିଷୟ ଲାଗି ଏ ତେଉଁରିଆ ପିନ୍ଧିଥିବ, ତାର ଶେଷ ଫଳ ଜାଣିବା ପର୍ଯ୍ୟନ୍ତ ଏ ତେଉଁରିଆ ଯେମିତି ଦେହରେ ଲାଗି ରହିଥିବ । ଏଣୁ ମୁଁ ଯେତେବେଳେ ପରିସ୍ରା କରିବାକୁ ଯାଏ ବାଁ ହାତରେ ଡାହାଣ ହାତ ବାହୁରେ ପିନ୍ଧିଥିବା ତେଉଁରିଆକୁ ଧରି ଧରି ଗଲି ତେଉଁରିଆ ଅଛି କି ନାହିଁ ଜାଣିବା ପାଇଁ, ତେଉଁରିଆ ଅଛି । ପରିସ୍ରା କରି ଆସି ଶୋଇଲି । ତେଉଁରିଆକୁ ବାଁ ହାତରେ ଚିପି ଦେଖିଲି, ତେଉଁରିଆ ଅଛି । ଏଇ ସମୟରେ କଟକ ଷ୍ଟେସନ୍‌ରେ ଏକ୍ସପ୍ରେସ୍‌ର ହୁଇସିଲ୍ ଶୁଣା ଗଲା । ମୁଁ ଜାଣିଲି କଟକକୁ ଆମର superintendent ପରୀକ୍ଷାର ଫଳ ନେଇ ପାଟଣାରୁ ଫେରିଲେ । ଛାତିରେ ଢେଙ୍କି ପାହାର ପଡ଼ିବା ଭଳି ଜଣାଗଲା । କଣ କରିବି ? କଣ ହବ ? କଟକକୁ ଫଳ ଆସିଲା, ରାତି ପାହିଲା, ଚାରିଆଡ଼େ ପରିଷ୍କାର ହେଇଗଲା । ମୁଁ ଉଠି ପୁଣି ଥରେ ପରିସ୍ରା କରି ଗଲା ବେଳକୁ ଦେଖିଲି ତେଉଁରିଆ ବାହାର ବାରନ୍ଦାରେ ପଡ଼ିଛି । ମୁଁ ଆଶ୍ଚର୍ଯ୍ୟ ହେଇଗଲି । ତେଉଁରିଆ ମୋ ହାତରେ ଥିଲା । ଏଠି କେମିତି ପଡ଼ିଲା ?

ଭୋର ହବା ପୂର୍ବରୁ ପରିସ୍ରା କରି ଗଲା ପରେ ତ ମୁଁ ହାତରେ ଚିପି ଦେଖିଥିଲି ଡେଉଁରିଆ ମୋ ହାତରେ ଥିଲା । ଯଦି ସେତେବେଳେ ଗଳି ପଡ଼ିଥିଲା, ମୋତେ ତ ଜଣା ପଡ଼ିଥାନ୍ତା । ମୁଁ ସେ ଡେଉଁରିଆକୁ ଗୋଟେଇ ନେଇ ହାତରେ ପୁଣି ପିନ୍ଧିଲି । କିନ୍ତୁ ମନରେ ବିଶେଷ ଭୟ ହେଲା ପରୀକ୍ଷା ଫଳ ବାହାରିବା ପର୍ଯ୍ୟନ୍ତ ଡେଉଁରିଆ ତ ମୋ ଦେହରେ ରହିଲା ନାହିଁ । ତାହେଲେ ମୁଁ ନିଶ୍ଚୟ ଫେଲ୍ ହେଇଛି । ଏମିତି କେତେ କଥାର ମନ ଭିତରେ ଦ୍ୱନ୍ଦ୍ୱ ଚାଲିଲା । ଏ ଘଟଣା ମୋତେ ଗୋଟାଏ ଦୈବୀ ଘଟଣା ପରି ମନେ ହେଲା । ପୁଣି ଭାବିଲି ମୋର ବୋଧେ ପାସ୍ ହେଇ ଯାଇଛି । ତେଣୁ ଏ ଡେଉଁରିଆ ମୋ ଦେହରୁ ମୋର ଅଜ୍ଞାତରେ ଅଲଗା ହେଇ ଯାଇଛି ।

ସେଦିନ ଆହୁରି ବେଳ ହେଲାରୁ ସମସ୍ତେ ଉଠିଲେ, ମୁଁ ଦାନ୍ତ ଘଷି ବସିଛି, ବାବା ଅଗଣାରେ ମୋର ପରୀକ୍ଷାର ଫଳ ପାଇଁ ଉଦ୍‌ବିଗ୍ନ ହେଇ ବୁଲୁଥାନ୍ତି । ମା ଭାଣିଜୀଟିକି କାଖେଇ ବୁଲୁବୁଲୁ ଯାଇ ଖଟ ଉପରେ ଶୋଇ ଦୁଃଖରେ ବକିବାକୁ ଲାଗିଲେ, ତୋର ପାସ୍ ଆମେ ଆଉ ଦେଖିବୁ ନାହିଁ, ଭଉଣୀମାନେ ତ କେହି ତୋ ପାସ୍ ଦେଖିଲେ ନାହିଁ । ମା'ଙ୍କର ଏ ଦୁଃଖୋକ୍ତି ସବୁ ଶୁଣି ଦୁଃଖରେ ମୋର ଛାତି ଫାଟିଗଲା ପରି ଜଣା ଯାଉଥାଏ । ଏଇ ସମୟରେ ଲୋକା ଆସି ବାହାର ଘରର ଚାବି ମାଗି ନେଇ ତା'ର କ'ଣ ଜିନିଷ ନବାକୁ ଚେଷ୍ଟା କଲା । ଲୋକା ଆମ ବାହାର ଘରେ ତା'ର କେତେଗୁରା ସାଇକେଲ୍ ମରାମତିର ହାତ ହତିଆର ରଖିଥାଏ । ବେଳକେ ଆସି ନେଇଥାଏ ପୁଣି ଆଣି ରଖେ । ମୁଁ ଦାନ୍ତ ଘଷୁ ଘଷୁ ମୋର ମନେ ପଡ଼ିଲା ଲୋକାକୁ କହିଲେ ତ ଲୋକା ମୋର ଫଳ ବୁଝି ଆସି ପାରିବ । ମୋତେ କୁଆଡ଼େ ଯିବାକୁ ଭଲ ଲାଗୁ ନଥାଏ । କାରଣ ଯଦି ଫେଲ୍ ହେଇଥିବି ଲଜ୍ଜାରେ ଅନ୍ୟାନ୍ୟ ପିଲାଙ୍କ ସାମନାରେ ଘରକୁ କେମିତି ଫେରିବି । ଏଣୁ ମୁଁ ବାବା, ମା'ଙ୍କୁ କିଛି ନକହି ବାହାରକୁ ଉଠି ଯାଇ ଲୋକାକୁ ଗୁପ୍ତ ଭାବରେ କହିଲି ଲୋକା ଗୋଟାଏ କାମ କରିବୁ? ଲୋକ କହିଲା କଣ କୁହ । ଲୋକା ଆମର ମେଡ଼ିକାଲ୍‌ର ସବୁ ଫୁଟବଲ୍ ଖେଳାଳୀଙ୍କ ନାଁ ଜାଣିଥାଏ । ଏଣୁ ମୁଁ ଲୋକାକୁ କହିଲି ତୁ ଯାଇ ଟିକିକୁ ପଚାରିବୁ ପୁଲିନ୍ ବାବୁ ପାସ୍ କରିଛନ୍ତି କି ନା? ଲୋକା ଟିକିକୁ ଜାଣେ ଏବଂ ସେ କୋଉଠି ରହେ ମଧ୍ୟ ଜାଣେ । ଟିକି ଜାତିରେ ଖ୍ରୀଷ୍ଟିଆନ୍ ପିଲା, ମୋ ତଳ କ୍ଲାସରେ ପଢୁଥିଲା । ସେ ଆମ ସାଙ୍ଗରେ ଖେଳୁଥିଲା । ସେ ରହୁଥିଲା ମେଡ଼ିକାଲ ନିକଟସ୍ଥ ସେତେବେଳର ଥିଓଜଫିକାଲ୍ ହଷ୍ଟେଲ୍‌ରେ । ଆଜି କାଲି ତ ସେଠି କେତେ କଣ କୋଠାବାଡ଼ି ହେଇ ଗଲାଣି । ସେ ଜାଗା ଚିହ୍ନି ହଉନି । ଲୋକା ମୋର ସାଇକେଲ୍ ନେଇ ଗଲା ମୋର ଫଳ ବୁଝିବା ପାଇଁ । ଲୋକା ଆମ ଦୁଃଖରେ ଦୁଃଖୀ । ଲୋକା ମଧ୍ୟ ଆଶା କରିଥାଏ ମୁଁ କେମିତି ପାସ୍ କଲେ ଆମ ଅବସ୍ଥା ବଦଳିବ । ଲୋକା ଗଲା ପରେ ମୋର ଛାତି ଆହୁରି ଜୋର୍‌ରେ ଧଡ଼ଧଡ଼ ହେଲା । ଆଜି ମୋ ଅବସ୍ଥା କଣ ହବ? ମୁଁ ପୁଣି ଆସି ଦାନ୍ତ ଘଷିବାରେ ବସିଲି ।

ମୁଁ ଦାନ୍ତ ଘଷୁଛି, ଅଳ୍ପ କିଛି ସମୟ ପରେ ଲୋକା ଫେରି ଆସି ମୋ କାନ ପାଖରେ ଅତି ଆସ୍ତେ ଆସ୍ତେ କହିଲା, ବାବୁ, ଡାକ୍ତର ହେଇ ଯାଇଛ । ମୁଁ ଲୋକା କଥା ଶୁଣି ଲୋକାକୁ ପଚାରିଲି କଣ କହୁଛୁ? ଲୋକା ପୁଣି ପୂର୍ବ ପରି ଆସ୍ତେ ଆସ୍ତେ କହିଲା ବାବୁ, ଡାକ୍ତର ହେଇ ଯାଇଛ । ଲୋକା ମୋତେ ଏ ସମ୍ବାଦ ଅତି ଆସ୍ତେ ଆସ୍ତେ କହିବାର କାରଣ ହେଉଛି ମୁଁ ବାବା, ମା'ଙ୍କ ଅଲକ୍ଷ୍ୟରେ ଲୋକାକୁ ଏ ସମ୍ବାଦ ଗୁପ୍ତ ଭାବରେ ଆଣିବାକୁ କହିଥିଲି । ଏଣୁ ସେ ସେଇଥିପାଇଁ ମୋତେ ଏ ସମ୍ବାଦ ଖୁବ୍ ଗୁପ୍ତ ଭାବରେ ଜଣେଇବା ପାଇଁ ମୋ କାନ ପାଖରେ ଆସ୍ତେ ଆସ୍ତେ କହିଲା । ମୁଁ ଲୋକାଠୁଁ ଏ ସମ୍ବାଦ ଶୁଣି, ବାବା ଅଗଣାରେ ଉଦ୍‌ବିଗ୍ନ ହେଇ ବୁଲୁଥିବା ଅବସ୍ଥାରେ କହିଲି, ବାବା ଲୋକା କ'ଣ କହୁଛି ମୁଁ ଡାକ୍ତର ହେଇ ଯାଇଛି । ବାବା ପଚାରିଲେ ଲୋକା କେମିତି ଜାଣିଲା? ମୁଁ କହିଲି ମୁଁ ଲୋକାକୁ ପଠେଇଥିଲି ବୁଝିବା ପାଇଁ । ବାବା ଆନନ୍ଦରେ କହିଲେ, ତୁ ନିଜେ ଯା ବୁଝ । ମା ଖଟ ଉପରେ ଭାଣିଜୀକୁ ନେଇ ଶୋଇଥିଲେ, ମା ମଧ୍ୟ ଉଠି ପଡ଼ିଲେ । ମୁଁ ସଙ୍ଗେ ସଙ୍ଗେ ଜିଭ ନ ଛେଲି ଖାଲି ମୁହଁ ଧୋଇ ପକେଇ ଧୋତି, ପଞ୍ଜାବୀ ପିନ୍ଧି ସାଇକେଲ୍ ନେଇ ମେଡ଼ିକାଲ୍ ହଷ୍ଟେଲ୍‌କୁ ବାହାରି ପଡ଼ିଲି । କାରଣ ମେଡ଼ିକାଲ୍ ହଷ୍ଟେଲ୍‌କୁ ଗଲେ ଏ

ସମ୍ବାଦର ସତ୍ୟାସତ୍ୟ ଜଣା ପଡ଼ି ଯିବ। ମନଟା ପାସ୍, ଫେଲ୍‌ର ହଁ, ନାହିଁର ସମ୍ଭାବନାରେ ବିଶେଷ ଭାବେ ଆନ୍ଦୋଳିତ ହେଇ ଉଠିଲା। ମୁଁ ଯାଇ ମଙ୍ଗଳାବାଗ outpost ନିକଟରେ ହେଲା ବେଳକୁ ପିଲାମାନେ ସେଠି ଗଦା ହେଉଛନ୍ତି। ସେତେବେଳେ ମଙ୍ଗଳାବାଗ police station outpost ଥିଲା, ବର୍ତ୍ତମାନତ କଟକ ସହରର ଗୋଟାଏ ଗୁରୁତ୍ୱପୂର୍ଣ୍ଣ ଥାନାରେ ପରିଣତ ହେଇଛି। ମୋତେ ଯେମିତି ପିଲାଏ ଦେଖିଛନ୍ତି ସେଥିରେ ମୋର ତଳ ଉପର ଉଭୟ ଶ୍ରେଣୀର ପିଲାଏ ଥାନ୍ତି। ମୋତେ ଦେଖି କେତେକ ହୋ ହା କଲେ, congratulation ଫିଷ୍ଟ ଦିଅନ୍ତୁ। ପୁଳିନ୍ ବାବୁ ପାସ୍ କରି ଯାଇଛନ୍ତି। ଏଇ ପିଲାମାନେ କଟକ ଷ୍ଟେସନ୍‌କୁ ରାତି ଥାଉ ଥାଉ ଯାଇଥିଲେ ଆମର ଫଳ ବୁଝିବା ପାଇଁ। ଆମର ତତ୍‌କାଳୀନ superintendent A.T. Anderson ପାଟନାରୁ ଫେରି କଟକ ଷ୍ଟେସନ୍‌ରେ ଓହ୍ଲେଇବା ମାତ୍ରେ ତାଙ୍କଠାରୁ ସେହି ଷ୍ଟେସନ୍ ପ୍ଲାଟ୍‌ଫର୍ମରେ ଫଳ ଦେଖି ସାରିଛନ୍ତି ବୋଲି ତାଙ୍କଠାରୁ ଶୁଣିଲି। ଡିସେମ୍ବର ମାସର କନକନିଆ ଶୀତରେ ପିଲାଏ ଷ୍ଟେସନ୍‌କୁ ଯାଇଥିଲେ। ପ୍ରତି ବାରେ ଫଳ ଜାଣିବା ପାଇଁ ପିଲାଏ ଏମିତି କଟକ ଷ୍ଟେସନ୍‌କୁ ଦୌଡ଼ନ୍ତି। ମୁଁ ପିଲାଙ୍କଠୁଁ ମୋର ପାସ୍ ବିଷୟରେ ସମ୍ବାଦ ପାଇ ମନରେ କେତେକ ଦୃଢ଼ ଆଶାର ସଞ୍ଚାର ହେଲା। ପୁଣି ମନ ହେଲା ନାହିଁ ଫଳଟା ଆଖିରେ ଦେଖିବି। ଅନ୍ୟ ପିଲାଏ ମଧ୍ୟ ସେଇଆ କହିଲେ। ସ୍ଥିର ହେଲା superintendentଙ୍କ କୋଠିକୁ ଯିବା। ସମସ୍ତେ ଚାଲିଲୁ A.T. Andersonଙ୍କ କଟକ କ୍ୟାଣ୍ଟନମେଣ୍ଟ ରୋଡ଼ସ୍ଥିତ କୋଠିକୁ। ମୋର ଭଣଜା ରବୀନ୍ଦ୍ର ନାଥ ଦାସ ମଧ୍ୟ ମୋ ସହିତରେ ସାଇକେଲ୍‌ରେ ଚାଲିଲା।

ସାହେବଙ୍କ କୋଠିରେ ପହଁଚି ଦେଖୁ ସେଠି ମଧ୍ୟ ଅନ୍ୟ କେତେକ ପିଲାଏ ଆଗରୁ ଆସି ଗଦା ହେଇଛନ୍ତି। ସେମାନେ ଅପେକ୍ଷା କରିଛନ୍ତି, ସାହେବ ପଦାକୁ ବାହାରିଲେ ଦେଖା କରି ଫଳ ଜାଣିବେ। ସାହେବଙ୍କ ଚପରାସୀର ମୁହଁରୁ ଶୁଣାଗଲା, ସାହେବ ଗୋସଲ କରତେହେଁ ଅର୍ଥାତ୍ ସାହେବ ଗାଧୋଉଛନ୍ତି। ଏଣୁ ପିଲାଏ ଅପେକ୍ଷା କରିଛନ୍ତି ଆମେମାନେ ମଧ୍ୟ ଅପେକ୍ଷା କଲୁ। କିଛି ସମୟ ପରେ ସାହେବ ତାଙ୍କ ବାହାର ଘରକୁ ଆସିଲେ। ଆମେ ସବୁ ଦୁଲ୍‌ଦାଲ୍ ହେଇ ସାହେବଙ୍କ ବାହାର ଘରେ ପଶିଗଲୁ। A.T. Anderson ଅତି ଅମାୟିକ ଲୋକ, ପାଗଳା ମୁଣ୍ଡିଆ, କେତେବେଳେ ଗୁରାଏ ବକିବେ ତ କେତେବେଳେ ନିରବ ଗମ୍ଭୀର, କେବେ ନିଶ ଗୋଛାଏ ରଖିଛନ୍ତି ତ ପୁଣି କେବେ ପୁରା ନିଶ ଗୋଛାକ କାଟି ସଫା କରି ଦେଲେଣି।

ଯା ହଉ, ସାହେବ ଆମମାନଙ୍କୁ ଦେଖି ତାଙ୍କର ଗୋଟିଏ ସୁଟ୍‌କେସ୍ ଭିତରୁ type କରା ଆମର ପରୀକ୍ଷା ଫଳର ତାଲିକା ବାହାର କଲେ। ମୁଁ ସେ ତାଲିକା ଉପରେ ଆଖି ବୁଲଉ ବୁଲଉ ମୋର ଭଣଜା ମୋ ନାଁ ଦେଖି ପାରି ମୋତେ କହିଲା ହଁ, ତୁମର ପାସ୍ ହେଇ ଯାଇଛି। ତା'ପରେ ମୋ ନାଁ ମୁଁ ନିଜେ ଦେଖିଲି। ଫଳ ଜାଣି ସାରିଲା ପରେ Anderson ନିଜେ ପଚାରିଲେ Who has become doctor among you ? ସେଠି ପାସ୍ କଲା ଭିତରେ ମୁଁ ଥିଲି ଆଉ ଜଣେ ଝିଅ ପିଲା, ନାଁ ଶୈବାଳିନୀ ସାହୁ, ତା'ର ବାପ ଥିଲେ। ଅନ୍ୟାନ୍ୟ ପିଲାମାନେ ମୋତେ ଏବଂ ଶୈବାଳିନୀ ସାହୁର ବାପକୁ ଚିହ୍ନେଇ ଦେଇ କହିଲେ ମୁଁ ପାସ୍ କରିଛି ଏବଂ ପାସ୍ କରିଥିବା ଜଣେ ଝିଅ ପିଲାର ବାପ ସେ।

ମୋତେ ଚିହ୍ନି A.T. Anderson ମୋର ଡେଉଁରିଆପିନ୍ଧା ବାହୁକୁ ଧରି You come to me, I will provide you a job anyhow. ଶୈବାଳିନୀର ବାପକୁ କଣ କହିଲେ ମୁଁ ଆଉ ଭଲ କରି ଶୁଣି ପାରିଲି ନାହିଁ। ମୋର ଏଥର ବିଶ୍ୱାସ ହେଲା ଯେ ମୁଁ ପାସ୍ କରିଛି। A.T. Anderson ମୋତେ ସେହି ଦିନଠୁଁ ଏତେ ଭଲ ପାଇଲେ ଯେ, ସେ ମୋ ପାଇଁ ପରେ ଅନେକ କାମ କଲେ। ସେ କଥା ପରେ ଲେଖିବି। ପରୀକ୍ଷା ଫଳ ସଠିକ୍ ଜାଣି ସାରିବା ପରେ ସାହେବଙ୍କ କୋଠିରୁ ଯେ ଯୁଆଡ଼େ ଫେରିଲୁ। ମୋର ଭଣଜା ଏବଂ ଅନ୍ୟ ପିଲାଏ ମେଡ଼ିକାଲ୍ ହଷ୍ଟେଲକୁ ଫେରିଗଲେ। ମୁଁ ଘରକୁ ଫେରିଲି। ବାଟରେ ଯାଉ ଯାଉ ସାନ ଭଉଣୀର କଥା ମନେ ପଡ଼ିଲା। ଆଖିରୁ ଲୁହ ଗଡ଼ିବାକୁ ଆରମ୍ଭ

କଲା । ମନେ ପଡ଼ିଲା ତା'ର କଥାଗୁଡ଼ାକ, ଭାଇ ପାସ୍ କରିବ, ଚାକିରୀ କରିବ, ଆମେ ଯାଇ ଭାଇଙ୍କ ପାଖରେ ତାଙ୍କ ଚାକିରି ଜାଗାରେ କିଛିଦିନ ରହି ଆସିବୁ ।

ଏମିତି ଦୁର୍ଯୋଗ ! ତା'ର ମୃତ୍ୟୁର ପ୍ରାୟ ଦୁଇ ମାସ ପରେ ସେଇ ପାସ୍ କଲି । ଅଥଚ ସେ ବଞ୍ଚି ଥିଲା ବେଳେ ପାସ୍ ହେଲା ନାହିଁ । ଏତେ ଦୁଃଖ ବେଳରେ ପଢ଼ି ପାସ୍ ହେଲା ଅଥଚ ଏଥର ଅପେକ୍ଷା ଭଲ ଭାବରେ ପଢ଼ି ମଧ ପାସ୍ ହେଲା ନାହିଁ । ଆଖିରୁ ଲୁହ ଗଡ଼ିବା ଆଉ ବନ୍ଦ ହଉ ନଥାଏ । ମୁଁ ରୁମାଲରେ ଆଖି ପୋଛିବାରେ ଲାଗିଥାଏ । ଇମିତି ଅବସ୍ଥାରେ ମୁଁ ଯେତେବେଳେ ସାହି ଭିତରେ ପଶିଲି, ଦେଖିଲି ବାବା ଉଦ୍‌ବିଗ୍ନ ହେଇ ଆସି ସାହିର ଗଳି ମୁଣ୍ଡରେ ଠିଆ ହେଇଛନ୍ତି । ମୋତେ କାନ୍ଦିବାର ଦେଖି ବାବା ବୋଧେ ଭାବିଲେ ମୁଁ ଫେଲ୍ ହେଇଛି । ଏଣୁ ମୋତେ କାତର ଭାବରେ ପଚାରିଲେ ପାସ୍ ହେଇଛି ? ମୁଁ କହିଲି ହଁ । ଆହୁରି କାନ୍ଦି ପକେଇଲି । ବାବା, ମୁଁ ଏକ ସାଙ୍ଗରେ ଆସି ଘରେ ଯେତେବେଳେ ମା'ଙ୍କୁ କହିଲି ମୁଁ ପାସ୍ କରିଛି, ମା ଭାଣିଜୀକୁ କାଖେଇ ଠିଆ ହେଇ ଥିଲେ, ମା ଭୋ କରି କାନ୍ଦି ଉଠିଲେ । ମୁଁ, ମା କିଛି ସମୟ କାନ୍ଦିବାର ଦେଖି ବାବା ଆମକୁ କାନ୍ଦଣା ବନ୍ଦ କରିବାକୁ କହିଲେ । ଆମେ ଚୁପ୍ ହେଇଗଲୁ । ବାବାଙ୍କର ସେଦିନ କି ଆନନ୍ଦ ! ଘରେ କିଛି ସେମିତି ଜିନିଷ ନଥାଏ ତଥାପି ଲୋକାକୁ କହିଲେ ତୁ ଆଜି ଏଇଠି ଖାଇବୁ ।

ବାବା ନିଜେ ଯାଇ ରୋଷେଇରେ ଲାଗି ପଡ଼ିଲେ । ସେଦିନ ଭାଣିଜୀଟିକୁ ଥଣ୍ଡା ଧରି ତା'ର ଦେହ ଖରାପ ଥାଏ । ମା ମୋତେ ତା'ପାଇଁ କିଛି ଔଷଧ ଆଣିବାକୁ କହିଲେ । ମୁଁ ସାଇକେଲ୍ ନେଇ ଗୋଟାଏ ଶିଶି ଧରି ପୁଣି ମେଡ଼ିକାଲ୍‌କୁ ଦୌଡ଼ିଲି । ମୁଁ ମେଡ଼ିକାଲ୍‌କୁ ଔଷଧ ପାଇଁ ଯାଇ ଦେଖେ ପିଲାଙ୍କ ଭିତରେ ସେହି ପାସ୍ ଫେଲ୍‌ର ଆଲୋଚନା ଚାଲିଛି । ମୋର ସାଙ୍ଗ ଦିବାକର ଏଥର ଫେଲ୍ ହେଇଗଲା । ଚାରିଆଡ଼େ ହୋ ହାଲ୍ଲା । ମୋତେ ଯେ ଦେଖୁଥାନ୍ତି ଆଦର, ଅଭ୍ୟର୍ଥନା, ଫିଷ୍ଟ ଦିଅନ୍ତୁ, କେହି କେହି କହୁଥାନ୍ତି, ଯା ଆପଣ ତ ଖସିଗଲେ । ଆମର କଣ ହଉଛି, ଭଗବାନଙ୍କ ହାତରେ କଥା ।

ମୁଁ ଔଷଧ ଆଣି ଭାଣିଜୀକୁ ଖୋଇଲି । ଭାଣିଜୀ ଟିକିଏ ସୁସ୍ଥ ଅନୁଭବ କଲା । ବାବା ରୋଷେଇରେ ଲାଗିଥାନ୍ତି, ମା ଅନ୍ୟାନ୍ୟ କାମରେ ଲାଗିଥାନ୍ତି । ହରିଆ ଚପରାସୀ ଗଲାଣି । ମଝିଆ ମାମୁଁ ମଧ ଚାଲି ଯାଇଥିଲେ । ଘରେ କେବଳ ବାବା, ମା ଓ ଶିଶୁ ଭାଣିଜୀଟିଏ ଆଉ କେହି ନାହିଁ । ମୁଁ ଅନେକ ଝଡ଼ି ଯାଇଥାଏ । ସେ ବାରେ ପାସ୍ ନ କରିଥିଲେ ମୋତେ ବୋଧହୁଏ ଯକ୍ଷ୍ମା ଧରି ପକେଇଥାନ୍ତା ।

ମୁଁ ଦେଖିଲି ଯେଉଁଦିନ କମ୍ପାଉଣ୍ଡରୀ ପାସ୍ କରିଥିଲି ସେ ଦିନ ଘରେ ଯେଉଁ ଆନନ୍ଦ ପ୍ରକାଶ ପାଇଥିଲା ଆଜି ଡ଼ାକ୍ତରୀ ପାସ୍ କରି ସେ ଆନନ୍ଦ ନାହିଁ । ଘର ଛାରଖାର, କମ୍ପାଉଣ୍ଡରୀ ପାସ୍ କଲାବେଳେ କେବଳ ମଝିଆ ଭଉଣୀଟିର ପରଲୋକ ହେଇଥିଲା । ବର୍ତ୍ତମାନ ବଡ଼ ଭଉଣୀ, ସାନ ଭଉଣୀ ଉଭୟେ ପରଲୋକରେ । ଆନନ୍ଦ ଅନୁଭବ କରିବ କିଏ ?

ବହୁତ ଦିନର ଆଶା, ଆକାଂକ୍ଷା ମୋର ପୂର୍ଣ୍ଣ ହେଲା । ଭଗବାନଙ୍କର ଦୟା, ବାବା, ମା'ଙ୍କର ଅଶେଷ ଧୈର୍ଯ୍ୟ । ଏମିତି ବାବା, ମା ଜୀବନରେ ପାଇବା ବହୁ ଭାଗ୍ୟର କଥା । ମନେ ମନେ ଭାବିଲି, ଏଥର ଯେଉଁ ତେଉଁରିଆ ମଗେଇ ପିନ୍ଧିଲି, ସେଇଥି ଯୋଗୁଁ ବୋଧେ ଆଉ ପାସ୍ ହେଇ ଗଲାକି ? ତେଉଁରିଆ ଧାରଣରେ ମୋର ଗୋଟାଏ ଦୃଢ଼ ବିଶ୍ୱାସ ଜନ୍ମିଲା ।

ଲୋକାର ମୋର ଅନେକ ଗପ ହେଲା । ଲୋକା ଭାରି ଖୁସି, ମୁଁ ପାସ୍ କରିଛି । ଲୋକ କହିଲା ବାବୁ ସେଦିନ ରାତିରେ ନଈକୁ ଯେଉଁ ଡେଇଁବାକୁ ବସିଥିଲେ, ସାରି ଦେଇଥାନ୍ତେ । ଆଜିକାର ଆନନ୍ଦ ଆଉ ମିଳିଥାନ୍ତା ? ରୋଷେଇ ସରିବା ପରେ ବାବା, ମା, ମୁଁ ଓ ଲୋକା ସମସ୍ତେ ଏକ ସାଙ୍ଗରେ ଖାଇଲୁ । ମୁଁ ଶୋଇଉଠି ଚାରିଟା ବେଳକୁ ମେଡ଼ିକାଲ୍ ହଷ୍ଟେଲ୍‌କୁ ପଳେଇଲି ବୁଲିବାକୁ । ମେଡ଼ିକାଲ୍ ହଷ୍ଟେଲ୍‌ରେ ଯାଇ ପହଞ୍ଚିଲା ମାତ୍ରେ ମୋର ଅନେକ ସାଙ୍ଗ ତଳ କ୍ଲାସର ପରିଚିତ ପିଲାଏ କିଏ congratulation, କିଏ ଫିଷ୍ଟ ଦିଅନ୍ତୁ ଇମିତି ଅନେକ କଥା କହିଲେ । ମୁଁ ଯାଇ ଜଣେ ସାଙ୍ଗ ରୁମ୍‌ରେ ପଶିଲି ।

ସେ ମୋର ବର୍ଷକ ତଳ କ୍ଲାସରେ ପଢୁଥିଲେ ସୁଦ୍ଧା ସେତେବେଳେ ମୋର ଭାରି ଅନ୍ତରଙ୍ଗ ବନ୍ଧୁ ହେଇଥାଏ। ତାର କାରଣ ତା'ର ମୋର କଥା ହେଇଥାଏ, ମୁଁ ପାସ୍ କଲେ ତା'ର ଭଉଣୀକୁ ବିଭା ହେବି। ଆମେ ସେତେବେଳେ ଶଳା, ଭିଣେଇ ପରି ଚଳୁଥାଉ। ଏ କଥା କେହି ଜାଣି ନଥାନ୍ତି। ସେ ପ୍ରଥମେ ଏ ପ୍ରସ୍ତାବ ଉଠାଏ। ସେଥିରେ ମୁଁ ରାଜି ହୁଏ। ପ୍ରକାରାନ୍ତରେ ସେ ମୋତେ ତାଙ୍କ ଘରେ ନେଇ ତା'ର ଭଉଣୀକୁ ଦେଖାଏ। ମୁଁ ତା'ର ଭଉଣୀକୁ ପସନ୍ଦ କରିଥିଲି କିନ୍ତୁ ତା'ର ଘର ମୋର ପସନ୍ଦ ହେଲା ନାହିଁ। ତାଙ୍କ ପରିବାରର ଏ ବନ୍ଧୁଟି କେବଳ ଡାକ୍ତରୀ ପଢୁଥାଏ ନଚେତ୍ ଆଉ କିଛି ନୁହେଁ। ତଥାପି ଏ ବନ୍ଧୁଟି ପାଇଁ, ତା'ର ଭଉଣୀକୁ ବିଭା ହବା ପାଇଁ ମନଥାଏ।

ସେଦିନ ସେ ବନ୍ଧୁ ନିକଟରେ ଅନେକ ସମୟ ଗପ କରି ଫେରିଲି। ଭାବିଲି ବି.ବର୍ମାଙ୍କ ବସାକୁ ଯିବି। କିନ୍ତୁ ଗଲି ନାହିଁ। କାରଣ ମୋର ସାଙ୍ଗ ଦିବାକର ମହାନ୍ତି ସେଇଠି ଥାଏ, ସେ ଫେଲ୍ ହେଇଥାଏ। ଏଣୁ ମୁଁ ଏ ସମୟରେ ବି.ବର୍ମାଙ୍କ ବସାକୁ ଗଲେ ତା ସହିତରେ ଦେଖା ହବ, ତା'ର ମନରେ ଆହୁରି କଷ୍ଟ ହବ। ପୁଣି ସେ ଭାବିପାରେ, ମୁଁ ପାସ୍ କରିଛି ବୋଲି ଦେଖେଇ ହବାକୁ ଯାଇଛି। ଏଇ ସବୁ ଭାବି ଆଉ ବି.ବର୍ମାଙ୍କ ବସାକୁ ନଯାଇ ସନ୍ଧ୍ୟା ପରେ ଘରକୁ ଫେରିଲି। ଘରେ ଆସି ଶୁଣେ ଯେଉଁ ଭଦ୍ରଲୋକ ମୋର surgery ପରୀକ୍ଷା ଦିନ ମୋ ସହିତରେ ତାଙ୍କର ଝିଅର ବିବାହ ପ୍ରସ୍ତାବ ନେଇ ଆସିଥିଲେ, ସେ ସପରିବାରେ ଆସି ଆମ ଘରେ ପହଁଚି ବାବାଙ୍କୁ ମୋର ବିବାହ ପ୍ରସ୍ତାବରେ ଶେଷ ସମ୍ମତି ଦବାକୁ ଅନୁରୋଧ କରିଗଲେ। କାରଣ ସେ ଭଦ୍ରଲୋକ ଯେଉଁଦିନ ପ୍ରଥମେ ଆସିଥିଲେ ସେ ବିବାହ ପ୍ରସ୍ତାବ ଉଠେଇବା ପରେ ବାବା କହିଥିଲେ ପୁଅ ପାସ୍ କଲେ ଜବାବ ଦେବି। ବାବା ଏକଥା କହିବାର ଉଦ୍ଦେଶ୍ୟ ହେଲା, ବାବା ଜାଣିଥିଲେ ମୁଁ ଏଥର କଦାପି ପାସ୍ କରିପାରିବି ନାହିଁ। ଏଣୁ ଜବାବ ଦବା ମଧ୍ୟ ଦରକାର ପଡ଼ିବନି କିନ୍ତୁ ଦୈବାତ୍ ମୁଁ ସେଇଥର ପାସ୍ କଲି। ଏଣୁ ସେ ଭଦ୍ରଲୋକ ସଙ୍ଗେ ସଙ୍ଗେ ଆସି ବାବାଙ୍କୁ ଜବାବ ମାଗିଲେ। ବାବା ବଡ଼ ଅଡୁଆରେ ପଡ଼ିଲେ, କନ୍ୟା ଦେଖା ହେଇ ନାହିଁ, ଅନ୍ୟାନ୍ୟ ବିଷୟ ବୁଝା ହେଇନାହିଁ ବାବା ହଠାତ ଜବାବ ଦେବେ ବା କିମିତି? ଏଣୁ ବାବା ସମୟ ନେଲେ ଜବାବ ଦବା ପାଇଁ।

ପଢ଼ି ପାରିଲି ନାହିଁ, ପଢ଼ି ପାରିଲି ନାହିଁ ବୋଲି ପାଠ ଛାଡ଼ି ବୁଲିବା ବେଳେ କେତେ ଚିନ୍ତା କରିଛି, କାନ୍ଦିଛି ବେଳେବେଳେ। ଆଜିଠୁଁ ପାଠ ପଢ଼ା ସରିଲା। ବାବା, ମା ମୋ ପାଠ ପଢ଼ା ଖର୍ଚ୍ଚରୁ ମୁକ୍ତି ପାଇଲେ। ମୁଁ ମଧ୍ୟ ପାଠ ପଢ଼ି ପାରିଲି ନାହିଁ ବୋଲି ଯା ଚିନ୍ତା କରୁଥିଲି, ମେଡ଼ିକାଲ୍‌ରେ ପାଠ ପଢ଼ି, ପଢ଼ିବାରେ ମନବୋଧ ହେଇଗଲା।

# ୪ର୍ଥ ପର୍ବ

ସାନ ଭଉଣୀର ମୃତ୍ୟୁ ପରେ ଘରର ଅବସ୍ଥା, ସମସ୍ତଙ୍କର ମନର ଅବସ୍ଥା ଯେମିତି ବିଷାଦଗ୍ରସ୍ତ ହେଇଥିଲା, ମୋର ମେଡ଼ିକାଲ୍‌ରୁ ପାସ୍ କରି ବାହାରିବା ପରେ ସେସବୁ କ୍ରମେ କ୍ରମେ ବଦଳିବାକୁ ଆରମ୍ଭ କଲା। ବାବା, ମା'ଙ୍କ ମନରେ କେତେକ ଆଶାର ସଞ୍ଚାର ହେଲା। ମୁଁ ଚାକିରି କରିବି, ବିଭା ହେବି, ବାବାଙ୍କର ପେନ୍‌ସନ୍ ଓ ମୋର ଦରମା ମିଶିଲେ ବେଶ୍ ସ୍ୱଚ୍ଛଳତାରେ ଚଳିବୁ ଇତ୍ୟାଦି ଇତ୍ୟାଦି।

ମେଡ଼ିକାଲ୍‌ର ବହିଗୁଡ଼ିକ ବେଶ୍ ଯତ୍ନରେ ସଜାଡ଼ି ରଖିଲି। ଯେଉଁ ତେଉଁରିଆ ମଗେଇ ପିନ୍ଧିଥିଲି ପାସ୍ କରିବି ବୋଲି କାର୍ଯ୍ୟସିଦ୍ଧି ପରେ ତାକୁ ହାତରୁ କାଢ଼ି ପାଣିରେ ପକେଇ ଦେଲି ଏବଂ ଦିଲ୍ଲୀର ସେହି ଅନୁଷ୍ଠାନକୁ ମନିଅର୍ଡ଼ର ଯୋଗେ କିଛି ପଇସା ପଠେଇଦେଲି। କେତେ ପଠେଇଥିଲି ମୋର ସଠିକ୍ ମନେ ପଡୁନାହିଁ। କିନ୍ତୁ ତେଉଁରିଆ ଉପରେ ମୋର ଦୃଢ଼ ବିଶ୍ୱାସ ଜନ୍ମିଲା। ତେଉଁରିଆ, କବଚ ଇତ୍ୟାଦି ଯେ ପୂର୍ବେ ଲୋକେ ଧାରଣ କରି ସଫଳକାମ ହେଉଥିଲେ ଏ ସତକଥା ବୋଲି ମୋର ଦୃଢ଼ ଧାରଣା ହେଲା। କାରଣ ମୁଁ ଦେଖିଲି ଯେଉଁ ବାରେ ଭଲ କରି ପଢ଼ିଥିଲି, ସେବାରେ ପାସ୍ କରିପାରିଲି ନାହିଁ। କିନ୍ତୁ ପରେ ଘୋର ଦୁଃଖରେ ପଡ଼ିଲି। ଏଥର ଯେମିତି ମୋତେ କିଏ ମେଡ଼ିକାଲ୍‌ରୁ ଠେଲି ପାର୍ କରି ଦେଲା। ବଡ଼ ଆଶ୍ଚର୍ଯ୍ୟ ଲାଗିଲା। ପୁରାଣରେ ମଧ ଲୋକେ ଯୁଦ୍ଧ ଏବଂ ଅନ୍ୟାନ୍ୟ କାର୍ଯ୍ୟରେ ସଫଳକାମ ହେବା ପାଇଁ କବଚ ଧାରଣର କାହାଣୀ ବର୍ଣ୍ଣିତ ଅଛି।

ଏଥର ପାଠ ପଢ଼ା ସରିଲା। ଚାକିରି ଯୋଗାଡ଼ କରିବାକୁ ହେବ। ପାଠପଢ଼ା ସିନା ଆଗରୁ ଜାଣିଥିଲି ଚାକିରି କେମିତି ଯୋଗାଡ଼ କରିବାକୁ ହୁଏ ଜଣା ନାହିଁ। ଏ ବିଷୟରେ ବାବାଙ୍କର ଅଭିଜ୍ଞତା ବହୁତ। କିନ୍ତୁ ବାବାଙ୍କର ମନା ସରକାରୀ ଚାକିରିରେ ପଶିବାକୁ ହବ ନାହିଁ। କାରଣ ବାବା ନିଜେ ସରକାରୀ ଚାକିରି କରି ବିଶେଷ ଅସୁବିଧା ଭୋଗ କରିଥିଲେ। ତା'ପରେ ଗାନ୍ଧିଜୀଙ୍କ ବକ୍ତୃତା ଶୁଣି ତାଙ୍କର ଆଉ ସରକାରୀ ଚାକିରି ପ୍ରତି ମୋହ ନଥିଲା। ପୁଣି ମୁଁ ମେଡ଼ିକାଲ୍‌ରୁ ପାସ୍ କରି ବାହାରିବାର ଅଳ୍ପ ସମୟ ପୂର୍ବରୁ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହେଇ ଯାଇଥିଲା। ସେତେବେଳେ ଯୁଦ୍ଧକୁ ଚାକିରି ପାଇଁ ଅନେକ ଡାକ୍ତରଙ୍କ ଦରକାର ପଡୁଥାଏ। ସେତେବେଳେ ଆମ ସ୍ୱାସ୍ଥ୍ୟ ବିଭାଗର director ଥାନ୍ତି କର୍ଣ୍ଣେଲ ଭର୍ଜନ। ସେ ଡାକ୍ତରଙ୍କୁ ଚାକିରି ଦେଇ ଦୁଇ, ତିନି ମାସ ପରେ ଯୁଦ୍ଧରେ କାମ କରିବା ପାଇଁ ଠେଲି ଦଉଥାନ୍ତି ସେତେବେଳେ ମୋ ଭଳିଆ L.M.P. ଡାକ୍ତରଙ୍କ designation ହେଲା ହାବିଲଦାର, ଜମାଦାର। ଦରମା ମାତ୍ର ୨୫୦ ଟଙ୍କା (ପୁଣି ଯେଉଁ ଅର୍ଡ଼ର ହେଲା ଯୁଦ୍ଧରେ ଯୋଗ ଦବା ପାଇଁ ସେ ଯଦି ନଗଲା ଯୁଦ୍ଧ ଚାକିରିରେ ଯୋଗ ନଦେଲେ ତା'ର ଅବସ୍ଥା ଶୋଚନୀୟ। ଚାକିରିରୁ ଡ଼ିସ୍‌ମିସ୍ ପୁଣି କେତେ ହଜାର ଟଙ୍କା ଜୋରିମାନା। ଜୋରିମାନା ଅନାଦେୟ କେତେମାସର କାରାବରଣ ଦଣ୍ଡ।) ଏ ଅର୍ଡ଼ର ମାନି କେତେ ଡାକ୍ତର ଅନିଚ୍ଛା ସତ୍ତ୍ୱେ ଯୁଦ୍ଧ ଚାକିରିରେ ଯୋଗଦେଲେ। ପୁଣି ଅଳ୍ପ କେଇଜଣେ ଯୋଗ ନଦେଇ ଦଣ୍ଡ ଭୋଗ କରି ଘରୋଇ ଡାକ୍ତରଖାନା ଖୋଲି ଜୀବିକା ନିର୍ବାହ କଲେ।

ମୁଁ ପାସ୍ କରିବା ଆଗରୁ ଭାବୁଥିଲି ମୁଁ ପାସ୍ କଲା ବେଳକୁ ଯୁଦ୍ଧ ଲାଗିଥିବ କି ମୁଁ ଯୁଦ୍ଧ ଚାକିରିରେ ପଳେଇବି। ମୋର ଇଚ୍ଛା ମୁଁ ଦେଶ ବିଦେଶ ବୁଲିବି, ଖଣ୍ଡିଏ ଭଲ ଭ୍ରମଣ ବୃତ୍ତାନ୍ତ ଲେଖିବି। ଯୁଦ୍ଧରେ ମଲେତ ଦି'ଥର ମରିବି ନାହିଁ। ଘରେ ଥିଲେ ବି ମରିବି, ଯୁଦ୍ଧ ଚାକିରିରେ ଯୋଗ ଦେଲେ ବି ମରିବି। ଏଣୁ ମରିବାକୁ ଭୟ କଣ? ମରିବାକୁ ହେଲେ ଥରେ ମରିବି କିନ୍ତୁ ମୁଁ ଭାବିନଥିଲି ଯେ ମୁଁ ପାସ୍ କଲାବେଳକୁ ଘରର ଅବସ୍ଥା

ଏମିତି ହେଉଥିବ । ଭାଇ, ଭଉଣୀ ସବୁ ସଫା । କେବଳ ବାବା, ମା, ମୁଁ ଓ ଗୋଟିଏ ମାତୃହୀନା ସାନଭାଣିଜୀଟିଏ । ଏଇ ଘରେ କେତେ ଲୋକର ଗହଳି ଥିଲା । ଆଜି ମାତ୍ର ଆମେ କେଇଜଣ । ସରକାର ଯେଉଁ ସର୍ତ୍ତରେ ଡାକ୍ତରମାନଙ୍କୁ ଯୁଦ୍ଧ ଚାକିରିକି ଠେଲୁଛନ୍ତି ସେ ସର୍ତ୍ତରେ ମଧ୍ୟ ମୋର ମନ ମାନିଲା ନାହିଁ । ମୋଟେ ୨୫୦ ଟଙ୍କା ଦରମା, ସେଥିରେ ପୁଣି designation ହାବିଲଦାର, ଜମାଦାର । ପୁଣି ଯଦି ବି ଏ ସର୍ତ୍ତରେ ମୁଁ ଯୁଦ୍ଧ ଚାକିରିରେ ଯୋଗ ଦଉଛି ବାବା, ମା'ଙ୍କର ମୃତ୍ୟୁର କାରଣ ମୁଁ ହିଁ ହେବି । କାରଣ ସେ ଦିହେଁ ତାଙ୍କର ଜୀବନ ଶେଷ ପର୍ଯ୍ୟାୟରେ ନିଜର ସାତଟି ସନ୍ତାନସନ୍ତତିକୁ ହରେଇ ଶୋକସନ୍ତପ୍ତ । କେବଳ ମାତ୍ର ଅଛି ମୁଁ ।

ମୁଁ ତାଙ୍କୁ ଛାଡ଼ି ଯୁଦ୍ଧ ଚାକିରିରେ ଯୋଗ ଦେଲେ ତାଙ୍କର ଆଉ ସାହାଭରସା କେହି ନାହାନ୍ତି । ଏଣୁ ଯୁଦ୍ଧ ଚାକିରିରେ ଯୋଗ ଦବା ମୋ ପକ୍ଷରେ ଅସମ୍ଭବ । ସେତେବେଳେ ଡାକ୍ତରଙ୍କ ପକ୍ଷରେ ସରକାରୀ ଚାକିରିରେ ପଶିବା ଏକ ବିପଦ ହେଉଥାଏ । ଏଥିରେ ବାବାଙ୍କର ମନା ସରକାରୀ ଚାକିରିରେ ପଶିବାକୁ ହବ ନାହିଁ । ଠିକ୍ କଥା ଏଣୁ private ଚାକିରି ଖୋଜା ଚାଲିଲା ।

ପାସ୍ କଲାପରେ ମୋରି ସମୟ କଟୁଥିଲା ଘରର କେତେକ କାମ, ମେଡ଼ିକାଲ୍ ହଷ୍ଟେଲରେ କିଛି ସମୟ କଟେଇବା ବି. ବର୍ମାଙ୍କ ବସାରେ କେତେକ ସମୟ ଗପ କରି ଆସିବା । ପାସ୍ କଲା ପରେ ବି. ବର୍ମାଙ୍କ ବସାକୁ ମୋର ସାଙ୍ଗ ଦିବାକର ଲାଗି ନଯାଇ ଆଉ ସମ୍ଭାଳି ହେଇ ପାରିଲି ନାହିଁ । ଶେଷରେ ଦିନେ ଗଲି । ବି.ବର୍ମା ମୋର ପାସ୍ ଖବର ପାଇ ସାରିଥାନ୍ତି । ସେ ମଧ୍ୟ ବୁଝି ପାରିଥାନ୍ତି ମୁଁ ଦିବାକର ସକାଶେ ତାଙ୍କ ବସାକୁ ଯାଇପାରୁନି । କାରଣ ଦିବାକର ତାଙ୍କରି ବସାରେ ରହି ପୁଣି ପରୀକ୍ଷା ଦବାଲାଗି ପଢୁଥାଏ । ମୁଁ ବି.ବର୍ମାଙ୍କ ବସାରେ ଯାଇ ପହଁଚିଲା ପରେ ବି.ବର୍ମା ଆନନ୍ଦରେ ଗଦ୍‌ଗଦ୍ ହେଇ ପଡ଼ିଲେ । ରାଜେନ୍ଦ୍ର ବର୍ମା ମୋତେ ପଚାରିଲେ, 'କଣ କହୁଥିଲେ, ପୁଳିନ୍ ବାବୁ? ମୋ କଥା ମାନି ଡେଉଁରିଆ ମଗେଇ ପିନ୍ଧିବାରୁ ଏଥର ପାସ୍ କରିଗଲେ । ଦେଖିଲେ ତ ଡେଉଁରିଆର ଫଳ ।' ମୁଁ ରାଜେନ୍ଦ୍ର ବର୍ମାଙ୍କୁ ଏଥିଲାଗି କୃତଜ୍ଞତା ଜଣେଇଲି । ଦିବାକର ସହିତରେ ଦେଖା ହେଲା । ମୋତେ ବଡ଼ ଦୁଃଖ ଲାଗିଲା । ଦିବାକର ବଡ଼ ବିମର୍ଷ ହେଇ ପଢ଼ାରେ ଲାଗିଥାଏ । ଏହା ପରେ ଦୈନିକ ପ୍ରାୟ ଥରେ ଯାଇ କିଛି ସମୟ ଗପ କରି ଆସେ । ଫୁଟବଲ୍ ଖେଳ ବନ୍ଦ, କେବଳ ପରେ barball ନେଇ ବ୍ୟାୟାମ ପୁଣି ଆରମ୍ଭ କଲି । ପରୀକ୍ଷା ଯୋଗୁଁ ତ ସ୍ୱାସ୍ଥ୍ୟ ଅନେକ ଖରାପ ହେଇ ଯାଇଥାଏ । ସାନଭଉଣୀ ମୃତ୍ୟୁ ପରେ ଖେଳ, ବ୍ୟାୟାମ ଇତ୍ୟାଦି ବିଷ ପରି ଲାଗିଲା । ସବୁ ଛାଡ଼ି ଦେଇଥିଲି । ଏବେ ପୁଣି barball ଦ୍ୱାରା ବ୍ୟାୟାମ ଆରମ୍ଭ କଲି । ଦିନେ ଦିନେ ଲୋକାକୁ ସାଙ୍ଗରେ ନେଇ ମହାନଦୀର ଆନିକଟ୍‌କୁ ସନ୍ଧ୍ୟା ପରେ ଯାଇ କିଛି ସମୟ ବସି ଆସେ । ଏଇ ଆନିକଟ୍ ନିକଟରେ ପାଣିକୁ ଡେଇଁ ଯେଉଁଦିନ ଆତ୍ମହତ୍ୟା କରିବାକୁ ଭାବିଥିଲି ସେଦିନ ମହାନଦୀର କି ଭୀଷଣ କରାଳ ମୂର୍ତ୍ତି ! ଆଜି କିଛି ନାହିଁ । ଜହ୍ନ ରାତି, କି ସୁନ୍ଦର ମହାନଦୀର ରୂପ ! ମୁଁ, ଲୋକା କିଛି ସମୟ ବସି ରାତିରେ ଘରକୁ ଫେରୁ । ଅନେକ ବିଷୟରେ ଗପ କରୁ । ମନର ଅବସ୍ଥା ଅନେକ ବଦଳି ଯାଏ ।

ଏମିତି ଭାବରେ ଦିନ କଟୁ କଟୁ ଦିନେ ମେଡ଼ିକାଲ୍ ସ୍କୁଲ ଅଫିସରେ ନୋଟିସ୍ ବୋର୍ଡ଼ରୁ ଦେଖିଲି ରାୟପୁର କଲେଜରେ ଜଣେ ଡାକ୍ତର ଦରକାର । ବିଜ୍ଞାପନ ବାହାରିଛି । ରାୟପୁର କଲେଜର ପ୍ରିନ୍‌ସିପାଲ୍ ଆମ ମେଡ଼ିକାଲ୍ ସ୍କୁଲର superitendent କୁ ଲେଖିଛନ୍ତି ଜଣେ ଡାକ୍ତର ପଠେଇବା ପାଇଁ । A.T. Anderson ତ ମୋତେ କହିଥିଲେ I will provide you a job anyhow । ଏଣୁ ଏ ବିଷୟରେ ତାଙ୍କର ସାହାଯ୍ୟ ନେବି ବୋଲି ଏ ଘଟଣା ବାବାଙ୍କୁ କହିଲି । ବାବା ଶୁଣି ମୋତେ କହିଲେ ଯା ସାହେବଙ୍କ ସଙ୍ଗେ ଦେଖା କରି କହ ।

ମୁଁ ତହିଁ ଆରଦିନ ସାହେବଙ୍କ ସଙ୍ଗେ ତାଙ୍କ କୋଠିରେ ଯାଇ ଦେଖା କଲି । Anderson ମୋତେ ଦେଖି ଭାରି ଖୁସି ହେଇ କହି ପକେଇଲେ Well John, What's the matter? Do you want some help

from me? How are you? Anderson ପ୍ରଥମେ ଜଣେ ଛାତ୍ରକୁ ଦେଖିଲେ କାହାକୁ John, କାହାକୁ Richard, କାହାକୁ William ବୋଲି ଡାକି ଦିଅନ୍ତି । ସେମିତି ମୋତେ ମଧ୍ୟ John ବୋଲି ଡାକିଲେ । ମୁଁ ତାଙ୍କୁ କୌଣସି ପ୍ରକାରେ ଇଂରାଜୀରେ ବୁଝେଇ ଦେଲି ଯେ ମୁଁ ଏ ପର୍ଯ୍ୟନ୍ତ ଚାକିରି ପାଇ ନାହିଁ । ରାୟପୁର କଲେଜରେ ଗୋଟିଏ ଡାକ୍ତର ଚାକିରି ଖାଲି ଅଛି ମୁଁ ସେ ଚାକିରି ଖଣ୍ଡ କେମିତି ପାଇବି ?

Anderson ମୋଠାରୁ ଏକଥା ଶୁଣି ଆନନ୍ଦରେ କହିଲେ ହଉ । ଖଣ୍ଡେ ଦରଖାସ୍ତ ଲେଖି ଆଣ । ମୁଁ ତାକୁ recommend କରି ପଠେଇ ଦେବି । ମୋ ମନଟା ଭାରି ଖୁସି ହେଇଗଲା । ମୁଁ ତାଙ୍କଠୁ ବିଦାୟ ନେଇ ଆସି ଘରେ ବାବାଙ୍କୁ ସବୁ କଥା କହି ତାଙ୍କ ନିର୍ଦ୍ଦେଶନାରେ ଇଂରାଜୀରେ ଖଣ୍ଡେ ଦରଖାସ୍ତ ଲେଖି ତହିଁ ଆରଦିନ Andersonଙ୍କ ପାଖରେ ଯାଇ ପହଁଚିଲି ।

ତାଙ୍କର ସେହି ଦେଖିବା ମାତ୍ରେ ହସ ହସ କଥା, ସାହାଯ୍ୟକାରୀ ମନୋବୃତ୍ତି । ମୋର ଦରଖାସ୍ତ ଉପରେ ଖୁବ୍ ଭଲ recomendation ଲେଖିଲେ । ମୋ ପାଖରେ ତ ସେ recomendation ର ନକଲ ନାହିଁ । ସେଥିର ଗୋଟାଏ ଧାଡ଼ି ମନେ ଅଛି । If this doctor will be appointed the College will get a very fine man.

ରାୟପୁର କଲେଜରେ ସେତେବେଳେ ରଜାରାଜୁଡ଼ାଙ୍କ ପୁଅ ଝିଅ ଅର୍ଥାତ୍ ଯୁବରାଜ, ଯୁବରାଜ୍ଞୀମାନେ ପଢୁଥିଲେ । ଏଣୁ passport size ଫଟୋ ପଠେଇବାକୁ ହେବ । ଫଟୋ ନେବାକୁ ମୋ ପାଖରେ ସମ୍ବଳ ନାହିଁ । ପୁଣି ଫଟୋ ନେବା ପାଇଁ ସେମିତି ପୋଷାକ, ପ୍ୟାଣ୍ଟ, କୋର୍ଟ, ଟାଇ ଇତ୍ୟାଦି ଦରକାର । ଦେହର ତଳ ଅଂଶଟା ଯେମିତି ସେମିତି ଦେଖାଯାଉ ସେଥିରେ କିଛି ନାହିଁ । କିନ୍ତୁ ଦେହର ଉପର ଅଂଶଟାକୁ ଖୁବ୍ ଜମାଟିଆ କରି ଫଟୋ ନବାକୁ ହବ । ଯେମିତିକି ରାୟପୁର କଲେଜରେ ଚାକିରୀ ଲାଗି ଖାପ ଖାଇବ । କେବଳ ଚେହେରା ଛଡ଼ା, ମୋ ପାଖରେ ଆଉ କିଛି ନଥାଏ । ଚେହେରା ସୁନ୍ଦର, ଅସୁନ୍ଦର ଯା ହେଇଥାଉ barball ଦ୍ୱାରା ବ୍ୟାୟାମ କରି ଗୋଟାଏ ବଳିଷ୍ଠ ଦୁର୍ଦ୍ଦାନ୍ତ ଦେହ ହେଇଥାଏ । ମୋର ଦେହଟା ନିଶ୍ଚୟ ରାୟପୁର କଲେଜ ଚାକିରି କି ମନେଇବ ଏ ମୋର ଦୃଢ଼ ବିଶ୍ୱାସ କିନ୍ତୁ ମୋର ମୁଖଶ୍ରୀ ପସନ୍ଦ ହବ କି ନା ମୋର ସନ୍ଦେହ ଥାଏ । ମୁଁ Anderson ଙ୍କୁ ମୋର ନିଜର ଖଣ୍ଡେ best photo ନବା ଏବଂ ପ୍ୟାଣ୍ଟ, କୋର୍ଟ, ଟାଇ ଇତ୍ୟାଦି ଯୋଗେଇବାର ଅକ୍ଷମତା କହିଲି । Anderson ମୋର କଥା ଶୁଣି କହିଲେ Alright, I will help you । ସେ ମୋତେ ସଙ୍ଗେ ସଙ୍ଗେ ଖଣ୍ଡେ ଭଲ ପ୍ୟାଣ୍ଟ, ଭଲ ସାର୍ଟ, ଭଲ କୋର୍ଟ୍ ଓ ଖଣ୍ଡେ ଟାଇ ଦେଲେ ଏବଂ ତତ୍କାଳୀନ ଓଡ଼ିଶାର ବିଖ୍ୟାତ photographer Qudusଙ୍କ ପାଖକୁ ଖଣ୍ଡେ ଚିଠି ଲେଖି ଦେଲେ ମୋର best photo ନବା ପାଇଁ । ମୁଁ Anderson ଙ୍କ ଏ ଔଦାର୍ଯ୍ୟ, ବଦାନ୍ୟତା ଦେଖି ଆଶ୍ଚର୍ଯ୍ୟ ହେଲି । ସେ କେତେ ବଡ଼ ମହତ୍ ଲୋକ ଭାବି ସ୍ତମ୍ଭୀଭୂତ ହେଇଗଲି । ମୋପରି ଜଣେ ସଦ୍ୟ ପାସ୍ କରା ଡାକ୍ତରକୁ ଚାକିରି ଯୋଗେଇ ଦବା ପାଇଁ ତାଙ୍କର କି ଅକୁଣ୍ଠ ସାହାଯ୍ୟ । Anderson ମୋତେ କହିଲେ ତୁମେ ଯାଅ Qudus ପାଖରୁ photo ନେଇ ମୋ ପାଖକୁ ଆସିବ ।

ମୁଁ ତାଙ୍କୁ ନମସ୍କାର ଜଣେଇ ସେ ପ୍ୟାଣ୍ଟ, ସାର୍ଟ ଇତ୍ୟାଦିକୁ ଧରି ତାଙ୍କର ଚିଠି ନେଇ କ୍ୟାଣ୍ଟନ୍‌ମେଣ୍ଟ ରୋଡ଼ସ୍ଥ Andersonଙ୍କ କୋଠିରୁ ବକ୍ସିବଜାରସ୍ଥ Qudus ଙ୍କ ଘରକୁ ଦୌଡ଼ିଲି । ସେଦିନ ବିରାଟ ଖରାରେ ମୁଁ ଏତେ ବୁଲିଥାଏ ଯେ ମୋର ସନ୍ଦେହ ହେଉଥାଏ ଫଟୋ ବୋଧହୁଏ ଭଲ ହବନି । ଏଣେ Anderson ଙ୍କ ମନସ୍ୱୀତାର କଥା ଭାବି ଆଶ୍ଚର୍ଯ୍ୟ ଲାଗୁଥାଏ ।

ମୁଁ ସାଇକେଲ୍‌ରେ Qudusଙ୍କ ଘରେ Qudusଙ୍କୁ Andersonଙ୍କ ଚିଠି ଦେଖେଇଲି । Qudus ଆଗରୁ ବାବାଙ୍କ ସହିତରେ ପରିଚିତ ଥିଲେ । ମୋତେ ଯେତେବେଳେ ୪ବର୍ଷ Qudus ଆମ ଘରେ ଆସି ଫଟୋ ଉଠେଇଥିଲେ । ସେ ଫଟୋ ଏ ପର୍ଯ୍ୟନ୍ତ ଅଛି । ବାବା ମଧ୍ୟ ଅନେକ ଆଗେ Qudusଙ୍କ ସହାୟତାରେ photography କିଛିଦିନ ଶିଖିଥିଲେ । ବାବାଙ୍କର pho-

tography ପ୍ରତି ବିଶେଷ ଆଗ୍ରହ ଥିଲା । କିନ୍ତୁ ଅନ୍ୟ କେତେକ ବାଧାବିଘ୍ନ ଯୋଗୁଁ ଶେଷ ପର୍ଯ୍ୟନ୍ତ photography ଶିଖିପାରି ନଥିଲେ । ଆଜିକାଲି ତ ଅନେକ photographer ବାହାରିଲେଣି କିନ୍ତୁ Qudusଙ୍କ ଭଳି କେହି ନୁହଁନ୍ତି । Qudus ଙ୍କୁ photographyର technique ଠିକ୍ ଜଣା ଥିଲା । Qudus ଙ୍କ ଦ୍ୱାରା ଉଠା ହୋଇଥିବା ୬୦ ବର୍ଷ ତଳର ଫଟୋ ମଧ୍ୟ ଏ ପର୍ଯ୍ୟନ୍ତ ନିଖୁଣ ଭାବରେ ରହିଛି । ସେତେବେଳେ ଓଡ଼ିଶା ତମାମ Qudusଙ୍କୁ photo ନବା ପାଇଁ ଡ଼ାକରା ଆସୁଥିଲା । Photographer କହିଲେ ଲୋକେ Qudus ବୋଲି ଜାଣୁଥିଲେ । Qudus ମୋର ଫଟୋ ନବା ପାଇଁ ମୋତେ ବେଶ୍ ସଜେଇ ଦେଲେ । ମୁଁ ତ necktie ବାନ୍ଧି ଜାଣି ନଥିଲି । Qudus ନିଜେ ମୋର tie ବାନ୍ଧି ଦେଲେ । ଫୁଲ ଟିକିଏ ଆଣି ମୋର କୋର୍ଟ୍‌ର ଗୋଟାଏ ପାଖରେ ଲଗେଇ ଦେଲେ । କେମିତି ଭାବରେ ବସିବି, କେମିତି camera କୁ ଅନେଇବି, ସବୁ ବତେଇ ଦେଇ ଫଟୋ ନେଲେ ଏବଂ ମୋତେ କହିଲେ ତିନିଦିନ ପରେ ମୋ ଫଟୋର ତିନି copy ଦେବେ ।

ମୁଁ ସେଦିନ Andersonଙ୍କ ଦେଇଥିବା ପ୍ୟାଣ୍ଟ, ସାର୍ଟ୍ ଇତ୍ୟାଦି ପିନ୍ଧିଲି ମୋତେ ଠିକ୍ ହେଲା । କିଛି ବଡ଼ ହେଲାନି, କିଛି ଛୋଟ ହେଲାନି । ବଡ଼ ଆଶ୍ଚର୍ଯ୍ୟ ଲାଗିଲା । Anderson କେମିତି ଠିକ୍ ନଜର କରି ଦେଲେ ଯାହାକି ମୋ ମାପକୁ ଠିକ୍ ହେଲା ।

ମୁଁ ସେଦିନ Qudus ଙ୍କ ପାଖରୁ ଫେରି ଘରକୁ ଗଲି । ବାବାଙ୍କ ଆଗରେ Andreson ଙ୍କ ମୋତେ ପ୍ୟାଣ୍ଟ, ସାର୍ଟ୍ ଇତ୍ୟାଦି ଦବା, Qudus ଙ୍କୁ ମୋର ଫଟୋ ନବା ପାଇଁ ଚିଠି ଲେଖିଦବା ଇତ୍ୟାଦି ବିଷୟ ସବୁ କଥା କହିଲି । ବାବା ଶୁଣି ଆଶ୍ଚର୍ଯ୍ୟ ହେଇ କହିଲେ ତୁ କେମିତି ଗୋଟାଏ ତାଙ୍କ ଶୁଭଦୃଷ୍ଟିରେ ପଡ଼ି ଯାଇଛୁ ।

ବାବା ମୋତେ ଅତି ପିଲାବେଳେ ମଖମଲର ପ୍ୟାଣ୍ଟ, କୋର୍ଟ୍, ଟୋପି, ରୁମାଲ୍ ଇତ୍ୟାଦି ଦେଇ ଖୁବ୍ ସଜଉ ଥିଲେ କିନ୍ତୁ ଯେଉଁଦିନଠୁଁ ଗୌରୀଶଙ୍କର ରାୟ ମୋତେ ଏତେ ପିଲାବେଳୁଁ ଇମିତି ସଜେଇବାକୁ ମନା କଲେ ସେହିଦିନଠୁଁ ପ୍ୟାଣ୍ଟ, କୋର୍ଟ୍ ପିନ୍ଧା ବନ୍ଦ ହେଲା । କେବଳ ଧୋତି, କମିଜ କିମ୍ୱା ପଞ୍ଜାବୀ ପିନ୍ଧୁଥିଲି । ସେ ପୁଣି ଖଣ୍ଡିଏ ଛିଣ୍ଡିଲେ ଖଣ୍ଡିଏ ହବାର କଥା । ପୁଣି କ'ଣ ଯେ ହେଲା ମୋ ଅବସ୍ଥା, ଗାଧେଇଲେ ପାନିଆରେ ମୁଣ୍ଡ କୁଣ୍ଡେଇବାକୁ ମନା । ମୁଣ୍ଡବାଳଗୁଡ଼ା ସେମିତି ଠିଆ ହେଇଥିବେ, ଅଲରା ହେଇଥିବ । ସେମିତି ରହିବାକୁ ହବ । କ'ଣ କରିବି ? ନମାନିଲେ ମାଡ଼ । ପରେ ଯହୁଁ ଯହୁଁ ବଡ଼ ହେଲି ପାଠ ଛାଡ଼ି ବାଲୁଙ୍ଗା ହେଇ ବୁଲିଲି । ବାବା, ମା'ଙ୍କର ସେ ବାରଣକୁ ଆଉ ମାନିଲି ନାହିଁ । ଯହୁଁ ଯହୁଁ ବଡ଼ ହେଲି ମାଡ଼ର ଭୟ ମଧ୍ୟ କମିଗଲା । କିନ୍ତୁ ତଥାପି ବାବା, ମା ଯାହା ଦେବେ ସେଇୟା ତ ପିନ୍ଧିବି । ନିଜେ ତ ରୋଜଗାର କରୁନି ଯେ ନିଜ ଇଚ୍ଛାନୁସାରେ ଯା ମନ ହବ ପିନ୍ଧିବି । ତେବେ ମୁଣ୍ଡବାଳ କୁଣ୍ଡେଇ ଫେରେଇ ବାଗେଇ ପାରିଲି । ତିନିଦିନ ପରେ Qudus ଠିକ୍ ସମୟରେ ମୋର ଫଟୋ ଦେଲାରୁ ମୁଁ ଫଟୋ ଏବଂ ମୋର ଦରଖାସ୍ତ, ସାର୍ଟିଫିକେଟ୍ ଇତ୍ୟାଦି ନେଇ ପୁଣି Anderson ଙ୍କୁ ତାଙ୍କ କୋଠିରେ ଦେଖା କଲି । ସେ ଦେଖି କହିଲେ ଠିକ୍ ଅଛି, ପଠେଇ ଦିଅ ।

ମୁଁ ସେହିଦିନ ଦି'ପହରେ ଚାଉଳିଆଗଞ୍ଜ ପୋଷ୍ଟ ଅଫିସ୍‌ରେ ରେଜେଷ୍ଟ୍ରି ଡାକ ଯୋଗେ ରାୟପୁର କଲେଜ ପ୍ରିନ୍‌ସିପାଲ୍‌ଙ୍କ ଠିକଣାରେ ପଠେଇଲି । ଦରଖାସ୍ତ ପଠେଇ ଦେଇ ବାବା, ମା ଓ ମୁଁ ଆଶାରେ ରହିଲୁ । ଚାକିରୀ ହେଇଯିବ । Medical School ର Superintendent ଯେତେବେଳେ ସୁପାରିସ କରିଛନ୍ତି ନିଶ୍ଚୟ ଚାକିରି ହେଇଯିବ । ପୁଣି ଭାବୁ, କେତେ ଏମିତି ବିଭିନ୍ନ ଜାଗାରୁ ଡାକ୍ତରମାନେ ସୁପାରିଶ ସହ ଦରଖାସ୍ତ ପଠେଇଥିବେ ସେମାନଙ୍କ ଭିତରୁ କାହାରି ନହବ କାହିଁକି ? ଏମତି କେତେଦିନ 'ହଁ' 'ନାହିଁ', ଆଶା, ନିରାଶାର ମନ ଭିତରେ ଦ୍ୱନ୍ଦ୍ୱ ଚାଲିଲା । ମୁଁ ମନେ ମନେ ପୁଣି ଭାବୁଥାଏ ରାୟପୁର କେତେଦୂର । ଯଦି ଚାକିରି ମିଳେ ବାବା, ମା ଆଉ ଭାଣିଜୀଟିକି କେମିତି ଛାଡ଼ି ରହିବି ? କାରଣ ମୁଁ ଦୂରରେ ରହିଲେ ତ ଏମାନଙ୍କୁ ଦେଖିବାକୁ କେହି ନାହିଁ । କଣ କରିବି ?

ଏମିତି ଅନେକ ଦିନ ଅପେକ୍ଷା କଲା ପରେ ଦିନେ ରାୟପୁର କଲେଜ ପ୍ରିନ୍‌ସିପାଲଙ୍କ ଠାରୁ ଓଟ୍‌କାମଣ୍ଡ (ଦକ୍ଷିଣ ଭାରତ)ରୁ ଚିଠି ଆସିଲା ଏବଂ ଫଟୋ ଖଣ୍ଡକ ମଧ୍ୟ ଫେରି ଆସିଲା। ସେ ଚିଠିରେ ଲେଖା ଥିଲା ମୋର ଚାକିରି ହେଲା ନାହିଁ। ମାନ୍ଦ୍ରାଜର ଜଣେ ଡାକ୍ତର gynaecology ରେ specialist, ତାଙ୍କୁହିଁ ନିଯୁକ୍ତି ଦିଆଗଲା। ଚିଠିପାଇ ବାବା, ମା, ମୁଁ ସମସ୍ତେ ହତାଶ ହୋଇ ପଡ଼ିଲୁ। କାରଣ ଚାକିରି ହେଲା ନାହିଁ। ଏ ଉତ୍କଟ ଅଭାବ ବେଳେ ଚାକିରି ହୋଇଥିଲେ ବାବା ଟିକିଏ ଆଶ୍ୱସ୍ତ ହୋଇଥାନ୍ତେ। ବାବା ଶେଷକୁ କହିଲେ ରାୟପୁର କଲେଜରେ ଚାକିରି ନହେଲା ନାହିଁ, ବହୁତ ଦୂର। ତୁ ଆମକୁ ଛାଡ଼ି ଏତେ ଦୂରରେ ରହିଲେ ଆମେ ଚଳିବୁ କେମିତି ?

ଏଣୁ ପୁଣି ଅନ୍ୟ ଚିନ୍ତା ଚାଲିଲା। ମୁଁ ସ୍ଥିର କଲି କେଉଁଠି ହେଲେ ଖଣ୍ଡେ ଦୋକାନ କରି ବସିଲେ ହବ। କେଉଁଠି ଦୋକାନ କରିବି ? ସେତେବେଳେ ମଙ୍ଗଳାବାଗ, ରେଭେନ୍‌ସା କଲେଜ ଛକରେ ଏତେ ଜନଗହଳି ନଥିଲା। ଏତେ ଔଷଧ କିଣିବାର ଲୋକଙ୍କର ମନୋବୃତ୍ତି ନଥିଲା। ଯା ସେହି ଡାକ୍ତରଖାନାରୁ mixture ମିଳିଲା ସେଇଥିରେ ସନ୍ତୁଷ୍ଟ। ଆଜିକାଲି ପରି ମଧ୍ୟ ଏତେ medicine ବାହାରି ନଥିଲା। ଯେଉଁ କେତେଜଣ ଦୋକାନ କରିଥିଲେ ସେମାନେ ସେହି mixture ବିକୁଥିଲେ। ବାହାର ଔଷଧ ବା କିଣୁଛି କିଏ ? ମୋରି ଦେଖିବାରେ ମଙ୍ଗଳାବାଗ, କଲେଜଛକରେ କେତେ କମ୍ପାଉଣ୍ଡର ଦୋକାନ କରି ଫେଲ୍ ମାରି ଦୋକାନ ଉଠେଇ ଗଲେ। ସେତେବେଳେ ବକ୍ସିବଜାର ଅଞ୍ଚଳରେ ଡାକ୍ତର ମାନଗୋବିନ୍ଦ ସାହୁଙ୍କର ଦୋକାନର ନାଁ ଡାକ। ତାଙ୍କ ପାଖରେ ସକାଳ ହେଲେ ଶହ ଶହ ରୋଗୀ। କଲେଜ ଛକରେ ଯେଉଁଠି South Indian hotel ଏବେ ହୋଇଛି ତାରି ପୂର୍ବ ପାଖ ତଳ ମହଲାରେ ଖଣ୍ଡିଏ ବଖରାରେ ଡା:ଅଟଳ ବିହାରୀ ଆଚାର୍ଯ୍ୟଙ୍କର ଖଣ୍ଡେ ଡାକ୍ତରୀ ଦୋକାନ ଥାଏ। ସେ ହେଉଛି ଡା:ଅଟଳ ବିହାରୀ ଆଚାର୍ଯ୍ୟଙ୍କର କଟକ ନୟାସଡ଼କ ସ୍ଥିତ "ସ୍ୱରାଜ ମେଡ଼ିକାଲ୍ ହଲ୍" ର ଶାଖା। ସେ ଦୋକାନ ଜଣେ କମ୍ପାଉଣ୍ଡର ଦ୍ୱାରା ଚାଲିଥାଏ। ସେ କମ୍ପାଉଣ୍ଡର ଡା:ଅଟଳ ବିହାରୀ ଆଚାର୍ଯ୍ୟଙ୍କର ଜଣେ ସମ୍ପର୍କୀୟ ଭାଇ। ଦିନେ ରାତିରେ ଘରେ ଶୋଇ ଭାବିଲି ଡା:ଅଟଳ ବିହାରୀ ଆଚାର୍ଯ୍ୟଙ୍କ ସେହି ଦୋକାନରେ ବସିବି। ନିଜେ ଦୋକାନ କରି ବସିବା ଅପେକ୍ଷା ସେଇଠି ବସିଲେ ଭଲ ହବ। ଡା:ଅଟଳ ବିହାରୀ ଆଚାର୍ଯ୍ୟ ଭାରି ଉଦାରମନା ଲୋକ। ଡାକ୍ତର ହେଲେ ବି ତାଙ୍କର ଭାରି ବ୍ୟବସାୟ ବୁଦ୍ଧି। ଡା:ଆଚାର୍ଯ୍ୟ ଭାରି ସାହାଯ୍ୟକାରୀ ଲୋକ। ଯାହାଠି ବ୍ୟବସାୟ କରିବାର ମନୋବୃତ୍ତି ଦେଖିବେ ସେ ତାଙ୍କୁ ଭାରି ସାହାଯ୍ୟ କରୁଥିଲେ। ଏଣୁ ମୁଁ ଭାବିଲି ତାଙ୍କର ସେ ଦୋକାନ ତ କମ୍ପାଉଣ୍ଡର ଦେଇ ଚଳୁଛି। ମୁଁ ଜଣେ ଡାକ୍ତର। ସେଠି ବସିଲେ ତାଙ୍କର ଲାଭ ହବ। ମୋର ମଧ୍ୟ କିଛି ରୋଜଗାର ହବ। ଏଣୁ ଦିନେ ଯାଇ ନୟାସଡ଼କରେ ଡା:ଅଟଳ ବିହାରୀ ଆଚାର୍ଯ୍ୟଙ୍କ ସଙ୍ଗେ ତାଙ୍କର ସ୍ୱରାଜ ମେଡ଼ିକାଲ ହଲ୍‌ରେ ଦେଖା କରି ସବୁ କଥା କହିବାରୁ ସେ ମୋ ହାତରେ ଦୋକାନର କମ୍ପାଉଣ୍ଡର ପାଖକୁ ଖଣ୍ଡେ ଚିଠି ଲେଖି ଦେଲେ ଯେ ମୁଁ ସେଠି ବସିବି ଏବଂ ରୋଗୀ ଚିକିତ୍ସା କରିବି। ମୁଁ ତାଙ୍କର ସେ ଚିଠିକୁ ଆଣି ବାବାଙ୍କୁ ଦେଖେଇଲି। ବାବା ମଧ୍ୟ ରାଜି ହୋଇ କହିଲେ ହଉ, ଯା ବସ, ଦେଖ କ'ଣ ହଉଛି।

ମୁଁ ତହିଁ ଆରଦିନ ପ୍ରସ୍ତୁତ ହୋଇ ସନ୍ଧ୍ୟା ପରେ ଡା:ଆଚାର୍ଯ୍ୟଙ୍କର ସେ ଚିଠିକୁ ନେଇ ସେ ଦୋକାନରେ କମ୍ପାଉଣ୍ଡରକୁ ଦେଖେଇ ସେଠି ବସିଲି। ସେ ଦୋକାନରେ ସେତେବେଳକାର କେତେକ patient medicine ଏବଂ mixture ବିକ୍ରିର ସୁବିଧା ଥାଏ। ମୁଁ ସେଠି କେତେଦିନ ସନ୍ଧ୍ୟା ପରଠାରୁ ରାତି ସାଢ଼େ ନଅଟା ଯାଏ ବସିଲି। ଦେଖିଲି ମୁଁ ସେଠି ବସିବା ନିରର୍ଥକ। କାରଣ ସେଠି ଯେ କମ୍ପାଉଣ୍ଡର ଥାଏ ସେଠି ସର୍ବେସର୍ବା। ସେ ସେଠି ପୁରୁଣା ଲୋକ। ସବୁ ଲୋକଙ୍କ ସହିତରେ ପରିଚିତ। ମୁଁ ତ ନୂଆ ପାସ୍ କରା ଡାକ୍ତର। ମୋତେ କେହି ଆଗରୁ ଜାଣନ୍ତି ନାହିଁ। ଏଣୁ ଯେ ଆସିଲେ କମ୍ପାଉଣ୍ଡର ସହିତରେ କଥାବାର୍ତ୍ତା ହୋଇ ଔଷଧ ନେଇ ଗଲେ। ତଥାପି ଯେତେଦିନ ବସିଲି ତା ଭିତରେ କେତେଖଣ୍ଡି prescription ଲେଖିଲି। ସେଥିରେ ଦୋକାନରୁ ଔଷଧ ବିକ୍ରି ହେଲା। ମୋର କିଛି ନାହିଁ। ମନେ ପଡୁଛି ଥରେ ଖଣ୍ଡିଏ

certificate ଲେଖି ଯୋଡ଼ିଏ ଟଙ୍କା ପାଉଥିଲି । ସେଦିନ ଭାରି ଖୁସି ଲାଗିଲା । ମୋ ବସିବା ଭିତରେ ସେଇ ଯୋଡ଼ିଏ ଟଙ୍କା ରୋଜଗାର କରିଥିଲି । ଆଉ ନାହିଁ । ଏଣୁ ଖାଲିଟାରେ ସେଠି ବସିବା କାହିଁକି ଭଲ ଲାଗିଲା ନାହିଁ । ଆଉ ସେଠିକି ଗଲି ନାହିଁ ।

ଏଥି ମଧ୍ୟରେ ପି.ଏମ୍.ଏକାଡ଼େମୀର ଜଣେ doctor teacher ଦରକାର ବୋଲି ବିଜ୍ଞାପନ ବାହାରିଲା । ସେଥିପାଇଁ ଚେଷ୍ଟା କଲି । ବାବା, ମୁଁ ଦିହେଁ ଯାଇ ପି.ଏମ୍.ଏକାଡ଼େମିର ତତ୍କାଳୀନ headmaster ବସନ୍ତ ବାବୁଙ୍କ ସଙ୍ଗେ ଦେଖା କଲୁ । ହେଲା ନାହିଁ । ସେଠି ମୋର ଜଣେ ସାଙ୍ଗ, ଡାକ୍ତର ଶାନ୍ତିମୟ ସେନ୍ ନିଯୁକ୍ତି ପାଇଲା । ସେ I.Sc. ପାସ୍ କରିଥିଲା । ପୁଣି L.M.P. ଥିବା ଯୋଗୁଁ ସେ ସେଠି ନିଯୁକ୍ତି ପାଇଲା । ପୁଣି ମୁଁ ଦୌଡ଼ାଦୌଡ଼ି କଲି ଖଣ୍ଡେ ଘର ଭଡ଼ା ନବା ପାଇଁ, ଦୋକାନ କରି କେଉଁଠି ହେଲେ ବସିବି । ଏଥି ମଧ୍ୟରେ ମୁସ୍‌ଲିମ୍ ସେମିନାରିରେ ଜଣେ doctor teacher ଦରକାର ବୋଲି ବିଜ୍ଞାପନ ବାହାରିଲା । ସେତେବେଳେ ପ୍ରତ୍ୟେକ ସ୍କୁଲରେ ଜଣେ L.M.P. ଡାକ୍ତର ରହିବାର ସରକାରଙ୍କର ଯୋଜନା ହେଉଥାଏ । ଏଣୁ ମଝିରେ ମଝିରେ ଗୋଟାଏ ଗୋଟାଏ ସ୍କୁଲ ତରଫରୁ ଏଭଳି ବିଜ୍ଞାପନ ବାହାରୁଥାଏ । ସେତେବେଳେ ଯେଉଁ ସ୍କୁଲ ଜଣେ doctor teacher ନିଯୁକ୍ତ କରୁଥାଏ ସେ ଭାରି ଉନ୍ନତ ସ୍କୁଲ ବୋଲି ପରିଗଣିତ ହଉଥାଏ । କିନ୍ତୁ ଗୋଟିଏ ସ୍କୁଲ ଛଡ଼ା ଅନ୍ୟ କୌଣସି ସ୍କୁଲରେ doctor teacher ନିଯୁକ୍ତି ପାଇ ନଥାନ୍ତି । ସେହି ଗୋଟିଏ ସ୍କୁଲ ହେଲା Balasore Zilla School । ସେଠି ଡାକ୍ତର ସରୋଜ କାନ୍ତ କାନୁନ୍‌ଗୋ ନିଯୁକ୍ତି ପାଇଥାଏ । ତାଙ୍କ ଘର ହେଲା କେନ୍ଦ୍ରାପଡ଼ା sub-division ଅନ୍ତର୍ଗତ ବାଲିଆ ଗ୍ରାମରେ । ଅନ୍ୟ କୌଣସି high school ସେ ପର୍ଯ୍ୟନ୍ତ doctor teacher ନିଯୁକ୍ତ କରିନଥାଏ ।

ମୁସ୍‌ଲିମ୍ ସେମିନାରିର ବିଜ୍ଞାପନ ଦେଖି ବଡ଼ ଆନନ୍ଦ ଲାଗିଲା । ସେତେବେଳେ ପୁଣି ମୋର ଶିକ୍ଷାଗୁରୁ, ଖେଳଗୁରୁ ଜୟରାମବାବୁ ସେଠି headmaster । ଭାବିଲି ହେଲା ଚାକିରି । ଏଥିରେ ଆଉ ସନ୍ଦେହ ନାହିଁ । ଯାଇ ଜୟରାମବାବୁଙ୍କ ସଙ୍ଗେ ଦେଖା କଲି । ଜୟରାମବାବୁ କହିଲେ, ତୁ ଏ ପର୍ଯ୍ୟନ୍ତ କୋଉଠି ଚାକିରି ପାଇ ନାହୁଁ? ଆମର ବିଜ୍ଞାପନ ଦିଆ ହେଉଛି ଯେ ଜଣେ doctor teacher ରହିବାର କଥା । କିନ୍ତୁ ସେ ବର୍ତ୍ତମାନ ନୁହେଁ, କେତେଦିନ ଡେରି ହବ । ତୁ ଦରଖାସ୍ତ କରିଥା । ଯେତେବେଳେ ରଖା ଯିବ ତୋତେ ଡାକିବା । ତା'ପରେ ମୁଁ ମୋର ଯୋଗ୍ୟତାର ପ୍ରମାଣ ପତ୍ର ସହ ଦରଖାସ୍ତ ଖଣ୍ଡିଏ ଦେଇ ଅପେକ୍ଷା କରି ଘରେ ବସିଲି ।

କଣ କରିବି? ଦୋକାନ କରି ବସିବି ବୋଲି ଯେ ଭାବୁଥାଏ, ଟଙ୍କା କାହିଁ? ଦୋକାନ କରିବା ପାଇଁ କେବଳ ଆଲମାରି, ଟେବୁଲ୍, ଚୌକି, ବେଞ୍ଚ ଇତ୍ୟାଦି ଘରେ ଥାଏ । ଔଷଧ ପତ୍ର କିଣିବାକୁ ଟଙ୍କା ଦରକାର । ଏଣୁ ସ୍ୱରାଜ ମେଡ଼ିକାଲ ହଲ୍‌ର ଡାକ୍ତର ଅଟଳ ବିହାରୀ ଆଚାର୍ଯ୍ୟଙ୍କ ସଙ୍ଗେ ଦେଖା କରି ଦୋକାନ କରିବାର ଇଚ୍ଛା ପ୍ରକାଶ କରି ସବୁ କଥା କହିଲି । ଡାକ୍ତର ଅଟଳ ବିହାରୀ ଆଚାର୍ଯ୍ୟଙ୍କ ଗୋଟିଏ ମହତ୍ ଗୁଣ ହେଲା, ଯଦି ବ୍ୟବସାୟ କରିବାକୁ ଇଚ୍ଛା କିନ୍ତୁ ହାତରେ ଟଙ୍କା ନାହିଁ, ସେ କିଛି ହେଲେ ସାହାଯ୍ୟ କରୁଥିଲେ, ଚାକିରି କରିବା ବିରୁଦ୍ଧରେ ସେ ଥିଲେ । ମୋର ଅର୍ଥାଭାବର ସବୁ କଥା ତାଙ୍କୁ ଖୋଲି କହିଲି । ସେ ସବୁ କଥା ଶୁଣିଲା ପରେ କହିଲେ, ତୁମେ ବ୍ୟବସାୟରେ ମନ ଦେଲେ ଉନ୍ନତି କରିବ । ଚାକିରି କଲେ କିଛି କରି ପାରିବନି । ତୁମେ ମୋତେ ଦେଢ଼ ଶହ ଖଣ୍ଡେ ଟଙ୍କା ଦିଅ ମୁଁ ତୁମକୁ ତିନିଶହ ଟଙ୍କାର ଔଷଧି ଇତ୍ୟାଦି ଦେବି । ତୁମେ ତାକୁ ବିକ୍ରିବଟା କରି ସେଥିରୁ ଯେଉଁ ଲାଭ ବାହାରିବ, ସେଥିରୁ ତୁମେ କିଛି ରଖି, ମୋ ଟଙ୍କା ମୋତେ ଶୁଝିବାକୁ ଚେଷ୍ଟା କରିବ । ପୁଣି ଦରକାର ହେଲେ ଆଉ ଔଷଧପତ୍ର ନେଇ ଯାଉଥିବ । ଇମିତି କଲେ ତୁମେ କିଛିଦିନ ପରେ ସ୍ୱାବଲମ୍ବୀ ହୋଇ ପାରିବ । ମୁଁ ପ୍ରଥମେ ଏକୋଇଶ ଟଙ୍କାରେ ଦୋକାନ ଆରମ୍ଭ କରିଥିଲି । ମୋ ସାଙ୍ଗକୁ ଜଣେ କମ୍ପାଉଣ୍ଡର ଜୁଟିଥିଲା । ତାର ନାଁ ସୁଦର୍ଶନ । ଆମେ ଦିହେଁ ଏ ଦୋକାନକୁ ବଢ଼େଇଛୁ ।

ଡା: ଅଟଳ ବିହାରୀ ଆଚାର୍ଯ୍ୟଙ୍କ ଆଶ୍ୱାସନାରେ ମୋ ମନରେ ଟିକିଏ ସାହସ ହେଲା । କିନ୍ତୁ ମୋତେ

ପ୍ରଥମେ ଦେଢ଼ ଶହ ଟଙ୍କା ତାଙ୍କୁ ଦବାକୁ ହବ। ସେତକ କେମିତି ଯୋଗାଡ଼ କରିବି। ବାବା ତ ଧାର କରଜରେ ବୁଡ଼ି ରହିଛନ୍ତି, ଘରେ ତ କିଛି ନାହିଁ। କେମିତି କୋଉଠୁଁ ଦେଢ଼ଶହ ଟଙ୍କା ଆଣିବି? ଏମିତି ଚିନ୍ତାରେ ବିବ୍ରତ ହେଲି।

ଏଥି ମଧ୍ୟରେ କେନ୍ଦ୍ରାପଡ଼ା ହାଇସ୍କୁଲ ତରଫରୁ ଜଣେ doctor teacher ପାଇଁ ବିଜ୍ଞାପନ ଖବର କାଗଜରେ ବାହାରିଲା। ସେ ବିଜ୍ଞାପନ ପୁରାପୁରି ମୋର ମନେ ନାହିଁ, କେବଳ ଏତିକି ମୋର ମନେପଡ଼ୁଛି, ଜଣେ game-knowing ଡାକ୍ତର ଦରକାର ଏବଂ minimum salary ସେ କେତେ ଚାହାନ୍ତି ଜଣେଇବାକୁ ହବ।

ବାବା ଏ ବିଜ୍ଞାପନ ଦେଖି କହିଲେ ଖଣ୍ଡେ ଦରଖାସ୍ତ ପକେଇଥା। ଯଦି କେନ୍ଦ୍ରାପଡ଼ା ହାଇସ୍କୁଲରେ doctor teacher post ମିଳେ ମନ୍ଦ ହବ ନାହିଁ। ଆମରି ଗାଁ ଆଡ଼। ସରକାରୀ ଚାକିରି ବି ନୁହଁ। ଏ ପୂରା private ଚାକିରି, ଭଲ ହବ। ଏଣୁ ବାବାଙ୍କ କଥା ମାନି ମୁଁ ମୋର game ବିଷୟରେ ଏବଂ ପାଠ ସଂକ୍ରାନ୍ତ ଯୋଗ୍ୟତା ବିଷୟରେ ପ୍ରମାଣ ପତ୍ର ସହ ଖଣ୍ଡେ ଦରଖାସ୍ତ କେନ୍ଦ୍ରାପଡ଼ା ହାଇସ୍କୁଲର secretaryଙ୍କ ନିକଟକୁ ପଠେଇ ଦେଲି। ସେଥିରେ minimum salary ବିଷୟରେ ଲେଖିଲି। ମାସିକ ପଚାଶ ଟଙ୍କା ମାତ୍ର। କାରଣ ସେତେବେଳେ trained graduate scale ଥିଲା, ମାସିକ ପଚାଶ ଟଙ୍କା ଦରମା।

ସେତେବେଳେ କେନ୍ଦ୍ରାପଡ଼ା ହାଇସ୍କୁଲର secretary ଥାନ୍ତି ମନି ଗୁହ, ସେ ସେତେବେଳେ କେନ୍ଦ୍ରାପଡ଼ା sub-divisionର S.D.O.ମଧ୍ୟ ଥାନ୍ତି। କେନ୍ଦ୍ରାପଡ଼ା ହାଇସ୍କୁଲକୁ ଦରଖାସ୍ତ ପଠେଇ ଦେଇ ମୁଁ ଉତ୍ତର ଅପେକ୍ଷାରେ ରହିଲି। ଏଣେ ଅନ୍ୟ ଚାକିରି ପାଇଁ ଚେଷ୍ଟା କଲି। ଥରେ ଶୁଣିଲି ଯେ ମୁସ୍‌ଲିମ୍ ସେମିନାରିରେ ଜଣେ doctor teacher ଦରକାର। ସମ୍ବାଦରେ ମନ ଭାରି ଖୁସି ହେଇଗଲା। ଚାକିରି ଖଣ୍ଡକ ନିଶ୍ଚୟ ମୋର। କାରଣ ସେତେବେଳେ ଆଲ୍ଲାବକ୍ସଙ୍କ ପରେ ସ୍ୱୟଂ ଜୟରାମ ବାବୁ ମୁସ୍‌ଲିମ୍ ସେମିନାରିରେ headmaster। ଏଥିରେ ମୋ ଚାକିରି ପାଇବା ବିଷୟରେ ଆଉ ସନ୍ଦେହ ଅଛି? ଦିନେ ଜୟରାମ ବାବୁଙ୍କ ସଙ୍ଗେ ଦେଖା କଲି। ସେ ସ୍କୁଲରେ ଥିଲେ। ସେ କହିଲେ doctor teacher ଜଣେ ରହିବେ ଯେ କିନ୍ତୁ ବର୍ତ୍ତମାନ ସୁଦ୍ଧା ସ୍କୁଲ ମ୍ୟାନେଜିଂ କମିଟି ନିଷ୍ପତ୍ତି ଗ୍ରହଣ କରିନାହିଁ। କାଲେ ବାଲେ ଖବରକାଗଜରେ ବିଜ୍ଞାପନ ଦିଆଯିବ। ସେତେବେଳେ ଦରଖାସ୍ତ କରିବୁ। ହତାଶ ହେଇ ଫେରିଲି। କାରଣ ମୁଁ ଭାବିଥିଲି ଚାକିରି ହେଇଗଲା। କିଛିଦିନ ଅପେକ୍ଷା କରି ଦେଖିଲି କେନ୍ଦ୍ରାପଡ଼ା ହାଇସ୍କୁଲରୁ କୌଣସି ଉତ୍ତର ଆସିଲା ନାହିଁ। ମନେମନେ ଭାବିଲି ଯା ହବାର ହବ। ବାବାଙ୍କ କଥା ନମାନି ସରକାରୀ ଚାକିରିରେ ପଳେଇବି। ଏଣୁ ବାବାଙ୍କୁ କିଛି ନକହି health directorଙ୍କ ପାଖକୁ ମୋର ଯୋଗ୍ୟତାର ପ୍ରମାଣପତ୍ର ସହ ଖଣ୍ଡିଏ ଦରଖାସ୍ତ ଲେଖିଲି। ବାବାଙ୍କୁ ଜଣେଇଲି। ବାବା ଏକଥା ଶୁଣି ଏକବାରେ ନାରାଜ ହେଲେ। ମୁଁ କହିଲି, ମୁଁ ସରକାରୀରେ ଯିବି। ଆଉ କେତେଦିନ ମୁଁ ଇମିତି ଘରେ ବସିଥିବି? ମୁଁ ଯିବି। ବାବା କହିଲେ ନା, ସରକାରୀ ଚାକିରିରେ ଯିବାକୁ ହବ ନାହିଁ।

ଏମିତି "ହଁ" "ନାହିଁ"ର ପ୍ରତିଯୋଗିତା ଭିତରେ ଦିନେ ମୁଁ ଦରଖାସ୍ତ ଧରି health directorଙ୍କ ଅଫିସ୍‌କୁ ସଜବାଜ ହେଇ ବାହାରି ଘରର ତଳପାହାଚରେ ହେଲା ବେଳକୁ ବାବା କହିଲେ, ଆଇଲୁ ଫେରି, ସରକାରୀ ଚାକିରିରେ ଯିବାକୁ ହବ ନାହିଁ।

ମୁଁ ବାବାଙ୍କ କଥାକୁ ଏଡ଼ି ନପାରି ଅନନ୍ୟୋପାୟ ହେଇ ଫେରି ଆସି ଦରଖାସ୍ତକୁ ଟେବୁଲ ଉପରେ ଥୋଇ ଦେଇ ନିକଟରେ ପଡ଼ିଥିବା ଖଣ୍ଡେ ଖଟ ଉପରେ ଶୋଇଗଲି। ଯେତେବେଳେ ନିଦ ଭାଙ୍ଗେ ଦିହରେ ଦିହେ ଜ୍ୱର, ତାତିରେ ଖଇ ଫୁଟିବ, ମୁଣ୍ଡ ଚିନ୍ତାରେ ବଥଉଛି, କ'ଣ କରିବି? ଘରେ ଅର୍ଥ ନାହିଁ। ଦୈନିକ ଚଳାଚଳ ପାଇଁ କଷ୍ଟ। ବାବା ମୋତେ ଏଣେ ସରକାରୀ ଚାକିରିରେ ଛାଡ଼ିବାକୁ ନାରାଜ। ବାବାଙ୍କ ଉପରେ ମନ ଭାରି ବିରକ୍ତ ଲାଗୁଥାଏ।

ଦିନେ ଦି'ଦିନ ପରେ ଜ୍ୱର ଛାଡ଼ିଗଲା। ପୁଣି ଭାବିଲି ଦୋକାନ କରି ବସିବି। ଏଣୁ କଟକ ନୂଆ

ବଜାରକୁ ଦୌଡ଼ିଲି । କଟକ ଟାଉନ୍‌ରେ ନୟାସଡ଼କ ଆଡ଼େ ଅଟଳ ବିହାରୀ ଆଚାର୍ଯ୍ୟଙ୍କ ଦୋକାନ । Graduate friends ଓ ଅନ୍ୟାନ୍ୟ କେତେଜଣ ଡାକ୍ତର ଔଷଧ ଦୋକାନ କରି ସେତେବେଳେ ବେଶ୍ ରୋଜଗାର କରୁଥାନ୍ତି । ଏଣୁ ନୟାସଡ଼କ ଆଡ଼େ ମୋପରି ଜଣେ ନୂଆ ପାସ୍ କରା ଡାକ୍ତର ବସି କିଛି କରିପାରିବ ନାହିଁ । ଏଣୁ ନୂଆ ବଜାର ଆଡ଼କୁ ଯିବାକୁ ମନ ହେଲା । ନୂଆ ବଜାରକୁ ଯାଇ ସେଠି ଖଣ୍ଡେ ଦୋକାନ ଘର ଠିକ୍ କଲି । ଘର ଖଣ୍ଡକ ବଜାର ଉପରେ । ଗୋଟିଏ ପ୍ରକାଣ୍ଡ ହଲ୍ ପରି । ଭଡ଼ା ମାସିକ ୪ଟଙ୍କା ଠିକ୍ ହେଲା । ଆଜିକାଲି ସେହି ଘରର ଭଡ଼ା ବୋଧହୁଏ ନୂଆ ବଜାର ଭଳି ଜାଗାରେ ୧୦୦ ଟଙ୍କା ହେଉଥିବ । ଘରର ମାଲିକ ସହିତରେ କଥା ହେଲା, କାଲି ଆଣି ମାସକର ଅଗ୍ରିମ ଭଡ଼ା ୪ଟଙ୍କା ଦେଇ ଘରଟାକୁ ଅଟକେଇ ଯିବି । ଘରକୁ ଆସି ବାବାଙ୍କୁ ଏ ବିଷୟରେ କହିଲି । ବାବା କହିଲେ ଭଲ ହେଲା ଯେ ବେଶି ଗୁରାଏ ଦୂର ହେଲା । ଦୈନିକ ଯିବା ଆସିବା ଭାରି କଷ୍ଟକର । ବାବାଙ୍କୁ ଭଡ଼ା ବିଷୟରେ କହିଲି, କାଲି ଯାଇ ୪ଟଙ୍କା ଭଡ଼ା ମାସକର ଦେଇ ଆସିବି ।

ରାତି ପାହିଲା, ସକାଳୁ ଉଠି ନିତ୍ୟକର୍ମ ସାରି ପୁଣି ଶେଯରେ ପଡ଼ି ଭାବୁଛି, ଆଉ ଟିକିଏ ବେଳ ହଉ, ଜଳଖିଆ ଖାଇ ୯ଟା ବେଳକୁ ଯିବି । ଏମିତି କେତେ କଣ ଭାବୁ ଭାବୁ ହଠାତ୍ post peon ଆସି ଡାକି ଖଣ୍ଡେ ଚିଠି ଦେଇଗଲା । ଚିଠି ଖଣ୍ଡ ଲଫାପାରେ ଆସିଛି କେନ୍ଦ୍ରାପଡ଼ା ହାଇସ୍କୁଲରୁ । ବାବା ଚିଠି ଖଣ୍ଡକ ଦେଖି କହିଲେ, ଖୋଲିଲୁ, ବୋଧେ appointment letter । ଚିଠି ଖଣ୍ଡକ ଖୋଲି ଦେଖିଲି type କରା ଇଂରାଜୀରେ ଚିଠି ଲେଖିଛନ୍ତି କେନ୍ଦ୍ରାପଡ଼ା ହାଇସ୍କୁଲର ତଦାନିନ୍ତନ secretary କେନ୍ଦ୍ରାପଡ଼ାର subdivisional magistrate ମନି ଗୁହ । କେନ୍ଦ୍ରାପଡ଼ା ହାଇସ୍କୁଲରେ doctor teacher post ରେ appointment letter, ମାସିକ ବେତନ ୫୦ଟଙ୍କା । ବାବା, ମା, ମୁଁ ସମସ୍ତେ ଖୁସି ହେଇଗଲୁ । ସେତେବେଳେ trained graduate ବେତନ ଥିଲା ମାସିକ ୫୦ ଟଙ୍କା । ସେଇ scale ରେ ମୋତେ ନିଯୁକ୍ତି ପତ୍ର ଦେଇଥାନ୍ତି । ସେତେବେଳେ କଟକରେ ଟଙ୍କାକୁ ଚାଉଳ ୬ ସେର । ୧୯୪୦ ମସିହା, ସେହି ଅନୁପାତରେ ଅନ୍ୟାନ୍ୟ ନିତ୍ୟ ବ୍ୟବହାର୍ଯ୍ୟ ଜିନିଷର ଦରଦାମ୍ ମଧ କମ୍ ଥାଏ । ମାସିକ ୫୦ ଟଙ୍କା ପାଇବି ଭାବି ମନ କେତେ ଆଡ଼େ ବୁଲୁଥାଏ, କେତେ ଜିନିଷ କିଣିବା ପାଇଁ ମନ ଡାକୁଥାଏ, ପୁଣି ବେଳେବେଳେ ସାନ ଭଉଣୀର ମୃତ୍ୟୁ କଥା ଭାବି ମନ ଦୁଃଖରେ ଭାଙ୍ଗି ପଡୁଥାଏ ।

ମୁଁ କେମିତି କେନ୍ଦ୍ରାପଡ଼ାରେ ଯାଇ ଚାକିରିରେ ଯୋଗ ଦେବି, ବାବା ବ୍ୟସ୍ତ ହେଇ ପଡ଼ିଲେ । ଟଙ୍କା ଦରକାର, ମୋର କେନ୍ଦ୍ରାପଡ଼ା ଯିବା ଖର୍ଚ୍ଚ, ଚଳନୀୟ କେତେକ ଜିନିଷପତ୍ର କିଣା ଖର୍ଚ୍ଚ । ସେଠି କାମ କରି କେତେଦିନ ଦରମା ପାଇବା ପର୍ଯ୍ୟନ୍ତ ଇତ୍ୟାଦି ଇତ୍ୟାଦି ଖର୍ଚ୍ଚ ଲାଗି ଟଙ୍କା କେମିତି ଯୋଗାଡ଼ କରି ମୋତେ ପଠେଇବେ । ଏଥି ପାଇଁ ବାବା ଉତ୍କଣ୍ଠିତ ହେଇ ପଡ଼ିଲେ । ଶେଷରେ ବାବା ସ୍ଥିର କଲେ କଟକ ବ୍ୟାଙ୍କରୁ କିଛି ଟଙ୍କା ଧାର ଆଣିବାକୁ ହବ । ଏଣୁ ବାବା, ମୁଁ ଦିହେଁ ଦିନେ ସନ୍ଧ୍ୟା ପରେ କଟକ ବ୍ୟାଙ୍କକୁ ଗଲୁ । ହ୍ୟାଣ୍ଡନୋଟ୍‌ରେ ଉଭୟଙ୍କର ଦସ୍ତଖତ ଦେଇ ଟଙ୍କା ଧାର ଆଣିଲୁ । କେତେ ଟଙ୍କା ଧାର ଆଣିଲୁ ମୋର ବର୍ତ୍ତମାନ ମନେ ପଡୁନି । ତା'ପରେ ବାବା, ମୁଁ ଉଭୟେ ଯାଇ ବହୁତ ଜିନିଷ କିଣାକିଣି କଲୁ । ବାବାଙ୍କର ଏକାନ୍ତ ଇଚ୍ଛା ମୋତେ ସାଙ୍ଗରେ ନେଇ ଯାଇ କେନ୍ଦ୍ରାପଡ଼ାରେ ଛାଡ଼ି ଆସିବେ । ମୁଁ ମନାକଲି କାରଣ ଘରେ କେବଳ ବାବା, ମା, ମୁଁ ଓ ଛୋଟ ଭାଣିଜାଟିଏ ଥିଲା । ମୁଁ ତ ଯିବି, ମୋ ସହିତରେ ବାବା ଗଲେ ମା କେବଳ ଏକା ରହିବେ । ମା ଏ ପର୍ଯ୍ୟନ୍ତ କେବେ ଏକା ରହି ନାହାନ୍ତି । ପ୍ରାୟ ଦୁଇମାସ ଆଗରୁ ମୋର ସାନ ଭଉଣୀର ମୃତ୍ୟୁ ଘଟିଥିଲା । ଚାରି ଝିଅ ଚାରି ପୁଅଙ୍କ ଭିତରୁ କେବଳ ମୁହିଁ ଜୀବିତ ଅଛି ଏବଂ ପାଖରେ ଥିଲି ମୁଁ ମଧ ମା'ଙ୍କୁ ଛାଡ଼ି ଦୂରକୁ ଯିବାକୁ ବାହାରିଲିଣି । ସନ୍ତାନସନ୍ତତିମାନଙ୍କ ଭିତରୁ ଆଉ କେହି ପାଖରେ ନାହାନ୍ତି । ଏପରି ଅବସ୍ଥାରେ ମା'ଙ୍କୁ ଏକା ଛାଡ଼ି ଯିବା ଉଚିତ୍ ନୁହେଁ । ଏଣୁ କଥା ହେଲା ବାବା ମୋତେ ଯାଇ ଜଗତ୍‌ପୁର ଷ୍ଟେସନ୍‌ରେ ଛାଡ଼ି କେନ୍ଦ୍ରାପଡ଼ା ବସ୍‌ରେ ବସେଇ ଆସିବେ ।

୧୯୪୦ ମସିହା ଜୁଲାଇ ମାସ ୧୦ ତାରିଖ ସକାଳୁ ଉଠି ବାବା, ମୁଁ ଉଭୟେ ଜିନିଷପତ୍ର ନେଇ କଟକ ଷ୍ଟେସନ୍‌କୁ ବାହାରିଲୁ । ସେତେବେଳେ କଟକରେ ସାଇକଲ୍ ରିକ୍ସା ନଥିଲା । କେବଳ ହାତ ଟଣା ରିକ୍ସା । ଖଣ୍ଡେ ରିକ୍ସାରେ ମୋର ଜିନିଷପତ୍ର ଲଦା ହେଲା । ମା'ଙ୍କଠୁ ବିଦାୟ ନେଇ ବାବା, ମୁଁ ଉଭୟେ କଟକ ଷ୍ଟେସନ୍‌କୁ ରିକ୍ସାରେ ବାହାରିଲୁ । ବର୍ଷା ଟିପ୍ ଟିପ୍ ହଉଥାଏ । କଟକ ଷ୍ଟେସନ୍‌ରେ ପହଁଚି ତାଳଚେର ଗାଡ଼ି ଠିକ୍ ସମୟରେ ଧରି ମହାନଦୀ ପାରି ହେଇ ଆସି ଜଗତ୍‌ପୁର ଷ୍ଟେସନ୍‌ରେ ଓଲେହିଲୁ । ସେତେବେଳେ ମହାନଦୀରେ ଆଉ ଗୋଟିଏ ପୋଲ ତିଆରି ହେଇନଥିଲା । ଏଣୁ ଟ୍ରେନ୍ ଯୋଗେ ଯାତ୍ରୀମାନେ ମହାନଦୀ ପାରି ହଉଥିଲେ ଓ ଆଉ କେତେକ ଯାତ୍ରୀ ଜଗତ୍‌ପୁରଠୁଁ ଡ଼ଙ୍ଗା ଯୋଗେ ମହାନଦୀ ପାରି ହେଇ କଟକରେ ପହଁଚୁଥିଲେ ।

ବାବା, ମୁଁ କୁଲି ଦ୍ୱାରା ଜିନିଷପତ୍ର ବୁହାଇ ନେଇ ଯାଇ ଜଗତ୍‌ପୁର ବସ୍‌ଷ୍ଟାଣ୍ଡରେ ପହଁଚିଲୁ । ବସ୍ ଠିଆ ହେଇଥାଏ । ପ୍ରାଇଭେଟ ବସ୍, ଆକୃତିରେ ଛୋଟ । ଯାତ୍ରୀମାନେ ଜମୁଥାନ୍ତି । ବେଳ ହେଲାରୁ ମୁଁ ବସ୍‌ରେ ବସିଲି । ବାବା ବିଶେଷ ଉଦ୍‌ବିଗ୍ନ ହେଉଥାନ୍ତି କାରଣ ମୁଁ ତ ଏଇ ପ୍ରଥମ ଘର ଛାଡ଼ି ବାହାରକୁ ଯାଉଛି । ପାଠପଢ଼ା ବେଳେ ହଷ୍ଟେଲ, ମେସ୍ କିମ୍ବା ଅନ୍ୟତ୍ର କୌଣସି ବନ୍ଧୁବାନ୍ଧବଙ୍କ ଘରେ ରହି ନାହିଁ । ସେଇ ବାବା, ମା'ଙ୍କ ପାଖରେ ତାଙ୍କର ତତ୍ତ୍ୱାବଧାନରେ ଏ ପର୍ଯ୍ୟନ୍ତ ଚଳି ଆସିଛି ।

ବସ୍ ଛାଡ଼ିଲା । ବାବା ବଡ଼ ବିଷର୍ଣ୍ଣ ଚିତ୍ତରେ ମୋତେ ବିଦାୟ ଦେଲେ । ଯେତେଦୂର ପର୍ଯ୍ୟନ୍ତ ବାବାଙ୍କୁ ଦେଖି ପାରୁଥିଲି ମୁଁ ବାବାଙ୍କୁ ଅନେଇ ଅନେଇ ବସ୍‌ରେ ଗଲି । ସେତେବେଳେ କେନ୍ଦ୍ରାପଡ଼ା ରାସ୍ତା ଆଜିକାଲି ପରି ପିଚୁ ରାସ୍ତା ହେଇ ନଥିଲା । ସେଇ ଆବଡ଼ାଖାବଡ଼ା ମାଲି ସଡ଼କ । ସେତେବେଳେ ଜଗତ୍‌ପୁରଠୁଁ କେନ୍ଦ୍ରାପଡ଼ା ପ୍ରାଇଭେଟ୍ ବସ୍‌ରେ ଯିବା ପାଇଁ ଦୈହିକ ଶକ୍ତି ଦରକାର କରୁଥିଲା । କାରଣ ଆବଡ଼ା ଖାବଡ଼ା ବାଟରେ ବସ୍‌ରେ ଗଲାବେଳେ ବସ୍ ଭିତରେ ଯାତ୍ରୀମାନେ ଯେଉଁ ଭାବରେ ଅଷ୍ଟପ୍ରହରୀ କୀର୍ତ୍ତନୀୟାଙ୍କ ଭଳି ଯେମିତି ଆଲୋଡ଼ିତ ହଉଥିଲେ, ସେ କଥା ଯିଏ ଭୁକ୍ତଭୋଗୀ ସେ କେବେ ଭୁଲି ପାରିବ ନାହିଁ । କା ମୁଣ୍ଡ ବସ୍ ଛାତରେ ଠାଏ ଠାଏ ବାଜୁଛି, କିଏ କାହା ଉପରେ ଧକ୍କା ଖାଇ ପଡୁଛି, ମାଟି ଜିନିଷ, କାଚ ଜିନିଷ ଯେତେ ସାବଧାନରେ ରଖିଥିଲେ ମଧ ତାଙ୍କର ଅବସ୍ଥା ଶୋଚନୀୟ । ବସ୍ତା ଭଳି ଲୋକ ଖୁନ୍ଦା ହେଇଥିବେ, କେହି କାହାରି ସୁବିଧା ଦେଖିବାକୁ ଆଉ ଅବସର ନଥାଏ ।

ବସ୍ ଯେତେବେଳେ ଯାଇ ସାଲେପୁରରେ ରହିଲା, ଯାତ୍ରୀମାନେ ସବୁ କିଏ କୁଆଡ଼େ ଓଲେହି ଗଲେ । କିଏ ଜଳଖିଆ ଖାଇବ, କିଏ ପରିସ୍ରା କରିବ, କିଏ ଟିକିଏ ଖୋଲାରେ ବୁଲିବ । ମୁଁ ଅନ୍ୟମାନଙ୍କ ଦେଖାଦେଖି ଓଲେହି ଗଲି ଜଳଖିଆ ଖାଇବାକୁ ବିକଳାନନ୍ଦ କରଙ୍କ ଜଳଖିଆ ଦୋକାନକୁ । ସକାଳୁ ଘରୁ ବାହାରିବା ବେଳେ କେବଳ ଦୁଧ ଅଳ୍ପ କିଛି ପିଇ ବାହାରିଥିଲି । ଭୀଷଣ ଭୋକ ଜଣାଗଲା । ମୁଁ ବିକଳାନନ୍ଦଙ୍କ ଦୋକାନରେ ତଳମୁହାଁ ହେଇ ପୁରୀ ତରକାରି ଖାଉଛି, ଜଣେ ଦୋକାନୀର ଲୋକ ପଚାରିଲା ବାବୁ ଆଉ ଗୋଟାଏ ଦେବି ? ମୁଁ ଆଶ୍ଚର୍ଯ୍ୟ ହେଇ ଭାବିଲି କଣ ଆଉ ଗୋଟାଏ ଦେବି ? ପତରକୁ ଅନେଇ ଦେଖେ ସେ ଲୋକ ଗୋଟାଏ ବଡ଼ ପାନତୁଆ (ଯାର ଦାମ୍ ବର୍ତ୍ତମାନ ଟଙ୍କାଏ ହବ) ମୋ ପତରରେ ଦେଇ ପୁଣି ଆଉ ଗୋଟାଏ ଦବାକୁ ପଚାରୁଛି । ମୁଁ ବିରକ୍ତ ହେଇ ତାକୁ କହିଲି ମୋତେ ନପଚାରି ଏଡ଼େ ବଡ଼ ପାନତୁଆଟାଏ କାହିଁକି ଦେଲ ? କାରଣ ମୁଁ ମିଠା ଜିନିଷ ଖାଇବାକୁ ଆଦୌ ଭଲ ପାଏ ନା । ମୁଁ ସେ ଲୋକକୁ ପଚାରିଲି ଏ ପାନତୁଆର ଦାମ୍ କେତେ ? ସେ ଉତ୍ତର ଦେଲା ତିନି ପଇସା । ମୁଁ ତାକୁ ମନା କଲି ଆଉ ଗୋଟାଏ ଦବାକୁ ।

ଯାତ୍ରୀମାନେ ଯିଏ ଯାର କାମ ସାରି ଆସି ବସ୍‌ରେ ବସିଲେ । ମୁଁ ବସିଲି ବସ୍ ଛାଡ଼ିଲା । ବସ୍ ଭିତରେ ଯାତ୍ରୀଙ୍କର ପୁଣି ନାଚକୁଦ ହବା ଆରମ୍ଭ ହେଲା । ମୁଁ ଗୋଟିଏ ମହା ବିପଦରେ ପଡ଼ିଲି । କଣ କରିବି ? ଝାଡ଼ା ମଡ଼େଇଲା । ପ୍ରଭୁ ରକ୍ଷା କର । କି ବିପଦ ! ଗୋଡ଼ରେ

ମୋଜା, ଜୋତା, ହାଫ୍ ପ୍ୟାଣ୍ଟ, ଅଣ୍ଡରଓୟାର । ସେଥିରେ ଚମଡ଼ା ବେଲ୍ଟ ବନ୍ଧା ହୋଇଛି । ଗେଞ୍ଜି, କମିଜ ତା'ଉପରେ କୋଟ୍ ମଡ଼େଇଛି, କଣ କରିବି? ଏସବୁକୁ ଖୋଲାଖୋଲି କରୁ କରୁ ଆଉ ଝାଡ଼ା ବସିବା ଦରକାର ପଡ଼ିବନି । କଣ କରିବି? ଭଗବାନଙ୍କୁ ଡାକିଲି ରକ୍ଷାକର । ତୁମେ ଦ୍ରୌପଦୀକି କୁରୁସଭା ତଳେ ରକ୍ଷା କରିଥିଲ, ଗଜକୁ ଉଦ୍ଧାର କରିଥିଲ, ମୋତେ ଏ ବିପଦରୁ ରକ୍ଷାକର ପ୍ରଭୁ । ମୋର ଯଦି ପ୍ୟାଣ୍ଟରେ ଝାଡ଼ା ହୋଇଯାଏ, ଏ ଯାତ୍ରୀମାନଙ୍କ ସାମନାରେ ମୋର ଅବସ୍ଥା କଣ ହବ? ଆଗକୁ ଅନଉଥାଏ । କେନ୍ଦ୍ରାପଡ଼ା ଆଉ କେତେ ବାଟ ଅଛି? କେତେବେଳେ ଆଉ ପହଁଚିବି? କେନ୍ଦ୍ରାପଡ଼ା ପୁଣି ନୂଆ ଜାଗା, କୋଉଠି ଲୋଟାଟାଏ ପାଇବି? କିମିତି ଏ ପ୍ୟାଣ୍ଟଜାମା ଖୋଲିବି?

ସେହି ବସ୍‌ରେ ଜଣେ ତେଲଗୁ ଭଦ୍ରଲୋକଙ୍କ ସଙ୍ଗେ ପରିଚୟ ହେଲା । ସେ ମୋରି ପରି ନୂତନ ନିଯୁକ୍ତି ପାଇ ଚାକିରୀରେ ଯୋଗ ଦେଇ ଛୁଟି ନେଇ ଘରକୁ ଯାଇଥିଲେ । ଆଜି ଘରକୁ ଫେରୁଛନ୍ତି । ଭଦ୍ରଲୋକଙ୍କ ସାଙ୍ଗରେ ପରିଚୟ ହୋଇ ମନରେ ଟିକିଏ ସାହସ ହେଲା । କାରଣ ଭଦ୍ରଲୋକ, କେନ୍ଦ୍ରାପଡ଼ା ହାଇସ୍କୁଲ କେଉଁଠି ଜାଣିଛନ୍ତି । ମୁଁ ତ ସେତକ ବି ଜାଣି ନଥାଏ । ମୁଁ ସବୁ ଭଦ୍ରଲୋକଙ୍କୁ ପଚାରି ବୁଝି ନେଲି ।

କିଛି ସମୟ ପରେ ବସ୍ ଯାଇ କେନ୍ଦ୍ରାପଡ଼ା ଟାଉନ୍‌ର ବଜାର ମଝି ବସ୍‌ଷ୍ଟାଣ୍ଡରେ ଅଟକିଲା । ମୁଁ ବସ୍‌ରୁ ଓଲେହି ପଡ଼ି ସେହି ଭଦ୍ରଲୋକଙ୍କ ଉପରେ ମୋର ଜିନିଷପତ୍ର ରିକ୍ସାରେ ସ୍କୁଲ ହଷ୍ଟେଲକୁ ଆଣିବାର ଭାର ଦେଇ ମୁଁ ଗୋଟାଏ ସୁଟ୍‌କେଶ ଧରି ସିଧା ସଳଖ ସ୍କୁଲ ଆଡ଼େ ଚାଲିଲି କେମିତି ଶୀଘ୍ର ପହଁଚି ଝାଡ଼ା ଯିବି । ପ୍ରଭୁ ଏତେ ବାଟ ଟପେଇ ଆଣିଲେ ଆଉ ଏତକ ବାଟ ଟପେଇ ପାରିବେ ନାହିଁ?

ମୁଁ କିଛି ଦୂର ଚାଲିଗଲା ପରେ ସ୍କୁଲ୍ ଦେଖାଗଲା ଏବଂ ତା'ପାଖରେ ଗୋଟାଏ ବଡ଼ ଜଳାଶୟ ଦେଖି ଭାବିଲି, ଯା ହଉ, ଏଠି ପିଲାମାନଙ୍କର ଗାଧେଇବାର ବେଶ୍ ସୁବିଧା ଅଛି । ପୁଣି ସେହି ଜଳାଶୟର ପଶ୍ଚିମ ପଟ ରାସ୍ତା ଆର ପାଖେ ଗୋବରୀ ନଈ ବେଶ୍ ସୁନ୍ଦର ଦେଖାଗଲା । ମୁଁ ଏଣେ ତରବର ହୋଇ ଯେମିତି ସ୍କୁଲ ଫାଟକ ଟପିଛି ସ୍କୁଲ ହଷ୍ଟେଲ ଦେଖାଗଲା । ମୁଁ ସିଧା ହଷ୍ଟେଲ ଆଡ଼କୁ ମୁହାଁଇଲି । ଏଣେ ମୋର ବାଁ ପଟେ ଅନେଇ ଦେଖିଲି ସ୍କୁଲ ପିଲାଏ ମୋତେ ଦେଖିବା ପାଇଁ ସ୍କୁଲର ଉପର ମହଲା ଓ ତଳ ମହଲାରେ ଅନେଇ ଠିଆ ହୋଇଛନ୍ତି । ମୁଁ ଅଳ୍ପ ଟିକିଏ ଅନେଇ ଦେଇ ଶୀଘ୍ର ଯାଇ ହଷ୍ଟେଲରେ ପଶି ଦେଖେ ଗୋଟାଏ ବାରଣ୍ଡାରେ ଗୋଟିଏ ବଡ଼ ଲୋଟା ଥୁଆ ହୋଇଛି । ଭଗବାନଙ୍କ କୃପାରୁ ଯେମିତି ମୋରି ପାଇଁ ସେ ଲୋଟା ଥୁଆ ହୋଇଥିଲା । ମୁଁ ସୁଟ୍‌କେଶ ଖୋଲି ଚଟ୍‌ପଟ୍ ଗାମୁଛା କାଢ଼ି ପିନ୍ଧି ପକେଇ ଲୋଟା ନେଇ କୂଅରୁ ତରବରରେ ପାଣି କାଢ଼ି ଯେତେବେଳେ ଯାଇ ପାଇଖାନାରେ ପଶି ନିଜକୁ ଆଶୁ ବିପଦରୁ ରକ୍ଷା କରିପାରିଲି ସେତେବେଳେ ମନେ ମନେ ଭଗବାନଙ୍କୁ ଚିହ୍ନିଲି । ପ୍ରକୃତ ବିପଦବାନ୍ଧବ, ମନରେ ଅଗାଧ ସାହସ, ଦେହରେ ସିଂହର ବଳ ନେଇ ଯେତେବେଳେ ପାଇଖାନାରୁ ବାହାରି ଆସିଲି, ସେତେବେଳେ ଦେଖିଲି ହଷ୍ଟେଲ୍ ଭିତରର ଅଗଣା, ଘର ଇତ୍ୟାଦି ବେଶ୍ ସୁନ୍ଦର । ହଷ୍ଟେଲରେ କେହି ପିଲା କିମ୍ବା ପୂଜାରୀ, ଚାକର ନଥିଲେ । ମୁଁ ଯେ ଅବସ୍ଥାରେ ପାଇଖାନାରେ ପ୍ରବେଶ କରିଥିଲି ଯେମିତି ମୋର କେତେ କାଳର ପୁରୁଣା ପରିଚିତ ଜାଗା । ଦୈବଯୋଗକୁ ଲୋଟା, ଦଉଡ଼ି, କୂଅ ସବୁ ଜୁଟିଗଲା । ଯଦି ଲୋଟା କି ଦଉଡ଼ି ଖୋଜିବାକୁ ଦରକାର ପଡ଼ିଥାନ୍ତା, ତାହେଲେ ମୋର ମାନ, ସମ୍ମାନ ସବୁ ତଳେ ପଡ଼ିଥାନ୍ତା ।

ଯେଉଁ ବାରନ୍ଦାରେ ଲୋଟା ଥୁଆ ହୋଇଥିଲା ସେଇଠି ଗୋଟିଏ ରୁମ୍ ଖାଲି ପଡ଼ିଥିଲା । ମୁଁ ଛାଏଁ ଛାଏଁ ମୋର ପରିଚିତ ରୁମ୍ ଭଳି ସେଇ ରୁମ୍‌କୁ ପଶିଯାଇ ପ୍ୟାଣ୍ଟଜାମା ଇତ୍ୟାଦି ପିନ୍ଧୁଛି, ଏଇ ସମୟରେ ଖାଉଡ଼େ ସ୍କୁଲ ପିଲା ମୋତେ ଦେଖିବାକୁ ଆସି ବାରନ୍ଦାରେ ରୁଣ୍ଡ ହୋଇଗଲେ ।

ସେ ଭଦ୍ରଲୋକ ରିକ୍ସାରେ ମୋର ଜିନିଷପତ୍ର ଆଣି ପହଁଚେଇଲେ । ଏଣିକି ସବୁ ସୁବିଧା ହୋଇଗଲା । ପିଲାଏ ମୋର ଜିନିଷପତ୍ର ରଖିବାରେ ଖୁବ୍ ସାହାଯ୍ୟ କଲେ ।

ପିଲାଙ୍କଠୁଁ ଶୁଣିଲି ଯେ ମୁଁ ଯେଉଁ ରୁମ୍‌ଟାରେ ପଶିଛି, ସେଇଟାଇ ସୁପରିଟେନ୍‌ଡ଼େଣ୍ଟଙ୍କ ରୁମ୍। ଅନ୍ୟ କୌଣସି ରୁମ୍‌କୁ ଯିବାର ଦରକାର ନାହିଁ। ସେ ରୁମ୍‌ରେ ଖଟ, ଟେବୁଲ୍, ବେଞ୍ଚ, ଚୌକି ଇତ୍ୟାଦି ସବୁ ଥିଲା। ପିଲାଙ୍କୁ ପଚାରିଲି ହଷ୍ଟେଲ୍‌ର ଚାକର କାହିଁ? ପିଲାଏ ମୋ ପାଖରୁ ଚାଲିଗଲା ପରେ ଗୋଟାଏ ବଡ଼ ଆଉ ଗୋଟାଏ ସାନ ଏମିତି ଯୋଡ଼ାଏ ମାଇଚିଆ ଚାକର ଆସି ମୋତେ ଓଳଗି ହେଇ ହାତ ଯୋଡ଼ି ଜଣେଇଲେ, ବାବୁ ଆମେ ଏଠି ୫ ବର୍ଷ ହେଲା ମା, ଝିଅ ହେଇ ଚଳୁଛୁ। ମୁଁ ହସ ଚାପି ରଖି ଭାବିଲି, ସର୍ବନାଶ। ପିଲାଙ୍କ ଭିତରେ ଏ ଯୋଡ଼ାଏ ମାଇଚିଆ ଚାକର କେମିତି ରହିଛନ୍ତି? କାରଣ ମାଇଚିଆ ଲୋକଗୁଡ଼ା ଭଲ କାମ କରନ୍ତି। କିନ୍ତୁ ଅନେକ ଦୁଷ୍କର୍ମରେ ଲିପ୍ତ ଥାନ୍ତି। ଖଚ ଚୁଗୁଲି କରିବା ତାଙ୍କର ପ୍ରଧାନ ଗୁଣ।

ମୁଁ ଅଳ୍ପ ସମୟ ପରେ ବେଶ ଭୂଷା ହେଇ ସ୍କୁଲକୁ ବାହାରିଲି। ହେଡ଼ମାଷ୍ଟରଙ୍କ ସଙ୍ଗେ ଦେଖା କରି ମୋର joining report ଦବା ପାଇଁ। ହଷ୍ଟେଲରୁ ବାହାରି ସ୍କୁଲକୁ ଯାଉ ଯାଉ ସ୍କୁଲ କୋଠାକୁ ଅନେଇ ଭାବିଲି ବାବା ମୋର ଏଇଠି ମାଇନର ପରୀକ୍ଷା ଦେଇଥିଲେ। ଏକଥା ମୁଁ ବାବାଙ୍କଠାରୁ ଶୁଣିଥିଲି ଯେ ବାବା କେନ୍ଦ୍ରାପଡ଼ା ହାଇସ୍କୁଲରେ ମାଇନର ପରୀକ୍ଷା ଦେଇଥିଲେ।

ହେଡ଼ମାଷ୍ଟରଙ୍କ ରୁମ୍‌କୁ ଯାଇ ନମସ୍କାର ଜଣେଇ ନିଜର ପରିଚୟ ଦେଲି। ଅନେକ କଥାବାର୍ତ୍ତା ହେଲା। ହେଡ଼ମାଷ୍ଟର ଭାବିଲେ, ମନି ଗୁହ ମୋତେ appoint କରିଥିବା ହେତୁ ମୋ ଘର ବୋଧେ ବଙ୍ଗ ଦେଶରେ କି କ'ଣ।

ମୋତେ ଘର କେଉଁଠି ବୋଲି ପଚାରିଲେ। ମୁଁ କହିଲି ଘର ହେଲା ଆମ ଅସୁରେଶ୍ୱର ଦାକ୍ଷିତପଡ଼ା। ଗୌରୀଶଙ୍କର ରାୟଙ୍କ ନାଁ ଶୁଣିଥିବେ। ମୁଁ ତାଙ୍କ ପୁତୁରା। ଖେଳ କଥା ପଡ଼ିଲା। ମୁଁ ପଚାରିଲି ଏଠି football ଖେଳ ପାଇଁ ପଡ଼ିଆ କେଉଁଠି? ମୁଁ ପ୍ରଥମେ ଯାକୁ ବଡ଼ ଜଳାଶୟ ବୋଲି ଦୂରରୁ ଦେଖି ଭାବିଥିଲି। ହେଡ଼ମାଷ୍ଟ୍ରେ ତାକୁ ହିଁ ହାତ ଦେଖେଇ କହିଲେ ଏଇଟ football field, ବର୍ଷା ପାଣି ପଶି ପୋଖରୀ ପରି ଦି'ଛି। ଏଥିରେ କଣ football ଖେଳିବେ? କାହିଁକି ସେ ସବୁରେ ମାତିବେ? ମୁଁ କହିଲି ଖେଳ ନହେଲେ ମୁଁ ରହି ପାରିବି ନାହିଁ। ମୁଁ ଭଲ ଭାବରେ ଅନେଇ ଦେଖିଲି, ପଡ଼ିଆର ଦୁଇ ପାଖରେ goal post ପୋତା ହେଇଛି। ମୁଁ ହେଡ଼ମାଷ୍ଟରଙ୍କୁ କହିଲି ମୁଁ ଭାବିଥିଲି ଏ ଗୋଟାଏ ପୋଖରୀ। ହଉ, ବର୍ତ୍ତମାନ ପାଣି ପଶିଛି। ପୁଣି ବର୍ଷା ପରେ ଶୁଖି ଯିବ ନାହିଁ, ସେତେବେଳକୁ ଖେଳ ହବ।

ଏମିତି ଅନେକ କଥା ପଡ଼ିବା ପରେ ସ୍କୁଲର ଦପ୍ତରୀ ନାଁ ନୀଳା ଆଣି ହାଜରା ଖାତା ଦେଖେଇଲା। ଯେତେବେଳେ ସେ ମୋତେ ଖାତା ଦେଖାଏ, ତା'ଡ଼ାଆଣ ହାତ କହୁଣିରେ ବାଁ ହାତକୁ ଲଗେଇ ଖାତା ବଢ଼େଇ ଦେଲା। ମୁଁ ଭାବିଲି ଏହାର ଡ଼ାଆଣ ହାତ କହୁଣିରେ କିଛି ଜଖମ ଥିବା ଯୋଗୁଁ ଏ ଅତି କଷ୍ଟରେ ଏମିତି ଭାବରେ ମୋତେ ଖାତା ଦେଖଉଛି। ଖାତାରେ ସମୟ ପକେଇ ନାଁ ଦସ୍ତଖତ କଲାରୁ ନୀଳା ଖାତା ନେଇ ଯାଉ ଯାଉ ହେଡ଼ମାଷ୍ଟ୍ରେ ନୀଳାକୁ କହିଲେ, ନୀଳା, ଡାକ୍ତର ବାବୁଙ୍କୁ ଗୋଟାଏ ଭଲ ହୋଟେଲ୍‌କୁ ନେଇ ଯା, ସେ ଖାଇବେ। ହେଡ଼ମାଷ୍ଟ୍ରେ ପୁଣି ମୋତେ କହିଲେ, ଆଜିତ ପ୍ରଥମ ଦିନଟା, ଆଜି ଆଉ କଣ କାମ କରିବେ। ଆପଣ ଆଜି ଦିନଟା ବିଶ୍ରାମ ନିଅନ୍ତୁ କାଲିଠୁଁ କାମ କରିବେ।

ନୀଳା ମୋତେ ସାଙ୍ଗରେ ନେଇ ସ୍କୁଲ ନିକଟ ମ୍ୟୁନିସିପାଲିଟି ହତା ଭିତରେ ଥିବା ଗୋଟିଏ ହୋଟେଲକୁ ନେଲା। ହୋଟେଲ୍‌କୁ ସମସ୍ତେ "ହରିଆ ନନା' ହୋଟେଲ ବୋଲି କହନ୍ତି। ହୋଟେଲ୍ ବେଶ୍ ପରିଷ୍କାର ପରିଚ୍ଛନ୍ନ। ରୋଷେଇ ଚମତ୍କାର। ଭାତ, ଡାଲି, ମାଂସ, ସାଧା ତରକାରୀ, ଭଜା ଇତ୍ୟାଦି ବାବଦରେ ମୋତେ ଦେୟ ପଡ଼ିଲା ମାତ୍ର ତିନି ଅଣା ଅର୍ଥାତ୍ ଆଜିକାଲି ହିସାବରେ ନୂଆ କୋଡ଼ିଏ ପଇସା। ସେତେବେଳେ କେନ୍ଦ୍ରାପଡ଼ାରେ ଟଙ୍କାକୁ ଚାଉଳ ୮ ସେର। ସେହି ଅନୁପାତରେ ସବୁ ଜିନିଷର ଦରଦାମ୍ କମ୍ ଥାଏ। ମୁଁ ହୋଟେଲ୍‌ରେ ଖାଇସାରି ନୀଳାକୁ ବିଦାୟ କରି ଦେଇ ଅଳ୍ପ ଦୂରରେ ବସ୍‌ଷ୍ଟାଣ୍ଡକୁ ଯାଇ ବୁଲାବୁଲି କରି ହଷ୍ଟେଲ୍‌କୁ ଫେରି ମୋର ରୁମ୍ ଖୋଲି ନିଜର ବିଛଣାପତ୍ର ସବୁ ବିଛେଇ ଶୋଇଲି।

ବାବା, ମା ଓ ସାନ ଭାଣିଜୀଟି କଥା ମନେ ପଡୁଥାଏ । ନିଦ ହେଲା ନାହିଁ, ସ୍କୁଲର ଅନ୍ୟାନ୍ୟ ଶିକ୍ଷକଙ୍କ ସଙ୍ଗେ ପରିଚୟ ହେଇ ପାରିଲା ନାହିଁ । କିଏ କୁଆଡ଼େ ସବୁ କ୍ଲାସକୁ ଯାଉଥିଲେ । ପିଲାମାନଙ୍କ ସଙ୍ଗେ ମଧ ଭେଟ ହେଇ ନଥାଏ । ସେମାନେ ସ୍କୁଲକୁ ଯାଇଥାନ୍ତି । ହଷ୍ଟେଲ ନିରବ । ଏଇ ସମୟରେ ଆମର ଜଣେ ଋଇତ ନାଁ ନାରାୟଣ ସିଂ ଆମେ ତାକୁ "ପାଣ୍ଡୁଦା" ବୋଲି ଡ଼ାକୁ । ସେ ସେଠି P.W.D. ର ଚପରାସୀ କାମ କରୁଥିଲେ । ମୁଁ ଆସିଛି ବୋଲି ଖବର ପାଇ ତାଙ୍କର ସାନଭାଇର ଗୋଟିଏ ପୁଅକୁ ଧରି ମୋତେ ଦେଖା କରିବାକୁ ଆସି ପହଁଚିଲେ । ପାଣ୍ଡୁଦା ମୋତେ ପିଲାବେଳଠୁଁ କାଖକୋଳ କରି ଅନେକ ଆଦର ଯତ୍ନ କରିଥିଲେ । ତାଙ୍କ ସହିତରେ ଅନେକ ଦିନ ପୂର୍ବେ ଦେଖା ହୋଇଥିଲା । ସେତେବେଳେ ମୁଁ ଅତି କ୍ଷୀଣକାୟ ଥିଲି । ଏବେ barball ଇତ୍ୟାଦି ସାହାଯ୍ୟରେ ବ୍ୟାୟାମ କରି ପ୍ରକାଣ୍ଡ ବଳିଷ୍ଠ ସ୍ୱାସ୍ଥ୍ୟ ହବାର ଦେଖି ପାଣ୍ଡୁଦା ମୋ ରୁମ୍ ଭିତରକୁ ପଶି ଆସି ମୋତେ ହଠାତ୍ ଯେମିତି ନ ଚିହ୍ନିଲା ପରି ହେଲେ, ଯେମିତି ଭାବିଲେ ଆଉ କିଏ । ମୁଁ ବୁଝିପାରି ତାକୁ ଆଗେ କହିଲି କ'ଣ ପାଣ୍ଡୁଦା ଏଇଠି ଅଛକି? ଆସ । ପାଣ୍ଡୁଦା ଘର ଭିତରକୁ ଆସି ଅନେକ କଥାବାର୍ତ୍ତା କରିଗଲେ ।

ହଷ୍ଟେଲ୍ ପିଲାମାନେ ସ୍କୁଲ ଛୁଟି ପରେ ଗୋଟିଏ ଗୋଟିଏ ହଷ୍ଟେଲ୍ ଭିତରେ ପ୍ରବେଶ କଲେ । ହଷ୍ଟେଲ୍ ଭିତରେ ଦି'ସାହାଲା କୋଠା ଘର । ଉତ୍ତର ପାଖେ north block, ଦକ୍ଷିଣ ପାଖେ south block, ପୂର୍ବ ଆଡ଼େ hostel superintendent ରହିବା ପାଇଁ ବଖରାଏ ଘର, ରୋଷେଇ ଘର, ଖାଇବା ଘର, ତାର ଅଳ୍ପ ଦୂରରେ କୂଅ, ପାଇଖାନା, ପରିଶ୍ରାଗାର, ପାଇଖାନାରେ ଅନେକଗୁଡିଏ କୋଠରୀ । Superintendentଙ୍କ ରୁମ୍ ସାମନାରେ ଗୋଟିଏ ପକ୍କା ପିଣ୍ଡି ତାର ଗୋଟିଏ ପାଖରେ ଗୋଟିଏ ପକ୍କା ନାରୀ ମୂର୍ତ୍ତି ମୁଣ୍ଡ ଉପରେ ତୁଳସୀ ଚଉରା । ପଶ୍ଚିମ ଆଡ଼େ ହଷ୍ଟେଲର ପ୍ରଧାନ ଦରଜା, ସ୍କୁଲ କୋଠା ହଷ୍ଟେଲ୍ ଭିତରକୁ ପ୍ରାୟ ଦେଖା ଯାଉଛି । ସ୍କୁଲ ସାମନା ଏବଂ ହଷ୍ଟେଲ୍ ସାମନାରେ ପଡ଼ିଆ ଏବଂ ସେଥିରେ କେତେ ଗୁଡିଏ ଆମ୍ବ ଗଛ, ସ୍କୁଲ ଏବଂ ହଷ୍ଟେଲ୍‌ର ପୂର୍ବ ପଟେ ମୁସଲ୍‌ମାନ ବସ୍ତି, ହିନ୍ଦୁଙ୍କ ଘର ଅଛି ।

ହଷ୍ଟେଲ୍ ପିଲାଙ୍କ ଭିତରୁ କେତେକ ଆସି ମୋତେ ଦେଖା କରି ନମସ୍କାର କଲେ । କେତେକ ଲଜ୍ଜା ଏବଂ ଭୟରେ ମୋତେ ଦେଖା ଦେଲେ ନାହିଁ । ସନ୍ଧ୍ୟା ପୂର୍ବରୁ ଜଣେ ପିଲା ଆସି ମୋତେ ପାଞ୍ଚଟି ପଇସା ମାଗିଲା । ମୁଁ କାରଣ ପଚାରିବାରୁ ସେ କହିଲା ଯେ ଦୈନିକ ଏମିତି ପ୍ରତ୍ୟେକଙ୍କଠୁଁ ପାଞ୍ଚ ପଇସା ଆଦାୟ ହୁଏ । ସେଇଥିରେ ବଜାର ସଉଦା ହୁଏ, ସେଇଥିରେ ରନ୍ଧା ହୁଏ, ସମସ୍ତେ ଖାନ୍ତି । ମୋର ପୂର୍ବ superintendent ଶ୍ରୀରାମ ଚନ୍ଦ୍ର ମହାନ୍ତି Asst. Headmaster ଏ ବ୍ୟବସ୍ଥା କରିଛନ୍ତି । କେବଳ ପୂଜାରୀ ଖାଏ ନାହିଁ । ସେ ରୋଷେଇ କରି ପିଲା ଏବଂ superintendent ଙ୍କୁ ଖାଇବାକୁ ଦେଇ ଚାଲି ଯାଏ । ସେ ଦି'ଭାଇ, ଜଣେ ନଆସିଲେ ଆଉ ଜଣେ ଆସେ । ରୋଷେଇରେ କିଛି ଅସୁବିଧା ହୁଏନା । ଚାକର ଦି'ଜଣ ଶେଷରେ ତାଙ୍କ ହାତରେ ବାଢ଼ିଖାନ୍ତି । ମୁଁ ପାଞ୍ଚଟି ପଇସା ଦେଲି । ମନେ ମନେ ସ୍ଥିର କଲି ଏ ବ୍ୟବସ୍ଥା ବଦଳେଇବାକୁ ହବ । ଅଭିକା ଇମିତି ଦିନେ ଦି'ଦିନ ଚାଲୁ ବର୍ତ୍ତମାନ ତ ମୁଁ ନୂଆ ।

ସନ୍ଧ୍ୟା ପରେ ମୁଁ ମୋ ରୁମ୍‌ରୁ ବାହାରି ଯାଇ ସେ ଚଉରା ପାଖ ପକ୍କା ପିଣ୍ଡି ଉପରେ ବସିଲି, ଜହ୍ନ ପଡ଼ିଥାଏ । ପିଲାମାନେ ଏପଟ ସେପଟ ହଉଥାନ୍ତି । ଗୋଟିଏ ପିଲା ମୋ ସାମନା ଦେଇ ପାଇଖାନାକୁ ଗଲାବେଳେ ଦେଖିଲି ମୋର ଅଳ୍ପ ଦୂରରେ ଠିଆ ହେଇ ଲଣ୍ଠନରେ ବିଡ଼ି ଲଗେଇ ଗଲା । ମୁଁ ଦେଖି ଅବାକ ହେଲି । ଏଠି ଇମିତିଆ ପିଲା ଅଛନ୍ତି । କେବେ ତ ଘର ଛାଡ଼ି ବାହାରେ ରହି ନଥିଲି । ଆଜି ପ୍ରଥମ ଦିନ ବାବା, ମା'ଙ୍କୁ ଛାଡ଼ି ବାହାରେ ରହିବା । ଏଣୁ ବାବା, ମା, ଭାଣିଜୀ ଲାଗି ମନବ୍ୟସ୍ତ ଲାଗୁଥାଏ ।

ରାତିରେ ଖାଇବାର ବେଳ ହେଲାରୁ ଘଣ୍ଟା ବାଜିଲା । ଘଣ୍ଟା ଜଣେ ପିଲା ବଜେଇଲା । ଘଣ୍ଟା ଶୁଣି ପିଲାମାନେ north block, south block ଉଭୟ ପଟୁ ରୋଷେଇ ଘର ନିକଟ dining hall କୁ ଆସିଲେ । ଦୁଇ ଧାଡ଼ିରେ ବସିଲେ । ପୂଜାରୀ ପରିବେଷଣ କଲା । ମୋର ଖାଇବା ଜିନିଷ ମୋ ରୁମ୍‌ରେ ପୂଜାରୀ ଆଣି ଦେଇଗଲା ।

ମୋ ଖାଇବା ଜିନିଷ ହେଲା ଭାତ, ଡାଲି, ସାଧା ତରକାରୀ ଆଉ ଭଜା, ଭରତା। ମୁଁ ଖାଇ ଭାବି ସ୍ଥିର କଲି ଏ ଖାଇବା ବଦଳେଇବାକୁ ହବ। ବର୍ତ୍ତମାନ ଦୈନିକ ପ୍ରତ୍ୟେକଙ୍କଠୁଁ ୫ଟି ପଇସା ଆଦାୟ ହବ। ସେଇଥିରେ ରୋଷେଇ ହବ। ପୁଣି ପିଲାଙ୍କ ଦ୍ୱାରା ସବୁ ହବ। ଏ କେମିତି ଭଲ ରୋଷେଇ ଆଶା କରାଯିବ?

ସ୍କୁଲରେ ମୋତେ କ'ଣ କ'ଣ କାମ କରିବାକୁ ହବ କ୍ରମେ ସ୍ଥିର ହେଲା। ମାଇନର କ୍ଲାସ ଗୁରାକରେ ସ୍ୱାସ୍ଥ୍ୟ ରକ୍ଷା, ଇଂରାଜୀ, ଓଡ଼ିଆ ସାହିତ୍ୟ, ଡ୍ରଇଂ ଇତ୍ୟାଦି ପଢ଼େଇବି ଆଉ ସ୍କୁଲ ପିଲାଙ୍କର ସ୍ୱାସ୍ଥ୍ୟ ଦେଖିବି, ଖେଳର ଯତ୍ନ ନେବି ଏବଂ ହଷ୍ଟେଲ୍ ପରିଚାଳନା କରିବି ଆଉ ହଷ୍ଟେଲ୍ ଛାତ୍ରମାନଙ୍କର ଖାଦ୍ୟପେୟ ଏବଂ ରୋଗ ପ୍ରତି ଦୃଷ୍ଟି ରଖିବି।

ମୁଁ ପିଲାଙ୍କୁ ପଢ଼େଇବାକୁ ଭଲ ପାଏ। ଏଣୁ ଏଠି ପିଲାଙ୍କୁ ପଢ଼େଇବା ପାଇଁ ମୋତେ ଭାରି ଭଲ ଲାଗିଲା। ଖେଳତ ମୋର ଅତି ପ୍ରିୟ ଜିନିଷ। ଏଠି ଖେଳର ଭାର ମୋରି ଉପରେ। ଏ ତ ଅତି ଆନନ୍ଦର କଥା। କିନ୍ତୁ ଡାକ୍ତରୀ ପାଠ ପଢ଼ି ଡାକ୍ତରୀ କରିବାର ଏ ଚାକିରିରେ ସୁବିଧା ନାହିଁ। କାରଣ ପିଲାଙ୍କ ଭିତରୁ କିଏ କେବେ କେମିତି ଗୋଟାଏ ବେମାର ପଡ଼ିବ, ତାକୁ ଚିକିତ୍ସା କରିବି। ଏ କୋଉ ରୋଗୀ ଚିକିତ୍ସା? ଦୈନିକ ୬୦, ୭୦ କି ୧୦୦ ଖଣ୍ଡେ ରୋଗୀ ନ ଘାଣ୍ଟିଲେ ମନ ଭଲ ଲାଗେ ନାହିଁ। ହଉ, ଆସିଛି ତ କେତେଦିନ ଏ ଚାକିରି କରେ ପରେ ଦେଖାଯିବ। ଆନନ୍ଦରେ ରହିଲି। କେବଳ ବାବା, ମା, ଭାଣିଜାଟିକୁ ଛାଡ଼ି ରହିବା ମୋର ସେଠି ଗୋଟିଏ ମାତ୍ର ଦୁଃଖର କାରଣ ହେଉଥାଏ।

ମାଇନର କ୍ଲାସରେ ପଢ଼େଇବାକୁ ଗଲା ବେଳକୁ ସାନ ସାନ ପିଲାଗୁଡ଼ିକୁ ଦେଖି ଭାରି ଆନନ୍ଦ ଲାଗେ। ତାଙ୍କର କଥା, ତାଙ୍କର ଦୁଷ୍ଟାମୀ, ତାଙ୍କର ଚାଞ୍ଚଲ୍ୟ ସବୁହିଁ ଆନନ୍ଦର ସାମଗ୍ରୀ। ଡ୍ରଇଂ ମୋତେ ୯ମ ଶ୍ରେଣୀ ଯାଏ ନବାକୁ ହଉଥିଲା। ମୋର ତ ପିଲାବେଳୁଁ ଛବି ଅଙ୍କା ଆଗ୍ରହ ଥିଲା। ଏଣୁ ମୋତେ ପିଲାଙ୍କୁ ଡ୍ରଇଂ କରେଇବା ଭାରି ଭଲ ଲାଗିଲା।

ଏଥି ମଧ୍ୟରେ ଦିନେ ସନ୍ଧ୍ୟା ପରେ ମୋର ପୂର୍ବବର୍ତ୍ତୀ superintendent ଥିଲେ ଶ୍ରୀରାମ ଚନ୍ଦ୍ର ମହାନ୍ତି, ତାଙ୍କୁ farewell ଦବାର ବ୍ୟବସ୍ଥା ପିଲାଏ କରି ମୋତେ ଏବଂ ରାମ ବାବୁ ଉଭୟଙ୍କୁ ନିମନ୍ତ୍ରଣ କଲେ। ରାମ ବାବୁଙ୍କୁ ବିଦାୟ ଦିଆଗଲା। ମୁଁ superintendent ହେଇ ରହିଲି। ରାମ ବାବୁ ସ୍କୁଲର Asst. Headmaster ଏଣେ ପୁଣି ହଷ୍ଟେଲ୍ ଦାୟିତ୍ୱରେ ଥିଲେ। ମୁଁ ତ ନିଜେ ଛନ୍ନଛଡ଼ା, ମୁଁ ପୁଣି ୪୦ଟା ପିଲାଙ୍କର ଅଭିଭାବକ ରୂପେ ସେଠା ଦାୟିତ୍ୱରେ ରହିଲି। ମୋତେ କିଛି ଜଣା ନଥାଏ। ମେସ୍ କେମିତି ଚଳେ? ମେସ୍‌ରେ ତ କେଭେ ରହି ଚଳି ନାହିଁ। କେବଳ ଦେଖିଛି କଟକରେ ମେଡ଼ିକାଲ ଛାତ୍ର କେତେକ ମେସ୍ କରି ରହି ଚଳୁଥିଲେ। କମ୍ପାଉଣ୍ଡରୀ ପିଲାଏ ମେସ୍ କରି ରହି ଚଳୁଥିଲେ। ମୁସ୍‌ଲିମ୍ ସେମିନାରୀରେ ମ୍ୟାଟ୍ରିକ୍ ପଢ଼ିବା ବେଳେ କେତେକ ଛାତ୍ର ମେସ୍‌ରେ ରହି ପଢୁଥିଲେ। ଯେମିତି କନିକା ମେସ୍, ଖୋର୍ଦ୍ଧା ମେସ୍, ଖଣ୍ଡପଡ଼ା ମେସ୍, ଦଶପଲ୍ଲା ମେସ୍ ଇତ୍ୟାଦି। ସେଥିରେ ଛାତ୍ରମାନଙ୍କ ଭିତରେ ଜଣେ ଜଣେ ଶିକ୍ଷକ ରହି ମେସ୍ ପରିଚାଳନା କରନ୍ତି। ମୋତେ ସେମିତି କରିବାକୁ ହବ। ଏଣୁ ଦିନେ ସନ୍ଧ୍ୟା ପରେ ସବୁ ପିଲାଙ୍କୁ ଡାକିଲି। ସେମାନଙ୍କୁ କହିଲି, ଆଜି ତୁମମାନଙ୍କର ଖାଇବା ପିଇବା ଇତ୍ୟାଦି କେମିତି ଭଲ ଭାବରେ ହବ ସେହି ବିଷୟରେ ଆଲୋଚନା କରି ଠିକ୍ କରିବା। ପିଲାମାନେ ବେଶ୍ ସଂଯତ ହେଇ ବସିଲେ। ଅନେକ ପ୍ରକାରର ଆଲୋଚନା ପରେ ସ୍ଥିର ହେଲା ପ୍ରତ୍ୟେକ ମାସରେ ମେସ୍ ପରିଚାଳନାର ଭାର ନୂଆ ନୂଆ ପିଲାଙ୍କୁ ଦିଆଯିବ। ପିଲାଙ୍କ ଭିତରୁ ଜଣକ ପାଖରେ ଟଙ୍କା ରହିବ, ପିଲାଏ ଭୋଟ ଦେବେ, କିଏ କୋଷାଧ୍ୟକ୍ଷ ହେବ। ଦୁଇଜଣ ପିଲା ପ୍ରତ୍ୟେକ ଦିନ ମାର୍କେଟିଂ ଲାଗି ଯିବେ। ଯାହା ସଉଦା କିଣା ହବ, ତାର ଦୁଇ ଖଣ୍ଡ ତାଲିକା ଯିଏ ମେସ୍‌ର ମ୍ୟାନେଜର ସେ ପ୍ରସ୍ତୁତ କରି ଦବ। ମାର୍କେଟିଂ କରି ଆସିଲେ ଖଣ୍ଡେ ତାଲିକା ମ୍ୟାନେଜରକୁ ଦେବେ ଆଉ ଖଣ୍ଡେ ତାଲିକା ମୋତେ ଦେବେ। କୋଷାଧ୍ୟକ୍ଷଠାରୁ ଯେତେ ଟଙ୍କା ମାର୍କେଟିଂ ଲାଗି ନେବେ, ତାର ସେମିତି ଦୁଇ ଖଣ୍ଡ ଚିଠା ହବ, ଖଣ୍ଡେ ଚିଠା କୋଷାଧ୍ୟକ୍ଷ ରଖିବ ଖଣ୍ଡେ ଚିଠା ମୋ ପାଖରେ

ରହିବ। ମ୍ୟାନେଜର ଖାତାରେ ଲେଖି ରଖିବ କିଏ କେଇଟା ମିଲ୍ ଖାଇଲା, ନଖାଇଲା। ପ୍ରତ୍ୟେକ ମାସରେ ପ୍ରତ୍ୟେକ ପିଲା ପାଞ୍ଚ ଥରରେ ପାଞ୍ଚ ଟଙ୍କା ଦେବେ, ଯିଏ ନଦେବ ତା'ର ମିଲ୍ ବନ୍ଦ କରି ଦିଆଯିବ ଏବଂ ତା'ଠାରୁ ପ୍ରାପ୍ୟ ଟଙ୍କା ଆଦାୟ କରିବାର ବ୍ୟବସ୍ଥା କରାଯିବ।

ମେସ୍ ସୁରୁଖୁରୁରେ ଚାଲିଲା। ମାସରେ ୧୬, ୧୭ ଥର ମାଛ ତରକାରୀ ହେଲା। ଆଉ ଚାରି, ପାଞ୍ଚ ଥର ମାଂସ ତରକାରୀ ହେଲା। ସେତେବେଳେ କେନ୍ଦ୍ରାପଡ଼ାରେ ମାଂସ ସେର ୧ଟଙ୍କା ୨୫ ପଇସା, ମାଛ ସେର ୨ ଅଣା ମାତ୍ର। ଯେଉଁ ଟଙ୍କା ଆଦାୟ ହେଲା, ସେଇଥିରୁ ପିଲାଙ୍କ ଖାଇବା ଖର୍ଚ୍ଚ ଯାଇ, ପୂଜାରୀ, ଚାକର ତାଙ୍କର ଦରମା ପାଇଲେ। ଅତି ଆନନ୍ଦରେ ମେସ୍‌ରେ ଖାଇବା ପିଇବା ଚାଲିଲା। ପିଲାଏ dining room ରେ, କେବେ କେବେ ବାରନ୍ଦାରେ ଖାଆନ୍ତି। ମୁଁ ମୋ ରୁମ୍‌ରେ ଖାଏ। ପିଲାଙ୍କୁ ତରକାରୀ ଇତ୍ୟାଦି ଯାହା ଦିଆଯାଏ, ତାଠାରୁ ଅଧିକା ମୋତେ ଦିଆଯାଏ। ଏ ଧରଣର ପରସା ମୋତେ ଭଲ ଲାଗିଲା ନାହିଁ। ଏଣୁ ମୁଁ ଥରେ ପୂଜାରୀକୁ କହିଲି ମୋତେ ତରକାରୀପତ୍ର ଏତେ ବେଶି ବେଶି କାହିଁକି ଦଉଛ? ପିଲାଙ୍କର ଅଭାବ ପଡ଼ିବ। ପୂଜାରୀ କହିଲା ଯେ superintendent ହେବେ ତାଙ୍କୁ ଏମିତି ଅଧିକା ଦବାର ଏଠି ପ୍ରଚଳନ ଅଛି।

ଚାକର, ପୂଜାରୀଙ୍କ ପ୍ରତି ପିଲାଏ ଯେମିତି ଭଲ ବ୍ୟବହାର କରନ୍ତି, ସେଥିପ୍ରତି ମୁଁ କଡ଼ା ଦୃଷ୍ଟି ରଖିଥାଏ। ତଥାପି ପିଲାଙ୍କର ଚାକରଙ୍କ ପ୍ରତି ମନ୍ଦ ବ୍ୟବହାରର ଘଟଣା ଦେଖି ମୁଁ ତାର ପ୍ରତିକାର କରିଛି। ଯେମିତି ଯେଉଁଦିନ ମେସ୍‌ରେ ମାଂସ ତରକାରୀ ହୁଏ, ସେଦିନ ପିଲାଏ ଭାରି ଉତ୍‌ଫୁଲ୍ଲ ହେଇ ପଡ଼ନ୍ତି। ଚାକର ଦି'ଜଣ ମଧ୍ୟ ଉତ୍‌ଫୁଲ୍ଲ ହେଇ କାମ କରନ୍ତି। କାରଣ ଆଜି ମାଂସ ତରକାରୀ ଖାଇବେ। କିନ୍ତୁ ଦେଖିଲା ବେଳକୁ ଚାକରଙ୍କ ଖାଇବା ପାଇଁ ମାଂସ ତରକାରୀ ନାହିଁ। ପିଲାଏ ତାଙ୍କ ଭାଗ ଲୁଚେଇ ଖାଇ ସାରିଲେଣି। ଚାକର ଦି ଜଣ ଆସି ମୋ ପାଖରେ କାନ୍ଦ କାନ୍ଦ ହେଇ ଆପତ୍ତି କରନ୍ତି। ଏଥିପାଇଁ ପିଲାଙ୍କୁ ମୁଁ ଅତି ନିଷ୍ଠୁର ଭାବରେ ଗାଳି ଗୁଲଜ କରେ। ପରେ ଠିକ୍ କଲି ମାଂସ ରନ୍ଧା ସରିଲେ ଚାକରଙ୍କ ଭାଗ ଆଗେ ଚାକରଙ୍କୁ ଦେଇ ଦିଆଯିବ। ସେମାନେ ତାଙ୍କ ଦାୟିତ୍ୱରେ ତାଙ୍କ ତରକାରୀ ରଖିବେ। ଆଉ ଏମିତି ଘଟଣା ପରେ ହେଲା ନାହିଁ। ମାଂସ ଯେଉଁଦିନ ହୁଏ ସେଦିନ ୫/୬ସେର ମାଂସ କିଣା ହୁଏ। ଖାଣ୍ଟି ଘିଅ ମଧ ଅଧସେର ଯାଏ କିଣା ହୁଏ ମାଂସ ତରକାରୀରେ ପଡ଼ିବା ପାଇଁ। ହଷ୍ଟେଲର ପଡ଼ୋଶୀ ଜଣେ କଂସେଇ ଆଣି ହଷ୍ଟେଲରେ ମାଂସ ଓଜନ କରି ଦେଇ ଯାଉଥିଲା। ହଷ୍ଟେଲର ଦି'ଜଣ ପୂଜାରୀ ବେଶ୍ ଭଲ ରାନ୍ଧି ପାରୁଥିଲେ। ନିଖୁଣ ରୋଷେଇ।

ମେସ୍ ତ ଠିକ୍ ଚାଲିଲା। ଏଥର ଭାବିଲି ଖେଳ ଇତ୍ୟାଦି ଟିକିଏ ଠିକ୍ କରେ କାରଣ ଚାରିଟା ପରେ ଖାଲି ବସି ରହିବାକୁ ଭଲ ଲାଗୁ ନଥାଏ। ଖେଳ ଭିତରେ football ଖେଳକୁ ବାଗେଇବାକୁ ହେବ। କିନ୍ତୁ football ଖେଳ ପଡ଼ିଆରେ ବର୍ଷା ପାଣି ଭର୍ତ୍ତି ହେଇଥାଏ। କେବଳ ସ୍କୁଲ ପଛ ପଟେ ଖଣ୍ଡେ ଛୋଟ ପଡ଼ିଆ ଥାଏ, ସ୍କୁଲ ସାମନାରେ ପଡ଼ିଆ ଥାଏ ଯେ କିନ୍ତୁ ସେଥିରେ ଆମ୍ବ ଗଛ କେତେଟା ରହି ଖେଳ ପାଇଁ ବାଧା ସୃଷ୍ଟି କରୁଥାଏ। ସେ ଯା ହଉ ମୁଁ ଠିକ୍ କଲି ବର୍ତ୍ତମାନ ସ୍କୁଲ ପଛପଟେ ଖେଳ ହଉ। କେମିତି player ଅଛନ୍ତି ମୁଁ ଆଗେ ଦେଖେ। ତାପରେ ଅନ୍ୟ ବ୍ୟବସ୍ଥା କରିବା। ଏଣୁ ଦିନେ ପିଲାଙ୍କୁ କହିଲି, ଆଜି ସ୍କୁଲ ଛୁଟି ହେଲା ପରେ football ନେଇ ଆସ, ତୁମମାନଙ୍କର ଖେଳ ମୁଁ ଦେଖିବି। ପିଲାଏ ପଚାରିଲେ ସାର୍ ପଡ଼ିଆରେ ତ ପାଣି ଭର୍ତ୍ତି ହେଇଛି, ଖେଳିବା କେଉଁଠି?

ମୁଁ କହିଲି ସ୍କୁଲ ପଛପଟ ପଡ଼ିଆରେ ଖେଳିବା। ପିଲାଏ ଆପତ୍ତି କଲେ, ସାର୍ ଏଡ଼େ ଟିକିଏ ଜାଗା ସେଠି କ'ଣ ଖେଳିବା? ମୁଁ ସେମାନଙ୍କୁ ବୁଝେଇ କହିଲି ସେଇଠି ଖେଳ ମୁଁ ଆଗ ଦେଖେ ତୁମେମାନେ କେମିତି ଖେଳୁଛ। ତା'ପରେ ପଡ଼ିଆ ଶୁଖିଲେ ସେଠି ଭଲ ଭାବରେ ଦୁଇ ଦଳ ହେଇ ଖେଳିବ। ପିଲାଏ ମୋ କଥା ବୁଝି ରାଜି ହେଲେ। ସେଇ ସ୍କୁଲ ପଛପଟ ପଡ଼ିଆରେ ବାଉଁଶରେ ଗୋଟାଏ ପଟେ goal post ପୋତା ହେଲା। ପ୍ରତ୍ୟେକ

ଦିନ ସ୍କୁଲ ଛୁଟି ହେଲା ପରେ ଖେଳ ହେଲା । ପିଲାଙ୍କ ଖେଳରୁ ମୁଁ ଦେଖିଲି ସବୁ ଜାଗାର player training ଦେଇ ଚଳେଇ ପାରିବି କିନ୍ତୁ back position ରେ ଆଉ ଜଣେ player ଦରକାର କଣ କରିବି ? ପିଲାଙ୍କୁ କହିଲି ତୁମମାନଙ୍କ ଭିତରେ back position ଖେଳିବା ଭଳି ଆଉ player କେହି ନାହାନ୍ତି । ପିଲାଏ କହିଲେ ସାର୍ ଜଣେ player back position ଖେଳିବା ଭଳି ଅଛି ଯେ ତାର heart disease ସେ ଖେଳି ପାରୁନି । ତାକୁ ଆମେ ଡାକି ଆଣିବା ଆପଣ ଦେଖନ୍ତୁ ଯଦି ଔଷଧ ତାକୁ କିଛି ଦେବେ ସେ ଖାଇ ଭଲ ହେଇଯିବ । ସେ ଭଲ back position ରେ ଖେଳି ପାରିବ ।

ମୁଁ କହିଲି, ହଉ, ତାକୁ ଡାକ ମୁଁ ଦେଖେ ତାର କଣ ହେଇଛି । ଦିନେ ସନ୍ଧ୍ୟା ପରେ ମୁଁ ମୋ ରୁମ୍‌ରେ ବସିଛି ଜଣେ ପିଲା ଆସି ମୋତେ ନମସ୍କାର ଜଣେଇବାରୁ ମୁଁ ତାକୁ ପ୍ରଶ୍ନ କରି ବୁଝିଲି ଯେ, ପିଲାଏ ଯେଉଁ back position ରେ ଖେଳିବା ପାଇଁ ଜଣେ ପିଲା କଥା କହୁଥିଲେ, ଏ ସେହି ପିଲା । ମୁଁ ଏ ପିଲାର ବେକରେ ତୁଳସୀ ମାଳି ପିନ୍ଧିବାର ଦେଖି ଏ ପିଲା back positionରେ ଖେଳିବ ମୋର ପସନ୍ଦ ହେଲା ନାହିଁ । ଯଦିଓ ପିଲାଟି ବାହାରୁ ଦେଖିବାକୁ ବେଶ୍ ବଳିଷ୍ଠ ଦେଖା ଯାଉଥାଏ ।

ପିଲା ସାଙ୍ଗରେ ଖେଳ ବିଷୟରେ ଆଲୋଚନା କରି ବୁଝିପାରିଲି ଯେ ପିଲାଟି ବେଶ୍ ଟାଣୁଆ, ଜିଦ୍‌ଖୋର, ତା'ର ମଝିରେ ମଝିରେ palpitation ହୁଏ । ଏଣୁ ସେ ଖେଳିବାକୁ ଭୟ କରେ । ମୁଁ ତା'ର ଛାତି ପରୀକ୍ଷା କରି ଦେଖିଲି, ସେମିତି କିଛି ଗୁରୁତର ବ୍ୟାଧି ନୁହେଁ । ଔଷଧ ବ୍ୟବହାର କଲେ ଭଲ ହେଇଯିବ । ମୁଁ ତାକୁ କହିଲି, ତୁମେ ଔଷଧ ଖାଅ, ଭଲ ହେଇଯିବ ।

ପିଲାଟି କହିଲା ସାର୍, ଯେତେ ଟଙ୍କା ଲାଗିବ, ମୁଁ ଆପଣଙ୍କ ହାତରେ ଟଙ୍କା ଦେବି । ଆପଣ ତ କଟକ ଯିବେ, ମୋତେ ଔଷଧ ଅଣେଇ ଦିଅନ୍ତୁ । ମୁଁ ଖାଇ ଭଲ ହେଲେ କେମିତି ଖେଳିବି । ପିଲାଟିର ନାଁ ଶଚୀନ୍ଦ୍ର ନାଥ ସାହୁ, ଖେଳିବା ପାଇଁ ଭାରି ଆଗ୍ରହ । ଡାକ ନା ଶଚୀ । ଦିନେ ଦୁଇଦିନ ପରେ ଶଚୀ ମୋ ହାତରେ ଆଣି ଟଙ୍କା ଦେଲା । ମୋର କଟକ ଯିବାର ଥାଏ ।

ଥରେ Medical School ରେ ପଢ଼ିବା ବେଳେ ମୋର ଛାତିର ଅବସ୍ଥା ଏମିତି ହେଇଥିଲା, ତତ୍କାଳୀନ ଆମର superintendent ମୋତେ ଗୋଟାଏ ଔଷଧ ଲେଖି ଦେଇଥିଲେ, ମୁଁ ତାକୁ ଖାଇ ଭଲ ହେଇଥିଲି । ମୁଁ ସେଇ ଔଷଧ ଶଚୀକୁ କଟକରୁ କିଣି ଆଣି ଦେଲି । ଶଚୀ ତାକୁ ଖାଇବାକୁ ଆରମ୍ଭ କଲା ।

କିଛିଦିନ ଶଚୀ ସେ ଔଷଧ ଖାଇବା ପରେ ସମ୍ପୂର୍ଣ୍ଣ ଭଲ ହେଇ ଉଠିଲା । ଶଚୀ ଖେଳରେ ଯୋଗ ଦେଲା । ପ୍ରକୃତ ଶଚୀ ଭଲ back । ଶଚୀଠୁଁ ବଲ୍ ଖସିବା ଅତି କଠିଣ ବ୍ୟାପାର । ମୋ ମନ ଆନନ୍ଦରେ ଭରି ଉଠିଲା । ମୁଁ ତ ଜୟରାମ ବାବୁଙ୍କ ଛାତ୍ର । ଜୟରାମ ବାବୁ playerଟିଏ ପାଇଲେ ଯେମିତି ଆନନ୍ଦିତ ହୁଅନ୍ତି, ଶଚୀକୁ ପାଇ ମୋର ଅବସ୍ଥା ସେଇଆ ହେଲା ।

ତେଣେ ସ୍କୁଲର ଖେଳ ପଡ଼ିଆରୁ ପାଣି ଶୁଖି ପଡ଼ିଆ ଖେଳୋପଯୋଗୀ ହେଇ ଆସିଲା । ଏଣେ କେନ୍ଦ୍ରାପଡ଼ା ହାଇସ୍କୁଲର ଗୋଟିଏ ଭଲ football team ଗଢ଼ିବାରେ ସବୁ position ରେ player ଯୋଗାଡ଼ କରିବାରେ ପ୍ରାୟ ସମର୍ଥ ହେଇ ଆସିଲି । କେବଳ ଏମାନଙ୍କୁ ବିଭିନ୍ନ team ସହିତରେ friendly match ଖେଳେଇ ପରଖି କାହାର କେଉଁ defect ସେଗୁଡ଼ାକ ବାଛି ତାକୁ ଚେତେଇ ବାଗକୁ ଆଣି ପାରିଲେ team ସୁଦୃଢ଼ ହେବ ।

ଅଳ୍ପଦିନ ପରେ ମୁଁ ପିଲାଙ୍କୁ ନେଇ ସ୍କୁଲର ପ୍ରକୃତ ଖେଳ ପଡ଼ିଆକୁ ଗଲି । ପିଲାଙ୍କ ଭିତରେ ଦୁଇ ଦଳ କରି ଖେଳେଇଲି । ଭାରି ମଜା ଲାଗିଲା । ମୁଁ ନିଜେ ଗୋଟାଏ ଦଳରେ ଖେଳିଲି କାରଣ ତାକୁ ଖେଳ ଶିଖେଇବାକୁ ହେବ । ନିଜେ ଗୋଟାଏ whistle ଧରି ଖେଳ ପରିଚାଳନା କରେ, ଏଣେ ଖେଳେ । କ୍ରମଶଃ ଦେଖିଲି team ଧାରାକୁ ଆସିଲା । ଜଣେ ଦି'ଜଣଙ୍କୁ ଛାଡ଼ି ଦେଲେ ପ୍ରାୟ ସବୁ ଖେଳାଳୀ ମୋର କଥା ମାନି ଖେଳିଲେ ।

କେନ୍ଦ୍ରାପଡ଼ାରେ ଅନେକ ଗୁଡ଼ିଏ football team ଥାଏ । ତାଙ୍କ ମଧ୍ୟରୁ ଅନେକ ସ୍କୁଲ team ସହିତରେ match ଖେଳିବାକୁ ଆଗ୍ରହ ପ୍ରକାଶ କରି ଦରଖାସ୍ତ ଆଣିଲେ । Headmasterଙ୍କ ସ୍କୁଲ team, friendly match ଖେଳିବାରେ ନାରାଜ । ମୁଁ headmasterଙ୍କ କଥା ନମାନି ପିଲାଙ୍କୁ friendly match ଖେଳେଇଲି । କେବେ ସ୍କୁଲ team ଜିତିଲା ତ, କେତେବେଳେ ଅନ୍ୟ team ଜିତିଥାଏ । କିନ୍ତୁ କେନ୍ଦ୍ରାପଡ଼ା Mohamedan Sporting Team ପ୍ରତିଥର ଖେଳରେ ସ୍କୁଲକୁ ହରେଇଲା । ତାକୁ ଆଉ ସ୍କୁଲ team ପିଲାଏ ଜିତି ପାରିଲେ ନାହିଁ । ମୁଁ ମନେ ମନେ ସ୍ଥିର କଲି Mohamedan Sporting Team କୁ ଯେମିତି ହେଲେ ହରେଇବାକୁ ହେବ । ଏଣୁ କିଛିଦିନ ପିଲାଙ୍କୁ ଆହୁରି ଭଲ ଭାବରେ training ଦେଇ ପୁଣି ଥରେ Mohamedan Sporting Team ସହିତରେ friendly match ଖେଳେଇଲି । ସେଥର Mohamedan Sporting Team ଆମର School team ପାଖରେ ହାରି ମୋର ପ୍ରଶଂସା କଲେ । ଯା'ହଉ doctor teacher ଜିଦ୍ କରି ପିଲାଙ୍କୁ ତାଲିମ୍ କରି ଆମକୁ ସ୍କୁଲ team ଦ୍ୱାରା ହରେଇଲେ । କିନ୍ତୁ ଗୋଟାଏ ଆଶ୍ଚର୍ଯ୍ୟ କଥା ଦେଖିଲି headmasterଙ୍କ ଅଭିପ୍ରାୟ ଯେମିତି ପିଲାଏ ନଖେଳନ୍ତୁ, football match ନହଉ । ସେ ଖେଳ ବାବଦରେ ଗୋଟିଏ ପଇସା ଖର୍ଚ୍ଚ କରିବାକୁ ନାରାଜ । ଏଣେ ଶୁଣିବାକୁ ପାଇଲି ସ୍କୁଲର game fundରେ ୧୨୦୦ଟଙ୍କା ଥାଏ । ପିଲାଙ୍କ ଆଡୁ ମଧ୍ୟ ଅଭିଯୋଗ ଶୁଣିଲି ଯେ headmaster କେଉଁ sports ଦିଗରେ ପଇସାଟିଏ ଖର୍ଚ୍ଚ କରୁ ନାହାନ୍ତି । କିନ୍ତୁ ଆମଠୁଁ ଏଣେ game fee ନିଆ ହଉଛି । ଏହାର ରହସ୍ୟ କଣ ବୁଝା ପଡୁ ନଥାଏ । ମୁଁ ଦେଖିଲି football match ଯୋଗୁଁ ସେ କିଛି ଖର୍ଚ୍ଚ କରିବାକୁ ନାରାଜ । ଏଥିଯୋଗୁଁ ଥରେ headmaster ଙ୍କ ସହିତରେ ମୋର ଖୋଲାଖୋଲି କଳହ ହେଲା । ମୁଁ ତାଙ୍କୁ ଧମକ ଦେଇ କହିଲି, ମୁଁ ଦେଖିବି ଆପଣ କେମିତି game ଆଉ sports ଦିଗରେ ଖର୍ଚ୍ଚ ନକରିବେ । Inspectorଙ୍କ inspection ବେଳେ ଆପଣଙ୍କର ମୋର କଥାବାର୍ତ୍ତା ହବ ।

ଏହାପରେ କଣ ହେଲା, ସେ କେଉଁ game ଆଉ sports ଦିଗରେ ଖର୍ଚ୍ଚ କରିବାକୁ କୁଣ୍ଠାବୋଧ କରି ନାହାନ୍ତି । ଯେଉଁଥିରେ ଯାହା ଖର୍ଚ୍ଚ କରିବାକୁ ପଡ଼ିଛି, ଖର୍ଚ୍ଚ କରିଛନ୍ତି । ଲୋକଟା ଅଦ୍ଭୁତ ଧରଣର । ପିଲାଏ ଖାଲି ପାଠ ପଢ଼ିବେ ।(ପାଠ ତ ଯାହା ପଢ଼ା ହଉଥାଏ) ଆଉ କିଛିରେ ଯୋଗ ଦେବେ ନାହିଁ, ଖେଳିବେ ନାହିଁ, ବ୍ୟାୟାମ କରିବେ ନାହିଁ, ଲେଖାଲେଖି କରିବେ ନାହିଁ, ସ୍କୁଲରେ sports ହବ ନାହିଁ, ଫୁଟବଲ୍ ଟିମ୍ ଗଢ଼ା ହବ ନାହିଁ । ପିଲାଏ ବାହାରକୁ ଖେଳିବାକୁ ଯିବେ ନାହିଁ, ସ୍କୁଲରେ ମ୍ୟାଗାଜିନ୍ ବାହାରିବ ନାହିଁ । ପିଲାଙ୍କୁ ଅନ୍ଧାରୀ ମୂଳକରେ ରଖିଲା ଭଳି ରଖା ହେଉଥିବେ, ସ୍କୁଲକୁ ଯାହା ମ୍ୟାଗାଜିନ କି ପତ୍ରିକା ଆସିବ ପିଲାଏ ପଢ଼ିବାକୁ ସୁବିଧା ପାଇବେ ନାହିଁ । ସ୍କୁଲକୁ କୌଣସି ସାହିତ୍ୟ ପତ୍ରିକା ତ ଆସେ ନା କେବଳ ଖବରକାଗଜ ଭିତରେ ଇଂରାଜୀ Statesman, ଓଡ଼ିଆ ସମାଜ ଆସୁଥିଲା ।

ବାବା, ମା'ଙ୍କୁ ଛାଡ଼ି କେଉଁ ଏକା ବାହାରେ ରହି ନଥିଲି । ଏଇଥରକ ପ୍ରଥମ, ମୁଁ ତ ନିଜେ ଅସମ୍ଭାଳ ସେଥିରେ ପୁଣି ୪୦ଟା ପିଲାର ଭାର ନେଇ ମୋତେ hostel superintendent ଦାୟିତ୍ୱରେ ରହିବାକୁ ହେଲା । ମୁଁ ପିଲାଦିନଠୁଁ କେବେ କେମିତି ପାନ ଖାଇ ଥିଲି । ମଝିରେ ମଝିରେ ଅତି ପିଲାବେଳେ ଗୁଆ ଚୋବାଉ ଥିଲି ବୋଲି ମା'ଙ୍କଠାରୁ ମାଡ଼ ଖାଉଥିଲି । କେନ୍ଦ୍ରାପଡ଼ାରେ ମୁଁ ସ୍କୁଲରେ ଚାକିରୀ କଲାବେଳେ ପଇସାକୁ ଖିଲିପାନ ୪ ଖଣ୍ଡ । ମୁଁ ଏଇଠି ଖଣ୍ଡେ ଖଣ୍ଡେ ପାନ ନିୟମିତ ଭାବରେ ଖାଇବାକୁ ଆରମ୍ଭ କଲି । ଅବଶ୍ୟ ସାଧା ପାନ, ଗୁଣ୍ଡି ମିଶା ଖିଲି ନୁହେଁ । ସ୍କୁଲ ଗଲା ବେଳକୁ ପାନ ଚାରିଖଣ୍ଡ ପକେଟ୍‌ରେ ଥିବ ।

ମୁଁ ବିଭା ହେବି ନାହିଁ ବୋଲି ଜିଦ୍ ଧରିଥାଏ । କେତେ ଲୋକ କେତେ ପ୍ରକାର ବୁଝଉଥାନ୍ତି ବାହା ହବା ପାଇଁ । ମୁଁ ଅସମ୍ମତି ପ୍ରକାଶ କରେ । ମୁଁ ଯେତେବେଳେ ଅବସର ପାଏ କେବେ କେମିତି ସ୍କୁଲର କିରାନୀଙ୍କ ପାଖରେ ଯାଇ ବସେ । କିରାନୀ ବୁଢ଼ା ମଣିଷ, ଅତି ଉତ୍ତମ ଲୋକ । ତାଙ୍କର ପୁଅ ପଦ୍ମନାଭ ବାବୁ ସେଇ

ସ୍କୁଲରେ ଶିକ୍ଷକତା କରୁଥାନ୍ତି । କିରାନୀଙ୍କ ନାଁ ମୋର ମନେ ନାହିଁ । ସେ ମୋତେ ମୋ ବିଭା ହବା ବିଷୟରେ ବରାବର ପଚାରନ୍ତି, ମୁଁ ବିଭା ହେବି ନାହିଁ ବୋଲି କହେ । ସେ କହନ୍ତି ଦେଖନ୍ତୁ ଡ଼ାକ୍ତର ବାବୁ ଆପଣ ତ ବିଦେଶରେ ରହିଲେ ଆପଣ ବିଭା ହେଲେ ଆପଣଙ୍କର ସ୍ତ୍ରୀ ଆପଣଙ୍କ ବାବା, ମା'ଙ୍କ ପାଖରେ ରହି ବାବା, ମା'ଙ୍କର ସେବା କରନ୍ତେ ।

ମୁଁ ତଥାପି ଅସମ୍ମତି ପ୍ରକାଶ କରେ । ଇମିତି ସମୟରେ ଦିନେ ବାବାଙ୍କ ଠାରୁ ଚିଠି ପାଇଲି ବାବା, ମା ସମସ୍ତେ ଜ୍ୱରାକ୍ରାନ୍ତ, ବାଲି, ସାଗୁ ରାନ୍ଧି ଖାଇବାକୁ ଦବା ପାଇଁ ସାମର୍ଥ୍ୟ ନାହିଁ । ପାଖରେ କେହି ନାହାନ୍ତି ତୁମେ ଶୀଘ୍ର ଆସ । ମୁଁ ଚିଠି ପାଇ କେନ୍ଦ୍ରାପଡ଼ାରୁ ଔଷଧି, ବଳଦେବଜୀଉଙ୍କର ରସାବଳୀ, ଚୁଡ଼ା ଇତ୍ୟାଦି ଧରି ସେହିଦିନ ଆସି କଟକରେ ପହଁଚି ଦେଖେ ବାବା, ମା ସମସ୍ତେ ଦୁର୍ବଳ ହେଇ ପଡ଼ିଛନ୍ତି । ମା'ଙ୍କ ଛାତିରେ କଫ, ସାନ ଭାଣିଜୀଟିର ଅବସ୍ଥା ଅତି ଅସହାୟ । ସେ ମଧ ଦୁର୍ବଳ ହେଇ ପଡ଼ିଛି । ମା ଅତି କଷ୍ଟରେ କାମ କରୁଛନ୍ତି । ରାନ୍ଧିବାକୁ ଦେହରେ ବଳ ନାହିଁ । ବାବା, ମା'ଙ୍କର ଅସହାୟ ରୁଗ୍ଣ ଅବସ୍ଥା ଦେଖି ସେଇ ଦିନ ଭାବିଲି କେନ୍ଦ୍ରାପଡ଼ା ସ୍କୁଲର ବୃଦ୍ଧ କିରାନୀ ମହାଶୟ ମୋତେ ଯାହା ବୁଝଉଥିଲେ, ଠିକ୍ କଥା । ମୁଁ ବିଭା ହୋଇ ମୋର ସ୍ତ୍ରୀ ଆଜି ଯଦି ବାବା, ମା'ଙ୍କ ପାଖରେ ଥାନ୍ତା, ସେ ତ ବାବା, ମା'ଙ୍କୁ ସେବା ଯତ୍ନ କରି ପାରିଥାନ୍ତା । ମୋର ବିବାହ ହବା ହିଁ ଉଚିତ୍ । ପୁଣି ଡା: ଶରତ ଚନ୍ଦ୍ର ମିଶ୍ରଙ୍କ କଥା ମନେ ପଡ଼ିଲା, ବଂଶ ରକ୍ଷା ଦରକାର, ଏଣୁ ମୋ ବିଭା ହବା ଉଚିତ୍ ।

ମୁଁ ପହଁଚିବାର ଦେଖି ବାବା, ମା ରୁଗ୍ଣ ଅବସ୍ଥାରେ ଯେମିତି ଟିକିଏ ଜୀବନ ପାଇଲେ । ମା ସେଇ ରୁଗ୍ଣ ଅବସ୍ଥାରେ ଯାଇ ରୋଷେଇରେ ଲାଗିଗଲେ । ବାବାଙ୍କର କି ଆନନ୍ଦ ! ମୁଁ ପ୍ରଥମ ଚାକିରିରୁ ଛୁଟି ନେଇ ଆସିଛି । ବାବା, ମାଙ୍କର ମୁଁ ଶେଷ ସମ୍ବଳ । ସାତଟି ପିଲା ବଡ଼ ସାନ ହେଇ, ବାବା, ମା'ଙ୍କର ଜୀବନକାଳ ମଧରେ ତାଙ୍କରି ସାମନାରେ ବିଦାୟ ନେଲେ । କି ଦୁଃଖର ବେଳ ସେ ! ଭାଣିଜୀଟି ମୋତେ ଦେଖିଲେ ଆନନ୍ଦରେ କଣ ହେଇଯାଏ । ପାଟି ଭଲ କରି ଖୋଲି ନଥାଏ । ମୁଁ ତାକୁ ଅଧିକାଂଶ ସମୟ କାଖେଇ ବୁଲେ ।

ମୁଁ ଚାରିଦିନ ରହିବା ଭିତରେ ବାବା, ମା ଟିକିଏ ସୁସ୍ଥ ସବଳ ହେଲେ । ମୁଁ ପୁଣି କେନ୍ଦ୍ରାପଡ଼ାକୁ ଫେରି ଆସିଲି କିନ୍ତୁ ମନେ ମନେ ସ୍ଥିର କଲି ବିଭା ହବାକୁ ହବ । ନଚେତ୍ ବାବା, ମା'ଙ୍କର ବିଶେଷ କଷ୍ଟ ହେବ । ମୁଁ ଘରୁ ଆସିବା ପୂର୍ବରୁ ବାବା କେତେଗୁଡ଼ିଏ ଉପଦେଶ ଦେଲେ । ମୁଁ କେମିତି ସମସ୍ତଙ୍କ ସାଙ୍ଗରେ ମିଳିମିଶି ଚଳିବି । କାହାରି ସହିତରେ ଯେମିତି ଗଣ୍ଡଗୋଳ କି କଳିକଜିଆ ନକରେ । କାରଣ ବାବା ସବୁବେଳେ ଆତଙ୍କିତ ହୁଅନ୍ତି ମୁଁ କାଳେ କାହା ସହିତରେ ଗଣ୍ଡଗୋଳ କରି ବସେ ।

କେନ୍ଦ୍ରାପଡ଼ାରେ ଆଗରୁ ଦୁବେ ସିଲ୍ଡ଼ର ଟୁର୍ଣ୍ଣାମେଣ୍ଟ ହେଇ ଆସୁଥିଲା । ଏ ବର୍ଷ ଟୁର୍ଣ୍ଣାମେଣ୍ଟ ହବ, ଏ ଟୁର୍ଣ୍ଣାମେଣ୍ଟ କେବଳ ବଡ଼ ବଡ଼ ଖେଳାଳୀଙ୍କ ପାଇଁ, ସ୍କୁଲ ପିଲାଙ୍କ ପାଇଁ ନୁହେଁ । କିନ୍ତୁ ସ୍କୁଲ ଟିମ୍ ଏଥିରେ ଯୋଗ ଦବାରେ ବାରଣ ନାହିଁ । ଏଣୁ ମୁଁ ପ୍ରସ୍ତୁତ ହେଲି ମୋର ସ୍କୁଲ playerଙ୍କୁ ନେଇ ଏଥିରେ ଖେଳିବା ପାଇଁ ।

ଟୁର୍ଣ୍ଣାମେଣ୍ଟ ଯେଉଁଦିନ ଆରମ୍ଭ ହୁଏ ସେଦିନ ପ୍ରଥମେ ପଡ଼ିଲା କେନ୍ଦ୍ରାପଡ଼ା ଟାଉନ୍ ଟିମ୍ ସହିତରେ କେନ୍ଦ୍ରାପଡ଼ା ସ୍କୁଲ୍ ଟିମ୍‌ର ଖେଳ । ଏ ହବ knockout match । ଦୁବେ ସିଲ୍ଡ଼ ଟୁର୍ଣ୍ଣାମେଣ୍ଟରେ ଅନେକ ଗୁଡ଼ିଏ football team ଯୋଗ ଦିଅନ୍ତି ହେଲେ କେନ୍ଦ୍ରାପଡ଼ା ଟାଉନ୍ ଟିମ୍, Mohamedan Sporting Team, Salepur Team । ଆହୁରି କେତେଟା team ତାଙ୍କ ନାଁ ମନେ ପଡୁନାହିଁ ।

ପ୍ରଥମ ଦିନ match ରେ ମୁଁ ସ୍କୁଲ ଟିମ୍ ପକ୍ଷରୁ ଖେଳିଲି । ମୁଁ game secretary ଥାଏ କିନ୍ତୁ player କିଏ କେଉଁଠି ଖେଳିବ ନିଜେ ସବୁ ଠିକ୍ କଲି ଯା'ଙ୍କ ଗୋଡ଼ରେ ଆବାଲ୍ୟ ବଲ୍ ବାଜି ନାହିଁ । ମୁଁ ସେତେବେଳେ left out positionରେ ବରାବର ଖେଳୁଥିଲି କିନ୍ତୁ ମୋତେ

ଦିଆ ହେଲା centre forward positionରେ । ଏହାପଛରେ headmaster ଙ୍କ ଦୂରଭିସନ୍ଧି ଥିଲା ଯାହା ମୁଁ ଅନୁମାନ କଲି କାରଣ ମୁଁ ଯେମିତି ଭଲ ନଖେଳି ପାରି ନିନ୍ଦିତ ହୁଏ । ମୁଁ କିଛି ଆପତ୍ତି ନକରି centre forward positionରେ ଖେଳିଲି । ଟାଉନ୍ ଟିମ୍ ଏବଂ ସ୍କୁଲ୍ ଟିମ୍ ମଧ୍ୟରେ ଖେଳ ଖୁବ୍ ପ୍ରତିଦ୍ୱନ୍ଦିତାମୂଳକ ହେଲା । ଚାରିଆଡ଼େ ଦର୍ଶକଙ୍କ ଭିଡ଼, ଟାଉନ୍ ଟିମ୍ ଏବଂ ଆମର ସମର୍ଥକ ଦଳଙ୍କ ପାଟି ତୁଣ୍ଡରେ ଖେଳ ପଡ଼ିଆ ସରଗରମ । ଖେଳର ପ୍ରଥମ ଦଶ ମିନିଟ୍‌ରେ ଗୋଟିଏ ସୁବିଧାଜନକ ବଲ୍ ମୁଁ ପ୍ରଥମ ଗୋଲ୍‌ଟି ଦିଏ । ଏଥିରେ ମୋର ସୁନାମ ବହୁତ ପରିମାଣରେ ବଢ଼ିଗଲା । ଖେଳର ଦ୍ୱିତୀୟାର୍ଦ୍ଧରେ ଟାଉନ୍ ଟିମ୍ ଗୋଲ୍‌ଟି ସୁଝେଇ ଦେଲେ । ଏଣୁ ସେଦିନ ଖେଳ ଅମୀମାଂସିତ ଭାବରେ ଶେଷ ହେଲା । ରେଫରୀ ଥିଲେ ତତ୍‌କାଳୀନ କେନ୍ଦ୍ରାପଡ଼ାର S.D.O. ଏବଂ school ର secretary ମନୀ ଗୁହ । ଏଥି ମଧ୍ୟରେ କେତେଦିନ ବିତିଗଲା, ଅନ୍ୟାନ୍ୟ match ଚାଲିଥାଏ । ଆମର town team ସହିତରେ draw match । ପୁଣି ଖେଳ ହବାର ଦିନ ସ୍ଥିର ହେଇ association ରୁ ଖବର ଆସିଲା କିନ୍ତୁ headmaster ଏଥିରେ ନାରାଜ, ଯେମିତି ଆଉ ଥରେ match ନହଉ । ମୁଁ ଜିଦ୍ ଧଇଲି, ନା town team ସହିତରେ ପୁଣି ଖେଳ ହବ । Draw match ପୁଣି ଖେଳ ହେଲା । Match ଦେଖିବାକୁ ପୁଣି ସେମିତି ଜନସମାଗମ । ମୁଁ ଦେଖିଛି ସେତେବେଳେ ଲୋକେ ଯେମିତି ସ୍କୁଲ ପଡ଼ିଆରେ ଆଜି match ହବ, ଦିନ ତିନିଟା ବେଳୁ ପଡ଼ିଆର ପଶ୍ଚିମ ପଟ ଗୋବରୀ ନଈ ବନ୍ଧରେ ଲୋକେ ଆସି ଗ୍ୟାଲେରିରେ ବସିବା ଭଳି ଧାଡ଼ି ବାନ୍ଧି ବସିଲେଣି । ତା'ଛଡ଼ା ପଡ଼ିଆର ଚାରିଆଡ଼େ ଅସଂଖ୍ୟ ଲୋକ । କେନ୍ଦ୍ରପଡ଼ାର ଗଣ୍ୟମାନ୍ୟ ଲୋକଙ୍କ ପାଇଁ ପଡ଼ିଆର ପୂର୍ବଆଡ଼ ସ୍କୁଲ ପଟେ ଚେୟାର ସବୁ ପଡ଼େ । ସେମାନେ ସେଠି ବସି ଖେଳ ଦେଖନ୍ତି । କେନ୍ଦ୍ରାପଡ଼ା ହାଇସ୍କୁଲର ଖେଳପଡ଼ିଆ ବର୍ଷା ଦିନେ ଯା ଗୋଟିଏ ଦୀର୍ଘିକାର ରୂପ ଧରେ ନଚେତ୍ ଅନ୍ୟଦିନେ ବେଶ୍ ଖେଳୋପଯୋଗି ଘାସୁଆ ସମତଳ ଭୂଇଁ ।

ମୁଁ town team ସହିତରେ draw match ର ପୁନର୍ବାର ଖେଳ ହବା ଦିନରେ ଯାଇ ପଡ଼ିଆରେ ଦେଖେ, କେନ୍ଦ୍ରାପଡ଼ା town team କଟକର Rovers Team ରୁ କେତେକ player ନେଇ ଆସିଛନ୍ତି । ମୋର ସେମାନେ ସବୁ ପରିଚିତ । ମୁଁ ସେମାନଙ୍କୁ ପରିହାସ କରି କେତେକ କଥା ପଚାରିଲି । ସେମାନେ ଲଜ୍ଜାରେ କିଛି ଉତ୍ତର ନଦେଇ ନୀରବ ରହିଲେ । Town Team ର ସମରସଜ୍ଜା ଦେଖି ମୁଁ ମନେ ମନେ ଟିକିଏ ଦବିଗଲି । କାରଣ ଆମର ତ ଆଉ ବାହାର player ଙ୍କୁ ମିଶେଇ ଖେଳିବାର ସୁବିଧା ନାହିଁ । ଯେ ଖେଳିବେ, ସେଇ ସ୍କୁଲ ପିଲାଙ୍କ ଭିତରୁ । Town Team ଯେଉଁ ଅଭିଜ୍ଞ ମହାରଥୀଙ୍କୁ ଅଣେଇଛି, ଯାଙ୍କ ଆଗରେ ତ ମୋ ପିଲାଏ ପାରିବେ କେମିତି ? ଏଣୁ ମନେ ମନେ ମୁଁ ଟିକିଏ ଦବିଲି । ପୁଣି ମନେ ମନେ ସ୍ଥିର କଲି ଯଦି ଆମେ ଜିତିଲୁ ତ ଭଲ, ଯଦି ହାରିଲୁ, ଏ ଯେତୋଟି player ବାହାରୁ ଅଣେଇଛନ୍ତି, ଯାଙ୍କୁ ଏବଂ Town Team ର ଅନ୍ୟମାନଙ୍କୁ ଆଜି ମାଡ଼ ଦେଇ ବିଦାୟ କରିବି । ମୋର ରାଗ ହବାର କାରଣ, ଏମାନେ କାହିଁକି କେନ୍ଦ୍ରାପଡ଼ା ଟାଉନ୍ ଟିମ୍ ତରଫରୁ ଖେଳିବାକୁ ଆସିଛନ୍ତି ଏବଂ Town Team ର ଲୋକେ ଏମାନଙ୍କୁ କାହିଁକି ଅଣେଇଛନ୍ତି ?

ଖେଳ ଆରମ୍ଭ ହେଲା । ପଡ଼ିଆର ଚତୁପାର୍ଶ୍ୱରେ ଲୋକଙ୍କର ଅସମ୍ଭବ ଭିଡ଼ । କେନ୍ଦ୍ରାପଡ଼ା S.D.O. ମନୀ ଗୁହ referee । ଖେଳର ୧୦ ମିନିଟ୍ ସମୟରେ ଆମ ଉପରେ ଗୋଟାଏ ଗୋଲ୍ ହେଲା ବୋଲି ଘୋଷଣା କଲେ । Ball net ଭିତରକୁ ଯାଇନି, goalkeeper ଗୋଲ୍ ପୋଷ୍ଟ ଭିତରୁ ହାତ ଆଣି ବଲ୍ ଅଟକେଇବାରୁ goal in the air ବୋଲି referee ଘୋଷଣା କଲେ । ଏଣୁ ଆମେ ଏକ ଗୋଲ୍‌ରେ ଟାଉନ୍ team ଠାରୁ ପରାସ୍ତ ବୋଲି ସମସ୍ତେ ଜାଣିଲେ । ମୁଁ ମନେ ମନେ ଟିକିଏ ଦବିଗଲି । ତଥାପି ଭାବିଲି ଅନେକ ସମୟ ଅଛି ଗୋଲ୍ ସୁଝେଇବାକୁ । ଦବିଯିବାର କୌଣସି କାରଣ ନାହିଁ ।

ଖେଳ ଚାଲିଥାଏ, ଖେଳର ପ୍ରାୟ ୨୦ ମିନିଟ୍ ସମୟରେ ଆମ ଟିମ୍‌ର right half ଅକସ୍ମାତ୍ injured

ହୁଏ । ସେ ପଡ଼ିଆରୁ ଟେକା ହେଇ ଆସେ । ମୁଁ ତାକୁ ଚିକିତ୍ସା କରିବା ପାଇଁ ପଡ଼ିଆରୁ ଆସେ । ଏଣୁ ଆଉ ୯ ଜଣ player ପଡ଼ିଆରେ ଖେଳୁଥାନ୍ତି । Town Team ରେ ୧୧ ଜଣ player ଖେଳୁଥାନ୍ତି । ଏଣୁ ଅବସ୍ଥା ସାଂଘାତିକ । ଏଇ ଅବସ୍ଥାରେ Town Team ଆମକୁ ଆହୁରି ୨ ଗୋଲ୍ ଦେଲେ ବୋଲି ଶୁଣିଲି । ମନେ ମନେ ରାଗରେ ଜଳୁଥାଏ । ଏଇ ସମୟରେ ଜଣେ ଶିକ୍ଷକ ଆସି ମୋତେ ଗୁପ୍ତ ଭାବରେ କାନରେ କହିଲେ, ପିଲାଏ କହୁଛନ୍ତି Town Team player କୁ ବାଡ଼େଇବେ । ମୁଁ ଗୁପ୍ତ ଭାବରେ ଉତ୍ତର ଦେଲି, ଖେଳ ସରିଲେ ତା'ପରେ ବାଡ଼ାନ୍ତୁ ।

ଖେଳ ସରିଲା, ମୁଁ ଖବର ପାଇଲି, ଆମରି ପିଲାଏ Town Team ର player ଏବଂ ସମର୍ଥକଙ୍କୁ ଭଲ କରି ଗୋଡ଼େଇ ଗୋଡ଼େଇ ବାଡ଼େଇଲେ । ଏମିତିକି Town Team ର କେତେକ player ମାଡ଼ ଖାଇ ଗୋବରୀ ନଈ ପାରି ହେଇ ଆରପଟକୁ ପଳେଇଲେ । Town Team ର ଜଣେ ବିଶିଷ୍ଟ ସମର୍ଥକଙ୍କ ସାଇକେଲ୍‌କୁ ଭାଙ୍ଗି ଗୋବରୀ ନଈରେ ଫୋପାଡ଼ି ଦେଲେ । ଶେଷରେ ଖବର ପାଇଲି ଯେ ପିଲାଏ referee S.D.O. ମନା ଗୁହଙ୍କୁ ମଧ ବାଡ଼େଇଛନ୍ତି । ଖେଳ ସରିଲା ପରେ ରାତି ୧୧ଟା ଯାଏ ସ୍କୁଲ ହତା ମଧରେ 'ହୋ ହା' ପାଟିତୁଣ୍ଡ ଲୋକ ଗହଳି, ଆଲୋଚନା ଚାଲିଲା । ତା'ପରେ ଅବସ୍ଥା ଶାନ୍ତ ପଡ଼ିଲା ।

Dube Shield Tournamentରେ ଆମର ଅଭିନୟ ସରିଲା । ଏଣିକି ଅନ୍ୟାନ୍ୟ ଟିମ୍ ଖେଳିଲେ, ଆମେ କେବଳ ଦେଖିଲୁ । ଆମର ଖେଳ ଯେମିତି ଗଣ୍ଡଗୋଳରେ ସମାପ୍ତ ହେଲା, ଏ ଗଣ୍ଡଗୋଳର ମୂଳ କାରଣ 'ମୁଁ' ବୋଲି ସମସ୍ତେ ଦୋଷାରୋପ କଲେ । ପ୍ରକୃତରେ ଏ ଗଣ୍ଡଗୋଳର ମୂଳ କାରଣ ମୁଁ, କିନ୍ତୁ ମୁଁ ନିଜେ ଧୁଆମୂଳା ହେଇ ବୁଲୁଥାଏ ଯେମିତି ମୁଁ କିଛି ଜାଣି ନାହିଁ । ମାଡ଼ଗୋଳ କେମିତି ଆରମ୍ଭ ହେଲା, କା'ର ନିର୍ଦ୍ଦେଶନାରେ ହେଲା ମୁଁ କିଛି ଜାଣେନା ।

ଏହାର କିଛିଦିନ ପରେ ପୂଜାଛୁଟି ଆରମ୍ଭ ହେଲା । ମୁଁ କଟକ ଆସିଲି । ବାବା ଅନ୍ୟାନ୍ୟ କଥା ଭିତରେ ପଚାରିଲେ, କିରେ, ଯେଉଁ tournament ଚାଲିଥିଲା, କ'ଣ ହେଲା ? ମୁଁ ପୂରା ଭଲ ମଣିଷ ପରି କହିଲି, ଆମେ ଟାଉନ୍ team ଠାରୁ ତିନି ଗୋଲ୍‌ରେ ହାରିଗଲୁ । ବାବା ପୁଣି ପଚାରିଲେ, କିଛି ଗଣ୍ଡଗୋଳ ହେଇନାହିଁ ତ ? କାରଣ ବାବାଙ୍କର ବରାବର ମୋ ଉପରେ ସନ୍ଦେହ, ମୁଁ ନିଶ୍ଚୟ କିଛି ଗଣ୍ଡଗୋଳ କରିଥିବି । ତେବେ ମୁଁ ଯେତେବେଳେ ଉତ୍ତର ଦେଲି ନାହିଁ କିଛି ଗଣ୍ଡଗୋଳ ହେଇ ନାହିଁ, ବାବା ଚୁପ୍ ରହିଲେ ।

ମୁଁ କଟକରେ ଛୁଟିରେ ଥାଏ । 'ସମାଜ'ରେ ବାହାରିଲା, କେନ୍ଦ୍ରାପଡ଼ାରେ ଦୁବେ ସିଲ୍ଡ ଟୁର୍ଣ୍ଣାମେଣ୍ଟରେ ଟାଉନ ଟିମ୍ ସ୍କୁଲ ଟିମ୍ ମଧରେ ଖେଳରେ ସ୍କୁଲ୍ ଟିମ ୩ ଗୋଲ୍‌ରେ ହାରିଗଲେ । ଖେଳ ଶେଷରେ ଭୀଷଣ ମାଡ଼ପିଟ୍ ଏବଂ ଗଣ୍ଡଗୋଳ ହେଲା । ବାବା 'ସମାଜ'ରୁ ଏ ସମ୍ବାଦ ପଢ଼ି ମୋତେ ପଚାରିଲେ କିରେ, ତୁ ତ କଣ ନାହିଁ କରୁଛୁ, ଖେଳରେ କିଛି ଗଣ୍ଡଗୋଳ ହେଇ ନାହିଁ, ସମାଜରେ ଏ କଣ ଖବର ବାହାରିଛି ?

ମୁଁ ତଥାପି ବାବାଙ୍କ ଆଗରେ ମିଛ କହି କଥାଟାକୁ ଚପେଇ ଦେଲି । ମୁଁ ତ ନିଜେ ଖେଳୁଥିଲି । କିଛିତ କାହିଁ ଗଣ୍ଡଗୋଳ ହବାର ମୁଁ ଜାଣି ନାହିଁ । କିଏ ଗୋଟାଏ ମିଛରେ ଖବର ବାହାର କରିଦେଇଛି । ବାବା ମୋର ଉତ୍ତର ଶୁଣି ଚୁପ୍ ରହିଲେ । କାରଣ ବାବାଙ୍କର ବିଶ୍ୱାସ ହେଲା ଯେ ପ୍ରକୃତରେ କିଛି ଗଣ୍ଡଗୋଳ ଘଟି ନାହିଁ । ମୁଁ ମନେ ମନେ ଭାବୁଥାଏ ରିଷ୍କ କଟିଗଲା । ବାବାଙ୍କର ବିଶ୍ୱାସ ହେଲା ମୁଁ କିଛି ଗଣ୍ଡଗୋଳ କରି ନାହିଁ ।

ଏହାର ଦିନେ ଦି'ଦିନ ପରେ ମୁଁ ଦିନେ କୁଆଡ଼େ ଯାଇଥିଲି ମୁଁ ଯେତେବେଳେ ଫେରିଆସେ ଦେଖିଲି ବାବା ଦାଣ୍ଡ ଦୁଆରେ ବସିଛନ୍ତି । ତାଙ୍କ ହାତରେ ଖଣ୍ଡେ ଲମ୍ବା ଲଫାପାରେ ଗୋଟାଏ କ'ଣ ଚିଠି । ବାବା ସେ ଚିଠିକୁ ଖୋଲି ପଢ଼ି ସାରିଥିଲେ । ମୁଁ ଯେମିତି ପହଁଚିଛି, ବାବା ପଚାରିଲେ ହଇରେ, ତୁ କଣ କହୁଥିଲୁ ଖେଳରେ କିଛି

ଗଣ୍ଡଗୋଳ ହେଇନାହିଁ, ଏ କ'ଣ ତୋ ନାଁରେ ଚିଠି ଆସିଛି ଦେଖିଲୁ। ତୁ ବାହାରେ ରହି ଏମିତି ସବୁ କାମ କରୁଛୁ? ତୋର ଏ ଗଣ୍ଡଗୋଳିଆ ଧରଣ ଆଉ ଗଲା ନାହିଁ। ବିଦେଶରେ ଥାଇ ସମସ୍ତଙ୍କ ସଙ୍ଗେ ମିଳିମିଶି ଚଳିବା ଉଚିତ୍। ତୁ ଏଇ ସବୁ ଗଣ୍ଡଗୋଳରେ ମାତିଛୁ। କର୍ ଯା କରିବାର, ତୁ ନିଜେ ତା'ର ଫଳ ଭୋଗିଲେ ଜାଣିବୁ। ଏତକ କହି ବାବା ଚିଠି ଖଣ୍ଡକ ମୋତେ ବଢ଼େଇ ଦେଲେ। ମୁଁ ଚିଠି ଖଣ୍ଡକ ଖୋଲି ପଢ଼ି ବୁଝି ପାରିଲି ଯେ ଚିଠିଖଣ୍ଡକ ଦେଇଛନ୍ତି school ର secretary କେନ୍ଦ୍ରାପଡ଼ା ତତ୍‌କାଳୀନ S.D.O. ମନୀ ଗୁହ। ଚିଠିର ବିଷୟ ବସ୍ତୁ ହେଲା ସେଦିନ ଖେଳରେ ଯେଉଁ ଗଣ୍ଡଗୋଳ ହେଲା, ସେଥି ଯୋଗୁଁ ତୁମ ବିରୁଦ୍ଧରେ କାହିଁକି ଦୃଢ଼ କାର୍ଯ୍ୟାନୁଷ୍ଠାନ କରା ନ ଯିବ? ଏହାର କୈଫିୟତ ଦିଅ। ଚିଠିଟା ଇଂରାଜୀରେ ଲେଖାଥିଲା।

ବାବାଙ୍କ ପାଖରେ ଚିଠି ଖଣ୍ଡକ ପଢ଼ି ମୋ ମୁହଁଟା ଯେମିତି ହନୁମାଙ୍କଡ଼ ମୁହଁ ପରି କଳା ବୋଳା ହେଲା ପରି ଜଣାଗଲା। ଭାବିଲି କଣ ହେଲା, ବାଙ୍କର ଆଗରେ ଚାକିରି କଲା ପରେ ଏ ବୟସରେ ମଧ୍ୟ ମିଛ କହି ଧରା ପଡ଼ିଲି। ଅଳ୍ପ ସମୟ ପରେ ବାବା କେମିତି ପୁଣି କହିଲେ, ଯା ଗୋଟାଏ explanation ଦେଇ ଦେ। ଏମିତି ଚାକିରି ଜୀବନରେ କେତେ explanation ଦବାକୁ ପଡ଼େ ସେ କିଛି ନୁହେଁ। ବାବାଙ୍କ କଥା ଶୁଣି ମୋ ମନଟା ଟିକିଏ ଖୁସି ହେଇଗଲା। ମୁଁ ମନେ ମନେ ସ୍ଥିର କଲି ଜୟରାମ ବାବୁଙ୍କ ପାଖକୁ ଗଲେ ଏହାର explanation ଠିକ୍ ଲେଖି ଦେଇ ହବ। ଏଣୁ ଚିଠି ଖଣ୍ଡକ ନେଇ ମୁଁ କଟକ ରିପନ୍ ରୋଡ଼ସ୍ଥ ଜୟରାମ ବାବୁଙ୍କ କନିକା ମେସ୍‌କୁ ଦୌଡ଼ିଲି। ଜୟରାମ ବାବୁ ଥିଲେ। ମୋତେ ଦେଖି କହିଲେ କିରେ ବଙ୍ଗାଳୀ କୁଆଡ଼େ ଆସିଲୁ? ମୁଁ ନମସ୍କାର ଜଣେଇ ଉତ୍ତର ଦେଲି ସାର୍ ଆପଣଙ୍କ ପାଖକୁ ଆସିଛି। ଜୟରାମ ବାବୁ କହିଲେ କାହିଁକି? ସାର୍ ମୁଁ ଗୋଟାଏ ଅଡୁଆରେ ପଡ଼ି ଯାଇଛି।

ଜୟରାମ ବାବୁ-କ'ଣ ଅଡୁଆ? କ'ଣ କିଛି କରିଥିବୁ, ହଉ କ'ଣ ହେଇଛି କହିଲୁ ଶୁଣେ।

ମୁଁ ସବୁ କଥା ଅତି ଖୋଲାଖୋଲି ଭାବରେ ଜୟରାମ ବାବୁଙ୍କୁ କହିଲି। ଜୟରାମ ବାବୁ ସବୁ କଥା ଶୁଣି କହିଲେ ହଉ ବ' ଡ଼ାକୁଛି ଲେଖ। ଇମିତି କେତେ explanation ଦେଇ ଦେଇ ବାଳ ପାଚିଲାଣି। ଜୟରାମ ବାବୁ ଇଂରାଜୀରେ explanation ଡାକିଲେ, ମୁଁ ଲେଖିଲି। ଜୟରାମ ବାବୁ ଏମିତି explanation ମୋତେ ଡାକିଦେଲେ ଯେ ସେଥିରେ ଲେଖା ହେଲା ମୁଁ ଏବଂ ମୋର ଅନ୍ୟାନ୍ୟ player ମାନେ ଧୂଆମୂଳା କିଛି ଗଣ୍ଡଗୋଳ କରି ନାହାନ୍ତି। ମୁଁ ତ ସହଜେ ପଡ଼ିଆରୁ ଆଗେ ଚାଲି ଆସିଥିଲି। ଏଣୁ ମୁଁ ଏବଂ ଅନ୍ୟ ଖେଳାଳୀମାନେ ଏ ଗଣ୍ଡଗୋଳ ସମ୍ବନ୍ଧରେ କିଛି ଜାଣନ୍ତି ନାହିଁ। ଗଣ୍ଡଗୋଳ କରିଛନ୍ତି ଯାହା ମୁଁ ଅନୁମାନ କରୁଛି ଦର୍ଶକମାନଙ୍କ ଭିତରୁ କେତେ ଜଣ। ଇମିତି ଭାବରେ explanation ଲେଖା ହେଲା, ଜୟରାମ ବାବୁ କହିଲେ ଯା ଏହାକୁ ପଠେଇ ଦେ, ସେମାନେ ତୋର କିଛି କରି ପାରିବେନି। ମୁଁ ଆଉ ଅଳ୍ପ ସମୟ ଜୟରାମ ବାବୁଙ୍କ ସଙ୍ଗେ ଅନ୍ୟାନ୍ୟ ବିଷୟରେ ଗପ କରି ସେଠୁ ବିଦାୟ ନେଲି।

ଘରେ ଆସି ପହଁଚିଲାରୁ ବାବା ପଚାରିଲେ କ'ଣ ହେଲା? ମୁଁ କହିଲି explanation ଲେଖେଇ ଆଣିଲି। ବାବା ପୁଣି କହିଲେ ତାକୁ ପଠେଇଦେ, ସେ କିଛି ନୁହେଁ। ମୁଁ ସେ explanation କୁ ଭଲ ଭାବରେ ଲେଖି ଡାକରେ secretaryଙ୍କ ଠିକଣାରେ ପଠେଇ ଦେଲି।

କିଛିଦିନ ପରେ ପୂଜା ଛୁଟି ସରି ଆସିଲା। ରାତି ପାହିଲେ କେନ୍ଦ୍ରାପଡ଼ା ଯିବି। ମୁଁ, ବାବା, ମା, ମୋର ଭଣଜା ରବି ସନ୍ଧ୍ୟା ପରେ ବାହାର ଆଡ଼େ ବସି ଗପ କରୁଛୁ। ଏଇ ସମୟରେ ଦୁଇଜଣ ଭଦ୍ରଲୋକ ରିକ୍ସାରେ ଆସି ଆମ ଘର ଖୋଜି ଖୋଜି ପହଁଚିଲେ। ଆମେ ସମସ୍ତେ ବୁଝି ପାରିଲୁ ମୋର ବିବାହ ପ୍ରସ୍ତାବ ନେଇ ଏ ଭଦ୍ରଲୋକ ଦି'ଜଣ ଆସିଛନ୍ତି। ମୁଁ, ମା ଓ ଭଣଜା ଆମେ ଘର ଭିତରକୁ ଉଠି ଆସିଲୁ। କେବଳ ବାବା ବାହାରେ ରହିଲେ। ସେ ଭଦ୍ରଲୋକଙ୍କ ସଙ୍ଗେ ଗପ କରିବା ପାଇଁ। ଆମେ ଘର ଭିତରେ ଥାଇ ବାବାଙ୍କ ସଙ୍ଗେ ସେ

ଭଦ୍ରଲୋକଙ୍କ ଆଳାପ, ଆଲୋଚନାର ବିଷୟବସ୍ତୁ ଯାହା ଶୁଣିଲୁ, ଆମେ ଯାହା ଅନୁମାନ କରିଥିଲୁ ସେ ଠିକ୍ ବୋଲି ମନେ ହେଲା । ଆମ ପକ୍ଷରେ ଇମିତି ଅନୁମାନ କରିବା ସେତେବେଳେ ସ୍ୱାଭାବିକ ହୋଇ ପଡ଼ିଥିଲା । କାରଣ ଦୈନିକ କେହି ନା କେହି ଇମିତି ବିବାହ ପ୍ରସ୍ତାବ ନେଇ ଆସୁଥିଲେ । ସେ ଭଦ୍ରଲୋକ ଦି'ଜଣ ବାବାଙ୍କ ସଙ୍ଗେ ଗପ କରି ସାରି କହିଲେ ମୋତେ ଥରେ ଦେଖିବା ପାଇଁ ।

ବାବା ମୋତେ ଡାକିଲେ ସେ ବାହାରକୁ ଯିବା ପାଇଁ । ମୁଁ ସେତେବେଳେ ଖଣ୍ଡେ ନେଳି ରଙ୍ଗର ଲୁଙ୍ଗି ପିନ୍ଧିଥିଲି ଓ ଖଣ୍ଡେ ହାତକଟା ଗେଞ୍ଜି ପିନ୍ଧିଥିଲି । ଦେହ ତ ବ୍ୟାୟାମ କରି କରି ଗୋଟାଏ ମାଲ ପରି ହୋଇଥାଏ । ମୁଁ ବାହାରକୁ ଯିବା ବେଳକୁ ଭଣଜା ବାଧା ଦେଇ କହିଲା ମାମୁଁ ଏମିତି ଲୁଙ୍ଗି, ଗେଞ୍ଜି ପନ୍ଧି ଯିବ ସେ ଭଦ୍ରଲୋକଙ୍କ ସହିତରେ ଦେଖା କରିବା ପାଇଁ? ସେମାନେ କ'ଣ ଭାବିବେ ? କହିବେ, ଗୁଣ୍ଡାଟାଏ ।

ମୁଁ କହିଲି କହିଲେ କହନ୍ତୁ, ମୁଁ ଏମିତି ଯିବି । ସେମାନେ ମୋ ସ୍ୱାସ୍ଥ୍ୟ କେମିତି ଦେଖିଯାନ୍ତୁ । ମୁଁ ବାହାରକୁ ଯାଇ ସେ ଭଦ୍ରଲୋକ ଦି'ଜଣଙ୍କୁ ନମସ୍କାର ଜଣେଇ ତାଙ୍କ ପାଖରେ ବସିଲି । ମୋର ବୁଦ୍ଧି ବୃତ୍ତି ଚାଲିଚଳନ ପରୀକ୍ଷା କରିବା ପାଇଁ ମୋତେ ଅନେକ କଥା ପଚାରିଲେ । ମୁଁ ଖୁବ୍ ସଂଯତ ଭାବରେ ତାଙ୍କ ସଙ୍ଗେ କଥାବାର୍ତ୍ତା କରି ନମସ୍କାର ଜଣେଇ ଫେରି ଆସିଲି ।

ବାବାଙ୍କ ସଙ୍ଗେ ସେମାନେ ଆଳାପ କରି ବିଦାୟ ନେଲେ । ବାବା ଘରକୁ ଫେରି ଆସିଲେ । ମା'ଙ୍କ ସଙ୍ଗେ ବାବାଙ୍କର ଆଲୋଚନା ଚାଲିଲା ଯେ ଭଦ୍ରଲୋକ ଦି'ଜଣ ଆସିଥିଲେ, ସେମାନଙ୍କ ଭିତରୁ ଜଣେ ହେଲେ କନ୍ୟାର ବଡ଼ଭାଇ, ଅନ୍ୟ ଜଣକ କଟକ Capital ସିନେମାର proprietor ନାଁ ନରେନ୍ଦ୍ର ନାଥ ମିତ୍ର ଓ କନ୍ୟାର ଭାଇଙ୍କର ନାଁ ହେଲା ଶ୍ରୀ ଅନିଲ ବିହାରୀ ଘୋଷ ।

କନ୍ୟା ଉପରେ ତିନି ଭଉଣୀ । ବଡ଼ ବିବାହିତା । କନ୍ୟା ପିତା ଜଣେ ଅବସରପ୍ରାପ୍ତ ଓଭରସିଅର୍ । ପୁରୀ ଜିଲ୍ଲା ବୋର୍ଡ଼ରେ ଓଭରସିଅର୍ ଚାକିରୀ କରୁଥିଲେ ଏବେ ଅବସର ନେଇ ଘରେ ଥାନ୍ତି । ପୁଅ ଅନିଲ୍ ବିହାରୀ ଘୋଷ ମଧ୍ୟ ଜଣେ ଓଭରସିଅର୍ । ସରକାରୀ ଚାକିରି କରନ୍ତି । ଖୋର୍ଦ୍ଧାରେ ଘର କରିଛନ୍ତି । ନିଜ ଘର ହେଲା ପୂର୍ବ ବଙ୍ଗ, ଯଶୋର ଜିଲ୍ଲା ନଡ଼ାଇଲ୍ ଗ୍ରାମ । ସେମାନଙ୍କ ସହିତରେ ବାବାଙ୍କର କଥା ହେଲା ବାବା କନ୍ୟା ଦେଖିବାକୁ ଯିବେ, କନ୍ୟା ପସନ୍ଦ ହେଲେ ତା'ପରେ ଦବାନବାର କଥା ପଡ଼ିବ । ଏ ପରିବାରକୁ ବାବା, ମା ନା ପସନ୍ଦ କଲେ ନାହିଁ । କେବଳ କନ୍ୟା ପସନ୍ଦ ହେଲେ ହେଲା ।

ରାତି ପାହିଲା, ରିକ୍ସାରେ ଜିନିଷପତ୍ର ଲଦି ଷ୍ଟେସନ୍‌କୁ ରିକ୍ସା ଆଗେ ଆଗେ ଚାଲିଥାଏ । ମୁଁ, ବାବା ଉଭୟେ ପଛରେ ଚାଲିଥାଉ । ଭାରି ବର୍ଷା ହଉଥାଏ । ଷ୍ଟେସନ୍‌ରେ ଯାଇ ପହଁଚି ଟିକେଟ୍ କରି ବାବା, ମୁଁ ଉଭୟେ ଗାଡ଼ିରେ ବସିଲୁ । ଜଗତ୍‌ପୁର ଷ୍ଟେସନ୍‌ରେ ଓଲ୍ହେଇବାକୁ ହବ, ସେତେବେଳେ ଜଗତ୍‌ପୁର ଷ୍ଟେସନ୍‌ର ନାମ କେନ୍ଦ୍ରାପଡ଼ା ରୋଡ୍ ହୋଇ ନଥାଏ କିମ୍ବା ମହାନଦୀ ଉପରେ ଯାନବାହନ ଚଳାଚଳ ପାଇଁ ଅଲଗା ଗୋଟାଏ ଦୀର୍ଘ ପୋଲ ହୋଇ ନଥାଏ । ଏଣୁ ଟ୍ରେନ୍ ଯୋଗେ କଟକରୁ ଜଗତ୍‌ପୁର ଯିବା କଥା ।

ଜଗତ୍‌ପୁରରେ ପହଁଚିଲା ବେଳକୁ କେନ୍ଦ୍ରାପଡ଼ାକୁ ଯିବା ପାଇଁ କେଇଟା ପ୍ରାଇଭେଟ୍ ବସ୍ ଥିଆ ହୋଇଥାଏ, ମେଘ ଝିପ୍ ଝିପ୍ ପଡୁଥାଏ । ମୁଁ ବସ୍‌ରେ ବସିଲି । ବାବା ମୋତେ ବିଦାୟ ଦେଇ ଷ୍ଟେସନ୍‌କୁ ଗଲେ । କଟକକୁ ଯିବା ପାଇଁ ପରବର୍ତ୍ତୀ ଟ୍ରେନ୍ ଧରିବେ । ବସ୍ ଜଗତପୁର ଛାଡ଼ିଲା । ସେତେବେଳେ କେନ୍ଦ୍ରାପଡ଼ାକୁ ସରକାରୀ ବସ୍ ଚାଲି ନଥାଏ କି ରାସ୍ତା ପିଚୁ ରାସ୍ତା ହୋଇ ନଥାଏ । ସେତେବେଳେ ସେ ରାସ୍ତାରେ ପ୍ରାଇଭେଟ୍ ବସ୍‌ରେ ଯେ ଯିବା ଆସିବା ଥରେ କରିଥିବ, ସେ ଯାତ୍ରାର ଅସୁବିଧାର କଥା ତା ଜୀବନରେ ଭୁଲି ପାରିବି ନାହିଁ ।

କେନ୍ଦ୍ରାପଡ଼ା ବସ୍‌ଷ୍ଟାଣ୍ଡରେ ବସ୍ ପହଁଚିଲା ବେଳକୁ ସ୍କୁଲର player ଦଳ ମୋତେ ଦେଖି ଘେରି ଗଲେ । ମୁଁ ତାଙ୍କୁ ପଚାରି ବୁଝିଲି ଯେ ପ୍ରତ୍ୟେକ player କୁ ସ୍କୁଲ ତରଫରୁ କୈଫିୟତ୍ ମଗା ହୋଇଛି । ମ୍ୟାଚରେ ଏମିତି ଗଣ୍ଡଗୋଳ କାହିଁକି ହେଲା ? ସେମାନେ ମୋତେ ଅପେକ୍ଷା

କରିଥିଲେ ଯେ ସାର୍ ଆସିଲେ କଣ କେମିତି କୈଫିୟତ୍ ଦବାକୁ ହବ ଲେଖିଦବା। ସେମାନେ ମଧ୍ୟ ଜାଣିଛନ୍ତି ଯେ ମୋତେ ମଧ୍ୟ କୈଫିୟତ୍ ମଗା ହେଇଛି।

ସେଦିନ କେନ୍ଦ୍ରାପଡ଼ା ହାଇସ୍କୁଲ ହଷ୍ଟେଲରେ ଯାଇ ପହଁଚି ହୋଟେଲ୍‌ରେ ଖାଇ ପିଇ ମୋ ରୁମ୍‌ରେ ଶୋଇଲି। କିନ୍ତୁ ସାରାଦିନ କାହିଁକି ବାବାଙ୍କ ପାଇଁ ମନ ବ୍ୟସ୍ତ ଲାଗିଲା। ମୋତେ କାହିଁକି ବିନା କାରଣରେ ଭାରି ଅସହାୟ ମନେ ହେଲା। ବେଳେବେଳେ କାନ୍ଦି ପକେଇଲା ପରି ମନେ ହଉଥାଏ। ଆଜି ଦିନରେ ଏମିତି କାହିଁକି ଲାଗିଲା। ଏହାର କାରଣ ପରେ ଲେଖିବି।

ପୂଜା ଛୁଟି ପରେ ମୁଁ ଏବଂ ଅନ୍ୟ ପାଞ୍ଚଟି ପିଲା ପହଁଚିଲେ। ମେସ୍ ଆରମ୍ଭ ହେଇ ନଥାଏ। ଏଣୁ କୌଣସି ମତେ ହୋଟେଲ୍‌ରେ ଖାଇ କେତେଦିନ ଚଳିଲା ପରେ ମେସ୍‌ରେ ଖାଇବାକୁ ହବ। ସେତେବେଳେ କେନ୍ଦ୍ରାପଡ଼ା ଟାଉନ୍‌ରେ ହରିଆ ନନା ହୋଟେଲ୍‌ର ଭାରି ନାଁ ଡାକ। ତା'ପରି ଏତେ ସୁନ୍ଦର ହୋଟେଲ୍ କାହାରି ନଥାଏ। ହରିଆ ନନା ନିଜେ ଯେମିତି ପରିଷ୍କାର, ପରିଚ୍ଛନ୍ନ ତା'ହାତ ରୋଷେଇ ମଧ୍ୟ ସେମିତି ଚମତ୍କାର। କିନ୍ତୁ ହରିଆ ନନାର ବ୍ୟବହାର ଭାରି ଖରାପ, କାହାରିକି ଖାତିରି ନାହିଁ। ଯା ମୁହଁକୁ ଆସିଲା କହିଲା। ଯେ ଯା ଭାବୁ ଥାଉ, ସେ ବେପରୁଆ, ଅଦମ୍ୟ।

ସେଦିନ ରାତି ହେଲାରୁ ଯେଉଁ ପାଞ୍ଚଟି ପିଲା ହଷ୍ଟେଲ୍‌ରେ ଆସି ପହଁଚି ଥିଲେ, ମୋ ପାଖକୁ ଆସି ପଚାରିଲେ ସାର୍ ଆପଣ କଣ ରାତିରେ ଖାଇବେ? ମୁଁ କହିଲି ମୁଁ ଠିକ୍ କରିଛି ହରିଆ ନନା ହୋଟେଲ୍‌ରେ ଖାଇବି। ପିଲାଏ କହିଲେ ତା'ହେଲେ ଆମେ ସେଇଠି ଖାଇବା।

ମୁଁ ସେ ପିଲାଙ୍କୁ ସାଙ୍ଗରେ ନେଇ ଯେତେବେଳେ ହରିଆ ନନା ହୋଟେଲ୍‌ରେ ଯାଇ ଖାଇବା ପାଇଁ ପହଁଚିଲୁ, ଆମେ ଯେମିତି କିଛି ଗୋଟାଏ ଅପରାଧ କଲା ଭଳି ହରିଆ ନନା କଡ଼ା ଦୃଷ୍ଟିରେ ଆମକୁ ପଚାରିଲା କୁଆଡ଼େ ଆସିଲ? ମୁଁ କହିଲି ଖାଇବା ପାଇଁ। ହରିଆ ନନା ଚଢ଼ା କଣ୍ଠରେ ଉତ୍ତର ଦେଲା ଅଭିକା ହବ ନାହିଁ, ପରେ ଆସ। ହରିଆ ନନା ବେଖାତିର ଭାବରେ ଯାଇ କାମରେ ଲାଗିଲା। ଆମେ ଚୁପ୍‌ଚାପ୍ ମ୍ୟୁନିସିପାଲିଟି ହତାରୁ ହଷ୍ଟେଲ୍‌କୁ ଫେରିଲୁ। ସେତେବେଳେ ହରିଆ ନନା ହୋଟେଲ୍ କରିଥାଏ ମ୍ୟୁନିସିପାଲିଟି ହତା ଭିତରେ।

କିଛି ସମୟ ଗତ ହେଲାରୁ ଆମେ ପୁଣି ହରିଆ ନନା ହୋଟେଲ୍‌କୁ ଯାଇ ପହଁଚିଲା ମାତ୍ରେ ହରିଆ ନନା ଆମକୁ ଧମକ ଦେଲା ଭଳି କହିଲା ତେମେ (ତୁମେ ନୁହଁ) ପୁଣି ଆସିଲଣି? ଅଭିକା ହବ ନାହିଁ। ପରେ ଆସ। ହରିଆ ନନା ଏତକ କହି ତା କାମରେ ଲାଗିଲା।

ଆମେ ପଇସା ଦେଇ ଖାଇବୁ, ହରିଆ ନନା କିନ୍ତୁ ଯା ବ୍ୟବହାର କରୁଥାଏ, ଯେମିତି ଆମେ ମାଗଣା ଭୋଜନ କେନ୍ଦ୍ରରେ ଖାଇବାକୁ ଗଲା ଭଳି। ରାତି କ୍ରମଶଃ ବଢୁଛି ଆଉ କେତେ ସମୟ ଅପେକ୍ଷା କରିବୁ? ହରିଆ ନନା ହୋଟେଲ୍ ଛଡ଼ା ତ କେଉଁଟି ଖାଇବାକୁ ମନ ହଉନାହିଁ। କଣ କରିବା? ହଷ୍ଟେଲ୍‌କୁ ଫେରି ଆହୁରି କିଛି ସମୟ ଅପେକ୍ଷା କଲୁ। ହରିଆ ନନା ହୋଟେଲ୍‌କୁ ଯାଇ ଫେରିଲା ବେଳକୁ, ହୋଟେଲ୍‌ର ଛେଁ ଛେଁ ଶବ୍ଦ ବାସନାରେ ଭୋକର ତୀବ୍ରତା ଆହୁରି ବଢ଼ି ଯାଉଥାଏ। ଉପାୟ କଣ? ହରିଆ ନନା ଯେତେ ଲାଞ୍ଛନା ଦେଲେ ମଧ୍ୟ ମନ ତାରି ହାତ ରୋଷେଇ ଖାଇବା ପାଇଁ। ପୁଣି କିଛି ସମୟ ପରେ ହରିଆ ନନା ହୋଟେଲ୍‌କୁ ଗଲୁ। ହରିଆ ନନା ଜାଣେ ମୁଁ ସ୍କୁଲର ଡାକ୍ତର ଆଉ ମୋ ସାଥିରେ ଯାଇଥିବା ପିଲା କେଇଜଣ ସ୍କୁଲର ଛାତ୍ର। ହରିଆ ନନା ଏଥର ଖାଇବାକୁ ଦବା ପାଇଁ ରାଜି ହେଇ ମୋ ପାଇଁ ଖଣ୍ଡେ ତାଳପତ୍ର ତିଆରି ଚଟେଇ (ଆସନ) ପକେଇ ଦେଲା। ଛାତ୍ରଙ୍କୁ ଆସନ ଦେଲା ନାହିଁ। ମୁଁ ଯେତେବେଳେ ସେଦିନ ରାତିରେ ହରିଆ ନନା ହୋଟେଲ୍‌ରେ ଖାଇ ବସିଲି ମନେ ମନେ ଅତି ଦୁଃଖରେ ବଳଦେବଜୀଉଙ୍କୁ ଜଣେଇଲି, ପ୍ରଭୁ, ମୁଁ ଜଣେ ଡାକ୍ତର। ଏ ହୋଟେଲ୍‌ବାଲା ହେଇ, ଗଣ୍ଡାଏ ଯା ହୋଟେଲ୍‌ରେ ଖାଇବି ବୋଲି ଏ ମୋତେ ଏତେ ଲାଞ୍ଛିତ କରୁଛି, ଯାର କଣ କିଛି ପ୍ରତିକାର ନାହିଁ? ଏତିକି ବଳଦେବଜୀଉଙ୍କୁ ମନେମନେ ଜଣେଇ ସେଦିନ ରାତ୍ରି ଭୋଜନ ହରିଆ ନନା ହୋଟେଲ୍‌ରେ

ସାରି ମନ ଦୁଃଖରେ ହଷ୍ଟେଲକୁ ଛାତ୍ରଙ୍କ ଗହଣରେ ଫେରିଲି । ବଳଦେବଜୀଉ କେମିତି ମୋର କାତର ପ୍ରାର୍ଥନା ଶୁଣିଥିଲେ, ସେକଥା ପରେ ବର୍ଣ୍ଣନା କରିବି ।

ତା'ର ପରେ ପରେ ଆଉ ପିଲାଏ ଆସିଗଲେ । ମେସ୍ ଆରମ୍ଭ ହେଇ ଖାଇବା ପିଇବା ନିୟମିତ ଚାଲିଲା । ଆଉ ହରିଆ ନନା ହୋଟେଲ୍‌କୁ ଯିବା ପାଇଁ ପଡ଼ିଲାନି । କିଛିଦିନ ପରେ ସେହି ଯେଉଁ football ଖେଳରେ ଗଣ୍ଡଗୋଳ ଯୋଗୁଁ ମୋତେ ଓ ଅନ୍ୟାନ୍ୟ player କୁ କୈଫିୟତ୍ ମଗାଯାଇ ଥିଲା, ସେ ବିଷୟରେ ଦିନେ ସନ୍ଧ୍ୟା ପରେ managing committee ବସିଲା । ସବୁ member ମାନେ ଆସିଲେ । S.D.O.(ସ୍କୁଲର secretary ) ମନି ଗୁହ ଆସିଲେ । ତାଙ୍କ ମଧ୍ୟରେ କେତେ କଣ ଆଲୋଚନା ହେଉଥାଏ । ମୁଁ ଏବଂ ଅନ୍ୟାନ୍ୟ ମାନେ ବାହାରେ ଅପେକ୍ଷା କରିଥାଉ । କାହାକୁ ଡାକରା ପଡ଼ିବ, କଣ ପଚରାଉଚରା ହବ, ଏଥିପାଇଁ ।

କିଛି ସମୟ ପରେ ମୋତେ ଡକା ହେଲା । ମୁଁ ଗଲି, ସମସ୍ତଙ୍କୁ ଯଥାଯୋଗ୍ୟ ପ୍ରଣାମ କଲା ମାତ୍ରେ ମନି ଗୁହ ମୋର ଖେଳର ଉଚ୍ଛ୍ୱସିତ ପ୍ରଶଂସା କଲେ । ମୋର କେବଳ ଏତିକି ମନେ ଅଛି He is a standard centre forward. ଏହାପରେ ମନି ଗୁହ ମୋତେ ବଙ୍ଗଳାରେ ପଚାରିଲେ ଯେ ମୋତେ ଖେଳ ମଧ୍ୟରେ କେହି ମାରିଥିଲେ କି ? ଏ ପ୍ରଶ୍ନର ଉତ୍ତର ଦବାକୁ ଯାଇ ଏକ ସେକେଣ୍ଡରେ ମୋର ମନେ ପଡ଼ିଗଲା ମୁଁ town teamର ଜଣେ playerକୁ ଖେଳ ଭିତରେ ଯେଉଁ ଧମକ ଦେଇଥିଲି ଯେ ତାକୁ ମାଡ଼ ଦେଇ ହସ୍‌ପିଟାଲ୍‌କୁ ପଠେଇବି ସେଥିପାଇଁ ଏ ପ୍ରଶ୍ନଟା କଣ ଗୋଟାଏ leading question ? ମୁଁ ଯଦି ନାହିଁ କରିଦିଏ ଯେ ନା, ମୋତେ କେହି ଖେଳ ମଧ୍ୟରେ ଆଘାତ କରି ନାହାନ୍ତି ତାହେଲେ ପୁଣି ପ୍ରଶ୍ନ କରିବେ ଯେ ମୁଁ ତାହେଲେ କାହିଁକି town teamର ଜଣେ player କୁ ଅଯଥା ମାରିବାକୁ ଧମକ ଦେଇଥିଲି ? ଏଥିରେ ମୁଁ ନିଜେ ଦୋଷୀ ସାବ୍ୟସ୍ତ ହେବି । ଏଣୁ ମୁଁ ନିଜକୁ ବଞ୍ଚେଇବା ପାଇଁ ମିଥ୍ୟାର ଆଶ୍ରୟ ନେବାକୁ ବାଧ ହେଇ କହିଲି, ସେହି ଯେଉଁ player କୁ ଧମକ ଦେଇଥିଲି ତାରି ନାଁ କହିଲି ଯେ ସେ ମୋତେ ଆଘାତ କରିଥିଲା । ଏ ଉତ୍ତର ଦେଲା ପରେ ମନି ଗୁହ ପୁଣି ପ୍ରଶ୍ନ କଲେ ଆପଣ ତାକୁ ମାରିବାକୁ ଧମକ ଦେଇଥିଲେ । ମୁଁ କହିଲି ହଁ । ମନି ଗୁହ ମୋର "ହଁ" କହିବାର ଶୁଣି ଖୁସି ହେଇ କହି ଉଠିଲେ, How honest and how brave he is!

Managing committee member ମାନଙ୍କ ମଧ୍ୟରୁ ଜଣେ ଓକିଲ ମୋତେ ଦୋଷ ଦେଇ କହିଲେ ଯେ ମୁଁ ଜଣେ teacher ହେଇ ଯେତେବେଳେ ପଡ଼ିଆରେ ଖେଳୁଥିଲି, ମୁଁ କାହିଁକି ଅନ୍ୟାନ୍ୟ player ମାନଙ୍କୁ control କଲି ନାହିଁ ? ଆଉ ଜଣେ ଓକିଲ member ଏହାର ପ୍ରତିବାଦ କରି କହିଲେ ସେ ପଡ଼ିଆରେ teacher ନଥିଲେ । ସେ ଜଣେ ସେଠି ନିଜେ player ଥିଲେ । ଉଦାହରଣ ସ୍ୱରୂପ କହିଲେ, ଯୁଦ୍ଧ କ୍ଷେତ୍ରରେ ଯଦି captain କୁ ସୈନ୍ୟମାନେ ନମାନିବେ captain କଣ କରିବ ସେଠି ? ଏମିତି କେତେକ ସେମାନଙ୍କ ମଧ୍ୟରେ ବାଦାନୁବାଦ ଚାଲିବା ଭିତରେ ମନି ଗୁହ କହିଲେ All right you can go now. ମୁଁ ସେଠୁଁ ଚାଲି ଆସିଲି ।

ତହିଁ ଆରଦିନ ସକାଳେ ମୁଁ ସେଠା Asst. Surgeon ଡାକ୍ତର ରଘୁ ନାଥ ସାହୁଙ୍କ ପାଖକୁ ଦୌଡ଼ିଲି ଜାଣିବା ପାଇଁ ମୁଁ କାଲି ସେଠୁ ଆସିବା ପରେ ଆଉ କଣ ହେଲା ? ଡାକ୍ତର ରଘୁ ସାହୁ କହିଲେ ତୁମକୁ ଗୋଟାଏ କିଛି punishment ଦବାକୁ secretary ଚେଷ୍ଟା କରୁଥିଲେ । କିନ୍ତୁ ତୁମ ବିରୁଦ୍ଧରେ କିଛି ପ୍ରମାଣ ନମିଳିବାରୁ କିଛି punishment ଦେଇ ପାରିଲେ ନାହିଁ । ମନି ଗୁହ (secretary) ଆକ୍ଷେପ କରି କହିଲେ କାହାରି କିଛି କରି ହେଲା ନାହିଁ । ମୋତେ ମଧ ପିଲାଗୁରା ମାରିଲେ । ଏଣୁ ସେ ବର୍ଷର ଖେଳ ଆମର ସେତିକିରେ ଶେଷ ହେଲା ।

ଏଥି ପୂର୍ବରୁ ଗୋଟାଏ ଘଟଣା ଲେଖିବାକୁ ଭୁଲି ଯାଇଛି । ଘଟଣା ହେଲା କେନ୍ଦ୍ରାପଡ଼ାରେ ଚାକିରିକି ଆସିବା ପୂର୍ବରୁ ମୋର ଗୋଟାଏ ଗପ, ନାଁ-ମା, ଆରତି ପତ୍ରିକାରେ ଦେଇ ଯାଇଥିଲି । ଏଇ "ମା" ଗପ ଯୋଗୁଁ ତତ୍କାଳୀନ ସହକାର ପତ୍ରିକାର ସମ୍ପାଦକ ବାଳକୃଷ୍ଣ କରଙ୍କ ସଙ୍ଗେ

ମନୋମାଳିନ୍ୟ ଘଟିଥିଲା । ସେ ମୋର ମା ଗପକୁ ତାଙ୍କର ସହକାର ପତ୍ରିକାର standardକୁ ହଉ ନାହିଁ ବୋଲି ଫେରେଇ ଦବାରୁ ମୁଁ ତାଙ୍କୁ ମୋର ଔଦ୍ଧତ୍ୟ ପ୍ରକାଶ କରି ବେଶ୍ ଦି'କଥା ଶୁଣେଇ ଆସିଥିଲି । ସେ ଗପକୁ ତତ୍କାଳୀନ ଆରତି ପତ୍ରିକାର ସମ୍ପାଦକ ମାୟାଧର ମାନସିଂ ଆରତି ପତ୍ରିକାରେ ପ୍ରକାଶ କରିବା ପାଇଁ ଗ୍ରହଣ କରିଥିଲେ ।

ମୁଁ କେନ୍ଦ୍ରାପଡ଼ାରେ ଥାଏ । ଏହି ସମୟରେ ଆରତିର ପ୍ରଥମ ସଂଖ୍ୟା କଟକରେ ପ୍ରକାଶ ପାଏ । ସେଥିରେ ମୋର 'ମା' ଗପ ପ୍ରକାଶିତ ହୋଇଥାଏ । ସେ ସଂଖ୍ୟାରୁ ଗୋଟାଏ copy ମୋର କଟକରେ ଥୋରିଆସାହି ଠିକଣାରେ ସେମାନେ ପଠେଇ ଦେଲେ । ବାବା ସେ ସଂଖ୍ୟାକୁ ପଢ଼ି ମୋ ପାଖକୁ କେନ୍ଦ୍ରାପଡ଼ା ଠିକଣାରେ ପଠେଇଦେଲେ । ମୁଁ ଆରତିର ପ୍ରଥମ ସଂଖ୍ୟା ଦେଖି ଆନନ୍ଦରେ ଉତ୍‌ଫୁଲ୍ଲ ହେଇ ଉଠିଲି । କାରଣ ମୋର ଗପ ତ ପ୍ରକାଶ ପାଇଥାଏ । ଏଣେ ପ୍ରଚ୍ଛଦପଟରେ ବି. ବର୍ମାଙ୍କର 'ଦୀପାନ୍ୱିତା' ଚିତ୍ର ପ୍ରକାଶିତ ହେଇ ଅତି ଆକର୍ଷଣୀୟ ଓ ମନୋରମ ହେଇଥାଏ । ମୁଁ ସେ ସଂଖ୍ୟାକୁ ଖୋଲି ଦେଖୁ ଦେଖୁ ସ୍କୁଲର ଅନ୍ୟାନ୍ୟ ଶିକ୍ଷକମାନେ ମୋଠୁ ନେଇ ଦେଖିବାକୁ ଆରମ୍ଭ କଲେ । ମୁଁ ସେ ସଂଖ୍ୟାକୁ ସେଦିନ ଆଉ ପଢ଼ି ପାରିଲି ନାହିଁ । ମୁଁ ଲେଖାଲେଖି କରେ ବୋଲି ସେହିଦିନ ସେଠା ଶିକ୍ଷକମାନଙ୍କ ଧାରଣା ଜନ୍ମିଲା ।

ସ୍କୁଲ ଛୁଟି ପରେ ମୁଁ ଆରତି ପତ୍ରିକାକୁ ଆଣି ହଷ୍ଟେଲରେ ମୋ ରୁମ୍‌ର ଟେବୁଲ୍ ଉପରେ ଥୋଇ ଥାଏ, ସନ୍ଧ୍ୟା ପରେ ପଢ଼ିବି । ଏଇ ସମୟରେ ମୋ ରୁମ୍‌କୁ ଯେଉଁ ପିଲାମାନେ ଆସୁଥାନ୍ତି ମୋତେ କିଛି ପଚାରିବା ପାଇଁ, ସେମାନେ ସେ ପତ୍ରିକାକୁ ଖେଳେଇ ମେଲେଇ ଦେଖି ଚାଲି ଯାଉଥାନ୍ତି । ଏହି ସମୟରେ ଆଉ ଜଣେ ପିଲା ଆସିଲା, ସେ ମୋ ସହିତରେ କଥାବର୍ତ୍ତା କରୁ କରୁ ସେ ପତ୍ରିକାକୁ ଖେଳେଇ ଦେଖୁ ଦେଖୁ ମୋତେ ଅନୁରୋଧ କଲା, ସାର୍ ମୁଁ ଏ ପତ୍ରିକା ଖଣ୍ଡକ କିଛି ସମୟ ପାଇଁ ନେଇ ପାରେକି ? ମୁଁ କହିଲି ହଉ ନିଅ ।

ସେ ପିଲାଟି ସେ ପତ୍ରିକା **ଖଣ୍ଡକ** ନେଇ ଗଲା ପରେ ମୋର ମନରେ ପ୍ରଶ୍ନ ଉଠିଲା, କେତେ ଜଣ ପିଲା ତ ଏ ପତ୍ରିକା ଦେଖିଲେ କେହି ତ ପତ୍ରିକା ଖଣ୍ଡକ ନବା ପାଇଁ ମୋତେ ଅନୁରୋଧ କଲେ ନାହିଁ । ଏ ପିଲାଟି କେମିତି ନବା ପାଇଁ ଅନୁରୋଧ କଲା ? ଏ ନିଶ୍ଚୟ ଭଲ ପିଲା ହେଇଥିବ । ଏହାର ବୋଧହୁଏ literary tendency ଅଛି । ସେ ପିଲାଟି ପତ୍ରିକା ଖଣ୍ଡକ ନେଲା ବେଳେ ତାର ନାମ ପଚାରିଥିଲି । ସେ କହିଲା କାଳୀ ଚରଣ ରାଉତରାୟ, ଡାକ ନାମ କାଳୀ । ତାପରେ ମୁଁ ଅନ୍ୟାନ୍ୟ ପିଲାଙ୍କୁ ପଚାରି ତାର ଖବର ନେଲି ଯେ, ସେ ପିଲା ୯ମ ଶ୍ରେଣୀରେ ପଢ଼େ । କ୍ଲାସରେ ଫାଷ୍ଟ ହୁଏ । ଅତି ଭଲ ପିଲା । ସେ ଭଲ ଅଭିନୟ କରିପାରେ ଇତ୍ୟାଦି ଇତ୍ୟାଦି । ମୋ ଦେଖିବାରେ କୃଷ୍ଣକାନ୍ତ, ବଳିଷ୍ଠ, ଅତି ନମ୍ର ସ୍ୱଭାବର । ସେ ପିଲାଟି ଆରତି ପତ୍ରିକା ଖଣ୍ଡକ ପଢ଼ିସାରି ଯେଉଁ ଦିନ ଫେରେଇ ଦବାକୁ ଆସେ, ମୋତେ କହିଲା ସାର୍, ମୁଁ କେମିତି କବିତା, ଗଳ୍ପ ଲେଖି ପାରନ୍ତି । ମୁଁ କହିଲି ତୁମେ କିଛି ଲେଖିଛ ? କାଳୀ କହିଲା, ହଁ ସାର୍ କେତେକ କବିତା ଲେଖି ରଖିଛି । ଆପଣଙ୍କୁ ଦେଖେଇବାକୁ ସରମ ଲାଗୁଛି । ମୁଁ କହିଲି ସରମ କରିବାର କିଛି ନାହିଁ, ତୁମେ ସେ କବିତା ସବୁ ଆଣ, ମୋତେ ଦେଖାଅ । ଯା ଯେଉଁଠି ଭୁଲ୍ ଥିବ ସଂଶୋଧନ କରିଦେବି । ଆଗେ ମୁଁ ଦେଖେ ତୁମେ କେମିତି ଲେଖୁଛ । ମୁଁ ମୋର ଯଥାସାଧ୍ୟ ସାହାଯ୍ୟ କରିବି, ଲଜ୍ଜିତ ହବାର କିଛି ନାହିଁ ।

ତାପରେ କାଳୀ ତା'ର କବିତା, ଗଳ୍ପ ଆଣି ମୋତେ ଦେଖାଏ । ମୁଁ ତା'ର ଲେଖା ଦେଖି ବେଶ୍ ଆନନ୍ଦ ଅନୁଭବ କଲି । ତା'ର ଶିକ୍ଷା ତୁଳନାରେ ବେଶ୍ ଲେଖି ପାରୁଛି । ଲେଖାଗୁଡ଼ିକ ପ୍ରାୟ ରାଧାନାଥଙ୍କ ଶୈଳୀର ଅନୁସରଣରେ । ମୁଁ କେତେକ ସଂଶୋଧନ କଲି, କେତେକ ବତେଇଲି କେମିତି ଧରଣରେ ଲେଖିବାକୁ ହବ ।

ଏହାପରେ କାଳୀ ଆଉ ମୋ ପାଖ ଛାଡ଼େନା । ସବୁବେଳେ ମୋ ପାଖରେ ବସିବାର ଇଚ୍ଛା । ଏଥି ମଧ୍ୟରେ ଘରେ କାଳୀ ୯ମ ଶ୍ରେଣୀରୁ ୧୦ମ ଶ୍ରେଣୀକୁ କ୍ଲାସରେ ପ୍ରଥମ ହେଇ ପ୍ରମୋସନ୍ ପାଇବା ଯୋଗୁଁ କେତେଗୁଡ଼ିଏ ବହି ପୁରସ୍କାର ପାଏ । ସେ ବହିଗୁଡ଼ିକ ଆଣି ମୋତେ ଦେଖେଇଲା । ସେ ବହିଗୁଡ଼ିକ ଭିତରେ

ଓଡ଼ିଶାର ଲବ୍ଧପ୍ରତିଷ୍ଠିତ ସାହିତ୍ୟିକଙ୍କ "ମାଟିର ମଣିଷ" ଉପନ୍ୟାସ ଖଣ୍ଡେ ଥିଲା । ମୁଁ କାଳିନ୍ଦୀ ବାବୁଙ୍କ "ମାଟିର ମଣିଷ" ଉପନ୍ୟାସ ନାଁ ଶୁଣିଥିଲି । କିନ୍ତୁ ପଢ଼ି ନଥିଲି । ଏଣୁ ମୁଁ କାଳୀକୁ କହିଲି କାଳୀ, ତୁମେ "ମାଟିର ମଣିଷ" ବହି ଖଣ୍ଡକ ପଢ଼, ମୁଁ ଶୁଣିବି ।

କାଳୀ ମାଟିର ମଣିଷ ବହିକୁ ଏମିତି ଭାବରେ ପଢ଼ିଲା ମୋର ମନେ ହେଲା ଯେମିତି ମୁଁ ମାଟିର ମଣିଷ ବହିର ଅଭିନୟ ଦେଖିଲି । ପରେ ସ୍କୁଲରେ କେତେକ ଉତ୍ସବରେ ନାଟକ ପରିବେଷଣରେ କାଳୀ ଜଣେ ଭଲ ଅଭିନେତା ବୋଲି ପରିଚୟ ପାଇଲା । ପୁରୁଷ, ନାରୀ ଉଭୟେ ଭୂମିକାରେ କାଳୀ ଭଲ ଅଭିନୟ କରିପାରେ । କିଛିଦିନ ପରେ ଦେଖିଲି କାଳୀ ଓଡ଼ିଆ, ବଙ୍ଗଳା ଓ ଇଂରାଜୀରେ କବିତା, ଗଳ୍ପ ଲେଖି ପାରିଲା ।

କିଛିଦିନ ପରେ କେନ୍ଦ୍ରାପଡ଼ା ହାଇସ୍କୁଲର ତତ୍‌କାଳୀନ ସହକାରୀ ଶିକ୍ଷକ ଓଡ଼ିଶାର ଲବ୍ଧପ୍ରତିଷ୍ଠ ସାହିତ୍ୟିକ ଭଗବାନ ପତି ଓ ମୋର ଉଦ୍ୟମରେ କେନ୍ଦ୍ରାପଡ଼ା ହାଇସ୍କୁଲରୁ "ମଞ୍ଜରୀ" ନାମକ ଖଣ୍ଡିଏ ପତ୍ରିକା ପ୍ରକାଶିତ ହୁଏ । ସେଥିରେ କାଳୀର ଓଡ଼ିଆ, ବଙ୍ଗଳା ଓ ଇଂରାଜୀରେ ଲେଖା ପ୍ରକାଶ ପାଏ ।

କ୍ରମଶଃ କାଳୀକୁ ଦେଖିଲି ସେ ଯେମିତି ମୋର ନିଜର ପୁଅ । ସ୍କୁଲରେ ମଧ୍ୟ ଅନେକଙ୍କ ମୁହଁରେ ଶୁଣିବାକୁ ପାଇଲି କାଳୀ ଡାକ୍ତର ବାବୁଙ୍କ ପୁଅ । ମୁଁ ଯଦି କୁଆଡ଼େ ଯାଇଛି କାଳୀ ମୋତେ ଅପେକ୍ଷା କରି ନଖାଇ ବସିଥିବ । ମୁଁ ଆସିଲେ ଆମେ ଦିହେଁ ଅଳ୍ପ ଦୂର ଛଡ଼ାରେ ଖାଇ ବସୁ । କାଳୀ ଯଦି କୁଆଡ଼େ ଯାଇଛି ମୁଁ ନଖାଇ ଅପେକ୍ଷା କରି ବସିଥାଏ । କାଳୀ ଆସିଲେ ଖାଇବି । କାଳୀ ଆସିଲେ ଏକାଠି ଅଳ୍ପ ଦୂର ଛଡ଼ାରେ ଖାଇ ବସୁ ।

ଏଥି ମଧ୍ୟରେ ଥରେ ମୁଁ କଟକକୁ ଆସି ଘରେ ମା'ଙ୍କଠାରୁ ଶୁଣିଲି ଯେ ବାବାଙ୍କର ଛାତିରେ କି ଯନ୍ତ୍ରଣା ହଉଛି । ବାବାଙ୍କୁ ପଚାରି ବୁଝିଲି, ବାବା କହିଲେ ଦୌଡ଼ି ଆସିଲେ ଯେମିତି ଧଇଁସଇଁ ଲାଗେ ମଝିରେ ମଝିରେ ସେମିତି ଜଣା ଯାଉଛି ଆଉ ଦୁର୍ବଳ ଲାଗୁଛି ।

ମୁଁ ବାବାଙ୍କ କଥାରୁ ବୁଝି ପାରିଲି ଏ ବାବାଙ୍କର ହୃତ୍‌ପିଣ୍ଡର ରୋଗ (heart disease) ଆରମ୍ଭ ହେଲା । କାରଣ ଅନେକ ଦିନ ଆଗରୁ ବାବାଙ୍କର ନାଡ଼ିର ଗତିର ବ୍ୟତିକ୍ରମ ଘଟୁଥିଲା । କିନ୍ତୁ ବାବା ସେଇଥିରେ ବେଶ୍ ସୁସ୍ଥ ସବଳ ଥିଲେ । ଆଜିକାଲି ପରି କଟକରେ ତ କେହି ହୃଦ୍‌ରୋଗ ବିଶାରଦ (cardiologist) ନଥିଲେ । ଏଣୁ ସେତେବେଳକାର Medical Schoolର କେତେକ ଡାକ୍ତରଙ୍କ ପରାମର୍ଶ ଅନୁସାରେ ବାବାଙ୍କୁ ଔଷଧ କିଣି ଦେଇ ମୁଁ କେନ୍ଦ୍ରାପଡ଼ା ଚାଲିଗଲି ।

ଆଗରୁ ଲେଖିଛି ମୋର ବିବାହ ପ୍ରସ୍ତାବ ନେଇ ଖୋର୍ଦ୍ଧାରୁ ଯେଉଁ ପୂର୍ବ ବଙ୍ଗୀୟ ଭଦ୍ରଲୋକ ଆସିଥିଲେ ତାଙ୍କ ସହିତରେ କଥା ହେଉଥିଲା କନ୍ୟା ପସନ୍ଦ ହେଲେ ଜବାବ ଦିଆଯିବ । ଏଣୁ ବାବା ଦିନେ ଖୋର୍ଦ୍ଧା ଯାଇ କନ୍ୟା ଦେଖି, ତାଙ୍କଠାରୁ କନ୍ୟାର ଖଣ୍ଡେ ଫଟୋ ଆଣି ମୋ ପାଖକୁ ପଠେଇଦେଲେ । ମୋର ପସନ୍ଦ ହେଲେ ଜବାବ ଦିଆଯିବ । ମୁଁ ବାବାଙ୍କର ଚିଠି ଖୋଲି ଫଟୋ ଦେଖିଲା ମାତ୍ରେ ମୋର ହଠାତ୍ ମନେ ହେଲା ଏଇ ମୋର ସ୍ତ୍ରୀର ଫଟୋ । ଫଟୋକୁ ଅନ୍ୟାନ୍ୟ ଶିକ୍ଷକ ଦେଖିଲେ ସେମାନେ ମଧ୍ୟ ଭଲ ବୋଲି ମତ ଦେଲେ । ମୋର ମନଟା ତଥାପି କାହିଁକି ମାନୁ ନଥାଏ । ଏମିତି ମାନସିକ ଦ୍ୱନ୍ଦ୍ୱ ଭିତରେ ଜଣେ ତରୁଣ ଶିକ୍ଷକ କହି ପକେଇଲେ କଣ ଡାକ୍ତର ବାବୁ, କନ୍ୟାର ଫଟୋ "ଯମୁନା" ପରି ଦେଖିବାକୁ, ଆପଣଙ୍କର ପସନ୍ଦ ହଉ ନାହିଁ କାହିଁକି ?

"ଯମୁନା" ପରି ଚେହେରା ଦେଖିବାକୁ ଶୁଣି ମୋ ମନଟା ଆନନ୍ଦରେ ଭରି ଉଠିଲା କାରଣ "ଯମୁନା" ହଉଛି ସେତେବେଳକାର ବଙ୍ଗଳା ବାଣୀଚିତ୍ରର ନାମକରା ବଙ୍ଗୀୟ ଅଭିନେତ୍ରୀ । କିନ୍ତୁ ଯମୁନାର ମୁଖଶ୍ରୀ ଛଡ଼ା ଅଙ୍ଗଶ୍ରୀ ଅତି କଦର୍ଯ୍ୟ ଅର୍ଥାତ୍ ଯମୁନାର କେବଳ ମୁହଁଟି ସୁନ୍ଦର, ଦେହ ହାଡ଼ଚମ । କିନ୍ତୁ ତଥାପି ଯମୁନାର ଅଭିନୟ, କହିବାର ଭଙ୍ଗୀରେ ଲୋକେ ସେତେବେଳେ ଉନ୍ମାଦ । ଯେଉଁ ବଙ୍ଗଳା ଫିଲ୍ମରେ ପ୍ରମଥେଶ ବଡ଼ୁଆ ଆଉ ଯମୁନା ଅଭିନୟ କରିଛନ୍ତି ସେ ଫିଲ୍ମ ଦେଖିବା ପାଇଁ ଲୋକେ ପାଗଳ, ଟିକେଟ୍ ପାଇବା ପାଇଁ ମରାମରି, ହାତାହାତି ।

ଏଣୁ ସେତେବେଳେ କେତେକ ଝିଅ ଯା'ର ମୁହଁଟି ସୁନ୍ଦର ଦେହ ହାଡ଼ଚମ, ଯମୁନା ପରି ଗଠନ ଅନେକ ବାହା ହୋଇଗଲେ। ମୁଁ ମଧ ସେହି ପ୍ରଲୋଭନରେ ପଡ଼ିଲି। ତଥାପି ଭାବିଲି ଫଟୋ ମୋର ପସନ୍ଦ ହୋଇଛି ବୋଲି ବାବାଙ୍କୁ କେମିତି ଲେଖିବି? କେବେତ ଏମିତି ଘଟଣାରେ ପଡ଼ି ନଥିଲି। ଏଇ ପ୍ରଥମ, ପରିଷ୍କାର ମତ ନଦେଲେ ବି ଚଳୁ ନାହିଁ। ଏଣୁ ଲଜ୍ଜା ସରମ ଛାଡ଼ି ବାବାଙ୍କୁ ଲେଖିଲି ଫଟୋ ପସନ୍ଦ ହୋଇଛି କିନ୍ତୁ ତା'ସହିତରେ ଲେଖିଲି ମୁଁ ଗଲେ ଜବାବ ଦେବେ।

କେତେଦିନ ଛାଡ଼ି କଟକ ଆସିଲି କାରଣ ବାବାଙ୍କୁ ଦେଖିବି, କେମିତି ଅଛନ୍ତି? ପୁଣି ବିବାହର ଜବାବ ଦିଆଯିବ। କଟକରେ ଆସି ଦେଖେ ବାବାଙ୍କର ସ୍ୱାସ୍ଥ୍ୟ ପୂର୍ବ ପରି ଅଛି। ଛାତିର ଯନ୍ତ୍ରଣା ଅଳ୍ପ କିଛି କମିଛି। ବାବା ମୋର ବିବାହର ଜବାବ ଖଣ୍ଡିଏ ପୋଷ୍ଟକାର୍ଡ଼ ଲେଖି ମୋତେ ଦେଲେ ଡାକଘରେ ପକେଇ ଦବା ପାଇଁ। ମୁଁ ଚିଠି ଖଣ୍ଡିକ ନେଇ ଡାକଘରେ ପକେଇ ଦେଇ ଆସି ପୁଣି ଭାବିଲି ଏଠି ବିଭା ହେଲେ ଭଲ ହବ କି ମନ୍ଦ ହବ? କାରଣ ଏମାନେ ଅଳ୍ପ ଦିନ ହେଲା ପୂର୍ବ ବଙ୍ଗଳାରୁ ଆସି ଓଡ଼ିଶାରେ ବସବାସ କରୁଛନ୍ତି। ଏ ପରିବାରର ଧରଣ, ଚାଲିଚଳଣ ଆମକୁ ଜଣା ନାହିଁ। ଗୌରୀଶଙ୍କର ରାୟଙ୍କ ଅମଳରୁ ଆମର ବଂଶର ଲୋକଙ୍କୁ ଓଡ଼ିଶାକୁ ନବାଗତ ବଙ୍ଗାଳୀଙ୍କୁ ଘୃଣା ଚକ୍ଷୁରେ ଦେଖିବା ଗୋଟାଏ ଅଭ୍ୟାସଗତ ଗୁଣ। ବାବାଙ୍କର ଯେ କେମିତି ମନ ମାନିଲା ଏ ନବାଗତ ପୂର୍ବ ବଙ୍ଗୀୟ ବଙ୍ଗାଳୀ ପରିବାର ଝିଅକୁ ବୋହୂ କରିବା ପାଇଁ, ମୁଁ ବୁଝି ପାରିଲି ନାହିଁ। ଏ କେବଳ ଯୋଗାଯୋଗ, ଯେ ଯା'ର କନ୍ୟା, ଯେ ଯା'ର ବର। ନଚେତ୍ ବାବାଙ୍କର ଯେଉଁ ନବାଗତ ବଙ୍ଗାଳୀଙ୍କ ଉପରେ ବିଷ ଦୃଷ୍ଟି, ତାଙ୍କର ମତ ପୁଣି ବଦଳିଲା କେମିତି?

ମୁଁ ଚିଠି ପକେଇ ଦେଇ ଆସି ମା'ଙ୍କୁ ରୋଷେଇ ଘରେ କହିଲି ମା ଏଠି ମୁଁ ବିଭା ହବା ମୋତେ କାହିଁକି ଭଲ ମନେ ହଉନି। ଏ ଯେ ଜବାବ ଦିଆଗଲା, ଯାକୁ ଆଉ ଖଣ୍ଡେ ଚିଠି ଲେଖି ମନା କରିଦିଅ।

ମା ମୋ ଠାରୁ ଏମିତି କଥା ଶୁଣି କହିଲେ କିଛି ମନ୍ଦ ହବ ନାହିଁ, ଭଲ ଘର, ଶଶୁର, ଶାଶୁ ଅଛନ୍ତି। ଶଳା ଓଭରସିୟର, ତିନି ଜଣ ଶାଳୀ ଅଛନ୍ତି ପୁଣି ସେମାନେ ଖୋର୍ଦ୍ଧାରେ ବସବାସ କରିଛନ୍ତି। ଖୋର୍ଦ୍ଧା ଖୁବ୍ ସ୍ୱାସ୍ଥ୍ୟକର ଜାଗା। ଖୋର୍ଦ୍ଧାରେ ବଡ଼ମାମୁଁଙ୍କର ସାନ୍ତରାପୁରରେ ଯେଉଁ ଘର ଥିଲା ମାମୁଁ ତ ତାକୁ ବିକିଦେଲେ। ଆଉ ଆମର ଖୋର୍ଦ୍ଧାରେ ଠିଆ ହବାର ଜାଗା ନାହିଁ। କେତେବେଳେ କେମିତି ରୋଗରେ ଭୋଗିଲେ ଆମେ ସ୍ୱାସ୍ଥ୍ୟ ପରିବର୍ତ୍ତନ ଲାଗି ଖୋର୍ଦ୍ଧାରେ ମାମୁଁଙ୍କ ଘରେ ପହଁଚି ଯାଉଥିଲୁ। ଆଉ ତ ସେ ରାହା ନାହିଁ। ଏଣୁ ଖୋର୍ଦ୍ଧା ପରି ଜାଗାରେ ଆମ ଘରର ବନ୍ଧୁ ରହିବା ଭଲ।

ମା ପୁଣି କହିଲେ ଜବାବ ଯେତେବେଳେ ଦିଆ ହେଲାଣି ପୁଣି ବାରଣ କରିବା ଭଲ ନୁହେଁ। ବାବାଙ୍କର ତ କଥା ତ ଜାଣିଛୁ, ସେ ଯେଉଁଠି ଜବାବ ଦେଇଥିବେ ଆଉ ନାହିଁ କରିବେ ନାହିଁ। ଏଣୁ ବାବାଙ୍କୁ ଆଉ ଏକଥା କହିବା ଠିକ୍ ନୁହେଁ। ମୁଁ ଆଉ ମା'ଙ୍କୁ କିଛି ନକହି ଜାଣିଲି, ଏଇଠି ବିଭା ହବା ନିଶ୍ଚିତ। ଶଶୁରଙ୍କ ନାମ ହେଲା ଶ୍ରୀ ପୁଳିନ ବିହାରୀ ଘୋଷ। ସେ ବଙ୍ଗ ଦେଶରେ ଚାକିରି କରୁଥିଲେ। ଅଳ୍ପ କେତେକ ବର୍ଷ ହେଲା ଓଡ଼ିଶାକୁ ଆସି ପୁରୀ ଜିଲ୍ଲା ବୋର୍ଡ଼ ଅଧୀନରେ ଓଭରସିୟର ରୂପେ ଚାକିରି କରି ଅବସର ନେଇଥିଲେ। ତାଙ୍କର ପ୍ରଥମ ସନ୍ତାନ ହେଲା ପୁଅ। ତା'ପରେ ଚାରି ଝିଅ। ପୁଅ ଦେଖିବାକୁ ଯେମିତି ରୂପବାନ ଝିଅମାନେ ତତୋଧିକ ରୂପବତୀ। ଖଜୁରୀ ଗଛର କି ଗୁଣ ବାଛୁନିବି, ମୂଳରୁ ପାହାଚ ପାହାଚ। ପୁଅଙ୍କର ଦାନ୍ତ ବୋଝେ, ରୂପ ଦେଖିବାକୁ ପ୍ରକାରେ, ଚଳନୀୟ। ଝିଅମାନଙ୍କର ରୂପ ବର୍ଣ୍ଣନା କରିବାକୁ କଲମ ଚାଲୁ ନାହିଁ। କଣ ଲେଖିବି? ମୋର ମନେ ହୁଏ ଭଗବାନଙ୍କର ଯଦି ମଣିଷ ଗଢ଼ା ଫ୍ୟାକ୍ଟ୍ରି ଥାଏ, ସେଠି ମଣିଷ ଗଢ଼ି ଯେଉଁ ହାଡ଼, ମାଂସ, ରକ୍ତ ଇତ୍ୟାଦି ବଳେ ସେଗୁଡ଼ାକ ଅଯଥା ଫୋପାଡ଼ି ଦେଇ ନଷ୍ଟ କରିବେ କାହିଁକି? ସେଇ ପରିତ୍ୟକ୍ତ ବଳକା ଜିନିଷରେ ମୋର ଶାଳିମାନଙ୍କୁ ଗଢ଼ି ଦେଇଥିଲେ। ଆଉ ମଞ୍ଜି ଭଳି ଦାନ୍ତ ସେ ପୁଣି ପାଟି ଭିତରେ ନରହି ବାହାରକୁ ଲମ୍ଫ

ପ୍ରଦାନ କରିବା ଅବସ୍ଥାରେ ଅବସ୍ଥିତ । ଶରୀରର ଗଠନ ଖାଲି ହାଡ଼ ଚମ । ବଡ଼ ଭଉଣୀ ବଙ୍ଗର ଚବିଶପ୍ରଗଣାରେ ଜଣକୁ ବିବାହ କରିଥିଲେ, ତା' ତଳ ଭଉଣୀ କଟକ ଜିଲ୍ଲା ଦହୁଗ୍ରାମ ନିବାସୀ ବିରଜ ବଲ୍ଲଭ ମିତ୍ରଙ୍କୁ । ଏ ଜଣେ ରେଲ୍‌ବାଇ କର୍ମଚାରୀ, ତା' ତଳ ଭଉଣୀ କଟକ ଜିଲ୍ଲା ବାରଦା ଗ୍ରାମ ନିବାସୀ ଅଖିଳ ନାଥ ଦତ୍ତଙ୍କୁ, ଏ ଜଣେ ପୁଲିସ ବିଭାଗ କର୍ମଚାରୀ ଇନ୍‌ସପେକ୍ଟର । ମୋ ଭାଗରେ ପଡ଼ିଲେ ଶେଷ ଭଉଣୀ । ଯା'ଙ୍କର ଦନ୍ତରାଜି ସଂଯତ, ଲମ୍ବ ଦବାର ଅବସ୍ଥାରେ ନୁହଁ । ଦେହର ଗଠନ ଅଭିନେତ୍ରୀ ଯମୁନା ଭଳି, ମୁଖଶ୍ରୀ ମଧ୍ୟ ଯମୁନା ଭଳି । ଅଭିନେତ୍ରୀ ଯମୁନାକୁ ଭାବି ମୁଁ ବିବାହ ଫାଶରେ ଧରାପଡ଼ିଲି ।

ଶଳାଙ୍କର ନାମ ହେଲା ଅନିଲ ବିହାରୀ ଘୋଷ । ମୋର ବିବାହ ବେଳେ ଏ ସରକାରୀ ଓଭରସିୟର ରୂପେ ଚାକିରି କରୁଥିଲେ । ଏ ବିବାହ କରିଥିଲେ ବଙ୍ଗଦେଶରେ । ଶଳା ଭାଉଜଙ୍କ ରୂପ ଦେଖିବାକୁ ଗୋଟିଏ ମାଂସ ପିଣ୍ଡ ଭଳି । କେବଳ ମୁଖଶ୍ରୀ ଦେଖିବାକୁ ସୁନ୍ଦର ନାରୀ ସୁଲଭ । ବଡ଼ ଶାଳୀ ଆଗରୁ ଲେଖିଛି ଚବିଶପ୍ରଗଣାରେ ଜଣକୁ ବିବାହ କରିଥିଲେ । ଆଉ ତିନି ଭଉଣୀ ଏଇ ଓଡ଼ିଶାରେ କଟକ ଜିଲ୍ଲାରେ । ଶେଷ ଭଉଣୀ ମୋତେ ବିବାହ କଲେ । ମୁଁ ହେଲି କଟକ ଜିଲ୍ଲା ଅସୁରେଶ୍ୱର, ଦୀକ୍ଷିତପଡ଼ା ନିବାସୀ, ଡାକ୍ତରୀ ବିଭାଗର କର୍ମଚାରୀ, ଡାକ୍ତର । ବଡ଼ଶାଳୀଙ୍କର ନାଁ ହେଲା ସୁନୀତି ମିତ୍ର, ତା'ତଳ ଭଉଣୀଙ୍କ ନାଁ ସୁଷମା ମିତ୍ର, ତା'ତଳ ଭଉଣୀଙ୍କ ନାଁ ହେଲା ସୁରମା ଦତ୍ତ । ମୋର ପତ୍ନୀଙ୍କର ନାଁ ହେଲା ସୁନୀଲା ରାୟ ।

ମୋର ବିଭାଘର ବିଶେଷ ଦୁଃଖଦାୟକ ବାତାବରଣ ଭିତରେ ସମାହିତ ହେଲା । କାରଣ ମୁଁ ବିଭାହବା ପାଇଁ ଯେତେବେଳେ କେନ୍ଦ୍ରାପଡ଼ା ହାଇସ୍କୁଲରୁ ଛୁଟି ନେଇ ଆସି ପହଁଚେ ସେତେବେଳେ ଦେଖେ ବାବା ହୃଦରୋଗରେ ଆକ୍ରାନ୍ତ ହେଇ ଖାଲି ବସି ରହିଛନ୍ତି । ଚଲାବୁଲା କରିପାରୁ ନାହାନ୍ତି, କେଉଁଠି କିଛି ଯୋଗାଡ଼ ହେଇ ନାହିଁ । ବେଳେବେଳେ ବାବାଙ୍କ ଛାତିର ଯନ୍ତ୍ରଣା ଏମିତି ଉତ୍କଟ ହେଉଛି ଯେ ବାବା ବ୍ୟତିବ୍ୟସ୍ତ ହେଇ ପଡୁଛନ୍ତି । ତାଙ୍କର ଅବସ୍ଥା ଦେଖି ସମସ୍ତେ ଆତଙ୍କିତ ହେଇ ପଡୁଛନ୍ତି । ବାବା ପୁଣି ଯେତେବେଳେ ସୁସ୍ଥ ବୋଧ କରୁଛନ୍ତି ପୁଣି ମୋତେ କଣ କଣ କରିବାକୁ ହେବ, କେତେ ପ୍ରକାର ଆଦେଶ ଦଉଛନ୍ତି । ବନ୍ଧୁବାନ୍ଧବଙ୍କ ମଧ୍ୟରୁ କେବଳ ସାନମାଇଁ, ଗୋଟିଏ ମାଉସୀ ଝିଅ ଭଉଣୀ ଏବଂ ଭଣଜା ବୋହୂ ଓ ତାର ଗୋଟିଏ ଶିଶୁପୁତ୍ର, ଆଉ କେହି ଆସି ନାହାନ୍ତି । ମା'ଙ୍କର ଯା କରିବାର କଥା, ମା ଲାଗିଛନ୍ତି, ଭଣଜା ତାର ସ୍ତ୍ରୀ ଓ ପୁଅକୁ ଛାଡ଼ି ଦେଇ କୁଆଡ଼େ ଯାଇଛି । ଅନ୍ୟାନ୍ୟ ବ୍ୟବସ୍ଥା କରିବାକୁ ଆଉ କେହି ନାହିଁ । ଏଣୁ ମୋତେ ଏକା ଏକା ସବୁ କରିବାକୁ ପଡ଼ିଲା । ଛାମୁଡ଼ିଆ ବନ୍ଧା, ନିମନ୍ତ୍ରଣ ପତ୍ର ଛାପା, ରୋଷେଇବାସ କେଉଁଠି କେମିତି ହବ, ନିମନ୍ତ୍ରଣ ପତ୍ର ବାଣ୍ଟିବା, ବିବାହର ସୌଦାପତ୍ର ଯାହା ଦରକାର ସବୁ କିଣିବା ଇତ୍ୟାଦି ସବୁ କାମ କରି ସାରିଲା ପରେ ଅନେକ ବନ୍ଧୁବାନ୍ଧବ ଆସି ପହଁଚିଲେ । ଘର ଭର୍ତ୍ତି ହେଇଗଲା । କିନ୍ତୁ ସମସ୍ତେ ବାବାଙ୍କର ଅବସ୍ଥା ଦେଖି ଦୁଃଖିତ । ମୁଁ ମଧ୍ୟ ମନେ ମନେ ଭୟଭୀତ ହେଉଥାଏ ଯେ ବିବାହର ଶେଷ ପର୍ଯ୍ୟନ୍ତ ବାବା ବଞ୍ଚି ରହିବେ କି ନା?

ଯେଉଁଦିନ ରାତିକି ବିବାହ କାର୍ଯ୍ୟ ସମ୍ପନ୍ନ ହେବ ସେଦିନ ସକାଳୁ ବାବା ସୁସ୍ଥ ଲୋକ ଭଳି ଉଠି ବେଦି ଉପରେ ନିଜେ ତାଙ୍କର କର୍ମକର୍ମାଣି ସବୁ ଭଲ ଭାବରେ ସମାହିତ କଲେ । କିନ୍ତୁ ମଝିରେ ମଝିରେ କାନ୍ଦି ପକଉଥାନ୍ତି । ବେଦିର କାମ ସରିବା ପରେ ପୁଣି ବାବାଙ୍କର ହୃଦ୍ ଯନ୍ତ୍ରଣା ଆରମ୍ଭ ହେଲା । ସେଥିରେ ପୁଣି ଏକାଜିଦ୍ ଖୋର୍ଦ୍ଧା ଯିବେ । ବରକର୍ତ୍ତା ତ ଯିବା ନିଶ୍ଚିତ କିନ୍ତୁ ଦେହର ଅବସ୍ଥା ଯେମିତି, ସେଥିରେ ଭୟ ହଉଥାଏ, ବାଟରେ ଯଦି କିଛି ହେଲା । ମୋର ଆନ୍ତରିକ ଇଚ୍ଛା ଥାଏ ବାବା ଯିବେ କିନ୍ତୁ କଟକରୁ ଖୋର୍ଦ୍ଧା ପର୍ଯ୍ୟନ୍ତ ଟ୍ରେନ୍‌ରେ ଯିବା ଦ୍ୱାରା ଯଦି ହୃଦ୍‌ଯନ୍ତ୍ରଣା ବଢ଼ିଲା କଣ କରିବି?

ଶେଷ ପର୍ଯ୍ୟନ୍ତ ଯେ ଯେତେ ବାରଣ କଲେ ବାବା କିଛି ନମାନି ଖୋର୍ଦ୍ଧା ବାହାରିଲେ । ସାଙ୍ଗରେ ଡାକ୍ତର ମଧ୍ୟରେ ମୁଁ ଓ ମୋର ଭଣଜା, ରବି ଦାସ, ସାଙ୍ଗରେ ବାବାଙ୍କ ପାଇଁ ଔଷଧ ଇତ୍ୟାଦି ନେଇଥାଉ ।

କଟକରୁ ଟ୍ରେନ୍‌ରେ ଖୋର୍ଦ୍ଧା ପର୍ଯ୍ୟନ୍ତ ବାବା ବେଶ୍ ଭଲରେ ଗଲେ । ଖୋର୍ଦ୍ଧାରୋଡ଼ ଷ୍ଟେସନ୍‌ରୁ ଓଲେହି ବାବା, ମୁଁ, ଆଉ କେତେଜଣ କାର୍‌ରେ ବସିଗଲୁ । ମୁଁ ମଝିରେ ମଝିରେ ବାବାଙ୍କୁ ପଚାରୁଥାଏ କେମିତି ଲାଗୁଛି ? ବାବା କହୁଥାନ୍ତି ଭଲ ଲାଗୁଛି । କଟକରୁ ଟ୍ରେନ୍‌ରେ ଖୋର୍ଦ୍ଧା ଗଲାବେଳେ ରେତଙ୍ଗ ଷ୍ଟେସନ୍‌ଠାରେ ମୋର ଭଣଜା ରବି ମୋ ପାଖକୁ ଆସି ମୋତେ କହିଲା ମାମୁଁ ଗୋଟାଏ କଥା କହିବି ? ମୁଁ ଭାବିଲି ଭଣଜା ତ ଆଗରୁ ବିଭା ହେଇଛି, ବୋଧେ ବିଭା ସମ୍ବନ୍ଧରେ କଣ କହିବ, ମୋତେ ସାବଧାନ କରି ଦେବ, ଯେଉଁଟାକି ମୋତେ ଜଣା ନାହିଁ । ମୁଁ ତାକୁ କହିଲି, କଣ କହ । ଭଣଜା କହିଲା ମାମୁଁ, ତୁମେ ଯେଉଁ ଭାବରେ ଭାତ ଖାଉଛ, ଶଶୁର ଘରେ ସେମିତି ଖାଇବ ନାହିଁ । ସେମିତି ଖାଇଲେ ସେମାନେ କଣ ଭାବିବେ ?

ମୁଁ ଭଣଜାର ଏକଥା ଶୁଣି ନହସି ରହି ପାରିଲି ନାହିଁ । ମୁଁ କହିଲି ଦେଖ୍, ସେମାନେ ଯାହା ଭାବିବେ ଭାବନ୍ତୁ ମୁଁ ଅଳ୍ପ ଖାଇ ରହି ପାରିବି ନାହିଁ । କନ୍ୟା ପକ୍ଷ ବରଯାତ୍ରୀଙ୍କ ରହିବା ପାଇଁ ଭଲ ବ୍ୟବସ୍ଥା କରିଥିଲେ, କନ୍ୟା ଘରର କିଛି ଆଗକୁ ଡା: ଲକ୍ଷ୍ମୀ ନାରାୟଣ ମହାନ୍ତିଙ୍କ ଘରେ । ଆମର କାର୍ ଯେତେବେଳେ ଶଶୁର ଘର ସାମନା ଦେଇ ଯାଏ । ବାବା ମୋତେ ଶଶୁରଙ୍କୁ ଚିହ୍ନେଇ ଦେଲେ । ଶଶୁର ତାଙ୍କ ଫାଟକ ଆଡ଼କୁ ଆସୁଥିଲେ ।

୧୯୪୦ ମସିହା ଡ଼ିସେମ୍ବର ୧୦ତାରିଖ ରାତି ଦଶଟା ପରେ ବିବାହ କାର୍ଯ୍ୟ ଭଲ ଭାବରେ ସମ୍ପନ୍ନ ହେଲା । ବାବା ନିଜେ ବେଦି ପାଖରେ ବସି ପ୍ରଫୁଲ୍ଲ ଚିତ୍ତରେ ସବୁ ଦେଖିଲେ । କନ୍ୟାପକ୍ଷର ଆଦର ଯତ୍ନ, ବ୍ୟବହାରରେ ବରପକ୍ଷର ସମସ୍ତେ ତୃପ୍ତ, କେଉଁଠି କିଛି ତ୍ରୁଟି ନାହିଁ । ବିବାହ କାର୍ଯ୍ୟ ଖାଇବା ପିଇବା ଶେଷ ହେଲା ପରେ ମୁଁ ଭାବିଥିଲି ମୁଁ ବାବାଙ୍କ ପାଖକୁ ଚାଲିଯିବି କିନ୍ତୁ ସେ ରାତି କୁଆଡ଼େ ସ୍ତ୍ରୀଙ୍କ ସହିତରେ ନିଶି ଯାପନ କରିବାର କଥା । ଏଣୁ ସେ ରାତି ବାଧ ହେଇ ସସ୍ତ୍ରୀକ ଶୟନ କଲି କିନ୍ତୁ ମନରେ ଅନବରତ ଭାବୁଥାଏ, ବାବାଙ୍କର କଣ ହେଲାକି ? ବାବାଙ୍କର ଦେହ କିପରି ଅଛି ? ଏଣୁ ରାତିଟା ଉତ୍କଣ୍ଠାରେ କଟିଗଲା । ସ୍ତ୍ରୀଙ୍କର ରୂପ ଲାବଣ୍ୟ ଦେଖି ମନଟା ତୃପ୍ତ ହେଲା ।

ବିବାହର ପରଦିନ ଶଶୁର ଘରେ ଆନନ୍ଦ ଉଲ୍ଲାସରେ କଟିଗଲା । ସେହିଦିନ ରାତିରେ ସେହି ଖୋର୍ଦ୍ଧାରେ ବାବାଙ୍କର ପୁଣି ହୃଦ୍ ଯନ୍ତ୍ରଣା ଆରମ୍ଭ ହେଲା । ମୁଁ ବାବାଙ୍କ ପାଖରେ ଥାଏ । ଶଶୁର ଘର ଲୋକ ମଧ୍ୟ ଥାନ୍ତି । କେତେ ପ୍ରକାର ଔଷଧ ଦଉ ଦଉ ଯନ୍ତ୍ରଣା କମିଗଲା । ବିବାହର ପରଦିନ ରାତ୍ରିକୁ କାଳରାତ୍ରୀ ବୋଲି କୁହାଯାଏ । ସେଦିନ ରାତିରେ ସ୍ୱାମୀ, ସ୍ତ୍ରୀର ଭେଟ ହବା ଅମଙ୍ଗଳଜନକ । ଏଣୁ ମୋର ମନ ହେଲା ସେ ରାତିରେ ବାବାଙ୍କ ପାଖରେ ରହିବି । ମୋର ମନ ହଉ ନଥାଏ ବାବାଙ୍କୁ ଛାଡ଼ି ଅନ୍ୟ କେଉଁଠି ସେ ରାତିରେ ରହିବା ପାଇଁ । ଶଶୁର ଘରର ଲୋକେ ଓ ଅନ୍ୟମାନେ ଏଥିରେ ଆପତ୍ତି କଲେ । ସ୍ତ୍ରୀ ସହିତରେ ଭେଟ ନହେଲେ ବି ଶଶୁର ଘର ଛାଡ଼ି ଅନ୍ୟ କେଉଁଠି ରହିବା ଉଚିତ୍ ନୁହେଁ । ବାବା ମଧ୍ୟ କହିଲେ ମୋତେ ଭଲ ଲାଗୁଛି କିଛି ଭୟ ନାହିଁ, ତୁ ଯା' ଏଣୁ ମୁଁ ବାଧ ହେଇ ଆସି ଶଶୁର ଘରେ ଅନ୍ୟତ୍ର ଶୋଇଲି, ଯମୁନା ଅନ୍ୟତ୍ର ଶୋଇଲେ । ତାଙ୍କର ମୋର ସେ ରାତିରେ ଆଉ ଭେଟ ହେଲା ନାହିଁ ।

ତହିଁ ଆରଦିନ ବରକନ୍ୟା ବିଦାୟ ହବାର କଥା । ବିଦାୟର ସବୁ ଆୟୋଜନ ଶେଷ ହେଲା । କଟକ ଆସିବୁ । ବାବାଙ୍କର ଦେହ ଭୀଷଣ ଅସୁସ୍ଥ, କେମିତି ବାବାଙ୍କୁ ନେଇ କଟକରେ ପହଁଚିବା, ଭାଳେଣି ପଡ଼ିଲା । ଶଶୁରଙ୍କ ସହିତରେ ବାବାଙ୍କର ଭେଟ ହବ । ଉଭୟେ କଥାବାର୍ତ୍ତା ହେଇ ପରସ୍ପରଠାରୁ ବିଦାୟ ନେଇ ବାବା ଆମକୁ ନେଇ କଟକ ଆସିବେ । ଶଶୁର, ବାବା ଏ ଜାଗାରେ ବସିଲେ । ବାବା ଶଶୁରଙ୍କ ସହିତ କଥାବାର୍ତ୍ତା ହେଲା ବେଳେ ଶଶୁର କହିଲେ ମୋର ଝିଅ ଟିକିଏ ଚା ଖାଏ । ବାବା କହିଲେ, ହଉ, ଖାଏତ ଖାଇବ ।

ଏ ପର୍ଯ୍ୟନ୍ତ ଆମ ଘରେ ଚା ଖିଆ ଅଭ୍ୟାସ କାହାରି ନଥିଲା । ଏଇ ପ୍ରଥମ ଆମ ଘରେ ଚା ପଶିଲା । ଶଶୁର ଯଦି ବିବାହ ଆଗରୁ କହିଥାନ୍ତେ ମୋ ଝିଅ ଚା ଖାଏ ବୋଲି ବାବା ଠୋ କରି ନାହିଁ କରି ଦେଇଥାନ୍ତେ ।

କାରଣ ବାବା ଚା ଖାଇବା, ଲେମୋନେଡ୍ ଖାଇବା ଇତ୍ୟାଦିର ଘୋର ବିରୋଧୀ ଥିଲେ । ଆମ ବଂଶରେ ମଧ୍ୟ ଏଥି ପୂର୍ବରୁ କେହି ଚା ଖାଉ ନଥିଲେ । ବର୍ତ୍ତମାନ ତ ଆଉ ଉପାୟ ନାହିଁ । ବିଭାଘର ସରିଲାଣି । ବାବା ଅନନ୍ୟୋପାୟ ହେଇ ବୋହୂର ଚା' ଖିଆରେ ରାଜି ହେଲେ । ମୁଁ ଅଳ୍ପ ଦୂରରେ ଠିଆ ହେଇ ଶୁଣୁଥାଏ । ବାବାଙ୍କର ଓଠ ଦିଟା ଧଳା ହେଇଗଲା, ମୋର ଛାତି ଚମକି ଉଠିଲା, କଣ ହେଲା ଏ? ବାବା କଣ ଏଇଠି ପ୍ରାଣ ହରାଇବେ କି? ବାବା ଯଦି ଏଇଠି ପ୍ରାଣ ହରାନ୍ତି ଆମର ଅବସ୍ଥା କଣ ହବ? ମୁଁ ଅଧୈର୍ଯ୍ୟ ହେଇ କାନ୍ଦି ପକେଇଲି । ମୋର କାନ୍ଦିବାକୁ ମୋର ଜଣେ ଶ୍ୱଶୁର ଲକ୍ଷ୍ୟ କରି ମୋତେ ଗୋଟାଏ ଚୌକିରେ ନେଇ ବସେଇ କେତେକ ସାନ୍ତ୍ୱନା ଦେଲେ । ଶାଶୁ, ଶାଳୀମାନେ ଓ ଅନ୍ୟ କେତେଜଣ ମଧ୍ୟ ମୋତେ ବୁଝେଇଲେ । ଭୟ କରନା କିଛି ହବନାହିଁ ଭଗବାନ ଅଛନ୍ତି ଇତ୍ୟାଦି, ଇତ୍ୟାଦି ।

ମୋର ବଡ଼ମାମୁଁ ବିପିନ ବିହାରୀ ରାୟ ସେଇ ଖୋର୍ଦ୍ଧାରେ ସେତେବେଳେ ଅବକାରୀ ବିଭାଗରୁ ଅବସର ଗ୍ରହଣ କରି ଖୋର୍ଦ୍ଧା ସାନ୍ତରାପୁରରେ ଘର କରିଥାନ୍ତି । ସେ ମଧ୍ୟ ଉପସ୍ଥିତ ଥାଇ ବାବାଙ୍କର ଏମିତି ଅବସ୍ଥା ଦେଖି ଆତଙ୍କିତ ହେଉଥାନ୍ତି । ମୁଁ ମାମୁଁଙ୍କୁ ଅଧୈର୍ଯ୍ୟ ହେଇ କହିଲି, କଣ କରିବି? ବାବାଙ୍କୁ କଟକରେ ନେଇ କେମିତି ପହଁଚିବି? ମାମୁଁ ମଧ୍ୟ ସାନ୍ତ୍ୱନା ଦେଲେ । ଖୋର୍ଦ୍ଧା ଟାଉନ୍‌ରୁ ସାତ ମାଇଲ ବାଟ ଆସିଲେ ଖୋର୍ଦ୍ଧା ରୋଡ୍ ଷ୍ଟେସନ୍‌ରୁ ଟ୍ରେନ୍ ଧରି କଟକ ଆସିବୁ, କି ବିପଦ? ମୋ ଛାତି ଖାଲି ଧଡ଼ଧଡ଼ ହଉଥାଏ । ପ୍ରତି ମୁହୂର୍ତ୍ତରେ ଆଶଙ୍କା ବାବାଙ୍କର ପ୍ରାଣବାୟୁ ଉଡ଼ିଯିବ ।

ଭଗବାନଙ୍କ ଦୟାରୁ କୌଣସି ମତେ ଶଶୁର ଘରୁ ବିଦାୟ ନେଇ ଖୋର୍ଦ୍ଧାରୋଡ୍ ଷ୍ଟେସନ୍‌ରେ ଟ୍ରେନ୍‌ରେ ବସିଲୁ, ଟ୍ରେନ୍ ଛାଡ଼ିଲା । ବାବାଙ୍କୁ ପଚାରୁଥାଏ କେମିତି ଲାଗୁଛି? ବାବା ମୋତେ କହୁଥାନ୍ତି, ଭଲ ଲାଗୁଛି, ସେ ଯା କିଛି ଅସ୍ୱସ୍ତିବୋଧ କରୁଥିଲେ ମଧ୍ୟ ମୋତେ ଖାଲି ସାନ୍ତ୍ୱନା ଦେବା ଲାଗି କହୁଥାନ୍ତି ଭଲ ଲାଗୁଛି । ମୁଁ ବୁଝି ପାରୁଥାଏ, ମୁଁ ଖାଲି ଭଗବାନଙ୍କୁ ଡାକୁଥାଏ କେମିତି ଶୀଘ୍ର ବାଟତକ ସରିଯାଉ, ମୁଁ ବାବାଙ୍କୁ ନେଇ କେମିତି ଘରେ ପହଁଚେ ।

ଭଗବାନଙ୍କ କୃପାରୁ ଟ୍ରେନ୍ କଟକରେ ପହଁଚିଲା । ବିଭା ହେଇ ଯେ ଫେରିଲି, ମୋ ମନରେ ଆଦୌ ସୁଖ ନଥାଏ, କେବଳ ବାବାଙ୍କର ପ୍ରାଣହାନିର ଆଶଙ୍କାରେ ଆତଙ୍କିତ ।

କଟକ ଷ୍ଟେସନ୍‌ରୁ ଘରେ ଆସି ପହଁଚିଲା ବେଳେ ବାଜା, ହୁଳହୁଳି ସହ ମା, ମାଉସୀ, ମାଇଁ ସମସ୍ତେ ମହାଆନନ୍ଦରେ ମୋତେ ଏବଂ ନବବିବାହିତ ବଧୂକୁ ଘର ଭିତରକୁ ପାଛୋଟି ନେଲା ବେଳେ ମା'ଙ୍କ ସହିତରେ ମୋର ଯେତେବେଳେ ଥରେ ଭେଟ ହେଲା, ମୁଁ କହିଲି ମା, ବାବାଙ୍କ ଦେହ ଭାରି ଖରାପ । ମା ଏଇ କଥା ଶୁଣି ଏତେ ଆନନ୍ଦଉତ୍ସବ ଭିତରେ ହଠାତ୍ ବିଷନ୍ନ ହେଇପଡ଼ିଲେ । ତାଙ୍କର ଆଉ ଉତ୍ସାହ ରହିଲା ନାହିଁ । କଣ ଗୁରାଏ କର୍ମକର୍ମାଣି ଥାଏ ମୋତେ ଭାରି ବିରକ୍ତ ଲାଗୁଥାଏ । କେମିତି ଏ ବିଧିବିଧାନ ସରିଲେ ମୁଁ ବାବାଙ୍କୁ ଯାଇ ଦେଖିବି । ଆମ ଘରର ପ୍ରଥାନୁଯାୟୀ ବରବଧୂ ଆସିଲେ ତାଙ୍କୁ ବନ୍ଧୁବାନ୍ଧବ, ଆତ୍ମୀୟସ୍ୱଜନ ସମସ୍ତେ ନବବଧୂର ମୁଖ ଦର୍ଶନ କରି ଅଳଙ୍କାର, ଟଙ୍କା ଇତ୍ୟାଦି ଦେଇ ଆର୍ଶୀବାଦ କରନ୍ତି । ଏଇ ସମୟରେ ବାବାଙ୍କର ଆଶୀର୍ବାଦ କରିବାର କଥା । ବାବାଙ୍କୁ କୌଣସିମତେ ଜଣେ ଧରି ଆଶୀର୍ବାଦ କରିବାକୁ ଆଣିଲେ । ବାବା ଆଶୀର୍ବାଦ କରିବାକୁ ଆସିଲାବେଳେ କାନ୍ଦିଲେ । ବାବାଙ୍କର କାନ୍ଦିବାର ଦେଖି ମୁଁ ମଧ୍ୟ କାନ୍ଦି ପକେଇଲି । ଭାବିଲି ମୋର ବିବାହର ଦୁଇ ମାସ ପୂର୍ବରୁ ସାନ ଭଉଣୀ ମୃତ୍ୟୁ ବରଣ କରିଥିଲା, ଏବେ ବାବା ମଧ୍ୟ ଯିବେ । ବାବାଙ୍କର ପରମାୟୁ ଆଉ ବେଶି ଦିନ ନୁହେଁ । ଭାଇଭଉଣୀଙ୍କ ମୃତ୍ୟୁରେ ଯା ଆଘାତ ପାଇଥିଲି, ବାବାଙ୍କର ମୃତ୍ୟୁରେ ଦାରୁଣ ଆଘାତ ପାଇବି ।

ନୂଆ ବର, ବଧୂର ପ୍ରଥମ ଆଗମନରେ ଯା ବିଧି ବିଧାନ ଥିଲା, ସବୁ କାମ ସରିଲା । ମୁଁ ବାବଙ୍କୁ ଯାଇ ଦେଖେ ବାବା ଖଟ ଉପରେ ବିଷର୍ଣ୍ଣ ଚିତ୍ତରେ ଶୋଇଛନ୍ତି । ମୋର ମାଉସୀ ଜଣେ ଦି'ଜଣ ଯାଇ କହିଲେ, କଣ ଯାହା କଥାରେ ଅଛି, ପୁଅ, ବୋହୂକୁ ଘରେ ଆଣି

ଛାଡ଼ିଦେଇ ଯେମିତି ଶୋଇଯାଏ, ତୁମେ ସେଇଯା କଲ। ପୁଅ, ବୋହୂଙ୍କୁ ଘରେ ପହଁଚେଇ ଦେଇ, ତୁମେ ଶୋଇ ରହିଲ।

ଏ କଥା ମାଉସୀମାନଙ୍କର କହିବାର କାରଣ ହେଉଛି ବାବା ଭାରି ହାସ୍ୟରସର ଲୋକ। ସେ ଯେ କୌଣସି ବିଭାଘରେ ଉପସ୍ଥିତ ଥିଲେ ବିଭାଘର ହାସ୍ୟରସରେ ଉଛୁଳି ଉଠେ। ଏଣୁ ତାଙ୍କ ପରି ଲୋକ ଯଦି ନିଜର ପୁଅ ବାହାଘରରେ ବିଷନ୍ନ ଭାବରେ ଶୋଇ ରହନ୍ତି, ମାଉସୀଙ୍କୁ ନିଶ୍ଚୟ ଅସ୍ୱସ୍ତିବୋଧ ହବାର କଥା।

ବର, ବଧୂ ଘରକୁ ଆସିବାର ପରଦିନ ବରପକ୍ଷ ତାଙ୍କର ଆତ୍ମୀୟସ୍ୱଜନ, ବନ୍ଧୁବାନ୍ଧବ ସମସ୍ତଙ୍କୁ ଭୂରିଭୋଜନରେ ଆପ୍ୟାୟିତ କରିବାର ବିଧି। ସେଦିନ ନବବଧୂ ନିଜ ହାତରେ ସମସ୍ତଙ୍କୁ ପରିବେଷଣ କରିବାର କଥା। ଯେଉଁ ଦିନ ଏ ସବୁ ହବାର କଥା, ସେହିଦିନ ସକାଳୁ ବାବାଙ୍କର ଅବସ୍ଥା ଅତି ଗୁରୁତର ହେଲା। ଉତ୍କଟ ହୃଦ୍ ଯନ୍ତଣା। ବାବା ଖାଲି ଉଠୁଥାନ୍ତି, ବସୁଥାନ୍ତି, ଯନ୍ତଣାରେ ଛଟପଟ ହଉଥାନ୍ତି, କି ବିପଦ! ବହୁତ ଲୋକଙ୍କୁ ନିମନ୍ତ୍ରଣ କରା ହେଇଥାଏ। ସମସ୍ତେ ସନ୍ଧ୍ୟାପରେ ଆସିବେ। ବାବାଙ୍କର ଏମିତି ଦିନରେ ଯଦି ପ୍ରାଣ ହାନି ଘଟେ କଣ କରିବି? ମୋର ମୁଣ୍ଡ ଘୁରି ଯାଉଥାଏ। ମୋର ଭଣଜାକୁ ପଠେଇଲି ଡାକ୍ତର ଡାକିବା ପାଇଁ। ମୋର ବୁଦ୍ଧି ବଣା। ମୋର ଶଳା ଆସି ପହଁଚିଥାନ୍ତି। ଭଣଜା ଗଲା ଡାକ୍ତର ଡାକିବା ପାଇଁ। ଆମେ ସମସ୍ତେ ବାବାଙ୍କ ପାଖରେ ରହିଲୁ। ମୁଁ ବାବାଙ୍କର ଯନ୍ତଣା ଦେଖି ପାଖରେ ଅନନ୍ୟୋପାୟ ହେଇ essence of masoor(ମସୁର ଡ଼ାଲିର ଏସେନସ୍)କେତେ ବୁନ୍ଦା ପାଣିରେ ମିଶେଇ ଥୋଇ ଦେଲି। ବାବାଙ୍କର ଯନ୍ତଣା କମିଗଲା। ବାବା ଟିକିଏ ପ୍ରକୃତିସ୍ଥ ହେଲେ, ପରିସ୍ରା କଲେ, ଥୟ ହେଇ ବସିଲେ। ବାବା ଆପେ ଆପେ ଉଠି ବସି କହିଲେ, ଯାଅ ତୁମେମାନେ ଏଥର କାମରେ ଲାଗ। ମୋତେ ଭଲ ଲାଗୁଛି। ସନ୍ଧ୍ୟା ବେଳକୁ ଲୋକମାନେ ଆସିବେ, ରୋଷେଇବାସର ବ୍ୟବସ୍ଥା କର।

କିଛି ସମୟ ପରେ ଭଣଜା ଡାକ୍ତର ନପାଇ ଫେରି ଆସିଲା। ଆମେ ସମସ୍ତେ ଥୟ ହେଲୁ। ରୋଷେଇବାସର ଆୟୋଜନ କାମ ଚାଲିଲା। ସନ୍ଧ୍ୟା ବେଳକୁ ନିମନ୍ତ୍ରିତ ବ୍ୟକ୍ତିମାନେ ଆସିଲେ। ବାବା ନିଜେ ଖଟ ଉପରେ ବସି ରହି କିଏ ଆସିଲା, କିଏ ଖାଇଲା କି କିଏ ନଖାଇଲା ସବୁ କଥା ବୁଝିଲେ। ନିମନ୍ତ୍ରିତ ବ୍ୟକ୍ତିମାନେ ଭଲ ଭାବରେ ଭୋଜି ଖାଇ ବାବାଙ୍କୁ ଦେଖି ବାବାଙ୍କ ସହିତରେ କଥାବାର୍ତ୍ତା କରି ବିଦାୟ ନେଲେ।

ବିବାହ କାର୍ଯ୍ୟ ଶେଷ ହେଲା। ଯେଉଁ ବନ୍ଧୁବାନ୍ଧବମାନେ ଆସିଥିଲେ ବିଦାୟ ନେଲେ। ବିବାହର ଅଷ୍ଟମଙ୍ଗଳା ଯେଉଁଦିନ ହବାର କଥା ମୁଁ ସେହିଦିନ କେନ୍ଦ୍ରାପଡ଼ା ଗଲି। ବାବାଙ୍କର ଦେହ କ୍ରମଶଃ ଭଲ ଆଡ଼କୁ ଆସିଲା। ବାବାଙ୍କର ସବୁ ବ୍ୟବସ୍ଥା କରି ଛୁଟି ସରିଯିବା ଯୋଗୁଁ ମୁଁ ଯାଇ କେନ୍ଦ୍ରାପଡ଼ାରେ ଚାକିରିରେ ଯୋଗ ଦେଲି। ମନଟା ସବୁବେଳେ ବାବାଙ୍କ ପାଇଁ ଚିନ୍ତିତ ଥାଏ। ସବୁବେଳେ ଭାବେ ବାବାଙ୍କର ଯଦି ପ୍ରାଣହାନି ଘଟେ ମା ଏକା କଣ କରିବେ? ମୁଁ ତ ଆଉ ବାବାଙ୍କୁ ଦେଖି ପାରିବିନି।

କେନ୍ଦ୍ରାପଡ଼ାରେ ମୋର ସହକର୍ମୀ ଶିକ୍ଷକମାନେ ଭୋଜି ଖାଇବା ପାଇଁ ଲଗେଇଲେ। ଗୋଟିଏ ଭୋଜି ସେମାନଙ୍କୁ ଦେଲି। ଏଥିରେ ସମସ୍ତେ ମହା ଆନନ୍ଦ ଅନୁଭବ କଲେ।

ମୁଁ ବାବାଙ୍କୁ ଦେଖିବା ପାଇଁ ଅଳ୍ପ ଦିନ ପରେ ପୁଣି ଅଳ୍ପଦିନ ଛୁଟି ନେଇ କଟକ ଆସି ଦେଖିଲି ବାବା ସମ୍ପୂର୍ଣ୍ଣ ଆରୋଗ୍ୟ ଲାଭ କଲା ଭଳି ମନେ ହେଲା। ଛାତିର ଯନ୍ତଣା ଆଉ ନାହିଁ। ମନ ପ୍ରଫୁଲ୍ଲ ଅଛି, ସ୍ୱାସ୍ଥ୍ୟରେ ସାମାନ୍ୟ ଉନ୍ନତି ଘଟିଛି। ବୋହୂର ପ୍ରଶଂସା କରିବାରେ ଆଉ ଅବସର ନାହିଁ। କଥାଏ କଥାଏ ସମସ୍ତଙ୍କ ସାମନାରେ ବୋହୂର ପ୍ରଶଂସା। ବାବାଙ୍କର ମନୋଭାବ ଦେଖିଲି, ବୋହୂ ଉପରେ ବିଶେଷ ସନ୍ତୁଷ୍ଟ, ବୋହୂର କାର୍ଯ୍ୟକଳାପ, ସେବା, ରୋଷେଇ ଇତ୍ୟାଦି ସବୁଥିରେ ବାବା ପ୍ରଶଂସା କରିବାରେ ଚର୍ତୁମୁଖୀ।

ମୁଁ ଏଥର କେନ୍ଦ୍ରାପଡ଼ା ଫେରିଗଲା ପରେ ବାବାଙ୍କୁ କୁଆଡ଼େ ଯିବାକୁ ମନା କରିଗଲି। ସ୍ତ୍ରୀକୁ କହିଗଲି, ବାବାଙ୍କର ଖାଇବାପିଇବାରେ ଯତ୍ନ ନେବା, କେତେବେଳେ

କେଉଁ ଔଷଧି ଖାଇବେ ସେଥିପାଇଁ ସାବଧାନତାର ସହିତ ଠିକ୍ ସମୟରେ ଔଷଧି ଦବା ପାଇଁ। ମୁଁ କେନ୍ଦ୍ରାପଡ଼ା ଗଲା ପରେ ସେଠି ଆଉ କାମରେ କି ଖେଳରେ ମନ ଲାଗିଲା ନାହିଁ। କେବଳ ମନ ହେଲା ବାବାଙ୍କ ପାଖରେ ରହିବି। ସବୁବେଳେ ଭାବିଲି ବାବାଙ୍କର କଣ ହେଲାକି? କଣ ହବ କି? ବାବା ବଞ୍ଚିଛନ୍ତି ତ?

କିଛିଦିନ ପରେ ଖବରକାଗଜରୁ ପଢ଼ି ଜାଣିଲି ଯେ କଟକ ମ୍ୟୁନିସିପାଲିଟି ପଡ଼ିଆରେ ଗୋଟାଏ ବିରାଟ exhibition ହଉଛି। ମୁଁ ଭାବିଲି ବାବା ବୋଧେ ସମସ୍ତଙ୍କୁ ନେଇ exhibition ଦେଖିବାକୁ ବାହାରି ଯିବେ। ସେଠି ବୁଲାବୁଲି କଲେ ପୁଣି ବାବାଙ୍କ ଦେହ ଖରାପ ହବ। ଏ କଥା ଭାବି ବାବାଙ୍କୁ ଖଣ୍ଡେ ଚିଠି ଲେଖିଲି exhibition କୁ ଯିବେ ନାହିଁ। ମୁଁ ଗଲେ ସମସ୍ତଙ୍କୁ ସାଙ୍ଗରେ ନେଇ exhibition ଦେଖିବାକୁ ଯିବା। ଚିଠି ଦବା ଦିନେ କି ଦି ଦିନ ପରେ ଛୁଟି ନେଇ ଆସି ଘରେ ପହଁଚି ଦେଖେ ମା ଏକା ରୋଷେଇ ଘରେ ବସି ରାନ୍ଧୁଛନ୍ତି। ବାବା, ବୋହୂ ଓ ମୋର ଭାଣିଜୀ କି ନେଇ exhibition ଦେଖିବାକୁ ଯାଇଛନ୍ତି। ମୁଁ । ସେହିକ୍ଷଣି ଦୌଡ଼ିଲି ମ୍ୟୁନିସିପାଲିଟି ପଡ଼ିଆକୁ। ସେଠି ଯାଇ exhibition ଭିତରେ ପଶି ଦେଖେ ବାବା ବୋହୂ ଆଉ ଭାଣିଜୀକୁ ନେଇ ବୁଲି ବୁଲି ବୋହୂକୁ ସବୁ ଦେଖଉଛନ୍ତି।

ମୁଁ ବାବାଙ୍କୁ ଭେଟି କହିଲି, ମୁଁ ଚିଠି ଲେଖିଥିଲି ମୁଁ ଆସିଲେ ସମସ୍ତେ exhibition ଦେଖିବାକୁ ଆସିବା। ତୁମେ ଏକା ବୋହୂକୁ ନେଇ ଚାଲି ଆସିଲ? ଏବେ ତୁମର ଦେହ ଟିକିଏ ଭଲ ଆଡ଼କୁ ଆସିଛି ବୁଲାବୁଲି କଲେ ପୁଣି ଖରାପ ହେଇପାରେ। ବାବା ମୋ କଥା ଶୁଣି କହିଲେ, ବୋହୂକୁ ଦେଖେଇବା ପାଇଁ ଚାଲି ଆସିଲି। ମୋ ଦେହ କିଛି ଖରାପ ଲାଗୁନି।

ବାବା, ମୁଁ, ମୋର ସ୍ତ୍ରୀ exhibitionରେ ବୁଲାବୁଲି କରି ସବୁ ଦେଖି ଘରକୁ ଫେରିଲୁ। ତହିଁ ଆରଦିନ ମୁଁ କେନ୍ଦ୍ରାପଡ଼ା ଗଲା ପୂର୍ବରୁ ବାବାଙ୍କୁ କହିଲି ଆଉ କୁଆଡ଼େ ବୁଲି ବାହାରିବ ନାହିଁ। ରିକ୍ସାରେ ମଧ ଯିବା ଅନୁଚିତ୍। ମୁଁ କେନ୍ଦ୍ରାପଡ଼ା ଗଲି। କିନ୍ତୁ ମନଟା ଥାଏ ବାବାଙ୍କ ପାଖରେ। କେନ୍ଦ୍ରାପଡାରେ କିଛି ଭଲ ଲାଗୁ ନଥାଏ, ଗତାନୁଗତିକ ଯା କାମ କରିବାର କରୁଥାଏ। ସବୁବେଳେ ଭାବୁଥାଏ କଣ ହେଲା କି? ବାବା ବଞ୍ଚିଛନ୍ତି ତ? ଘରେ କେବଳ ବାବାଙ୍କର ଦେଖାଶୁଣା, ଯତ୍ନ ନେବାକୁ ମୋର ମା' ଆଉ ମୋର ସ୍ତ୍ରୀ। ଦିନେ ଭୋର ବେଳେ ସ୍ୱପ୍ନ ଦେଖିଲି ବାବା ମୋର ଖଟ ବାଡ଼ାକୁ ଧରି ଖଟ ପାଖରେ ଠିଆ ହେଇ ମୋତେ କହିଲେ, ଦେଖ୍, ଅକ୍ଟୋବର ମାସ ବେଳକୁ ମୋର ଆଉ କିଛି ଥିବନି, ଯା'ର ଯାହା ଧାର ଅଛି ଭଲ ଭାବରେ ସୁଝାସୁଝି କରିଦବୁ, କାହା ସହିତରେ କଳି ତକରାଳ କରିବୁ ନାହିଁ।

ମୁଁ ଏ ସ୍ୱପ୍ନ ଦେଖି ମୋର ନିଦ ଭାଙ୍ଗିଗଲା। ମୁଁ ଆକୁଳ ହେଇ ଶେଯରୁ ଉଠି ପଡ଼ି ଶ୍ୟାମ ଶରଣ ଚାନ୍ଦଙ୍କୁ ପଚାରିଲି ଶ୍ୟାମ ବାବୁ ମୁଁ ଏମିତି କଣ ସ୍ୱପ୍ନ ଦେଖିଲି? ସ୍ୱପ୍ନରେ ଯାହା ଦେଖିଲି, ତାଙ୍କୁ ସବୁ କଥା କହିଲି। ବାବା ମରିଗଲେ କି? ଶ୍ୟାମ ବାବୁ କହିଲେ, ଆପଣ ବେଶି ଭାବୁଛନ୍ତି ବୋଲି ସେମିତି ସ୍ୱପ୍ନ ଦେଖିଲେ।

ମୁଁ କହିଲି ନାହିଁ ଶ୍ୟାମ ବାବୁ, ବାବା ବୋଧ ହୁଏ ମରିଗଲେ, ତାଙ୍କର ପ୍ରେତାତ୍ମା ମୋତେ ଆସି ଏ କଥା କହିଲେ। ଶ୍ୟାମ ବାବୁ ମୋତେ କେତେ କଥା ବୁଝେଇ କହିଲେ, ନାହିଁ, ଯେଉଁମାନଙ୍କର good soul ସେମାନେ ବଞ୍ଚି ଥାଉ ଥାଉ ଅନେକ କଥା ଚେତେଇ କହିବାର ମୁଁ ଶୁଣିଛି।

ଶ୍ୟାମ ଶରଣ ଚାନ୍ଦ ଜଣେ graduate, ବାଲେଶ୍ୱର ଜିଲ୍ଲା ବାଉଦପୁରରେ ତାଙ୍କ ଘର। ସେ କେନ୍ଦ୍ରାପଡ଼ା high school ରେ ସେତେବେଳେ ଶିକ୍ଷକତା କରୁଥାନ୍ତି। ମୁଁ ତାଙ୍କୁ ମୋ ରୁମ୍‌ରେ ରଖିଥିଲି। ଶ୍ୟାମବାବୁ ରବୀନ୍ଦ୍ର ନାଥଙ୍କ କବିତା ବେଶ ଆବୃତି କରିପାରୁଥିଲେ।

ଶ୍ୟାମବାବୁଙ୍କ କଥାରେ ମୋର ମନ ମାନିଲା ନାହିଁ। ମୁଁ ବ୍ୟସ୍ତ ହେଇ ୫ ଦିନର ଛୁଟି ନେଇ ସେହିଦିନ ଆସି କଟକରେ ସନ୍ଧ୍ୟା ବେଳେ ଘରେ ପହଁଚି ଯେତେବେଳେ ଦୁଆର ଖୋଲିବାକୁ ଡାକେ, ଘର ଭିତରେ ବାବାଙ୍କର କହିବାର ମୁଁ ଶୁଣି ପାରୁଥାଏ, ପୁଅ ଆସିଲା? ପୁଅ କେତେବେଳେ ଆସିବ? ମା କବାଟ ଖୋଲି ଦେଇ

ମୋତେ କହିଲେ, ଓହୋ ତୁ ଆସିଗଲୁ ? ବାବାଙ୍କୁ ଦେଖି ମୁଁ ଦୁଃଖରେ ଭାଙ୍ଗି ପଡ଼ିଲି । ବାବାଙ୍କୁ କମ୍ପ ଆସିଥାଏ ବୋଲି ମା ବତା ନିଆଁ କରି ବାବାଙ୍କୁ ସେକୁଥିଲେ । ମୁଁ ବାବାଙ୍କୁ କହିଲି, ବାବା, ମୁଁ ଆସିଲିଣି । ମା ମଧ୍ୟ ବାବାଙ୍କୁ କହିଲେ, ପୁଅ ଆସିଲାଣି, ପୁଅକୁ ଖୋଜୁଥିଲ । ବାବାଙ୍କ ପାଖରେ ବସି ବାବାଙ୍କ ଦେହ, ଗୋଡ଼ ସବୁ ଆଉଁଷା ଆଉଁଷି କରିଦେଲି । ପଚାରିଲି ବାବା, କଣ ହଉଛି ? କାହିଁକି ଏମିତି ବ୍ୟସ୍ତ ହଉଛ ? ବାବା କହିଲେ ଛାତି କଣ ହଉଛି ।

ମୋର ସ୍ତ୍ରୀ ବାବାଙ୍କର ଅବସ୍ଥା ଦେଖି କାଠ ପରି କାନ୍ଥକୁ ଆଉଜି ଭୟଭୀତା ହୋଇ ଠିଆ ହୋଇଛି । ମୁଁ ପହଁଚିଲା ପରେ ବାବାଙ୍କ କମ୍ପ ବନ୍ଦ ହୋଇଗଲା । ବାବାଙ୍କର ଅବସ୍ଥା ଭଲ ଆଡ଼କୁ ଆସିଲା । ବାବା ମୋତେ ପଚାରିଲେ ତୁ ହଠାତ୍ କେମିତି ଚାଲି ଆସିଲୁ ? ମୁଁ ଆଉ ସ୍ୱପ୍ନ ଦେଖିବା କଥା ବାବାଙ୍କୁ ଆଉ କିଛି ନକହି ଖାଲି କହିଲି ତୁମ କଥା ଭାବି ମୁଁ ବ୍ୟସ୍ତ ହୋଇ ୫ଦିନ ଛୁଟି ନେଇ ଚାଲି ଆସିଲି । ବାବା ସୁସ୍ଥ ଭାବରେ ବସି ଗପ କଲା ପରେ ମା ଏବଂ ମୋର ସ୍ତ୍ରୀ ଥୟ ହୋଇ ଯେ ଯାହା କାମରେ ଲାଗିଲେ ।

ମୁଁ ବାବାଙ୍କ ଅବସ୍ଥା ଦେଖି ଭାବିଲି ବାବା ଆଉ ବେଶି ଦିନ ବଞ୍ଚିବେ ନାହିଁ । କାରଣ, ବାବା ହୃଦରୋଗରେ ଆକ୍ରାନ୍ତ, ଦେହ ଅନେକ ଝଡ଼ି ଗଲାଣି, ନିଶ ଦାଢ଼ି ବଢ଼ି ମୁହଁ ଆହୁରି ଖରାପ ଦିଶୁଥାଏ । କେତେବେଳେ ଭଲ ଅବସ୍ଥା ତ ପୁଣି କେତେବେଳେ ଉଦ୍‌ବେଗଜନକ ଅବସ୍ଥା । ତହିଁ ଆରଦିନ ମୁଁ କଟକ ବଡ଼ ଡାକ୍ତରଖାନା ହସପିଟାଲକୁ ଗଲି । କୌଣସି ଡାକ୍ତରଙ୍କୁ ବାବାଙ୍କ ବିଷୟରେ ପଚାରି କିଛି ନୂଆ ଔଷଧର ବ୍ୟବସ୍ଥା କରିବି । କୌଣସି ଡାକ୍ତରଙ୍କୁ ଭେଟିବା ଆଗରୁ କେନ୍ଦ୍ରାପଡ଼ା ସ୍କୁଲ ଟିମ୍‌ର ବ୍ୟାକ୍ ମୋର ପୂର୍ବ ପରିଚିତ ଶଚୀ ସାହୁକୁ ଭେଟିଲି । ଶଚୀ ମ୍ୟାଟ୍ରିକ୍ ଫେଲ୍ ହୋଇ କଟକରେ କମ୍ପାଉଣ୍ଡରୀ ପଢୁଥାଏ । ମୁଁ ଶଚୀ କି ଭେଟି ମୋର ବାବାଙ୍କର ଅବସ୍ଥା ବିଷୟରେ କହିଲି ଆହୁରି ମଧ୍ୟ ଶଚୀକୁ କହିଲି, ଶଚୀ ତୁମେ ମୋତେ ଟିକିଏ ସାହାଯ୍ୟ କରିପାରିବ ? ଶଚୀ କହିଲା କଣ ସାର୍ କହନ୍ତୁ । ଆପଣଙ୍କର ବାବାଙ୍କ ଅବସ୍ଥା ଏମିତି କହୁଛନ୍ତି, ଆପଣଙ୍କୁ ସାହାଯ୍ୟ ନ କରିବି ଆଉ କରିବି କାହାକୁ ?

ମୁଁ ଶଚୀକୁ କହିଲି, ଦେଖ ତୁମେ ମୋ ଘରେ ରହିବ, ଖାଇବ, ମୁଁ ତୁମର କମ୍ପାଉଣ୍ଡରୀ ପଢ଼ା ଶେଷ ପର୍ଯ୍ୟନ୍ତ ତୁମର ସବୁ ଖର୍ଚ୍ଚ ବହନ କରିବି । ମୁଁ ଏକା, ଏଣେତେଣେ ଦଉଡ଼ିବା, ବାବାଙ୍କର ଯତ୍ନ ନବା ମୁଁ ପାରୁନାହିଁ । ବାବାଙ୍କ ପାଇଁ ବେଳେବେଳେ ରାତି ଜଗିବାକୁ ପଡୁଛି, ତୁମେ କେବେ ଆସିବ ଆମ ଘରକୁ ? ଶଚୀ ଅତି ଆଗ୍ରହ ପ୍ରକାଶ କରି କହିଲା ସାର୍ ଆପଣ ଯାନ୍ତୁ । ମୁଁ ଆଜି ସନ୍ଧ୍ୟା ବେଳକୁ ଯାଇ ଆପଣଙ୍କ ଘରେ ପହଁଚିବି । ମୋର ମନ ଟିକିଏ ଥୟ ହେଲା ଯା ହଉ, ଶଚୀ ପରି ଗୋଟିଏ ପିଲା ପାଇଲି ସାହାଯ୍ୟ କରିବାକୁ । ତଥାପି ମନରେ ସନ୍ଦେହ ଥାଏ ଶଚୀ ଆସିବ କି ନାହିଁ ।

ଶଚୀ ପରେ ଡାକ୍ତର ଡାଭିଡ଼ ରବୀନ୍ ସାହୁକୁ ଭେଟିଲି । ତାଙ୍କୁ ବାବାଙ୍କ ବିଷୟରେ ସବୁ କଥା କହିଲି । ସେ ବାବାଙ୍କର ଅବସ୍ଥା ଶୁଣି କହିଲେ ବାବାଙ୍କର ଅବସ୍ଥା ଯାହା ଶୁଣିଲି ମୋର କିଛି ଭଲ ମନେ ହଉନି । ତଥାପି ଚେଷ୍ଟା କରିବା ଦରକାର । କେତେକ ଉପଦେଶ ଦେଲେ ପୁଣି କହିଲେ ତୁମେ ମୋ ସହିତରେ ଦୈନିକ ଦେଖା କରି ବାବାଙ୍କର ଅବସ୍ଥା ବିଷୟରେ କହିବ, ଦେଖିବା କଣ ହଉଛି ।

ମୁଁ ଘରକୁ ଫେରି ଆସି ମାଙ୍କୁ କହିଲି ଆଜି ଜଣେ କେନ୍ଦ୍ରାପଡ଼ାର ପିଲା ଆସିବ । ସେ ଏଇଠି କମ୍ପାଉଣ୍ଡରୀ ପଢୁଛି । ସେ ଆମ ଘରେ ରହିବ, ଖାଇବ, ସାହାଯ୍ୟ କରିବ । ଅତି ଭଲ ପିଲା । ଶଚୀ ସେହିଦିନ ସନ୍ଧ୍ୟା ବେଳକୁ ଆସି ପହଁଚିଲା । ଶଚୀକୁ ଦେଖି ମୋର ମନରେ କେତେକ ସାହସ ଆସିଲା । ବାବାଙ୍କୁ ରାତିରେ କେବଳ ମା ଓ ମୁଁ ଉଭୟେ ଜଗି ରହୁଥିଲୁ । ମା କିଛି ସମୟ ଜଗି ରହି ଶୋଇଲେ ମୁଁ କିଛି ସମୟ ଜଗି ରହେ । କାରଣ ବାବାଙ୍କର କେତେବେଳେ କଣ ହବ, କେତେବେଳେ କଣ ଦରକାର ହବ, ଏଣିକି ଶଚୀ କିଛି ସମୟ ରାତିରେ ଜଗିବ । ଶଚୀ ମଧ୍ୟ ରାତିରେ କିଛି ସମୟ ଜଗି ରହିବାକୁ ରାଜି ହେଲା ।

ବାବା ମୋତେ ସ୍ୱପ୍ନରେ ଯାହା କହିଲେ ମୋର ମନେ ଥାଏ, ଅକ୍ଟୋବର ମାସ ବେଳକୁ ମୋର କିଛି ଥିବ ନାହିଁ। ମନେ ମନେ ଭାବେ କଣ ହଉଛି ଦେଖାଯାଉ ଏ ତ ସେପ୍ଟେମ୍ବର ମାସ ଚାଲିଛି। ପାଞ୍ଚଦିନ ଯେଉଁ ଛୁଟି ଆଣିଥିଲି ସେ ସରି ଆସିଲା। ବାବାଙ୍କୁ ଛାଡ଼ି ଆଉ କେନ୍ଦ୍ରାପଡ଼ା ଯିବାକୁ ମନ ହଉ ନଥାଏ। ମୁଁ ବାବାଙ୍କୁ ପଚାରିଲି ବାବା, ଛୁଟି ସରି ଆସିଲା କଣ କରିବି? ବାବା ଏ କଥା ଶୁଣି ତାଙ୍କର ଡାହାଣ ହାତର କହୁଣିଠୁଁ ପାପୁଲି ଯାଏ କିଛି ସମୟ ଦେଖି ମୋତେ କହିଲେ ମୋତେ କିଛି ଭଲ ଜଣା ଯାଉ ନାହିଁ, ତୁ ଆଉ ଛୁଟି ନେ।

ମୁଁ ଆଉ ପାଞ୍ଚଦିନର ଛୁଟି ପାଇଁ ଦରଖାସ୍ତ ଲେଖି କେନ୍ଦ୍ରାପଡ଼ା ସ୍କୁଲର secretaryଙ୍କ ପାଖକୁ ପଠେଇ ଦେଇ ରହିଲି। ବାବାଙ୍କର ଅବସ୍ଥା ଆହୁରି ଖରାପ ଆଡ଼କୁ ଗତି କଲା। ମା ଓ ମୁଁ ବାବାଙ୍କୁ ଉଠେଇ, ବସେଇ, ରାତି ଜଗି ଅବସନ୍ନ ହେଇ ପଡ଼ିଲୁ। ଶଚୀ ମଧ ବାବାଙ୍କର ଖୁବ୍ ସେବା କରୁଥାଏ। ମୋର ନିଜର ସହୋଦର ଭାଇ ପରି, କିଛିରେ ତୃଟି ନଥାଏ।

୧୯୪୧ ମସିହା ସେପ୍ଟେମ୍ବର ମାସ ୧୫ ତାରିଖର ସକାଳ ହେଲା। ମୁଁ ବାବାଙ୍କର ଅବସ୍ଥା ଦେଖି ମା'ଙ୍କୁ, ଶଚୀକୁ ଏବଂ ମୋର ସ୍ତ୍ରୀକୁ କହିଲି, ଆଜି ଆଉ ଦିନ ୧୨ଟା ଟପିବ ନାହିଁ, କାନ୍ଦିବାକୁ ଆରମ୍ଭ କଲି, କିଏ ଆଉ କଣ ମୋତେ ବୁଝେଇବେ? ମା କାନ୍ଦିବାକୁ ଆରମ୍ଭ କଲେ। ବାବାଙ୍କର ଆଉ ଜ୍ଞାନ ନଥାଏ, ଡାକିଲେ ଆଉ ଉତ୍ତର ଦଉ ନଥାନ୍ତି, ଅଙ୍ଗ ପ୍ରତ୍ୟଙ୍ଗ ସବୁ ନିଶ୍ଚଳ, ନାଡ଼ି କ୍ଷୀଣ ଭାବରେ ଚାଲୁଥାଏ। ମୁଁ, ମା, ମୋର ସ୍ତ୍ରୀ ଓ ଶଚୀ ସମସ୍ତେ ବାବାଙ୍କୁ ଘେରି ବସିଥାଉ। କିଛି ସମୟ ପରେ ଶଚୀ ମେଡ଼ିକାଲକୁ ଗଲା ତାର duty କରିବା ପାଇଁ। ମୁଁ, ମା ଓ ସ୍ତ୍ରୀ କେବଳ ବାବାଙ୍କ ପାଖରେ ରହିଲୁ।

ଏମିତି ଅବସ୍ଥାରେ ମା ଓ ସ୍ତ୍ରୀ ଉଭୟେ କୌଣସି କାମ ପାଇଁ ଖଞ୍ଜା ଭିତରକୁ ଉଠିଗଲେ। ମୁଁ ଏକା ବାବାଙ୍କ ପାଖରେ ବସି ବାବାଙ୍କୁ ଅନେଇଛି, ବାବା ହଠାତ୍ ଆଖି ଦୁଇଟା କାଢ଼ି ପକେଇଲେ। ମୁଁ ମା'ଙ୍କୁ ଡାକ ପକେଇଲି। ମା ଓ ସ୍ତ୍ରୀ ଉଭୟେ ଖଞ୍ଜା ଭିତରୁ ଦୌଡ଼ି ଆସି ବାବାଙ୍କ ପାଖରେ ବସି ପଡ଼ି ଆଉଁଷା ଆଉଁଷି କଲା ବେଳକୁ ବାବାଙ୍କର ପ୍ରାଣବାୟୁ ଉଡ଼ିଗଲା। ଆମେ ସମସ୍ତେ କାନ୍ଦିଲୁ। ଆମର କାନ୍ଦଣା ଶୁଣି ପଡ଼ିଶା ଘରୁ ଲୋକେ ଦୌଡ଼ି ଆସିଲେ।

ଥୋରିଆସାହିରେ ବାବାଙ୍କୁ ସମସ୍ତେ ଭଲ ପାଉଥିଲେ। ଆମ ଘରଠାରୁ ଅଳ୍ପ ଦୂରରେ ପ୍ୟାରୀ ଶଙ୍କର ରାୟଙ୍କ ମା ରହୁଥିଲେ। ସେ ମୋର ବଡ଼ ଭାଉଜ ହେବେ, ତାଙ୍କୁ ବାବାଙ୍କର ମୃତ୍ୟୁ ଖବର ପଠେଇବା ସଙ୍ଗେ ସଙ୍ଗେ ସେ ଆସି ପହଁଚିଲେ। ମୋର ବଡ଼ ଭିଣେଇଙ୍କର ସାନଭାଇ କେଦାର ନାଥ ଦାସ ଓ ତାଙ୍କର ଜ୍ଞାତି ଦୁର୍ଗାଚରଣ ଦାସ, ତାଙ୍କ ସାଙ୍ଗରେ ଆଉ କେତେ ଜଣକୁ ନେଇ ପହଁଚିଲେ। କଟକ କ୍ୟାପିଟାଲ ସିନେମାର ମାଲିକ ନରେନ୍ଦ୍ର ନାଥ ମିତ୍ର, ମେଡ଼ିକାଲ ହଷ୍ଟେଲ୍‌ରୁ ଶିଶିର କୁମାର ଚାନ୍ଦ, ଆମର ପଡ଼ିଶା ନିମାଇ ଚରଣ ସିଂ ଓ ତାଙ୍କର ପୁଅ ପ୍ରିୟ ନାଥ ସିଂ, ଆମର ମହାପ୍ରସାଦଦିଆ ବନ୍ଧୁ। ବାବାଙ୍କର ଧରମପୁଅ ଗୁଣନିଧି ଛାଟୋଇ। ଆମର ପଡ଼ିଶା ଓ ଆଉ କେତେକ ଲୋକ ଶବକୁ ଶ୍ମଶାନକୁ ନବା ପାଇଁ ଆସି ରୁଣ୍ଡ ହେଲେ। ମୁଁ ଧୈର୍ଯ୍ୟ ରଖି ଶବସତ୍କାର ପାଇଁ ଆୟୋଜନରେ ଲାଗିଲି ଏବଂ ଅନ୍ୟମାନେ ମଧ ଲାଗି ପଡ଼ିଲେ। ଶଚୀ ମଧ ଆସି ମେଡ଼ିକାଲରୁ ପହଁଚିଲା। ଶଚୀ ବାବାଙ୍କର ମୃତ୍ୟୁ ସମ୍ବାଦରେ ଆଶ୍ଚର୍ଯ୍ୟ ହୋଇ କାନ୍ଦି ପକେଇଲା। ଶଚୀ ମଧ କେତେକ କାମରେ ଲାଗିଗଲା।

ମା, ମୋର ସ୍ତ୍ରୀ ଏବଂ ମୋର ବଡ଼ ଭାଉଜ ପ୍ୟାରୀ ଶଙ୍କର ରାୟଙ୍କ ମା ଓ ଶଚୀକୁ ଘରେ ରଖି ଆମେମାନେ ଶବ ସତ୍କାର ପାଇଁ ଶବକୁ ନେଇ ଖାନ୍‌ନଗର ଶ୍ମଶାନକୁ ଚାଲିଲୁ। ଖାନ୍‌ନଗର ଶ୍ମଶାନରେ ଯେତେବେଳେ ବିଧି ବିଧାନ ମାନି, ଯା କରିବାର କରିସାରି ବାବାଙ୍କୁ ଦାହ କରିବା ପୂର୍ବରୁ ଯୁଇ ଉପରେ ଶୋଇ ଦିଆହୁଏ। ବାବାଙ୍କ ଦେହ ଭିତରୁ ଗୋଟାଏ ଶେଷ ନିଃଶ୍ୱାସ ଛାଡ଼ିଲା ଭଳି ଗୋଟାଏ ଦୀର୍ଘ ଶବ୍ଦ ବାହାରିଲା। ମୁଁ ସନ୍ଦେହ କଲି କଣ ଏମିତି ଶବ୍ଦ ବାହାରିଲା? ଜୀବନ ଅଛି କି? ଅନ୍ୟମାନେ କହିଲେ ନାହିଁ କେଉଁଠି ପବନ ରହି ଯାଇଥିଲା।

ମୁଁ ମୁଖାଗ୍ନି ଦେଇ ମୋର ଧରମ ଭାଇ ଗୁଣନିଧି ଛାଟୋଇ ସହିତରେ ଏକ ମୁହାଁ ହେଇ ଘରକୁ ଫେରିଲି । ମନରେ ଗଭୀର ଦୁଃଖ, ବାବାଙ୍କୁ ଶଶ୍ମାନରେ ଏକାକୀ ଛାଡ଼ି ଆସିଲି । ବଞ୍ଚିଥିବା ଯାଏ ଆଉ ବାବାଙ୍କୁ ଦେଖି ପାରିବି ନାହିଁ । ବାବାଙ୍କର ଅଫିସ୍‌ରୁ ଫେରିବାକୁ କିଛି ସମୟ ଡେରି ହେଲେ ବାଟରେ ଯାଇ ଦଶଥର ଅନଉଥିଲି । ବାବା କେତେବେଳେ ଫେରିବେ? କଣ ହେଲା? ବାବାଙ୍କର ଫେରିବାକୁ କାହିଁକି ଏତେ ବିଳମ୍ବ ହେଲା? ଆଜି ତାଙ୍କୁ ହିଁ ଶେଷଥର ପାଇଁ ଶ୍ମଶାନରେ ଚିରବିଦାୟ ଦେଇ ଆସିଲି ।

ଘରେ ଯେତେବେଳେ ଆସି ପହଁଚେ, ମା କାନ୍ଦୁଛନ୍ତି । ପ୍ୟାରୀ ଶଙ୍କର ରାୟଙ୍କ ମା, ମୋର ସ୍ତ୍ରୀ, ଶଚୀ ସମସ୍ତେ ଦୁଃଖରେ କାତର ହେଇ ବସିଛନ୍ତି । ପ୍ୟାରୀ ଶଙ୍କର ରାୟଙ୍କ ମା ତାଙ୍କ ଘରକୁ ଗଲେ । ମା ବିଧବା ହବାକୁ ନିକଟବର୍ତ୍ତୀ ଗୋଟିଏ ପୋଖରୀକୁ ଭଣ୍ଡାରୁଣୀ ସାଥିରେ ଗଲେ ।

ମା ଯେତେବେଳେ ବିଧବା ହେଇ କାନ୍ଦି କାନ୍ଦି ଫେରନ୍ତି, ମା'ଙ୍କର ବିଧବା ରୂପ ଦେଖି ଦୁଃଖରେ ମୋର ଛାତି ଫାଟିଗଲା ପରି ମନେ ହେଲା । ମା'ଙ୍କ ହାତରେ କାଚ ନାହିଁ, ମୁଣ୍ଡରେ ସିନ୍ଦୁର ନାହିଁ, ପରିଧାନରେ ଶାଢ଼ୀ ବଦଳରେ ଖଣ୍ଡେ ସାଦା ଧୋତି । ମା ବିଧବା ହେଇ ଆସିଲା ପରେ ତାଙ୍କର ଦେହ ଅଚେତା ହେଇ ଆସିଲା ପରି ଜଣାଗଲା । ମୁଁ ତାଙ୍କର ଅବସ୍ଥା ଦେଖି ଉଦ୍‌ବିଗ୍ନ ହେଇପଡ଼ିଲି । ଭାବିଲି ବାବାଙ୍କର ପରେ ପରେ ମା'ଙ୍କର କଣ ପ୍ରାଣ ବାୟୁ ଉଡ଼ି ଯିବକି? ମୁଁ ମା'ଙ୍କୁ glucose powder ପାଣିରେ ଗୋଳି ପିଇବାକୁ ଦେଲାରୁ ମା ଥୟ ହେଲେ ।

ଆମର ପୂର୍ବର ପ୍ରଥାନୁଯାୟୀ ପୂରା ୩୦ଦିନ ଅଶୌଚ ପାଳିବାର ବିଧି । ଏଣୁ ମୋର ଛୁଟି ସରି ଆସିବାରୁ ମୁଁ ଶଚୀ ଜିମା ମା ଏବଂ ମୋର ସ୍ତ୍ରୀକୁ ଛାଡ଼ି କେନ୍ଦ୍ରାପଡ଼ା ଗଲି । ମାସେକାଳ ମୋତେ ହବିଷ ରାନ୍ଧି ଖାଇବାକୁ ହବ । ଏଣୁ ମୁଁ ଅତି ଦୁଃଖରେ ମା'ଙ୍କୁ ଛାଡ଼ି କେନ୍ଦ୍ରାପଡ଼ା ବାହାରିଲି । ମୋର ପରିଧାନରେ ଖଣ୍ଡେ ଚାଦର, ଆଉ ଖଣ୍ଡେ ଚାଦର ଦେହରେ ଘୋଡ଼ି ହବା ଭଳି ପଡ଼ିଥାଏ । ବେକରେ ବାବାଙ୍କର ଶ୍ମଶାନରେ ପିନ୍ଧି ଥିବା ନୂଆ ଧୋତିର ଖଣ୍ଡେ ଚିରା ଅଂଶ ଅର୍ଥାତ୍ ଖଣ୍ଡେ କନା ଦୌଡ଼ିରେ ଗୋଟାଏ ଚାବିକାଠି ଝୁଲୁଥାଏ । କାରଣ ଯେ ମୁଖାଗ୍ନି ଦେଇଥାଏ, ସେ ଖଣ୍ଡେ ଲୁହା ପାଖରେ ରଖିବାର କଥା । ସେଥିରେ କୁଆଡେ ପ୍ରେତ କିଛି କରି ପାରେନା । ମୁଣ୍ଡର ବାଳ ଅଲରାବଲରା ସେଥିରେ ଆଉ ପାନିଆ ବାଜିବାର ମାସକ ଯାକ ନିଷିଦ୍ଧ । ଦାଢ଼ି ବଢ଼ି ଥାଏ, ନଖ ବଢ଼ିଥାଏ, ମାସକ ପରେ ଶୁଦ୍ଧିକ୍ରିୟା ବେଳେ ସେ ସବୁ କଟା ହବ ।

ମୁଁ ଯେତେବେଳେ ଯାଇ କେନ୍ଦ୍ରାପଡ଼ା ହାଇସ୍କୁଲ ନିକଟରେ ପହଁଚେ ମୋତେ ଜଣେ ଶିକ୍ଷକ ଦୂରରୁ ଦେଖିପାରି ଜାଣି ନେଲେ ଯେ ମୋର ପିତୃ ବିୟୋଗ ଘଟିଛି । ମୁଁ ସ୍କୁଲରେ ପହଁଚିବା ଆଗରୁ ସେ ଯାଇ ହେଡ଼ମାଷ୍ଟରଙ୍କୁ ମୋର ପିତୃ ବିୟୋଗ ବିଷୟରେ ଖବର ଦେଇଦେଲେ ।

ମୁଁ ହେଡ଼ମାଷ୍ଟରଙ୍କ ପାଖରେ ପହଁଚି କାନ୍ଦିଲି । ହେଡ଼ମାଷ୍ଟର କେତେକ ସାନ୍ତ୍ୱନା ଦେଲେ । ଅନ୍ୟାନ୍ୟ ଶିକ୍ଷକମାନେ ଦୁଃଖ ପ୍ରକାଶ କଲେ । ସୂର୍ଯ୍ୟାସ୍ତ ହବା ପୂର୍ବରୁ ମୋତେ ହବିଷାନ୍ନ ରାନ୍ଧି ଖାଇବାକୁ ହବ । ସେତେବେଳକୁ ପ୍ରାୟ ଦିନ ୩ଟା ହେଲାଣି । ଏଣୁ ହେଡ଼ମାଷ୍ଟ୍ରେ ଏକଥା ଶୁଣି କହିଲେ, ଆପଣ ଯାନ୍ତୁ, ଆପଣଙ୍କର ଯାହା କରିବାର କଥା କରନ୍ତୁ । ଆପଣଙ୍କର ଯେତେବେଳେ ସୁବିଧା ହବ ସ୍କୁଲକୁ ଆସିବେ ।

ମୁଁ ଯେତେବେଳେ ହଷ୍ଟେଲକୁ ଆସେ ପିଲାମାନେ ମୋତେ ଘେରି ଯାଇ ସବୁ କଥା ବୁଝି ଦୁଃଖ ପ୍ରକାଶ କଲେ । ମୋତେ ଯେ ହାତରେ ହବିଷାନ୍ନ ରାନ୍ଧି ଖାଇବାକୁ ହବ ଏକଥା ଶୁଣି ସମସ୍ତେ ଲାଗି ପଡ଼ିଲେ ରୋଷେଇ ଘର ବାରନ୍ଦାରେ ଇଟା ଇତ୍ୟାଦି ଥୋଇ ଗୋଟାଏ ଚୂଲି ପାରି ଦେଲେ, କାଠ, ଅରୁଆ ଚାଉଳ, ଘିଅ, ପରିବା, ମୁଗ ଡ଼ାଲି, ହାଣ୍ଡି, ପତର ଇତ୍ୟାଦି ସବୁ କିଣି ଆଣିଲେ । ମୋର ଯଦି ପିଲାଙ୍କ ଦ୍ୱାରା ରାନ୍ଧି ଖାଇବାର ହୋଇଥାନ୍ତା, ତା'ହେଲେ ମୋତେ ରାନ୍ଧି ଖାଇବାର କଷ୍ଟ କିଛି ଜଣା ଯାଇ ନଥାନ୍ତା, ପିଲାଏ ସବୁ କରି ଦେଇଥାନ୍ତେ । କିନ୍ତୁ ମୁଁ ତ ନିଜ ହାତରେ ରାନ୍ଧି ଖାଇବାର କଥା, ପିଲାଏ ଆଉ

କ'ଣ କରିବେ ? ତଥାପି ପିଲାଏ ଚୁଲି ଲଗେଇ ଦବା, ପାଣି ଆଣି ଯୋଗେଇବା ଇତ୍ୟାଦି ସବୁ କାମ କଲେ । ମୁଁ ଦେଖିଲି ଭଲ ପିଲାଏ ତ ନିଶ୍ଚୟ ସାହାଯ୍ୟ କରିବେ । ମୋ ମତରେ ଯେଉଁମାନେ ଦୁଷ୍ଟ ପିଲା ସେମାନେ ମଧ ବହୁତ ସାହାଯ୍ୟ କଲେ । ଆଉ ମୋର ଅତି ପ୍ରିୟ ଛାତ୍ର କାଳୀ ଚରଣ ରାଉତରାୟ, ସେ ତ ମୋ ନିଜର ପୁଅ ଭଳି ସବୁ ବେଳେ ମୋ ପାଖରେ ରହିଲା । ମୋର ମନର ଦୁଃଖ କେମିତି ଲାଘବ ହବ ସେଥିପାଇଁ ମଧ ସେ ଅନେକ ଚେଷ୍ଟା କଲା ।

ମୁଁ ହବିଷାନ୍ନ ଖାଇବା ପୂର୍ବରୁ ରନ୍ଧା ହେଉଥିବା ହାଣ୍ଡିରେ କିଛି ଅନ୍ନ, ଡାଲି, ତରକାରି ଇତ୍ୟାଦି ରଖି ଦୂରରେ ସେ ହାଣ୍ଡିକୁ ଥୋଇ ଆସିଲେ ମୋର ଖାଇବାର କଥା । ମୁଁ ଦୂରକୁ ହାଣ୍ଡି ଥୋଇବାକୁ ଗଲେ କାଳୀ ମୋ ସହିତରେ ବରାବର ଯାଏ । ମୁଁ ଦୈନିକ ସ୍କୁଲକୁ ଯାଇ ସ୍କୁଲରେ କାମ କରି ସ୍କୁଲ ଛୁଟି ହବା ଅଳ୍ପ ପୂର୍ବରୁ ଆସି ରୋଷେଇରେ ଲାଗି ଯାଏ । ପିଲାଏ ସେତେବେଳେ ଯେଉଁମାନେ ହଷ୍ଟେଲରେ ଥାନ୍ତି, ସେମାନେ ମୋତେ ସାହାଯ୍ୟ କରନ୍ତି ।

ମୁଁ ପୁଣି ଅଳ୍ପ ଦିନ ଛୁଟି ନେଇ କଟକ ଚାଲି ଆସିଲି । କାରଣ ଶୁଦ୍ଧିକ୍ରିୟା ପାଇଁ ପ୍ରସ୍ତୁତ ହବାକୁ ପଡ଼ିବ । ମୁଁ ଆସି କଟକରେ ପହଁଚିବା ପୂର୍ବରୁ ମୋର ଶଳା ଆସି ଖୋର୍ଦ୍ଧାରୁ ପହଁଚିଥାନ୍ତି । ତାଙ୍କୁ ଦେଖି କାନ୍ଦିଲି, ଶଳା କେତେକ ସାନ୍ତ୍ୱନା ଦେଲେ । ଶଳା ଚାରିଦିନ ପ୍ରାୟ ଆମ ଘରେ ରହିଲେ । ତାଙ୍କ ସହିତରେ ଅନେକ ବିଷୟରେ ଆଲୋଚନା ହେଲା । ଶୁଦ୍ଧିକ୍ରିୟା କିମିତି ହବ ? ସଂସାର କିମିତି ଚଳିବ ? କାରଣ ବାବା ୫୫ଟଙ୍କା ପେନସନ୍ ପାଉଥିଲେ, ମୁଁ ୬୦ଟଙ୍କା ଦରମା ପାଉଥିଲି । ସଂସାର ଖର୍ଚ୍ଚ ବେଶ୍ ଚଳି ଯାଉଥିଲା । ବର୍ତ୍ତମାନ କେବଳ ଭରସା ମୋର ୬୦ ଟଙ୍କା ଦରମା । ବାବାଙ୍କର ପେନସନ୍ ବନ୍ଦ । ଏ ଗୋଟାଏ ମହା ସମସ୍ୟା କିନ୍ତୁ ସେତେବେଳେ ଜିନିଷପତ୍ର ବହୁତ ଶସ୍ତା ଥାଏ । ମୋର କେନ୍ଦ୍ରପଡ଼ାରେ ୨୦ଟଙ୍କା ଖର୍ଚ୍ଚ କଲେ ସବୁ ଖର୍ଚ୍ଚ ଚଳି ଯାଉଥିଲା । ବାକି ୪୦ଟଙ୍କା ମା'ଙ୍କ ପାଖକୁ ପଠେଇଦେଲେ ଅତି କଷ୍ଟରେ ସମସ୍ତେ ଚଳି ଯିବା ସମ୍ଭବ । ବାବାଙ୍କର ମୃତ୍ୟୁ ପରେ ଅନେକଗୁଡ଼ିଏ ବାବାଙ୍କ ଅମଳର ଋଣ ଥାଏ ପରିଶୋଧ କରିବାକୁ, କଣ କରିବି ?

ଶଳା ଏ ସବୁ ଶୁଣି ଯାହା ପ୍ରସ୍ତାବ ଦେଲେ ମୋର ମନ ମାନିଲା ନାହିଁ । ମୁଁ କହିଲି ଆଜି ମୁଁ ଏଇ ଚାକିରିରେ ଅଛି ତେଣୁ ସବୁ ଖର୍ଚ୍ଚ ଚଳେଇ ବାବାଙ୍କର ଋଣ ପରିଶୋଧ କରିବାକୁ ବର୍ତ୍ତମାନ କଷ୍ଟ ହଉଛି । ମୁଁ ଅନ୍ୟ ଚାକିରି କଲେ ଏତେ ଅଭାବ ଜଣା ପଡ଼ିବ ନାହିଁ । ସେତେବେଳେ ତ ଦ୍ୱିତୀୟ ମହାଯୁଦ୍ଧ ଲାଗିଥାଏ । ଯୁଦ୍ଧ ଚାକିରିରେ ଯୋଗ ଦେଲେ ଟଙ୍କା ପ୍ରଚୁର ମିଳିବ । ଏ ଅଭାବ କଣ ଆଉ ରହିବ ? ତେବେ ଗୋଟାଏ ସମସ୍ୟା ହଉଚି ମୁଁ ଦୂରରେ ରହି ଚାକିରି କଲେ ମୋର ମା ଓ ସ୍ତ୍ରୀ ଚଳିବେ କିପରି ? ଏ ବିଷୟରେ ଶଳା ଯେଉଁ ପ୍ରସ୍ତାବ ଦେଲେ, ମୋର ମନ ମାନିଲା ନାହିଁ । କାରଣ ଆଜି ଅଭାବଗ୍ରସ୍ତ ହେଇଛି, ସବୁଦିନ ତ ଏ ଅଭାବ ନଥିବ । କିନ୍ତୁ କା ଜିମା ମା ଓ ସ୍ତ୍ରୀକୁ ଛାଡ଼ି ମୁଁ ଦୂରରେ ରହି ଚାକିରି କରିବି ? ଆଜି ଶଚୀ ଅଛି, ଶଚୀ ତ ସବୁଦିନ ରହି ପାରିବନି ।

ଶଚୀର ପାଠ ପଢ଼ା ସରିଲେ ଶଚୀ ଚାଲିଯିବ । କଟକରେ ତ ସେମିତି କୌଣସି ଚାକିରି ମିଳିବାର ଆଶା ନାହିଁ ଯେ ମୁଁ କଟକରେ ରହି ଚାକିରି କରିବି । ଏଣେ ଘର ଦେଖିବି । ଚାକିରିର ଅଭାବ ନାହିଁ । କିନ୍ତୁ କଟକରେ ରହି ଚାକିରି କରି ହବ ନାହିଁ । ଶଳାଙ୍କ ସହିତରେ ଏଇ ସବୁ ଆଲୋଚନା ବେଳେ ଗୋଟାଏ ଆଶ୍ଚର୍ଯ୍ୟ ଘଟଣା ଘଟିଲା । ଘଟଣା ହେଲା ଆମ ଘରେ ଗୋଟିଏ ଚାକର ଥିଲା ନାଁ ଅରକ୍ଷିତା । ତାର ଗୋଟିଏ ଗୋଡ଼ ପୋଲିଓ ରୋଗ ଯୋଗୁଁ ସରୁଆ ଆଉ ଗୋଟିଏ ଗୋଡ଼ ଭଲ । ଭଲ କାମ କରୁଥିଲା । ତାର ବାପ, ମା, ଭାଇ, ବିରାଦର କେହି ନଥିଲେ । ଘର କଟକ ଜିଲ୍ଲା ଫତେଗଡ଼ । ତାକୁ ମୁଁ ମେଡ଼ିକାଲରେ ପଢ଼ିବାବେଳେ ମେଡ଼ିକାଲ ୱାର୍ଡ଼ରୁ ଯୋଗାଡ଼ କରି ଆଣିଥିଲି । ସେ ଅତି ରୁଗ୍ଣ ଅବସ୍ଥାରେ ଥିଲା । ତାକୁ ଘରକୁ ଆଣି ଖାଇବା ଓ ଔଷଧ ଇତ୍ୟାଦି ଦେଲା ପରେ ସେ ସୁସ୍ଥ ସବଳ ହେଇ ଖୁବ୍ ଭଲ କାମ କଲା । ସେ କିଛି ଦରମା ଇତ୍ୟାଦି ନଉ ନଥିଲା ।

କେବଳ ଖାଇପିଇ, ଲୁଗାପଟା ନେଉଥିଲା । ସେ କ୍ରମଶଃ ପଡ଼ୋଶୀମାନଙ୍କ ଘରକୁ ଯିବା ଆସିବା କରି ପଡ଼ୋଶୀମାନଙ୍କଠାରୁ କେତେକ ମନ୍ଦ ଉପଦେଶ ପାଇ ମନ୍ଦ ଆଡ଼କୁ ତାର ମତିଗତି ଢଳିଲା ।

ଦିନେ ମୁଁ ମେଡ଼ିକାଲ ହଷ୍ଟେଲ୍‌କୁ ଦି'ପହରେ ପଢ଼ିବାକୁ ଯାଇଛି, ବାବା, ମା ଓ ସାନ ଭଉଣୀ ଘରେ ଥାନ୍ତି । ମୁଁ ସନ୍ଧ୍ୟା ପୂର୍ବରୁ ମେଡ଼ିକାଲ ହଷ୍ଟେଲ୍‌ରୁ ଘରକୁ ଫେରି ଆସିଲା ପରେ ସାନ ଭଉଣୀଠାରୁ ଶୁଣିଲି ଯେ ମା ଅରକ୍ଷିତାକୁ ମାଇଲେ ତା'ପରେ ସେ କୁଆଡ଼େ ପଳେଇଛି । ମୁଁ ଏକଥା ଶୁଣି ମା'ଙ୍କ ଉପରେ ବିରକ୍ତ ହେଲି । ତା'ପରେ ସାହିରେ ଯେତେ ଯୁଆଡ଼େ ଖୋଜିଲି ଆଉ ପାଇଲି ନାହିଁ । ମନ ଭାରି ଦୁଃଖ ଲାଗିଲା । ଭଲ କାମ କରୁଥିଲା । କେତେଦିନ ପର୍ଯ୍ୟନ୍ତ ମନ ବ୍ୟସ୍ତ ହେଲା । କିନ୍ତୁ ଅରକ୍ଷିତାର ଆଉ ପତ୍ତା ମିଳିଲା ନାହିଁ । କ୍ରମଶଃ ସାତ ବର୍ଷ ବିତିଗଲା । ମୁଁ ମନେ ମନେ ତା' କଥା ଭାବେ ଆଉ ମୋର ମନେ ହୁଏ ଅରକ୍ଷିତା ମରିଯିବଣି ।

ମୋର ଶଳା ସହିତରେ ମୁଁ ବସି ଆଲୋଚନା କରୁ କରୁ ମୁଁ ଦୁଃଖ କରି କହୁଛି, ମୋର ସେ ଅରକ୍ଷିତା ଚାକର ଯଦି ଥାନ୍ତା ମୋର ଘର ଛାଡ଼ି ଯିବାକୁ ଏତେ ଅସୁବିଧା ହୁଅନ୍ତାନି । ମୁଁ ଏଇ କଥା କହୁ କହୁ ଦେଖିଲି ଅରକ୍ଷିତା ଗୋଟାଏ ପୁଟୁଳି ଧରି ଛୋଟେଇ ଛୋଟେଇ ଗୋଟାଏ ଗଳି ଭିତରୁ ବାହାରି ଆମ ଦୁଆର ଆଡ଼କୁ ଆସୁଛି । ମୁଁ ଅରକ୍ଷିତାକୁ ଦେଖି ଅବାକ୍ ହେଇଗଲି । ଭାବିଲି ଏ କଣ ସତେ ଅରକ୍ଷିତା ନା ତା' 'ପ୍ରେତ' ନା ମୁଁ ସ୍ୱପ୍ନ ଦେଖୁଛି । ବର୍ତ୍ତମାନ ତା' କଥା କହୁ କହୁ ଦୀର୍ଘ ୭ ବର୍ଷ ପରେ ସେ କୁଆଡୁ ଆସି ପହଁଚିଲାଣି । ମୁଁ ଆଶ୍ଚର୍ଯ୍ୟ ହେଇ ପଚାରିଲି ତୁ ଅରକ୍ଷିତା ? ଅରକ୍ଷିତା ଛୋଟେଇ ଛୋଟେଇ ଆସୁ ଆସୁ ଉତ୍ତର ଦେଲା, ହଁ ବାବୁ, ମୁଁ ଅରକ୍ଷିତା । ତା' ମୁହଁରୁ ଉତ୍ତର ଶୁଣି ଯେତିକି ଆଶ୍ଚର୍ଯ୍ୟ ହେଲି, ସେତିକି ଆନନ୍ଦିତ ହେଲି । ଭାବିଲି ଯା ହଉ ଏଥର ମୋ ଚିନ୍ତା ଗଲା । ଅରକ୍ଷିତା ଜିମା ଘର ଛାଡ଼ି ଯିବି । ଶଳାକୁ ମଧ୍ୟ କହିଲି, ଯେଉଁ ଚାକର କଥା କହୁଥିଲି ଏଇ ସେ ଚାକର, ୭ ବର୍ଷ ପରେ ଆଜି ଆସିଲା ।

ଅରକ୍ଷିତା ଆସି ଆମ ଦୁଆର ତଳ ପାହାଚରେ ବସିଲା । ମୁଁ ପଚାରିଲି ତୁ ଏ ୭ ବର୍ଷ ଯାଏ କୋଉଠି ଥିଲୁ ? ଅରକ୍ଷିତା କହିଲା, ମୁଁ କଲିକତାରେ ଥିଲି । ମୁଁ ଅରକ୍ଷିତାର କଣ୍ଠସ୍ୱରର ପରିବର୍ତ୍ତନ ଲକ୍ଷ୍ୟ କଲି । କଣ୍ଠସ୍ୱର ଟିକିଏ ଘାଗଡ଼ା ଶୁଣା ଯାଉଛି । ମୁଁ ସନ୍ଦେହ କଲି ଏ ତ କଲିକତାରେ ୭ ବର୍ଷ ହେଲା ଥିଲା, ଯାକୁ ଯକ୍ଷ୍ମା ରୋଗ ଧରି ନାହିଁ ତ ? କାରଣ ମୁଁ ଜାଣେ ଯକ୍ଷ୍ମା ରୋଗ ଯାକୁ ହୁଏ, ତା ସ୍ୱର ଭଗ୍ନ ହୁଏ ।

ମୁଁ ଅରକ୍ଷିତାକୁ ପଚାରିଲି, ତୋ ଗଳାସ୍ୱର ଇମିତି କାହିଁକି ଶୁଣା ଯାଉଛି ? ଅରକ୍ଷିତା ଉତ୍ତର ଦେଲା, ବାବୁ ମୁଁ ଆପଣଙ୍କ ଘରୁ ଗଲାଦିନୁଁ ଏ ୭ ବର୍ଷ ହେଲା ଭାତ ମୁହଁ ଦେଖି ନାହିଁ । କେବଳ ବରା, ଚା' ଖାଇ ବଞ୍ଚିଥିଲି । ଗୋଟାଏ ଛୋଟିଆ ଗୁଡ଼ିଆ ଦୋକାନରେ କାମ କରୁଥିଲି । ମୁଁ ପୁଣି ପଚାରିଲି ତୁ ପଳେଇଲୁ କାହିଁକି ? ଅରକ୍ଷିତା କହିଲା ବାବୁ, ଏ ସାହିଲୋକଙ୍କ ଶିକ୍ଷାରେ । ମୁଁ ଅଇଚି, ଆଉ କୁଆଡ଼େ ଯିବି ନାହିଁ ।

ମା'ଙ୍କୁ ଖବର ଦେଲି ଅରକ୍ଷିତା ଆସିଛି । ମା ଏକଥା ଶୁଣି ଖୁସି ହେଲେ । ମା ସଦ୍ୟ ବିଧବା ହେଇଥାନ୍ତି, ମନର ଦୁଃଖ ଯାଇ ନଥାଏ । ଅରକ୍ଷିତା ଘରକୁ ଆସିଲା । ମା' ତାକୁ ଦେଖି କାନ୍ଦିଲେ । ଅରକ୍ଷିତାର ଏ ୭ ବର୍ଷ ଅନୁପସ୍ଥିତି ମଧ୍ୟରେ କେତେଗୁଡ଼ିଏ ଘଟଣା ଘଟି ଯାଇଛି, ଯା'କି ଅରକ୍ଷିତା ମଧ୍ୟ ଜାଣେନା । ସାନ ଭଉଣୀର ମୃତ୍ୟୁ, ମୋ ବିଭାଘର, ବାବାଙ୍କର ମୃତ୍ୟୁ ଇତ୍ୟାଦି । ଅରକ୍ଷିତା ମଧ୍ୟ କାନ୍ଦି ପକେଇ କହିଲା, ସାନ ଦିଦି ନାହାନ୍ତି ? ବାବୁ ନାହାନ୍ତି ? ମୁଁ ଆଉ କୁଆଡ଼େ ଯିବି ନାହିଁ ।

ଅରକ୍ଷିତା ରହିଲା ମୁଁ ମନେମନେ ଟିକିଏ ସାହସ ପାଇଲି । ଶଳାକୁ କହିଲି, ଏଥର ଘର ଛାଡ଼ି ଯିବା ମୋ ପକ୍ଷରେ କିଛି ଅସୁବିଧା ହବନି । ଶଳା ଶୁଦ୍ଧିକ୍ରିୟା ଆଗରୁ ପୁଣି ଥରେ ଆସିବେ ବୋଲି କହି ବିଦାୟ ନେଇଗଲେ ।

ମୁଁ ଦିନେ ଅରକ୍ଷିତା ଛାତିର ଅବସ୍ଥା ପରୀକ୍ଷା କଲି କାରଣ ମୋ ମନରେ ସନ୍ଦେହ ଥାଏ, ଅରକ୍ଷିତା ଯକ୍ଷ୍ମା ରୋଗରେ ଆକ୍ରାନ୍ତ ହେଇଛି କି କଣ ? ଛାତି ପରୀକ୍ଷା

କରି ଯା'ଦେଖିଲି broncifio ଭଳି ମନେ ହେଲା । ମୁଁ ମନେ ମନେ ସ୍ଥିର କଲି କଫ ପରୀକ୍ଷା କଲେ ସଠିକ୍ ଜଣା ପଡ଼ିବ । ମା'ଙ୍କୁ ବାରଣ କଲି ଅରକ୍ଷିତାକୁ ପଖାଳ ଖାଇବାକୁ ଦେବେ ନାହିଁ ।

ଦିନେ ଦି ଦିନ ପରେ ଦିନେ ସନ୍ଧ୍ୟା ପରେ ଅରକ୍ଷିତା ଶୋଇ ଗଁ ଗଁ ଶବ୍ଦ କଲା । ମୁଁ ଦେଖିଲି ସେ ଗୋଟା ସୁଦ୍ଧା ଫୁଲି ଯାଇଛି । ମୁଁ ଭୟଭୀତ ହେଲି । ମୁଁ ତ ଅଶୌଚ ପାଳି ଥାଏ । ଏ ଅବସ୍ଥାରେ ଏ ଯଦି ମରେ, ଯାର ଶବ ଉଠେଇବ କିଏ ? ମୁଁ ତାକୁ ରିକ୍ସାରେ ମୋର ଜଣେ ପଡ଼ୋଶୀ ଲୋକ ସହିତରେ ମେଡ଼ିକାଲର duty officerଙ୍କ ପାଖକୁ ଖଣ୍ଡେ ଚିଠି ଲେଖି ପଠେଇ ଦେଲି । ମେଡ଼ିକାଲ୍‌ରେ ଅରକ୍ଷିତାର କଫ ପରୀକ୍ଷାରୁ ଜଣାଗଲା, ତାକୁ ଯକ୍ଷ୍ମା । ସେ ମେଡ଼ିକାଲରେ ରହିବାର ତିନି ଦିନ ପରେ ରକ୍ତ ବାନ୍ତି କରି ମରିଗଲା ।

ଅରକ୍ଷିତାର ମୃତ୍ୟୁରେ ମା ଓ ମୁଁ ବିଶେଷ ଦୁଃଖ ଅନୁଭବ କଲୁ । କାରଣ ଲୋକଟା କୁଆଡ଼େ ୭ ବର୍ଷ ହେଲା ଯାଇଥିଲା, ମରିବା ପୂର୍ବରୁ ଆସି ଦେଖା ଦେଇ ମଲା । ମା'ଙ୍କ ଠାରୁ ଶୁଣିଲି ଯେ ଦିନେ ମୋର ଅନୁପସ୍ଥିତିରେ ସେ ଜିଗର କରି ମା'ଙ୍କୁ ପଖାଳ ମାଗି ଖାଇଲା ପରେ ତାର ଏମିତି ଅବସ୍ଥା ହେଲା ।

ଅରକ୍ଷିତା ଆସିବା ଯୋଗୁଁ ମୁଁ ଯାହା ସାହସ ପାଇଥିଲି ସେତକ ହରେଇ ବସିଲି । ମୁଁ ଯେଉଁ ଅବସ୍ଥାରେ ଥିଲି ପୁଣି ସେଇ ଅବସ୍ଥାରେ ପଡ଼ିଲି । ମା ଓ ସ୍ତ୍ରୀ କେମିତି ଏକା ରହିବେ ? ଶଚୀ ଗଲା ପରେ କଣ କରିବି ? ବାବାଙ୍କର ଶୁଦ୍ଧିକ୍ରିୟା ପୂର୍ବରୁ ଜେଠା ଆସି ପହଁଚିଥିଲେ । ଶଳା, ଶଳାଭାଉଜ ଉଭୟେ ଆସି ଜେଠାଙ୍କ ସହିତ କଥାବାର୍ତ୍ତା କରି ତାଙ୍କର ଯା ସାହାଯ୍ୟ କରିବାର କରିଗଲେ । ବନ୍ଧୁ ବାନ୍ଧବ ଯେ ଯେମିତି ଆସିବାର ଆସି ପହଁଚିଲେ ।

ଶୁଦ୍ଧିକ୍ରିୟା ପାଇଁ ମୁଁ ନିଜେ କେତେକ ଜିନିଷ କେନ୍ଦ୍ରାପଡ଼ାରୁ କାଳୀ ରାଉତରାୟର ସହାୟତାରେ ଆଣି କଟକରେ ପହଁଚେଇଲି । କାଳୀ ରାଉତରାୟକୁ ମଧ୍ୟ କେନ୍ଦ୍ରାପଡ଼ାରୁ ଆମ ଗାଁ ଅସୁରେଶ୍ୱର ଦୀକ୍ଷିତପଡ଼ାକୁ ପଠେଇଥିଲି ଗ୍ରାମରୁ ଆମ ପୁରୋହିତକୁ କଟକ ଆସିବା ନିମିତ୍ତ ଖବର ଦବା ପାଇଁ । ଶଚୀ ମୋତେ କହିଥିଲା ତାଙ୍କ ଘରେ ଟଙ୍କା ଦେଇ ଆସିଲେ ସେମାନେ କେନ୍ଦ୍ରାପଡ଼ା ହାଟରୁ ଆଉ ସମସ୍ତ ଜିନିଷ କିଣି କେନ୍ଦ୍ରାପଡ଼ାରୁ ଆସୁଥିବା ଲଞ୍ଚରେ କଟକ ପଠେଇଦେବେ । ଏଣୁ ମୁଁ କେନ୍ଦ୍ରାପଡ଼ାରେ ଶଚୀ ଘରକୁ ଯାଇ ଟଙ୍କା ଦେଇ ଆସିଥିଲି । ସେମାନେ ପ୍ରକୃତରେ ଅନେକ କଷ୍ଟ ସ୍ୱୀକାର କରି ଲଂଚରେ ମୋର କହିବା ଅନୁସାରେ ସମସ୍ତ ଜିନିଷ ପଠେଇ ଦେଇଥିଲେ ।

ବାବାଙ୍କର ଶୁଦ୍ଧି କ୍ରିୟା ଦିନ ପହଁଚିଲା । ବାବାଙ୍କର ମୃତ୍ୟୁ ହୁଏ ୧୯୪୧ ସେପ୍ଟେମ୍ବର ମାସ ୧୫ ତାରିଖରେ । ଆମର ମାସେ ଅଶୌଚ ପାଳିବାର କଥା । ଏଣୁ ଶୁଦ୍ଧିକ୍ରିୟା ପଡ଼ିଲା ଅକ୍ଟୋବର ମାସରେ । ବଞ୍ଚୁଥିବା ଅବସ୍ଥାରେ ସ୍ୱପ୍ନରେ ବାବା ମୋତେ ଯାହା କହିଥିଲେ ଅକ୍ଟୋବର ମାସ ବେଳକୁ ମୋର କିଛି ଥିବ ନାହିଁ । ମୁଁ ଦେଖିଲି ସେ ଘଟଣା ତ ସତ ହେଲା । ଅକ୍ଟୋବର ମାସ ବେଳକୁ ବାବା ଆଉ ଇହଧାମରେ ନାହାନ୍ତି । ତାଙ୍କର ଶୁଦ୍ଧିକ୍ରିୟା କେମିତି ଭଲ ଭାବରେ ସମାହିତ ହେବ ତାର ଯୋଗାଡ଼ ଚାଲିଛି ।

ବାବାଙ୍କର ଶୁଦ୍ଧିକ୍ରିୟା ମୋର ବନ୍ଧୁବାନ୍ଧବ, ପଡ଼ୋଶୀ କାଳୀ ରାଉତରାୟ, ଶଚୀର ସହାୟତାରେ ଖୁବ୍ ଭଲ ଭାବରେ ସମାହିତ ହୋଇଗଲା । ଅଫିସ୍‌ରୁ ଘରକୁ ଫେରିବାରେ ବାବାଙ୍କର ଟିକିଏ ବିଳମ୍ବ ହେଲେ ମୁଁ ଅଧୈର୍ଯ୍ୟ ହେଇ ବାରମ୍ବାର ଯାଇ ରାସ୍ତାକୁ ଅନଉଥିଲି । ଆଜି ସେହି ବାବାଙ୍କର ପରଲୋକ ପ୍ରାପ୍ତିର ଶୁଦ୍ଧିକ୍ରିୟା ସରିଲା । ଜୀବନ ଦେଇ ଖୋଜିଲେ ବି ବାବାଙ୍କର ଆଉ ଦର୍ଶନ ପାଇବି ନାହିଁ । ଏ ଜୀବନରେ ଆଉ ନୁହେଁ । ମୋର ପୂର୍ବ ଜନ୍ମର କେଉଁ ପୁଣ୍ୟ ବଳରେ ଏ ଜୀବନରେ ଜଣେ ସେମିତି ଋଷିପ୍ରତିମ ପିତାଙ୍କୁ ପାଇଥିଲି, କି ଧୈର୍ଯ୍ୟଶୀଳ ଲୋକ ! ଦୁଃଖରେ ଯେମିତି, ସୁଖରେ ସେମିତି, ସବୁବେଳେ ସମାନ, କାତରତା ନାହିଁ । ଔଦ୍ଧତ୍ୟ ନାହିଁ ସବୁବେଳେ ହାସ୍ୟରସଭରା ଆନନ୍ଦମୟ କଥାବାର୍ତ୍ତା ଆଧ୍ୟାତ୍ମବାଦୀ, ଈଶ୍ୱର ବିଶ୍ୱାସୀ । ତାଙ୍କର ବିଶେଷ ଆଗ୍ରହ ଥିଲା ଖାଇବାରେ,

ଖୋଳିବାରେ, ଗୀତ ଗାଇବାରେ, ବେହେଲା ବଜେଇବାରେ। ରାଗ, କଳହ ତାଙ୍କୁ ଅଗୋଚର ଥିଲା। ଆଉ ମଧ ଯାନିଯାତ୍ରାକୁ ଯାଇ ବୁଲି ଆସିବା, ସିନେମା, ସର୍କସ ଦେଖିବା, ଲୋକଙ୍କୁ ନେଇ ଦେଖେଇବା, ନାଟ, ତାମସା ଦେଖିବାରେ ମଧ ବିଶେଷ ଆଗ୍ରହ ଥିଲା। ବାବା ଇହଧାମରୁ ବିଦାୟ ନେଲେ। ତାଙ୍କର ଅତିପ୍ରିୟ ବାଦ୍ୟଯନ୍ତ୍ର ବେହେଲା ନିରବ ହେଇ ପଡ଼ି ରହିଲା। ଶୁଦ୍ଧିକ୍ରିୟା ପରେ ପରେ ଆଉ ଗୋଟାଏ ଘଟଣା ଘଟିଲା। ଘଟଣା ହେଲା ଥୋରିଆସାହିରେ ବାବାଙ୍କ ଅମଳରୁ ଆମେ ଯେଉଁ ଭଡ଼ା ଘରେ ରହୁଥିଲୁ ସେ ଘରର ମାଲିକ, ଯା ଠାରୁ ବାବା ପ୍ରଥମେ ଘର ଭଡ଼ା ନେଇଥିଲେ, ସେ ମଲାପରେ ତାର ଗୋଟିଏ ପୋଷ୍ୟପୁତ୍ର ଥିଲା। ସେ ପୋଷ୍ୟପୁତ୍ର ଯେତେବେଳେ ନାବାଳକ ଥିଲା, ସେତେବେଳେ ଘରର ମାଲିକ କେହି ନଥିଲେ କହିଲେ ଚଳେ। ବାବାହିଁ ସେ ଘରର ମାଲିକପରି ଥିଲେ। ସେ ଘରର ଖଜଣା ଇତ୍ୟାଦି ଦେଇ, ସେ ଘରର ଯତ୍ନ ନେଉଥିଲେ। ଥୋରିଆସାହିରେ କେତେକ ଲୋକ ବାବାଙ୍କୁ ପ୍ରବର୍ତ୍ତେଇ କହିଲେ, ସେ ଘର ଆପଣଙ୍କ ନାଁରେ କରେଇ ନିଅନ୍ତୁ। ବାବା ମନା କରି କହିଥିଲେ, ମୋର ଗୋଟିଏ ବୋଲି ପୁଅ, ମୁଁ ସେମିତି ଧପ୍ପାବାଜି କାମ କରିବି ନାହିଁ।

ପରେ ସେ ପୋଷ୍ୟପୁତ୍ର ଯେତେବେଳେ ସାବାଳକ ହେଲା, ସେ ଘରର ମାଲିକ ହେଇ ସେ ଘରକୁ କେତେ ଲୋକଙ୍କଠାରେ ବନ୍ଧା ପକେଇ ଟଙ୍କା ଆଣି ନିଶାପାଣି ଖାଇ ଶେଷରେ ଘରକୁ କଟକ ମାଛୁଆବଜାରର ଜଣେ ତେଲିକୁ ବିକି ଦିଏ। ସେ ତେଲି ବାବାଙ୍କ ପାଖରୁ ସେ ଘରର ଭଡ଼ା ନେଉଥିଲା। ବାବାଙ୍କ ସହିତରେ ତାର ଭାରି ସଦ୍‌ଭାବ ଥିଲା। ବାବା ତାକୁ ଭାରି ବିଶ୍ୱାସ କରୁଥିଲେ। ଉଭୟେ ଉଭୟଙ୍କର ଘନିଷ୍ଠ ବନ୍ଧୁ ଥିଲେ ବୋଲି କହିଲେ ଚଳେ। କିନ୍ତୁ ମୁଁ ସେ ଲୋକକୁ ବିଶ୍ୱାସ କରୁ ନଥିଲି କିମ୍ବା ଭଲ ପାଉ ନଥିଲି। ତାର କଥାବାର୍ତ୍ତା ଚାଲିଚଳନରେ ମୁଁ ସନ୍ଦେହ କରେ। ସେ ସରଳ ପ୍ରକୃତିର ଲୋକ ନୁହେଁ। ବାବା ତାକୁ ଯେତେ ବିଶ୍ୱାସ କରନ୍ତି, ସେତେ ବିଶ୍ୱାସ କରିବା ଉଚିତ୍ ନୁହେଁ। ଏଣୁ ଯେତେବେଳେ ବାବା ତାକୁ ମାସିକ ଭଡ଼ା ଦିଅନ୍ତି, ମୁଁ ବାବାଙ୍କୁ କହେ, ଟଙ୍କା ଦଉଛ, ତା'ଠୁଁ ରସିଦ୍ ରଖୁନା କାହିଁକି? ବାବା ମୋ ଉପରେ ବିରକ୍ତ ହେଇ କହନ୍ତି, ତୋରି କଥାରେ ତା'ଠୁଁ ଗୋଟାଏ ରସିଦ୍ ରଖିବି? ସେ ଲୋକ ସେମିତି ଜାଲ ଫିସାଦିଆ ନୁହେଁ।

କଣ ଆଉ ବାବାଙ୍କୁ କହିବି? ଚୁପ୍ ରହେ। କିଛି ମାସ ଗଲା ପରେ ପୁଣି ଥରେ ଦି ଥର କହିବାରୁ ବାବା ଅନିଚ୍ଛା ସତ୍ୱେ, ତା'ଠାରୁ ଖଣ୍ଡେ ଖଣ୍ଡେ ଛୋଟ କାଗଜରେ ଟଙ୍କା ଦେଲାବେଳେ ଲେଖେଇ ରଖିଲେ। ସେ ରସିଦ୍ ପୁଣି ଗୋଟାଏ ଲୁହା ତାରରେ ଫୁଟା ହେଇ କାନ୍ଥରେ ଝୁଲା ହେଲା। କିଛିମାସ ପରେ ଦେଖିଲି, ସେ ରସିଦ୍ ସବୁ ସେଠି ନାହିଁ। ପବନରେ କୁଆଡ଼େ ଉଡ଼ି ଛିଣ୍ଡିଛାଣ୍ଡି ଗଲାଣି। ଆଉ ମଧ ବାବା ତା'ଠାରୁ କିଛି ଲେଖେଇ ରଖିଲେ ନାହିଁ। ମୁଁ ଦେଖିଛି ଏବଂ ସାହିପଡ଼ିଶା ମଧ ଦେଖିଛନ୍ତି, ସେ ଘରର ଅନେକ କାନ୍ଥ ଇତ୍ୟାଦି ତିଆରି କରିବା, ଯେଉଁ ଅଂଶଟା ଚାଳଘର ଥିଲା, ସେ ଅଂଶ କେତେଥର ଛୁଆଣି କରିବା, ମୋର ବିବାହ ପୂର୍ବରୁ ସେ ଘରର ଆହୁରି କେତେ ଅଂଶ ତିଆରି କରିବା, ବାବା ନିଜ ଖର୍ଚ୍ଚରେ ସବୁ କରିଥିଲେ। କିନ୍ତୁ କୌଣସି ହିସାବପତ୍ର ନାହିଁ କି କାଗଜପତ୍ରରେ କେତେ ଖର୍ଚ୍ଚ କଲେ କିଛି ଲେଖା ନାହିଁ ସବୁ ସେ ଲୋକକୁ ବିଶ୍ୱାସ କରି କରା ହେଉଛି। ମୁଁ ଥରେ ବାବାଙ୍କୁ ଏସବୁ ଖର୍ଚ୍ଚ କଥା ପଚାରିବାରେ ବାବା କହିଲେ ସେ କହିଛି, ଭଡ଼ା ବାବଦକୁ ଅସୁଲ କରି ଦିଆଯିବ। ଭଡ଼ା ଯେ କେତେ? କେତେ ବାକି ଅଛି କି କଣ? ମୋର କିଛି ପଚାରିବାର ଉପାୟ ନାହିଁ। ପଚାରିଲେ ବାବା ମୋ ଉପରେ ବିରକ୍ତ। ଏଣୁ ମୁଁ ବେଶି କିଛି ପଚାରେ ନାହିଁ। ବାବାଙ୍କର ତା ସହିତରେ ସବୁ ମୁହେଁ ମୁହେଁ ହିସାବ, ସବୁ ବିଶ୍ୱାସରେ କରାଯାଏ।

ବାବାଙ୍କର ଶୁଦ୍ଧିକ୍ରିୟା ସରିବାର କିଛିଦିନ ପରେ ଦିନେ ସେ ଲୋକ ଆସିଲା ମୋଠାରୁ ଘର ଭଡ଼ା ନବାକୁ। ଜେଠା ମୋ ପାଖରେ ବସିଥାନ୍ତି। ସେ ଲୋକ ଆସି ପାଖରେ ବସିଲା, ଭଲ କଥାବାର୍ତ୍ତା। ମାସକର ଭଡ଼ା ଦେଲି। ସେ କହିଲା ମୋର ଏ ରସିଦ୍ ବହିରେ ଦସ୍ତଖତ କରି ଖଣ୍ଡେ ରସିଦ ରଖ। ଗୋଟାଏ ରସିଦ୍‌ର ଅଲେଖା

ପାଖ ଦେଖେଇଲା । ମୁଁ ଦସ୍ତଖତ କରିଦେଲି । ସେ ରସିଦ୍‌ରୁ ଖଣ୍ଡେ ଛିଣ୍ଡେଇ ମୋତେ ଦେଇ ଚାଲିଗଲା । ସେ ଚାଲିଗଲା ପରେ ଜେଠା କହିଲେ ଦେଖିଲୁ, ସେ ରସିଦ୍‌ରେ କଣ ଲେଖା ଅଛି । ମୁଁ ପଢ଼ି ଦେଖେ ଲେଖା ଅଛି ବାକି ଭଡ଼ା ବାବଦକୁ ଏସୁଲ, ୨୫୦ଟଙ୍କା ଭଡ଼ା ବାକି, ଜେଠା ଶୁଣି ଅବାକ୍ ହେଲେ, କ'ଣ ? ବାକି ଭଡ଼ା ୨୫୦ ଟଙ୍କା ଅଛି ବୋଲି ପ୍ରମାଣ କଣ ? ତୋର ବାବା ତ ଏ ଘରର ମରାମତି, ତିଆରି ଇତ୍ୟାଦିରେ କେତେ ଟଙ୍କା ଖର୍ଚ୍ଚ କରିଥିଲେ ସେ ସବୁ କୁଆଡ଼େ ଗଲା ? ମୁଁ ତ ବିଶ୍ୱାସରେ ଦସ୍ତଖତ କରିଦେଲି, କିନ୍ତୁ ସେ ଯେ ଏତେ ଚକ୍ରାନ୍ତ କରି ମୋର ଦସ୍ତଖତ ନେଇ ଚାଲିଗଲା, ମୁଁ ଜାଣିପାରିନି ନାହିଁ । ଯା ହବାର ହେଲା ମୁଁ ସେତେବେଳେ ତାକୁ ଆଉ ଡ଼ାକି ପଚାରିବାରେ ମୋର ବେଳ ନଥିଲା ।

ବାବାଙ୍କର ଶୁଦ୍ଧିକ୍ରିୟା ସରିବା ପରେ ଶଚୀ ଜିମା ଘର ଛାଡ଼ି କେନ୍ଦ୍ରାପଡ଼ା ଚାଲିଗଲି । କେନ୍ଦ୍ରାପଡ଼ାରେ ଆଗ ପରି ଆଉ ଭଲ ଲାଗିଲା ନାହିଁ । ସବୁବେଳେ ମନହେଲା କଟକ ଆସିବା ପାଇଁ । ସବୁବେଳେ ଭାବିଲି ମା' କ'ଣ କରୁଥିବେ ? କେମିତି ଚଳୁଥିବେ ? ଶଚୀ କେମିତି କଣ କରୁଛି ? ଏ ସବୁ ଚିନ୍ତା ଛଡ଼ା ଆଉ ଏକ ଚିନ୍ତା ସଦ୍ୟବିବାହିତା ସ୍ତ୍ରୀ, ମୋଟେ ୯ ମାସ ହେଲା ବିଭାଘର ହବାର, ନୂଆବୋହୂ ଯାକୁ କହନ୍ତି । ସବୁ ଚିନ୍ତା ଗୋଟାଏ ଆଡ଼େ, ସଦ୍ୟବିବାହିତା ସ୍ତ୍ରୀର ଚିନ୍ତା ଆଉ ଗୋଟାଏ ଆଡ଼େ । ଏଇମାତ୍ର ୯ ମାସ ଭିତରେ ଏ ଦାରୁଣ ଦୁଃଖ, ବାବାଙ୍କର ମୃତ୍ୟୁ । ବାବାଙ୍କର କଥା ମଧ ବାରବାର ମନେ ପଡୁଥାଏ । ବାବାଙ୍କୁ ଛାଡ଼ି ଚଳିବା ଏଇ ମୋର ପ୍ରଥମ । ମୁଁ କିଛି ଜାଣି ନଥିଲି, ଖାଉଥିଲି, ପଢୁଥିଲି, ଖେଳୁଥିଲି । ଏ ତ ଏମିତି ସମୟ ପଡ଼ିଲା ମୋରି ଉପରେ ସବୁ । ସେତେବେଳେ ମୋର ବେତନ ମାତ୍ର ୬୦ଟଙ୍କା । ସେଥିରେ ମୁଁ ରହିଲି କେନ୍ଦ୍ରାପଡ଼ାରେ । ମା, ସ୍ତ୍ରୀ ଏବଂ ଛୋଟ ଭାଣିଜୀଟିଏ, ତା'କଥା ମଧ ସବୁ ବେଳେ ମନେ ପଡୁଥାଏ, ସେ କଣ କରୁଥିବ ? ବାବା, ମା ସାନ ବଡ଼ ହେଇ ୭ଟି ସନ୍ତାନକୁ ତାଙ୍କର ଜୀବନକାଳ ମଧରେ ହରେଇ ସାରିଥିଲେ । କେବଳ ଅଛି ମୁଁ, ବର୍ତ୍ତମାନ ମା'ଙ୍କର ଏକମାତ୍ର ଅବଲମ୍ବନ । ମୁଁ ପୁଣି ରହିଲି ଦୂରରେ । ସେଥିରେ ପୁଣି ଅଳ୍ପ ବେତନ ଯୋଗୁଁ ମା'ଙ୍କୁ ଓ ସ୍ତ୍ରୀକୁ ଆଣି କେନ୍ଦ୍ରାପଡ଼ାରେ ରଖି ପାରୁନି । କାରଣ କଟକ ବସା କା' ଦିଗା ଛାଡ଼ି ଆସିବି ? ବହୁତ ଗୁରାଏ ଜିନିଷ । ସେ ଘରକୁ ସେ ଜିନିଷ କରା ହେଇଥିଲା । ବର୍ତ୍ତମାନ ସବୁ ଜିନିଷକୁ ଆଣି କେନ୍ଦ୍ରାପଡ଼ାରେ ଗୋଟାଏ ଘର ଭଡ଼ା ନେଇ ଚଳିବା ଅସମ୍ଭବ । କଟକର ସେ ଭଡ଼ା ଘର ବହୁକାଳର । ମୋର ଜନ୍ମ ସେଇ ଘରେ । ଆହୁରି ମଧ କେତେକ ଭାଇ, ଭଉଣୀ, ଭଣଜା, ଭାଣିଜୀଙ୍କର ଜନ୍ମ ସେଇ ଘରେ । ଭଡ଼ା ଘର ହେଲେ ବି ନିଜ ଘର ପରି ଲାଗେ । ସାହି, ପଡ଼ିଶା ସମସ୍ତେ ଯେମିତି ଆପଣାର । ସେ ଘର ଖଣ୍ଡକ ଛାଡ଼ି ହବନି କି, ରଖି ହବନି, ଏମିତି ଅବସ୍ଥା । ଯଦି ଏକାଠି ସମସ୍ତେ ନରହୁଛୁ ଚଳି ପାରୁନୁ । ଏଣେ ମୁଁ ଦୂରରେ ରହି କଟକ ଘରେ ଆଉ ସମସ୍ତେ ରହିଲେ ଟଙ୍କା ଅଣ୍ଟୁନି, କଣ କରିବି ?

ଦିନେ କେନ୍ଦ୍ରାପଡ଼ାରେ teachers' common room ରେ ବସିଛି ଘରବାଲାଠାରୁ ରେଜେଷ୍ଟ୍ରି ନୋଟିସ୍ ପାଇଲି ବାକି ଘର ଭଡ଼ା ଯା ଅଛି ତାକୁ ପରିଶୋଧ କର ଏବଂ ଘର ଛାଡ଼ । ମୋ ମୁଣ୍ଡରେ ବଜ୍ର ପଡ଼ିଲା ପରି ମନେ ହେଲା, କଣ କରିବି ? ଏମିତି ବାବାଙ୍କ ଅମଳର ଆହୁରି କେତେକ ଋଣଦାତାଙ୍କଠାରୁ ତାଗାଦା ଆସୁଥାଏ, ଋଣ ପରିଶୋଧ କର ନଚେତ୍ ତୁମ ନାଁରେ କୋର୍ଟରେ ନାଲିସ୍ କରି ଆଦାୟ କରାଯିବ । ମୁଁ ତ ଏ ସବୁ କିଛି ଜଞ୍ଜାଳ ଜାଣି ନଥିଲି କି କୋର୍ଟ, କଚେରୀ, ଓକିଲ ଦୁଆର ସେ ପର୍ଯ୍ୟନ୍ତ ମାଡ଼ି ନଥିଲି । ଏଇ ସବୁ ଜଞ୍ଜାଳ ଆଉ ତା ସାଥୀରେ ଘର ଦେଖିବା ପାଇଁ ମୋତେ ପ୍ରାୟ କଟକ ଦୌଡ଼ିବାକୁ ପଡ଼ିଲା । କଟକ ବାରବାର ଦୌଡ଼ିଲେ ଏଣେ ଘର ଖର୍ଚ୍ଚକୁ ଟଙ୍କା ଅଭାବ ପଡୁଛି । ଏଣୁ ବରାବର ମନ ଡାକିଲା ଅନ୍ୟ କୌଣସି ଚାକିରିରେ ନ ପଶିଲେ ଘର 'ଚଳେଇବା ଅସମ୍ଭବ ହେଇ ପଡ଼ିବ ।

ଯେତେବେଳେ କଟକ ଆସିଲି ଘରର ମାଲିକ ଯେ ମୋ ନାଁରେ ନାଲିସ କରିଛି, ବାକି ଭଡ଼ା ପରିଶୋଧ କରିବି ଏବଂ ଘର ଛାଡ଼ିବି, ସେକଥା ବୁଝିବାକୁ ହେଲା । ନୂଆ ଚାକିରି କଥା ବୁଝିଲି, କେଉଁଠି ବେଶି ଦରମାରେ

ଚାକିରି ଖାଲିଅଛି । ଘର କଥା ବୁଝିଲି, ମା, ସ୍ତ୍ରୀ କେମିତି ଚଳୁଛନ୍ତି ? ଶଚୀ କେମିତି ଚଳୁଛି ? ଇତ୍ୟାଦି ଇତ୍ୟାଦି । ବାବାଙ୍କ ମୃତ୍ୟୁ ପରେ ମା ଏବଂ ମୁଁ ଉଭୟେ ରୁଗ୍ଣ ହୋଇ ପଡ଼ିଲୁ । ମା ଭୀଷଣ କୁଣ୍ଡିଆ ରୋଗ ଭୋଗିଲେ । ମୁଁ କେନ୍ଦ୍ରାପଡ଼ାରେ ମାଲେରିଆ ଭୋଗି ଅତିଶୟ ଦୁର୍ବଳ ହୋଇ ପଡ଼ିଲି । ଏମିତିକି ଭୋକ ଆଦୌ ନାହିଁ, ପେଟରେ ପ୍ଲିହା, ଦେହରେ କୁଣ୍ଡିଆ, କୁଇନାଇନ୍ ବଟିକା, Edwards' tonic, Qnmip Haemogen ଇତ୍ୟାଦି ଖାଇ ଖାଇ ଦାନ୍ତଗୁଡ଼ା ମଧ୍ୟ ଖରାପ ହୋଇଗଲା, ରକ୍ତହୀନତା ମଧ୍ୟ ଭୋଗିଲି । ଏଣୁ ଥରେ ଭାବିଲି ମାସେ ଛୁଟି ନେଇ ଭୁବନେଶ୍ୱର କିମ୍ବା ଖୋର୍ଦ୍ଧାରେ କିଛିଦିନ ରହି ଆସିଲେ ଦେହର ପରିବର୍ତ୍ତନ ହେବ । ପୁଣି ଏଣେ medical leaveରେ ମାସେ ଗଲେ ଦରମା କମିଯିବ, ଚଳିବା କିମିତି ? କିନ୍ତୁ ଛୁଟି ନେଇ ନଗଲେ ତ ପ୍ରାଣ ଚାଲିଯିବ । ଏ ସବୁ କଥା ଭାବି ସ୍ଥିର କଲି ନିଶ୍ଚୟ ଛୁଟି ନେଇଯିବି, ଯା ହବାର ହଉ, ଯେମିତି ଭାବରେ ଚଳେ ।

କେନ୍ଦ୍ରାପଡ଼ାରେ ସେତେବେଳେ ଡାକ୍ତର ଗୋପାଳ ଚନ୍ଦ୍ର ପଟ୍ଟନାୟକ asst. surgeon post ରେ କେନ୍ଦ୍ରାପଡ଼ା hospital ରେ ଥାନ୍ତି । ମୁଁ medical school ରେ ପଢ଼ିବା ବେଳେ ସେ ମୋର football ଖେଳ ଏବଂ sports ସକାଶେ ମୋତେ ବିଶେଷ ଭଲ ପାଉଥିଲେ । ମୁଁ ତାଙ୍କ ପାଖରେ ଯାଇ ପହଁଚିଲି ମାସେ ଛୁଟି ଲାଗି ଖଣ୍ଡେ medical certificate ପାଇଁ । ସେ ସେତେବେଳେ ତାଙ୍କର କ୍ୱାର୍ଟର ବାରନ୍ଦାରେ ବସି ଜଣେ ସେଠା ଓକିଲଙ୍କ ସଙ୍ଗେ ଗପ କରୁଥିଲେ । ମୋତେ ଦେଖି ବିଶେଷ ଦୁଃଖ ପ୍ରକାଶ କରି ସେ ଓକିଲ ଭଦ୍ରଲୋକଙ୍କୁ କହିଲେ, ଏଇ ପିଲାକୁ ମୁଁ ଥରେ sports ରେ tug of war ରେ pillar କରି ଠିଆ କରିଥିଲି । ଆଜି ଏହାର ଅବସ୍ଥା କଣ ହେଲାଣି ଦେଖନ୍ତୁ ।

ମୋର ମଧ୍ୟ ମନେ ପଡ଼ିଲା, ଥରେ medical school sports ରେ ଆମ class ଓ ଅନ୍ୟ ଗୋଟାଏ class ସହିତରେ tug of war ରେ final କୁ ଉଠିଥିଲୁ । ଆମର ଦଳରୁ ସେ ମୋତେ pillar କରି ଠିଆ କରିଥିଲେ ।

ଡାକ୍ତର ଗୋପାଳ ଚନ୍ଦ୍ର ପଟ୍ଟନାୟକ ଓ ସେ ଓକିଲ ଭଦ୍ରଲୋକଙ୍କ ସହିତ କେନ୍ଦ୍ରାପଡ଼ାରୁ କେମିତି ମ୍ୟାଲେରିଆ ନିରାକରଣ ହେବ,ଏ ବିଷୟରେ ଅନେକ ଆଲୋଚନା ହେଲା ପରେ ଡା: ଗୋପାଳ ଚନ୍ଦ୍ର ପଟ୍ଟନାୟକ ମୋତେ ୨ ମାସ ଛୁଟି ପାଇଁ ଲେଖି ଖଣ୍ଡେ certificate ଦେଲେ । ମୁଁ କହିଲି ସାର୍ ମୁଁ ଭାବିଥିଲି ମାସେ ଛୁଟି ନେବି ବୋଲି ଆପଣ ୨ମାସ ଲେଖିଦେଲେ ? ଡା: ଗୋପାଳ ଚନ୍ଦ୍ର ପଟ୍ଟନାୟକ କହିଲେ ଯାଅ କିଛିଦିନ ବୁଲି ଆସ, ତୁମର ସ୍ୱାସ୍ଥ୍ୟ କ'ଣ ହେଲାଣି ? ଛୁଟି ହାତରେ ଥାଉ, ଯଦି ଶୀଘ୍ର ଭଲ ହୋଇଗଲେ ତେବେ ଚାଲି ଆସିବ । ମୁଁ ତାଙ୍କୁ ନମସ୍କାର ଜଣେଇ ସେଠୁ ବିଦାୟ ନେଇ ସେତେବେଳର କେନ୍ଦ୍ରାପଡ଼ାର S.D.O. ଓ କେନ୍ଦ୍ରାପଡ଼ା high schoolର secretary ମନି ଗୁହଙ୍କ ପାଖକୁ ଗଲି । ସେ ମୋତେ ଅନେକ ଦିନ ଯାଏ ଦେଖି ନଥିଲେ । ମୋତେ ଦେଖି ସେ ଦୁଃଖ ପ୍ରକାଶ କରି କହିଲେ ଆପଣ ଏମିତି ହୋଇ ଯାଇଛନ୍ତି ? ଆପଣ କଣ ପାଇଁ ଆସିଛନ୍ତି ? ମୁଁ କହିଲି ମାସେ ଛୁଟି ନେବି ବୋଲି ଦରଖାସ୍ତ ଏବଂ medical certificate ଆଣିଛି । ଆପଣ ଛୁଟି ଦେଲେ ମୁଁ କିଛିଦିନ ଏ ଜାଗା ଛାଡ଼ି କେତେଦିନ ଅନ୍ୟତ୍ର ରହି ଆସିଲେ ମୋର ଦେହ ଭଲ ହୋଇ ଯିବ ବୋଲି ଭାବୁଛି ।

ମନି ଗୁହ ମୋ କଥା ଶେଷ ନହେଉଣୁ ପୁଣି କହିଲେ ଆପଣଙ୍କର ଇମିତି ଅବସ୍ଥା ହେଲାଣି, ଆପଣ ମୋ ପାଖକୁ କଷ୍ଟ କରି ଆସିଲେ କାହିଁକି ? ଆପଣ ଛୁଟି ଦରଖାସ୍ତ ଦେଇ ଚାଲି ଯାଇଥାନ୍ତେ, ଆପଣ ଯାନ୍ତୁ ଛୁଟିରେ, ଆପଣଙ୍କର ଯେତେ ଦିନ ଛୁଟି ଦରକାର । ମୁଁ ସେଠୁ ବିଦାୟ ନେଇ ଆସି headmasterଙ୍କୁ ଛୁଟି ଦରଖାସ୍ତ ଦେଇ କଟକ ଚାଲି ଆସିଲି ।

କଟକ ଆସିଲି ସିନା କିନ୍ତୁ ଭୁବନେଶ୍ୱର କି ଖୋର୍ଦ୍ଧା ଯିବି କିମିତି ? ଭୁବନେଶ୍ୱର ଯେମିତି ସ୍ୱାସ୍ଥ୍ୟକର ଜାଗା, ଖୋର୍ଦ୍ଧା ମଧ୍ୟ ସେମିତି । ଖୋର୍ଦ୍ଧାରେ ଶଶୁର ଘର । ସେମାନେ ନ ଡାକିଲେ ମୋର ସେଠିକି ଯିବାକୁ ମନ ହଉ ନଥାଏ । ଶଶୁର ଘରେ ଜାଣନ୍ତି, ମୁଁ ଅସୁସ୍ଥ । ତଥାପି ସେମାନେ ନିରବ ଥାନ୍ତି । ଏଣୁ ମୁଁ ସେଠିକି ନଯାଇ

ଭୁବନେଶ୍ୱରରେ କେତେଦିନ ରହି ଆସିବାକୁ ମନ ହେଲା। କିନ୍ତୁ ସାଙ୍ଗରେ ଜଣେ ଲୋକ ଦରକାର ଯେ କି ମୁଠାଏ ରାନ୍ଧି ଦେବ ଏବଂ ଅନ୍ୟ ବିଷୟରେ ସାହାଯ୍ୟ କରିବ। ପୁଣି ଅର୍ଥ ମଧ ଦରକାର ଭୁବନେଶ୍ୱରରେ କିଛିଦିନ ରହିବା ପାଇଁ, କଣ କରିବି ?

ଏ ଅବସ୍ଥାରେ ମା' କହିଲେ ମୋର ପିଲାଦିନର ସାଙ୍ଗ ଲୋକନାଥ ରାଉତକୁ ସାଙ୍ଗରେ ନେଇ ଭୁବନେଶ୍ୱରରେ ରହିବା ପାଇଁ। ଏ ପ୍ରସ୍ତାବରେ ଲୋକନାଥକୁ ପଚାରିବାରୁ ସେ ମଧ ରାଜି ହେଲା। ଏଣୁ ଲୋକାକୁ ନେଇ ଭୁବନେଶ୍ୱର ବାହାରିଗଲି। ଯେତେବେଳେ ଭୁବନେଶ୍ୱର ଷ୍ଟେସନ୍‌ରେ ପହଁଚେ, ସେଠି ସେତେବେଳେ ଖଣ୍ଡେ ଶଗଡ଼ ଗାଡ଼ି ନଥାଏ। ସେତେବେଳେ ଭୁବନେଶ୍ୱରରେ ମଣିଷଟଣା ଶଗଡ଼ ଚାଲୁଥାଏ। Capital ର ନାଁ ଗନ୍ଧ ନାହିଁ, ରିକ୍ସା ମଧ ଚାଲୁ ନଥାଏ। ଗୋଟାଏ ଆଶ୍ଚର୍ଯ୍ୟ କଥା ଦେଖିଲି, ମୋତେ ଯେତେ ଦୁର୍ବଳ ଲାଗୁଥିଲା ମୁଁ ଭୁବନେଶ୍ୱର ଷ୍ଟେସନ୍‌ରେ ପହଁଚିବା ମାତ୍ରେ ମୋର ସେ ଦୁର୍ବଳତା କେତେକ କମିଗଲା। ମୁଁ ଲୋକାକୁ କହିଲି ଶଗଡ଼ ନଥାଉ, ଚାଲ୍, ଚାଲିଚାଲି ଯିବା। ଲୋକା ପଚାରିଲା ଚାଲି ପାରିବଟି ? ମୁଁ କହିଲି ଚାଲ୍ ଦେଖିବା, ଯେଉଁଠି ଥକା ଲାଗିବ ଟିକିଏ ବିଶ୍ରାମ ନବା।

ମୁଁ, ଲୋକା ଦିହେଁ ଚାଲି ଚାଲି ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିର ନିକଟସ୍ଥ ଗୋଟିଏ ଧରମଶାଳାରେ ରହିଲୁ। ମୁଁ ଯେ ଏତେବାଟ କିମିତି ଚାଲି ଆସି ପାରିଲି, ମୋତେ ଆଶ୍ଚର୍ଯ୍ୟ ଲାଗିଲା। ଧରମଶାଳାରେ ପାହଁଚିବା ମାତ୍ରେ ଅସମ୍ଭବ ଭୋକ ଜଣାଗଲା। ମୁଁ ଲୋକାକୁ ଗୋଟାଏ ଟଙ୍କା ଦେଇ କହିଲି, ତୁ ପୁରୀ, ତରକାରୀ କିମ୍ବା ଚୂଡ଼ା, ଚିନି ଯାହା ପାଇବୁ ଶୀଘ୍ର ନେଇଆ। ଲୋକା ବଜାରକୁ ଯାଇ ପୁରୀ, ତରକାରୀ ଆଣି ପହଁଚିଲା। ମୁଁ ଲୋକା ଦିହେଁ ପୁରୀ, ତରକାରୀ ଖାଇ ଜିନିଷପତ୍ର ଖୋଲାଖୋଲି କରି ସଜାଡ଼ି ରଖି ବଜାରକୁ ବାହାରିଲୁ। ବଜାରରେ ଗୋଟାଏ ବଡ଼ ମାଠିଆ କିଣି କେଦାରଗୌରୀ ଆଡ଼େ ଗଲୁ। ସେଠି କିଛି ସମୟ ବସିଲା ପରେ, କେଦାରଗୌରୀରୁ ମାଠିଆଏ ପାଣି ଧରି ଲୋକା ମୋ ସହିତରେ ଧରମଶାଳାକୁ ଫେରି ଆସି ପୁଣି ଦିହେଁ ବାହାରିଲୁ ରାତିରେ ରୋଷେଇ ପାଇଁ କାଠ, ଚାଉଳ, ଡାଲି ପରିବା ଇତ୍ୟାଦି କିଣିବା ପାଇଁ ବଜାରକୁ। ସବୁ କିଣାକିଣି କରି ସଞ୍ଜ ପରେ ଲୋକା ରୋଷେଇରେ ଲାଗିଲା। ମୁଁ ତା ପାଖରେ ବସିଲି। ଲୋକା ରୋଷେଇ କରୁ କରୁ ଓଡ଼ିଶୀ ଗୀତ ଗାଇଲା। ଲୋକାର କଣ୍ଠ ସ୍ୱର ଏବଂ ଗାଇବାର ଭଙ୍ଗୀ ଅତି ଚମତ୍କାର। ଲୋକା ଓଡ଼ିଶୀ ଗୀତ ଗାଇବା ଦ୍ୱାରା ଧରମଶାଳାରେ ଅନ୍ୟାନ୍ୟ ଯାତ୍ରୀମାନେ ମୁଗ୍ଧ ହେଇଗଲେ।

ଖାଇବାବେଳେ ଲୋକା ହାତ ତିଆରି ଡାଲମା, ଭାତ ଏବଂ ଆଳୁଭର୍ତ୍ତା ଅତି ଚମତ୍କାର ଲାଗିଲା। କିଛି ତ ଖାଇ ପାରୁ ନଥିଲି। ଭୋକ ଆଦୌ ନଥିଲା। କୁଆଡୁ ଏ ଭୋକ ଆସିଲା ? ଅରୁଚି ଛାଡ଼ିଗଲା, ସେଦିନ ଆକଣ୍ଠ ଖାଇଲି। ଏମିତି ଚାରିଦିନ ଭୁବନେଶ୍ୱର ଧରମଶାଳାରେ ରହିବା ପରେ ଦେହର ରକ୍ତହୀନତା କମିଯାଇ ଦେହର ବର୍ଣ୍ଣ ଲାଲ୍ ହେଇଗଲା। ମୁଁ ଆଶ୍ଚର୍ଯ୍ୟ ହେଇଗଲି। ଭୁବନେଶ୍ୱରର ଜଳବାୟୁର କି ଅଦ୍ଭୁତ ପ୍ରଭାବ। ଲୋକା ଜିଦ୍ ଧରି ବସିଲା, କଟକ ଆସିବ ତାର କ'ଣ କାମ ଥାଏ। ଏଣୁ ମୁଁ ଆଉ ଏକା ରହିବି କେମିତି ? ଅନନ୍ୟୋପାୟ ହେଇ ଉଭୟେ କଟକ ଚାଲି ଆସିଲୁ। କଟକରେ ଆସି ମା'ଙ୍କ ପାଖରୁ ଶୁଣିଲି ଯେ ଶଶୁର ଘରୁ ଚିଠି ଆସିଛି ଖୋର୍ଦ୍ଧା ଯିବା ପାଇଁ। ମୁଁ କଟକରେ ଦିନେ ଦି'ଦିନ ରହିବା ପରେ ପୁଣି ଖୋର୍ଦ୍ଧା ଗଲି। ଲୋକା କଟକରେ ରହିଲା। ଭୁବନେଶ୍ୱରରେ ଚାରିଦିନ ରହଣି ମଧରେ ଦେହରେ ଯାହା ପରିବର୍ତ୍ତନ ଘଟିଲା, ମାସେ ରହିଥିଲେ ଆଉ ଖୋର୍ଦ୍ଧା ଯିବା ଦରକାର ପଡ଼ି ନଥାନ୍ତା। ଖୋର୍ଦ୍ଧାର ମଧ ଜଳବାୟୁ ଭଲ। ଏହା ଅନେକ ଆଗରୁ ପରୀକ୍ଷା କରି ଦେଖା ଯାଇଥିଲା। ଖୋର୍ଦ୍ଧା ସାନ୍ତରାପୁରରେ ମୋର ବଡ଼ମାମୁଁଙ୍କର ଖଣ୍ଡେ ଘର ଥିଲା। ଘରେ ଆମେ ସମସ୍ତେ ମେଲେରିଆରେ ଆକ୍ରାନ୍ତ ହେଇ ରୁଗ୍ଣ ହେଇ ପଡ଼ିଥିବା ଅବସ୍ଥାରେ ବାବା ଆମକୁ ସେଠାକୁ ନେଇ ମାସେ ରହିବା ପରେ ସମସ୍ତେ ରୋଗମୁକ୍ତ ହେଇଥିଲୁ।

ଖୋର୍ଦ୍ଧାରେ ଶଶୁର ଘରେ ଅଳ୍ପ କେତେଦିନ ରହିବା ପରେ ମୁଁ ସମ୍ପୂର୍ଣ୍ଣ ଭଲ ହେଇଗଲି। ତା'ପରେ କଟକ ଫେରି ଆସି ଦିନେ ଦୁଇ ଦିନ ରହି କେନ୍ଦ୍ରାପଡ଼ାରେ ଯାଇ କାର୍ଯ୍ୟରେ ଯୋଗ ଦେଲି। କାରଣ ଆଉ ବେଶିଦିନ ଛୁଟି ଉପଭୋଗ କଲେ ଏଣେ ଦରମା କଟିଯାଇ ଘର ଅଚଳ। ବାବାଙ୍କର ମୃତ୍ୟୁ ପରେ ଆଉ କେନ୍ଦ୍ରାପଡ଼ାରେ ରହି ଚାକିରି କରିବା ଭଲ ଲାଗିଲା ନାହିଁ। ସବୁବେଳେ ମନ ହେଲା କଟକରେ ରହିବି କାରଣ ମା ଆଉ ସ୍ତ୍ରୀ କଟକରେ ଅସହାୟ ଅବସ୍ଥାରେ ଥାନ୍ତି। ଏଣୁ ମଝିରେ ଛୁଟି ନେଇ କଟକ ପଳେଇ ଆସି ଚାକିରିର ଅନୁସନ୍ଧାନ କଲି। କିନ୍ତୁ କଟକରେ ରହି ଚାକିରି କରିବା ଭଳି କିଛି ସୁବିଧା କରି ପାରୁ ନଥାଏ। ସେତେବେଳେ କିନ୍ତୁ ଡାକ୍ତରଙ୍କୁ ଚାକିରି ଦବା ପାଇଁ ସରକାର ତରଫରୁ ଖୋଜା ପଡ଼ିଥାଏ। ସେ ଚାକିରିରେ ଯୋଗ ଦେଲେ କିନ୍ତୁ କଟକରେ ରହି ହବନି। ଓଡ଼ିଶାର ଯେ କୌଣସି ଜାଗାରେ ଚାକିରି କରିବାକୁ ହେବ। ଏ ତ ମୋ ପକ୍ଷରେ ସମ୍ଭବ ନୁହେଁ। କାରଣ ମା'ଙ୍କର ଇଚ୍ଛା କଟକରେ ରହିବେ। ମା'ଙ୍କର ଏମିତି ଇଚ୍ଛା ହବା ସ୍ୱାଭାବିକ୍। କାରଣ ସେ ବଧୂ ଅବସ୍ଥାରେ ବାବାଙ୍କ ସାଥିରେ କଟକ ଆସିଥିଲେ। ଆମେ ଥୋରିଆସାହିରେ ଯେଉଁ ଘରେ ଭଡ଼ାରେ ଥିଲୁ, ସେଇ ଘରେହିଁ ବଧୂ ଅବସ୍ଥା ଅତିକ୍ରମ କରି ବୃଦ୍ଧା ଅବସ୍ଥାରେ ବୈଧବ୍ୟ ଅବସ୍ଥା ଭୋଗିଲେ। ଥୋରିଆସାହିର ସେ ଘର ଭଡ଼ାଘର ହେଲେ ମଧ୍ୟ ଭଡ଼ାଘର ବୋଲି ଜଣା ଯାଏ ନାହିଁ। ଥୋରିଆସାହି ମଧ୍ୟ ବେଶ୍ ଆରେଇ ଯାଇଥାଏ। ସାହି ପଡ଼ିଶା ଯେମିତି ସମସ୍ତେ ଆପଣାର ଲୋକ। ପଡ଼ିଶା ଲୋକେ ମଧ୍ୟ ବାବା, ମା'ଙ୍କୁ ମାନୁଥିଲେ, ସମ୍ମାନ ଦଉଥିଲେ। ସେତେବେଳେ ଲୋକେ ଏତେ ଉଦ୍ଧତ ନଥିଲେ। ତାଙ୍କର ଏତେ ବେଖାତିର ଭାବ ନଥିଲା। ଥୋରିଆସାହିରେ ଆମ ଘରକୁ ଲୋକେ "ବାବୁଘର" ବୋଲି କହୁଥିଲେ। ବାବା, ମା ମଧ୍ୟ ପଡ଼ିଶା ଲୋକଙ୍କର ବିପଦଆପଦ ଦୁଃଖଦୁର୍ଦ୍ଦଶାରେ ତାଙ୍କ ଘରକୁ ଯାଇ ବୁଝୁଥିଲେ, କା'ର କ'ଣ ଦରକାର? ମୃତ୍ୟୁ ଶଯ୍ୟାରେ କିଏ କଣ ଖାଇବାକୁ ଖୋଜୁଛି? କା'ର କ'ଣ ଔଷଧ ଦରକାର? କା'ର ଟଙ୍କା ଅଭାବରୁ ଶବ ଉଠି ପାରୁନି ତାକୁ ଅର୍ଥ ସାହାଯ୍ୟ କରିବା। ପଡ଼ିଶା ଲୋକଙ୍କ ମଧ୍ୟରୁ କା'ର ଝିଅ ଶାଶୁଘରକୁ ଯିବ ତାକୁ ଗୋଟାଏ କିଛି ଅଳଙ୍କାର ଦବାକୁ ହବ। ସେ ଅନୁରୋଧ କଲାରୁ ତାକୁ ଖଣ୍ଡେ ଅଳଙ୍କାର ଦବା। ଆମ ଘରେ କିଛି ବିଭା, ନିମୁତା, ଅନ୍ନପ୍ରାସନ ଇତ୍ୟାଦିରେ ପଡ଼ିଶାଙ୍କୁ ଡାକି ଖୋଇବା। ଭଲ ଜିନିଷ କିଛି ହେଲେ ଘରେ ଘରେ ଦେଇ ଆସିବା ଇତ୍ୟାଦି ଦ୍ୱାରା ପଡ଼ିଶା ଲୋକେ ମଧ୍ୟ ଆମ ଘରକୁ ଆସି ଆମର କାମ କାର୍ଯ୍ୟରେ ପାଞ୍ଚକାମ ଆଗ୍ରହରେ କରି ଦେଇ ଯିବାକୁ ଭଲ ପାଉଥିଲେ। ଏଣୁ ମା'ଙ୍କର ସେ ଘରର ମାୟା, ସାହିପଡ଼ିଶାର ମାୟାରେ ପଡ଼ି ସେ ଘର, ସେ ସାହି ପଡ଼ିଶା ଛାଡ଼ି ଅନ୍ୟତ୍ର ଯିବାକୁ ନାରାଜ।

ଜିନିଷପତ୍ର ମଧ୍ୟ ଗୁରାଏ। ଯଦି ମା ମୋ ସହିତରେ ଅନ୍ୟତ୍ର ମୋ ଚାକିରି ଜାଗାକୁ ଯାଇ ମୋ ପାଖରେ ରହିବେ, ଏ ଜିନିଷ, ଆସବାବପତ୍ର ଇତ୍ୟାଦି କାହା ଜିମା ଛାଡ଼ି ଯିବେ? ଜିନିଷପତ୍ରର ମଧ୍ୟ ମାୟା କମ୍ ନୁହେଁ। ଗୋଟାଏ ଖାନଦାନୀ ଘରେ ଯେମିତି ଜିନିଷପତ୍ର ଥିବାର କଥା, ସେମିତି ଜିନିଷପତ୍ର। ଏଣୁ କଟକର ଥୋରିଆସାହିର ସେ ଘର ଖଣ୍ଡକ ଗୋଟାଏ ସମସ୍ୟା ସୃଷ୍ଟି କଲା, ଛାଡ଼ି ହଉନି କି ରହି ହଉନି। ଛାଡ଼ିଲେ ଏ ଜିନିଷ ପତ୍ର ନେଇ କେଉଁଠି ରଖିବି? ଏଡ଼େ ବଡ଼ ଘର କେଉଁଠି ମିଳିବ? ଯଦିବା ମିଳିଲା ତାର ଭଡ଼ା ମଧ୍ୟ ସେମିତି ବେଶି ହବ। ଥୋରିଆସାହିର ଏ ଘରର ଭଡ଼ା ମାସିକ ମାତ୍ର ୬ଟଙ୍କା ଥିଲା। ଏ ୬ଟଙ୍କା ଭଡ଼ାରେ ବାବାଙ୍କ ଅମଳ କଟିଗଲା। ମୋ ବେଳକୁ କେତେ ମାସ ୬ଟଙ୍କା ହେଲା ପରେ ମାସିକ ୮ଟଙ୍କା ହେଲା। ତାର ବର୍ଷେ, ଦୁଇ ବର୍ଷ ପରେ ମାସିକ ୧୪ଟଙ୍କା ଭଡ଼ା ହେଇଥିଲା।

ସେ ଯାହା ହେଉ ସେ କଥା ପରେ ପୁଣି ଥରେ ଆଲୋଚନା କରିବା। ବର୍ତ୍ତମାନ ପରିସ୍ଥିତିରେ ଥରେ ମୁଁ କେନ୍ଦ୍ରାପଡ଼ାରୁ ଛୁଟି ନେଇ ଆସି କଟକରେ ଶୁଣିଲି ଯେ କଟକ ନିକଟସ୍ଥ ଚାରବାଟିଆ aerodromeରେ ଜଣେ ଡାକ୍ତର ଦରକାର। ସେ A.R.P. ଡାକ୍ତର ଭାବରେ ଚାକିରି କରିବ। A.R.P. ଡାକ୍ତରର କାର୍ଯ୍ୟ ହଉଛି ଯେତେବେଳେ air raid ହବ ସେତେବେଳେ ଡ଼ାକ୍ତର

ଆହତ ବ୍ୟକ୍ତିଙ୍କୁ ସେଠି ଚିକିତ୍ସା କରିବ ! ଏ ତ ବଡ଼ ଭୟଙ୍କର ଚାକିରି । Aerodrome ଉପରେ bombing ହେଲାବେଳେ ସେଠି ରହି ଡାକ୍ତର ଆହତ ବ୍ୟକ୍ତିଙ୍କୁ ଚିକିତ୍ସା କରିବ । ଡାକ୍ତର ତ ନିଜେ ମରି ଯାଇପାରେ । ଏଇ ସବୁ କଥା ଭାବି ମନ ବିଚଳିତ ହେଲା । ନଚେତ୍ ଚାରବାଟିଆ କଟକକୁ ଅତି ନିକଟ । ଦୈନିକ ସେଠି ଚାକିରି କରି କଟକକୁ ଆସି ହବ । ଏଣୁ ଘର ଦେଖିବା ଏବଂ ଚାକିରି କରିବା ଉଭୟ କାମ କରି ହବ । କିନ୍ତୁ ଗୋଟାଏ ଭୟ ଯେ କୌଣସି ସମୟରେ ମୃତ୍ୟୁ ଘଟି ପାରେ । କାରଣ ସେତେବେଳେ ପୁଣି କଲିକତାସ୍ଥ ବିମାନ ଘାଟିରେ bombing ହେଉଥାଏ । ବିମାନ ଘାଟିରେ bombing ହବା ସେତେବେଳେ ବେଶି ସମ୍ଭବ ହେଉଥାଏ । କଣ କରିବି ? ପୁଣି ଭାବିଲି ମୋର ତ ଖାଣ୍ଟି military ଚାକିରି କରିବା ଇଚ୍ଛା ଥିଲା । ସେ ତ ହେଇ ପାରିଲା ନାହିଁ । ମୁଁ medical schoolରୁ ପାସ୍ କରିବା ପୂର୍ବରୁ ଭାବୁଥିଲି ମୁଁ ଡାକ୍ତରୀ ପାସ୍ କଲା ବେଳକୁ ଯୁଦ୍ଧ ଲାଗିଥିବ କି ? ମୁଁ ଯୁଦ୍ଧ ଚାକିରିରେ ଡାକ୍ତର ଭେଇ ଯୋଗ ଦେବି । ମୁଁ ବ୍ୟାୟାମ ଇତ୍ୟାଦି କରି ମୋର ସ୍ୱାସ୍ଥ୍ୟ ମଧ୍ୟ ଯୁଦ୍ଧ ବିଭାଗରେ ଚାକିରି କରିବା ପାଇଁ ଅନୁକୂଳ ହେଉଥାଏ । ମୋର ଜୀବନ ପ୍ରତି ମାୟା ମଧ୍ୟ କମ୍ । ଯେ କୌଣସି ସମୟରେ, ଯେକୌଣସି ଘଟଣାରେ ମରିବା ପାଇଁ ମୁଁ ପ୍ରସ୍ତୁତ । ମନୋବଳ, ସାହସ ମଧ୍ୟ ବେଶ୍ ଥାଏ । ମୋର ଭାବନା ଅନୁଯାୟୀ ମୁଁ ପାସ୍ କଲା ବେଳକୁ ଯୁଦ୍ଧ ଲାଗି ଗଲାଣି । ୧୯୩୯ ମସିହାରେ ଜର୍ମାନ Poland ଆକ୍ରମଣ କଲା । ମୁଁ ୧୯୩୯ ମସିହାରେ medical schoolରୁ ପାସ୍ କଲି କିନ୍ତୁ ସେତେବେଳେ ଯୁଦ୍ଧ ବିଭାଗରେ ଚାକିରି ପାଇଁ ଡାକ୍ତର ଦରକାର ପଡ଼ି ନଥାଏ । ସେତେବେଳେ ଓଡ଼ିଶାରେ କେତେକ ଡାକ୍ତର ଡାକ୍ତରୀ ପାସ୍ କରି ବେକାର ହୋଇ ବସିଥାନ୍ତି । କଟକରେ ସେତେବେଳେ ବେକାର ଡାକ୍ତରମାନେ ଗୋଟିଏ-ଗୋଟିଏ tuition ଧରି ବସିଥାନ୍ତି ।

ଏଇ ସମୟରେ ଗୋଟାଏ ହାବୁକାଁ ଆସିଲା କେତେକ ବେକାର ଡାକ୍ତର ଚାକିରି ପାଇ ଗଲେ । ଏ କିନ୍ତୁ military ଚାକିରି ନୁହେଁ civil ଚାକିରି । ମୁଁ କିନ୍ତୁ ୯ ଚାକିରିରେ ପଶି ପାରିଲି ନାହିଁ । କାରଣ ବାବାଙ୍କର ଏକା ଜିଦ୍ ମୁଁ ସରକାରୀ ଚାକିରି କରିବି ନାହିଁ । ବାବା ତାଙ୍କର ଚାକିରି ଅମଳରେ ସରକାରୀ ଚାକିରି ପ୍ରତି ବିରକ୍ତ ହେଇଥିଲେ । ତାଙ୍କର ଇଚ୍ଛା ମୁଁ ଦୋକାନ କରି ବସେ କିମ୍ବା ବେସରକାରୀ ଡାକ୍ତର ଭାବରେ କେଉଁଠାରେ ଚାକିରି କରେ । କିନ୍ତୁ ଦୋକାନ କରି ବସିବା ପାଇଁ ତ ଅର୍ଥ ଦରକାର, ଅର୍ଥ କାହିଁ ? ମୁଁ ଡାକ୍ତରୀ ପାସ୍ କରି ବାହାରିବା ବେଳକୁ ଘରେ କିଛି ନାହିଁ । କେବଳ ଅତି ଦୈନ୍ୟ ଭାବରେ ଖାଇବା ପିଇବା ଚାଲିଥାଏ । ଋଣ କରିବାର ମଧ୍ୟ ଉପାୟ ନାହିଁ । କାରଣ ସେ ଋଣ ଭାରରେ ବୁଡ଼ିବା ଅବସ୍ଥାରେ ଥାନ୍ତି । ଏଣୁ ଅନନ୍ୟୋପାୟ ହେଇ ବାବାଙ୍କର ଜୀବନକାଳ ମଧ୍ୟରେ କେନ୍ଦ୍ରାପଡ଼ା ହାଇସ୍କୁଲରେ doctor teacher post ମିଳିଯିବାରୁ ସେଇଠି ରହିଗଲି । ମୁଁ ଯେତେବେଳେ doctor teacher postରେ ଥାଇ ମାସିକ ୬୦ଟଙ୍କା ପାଉଥାଏ, ସେଇ ସମୟରେ ବାବାଙ୍କର ପରଲୋକ ପ୍ରାପ୍ତି ହୁଏ । ଏଣୁ ଘର ଚଳେଇବା ପାଇଁ ମୋର ୬୦ଟଙ୍କା ମାତ୍ର ସମ୍ବଳ ।

ଏଣେ ବାବାଙ୍କ ଅମଳର ଋଣ ପରିଶୋଧ କରିବାକୁ ମଧ୍ୟ ଥାଏ । ଏଣୁ ଅନ୍ୟ ଚାକିରିରେ ପଶିବା ନିତାନ୍ତ ଦରକାର । ଯେଉଁଥିରେ କି ଅଧିକ ବେତନ ମିଳିବ, ଏଣେ କଟକ କିମ୍ବା କଟକ ନିକଟରେ ରହି ଘର ଦେଖିବାକୁ ହେବ ।

ଏଣୁ ମନେ ମନେ ସ୍ଥିର କଲି ଚାରବାଟିଆରେ ଚାକିରି ମିଳିଲେ ସେଇଠି ନିଶ୍ଚିତ ଯୋଗ ଦେବି । ଏଣୁ କଟକରେ ରହି ସେଠା ଉପରିସ୍ଥ କର୍ମଚାରୀଙ୍କୁ ଦେଖା କରି ଚାକିରି ଯୋଗାଡ଼ରେ ବାରବାର ଦୌଡ଼ିଲି । ଶେଷରେ ଚାରବାଟିଆରେ ଚାକିରି ମିଳିଗଲା । ମା'ଙ୍କୁ ଆସି ଘରେ ଏ ଖବର ଦେଲାରୁ ମା ବିମର୍ଷ ହେଲେ । କାରଣ ବର୍ତ୍ତମାନ ମୁଁ ତାଙ୍କର ଏକମାତ୍ର ଅବଲମ୍ବନ । ମୁଁ ଯେଉଁଠି ବୋମା ପଡ଼ିବାର ନିହାତି ସମ୍ଭବ ସେଠିକି ଯଦି ଯାଏ, ତା ଅର୍ଥ ମୃତ୍ୟୁ ମୁଖକୁ ଯିବା କଥା । ମା ଶେଷକୁ କାନ୍ଦିଲେ । କଣ ତାଙ୍କୁ ବା ମୁଁ ବୁଝେଇବି ? କେନ୍ଦ୍ରାପଡ଼ାରେ ରହିଲେ ଟଙ୍କା ଅଣ୍ଟୁ ନାହିଁକି ଘର ଦେଖି ହଉନି, ଚାରବାଟିଆରେ

ରହିଲେ ଟଙ୍କା ଅଣ୍ଟିବ, ଘର ଦେଖି ହବ କିନ୍ତୁ ବେଳକେ ମରିବାକୁ ହବ। ମୁଁ ସ୍ଥିର କରିଥାଏ ଯଦି ବଞ୍ଚି ଫେରିଲି ତ ଋଣ ଶୋଧ କରିଥିବି। ଆର୍ଥିକ ଦୁର୍ଗତିରୁ କେତେକ ପରିମାଣରେ ଉନ୍ନତି ଘଟିଥିବ। ଯଦି ମଲି ତ ଭଲ ଏ ଜଞ୍ଜାଳରୁ ମୁକ୍ତି ପାଇବି।

ମୁଁ ଚାରବାଟିଆର ଚାକିରିର ନିଯୁକ୍ତି ପତ୍ର ପାଇଥିଲେ ମଧ୍ୟ ଚାକିରିରେ ଯୋଗ ଦବା କିଛି ଦିନ ଥାଏ। ମା ସବୁ କାମ କରୁଥାନ୍ତି। କିନ୍ତୁ କାନ୍ଦକାନ୍ଦ ହଉଥାନ୍ତି। ମୁଁ ଯେତେ ପ୍ରକାର ଯାହା ବୁଝେଇଲେ ମଧ୍ୟ ବୁଝୁ ନଥାନ୍ତି। ଏଇ ସମୟରେ ଦିନେ ମୋର ଜଣେ ସାଙ୍ଗ ଅନନ୍ତ ସାହୁ ମୋ ସହିତରେ ଦେଖା କରିବାକୁ ଆସିଲା। ତାର ଭିଣେଇ ଘର ଆମ ଥୋରିଆସାହିରେ। ସେ ଭିଣେଇ ଘରକୁ ଆସି ମୋ ସହିତରେ ଦେଖା କରିବାକୁ ଆସିଲା। ଅନନ୍ତ ସାହୁ ମୋ ସହିତରେ ପି.ଏମ୍.ଏକାଡ଼େମୀରେ ୯ମ ଶ୍ରେଣୀ ଯାଏ ପଢ଼ିଥିଲା। ସେଇଠୁଁ ପାଠ ଛାଡ଼ି ନାନା ରକମ ବ୍ୟବସାୟ କରୁ କରୁ ଶେଷରେ କଣ୍ଟ୍ରାକ୍ଟରୀ କରି ବର୍ତ୍ତମାନ A class contractor, ଚାରବାଟିଆରେ ବଡ଼ contractor ଏବଂ ବ୍ୟବସାୟୀ ମଧ୍ୟ। ସେ ମୋର ଖୁବ୍ ଭଲ ସାଙ୍ଗ ଥିଲା। ଏମିତିକି ସେ ୯ମ ଶ୍ରେଣୀରେ ପଢ଼ିବାବେଳେ ମୁଁ ମାଛୁଆବଜାରରେ ତାଙ୍କ ଘରେ ଯାଇ ହରିମାଷ୍ଟ୍ରଙ୍କ ପାଖରେ ପଢ଼ି ଆସୁଥିଲି। ପ୍ରତ୍ୟେକ ଦିନ ସନ୍ଧ୍ୟା ପରେ ପଢ଼ିବାକୁ ଯାଇ ରାତି ୯ଟାରେ ଫେରୁଥିଲି। ୯ମ ଶ୍ରେଣୀରେ ମୁଁ ୧୦ମକୁ ପ୍ରମୋସନ୍ ପାଇଲି। ଅନନ୍ତ ୯ମ ଶ୍ରେଣୀରେ ପ୍ରମୋସନ୍ ନପାଇ ପାଠ ଛାଡ଼ି ବ୍ୟବସାୟରେ ପଶିଲା। ତାର ଅନ୍ୟାନ୍ୟ ସାନଭାଇମାନେ ମଧ୍ୟ କେହି ପାଠ ପଢ଼ିଲେ ନାହିଁ ସବୁ ବ୍ୟବସାୟରେ ମାତିଲେ। ଅନନ୍ତର ଗୋଟିଏ ସାନଭାଇ ଶତ୍ରୁଘ୍ନ ସାହୁ ଚାରବାଟିଆରେ ବଡ଼ କଣ୍ଟ୍ରାକ୍ଟର ହେଇଥାଏ। ଚୌଦ୍ୱାର, ଚାରବାଟିଆ ଅଞ୍ଚଳରେ ତାକୁ ସମସ୍ତେ ଜାଣନ୍ତି। ଅନନ୍ତ ସାହୁ ଅପେକ୍ଷା ଶତ୍ରୁଘ୍ନ ସାହୁର ସେ ଅଞ୍ଚଳରେ ବେଶି ଖ୍ୟାତି।

ଅନନ୍ତ ମା'ଙ୍କୁ ବୁଝେଇଲା, ଯଦି ବୋମା ପଡ଼େ, ସେମିତି କିଛି ବିପଦର ସୂଚନା ମିଳେ ତା'ହେଲେ ସେ ତା' କାର୍‌ରେ ମୋତେ କଟକ ନେଇ ପଳେଇ ଆସିବ। ସେ ଯେତେବେଳେ ଚାରବାଟିଆରେ ଅଛି ମୋର କିଛି ଭୟ ନାହିଁ। ପୁଣି କହିଲା ବର୍ତ୍ତମାନ ତ କେନ୍ଦ୍ରାପଡ଼ା ଚାକିରି ହାତରେ ଅଛି। ଚାରବାଟିଆ ଚାକିରିରେ ଯୋଗ ଦବା ଆଗରୁ ଥରେ ଯାଇ ଚାରବାଟିଆ ବୁଲି ଦେଖି ଆସୁ। ଯଦି ତାକୁ ଭଲ ନଲାଗିବ ତେବେ ସେ ସେଠି ଯୋଗ ନଦେଇ କେନ୍ଦ୍ରାପଡ଼ା ଚାଲିଯିବ।

ଅନନ୍ତର ଏ ଧରଣର କଥା ଶୁଣି ମା'ଙ୍କର ମନ ଟିକିଏ ବଦଳିଲା। ବିମର୍ଷ ଭାବ କେତେକ ପରିମାଣରେ କମିଗଲା। ଅନନ୍ତ ମୋତେ କହିଲା, ଦିନେ ଚାଲ୍ ଚାରବାଟିଆ ବୁଲି ଦେଖି ଆସିବୁ, ମୁଁ ତ ସେଠି ଥିବି ମୋ ସହିତରେ ଦେଖା କରିବୁ। ସବୁ ବୁଲି ଦେଖିବୁ ଯଦି ଭଲ ନଲାଗିବ ଫେରି ଆସି କେନ୍ଦ୍ରାପଡ଼ା ଚାଲିଯିବୁ। ଅନନ୍ତ ଥାଇ ମା'ଙ୍କ ଉପସ୍ଥିତିରେ ଗୋଟାଏ ଦିନ ସ୍ଥିର ହେଲା ମୁଁ ଚାରବାଟିଆ ଯିବି। ଅନନ୍ତ ସେଦିନ ସେଠି ମୋତେ ଅପେକ୍ଷା କରିଥିବ। ମୁଁ ଚାରବାଟିଆ ବୁଲି ସନ୍ଧ୍ୟାବେଳକୁ ପୁଣି କଟକ ଫେରି ଆସିବି। ମା ରାଜି ହେଲେ। ଅନନ୍ତ ଆମ ଘରୁ ବିଦାୟ ନେଇଗଲା।

ଚାରବାଟିଆକୁ ଟ୍ରେନ୍‌ରେ ଯିବାକୁ ହେଲେ କଟକ ଷ୍ଟେସନ୍‌ରୁ ସକାଳେ ତାଳଚେର ଟ୍ରେନ୍‌ରେ ଯାଇ ଚାରବାଟିଆ ଷ୍ଟେସନ୍‌ରେ ପହଁଚିବାକୁ ହେବ। ଟ୍ରେନ୍ ଭଡ଼ା ମାତ୍ର ସେତେବେଳେ ଚାରିଅଣା। ଯେଉଁଦିନ ସ୍ଥିର ହେଇଥିଲା ଚାରବାଟିଆ ଯିବାକୁ ସେଇଦିନ ସକାଳୁ ଉଠି ନିତ୍ୟକର୍ମ ସାରି କିଛି ଜଳଖିଆ ଖାଇ ତାଳଚେର ଟ୍ରେନ୍ ଧରି ଚାରବାଟିଆ ବାହାରିଲି। ତାଳଚେର ଟ୍ରେନ୍‌ରେ ମ୍ୟାଟ୍ରିକ୍ ପଢ଼ିବା ବେଳେ କେବଳ ଥରେ ମାତ୍ର ତାଳଚେର ଯାଇଥିଲି ଖେଳିବାକୁ. ତା'ପରେ ଆଉ ଯାଇ ନଥିଲି। ଏତେଦିନ ପରେ ପୁଣି ତାଳଚେର ଟ୍ରେନ୍‌ରେ ବସିଲି। ଅଳ୍ପ ସମୟ ପରେ ଟ୍ରେନ୍ ଚାରବାଟିଆ ଷ୍ଟେସନ୍‌ରେ ପହଁଚିଲା। ଓଲେହି ଦେଖେ ଗୋଟାଏ military van ଥୁଆ ହେଇଛି। ସେଥିରେ ଚାରବାଟିଆର ଅଫିସର ଶ୍ରେଣୀ ଲୋକଙ୍କଠୁ ଆରମ୍ଭ କରି ପିଅନ ପର୍ଯ୍ୟନ୍ତ ଯେ ପାରିଲା ସମସ୍ତେ ଚାଲିଯାନ୍ତି। କାରଣ ଚାରବାଟିଆ ଷ୍ଟେସନ୍‌ଠାରୁ C.P.W.D. office ପ୍ରାୟ ଦେଢ଼ ମାଇଲ ବାଟ ହବ।

ସେଇ office ହେଲା ମୋର head office। ସେଇ ଅଫିସ୍‌ର ତତ୍ତ୍ୱାବଧାନରେ ମୋତେ ଚାକିରି କରିବାକୁ ହେବ।

ମୁଁ ତ ଆଗରୁ କେଭେ aerodrome ବା ବିମାନଘାଟି ଦେଖି ନଥିଲି। ଆଜି ଏଇ ପ୍ରଥମ। ମୁଁ ଯେତେବେଳେ ଚାରବାଟିଆ ଷ୍ଟେସନ୍‌ରୁ ସେ military vanରେ ଯାଏ, ଯାହା ରାସ୍ତାର ଦୁଇ ପାଖରେ ଏବଂ ଯେତେ ଦୂରରେ ଦେଖାଗଲା ମୋର ମନେ ହେଲା ପ୍ରକୃତ ରଣଭୂଇଁର ଦୃଶ୍ୟ। ଘର ସବୁ ଯେମିତି ସେଥିରେ ରଙ୍ଗ ବୋଳା ହେଉଛି ସେମିତି ଜାଗା ଜାଗା ପ୍ରତିରକ୍ଷା ପାଇଁ ସାମରିକ ସରଞ୍ଜାମ ଖଞ୍ଜା ଯାଇଛି। ରାସ୍ତା ସେମିତି। ଆମର ଭାରତୀୟ ଲୋକ ଛଡ଼ା ଆମେରିକାନ୍ ଏବଂ ବ୍ରିଟିଶ ଲୋକମାନଙ୍କର ଚଳାଚଳ। ମୁଁ ତ କେନ୍ଦ୍ରାପଡ଼ା ହାଇସ୍କୁଲରେ doctor teacher ଚାକିରି କରୁଥିଲି। କହିବାକୁ ଗଲେ ଜଣେ village schoolmaster। ମୁଁ ଦେଖୁଥିଲି ଶସ୍ୟଶ୍ୟାମଳା ପଲ୍ଲୀର ଦୃଶ୍ୟ, ନଡ଼ିଆ ଗଛ, ବାଉଁଶବୁଦା, ନଈ, ତୋଟା, ଧାନ କ୍ଷେତ, ସବୁଜ ପ୍ରାନ୍ତର। ଏଠିତ ମାଟିରୁ ଯେମିତି ଯୁଦ୍ଧର ଗନ୍ଧ ବାହାରୁଛି। ଏ ତ ସହର ନୁହେଁ କି ପଲ୍ଲୀ ନୁହେଁ। ଏ ପ୍ରକୃତ ରଣଭୂମି। ଏଠି ସବୁ ଅଛି କିନ୍ତୁ କିଛି ନାହିଁ ପରି ମନେ ହଉଛି।

C.P.W.D. office ନିକଟରେ military van ଅଟକିବା ମାତ୍ରେ ଅନନ୍ତ ସହିତରେ ମୋର ଭେଟ ହେଲା। ସେ ମୋତେ ଅପେକ୍ଷା କରିଥିଲା। ଅନନ୍ତ ମୋତେ ତାର ବସା ଘରକୁ ଡାକି ନେଇଗଲା। ଅନନ୍ତର ବସାଘର ଅର୍ଥ ଗୋଟାଏ ଧାଉଡ଼ି ଚାଳଘର। ସେ ତ contractor। ତା'ର ଯେତେ କର୍ମଚାରୀ, କୁଲିବେପାରୀ ସମସ୍ତଙ୍କର ସେଇଠି ରୋଷେଇବାସ ଖାଇବା, ପିଇବା, ବିଶ୍ରାମ, ରହିବା, ଶୋଇବା। ସବୁ ଲୋକେ ଯାଉଛନ୍ତି, ଆସୁଛନ୍ତି, ଖାଉଛନ୍ତି। ଅନନ୍ତ ନିଜେ ସେଇଠି ଖାଇଲା, ମୋତେ ଖୋଇଲା। ଅନନ୍ତ ମୋତେ ପଚାରିଲା କଣ ମନ ହଉଛି ଆସିବାକୁ ନା ନାହିଁ? କିଛି ଭୟ ନାହିଁ। ଆମେମାନେ ଅଛୁଁ ଦରକାର ପଡ଼ିଲେ ସମସ୍ତେ ପଳେଇବା। ଅନନ୍ତର ଏ ପ୍ରଶ୍ନରେ କଣ ଉତ୍ତର ଦେବି? ମନଟା ଟିକିଏ ଦବି ଯାଉଥାଏ। ୧୫୦ ଟଙ୍କା ମାତ୍ର ପାଇବି, ଉପୁରି କିଛି ହବ ନିଶ୍ଚୟ। ମୋଟ କେତେ ହବ ଜାଣି ହଉନି। ସେଥିରେ ଯେ କୌଣସି ମୁହୂର୍ତ୍ତରେ ମରିବା କଥା। ଶୁଣିଲି ମୋ ପୂର୍ବରୁ ୭ଜଣ ଡାକ୍ତର ଏଇ ଚାକିରିରେ ନିଯୁକ୍ତି ପାଇ ଆସି ନାହାନ୍ତି ତେବେ ତାଙ୍କ କଥା ଭିନେ, ମୋ କଥା ଭିନେ। ମୋର ଉଦ୍ଦେଶ୍ୟ ହେଲା ଋଣ ଶୁଝିବି, ଘର ଦେଖିବି। ଯଦି ମରେ ସବୁ ଜଞ୍ଜାଳରୁ ମୁକ୍ତି ପାଇବି। ବଞ୍ଚିଲେ ଭଲ ମଲେ ଭଲ। ମୁଁ ନଆସିବି କାହିଁକି? କେନ୍ଦ୍ରାପଡ଼ାରେ ମାତ୍ର ୬୦ ଟଙ୍କା ବେତନ। କେତେଥର ଭାବିଛି ୧୦୦ଟଙ୍କା ପୂରା ହେଲେ ଆମେ କୌଣସି ପ୍ରକାରେ ଚଳିଯିବୁ। ଏଠିତ ୧୫୦ଟଙ୍କା ବେତନ ପୁଣି ଘର ଦେଖି ହବ।

ସବୁ କଥା ମନେ ମନେ ବିଚାର କରି ଅନନ୍ତକୁ କହିଲି, ଆସିବି, ତୁ ଅଛୁ ମୋର ଭୟ କଣ? ଅନନ୍ତ ବିଶେଷ ଖୁସି ହେଲା। ସେହିଦିନ ସନ୍ଧ୍ୟାବେଳକୁ ଡାଲଟେର ଗାଡ଼ିରେ କଟକ ଫେରିଲି। ଘରେ ପହଁଚିଲା ମାତ୍ରେ ମା ପଚାରିଲେ କେମିତି କଣ ଦେଖିଲୁ? କଣ ଯିବୁ ସେଠିକି? ମୋ ମନକଥା ମନରେ ରଖି ମା'ଙ୍କ ଆଗରେ ଉତ୍‌ଫୁଲ୍ଲ ହେଇ ଉତ୍ତର ଦେଲି, କିଛି ଭୟ ନାହିଁ, ସବୁ ଭଲ, ଯିବି, ଅନନ୍ତ ଅଛି କିଛି ଭୟ ନାହିଁ।

ମା ପୁଣି ପଚାରିଲେ କେନ୍ଦ୍ରାପଡ଼ା ଚାକିରି ତାହେଲେ ଛାଡ଼ି ଦବୁ? ହଁ, ଛାଡ଼ି ଦେବି।

ଯେଉଁଦିନ ଚାରବାଟିଆରେ ମୋର ଜଏନ୍ କରିବାର କଥା ସେଦିନ ସକାଳୁଁ ଘରୁ ବାହାରି ଡାଲଟେର ଗାଡ଼ିରେ ଚାରବାଟିଆ ଗଲି, ସାଙ୍ଗରେ ଗୋଟାଏ ସୁଟ୍‌କେଶ୍, ଅଳ୍ପ କିଛି ଜିନିଷ ନେଇଥାଏ। ରହିବାର ହେଲେ ରହିବି ନଚେତ୍ ଫେରି ଆସିବି। ଚାରବାଟିଆରେ ପହଁଚି ଠିକ୍ ସମୟରେ ଚାକିରିରେ ଲିଖିତ ଆକାରରେ ଯୋଗ ଦେଲି। କିନ୍ତୁ ଏଣେ କେନ୍ଦ୍ରାପଡ଼ା ହାଇସ୍କୁଲକୁ ଲେଖି ଜଣେଇ ଦେଲି ଯେ ମୋତେ ଆଉ ମାସେ ଛୁଟି ଦିଆଯାଉ। ମନେ ମନେ ସ୍ଥିର କରିଥାଏ, ଛୁଟି ଦେଲେ ମାସେ ଯାଏ କେନ୍ଦ୍ରାପଡ଼ା ଚାକିରିଟା ରହିଲା। ଏଠି ଦେଖେ ଯଦି ଭଲ ନଲାଗିବ ଛାଡ଼ି ଦେଇ କେନ୍ଦ୍ରାପଡ଼ା ପଳେଇବି। ଯଦି ଛୁଟି

ନଦେଲେ ଏଣେ ତ ଗୋଟାଏ ଚାକିରି ପାଇଲିଣି ଯା ଥିବ ଭାଗ୍ୟରେ । କିନ୍ତୁ କେନ୍ଦ୍ରାପଡ଼ାକୁ ଜଣେଇ ନଥାଏ ଯେ ମୁଁ ଗୋଟାଏ ଚାକିରି ପାଇଛି କିମ୍ବା ପୂର୍ବରୁ କେନ୍ଦ୍ରାପଡ଼ା ହାଇସ୍କୁଲ ଜରିଆରେ ଏ ଚାକିରି ପାଇଁ ଦରଖାସ୍ତ ମଧ୍ୟ କରିନଥିଲି । ଅକସ୍ମାତ୍ କଟକକୁ ଛୁଟିରେ ଆସିଥିଲି, ଚାକିରିଟାଏ ଜୁଟିଗଲା ।

ଯେଉଁଦିନ ଚାରବାଟିଆ ଚାକିରିରେ ଯୋଗ ଦବାକୁ ବହାରିଲି ମୁଁ ମା'ଙ୍କ ଅଲକ୍ଷ୍ୟରେ କାନ୍ଦି ପକେଇଲି । ତାର କାରଣ କେନ୍ଦ୍ରାପଡ଼ା ସ୍କୁଲର ପିଲାଙ୍କ କଥା । ତାଙ୍କର ସ୍ନେହ, ଶ୍ରଦ୍ଧା, ସେଠା ବାତାବରଣ ସବୁ କିଛି ଅର୍ଥାଭାବ ଯୋଗୁଁ ମୋତେ ଛାଡ଼ିବାକୁ ପଡ଼ିଲା । ଛାତ୍ରମାନେ ଅନେକବାର ମୋତେ ବିରକ୍ତ କରିଛନ୍ତି ତଥାପି ତାଙ୍କର ସାନ୍ନିଧ, ହଟ୍ଟଗୋଳ, ଆପତ୍ତି, ଅଭିଯୋଗ, ଖେଳ, ଦୁଷ୍ଟାମି ସବୁଥିରେ ଯେଉଁ ଆନନ୍ଦ ପାଇଛି ସେ ଆନନ୍ଦ ଚାରବାଟିଆରେ ଆଉ ମିଳିବ ନାହିଁ । ଏ ତ ରଣଭୂଇଁ । ଏଠା ଆନନ୍ଦ ଅର୍ଥ ଉପରେ ନିର୍ଭର କରେ, କୃତ୍ରିମତାଭରା, ଆନ୍ତରିକତାବିହୀନ, କିଏ କାହାକୁ ଚିହ୍ନୁଛି ? କିଏ କା'ର ସୁଖ, ଦୁଃଖର କଥା ଶୁଣୁଛି ? ବେଳ କାହିଁ, ସମସ୍ତେ କାର୍ଯ୍ୟବ୍ୟସ୍ତ, ଅସ୍ଥିରତା ଭିତରେ ।

ମୋତେ କାନ୍ଦି ପକେଇବାର ଦେଖି ସ୍ତ୍ରୀ କହିଲେ ତା'ହେଲେ ଚାରବାଟିଆ ଯାଉଛ କାହିଁକି ? କେନ୍ଦ୍ରାପଡ଼ା ଯାଅ ।

ମୁଁ କହିଲି ଟଙ୍କା ଅଣ୍ଟୁଛି କାହିଁ ?

ମୁଁ କେନ୍ଦ୍ରାପଡ଼ା ହାଇସ୍କୁଲ ହଷ୍ଟେଲରେ ସୁପରିଟେଣ୍ଡେଣ୍ଟ୍ ଥିଲାବେଳେ ଏବଂ ସ୍କୁଲରେ ଚାକିରି କଲାବେଳେ ଅନେକ ଛାତ୍ରଙ୍କ ଉପରେ ରାଗିଛି, ବିରକ୍ତ ହେଇଛି, ବାଡ଼େଇଛି । ପୁଣି ଦେଖିଛି ସେଇ ଛାତ୍ରମାନେ ମୋତେ ସାହାଯ୍ୟ କରିଛନ୍ତି । ଚାକର ନଥିବା ବେଳେ ମୋର ଅଇଁଠା ବାସନ ଧୋଇବା, ଲୁଗାପଟା କାଚିବା, ମେଲେରିଆ ଜ୍ୱରରେ ଭୋଗିବା ବେଳେ ସେବା କରିବାକୁ କୁଣ୍ଠାବୋଧ କରି ନାହାନ୍ତି । ମୁଁ ତାଙ୍କୁ ନେଇ football team ଗଢ଼ି ତାଙ୍କ ସହିତରେ ଖେଳିଛି, ଦୈନିକ ଖେଳିଛି, match ଖେଳିଛି, ବିପକ୍ଷ ଦଳର କେହି ଯଦି ମୋ playerକୁ ମାରିଛି, ମୁଁ ତାକୁ ସୁବିଧା ଦେଖି ମାରିଛି କାରଣ କାହିଁକି ସେ ମୋ ପିଲାକୁ ମାଇଲା ।

ମୁଁ ଯେତେବେଳେ କଟକ ଛୁଟିରେ ଆସେ ମୋର ପ୍ରିୟ ଛାତ୍ର କାଳୀ ରାଉତରାୟ ହାତରେ ମୋ ରୁମ୍‌ର କଞ୍ଚି କାଠି ଦେଇ ଆସେ । ଚାରବାଟିଆରେ ଜଏନ୍ କଲା ପରେ କାଳୀ ରାଉତରାୟକୁ ଚିଠି ଲେଖି ଜଣେଇଲି ଯେ ମୁଁ ଚାରବାଟିଆ aerodromeରେ ଚାକିରି ପାଇଛି । ମୁଁ ମାସକ ପରେ ଯାଇ ସେଠା charge ବୁଝେଇ ଦେଇ ଆସିବି । ତୁମେ ମୋ ରୁମ୍‌ରେ ଥିବା ଜିନିଷପତ୍ର ଏବଂ ମୋର ସ୍କୁଲ ଏବଂ ହଷ୍ଟେଲ ସମ୍ବନ୍ଧୀୟ ଖାତା ଏବଂ ଫାଇଲ୍‌ପତ୍ର କାହାରିକୁ ଦେବ ନାହିଁ ।

କାଳୀ ରାଉତରାୟ ମୋର ନୂତନ ଚାକିରିର ସମ୍ବାଦ ପାଇ ଅତି ଦୁଃଖରେ ଖଣ୍ଡେ ଚିଠି ଲେଖିଲା ତା'ର ମ୍ୟାଟ୍ରିକ ପରୀକ୍ଷା ଅଳ୍ପ କେତେଦିନ ପରେ ହବାର ଥାଏ, ଆଦୌ ପଢେନା, ରାଜନୀତିରେ ମାତି ଏଣେତେଣେ ବୁଲିଲା । ୧୯୪୨ ମସିହା, ଗାନ୍ଧୀ ଓ କଂଗ୍ରେସର ଅନ୍ୟ ତୁଙ୍ଗ ନେତାମାନଙ୍କୁ ଯେତେବେଳେ ବ୍ରିଟିଶ୍ ସରକାର ଜେଲ୍‌ରେ ଭର୍ତ୍ତି କରିଥାଏ । ଚାରିଆଡ଼େ ଆନ୍ଦୋଳନ, ଧର୍ମଘଟ, ସଭା, ସମିତି । ମୁଁ ଦେଖିଲି କାଳୀ ମ୍ୟାଟ୍ରିକ୍ ପରୀକ୍ଷାରେ ବୃତ୍ତି ପାଇବାର ଥିଲା । ତାର ଜୀବନଟା ନଷ୍ଟ ହେବା ଉପରେ । ମୁଁ ତାକୁ ଜୋର୍ କରି ପଢ଼ିବା ପାଇଁ ବସାଏ । କାଳୀ ମୋତେ କହେ ସାର୍ ଇଂରେଜୀ ଭାଷାତ ରହିବ ନାହିଁ, ପଢ଼ିବି କାହିଁକି ? ସେତେବେଳେ ଛାତ୍ରନେତା କାଳୀ, ମୁଁ ତାକୁ ବୁଝାଏ, ଇଂରେଜୀ ଭାଷା କ'ଣ କାଲି, ପଅରଦିନ ଉଠି ଯାଉଛି ? ଯେତେଦିନ ଅଛି ପଢ଼, ତୁମେ ମ୍ୟାଟ୍ରିକ ପରୀକ୍ଷାରେ ଭଲ କରିବାର ପିଲା । ତୁମେ ଜୀବନଟା ନଷ୍ଟ କରୁଛ । ରାଜନୀତିରେ ଯୋଗ ଦିଅ କିନ୍ତୁ ପଢୁନା କାହିଁକି ? କାଳୀ ମୋତେ ରାଜନୀତିର ବଡ଼ ବଡ଼ କଥା ବୁଝାଏ । କିନ୍ତୁ ମୋ କଥା ମାନି କିଛି ସମୟ ପଢ଼େ

ମୁଁ ଯେତେବେଳେ କେନ୍ଦ୍ରାପଡ଼ା ଛାଡ଼ି ଆସିଲି, ଭାବିଲି କାଳୀ ଆଉ ପଢ଼ାପଢ଼ି କରିବନି ମ୍ୟାଟ୍ରିକ୍ ପରୀକ୍ଷାରେ ଫେଲ ହବ । କାଳୀଠାରୁ ଅନ୍ୟାନ୍ୟ ପିଲାଏ ଖବର ପାଇ ମୋତେ ଚିଠି ଲେଖିବାକୁ ଆରମ୍ଭ କଲେ । ସମସ୍ତଙ୍କର

ସେଇ ଗୋଟିଏ କଥା ମୋର ସାନ୍ନିଧ୍ୟ ଆଉ ପାଇବେ ନାହିଁ। ହଷ୍ଟେଲ୍‌ରେ ରହିବା ସେମାନଙ୍କୁ ଆଉ ଭଲ ଲାଗୁନାହିଁ ଇତ୍ୟାଦି ଇତ୍ୟାଦି।

ଚିଠିଗୁଡ଼ିକ ପଢ଼େ, ଅନ୍ତରରେ କ୍ଷୁବ୍ଧ ହୁଏ, ଉପାୟ କଣ? ଅର୍ଥର ଦରକାର। ଅର୍ଥ ନହେଲେ ଅଚଳ ଅବସ୍ଥା। ଋଣଦାତାମାନଙ୍କ ପାଖରେ ଅପମାନିତ ହବାକୁ ପଡୁଛି। ଓଡ଼ିଶା ସରକାର doctor teacher ଯେଉଁ scheme କରିଥିଲେ, ପ୍ରତ୍ୟେକ ହାଇସ୍କୁଲରେ ଜଣେ ଲେଖାଏଁ ଡାକ୍ତର ରହିବେ। ସେମାନେ ପିଲାଙ୍କର ସ୍ୱାସ୍ଥ୍ୟ ଦେଖିବେ, ସ୍କୁଲ sanitation ଦେଖିବେ, ହଷ୍ଟେଲର superintendent ହେବେ। ବିଶେଷ ଭାବରେ ଛାତ୍ରାବାସର ପିଲାମାନଙ୍କର ଖାଦ୍ୟପେୟ, ସ୍ୱାସ୍ଥ୍ୟ ଉପରେ ଦୃଷ୍ଟି ରଖିବେ କିନ୍ତୁ ଏଣେ ତାଙ୍କୁ କୌଣସି ଔଷଧ ଦିଆଯିବ ନାହିଁ। ସେ ବାହାର ରୋଗୀ ଚିକିତ୍ସା କରିପାରିବ ନାହିଁ। ପିଲାଙ୍କର ଯାହା ଔଷଧ ଦରକାର ହବ ତାଙ୍କୁ ଲେଖିଦବାକୁ ହବ। ସେମାନେ ବାହାରୁ କିଣି ଆଣିବେ। ଇମିତିକି first aid box ଗୋଟାଏ ମଧ୍ୟ ଡାକ୍ତର ପାଖରେ ନଥିବ। ପିଲା ଖଣ୍ଡିଆ ଖାବରା ହେଲେ ସେଠା ଡାକ୍ତରଖାନାକୁ ଦୌଡ଼ିବେ first aid ନବା ପାଇଁ କିମ୍ବା ଚିକିତ୍ସା ହବା ପାଇଁ ଅଥଚ ହଷ୍ଟେଲ ଭିତରେ ଡାକ୍ତର ଜଣେ ବସିଥିବ। ଉକ୍ତ ଡାକ୍ତର ୧୦ଟାରୁ ୪ଟା ଯାଏ ସାଧାରଣ ଶିକ୍ଷକଙ୍କ ପରି ମାଇନର କ୍ଲାସରେ କେଉଁଠି ସାହିତ୍ୟ, କେଉଁଠି ଇଂରେଜୀ, କେଉଁଠି ଡ୍ରଇଂ, କେଉଁଠି ସ୍ୱାସ୍ଥ୍ୟରକ୍ଷା ପଢ଼େଇବ। ଏ ହେଲା ଜଣେ ଡାକ୍ତର କାମ। ଏହାର ଶେଷ ପରିଣାମ ମୁଁ ଯାହା ଭୋଗିଛି, ଡାକ୍ତର ତା'ର ପାଠତକ ପୋଡ଼ି ଖାଇବ, ମୁଣ୍ଡା ହେଇ ବସିବ। ଯଦି କୌଣସି ଦରକାରୀ ଜିନିଷ ପାଇଁ ସ୍କୁଲ secretaryଙ୍କ ପାଖରେ ହେଡ଼ମାଷ୍ଟରଙ୍କ ଜରିଆରେ ଆବେଦନ କରିବ, ସେ ଦରକାରୀ ଜିନିଷ ତାକୁ ମିଳିବ ନାହିଁ। ପୁଣି ସ୍କୁଲରେ ଯେ ପ୍ରଧାନଶିକ୍ଷକ ତାକୁ ଆଗେ ସବୁ କଥାରେ ମାନି ଚଳିବାକୁ ହେବ ଯେଉଁଟାକି ଜଣେ ଡାକ୍ତର ପକ୍ଷରେ ଅସହନୀୟ। ହେଡ଼ମାଷ୍ଟର ଯେ କି ଡାକ୍ତରୀ ବିଦ୍ୟାରେ ଅନଭିଜ୍ଞ, ସେ ଡାକ୍ତରଙ୍କୁ ଡାକ୍ତରୀ ବିଷୟରେ ପରାମର୍ଶ ଦେବେ। ସେ ଯାହା କହିବେ ତାକୁ ପ୍ରତିବାଦ କରିପାରିବ ନାହିଁ କାରଣ ସେ ଉପରିସ୍ଥ କର୍ମଚାରୀ। କେନ୍ଦ୍ରାପଡ଼ା ହାଇସ୍କୁଲ ସେତେବେଳେ ପ୍ରାଇଭେଟ୍ ସ୍କୁଲ ଥିଲା। ଏଣୁ ଯେ ହେଡ଼ମାଷ୍ଟର ଥିଲେ ସେ ଗେଜେଟେଡ୍ ଅଫିସର ନୁହଁନ୍ତି। ସରକାରୀ ହାଇସ୍କୁଲରେ ଯେ ହେଡ଼ମାଷ୍ଟର ରହୁଥିଲେ ସେମାନେ ଗେଜେଟେଡ୍ ଅଫିସର୍ ବୋଲି ଗଣ୍ୟ ହଉଥିଲେ। ଏଣୁ ସେ ହେଡ଼ମାଷ୍ଟରମାନେ doctor teacherଙ୍କୁ ଆହୁରି ଚପେଇ ରଖିବାକୁ ଚାହୁଁଥିଲେ। ଏଥିଯୋଗୁଁ ଡାକ୍ତର ଆଉ ହେଡ଼ମାଷ୍ଟରଙ୍କ ମଧ୍ୟରେ ସେତେବେଳେ ଅନେକ ସରକାରୀ ହାଇସ୍କୁଲମାନଙ୍କରେ ଅନେକ ସଂଘର୍ଷ ଘଟିଛି। ଏମିତି ଘଟଣାରେ ଥରେ ଅନୁଗୁଳ ସରକାରୀ ହାଇସ୍କୁଲରୁ doctor teacher ଡା: ରବୀନ୍ଦ୍ର ନାଥ ଦାସ୍‌ଙ୍କୁ ଆଉ ଉଦୟଗିରି ମାଇନର୍ ସ୍କୁଲର ହେଡ଼ମାଷ୍ଟର କରି ବଦଳି କରା ହେଇଥିଲା। ସେ ଏଥିଯୋଗୁଁ doctor teacher ଚାକିରି ଛାଡ଼ି ଦେଇ ପୁରୀ ଜିଲ୍ଲା ବୋର୍ଡ୍ ଅଧୀନରେ ଡାକ୍ତରୀ ଚାକିରି କରି ଅବସର ଗ୍ରହଣ କଲେ। ବାଲେଶ୍ୱର ଜିଲ୍ଲା ସ୍କୁଲର ତତ୍କାଳୀନ ହେଡ଼ମାଷ୍ଟର ଭୀମ ରାଉତଙ୍କ ସଙ୍ଗେ ସେଠା doctor teacher ଶ୍ରୀ ସରୋଜକାନ୍ତ କାନୁନ୍‌ଗୋଙ୍କ ଅପ୍ରିୟତା ସୃଷ୍ଟି ହବା ଯୋଗୁଁ ସେ ଚାକିରି ଛାଡ଼ି ଦେଇ ନିଜେ ଘରୋଇ ଡାକ୍ତରୀ ବ୍ୟବସାୟ କରି ପରେ କେନ୍ଦ୍ରାପଡ଼ାରୁ M.L.A ହୋଇ କିଛି କାଳ ରାଜନୀତି କରି ବର୍ତ୍ତମାନ ବୋଧହୁଏ ପୁଣି ଘରୋଇ ଡାକ୍ତରୀ ବ୍ୟବସାୟ କରୁଛନ୍ତି।

ମୁଁ ତ କେନ୍ଦ୍ରାପଡ଼ା ହାଇସ୍କୁଲରେ ଚାକିରି କରୁଥିଲି। ସେତେବେଳେ କେନ୍ଦ୍ରାପଡ଼ା ହାଇସ୍କୁଲ୍ ସରକାରୀ ହେଇ ନଥାଏ। ତତ୍କାଳୀନ ସେଠା ହେଡ଼ମାଷ୍ଟରଙ୍କ ଗୁଣାବଳୀ ବର୍ଣ୍ଣନା କରିବାକୁ ଯାଇ ମୁଁ ଗୋଟିଏ ଧାଡ଼ିରେ ଶେଷ କରୁଛି : ଖଜୁରୀ ଗଛକୁ କି ବାହୁନିବି, ମୂଳରୁ ପାହାଚ ପାହାଚ। ସେ ମଧ୍ୟ ମୋତେ ହଇରାଣ କରିବାରେ ଛାଡ଼ି ନାହାନ୍ତି କି ମୁଁ ମଧ୍ୟ ତାଙ୍କୁ ଛାଡ଼ି ନାହିଁ। ଶେଷରେ ତାଙ୍କ ଅବସ୍ଥା ଏମିତି ହେଇଛି ଯେ ସ୍କୁଲକୁ ଶଙ୍କିତ ଭାବରେ ଆସିଛନ୍ତି। ସ୍କୁଲରୁ ଗଲାବେଳେ ସାଶ୍ରୁ ଲୋଚନରେ ଯାଇଛନ୍ତି। ଶେଷକୁ ସେ ତ୍ରାହି ତ୍ରାହି ଡାକିଲେ ମୁଁ କେମିତି ଭଲେ ଭଲେ ସେଠୁଁ ଅନ୍ୟତ୍ର ଯାଏ।

ମୁଁ କେନ୍ଦ୍ରାପଡ଼ା ସ୍କୁଲ ଚାକିରି ଛାଡ଼ି ଆସି ନଥାନ୍ତି । କେବଳ ଅର୍ଥାଭାବ ଯୋଗୁଁ ସେ ଚାକିରି ଛାଡ଼ି ଆସିବାକୁ ହେଲା । ଓଡ଼ିଶା ସରକାରଙ୍କ doctor teacher ଯୋଜନା ମନ୍ଦ ନଥିଲା । କେବଳ ଡାକ୍ତରଙ୍କୁ ଯଦି ବାହାର ରୋଗୀ ଚିକିତ୍ସା କରିବାର ସୁବିଧା ଦିଆ ହୋଇଥାନ୍ତା କେହି ସେ ଚାକିରି ଛାଡ଼ି ଅନ୍ୟତ୍ର ଯାଇ ନଥାନ୍ତେ । ପ୍ରଥମେ ସେ ଚାକିରିରେ କେହି ପଶୁ ନଥିଲେ । ପ୍ରଥମେ ସେ ଚାକିରିରେ ଡା:ସରୋଜକାନ୍ତ କାନୁନ୍‌ଗୋ ପଶି ବାଲେଶ୍ୱର ଜିଲ୍ଲା ସ୍କୁଲରେ ଅବସ୍ଥାପିତ ହେଲେ ତା' ପରେପରେ ଅଳ୍ପ କେଇଜଣ ସେ ଚାକିରିରେ ପଶିଲେ । ଆଉ ଗୋଟାଏ କଥା ଲେଖିବାକୁ ଛାଡ଼ିଗଲି । ଡା: ପ୍ରଭାକର ମହାପାତ୍ର ଏ ଚାକିରି ଗ୍ରହଣ କରି କଟକ କଲେଜିଏଟ୍ ସ୍କୁଲରେ ଅବସ୍ଥାପିତ ହୋଇ ତତ୍କାଳୀନ ସେଠା ହେଡ୍‌ମାଷ୍ଟର ମହେଶ ପ୍ରଧାନଙ୍କ ଦ୍ୱାରା ସେମିତି ନିର୍ଯ୍ୟାତିତ ହେଉଥିଲେ । ପରେ ସେ ମଧ୍ୟ ସେ ଚାକିରି ଛାଡ଼ି military serviceରେ ଯୋଗ ଦେଇଥିଲେ ।

ଥରେ ମୋ ସାମନାରେ ମହେଶ ପ୍ରଧାନ ଡା: ପ୍ରଭାକର ମହାପାତ୍ରଙ୍କୁ ଯେଉଁପରି ଭାବରେ ଅପମାନସୂଚକ କଥା କହୁଥାନ୍ତି, ଦେହ ସହିବ ନାହିଁ । ଡା: ପ୍ରଭାକର ମହାପାତ୍ରଙ୍କର ବୟସ ଅଳ୍ପ ଏବଂ ନୀରିହ ମଧ୍ୟ । ସେ କିଛି ପ୍ରତିବାଦ ନକରି ନିରବରେ ସବୁ ସହିଗଲେ । ମୁଁ ଆଶ୍ଚର୍ଯ୍ୟ ହେଲି ।

ଏ doctor teacher ଚାକିରିରେ କେବଳ ବହୁକାଳ ଡା:ଅଦ୍ୱୈତ ବଲ୍ଲଭ ମହାନ୍ତି ପୁରୀ ଜିଲ୍ଲା ସ୍କୁଲରେ ରହିଥିଲେ । ସେ ଛାଡ଼ି ନଥିଲେ । ଏବେ ସେ ଅବସର ଗ୍ରହଣ କରିଥିବେ । ମୁଁ ଚାରବାଟିଆ aerodrome ରେ ଚାକିରି ଗ୍ରହଣ କରି କିଛିଦିନ ସେଠି ସକାଳେ ଯାଇ ପହଁଚି ସନ୍ଧ୍ୟାବେଳେ ପୁଣି କଟକ ଚାଲି ଆସେ । ଦିନବେଳା ଅନନ୍ତ ସାହୁ ପାଖରେ ଖାଇବା ପିଇବା କରେ । ବେଳେ ବେଳେ ବିଶ୍ରାମ ନିଏ । Office କୁ ଆସି ଲୋକଙ୍କ ସହିତରେ ପରିଚିତ ହୁଏ । ଗପ କରେ ପୁଣି ସନ୍ଧ୍ୟାବେଳକୁ ସମସ୍ତେ ଯେମିତି କଟକ ଆସନ୍ତି ମୁଁ ମଧ୍ୟ ସେମିତି ସେଠୁଁ ଚାଲି ଆସେ, ଘରେ ରହେ ପୁଣି ସକାଳ ହେଲେ ତାଳଚେର ଗାଡ଼ି ଧରି ଚାରବାଟିଆକୁ ଯାଏ ସେଠି ରାତିରେ ରହିବାକୁ କାହାରି ଇଚ୍ଛା ନୁହେଁ । ମୋର କିନ୍ତୁ ରହିବାର କଥା କାରଣ ମୁଁ ଡାକ୍ତର, A.R.P. ଦାୟିତ୍ୱରେ ଥାଏ କିନ୍ତୁ ରହିବି କେଉଁଠି ? ଖାଇବି କଣ ? କିଛି ସୁବିଧା ନଥାଏ । ଏମିତି କିଛିଦିନ ବିତିଲା ପରେ ଦିନେ ମୋତେ ଜଣେ C.P.W.D.ର S.D.O. କହିଲେ ଆପଣ ଚାଲନ୍ତୁ ମୋ ସାଙ୍ଗରେ ରହିବେ ମୋର କ୍ୱାର୍ଟର ଅଛି, ପୂଜାରୀ, ଚାକର ଅଛନ୍ତି । ମୋର ଦୈନିକ ରୋଷେଇ ହୁଏ । ଆପଣ ଆମ ସାଙ୍ଗରେ ଖାଇବେ । ଆପଣ ଡାକ୍ତର ହୋଇ ପ୍ରତ୍ୟେକ ଦିନ ରାତିରେ ଚାଲି ଯାଉଛନ୍ତି, ଏଟା ଉଚିତ୍ ନୁହେଁ ।

ତାଙ୍କ ନାଁ ଏ.ସି.ଚାର୍ଟର୍ଜୀ । ସେ ପୂର୍ବବଙ୍ଗର ଲୋକ । ବିଚକ୍ଷଣ ଲୋକ । ସବୁବେଳେ ନିଜର କାମ ନେଇ ବ୍ୟସ୍ତ । ଖାଇବା, ଶୋଇବା ତାଙ୍କ ପକ୍ଷରେ କିଛି ନୁହେଁ । ତାଙ୍କର ମୋଟା ଦରମା ସାଥିରେ ଉପୁରି ରୋଜଗାର ବହୁତ । ତାଙ୍କର ପରି ଆଉ ଜଣେ ଦି'ଜଣ C.P.W.D.ର ପଦସ୍ଥ କର୍ମଚାରୀ ତାଙ୍କରି ସାଥୀରେ, ତାଙ୍କରି କ୍ୱାର୍ଟରରେ ମେସ୍ କରି ଥାନ୍ତି । ଖାଇଲା ବେଳେ ଆସି ଖାନ୍ତି ପୁଣି ଯେ ଯା କାମକୁ ଚାଲିଯାନ୍ତି । ସମସ୍ତେ ସେହି ପୂର୍ବବଙ୍ଗର ଲୋକ । ଢାକା, ବରିସାଲ, ପାବନାରେ ଘର । ସେହି ପୂର୍ବବଙ୍ଗର ଅନେକ ତରୁଣ ମଧ୍ୟ ଥାନ୍ତି । ତାଙ୍କ ମଧ୍ୟରେ ଅନେକ ମୁସଲମାନ ମଧ୍ୟ ଥାନ୍ତି କିନ୍ତୁ ବଙ୍ଗଳା ଭାଷା ପରିଷ୍କାର କହୁଥାନ୍ତି । ଜାଣିହବନି ମୁସଲମାନ କି ହିନ୍ଦୁ ।

ଏ.ସି.ଚାର୍ଟର୍ଜୀଙ୍କ କଥାରେ ରାଜି ହୋଇ ତାଙ୍କ କ୍ୱାର୍ଟରକୁ ଗଲି । ଖାଇବା, ଶୋଇବା ତାଙ୍କରି କ୍ୱାର୍ଟରରେ ହେଲା । ମୁଁ ଦେଖିଲି ତାଙ୍କର ପୂଜାରୀ ହେଲା ଜଣେ ଓଡ଼ିଆ ବ୍ରାହ୍ମଣ, ଘର ଶାଳଗାଁ । ଯେ ଚାକର କାମ କରେ, ସେ ତାଙ୍କର ଅର୍ଦ୍ଦଳୀ, ଓଡ଼ିଆ, ଘର ସେଇ ଶାଳଗାଁ ।

ଖାଇଲା ବେଳେ ମୁଁ, ଏ.ସି.ଚାର୍ଟର୍ଜୀ ଏବଂ ତାଙ୍କର ବନ୍ଧୁ ଆଉ ଜଣେ ଦି'ଜଣ ପୂର୍ବବଙ୍ଗୀୟ ବଙ୍ଗାଳୀ । ସେମାନେ ବେଶ୍ ମିଶାଳ ଏବଂ ସୌହାର୍ଦ୍ଦ୍ୟପୂର୍ଣ୍ଣ ଲୋକ । ଏକ ସାଙ୍ଗରେ ଗୋଟିଏ ଟେବୁଲରେ ଖାଉ । ଅନେକ ପ୍ରକାର ଗପ ହୁଏ । ସେମାନେ କେହି ଓଡ଼ିଆ ବୁଝନ୍ତିନି ।

ପୂଜାରୀ ଭଲ ରାନ୍ଧେ । ବେଶ୍ ରୁଚିକର କିନ୍ତୁ ସେମାନଙ୍କ ସାଥୀରେ ଏକ ସାଙ୍ଗରେ ବସି ଖାଇବାର କେତେକ ଅସୁବିଧାରେ ପଡ଼ିଲି । କାରଣ ତାଙ୍କର ଖାଇବା, ମୋ ଖାଇବା ତୁଳନାରେ କିଛି ନୁହେଁ। ମୁଁ ଯାହା ଖାଏ ସେମାନେ ତାର ଚୌଠେ ଖାନ୍ତି । ଚଟ୍‌ପଟ୍ ଖାଇ ଦେଇ ଯେ ଯାର କାମକୁ ବାହାରି ଗଲେ । ମୁଁ ତ ଅନେକ ବେଳ ବସି ଖାଏ । ପୁଣି ମୁଁ ଚୌକୀ, ଟେବୁଲ୍‌ରେ ଖାଇବାରେ ଅଭ୍ୟସ୍ତ ନୁହେଁ। ମୁଁ ତଳେ ବସି ଖାଇଲେ ମୋତେ ଭଲ ଲାଗେ । ବହୁତ ସମୟ ବସି ଖାଏ ।

ଏଣୁ ମୁଁ ଦିନେ ଏ.ସି.ଚାର୍ଟର୍ଜୀଙ୍କୁ ଖୋଲାଖୋଲି କହିଲି ଯେ ମୁଁ ତଳେ ବସି ଖାଇବି, ଆପଣମାନଙ୍କ ସାଙ୍ଗରେ ବସି ଖାଇବା ମୋତେ ସୁବିଧା ହଉନି । ସେ. ମଧ କହିଲେ ଆପଣ ଯେମିତି ସୁବିଧା ମନେ କରୁଛନ୍ତି କରନ୍ତୁ । ଆଉ ଗୋଟାଏ କଥା ଦେଖିଲି, ଯେ ଧରଣର ଖାଇବା ପିଇବା ହଉଛି, ତା'ତୁଳନାରେ ମୁଣ୍ଡ ପିଛା ଖାଇବା ଖର୍ଚ୍ଚ ଅତ୍ୟଧିକ ପଡୁଛି । ତାର କାରଣ ହେଲା ବାବୁମାନେ ତ କେହି ଓଡ଼ିଆ ବୁଝୁ ନାହାଁନ୍ତି, ପୂଜାରୀ ଯାବତୀୟ ସୌଦା କରି ଆଣି ରାନ୍ଧି ବାଢ଼ିଦେଲେ ବାବୁମାନେ ଚଟ୍‌ପଟ୍ ଖାଇଦେଇ ଚାଲିଗଲେ । ମାସଶେଷକୁ ବାବୁମାନେ ପୂଜାରୀକୁ ପଚାରିଲେ ଠାକୁର ଏ ମାସେ ଖରଚ କତ ପଡ଼ିଲା ? ପୂଜାରୀ ଓଡ଼ିଆ ବଙ୍ଗଳା ମିଶେଇ କହିଲା ଜଣକୁ ୬୦ଟଙ୍କା କରି । ଟଙ୍କାରତ ଅଭାବ ନାହିଁ । ବାବୁମାନେ ପକେଟ୍‌ରୁ ଫାଡ଼ ଫାଡ଼ ନୋଟ କାଢ଼ି ପୂଜାରୀ ହାତରେ ଦେଇ ଚାଲିଗଲେ । ପୂଜାରୀ ଭାରି ଖୁସି । ଖର୍ଚ୍ଚ ମୁଣ୍ଡ ପିଛା ଖୁବ୍ ବେଶି ୩୦ ଟଙ୍କା ପଡ଼ିଲେ ପୂଜାରୀ ମୁଣ୍ଡ ପିଛା ଆଉ ୩୦ଟଙ୍କା ଅଧିକା ରୋଜଗାର କରୁଛି । ତାଙ୍କର ଟଙ୍କାର ଅଭାବ ନାହିଁ । ମୋର ତ ଟଙ୍କାର ଅଭାବ, ମୁଁ ୟାଙ୍କ ସାଥୀରେ ମାସିକ ୬୦ଟଙ୍କା ଖର୍ଚ୍ଚ କରିବି କାହିଁକି ? ଏ ଯାହା ଖାଇବା, ପିଇବା ହଉଛି ମାସିକ ମୁଣ୍ଡ ପିଛା ୨୦ଟଙ୍କା କିମ୍ବା ୩୦ଟଙ୍କା ମଡ଼ିଦାର କଥା । ଏଣୁ ମୁଁ ସ୍ଥିର କଲି ୟାଙ୍କଠୁଁ ଶୀଘ୍ର ଅଲଗା ହେଲେ ମଙ୍ଗଳ । ସେଥିରେ ପୁଣି ବଡ଼ ବଡ଼ company ମାନଙ୍କ agents ଆସି ଏ.ସି.ଚାର୍ଟର୍ଜୀଙ୍କ guest ହେଇ ଦିନେ ଦିନେ ରହି ଯାଉଛନ୍ତି । ସେ ସମସ୍ତ ଖର୍ଚ୍ଚ ଆମ କେଇ ଜଣକୁ ଭାଗ ହେଇ ଦବାକୁ ପଡୁଛି । ଏ ସୁବିଧା ନୁହେଁ ।

ଏ.ସି.ଚାର୍ଟର୍ଜୀଙ୍କ କ୍ୱାର୍ଟରରେ ରହି ମଧ ମୁଁ ଦୈନିକ ସନ୍ଧ୍ୟା ପରେ କଟକ ଆସିଲି । ସେଠି ରାତିରେ ରହିବାକୁ ଆଦୌ ଭଲ ଲାଗୁ ନଥାଏ । କିଛିଦିନ ପରେ ଏ.ସି.ଚାର୍ଟର୍ଜୀ କହିଲେ ଆପଣ ଜଣେ ନିଜର ଅର୍ଦ୍ଦଳି ଯୋଗାଡ଼ କରନ୍ତୁ । ଯେ କି ଆପଣଙ୍କର ସବୁ କାମ ତୁଲେଇବ ଏବଂ ସବୁ ସୁବିଧା ଦେଖିବ । ତାଙ୍କର ଯେମିତି ଜଣେ ଅର୍ଦ୍ଦଳି ଅଛି ସେ କିନ୍ତୁ ସଚ୍ଚୋଟ ଲୋକ ନୁହେଁ। ବିଶ୍ୱାସୀ ନୁହେଁ। କାରଣ ପୂଜାରୀ ଯାହା ବାବୁମାନଙ୍କୁ ଠକି ରୋଜଗାର କରେ ତାକୁ ପୂଜାରୀ, ଅର୍ଦ୍ଦଳି ଦିହେଁ ଭାଗ କରି ନିଅନ୍ତି । ଅର୍ଦ୍ଦଳିର ମାସିକ ଦରମା ୬୦ ଟଙ୍କା । ଏଣୁ ମୁଁ ଭାବିଲି ଖୁବ୍ ସୁବିଧାରେ ଲୋକ ଗୋଟାଏ ମିଳିଯିବ ।

କିନ୍ତୁ ଘରେ ଆସି ଥୋରିଆସାହିରେ ଯେତେ ଜଣଙ୍କୁ ପଚାରିଲି, ମାସିକ ୬୦ଟଙ୍କାରେ ମୋ ପାଖରେ ଅର୍ଦ୍ଦଳି କାମ କରିବ, କେହି ରାଜି ହେଲେ ନାହିଁ କାରଣ ସେତେବେଳେ ଚାରବାଟିଆ ନାଁ ଶୁଣିଲେ ଲୋକେ ଭୟ କରୁଥିଲେ, ସେଠିକି କିଏ ଯିବ ? ସେଠି ବୋମା ପଡ଼ିବ । ଏମିତି ଲୋକଗୁଡ଼ା ଅଭାବରେ ଚଳୁଥାନ୍ତି । ଅତି ଦୁରବସ୍ଥା ତଥାପି ଚାରବାଟିଆରେ ଯାଇ ଚାକିରି କରିବାକୁ ନାରାଜ । ଯେତେ ପ୍ରକାର ବୁଝେଇଲି କେହି ବୁଝିଲେ ନାହିଁ କି ଗଲେ ନାହିଁ । ଶେଷକୁ ଗୋଟାଏ ବାରିକ ଟୋକା ରାଜି ହେଲା, ନାଁ ରାମଚନ୍ଦ୍ର ବାରିକ, ବୟସ ୧୬/୧୭ ହେବ । ସେ ଆମରି ଘର ନିକଟରେ ଥୋରିଆସାହିରେ ରହୁଥିଲା । ଭାରି ଚାଲାଖ ଆଉ କାମିକା ।

ଏଣିକି ଦୈନିକ ସକାଳେ ମୋ ସାଙ୍ଗରେ ଚାରବାଟିଆ ଯାଇ ସନ୍ଧ୍ୟାବେଳକୁ ମୋ ସାଙ୍ଗରେ କଟକ ଆସିଲା । ଚାରବାଟିଆରେ ସେତେବେଳେ କେହି ବିନା "ପାସ୍"ରେ ଯିବା ଆସିବା କରିପାରୁ ନଥିଲେ । "ପାସ୍" ଯଦି ପାଖରେ ନାହିଁ ମିଲିଟାରୀ ଲୋକଙ୍କ ହାବୁଡ଼େ ପଡ଼ିଛି, ତା'ହେଲେ ତା'ର ସେଦିନ ମରଣଯୋଗ । ସାଙ୍ଗେ ସାଙ୍ଗେ ମାରିଦେବେ । କ୍ୱଚିତ୍ କିଏ କେଉଁଠି କେବେ ଛାଡ଼ ପାଇଥିବ, ଅନେକ ମୂର୍ଖ ଲୋକ ଏଥିପାଇଁ ପ୍ରାଣ ହରାଇଛନ୍ତି ।

ମୋର ଏବଂ ରାମ ବାରିକର ଦି'ଖଣ୍ଡ "ପାସ୍" କରେଇ ନିଆଗଲା । ମୁଁ ଯେଉଁଦିନ ରାତିରେ ଚାରବାଟିଆରେ ରହିଯାଏ, ରାମ ମଧ ମୋ ସାଙ୍ଗରେ ରହେ । ରୋଷେଇବାସ ଆମ ପାଇଁ ଏ.ସି.ଚାଟର୍ଜୀଙ୍କ ପୂଜାରୀ, ଅର୍ଦ୍ଦଳୀ କରନ୍ତି । କିଛିଦିନ ପରେ ରାମ ବାରିକ ତାର ମୁଠି ଧରି ଚାରବାଟିଆକୁ ଗଲା । ମୋର କାମ କରି ତାର ଅବସର ସମୟରେ ଲୋକଙ୍କୁ ଖିଅର କଲା । ସେଠି ବାରିକର ଭାରି ଅଭାବ ଥିଲା । ଅନେକ ବାଳ କାଟିବାକୁ ଖୋଜିଲେ ବାରିକ ମିଳେନା । ସେଠି 'ସେଲୁନ୍'ଥାଏ କିନ୍ତୁ ସେଠି ସାଧାରଣ ମଳିମୁଣ୍ଡିଆ ଲୋକେ ବାଳ କଟେଇବା ଅସମ୍ଭବ । ବହୁତ ଖର୍ଚ୍ଚ ପଡୁଥିଲା । ଜଣକେ ୧ଟଙ୍କା/ଟ୧.୫୦ପଇସାରୁ କମ୍ ନୁହେଁ । କଟକରୁ ମୋର ଜଣାଶୁଣା ବାରିକ କେତେଜଣ ଯାଇ ସେଠି ସେଲୁନ୍ ଖୋଲିଥିଲେ ।

ସେଠି କେବଳ ଉଚ୍ଚପଦସ୍ଥ ଧୋବଧାଉଳିଆ ଲୋକେ ପଶି ପାରୁଥିଲେ । ସେଠି ଗୋରା ଲୋକଙ୍କ ପାଇଁ ଅଲଗା ସେଲୁନ୍ ଥିଲା । ସେମାନେ ଏଠି ଖିଅର ହେଉ ନଥିଲେ । ତାଙ୍କ ପାଇଁ ଗୋରା ଜାତିର ବାରିକ ମଧ ଥିଲେ । ସେ ସେଲୁନ୍‌ରେ ଆମେ ପଶିବା ନିଷିଦ୍ଧ ।

ସେଠି ରାମ ବାରିକ ତାର ମୁଠି ନେଇ ବାଳକାଟିବା ଆରମ୍ଭ କଲା ପରେ ମୋ ପାଖରେ ଚାକିରୀ ପାଇଁ ଯେଉଁ ମାସିକ ବେତନ ଧାର୍ଯ୍ୟ ହେଉଥିଲା ତାଠୁଁ ବେଶି ରୋଜଗାର କଲା । ଏଣୁ ସେ ମୋର କାମ ପ୍ରତି ଅବହେଳା କଲା । ଏଣୁ ତାକୁ କିଛିଦିନ ପରେ ଚାକିରୀରୁ ବାହାର କରି ଦେଇ ତା ଜାଗାରେ ଅନ୍ୟ ଜଣେ ଲୋକ ଖୋଜିଲି । ଏଥିମଧ୍ୟରେ ମୁଁ ଅଲଗା କ୍ୱାର୍ଟର ପାଇଲି । କ୍ୱାର୍ଟରଟା ସେଇ S.D.O.ଙ୍କ କ୍ୱାର୍ଟରର ଖୁବ୍ ନିକଟରେ । S.D.O. ମୋତେ ବିଶେଷ ଅନୁରୋଧ କଲେ ତାଙ୍କ ସାଙ୍ଗରେ ରହିବା ପାଇଁ । ତାର କାରଣ ହେଲା ମୁଁ ଓଡ଼ିଆ ଜାଣେ । ସେମାନେ ଓଡ଼ିଆ ଜାଣନ୍ତିନି । ଏଣୁ ପୂଜାରୀ, ଅର୍ଦ୍ଦଳୀ ତାଙ୍କୁ ମନ ଇଚ୍ଛା ଠକି ଖାଉଥାନ୍ତି । ଦିନେ ଗୋଟାଏ ଘଟଣାରେ ପୂଜାରୀର ଚୋରି ଧରି S.D.O.ଙ୍କୁ ଜଣେଇବାରେ S.D.O. ସେ ପୂଜାରୀକୁ ସାଙ୍ଗେ ସାଙ୍ଗେ ବାହାର କରି ଅନ୍ୟ ପୂଜାରୀ ରଖିଲେ । S.D.O.ଙ୍କର ଇଚ୍ଛା ଥିଲା ମୁଁ ତାଙ୍କ ସାଙ୍ଗରେ ରହିଲେ ତାଙ୍କର ପୂଜାରୀ, ଅର୍ଦ୍ଦଳି ତାଙ୍କୁ ଆଉ ଠକି ଖାଇ ପାରିବେ ନାହିଁ । ମୁଁ ଏ ପ୍ରସ୍ତାବରେ ରାଜି ହେଲି ନାହିଁ । ମୁଁ ମୋର କ୍ୱାର୍ଟରକୁ ଚାଲି ଆସିଲି । ଅଲଗା କ୍ୱାର୍ଟରକୁ ଆସିଲା ପରେ ଖାଇବା ପାଇଁ ବିଶେଷ ହଇରାଣ ହେଲି । ତା'ଭିତରେ ଆମମାନଙ୍କ ପାଇଁ ଜଳଖିଆ ଦୋକାନ କିମ୍ବା ହୋଟେଲ୍ ନଥାଏ । ଗୋରାଙ୍କ ପାଇଁ ସବୁଥାଏ । ଗୋଟାଏ ଜଳଖିଆ ଦୋକାନ ଥାଏ ଯେ ସେ ଯାଇ ଚାରବାଟିଆ ଷ୍ଟେସନ୍‌ର ଉତ୍ତରପଟେ ବହୁତ ଦୂରରେ । ସେଠି କେବଳ ଚା, ଜଳଖିଆ ମିଳୁଥାଏ । ଅତି ଖରାପ ଜିନିଷ । କିଛି ନମିଳିବା ହେତୁ ଲୋକେ ପେଟ ବିକଳରେ ଖାଇ ଯାଉଥାନ୍ତି । ଅନେକ ଲୋକ ଯାଇ ସେଠି ଖାଇ ଆସୁଥାନ୍ତି । ସେ ସମୟରେ ଏଇ ଜଳଖିଆ ଦୋକାନ ଖଣ୍ଡେ ସେଠି ଭଲ ପଇସା ରୋଜଗାର କରୁଥାଏ । ସେ ଦୈନିକ ସନ୍ଧ୍ୟାବେଳେ କଟକ ଆସି ତହିଁ ଆରଦିନ ସକାଳେ ଯାଇ ସେଠି ଦୋକାନ ଚଳଉଥାଏ ।

ସେଠି ଆମ ବିଭାଗର ଅନ୍ୟ କର୍ମଚାରୀମାନେ ମେସ୍ କରି ଭଲରେ ଚଳୁଥାନ୍ତି । ତାଙ୍କର ମଧ ଓଡ଼ିଆ ଲୋକ କମ୍ । ତେଲେଙ୍ଗା ତାଠୁଁ କମ୍ । କେବଳ ପୂର୍ବବଙ୍ଗର ବଙ୍ଗାଳୀ ବେଶି । ସେମାନଙ୍କ ସହିତରେ ତାଙ୍କ ମେସ୍‌ରେ ଖାଇବା ପାଇଁ ମୋତେ ଆରେଇଲା ନାହିଁ । ମୋ ପାଖରେ ରୋଷେଇର ସବୁ ସରଞ୍ଜାମ ଥାଏ ଅଥଚ ରୋଷେଇ ହେଇ ପାରୁନଥାଏ ।

ଏଣୁ ମୁଁ ଦୈନିକ ସନ୍ଧ୍ୟା ପରେ ସାଇକେଲ୍‌ରେ କଟକ ଆସି ରାତିରେ ଘରେ ଭାତ ଖାଏ । ତହିଁ ଆରଦିନ ସକାଳେ ଦିନବେଳା ଖାଇବା ପାଇଁ ଜଳଖିଆ କିଛି ସାଙ୍ଗରେ ନେଇ ସାଇକେଲ୍‌ରେ ଚାରବାଟିଆ ଯାଇ ଚାକିରୀରେ ଯୋଗ ଦିଏ । ସେଥିରେ ପୁଣି compounder ନଥାଏ । ମୋତେ ଏକାହିଁ ସବୁ କାମ କରିବାକୁ ହୁଏ । କାମ କିଛି ନୁହେଁ ତଥାପି ଡାକ୍ତରଖାନାରେ ଦିନସାରା ରହି ଯା କିଛି କାମ କରିବାକୁ ହୁଏ । ଏମିତି କିଛିଦିନ ଚଳିବା ପରେ ମୋର ଅର୍ଦ୍ଦଳି ଚାକିରି ପାଇ ଜଣେ ବୁଢ଼ା ମଣିଷ ଜୁଟିଲା, ନାଁ ବିନୋଦ ବେହେରା । ବୁଢ଼ା ହେଲେ ମଧ

ଦେହରେ ଶକ୍ତି ଥାଏ । ରୋଷେଇ କାମ ଜାଣେ । ସେ ନିଯୁକ୍ତ ହେଲେ ମୋର ଅର୍ଦ୍ଦଳି ଭାବେ ।

କୌଣସି ପ୍ରକାରେ ଜଳଖିଆ ଆଉ ଭାତ, ଡାଲି ତରକାରୀଟାଏ ଖାଇବାର ସୁବିଧା ହେଲା । ଦୈନିକ କଟକ ନଦୌଡ଼ି ମୁଁ ଦିନେ ଦିନେ ରାତିରେ ସେଇଠି ଖାଇ ପିଇ ରହି ପାରିଲି । କେତେ ଦୈନିକ ଦୌଡ଼ିବି ? କେତେ ଦିନ ବେଳା ଜଳଖିଆ ଖାଇ ରହିବି ?

କିଛିଦିନ ଏମିତି ଭାବରେ ବିତିଲା ପରେ ଆମ ଅଫିସ୍‌ରୁ ଅର୍ଡ଼ର ହେଲା ଜଣେ compounder ଯୋଗାଡ଼ କରିବା ପାଇଁ । କାରଣ compounder ନଥାଏ ମୁଁ ଏକା ଡାକ୍ତରଖାନା ଚଳଉଥାଏ । କଟକ ଆସି କେତେ compounderଙ୍କୁ ଚାକିରି ବିଷୟରେ କହିଲି ସମସ୍ତେ ନାରାଜ । ଚାରବାଟିଆରେ ଚାକିରୀ କରିବାକୁ କିଏ ଯିବ ସେଠିକି ? କେତେବେଳେ ବୋମା ପଡ଼ିବ କଣ ହବ । compounder ମାନେ ବେକାର ବୁଲୁଥାନ୍ତି ଅଥଚ ଚାରବାଟିଆରେ ଚାକିରି କରିବାକୁ ନାରାଜ । ଶେଷରେ ଜଣେ compounderଙ୍କୁ ଚିଠି ଲେଖିଲି ତାଙ୍କ ଘର ଯାଜପୁର । ମୋର ଦୂରସମ୍ପର୍କୀୟ ମାମୁଁ ହେବେ । ସେ ଚିଠିର ଉତ୍ତରରେ ଜଣେଇଲେ ଆସିବେ ଚାରବାଟିଆରେ ଚାକିରିରେ ଯୋଗ ଦେବେ । ମୁଁ ଏକଥା departmentକୁ ଜଣେଇଦେଲି । ଜଣେ compounder ଆସୁଛି ।

ଏଥି ମଧ୍ୟରେ ଦିନେ ମୋର ଅର୍ଦ୍ଦଳି ବିନୋଦ ବେହେରାକୁ ସାଙ୍ଗରେ ନେଇ କଟକ ଆସିଲି । ଉଦ୍ଦେଶ୍ୟ ଥିଲା କେତେକ ଖାଦ୍ୟସାମଗ୍ରୀ ଯାହାସବୁ ସରିଯାଏ ଏବଂ ଆଉ କେତେକ ରୋଷେଇ ସରଞ୍ଜାମ ସାଙ୍ଗରେ ନେଇ ଚାରବାଟିଆ ଆସିବି । ରାତିଟା ରହି ତହିଁ ଆରଦିନ ସକାଳୁ ସବୁ ଜିନିଷ ବିନୋଦ ବେହେରା ହାତରେ ଦେଇ ଆଗେ ପଠେଇଦେଲି । ତା'ପରେ ମୁଁ ସାଇକଲ୍‌ରେ ବାହାରିଲି । ମୁଁ ଚାରବାଟିଆକୁ ଆସିଲା ବାଟରେ ରାସ୍ତାରେ କେଉଁଠି ଆଉ ବିନୋଦ ବେହେରାକୁ ଭେଟିଲି ନାହିଁ । ଭାବିଲି ବେହେରା କଣ ଏତେ ଶୀଘ୍ର ଚାଲିଗଲା ? ଶେଷରେ ଚାରିବାଟିଆ ଆସି ଯେତେବେଳେ ପହଁଚେ, ଦେଖେ ବିନୋଦ ବେହେରା ପହଁଚି ନାହାନ୍ତି । ଆଶ୍ଚର୍ଯ୍ୟ ହେଲି କଣ ହେଲା ! ବିନୋଦ ବେହେରା ଆଉ ଜିନିଷପତ୍ର ନେଇ ପଳେଇଲାକି ? କେତେ କଣ ଭାବିଗଲି । ଅସଲ ଚିନ୍ତା ହେଲା ଖାଇବି କଣ ? ବିନୋଦ ବେହେରା ରୋଷେଇ କରି ଦଉଥିଲା ଆଉ ରାନ୍ଧିବ କିଏ ? ହତାଶ ଲାଗିଲା । ସେଇ ଷ୍ଟେସନ୍ ସେପଟୁ ଜଣକ ହାତରେ ପୁରି ମଗେଇ ଆଣି ଖାଇଲି । ସେ କିଛି ନୁହେଁ । ଓଟ ମୁହଁରେ ଜୀରା ପରି । କୌଣସି ପ୍ରକାରେ ଭୀଷଣ ଅସୁବିଧା ଭିତରେ ଦିନଟା କଟେଇ, ଚାରିଟା ବେଳକୁ ସାଇକଲ୍‌ରେ କଟକ ବାହାରିଲି । ସେଦିନ ରାତିରେ ଚାରବାଟିଆରେ ରହିପାରିଲି ନାହିଁ । ଖାଇବି କଣ ? ପାଣି ମଗ୍ଲାଏ ତ ଦବାକୁ ଲୋକ ନାହିଁ । କଟକ ଗଲେ ଘରେ ଭାତ ଖାଇବି । ଏଣୁ କଟକ ବାହାରିଲି । କଟକରେ ସଞ୍ଜ ବେଳକୁ ଆସିଲା ବେଳକୁ ଦେଖିଲି ମା ମୋତେ ଅନେଇ ବସିଛନ୍ତି । ମୁଁ ମା'ଙ୍କୁ ସବୁ କଥା କହିଲି, ମା ମଧ୍ୟ କହିଲେ ତାଙ୍କୁ ମଧ୍ୟ ଆଜି ଦିନସାରା କେମିତି ଅସ୍ୱସ୍ତିବୋଧ ହଉଥିଲା ।

ମା ମନେମନେ ଅନୁଭବ କରୁଥିଲେ ମୁଁ ଯେମିତି କିଛି ଅସୁବିଧାରେ ପଡ଼ିଛି । ଯା ହେଉ ସେଦିନ ରାତିରେ ଘରେ ରହି ତହିଁ ଆରଦିନ ସକାଳେ ଦିନବେଳା ସେଠି ଖାଇବା ପାଇଁ ସାଙ୍ଗରେ କିଛି ଜଳଖିଆ ନେଇ ସାଇକେଲ୍‌ରେ ଚାରବାଟିଆ ବାହାରିଲି । ଚାରବାଟିଆରେ ଯାଇ ପହଁଚି ଦେଖେ ବିନୋଦ ବେହେରା ଆମ ଘରୁ ଆଣିଥିବା ସବୁ ଜିନିଷପତ୍ରକୁ ପାଖରେ ଥୋଇ ପିଠିକୁ ରୋଷେଇ ଘର କାନ୍ଥକୁ ଲଗେଇ ଆଉଜି ବସିଛି । ମୁଁ ବେହେରାକୁ ଦେଖି ଆଶ୍ଚର୍ଯ୍ୟ ହେଲି ଯେତିକି ଆନନ୍ଦିତ ହେଲି ସେତିକି । କାଲି କୁଆଡ଼େ ଗଲା ବୋଲି ପଚାରିବାରୁ ବେହେରା କହିଲା ଆଗ ଘରୁ ଜିନିଷପତ୍ର ନେଇ ବାହାରି ବାଟରେ ଆସୁ ଆସୁ ଗୋଟାଏ military van ଯାଉଥିବାର ଦେଖି ହାତ ଦେଖେଇବାରୁ ସେ van ରେ ଯେଉଁ ଗୋରା ଲୋକମାନେ ଥିଲେ ସେମାନେ ବେହେରାକୁ van ରେ ବସେଇ ଦେଲେ । ବେହେରା ଭାବିଛି van ଟା ଚାରବାଟିଆ ଯାଉଛି, ଯେଉଁଠି ଗୋରାମାନେ ତାକୁ ଓଲେହି ଦେଲେ ସେ ଜାଗାଟା କୁଜଙ୍ଗ । ବେହେରା ସେ ଗୋରା ଲୋକମାନଙ୍କୁ କୌଣସି ପ୍ରକାରେ ବୁଝେଇଲା ଯେ ସେ ଚାରବାଟିଆ ଯିବ । ବେହେରା ପାଖରେ ଥିବା

ଚାରବାଟିଆର pass ମଧ୍ୟ ସେ ଗୋରା ଲୋକମାନଙ୍କୁ ଦେଖେଇବାରୁ ସେମାନେ ସେଦିନ ରାତିରେ ଆଣି ବେହେରାଙ୍କୁ ଚାରବାଟିଆ ନିକଟ ବାଣୀପଦା ଗାଁରେ ଛାଡ଼ିଦେଲେ। ବାଣୀପଦାରୁ ଚାଲି ଚାଲି ଆସି ବେହେରା ଆଜି ସକାଳେ ଚାରବାଟିଆରେ ପହଁଚିଲା।

ଯା ହଉ, ମନେ ମନେ ଟିକିଏ ଆଶ୍ୱସ୍ତ ହେଲି ଯେ ଭାତ ଗଣ୍ଡାଏ ଆଜି ଦିନ ବେଳା ଖାଇ ହବ। ବେହେରା ତା'କାମରେ ଲାଗିଲା ମୁଁ ମୋ କାମରେ ଲାଗିଲି। ମୋର ଦୂରସମ୍ପର୍କୀୟ ମାମୁଁ କମ୍ପାଉଣ୍ଡର ଯାହାଙ୍କର ଚାରବାଟିଆକୁ ଆସିବାର ଥିଲା ତାଙ୍କୁ ଯେତେବେଳେ ଚିଠି ଲେଖିଲି ସେ ଉତ୍ତର ଦିଅନ୍ତି ଯାଉଛି ଆଉ କେଇଟା ଦିନ ଅପେକ୍ଷା କର।

ଏମିତି ଲେଖାଲେଖି ହଉ ହଉ ତାଙ୍କର appointment ଖାରଜ କରି ଦିଆଗଲା। ଯେଉଁଦିନ appointment ଖାରଜ କରି ଦିଆଗଲା ବୋଲି ତାଙ୍କ ପାଖକୁ ଚିଠି ଗଲା ସେଇଦିନ ସନ୍ଧ୍ୟାବେଳେ ମୁଁ କଟକ ଆସି ଘରେ ଦେଖେ ମାମୁଁ ଆସି ଆମ ଘରେ ପହଁଚି ବସିଛନ୍ତି। ମୁଁ ତାଙ୍କୁ ସବୁ କଥା ଜଣେଇଲି ଯେ ତୁମର appointment ଖାରଜ ହେଲା ବୋଲି ତୁମ ପାଖକୁ ଆଜି ଚିଠି ପଠାଗଲା ତୁମେ ଆସି ଏତେ ଡେରିରେ ପହଁଚିଲେ କାହିଁକି? କଣ କରିବ? ଫେରି ଯିବା କଥା। ମାମୁଁ ଉତ୍ତରରେ କହିଲେ ଟଙ୍କା ଖର୍ଚ୍ଚ କରି ଆସିଛି। ଆଉ ଫେରି ଯିବି କଣ? ତୁମେ ଚେଷ୍ଟା କଲେ ସବୁ ହବ। ମୁଁ ଭାବିଲି ମୁଁ କଣ କରିବି? ଆଚ୍ଛା ହଉ ପୁଣି ଚେଷ୍ଟା କରେ। ଯଦି ମାମୁଁ ରହିଯାନ୍ତି ତ ଭଲ ହବ। ଏ ମୋର ଦୂରସମ୍ପର୍କୀୟ ମାମୁଁ ହେଲେ ମଧ୍ୟ ମୋତେ ତାଙ୍କୁ ଭାରି ଭଲ ଲାଗେ କାରଣ ସେ ଅତି ନିରୀହ ଲୋକ। ମାଛିକୁ 'ମ' କହିବା ଲୋକ ନୁହଁନ୍ତି। ଅତି ସଚ୍ଚୋଟ ପୁଣି ଅତି ଦୁଃଖୀ ଲୋକ। ଅଳ୍ପ ବୟସରୁ ତାଙ୍କର ପିତୃ ବିୟୋଗ ଘଟିବାରୁ ତାଙ୍କର ଦୁଃଖ କହିଲେ ନସରେ। ନାଁ ଶ୍ରୀ କାର୍ତ୍ତିକ ଚନ୍ଦ୍ର ସର୍କେଲ୍। ବର୍ତ୍ତମାନ ଚାକିରିବାକିରି କିଛି ନାହିଁ ବେକାର। ସେ ଆମ ବସାରେ ରହିଲେ। ମୁଁ ଚେଷ୍ଟାରେ ଲାଗିଲି। କେମିତି ସେ ଚାକିରିରେ ରହିବେ। ଆମର head office ଥିଲା କଟକରେ ଭୀମା ice factory ପାଖରେ। ସେଠି ତେଲେଙ୍ଗା କର୍ମଚାରୀ ବେଶି। ତା ପଛକୁ ବଙ୍ଗାଳୀ କର୍ମଚାରୀ, ଓଡ଼ିଆ କର୍ମଚାରୀ ଖୁବ୍ କମ୍।

ମୁଁ head office କୁ ଯାଇ ଜଣେ ତେଲେଙ୍ଗା accountantଙ୍କୁ କହିଲି ସବୁ ବିଷୟ, ସେ କମ୍ପାଉଣ୍ଡର ଆସି ପହଁଚିଛନ୍ତି, ତାଙ୍କୁ ପୁଣି କେମିତି ରଖାଯାଉ ଆଉ ତ କେହି ମିଳୁନାହାନ୍ତି। ଯଦି ମିଳୁଛନ୍ତି ଚାରବାଟିଆ ଯିବାକୁ ଭୟ କରୁଛନ୍ତି। ତେଲେଙ୍ଗା accountant ଦେଖିବାକୁ ପୁରୁଖା ଲୋକ। ଯେମିତି ବୃଦ୍ଧ ଜରଦ୍‌ଗବ ଅଫିସ୍ ଭିତରେ ସବୁଠାରୁ ଟାଣୁଆ ଲୋକ ବୋଲି ମନେ ହୁଏ। ସେ ମୋତେ ଖୋଲାଖୋଲି କହିଲେ ଯଦି ମୁଁ ତାଙ୍କୁ କେତେକ first aid ସାମଗ୍ରୀ ଦେବି, ସେ ପୁଣି କାର୍ତ୍ତିକ ଚନ୍ଦ୍ର ସର୍କେଲ୍‌ଙ୍କୁ ରଖିବେ। ମୁଁ ଅଗତ୍ୟା ଏଥିରେ ରାଜି ହେଲି କାରଣ ଯଦି first aid ସାମଗ୍ରୀ କିଛି ଦେଇ ଜଣେ ଗରିବ ଲୋକର ନିଯୁକ୍ତି ମିଳିଯାଏ, ତା'ହେଲେ ଖୁବ୍ ମଙ୍ଗଳର କଥା।

ଏଣୁ ମୁଁ head officeରୁ ଫେରି ଘରକୁ ଯାଇ କାର୍ତ୍ତିକ ଚନ୍ଦ୍ର ସର୍କେଲଙ୍କୁ ସବୁ କଥା କହି first aid ସାମଗ୍ରୀ କିଛି ଯୋଗାଡ଼ରେ ବଜାରକୁ ବାହାରିଗଲି। ବଜାରରୁ first aid ସାମଗ୍ରୀ ଯୋଗାଡ଼ କରି ଘରକୁ ଫେରି କାର୍ତ୍ତିକ ଚନ୍ଦ୍ରଙ୍କୁ first aid ସାମଗ୍ରୀ ସବୁ ଦେଖେଇ କହିଲି କାଲି ଏତକ ସେ ବୁଢ଼ା accountantଙ୍କୁ ଦେଲେ ତୁମର appointment ହବ।

ମୋତେ ଏ first aid ସାମଗ୍ରୀ ଯୋଗାଡ଼ କରିବାରେ କିଛି କିଣିବାକୁ ହାତରୁ ଟଙ୍କା ପଡ଼ିଲାନି କାରଣ ମୁଁ ଚାରବାଟିଆରେ ଚାକିରି ପାଇଥାଏ ବୋଲି କଟକର କେତେକ ଔଷଧ ଦୋକାନୀ କେମିତି ଜାଣିଗଲେ ସେମାନେ ଆଶା କଲେ ମୋ ଦ୍ୱାରା ତାଙ୍କର ବହୁତ ଯନ୍ତ୍ରପାତି, ଔଷଧ ବିକ୍ରି ହବ। ଏଣୁ ସେତେବେଳେ ଔଷଧ ଦୋକାନକୁ ଯାଇ ଯେ କୌଣସି ଜିନିଷ କିଣିବି ବୋଲି ମାଗିଲି, ଦୋକାନୀ ସେ ସବୁ ଜିନିଷ ଦେଇ ତାର ମୂଲ୍ୟ ଆଉ ନେଲେ ନାହିଁ। ଏଣୁ ମାଗଣାରେ first aid ସାମଗ୍ରୀ ପାଇଗଲି।

ମୁଁ ଦିନେ ଛୁଟି ନେଇ ଚାରିବାଟିଆରୁ ଆସିଥିଲି। ଏଣୁ ତହିଁ ଆରଦିନ ସକାଳେ ଆଉ ଚାରବାଟିଆ ନଯାଇ ଅଫିସ ବେଳରେ ଆମ head officeକୁ ଗଲି। ବୁଢ଼ା ତେଲେଙ୍ଗା accountantକୁ ଯେମିତି first aid ସାମଗ୍ରୀତକ ଦେଇଛି, ବୁଢ଼ା ଛୁରି, କଇଁଚି, ବ୍ୟାଣ୍ଡେଜ୍, ତୁଳା, ବୋତଲ, ଅଠା ବ୍ୟାଣ୍ଡେଜ ଇତ୍ୟାଦି ଦେଖି ମୋ ଉପରେ ଅତ୍ୟନ୍ତ ଖୁସି ହେଇଗଲା ଯେମିତିକି ମୁଁ ତା'ର ନିଜ ପୁଅ।

କାର୍ତ୍ତିକ ଚନ୍ଦ୍ର ସର୍କେଲ୍‌କୁ ମୁଁ ଏବଂ ଅନ୍ୟମାନେ ମୋ ମାମୁଁ ଘର ଗାଁରେ ସମସ୍ତେ "ବାଇମାମା" ବୋଲି ଡ଼ାକୁ। ଏଇଟା ତାଙ୍କର ଛୋଟିଆ ନାଁ।

ତେଲେଙ୍ଗା ବୁଢ଼ା accountantର ମୋ ପ୍ରତି ଆଦର ଯତ୍ନ ଦେଖି ମୁଁ ମନେ ମନେ ବିଶେଷ ଆନନ୍ଦିତ ହେଲି। କାରଣ ମୋର ଉଦ୍ଦେଶ୍ୟ ଥିଲା ବାଇମାମାଙ୍କର appointment letter ଖଣ୍ଡକ ହାତକୁ ନବା।

ବୁଢ଼ା accountant ଉତ୍‌ଫୁଲ୍ଲ ହେଇ, ଆଣ ଡାକ୍ତରବାବୁଙ୍କ ଲାଗି କଫି ଆଣ, ସିଗାରେଟ୍ ଆଣ, ସେ ଫାଇଲ୍‌ଟା ଆଣ। ଏମିତି ହେଇ ବାଇମାମାଙ୍କର appointment letter ଖଣ୍ଡକ ହାତକୁ ଆସିଲା। ମୁଁ ସେତେବେଳେ ମନେ ମନେ ଭାବିଲି ଲାଞ୍ଚ ଦେଲେ କଣ ନହେଇ ପାରେ? ଲାଞ୍ଚ ନେଲେ ମଣିଷ କଣ ନକରିପାରେ? ମୁଁ ଏ ପର୍ଯ୍ୟନ୍ତ କାହାରିକୁ ଲାଞ୍ଚ ଦେଇନଥିଲି କି ଲାଞ୍ଚ ନେଇନଥିଲି। ଲାଞ୍ଚ ଦବା ଘଟଣା ଏଇ ହେଲା ପ୍ରଥମ। ଯା ହଉ ମୋର କାମ ହେଇଗଲା। ମୁଁ ବୁଢ଼ାକୁ ଗୋଟିଏ ନମସ୍କାର କରି head officeରୁ ବିଦାୟ ନେଇ ଘରକୁ ଆସିଲି। ମନେ ହେଲା ଯେମିତି ମୋର ନିଜ ଲାଗି appointment letter ଆଣିଲି। ପୁଣି ପୁଣି ମନେ ଭାବିଲି ବାଇମାମା ବଞ୍ଚିଯିବ। କିଛି ବୋଲି କିଛି ରୋଜଗାର ନାହିଁ, ବେକାର, କେତେ କଷ୍ଟରେ ଜୀବନ କଟୁଛି ତାଙ୍କର।

ଘରେ ପହଁଚି ବାଇମାମାଙ୍କୁ ତାଙ୍କର appointment letter ତାଙ୍କ ହାତରେ ଦେଲାରୁ ସେ ଯେ କେତେ ଉତ୍‌ଫୁଲ୍ଲ ହେଇ ଉଠିଲେ ଯେମିତି ଝାଉଁଳି ପଡ଼ିବା ଗଛ ମଳେ କିଏ ମନ୍ଦାଏ ପାଣି ଡାଳି ଦେଲା ପରି ଜଣାଗଲା। ବାଇମାମା ମୋର ମାମୁଁ ସମ୍ପର୍କୀୟ ହେଲେ ମଧ ମୁଁ ତାଙ୍କୁ ଥଟ୍ଟା ପରିହାସ କରେ। ମୋ ପରି ଅନ୍ୟମାନେ ମଧ ତାଙ୍କୁ ଥଟ୍ଟା ପରିହାସ କରନ୍ତି। ବାଇମାମା ମଧ ଖୁବ୍ ଥଟ୍ଟା ପରିହାସ ସହ୍ୟ କରନ୍ତି।

ମୁଁ, ବାଇମାମା ଉଭୟେ ଟ୍ରେନ୍‌ରେ ଯାଇ ଚାରବାଟିଆ ଷ୍ଟେସନ୍‌ରେ ଓହ୍ଲେଇ ଆମ ଡିପାର୍ଟମେଣ୍ଟ ଭ୍ୟାନ୍‌ରେ ଯାଇ ମୋ କ୍ୱାର୍ଟରରେ ପହଁଚିଲୁ। ମୁଁ ବାଇମାମାଙ୍କୁ ଲକ୍ଷ୍ୟ କରୁଥାଏ, ସେ ନିର୍ବିକାର। ସେ ଯେ ଗୋଟାଏ ନୂଆ ଜାଗାକୁ ଆସିଲେ, ଜାଗାଟାର ଆବହାୱା ଯେ କେବଳ ସାମରିକ ଆଜି ସେ ଏ ଜାଗାକୁ ନୂଆ ଦେଖିଲେ। ତାଙ୍କର ଆନନ୍ଦ ନାହିଁ କି ବିଷାଦ ନାହିଁ। ଚମତ୍କାରିତାର ଅନୁଭୂତି ନାହିଁ, ଭୟ ନାହିଁ, କିଛି ନାହିଁ। ସେ ଯେମିତି ଏମିତିଆ ଜାଗା କେତେଥର ଆଗରୁ ଦେଖିଛନ୍ତି, ତାଙ୍କର ଏହିପରି ମୁହଁର ଭାବ।

ବାଇମାମା ମୋର କ୍ୱାର୍ଟରରେ ଯାଇ ପୂର୍ବ ପରିଚିତ ଜାଗା ଭଳି ତାଙ୍କର ଜିନଷପତ୍ର ରଖା ରଖି କରି ବସିଲେ। ମୁଁ ତାଙ୍କୁ ପଚାରିଲି ଏ ଜାଗା କେମିତି ଲାଗୁଛି? ବାଇମାମା ଅଳ୍ପ ହସି ଦେଇ ମୁଣ୍ଡ ଟୁଙ୍ଗାରି ଦେଲେ, ଯା ସେତିକି, ଆଉ କିଛି କଥା ନାହିଁ। ମୁଁ ବାଇମାମାଙ୍କୁ କମ୍ପାଉଣ୍ଡର ଭାବରେ ପାଇ ମନେ ମନେ ବିଶେଷ ଆଶ୍ୱସ୍ତ ହେଲି। କାରଣ ବାଇମାମା ଭାରି ସଚ୍ଚୋଟ, କାର୍ଯ୍ୟଦକ୍ଷ, ନିର୍ଭୀକ, ନିର୍ବିକାର ଲୋକ। ଅନ୍ୟ କେହି କମ୍ପାଉଣ୍ଡର ଆସିଥିଲେ ଲୋଭରେ ପଡ଼ି କ'ଣ କରନ୍ତେ କହି ପାରୁନି। କାରଣ ମୋ ଡାକ୍ତରଖାନାରେ ସେତେବେଳେ ହଜାର ହଜାର ଟଙ୍କାର ଔଷଧ ଇତ୍ୟାଦି ପଡ଼ିଥାଏ, ତା'ଛଡ଼ା ଯନ୍ତ୍ରପାତି ଥାଏ। ପୁଣି ଭାବିଲି ଏଥର କଟକକୁ ରାତିବେଳେ ଖସିବାର ସୁବିଧା ହେଲା ବାଇମାମାଙ୍କୁ ଡାକ୍ତରଖାନା ଦାୟିତ୍ୱ ଦେଇ ମୁଁ କଟକ ଚାଲି ଆସିଲେ କିଛି ବିପଦ ନାହିଁ।

ବାଇମାମା କାମରେ ଲାଗିଲେ। ତାଙ୍କ ଲାଗି ଚାରବାଟିଆରେ ଚଳାଚଳ ହେବା ପାଇଁ ଖଣ୍ଡେ pass ଯୋଗାଡ଼ କରିଦେଲି। କାରଣ ସେଠି ସେତେବେଳେ ଗୋଟାଏ ଆଇନ୍ ଜାରି ହେଇଥାଏ, ଚାରବାଟିଆ ଭିତରେ ଯେଉଁମାନେ କାମ କରିବେ ସେମାନେ ପ୍ରତ୍ୟେକେ ଖଣ୍ଡେ

pass ରଖିଥିବେ । ସାମରିକ କର୍ତ୍ତୃପକ୍ଷ ଯେତେବେଳେ ଏବଂ ଯେଉଁଠି pass ଦେଖିବାକୁ ଚାହିଁବେ, ଦେଖେଇବାକୁ ହେବ । ନଚେତ୍ ଗୁଳି କରିଦେବେ । ଏମିତି ସେ ସମୟରେ ଅନେକ ଲୋକ ବିନା pass ରେ ଚାରବାଟିଆ ଭିତରେ ବୁଲାବୁଲି କରି ଗୁଳିବିଦ୍ଧ ହେଇ ମୃତ୍ୟୁ ବରଣ କରିଛନ୍ତି । ଏଣୁ ଯୁଆଡ଼େ ଯିବ pass ଖଣ୍ଡକ ସାଙ୍ଗରେ ରଖିଥିବ ନଚେତ୍ ମୃତ୍ୟୁର ଆଶଙ୍କା ।

ମୋର ସେତେବେଳେ ବିନୋଦ ବେହେରା ନାମକ ଜଣେ ଲୋକ ଅର୍ଦ୍ଦଳି ଥାଏ । ସେ ମୋର ରୋଷେଇ କରିବା, ଗାଧେଇବାକୁ ପାଣି ଦବା, ବଜାର ସଉଦା ଇତ୍ୟାଦି କାମ ସବୁ କରୁଥାଏ । ତାକୁ ମଧ୍ୟ କହିଲି ସେ ବାଇମାମାଙ୍କର ସବୁ କାମ କରିବ । କାରଣ ସେ ହଉଛନ୍ତି ଆମର କମ୍ପାଉଣ୍ଡର ବାବୁ । ବିନୋଦ ବେହେରା ମୋର ଏବଂ ବାଇମାମାଙ୍କର ସବୁ କାମ କଲା ।

ବାଇମାମା କାମରେ ଯୋଗ ଦେଲା ପରେ ମୁଁ କଟକକୁ ରାତି ବେଳା ଯେତିକି ପଳେଇ ଆସୁଥିଲି ତା'ଠାରୁ ବେଶି ବେଶି ଖସି ପଳେଇ ଆସିବାକୁ ଆରମ୍ଭ କଲି । କେତେବେଳେ ମୋର ଉପରିସ୍ଥ କର୍ମଚାରୀଙ୍କ ଅନୁମତି ନେଇ, କେତେବେଳେ ବିନାନୁମତିରେ କଟକକୁ ପଳେଇ ଆସେ । ଉପରିସ୍ଥ କର୍ମଚାରୀଙ୍କ ଅନୁମତିରେ ଦି'ଦିନ ଆସିଲେ, ପାଞ୍ଚଦିନ ବିନାନୁମତିରେ କଟକ ପଳେଇ ଆସେ । ବିନାନୁମତିରେ ପଳେଇ ଆସିବା କ୍ରମଶଃ ମୋର ଉପରିସ୍ଥ କର୍ମଚାରୀଙ୍କ ଦୃଷ୍ଟିରେ ପଡ଼ିଲା । ସେ ମୋ ଉପରେ କଡ଼ା ଦୃଷ୍ଟି ରଖିଲେ । ଯେମିତିକି ମୁଁ ବିନାନୁମତିରେ ଆଉ ଆସି ପାରିବି ନାହିଁ । କାରଣ ଦୁଇ, ତିନି ଥର ସେ ମୋତେ ମଧ୍ୟ ଛକି ଧଇଲେ । ଏଣୁ ମୁଁ ଟିକିଏ ସାବଧାନତାର ସହିତ ଚଳିଲି ।

ଚାରବାଟିଆ ଷ୍ଟେସନ୍‌ରୁ ତାଳଚେର ଗାଡ଼ିରେ କଟକ ପଳେଇ ଆସୁଥିଲି । ତାଳଚେର ଗାଡ଼ିରେ ଆସିବା ବନ୍ଦ କରି ସମସ୍ତେ ଯେତେବେଳେ ଚାରବାଟିଆ ଷ୍ଟେସନ୍‌କୁ ଚାଲିଯାନ୍ତି କଟକ ଯିବା ପାଇଁ ମୁଁ ସେତେବେଳେ ଏକା ସାଇକଲ୍‌ରେ କଟକକୁ ବାହାରିପଡେ । ଏମିତି କେତେଦିନ ସାଇକଲ୍‌ରେ ଯିବା ଆସିବା କରିବା ପରେ ଉପରିସ୍ଥ କର୍ମଚାରୀ ଜାଣି ପାରିଲେ ଯେ ମୁଁ କଟକ ସାଇକଲ୍‌ରେ ପଳଉଛି ଏବଂ ତହିଁ ଆରଦିନ ସକାଳେ ପୁଣି ଠିକ୍ ସମୟରେ ଯାଇ ଚାରିବାଟିଆରେ ପହଁଚୁଛି । ଉପରିସ୍ଥ କର୍ମଚାରୀ ଏକଥା ଜାଣିବାରୁ ସାଇକଲ୍‌ରେ କଟକ ଯିବା ଆସିବା ବନ୍ଦ କରି କଟକକୁ ବେଳେବେଳେ ଚାଲି ଚାଲି ଆସିବା ଆରମ୍ଭ କଲି । ତହିଁ ଆରଦିନ ସକାଳେ ଲୁଚି ଛପି ପୁଣି ତାଳଚେର ଗାଡ଼ିରେ ଚାରବାଟିଆ ପଳାଏ । ଯେମିତି ଉପରିସ୍ଥ କର୍ମଚାରୀଙ୍କ ଦୃଷ୍ଟିରେ ନପଡ଼େ । ଦିନେ କଟକ ଚାଲି ଚାଲି ଆସି ମହାନଦୀର ଖରାଦିନିଆ ରାସ୍ତାରେ ଆସୁଛି ଆଉ ଅଳ୍ପ ବାଟ ପରେ କଟକ ଆଡ଼ ନଈବନ୍ଧକୁ ଉଠିବି । ଏଇ ସମୟରେ ପଛଆଡୁ ଗୋଟାଏ ଆଲୁଅ ପଡ଼ିଲା । ଭାବିଲି କାର୍‌ଟାଏ ଆସୁଛି ପୁଣି ଭାବିଲି ମୋର ଉପରିସ୍ଥ କର୍ମଚାରୀ ମୋର ପିଛା ଧରି କାର୍‌ରେ ଆସୁଛନ୍ତି କି ? ଭାବିଲି ଲୁଚିଯିବି । ଲୁଚିବି କେଉଁଠି ? ଖରାଦିନିଆ ରାସ୍ତାର ଉଭୟ ପଟେ ଖୋଲା, କେବଳ ନଈବାଲି, ଲୁଚିବାର ଜାଗା ନାହିଁ । ଏଣୁ ଅନ୍ୟୋନ୍ୟପାୟ ହେଇ ଗୋଟାଏ ଜାଗାରେ ରାସ୍ତାକଡ଼ରେ ଠିଆ ହେଇଗଲି । ମୋ ସାମନା ଦେଇ ଗୋଟାଏ ଜିପ୍ ଚାଲିଗଲା । ମୋତେ ଜଣାଗଲା ମୋର ଉପରିସ୍ଥ କର୍ମଚାରୀ ସେ ଜିପ୍‌ରେ କଟକ ଗଲେ । ମନେ ମନେ ଭାରି ଭୀତ ଏବଂ ଲଜ୍ଜିତ ହେଲି କାରଣ ଉପରିସ୍ଥ କର୍ମଚାରୀ କଣ ଭାବିବେ ?

ପ୍ରକୃତରେ ତହିଁ ଆରଦିନ ସକାଳେ ଟ୍ରେନ୍ ଯୋଗେ ଲୁଚିଛପି ଯାଇ ଚାରିବାଟିଆରେ ମୋର ଡ଼ାକ୍ତରଖାନାରେ ପହଁଚିବାର କିଛି ସମୟ ପରେ ମୋତେ ଉପରିସ୍ଥ କର୍ମଚାରୀ ତାଙ୍କ ଅଫିସକୁ ଡକାଇ ପଠେଇଲେ । ମୁଁ ଯାଇ ପହଁଚିବାରୁ ସେ ମୋତେ ଦେଖି ହସି ପକେଇ ବଙ୍ଗଳା ଭାଷାରେ କହିଲେ କାରଣ ସେ ପୂର୍ବ ବଙ୍ଗର ଲୋକ ଥିଲେ, ଯା କହିଲେ ତାକୁ ଓଡ଼ିଆ ଭାଷାରେ ଅନୁବାଦ କରି ମୁଁ ଲେଖୁଛି, ଯଥା ମୁଁ 'ବିଲ୍ୱ ମଙ୍ଗଳ' ପଢ଼ିଥିଲି ଏବେ ଆପଣଙ୍କୁ ଦେଖିଲି । ଆପଣ ଚାଲି ଚାଲି କଟକ ପଳଉଛନ୍ତି, ଆପଣଙ୍କୁ ପାରି ହବନି, ଆଉ ଆପଣଙ୍କୁ କିଛି କହିବିନି, ଆପଣଙ୍କ ଇଚ୍ଛା ଆପଣ ଯା କରନ୍ତୁ, ଆପଣଙ୍କ ଦାୟିତ୍ୱ ଆପଣ ବୁଝନ୍ତୁ ।

ମୁଁ ଏତକ ତାଙ୍କ ମୁହଁରୁ ଶୁଣି ନିରବରେ ଫେରି ଆସିଲି । କିଛି ଉତ୍ତର ଦେଲି ନାହିଁ କିମ୍ବା ମିଛ କହି ନିଜର ଦୋଷକୁ ଘୋଡ଼େଇବାକୁ ଚେଷ୍ଟା କଲି ନାହିଁ । କିନ୍ତୁ ପରେ ଲୁଚି ଛପି ଟ୍ରେନ୍‌ରେ କଟକ ଯିବା ଆସିବା କଲି । ଉପରିସ୍ଥ କର୍ମଚାରୀ ମୋତେ ଆଉ ବେଶି କିଛି କହିଲେ ନାହିଁ । ଏଇ ଟ୍ରେନ୍ ବାଟରେ କଟକ ଯିବା ଆସିବା କରୁ କରୁ ଦିନେ ବଡ଼ ବିପଦରେ ପଡ଼ିଲି । ସେ ବିପଦର କଥା ମୁଁ ଭୁଲି ନାହିଁ ।

ବିପଦ ହେଲା, ସେତେବେଳେ ମହାନଦୀରେ ପ୍ରବଳ ବନ୍ୟା । କଟକକୁ ସାଇକଲ୍‌ରେ ଯିବା ଆସିବା ବନ୍ଦ, ଚାଲିକରି ଯିବା ଆସିବା ବନ୍ଦ । ଏକମାତ୍ର ଟ୍ରେନ୍‌ରେ ଯିବା ଆସିବା ସମ୍ଭବ । ଦିନେ ସନ୍ଧ୍ୟା ପରେ ଟ୍ରେନ୍ ଯୋଗେ କଟକ ପଳେଇ ଆସିଥାଏ, ଭାବିଥାଏ ତହିଁ ଆରଦିନ ସକାଳେ ଟ୍ରେନ୍ ଯୋଗେ ଚାରବାଟିଆ ପଳେଇବି । ରାତିରେ ନିଦ ଭାଙ୍ଗିଲାରୁ ମୁଣ୍ଡ ଉପରେ ଥୁଆ ହେଇଥିବା ଘଡ଼ିକୁ ଦେଖିଲି ୨ଟା ବାଜିଛି । ଭାବିଲି ଅନେକ ରାତି ଅଛି । ପୁଣି ଶୋଇଲି, ଯେତେବେଳେ ନିଦ ଭାଙ୍ଗେ ଦେଖିଲି ଘଡ଼ି କଣ୍ଟା ସେଇ ୨ଟାରେ ରହିଛି । ଏଣେ ଖରା ପଡ଼ିଲାଣି । ତାଳଚେର ଗାଡ଼ି କଟକ ଛାଡ଼ିଯିବାର ବେଳ ଗଡ଼ିଗଲାଣି । ତାଳଚେର ଗାଡ଼ି ଚାରବାଟିଆରେ ପହଁଚି ସାରିବଣି । କଣ କରିବି ? କେମିତି ଚାରବାଟିଆ ଯିବି ? ଅତର୍ଛା ହେଇ ପ୍ୟାଣ୍ଟ, ସାର୍ଟ ପିନ୍ଧି ସାଇକଲ୍ ଧରି କଟକର ଗଡ଼ଗଡ଼ିଆ ଘାଟକୁ ଦୌଡ଼ିଲି । ଭାବିଲି ଏଠୁ କୌଣସି ଡ଼ଙ୍ଗା ଯଦି ଚୌଦ୍ୱାର ଯାଉଥାଏ । ଡଙ୍ଗାର ପତ୍ତା ନାହିଁ । ନଈରେ ବନ୍ୟା ଦେଖି ଚମକି ପଡ଼ିଲି । କି କରାଳ ମୂର୍ତ୍ତି ! କି ସ୍ରୋତ ! ଭାବିଲି ନଈକୁ ଡ଼େଇଁ ପଡ଼ି ପହଁରି ପହଁରି ଯିବି । ପୁଣି ଭାବିଲି ଏ କେବଳ ମୃତ୍ୟୁକୁ ବରଣ କରିବା କଥା । ସେଠୁଁ ହତାଶ ହେଇ ଫେରି ପୁଣି କଟକ ଷ୍ଟେସନ୍‌କୁ ଦୌଡ଼ିଲି । ଭାବିଲି ତାଳଚେର ଟ୍ରେନ୍ ଯଦି ଯାଇ ନଥିବ । ଦିନେ ଦିନେ ତାଳଚେର ଟ୍ରେନ୍ ଡ଼େରିରେ ଆସେ । କଟକ ଷ୍ଟେସନ୍‌କୁ ଯାଇ ଦେଖେ ତାଳଚେର ଗାଡ଼ି ଯାଇ ସାରିଛି । ଅତିଶୟ ହତାଶ ଲାଗିଲା, କଣ କରିବି ? ଦେଖିଲି କେତେଗୁଡାଏ ଆମେରିକାନ୍ ଏବଂ ବ୍ରିଟିଶ ମିଲିଟାରୀ ଲୋକ ଷ୍ଟେସନ୍‌ରେ ବସିଛନ୍ତି, ସେମାନଙ୍କୁ ମୁଁ ଚାରବାଟିଆରେ ଦେଖିଛି । ଭାବିଲି ଏମାନଙ୍କ ଲାଗି ଯଦି ଚାରବାଟିଆ ଯିବାର କୌଣସି ସୁବିଧା ଥିବ, ଯାଙ୍କରି ସାଙ୍ଗରେ ଚାଲିଯିବି । ସେମାନଙ୍କ ପାଖକୁ ଯାଇ ତାଙ୍କୁ ଇଂରେଜୀରେ ପଚାରିଲି କୁଆଡ଼େ ଯିବ ? କେତେକ ଉତ୍ତର ଦେଲେ ଚାରବାଟିଆ ଯିବୁ ।

ମୁଁ କହିଲି ତାଳଚେର ଗାଡ଼ି ଯାଇ ସାରିଲାଣି ଆଉ ଗାଡ଼ି ନାହିଁ । ସେମାନେ କହିଲେ ସତେ ? ସାଙ୍ଗେ ସାଙ୍ଗେ ଧଡ଼ଧାଡ଼ ହେଇ ଉଠି ଷ୍ଟେସନ୍ ମାଷ୍ଟର ଅଫିସ୍ ଭିତରେ ପଶି ତାଙ୍କୁ ପଚାରିଲେ ତାଳଚେର ଗାଡ଼ି ଗଲାଣି ? ଆମେ ଚାରବାଟିଆ କେମିତି ଯିବୁ ? ଷ୍ଟେସନ୍ ମାଷ୍ଟର ସେମାନଙ୍କୁ ଦେଖି ଭୟଭୀତ ହେଇ କହିଲେ ଗୋଟାଏ ମାଲ୍‌ଗାଡ଼ି ଆସୁଛି । ମୁଁ ସେଇଥିରେ ଆପଣମାନଙ୍କୁ ପଠେଇଦେବି । ଆପଣମାନେ ଚାରବାଟିଆକୁ ଫୋନ୍‌ରେ ଜଣେଇ ଦିଅନ୍ତୁ 'କପିଳାସ ରୋଡ଼' ଷ୍ଟେସନ୍‌କୁ ଗୋଟାଏ ମିଲିଟାରୀ ଭ୍ୟାନ୍ ପଠେଇବାକୁ । ଆପଣମାନେ 'କପିଳାସ ରୋଡ଼' ଷ୍ଟେସନ୍‌ରେ ଓଲେହି ସେଇ ଭ୍ୟାନ୍‌ରେ ଚାରବାଟିଆ ଚାଲି ଯିବେ ।

ଏକଥା ଶୁଣି ମୋ ଛାତିରେ ଟିକିଏ ସାହାସ ପାଇଲି ଯେ ଏମାନଙ୍କ ସାଙ୍ଗରେ ମୁଁ ଚାରବାଟିଆ ଯାଇ ପାରିବି । ଏଣୁ ସେମାନଙ୍କୁ ପଚାରିଲି ମୁଁ ଆପଣମାନଙ୍କ ସାଙ୍ଗରେ ଚାରବାଟିଆ ଯାଇ ପାରେକି ?

ସେମାନେ ଅତି ଆଗ୍ରହରେ ଉତ୍ତର ଦେଲେ ହଁ ହଁ ଯାଇ ପାରିବ । କିଛି ସମୟ ପରେ ଗୋଟାଏ ମାଲ୍‌ଗାଡି ଆସିଲା । ଆମେମାନେ ସେଥିରେ ଯାଇ 'କପିଳାସ ରୋଡ଼' ଷ୍ଟେସନ୍‌ରେ ଓଲେହି, ମିଲିଟାରୀ ଭ୍ୟାନ୍‌ରେ ଯାଇ ଚାରବାଟିଆରେ ପହଁଚିଲୁ । ମୁଁ ଯାଇ ପ୍ରଥମେ ଆମର ହେଡ଼କ୍ଲର୍କକୁ ଭେଟିଲାରୁ ସେ କହିଲେ ତୁମକୁ ଗୋଟାଏ explanation ଉପରିସ୍ଥ କର୍ମଚାରୀ ମାଗିଛନ୍ତି, ଦେଖିବ ଯା ତୁମ ଡାକ୍ତରଖାନାରେ ଥୁଆ ହେଇଛି ।

ମୁଁ ଯାଇ ଡାକ୍ତରଖାନାରେ ଦେଖେ ମୋ ଟେବୁଲ୍ ଉପରେ ଗୋଟାଏ ଉପରିସ୍ଥ କର୍ମଚାରୀଙ୍କ ଚିଠି ଥୁଆ

ହେଉଛି । ସେଥିରେ କୈଫିୟତ୍ ମଗା ହେଉଛି ମୁଁ କାହିଁକି ଆଜି ସକାଳେ ଡାକ୍ତରଖାନାରେ ନଥିଲି, କୈଫିୟତ୍ ଦିଅ । ମୁଁ କେତେକ କଥା ଏଣୁ ତେଣୁ ଲେଖି ଗୋଟାଏ କୈଫିୟତ୍ ଦେଲି । ସେ କୁଆଡ଼େ ଗଲା କିଛି ହେଲା ନାହିଁ ।

ମୋର ତ ସବୁବେଳେ ଅର୍ଥାଭାବ ଲାଗି ରହିଥିଲା । ଚାରବାଟିଆ ଚାକିରିରେ ମୋର ଆଉ ଅର୍ଥାଭାବ ରହିଲା ନାହିଁ । ବାବାଙ୍କ ଅମଳର ଯା' ଧାର ଥିଲା କେତେକ ଶୁଝିବାକୁ ଆରମ୍ଭ କଲି । କିଛି ଆଉ ଅଭାବ ରହିଲା ନାହିଁ । କିନ୍ତୁ ଅଭାବ ବେଳେ ଯେମିତି ଭାବେ ଏଇଟା ହେଲା ନାହିଁ, ସେଇଟା ହେଲା ନାହିଁ, କେମିତି ହବ, କଣ କରିବି ? ଟଙ୍କା କାହିଁ ? କେଉଁଠୁ ଆଣିବି । ଏଇ ଚିନ୍ତା ମନ ଭିତରେ ଯେପରି ଦୃଢ଼ ଭାବରେ ରହି ଯାଇଥିଲା, ଚାରବାଟିଆ ଚାକିରି ବେଳେ ଯେତେବେଳେ କୌଣସି ଅଭାବ ରହିଲା ନାହିଁ, ସେତେବେଳେ ମଧ୍ୟ ଦିନେ ଦିନେ ଏଇ ଚିନ୍ତା ମନ ଭିତରେ ଅକାରଣେ ଦେଖା ଦେଲେ ମୁଁ ଭାବେ ସବୁ ତ ଅଛି କାହିଁକି ଏମିତି ଜଣା ଯାଉଛି ? ପୁଣି ଭାବେ ଅଭାବ ବେଳର ଆତଙ୍କ ଏ ପର୍ଯ୍ୟନ୍ତ ଦୂରୀଭୂତ ହେଇ ନାହିଁ । ଏଣୁ ଏମିତି ଜଣା ଯାଉଛି । ଘର ବେଶ୍ ସ୍ୱଚ୍ଛଳ ଭାବରେ ଚଳିଲା । କେତେକ ଅଳଙ୍କାର ଯା ଯେଉଁଠି ବନ୍ଧା ପଡ଼ିଥିଲା ତାକୁ ମୁକୁଳେଇ ଆଣିଲି । ମୋର ନିଜର ସ୍ୱାସ୍ଥ୍ୟ ଅନେକ ବଦଳିଗଲା । ବାବାଙ୍କର ମୃତ୍ୟୁ ପରେ ମୋର ଯେଉଁ ସ୍ୱାସ୍ଥ୍ୟହାନି ଘଟିଥିଲା ତାର ପୂରଣ ହେଇଗଲା ।

# ଜୀବନ ପୁଳିନେ
# (ଶେଷ ଅଧ୍ୟାୟ)

(ସୂଚନା:-ବାପାଙ୍କର ଶାରୀରିକ ଅସୁସ୍ଥତା ଯୋଗୁଁ ୧୯୭୮ ମସିହା ପରେ ତାଙ୍କର ଆତ୍ମଜୀବନୀ ଲେଖା ଆଉ ଆଗେଇ ପାରିଲା ନାହିଁ। ସେ ତାଙ୍କର ଆତ୍ମଜୀବନୀ ଅତି ନିଖୁଣ ଭାବରେ ୧୯୦୭ ମସିହାରୁ ୧୯୪୦-୪୨ ମସିହା ପର୍ଯ୍ୟନ୍ତ ଲେଖି ଯାଇଛନ୍ତି। ଏହା ପରର ଘଟଣାବଳୀ ମୁଁ ଯାହା ବାପାଙ୍କଠାରୁ ଶୁଣିଛି, ନିଜେ ଦେଖିଛି ଓ ଅନ୍ୟାନ୍ୟ ଆତ୍ମୀୟଙ୍କଠାରୁ ଶୁଣିଛି, ତାକୁ ଆଧାର କରି ସଂକ୍ଷିପ୍ତ ଭାବରେ ଲେଖିବାକୁ ଚେଷ୍ଟା କରୁଛି।

୧୯୪୦-୪୨ ମସିହା ବେଳକୁ ଦ୍ୱିତୀୟ ବିଶ୍ୱଯୁଦ୍ଧର ଘନଘଟା ଚାଲିଥାଏ। ବାପାଙ୍କର ଅଦମ୍ୟ ସାହସ, ଦେଶ ବିଦେଶ ବୁଲି ଗୋଟିଏ ଭ୍ରମଣ କାହାଣୀ ଲେଖିବାର ଇଚ୍ଛା ଥିଲା। କିନ୍ତୁ ପରିବାରର ଉତ୍କଟ ଆର୍ଥିକ ସଙ୍କଟ ଯୋଗୁଁ ସେତେବେଳେ ଚାରବାଟିଆରେ ଥିବା ଇଂରେଜମାନଙ୍କର ଆଲାଏଡ୍ ଫୋର୍ସେସ୍ ବାୟୁସେନା ଶିବିରରେ ଯୁଦ୍ଧ ଚାକିରୀରେ ସେ ଯୋଗ ଦେଇଥିଲେ। ସେଇ ସମୟରେ ୧୯୪୪ ମସିହାରେ ମୋର ଜନ୍ମ ଖୋର୍ଦ୍ଧାରେ, ଅଜା ଶ୍ରୀ ପୁଳିନ ବିହାରୀ ଘୋଷଙ୍କ ଘରେ। ଅଜା ସେ ସମୟରେ ଇଷ୍ଟ ବେଙ୍ଗଲ୍‌ର(ବର୍ତ୍ତମାନ ବାଂଲାଦେଶ)ଖୁଲନା ଜିଲ୍ଲାର ନଡ଼ାଇଲ/ମହିଷାଖୋଲ ଗ୍ରାମରୁ ଆସି ଓଡ଼ିଶାର ପୁରୀ ଜିଲ୍ଲାରେ ଓଭରସିଅର ଭାବେ ଚାକିରି କରୁଥିଲେ। ମୋର ମା' ସୁନିଲା ରାୟଙ୍କ ଜନ୍ମ ୧୯୨୦ ମସିହାରେ ନିମାପଡ଼ାରେ ହୋଇଥିଲା। ଚାକିରୀ ଶେଷ ହେବା ପରେ ଅଜା ଖୋର୍ଦ୍ଧାରେ ସ୍ଥାୟୀ ଭାବରେ ବସବାସ କରୁଥିଲେ।

୧୯୪୫ ମସିହା ବେଳକୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ଶେଷ ହେବା ପରେ ବାପାଙ୍କର ଚାରବାଟିଆ ଚାକିରୀ ଶେଷ ହୁଏ। ପୁଣି ସେଇ ଆର୍ଥିକ ଦୁରବସ୍ଥା। ସେ ଯାହାହେଉ, କିଛିଦିନ ପରେ ତାଙ୍କୁ କଟକର କ୍ରାଏଷ୍ଟ କଲିଜିଏଟ୍ ସ୍କୁଲରେ ଡ୍ରଇଂ ଟିଚର ହିସାବରେ ଚାକିରୀ ମିଳେ। ସେଇ ସମୟରେ ଆମେ ସବୁ କଟକର ଥୋରିଆ ସାହିର ପୂର୍ବବର୍ଣ୍ଣିତ ଭଡ଼ା ଘରେ ରହୁଥିଲୁ। କଲେଜିଏଟ୍ ସ୍କୁଲ ଚାକିରୀ କାଳରେ ବାପା ସେଣ୍ଟ ଜନ୍‌ସ ଆମ୍ବୁଲାନ୍‌ସ ସଂସ୍ଥାରେ ରହି ଛାତ୍ରମାନଙ୍କ ସହିତ ବିଭିନ୍ନ ସାମାଜିକ କାର୍ଯ୍ୟ କରୁଥିଲେ। ସେତେବେଳର ଓଡ଼ିଶାର ପ୍ରଥମ ଗଭର୍ଣ୍ଣର୍ ସାର୍ ହଥର୍ଣ୍ଣ ଲୁଇସ୍ ସେ ସଂସ୍ଥାର ମୁଖ୍ୟ ଥିଲେ। ଯାହାଙ୍କ ନାମରେ ଭୁବନେଶ୍ୱରର ଲୁଇସ୍ ରୋଡ୍‌ର ନାମକରଣ ହୋଇଥିଲା। ତାଙ୍କ ସହିତ ବାପାଙ୍କର ଫଟୋଟି ଛପା ହୋଇଛି।

୧୯୪୬ ମସିହାରେ ମୋର ସାନ ଭଉଣୀ ସିପ୍ରାର ଜନ୍ମ ଓ ୧୯୪୮ ମସିହାରେ ସାନଭାଇ ମିହିରର ଜନ୍ମ କଟକରେ ସେଇ ଥୋରିଆ ସାହି ଘରେ ହୋଇଥିଲା। କେନ୍ଦ୍ରାପଡ଼ା ହାଇସ୍କୁଲର ଡ୍ରଇଂ ଟିଚର୍ ଚାକିରୀ, ଯୁଦ୍ଧ ଚାକିରୀ ଓ କଟକରେ କଲିଜିଏଟ୍ ସ୍କୁଲ ଚାକିରୀ ସମୟରେ ନାନା ରକମର ପାରିବାରିବ ଝଞ୍ଜାଳ ଓ ଆର୍ଥିକ ଅନାଟନ ସତ୍ତ୍ୱେ ବାପା ସାହିତ୍ୟ ସାଧନାରୁ ଓହରି ନଥିଲେ। ସେ ସମୟରେ ଲବ୍ଧପ୍ରତିଷ୍ଠିତ ଲେଖକ ଓ କଳାକାର ଯଥା ଡଃ ମାୟାଧର ମାନସିଂହ, ଶ୍ରୀ ବାଳକୃଷ୍ଣ କର, ଶିଳ୍ପୀ ବିମ୍ବାଧର ବର୍ମା ଓ ତାଙ୍କ ଭାଇ ଲେଖକ ଜ୍ଞାନୀନ୍ଦ୍ର ବର୍ମା, ଶ୍ରୀ ଗୋପିନାଥ ମହାନ୍ତି, ଶ୍ରୀ ରାଧାମୋହନ ଗଡ଼ନାୟକ ଓ ଅନ୍ୟାନ୍ୟ ସମସାମୟିକ ଲେଖକମାନଙ୍କ ସହିତ ସେ ସୁସମ୍ପର୍କ ରଖିଥିଲେ। ଅନ୍ୟମାନଙ୍କ ମଧ୍ୟରୁ ପିଲାଦିନେ ମୁଁ ବାପାଙ୍କ ସହିତ ଡ଼ଃ ମାୟାଧର ମାନସିଂହ, ଶିଳ୍ପୀ ବିମ୍ବାଧର ବର୍ମା, ଶ୍ରୀ ଗୋପିନାଥ ମହାନ୍ତି ଓ ଶ୍ରୀ ରାଧାମୋହନ ଗଡ଼ନାୟକଙ୍କ ଘରକୁ ଯିବାର ମନେଅଛି।

ସେତେବେଳର ସାହିତ୍ୟିକ ଓ କଳାକାରମାନଙ୍କ ମଧ୍ୟରେ କି ଆତ୍ମୀୟତା ଓ ସୌହାର୍ଦ୍ଦ୍ୟପୂର୍ଣ୍ଣ ସମ୍ପର୍କ ଥିଲା ତାହା ନଦେଖିଥିବା ବ୍ୟକ୍ତି ବିଶ୍ୱାସ କରି ପାରିବେନି।

ବାପାଙ୍କର ପ୍ରଥମ ଗଳ୍ପ ସଙ୍କଳନ "ଛାୟାପଥ" ୧୯୪୬ ମସିହାରେ ପ୍ରକାଶିତ ହୋଇଥିଲା। ତା'ର

ମୁଖବନ୍ଧ ଲେଖିଥିଲେ ଡଃ ମାୟାଧର ମାନସିଂହ । ପ୍ରଚ୍ଛଦପଟରେ ଛବି ବାପା ନିଜେ ଆଙ୍କିଥିଲେ । ପ୍ରକାଶକ ଥିଲେ ଭାରତୀ ବିହାର ପ୍ରେସ୍, କଲେଜ ଗେଟ୍, ରେଭେନ୍‌ଶା କଲେଜ୍ ସାମ୍ନା, ଦାମ୍ ଥିଲା ବାରଅଣା । ଏହି ଗଳ୍ପ ସଙ୍କଳନରେ ପ୍ରକାଶିତ ଗଳ୍ପଗୁଡ଼ିକ ପୂର୍ବରୁ ଡ଼ଃ ମାୟାଧର ମାନସିଂହଙ୍କ ଦ୍ୱାରା ସମ୍ପାଦିତ ପତ୍ରିକା 'ଶଙ୍ଖ' ଓ 'ଆରତି'ରେ ପ୍ରକାଶିତ ହୋଇଥିଲା ।

ଖ୍ରୀଷ୍ଟ କଲିଜିଏଟ୍ ସ୍କୁଲରେ ଚାକିରୀ କରୁଥିବା ବେଳେ ବାପା ସରକାରୀ ଚାକିରୀ ପାଇଲେ ଓ ଅବିଭକ୍ତ କଟକ ଜିଲ୍ଲାର କେନ୍ଦ୍ରାପଡ଼ାରେ ମ୍ୟାଲେରିଆ ଅଫିସର ଭାବରେ ଅବସ୍ଥାପିତ ହେଲେ । ସେହି ସମୟରେ (୧୯୪୫-୪୬ ମସିହା) 'ଅମଣିଷ' ଉପନ୍ୟାସ ଲେଖିଥିଲେ । ଏହି ଉପନ୍ୟାସଟି ୧୯୬୩ ମସିହାରେ ଦାଶରଥୀ ପୁସ୍ତକାଳୟ, ବାଲୁବଜାର ଦ୍ୱାରା ପ୍ରକାଶିତ ହେଲା । ଏହାର ମୁଖବନ୍ଧ ଲେଖିଥିଲେ ଅଧ୍ୟାପକ ଶ୍ୟାମସୁନ୍ଦର ମିଶ୍ର । ପ୍ରଚ୍ଛଦପଟ ଆଙ୍କିଥିଲେ ଶ୍ରୀଯୁକ୍ତ ଗୋପାଳ କାନୁନ୍‌ଗୋ । ମୂଲ୍ୟଥିଲା-ଟଙ୍କା୩(ତିନିଟଙ୍କା ଆଠଅଣା ମାତ୍ର) । ୧୯୭୨ ମସିହାରେ ତାଙ୍କର ଦ୍ୱିତୀୟ ଗଳ୍ପ ସଙ୍କଳନ 'ବେଲିଆ' ପ୍ରକାଶିତ ହେଲା, ପ୍ରକାଶକ ଜେ ମହାପାତ୍ର ଏଣ୍ଡ କୋ:, ଛାତ୍ରସାଥୀ ଅଫିସ୍, କଟକ । ମୂଲ୍ୟ ଥିଲା ୭ ଟଙ୍କା । ଏହି ଗଳ୍ପ ସଂକଳନ ପ୍ରକାଶ ପାଇବାରେ ଝିଅ ସିପ୍ରା ଓ ପୁଅ ମିହିରଙ୍କର ଉତ୍ସାହ ଓ ପରିଶ୍ରମ ବିଷୟରେ ବାପା ତାଙ୍କ ମୁଖବନ୍ଧରେ ଲେଖିଛନ୍ତି । ଏହି ବହିଟି ବନ୍ଧୁ ଫତୁରାନନ୍ଦଙ୍କୁ ଉତ୍ସର୍ଗ କରାଯାଇଥିଲା । ୧୯୭୩ ମସିହାରେ ବାପାଙ୍କର ପୁରୀ କୁଷ୍ଠରୋଗୀଙ୍କର ଦୁଃଖ ଦୁର୍ଦ୍ଦଶା ଉପରେ ଆଧାରିତ ଉପନ୍ୟାସ 'ରାସ୍ତାକଡ଼ର ପ୍ରାଣୀ' ପ୍ରକାଶ ପାଇଲା । ଏହାର ପ୍ରକାଶକ ଥିଲେ ଜେ. ମହାପାତ୍ର ଆଣ୍ଡ କୋ, ନିମଚଉଡ଼ି, କଟକ-୨ । ମୂଲ୍ୟଥିଲା ୪ଟଙ୍କା । ପରବର୍ତ୍ତୀ ସମୟରେ ବାପାଙ୍କର ବନ୍ଧୁ ଡ଼ାଃ କାଳୀପଦ ଦାସ, ମଙ୍ଗଳାବାଗ, କଟକ, ଏହାକୁ ବଙ୍ଗଳାରେ ଅନୁବାଦ କରିଥିଲେ । ଏହି ଅନୁବାଦଟି ପ୍ରକାଶିତ ହୋଇ ପାରିନାହିଁ । ୧୯୬୦ ମସିହାରୁ ୧୯୭୫ ମସିହା ମଧ୍ୟରେ ବାପା ତାଙ୍କର ସ୍ୱରଚିତ କବିତା ଅନେକ ଥର ଆକାଶବାଣୀ କଟକ କେନ୍ଦ୍ରରୁ ଆବୃତ୍ତି କରିଥିଲେ । 'ପଲ୍ଲିଶ୍ରୀ' କବିତାଟି ସେଥିରୁ ଗୋଟିଏ ।

ସବୁ ଜଞ୍ଜାଳ ଆର୍ଥିକ ଅନାଟନ ଓ ସମସ୍ୟା ଭିତରେ ଥାଇ ମଧ୍ୟ ସେ ଅବିରତ ଭାବେ ଗଳ୍ପ କବିତା ଆଦି ଲେଖିଥିଲେ । ସେ ସବୁ ବିଭିନ୍ନ ପତ୍ରପତ୍ରିକା ଯଥା- 'ସହକାର', 'ଝଙ୍କାର', 'ଆସନ୍ତାକାଲି', 'ଡଗର', 'ମୋ ଦେଶ', 'ବେଳା', 'ଇଉରେକା' 'ସାଧନା', 'ନବଜୀବନ', 'ମାତୃଭୂମି', 'ପ୍ରଜାତନ୍ତ', 'ବନଫୁଲ', 'ଅଞ୍ଜଳି', 'ଶ୍ଳେଷ' ଓ 'ଅଧୁନା'ରେ ନିୟମିତ ଭାବେ ପ୍ରକାଶିତ ହୋଇଥିଲା । ତାଙ୍କର ଅନ୍ୟ ଏକ କବିତା ସଙ୍କଳନ 'ପୁରବୀ'ର ପ୍ରଚ୍ଛଦପଟ ଛବି ସେ ନିଜେ ଆଙ୍କିଥିଲେ । ଦୁର୍ଭାଗ୍ୟକୁ 'ପୁରବୀ'ର ପାଣ୍ଡୁଲିପି 'ସାରସ୍ୱତ ପ୍ରେସ କଟକ' ପାଖକୁ ପଠାଇଥିଲେ, ତାହା ପ୍ରକାଶିତ ହୋଇ ପାରି ନଥିଲା କି ପାଣ୍ଡୁଲିପି ମଧ୍ୟ ଫେରି ନଥିଲା । କେବଳ ତା'ର ପ୍ରଚ୍ଛଦପଟ ଛବିଟି ଅଛି ।

ଲେଖାଲେଖି ଛଡ଼ା ପିଲାଦିନରୁ ସେ ମୂର୍ତ୍ତି ଗଢ଼ିବା, ଛବି ଆଙ୍କିବା, ନିୟମିତ ବ୍ୟାୟାମ କରି ବଳିଷ୍ଠ ଶରୀର ଗଠନ କରିବା ଓ ଫୁଟ୍‌ବଲ୍ ଖେଳିବାରେ ଆଗ୍ରହୀ ଥିଲେ । ଜୀବନର ପରବର୍ତ୍ତୀ ସମୟରେ ସେ କହିବାର ଶୁଣିଛି- ତାଙ୍କର ତିନୋଟି ବିଷୟରେ ବିଶେଷ ଆଗ୍ରହ ଥିଲା । ଫୁଟ୍‌ବଲ୍ ଖେଳିବା, ଲେଖାଲେଖି କରିବା ଓ ସିନେମା ଦେଖିବା । ତାଙ୍କର ଆଉ ଗୋଟିଏ ସଉକ ଥିଲା ବିଭିନ୍ନ ରକମର ଚଢ଼େଇ ରଖି ସେମାନଙ୍କ ଯତ୍ନ ନେବା । ଆମ ଘରେ ଶୁଆ, ଶାରୀ, ବଣି, ହରବା, କୁମ୍ଭାଟୁଆ, ପେଚା ଏପରିକି ଡାମରା କାଉ ମଧ୍ୟ ଥିଲେ । ଶେଷ ଜୀବନରେ ସେ ହରବା ଓ ବଜେରିଗାର (ଲଭ୍ ବାର୍ଡ଼) ରଖି ସେମାନଙ୍କର ଯତ୍ନ ନେଉଥିଲେ ।

କେନ୍ଦ୍ରାପଡ଼ା ଓ ଯାଜପୁରରେ କିଛି କାଳ ମ୍ୟାଲେରିଆ ଅଫିସର୍ ଚାକିରୀ ପରେ ସେ ପୁଣି ମେଡ଼ିକାଲ ଅଫିସର୍ ଭାବେ ଢେଙ୍କାନାଳ ଜିଲ୍ଲାର ରାଷୋଳ, ହିନ୍ଦୋଳ, ବଲ୍ଲକୋଟ ଓ କାମାକ୍ଷାନଗର ପ୍ରଭୃତି ସ୍ଥାନରେ ଅବସ୍ଥାପିତ ହୋଇଥିଲେ । କାମାକ୍ଷାନଗରରେ ଥିବା

ସମୟରେ ସେ ଅସୁସ୍ଥ ହୋଇ ପଡ଼ିଲେ। ଜୀବନସାରା ନାନା ଜଞ୍ଜାଳ ଓ କଷ୍ଟ ସହିଥିବା କାରଣରୁ ତାହା ହୋଇ ପାରିଥାଏ। ସେ କହିବାର ଶୁଣିଛି ଯେ ତାଙ୍କର ମେଲାନ୍‌କୋଲିଆ ବା ଆଂଜାଇଟି ନ୍ୟୁରୋସିସ୍ ହୋଇଥିଲା। ସେତେବେଳେ ମେଡ଼ିକାଲ ବୋର୍ଡ଼ ବସି ସ୍ୱାସ୍ଥ୍ୟଗତ କାରଣରୁ ତାଙ୍କୁ ସରକାରୀ ଚାକିରୀରୁ ସବୁଦିନ ପାଇଁ ଅବ୍ୟାହତି ଦିଆ ଯାଇଥିଲା। ସେଇଟା ସମ୍ଭବତଃ ୧୯୫୧/୧୯୫୨ ମସିହା ସମୟର କଥା। ସେ ଯାହା ହେଉ ବାପା ସରକାରୀ ଚାକିରୀ ହରାଇଲେ। ବିନା ଚାକିରୀରେ କଟକ ସହରରେ ପରିବାରର ଆଠଜଣଙ୍କୁ ଚଳାଇବା କି କଷ୍ଟ, ସେ ଦୁର୍ଦ୍ଦିନର ସବିଶେଷ ବର୍ଣ୍ଣନା କରିବା ଅନାବଶ୍ୟକ ମନେ କରୁଛି। କିନ୍ତୁ ଆଗରୁ କହିଛି ବାପାଙ୍କର ସାହସ ଥିଲା ଅଦମ୍ୟ। ଜୀବନରେ ସବୁ ଜଞ୍ଜାଳକୁ ଜଣେ ଖେଳାଳୀର ମନୋବୃତ୍ତି ନେଇ ସେ ମୁକାବିଲା କରୁଥିଲେ। ଫୁଟ୍‌ବଲ୍ ଖେଳ ତାଙ୍କର ନିଶା ଥିଲା। ଫୁଟ୍‌ବଲ୍‌କୁ ନେଇ ଜୀବନ ସହିତ ତୁଳନା କରି କହିବାର ଶୁଣିଛି, "ଫୁଟ୍‌ବଲ୍‌କୁ ଯେମିତି କିକ୍ ମାରିଲେ ବା ତଳକୁ ପିଟିଲେ ତାହା ଉପରକୁ ଉଠେ, ସେମିତି ମତେ କେହି ବ୍ୟକ୍ତି, ପରିସ୍ଥିତି ବା ଭାଗ୍ୟ ଯେତେବେଳେ ତଳକୁ ଯିବାକୁ ବାଧ କରେ ମୁଁ ଫୁଟ୍‌ବଲ୍ ଭଳି ଉପରକୁ ଉଠିଯାଏ।" ଆଉ ଗୋଟିଏ କଥା କହି ଦୁଃଖ କରିବାର ଶୁଣିଛି- "ପିଲାଦିନେ ନିର୍ଜୀବ କଣ୍ଢେଇମାନଙ୍କୁ ଘରେ ରଖି ତାଙ୍କର ସବୁ ଯତ୍ନ ନେଇପାରୁଥିଲି, ଏବେ କେତେ ଜୀବନ୍ତ ମଣିଷ ଗଣ୍ଡେ ଖାଇବାକୁ ବା ଆଶ୍ରୟ ଖୋଜୁଛନ୍ତି ଅଥଚ ଅର୍ଥ ଅଭାବରୁ କାହାରିକୁ ଖାଇବାକୁ ଦେଇ ପାରୁନି କି ଘରେ ଆଶ୍ରୟ ଦେଇ ପାରୁନି।" ତାଙ୍କର ଇଚ୍ଛା ଥିଲା ଗୋଟିଏ ଜରାନିବାସ କରି ଦୁଃସ୍ଥ ଲୋକଙ୍କୁ ରଖି ସେମାନଙ୍କର ଯତ୍ନ ନେବେ। ସେ ଆଶା ତାଙ୍କର ଆର୍ଥିକ ଅନାଟନ ଯୋଗୁଁ ସମ୍ଭବ ହେଲା ନାହିଁ।

ପ୍ରାୟେ ବର୍ଷେକାଳ ବିନା ଚାକିରୀରେ ସଂସାର ଚଳାଇବା ପରେ ସେତେବେଳର ପୁରୀର ସିଭିଲ ସର୍ଜନଙ୍କ ଫିଟ୍‌ନେସ୍ ସାର୍ଟିଫିକେଟ ଦ୍ୱାରା ପୁଣି ପୁରୀ ଜିଲ୍ଲାବୋର୍ଡ଼ ଅଧିନରେ ମେଡ଼ିକାଲ ଅଫିସର୍ ଭାବରେ ଚାକିରୀରେ ଯୋଗ ଦେଲେ। ସେଇ ସମୟରେ ପୁରୀ ଜିଲ୍ଲାର ବିଭିନ୍ନ ଯାଗା ଯଥା-ବାଲିପାଟଣାର ଅଠାନ୍ତର, କାକଟପୁର, ପୁରୁଣା ଭୁବନେଶ୍ୱର ମୁନିସିପାଲିଟି ହସ୍ପିଟାଲ, ବେଗୁନିଆ, ବୋଲଗଡ଼, ପାରିକୁଦ (କୃଷ୍ଣପ୍ରସାଦ), ଡେଲାଙ୍ଗ, ଜଟଣୀ, ଚନ୍ଦକା ଓ ଖୋର୍ଦ୍ଧା ଜିଲ୍ଲାର ଯାଁଳା ପ୍ରଭୃତି ସ୍ଥାନରେ ଦକ୍ଷତାର ସହ ୧୯ ବର୍ଷ କାର୍ଯ୍ୟ କରି ୧୯୬୮ ମସିହାରେ ଅବସର ଗ୍ରହଣ କଲେ। ଈଶ୍ୱରଙ୍କ ଦୟାରୁ ଓ ମୋର ସୌଭାଗ୍ୟକୁ ୧୯୬୮ ମସିହାରେ ମୁଁ ଏମ୍.ବି.ବି.ଏସ୍. ପାସ୍ କଲା ପରେ ସେ ଯାଁଳା ଡାକ୍ତରଖାନାର କାର୍ଯ୍ୟଭାର ଆସିଷ୍ଟାଣ୍ଟ ସର୍ଜନ ହିସାବରେ ମୋତେ ହସ୍ତାନ୍ତର କରି ଅବସର ଗ୍ରହଣ କଲେ।

୧୯୫୩-୫୪ ମସିହା ବେଳକୁ ବାପା ପାରିକୁଦର କୃଷ୍ଣପ୍ରସାଦ ଡିସ୍‌ପେନ୍‌ସରିରେ ଅବସ୍ଥାପିତ ହୋଇଥିଲେ। ସେତେବେଳେ ପାରିକୁଦରେ ପ୍ରବଳ ମ୍ୟାଲେରିଆ ଜ୍ୱର ହେଉଥାଏ। ବାପା ଓ ଆମେ ସମସ୍ତେ ମ୍ୟାଲେରିଆରେ ଭୋଗି ବାପାଙ୍କ ଚିକିତ୍ସାରେ ଭଲ ହେଲୁ କିନ୍ତୁ ମା, ସୁନିଲା ରାୟଙ୍କୁ ସେରିବ୍ରାଲ୍ ମ୍ୟାଲେରିଆ ହେଲା। ବାପାଙ୍କ ଶତ ଚେଷ୍ଟା ସତ୍ତ୍ୱେ ଓ ସେତେବେଳର ଖୋର୍ଦ୍ଧା ହସ୍ପିଟାଲ୍‌ର ଡାଃ ନଟବର ମହାନ୍ତି ଓ କଟକର ରକ୍ତ ଭଣ୍ଡାରର ଡାଇରେକ୍ଟର ବାପାଙ୍କର ବନ୍ଧୁ ଡାଃ ଚନ୍ଦ୍ରମୋହନ ପଟ୍ଟନାୟକଙ୍କ ଅଶେଷ ଚେଷ୍ଟା ସତ୍ତ୍ୱେ ମା'ଙ୍କୁ ବଞ୍ଚାଇ ହେଲାନି।

୧୯୫୪ ମସିହା ମାର୍ଚ୍ଚ ମାସରେ ହୋଲିର କିଛି ଦିନ ପୂର୍ବରୁ ମା'ଙ୍କର ଖୋର୍ଦ୍ଧାରେ ମୃତ୍ୟୁ ହେଲା। ବାପାଙ୍କୁ ସେତେବେଳେ ମାତ୍ର ୪୭ ବର୍ଷ। ସେ ନିଜର ଦୃଢ଼ ମନୋବଳ ଓ ଆମମାନଙ୍କ ପ୍ରତି ଅଗାଧ ସ୍ନେହ ଓ ଦାୟିତ୍ୱବୋଧ ଯୋଗୁଁ ଆଉ ବିବାହ ନକରି ରହିଲେ। ନାନା ଅସୁବିଧା ଭିତରେ ଥାଇ ଆମକୁ ଏତେ ଯତ୍ନରେ ବଢ଼ାଇଲେ ଯେ ପିଲାବେଳେ ଆମେ ଯେ ମାତୃହରା ଏକଥା ମୋତେ ମନେ ପଡୁ ନଥିଲା। ବାପା ଆମ ଚାରି ଭାଇ ଭଉଣୀଙ୍କ ମଧ୍ୟରୁ ବଡ଼ ଭଉଣୀ ସୁଜାତାକୁ ସବୁଠୁ ଅଧିକ ଭଲ ପାଉଥିଲେ। ସେ ଅତ୍ୟନ୍ତ ମାତୃଭକ୍ତ ଥିଲେ। ତାଙ୍କର ପିତା ଶ୍ରୀ ବ୍ରଜବିହାରୀ ରାୟଙ୍କର ମୃତ୍ୟୁ ପରଠାରୁ

ତାଙ୍କ ମା' ସୁଖଦା ସୁନ୍ଦରୀ ତାଙ୍କ ପାଖରେ ରହୁଥିଲେ। ୧୯୫୪ ମସିହାରେ ମୋ ମା'ଙ୍କର ମୃତ୍ୟୁ ପରଠାରୁ ଅନେକ ସମୟରେ ବାପା ହସ୍ପିଟାଲରୁ ଫେରି ନିଜେ ରୋଷେଇ କରି ଜେଜେମା'ଙ୍କୁ ଖାଇବାକୁ ଦେବା ଦେଖିଛି। କାରଣ ଜେଜେମା' ଘର ଲୋକ କିମ୍ବା ବ୍ରାହ୍ମଣଙ୍କ ଛଡ଼ା ଅନ୍ୟ କାହାରି ହାତ ରନ୍ଧା ଖାଉନଥିଲେ। ୧୯୬୧ ମସିହାରେ ଚନ୍ଦକାରେ ଡାକ୍ତର ଥିଲା ବେଳେ ତାଙ୍କ ମା'ଙ୍କର ଦେହାବସାନ ହୋଇଥିଲା।

୧୯୫୩-୫୪ ମସିହା ବେଳକୁ ପାରିକୁଦ, କୃଷ୍ଣପ୍ରସାଦର ପ୍ରାକୃତିକ ସୌନ୍ଦର୍ଯ୍ୟ ଅତି ମନୋହର ଥିଲା। ମୋର ମନେ ଅଛି ବାପା ଯେତେବେଳେ କୃଷ୍ଣପ୍ରସାଦ ଡାକ୍ତରଖାନାର କାର୍ଯ୍ୟଭାର ଗ୍ରହଣ କରିବାକୁ ପ୍ରଥମେ ପାରିକୁଦରେ ଡଙ୍ଗାର ଓହ୍ଲାଇଲେ, ସେଇଠି ସେହି ମୁହୂର୍ତ୍ତରେ ପେନ୍‌ସିଲ୍‌ରେ ଚିଲିକାର ପ୍ରାକୃତିକ ସୌନ୍ଦର୍ଯ୍ୟର ସ୍କେଚ୍ କରି ତାକୁ ମା'ଙ୍କ ପାଖକୁ ଚିଠିରେ ପଠାଇଥିଲେ। ଆମେ ସେତେବେଳେ ମାମୁଁଙ୍କ ଘରେ ଖୋର୍ଦ୍ଧାରେ ଥାଉ। ସେ ସ୍କେଚ୍ ଦେଖି ଆମେ ଶୀଘ୍ର ପାରିକୁଦକୁ ଯିବାକୁ ଜିଦ୍ ଧରିଥିଲୁ। ଯାହା ହେଉ ପାରିକୁଦରେ ଥିବା ବେଳେ ବାପାଙ୍କର ପୂର୍ବର ଛବିଅଙ୍କା ନିଶା ପୁଣି ଉଜ୍ଜୀବିତ ହେଲା। କଲିକତାର ଧରମତାଲା ଷ୍ଟ୍ରୀଟ୍‌ର ବିଖ୍ୟାତ ଜି.ସି. ଲାହା ଦୋକାନରୁ ରଙ୍ଗତୂଳୀ ମଗାଇ ସୁନ୍ଦର ସୁନ୍ଦର ଛବି ଆଙ୍କିଲେ। ସେଥିରୁ ଦୁଇଟି ଛବି ୧୯୫୩ ମସିହାରେ କଲିକତାରୁ ପ୍ରକାଶିତ ଓଡ଼ିଆ ପତ୍ରିକା ଆସନ୍ତାକାଲିରେ ଜୁନ୍ ଓ ଅଗଷ୍ଟ ମାସରେ ପ୍ରକାଶିତ ହୋଇଥିଲା। ବାପାଙ୍କର ଛବି ଅଙ୍କା ଦେଖି ମୋର ଛବି ଆଙ୍କିବାର ଆଗ୍ରହ ଜନ୍ମିଲା। ବାପା ମୋତେ ବହୁତ ଉତ୍ସାହିତ କରୁଥିଲେ। ପରବର୍ତ୍ତୀ ସମୟରେ ମୋର ଏହି ଛବି ଅଙ୍କା ପାଇଁ ବନ୍ଧୁ, ଶିକ୍ଷକ ଓ ଶିଳ୍ପୀମାନଙ୍କ ଠାରୁ ବହୁତ ଉତ୍ସାହ ମିଳିଥିଲା। ଏବେ ମଧ୍ୟ ମୋତେ ଛବି ଅଙ୍କା ଆନନ୍ଦ ଦେଉଛି।

ବାପା ଚାକିରୀ କାଳରେ ଯେଉଁ ସବୁ ସ୍ଥାନରେ ଅବସ୍ଥାପିତ ହେଉଥିଲେ, ଅଧିକାଂଶ ଯାଗାରେ ସେଠାକାର ବିଦ୍ୟାଳୟର ଫୁଟ୍‌ବଲ୍ କୋଚ୍ ହୋଇ ଯାଉଥିଲେ। ଫୁଟ୍‌ବଲ୍ ଖେଳୁଥିବା ଛାତ୍ରମାନେ ତାଙ୍କର ଅତି ପ୍ରିୟ ଥିଲେ। ବିଦ୍ୟାଳୟର ପି.ଟି. ଶିକ୍ଷକ ଓ ପ୍ରଧାନ ଶିକ୍ଷକଙ୍କ ସହିତ ମଧ୍ୟ ଅତ୍ୟନ୍ତ ବନ୍ଧୁତା ହେଉଥିଲା। ଜଟଣୀରେ ୧୯୫୯ ମସିହାରେ ଡାକ୍ତର ଥିବା ବେଳେ ଜଟଣୀ ହାଇସ୍କୁଲ ସେତେବେଳେ ପୁରୀ ଜିଲ୍ଲା ସ୍କୁଲକୁ ଫୁଟ୍‌ବଲ୍ ଟୁର୍ଣ୍ଣାମେଣ୍ଟରେ ହରାଇବା ଦିନର ଆନନ୍ଦ ମୁଁ ଦେଖିଛି।

ବାପା ଯେଉଁସବୁ ଜାଗାରେ ଡାକ୍ତର ଭାବରେ ଚାକିରୀ କରୁଥିଲେ ସେଠାକାର ଲୋକଙ୍କ ଦୁଃଖ ଦୁର୍ଦ୍ଦଶା, ହସକାନ୍ଦ, ପାରିପାର୍ଶ୍ୱିକ ଘଟଣାବଳୀ ଓ କିମ୍ବଦନ୍ତୀ ଉପରେ ଆଧାର କରି ତାଙ୍କର ଗଳ୍ପ କବିତା ଲେଖୁଥିଲେ। ଅଧିକାଂଶ ଲେଖା ହାସ୍ୟରସାତ୍ମକ ମନେ ହେଉଥିଲେ ମଧ୍ୟ ସେଥିରେ ଗଭୀର ଭାବେ ମଣିଷର ଦୁଃଖ ସୁଖ, ସମାଜର ଅନ୍ଧବିଶ୍ୱାସ, ସାମାଜିକ ଶୋଷଣ ଓ ରାଜନୈତିକ ଘଟଣାସବୁ ସ୍ଥାନ ପାଉଥିଲା। ପାରିକୁଦରେ ଥିଲା ବେଳେ ଚିଲିକାର ସୌନ୍ଦର୍ଯ୍ୟ ବର୍ଣ୍ଣନା କରି କବିତା, କାକଟପୁରରେ ଥିବା ବେଳେ ମଙ୍ଗଳାଙ୍କ ସମ୍ବନ୍ଧରେ କିମ୍ବଦନ୍ତୀ ଉପରେ ଆଧାରିତ 'ମଙ୍ଗଳାୟନ', ଚନ୍ଦକାରେ ଥିବାବେଳର 'ଚମ୍ପା ମା ହଡ଼ା' କବିତା, 'ବହୁପୁତ୍ରେ' ଗଳ୍ପ, ଯାଁଳାରେ ଥିବା ବେଳେ 'ବାଜିଆ ପ୍ରସଙ୍ଗ'। 'ବାଜିଆ ପ୍ରସଙ୍ଗ' ଶ୍ରୀଯୁକ୍ତ ମହାପାତ୍ର ନୀଳମଣି ସାହୁଙ୍କ ଦ୍ୱାରା ସମ୍ପାଦିତ ଓ ଓଡ଼ିଶା ସାହିତ୍ୟ ଆକାଡ଼େମି ଦ୍ୱାରା ପ୍ରକାଶିତ - "ବିଂଶ ଶତାବ୍ଦୀର ଶେଷ ଓଡ଼ିଆ ଗଳ୍ପ ସଙ୍କଳନ"ରେ ମୁଦ୍ରିତ ହୋଇଛି।

ପୁରୀ ଜିଲ୍ଲାବୋର୍ଡ଼ ଚାକିରୀ କାଳରେ ୧୯୬୦ ମସିହା ବେଳକୁ ତାଙ୍କର ମେଡ଼ିକାଲ୍ ସ୍କୁଲର ସହପାଠୀ ସାହିତ୍ୟିକ ବନ୍ଧୁ 'ଫତୁରାନନ୍ଦ'(ଡାଃ ରାମଚନ୍ଦ୍ର ମିଶ୍ର)ଙ୍କ ସହିତ ପୁଣି ଯୋଗାଯୋଗ ହୁଏ। ବାପା ଅସୁସ୍ଥତା ଓ ସାଂସାରିକ ଜଞ୍ଜାଳ ଯୋଗୁଁ ଲେଖାଲେଖି ପ୍ରାୟ ଛାଡ଼ି ଦେଇଥିଲେ। ଫତୁରାନନ୍ଦଙ୍କ ଉତ୍ସାହଜନକ ଚିଠି ତାଙ୍କୁ ପୁଣି ସାହିତ୍ୟ ସାଧନା ପାଇଁ ପ୍ରେରଣା ଦେଲା। ବନ୍ଧୁ ଫତୁରାନନ୍ଦ ତାଙ୍କୁ ଲେଖି ଥିଲେ, "ପ୍ରିୟ ପୁଳିନ୍, ତୁମ ହାତ ହାସ୍ୟରସ ଲେଖାରେ ଦୋରସ୍ତ। ଲେଖାଲେଖି ଛାଡ଼ିବ ନାହିଁ। କଲମ ଦ୍ୱାରା ବଞ୍ଚିବ, ସିରିଞ୍ଜ୍ ଦ୍ୱାରା ବଞ୍ଚିବ

ନାହିଁ ।" ଏଇ ଚିଠିଟି ବାପାଙ୍କୁ ବହୁତ ଉତ୍ସାହ ଦେଇଥିଲା ଓ ତା ପରଠୁ ସେ ନିୟମିତ ଭାବେ ଲେଖାଲେଖି ଆରମ୍ଭ କଲେ ଓ ଶେଷ ଜୀବନ ପର୍ଯ୍ୟନ୍ତ ଆଉ ବନ୍ଦ କରି ନଥିଲେ ।

ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ ଓ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ଦ୍ୱାରା ୧୯୬୬ ମସିହାରେ ଝଙ୍କାରର ବିଷୁବ ମିଳନ ଉତ୍ସବରେ ବାପାଙ୍କୁ ସମ୍ମାନିତ କରା ଯାଇଥିଲା । ୧୯୭୬ ମସିହାରେ ତାଙ୍କୁ ଫତୁରାନନ୍ଦଙ୍କ ଦ୍ୱାରା ପ୍ରତିଷ୍ଠିତ ସରସ ସାହିତ୍ୟ ସମିତି ଦ୍ୱାରା "ରସରାଜ" ଉପାଧିରେ ଭୂଷିତ କରାଯାଇଥିଲା ।

୧୯୬୦ ମସିହା ପରେ ବାପାଙ୍କର ଅନେକ ସାହିତ୍ୟିକ ବନ୍ଧୁ ଆମ ଘରକୁ ପ୍ରାୟ ଯିବା ଆସିବା କରୁଥିଲେ । ସେମାନଙ୍କ ଭିତରୁ ଫତୁରାନନ୍ଦ (ଡାଃ ରାମଚନ୍ଦ୍ର ମିଶ୍ର), ଶ୍ରୀ ଗୋପୀନାଥ ମହାନ୍ତି, ଶ୍ରୀ ରାଧାମୋହନ ଗଡ଼ନାୟକ, ଶ୍ରୀ ମୁରାରୀ ମୋହନ ଜେନା, ଶ୍ରୀ ପ୍ରସନ୍ନ କୁମାର ପାଟଶାଣୀ, ଅଧ୍ୟାପକ ଶ୍ୟାମସୁନ୍ଦର ମିଶ୍ର, ଆଡ୍‌ଭୋକେଟ୍ ଚନ୍ଦ୍ରମଣି ପଣ୍ଡା (ଯାଜପୁର)ଙ୍କ କଥା ମନେ ପଡ଼ୁଛି । ଚନ୍ଦ୍ରମଣି ପଣ୍ଡାଙ୍କ ସହିତ ବାପାଙ୍କର ପତ୍ରାଳାପ ଅନେକ ସମୟରେ କବିତାରେ ହେଉଥିଲା । ସେଥିରୁ କେତେକ ଏହି ସଙ୍କଳନରେ ପ୍ରକାଶିତ ହୋଇଛି ।

ଅବସର ଗ୍ରହଣ ପରେ ୧୯୬୮ ମସିହାରୁ ବାପା ମୋ ପାଖରେ ରହୁଥିଲେ । ମୋର ଯାଁଳା, ପୁରୀ, ପିପିଲି ରହଣି ସମୟରେ ସେ ଧାରାବାହିକ ଭାବେ ଲେଖାଲେଖି କରୁଥିଲେ ।

୧୯୭୪ ମସିହାରେ ମୋର କଟକ ମେଡ଼ିକାଲ କଲେଜରେ ଶଲ୍ୟ ଚିକିତ୍ସା ବିଭାଗର ଜୁନିଅର ଟିଚର ଭାବରେ ପୋଷ୍ଟିଂ ହୁଏ । ସେହି ସମୟରୁ ବାପା ମୋ ପାଖରେ କଟକ ବଡ଼େଇ ସାହିରେ ରହୁଥାନ୍ତି । କଟକରେ ରହିବା ଦ୍ୱାରା ସାହିତ୍ୟିକ ବନ୍ଧୁମାନଙ୍କ ସହିତ ଅଧିକ ସମ୍ପର୍କ ସ୍ଥାପିତ ହେଲା । ଅନେକ ସାହିତ୍ୟିକ ଆମ ଘରକୁ ଆସୁଥିଲେ । ବାପା ମଧ୍ୟ ଅନେକଙ୍କ ପାଖକୁ ଯାଉଥିଲେ । ଅନେକ ସଭା ସମିତି ଯିବାର ସୁଯୋଗ ମିଳୁଥିଲା । ପ୍ରାୟ ସବୁଦିନ କେତେଘଣ୍ଟା ସେ ଲେଖାଲେଖିରେ କଟାଉଥିଲେ । ବହୁତ ଗଳ୍ପ, କବିତା ଓ ଆତ୍ମଜୀବନୀ ସେଇ ସମୟରେ ଲେଖା ହୋଇଛି । ଅନେକ ଲେଖା ଧାରାବାହିକ ଭାବେ ଫତୁରାନନ୍ଦଙ୍କ ଦ୍ୱାରା ସମ୍ପାଦିତ 'ଡଗର' ଓ ଅନ୍ୟାନ୍ୟ ପତ୍ରିକାରେ ପ୍ରକାଶିତ ହେଉଥିଲା । ବଡ଼େଇ ସାହିରେ ଥିବା ବେଳେ ତାଙ୍କର ବାଲ୍ୟବନ୍ଧୁ ଲୋକନାଥ ରାଉତ ଅଧିକାଂଶ ସମୟ ଆମ ଘରକୁ ଆସୁଥିଲେ ଓ ଦୁଇ ବନ୍ଧୁଙ୍କର ପିଲାଦିନର ଅନେକ ବିଷୟରେ ଆଲୋଚନା ହେଉଥିଲା । ବଡ଼େଇ ସାହିରେ ତାଙ୍କର ଆଉ ଜଣେ ଲେଖକ ବନ୍ଧୁ ଲାଲା ନଗେନ୍ଦ୍ରନାଥ ରାୟ ପ୍ରାୟ ଆମ ଘରକୁ ଆସୁଥିଲେ ଓ ସାହିତ୍ୟ ସମ୍ବନ୍ଧରେ ଆଲୋଚନା ହେଉଥିଲା । ଯଦିଓ ବାପା ସର୍ବଦା ନିୟମିତ ଭାବରେ ବ୍ୟାୟାମ ଓ ଯୋଗାସନ କରୁଥିଲେ ଦୁର୍ଭାଗ୍ୟକୁ ୧୯୮୦ ମସିହାରେ ପକ୍ଷାଘାତ ବା ସେରିବ୍ରୋଭାସ୍କୁଲାର ଆକ୍‌ସିଡ଼େଣ୍ଟ୍ ରୋଗରେ ଆକ୍ରାନ୍ତ ହେଲେ । ତାଙ୍କର ଚିକିତ୍ସା ଏସ୍. ସି. ବି.ମେଡ଼ିକାଲ କଲେଜର କାର୍ଡ଼ିଓଲୋଜି ବିଭାଗର ପ୍ରଫେସର ଯଦୁନାଥ ପ୍ରସାଦ ଦାସ, ଡ଼ାଃ ଡି.ବି.ଟ୍ରୋମ୍ପେ, ପ୍ରଫେସର୍ ରାଧାନାଥ ରଥ, ନିଉରୋଲୋଜି ବିଭାଗର ମୁଖ୍ୟ ପ୍ରଫେସର ଗୋପାଳ ଚନ୍ଦ୍ର ମିତ୍ର ଓ ଇଉରୋଲୋଜିଷ୍ଟ ଡାଃ ଲକ୍ଷ୍ମୀକାନ୍ତ ସାହୁଙ୍କ ଦ୍ୱାରା କରାଯାଇଥିଲା । ନିଜର ପରିବାର ସଦସ୍ୟଙ୍କ ଛଡ଼ା ବାପାଙ୍କର ଅସୁସ୍ଥତା ସମୟରେ ଅଧ୍ୟାପକ ରମାକାନ୍ତ ସିଂ (ଫତୁରାନନ୍ଦଙ୍କର ଅତି ପ୍ରିୟ), ଡାଃ ରିତେନ୍ଦ୍ରନାଥ ମିତ୍ର ଓ ତାଙ୍କ ବଡ଼ଭାଇ ଶ୍ରୀ ଭୂପେନ୍ଦ୍ରନାଥ ମିତ୍ର, ଶ୍ରୀମତୀ ସରୋଜିନୀ ଜେନା, ଶ୍ରୀମତୀ ନୀଳିମା କର ଓ ଫିଜିଓଥେରାପିଷ୍ଟ ରବିନାରାୟଣ ଦାସଙ୍କ ସମୟୋଚିତ ଆନ୍ତରିକ ସେବା ଓ ସାହାଯ୍ୟ ଭୁଲିବାର ନୁହେଁ ।

ସମସ୍ତଙ୍କର ଚେଷ୍ଟା ସତ୍ତ୍ୱେ ବାପା ୧୯୮୦ ମସିହା ନଭେମ୍ବର ମାସ ୪ ତାରିଖ ସକାଳେ ଇହଲୀଳା ସମ୍ବରଣ କଲେ । ତାଙ୍କର ମୃତ୍ୟୁ ଖବର ପ୍ରଚାରିତ ହେବା ମାତ୍ରେ ବହୁ ମାନ୍ୟଗଣ ବ୍ୟକ୍ତି ଆମ ଘରକୁ ଆସି ଶେଷ ସମ୍ମାନ ପ୍ରଦର୍ଶନ କରିଥିଲେ । ସେମାନଙ୍କ ମଧ୍ୟରୁ ଡାଃ ପାର୍ଥ ରାଓ, ଫତୁରାନନ୍ଦ, ମା ରମାଦେବୀ, ଶ୍ରୀମତୀ ମାଳତୀ ଚୌଧୁରୀ, ଶ୍ରୀମତୀ ମଙ୍ଗଳା ସେନ୍, ଶ୍ରୀଯୁକ୍ତ ଶରତ ମହାରଣା,

ଶ୍ରୀଯୁକ୍ତ ମୁରାରୀ ମୋହନ ଜେନା, ଶ୍ରୀଯୁକ୍ତ ବିଜୟାନନ୍ଦ ସିଂ ପ୍ରଭୃତିଙ୍କ କଥା ମୋର ମନେ ଅଛି। ପ୍ରାୟ ସବୁ ସମ୍ବାଦପତ୍ରରେ ଯଥା-ସମାଜ, ମାତୃଭୂମି, ପ୍ରଜାତନ୍ତ୍ରରେ ଶୋକ ସମ୍ବାଦ ପ୍ରକାଶିତ ହୋଇଥିଲା। ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ ଓ ଅନ୍ୟାନ୍ୟ ମାନ୍ୟଗଣ୍ୟ ବ୍ୟକ୍ତି ଶୋକ ପ୍ରକାଶ କରି ମୋତେ ଚିଠି ଲେଖିଥିଲେ। ବାପାଙ୍କର ଶେଷକୃତ୍ୟ କଟକର ଖାନ୍‌ନଗର ଶ୍ମଶାନରେ ସମ୍ପନ୍ନ କରାଯାଇଥିଲା। ବାପାଙ୍କର ଶେଷ ଇଚ୍ଛା ଅନୁସାରେ ତାଙ୍କର ଚିତାଭସ୍ମ ପୁରୀର ମହୋଦଧୀରେ ବିସର୍ଜନ କରାଯାଇଥିଲା।

ବରିଷ୍ଠ ସାହିତ୍ୟିକ ଭାବେ ବାପାଙ୍କର ଗୋଟିଏ ତୈଳଚିତ୍ର ଶ୍ରୀଯୁକ୍ତ ମୁରଳୀଧର ଟାଲିଙ୍କ ଦ୍ୱାରା ଅଙ୍କିତ ହୋଇ ଉତ୍କଳ ସାହିତ୍ୟ ସମାଜ ତରଫରୁ ରାମଚନ୍ଦ୍ର ଭବନରେ ରଖାଯାଇଛି।

ଏହିପରି ଭାବରେ ଗୋଟିଏ ସଂଘର୍ଷମୟ ଜୀବନର ଅବସାନ ଘଟିଲା। ବାପାଙ୍କର ମୃତ୍ୟୁ ଆଜକୁ ପ୍ରାୟ ୩୪ ବର୍ଷ ବିତି ଯାଇଥିଲେ ମଧ୍ୟ ମନେ ହେଉଅଛି ସେ ଆମ ପାଖରେ, ଆମ ମନରେ ନିବିଡ଼ ଭାବରେ ଅଛନ୍ତି। ତାଙ୍କର ଆଦର୍ଶ ଜୀବନର କିଛି ଆଶା ଯଦି ଆମେ ପୂରଣ କରି ପାରିବା ତେବେ ନିଜକୁ ଧନ୍ୟ ମନେ କରିବା।

- ଡାଃ ଫାଲ୍‌ଗୁନି ରାୟ

# ଛାୟାପଥ

ଡ଼ାକ୍ତର ପୁଳିନ୍ ବିହାରୀ ରାୟ, ଏଲ୍,ଏମ୍.ପି.

ପ୍ରକାଶକ-
ଭାରତୀ ବିହାର
କଲେଜ ଗେଟ
କଟକ

ମୂଲ୍ୟ ବାରଅଣା

ଓରିଏଣ୍ଟ ପ୍ରେସ
କଟକ

# ଉତ୍ସର୍ଗ

ଋଷିପ୍ରାଣ ପରମାରାଧ୍ୟ ୰ପିତୃଦେବଙ୍କ
ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ

# ଅଭିମତ

ଶ୍ରୀଯୁକ୍ତ ଡ଼ାକ୍ତର ପୁଲିନ୍ ବିହାରୀଙ୍କର ଗଳ୍ପଗୁଡ଼ିକ ପଢ଼ି ମୁଁ ପ୍ରୀତ ହୋଇଛି । ଏହି ପୁସ୍ତକରେ ଥିବା ଅଧିକାଂଶ ଗଳ୍ପ ମୋ ଦ୍ୱାରା ସମ୍ପାଦିତ 'ଆରତି' ଓ 'ଶଙ୍ଖ' ପତ୍ରିକାମାନଙ୍କରେ ପ୍ରକାଶିତ ହୋଇଯାଇଛି । ତେଣୁ ଗଳ୍ପ ଲେଖକ ଭାବରେ ପୁଲିନ୍ ବାବୁ ମୋର ବେଶ୍ ପରିଚିତ ।

ସମ୍ପାଦକ ଭାବରେ ମୁଁ ଯେତେ କ୍ଷୁଦ୍ର ଗଳ୍ପ ପାଇଥାଏ ସେ ସବୁ ହୁଏତ ଯୌବନ କାଳର ପ୍ରେମର ଘାତ ପ୍ରତିଘାତ ବା କୃଷକ ବା ଶ୍ରମିକର ଦୁଃଖ ବର୍ଣ୍ଣନା କରିଥାନ୍ତି କିନ୍ତୁ ପୁଲିନ୍ ବାବୁଙ୍କ ଗଳ୍ପରେ ନୂତନତ୍ୱ ଅଛି । ଦୈନନ୍ଦିନ ଜୀବନରେ ଅନେକ ଉପେକ୍ଷିତ ଓ ଅସାହିତ୍ୟିକ ବିଷୟ ନେଇ ତାଙ୍କର ଗଳ୍ପ ରଚନା ଏଥିରେ ନାହିଁ । ଅଛି ଯୌବନକାଳୀନ ପ୍ରଣୟର ଫେନିଳ ଉଲ୍ଲାସ, ନାହିଁ ବା ଅଛି ପୁଞ୍ଜିପତି ତନ୍ତ୍ର ସମାଜ 'ବିରୁଦ୍ଧରେ ଆସ୍ଫାଳନ, ତଥାପି ସେଗୁଡ଼ିକ ଉପଭୋଗ୍ୟ ହୋଇଛି ନିଜର ସ୍ୱକୀୟ ରସ-ଗୁଣରେ । ମୁଁ ଆଶାକରେ ପୁଲିନ୍ ବାବୁ ଆଉରି ଅନେକ ଗପ ଏଇ ଧରଣର ଲେଖିବେ ଓ ତାଙ୍କର ଏହି ଗଳ୍ପ ବହିଟି ପାଠକମାନଙ୍କ ନିକଟରେ ଆଦୃତ ହେବ । ଇତି ।

- ମାୟାଧର ମାନସିଂହ

# ନିଜ କଥା

ଯାର ଜ୍ଞାନ ଅଳ୍ପ, ଶିକ୍ଷା ଅଳ୍ପ, ଯାର ଜୀବିକା ନିର୍ବାହରେ ଦୈନିକ ରୋଗହିଁ ଲୋଡ଼ା । ରୋଗ ବ୍ୟାପିଲେ ଯାର ଆୟର ପନ୍ଥା ଖୋଲିଯାଏ, ରୋଗୀ ଦେଖିଲେ ମନେ ମନେ ଯେ ଆନନ୍ଦ ଅନୁଭବ କରେ, ଜ୍ୱାଳା ଯନ୍ତ୍ରଣାଦାୟକ ପ୍ରଲେପ, ବିଷାକ୍ତ କଟୁ ଔଷଧ, ଅରୁଚିକର ଖାଦ୍ୟ ଏବଂ ଛୁରୀ, କତୁରୀ, ଚିମୁଟା ଓ ଛୁଞ୍ଚ ଇତ୍ୟାଦି ଦ୍ୱାରା ନିଜର ଜୀବିକା ନିର୍ବାହ ଲାଗି ଅନ୍ୟକୁ ଆଘାତ କରିବାରେ ଯାର ତିଳେ ମାତ୍ର କୁଣ୍ଠା ନାହିଁ ।

ଚିତ୍କାର, ଆର୍ତ୍ତନାଦ, କାତରୋକ୍ତି, ଅନୁନୟ, ବିନୟ, ଅଭାବ ଅସୁବିଧାର କାହାଣୀ ଶୁଣି, ମୁମୂର୍ଷୁ ଅବସ୍ଥା ଦେଖି ସୁଦ୍ଧା ଯେ ଅନ୍ଧ ଓ ବଧିର ।

ଏପରି ନିର୍ବୋଧ ପୁଣି କଲମ ଧରି ଯଦି ଲେଖକ ଗୋଷ୍ଠୀରେ ଗଣ୍ୟ ହେବାକୁ ମନ ବଳାଏ, ସେ ଲେଖକ ଏବଂ ତାର ଲେଖା ଯେ କ'ଣ ହୋଇପାରେ, ମୋର ଏ ଗଳ୍ପ କେତୋଟି ତା'ର ପୂର୍ଣ୍ଣ ପରିଚାୟକ ।

ତେବେ ସୁଦ୍ଧା ଗୁରୁଜନ, ଆତ୍ମୀୟ ସ୍ୱଜନ, ସାହିତ୍ୟିକ, ଶିଳ୍ପୀ, ସହକର୍ମୀ, ସାଥି ଓ ଛାତ୍ର ଯେଉଁମାନଙ୍କର ପଦେକଥା ମୋତେ ଏ ଦିଗରେ ଅଗ୍ରସର ହେବାକୁ ସାହସ ଓ ଉତ୍ସାହ ଦେଇଛି, ସେମାନଙ୍କଠାରେ ମୁଁ ଚିରକୃତଜ୍ଞ ଏବଂ ଚିରଋଣୀ ।

ମୋର ଏ ଦୁଷ୍ଟବୃତ୍ତିରେ ଯେଉଁମାନେ କ୍ଷତିଗ୍ରସ୍ତ, ଏ ଅପରାଧ ଲାଗି ମୁଁ ସେମାନଙ୍କ ନିକଟରେ କ୍ଷମା ଭିକ୍ଷା କରେ ।

ପରିଶେଷରେ ବାଣୀ ନୀରାଜନାର ପ୍ରଧାନ ପୁରୋଧା ଆଚାର୍ଯ୍ୟ ମାୟାଧର ମାନସିଂହ ଯେ କି ମୋ ପରି ମୂଢ଼ର ଆରତି ଦର୍ଶନ ଏବଂ ଶଙ୍ଖର ଧ୍ୱନି ଶ୍ରବଣର ସୁଯୋଗ ଦାତା, ତାଙ୍କୁ ଆଜି ମୋର ଏକାନ୍ତ ଶ୍ରଦ୍ଧା, ଭକ୍ତି ଏବଂ କୃତଜ୍ଞତା ଜ୍ଞାପନ ନ କରି ରହି ପାରୁନି ।

କଟକ
୨୦ । ୧୧ । ୪୬

ଇତି
ଶ୍ରୀ ପୁଲିନ୍ ବିହାରୀ ରାୟ

## ସୂଚୀ

# ମା

ଘରକୁ ତିନି ପ୍ରାଣୀ-ମା, ପୁଅ, ବୋହୂ । ପୁଅ ନାଁ ନନ୍ଦକିଶୋର । ମାଆ ବୁଢ଼ୀ ଅତି ଗେହ୍ଲାରେ ଡ଼ାକେ 'ବାୟା' । ବୁଢ଼ୀର ପାଞ୍ଚ ପୁଅ ମରି କେବଳ ରହିଲା-ବାୟା । ବାୟାକୁ ଏଇ ଚିତଉ ଉଆଁସକୁ କୋଡ଼ିଏ ଷୋଳ ଚାଲିବ । ବାୟା ଆଜି ସୁଦ୍ଧା ହାତରେ ଖାଏ ନା, ବୁଢ଼ୀ ନିଜ ହାତରେ ଖୋଇ ଦିଏ ।

ପାଠ ବୋଲି 'ବ୍ରହ୍ମା' 'ବିଷ୍ଣୁ' ସୁଦ୍ଧା ମଡ଼େଇ ନାହିଁ । ତାର କାରଣ ହଉଛି ବାୟାକୁ ୨୨ ବର୍ଷରେ ଥିଲା ରିଷ୍ଟ । ବାୟାର ବାପ, ମା'ର ଇଚ୍ଛା ଥିଲା ଯେ ୨୨ ବର୍ଷ ପୁରିଯାଉ, ରିଷ୍ଟ ଖଣ୍ଡନ ହଉ, ତେବେ ଯାଇ ଖଡ଼ି ଛୁଇଁବ ।

ଠିକ୍ ୨୨ ବର୍ଷ ଯିମିତି ପୂରିଛି, ସେମିତି ବାୟାର ବାପ କାଳ ହୋଇଗଲେ । କାଣି ଆଖିରେ କଜ୍ଜଳ ଗାରେ ବୁଢ଼ୀ ଦେଖିଲା । କେତେ ମରି ମରି ଗୋଟିଏ ବୋଲି ପୁଅ, ସେ ପୁଣି ବାପ ଛେଉଣ୍ଡ ହେଲା ଆଉ କି ପାଠ ପଢ଼ା ? ଖଡ଼ି ଧୂଳି ଲାଗିଲେ ପୁଅ ଦେହ ଶୁଖି ଯିବ, କି ମିଳିବ ପାଠ ପଢ଼ାରୁ ?

ଶଶୁର, ସ୍ୱାମୀ ମଲା ପରେ ବୁଢ଼ୀ ହାତରେ କିଛି ଟଙ୍କା ପଡ଼ିଥିଲା । ସେଇଥିରେ ସାହିଖଣ୍ଡକରେ ବୁଢ଼ୀର ବେଶ୍ ମହାଜନୀ ଚାଲେ । ଖାଲି ସାହିଖଣ୍ଡକ ନୁହେଁ ଆହୁରି ଦୂର ଦୂରାନ୍ତରୁ ଲୋକେ ଆସନ୍ତି କଂସା, ନୋଟା, ଗହଣା ନେଇ ବୁଢ଼ୀ କତିରେ ବନ୍ଧା ରଖି ଟଙ୍କା ଧାର ନବା ପାଇଁ ।

ଏଇଥିଲାଗି ବାୟାକୁ କାମ ଧନ୍ଦା କରିବାକୁ ହେଲା ନାହିଁ । ବୁଢ଼ୀର ଇଚ୍ଛା-ସେ ଯେତେଦିନ ବଞ୍ଚିଛି, ତା ପୁଅ ମନ ଫୁଲାଣିଆ ହେଇ ବୁଲିବ, କାହାରି ଦୁଆରେ ଠିଆ ହବ ନାହିଁ ।

ଏସବୁ ବୋହୂ ଆଖିରେ ଯାଏ ନା । ଶାଶୁକୁ କୁହେ-ଏଡ଼େ ବଡ଼ ପୁଅଟା, ହାତରେ ଖାଇବନି, ତାକୁ ଗୋଟାଏ ଖୋଇ ଦବ କ'ଣ ? ଦି'ଅକ୍ଷରତ ପେଟରେ ପକେଇ ନା । କା' ପୁଅ ଇମିତି ଟୋ ଟୋ ହେଇ ଦିନ ରାତି ବୁଲୁଛି, ମୂଳ ଲାଗିବ ନାହିଁ । କ'ଣ ଇମିତି ହାତୀ ଘୋଡ଼ା ରଖିଚ ଯେ ପୁଅ ବସି ଖାଉଥିବ । ବସି ଖାଇଲେ ତ ନଈ ବାଲି ସରିବ । ଏ ଅକର୍ମାଟା ମୋରି ପୋଡ଼ା କପାଳକୁ ଥିଲା ।

ବୋହୂର ଏ କଥା ଗୁଡ଼ାକ ଶାଶୁ ଦିହରେ ଯାଏ ନାହିଁ । ତା'ର ଗୋଟିଏ ବୋଲି ପୁଅ, ତାକୁ ପୁଣି ଏ କଟୁଭାଷା ।

ଶାଶୁ ବୋହୂରେ ନିତି ଲାଗେ ଇମିତି ଠିଆ ପାଲା । ଶାଶୁ ବୁଢ଼ୀ ନିତି ବୋହୂ ପିଠିରେ ଦି'ଟା 'ଦୁଲ' 'ଦାଲ୍' ଥୋଇ ଦେଇ ଏ ପାଲା ବଢ଼େଇ ଦିଏ । କୋଉ କୋଉ ଦିନ ବାୟାକୁ ନିଜ ହାତରେ ମଧ ପାଲା ବଢ଼େଇବାକୁ ହୁଏ । ଦିନ ରାତି ମିଶି ସ୍ତ୍ରୀ ସହିତରେ ବାୟାର ଯେତିକି ସମୟ ଦେଖା ସାକ୍ଷାତ ତା'ଭିତରେ ପ୍ରାୟେ ଏଇ ପାଲା ବଢ଼ା 'ଦୁଲ୍' 'ଦାଲ୍' ଶୁଣାଯାଏ ।

ଆଉ ଏହା ଛଡ଼ା ବାୟାର ବେଉସା ହେଉଛି-କୋଉଠି ଭଲ ବାଟୁଳି ଖଡ଼ାଟାଏ ତିଆରି ହେବ, କିମିତି ମାଟିରେ ବାଟୁଳି ଗୁଡ଼ାଏ ତିଆରି ହେବ, କୋଉ ବଢ଼େଇ କତିକି ଗଲେ କଠଉର ଭଲ ଶିଶୁ କାଠର ଚୁଳି ଦି'ଟା ତିଆରି ହେବ, ପାଚିଲା ଗାମୁଛାର କିମତି ଭଲ ରଙ୍ଗ ଫିଟିବ, କିମିତି ଖଣ୍ଡେ ଭଲ ଛୁରୀ ତିଆରି ହେବ, ତା ବେଣ୍ଟଟା କିମିତି ଭଲ ହେବ ଆଉ ବଡ଼ କାମ ଭିତରେ ନିତି ବାଟୁଳି ଖଡ଼ାଟା ନେଇ ବଗିଚା ବୁଲି ମାଙ୍କଡ଼ ମାରିବା, ଚଢ଼େଇ ଧରିବା ଇତ୍ୟାଦି ।

କାନ୍ଧରେ ଗୋଟାଏ ନେଉଳ, ନୋହିଲେ ଓଧ ବିଲେଇଟାଏ କିମ୍ୱା ସାଙ୍ଗରେ ଗୋଟାଏ କୁକୁର ବରାବର ଥିବ ।

ଏମିତି ବୁଲି ବୁଲି ନିତି ବାୟା ଘରକୁ ଫେରିବା ଯାଏ ମା ବୁଢ଼ୀ ଥରେ ଘର, ଥରେ ଦାଣ୍ଡ ହେଉଥାଏ ।

ଚାହିଁଥାଏ ପୁଅ କେତେବେଳେ ଫେରିବ ନିଜ ହାତରେ ମୁଠାଏ ବାୟାକୁ ଖୋଇ ସେ ନ ଶୋଇବା ଯାଏ ତା ମନ ଅଥୟ ହେଉଥାଏ ।

ମା ବୁଢ଼ୀ ରାନ୍ଧେ ନିଜ ହାତରେ । ବୋହୂକୁ ହାଣ୍ଡି ଛୁଇଁବାକୁ ଦିଏ ନା, ନିଜେ ରାନ୍ଧେ । ନିତି ନୂଆ ନୂଆ ରକମର ତିଅଣ କରେ । ନିତି ପୁଅ ପତରରେ କିମିତି ଟିକିଏ ଆଇଁଶ ପଡ଼ିବ । ମାଛ ଯଦି କିଣିବାକୁ ମିଳିଛିତ ଭଲ ନୋହିଲେ ନିଜେ ଯାଇ ବାରିଆଡ଼ ପୋଖରୀରୁ ଖୁଅ ଦେଇ ମାଛ ନହେଲେ ପୋଖରୀ କୂଳରୁ କଙ୍କଡ଼ା ଦି'ଟା ଧରିଆଣେ; କିମ୍ବା ପୁଅ ଯଦି କେଉଁଦିନ ଚଢ଼େଇଟାଏ ମାରି ଆଣିଦିଏ, ମାଛ ହେଇଥିଲେ ବି ଯେତେ ଡେ଼ରି ହେଉ ବୁଢ଼ୀ ରାନ୍ଧି ଦିଏ ଖୁବ୍ ଯତ୍ନ କରି ।

ଚଢ଼େଇ ଛୁଆକୁ ତା'ର ମା ଆଧାର ଖୋଇଲା ପରି ପୁଅକୁ କତିରେ ବସେଇ ବୁଢ଼ୀ ନିତି ନିଜ ହାତରେ ଖୋଇଦିଏ ।

ଆଇଁଶ ତିଅଣ ଟିକକ ସରିଗଲେ ବାୟା ଆଉ ଖାଇ ପାରେ ନା, ବୁଢ଼ୀ ନିତି ଆପତ୍ତି କରେ-କିଛିତ ଖାଇଲୁ ନାହିଁ? ତୋ ଦେହ ନାଗିବ କେମିତି? ତୁ ମଣିଷ ହବୁ କିମିତି? ମୁଁ ଏତେ ତିଅଣ କଲି କାହା ପାଇଁ? ଯା, ତୋ ଜୀବନଟା ତୋ ହାତରେ.....

ପୁଣି ସଞ୍ଜ ହେଲେ ଶୋଇ ଉଠି ବାୟା ବାହାରି ପଡ଼େ ବୁଲିବାକୁ । ପୁଅ ବାହାରିଲା ବେଳକୁ ବୁଢ଼ୀ କଉ ଖଞ୍ଜରେ ବୋହୂକୁ ଲୁଚେଇ ପୁଅ ଅଣ୍ଟାରେ ଦି'ଅଣାଏ ଗୁଞ୍ଜି ଦିଏ, ପୁଅ କ'ଣ ଖାଇବ, ଖରଚ କରିବ ।

ରାତି ଅଧକୁ ବାୟା ଫେରେ ତାର କଲବ ଘରୁ । କଲବ ଘର ହେଉଛି ଗାଁ ଶେଷ ମୁଣ୍ଡ ଦଣ୍ଡ ପାଖ ଗହୀର ବିଲକୁ ଲାଗି ଖଣ୍ଡେ ବଖୁରିଆ କୋଠାଘର, କବାଟ ନାହିଁ । ଏ ଘର ବଖରାକ କା'ର ତା'ବି ଜଣା ନାହିଁ । କାନ୍ଥରୁ ଜାଗା ଜାଗା ଚୂନ ଛାଡ଼ି ଇଟା ଦେଖା ଗଲାଣି, କାଠ କୋଇଲାରେ ଅଙ୍କା କାନ୍ଥରେ କେତେ ରକମର ଚିତ୍ର ।

ସଞ୍ଜ ହେଉ ହେଉ କଲବ ଘରେ ଆସି ଜୁଟନ୍ତି ଗାଁର ଆଉ ଆଉ ଟୋକାଏ, ଯେ ଆଗରେ ଆସେ, ସେ ଚାକୁଣ୍ଡା ଗଛ କେତେଟା ଓପାଡ଼ି ତଳଟା ଝାଡ଼ି ଦେଇଥାଏ । ସମସ୍ତେ ଆସିଲେ ହୁଏ ଖଞ୍ଜଣି ମାଡ଼, ଭଜନ କିମ୍ବା ଯା ମନକୁ ଯା ଆସିଲା । ଜହ୍ନ ରାତି ହେଲେ ଆଲୁଅର ଦରକାର ହୁଏ ନା କାରଣ ଖଣ୍ଡିଏ ଖୋଲା ଖିଡ଼ିକି ଦେଇ ଏଇ କଲବ ଘରକୁ ଆକାଶର ଚନ୍ଦ୍ରମା ତାଙ୍କର କିରଣ ଦାନରେ କରୁଣା ଊଣା କରନ୍ତି ନାହିଁ ।

ଆଉ ଅନ୍ଧାର ରାତିରେ ବିଡ଼ି ଟାଣିବା ପାଇଁ ଦିଆସିଲି ମାରିଲା ବେଳେ ଯେତିକି ଆଲୁଅ ହୁଏ ସେତିକି ଆଲୁଅରେ ଚଳିଯାଏ । ଦିନେ ପ୍ରସ୍ତାବ ହେଲା ଏଣିକି ନିତି ତ୍ରିନାଥ ମେଳା ହେବ । ସେଥିରେ ଯେଉଁ ଦୀପ ଜଳିବ, ସେଥିରେ କଲବ ଘରେ ବେଶ୍ ଆଲୁଅ ମିଳିବ, ଆଉ ଗଞ୍ଜେଇ ଖାଇବାକୁ ମିଳିବ । ଏ ପ୍ରସ୍ତାବରେ ବାୟା ଆଗେ ରାଜି ହେଲା, ଆଉ ଯା କିଛି ପଇସା ଖରଚ ହେବ, ସେ ଦବ ।

ଭଲ କାମରେ ହେଳା କରିବା ଉଚିତ୍ ନୁହେଁ । ସାଙ୍ଗେ ସାଙ୍ଗେ ଅଣ୍ଟାରେ ଯା କିଛି ପଇସା ଥିଲା, ବାୟା କାଢ଼ି ଦେଇ ଦେଲା-ଯେ ସେମାନେ ଗଞ୍ଜେଇ, ପାନ, ଗୁଆ, ତ୍ରିନାଥ ମେଳା ବହି ଖଣ୍ଡେ, ଆଉ ଯା ଯା କିଣି ଆଣିଥିବେ; ଚିଲମ, ଦୀପ, ସେ ନିଜେ ତିଆରି କରି ଆଣିବ ।

ଏ କଲବ ଘର ଖଣ୍ଡକ ବାୟା ମନକୁ ଭାରି ଭଲ ଲାଗେ, କି ବରଷା, କି ଖରା, କି ଶୀତ ସବୁ ଋତୁରେ ଏ ଜାଗା ଖଣ୍ଡିକ ଭାରି ସୁନ୍ଦର ଦିଶେ । ଆହୁରି ସୁନ୍ଦର ଦିଶେ ନଈବଢ଼ି ଦିନରେ, ଯେତେବେଳେ ଯା ଚାରିଆଡ଼େ ନଈ ବଢ଼ି ପାଣି ପଶି ବିଲ, ଦଣ୍ଡା ସବୁ ବୁଡ଼ିଯାଏ । କଲବ ଘର ବରଣ୍ଡାକୁ ପାଣି ଲାଗେ କିନ୍ତୁ କଲବ ଘରର କିଛି କ୍ଷତି ହୁଏ ନାହିଁ, ସେ ଛିଡ଼ା ହୋଇଥାଏ ଅଗାଧ ପାଣି ମଝିରେ ଚନ୍ଦନ ପୋଖରୀର ଦ୍ୱୀପ ଦଣ୍ଡି ପରି ।

ସତକୁ ସତ ତହିଁ ଆରଦିନ ସଞ୍ଜ ଗଡ଼ିଗଲା ପରେ ତ୍ରିନାଥ ମେଳା ବସିଲା; ସମସ୍ତେ ଆସିଲେ, ବେଶ୍ ଜମିଲା, ବାମ୍ଭଣ ଦରକାର ନାହିଁ, ହାତେ ହାତେ ସବୁ ଖଞ୍ଜଣୀ ମାଡ଼ ହେଲା, ବହି ବୋଲା ହେଲା । ଶେଷରେ

ପ୍ରସାଦ ବଣ୍ଟାହେଲା, ସମସ୍ତେ ଗଞ୍ଜେଇ ଟାଣିଲେ, ବହିରେ ଯେମିତି ଅଛି- 'ପ୍ରସାଦ ବାଣ୍ଟିଣ ଖାଇବ, ଅଛ ବହୁତ ନ କହିବ', ସତକୁ ସତ ଗଞ୍ଜେଇ କିଏ ବେଶୀ ଟାଣିଲା, କିଏ କମ୍ ଟାଣିଲା, କେହି କହିବାକୁ ନାହିଁ। ବାୟା ଖୁବ୍ ମନ ଇଛା ଟାଣିଲା।

ଦଣ୍ଡାରେ ବିଲୁଆ ଭୁକିଲେ, ମେଳା ବଢ଼ିଲା, ସମସ୍ତେ 'ହରିବୋଲ' ଦେଇ ଯେ ଯା ଘରକୁ ବାହାରିଲେ। ନନ୍ଦ କିଶୋର ମଧ ଘରକୁ ବାହାରି ପଡ଼ିଲା। ଗଞ୍ଜେଇ କି ଜିନିଷ, ଦୁନିଆଟା ତାକୁ ଆଜି କିମିତି ନୂଆ ପରି ଲାଗୁଛି, ମନ ଭାରି ଖୁସି, କାହାକୁ ଭୟ ନାହିଁ, ଛାଡ଼ିଲା ଗୋଟାଏ ଗୀତ-ବିଭୂଷଣ କରି କନ୍ୟାକୁ ଆଣ.....ଦୂରରୁ ଗୀତ ଶୁଣିପାରି ମା ବୁଢ଼ୀ ଭାତ ବାଢ଼ି ପାଣି ରଖି ଦାଣ୍ଡରେ ଆଲୁଅ ଧରି ଠିଆ ହେଲା।

ପୁଅର ଆଖି ଦୋ'ଟି ଚଢ଼ି ରହିଛି, ମନ ସବୁଦିନଠୁଁ ଆଜି ବେଶୀ ଖୁସି ଅଛି, ଆଜି ଆଧାର ଗଣ୍ଡିଏ ବେଶୀ ଖାଇ ପାରୁଛି। ଆଉ ଗଣ୍ଡିଏ ଆଉ ଗଣ୍ଡିଏ କହି ବୁଢ଼ୀ ଅନେକ ଗୁଡ଼ିଏ ଭାତ ଆଜି ପୁଅକୁ ଖୋଇ ସାଇଲାଣି। ପୁଅ ବେଶ୍ ଖାଇ ପାରୁଛି, ଆପତ୍ତି ନାହିଁ।

ବୁଢ଼ୀ ଭାରି ଖୁସି ହେଲା, କହିଲା-ବାପ, ତୁ ଆଜି କ'ଣ ଖାଇଛୁ କି? ତୁ ଯା ଖାଇଛୁ, ତୁ ରୋଜି ସେଇଥିରୁ ଟିକିଏ ଟିକିଏ ଖାଇ ଆସିବୁ, ଇମିତି ଦୋ' ଦୋ'ଟି ବେଶୀ ବେଶୀ ଖାଇଲେ ସିନା ଦିହରେ ବପୁ ବସିବ।

ବୁଢ଼ୀ ଏଣିକି ରୋଜି ଦିଚାରି ପଇସା ବେଶି ବେଶି ପୁଅକୁ ଦିଏ। ପୁଅ ମଧ ଏବେ ନିତି ଗଣ୍ଡାଏ ଗଣ୍ଡାଏ ବେଶ୍ ଖାଇ ପାରୁଛି। ଇଆଡ଼େ କଲବ ଘରର ମଧ ଅବସ୍ଥା ବଦଳି ଗଲାଣି; କାରଣ ଡ଼ିହସାହିର କାଶିଆ କଲବ ଘର ଧୁଆ ହବା ପାଇଁ ଦଣ୍ଡାରୁ ମାଠିଆ, ଓଳାହବା ପାଇଁ ଛାଞ୍ଚୁଣୀ, କଲବ ଘରେ ବିଛାହବା ପାଇଁ ଛିଣ୍ଡା ମଶିଣା, ଦୁଆରେ ଆଡ଼ି ଦବା ପାଇଁ ବାଉଁଶ, କତା ଦଉଡ଼ି କେତେ କ'ଣ ଆଣି ଗଦା କରି ଦେଲାଣି।

ଏବେ ଆଉ କଲବ ଘର ଚାକୁଣ୍ଡା ଗଛରେ ଓଳା ହୁଏନା। ବାବୁମାନେ ମଶିଣାରେ ବସନ୍ତି। ତ୍ରିନାଥ ମେଳା ହବା ପୂର୍ବରୁ ଘରଟା ଆଜିକାଲି ଧୁଆ ହୁଏ।

ଦିନୁ ଦିନୁ ତ୍ରିନାଥ ମେଳା ବେଶ୍ ଜମି ଉଠିଲା। ସମସ୍ତେ ଆଜିକାଲି ଠିକ୍ ମତେ ଆସନ୍ତି। କେତେଥର ପ୍ରସ୍ତାବ ହେଲାଣି ଯେ ଏଣିକି ଦିନବେଳେ ମଧ ତ୍ରିନାଥ ମେଳା କରାଯାଉ। କିନ୍ତୁ କେତେଜଣଙ୍କର ନିହାତି ଅସୁବିଧା ଯୋଗୁଁ ହୋଇ ପାରୁ ନାହିଁ।

ନଈ ବଢ଼ି ଦିନ, ରାତିଟା କେଡ଼େ ଭାରି ଭାରି ଲାଗୁଛି। ନଈ ଦି'କୂଳ ଖାଉଛି, ଆକାଶରେ ରାତିଟାରେ କି ଜାତିଆ ଚଢ଼େଇଗୁରା ଟେଁ ଟେଁ ହେଇ ଉଡ଼ି ବୁଲୁଛନ୍ତି। ରାତି ନିଶବଦ ହେଲାଣି, ବାୟାର ଦେଖା ନାହିଁ, ସଞ୍ଜ ହଉ ହଉ ଯାଇଛି ଯେ ଯାଇଛି.........

ମେଘ ଉଠେଇ ଆସିଲା, ପବନ ପିଟିଲା, ବିଜୁଳି ଚମକିଲା। ବୁଢ଼ୀ କାନ୍ଦିଲା, ଆଉ ସମ୍ଭାଳି ପାରିଲା ନାହିଁ। ଗାଁ ଗଣ୍ଡା ନିଶୂନ ହେଲାଣି, ବାୟା କାହିଁ? କେତେ ଦାଣ୍ଡକୁ ଚାହିଁବ? କେତେ କାନ ଡ଼େରିବ? ବୁଢ଼ୀ ଉଠିଗଲା ବୋହୂ କତିକି, ପଚାରିଲା-ବୋହୂ ବାୟା କାହିଁ? ଗାଁ ଗୋଟାକଯାକ ତାଟି କବାଟ ପଡ଼ିଲାଣି....

ବୋହୂ ଶୋଇ ଯାଇଥିଲା ନିଦରେ ବୁଢ଼ୀ ଡ଼ାକ ଶୁଣି ନିଦ ମଳ ମଳ ହେଇ ଉଠି ବସିଲା, ବେଶ୍ ଗଳାଟା ଝାଡ଼ି ନେଇ ଆରମ୍ଭ କଲା-ମୁଁ କି ଜାଣେ, ଗାତୁକୁ ଗଲା କି ବୁଲିକି ଗଲା, ଗେହ୍ଲା ପୁଅ, ଯାଉନା ଖୋଜି ଆଣିବ, "ବରଗୁଡ଼ି, ତୋ ମନେ ଥାଏ କି ନ ଥାଏ ମୋ' ମନେ ଥାଏ ଷୋଳ ଘଡ଼ି" ପୁଅର ପଛେ ମନେ ନ ଥାଉ, ମା'ର ଖାଲି......

ବୁଢ଼ୀ ଆଉ ସହି ପାରିଲା ନାହିଁ, କହିଲା ଆଚ୍ଛା, ପୁଅକୁ ନେଇ ଆସେ, ତୋ ଢ଼ଗ ଛଡ଼େଇବି..... ଲଣ୍ଠନଟା ଧରି ବୁଢ଼ୀ ବାହାରି ପଡ଼ିଲା ଗାଁ ଦାଣ୍ଡ ମଝିକି, ଡ଼ାକି ଡ଼ାକି ଚାଲିଲା-ବାୟା, ବାୟା କିରେ? ଘର ଛାଡ଼ି କିଛି ବାଟ ଚାଲି ଆସିଛି, ଦେଖିଲା ଲଣ୍ଠନଟା ଲିଭି ଆସିଲା, ତେଲ ନାହିଁ, ଲଣ୍ଠନଟା ଲିଭିଗଲା। ଅନ୍ଧାର ରାତି, ଆଗକୁ ଯିବ କି ପଛକୁ ଯିବ, ବୁଢ଼ୀ ଦିହ ଥରି ଉଠିଲା, ମୁଣ୍ଡର ବାଳ ଗୁଡ଼ା ପବନରେ ଫର୍ ଫର୍ ହୋଇ ଉଡୁଛି, ଦିହ ମୁଣ୍ଡରେ ଲୁଗା ରହୁ ନାହିଁ। ସେଇ ଅନ୍ଧାର ମଝିରେ ବୁଢ଼ୀ ଗୋଟାଏ

ପିଶାଚୁଣୀ ପରି ଆଗେଇ ଚାଲିଲା ଡ଼ାକି ଡ଼ାକି-ବାୟା, ବାୟା କିରେ ।

ବୁଢ଼ୀ ଦେଖୁଥିଲା ଏ କିଟିକିଟିଆ ଅନ୍ଧାର ରାତିରେ ଉପରେ ମେଘର ଫାଙ୍କରେ ଆକାଶର ତାରା କେଇଟା, ଆଉ ଶୁଣୁଥିଲା ତା'ର ଡ଼ାକର ଠିକ୍ ପରେ ସାମନାରେ ବହୁ ଦୂରରେ ଠିକ୍ ତାରି ପରି ଡ଼ାକ-ବାୟା, ବାୟା କିରେ ।

ବୁଢ଼ୀ ପୁଣି ଶୁଣିଲା ପଛ ଆଡ଼େ କା'ର ଗୋଡ଼ର ଶବ୍ଦ । କିଏ ସଁ ସଁ ହେଇ ପାହୁଲ ପକେଇ ତା' ପଛେ ପଛେ ଧାଇଁଛି । ବୁଢ଼ୀ ଟିକିଏ ଅଟକି ଚାହିଁଲା ପଛକୁ । ପଚାରିଲା-ବାୟା, ବାୟା କିରେ । ଦେଖିଲା ଆକାଶର ତାରା ପରି ଦି'ଟା ତାରା ଜକ୍ ଜକ୍ ହେଇ ଜଳୁଛି, ତାରି ଆଡ଼କୁ ମାଡ଼ି ଆସୁଛି ସଁ ସଁ ଶବ୍ଦରେ ।

ବୁଢ଼ୀ ଗୋଟାଏ ବିଜୁଳି ଆଲୁଅରେ ଭଲ କରି ଦେଖି ପାରିଲା ଗୋଟାଏ ବଡ଼ କଳା କୁକୁର । କୁକୁରଟା ଯାଉଥିଲା ଦଣ୍ଡା ଆଡ଼କୁ । ଅନ୍ଧାର ରାତି, ବୁଢ଼ୀ ପଡ଼ିଲା ତାରି ସାମନାରେ, ଆଉ ରକ୍ଷା ନାହିଁ । ବୁଢ଼ୀ ଧାଇଁଲା ଅଣନିଃଶ୍ୱାସୀ ହେଇ କେଉଁ ଆଡ଼କୁ ସେ ଜାଣେ ନା । କେବଳ ଧାଇଁଲା ପୁଅକୁ ଯିମିତି କଡିରେ ବସେଇ ନିତି ନିଜ ହାତରେ ବୁଢ଼ୀ ଆଧାର ଦିଏ, ଆଜି ମଧ ଠିକ୍ ସେହିପରି । କିନ୍ତୁ ବୁଢ଼ୀ ଦେଖିଲା ଚିତ୍କାର କରି କରି ବାୟା, ବାୟା କିରେ, ବାୟା ମୋର କୁଆଡ଼େ ଗଲୁରେ ?

ବାୟା ଚାଲି ଆସିଥିଲା ସଞ୍ଜ ହେଉ ହେଉ କଳବ ଘରକୁ ? କେବଳ ଗଞ୍ଜେଇର ମୋହରେ, ସେତେବେଳେ କଳବ ଘରକୁ ଆଉ କେହି ଆସି ନାହାନ୍ତି । ଅନ୍ୟ ସମସ୍ତଙ୍କୁ ଅପେକ୍ଷା କରୁ କରୁ ତାକୁ ନିଦ ହୋଇ ଯାଇଥିଲା । ଗୋଟାଏ ଭାରି ବଡ଼ ଶବ୍ଦ ହେଲା, ଯେମିତି ଗୋଟାଏ ଗଛ ଓପାଡ଼ି ପଡ଼ିଲା, ତା'ର ନିଦ ଭାଙ୍ଗିଗଲା । ସେ ଉଠି ଠିଆ ହେଲା, କେହି କୁଆଡ଼େ ନାହାନ୍ତି, ରାତି କେତେ ହେଲାଣି ସେ ଜାଣେ ନା । ବାହାରିଲା ଘରକୁ ଯିବ, ତା'ର ଭୟ ନାହିଁ । ବରଣ୍ଡାକୁ ଆସି ଦେଖିଲା ତଳ ବରଣ୍ଡାକୁ ଲାଗି ନଈ ବଢ଼ି ପାଣି ମାଡ଼ି ଆସି ଚାରିଆଡ଼େ ଭରି ଗଲାଣି । ଦାଣ୍ଡ ବିଲ ଆଉ କିଛି ଜଣା ପଡୁ ନାହିଁ । ଜାଣିଲି, ଏଇଥିଲାଗି ଆଉ କେହି ଆଜି କଳବ ଘରକୁ ଆସି ନାହାନ୍ତି ।

ଉପରେ ଦେଖିଲା ପୁଣି କଳା ମେଘ । ମଝିରେ ମଝିରେ ଲଡ଼ା ବିଜୁଳିର ଖେଳ । ଆଉ ସେହି ବିଜୁଳିର ଚମକ ମଝିରେ ଚାହିଁ ଦେଖିଲା ତା'ର ଘରୁ ଆସିବା ବାଟରେ ଯେଉଁ କାଠର ପୋଲଟି ପଡ଼େ, ଭାଙ୍ଗି ଗଲାଣି । ସେ ବୁଝି ପାରିଲା, ଯେଉଁ ଶବ୍ଦରେ ତା'ର ନିଦ ଭାଙ୍ଗିଲା, ସେ ଏହି ପୋଲ ଭାଙ୍ଗିବାର ଶବ୍ଦ ଛଡ଼ା ଆଉ କିଛି ନୁହେଁ ।

ବାୟା, ବାୟା ହୋଇଗଲା । ସେ ବର୍ତ୍ତମାନ ଘରକୁ ଯିବ କିପରି ? ଚାରିଆଡ଼େ ପାଣି ଚାଲିଛି । ପୁଣି ପୋଲଟି ଭାଙ୍ଗି ଗଲାଣି । ସ୍ଥିର କଲା, ଆଉ ଉପାୟ କ'ଣ; ସକାଳ ଯାଏ ଅପେକ୍ଷା କରିବ, ସକାଳ ହେଲେ ଯା' ହବ । କିନ୍ତୁ ସେଆଡ଼େ ମା ଯେ ଚାହିଁ ବସି ଥିବ । ତା'ର ଏତେ ଡ଼େରି କେଉଁଦିନ ହେଇ ନାହିଁ, ନା, ମା ମୋର ଶୋଇ ଯାଇଥିବ । ଏହିପରି ଭାବୁଁ ଭାବୁଁ ତା'ର କାନରେ ବାଜିଲା ଦୂରରୁ-ବାୟା, ବାୟା କିରେ ବାୟା ମୋର କୁଆଡ଼େ ଗଲୁରେ ?

ପୁଣି ଶୁଣିଲା ।

ବାୟା, ବାୟା କିରେ, ବାୟା ମୋର କୁଆଡ଼େ ଗଲୁରେ ?

ସେ ଜାଣିଲା, ଏ ତା'ର ମା'ର ଡ଼ାକ । ସେ ଚଂଚଳ ହେଇ ଉଠିଲା କିନ୍ତୁ କ'ଣ କରିବ, ମା କତିକି କିମିତି ଯିବ ? ଚାରିଆଡ଼େ ଯେ ପାଣି । ଡ଼ାକିଲା-ମା, ମା, ପୋଲ ଭାଙ୍ଗି ଯାଇଛି ସେଇଠି ଠିଆ ହ । ପୁଣି ଶୁଣାଗଲା ନିକଟରେ-ବାୟା, ବାୟା କିରେ, ବାୟା ମୋର କୁଆଡ଼େ ଗଲୁରେ ?

ସେ ଡ଼ାକିଲା ଚିତ୍କାର କରି-ମା, ମା, ଆଉ ଆ ନା, ପାଣି, ପୋଲ ଭାଙ୍ଗି... ... ... ବୁଢ଼ୀର ଆଉ ଦମ ଘରେ ପଶୁ ନାହିଁ । କୁକୁରର ଭୟରେ ବୁଢ଼ୀର ମୁଣ୍ଡରେ ଆଉ କିଛି ନାହିଁ । ବୁଢ଼ୀ ଧାଇଁଛି ପ୍ରାଣ ବିକଳରେ । ପୁଣି

ଶୁଣାଗଲା ଆହୁରି ନିକଟରେ-ବାୟା, ବାୟା କିରେ, ବାୟା ମୋର କୁଆଡ଼େ ଗଲୁରେ ?

ତା'ର ମା'ର ଡ଼ାକ ଶୁଣି ପାରିଲା ଠିକ୍ ସେହି ଭଙ୍ଗା ପୋଲ ଉପରେ । ସୁଅ ଚାଲିଥିଲା ଖୁବ୍ ବେଗରେ ତାରି ତଳେ । ସେ ଆହୁରି ଚିତ୍କାର କରି ଡ଼ାକି ଉଠିଲା-ମା, ମା-ମା-କେବଳ ପାଣି ତାରି ଭାଷାରେ ଉତ୍ତର ଦେଲା-ଧପାସ୍ । ଆକାଶରେ ବିଜୁଳି ଚମକି ଉଠିଲା । ସେ ସେହି ବିଜୁଳି ଆଲୁଅରେ ଦେଖିଲା, ସେହି ଭଙ୍ଗା ପୋଲ ଉପରେ ଗୋଟାଏ ବଡ଼ କଳା କୁକୁର ଠିଆ ହୋଇ ଏଆଡ଼େ ସେଆଡ଼େ ଚାହୁଁଛି ।

ବାୟା ତଥାପି ବୁକୁଫଟା କରୁଣ କଣ୍ଠରେ ଡ଼ାକିବାକୁ ଲାଗିଲା-ମା-ମା-ମା ।

# ସୁନନ୍ଦାର ବର

ସେ ବର୍ଷ କଲେଜ ଛାଡ଼ି ଘରେ ଥାଏ। ଘର ସହର ତଳ ଗୋଟିଏ ସାହି ଭିତରେ। ସାହି ଖଣ୍ଡକ ଦେଖିବାକୁ ଯିମିତି ସହର ମଫସଲ ଉଭୟେ ମିଶି ଗୋଟିଏ 'ହରିହର' ମୂର୍ତ୍ତି ପରି।

କଲେଜ ଛାଡ଼ିଲା ପରେ I.Sc. କ୍ଲାସର ବହି ଗୁଡ଼ାକ ଆଲମାରିର ଗୋଟାଏ ଥାକରେ ରହି ଯିମିତି ଗୋଟାଏ ଲରି ଭିତରେ ଯାତ୍ରୀ ବୋଝେଇ ହେଲା ପରି ଦେଖା ଯାଉଥାଏ। ଭାରି ଭିଡ଼, ଖୁନ୍ଦାଖୁନ୍ଦି ଆଉ ଜାଗା ନାହିଁ। ବହିଗୁଡ଼ାକ ଯାତ୍ରୀ ପରି ଦେଖାଗଲେ ସତ କିନ୍ତୁ ଏମାନେ ଓହ୍ଲେଇବେ କେଉଁଠି ଓ କେବେ?

ଯୋଡ଼ିଏ ମାତ୍ର ଷ୍ଟେସନ୍-ଗୋଟିଏ ଗରିବ ପିଲାର ହାତ, ଆଉ ଗୋଟିଏ ବଡ଼ ଲୋକ ପିଲାର ହାତ। ଭାବି ଠିକ୍ କଲି ଯେ ବଡ଼ ଲୋକ ପିଲା ହାତରେ ଓହ୍ଲେଇବ। ତା'ପାଖରୁ ପଇସା ଆଦାୟ କରିବି ଆଉ ଯେ ଗରିବ ପିଲା ହାତରେ ଓହ୍ଲେଇବ ତାକୁ ସେମିତି ଛାଡ଼ି ଦେବି। କିଛିଦିନ ପରେ ବହିଗୁଡ଼ାକର ଗୋଟାଏ ଜିଦ୍ ଦେଖିଲି ଯେ ସମସ୍ତେ ଏକ ସାଙ୍ଗରେ ଓହ୍ଲେଇବେ। ଗରିବ ପିଲା ହାତ-ଷ୍ଟେସନରେ।

ସତକୁ ସତ ଯେ ଷ୍ଟେସନ୍ କୁଟିଲା, ସେଥିରେ କିଛି ନାହିଁ-ଛାତରୁ ପାଣି ଗଳେ, ଟେଲିଫୋନ୍, ନାଲି ନେଳି ପତାକା, ଆଲୁଅ, ପାଣି, Waiting Room, Latrine, ଘ<। Signal Post, କତିରେ Tea stall କିମ୍ବା Refreshment room, କିଛି ନାହିଁ, କେବଳ ଗୋଟିଏ ଲାଇନ, ସେଥିରେ ଗାଡ଼ି ଚାଲୁଥିଲା, ବର୍ତ୍ତମାନ କିନ୍ତୁ ଅଟକି ଯାଇଛି, କେବଳ ଯାତ୍ରୀର ଅଭାବରେ।

ଯାତ୍ରୀ ହେଲେ ପୁଣି ଚାଲିବ ଅର୍ଥାତ୍ ଗ୍ରାହକ ଯେ କୁଟିଲେ-ବିଧବା ତନୟ, ଅସହାୟ, ନିରୁପାୟ, ଗ୍ରାହକଙ୍କର ମୁହଁଟି ଦେଖିବାକୁ ଯିମିତି ଆଜିକାଲିର ନୂଆ ପଇସାଟି ପରି, ପଇସା ପ୍ରକୃତରେ, କିନ୍ତୁ ମଝିରେ ଗୋଟାଏ ଛିଦ୍ର ଅର୍ଥାତ୍-କିଛି ନାହିଁ, ଫାଙ୍କା। ପୁଣି ଶରୀରକୁ ଚାହିଁଲେ ମନେ ହୁଏ ଯିମିତି Wartime Packing କିମ୍ବା War quality.

ନିହାତି ଗରିବ ପିଲା, ବାସନା I.Sc. ପଢ଼ିବେ, କେତେ ଖଣ୍ଡ ବହି ସାହାଯ୍ୟ କଲେ ବଢ଼ି ପାରିବେ, ନଚେତ୍ ନିରୁପାୟ। ଶୁଣି ଆଶ୍ଚର୍ଯ୍ୟ ହେଲି ଏବଂ I.Sc. ନ ପଢ଼ି I.A. ପଢ଼ିବା ପାଇଁ କେତେଗୁଡ଼ାଏ ଉପଦେଶ ମଧ ଦେଲି, କାରଣ ତାଙ୍କର ଅବସ୍ଥା ଖରାପ ବୋଲି ସେ ଯେପରି ଭୂମିକା ଦେଲେ।

ଏଥିରେ କେବଳ ମୋର Seniority ର ସ୍ୱରଟି ଯା' ଅକ୍ଷୁର୍ଣ୍ଣ ରଖି ପାରିଲି ସେତିକି କିନ୍ତୁ ଉପଦେଶରେ କୌଣସି ଫଳ ହେଲା ନାହିଁ। କାରଣ ତାଙ୍କ Report ରୁ ଯା ଶୁଣିଲି, ସେଥିରେ ମୁଁ କେବଳ କେତେ ଖଣ୍ଡ ବହି ସାହାଯ୍ୟ କଲେ ଚଳିଯିବ, ଅନ୍ୟାନ୍ୟ ଖର୍ଚ୍ଚ ବହନ କରିବାକୁ ତାଙ୍କର ଆଗରୁ କେତେଜଣ ତାଲିକା ଭୁକ୍ତ ଅଛନ୍ତି। ମୋର ପୁଣି ଏତିକି ବେଳେ ମନେ ପଡ଼ିଲା-Fortune favours the brave.

ସେତେବେଳେ ମୁଁ ସଦ୍ୟ କଲେଜ ଛାଡ଼ିଥାଏ, ମନଟା ଥାଏ ଠିକ୍ ସେ କଲେଜ ଘର ଗୁଡ଼ାକର କବାଟର କାଚ ପରି ସ୍ୱଚ୍ଛ ଆଉ ଅନ୍ତର ମଧ ଥାଏ ତା'ର ଚୂନମଖା କାନ୍ଥ ଗୁଡ଼ାକ ପରି ସାଦା ଧପ୍ ଧପ୍। ମୁଁ ଦୀନବନ୍ଧୁ ବୋଲି ଗ୍ରାହକ ମଧ ବେଶ୍ ଖୋଲାଖୋଲି ମୋତେ ଜଣେଇ ଦେଲେ। କାରଣ ଏ ବିଷୟରେ ସେ ଅନେକ ତଥ୍ୟ ଅନେକ ଆଗରୁ ସଂଗ୍ରହ କରିଥିଲେ। ଯଥା-ମୁଁ ଇମିତି ଅକୁଣ୍ଠିତ ଭାବରେ ଯାତ୍ରୀ ଯୋଗାଇ ପାରେ।

ମନଟା ମୋର ଆନନ୍ଦରେ ଫୁଲି ଉଠିଲା। ବହିଗୁଡିକ ସବୁ ତାଙ୍କ ହାତରେ ଅକୁଣ୍ଠିତ ଭାବରେ ଅବିଳମ୍ୱେ ଅଜାଡ଼ି ଦେଲି। ସେ ମଧ ଯଥୋଚିତ୍ କୃତଜ୍ଞତା ଜ୍ଞାପନ ସହ ଭକ୍ତିଭରା ପ୍ରଣାମଟିଏ କରି ଅବିଳମ୍ୱେ

ବିଦାୟ ନେଲେ । ତାଙ୍କର ପ୍ରସ୍ଥାନ ପରେ ମୋର ଏ ବହି କେତେ ଖଣ୍ଡ ଦାନ କରିବାର କଥା ଭାବି ମନେ ହେଲା-

ଯା'ହଉ ଗରିବ ପିଲାଟି ପଢ଼ିବ, ମଣିଷ ହବ, ଦିନେ ହେଲେ ମୋ କଥା ଭାବିବ, ପାଞ୍ଚଲୋକ ଆଗରେ କହିବ, ପାଞ୍ଚଲୋକ ଆଗରେ ମୋ ନାଁ ପଡ଼ିବ । ଆଉ ପୁଣ୍ୟର କଥା, ସେତ ଏ ସାମାନ୍ୟ I.Sc. Classର ବହି କେତେ ଖଣ୍ଡ ଆଜି ଦାନ କରି ଯା' ଅର୍ଜନ କଲି, ସେ ତ କଲେଜରେ ଯେତେ କ୍ଲାସ ଅଛି, ସେଥିରେ ଯେତେ ବିଷୟ ପଢ଼ା ହୁଏ, ସେ ସବୁ ଗୁଡ଼ାକର Head Mark ଯଦି ଏକାଠି ଯୋଗ କରା ହୁଏ, ତେବେ ସୁଦ୍ଧା ଆଜିର ମୋର ଏ ପୁଣ୍ୟ ଶୈଳ ନିକଟରେ ସେ ଯୋଗ ଫଳ ସାମାନ୍ୟ ଉପଳ ଖଣ୍ଡ ସଦୃଶ । ପୁଣି ଭାବିଲି, କଲେଜରେ ପଢ଼ିବା ବେଳେ I.Sc. ବିଦ୍ୟାର Pass Mark କେବଳ ଅର୍ଜନ କରିବା ପାଇଁ କେତେ ଟଣାଟଣି, ଛୁଟାଛୁଟି, ହା, ହୁତାଶ ! ! !

ବହି ସବୁତ ଗଲା, ରହିଲି ମୁଁ, ଯେତେ ଯୁଆଡ଼େ ଆଡ଼୍ଡ଼ା ଦେଇ ସାହିରେ ଆସି ଘରେ ପଶିଲେ, କାନରେ ବାଜିଲା ସୁନନ୍ଦାର ସୁଲଳିତ କଣ୍ଠର ଝଙ୍କାର । ପୁଣି ତା' ସହିତରେ ବେଳେବେଳେ ହାର୍‌ମୋନିୟମ, ସେତାର, ଆଉ ବୀଣାର ସ୍ୱର ଲହରୀ ।

ମୋର ମନଟା ସେତେବେଳେ ଯିମିତି ଦୋଳି ଖେଳୁଥାଏ । ଭାରତ ଆଉ ଇଂଲଣ୍ଡ ଭିତରେ ସୁନନ୍ଦା ମଧ ସିମିତି ତା'ବାରିଆଡ଼େ ଗୋଟାଏ ଗଛରେ ଦଉଡ଼ି ବାନ୍ଧ ଖେଳେ । ଖାଲି ଦୋଳି ଖେଳେ ନାହିଁ ଗୀତ ବୋଲେ । ମୁଁ ଆମର ଛାତ ଉପରେ ଠିଆ ହୋଇ ଦେଖେ, ସେ ମୋତେ ଚାହେଁ, ମୁଁ ତାକୁ ଚାହେଁ । ଇମିତି କିଛିଦିନ ବିତିଲା ପରେ Romance ଲାଗି ଲୋକ ଲୋଚନ ଅଗୋଚରରେ ଚେଷ୍ଟା ମଧ ଚାଲିଲା ।

ଆଗରୁ କହିଛି ଆମ ସାହି ଖଣ୍ଡକ 'ହରିହର' ମୂର୍ତ୍ତିପରି, ମର୍ତ୍ତିର 'ହର' ଅଂଶରେ ଆଧୁନିକ ଧରଣର ସହରିଆ ମନୋବୃର୍ତ୍ତିର ଆମେମାନେ କେତେ ଜଣ ଥିଲେ ମଧ, 'ହରି' ଅଂଶରେ ଗାଁ ଗହଳିର ମନୋବୃର୍ତ୍ତି ନେଇ କେତେକ ଲୋକ ଥାନ୍ତି, ଯା'ଙ୍କ ମୁହଁରୁ ଶୁଣାଯାଏ କେବଳ ସୁନନ୍ଦାର ନିନ୍ଦା, ଯିମିତି ତାକୁ କିଏ ବୋହୂ କରିନବ? ସେ କା' ଘରକୁ ଯିବ? ତା' ଲାଗି ବର ଜନ୍ମ ହୋଇ ନାହିଁ । ଟୋକି ଖଣ୍ଡକ ଏଡ଼ିକି ବେହଲା! କ'ଣ ହଉଛି ସେ? ପାଠ ପଢ଼ି ପଢ଼ି ତ ଇସ୍କୁଲ ପାଠ । ଆଉ ଗୀତ ବୋଲି ଜାଣେ । ଏତେ ଚାତର! ଲାଜ ସରମ ହୋଇ ଟିକିଏ ନାହିଁ, ରୂପ ଅଛି ବୋଲି ଦେଖେଇ ହଉଛି......

ଦିନ ଆସିଲା, ସୁନନ୍ଦାର ବାହାଫୁଲ ଫୁଟିଲା ବର ଜୁଟିଲା । ଭାରି ବଡ଼ ଘର, ଭାରି ପଇସା ବାଲା, ବରର କଲେଜ ପଢ଼ା, ବରର ଚାରି ପାଂ ଭାଇ, ସମସ୍ତେ ଜୋଗା, ଶାଶୁ ଶ୍ୱଶୁର ସମସ୍ତେ ଅଛନ୍ତି । ପୁରା ଘର, ଦେଢ଼ି, ମହାଜନୀ, ଲକ୍ଷ୍ମୀ ଡ଼ାକିଲେ 'ଓ' କରୁଛନ୍ତି ।

ସୁନନ୍ଦାର ବିଭାଘର ।

ପଡ଼ୋଶୀ ବୋଲି ନିମନ୍ତ୍ରିତ ହୋଇଥାଉ ଆମେମାନେ । ବିବାହ ରଜନୀରେ ବର ପହଂଚିବା ପୂର୍ବରୁ ଯେତେ ପଡ଼ୋଶୀ ଉପସ୍ଥିତ ଥିଲେ ସୁନନ୍ଦାଙ୍କ ଘରେ, ତା' ଭିତରେ ମୁଁ ଥିଲି ଜଣେ । ବର ଆସିଲେ, ବାଣ, ଆତଶ ବାଜି, ଆଲୁଅ, ବାଜାରେ ସାହି ଖଣ୍ଡକ ଗରମ ହୋଇ ଉଠିଲା ସେଥିରେ ପୁଣି ବରଯାତ୍ରୀମାନେ ଗୋଟିକ ପରେ ଗୋଟିଏ ପିମ୍ପୁଡ଼ି ଧାର ପରି ଚାଲି ଆସିଲେ ।

ଦେଖିଲି ବରଯାତ୍ରୀଙ୍କ ଭିତରୁ ମୋର ଜଣେ ମାତ୍ର ଚିହ୍ନା । ଶେଷରେ ବର ଆସି ଗୋଟିଏ ସୁସଜ୍ଜିତ, ସୁବାସିତ 'କାର୍' ଖଣ୍ଡକରେ ପହଁଚିଲେ । ସମସ୍ତଙ୍କର ଆଗ୍ରହ ବରକୁ ଦେଖିବେ କିନ୍ତୁ ମୋର ସେତେ ଆଗ୍ରହ ନଥାଏ କାରଣ Romance ଜମି ଆସିଲା ବେଳକୁ ଏ ଧୂମକେତୁର ଆବିର୍ଭାବ ।

ବରକୁ ଦେଖିଲି । ବରକୁ ଦେଖି ଚମକି ପଡ଼ିଲି । କାରଣ ଏ ଯେ ବର ବେଶରେ ମୋର ସେ ପୂର୍ବ ପରିଚିତ ଗ୍ରାହକ । ଏଇ ସୁନନ୍ଦାର ବର ! ! !

ଗ୍ରାହକଙ୍କର ରୂପ ଯା'ଦେଖିଥିଲି, ବର୍ତ୍ତମାନତ ଠିକ୍ ସିମିତି ଅଛି । ଅନ୍ୟାନ୍ୟ ଭାଇମାନଙ୍କୁ ଦେଖିଲି, ସେମାନେ

ମଧ୍ୟ ଠିକ୍ ସିମିତି ଦେଖିବାକୁ । କିନ୍ତୁ ବରର ପିତାଙ୍କର ରୂପ ଦେଖିବାକୁ ଗୋଟିଏ ବାଇଗଣପଲେଇ ଆମ୍ବ ପରି, ଠାଣି-ମାମଲତକାର ।

ବର ଯାଇ ଗୋଟିଏ ଫୁଟା ଫୁଲ ପରି ଭଦ୍ରଜନ ପରିବେଷ୍ଟିତ ହୋଇ ଅର୍ଦ୍ଧଶୟାନ ଅବସ୍ଥାରେ ଗୋଟିଏ ବଡ଼ ତକିଆକୁ ଆଉଜି ବସିଲେ । ଅଙ୍ଗର ସୌରଭରେ ଚାରିଆଡ଼ ମହକି ଉଠିଲା । ଏଣେ ମୋର ମଧ୍ୟ ଗୋଟାଏ କୋହ ଉଠିଲା । ବରଯାତ୍ରୀଙ୍କ ଭିତରେ ମୋର ଯେଉଁ ଜଣକ ଥିଲେ ଚିହ୍ନା, ସେ ମୋର କଲେଜ ପଢ଼ିଲା ବେଳର ସାଥୀ ।

ତାକୁ ଟିକିଏ ଏକୁଟିଆ ଜାଗାକୁ ଡ଼ାକିନେଇ ସବୁ କଥା କହି ବରକୁ ଗୋଟାଏ ବଡ଼ ଠକ ବୋଲି ପ୍ରମାଣ କରିବାକୁ ଯାଇ ଦେଖେ ତ ସେ ଆଦୌ ମୋ କଥାକୁ ବିଶ୍ୱାସ କରେ ନା । ପୁଣି କହିଲା-ସେ ଆଉ କିଏ ହେଇଥିବ ? ଏ ନୁହେଁ, ଯାକୁ ମୁଁ ଜାଣେ । ଏ ଖାନ୍‌ଦାନ ଘର ପିଲା, ଏ ତୋଠୁଁ ଗରିବ ପିଲା ବୋଲି ପରିଚୟ ଦେଇ କେତେଗୁଡ଼ାଏ ବହି ନେଇଯାଇଛି, ମିଛ କଥା.....

ମୁଁ ଚୁପ୍ ରହିଲି । ତା'ପରେ ସେଠୁ ଆସି ବରର ମୁହଁକୁ ଟିକିଏ ଚାହିଁ ଚାରିଆଖି କରିବାର ଚେଷ୍ଟା କଲି କିନ୍ତୁ ଦେଖିଲି-ଚାରି ଆଖି ହବା ମାତ୍ରେ ସେ ଅଧୋବଦନରେ ରହୁଥାନ୍ତି । ବୁଝି ପାରିଲି ନାହିଁ-ସେ ମୋତେ ଦେଖି ଲଜ୍ଜାରେ ଇମିତି ନତମୁଖରେ ରହୁଛନ୍ତି, ନା, ତାଙ୍କର ଏଟା ବର ସୁଲଭ ସଲଜ୍ଜ ଠାଣି ।

ମନକୁ ବୁଝେଇଲି-ସୁନନ୍ଦାକୁ ଛାଡ଼ିଲି, ଆଉ ଏ ବହି କେତେ ଖଣ୍ଡ ଲାଗି.......

ତେବେ ସୁଦ୍ଧା ମନେ ପଡୁଥାଏ-ବହିଗୁଡ଼ାକ ଥିଲେ ବର୍ତ୍ତମାନ ବିକିଥିଲେ କେତେ ପଇସା ହେଇଥାନ୍ତା । କାରଣ ସେତେବେଳକୁ ମୋର କଲେଜ ଛାଡ଼ିବା ଅନେକ ଦିନ ହେଇଗଲାଣି । ଶେଷରେ ନିମନ୍ତ୍ରଣ ରକ୍ଷା କରି ଘରକୁ ଫେରିଲି । ଆଣିଲି ପକେଟରେ ବର ଏବଂ କନ୍ୟା ତରଫରୁ ଛପା ହୋଇଥିବା ଦୁଇଖଣ୍ଡି 'ପ୍ରୀତି ଉପହାର' । ବାଟରେ ଆସୁ ଆସୁ ଜଣେ ମୋରି ସାମନା ଦେଇ କିଏ ଗାଇ ଗାଇ ଚାଲିଗଲା-

ଘର୍ ଘର୍‌ମେ ଦେୱାଲୀ
    ମେରେ ଘର୍‌ମେ ଅନ୍ଧେରା...

ମୋର ଇଚ୍ଛା ହେଲା ତା'ରି ପରି ଥରେ ଗାଇବି-

ଘର୍ ଘର୍‌ମେ ଦେୱାଲୀ
    ମେରେ ଦିଲ୍‌ମେ ଅନ୍ଧେରା...

ପାରିଲି ନାହିଁ ।

# ଜାଇ ମହାତ୍ମ୍ୟ

ସରସୀକୁ କି ରୋଗ ଧଇଲା କେଜାଣି, କେହି ଚିହ୍ନି ପାରିଲେ ନାହିଁ। ଖାଲି ଶୁଖି ଶୁଖି କାଠ ପରି ହୋଇଗଲା। ସେ ନିଜେ ବି ଭାରି ଅମାନିଆ ପିଲାଟାଏ। ପାଠଶାଠ ପଢ଼ିଥିଲେ କ'ଣ ହବ, କୋଉ ଓଷଧ ଖାଇବ ନାହିଁ। ମନକୁ ଯା ଆସିଲା ତା'ଖାଇଲା। ଭାରି ଜିଦଖୋରଣୀ।

ଶେଷରେ ଡ଼ାକ୍ତର କହିଲା, ସ୍ଥାନ ବଦଳାଇବା ଦରକାର। ହାଉଆ ପରିବର୍ତ୍ତନ ହେଲେ ରୋଗ ଛାଡ଼ି ଯାଇପାରେ। ସେଇଆ କରାହେଲା। ସରସୀକୁ ନେଇ ତା'ବାପ, ମା ଖୋରଧା ଆସିଲେ। ତାଙ୍କ ନିଜ ଘର କଟକ। ଖୋରଧାରେ ଦି'ମାସ ହେଲା ଆସି କୌଣସି ପରିବର୍ତ୍ତନ ଦେଖା ଯାଉନାହିଁ। ଆହୁରି ଡ଼ାକ୍ତର କହିଲେ, ବେଶୀ ବୁଲଚାଲ କଲେ ବିପଦ ଘଟିପାରେ। ନିହାତି ଦୁର୍ବଳତା ଯୋଗୁଁ ଥଣ୍ଡା ଲଗେଇବାକୁ ମନା। ଥଣ୍ଡା ଲାଗିଲେ ଦେହ ଅଧିକ ଖରାପ ହେବାର କଥା।

ସରସୀର ପିଲାଦିନରୁ ମୁହଁ ଭାରି ତେଜ, ସମସ୍ତିଙ୍କି ମନକଥା ମୁହେଁ ମୁହେଁ ବାଡ଼େଇ ଦେବ, ତାପରେ ପୁଣି ଏବେ ରୋଗ ଜାଳାରେ ଚିଡ଼ିଚିଡ଼ା ପ୍ରକୃତି ହେଇଗଲା। ମନ ହେଇଛିତ ଭଲରେ କଥାବାର୍ତ୍ତା କରିଛି, ନୋହିଲେ ନାହିଁ। ଖୋରଧାକୁ ଆସି ସରସୀ ବିଛଣାରେ ପଡ଼ିଥାଏ। କ୍ରମେ ଚିହ୍ନା ପରିଚୟ ହେଲାରୁ କେତେ ପାଖଆଖ ଗାଁ ମାଇପେ ଆସନ୍ତି ଦେଖିବାକୁ। ସରସୀ ଯଦି ଚେଇଁଥାଏ, ତାଙ୍କ ସାଙ୍ଗରେ ଗପକରେ, ହସେ ପୁଣି ଦିହ ବ୍ୟସ୍ତ ଲାଗିଲେ ଶୋଇପଡ଼େ।

ଇମିତି ନିତି ଗାଁ ମାଇପେ ଦେଖିବାକୁ ଆସୁ ଆସୁ ଦିନେ କଥା ଉଠିଲା ସରସୀକୁ ନେଇ ଗୋଟିଏ ବାବାଜୀଙ୍କ ପାଖକୁ ହୁକୁମ ଆଣିବାକୁ ଯିବେ। ଦେଖାଯାଉ ଏତେ ଆଉ ଏତେ ରକମ ହେଲା, କିଛି ତ ହେଲା ନାହିଁ, ବାବାଜୀଙ୍କ ହୁକୁମରେ ଯଦି କିଛି ହୁଏ। ପୁନି କହିଲା ନିଶ୍ଚେତ ଭଲ ହେବ। ମୋ ବୋହୂକୁ କହିଲେ ପୁଅ ହବ, ଠିକ୍ ପୁଅ ହେଲା। ସରସୀ ଏ କଥା ଶୁଣି ଥଟ୍ଟା କରି କହିଲା-ହଁ, ସେ ଜାଣିଥିଲା ତମ ବୋହୂର ପୁଅ ହବ ବୋଲି। କହି ଦେଇଥିଲା, ଯୋଗକୁ ପୁଅ ହେଲାରୁ କ'ଣ ନା ବାବାଜୀଙ୍କ କଥା ଠିକ୍। ମୋର ବାବାଜୀଙ୍କ ଉପରେ ବିଶ୍ୱାସ ନାହିଁ।

କାଙ୍ଗାଳୀ ଭାରିଯା ଏକଥା ଶୁଣି କହିଲା, ନା, ନା, ସତକୁ ସତ ମୋ ମୁଦିଟା ସେହି ଘର ଭିତରେ ପଡ଼ିଛି। ମୁଁ କେତେ ଲୋକଙ୍କୁ ସନ୍ଦେହ କଲି, ବାବାଜୀ କହିଲେ, କେହି ନେଇ ନାହିଁ ତୁ ଘରେ ଖୋଜ ପାଇବୁ, ସତକୁ ସତ ପୁଣି ମିଳିଲା। ସରସୀ କହିଲା, ବାବାଜୀ ପଚାରିଥିଲା କି ତମ ଘରକୁ କେହି ଆସିଥିଲେ ବୋଲି? କାଙ୍ଗାଳୀ ଭାରିଯା ଆହୁରି ଯୋରରେ କହିଲା-ହଁ ପଚାରିଥିଲେ। ମୁଁ କହିଲି-କେହି ଆସି ନ ଥିଲେ। ସରସୀ ହସି ହସି କହିଲା, ତେବେ ତ ସେ ଯେମିତି ହେଲେ କହିବ ଘରେ ଖୋଜିବା ପାଇଁ। ଏଥିରେ ବାବାଜୀଙ୍କ କଥା ଠିକ୍ ହୋଇଗଲା ଗୋଟେ କ'ଣ?

ସଖି ବୋଉ କହିଲା, ହଁ, ଗୁଣ ନ ଥିଲେ କି ଲୋକେ ପିମ୍ପୁଡ଼ି ଧାର ପରି ତୁଣ୍ଡାରେ ଚାଲିଛନ୍ତି? ସରସୀ ପଚାରିଲା, ଏ ବାବାଜୀଙ୍କ ନାଁ କ'ଣ? ସଖି ବୋଉ କହିଲା-ବାୟା ବାବା। ସରସୀ ହସି ଉଠିଲା, କ'ଣ ଆମ କଟକରେ ତ ଶୁଣିଥିଲି ପାଗଳା ବାବା, ଲଙ୍ଗୁଳି ବାବା, ଏ ପୁଣି 'ବାୟା ବାବା' କେଉଁଠୁ ବାହାରିଲେଣି? ସଖି ବୋଉ କହିଲା, ଛି, ହସୁଛୁ ଝିଅ, ତାଙ୍କ ନାଁ ଶୁଣି କୋଉ କୋଉ ରାଇଜରୁ ଲୋକ ଧାଇଁଛନ୍ତି। ସେମିତି କହ ନା, ତୋ କପାଳକୁ ତୁ ଏଠିକି ଆସିଛୁ,ସେ ବି ଏଠି ଆସି ପହଞ୍ଚିଛନ୍ତି। ମୋ ମନେ ହଉଛି, ତୋ ଦଶା ମେଣ୍ଟି ଆସିଲା, ନୋହିଲେ ଏମିତି ସୁଯୋଗ ଘଟେ ନାହିଁ।

ସରସୀ ମା ଟିକିଏ ବିରକ୍ତ ହୋଇ କହିଲେ-ତା'ର ସବୁ ଥିରେ ଗୋଟାଏ ହସ, ଥଟ୍ଟା। କଥାରେ ଅଛି-କେ

ବା ଅଛି କେଉଁମନ୍ତେ, ତାହା ବା ଜାଣିବି କେମନ୍ତେ । କେଉଁଠି ହଜାର ହଜାର ଟଙ୍କା ଖରଚ ହଉଛି ପୁଣି କେଉଁଠି ଦୁବ ଘାସରେ ଭଲ ହେଇ ଯାଉଛି । ଚାଲ ଥରେ ଦେଖିବା । ଦଶା ଭଲ ପଡ଼ି ଆସିଲାଣି, ନୋହିଲେ ଇମିତି ମହାପୁରୁଷଙ୍କ ଭେଟ ପାଇବା ସହଜ ନୁହେଁ ଝିଅ ।

ସରସୀ କହିଲା, ମୋରତ ଥଣ୍ଡା ଲାଗିଲେ ଖରାପ ହବ ଡ଼ାକ୍ତର କହିଛନ୍ତି । ସହଜେ ଆଜି କାଲି ମେଘୁଆ ହେଉଛି, ବର୍ଷା ହବ କ'ଣ ହବ ମୁଁ ଯିବି ନାହିଁ । ସରସୀର ମା କହିଲେ, ରଖ ତୋର ଡ଼ାକ୍ତରୀ କଥାଗୁଡ଼ାକ ଡ଼ାକ୍ତରୀ ଔଷଧତ ଖାଇବୁ ନାହିଁ, ଡ଼ାକ୍ତର କଥାରେ ଚାଲିବୁ କାହିଁକି ? ସରସୀ କହିଲା, ଡ଼ାକ୍ତରୀ ଔଷଧ ପିତା ଲାଗୁଛି ବୋଲି ଖାଉନାହିଁ । ଡ଼ାକ୍ତର କଥା କ'ଣ ପିତା ଲାଗୁଛି ? ନା, ମୁଁ ଯିବି ନାହିଁ । ମଲେ ମରିବି ପଛେ, ମୋର ସେ ହୁକୁମ ଔଷଧରେ ବିଶ୍ୱାସ ନାହିଁ ।

ସରସୀର ବାବା ଏକଥା ଶୁଣି କହିଲେ, ନାହିଁ, ସର ଯା, ସବୁ କଥାକୁ ଅବିଶ୍ୱାସ କରିବା ଉଚିତ୍ ନୁହେଁ । ମୋତେ ସେମିତି ଥରେ ଜର ହୋଇଥିଲା ଯେ, ମୋତେ ଛାଡ଼ିଲା ନାହିଁ । କେତେ ଟଙ୍କା ଉଡ଼ିଗଲା । କିନ୍ତୁ ଜଣେ ବାବାଜୀ କ'ଣ ଖଣ୍ଡିଏ ଚେର ଦେଲେ ହାତରେ ବାନ୍ଧିବାକୁ, ହାତରେ ବାନ୍ଧିଲି ଜର ଓହ୍ଲେଇଗଲା । ଗୁଣ ଅଛି, ବାବାଜୀ ବୈଷ୍ଣବଙ୍କ ଗୁଣ ନାହିଁ କିଏ କହିଲା ? ସଖି ବୋଉ କହିଲା, ଚାଲ ମା, ଦିହ ଆଚ୍ଛା ହେଇ ଯିବ । କାହିଁକି ଆପତ୍ତି କରୁଛୁ ? ପାଁସୁକା ପଇସା ଆଉ ଗୋଟିଏ ନିଖୁଣ ଗୁଆଟିଏ କାନିରେ ବାନ୍ଧି, ବାବାଜୀଙ୍କ ଗୋଡ଼ ତଳେ ଆଗେ ଥୋଇ ଥୋଇ ଦବୁ । ଗୋଡ଼ ତଳେ ପଡ଼ିବୁ, ସବୁ ଜଣେଇବୁ । ବାବାଜୀ ହୁକୁମ ଦେବେ, ଦିହ ସୁନା ହେଇଯିବ । ମା'ଟା ପରା ଚାଲ, ଆମେ ତୋ' ସାଙ୍ଗରେ ଯିବୁ ।

ଲୋକ ବୁଡ଼ିଗଲା ବେଳେ ଯେପରି ହତାଶ ହେଇ କୁଟା ଖଣ୍ଡେ ଭାସି ଯାଉଥିଲେ ଧରିବାକୁ ଇଚ୍ଛା କରେ, ସରସୀର ମନଟା ସେମିତି ବଦଳି ଗଲା । ମନେ କଲା, ବାବା ଯେତେବେଳେ କହୁଛନ୍ତି ଆଉ ସମସ୍ତେ କହୁଛନ୍ତି ଏତେ ଚେଷ୍ଟା ହେଲା ଏତକ ଆଉ କାହିଁକି ବାକି ରହିବ ? ଥରେ ଦେଖାଯାଉ ।

ସରସୀକୁ ଧରା ଧରି କରି ଶଗଡ଼ ଭିତରେ ଶୁଆଇଦେଲେ । ସାଙ୍ଗରେ ଗଲେ ସରସୀର ମା, ସଖି ବୋଉ ଆଉ କେତେଗୁଡ଼ିଏ ମାଇପେ ଶଗଡ଼ର ପଛେ ପଛେ ଚାଲିଲେ, ବାବାଜୀଙ୍କୁ ଦର୍ଶନ କରିବେ । ସରସୀର ବାବାଙ୍କର ଯିବାର ଦରକାର ହେଲା ନାହିଁ । ବାବାଜୀ ବିଜେ ହେଇଛନ୍ତି ଆସି ହଟକେଶ୍ୱରଙ୍କ ନିକଟରେ ।

ବାବାଜୀଙ୍କ ନିବାସ ନିକଟ ହେଇ ଆସିଲାରୁ ଗୋଟାଏ ହାଟର ଯେପରି ଦୂରରୁ ଗୋଳମାଳ ଶୁଣାଯାଏ ସେମିତି ଶୁଣାଗଲା । ଲୋକ ମଧ ହାଟକୁ ଗଲା ପରି ବାବାଜୀଙ୍କ ଲାଗି ଘିଅ, ଅରୁଆ ଚାଉଳ, ନଡ଼ିଆ, କଖାରୁ, କଦଳୀ, ଭଲ କଠଉ, ଫୁଲ ମାଳ, ମୟୂର ଚନ୍ଦ୍ରିକାର ବିଚଣା ଇତ୍ୟାଦି କୁଣ୍ଢେଇ ମୁଣ୍ଡେଇ ଚାଲିଛନ୍ତି । ଆହୁରି କେତେ ଲୋକ ସେଠି ବିକିବା ପାଇଁ ପିଲାଙ୍କ ଖେଳଣା, ଆରସି, ପାନିଆ, ଅଭରକ ଟିକିଲି, ପାଟଫୁଲି ଧରି ଚାଲିଛନ୍ତି ।

ଆହୁରି ନିକଟ ହେଲାରୁ ଶୁଣାଗଲା ଖଞ୍ଜଣୀ ମାଡ଼ ସଙ୍ଗେ ଭଜନ-

ଭୁଲା ମନ ଭୁଲୁ କାହିଁକି
ମରିଯିବୁ ବୋଲି ଜାଣୁ ନାହିଁକି;
ପିଣ୍ଡୁ ଯେତେବେଳେ ପ୍ରାଣ ଛାଡ଼ିଯିବ,
ଘେନି ଯିବେ ତୋତେ ମଡ଼ା ଭୂଇଁ କି ।

ଆଉ ନାକକୁ ଆସିଲା ସୁନ୍ଦର ଖେଚଡ଼ିର ବାସନା । ସଖି ବୋଉ କହିଲା, ଦେଖୁଛୁ ଝିଅ; ବାବାଜୀଙ୍କ ପ୍ରସାଦ କେମିତି କେତେ ଦୂରକୁ ବାସୁଛି । ବାବାଜୀଙ୍କ ପ୍ରସାଦ ତୁଣ୍ଡରେ ଦବୁ, ଦିହ ଆଚ୍ଛା ହେଇଯିବ । ଗାଡ଼ି ରହିଲା, ଲୋକ ଭାରି ଭିଡ଼ । ମିଶିପି ଭାଗେ ହେଲେ ମାଇପେ ତିନି ଭାଗ । ସମସ୍ତେ ବୁଲି ବୁଲି ଦେଖୁଛନ୍ତି-କୋଉଠି ଠାକୁର ମୂର୍ତ୍ତି, କୋଉଠି ବାବାଜୀଙ୍କ ରୋଷଘର, ଖନ୍ଦା ହେଇଛି, ପରିବା କଟା ହେଇ ଗଦା ହେଇଛି, କୋଉଠି ପ୍ରସାଦ ବିକ୍ରୀ ଲାଗିଛି, କୋଉଠି ହୁମ ହଉଛି, ଧୂନି ଲାଗିଛି । ପାଉଁସିଆ ବାବାଜୀମାନେ ଯେତେ ମାଇପିଙ୍କ

ଭିଡ଼ ହଉଛି, ସେତେ ଜୋରରେ ଖଞ୍ଜଣୀ ମାଡ଼ କରୁଛନ୍ତି । ଆହୁରି ନୂଆ ନୂଆ ରକମର ଭଜନ ଶୁଣାଉଛନ୍ତି ।

ଶେଷରେ ବାବାଜୀଙ୍କ ଶୋଇବା ଘର....ଅନେକ ଠେଲା ଠେଲି, ଧକମଧକା ସହ ଶେଷରେ ବାବାଜୀଙ୍କ ଦର୍ଶନ ମିଳିଲା । ସୁନ୍ଦର କଇଁ ଫୁଲ ପରି ସଜ ବିଛଣା, ସୁନ୍ଦର ପଲଙ୍କ ତଳେ ପିକ ଦାନି ରହିଛି । ଚନ୍ଦନ ଆଉ ଫୁଲ ଗନ୍ଧରେ ଘରଟି ଭରି ରହିଛି । ସାମନାରେ ଗୋଟିଏ ପିତଳ ଥାଳିରେ ଟଙ୍କା ପଇସା, ଫୁଲ ଗୋଟା ଗୁଆ ଗଦା ହେଉଛି ।

ପାଚିଲା ଆମ୍ବ ପରି ବାବାଜୀଙ୍କ ଶରୀରଟି ପଲଙ୍କକୁ ଯୋଡ଼ି ରହିଛି । କେତେ ମାଇପେ ପାଦ ଆଉଁସିବାରେ ଲାଗିଛନ୍ତି । ଜଣକ ପରେ ଜଣେ ବଞ୍ଚିବାରେ ଲାଗିଛନ୍ତି ।

ସରସୀ ମୁହଁରେ ଓଢ଼ଣା ଦେଇ ଠିଆ ହେଇ ହେଇ କିଛି କ୍ଷଣ ପରେ ଆଉ ଠିଆ ହେଇ ନ ପାରି ବସି ପଡ଼ିଲା । ସଖି ବୋଉ ଧରି ଥାଏ ବାହାକୁ । ସରସୀ ସବୁ ଦେଖୁଥାଏ ଓଢ଼ଣା ଭିତରୁ । କେବଳ ବାବାଜୀଙ୍କ ମୁଖ ଦର୍ଶନରେ ବ୍ୟାଘାତ ହଉଥାଏ କାରଣ ଏକେ ଜଟା ଜୁଟ ପୁଣି କପାଳ ଭରି ନାକ ଆଗଯାଏ ଚନ୍ଦନ ବୋଳା ହେଇଥାଏ । ତହିଁରେ ପୁଣି ମାଇପିଙ୍କ ସାଙ୍ଗରେ ଆଳାପ କରୁ କରୁ କେତେବେଳେ କୁଆଡ଼ିକି ମୁହଁ ବୁଲାଉଥାନ୍ତି ।

କେତେବେଳକରେ ବାବାଜୀ ସରସୀ ଆଡ଼କୁ ମୁହଁ ଫେରେଇ କମ୍ବୁ କଣ୍ଠରେ ପ୍ରଶ୍ନ କଲେ, କ'ଣ ହେଇଛି ତୋର ? କହ ତୋର କ'ଣ ହେଇଛି ? ସରସୀ ଏତେବେଳେ ଓଢ଼ଣା ଭିତରୁ ବାବାଜୀଙ୍କ ମୁହଁଟିକି ପରିଷ୍କାର ଦେଖି ପାରିଲା । ସଖି ବୋଉ କହିଲା, କହ ଝିଅ କହ, ପଇସା, ଗୁଆ ଥୋଇ ଦେ, ଗୋଡ଼ ତଳେ ପଡ଼ ।

ସରସୀର ଦିହ କାଠ ପରି ହେଲେ କ'ଣ ହବ, କଥା ଭାରି ଠୋସ୍, ଭାରି ତେଜ୍, ପଇସା କ'ଣ ଥୋଇବ, ଗୋଡ଼ ତଳେ କ'ଣ ପଡ଼ିବ, ମୁହଁରୁ ଓଢ଼ଣା କାଢ଼ି ଦେଇ ଟିକିଏ ଥକ୍କା ମାରି ଆରମ୍ଭ କଲା ।- ହଇରେ, ତୁ 'କଇ' ନା ? ବାବାଜୀ କେବଠୁଁ ହେଲୁଣି ? ତୋ ପାରା କୁଆଡ଼େ ଗଲା, କୁକୁର କୁଆଡ଼େ ଗଲା ? ହଇରେ ତୁ ଆସି ଏଠି ପହଞ୍ଚି ଏତେ କାଣ୍ଡ ନଗେଇଛୁ ? ତୋର କ'ଣ ପ୍ରକୃତ. ଜ୍ଞାନ ହେଇଛି ନା ପେଟ ଲାଗି ବାବାଜୀ ସାଜିଛୁ ?

ସରସୀର ମା ଏତେବେଳେ ଯଦିଚ ଚିହ୍ନି ପାରିଲେ, ତେବେ ସୁଦ୍ଧା ସରସୀକୁ ବାଧାଦେଲେ । ସେ କଇ ହେଲେ ହେଲା । ଯେତେବେଳେ ଭଗବାନଙ୍କର ନାଁ ନେଇଛି ତାକୁ ଆମର ଥଟ୍ଟା କରିବା କି ଦରକାର ? ସରସୀ ଆଉ ମା କଥା ଶୁଣୁଛି ? କହିଲା, ହଇରେ ପୁଣି ପଚରା ହଉଛି ତୋର କ'ଣ ହେଇଛି ? ଆମରି ଘରେ ପଡ଼ିଥିଲୁ ପୁଣି 'ତୁ' 'ତା' ଲଗେଇ କଥା କହୁଛୁ ?

ସମସ୍ତେ ଦେଖିଲେ, ଏ କ'ଣ ତାଟଙ୍ଗା ହେଇଗଲେ । ଏ ମାଇପିଟା କାହୁଁ ଅଇଲା ? ସେ ଘର ଭିତରେ ଯେତେ ମରଦ ମାଇପେ ଥିଲେ କିଏ ଜିଭ କାମୁଡୁଛି, କିଏ ଖାଲି ହାତ ଯୋଡ଼ି କାଠ ହେଇ ଗୋଟାଏ ସାପ ଦେଖିଲେ ଯେମିତି ଚମକି ପଡ଼ି ସାପଟାକୁ ଚାହିଁ ରହନ୍ତି ସେମିତି ସରସୀକୁ ଚାହିଁ ରହିଛନ୍ତି ।

ଏତିକିବେଳେ କଇ ଦେଖିଲା ଆଉ ଉପାୟ ନାହିଁ । ସର ହାବୁଡ଼େ ପଇଲା, ତାର ଯଉ ମୁହଁ-ସେକି ବାକି ରଖିବ । ସିଂହ ଯେପରି ଝାଡ଼ି ଦେଇ ତା ଶୋଇବା ସ୍ଥାନରୁ ଉଠି ଠିଆ ହୁଏ, ସେହିପରି କଇ ତାର ଜଟା ଗୁରା ଝାଡ଼ି ପଲଙ୍କ ଛାଡ଼ି କୁଦି ତଳେ ଠିଆ ହେଲା । କହିଲା, ଦୁନିଆରେ ପାପଭାରା ବଢ଼ିଗଲା, ଆଉ ପରକୁତ୍ ରହି ହବନି, ଆଉ ରହିବା ଉଚିତ୍ ନୁହେଁ ।

କଥା ଶେଷ ହବା ସାଙ୍ଗେ ସାଙ୍ଗ ହାତ ମୁହଁ ଛିଞ୍ଚାଡ଼ି ଘରୁ ବାହାରି ସିଧା ସିଧା ଦଉଡ଼ିଲା । କ'ଣ ହେଲା ! କି ଅନ୍ୟାୟ ହେଲା, ବାବାଜୀ କାହିଁକି କୋପ ହେଲେ ? ବାବାଜୀଙ୍କ ଶୋଇବା ଘର ଭିତରୁ, ଆଉ ଯେ ଯଉଠି ବସିଥିଲେ, ଠିଆ ହୋଇଗଲେ, ସମସ୍ତେ ବାବାଜୀ ମହାପୁରୁଙ୍କ ପଛେ ପଛେ ଧାଇଁଲେ ବାବାଜୀଙ୍କୁ ଶ୍ୟାନ୍ତ କରି ଫେରେଇ ଆଣିବା ପାଇଁ ।

ଭାରି ଗଣ୍ଡାଗୋଳ ହେଲା । ଏ ହୁଡ଼ାହୁଡ଼ି ଭିତରେ ସରକୁ କେତେ ମାଡ଼ିମୁଡ଼ି ପକେଇଲେ । ପିତଳ ଥାଳିରୁ

ପଇସା ଗୁଆ ଇତ୍ୟାଦି କେତେ ବୁଣିଗଲା । ସଖିବୋଉ, ସରମା ଓ ଆଉ ଜଣେ ଦି'ଜଣ ମାଇପିଙ୍କ ଯୋଗୁଁ ସର ରକ୍ଷା ପାଇଗଲା, ଏ ମଡ଼ାଚକଟାରୁ ।

ଶଗଡ଼ ଚାଲିଲା । ସଖି ବୋଉ, ସରମା ଗାଡ଼ି ଭିତରେ ବସିଥାନ୍ତି । ସଖି ବୋଉ ପ୍ରଥମେ ଆରମ୍ଭ କଲା, କାହିଁକି ଝିଅ ବାବାଜୀଙ୍କୁ ଇମିତି କହିଲୁ? ସର ଶୋଇଥିଲା । କପାଳରେ ହାତ ମାରି କହିଲା, ମାଉସି କି ଦଶା ପାଇଲା ଶେଷରେ କଇ କତିକି ଗାଡ଼ି କରି ଆସିବାକୁ ହେଲା? ତା'ଦିହ ଆଜିକାଲି କ'ଣ ହେଇଛି!! ଅଣାଏ ପଇସା ହେଲେ ତା'ର ଚାରିଦିନ ଚଳି ଯାଉଥିଲା । ପିଜୁଳି ଖାଇ ଦିନ କଟଉଥିଲା । ନିଖଟୁଟା, କାମ କରୁ ନଥିଲା, ଖାଲି ବସି ବସି 'ବାଘ-ବକୁରି' ଖେଳୁଥିଲା । ବାଘବକୁରି ଖେଳରେ ତାକୁ କିଏ ପାରିବ? ମାଇପିଙ୍କ କତିରେ ବସି କାହାଣୀ କହୁଥିଲା । ଲୁଣ, ତେଲ ଦରକାର ନାହିଁ, ଭାତ କଂସାଏ କଙ୍କଡ଼ାଟା ପୋଡ଼ି ଦେଇ ତୁହା ଟେକି ଦଉଥିଲା । ତା'ମୁହଁରେ 'କୃଷ୍ଣ' ଉଚ୍ଚାରଣ ହଉ ନଥିଲା । ସେ ପୁଣି ବାବାଜୀ ସାଜିଛି?

ସରମା ଆରମ୍ଭ କଲେ; ସତେ ମ, ମୁଁ କ'ଣ ତାକୁ ଚିହ୍ନି ପାରିଥିଲି କି? ଏ କହିଲାରୁ ଚିହ୍ନିଲି ନା । ଭଲ ଉପାୟ ଧରିଛି । ମୁଁ ମନେ କରିଥିଲି, କୁଆଡ଼େ ଗଲା କି ମଲାଣି, ଆଉ ଦେଖା ହବ ନାହିଁ, ଏଡ଼େ କର୍ମକୋଡ଼ି, ଏଡ଼େ ନୁହୁଣା ଯେ ଦୁନିଆ ବାହାର । ତାର କୋଉ କଥାକୁ ପରବାୟ ଅଛି । ଖାଲି ତାର ଦୁଃଖ ଦେଖିଛି ଯୋଉ ଦିନ ତାର ପାରାଟାଏ ଉଡ଼ିଯାଏ, ମିଳେ ନାହିଁ ।

ସର କହିଲା, କଇର କ'ଣ ଖାଇବାକୁ ପରବାୟ ଥିଲା? ସେ କ'ଣ ଖାଉଛି, କେମିତି ବଞ୍ଚିଛି, ଆମକୁ ଆଶ୍ଚର୍ଯ୍ୟ ଲାଗେ, ଏଣେ ଦିହ ଦେଖିଲେ ରକ୍ତ ଯେମିତି ଫୁଟି ବାହାରୁଥିଲା । ଭାରି ଆଣ୍ଟ ଥିଲା । ଅଲଣା ଖାଉଥିଲେ ଲୁଣ ମେଞ୍ଚାଏ ଦେଲେବି ସେମିତି ଲୁଣ ଥୁଆ ହେଇଥିବ, ଭାତ ଖାଇ ଉଠି ଚାଲି ଯିବ, ଯେଉଁଦିନ ତା'ର ଦୁଧ ଦୁହିଁ ଚୋରେଇ ଖାଇବା ଧରା ପଡ଼ିଲା, ସେଇ ଦିନଠୁଁ ଦେଖିଲୁ ଯେ କଇକୁ ଭୋକ ହେଲା, ସେ ଖାଇବାକୁ ମାଗିଲା । ଯଉଁଠି ବାହା ନିମନ୍ତା ହେଲା, ଆପେ ଆପେ ଯାଇ ଜୁଟିବ, ପତରଟା ପକେଇ ବସିବ, ଇମିତି ପେଟ ଫଟେଇ ଖାଇବ, ଯେମିତି ଆଉ ଚାରିଦିନ ଦରକାର ହେବ ନାହିଁ ।

ଥରେ କଲିକତା ପଳେଇଲା ବିନା ଟିକେଟରେ, ତାକୁ କ'ଣ ଭୟ ନା ତା ଜୀବନକୁ ଭରସା ଅଛି? ଗାଡ଼ି ଚାଲୁଥିବ, ଡ଼େଇଁ ପଡ଼ିବ, କଲିକତା ଗଲା, ପଇସା ନ ଥାଏ; ପୁଣି ପଳେଇ ଆସିଲା, ପଚାରିଲାରୁ-କିରେ କଲିକତା ଯାଇଥିଲୁ, କ'ଣ ଦେଖିଲୁ? କହିଲା-ଗଙ୍ଗା ତିନିଧାର ହୋଇ ବୋହି ଯାଉଛି । ଏମିତି ବିନା ଟିକଟରେ ସେ କେତେ ଯାଗା ବୁଲି ଆସିଛି ।

କେତେଦିନ କଲା ଚିନାବାଦାମ ବ୍ୟବସାୟ, ଭଜା ଚିନାବାଦାମ ବିକିଲା, ଗରାଖ ପଛେ ନ ଜୁଟନ୍ତୁ, ସେ ସେଥିରୁ ଅଧେ ଅଧେ ଚୋବାଇ ଆସି ଘରେ ବସିଲା, ତା' ମା ଯଦି ପଚାରିଲା, କିରେ କେତେ ବିକିଲୁ? କହିବ, ହଁ ବିକ୍ରି ହେଲା ଯେ, ସବୁ ଉଧାର ନେଇଛନ୍ତି, ସେ ବ୍ୟବସାୟ ସେମିତି ବନ୍ଦ ହେଲା ।

ସରମା ଆରମ୍ଭ କଲେ-ଖାଲି କ'ଣ ଏଇ ଗୁଣ ସବୁ ଶୁଣିବ । ଛଆ . ପିଣ୍ଡାରେ ପଡ଼ି, ତା ଓଳି ତଳେ ଶୋଇ ଦିନ କଟାଉ ଥିଲା । ଯାତ୍ରା ଯଦି କେଉଁଠି ହେଲା ତ, ରାତି ରାତି ଦେଖିବ, ସକାଳ ହେଲେ ଆସି ପହଞ୍ଚେ, ଯଦି ପଚାରିଲ, କିରେ କୁଆଡ଼େ କାଲି ରାତିରେ ଯାଇଥିଲୁ? କହିବ, ତାମସା ଦେଖି, କ'ଣ ହଉଥିଲା । ଆଉ କଇର ମନେ ଅଛି । କିଛି ବୁଝେ ନାହିଁ, ଏଣେ ରାତି ରାତି ଜଗି ଯାତ୍ରା ଦେଖୁଛି ।

ସୁରମା ପୁଣି କହିଲେ, ହଁ ଆଉ ଗୋଟାଏ କଥା, କଇର ବାହା ହବା କଥା, କ'ଣ ହେଲା କି, ଥରେ ତା' ସାଙ୍ଗ ଜଣେ ଭାରି ଯଉଳସରେ ବାଜା ବଜେଇ, ରୋସନି କରି ବାହା ହେଲା, ଜାତିରେ ଭଣ୍ଡାରୀ, କଇ ମନ ଆଉ ଥୟ ହେଲା ନାହିଁ, ମୋତେ ଦିନେ କେତେ ରକମର କଥା କହି ଶେଷରେ କହିଲା, ମୋତେ ଯଦି ଇମିତି ଯଉଳସ କରି କୋଉଠି ବାହା ଦିଅନ୍ତି ମା, ମୁଁ ତମ ଘରେ କାଳ କାଳକୁ ପଡ଼ି ରହନ୍ତି, ଆଉ କୁଆଡ଼େ ଯାଆନ୍ତି ନାହିଁ ।

ମୋତେ ହସ ମାଡ଼ିଲା, ହସଟାକୁ ଚାପି ରଖି କହିଲି, ତୁ ତ କାମ ଧନ୍ଦା କରୁ ନାହୁଁ, କାମ ଧନ୍ଦା କର, ମୁଁ ଦେଖେ, ତେବେ ସିନା କୋଉଠି କନ୍ୟା ଯୋଗାଡ଼ କରିବି, ବାହା ହବା କ'ଣ ଗୋଟାଏ ଭାରି କଥା ।

ଏତିକି ହେଲା କଥା, ତହିଁ ଆରଦିନ ସକାଳୁ ଉଠି ଆଉ କଇକି ଫୁରସତ ନାହିଁ, ଖରାରେ ଝାଳନାଳ ଆଣ୍ଡିଏ ହୋଇ କାମରେ ଲାଗିଛି, ବାରି ହାଣ, ପାଣି କାଢ଼, ଘର ଝାଡ଼, ମୋ ପୁଅ ଦେଖିଲା, କଇ କ'ଣ ଆଜି ଭାରି କାମରେ ବ୍ୟସ୍ତ । ମୁଁ ତାକୁ ଲୁଚେଇ ମନା କଲି ହସାହସି କର ନା, ସବୁକଥା କହିଲି, ସର ବାବାଙ୍କୁ ମଧ୍ୟ ସବୁକଥା ଲୁଚେଇ କହିଲି, କେହି ହସାହସି କଲେ ନାହିଁ, କଇ ଲାଗିପଡ଼ି ତିନିଦିନ ଯାଏ ଭାରି କାମ କଲା, ଦେଖିଲା ଯଉଠୁଁ କନ୍ୟା ଯୋଗାଡ଼ ହଉ ନାହିଁ, କି ବାହା କଥା କିଛି ପଡୁ ନାହିଁ, ପୁଣି ସବୁ କାମ ଧନ୍ଦା କୁଆଡ଼େ ଗଲା, ପୁଣି ଯଉ କଥାକୁ ସେଇ କଥା ।

ସର ଏତେବେଳେ ପୁଣି ଥରେ ଆରମ୍ଭ କଲା, ଶୁଣିବ ମାଉସୀ, ଏ ବାରେ ଇମିତି ବାବାଜୀ କାହିଁକି ସାଜିଛି ? କଟକରେ ଆମରି ଘର ପାଖରେ ତା' ଘର, ଆଜିକି ଛ ସାତ ବର୍ଷ ତଳେ ଦିନେ ରାତିରେ ଆମେ ସାହି ଖଣ୍ଡକଯାକ ସମସ୍ତେ ଶୋଇଛୁ, କଇକୁ ମିଶେଇ ସେମାନେ ଚାରି ଭାଇ । ହଠାତ୍ ଶୁଣାଗଲା, କଇର ଗୋଟିଏ ଭାଇ ଆଉ ଗୋଟାଏ ଭାଇକି ଡ଼ାକୁଛି, ଭାଇରେ ଭାଇରେ ଉଠ, ଆଣ ବାଡ଼ି, ଯେମିତି ଅର୍ଜ୍ଜୁନ ଡ଼ାକୁଛନ୍ତି ଭୀମକୁ, ଆଣ ଗଦା । ଆଉ ସମୁଦ୍ର ଗର୍ଜନ ପରି ଲୋକଙ୍କ ପାଟି ଶୁଣା ଯାଉଥାଏ, ଆମେ ମନେ କଲୁ ସାହି ଭିତରେ କେତେଗୁଡ଼ାଏ ଡ଼କାୟତ ଆସି ପଶିଲେଣି । ସମସ୍ତେ ଧଡ଼୍ଧାଡ଼୍ ହେଇ ଉଠିଲେ, ବାହାରକୁ ଯାଇ ଦେଖିଲାବେଳକୁ ଲାଗିଛି ଏକ ଫଉଜଦାରୀ । ବୁଝୁ ବୁଝୁ କଇ ଜଣକୁ ମାରି ତା' ମୁଣ୍ଡ ଫଟେଇ ଦେଇଛି । ସେଇଥି ଯୋଗୁଁ କେତେ ଲୋକ ଗଦା ହୋଇଛନ୍ତି, ପାଟି ହଉଛି । କଇ ସାଙ୍ଗରେ ତା'ର ଆଉ ଭାଇ ସବୁ ମିଶି ଯାଇଛନ୍ତି ।

ତାପରେ ହେଲା ମକଦ୍ଦମା, ଘର ଦୁଆର ବିକି କିଏ କୁଆଡ଼େ ପଳେଇଲେ । ଏ ସେଇଥି ଲାଗି ଏ ନିଖଟୁଟା କିଛି ନ କରି ବାବାଜୀ ସାଜିଛି, ଭଲ ଉପାୟ ଧରିଛି ।

ତା' ହାତ କ'ଣ କମ ଠିକ୍ ! ଯୋଉ ଚଢ଼େଇଟାକୁ ମାରି ଦବାକୁ କହିବ କିମ୍ବା ଯୋଉ ଫଳଟାକୁ ଝଡ଼େଇ ଦବାକୁ କହିବ ଗୋଟାଏ ଟେକାରେ ଆଣି ତଳେ ଥୋଇ ଦବ ।

ଏତେବେଳେ ସରମା ଏକପ୍ରକାର ବାଧା ଦେଇ କହିଲେ, ଆଉ ଯା'ହଉ କଇର ଏତକ ଭାରି ଭଲ ଗୁଣ ଯେ, ଯାର କିଛି ବିପଦ ଆପଦ ପଡ଼ିଛି, କି ବେରାମ ଆରାମ ହେଇଛି, କଇ ଜୀବନ ଲଗେଇ ଖଟିବ, ଥରେ ଘର ପୋଡ଼ିଟାଏ ଜଣକର ନିଭେଇବାକୁ ଯାଇ ତା ଦିହରୁ ପରସ୍ତେ ଛାଲ ଉଠିଗଲା, କେତେଦିନ ଭାତ ଖାଇ ପାରିଲା ନାହିଁ ।

ସଖି ବୋଉ ସବୁ କଥା ଶୁଣି ପଚାରିଲା-ଝିଅ, ଏତେ କଥାତ କହିଲୁ, ସେତ ଏମିତି ଲୋକ, ତେବେ ଏତେ ଲୋକ କାହିଁକି ଚାଲିଛନ୍ତି ? ସର ଉତ୍ତର ଦେଲା, ଖାଲି ମାଇପିଙ୍କ ଦଳ, ମୂର୍ଖଙ୍କ ଦଳ, ଭଲ ଲୋକ କାହାକୁ ଦେଖୁଛ ?

ସର ବୋଉ ଚମକିଲା ପରି କହିଲା, ଅଃ, ଝିଅ, ସେ କଥା କହ ନା, ଆମ ଗାଁ ନରି (ହରି) ଶତପଥି ସେ ଇଂରାଜୀ ପାଠରେ କେତେ କିଲାସ ଉଠିଛନ୍ତି, ସେତ ଆଇଛନ୍ତି, ସେ ଏବେ ସିନା ନିଶାପାଣି ଖାଇଲେ, ତେବେ କ'ଣ ତାଙ୍କ ପାଠ କୁଆଡ଼େ ଗଲା ? ସେ ତ ଭଲ ଲୋକ ।

ସର ହସିଲା, କିନ୍ତୁ ଆକାଶ କାନ୍ଦିଲା, ମେଘୁଆ ହେଇଥିଲା ପାଣି ଟପ୍‌ଟାପ୍ ପଡ଼ିବାକୁ ଆରମ୍ଭ କଲା ।

ଗାଡ଼ି ପଛେ ପଛେ ଆଉ ଆଉ ମାଇପିମାନେ ଚାଲିଥାନ୍ତି, କେତେ ଲୋକ ସବୁ ବାବାଜୀଙ୍କ କତିରୁ ଫେରୁଥାନ୍ତି, କଥାବାର୍ତ୍ତା ଚାଲିଥାଏ, ତା'ଭିତରେ କେବଳ ସରର ନିନ୍ଦା-କୋଉଠୁ ଇମିତି ମାଇପିଟାଏ ଆସିଲା, ବାବାଜୀଙ୍କୁ କ'ଣ ନ କହିଲା । ସାଧୁ ଲୋକ, କେତେ ତୀର୍ଥ କରି ଆସିଛନ୍ତି, ଇମିତି ବାବାଜୀ ଜଣେ କେତେକରେ

ଦେଖିବାକୁ ମିଳେ, ଛି, ଛି, ଆଉ ଏ ଦୁନିଆରେ କାହିଁକି ସବୁ ଇମିତି ଦୁର୍ଘଟଣା ହଉଛି, ଏଇ ସାଧୁ ପୁରୁଷମାନଙ୍କୁ ନ ଚିହ୍ନିବା ଫଳରୁ ନା।

ବର୍ଷା ହେଲା ଆହୁରି ଜୋରରେ, କେହି ଭାବି ନ ଥିଲେ ଏତେ ବର୍ଷା ହବ ବୋଲି, ଚାରିଆଡ଼େ ଅନ୍ଧାର ହୋଇଗଲା, ଗଛପତର ଦିଶିଲା ନାହିଁ, ଖଣଳି ପାଣି ନୁହେଁ, ତା ସାଙ୍ଗେ ପବନ, ଘଡ଼ଘଡ଼ି ବିଜୁଳି।

ଜଣକର ଚାଳରେ ସାମାନ୍ୟ ନଡ଼ା ଆଉ କେତେ ଖଣ୍ଡ ବତା ବାଉଁଶ ଥିଲେ ବର୍ଷା ହେଲେ ସେ ଯେପରି ଘର ଭିତରର ଜିନିଷଗୁଡ଼ିକ ନଷ୍ଟ ହୋଇ ଯିବା ପାଇଁ ଭୟ କରେ; ସରର ସେହିପରି କେତେ ଖଣ୍ଡ ହାଡ଼ ଆଉ ସାମାନ୍ୟ ମାଉଁସ ତଳେ ପ୍ରାଣବାୟୁର ଅନିଷ୍ଟ ଆଶଙ୍କାରେ ସର ମା ଠିକ୍ ସେମିତି ଅଥୟ ହୋଇ ପଡ଼ିଲେ, କହିଲେ କ'ଣ ହେଲା, ଝିଅ ମନା କରୁଥିଲା ଆସିବାକୁ, କହିଁକି ଆଣିଲି, ଥଣ୍ଡା ଲାଗିଲେ ଖରାପ ହେବ।

ନିହାତି ବେଳକୁ ଗୋଟାଏ ବରଗଛ ମୂଳରେ ଗାଡ଼ିଟା ରଖା ହେଲା। ସେମିତି ବର୍ଷା ହେଉଥାଏ, ସାଙ୍ଗ ମାଇପିଗୁଡ଼ାକ ପାଣିରେ ଜୁଡ଼ବୁଡ଼ ହୋଇଗଲେ, ଥରିଲେ, ଆଉ ଲୋକମାନେ, ଯେ କି ବାବାଜୀଙ୍କ କଟିରୁ ଫେରୁଥିଲେ, ତାଙ୍କ ଭିତରୁ କେତେ ମରଦ, ମାଇପେ ମଧ ସେଇ ଗଛମୂଳେ ଠିଆ ହେଲେ, ସମସ୍ତଙ୍କର ସେଇ କଥା, ମାଇପିଗୁଡ଼ାକର ସେଇ ଠରାଠରି, ଜିଭ କାମୁଡ଼ା, ତେବେ କେତେକ ଲୋକଙ୍କଠୁଁ ଶୁଣାଗଲା ଯେ ବାବାଜୀଙ୍କୁ ଲୋକମାନେ ପୁଣି ଫେରେଇ ଆଣିଛନ୍ତି। ବାବାଜୀ ଆଉ ଫେରୁ ନଥିଲେ, ବହୁତ କଷ୍ଟରେ ଫେରିଲେ, ପୁଣି କୁଆଡ଼େ କହୁଥିଲେ ଯେ ସେ ନିକଟରେ ଦିହ ଛାଡ଼ିବେ, ସମାଧି ନେବେ, ଆଉ ଏ ସଂସାରରେ ରହିବାକୁ ତାଙ୍କ ଇଚ୍ଛା ନାହିଁ, ଛାର ମାଇପିଟାଏ ତାକୁ ମୁହଁ ହୁଡ଼ିଲା।

ଶଗଡ଼ ଯେତେବେଳେ ଆସି ଘରେ ପହଞ୍ଚେ, ସରକୁ ଧରି ଘର ଭିତରକୁ ନେଲାବେଳକୁ ସେ ଗୋଟା ସୁଦ୍ଧା ତିନ୍ତି ଯାଇଥିଲା।

ସରର ବାବା ଭାରି ବିରକ୍ତ ହେଲେ, କହିଲେ ଅଭିକା କ'ଣ ହବ? ସର ଯା'କୁ ଭୟ କରୁଥିଲା, ସେଇଆ ହେଲା, ଏ ଯୋଉ ବର୍ଷା ଏଥିରେ କି ଶଗଡ଼ ତାଟି ସମାଳିବ? କାହିଁକି ସବୁ ଗଲ?

ସର ସବୁ ବାବାଙ୍କ ଆଗରେ କହିଲା, କଇ କିମିତି ବାବାଜୀ ସାଜିଛି, ହୁକୁମ ଦଉଛି। ସଖି ବୋଉ ମଧ ଆଉ ଆଉ ସାହି ମାଇପିଙ୍କ ଆଗେ ସର ଆଉ ସର ମା', ଯା ଯା ସବୁ ବାବାଜୀଙ୍କ ବିଷୟରେ ତାକୁ ଗାଡ଼ି ତ ରେ କହିଥିଲେ, ଜଣ ଜଣ ଧରି ସବୁ କହିଲା। ସର ବାବାଙ୍କ ମନ ହେଲା ଥରେ ଯାଇ କଇକି ଦେଖି ଆସିବେ।

କିନ୍ତୁ ଯିବେ କ'ଣ, ମନ ଦୁଃଖରେ ରହିଲେ, କାରଣ ସର ହାଡ଼ ଦିଖଣ୍ଡରେ ବେଶ୍ ତେଜ ଥିଲା, କଥାବାର୍ତ୍ତା କରୁଥିଲା, କିନ୍ତୁ ପାଣିରେ ତିନ୍ତି ସେଇଦିନ ରାତିରେ ହେଲା ଜର, ଛାତିରେ କଫ ମାଡ଼ି ବସିଲା, ଆଉ କଥା କହି ପାରିଲା ନାହିଁ କି ଲୋକ ଚିହ୍ନି ପାରିଲା ନାହିଁ।

ଚାହୁଁ ଚାହୁଁ ଦିନ ପାଞ୍ଚୁଟାରେ ସରର ସାହା ପୁରୁଷ ତା'ର ସେଇ ହାଡ଼ ମାଉଁସର ପାତଳା ଛାଉଣି ତଳୁ ବାହାରି ଚାଲିଗଲା।

ସର ଚାଲିଗଲା ପରେ ସର ମା'ଙ୍କର କେବଳ ମନେ ପଡ଼ିଲା, କଇକି ସେ କାହିଁକି ଏମିତି କହିଲା, ସେ ତ ବାବାଜୀ ହେଇଛି, ଭଗବାନଙ୍କର ନାଁ ନେଇଛି।

ସାହି ତମାମ ମାଇପିଙ୍କର ଫୁଟ୍‌ଫାଟ୍ ଫୁସ୍‌ଫାସ୍ ଭିତରେ ସେହି ଗୋଟାଏ କଥା କାନକୁ ଆସିଲା–

ଦେଖିଲ, ବାବାଜୀଙ୍କ ଗୁଣ ନାହିଁ କେମିତି? ବାବାଜୀଙ୍କୁ ଯେମିତି ହତମାନ କଲା, ମୁହଁ ହୁଡ଼ିଲା, ତା ଫଳ ସାଙ୍ଗେ ସାଙ୍ଗେ ଫଳିଲା, କି ଆଚମ୍ବିତ କଥା।

ଆହୁରି ଶୁଣାଗଲା, ତେଣେ ବାବାଜୀ ଦିହ ଛାଡ଼ିବେ କ'ଣ, ସମାଧି ନେବେ କ'ଣ, ଏକାବେଳକେ ତାଙ୍କ ଅର୍ଜିତ ଟଙ୍କା, ସୁନା, ରୂପା ସହିତ କୁଆଡ଼େ ଉଭାନ ହେଇ ଯାଇଛନ୍ତି।

# ସାଧକ

ସେଦିନ ଲରି ଚାଲିଥାଏ, ଆମ୍ଭେମାନେ କେତେଜଣ ପାସେଞ୍ଜର ବସିଥାଉ ତା ଭିତରେ । ରାସ୍ତା ଦୁଇପାଖେ ଧାନ କିଆରୀ, ଦୂରକୁ ପାହାଡ଼, ତା' ଉପରକୁ ଆକାଶ, ସେଥିରେ କାଳିଢ଼ଳା ହେଲା ପରି କେତେ ଖଣ୍ଡ କଳା ବଉଦ, ପାହାଡ଼ ଆଉ ବଉଦ ମଝିରେ କଳା ଲୋକର ପାନଖିଆ ନାଲିଆ ପାଟିପରି ଦିଶୁ ଥାଏ ଦିନ ଶେଷର ଘର ମୁହାଁ ସୂର୍ଯ୍ୟଙ୍କର ନାଲଚିଆ ଆଭା, ବେଶ ଦେଖା ଯାଉଥାଏ ପୁଣି ମଝିରେ ମଝିରେ ଗାଁ ଗଣ୍ଡା ।

ମୁଁ ବସିଥିଲି ସେକେଣ୍ଡ କ୍ଲାସରେ କିନ୍ତୁ ଆଖି ଥିଲା ବାହାରର ଏଇ ଦୃଶ୍ୟ ଗୁଡ଼ାକ ଉପରେ । ହଠାତ୍ ଲରି ବନ୍ଦ ହେଲା । ମୁଁ ଓ ମୋ ପରି ଆଉ କେତେଜଣ ପାସେଞ୍ଜର ଏଇ ହଠାତ୍ ବନ୍ଦ ହବାର କାରଣ ଅନୁସନ୍ଧାନ କରି ଜାଣିଲୁ ଯେ ଜଣେ ପ୍ରୌଢ଼ ଲରିରେ ଚଢ଼ିବେ ବୋଲି ଲରି ବନ୍ଦ କରିବା ପାଇଁ ହାତ ଟେକି ଜଣେଇବାରୁ ଡ୍ରାଇଭର ଗାଡ଼ି ବନ୍ଦ କଲେ ।

ପ୍ରୌଢ଼ ଗାଡ଼ି ଭିତରକୁ ଆସିବେ ଆମରି ସେକେଣ୍ଡ କ୍ଲାସରେ । ଡ୍ରାଇଭର କଣ୍ଡକ୍ଟରକୁ ଚିତ୍କାର କରି କହି ଉଠିଲେ-ହେ ବାବୁଙ୍କୁ ଜାଗା କରିଦେ । କଣ୍ଡକ୍ଟର ମଧ ଦୌଡ଼ି ଆସି ବେଶ ଫୁର୍ତ୍ତିର ସହିତ ଦୁଆର ଖୋଲି ଦେଇ ଆମ୍ଭମାନଙ୍କୁ ଧମକ ମିଶା କଣ୍ଠରେ ଆଦେଶ ଦେଲା-ଘୁଚନ୍ତୁ ଆପଣମାନେ, ଆଉ ଜଣେ ବାବୁ ବସିବେ, ଘୁଚନ୍ତୁ ଆପଣମାନେ, ଘୁଚନ୍ତୁ, ଘୁଚନ୍ତୁ, ଜାଗା ଦିଅନ୍ତୁ । କଣ୍ଡକ୍ଟରର ଆଦେଶର ପ୍ରତିବାଦ କରି ଆମ୍ଭେମାନେ ସମସ୍ୱରରେ ଉତ୍ତର ଦେଲୁ-ଏଠି ଜାଗା କାହିଁ? ଆଉ ଜଣେ ଲୋକ ବସିବ ?

କଣ୍ଡକ୍ଟର ପୂର୍ବାପେକ୍ଷା ଆହୁରି ଦୃଢ଼ କଣ୍ଠରେ କହିଲା-କ'ଣ ? ଘୁଞ୍ଚି ବସିବତ ବସ, ନଚେତ୍ ଓହ୍ଲେଇ ଯାଅ । ଆମେମାନେ ପୂର୍ବାପେକ୍ଷା କିଛି ନରମ ଗଳାରେ ଉତ୍ତର ଦେଲୁ-କ'ଣ ? ମରିବୁ ନା କ'ଣ ? ଦେଖି କହୁନୁ ନା, ଆଖିବୁଜି କଥା କହୁନୁ ? ଜାଗା କାହିଁ ଏଠି ? କଣ୍ଡକ୍ଟର ଏଥର ଆଉ ସମ୍ଭାଳି ପାରିଲା ନାହିଁ । ଚଟ୍ କରି ଆମମାନଙ୍କ ଆଡ଼କୁ ଉହୁଁକି ଆସି କହିଲା-କ'ଣ ? 'କହୁନୁ' 'ତୁ' 'ତା' କରିବ, ପୁଣି 'ଆଖିବୁଜି' ଉଠ, ଉଠ, ଘୁଞ୍ଚି ପାଖାଅ ।

ଏତିକିବେଳେ ସିଆଡୁ ମଧ ଡ୍ରାଇଭର ସାହେବଙ୍କଠାରୁ ବେତାର ଭାଷଣ ପରି ଶୁଣାଗଲା-ଜାଗା ଯଦି ନ ଦଉଛନ୍ତି ଟାଣି ପଦାକୁ ବାହାର କରି ଦେ ନା, ଦେଖାଯିବ ଯା ହବ । ଏଇ କଥା କହୁ କହୁ ଡ୍ରାଇଭର ସାହେବ ସ୍ୱୟଂ ଚମକି ଆସି ନିଜେ ସ୍ୱହସ୍ତରେ ଆମମାନଙ୍କୁ ଠେଲା ଠେଲି କରି ଚାପିଚୁପି କୌଣସି ମତେ ଜଣକର ଜାଗା କରି ଦେଲେ । ଆମେମାନେ ଶେଷରେ ନିରୁପାୟ ହୋଇ ମନେ ମନେ ଧର୍ମକୁ ଡ଼ାକି, ନୀରବରେ ପରସ୍ପର ଉପରେ ଲଦେଇ ପଡ଼ିଲୁ । ଏତେବେଳେ ଆମେମାନେ ଯେଉଁ Pose ଏବଂ Posture ରେ ଥିଲୁ ସେଥିରେ କେବଳ ବାରମ୍ବାର ମୋର ଗୋଟିଏ ଧାଡ଼ି ମନେ ପଡୁଥାଏ-

"ସହିଗୋ ଢ଼ାଳ ଧୀରେ, ଅବସ ଅଙ୍ଗ ମୋର........" ପ୍ରୌଢ଼ ଆସି ବସିଲେ ଦମ୍ଭର ସହିତ ଦୁଇଟି ଲୋକର ଜାଗା ନେଇ, ଆମେମାନେ ପାଖେଇ ବସିଲୁ । ସଙ୍କୁଚିତ ଭାବରେ କେତେ ଗୁଡ଼ାଏ ଜୀବନ୍ତ ବସ୍ତା ଲଦା ହେଲା ପରି, ସେତେବେଳେ ମୁଁ ଭାବୁଥାଏ-ଯେଉଁମାନେ ସ୍ଥୁଳକାୟ ସେଥିପାଇଁ ସେମାନଙ୍କ ଉପରେ ଗୋଟାଏ ସ୍ୱତନ୍ତ୍ର କର ଧାର୍ଯ୍ୟ ହବା ଉଚିତ୍ । ଆଗନ୍ତୁକ ଲୋକଟି ଏକା ନୁହେଁ, ସାଥିରେ ଗୋଟିଏ ଆଠ ଦଶ ବର୍ଷର ପିଲା ।

ଲରି ଚାଲିଲା ।

ପ୍ରୌଢ଼ ଦିହରେ ଖଣ୍ଡିଏ ଏଣ୍ଡି ଚାଦର ଘୋଡ଼ି ହୋଇ ବେଶ୍ ଗୋଟିଏ ବିଭୂତିବୋଳା ମହାଦେବ ମୂର୍ତ୍ତି ପରି ଦେଖା ଯାଉଥାନ୍ତି; ବେକରେ ସାପ ଗୁରେଇ ହେଲା ପରି ଖଣ୍ଡିଏ କଳାରଙ୍ଗର ମଫ୍‌ଲର, ତ୍ରିଶୂଳ ପରି ହାତରେ ଖଣ୍ଡିଏ ବାଡ଼ି, ଏଥିରେ ସାଥିର ପିଲାଟି ନନ୍ଦୀ ପରି ଦେଖା ଯାଉଥାଏ। ଆଉ ମହାଦେବଙ୍କର ମଥାରୁ ଚନ୍ଦ୍ର ଯିମିତି ଅଛି ଖସି ଆସିଥାଏ। କାରଣ ଲୋକଟିର ଚାହାଣି ଥିଲା ଠିକ୍ ଦ୍ୱିତୀୟାର ଚନ୍ଦ୍ର ପରି। ଏଇ ମହାଦେବଙ୍କର ସାଥିର ଆମେମାନେ ଯିମିତି ଭୂତ ପ୍ରେତ ଆଉ ଯାଙ୍କର ଲୀଳାକ୍ଷେତ୍ର ଯିମିତି ଆମର ଏଇ ସେକେଣ୍ଡ କ୍ଳାସ-ଶ୍ମଶାନ, କାରଣ, ଲୋକଟି ଆସିଲା ପରେ ଆମର ସେକେଣ୍ଡ କ୍ଳାସ ଯାତ୍ରୀଙ୍କ ମଧ୍ୟରେ ଯା'କିଛି ସୌହାର୍ଦ୍ଦ୍ୟ, ସଦ୍‌ଭାବ ଓ ଚା*ଲ୍ୟ, ସବୁ ଉଭେଇ ଗଲା। କାରଣ ଏ ଲୋକଟିର ବ୍ୟକ୍ତିତ୍ୱ ଥିଲା ଆମ ପରି ପାସେଞ୍ଜରଙ୍କ ଅପେକ୍ଷା ଅନେକ ବେଶୀ। ମୁହଁରେ କେତେ କ'ଣ ଜାଣିଲା ପରି ଭାବ। ପୁରୁଖା ଗମ୍ଭୀର ଭାବ, ପେଟଟି ଏଣ୍ଡି ଚାଦର ଭିତରୁ ଠେଲି ହୋଇ ଯେପରି ଜଣେଇ ଦେଉଥାଏ ଯେ ପ୍ରୌଢ଼ ବେଶ ମାମଲତ୍‌କାର, ବିଜ୍ଞ ଏବଂ ଥିଲାବାଲା ଲୋକ।

ପ୍ରୌଢ଼ଙ୍କ ମୁହଁରୁ ଜଣା ଯାଉଥାଏ-ସେ ଯେପରି ନିହାତି ବାଧ ହୋଇ ବସିଛନ୍ତି ଆମପରି ଲୋକଙ୍କ ସାଥିରେ। ଯଦି ତାଙ୍କର ନିଜର ଖଣ୍ଡେ ଗାଡ଼ି ଥାନ୍ତା, ତା ହେଲେ ସେ ଆମ ସଂସର୍ଗରେ କଦାପି ଆସି ନ ଥାନ୍ତେ। ଲରି ଚାଲିଥାଏ। ପ୍ରୌଢ଼ଙ୍କ ସାଥିର ପିଲାଟି ମଝିରେ ମଝିରେ ପଚାରି ଦେଉଥାଏ-ବାବା, ଏ ଗାଡ଼ି କିମିତି ଚାଲୁଛି? ଏଇଟା କ'ଣ? ହେଇ ପାହାଡ଼ ଦୁ'ଛି। ଏ ଗଛ ଗୁଡ଼ା ଇମିତି ଦୌଡ଼ି ଯାଉଛି କାହିଁକି? ପ୍ରୌଢ଼ ନିରୁତ୍ତର। କିନ୍ତୁ ଆଖିରେ ଏତେବେଳେ କାହିଁକି ବେଶ୍ ଟିକିଏ ଚକିତ ଚାହାଣି ଫୁଟି ଉଠିଲା। ଏତେବେଳକୁ ପ୍ରୌଢ଼ଙ୍କ ଆରୋହଣ ସ୍ଥଳରୁ ଗାଡ଼ି ପ୍ରାୟ ତିନି ମାଇଲ ଚାଲି ଆସିଲାଣି। ଏଥି ମଧ୍ୟରେ ଡ୍ରାଇଭର ସାହେବଙ୍କ ଆଦେଶାନୁଯାୟୀ କଣ୍ଡକ୍ଟର ପ୍ରାୟ ତିନିଥର ଲୋକଟିକୁ ଭଡ଼ା ମାଗି ସାରିଲାଣି। କିନ୍ତୁ ରେଜାର ଅଭାବ ଯୋଗୁଁ ପ୍ରୌଢ଼ ଜଣେଇଲେ ଯେ-ସେ ବର୍ତ୍ତମାନ ଦବାକୁ ଅକ୍ଷମ, ଯେଉଁଠି ଓହ୍ଲାଇବେ, ସେଇଠାରେ ଦେବେ।

କଣ୍ଡକ୍ଟର କିନ୍ତୁ ରେଜାର ଅଭାବ ମୋଚନ କରିବାକୁ ଜଣେଇଲାରୁ ପ୍ରୌଢ଼ ପୁଣି ଜଣେଇଲେ-ତାଙ୍କ ନିକଟରେ ଦଶ ଟଙ୍କାର ନୋଟ ଅଛି। ଏଥର ଦେଖାଗଲା କଣ୍ଡକ୍ଟର ଚୁପ୍ ରହିଲା, କାରଣ ଦଶ ଟଙ୍କାର ରେଜାର ଅଭାବ ସେ ମୋଚନ କରିବାକୁ ସେ ଅକ୍ଷମ। ହଠାତ ଗାଡ଼ି ବନ୍ଦ ହେଲା; କାରଣ ପେଟ୍ରୋଲ ସରିଗଲା। ପୁଣି ପେଟ୍ରୋଲ ଭର୍ତ୍ତି କରିବାକୁ ହେବ। ଡ୍ରାଇଭର ସାହେବଙ୍କ ଆଦେଶମତେ କଣ୍ଡକ୍ଟର ପେଟ୍ରୋଲ ଭର୍ତ୍ତି କରିବାକୁ ଲାଗି ପଡ଼ିଲା। ପ୍ରୌଢ଼ ମଟର ବନ୍ଦ ହବା ଦେଖି ପିଲାଟିକି ନେଇ ଓହ୍ଲେଇ ପଡ଼ି ଚାଲିବାକୁ ଆରମ୍ଭ କରିଦେଲେ।

କୁଆଡ଼େ ଯାଉଛ ବାବୁ? ପ୍ରଶ୍ନ ହେଲା ଡ୍ରାଇଭର, କଣ୍ଡକ୍ଟର ଉଭୟଙ୍କ ତରଫରୁ-ଆସ ମୁଁ ଏ ସାମନା ଗୋଦାମରେ ନୋଟ ଖଣ୍ଡ ଭଙ୍ଗେଇ ନିଏ, ପ୍ରୌଢ଼ ଉତ୍ତର ଦେଲେ। ପ୍ରକୃତରେ ଅଳ୍ପ ଦୂରରେ ଗୋଟିଏ ଗୋଦାମ ଘର ଦେଖା ଯାଉଥାଏ, ଆଉ ସେଠି କିଛି ନାହିଁ। ପ୍ରୌଢ଼ ବେଶ୍ ନୀରବ, ଗମ୍ଭୀର ଓ ମନ୍ଥର ଗତିରେ ଚାଲି ଚାଲି ସେଇ ଗୋଦାମ ଘର ଭିତରେ ଯାଇ ପ୍ରବେଶ କଲେ। କିଛି ସମୟପରେ ଲରି ପୁଣି ଚାଲିଲା। କିନ୍ତୁ ଲରି ଚାଲିଲା ବେଳକୁ ପ୍ରୌଢ଼ ଗୋଦାମ ଭିତରୁ ବାହାରି ପିଲାଟିର ହାତ ଧରି ଚାଲି ଚାଲି କେତେ ଦୂରରେ ହେଲେଣି। ଗାଡ଼ି ଆସି ଯେତେବେଳେ ପ୍ରୌଢ଼ର ନିକଟରେ ହୁଏ, କଣ୍ଡକ୍ଟର, ଡ୍ରାଇଭର ଉଭୟେ ଗାଡ଼ିର ବେଗ କମ୍ କରି ସମ୍ମାନ ସୂଚକ ଗଳାରେ ତରତର ହୋଇ ଡ଼ାକିଲେ-ଆସବାବୁ, ଆସ, ଚଢ଼ି ଆସ, ଅନେକ ଡ଼େରି ହେଲାଣି। ଏ ଡ଼ାକ ମଟର ଆଉ କିଛି ନୁହେଁ।

ପ୍ରୌଢ଼ ନିରୁତ୍ତର କିନ୍ତୁ ଗତିଶୀଳ।

ପିଲାଟି ଲଗେଇଥାଏ-ବାବା ଚାଲ ଗାଡ଼ିରେ ବସିଯିବା। ମୁଁ ଚାଲି ପାରିବି ନାହିଁ, ମୋର ଗୋଡ଼ କ'ଣ ହେଇଯିବ। ମୁଁ ଚାଲି ପାରିବି ନାହିଁ। ପ୍ରୌଢ଼ ପିଲାଟିର ହାତ ଧରି ଟାଣି ଟାଣି ଲରି ଆଗକୁ ଚାଲି ଚାଲି ଆଗେଇ ଗଲେ, ପିଲାଟି ଟାଣି ହୋଇ କାନ୍ଦିବାକୁ ଆରମ୍ଭ କରିଦେଲା।

ପ୍ରୌଢ଼ ନିରୁତ୍ତର, ନୀରବରେ ଚାଲିବାକୁ ଲାଗିଲେ ପିଲାଟିକୁ ଘୋସାରି ଘୋସାରି ଏବଂ କଣ୍ଡକ୍ଟର ଓ ଡ୍ରାଇଭରର

ଆହ୍ୱାନରେ କର୍ଣ୍ଣପାତ ନ କରି । ଶେଷରେ ଆଉ ଡ଼େରି କଲେ ଚଳିବ ନାହିଁ ଦେଖି ଡ୍ରାଇଭର, କଣ୍ଡକ୍ଟର ଉଭୟେ କଠୋର କଣ୍ଠରେ ଆରମ୍ଭ କଲେ-

ଧପ୍‌ପାବାଜ, ଏ ଚୋର ଅଛି, ଏତେ ବାଟ ଯେ ଆସିଲା ତାର ଭଡ଼ା ଦେଲା ନାହିଁ । ବଦ୍‌ମାସ୍, ଚୋର, ଠକ, ଡ଼କାୟତ । ଏତେ ଗୁଡ଼ାଏ ବିଶେଷଣ ବାଢ଼ିବାର ଦେଖି ଏତେବେଳେ ଜଣେ ଥାର୍ଡ଼କ୍ଲାସ ପାସେଞ୍ଜର ଡ୍ରାଇଭର, କଣ୍ଡକ୍ଟର ଉଭୟଙ୍କୁ ସାନ୍ତ୍ୱନା ସୂଚକ ଗଳାରେ ଡ଼ାକି କହିଲା-ପାଗଳ ହେଲ ନା କ'ଣ? ପାଣୁ ମୋହରିରକୁ ଚିହ୍ନିନା, ଆଉ ଚିହ୍ନିଛ କାହାକୁ? ସେ ମାଟି ଉପରକୁ ଯେତେ, ମାଟି ତଳକୁ ସେତେ; ତାକୁ ଗାଳି କ'ଣ? ମାଡ଼ ଦେଲେବି ସେ କିଛି କହିବ ନାହିଁ, ତା'ର ଲାଜ ସରମ ନାହିଁ; ତା'ର ଦି'ପଇସା କୋଉ ବାଟରେ ବଞ୍ଚିଲେ ହେଲା, ଇମିତି ସେ ଯା'ଆସ କରି କରି ବୁଢ଼ା ହେଲାଣି । ଲୋକ ଯିମିତି ଗୋଟାଏ ଗୋଟାଏ ବିଷୟରେ ସାଧନା କରିଥାନ୍ତି, ସିମିତି ଯାକୁ ସେ ସାଧିଛି ।

ଆଜି ତମେ ତାଠୁ ପଇସା ଆଦାୟ କରିବ? ହେଇ ପରା ଆଉ ଅଳ୍ପ ବାଟ ଗଲେ ତା' ଗାଁ ପଡ଼ିବ । ସେ ଆଗରୁ ଖସିଗଲା ସେଇଥିଲାଗି । ଏତିକିବେଳେ ଆମମାନଙ୍କ ଭିତରୁ ଜଣେ କହି ପକେଇଲା-ତୁମେ ଯା' କହ ଏ ବାଟରେ ସେ ଯା', ଆମେ ସେଇଆ । ଆଉ ଜଣେ ଟିକିଏ ରାଗିଗଲା ପରି ପଶ୍ନ କଲା-କିମିତି ଆମେ ତା' ସାଙ୍ଗେ ସମାନ ହେଲୁ?

ପ୍ରଥମ ଲୋକଟି ଉତ୍ତର ଦେଲା-କହିଲୁ ଭାଇ, ଯଦି ସମାନ ନ ହେଲୁ, ତେବେ କହ କିଏ ବଡ଼ କିଏ ସାନ? ଦ୍ୱିତୀୟ ଲୋକଟି ଉତ୍ତର ଦେଲା-ଆମେ ସାନ କାରଣ ଆମେ ପଇସା ଦେଇଛୁ, ଆଉ ତା'ପରି ଏତେ ଖାଣ୍ଟି ଭାଓଲେନସ ପ୍ରକୃତିର ଆମେ ନୁହଁ ।

ଏ କଥାଗୁଡ଼ାକ ଏଡ଼ି ଦେଇ ଆଉ ଜଣେ କିଛି କହିବା ପୂର୍ବରୁ ଡ୍ରାଇଭର ସାହେବଙ୍କ ଆଡ଼କୁ ଆଖିଠାର ମାରି, ମୁରୁକି ହସି ଜୋର ଗଳାରେ କହିଉଠିଲା-ଭାଇ; ରଖ ସେ ସବୁ କଥା, ମୁଁ କହୁଛି-ଘର ପଛେ ପୋଡ଼ୁ, ମୂଷା କେଞ୍ଚେ ପାଇଛି । ପାଣୁ ମୋହରିର ନନଭାଓଲେନସ ନୀତି ଦ୍ୱାରାହିଁ ଆଜି ଆଗର ମୁଣ୍ଡ ଟେକି ରହିଛି, ନୁହେଁ କି? ସେ ପୁଣି ଟିକିଏ ଭଲ କରି ହସି; ହାତ ହଲେଇ ସମସ୍ତଙ୍କୁ ଆଖିଠାରି କହିଲା-ତେବେ ଚୁପ୍ ରହିଲ କାହିଁକି? କୁହ । ସେ ଏବଂ ଆଉ କେତେ ଜଣ ପାସେଞ୍ଜର ସମସ୍ୱରରେ ଚିତ୍କାର କଲେ । ପାଣୁ ମୋହରିର ଜିନ୍ଦାବାଦ, ପାଣୁ ମୋହରିର ଜିନ୍ଦାବାଦ, ପାଣୁ ମୋହରିର ଜିନ୍ଦାବାଦ ।

ଲରି ଚାଲିଥାଏ ।

# ପଂଖାବାଲା

ଛୋଟ ଗୋଟିଏ ବସ୍ତି, ବସ୍ତିଟିରେ କେତୋଟି ପକକା ଏକ ତାଲା; ଦୋତାଲା ଘର, ଯିମିତି କତିରେ କତିରେ, ସିମିତି କେତୋଟି ବଡ଼ ଚାଳ ଘର, ଆଉ କେତୋଟି କୁଡ଼ିଆ ଘର ।

ଏମାନଙ୍କୁ ବାହାରୁ ଦେଖିଲେ ମନେ ହୁଏ ଯିମିତି ଏ କୋଠା ଘର ଆଉ ଚାଳଘରଗୁଡ଼ିକ ପରସ୍ପର ଗୋଟାଏ ମେଣ୍ଟ ବାନ୍ଧି ରହିଛନ୍ତି, କାହାରି ଅନିଷ୍ଟ କେହି କରିବାକୁ ଚାହାନ୍ତି ନାହିଁ । କେତାଟି ନଡ଼ିଆ ଗଛ ମଧ୍ୟ ଏ ମାନଙ୍କୁ ଗହଳିରୁ ମୁଣ୍ଡ କାଢ଼ି ଠିଆ ହୋଇଛନ୍ତି ଜଗୁଆଳି ପରି ।

ପ୍ରକୃତି ମଧ୍ୟ ଏ ବସ୍ତି ଉପରେ ବେଶ୍ ସନ୍ତୁଷ୍ଟ ବୋଲି ମନେ ହୁଏ । କାରଣ ଆଲୁଅ ଛାଇ ଯେତିକି ହେଲେ ଏ ବସ୍ତିଟି ସୁନ୍ଦର ଦେଖାଯିବ, ଯେତିକି ଦରକାର, ସେଥିରୁ କେଭେ ଊଣା କରେନା ।

ଜହ୍ନ ରାତିକି ଅନ୍ଧାର ରାତିରେ ମଧ୍ୟ ଠିକ୍ ସିମିତି- ଆକାଶରେ ବସ୍ତି ଉପରେ, ନଡ଼ିଆ ଗଛର ସନ୍ଧିରେ ଖଣ୍ଡିଏ ଭଙ୍ଗା ଜହ୍ନ, ତାର ଚାରିଆଡ଼େ କେତେଗୁଡ଼ାଏ ଟୁକୁରା କାଚ ଖଣ୍ଡ ବିଛି ହୋଇ ଗଲା ପରି-ତାରାର ଦଳ ।

ଆଉ ଯେଉଁଦିନ ଭଙ୍ଗା ଜହ୍ନ ଖଣ୍ଡକ ବଦଳରେ ଖଣ୍ଡିଏ ନିଖୁନ୍ତ ଜହ୍ନ କିମ୍ବା ସେ ଭଙ୍ଗା ଜହ୍ନ ଖଣ୍ଡକ ଆଦୌ ନାହିଁ, ସେ ରାତି କଥା ଛାଡ଼ । ହୁଏତ ଚାରିଆଡ଼େ ଆଲୁଅ, କେବଳ ମାଟି ଉପରେ ମଣିଷର କୋଳାହଳ ଶୁଣେ ଆକାଶର ଜହ୍ନ ନଚେତ୍ ସବୁ ଅନ୍ଧାର, ଆଉ ଶୂନ୍‌ଶାନ୍ କେବଳ ମାଟିର ଝିଣ୍ଟିକା ଡ଼ାକେ ଆଉ ଆକାଶର ତାରା ଶୁଣେ ।

ବସ୍ତିଟିରେ ଧନୀ ଦରିଦ୍ର ଉଭୟଙ୍କର ଜୀବନର ଗତି ଠିକ୍ ସମାନ୍ତରାଳ ସରଳ ରେଖାପରି ।

ଦୋତାଲା କୋଠାଘରୁ ଭଲ ଭଲ ତରକାରୀର ଛୁଁକର ଗନ୍ଧ ବାହାରିଲେ, ଛପର କୁଡ଼ିଆ ଘରୁ ଶାଗ ଖରଡ଼ାର ଛୁଁକର ଗନ୍ଧ ମଧ୍ୟ ଆସେ ।

ଦୋତାଲାରୁ ଯିମିତି ବେଳେ ବେଳେ ଭାସି ଆସେ ମନ ଫୁଲାଣିଆ ଗୀତର ଝଙ୍କାର, ସିମିତି କୁଡ଼ିଆ ଖଣ୍ଡକରୁ ମଧ୍ୟ ଶୁଣାଯାଏ-କୁହୁଳା ମନରେ ବୁକୁଫଟା କରୁଣ କଣ୍ଠର ନିନାଦ ।

କୋଠା ଘରୁ ଯେତେବେଳେ ଶଙ୍କର ପ୍ୟାଣ୍ଟ, ଜାମା, ଯୋତା ମାଡ଼ି ବହିଧରି ତା'ର ସହପାଠୀମାନଙ୍କ ସହ ସ୍କୁଲକୁ ବାହାରି ଯାଏ ଶଙ୍କରା ମଧ୍ୟ ଖଣ୍ଡେ ଛିଣ୍ଡା ଗେଞ୍ଜି ମଡ଼େଇ ଆଉ ଖଣ୍ଡେ ଛିଣ୍ଡା ଲୁଗାର ପାଇକଛା ଭିଡ଼ି ଦେଇ ବାହାରି ଯାଏ । ଶଙ୍କର ଯେଉଁ କ୍ଲାସରେ ପଢ଼େ ସେଇ କ୍ଲାସରେ ପଙ୍ଖା ଟାଣିବା ପାଇଁ ।

କ୍ଲାସରେ ଛାତ୍ରର ନାମ ଯିମିତି ଶଙ୍କର, କ୍ଲାସର ପଙ୍ଖାବାଳାର ନାମ ସିମିତି ଶଙ୍କର କିନ୍ତୁ ତାକୁ ସମସ୍ତେ ଶଙ୍କରା ଶଙ୍କରା ଡ଼ାକନ୍ତି ।

ଶଙ୍କରାର ବାପ ନାହିଁ, ମା ରାଣ୍ଡ, ବାର ଘରେ ବାର ଧନ୍ଦା କରେ । କା'ର ଅଟା ଫେସେ, କା'ର ଧାନ କୁଟେ, କା'ଘରେ କେହି କୁଆଡ଼େ ଚାଲିଗଲେ ତ ତା'ର ଘର ଜଗି ପଡ଼ି ରହେ, କା'ର ଟଙ୍କା କଉଡ଼ି ଦରକାର ହେଲେ, ସେ କୋଉ ଖଞ୍ଜାରେ ଜିନିଷ ନେଇ ପରଘରେ ଥୋଇ ଟଙ୍କା ଆଣିଦିଏ । କାହାରି ଘରେ କିଛି କାର୍ଯ୍ୟ ପଡ଼ିଲେ ସେଥିରେ ଆପେ ଆପେ ପଶି ଯାଇ ପାଞ୍ଚ କାମ କରି ଦେଇ ଆସେ ।

ଏଥିଲାଗି ସାହି ପଡ଼ିଶାରେ ତା'ର ଭାରି ଆଦର । ଭାରି ନାଁ । କିନ୍ତୁ ଶଙ୍କରାର ବୋଉ-ସେ ଯେମିତି ଜଣକର ଘର ପୋଷା ମୟୂର କେବଳ ମେଘ ଦେଖିଲେଇ ପୁଚ୍ଛ ମେଲି ନାଚିବାର ପ୍ରାଣୀ ।

ବସ୍ତି ନିକଟରେ ସ୍କୁଲ । ତା'ର ଷଷ୍ଠ ଶ୍ରେଣୀରେ ଶଙ୍କର ଛାତ୍ର, ଶଙ୍କରା ପଙ୍ଖାବାଲା ।

କ୍ଲାସର ସବୁ ପିଲାଙ୍କ ବୟସ ସଙ୍ଗେ ତା'ର ବୟସ ଥିଲା ପ୍ରାୟ ସମାନ। ସମସ୍ତେ ବସନ୍ତି ବେଞ୍ଚରେ, ସେ ବସି ପଙ୍ଖା ଟାଣେ କାନ୍ଥକୁ ଆଉଜି, କ୍ଲାସ ପଛରେ ତଳେ ଯଦିଚ ତା'ର ସ୍ୱାସ୍ଥ୍ୟ ଥିଲା ସବୁ ପିଲାଙ୍କ ଆପେକ୍ଷା ଅନେକ ଉପରେ।

ତାର ଧୂଳି ଧୂସର ସାବୁଳିଆ ଦିହ, ନୁଖୁରା ମୁଣ୍ଡର କାନଡ଼ିଆ ବାଳ, ଚଳାଖିର ଛାଁଚ ପରି ବଡ଼ ବଡ଼ ଆଖି, ତା'ର ବୋତାମ ଛିଣ୍ଡା ଛାତି, ଏସବୁକୁ ଲକ୍ଷ୍ୟ କରୁଥିଲେ ଶିକ୍ଷକମାନେ, ଆଉ ମଧ ତାକୁ ଭାରି ଭଲ ପାଉଥିଲେ, ବିଶେଷତଃ ପାରେଶ୍ୱର ବାବୁ, ଯେ କି ଶଙ୍କରାର ଅନ୍ନଦାତା ସେଇ ଶଙ୍କରାକୁ ଆଣି ସ୍କୁଲରେ ପଙ୍ଖାଟାଣିବା କାମରେ ନିଯୁକ୍ତ କରିଥିଲେ, ତାର ମା'ର ଅନୁରୋଧରେ।

ସ୍କୁଲରେ ଘଣ୍ଟା ବାଜେ, ଶିକ୍ଷକମାନେ ଆସନ୍ତି, ସ୍କୁଲର ସବୁ ଶ୍ରେଣୀର ପିଲାମାନେ ଆସନ୍ତି, ପଙ୍ଖାବାଲାଏ ଆସନ୍ତି, ଶଙ୍କରା ଆସେ ତା'ର କ୍ଲାସରେ ପଙ୍ଖା ଟାଣିବାକୁ।

କିନ୍ତୁ, ସ୍କୁଲ ଯେତେ ଆଗେଇ ଚାଲେ, ଶଙ୍କରାର ବିରୁଦ୍ଧରେ ପିଲାମାନଙ୍କର ଅଭିଯୋଗ ମଧ ସେମିତି ଆଗେଇ ଚାଲେ। ପ୍ରତ୍ୟେକ ଘ<ାରେ ଶିକ୍ଷକ ଆସିଲା ମାତ୍ରେ କେହି ନା କେହି ପିଲା ଉଠି ଶଙ୍କରାର ବିରୁଦ୍ଧରେ କହିବାକୁ ଆରମ୍ଭ କରିଦିଏ, ଯିମିତି, ସାର୍, ମୁଁ ଜୋର୍‌ରେ ପଙ୍ଖା ଟାଣିବାକୁ କହିଲାରୁ ଶଙ୍କରା କହୁଛି, ତୋ' ଘରେ କେଇଟା ପଙ୍ଖା ଝୁଲୁଛି? ଘରେ କେତେ ହାଓୟା ଖାଉଛୁ?

ସାର୍ ଆମେମାନେ ଯଦି କିଛି କହି ନ ପାରି ମାଡ଼ ଖାଉଛୁ ଆପଣ ଚାଲିଗଲେ ଶଙ୍କରା କହୁଛି, ଭଲ ହେଇଛି, ଭଲ ହେଇଛି, କିମିତି ମାଡ଼। ସାର୍, ଶଙ୍କରା ପଙ୍ଖା ଟାଣୁଛି ଯେ ଦଉଡ଼ିଟା ଯିମିତି ପ୍ରତିଥର ମୋ ମୁଣ୍ଡରେ ବାଜିବ, ମନା କଲେ କହୁଛି, ତୁ ସେଠୁ ଉଠିଯା।

ସାର୍, ଶଙ୍କରା ଏତେ ଜୋର୍‌ରେ ପଙ୍ଖା ଟାଣୁଛି ଯେ ଆମ ଖାତା ପତ୍ର ଉଡ଼ି ଯାଉଛି, ଲେଖି ହଉନି। ତାକୁ ମନା କଲେ ମାନୁ ନାହିଁ। କହୁଛି, ପଙ୍ଖା ଟାଣିବା ପାଇଁ ଟଙ୍କା ପାଉଛି, ମୋ ଇଚ୍ଛା, ମୁଁ ଯେମିତି ଟାଣିବି। ସାର୍ ଯେତେବେଳେ ଆପଣ କ୍ଲାସରେ କହୁଛନ୍ତି ଶଙ୍କରା ଭଲ ପଙ୍ଖା ଟାଣୁଛି, ଆଉ ଆପଣ ଚାଲିଗଲେ ଟାଣୁ ନାହିଁ, ଟାଣିବାକୁ କହିଲାରୁ କହୁଛି, ପାଠ ତ ପଚାରିଲେ ଆସୁ ନାହିଁ, ଖାଲି ହାଓୟା ଖାଇବାକୁ ମନ ହଉଛି?

ସାର୍, ସେ ତୁନି ତୁନି ହୋଇ କ୍ଲାସରେ ଗୀତ ବୋଲୁଛି। ମନା କଲେ କହୁଛି, ମୋ ମନ ଖୁସି ଅଛି, ମୁଁ ଗୀତ ବୋଲିବି ତୁ ଶୁଣୁଛୁ କାହିଁକି? ସାର୍, ସେ ସବୁବେଳେ 'ତୁ' 'ତା' କରି କଥା କହୁଛି, ମନା କଲେ କହୁଛି, ଆଉ କ'ଣ ଆପଣ ବୋଲି କହିବି? ସେ କଥା ହବ ନାହିଁ, ବେକ କଟିଗଲେ ବି ହବ ନାହିଁ, ତୁ ତ ପାଠ ପଢୁଛୁ, ମୁଁ ତ ପଇସା ରୋଜଗାର କରୁଛି, ମୋତେ କିଏ କେତେ 'ଆପଣ' ବୋଲି କହୁଛନ୍ତି? ମନେ ମନେ ତ କାହିଁରେ କ'ଣ ହେଲେଣି, 'ଆପଣ' 'ଆଜ୍ଞା' ନ କଲାରୁ ମନ ଊଣା ହେଇଯାଉଛି।

ସାର୍, ସେ ପ୍ରତିଦିନ ଖେଳ ଛୁଟିରେ ଆମମାନଙ୍କ ସାଙ୍ଗରେ ମିଶି ଖେଳୁଛି, ମନା କଲେ କହୁଛି, ତୁମେ ଏକା ମଣିଷ ଛୁଆ, ମୁଁ କ'ଣକି? ତୁମେ ଖେଳିବ, ମୁଁ ଖେଳିଲେ ଲାଗିଯାଉଛି। ସାର୍, ସେ ବଲ୍ କ'ଣ, ବାଗୁଡ଼ି କ'ଣ ଭାରି ଭଲ ଖେଳୁଛି, ସେ ଭାରି ଫାଉଲ୍ କରୁଛି। ସାର୍, ସେ ଗଛ ଆଗେରେ ଯାଇ ଚଢୁଛି, ସ୍କୁଲ ବନ୍ଦ ହେଲେ ଦେଖିବେ ତା'ର କି ପାଣିରେ ବୁଡ଼ା, ମାଛ ଧରା ଆଉ ପହଁରା, ପୋଖରୀର ଏପାଖ ସେପାଖ ପହଁରି ଯାଉଛି, ଟିକିଏ ଡ଼ର ନାହିଁ, କଉଦିନ ବୁଡ଼ି ମରିବ।

ଶଙ୍କରା ତା'ର ଏ ମରିବା କଥା ଶୁଣିଲେ, ଶିକ୍ଷକ କ୍ଲାସରେ ଥିଲେ ମଧ, ତୁନି ତୁନି ହୋଇ ଯିମିତି ଖାଲି ସେ ପିଲା ଶୁଣିପାରିବ କହିଦିଏ, ତୋରି ପରି ହେଇଛି ମରିଯିବି, ତୁ ମରୁନାହୁଁ। ପିଲା ଏ କଥା ଶୁଣି ଆହୁରି ଚିତ୍କାର କରି ଶିକ୍ଷକଙ୍କୁ ଜଣାଏ, ସାର୍ ଏଇ ଦେଖନ୍ତୁ ମୋତେ 'ମର' ବୋଲି କହୁଛି।

ଶିକ୍ଷକ ପଚାରିଲେ ଶଙ୍କର ନାହିଁ କରେ ସେ କହି ନାହିଁ। ସାର୍, ଶଙ୍କରା ତା' ଘରକୁ ଗଲେ ତା' ବୋଉ ସାଙ୍ଗରେ ଲଗେଇଛି, ସେ ସ୍କୁଲରେ ପଢ଼ିବ, ନିଲ୍‌ଡ଼ାଉନ୍ ହବ, ବେଞ୍ଚ ଉପରେ ଠିଆ ହବ, ଡ୍ରିଲ କରିବ। ସେ

ଯେତେବେଳେ ଘୁଆଡ଼େ ଯାଉଛି, 'ଲେଫ୍ଟ' 'ରାଇଟ୍' 'ଲେଫ୍ଟ' 'ରାଇଟ୍' ନିଜ ମୁହଁରେ କହି କହି ଚାଲୁଛି । ତା'ର ବୋଉ ତାକୁ ବାଡ଼େଇଲେ କହୁଛି, ମୋତେ ମାରନା, ମୁଁ ନିଲ୍‌ଡ଼ାଉନ୍ ହଉଛି ।

ସାର୍, ସେ ତା' ଦୁଆରେ ଖଡ଼ିରେ ତା' ନାଁ ଲେଖି, ତା' ତଳେ ଲେଖିଛି 'ପଙ୍ଖାପୁଲର୍' ପୁଣି ତା ତଳକୁ ଲେଖିଛି 'In' 'Out' ତା' ବୋଉ ଯଦି ତାକୁ ଗାଳି ଦଉଛି, ପଚାରୁଛି କାହିଁକି ସେ କାନ୍ଥଗୁଡ଼ା ଏମିତି ନାଶନା କରୁଛୁ? ସେ କହୁଛି, ଏଇଥିରୁ ମୋ ସାଙ୍ଗ ପିଲାଏ ଜାଣି ପାରିବେ ମୁଁ ଘରେ ଅଛି କି ନା, ତୋତେ ଆଉ କହିବାକୁ ହବନାହିଁ । ପୁଣି ତା' ବୋଉକୁ କହୁଛି, ବୋଉ ଆମ ଘରେ ଖଣ୍ଡେ ପଙ୍ଖା ଲଗେଇବା, ତୁ ଶୋଇବୁ, ମୁଁ ଟାଣିବି ।

ସାର୍, କେବେ କେବେ ଶଙ୍କରା ରାତିରେ ତାଙ୍କ ଘରେ ବଡ଼ ପାଟି କରି ପଢୁଛି, She is a pankha puller. He has many fathers.

ପୃଥିବୀର ତିନି ଭାଗ ସ୍ଥଳ ହେଲେ ଭାଗେ ଜଳ, ସୂର୍ଯ୍ୟ ତା' ଚାରିଆଡ଼େ ବୁଲୁଛି । ମଶା ଖାଲି ଉଡ଼େ ନାହିଁ, କାମୁଡ଼େ । ଏଥିଲାଗି ଆମ୍ଭମାନଙ୍କୁ ମେଲେରିଆ ଜ୍ୱର ହୁଏ । ଗୋଟିଏ ସମ ଦ୍ୱିବାହୁ ତ୍ରିଭୂଜର ଭୂମି ଉପର କୋଣ ଦୁଇଟିରେ ଆମ୍ଭେମାନେ ସୂର୍ଯ୍ୟାଲୋକ ଏବଂ ଖାଦ୍ୟ ଅଭାବରେ ବେଶ୍ ବଞ୍ଚିପାରୁ । ଯେତେ ଅକାରାନ୍ତ ଆଉ ଦୀର୍ଘ ଈକାରାନ୍ତ ଶବ୍ଦ ସବୁ ସ୍ତ୍ରୀ ଲିଙ୍ଗ, ଯଥା ଶଙ୍କର-ପୁଲିଙ୍ଗ, ସ୍ତ୍ରୀ ଲିଙ୍ଗରେ-ଶଙ୍କରା, ଭାତ-ପୁଲିଙ୍ଗ, ସ୍ତ୍ରୀ ଲିଙ୍ଗରେ-ତୋରାଣୀ, ରଜକ-ପୁଲିଙ୍ଗ, ସ୍ତ୍ରୀ ଲିଙ୍ଗରେ-ଧୋବା ଓ ଧୋବଣୀ ।

'ଅ' କିମ୍ୱା 'ଆ' ପରେ 'ଅ' କିମ୍ୱା 'ଆ' ଥିଲେ ଦୁହେଁ ମିଶି ଭାରି କଡ଼ା ଲାଗେ, ଯଥା-

ଗୁଡ଼+ଆଖୁ-ଗୁଡ଼ାଖୁ, ତମ+ଆଖୁ=ତମାଖୁ..

ଶିକ୍ଷକ ବେଳେ ବେଳେ ଶଙ୍କରାର ବିରୁଦ୍ଧରେ ଏତେ ଗୁଡ଼ାଏ ଅଭିଯୋଗ ଶୁଣି ବିରକ୍ତ ହୋଇ ସେ ପିଲାକୁ ଗାଳି କିମ୍ୱା ମାଡ଼ ଦେଇ ଚପେଇ ଦିଅନ୍ତି । ଶଙ୍କରା ଏଥିରେ ଭାରି ଖୁସି ହୋଇ ଆହୁରି ଜୋରରେ ପଙ୍ଖା ଟାଣେ, ଯିମିତି ସେ ଶିକ୍ଷକଙ୍କ ଦିହରେ ଭଲ ଭାବରେ ପବନ ବାଜିବ । ଏସବୁ ଛଡ଼ା କ୍ଲାସର ଛାତ୍ର ଶଙ୍କରର ପଙ୍ଖାବାଲା ଶଙ୍କରାର ବିରୁଦ୍ଧରେ ଅଭିଯୋଗ ଯେ, ସେ ତାକୁ 'ଶଙ୍କର' ନ ଡ଼ାକି 'ଶଙ୍କରା' 'ଶଙ୍କରା' ଡ଼ାକୁଛି । କହିଲେ କହୁଛି, ମୋ ନାଁ ତ 'ଶଙ୍କର' ମୋତେ କିମିତି 'ଶଙ୍କରା' 'ଶଙ୍କରା' ଡ଼ାକୁଛନ୍ତି । ମୁଁ ଆଉ ଚିଡ଼ୁନାହିଁ, ତୋତେ 'ଶଙ୍କର' ଡ଼ାକିଲେ ଲାଗି ଯାଉଛି, ତୁ ମୋତେ 'ଶଙ୍କର' ବୋଲି ଡ଼ାକ, ମୁଁ ତୋତେ ଶଙ୍କର ବୋଲି ଡ଼ାକିବି, ନାହିଁ ତ ମୁଁ ଯିମିତି ସ୍ତ୍ରୀ ଲିଙ୍ଗରେ-ଶଙ୍କରା, ତୁ ସେଇଯା ।

ଶଙ୍କରା ପୁଣି କୁହେ, ପାଠ ଯଦି ପଢୁଥାନ୍ତି, ତୋ କାନ ମୋଡ଼ି ଛିଣ୍ଡେଇ ଦିଅନ୍ତି । ତୋତେ 'ଶଙ୍କର' ବୋଲି ଡ଼ାକିବି? ତୁ ତତଲା ଖାଇଲେ, ମୁଁ ତ ପଖାଳ ଖାଉଛି । ଶଙ୍କର ରାଗରେ ଜଳିଯାଏ, ପଙ୍ଖାବାଲାଟା ତାକୁ ଇମିତି କହୁଛି । 'ତୁ' 'ତା' କରୁଛି । ସେ କେଡ଼େ ବଡ଼ ଘରର ପିଲା । କେତେଥର ଭାବେ ଶଙ୍କରାକୁ ବାଡ଼େଇବ କିନ୍ତୁ ପୁଣି ଭାବେ, ସେ ବାଡ଼େଇଲେ ଶଙ୍କର ଛାଡ଼ିଦେବ? ଶଙ୍କରାକୁ ତ ତା କ୍ଲାସର ପ୍ରାୟ ସବୁ ପିଲା ଡ଼ରନ୍ତି, ତା'ଦିହରେ ହାତ ଛୁଇଁବାକୁ, ପୁଣି କ୍ଲାସର ସବୁ ପିଲାତ ଏକା ପରି ନୁହନ୍ତି । କେତେ ପିଲାତ ଶଙ୍କରକୁ କିଛି କହନ୍ତି ନାହିଁ, ବେଳ ପଡିଲେ ଶଙ୍କରାକୁ ସାହାଯ୍ୟ କରିପାରନ୍ତି । ତା' ଆଡ଼େ ସାକ୍ଷୀ ଦେଇପାରନ୍ତି, ନିହାତି ନିରୀହ, ମାଧା ପିଲାଗୁଡ଼ାକ, ଯେଉଁମାନେ ଶଙ୍କରାର ବିରୁଦ୍ଧରେ ସେମାନେ ମିଶିଲେ କିଛି କରିହବ । ନଚେତ୍ ସେ ଏକା କିଛି କରି ପାରିବ ନାହିଁ । ଇମିତି ଭାବି ମନେ ମନେ ଚପିଯାଏ ।

ଶିକ୍ଷକଙ୍କ ଆଗରେ କହିଲେ କ'ଣ, ଯେତେ ଯାହା କଲେ କିଛି ହୁଏ ନାହିଁ । ପୁଣି ଯେଉଁଠି ସେଠି ତୁନି ତୁନି ହୋଇ ଚିଡ଼େଇ ଚିଡ଼େଇ କ'ଣ ଗୁଡ଼ାଏ ବୋଲୁଛି ।

ଶଙ୍କର ଯିମିତି ମନେ ମନେ ଭାବେ, ଶଙ୍କରାକୁ କିମିତି ଥରେ ମାରିବି । ଶଙ୍କରା ମଧ୍ୟ ମନେ ମନେ ଭାବେ କିମିତି ଥରେ ସୁବିଧା ପାଇଲେ ଶଙ୍କରକୁ ବଜେଇବ, ତା'

ବଡ଼ ପଣିଆ ଛଡ଼େଇବ । ଏଣେ ପିଲାଏ ଶିକ୍ଷକଙ୍କ ଆଗରେ ଯେତେ ଯେ ଶଙ୍କରା ବିରୁଦ୍ଧରେ କହିଲେ, ସେଥିରେ କିଛି ନାହିଁ । କୋଉ ଶିକ୍ଷକ ଯଦି ଶଙ୍କରାକୁ ଅଳ୍ପ ଟିକିଏ ଧମକ ଦେଲେ ତ ଦେଲେ, ନଚେତ୍ ତାଙ୍କରି ଉପରେ ଶିକ୍ଷକ ଓଲଟି ବିରକ୍ତ ହେଲେ । ମାଡ଼, ଗାଳି ଦେଇ ତାଙ୍କୁ ଚପେଇ ଦେଲେ । ତାଙ୍କ କଥାକୁ ଶିକ୍ଷକମାନେ ଆଦୌ ବିଶ୍ୱାସ କଲେ ନାହିଁ ।

ଶିକ୍ଷକଙ୍କ ଆଖିରେ ଶଙ୍କରା ହେଲା ଭଲ, ସେମାନେ ହେଲେ ଖରାପ । ଏଥି ଲାଗି ସେମାନଙ୍କର ଶଙ୍କରା ପ୍ରତି ଗୋଟାଏ ତିକ୍ତ ଭାବ ଜାଗି ଉଠିଲା । ଏକଆଡ଼େ କ୍ଳାସର ଅଧିକାଂଶ ପିଲାଏ, ଅନ୍ୟଆଡ଼େ କେବଳ ଶଙ୍କରା ଆଉ ତା'ର ବିପ୍ଳବୀ ସ୍ୱାସ୍ଥ୍ୟ । ଦିନେ ମୁହଁ ସଞ୍ଜବେଳ, ରେଜା ପଇସାର ଅଭାବ ପରି ଉପରେ ଆକାଶରେ ଅଳ୍ପ କେତୋଟି ତାରା ଆଉ ତଳେ ଗୋଟିଏ ବାଟରେ ଶଙ୍କର ଫେରୁଛି ତା'ର ଘରକୁ । ହଠାତ୍ ପଛ ଆଡୁ ଶୁଣିଲା,

ଶଙ୍କର, ଶଙ୍କରା
ତୁ ମୁଁ ତ ଏକା ପରି
ମିଛେ ବାଣ୍ଟ ବଖରା

ଚାହିଁ ଦେଖେ, ଶଙ୍କରା ତା ମୁହଁରେ ବୋଲି ବୋଲି ଗୋଟାଏ ଲୁହା ପାତିଆର ଚକକୁ ଗଡ଼େଇ ଗଡ଼େଇ ତାରି ଆଡ଼କୁ ଦୌଡ଼ି ଦୌଡ଼ି ଆସୁଛି । ଯେତେବେଳେ ଶଙ୍କର ଆଉ ଶଙ୍କରାର ଉଭୟଙ୍କର ଭେଟ ହୋଇଗଲା, ଦୁହେଁ ଦୁଇଟା ବିଲେଇ ଯିମିତି କଳହ କରିବା ଆଗରୁ ରାଗରେ ଫୁଲି ଯାନ୍ତି, ସିମିତି ରାଗରେ ମନେ ମନେ ଫୁଲି ଗଲେ ।

ଶଙ୍କରା ଇମିତିଆ ଶଙ୍କର ନାଁରେ ବୋଲିବା ହେତୁରୁ ପ୍ରଥମେ ବାହୁ ଯୁଦ୍ଧ ପରିବର୍ତ୍ତେ ଉଭୟଙ୍କର ବାକ୍ ଯୁଦ୍ଧ ଆରମ୍ଭ ହୋଇଗଲା । ପୁଣି ବାକ୍ ଯୁଦ୍ଧଟା ରହିଲା ଆସି ଉଭୟଙ୍କର ଜ୍ଞାନ କଷାକଷି ଉପରେ, କିଏ ବେଶି ଜାଣେ ? ଶଙ୍କର ନା ଶଙ୍କରା ? ଶଙ୍କର ପାଠ ପଢ଼େ, ଶଙ୍କରା ମୂର୍ଖ । ଉଭୟଙ୍କ ଭିତରେ ଭୀଷଣ ତର୍କ । ଶଙ୍କରାର ଉକ୍ତି ତାରା ଗୁଡ଼ାକ ମଲା ମଣିଷର ଆଖି, ଶଙ୍କର କହେ ନା, ସେଗୁଡ଼ାକ ଭିନ୍ନ ଜିନିଷ । ସେମାନଙ୍କର ନିଜ ନିଜର ତେଜ ଅଛି । ଶଙ୍କରା ମାନେ ନା । ଶେଷରେ ଶଙ୍କର ଆରମ୍ଭ କଲା, ତୁ ଭାରି ଜାଣୁ ?

ଶଙ୍କରର ଇମିତିଆ କଥା ଶୁଣି ଶଙ୍କରା ମନେ ମନେ ଜଳି ଉଠିଲା, କହିଲା, କ'ଣ ? ତାରାଗୁଡ଼ାକ ମଲା ମଣିଷର ଆଖି, ଏତକ ତୋତେ ଜଣା ନାହିଁ ? ପୁଣି କହୁଛୁ, ତୁ ଭାରି ଜାଣୁ ? ତୁ କି ପାଠ ପଢୁଛୁ ହଇରେ ? ଶଙ୍କରା ତା'ର ଏ କଥାତକ ଶେଷ କରୁ କରୁ ପୂର୍ବର ଅକଶ ନେଇ ମାଇଲା ଗୋଟାଏ ଚାପୁଡ଼ା ଶଙ୍କରର ଗାଲକୁ । ଚାପୁଡ଼ାଟା ଶଙ୍କର ଗାଲରେ ନ ବାଜି, ବାଜିଲା ଆଖିରେ । ଏଥିରେ ଶଙ୍କର ହଠାତ୍ ଆଉ କିଛି ଦେଖି ନ ପାରି ବଡ଼ ପାଟି କର ଯିମିତି କାନ୍ଦି ଉଠିଲା, ଶଙ୍କରା ଉଭେଇଗଲା କୁଆଡ଼େ, ଯିମିତି ସାପ କାମୁଡ଼ି ଦେଇ ଅଦୃଶ୍ୟ ହୋଇଯାଏ ।

ତହିଁ ଆରଦିନ ଯିମିତି ସ୍କୁଲ ଆରମ୍ଭ ହୁଏ ସିମିତି ଆରମ୍ଭ ହେଲା । ପାରେଶ୍ୱର ବାବୁ ହାଜିରା ଖାତା ଖଣ୍ଡକ ହାତରେ ଧରି ଯେତେବେଳେ ଷଷ୍ଠ ଶ୍ରେଣୀରେ ଗୋଡ଼ ଦିଅନ୍ତି ହଠାତ୍ ଚିତ୍କାର କରି ଉଠିଲେ, ଗରିବ ପିଲାଟା ମରିଗଲା ! ! ! କାରଣ ତାଙ୍କର ଆଖିରେ ପଡ଼ିଗଲା, ପଙ୍ଖାବାଲା ଶଙ୍କରାର ବେକରେ ପଙ୍ଖା ଦଉଡ଼ି ଭିଡ଼ା ହୋଇଛି । ଶଙ୍କର ଦରିଛି ସେ ଦଉଡ଼ିକୁ ଆଉ ଶଙ୍କରା ପ୍ରାଣପଣେ ଚେଷ୍ଟା କରୁଛି ତା'ର ଦୁଇ ହାତରେ ସେ ଦଉଡ଼ିକି ତା ବେକରୁ କାଢ଼ି ପକାଇବାକୁ । ଏଣେ ତା'ର ଗୋଡ଼ରେ ମାରୁଛି ଗୋଇଠା ଅନ୍ୟ ପିଲାଙ୍କୁ । ଯେଉଁମାନେ ଚେଷ୍ଟା କରୁଛନ୍ତି ତା'ର ହାତ ଗୋଡ଼କୁ ଚାପି ଧରି ତାକୁ ଅଚଳ କରିଦେବା ପାଇଁ ଆଉ ଅଳ୍ପ କେତୋଟି ନିରୀହ ପିଲା ହାଉଳି ଖାଇ ଏଣେ କାନ୍ଦୁଛନ୍ତି । ଏଣେ ଚେଷ୍ଟା କରୁଛନ୍ତି ଶଙ୍କରକୁ ବଞ୍ଚେଇବା ପାଇଁ, ଏଣେ ଚିତ୍କାର ମଧ କରୁଛନ୍ତି । ପିଲାଏ ଶିକ୍ଷକଙ୍କୁ ଦେଖିବା ମାତ୍ରେ ସମସ୍ତେ ଶଙ୍କରାକୁ ଛାଡ଼ି ଅଲଗା ହୋଇଗଲେ ।

ଶଙ୍କରା ଦଉଡ଼ିରୁ ମୁକ୍ତ ହେବା ମାତ୍ରେ ତାକୁ ଯେତିକି ବାଧା ହୋଇଥିଲା ଆଉ ଟିକିଏ ବେଶି ଦେଖେଇଲେ ତା'ର ବିରୁଦ୍ଧ ଦଳ ପିଲାଏ ବେଶି ମାଡ଼

ଖାଇଲେ ଭାବି ମାଟିରେ ପଡ଼ି ରହିଲା, ସତେକି ତା'ର ଆଉ କଥା କହିବାର ଶକ୍ତି ନାହିଁ । ଶଙ୍କରାର ଏ ଅବସ୍ଥା ଦେଖି ପାରେଶ୍ୱର ବାବୁ ଚିତ୍କାର କରି ସ୍କୁଲରେ ଗୋଟାଏ ଚାଞ୍ଚଲ୍ୟ ସୃଷ୍ଟି କରିଦେଲେ । ଅନ୍ୟାନ୍ୟ ଶିକ୍ଷକ ଏବଂ ପିଲା ଧାଇଁ ଆସି ଲାଗି ପଡ଼ିଲେ ଶଙ୍କରାକୁ ସାଷ୍ଟାମ କରିବାରେ । ଏଣେ ପାରେଶ୍ୱର ବାବୁ ଲାଗି ପଡ଼ିଲେ ତାଙ୍କ କ୍ଲାସର 'ଦୁଷ୍ଟ' ପିଲାଙ୍କୁ ମାଡ଼ ଦେବାରେ । ଦେଖିଲେ ମନେ ହୁଏ, ଯେମିତି ମାଡ଼ ଉପରୁ କଣ୍ଟ୍ରୋଲ ଉଠିଗଲା ।

ଶଙ୍କରା କିନ୍ତୁ ସବୁ ଦେଖୁଥାଏ । ପିଲାମାନଙ୍କ କି ଦୁର୍ଦ୍ଦଶା ? ବିଶେଷତଃ ଶଙ୍କରର, କାରଣ ସେଇ ଧରିଥିଲା ତା'ର ବେକର ଦଉଡ଼ିକୁ । କିଛିକ୍ଷଣ ପରେ ଶଙ୍କରା ଉଠିବାରୁ ସେ ଦିନକ ପାଇଁ ତାକୁ ପଙ୍ଖାଟାଣିବାରୁ ଛୁଟି ଦିଆଗଲା ।

ଶଙ୍କରା ଛୁଟି ପାଇ ସ୍କୁଲ ହତାର ବାହାରକୁ ଯିମିତି ଆସିଛି ଆଉ ସେ ବାହାନା କରି ଧୀରେ ଧୀରେ ଚାଲି ପାରିଲା ନାହିଁ, ଏକା ଦଉଡ଼ିକେ କୁଆଡ଼େ ଅଦୃଶ୍ୟ ହୋଇଗଲା । ଦିନଯାକ କୁଆଡ଼େ ବୁଲି ବୁଲି ସେଦିନ ବେଳବୁଡ଼କୁ ଶଙ୍କରା ଆସି ସ୍କୁଲର ଖେଳ ପଡ଼ିଆରେ ଅଳ୍ପ ଦୂରରେ ଗୋଟିଏ ଝଙ୍କା ଆମ୍ବ ଗଛରେ ଚଢ଼ିଲା ଆମ୍ବ ଖାଇବା ପାଇଁ ।

କିଛିକ୍ଷଣ ପରେ ଦେଖିଲା ଦୂରକୁ ଅନେଇ ତା' କ୍ଲାସର କେତେକ ପିଲା ସେଇ ଗଛଆଡ଼କୁ ଆସୁଛନ୍ତି । ତାଙ୍କ ଭିତରେ ଶଙ୍କର ମଧ୍ୟ ଅଛି । ସେମାନେ ପ୍ରତିଦିନ ଏ ଗଛ ମୂଳକୁ ଆସନ୍ତି ଆମ୍ବ ଝଡ଼େଇବା ପାଇଁ ।

ସେମାନଙ୍କ ଭିତରୁ କେହି କେହି ଗଛରେ ଚଢ଼ନ୍ତି, କେହି ଟେକା ମାରି ଆମ୍ବ ଝଡ଼ାନ୍ତି, କେହି ଯା ପଡ଼ିଥାଏ ଗୋଟେଇ ଖାନ୍ତି । ସେଦିନ କିନ୍ତୁ ଯେତିକି ଆସିଲେ, କେହି କିଛି କଲେ ନାହିଁ । ଗୋଟିକ ପରେ ଗୋଟିଏ ଶୁଖିଲା ମୁହଁରେ ଗଛ ମୂଳରେ କିଏ କେଉଁଠି ଥକା ହୋଇ ବସିଲେ ।

ସେଦିନର କ୍ଲାସର ଘଟଣା କେବଳ ଥିଲା ତାଙ୍କର ଚିନ୍ତା ଆଉ ଆଲୋଚନାର ବିଷୟ । ଅଳ୍ପରେ ଶଙ୍କରାଟା ଆଜି ମରି ଯାଇଥାନ୍ତା । କି ଭୁଲ୍ କାମ । କି ମାଡ଼ ! ସମସ୍ତେ ଶଙ୍କରକୁ ଦୋଷୀ କରୁଥାନ୍ତି । କାରଣ ସେଇ ଥିଲା ଏ ଘଟଣାର ଉଦ୍ୟୋକ୍ତା, ପୁଣି ଖୋଜୁଥାନ୍ତି ଶଙ୍କରାଟା କୁଆଡ଼େ ଗଲା ? ପ୍ରତିଦିନ ସେ ଆସି ସେମାନଙ୍କ ସାଙ୍ଗରେ ଆମ୍ବ ଝଡ଼ାଏ, ଖେଳେ, ତା' ବୋଉର କେତେ ପିଲା ମରି ମରି ଶେଷକୁ ସେ ଏକା ଅଛି, ଆଜିତ ସେ ମରିଯାଇଥାନ୍ତା ।

ଶଙ୍କରା ସେମାନଙ୍କୁ ଆସିବାର ଦେଖି ଗୋଟାଏ ଡ଼ାଳରେ ଚୁପ୍‌ଚାପ୍ ଲୁଚି ବସିଥିଲା ଦେଖିବାକୁ ସେମାନେ କ'ଣ କରୁଛନ୍ତି ? ଆଉ ଶୁଣିବାକୁ ସେମାନଙ୍କର କଥାବାର୍ତ୍ତା । ଶଙ୍କରା ଦେଖିଲା ଯେ ସମସ୍ତେ ଚୁପ୍‌ଚାପ୍ ହୋଇ ବସି ରହିଲେ, ଆଉ କେହି ଆମ୍ବ ଝଡ଼େଇଲେ ନାହିଁ କି ଖେଳିଲେ ନାହିଁ ।

ସେ ମିଛେ ମିଛେ ଗୋଟାଏ ବାହାନା କରି ପଡ଼ି ରହିବାରୁ ସେମାନେ ବେଶି ମାଡ଼ ଖାଇଲେ । ଶଙ୍କରାର ଆଉ ଧୈର୍ଯ୍ୟ ରହିଲା ନାହିଁ । ସେ ତା'ର ଅଣ୍ଟିରେ ଯେତେ ଗୁଡ଼ାଏ ଆମ୍ବ ପୁରେଇ ଥିଲା ସବୁ ତଳକୁ ପକେଇ ଦେଲା ସେମାନଙ୍କ ଲାଗି ।

ଆମ୍ବ ଗୁଡ଼ାଏ ପଡ଼ିବାର ଦେଖି ତଳେ ସମସ୍ତେ ଧଡ଼ଧାଡ଼ ହୋଇ ଉଠି ପଡ଼ି ଆମ୍ବ ଗୋଟାଉ ଗୋଟାଉ ଉପରକୁ ଚାହିଁ ଦେଖିଲେ, ଶଙ୍କରା ଗୋଟାଏ ଡ଼ାଳରେ ବସିଛି, ସମସ୍ତେ ଶଙ୍କରାକୁ ଦେଖି ମନେ ମନେ ଲଜ୍ଜିତ ହେଲେ । ଶଙ୍କରା ଏତେବେଳେ ଗୋଡ଼ ଝୁଲେଇ, ହାତ ହଲେଇ ହସି ହସି ବୋଲିବାକୁ ଲାଗିଲା-

ଗଲାଣିତ ଗଲା କଥାରେ ସଙ୍ଗାତ

ଗଲାଣିତ ଗଲା କଥା........

ସମସ୍ତେ ଡ଼ାକିଲେ, ଶଙ୍କରା ଓହ୍ଲେଇ ଆ, ଓହ୍ଲେଇ ଆ, ପଡ଼ିଯିବୁ । ହସି ହସି ଶଙ୍କରା ତାଙ୍କ ମଝିକି କୁଦି ପଡ଼ିଲା ।

# ଫୁଟ୍ ବଲ୍ ପର୍ବ

## ୧

ବିଧୁ ଆରମ୍ଭ କଲା ମହାଭାରତ ପଢ଼ିବାକୁ, କିଛିଦିନ ପଢ଼ି ପଢ଼ି ମହାଭାରତର କୌରବ ପାଣ୍ଡବଙ୍କ ମଧ୍ୟରେ ଯେ ଯୁଦ୍ଧ ହୋଇଥିଲା, ଆଉ ସରିବାକୁ ଦୁଇ ତିନି ପୃଷ୍ଠା ଥାଏ ସେହିଦିନ ପଡ଼ିଲା ବିଧୁକୁ ଗୋଟାଏ Foot ball match ଖେଳିବାକୁ, କାରଣ ବିଧୁ ନିଜେ ଥିଲା ଜଣେ Foot ball Player.

ସେ ଦିନ Final match ରେ ବିଧୁ ହାରି ଆସିଲା, ମନ ଭାରି ଖରାପ, କିଛି ଭଲ ଲାଗୁ ନ ଥାଏ, ଶେଷରେ ଧଇଲା ମହାଭାରତ; ଯୁଦ୍ଧର ଆଉ ଯେ କେତେ ପୃଷ୍ଠା ବାକି ଅଛି, ତାକୁ ସାରି ଦେବ।

ସେ କେତେ ପୃଷ୍ଠା ଏକ ନିଃଶ୍ୱାସରେ ସାରି ଦେଲା; କିନ୍ତୁ ସେଥିରେ ମଧ୍ୟ ଶାନ୍ତି ପାଇଲା ନାହିଁ, ଖାଇବାକୁ ମଧ୍ୟ ଇଚ୍ଛା ହେଉ ନ ଥାଏ, କେବଳ ସେହି Foot ball matchରେ ହାରିବା କଥା ମନେ ପଡୁଥାଏ, କିଛିକ୍ଷଣ ପରେ ଆସିଲା ନିଦ, ମହାଭାରତ ବନ୍ଦ କରି ମୁଣ୍ଡ ଉପରେ ଥୋଇ ଦେଇ ଶେଯ ଉପରେ ଲମ୍ୱ ହୋଇଗଲା।

କିଛିକ୍ଷଣ ପରେ ଦେଖିଲା ଗୋଟାଏ ସ୍ୱପ୍ନ-ମହାଭାରତର ପାଣ୍ଡବ କୌରବମାନଙ୍କ ମଧ୍ୟରେ ସେହି Foot ball match।

ଉଭୟ ପକ୍ଷରେ ଏଗାର ଜଣ Player ଖୋଜା ପଡ଼ିଛି, କୌରବ ପକ୍ଷରେ କେତେ ତର୍କବିତର୍କ ଚାଲିଛି।

ଜଣେ କହିଲା-ପାଣ୍ଡବ ପକ୍ଷରେ କୃଷ୍ଣ ଅଛି ଯେତେବେଳେ, ତାଙ୍କୁ ପାରିବା ଭାରି କଷ୍ଟକର ହେବ।

ଏହି କଥା ଶୁଣି ଦୁର୍ଯ୍ୟୋଧନ ଗର୍ଜନ କରି କହି ଉଠିଲା-କୃଷ୍ଣ ? ସେ ମାଇଚିଆ ? ଏ କ'ଣ ଆଉ କିଛି ହୋଇଛି କି ? Corner kick, Free kick, Penalty shot ଦେଖିଲେ ଗଉଡ଼ ଟୋକା କୁଆଡ଼େ ଛାଡ଼ି ପଳେଇବ, ଦୁଇ ଚାରିଟା Fowl ହୋଇଗଲେ କୁଆଡ଼େ ବାପକୁ ମଉସା ବୋଲି ଡ଼ାକିବ। ସେ ଏ ଖେଳର ଜାଣେ କ'ଣ? ତା'ର ଖେଳ ହଉଛି ଜଳକେଳି, ନାବକେଳି, ବସ୍ତ୍ରହରଣ, ସେ ପୁଣି ଗୋପୀମାନଙ୍କ ସଙ୍ଗରେ, ମାଇପିଙ୍କ ଦଳରେ।

ଶକୁନି କହିଲା-ଏଇ ହାତରେ ପାଣ୍ଡବମାନଙ୍କୁ ପଶା ଖେଳରେ ହରେଇଛି; ଆଉ Foot ball ଖେଳରେ ଆଜି ହରେଇ ଦେବେ ?

ଶକୁନି Foot ball ଖେଳ ପ୍ରଥମେ ପାଣ୍ଡବ କୌରବଙ୍କ ମଧ୍ୟରେ Introduce କରାଏ, ସେଇଥିଲାଗି କୌରବମାନେ ପାଣ୍ଡବମାନଙ୍କ ଅପେକ୍ଷା Foot ball ଖେଳରେ ବହୁତ ଧୁରନ୍ଧର।

କୌରବ ଆଗେ ପାଣ୍ଡବଙ୍କୁ Challenge କରିଥିଲେ, ଯୁଧିଷ୍ଠିର ପ୍ରଥମେ Challenge Accept କରିଥିଲେ; କିନ୍ତୁ ତାଙ୍କ ମଧ୍ୟରେ ସେହିପରି ଭାବନା, ଚିନ୍ତା; କାରଣ ଯୁଧିଷ୍ଠିର ଧର୍ମ ପ୍ରକୃତିର ଲୋକ, ଧୀର ସ୍ଥିର; ଏତେ ନୂଆ ରକମର ଖେଳ, ସେଥିରେ ପୁଣି ପାଣ୍ଡବଙ୍କ ଦଳ ସେତେ ପାରଙ୍ଗମ ହୋଇନାହାନ୍ତି, କ'ଣ କରିବେ ?

ଯୁଧିଷ୍ଠିରଙ୍କର ଭାବନା, ଚିନ୍ତା ଦେଖି କୃଷ୍ଣ ଆଶ୍ୱାସନା ଦେଇ କହିଲେ-ଭାବିବାର କିଛି ନାହିଁ।

ତୁମେ କେଇ Goal ରେ କୌରବଙ୍କୁ ଜିତିବାକୁ ଚାହଁ ? ଯେତେ Goal ଦବାକୁ ଚାହଁ, ମୁଁ ସେତେ ଗୋଲ କରେଇ ଦେବି, ମୁଁ ତ ପୁଣି ଦ୍ରୌପଦୀଙ୍କ ବସ୍ତ୍ରହରଣ ବେଳେ ଯେତେ ଲୁଗା ଦରକାର ପଡ଼ିଲା, ସବୁତ Supply କରିଥିଲି, ସେମାନେ କ'ଣ କରି ପକେଇଲେ ? ଆମେ ନିଶ୍ଚୟ ଜିତିବୁଁ, ତୁମେ କେଉଁ Player କେଉଁଠି ଖେଳିବେ, ଆଗେ ଗୋଟାଏ List କରି ପକାଅ।

କୃଷ୍ଣଙ୍କ କଥାରେ ଯୁଧିଷ୍ଠିର ଆଶ୍ୱସ୍ତ ହେଲେ, ପାଣ୍ଡବ ପକ୍ଷର Player List ହେଲା, ପ୍ରଥମେ ଭାବନା ପଡ଼ିଲା Goal-keeper କିଏ ରହିବ ।

ସମସ୍ତେ କହିଲେ-କୃଷ୍ଣ ରହନ୍ତୁ Goal ଜଗିବା ପାଇଁ ।

ଏଥିରେ କୃଷ୍ଣଙ୍କ ନାଁରେ Vote ବେଶି ହେଲାରୁ କୃଷ୍ଣ ରାଜି ହେଲେ; କିନ୍ତୁ ତେବେ ସୁଦ୍ଧା ମନେ ମନେ ତାଙ୍କର ଭୟ ହେଉଥାଏ-କାଳେ କେଉଁଠି ବାଜିବୁଜି ଯିବ ।

କୃଷ୍ଣ ହେଲେ Goal-keeper

ତା'ପରେ Back ଦୁଇ ଜଣ, Vote ବେଶି ହେଲା ଭୀମ ଆଉ ଧୃଷ୍ଟଦ୍ୟୁମ୍ନ (ଦ୍ରୌପଦୀଙ୍କର ଭାଇ)ଙ୍କ ନାଁରେ ।

ଏମିତି ଭୋଟ ନିଆ ହୋଇ ସବୁ ଜାଗାରେ Player ଠିକ୍ ହୋଇଗଲେ ।

Goal-keeper
କୃଷ୍ଣ

Back-ଭୀମ | ଧୃଷ୍ଟଦ୍ୟୁମ୍ନ

L. Half — ସହଦେବ | Centre Half — ନକୁଳ | R. Half — ଘଟୋତ୍କଚ

L.Out — ଶାମ୍ବ | L. In — ବଭ୍ରୁବାହନ | Centre Forward — ଅର୍ଜୁନ | R. In — ଅଭିମନ୍ୟୁ | R. Out — ପ୍ରଦ୍ୟୁମ୍ନ

ଯୁଧିଷ୍ଠିରଙ୍କୁ ଯେତେ କୁହାବୋଲା କଲେ ଗୋଟାଏ ଯାଗାରେ ଖେଳିବାକୁ ସେ ଆଦୌ ରାଜି ହେଲେ ନାହିଁ । ଯୁଧିଷ୍ଠିରଙ୍କୁ ଶେଷରେ Referee କରା ହେଲା, କାରଣ ସେ ଧର୍ମ ପରାୟଣ ଲୋକ, କୌରବ ପକ୍ଷ ମଧ୍ୟ ଯାକୁ ସମର୍ଥନ କରିଥିଲେ । ଶିଖଣ୍ଡୀ (ଦ୍ରୌପଦୀଙ୍କର ଭାଇ) କଥାତ ଛାଡ଼ ! ତା' ନାଁ ପଡ଼ିଲା ବେଳକୁ ସେ ଲୁଚିଲା, ତାକୁ Extra player ମଧ୍ୟରେ ରଖା ହେଲା, କୌରବ ପକ୍ଷ Challenge ସହିତରେ Player List ପଠେଇ ଦେଇଥିଲେ ।

Goal-keeper
ଜୟଦ୍ରଥ

Back-ଭୀଷ୍ମ | ଦ୍ରୋଣ

L. Half — ଦୁଃଶାସନ | Centre Half — ଦୁର୍ଯ୍ୟୋଧନ | R. Half — ଅଶ୍ୱତ୍ଥମା

L.Out — ଲକ୍ଷ୍ମଣ (ଦୁର୍ଯ୍ୟୋଧନଙ୍କର ପୁଅ) | L. In — ଶକୁନି | Centre Forward — କର୍ଣ୍ଣ | R. In — କୃପାଚାର୍ଯ୍ୟ | R. Out — ଶଲ୍ୟ

୨

Match ଆରମ୍ଭ ହେବା ପୂର୍ବରୁ Goal Post ରେ Net ବନ୍ଧା Field କଣରେ Flag ପୋତା, ଲେମୋନେଡ୍ ଗାଡ଼ି, Half time ରେ ଖାଇବା ଲାଗି କାଗିଜି ଲେମ୍ବୁ, ବରଫ। Field ର ଗୋଟାଏ ପାଖରେ Ladies, ଆଉ ଗୋଟାଏ ପାଖରେ ଭଦ୍ରବ୍ୟକ୍ତିମାନଙ୍କ ବସିବା ପାଇଁ Chair ଇତ୍ୟାଦି ଯା ଯା ଦରକାର, ସବୁ ଠିକ୍ ହୋଇଗଲା।

ପୁରୁଷ ଦର୍ଶକମାନଙ୍କ ମଧ୍ୟରେ ଆସିଲେ ଯଦୁବଂଶର କୃଷ୍ଣଙ୍କର Friends, Relatives ଯେତେ, ପାଣ୍ଡବଙ୍କ ପକ୍ଷରୁ ମଧ୍ୟ ସେହିପରି କେତେକ, ଆଉ କୌରବ ପକ୍ଷରୁ ଦୁର୍ଯ୍ୟୋଧନର ଭାଇମାନେ, ବଳଦେବ, ଆଉ ଯେତେ Sympathisers ଶେଷରେ ଆସିଲେ ଧୃତରାଷ୍ଟ୍ର, ଯେତେ ଯେ ମନା କଲେ, ମାନିଲେ ନାହିଁ କାରଣ ଏକତେ ବୁଢ଼ା ମଣିଷ, ସେଥିରେ ପୁଣି ଆଖି ନାହିଁ, ଦେଖିବେ କ'ଣ? କିନ୍ତୁ ଜିଦ୍ ଯେମିତି ହେଲେ Field ରେ ଯାଇ ବସିବେ, ସାଙ୍ଗରେ ସଞ୍ଜୟ ଥାଏ, ଖେଳବେଳେ ବୁଝେଇ ଦେବା ପାଇଁ।

Ladies ତରଫରୁ ସେହିପରି ଯଦୁବଂଶର ଯେତେ Females ପାଣ୍ଡବଙ୍କ ପକ୍ଷରୁ ଦ୍ରୌପଦୀ, ସୁଭଦ୍ରା ହିଡ଼ମ୍ବା (ରାକ୍ଷସୀ, ଭୀମଙ୍କର ସ୍ତ୍ରୀ), ଉତ୍ତରା, କୌରବ ପକ୍ଷରୁ ଦୁର୍ଯ୍ୟୋଧନର ଶହେ ଭାଇଙ୍କର ସ୍ତ୍ରୀମାନେ ସମସ୍ତେ ମଟରରେ ଆସି ପହଞ୍ଚିଲେ, ଯେ ଯାହାର Chair ନେଇ ବସିଗଲେ।

କୁନ୍ତୀ ଆଉ ଗାନ୍ଧାରୀ ଆସିଲେ ନାହିଁ, ବୁଢ଼ୀ ଲୋକ, ମଟର ଚଢ଼ା ତାଙ୍କ ଦିହରେ ଯାଏ ନାହିଁ, ପେଟ୍ରୋଲ ଗନ୍ଧରେ ତାଙ୍କ ମୁଣ୍ଡ ଧରେ, ବାନ୍ତି ହୁଏ, ବୋହୂମାନେ ଯେତେବେଳେ ଗଲେ ସେଇଥିରେ ତାଙ୍କର ଖୁସି।

Field ର ଦୁଇ ପାଖରେ ଯେତେବେଳେ ଲୋକମାନେ ଭରି ଗଲେ, ଯେ ଯାର Chair ନେଇ ବସି ଚାହିଁ ରହିଲେ କେତେ ବେଳେ Match ଆରମ୍ଭ ହେବ।

ଏଥି ମଧ୍ୟରେ ଧୃତରାଷ୍ଟ୍ର ସଞ୍ଜୟକୁ ପଚାରିଲେ- Foot ball ଦେଖିବାକୁ କିପରି?

ସଞ୍ଜୟୋବାଚ-

ଦେଖିବାକୁ ଗୋଲାକାର,<br>
ପେଟରେ ପବନ ତା'ର।<br>
ନୁହେଁ ସେ ଗଛର ଫଳ,<br>
ନୁହଁଇ ସେ ସୁକୋମଳ।<br>
ଉଠେ କେବେ ସରଗକୁ,<br>
ପୁଣି ଖସେ ମରତକୁ।<br>
କେବେ ଗଡ଼େ ଧରଣୀରେ,<br>
କେବେ ଶୀଘ୍ର କେବେ ଧୀରେ।<br>
କେବେ ବୁଲେ ଡ଼େଇଁ ଡ଼େଇଁ,<br>
ଚୁମ୍ବି ଦେଲେ ଗୋଡ଼ ଦେଇ।

୩

ଯୁଧିଷ୍ଠିର Referee ପ୍ରଥମେ ଆସି whistle ଦେଲେ, ତା'ପରେ ଉଭୟ ପକ୍ଷର Player ମାନେ ଆସି ଯେ ଯାର Position ନେଇ ଠିଆ ହେଲେ, ଉଭୟ ପକ୍ଷର Uniform ରେ ଭିନ୍ନ ପ୍ରକାର ଚିହ୍ନ, ପାଣ୍ଡବଙ୍କ ପକ୍ଷରେ କୃଷ୍ଣ ଥିବା ଯୋଗୁଁ ଚକ୍ର ଚିହ୍ନ, କୌରବଙ୍କ ପକ୍ଷରେ ହଳର ଚିହ୍ନ, କାରଣ କୃଷ୍ଣଙ୍କ ଭାଇ ବଳରାମ ଦୁର୍ଯ୍ୟୋଧନକୁ ଭଲ ପାଉଥିଲେ।

ଖେଳ ଆରମ୍ଭ ହେଲା।

Centre ହେଲା ପରେ ଦର୍ଶକମାନଙ୍କ ମଧ୍ୟରେ ଭୀଷଣ ଗଣ୍ଡଗୋଳ ହେଲା, କେତେବେଳେ କୌରବଙ୍କ ପକ୍ଷରୁ ପାଟି ଉଠୁଥାଏ-Go on କର୍ଣ୍ଣ, Man behind you, କର୍ଣ୍ଣ ଯେତେବେଳେ ball ନେଇ ଭୀମ ସାମନାରେ ପହଞ୍ଚି ଯାଉଥାଏ, କୌରବ ପକ୍ଷରୁ ଦୁର୍ଯ୍ୟୋଧନର ଭାଇମାନେ ପାଟି କରୁଥାନ୍ତି-Knock him down କିନ୍ତୁ ଭୀମ ଛାଡ଼ିଲା ବାଲା ନୁହେଁ-Kick କରି ଉଡ଼ାଇ ଥାଏ

ball କୁ, କୌରବ ପକ୍ଷର Forward ମାନେ ବେଶୀ ପଶି ପାରୁ ନ ଥାନ୍ତି ।

ପାଣ୍ଡବ ପକ୍ଷରୁ ମଧ୍ୟ ସେହିପରି ପାଟି ଉଠୁଥାଏ- Go on ଅର୍ଜ୍ଜୁନ, Up ଭୀମ, କୃଷ୍ଣ ଯେତେବେଳେ ଗୋଟାଏ ଗୋଟାଏ Ball Save କରୁଥାନ୍ତି, ପାଣ୍ଡବ ପକ୍ଷରୁ ପାଟି ଉଠୁଥାଏ- 'Nice', 'Nice', କିନ୍ତୁ ଏଣେ କୌରବଙ୍କ ପକ୍ଷରୁ ଯୁଧିଷ୍ଠିରଙ୍କୁ ଥଟ୍ଟା କରି କୁହା ହେଉଥାଏ- ଭୁଲିଗଲୁ ପଶା ଖେଳ କଥା, 'You blind referee, get out of the field', ଏବଂ କୃଷ୍ଣଙ୍କୁ ଥଟ୍ଟା ହେଉଥାଏ Down ଲବଣୀ ଚୋର, Down ଗଉଡ କିନ୍ତୁ ଅନ୍ଧ ଧୃତରାଷ୍ଟ୍ର ଆଖିରେ କିଛି ଦେଖି ପାରୁ ନ ଥାନ୍ତି, ଯେତେବେଳେ 'Go on', 'Go on' ପାଟି ହେଉଥାଏ, କୌରବଙ୍କ ଆଡ଼କୁ Ball ଯାଉଥିଲେ ମଧ୍ୟ ସେ 'Go on', 'Go on' ପାଟି କରୁଥାନ୍ତି, ସଞ୍ଜୟ ଏତିକି ବେଳେ ଧୃତରାଷ୍ଟ୍ରଙ୍କୁ ଟିକିଏ ଚିମୁଟି ଦେଇ ଇସାରା ଦେଉଥାଏ ଯେ-ଅଭିକା 'Go on' କହିବା ଉଚିତ୍ ନୁହେଁ, କାରଣ ଆମ ଆଡ଼େ Ball ଚପି ରହିଛି ।

ଖେଳ ଆରମ୍ଭ ହେବାର ୧୫ ମିନିଟ ପରେ ଭୀମର High Kickରେ Ball ଟା ଆକାଶକୁ ବାରମ୍ବାର ଉଠିବା ଦେଖି ଓ ଦର୍ଶକମାନଙ୍କ ମଧ୍ୟରେ ଭୀଷଣ ନୂଆ ରକମର ଗଣ୍ଡଗୋଳ ଶୁଣି ସ୍ୱର୍ଗରେ ଦେବରାଜ ଇନ୍ଦ୍ର ଭାବିଲେ-ଏପରି ଗୋଟାଏ ଗୋଲାକାର ପଦାର୍ଥ କ'ଣ ବାରମ୍ବାର ତାଙ୍କର ନଅର ଆଡ଼କୁ ଉଠି ଆସୁଛି, ଆଉ ତା ସଙ୍ଗେ ସଙ୍ଗେ ଏ କି ଭୀଷଣ କାନଫଟା ଶବ୍ଦ ଉଠୁଛି ।! କ'ଣ ହେଲା! ଏ କି ବିପଦ! ତାଙ୍କର ସିଂହାସନ ଟଳମଳ ହେବା ଉପରେ ସେ ଆଉ ସହି ପାରିଲେ ନାହିଁ, ବୃଷ୍ଟି ଆରମ୍ଭ କରିଦେଲେ, ତା ସଙ୍ଗେ ସଙ୍ଗେ ଘଡ଼ ଘଡ଼ି, ବିଜୁଳି, ପବନ, ମୁହଁକୁ ମୁହଁ ଦେଖାଗଲା ନାହିଁ କିନ୍ତୁ ଏଣେ ଉଭୟ ପକ୍ଷ ଖେଳରେ ଉନ୍ମାଦ, କାହାରି ଖେଳ ବନ୍ଦ କରିବାକୁ ଇଚ୍ଛା ନାହିଁ ।

ଶଚୀ ମଧ୍ୟ ଉପରେ ଇନ୍ଦ୍ରଙ୍କ ସହିତରେ ଦେଖୁଥିଲେ ଯେ Ladies Side ରେ ଯେତେ Female Match ଦେଖିବାକୁ ଆସିଛନ୍ତି, ସେମାନେ ଯୋତା ମାଡ଼ି, Snow, Powder, Essence ଲଗେଇ ହାତେ ହାତେ ଚଉଡ଼ା ଫୁଲପକା ଚକଚକିଆ ଧଡ଼ିବାଲା ଶାଢ଼ୀ ପିନ୍ଧି, ମୁଣ୍ଡରେ ଢେଉ ଖେଳିଲା ପରି ବାଳ କୁଣ୍ଡେଇ ଶଚୀଙ୍କ ଠାରୁ ଅଧିକ ସୁନ୍ଦରୀ ଦେଖା ଯାଉଛନ୍ତି, ଏ Lady ମାନଙ୍କ ଦିହରୁ Essence ର ସୁଗନ୍ଧ ବାହାରୁଛି । ଏ ଗନ୍ଧ ତାଙ୍କର ପାରିଜାତ ଫୁଲରେ ନାହିଁ, ପୁଣି ସେମାନେ ମଟର ଚଢ଼ି ଆସିଛନ୍ତି ଖେଳ ଦେଖିବାକୁ, ତାଙ୍କର ସେମିତିକା ଖଣ୍ଡେ ଗାଡ଼ି ନାହିଁ, ଇନ୍ଦ୍ର ମଧ୍ୟ ସେଇଆ ଭାବି ବୃଷ୍ଟି ଆହୁରି ବଢ଼େଇ ଦେଲେ Field ରେ Ball ଭାସିଲା ।

ଦୁର୍ଯ୍ୟୋଧନ Centre half ରେ ଖେଳି ଭାରି Fowl କରୁଥାଏ । କର୍ଣ୍ଣ ଅର୍ଜ୍ଜୁନର କେତେ ଥର ରଗାରଗି ହେଇଗଲା, ତେଣେ କୌରବ ପକ୍ଷ ମାରପିଟ କରିବା ଉପରେ ଉଦ୍ୟତ । ଭୀମର ଗୋଡ଼ରେ Sprain ହେଲା । ପାଣ୍ଡବଙ୍କ ପକ୍ଷରେ କୃଷ୍ଣ Goal Post ରେ ଚକ୍ର ଉଡ଼ାଳ କରିଥାନ୍ତି । କୌରବ ପକ୍ଷରୁ କେତେ Ball ଆସୁଥାଏ, ଗୋଟାଏ ବି Goal ହୋଇ ପାରୁ ନଥାଏ ।

ଧର୍ମମତି ଯୁଧିଷ୍ଠିର Referee ହୋଇ ଭାବିଲେ- ବରଂ କୌରବ ପକ୍ଷ ଜିତି ଯାନ୍ତୁ ଅଯଥା Foot Ball ଖେଳ ଲାଗି ଦୁଇ ପକ୍ଷରେ hostile feeling ର ଦରକାର ନାହିଁ । ପୁଣି ତାଙ୍କ ଉପରେ ମାଡ଼ର ଆଶଙ୍କା । ସେଇଥି ଯୋଗୁଁ ସେ ପାଣ୍ଡବଙ୍କ ଉପରେ ଅନେକ ଗୁଡ଼ାଏ Penalty kick, free kick, corner kick ଇତ୍ୟାଦି କରେଇଲେ ସୁଦ୍ଧା କୃଷ୍ଣଙ୍କ ଚକ୍ର ଉହାଡ଼ ଯୋଗୁଁ Goal ହେଇପାରୁ ନ ଥାଏ ।

ଏଣେ Ladies Side ପୁରନାରୀମାନଙ୍କର ଭାରି ଆତଙ୍କ ପଡ଼ିଗଲା । ଏ ବର୍ଷାରେ ପାଣି ମାଡ଼ ଖାଇ କୁଆଡ଼େ ଗଲା ତାଙ୍କର ସେ ରୂପ, ଶାଢ଼ୀର ଚାକଚିକ୍ୟ, କେଶର ଶୋଭା? ସ୍ୱାମୀମାନେ ଯେ ଯାର ଖେଳ ଦେଖିବାରେ ବ୍ୟସ୍ତ, କାହାରି ତାଙ୍କ କଥା ମନେ ପଡୁ ନାହିଁ । ପୁଣି ସେମାନଙ୍କ ରୂପ ବର୍ଷା ମାଡ଼ ଖାଇ ଏମିତି ହେଲାଣି ଯେ, ସେମାନଙ୍କୁ ଚିହ୍ନିବା କଷ୍ଟକର ସେଥିରେ ପୁଣି Ball Out ହେଇଗଲା ବେଳେ ତାଙ୍କ ଦେହରେ ଆସି ଦୁଲ୍‌ଦାଲ୍ ହେଇ ବାଜୁଥାଏ, ଉପରେ ଶଚୀ ଦେଖି

ଭାରି ଖୁସି ହେଉଥାନ୍ତି । ଶେଷରେ କେତେଜଣ Driverଙ୍କ ମନରେ ଦୟା ହେଲାରୁ ଖଣ୍ଡିଏ ଛତା ଆଣି ଛତା ତଳେ ନେଇ ମଟର ଭିତରେ ଗୋଟି ଗୋଟି କରି ଛାଡ଼ିଲେ । ଦ୍ରୌପଦୀ ଭାବିଲେ କାଳ କାଳକୁ ଆଉ Foot Ball ଖେଳର ନାଁ ଧରିବେ ନାହିଁ, ଆଉ Field କୁ କେବେ ଆସିବେ ନାହିଁ ।

ଶେଷରେ ଅର୍ଜୁନ ଗୋଟିଏ Score କଲେ, ପାଣ୍ଡବ ପକ୍ଷ ଜିତିଲେ, ଏତେ ବେଳକୁ ଭୁରିଶ୍ରବା ଆସି Fieldରେ ପହ*ଲେ, ସେ ଥିଲେ କୌରବ ପକ୍ଷର ଜଣେ Player କିନ୍ତୁ ତାଙ୍କର Uniform, Half pant ଇତ୍ୟାଦି ପିନ୍ଧି ସଜବାଜ ହୋଇ ଆସୁ ଆସୁ ଇଆଡ଼େ କାମ ଫତେ, ଶେଷରେ ପାଣ୍ଡବଙ୍କ ପକ୍ଷ ଜିତିସାରି Field ରୁ Hip, Hip, Hurray କରି ଫେରିଲେ ।

ବିଧୁର ସେ ପାଟିରେ ନିଦ ଭାଙ୍ଗିଗଲା । ଉଠି ଦେଖେ କେହି କୋଉଠି ନାହିଁ, ମୁଣ୍ଡ ଉପରେ ସେହିପରି ମହାଭାରତ ବନ୍ଦ ହୋଇ ପଡ଼ିଛି, ଭାବିଲା–ଏ ତା'ର ମହାଭାରତର Foot Ball ପର୍ବର ସ୍ୱପ୍ନ । ଏଥିରେ କୌରବ ପକ୍ଷ ବଳବାନ ଥାଇ ମଧ ହାରିଗଲେ, ସେ ଯେପରି Final Match ରେ ହାରି ଆସିଛି ।

# ଭୂମିକା

ମୋର ଜୀବିକା ହେଲା ଡାକ୍ତରୀ, ରୋଗ ଆଉ ରୋଗୀ ନେଇ କାରବାର। ଦୈନିକ ଦୁଃଖର ଘଟଣା ଛଡ଼ା ସୁଖର ଘଟଣା କମ୍ ଆଖିରେ ପଡ଼େ। ଏହା ଛଡ଼ା ନିଜର ଦୁଃଖମୟ ଜୀବନ। ସେଥିରେ କିଛି ଲେଖିବାର ଆଗ୍ରହ ଥିଲେ ମଧ, ଲେଖିହୁଏନା। ଲେଖିଲେ ମଧ ସେ ଲେଖା ଭଲ ହବ କୁଆଡୁ? ପୁଣି ଅବସର କାମ। ଯେତେବେଳେ ଅବସର ମିଳିଲା, ସେତେବେଳେ ମୁଣ୍ଡ ଭିତରେ ବାର ଜଞ୍ଜାଳରୁ ଗୋଟାଏ ସମାଧାନର ସହଜ ଉପାୟ ବାହାର କରିବା ପାଇଁ ଏକ ବିରାଟ ଫ୍ୟାକ୍ଟରି କାର୍ଯ୍ୟ କରୁଛି। ଶାନ୍ତିରେ ବସି କଲମ ଚଳେଇବା ବଡ଼ କଷ୍ଟକର। ଇମିତି ଅବସ୍ଥାରେ ଦିନେ ବନ୍ଧୁ ଫତୁରାନନ୍ଦଙ୍କୁ ଲେଖିଲି-ଆଉ ଲେଖି ପାରିବି ନାହିଁ, ଲେଖାଲେଖି ବନ୍ଦ କଲି।

ବନ୍ଧୁ ଉତ୍ତରରେ ଜଣେଇଲେ-ସିରିଂଜଦ୍ୱାରା ବଞ୍ଚିପାରିବ ନାହିଁ, କଲମଦ୍ୱାରା ବଞ୍ଚିବ, ଲେଖାଲେଖି ଛାଡ଼ିବ ନାହିଁ......

ବନ୍ଧୁ ଫତୁରାନନ୍ଦଙ୍କ କଥାରେ ପୁଣି ଲେଖିଲି, ବେଶି ଭାଗ ଗଳ୍ପ। ବନ୍ଧୁଙ୍କ ଆହୁରି ଉପଦେଶ ଥିଲା-ହାସ୍ୟରସାତ୍ମକ ଲେଖା ଲେଖିବି, ହାସ୍ୟରସାତ୍ମକ ଲେଖା ଛାଡ଼ିବି ନାହିଁ। ମାନିଲି।

ଗଳ୍ପଗୁଡ଼ିକ ସାମୟିକ ପତ୍ରିକାରେ-ଡଗର, ନବଜୀବନ, ଝଙ୍କାର, ଜୀବନରଙ୍ଗରେ କେତେକ ପ୍ରକାଶିତ ହେଲାପରେ, ତାକୁ ସବୁ ପତ୍ରିକାରୁ କାଟି ମୋର ଗଳ୍ପ ଫାଇଲରେ ସଜାଡ଼ି ରଖିଦିଏ। ଆଉ ବେଶି କିଛି କରି ପାରେନା; କାରଣ ଏ ସବୁ ଗଳ୍ପ ମଧ୍ୟରୁ କେତେଗୁଡ଼ିଏ ଏକାଠି କରି ପୁସ୍ତକାକାରରେ ପ୍ରକାଶ କରି ପାଠକ-ପାଠିକାମାନଙ୍କ ହାତରେ ଦବା ସହଜ ସାଧ ନୁହେଁ। ମୁଁ କେଉଁଠି? ପ୍ରକାଶକ କେଉଁଠି? ଗ୍ରାମାଞ୍ଚଳରେ ଚାକିରି, ସହର ବଜାରରେ ଥିଲେ କୌଣସି ପ୍ରକାଶକଙ୍କ ଦ୍ୱାରା ପ୍ରକାଶ କରାଇ ପାରନ୍ତି। ସେ ସୁବିଧା ମିଳୁଛି କାହିଁ? ଏଣୁ ମୋର ଗଳ୍ପଗୁଡ଼ିକ, ଗଳ୍ପ ଫାଇଲ ରୂପକ ଶୀତଳଭଣ୍ଡାରରେ ବେଶ୍ ଆରାମ ଥିଲେ। କିନ୍ତୁ ସେମାନଙ୍କ ମଧ୍ୟରୁ ଷୋଳଟି ଗଳ୍ପକୁ ବାହାର କଲେ-ଝିଅ ସିପ୍ରା, ପୁଅ ମିହିର।

ସେ ଷୋଳଟି ଗଳ୍ପକୁ ପୁସ୍ତକାକାରରେ ପ୍ରକାଶ କରି ଦେଶର ପାଠକପାଠିକାମାନଙ୍କ ହାତରେ ଦବା ପାଇଁ ସେମାନଙ୍କର ଭାରି ଆଗ୍ରହ।

ଉକ୍ତ ଗଳ୍ପ ସଙ୍କଳନର ପାଣ୍ଡୁଲିପି ପ୍ରସ୍ତୁତ କରି ତାକୁ ପୁସ୍ତକାକାରରେ ପ୍ରକାଶୋପଯୋଗୀ କରିବାରେ ସେମାନଙ୍କର ଉଦ୍ୟମ ଏକାନ୍ତ ପ୍ରଶଂସନୀୟ।

ସେହିମାନଙ୍କର ରୁଚି ଅନୁଯାୟୀ ଉକ୍ତ ଗଳ୍ପ ସଙ୍କଳନର ନାମ କରଣ ହେଲା- 'ବେଲିଆ'।

ବେଲିଆ ଦେଶର ପାଠକ-ପାଠିକାମାନଙ୍କୁ ଯଦି ଆନନ୍ଦ ଦାନ କରେ, ସେଥିରେ ମୋର ବିଶେଷ ଆନନ୍ଦ ଏବଂ ଶ୍ରମ ସାର୍ଥକ ବୋଲି ଜାଣିବି। ଇତି।

ଝାଁଳା

ତା ୫। ୫। ୧୯୬୮

ଲେଖକ

ଶ୍ରୀ ପୁଳିନ ବିହାରୀ ରାୟ

# ସୂଚୀପତ୍ର

# ଜୀବ ଓ ଜଡ଼

ଗାଁ'ର ଠାକୁରାଣୀ-ଚଣ୍ଡେଶ୍ୱରୀ, ଚଣ୍ଡେଶ୍ୱରୀଙ୍କ ଛୋଟ ମନ୍ଦିର, ରୋଷଘର, ଅଗଣା, ପାଚେରି, ତା' ଭିତରେ ନଡ଼ିଆଗଛ, ପଣସ ଗଛ, ଚମ୍ପା, ବଉଳ, ନାଗେଶ୍ୱର, ମନ୍ଦାର, କଦମ୍ବଗଛ ରହି ମନ୍ଦିରର ଶୋଭା ବର୍ଦ୍ଧନ କରିଥାଏ । ଗାଁ ଲୋକେ କେତେକ ବିପଦ ଆପଦରୁ ମୁକ୍ତି ପାଇବା ଲାଗି ଦେବୀଙ୍କ ନିକଟରେ ମାନସିକ କରନ୍ତି, ମନସ୍କାମନା ପୂର୍ଣ୍ଣ ହେଲେ, ଦେବୀଙ୍କ ନିକଟରେ ଭୋଗରାଗ କରନ୍ତି, ଶାଢ଼ି, ଗହଣା, କାନ୍ଥେଣି, ଫୁଲମାଳ, ଟଙ୍କା, ଯା'ର ଯାହା ଦେବାକୁ ଇଚ୍ଛା ଥାଏ, ଦିଅନ୍ତି ।

ସେଦିନ ଠାକୁରାଣୀଙ୍କ ରୋଷଘରେ ଖିରି, ଖେଚେଡ଼ି ମାଂସ ରାନ୍ଧଣା ଚାଲିଛି । ଜଣେ ଭକ୍ତଙ୍କର ମାନସିକ ପୂର୍ଣ୍ଣ ହେଲାରୁ, ସେ ଠାକୁରାଣୀଙ୍କ ନିକଟରେ ଭୋଗ କରିବା ପାଇଁ ରୋଷେଇ କରାଉଛନ୍ତି ।

ଭକ୍ତ ହେଲେ ଗାଁ'ର ନାମଜାଦା ମୁଖିଆଲୋକ ଜ୍ଞାନବାବୁ । ସେ ବିପତ୍ନୀକ ଥିଲେ । ଠାକୁରାଣୀଙ୍କ ନିକଟରେ ମାନସିକ କରିଥିଲେ-ତାଙ୍କୁ ଯଦି ଗୋଟିଏ କନ୍ୟା ମିଳିବ, ସେ ଦ୍ୱିତୀୟ ବିବାହ କରିବେ, ତା'ହେଲେ ଠାକୁରାଣୀଙ୍କୁ ଖିରି, ଖେଚେଡ଼ି ଭୋଗ ଦେବେ ଆଉ ଖଣ୍ଡେ କଳା ରଙ୍ଗ ଶାଢ଼ି ଦେବେ.... ।

ଏଇଥିଲାଗି ଠାକୁରାଣୀଙ୍କ ମନ୍ଦିରରେ ଭାରି ଗହଳି; ଜ୍ଞାନବାବୁ ସାଙ୍ଗସାଥୀ, ଜ୍ଞାତି କୁଟୁମ୍ବ ଅନେକ ଲୋକଙ୍କୁ ପ୍ରସାଦ ସେବନ ଲାଗି ନିମନ୍ତ୍ରଣ କରିଛନ୍ତି ।

ମନ୍ଦିର ଭିତରେ, ବାହାରେ ଲୋକଙ୍କର ଭାରି ଗହଳି, ପେଟ୍ରୋମାକ୍ସ ଜଳୁଛି, ଖେଚେଡ଼ି ବାସନା, ମାଂସ ବାସନାରେ ଚାରିଆଡ଼ ମହକୁଛି; ଦଳେ ଲୋକ ଠାକୁରାଣୀଙ୍କ ବେଢ଼ା ଭିତରେ ଭାଙ୍ଗ, ଗଞ୍ଜେଇ ଖାଇ ମୃଦଙ୍ଗ, ଝାଞ୍ଜ, ତନ୍ମୟ ହୋଇ ବଜାଉଛନ୍ତି, ଦଳେ ଗପ କରୁଛନ୍ତି, ଦଳେ ପଶା ଖେଳୁଛନ୍ତି; ଜ୍ଞାନ ବାବୁ ଖାଲି ପେଟ କାଢ଼ି ପିନ୍ଧିଥିବା ଲୁଗାର କୁଞ୍ଚକୁ ଓଲଟେଇ ନାହି କତିରେ ଖୋସି, ଗୁଣ୍ଡାପାନ ଚୋବେଇ ମୁରବ୍‌ବିଆନା ଢଙ୍ଗରେ ଥରେ ମନ୍ଦିର ଭିତରେ, ଥରେ ବାହାରେ କ'ଣ ହେଲା, ନହେଲା, କିଏ ଆସିଲା, କିଏ ନଆସିଲା, ରୋଷେଇ କେତେଦୂର ଗଲା, ବୁଝାବୁଝି କରି ବୁଲୁଛନ୍ତି ।

ଚଣ୍ଡେଶ୍ୱରୀଙ୍କ ମନ୍ଦିରର ସମ୍ମୁଖରେ ରାସ୍ତାର ଅପର ପାର୍ଶ୍ୱରେ କେତେଗୁଡ଼ିଏ ଧନୀ ଆଉ ଗରିବଲୋକଙ୍କର ଘର । ହଠାତ୍ ସେଇ ଆଡୁ ଗୋଟାଏ ଘରୁ ଚିତ୍କାର ଏବଂ କାନ୍ଦିବାର ଶବ୍ଦ ମିଶାମିଶି ହୋଇ ଶୁଣାଗଲା-ଦୌଡ଼ି ଆସ, ମୋତେ ମାରି ପକେଇଲା । ଏ ଚିତ୍କାର ଏବଂ କାନ୍ଦଣାର ଶବ୍ଦ ଶୁଣି ଚଣ୍ଡେଶ୍ୱରୀଙ୍କ ମନ୍ଦିର ଭିତରେ ଚାଲିଥିବା କୀର୍ତ୍ତନ, ପଶାଖେଳ ଏବଂ ଅନ୍ୟାନ୍ୟ ଗୋଳମାଳ ହଠାତ୍ ବନ୍ଦ ହୋଇଗଲା । ସମସ୍ତେ କାନ ଡେରିଲେ-କ'ଣ ଇମିତି ଗୋଟାଏ ଚିତ୍କାର ଏବଂ କାନ୍ଦଣାର ଶବ୍ଦ ଶୁଣା ଯାଉଛି ?

ଶେଷରେ ଚଣ୍ଡେଶ୍ୱରୀଙ୍କ ମନ୍ଦିରରୁ ଏବଂ କେତେକ ପଡ଼ୋଶୀ ଘରର ଲୋକେ ଦୌଡ଼ାଦୌଡ଼ି ହୋଇ ଯେଉଁ ଘରୁ ଶବ୍ଦ ଶୁଣା ଯାଉଥିଲା, ସେଠି ଯାଇ ପହଞ୍ଚି ଦେଖିଲେ-ଅଇଁଠା ସେଠୀ ତା'ର ସ୍ତ୍ରୀକୁ ମାରିବା ପାଇଁ ଗୋଟାଏ ପଥର ଉଞ୍ଚେଇଛି ଆଉ ଦୁଃଖରେ କାନ୍ଦି କାନ୍ଦି କହୁଛି-ମୋତେ କ'ଣ ଖାଇବାକୁ ଦେ, ନହେଲେ ଏ ପଥରରେ ତୋର ମୁଣ୍ଡକୁ ଛେଚି ମାରିଦେବି...

ଦର୍ଶକଙ୍କ ଆଡୁ ପ୍ରଶ୍ନ ଅଜାଡ଼ି ହୋଇ ପଡ଼ିଲା-ଅଇଁଠା ସେଠୀ କାହିଁକି ପଥର ଉଠେଇଲା ତା'ର ସ୍ତ୍ରୀର ମୁଣ୍ଡ ଛେଚି ମାରି ଦେବା ପାଇଁ । ଅଇଁଠା ସେଠୀର ସ୍ତ୍ରୀ କାନ୍ଦି କାନ୍ଦି କହିଲା-ଆଜିକି ତିନିଦିନ ହେଲା ସେ ଖାଇ ନାହିଁ, ମୋ ଉପରେ ରାଗି ମୋତେ ମାରିବାକୁ ପଥର ଉଞ୍ଚେଇଛି, ମୁଁ ମାଇପିଟାଏ, ଯା'ଯୁଆଡୁ ଆଣିଲି ପିଲାକୁ ଖୋଇ ବଞ୍ଚେଇଛି, ତାକୁ ଖୋଇବି କୁଆଡୁ ?

ଅଇଁଠା ସେଠୀ କୁଷ୍ଠରୋଗୀ, ଭିକ ମାଗେ, ଏବେ କେତେଦିନ ହେଲା ଆଉ କୁଆଡ଼େ ଯାଇପାରୁ ନ ଥିଲା ।

ଚଣ୍ଡେଶ୍ୱରୀଙ୍କ ମନ୍ଦିର ଆଡୁ ଯେତେ ଜଣ ଭକ୍ତ ଯାଇଥିଲେ ଦେଖିବାକୁ ଆଶ୍ୱାସନା ଦେଇ ଦୟା ପରବଶ ହୋଇ ଅଇଁଠା ଏବଂ ତା'ର ସ୍ତ୍ରୀକୁ କହି ଆସିଲେ-ଆଚ୍ଛା ହଉ ବ୍ୟସ୍ତ ହ'ନା, ଠାକୁରାଣୀଙ୍କ କତିରେ ମଉଛବ ହଉଛି, ଭୋଗ ହୋଇଗଲେ ତୋ' ଲାଗି ପ୍ରସାଦ ପଠେଇ ଦବୁ.... ।

ଅଇଁଠା ଥର ଥର ହୋଇ ହାତ ଯୋଡ଼ି କହିଲା-ବାବୁ ହଁସା ଉଡ଼ି ଯାଉଛି, ବାବୁ ଶୀଘ୍ର ମୁଠାଏ ପଠେଇବ ଯଦି ବଞ୍ଚିବି ନୋହିଲେ... ।

ଭକ୍ତବୃନ୍ଦ ଅଇଁଠା ଘରୁ ମନ୍ଦିରକୁ ଫେରି ଆସିବା ପରେ ଜଣେ କହିଲା-ଲୋକଟା କ'ଣ କହୁଛି ? କେଡ଼େ ତା'ର ସାହସ ! କହୁଛି-ମୁଠାଏ ଶୀଘ୍ର ପଠେଇବ, ଠାକୁରାଣୀଙ୍କ ଲାଗି ଭୋଗ ହେଇନି... ।

ଆଉ ଜଣେ ପ୍ରତ୍ୟୁତ୍ତରରେ କହିଲା-ତା'ର ହଁସା ଉଡ଼ି ଯାଉଛି, ସେ କ'ଣ ଭାବୁଛି-ଠାକୁରାଣୀଙ୍କ ଭୋଗ କଥା... ।

ଆଉ ଜଣେ ଭକ୍ତ କହିଲେ-ମଣିଷ ଜୀବନ ଆଗ ନା ଠାକୁରାଣୀ ଆଗ....

ଆଉ ଜଣେ ପ୍ରତ୍ୟୁତ୍ତର ଦେଲେ-ହଇହେ, କ'ଣ କହିଲ ? ଠାକୁରାଣୀ ଆଗ ନୁହନ୍ତି ? ଠାକୁରାଣୀଙ୍କ ପ୍ରତି ତୁମର ଭାରି ଭକ୍ତି ଦେଖୁଛି....... !

ଆଉ ଜଣେ କିଛି କହିବାକୁ ଯାଇ ଅଟକି ଯାଇ ମନେ ମନେ ଭାବିଲା-ଯେ ଖାଇବାକୁ ମାଗୁଛି, ତାକୁ ଖାଇବାକୁ ଦବା ଆଗ, ନା ଯେ ଖାଇବାକୁ ମାଗୁନି, ତାକୁ ଦବା ଆଗ ?

ଠାକୁରାଣୀ କ'ଣ ଖାଇବାକୁ ଖୋଜୁଛନ୍ତି-

ଜଣେ ଏହାର ପ୍ରତ୍ୟୁତ୍ତରରେ କହିଲେ-ସେ କଥା କେଉଁ ହେଇ ପାରିବନି । ଆଗେ ଠାକୁରାଣୀ ଖାଇଲେ, ପରେ ଯେ କେହି ଖାଇ ପାରିବେ । ଗୋଟାଏ ଲୋକ ଖାଇବା ବିନା ମରିଯିବ ବୋଲି ଆମେ ଠାକୁରାଣୀଙ୍କୁ ନଖୁଆଇ ତା'ଠି ଭୋଗ ଲଗେଇବୁ ।

ଅନ୍ୟାନ୍ୟ ଲୋକେ ଏ କଥାକୁ ସମର୍ଥନ କରି କହିଲେ-ଠିକ୍ କଥା କହିଛି, ଏ ହେଲା ଉଚିତ୍ କଥା...

ଆଉ ଜଣେ ଭକ୍ତ ଏ ପ୍ରସ୍ତାବ ଶୁଣି, ବାହାରେ କିଛି ପ୍ରକାଶ ନକରି ମନେ ମନେ ଭାବିଲେ-କି ଭୁଲ ଧାରଣା ! ମଣିଷ ଭିତରେ ଯେଉଁ ଠାକୁର ବସିଛନ୍ତି ସେ ତ ହେଲା ଅସଲ ଠାକୁର । ସେ ମୁହଁ ଖୋଲି କହୁଛି-ଭଲ ଖାଇବି, ଭଲ ପିନ୍ଧିବି, ଭଲ ଦେଖିବି, ଆଉ କିଛି ଦିନ ଏ ଦୁନିଆକୁ ଭୋଗ କରିବି । ସେ ମରିବାକୁ ଆଦୌ ଚାହୁଁନି, ତାକୁ ଖାଇବାକୁ ନଦେଇ, ଏ ପାଷାଣ ମୂର୍ତ୍ତି ଠାକୁରାଣୀଙ୍କ ପାଇଁ ଏତେ ଭୋଗର ଆଡ଼ମ୍ବର ! ! ଏ ଗୁରା ଭଲ କଥା ନୁହେଁ.....

ଏତକ କଥା ମନେ ମନେ ଭାବି, ପୁଣି ମନେ ମନେ ଉକ୍ତ ଭକ୍ତ ଭୟଭୀତ ହୋଇ ଚୁପ୍ ରହିଲେ, ଭାବିଲେ-ଭଲ ହେଇଛି, ବାହାରେ କିଛି କାହାକୁ ଏ ବିଷୟରେ କହି ନାହାନ୍ତି; କହିଥିଲେ, କେତେକ ତାଙ୍କୁ ନିନ୍ଦା କରି ଥାଆନ୍ତେ..... ଏ ଆଲୋଚନାରୁ ଦୂରରେ ରହି ଦୁଇ ଜଣ ଅତି ଗୁପ୍ତ ଭାବରେ ପରସ୍ପର ଆଲୋଚନା କଲେ-

ଜଣେ କହିଲା-ଦେଖୁଛ ଭାଇ, ଜୀବକୁ ଆହାର ମିଳୁନି, ସେ ଖାଇବା ବିନା ମରିବାକୁ ଯାଉଛି, ଆଉ ଜଡ଼ ପଥର ତିଆରି ଠାକୁରାଣୀ, ତା'ଲାଗି କେତେ ଆଡ଼ମ୍ବର !

ଅନ୍ୟ ଜଣକ ପ୍ରତ୍ୟୁତ୍ତରରେ କହିଲା-ଭାଇ ଜୀବ ମଲେ ଜଡ଼, ଜଡ଼ କିଏ ଆଉ ଜୀବ କିଏ ?

ଆଗ ଜଣକ ଏକଥା ଶୁଣି କହିଲା- ଭଲ କଥା କହିଲୁ । ଜୀବ ବଞ୍ଚିଥିଲା ଯାଏ ତ ଜଡ଼ ନୁହେଁ, ତା'ହେଲେ, ସେ ଯେତେବେଳେ ମାଗୁଛି ଖାଇବାକୁ, ନଖାଇଲେ ତା'ର ପ୍ରାଣ ଚାଲିଯିବ, ତାକୁ ନଦେଇ ଠାକୁରାଣୀଙ୍କୁ ଆଗ ଭୋଗ ଲଗେଇବ ? ମାନିଲେ ଦେବତା ନମାନିଲେ ପଥର....

ଏକଥା ଶୁଣି ଆର ଜଣକ କହିଲା-ଭାଇ ତୁ ଇମିତିଆ କଥାଗୁଡ଼ା କହୁଛୁ, ତୋର ନିଷେ କିଛି ଅମଙ୍ଗଳ ଘଟିବ, ଠାକୁରାଣୀଙ୍କୁ ତୁ ମାନୁ ନା ?....

ଅନ୍ୟ ଜଣକ କହିଲା-ଭାଇ ତୋର ମୋର ଏ କଥାବାର୍ତ୍ତା ହଉଛେ ନା, ତୁ ଏଗୁଡ଼ା ଆଉ କା' ଆଗରେ କହିବୁନି, ମୁଁ ଯା'ବୁଝିଛି ସେଇୟା କହି ପକେଇଲି....

ଏତିକିବେଳେ ଅଇଁଠା ସେଠୀ ଘରଆଡୁ ତା'ର ଭରିଯା ବାହୁନି ଉଠିବାର ଶୁଣାଗଲା-ସେଥିରୁ ବୁଝାଗଲା-ଅଇଁଠା ସେଠୀ ଆଉ ଏ ଦୁନିଆରେ ନାହିଁ। ତା'ର ଇହଲୀଳା ସାଙ୍ଗ ହେଇଛି, ମୁଠାଏ ସେ ଖାଇବାକୁ ମାଗିଲା, ଖାଇ ପାରିଲା ନାହିଁ। ବାବୁମାନେ କହିଗଲେ, ତାକୁ ମୁଠାଏ ଠାକୁରାଣୀଙ୍କ ପ୍ରସାଦରୁ ପଠେଇବେ, କାହିଁ ପଠେଇଲେ ନାହିଁ, ତା ସ୍ୱାମୀ ଉପାସ ଭୋକରେ ମଲା....

ଚଣ୍ଡେଶ୍ୱରୀଙ୍କ ମନ୍ଦିର ପ୍ରାଙ୍ଗଣ ଏବଂ ବାହାରେ ଭକ୍ତବୃନ୍ଦଙ୍କର ଯେଉଁ ଆଲୋଚନାଚକ୍ର ବସିଥିଲା-ଠାକୁରାଣୀଙ୍କୁ ଆଗେ ଭୋଗ ନଲଗେଇ, ଅଇଁଠା ସେଠୀକୁ କିମିତି ଖାଇବାକୁ ଦିଆଯିବ? ତା'ର ସମାପ୍ତି ହେଲା। ସମସ୍ତେ ବୁଝିଲେ-ଅଇଁଠା ସେଠୀ ଆଉ ନାହିଁ। ସେ ପରଲୋକଗତ, ପରମାତ୍ମାଙ୍କ ସହିତ ମିଶିଯାଇଛି.....

ଏ ଘଟଣାରେ କେତେକ ମନେ ମନେ ଅନ୍ୟକୁ ଦୋଷାରୋପ କରି ଚୁପ୍ ରହିଲେ, କିଛି କହି ପାରିଲେ ନାହିଁ। ଅନ୍ୟ କେତେକ ମତ ଦେଲେ-ଆଉ ବିଳମ୍ବ ନକରି ଠାକୁରାଣୀଙ୍କୁ ଭୋଗ ଲଗାଇ, ଅଇଁଠା ସେଠୀ ଉଦ୍ଦେଶ୍ୟରେ ଗୋଟାଏ ପତରରେ ସବୁ ରକମର ପ୍ରସାଦରୁ କିଛି କିଛି ବାଢ଼ି ଦୂରରେ ଥୋଇ ଦେଇ ପାଣି ମନ୍ଦାଏ ଢାଳି ଦେଇ ଆସି ଖାଇ ବସିଲେ ହବ। ଲୋକଟାର ଖାଇବାର ଆଶା ଥିଲା, ସେଇଆ କର।..

ସେଇଆ କରାଗଲା, ଭକ୍ତ ଜୀବବୃନ୍ଦ ପ୍ରସାଦ ସେବନରେ ଲାଗି ପଡ଼ିଲେ।

# କାଲୁ ପ୍ରସଙ୍ଗ

ଦେବରାଜ ଆୟୁର୍ବେଦାଚାର୍ଯ୍ୟ ନାମଯାଦା କବିରାଜ। ସ୍ତ୍ରୀ ଆଇ.ଏ.ପାଶକରା ଗୃହିଣୀ, ଗୋଟିଏ ମାତ୍ର ପୁଅ, ନାଁ- ହରିହର। କବିରାଜଙ୍କ ଔଷଧାଳୟ, ନାଁ- "ଧନ୍ୱନ୍ତରୀ ଔଷଧାଳୟ"।

ଔଷଧାଳୟର ଚାରିଆଡ଼େ ପାଚେରି। ଔଷଧାଳୟର ବେଶ ବଡ଼ ପ୍ରାଙ୍ଗଣ, ସେହି ପ୍ରାଙ୍ଗଣ ଭିତରେ କବିରାଜଙ୍କର ରହିବା ଘର। ଔଷଧାଳୟର ବଡ଼ ଫାଟକ। କବିରାଜ ସେଇ ଔଷଧାଳୟ ଭିତରେ ସସ୍ତ୍ରୀକ ରହନ୍ତି। ଔଷଧାଳୟର ପ୍ରାଙ୍ଗଣ ଭିତରେ ନଡ଼ିଆ ଗଛ, ଆମ୍ବ, ପଣସ, କଦଳୀଗଛ, ଫୁଲଗଛ ଇତ୍ୟାଦି ଥିବା ଦ୍ୱାରା ବାହାରକୁ ଔଷଧାଳୟଟି ବେଶ୍ ସୁନ୍ଦର ଦେଖାଯାଏ।

ଔଷଧାଳୟର ଅଳ୍ପ ଦୂରରେ ରାଜବାଟୀ, ଆଚାର୍ଯ୍ୟେ ରାଜବାଟୀର ମଧ୍ୟ କବିରାଜ। ରାଜପରିବାରର ମଧ୍ୟ ଚିକିତ୍ସକ।

ଅନେକ ଦୂର ଦୂରାନ୍ତରୁ ରୋଗୀମାନେ କବିରାଜଙ୍କ ନିକଟକୁ ଚିକିତ୍ସିତ ହେବା ପାଇଁ ଆସନ୍ତି। ପୁଣି ଦୂର ଦୂରାନ୍ତକୁ ରୋଗୀର ଚିକିତ୍ସା ପାଇଁ କବିରାଜ ମଧ୍ୟ ଯା'ନ୍ତି। ଦୂର ଗାଁ ହେଲେ ଶଗଡ଼ରେ, ନିକଟ ଗାଁ ହେଲେ, ପଦବ୍ରଜରେ ଯାଇ ରୋଗୀ ଚିକିତ୍ସା କରନ୍ତି।

ଔଷଧାଳୟର କର୍ମଚାରୀ ମଧ୍ୟରେ ଜଣେ ଔଷଧ ତିଆରି କରିବା ପାଇଁ, ଜଣେ ଔଷଧ ରୋଗୀଙ୍କୁ ବାଣ୍ଟିବା ପାଇଁ, ତା'ଛଡ଼ା ଜଣେ ବେହେରା ଜଣେ ମେହେନ୍ତର।

ଦିନେ ଦି'ପହରେ କବିରାଜେ ଘରେ ଅଛନ୍ତି, ପୁଅ ହରିହର ଜିଦ୍ କଲା ଗୋଟିଏ କୁକୁରଛୁଆ ରଖିବା ପାଇଁ।

କବିରାଜେ ବିରକ୍ତ ହେଲେ କୁକୁରଛୁଆ ରଖିବା ପାଇଁ, ସବୁ ଛୁଆଁଛୁତି କରିବ, ଅପରିଷ୍କାର କରିବ। ଘରର ପବିତ୍ରତା ନଷ୍ଟ ହୋଇଯିବ।

ପୁଅର ଏକ ଜିଦ୍-ନା କୁକୁରଛୁଆ ରହିବ।

କବିରାଜେ ଦାଣ୍ଡକୁ ଆସି ଦେଖନ୍ତି, ଗୋଟିଏ ପିଲା କୁକୁରଛୁଆଟିଏ ଆଣିଛି, କବିରାଜଙ୍କ ପୁଅ ସେ କୁକୁରଛୁଆକୁ ଦେଖି ଜିଦ୍ ଧରିଛି-ସେ କୁକୁରଛୁଆ ରଖିବ।

କବିରାଜେ ଯେତେ ବିରକ୍ତ ହେଲେ, ଯେତେ ନାହିଁ କଲେ ମଧ୍ୟ ପୁଅର ଜିଦ୍ ଅନୁଯାୟୀ କୁକୁରଛୁଆର ମୂଲ୍ୟ ବାବଦକୁ ଯୋଡ଼ିଏ ପଇସା ଦେଇ କୁକୁରଛୁଆ ରଖାହେଲା।

କୁକୁରଛୁଆ ଦେଖିବାକୁ ତ୍ରିପଣ୍ଡ କଳା, ଭାକୁଡ଼ିଆ ହୋଇ ବେଶ୍ ସୁନ୍ଦର ଦେଖିବାକୁ।

କବିରାଜେ ଆଗେ ନଜର କଲେ-କୁକୁରଛୁଆଟି ସ୍ତ୍ରୀଲିଙ୍ଗ କି ପୁଲିଙ୍ଗ? କୁକୁର ଛୁଆଟି ସ୍ତ୍ରୀଲିଙ୍ଗର ଜାଣିପାରି କବିରାଜେ ବିରକ୍ତ ହୋଇ କହିଲେ, ଏଟା ମାଈଟାଏ। ଗୁରାଏ ଛୁଆ ଜନ୍ମ କରିବ, ଅଣ୍ଡିରାଟିଏ ହୋଇଥିଲେ ଭଲ ହୋଇଥାନ୍ତା....

କୁକୁରଛୁଆ ରହିଲା, ବାହାର ଘରେ ଖଣ୍ଡେ ଅଖା ଉପରେ ଶୁଏ। ହରିହର ଉପରେ ତା'ର ଲାଳନ ପାଳନର ଭାର, ହରିହରକୁ ତର ନାହିଁ। ସବୁବେଳେ କୁକୁରଛୁଆ ନେଇ ବ୍ୟସ୍ତ।

କୁକୁରଛୁଆ ଶୈଶବ ଅତିକ୍ରମ କଲାପରେ ହରିହରର ପଛେ ପଛେ ଗୋଡ଼ାଏ, ଖେଳେ, ବେଳେବେଳେ ସ୍ନେହସୂଚକ କଣ୍ଠରେ ଭୁକେ।

ବେଳେ ବେଳେ କବିରାଜଙ୍କ ପଛରେ ଗୋଡ଼େଇ ଗୋଡ଼େଇ ଔଷଧାଳୟକୁ ଯାଏ, ପୁଣି ହରିହର ଡାକିଲେ ହରିହର ପାଖକୁ କୁଦାମାରି ପଳେଇ ଆସେ।

ଏଣେତେଣେ ଦୌଡ଼ାଦୌଡ଼ି କରେ, ଆପେ ଆପେ ଖେଳେ, ପୁଣି ଡାକିଲେ ହରିହର ପାଖକୁ ଆସେ, ମିଛେ ମିଛେ ହରିହର ଗୋଡ଼କୁ କାମୁଡ଼ିଲା ପରି ଧରେ, ପୁଣି ଛାଡ଼ି ପଳାଏ।

କୁକୁରଛୁଆଟି ନିଜର ସାବଲୀଳ ଅଙ୍ଗଭଙ୍ଗୀ, ଖେଳ କୌତୁକରେ ଘରର ସମସ୍ତଙ୍କର ଶ୍ରଦ୍ଧାର ପାତ୍ର ହୋଇ ଉଠିଲା, ଆଚାର୍ଯ୍ୟେ ମଧ ଭାରି ଶ୍ରଦ୍ଧା କଲେ । ଶ୍ରଦ୍ଧାରେ ତାକୁ 'କାଲୁ' ବୋଲି ଡାକିଲେ । 'କାଲୁ' ନାମକରଣର ଉଦ୍ଦେଶ୍ୟ ହେଲା-ତାର ରଙ୍ଗ ତ୍ରିପଣ୍ଡ କଳା ।

କିଛିଦିନ ପରେ କାଲୁ ଶୈଶବ, ବାଲ୍ୟାବସ୍ଥା ଅତିକ୍ରମ କରି ଯୌବନରେ ପଦାର୍ପଣ କଲା । କାଲୁର ପିଲାଦିନର ଆଉ ସେ ରୂପ ନାହିଁ, ସେ ଖେଳ ନାହିଁ, ତା'ର ଚାଲିଚଳନ, ଅଙ୍ଗଭଙ୍ଗୀ, ରୂପ ସବୁ ଭିନ୍ନ ପ୍ରକାର । ଘରେ କାଉ ଗୋଟାଏ ପୂରେଇ ଦେଲାନି ।

ସୁନ୍ଦର କଳା ମଚମଚ ଚିକ୍‌କଣ ଦେହକୁ କାଚଗୁଳି ପରି ଦି'ଟା ଆଖି, ଯାହାକୁ ଅନେଇ ଦେବ, ତା'ଗ୍ରୁମ ଟାଙ୍କୁରି ଉଠିବ । କାଲୁ ଭୟରେ ମଣିଷ ଔଷଧାଳୟର ହତା ଭିତରେ ପଶିବାକୁ ଭୟ କଲେ ।

ସମୟ ଆସିଲା-ଫୁଲରଙ୍ଗ ଦେଖି ଭ୍ରମର ଆସିଲା ପରି, କାଲୁର ଯୌବନ-କୁସୁମର ଗନ୍ଧରେ ଆସିଲେ ଦଳେ ଦଳେ ପ୍ରତିବେଶୀ ପୁଂଲିଙ୍ଗର କୁକୁର-ଭ୍ରମର । କେହି ଆସି ଦୂରରୁ ଭୁକିଲେ, ପଛଗୋଡ଼ ଦି'ଟାରେ ମାଟି ଆମ୍ପୁଡ଼ି କାଲୁ ଉଦ୍ଦେଶ୍ୟରେ ଏକ ପ୍ରକାର ଶବ୍ଦ କଲେ ।

କାଲୁ ମଧ ସ୍ୱୟଂବର ସଭାକୁ ରାଜକନ୍ୟା ଗଲା ଭଳି ଥରେ ଯାଇ କାହାକୁ ସ୍ୱାମୀତ୍ୱରେ ବରଣ କରିବ ମନେ ମନେ ଭାବି ପୁଂଲିଙ୍ଗ କୁକୁରଙ୍କ ସଭା ମଝିରେ ଥରେ ଦି'ଥର ଘୁରି ଦେଇ ପୁଣି ଆସି ଘରେ ଲୁଚି ବସେ । କାଲୁର ସ୍ୱୟଂବର ସଭାରେ ରାଜପୁତ୍ରଙ୍କ ଭଳି କୁକୁରମାନଙ୍କୁ ଔଷଧାଳୟର ହତା ଭିତରେ ଉପସ୍ଥିତ ହେବାର ଦେଖି, ଆଚାର୍ଯ୍ୟେ ନିଜର ସ୍ତ୍ରୀକୁ ଡାକି କହନ୍ତି-ଦେଖୁଛ ପଦ୍ମା, କାଲୁର ସ୍ୱୟଂବର ସଭା ଏଥର ଆରମ୍ଭ ହେଲା, କେତେ ରାଜପୁତ୍ର ଆସିଲେଣି ଦେଖୁଛ...

ପୁଣି କାଲୁ ସମାଗତ ଭେଣ୍ଡିଆ କୁକୁରଙ୍କ ମେଳରେ ଦି'ଚାରିଥର ଘୂରି ଆସି ଘରେ ଲୁଚି ବସିବାର ଦେଖି ଆଚାର୍ଯ୍ୟେ କାଲୁକୁ ମଧ କହନ୍ତି- କ'ଣ ଯାଉନୁ ବାହାରକୁ, ଘରେ ଆସି ବସିଲୁ ଯେ ? କ'ଣ କେହି ପସନ୍ଦ ହଉନାହିଁ ?

କାଲୁ ଯେତେ ସମୟ ଘରେ ଲୁଚି ବସେ, ବାହାରେ ସମାଗତ କୁକୁରଙ୍କ ମଧରେ ହୁଏ ଗଣ୍ଡଗୋଳ, କାମୁଡ଼ା କାମୁଡ଼ି ହୋଇ ଗଡ଼ାତଡ଼ା ହୋଇଯାନ୍ତି । ପୁଣି କେତେକ ଭୋ ଭୋ ହୋଇ କାନ୍ଦିଲା ସ୍ୱରରେ ଡାକ ପକାନ୍ତି, କିନ୍ତୁ ଘର ଭିତରେ କାଲୁ ନୀରବରେ ବସିଥାଏ ।

ଏମିତି ସ୍ୱୟଂବର ସଭା ପ୍ରତିଦିନ ଚାଲିଲା । ଦୈନିକ ନୂଆ ଧରଣର କୁକୁର ଆସିଲେ, କାଲୁର କାହାରିକୁ ପସନ୍ଦ ହେଲାନି । ଦିନେ ରାଜବାଟୀରୁ ରାଜାଙ୍କର କୁକୁର କିମିତି ଖସିଆସି ସ୍ୱୟଂବର ସଭାରେ ଉପସ୍ଥିତ ହେଲେ ।

ରାଜାଙ୍କର କୁକୁର ଦାମିକା, ବିଲାତି, ରଙ୍ଗ ଗେରୁଆ, ଚାଖଣ୍ଡେ ବହଳରେ ଲୋମ ଦେହରେ । ଇଂରାଜୀ କଥା ବୁଝିପାରେ । ଦେଖିବାକୁ ଗୋଟାଏ ଭାଲୁପରି । ତା'ର ଅଙ୍ଗଭଙ୍ଗୀ, ଚାଲିଚଳଣ, ଚାହାଣୀ, ଗାମ୍ଭୀର୍ଯ୍ୟ ସବୁ ବିଦେଶୀ ଢାଞ୍ଚାରେ ବିଲାତ ଫେରତ୍ ଭଳି ।

ଆଚାର୍ଯ୍ୟେ ତାଙ୍କ ଔଷଧାଳୟ ହତା ଭିତରକୁ କାଲୁର ପ୍ରଣୟପ୍ରାର୍ଥୀ ହୋଇ ରାଜାଙ୍କର କୁକୁରର ଶୁଭାଗମନ ଦେଖି ନିଜ ସ୍ତ୍ରୀକୁ ଡାକି କହିଲେ-ଦେଖୁଛ ପଦ୍ମା, ମୋ ଦୁଆରେ ଆଜି ରାଜାଙ୍କର କୁକୁର ଉପସ୍ଥିତ । ରାଜା ମୋ ଦୁଆରକୁ ନଆସନ୍ତୁ । ତାଙ୍କର ବାହନତ ମୋ ଦୁଆରକୁ ଆସିଲା । ଏ କାହାପାଇଁ ? କାଲୁର ଯୌବନ ପାଇଁ । ଯୌବନ କ'ଣ ନ କରିପାରେ ? ଇମିତି କେତେ ରାଜପୁତ୍ର ଗରିବ ଘରର ସୁନ୍ଦରୀ ଯୁବତୀ କନ୍ୟାର ପ୍ରଣୟପ୍ରାର୍ଥୀ ହୋଇ କେତେ କୁଡ଼ିଆର ଦ୍ୱାରସ୍ଥ ହୋଇଛନ୍ତି । ନିଅ, ଏଥର ବିଲାତ ଫେରତ୍ ଜ୍ୱାଇଁକୁ ସମ୍ଭାଳ....

ରାଜାଙ୍କର କୁକୁରର ରୂପ ଲାବଣ୍ୟ ବ୍ୟକ୍ତିତ୍ୱ, ଆକୃତି ନିକଟରେ କାଲୁ କିଛି ନୁହେଁ । ସେ କୁକୁର ନିକଟରେ କାଲୁ ଗୋଟିଏ ପିଲା ପରି ।

ରାଜାଙ୍କର କୁକୁରର ଆବିର୍ଭାବ ଦେଖି, ପ୍ରତିବେଶୀ ଅନ୍ୟାନ୍ୟ କୁକୁରମାନେ ଭୟଭୀତ ହୋଇ ସ୍ୱୟମ୍ବର ସଭା ଛାଡ଼ି ଗୋଟିଏ ଗୋଟିଏ ଖସି ପଳାନ୍ତି ।

ରାଜାଙ୍କର କୁକୁରକୁ ନିରୋଳାରେ ଦେଖି କିଛି ବାଟ ଟାରି ଆଡ଼କୁ ଯାଏ । ରାଜାଙ୍କର କୁକୁର କାଲୁକୁ

ଦେଖି କାଲୁ ଆଡ଼କୁ କିଛିବାଟ ଉହୁଁକି ଆସିଲେ, କାଲୁ ଭୟରେ ପଳେଇ ଆସେ। ଦୂରରୁ ଉଭୟେ ବିଦ୍ୟାସୁନ୍ଦର ଭଳି ଚାହାଁଚାହିଁ ହୁଅନ୍ତି; କିନ୍ତୁ କେହି କତିକି ଯାଆନ୍ତି ନାହିଁ।

ରାଜାଙ୍କର କୁକୁର ବିଲାତି ସ୍ୱରରେ ଦି'ଚାରିଥର ଭୁକେ, କାଲୁ ଦେଶୀ ସ୍ୱରରେ କ'ଣ ଜଣାଏ, ରାଜାଙ୍କର କୁକୁର ଚାହିଁଚାହିଁ ବସି ଫେରିଯାଏ। ରାଜାଙ୍କର କୁକୁର ଗଲା ପରେ ପୁଣି ଦେଶୀ କୁକୁରଙ୍କର ଆଡ୍ଡା ଜମେ।

ରାଜାଙ୍କର କୁକୁର ନିରାଶ ହୋଇ ଫେରିଯିବାର ଦେଖି, କାଲୁକୁ ଲକ୍ଷ୍ୟ କରି ଆଚାର୍ଯ୍ୟେ କହନ୍ତି-କ'ଣ? ରାଜାଙ୍କର କୁକୁର ପସନ୍ଦ ହେଲାନି? ଆଉ କିମିତିଆ କୁକୁର ଆସିଲେ ତୋର ମନକୁ ଆସିବ? ହଉ, କ'ଣ କରୁଛୁ କର। ରାଜାଙ୍କର କୁକୁରକୁ ନିରାଶ କରି ଫେରାଇଲୁ। ଆଉ ସେମିତି ପାତ୍ର ପାଇବୁ?

ଆଚାର୍ଯ୍ୟେ ପୁଣି କାଲୁ ଉପରେ ବିରକ୍ତ ହୋଇ କହନ୍ତି-ଆଉ ନିଜେ ଯଦି ସେମିତି ସୁନ୍ଦରୀଟାଏ ହୋଇଥାନ୍ତୁ। ନିଜେ ତ କଳା କୁତୀ, ପୁଣି ରାଜାଙ୍କର କୁକୁର ପସନ୍ଦ ହେଉନାହିଁ? ମାରନ୍ତି ଗୋଟାଏ ଗୋଇଠା ଯେ...

ପୁଣି ସେହି ପୂର୍ବପରି ଔଷଧାଳୟ ହତା ଭିତରେ କୁକୁରଙ୍କ ଗଣ୍ଡଗୋଳ-ଭୁକିବା, କାନ୍ଦିବା, କାମୁଡ଼ା କାମୁଡ଼ି....

କାଲୁର ସେମିତି ମିଛରେ ସମସ୍ତଙ୍କୁ ଆଶାଦେଇ ଭଣ୍ଡିବା, ଥରେ ଦି'ଥରେ ଯାଇ ଭେଣ୍ଡିଆ କୁକୁରଙ୍କ ମେଳରେ ଘୂରାଘୂରି କରି ଲସରପସର ହେଇ ପୁଣି ଘରେ ଆସି ଘର ଭିତରେ ଚୁପ୍‌ରେ ବସି ରହିବା।

କାଲୁର ଇମିତି ମିଛରେ ଅନ୍ୟାନ୍ୟ କୁକୁରଙ୍କୁ ଆଶା ଦେଇ ନଚେଇବା ଦେଖି ଆଚାର୍ଯ୍ୟେ ନିଜର ସ୍ତ୍ରୀକୁ ଡାକି କହନ୍ତି-ଦେଖୁଛ, କାଲୁ କିମିତି ମିଛରେ କୁକୁରଗୁଡ଼ାଙ୍କୁ ଆଶା ଦେଇ ନଚଉଛି। ତୁମମାନଙ୍କର ନାରୀ ପ୍ରକୃତି ଇମିତି। ମିଛରେ ପୁରୁଷଗୁଡ଼ାଙ୍କୁ ଆଶା ଦେଇ ନଚେଇବା ଛଡ଼ା ଆଉ କିଛି ନୁହେଁ। ଜଣକୁ ମନେ ମନେ ବରଣି କରି ଆଉ ଦଶଜଣଙ୍କୁ ଭଣ୍ଡିବା...

ଆଚାର୍ଯ୍ୟଙ୍କ ସ୍ତ୍ରୀ ପ୍ରତ୍ୟୁତ୍ତରରେ କହନ୍ତି-ତୁମେ ପୁରୁଷଗୁଡ଼ାକ ଭାରି ଭଲ। ଆଗରୁ ପରା କଥାରେ ଅଛି- ପୁରୁଷ ଭ୍ରମର ଜାତି, ଜଣକୁ ଗ୍ରହଣ କରି ଦଶଟା ଜୀବନ ନଷ୍ଟ କରିବା, ତୁମେମାନେ ଭାରି ଭଲ ଜାତି?

ଦିନେ ଅନ୍ୟାନ୍ୟ କୁକୁରଙ୍କ ସଭା ମଧ୍ୟରେ ରାଜାଙ୍କର କୁକୁରଙ୍କର ଆବିର୍ଭାବକୁ ଆଉ ଗୋଟାଏ ନୂଆ ଜବରଦସ୍ତ କୁକୁରର ଆବିର୍ଭାବ ହେଲା। ସେ କୁକୁର ଆଉ ରାଜାଙ୍କର କୁକୁରକୁ ଦେଖିଲେ ମନେହେବ-କର୍ଣ୍ଣକୁ ଅର୍ଜୁନ, ଭୀମକୁ ଦୁର୍ଯ୍ୟୋଧନ, ବିଦେଶୀ ବୀର ନିକଟରେ ଭାରତୀୟ ବୀର କିମ୍ୱା କୋଦମା ସିଂକୁ ବାହୁ ବଳେନ୍ଦ୍ର, ଦକ୍ଷିଣ କବାଟକୁ ଉତ୍ତର କବାଟ...

କେହି କାହାକୁ ଊଣା ନୁହନ୍ତି। ରାଜାଙ୍କର କୁକୁରର ବିଦେଶୀ ଢାଞ୍ଚାର ଗଠନକୁ ନବାଗତ କୁକୁରର ଦେଶୀ ଗଠନ କେଉଁ ଗୁଣରେ ଊଣା ନୁହେଁ। ଯେମିତି ଠିଆ ହେବାର ଭଙ୍ଗୀ, ଆଖି ଦି'ଟାରେ ଯେମିତି ନିଆଁ ଜଳୁଛି, ଯେମିତି ଉଚ୍ଚା ସେମିତି ଟାଙ୍କ, ପନ୍‌ଝା, ଲାଞ୍ଜ, ସବୁ ଠିକ୍ ଅଛି।

ଆଚାର୍ଯ୍ୟେ ନବାଗତ କୁକୁରକୁ ଦେଖି ଔଷଧାଳୟର ମେହେନ୍ତରକୁ ପଚାରିଲେ-ବାସୁଆ, ଏ କୁକୁରଟା କାହାର? ଭାରି ବଳୁଆ ଜଣା ଯାଉଛି। ବଡ଼ ସୁନ୍ଦର ହେଇଛି...

ବାସୁଆ ସଗର୍ବରେ ଉତ୍ତର ଦେଲା-ଆଜ୍ଞା, ମୋର...

ଆଚାର୍ଯ୍ୟେ-ଏ ତୋ' କୁକୁର? ମୁଁ ତ ଏକୁ କେବେ ଦେଖି ନଥିଲି କେବେ ତ ଏ ତୋ ସାଙ୍ଗରେ ଆସି ନାହିଁ.....

ବାସୁଆ-ନାହିଁ ଆଜ୍ଞା, ଆଜି କେମିତି ଚାଲି ଆସିଛି.....

ଆଚାର୍ଯ୍ୟେ-କେଡ଼େ ବଡ଼ ହେଇଛି ଏ!! ଯା ନାଁ କ'ଣ ଦେଇଛୁ?

ବାସୁଆ- "ଟିପୁ" ବୋଲି ଡାକେ...

ଆଚାର୍ଯ୍ୟେ ମନେ ମନେ ଶଙ୍କିତ ହେଲେ। ଯଦି କାଲୁ ଏ କୁକୁରକୁ ପସନ୍ଦ କଲା, ତା'ହେଲେ ତ ଲଜ୍ଜାରେ

ମରିଯିବାର କଥା, ସେ କବିରାଜ, ବାସୁଆ ମେହେନ୍ତର। ତାଙ୍କର କୁକୁର ମେହେନ୍ତରର କୁକୁରକୁ ସ୍ୱାମୀତ୍ୱରେ ବରଣ କରିବ? କି ଲଜ୍ଜାର କଥା!!

ରାଜାଙ୍କର କୁକୁର ଆଉ ଟିପୁ ଉଭୟଙ୍କର ସ୍ୱୟମ୍ବର ସଭାରେ ଉପସ୍ଥିତ ହେବାର ଦେଖି ଅନ୍ୟାନ୍ୟ ଦୁର୍ବଳ ନେଙ୍ଗି କୁକୁର ସବୁ ଗୋଟିଏ ଗୋଟିଏ ଖସିବାକୁ ଆରମ୍ଭ କଲେ। ସ୍ୱୟମ୍ବର ସଭାରେ କେବଳ ଟିପୁ ଆଉ ରାଜାଙ୍କର କୁକୁର। ତେଣେ କାଲୁ ନବାଗତ ଟିପୁକୁ ଦେଖି ଦି'ଚାରିଥର ଅଛ ଦୂରରେ ଦେଖେଇ ହେଲାଭଳି ଚକ୍କର୍ ମାରି ବସି ରହିଲା। ଟିପୁ ମଧ୍ୟ କାଲୁକୁ ଦେଖି ପଛଗୋଡ଼ ଦି'ଟାରେ ମାଟି ଆମ୍ପୁଡ଼ି କାଲୁ ଉଦ୍ଦେଶ୍ୟରେ ତିନି ଚାରିଥର ଖଣ୍ଡିଖାଣ ମାଇଲା ଭଳି ଶବ୍ଦ କଲା।

ଟିପୁର ଇମିତିଆ ଆସ୍ପର୍ଦ୍ଧା, ଔଦ୍ଧତ୍ୟ, ଅହମିକା ଦେଖି ରାଜାଙ୍କର କୁକୁର କ୍ରୋଧାନ୍ଧ ହୋଇ ଗର୍ଜିବାକୁ ଆରମ୍ଭ କଲା। ଟିପୁ ମଧ୍ୟ ଗର୍ଜିବାକୁ ଆରମ୍ଭ କଲା। ଉଭୟେ ମୁହାଁମୁହିଁ ହେଲେ, କତିକି କତି ଲାଗି ଆସି ପରସ୍ପର ଉପରକୁ କୁଦାମାରି କାମୁଡ଼ା କାମୁଡ଼ି ହେଇ ଗଡ଼ାଗଡ଼ା ହେଲେ।

ଆଚାର୍ଯ୍ୟେ ଏ ଦୁଇଟା କୁକୁରର ଯୁଦ୍ଧ ହେବାର ଦେଖି ବାସୁଆକୁ ଡାକି କହିଲେ-ବାସୁଆ, ମାର ତାଙ୍କୁ, ନାହିଁତ ତୋ କୁକୁରକୁ ରାଜାଙ୍କର କୁକୁର କାମୁଡ଼ି ମାରିଦେବ....

ବାସୁଆ-ନାହିଁ ଆଜ୍ଞା, ଦେଖନ୍ତୁ ମୋ କୁକୁର ହଟିବାର ନୁହେଁ। ଆପଣ ଭାବିଛନ୍ତି-ରାଜାଙ୍କର କୁକୁର ମାଂସ ଭାତ ଖାଉଛି ବୋଲି ମୋ କୁକୁରକୁ ହରେଇ ଦେବ? ମୋ କୁକୁର ପେଜ ପାଣି ଖିଆ କୁକୁର ହେଲେ କ'ଣ ହେଲା ଭାରି ବଳୁଆ, ଭାରି ଟାଣୁଆ.....

ସତକୁ ସତ ଅଳ୍ପ ସମୟ ଯୁଦ୍ଧ ଭିତରେ ଟିପୁ ରାଜାଙ୍କର କୁକୁରକୁ କାମୁଡ଼ି ହାଲିଆ କରି ପକେଇଲା। ରାଜାଙ୍କ କୁକୁରର ଚାଖଣ୍ଡେ ବହଳର ଲୋମ ଛିଣ୍ଡି ଗଦା ହେଇଗଲା, କ୍ଷତ ବିକ୍ଷତ ହୋଇଗଲା, ଯୁଦ୍ଧ ସ୍ଥଳରେ ଘାସ ଉପୁଡ଼ି ଧୂଳି ଉଡ଼ିଗଲା।

ଆଚାର୍ଯ୍ୟେ ଭୟଭୀତ ହୋଇ ବାସୁଆକୁ ଡାକି କହିଲେ-ବାସୁଆ ରାଜାଙ୍କର କୁକୁର ଯଦି ମରିଯିବନା, ମୋର ଆଉ ଦୁର୍ଦ୍ଦଶାର ବାକି ରହିବ ନାହିଁ.....।

ବାସୁଆ ସଗର୍ବରେ ଉଲ୍ଲସିତ ହେଇ ଉତ୍ତର ଦେଲା-ଆଜ୍ଞା, ରାଜା ଯେମିତି ତାଙ୍କ କୁକୁର ମଧ୍ୟ ସେମିତି। ଆମେ ଯେମିତି ଆମ କୁକୁର ସେମିତି। ଆପଣ କାହିଁକି ଭୟ କରୁଛନ୍ତି। କୁକୁର କୁକୁରରେ କଳି କରିବେ, ଆମେ କ'ଣ ଶିଖେଇ ଦେଲୁ?

ରାଜାଙ୍କର କୁକୁର ଟିପୁ କତିରେ ପରାଭବ ସ୍ୱୀକାର କରି ପଳାଇବାବେଳେ, ଟିପୁ ତାକୁ ରାଜବାଟୀ ଆଡ଼କୁ ପଛେ ପଛେ ଗୋଡ଼େଇ ଗଲା, ବାସୁଆ ଡାକିଲା-ଟିପୁ, ଟିପୁ...

ଟିପୁ ଗୋଡ଼େଇବାରୁ କ୍ଷାନ୍ତ ହୋଇ କ୍ଷତବିକ୍ଷତ ଅବସ୍ଥାରେ ଧଇଁସଇଁ ହେଇ ବାସୁଆ କତିରେ ଆସି ଠିଆ ହେଲା, ଆଉ କାଲୁକୁ ଅନେଇଲା।

ବାସୁଆ ଆଚାର୍ଯ୍ୟେଙ୍କୁ ସମ୍ବୋଧନ କରି କହିଲା-ଦେଖିଲେ ତ ଆଜ୍ଞା, ପେଜ, ପାଣିଖିଆ କୁକୁରକୁ....

ବାସୁଆ ଟିପୁକୁ ଆଉଁସା ଆଉଁସି କରି ତାକୁ ଥୟ କରେଇଲା। ଟିପୁ ଯୁଦ୍ଧରୁ ବିରତ ହେଇ ବାରମ୍ବାର କାଲୁ ଆଡ଼କୁ ଅନେଇଲା। କାଲୁ ମଧ୍ୟ ଟିପୁର ବୀରତ୍ୱରେ ତୃପ୍ତ ହୋଇ ରାଜକନ୍ୟା ଜଣେ ବୀର ପୁରୁଷ ଗଳାରେ ବରଣମାଳା ଦେଇ ସ୍ୱାମୀତ୍ୱର ବରଣ କଲାଭଳି ଟିପୁ କତିକି ଆସି ସସ୍ନେହରେ ସମ୍ଭାଷଣ କଲାଭଳି କେତେଗୁଡ଼ିଏ ଅଙ୍ଗଭଙ୍ଗୀ କଲା। ଉଭୟେ ଏକାଠି ଯେମିତି ମଧୁଚନ୍ଦ୍ରିକା ଉପଭୋଗ କରିବାରେ ବ୍ୟସ୍ତ ହୋଇ ପଡ଼ିଲେ।

ତହିଁ ଆରଦିନ ସକାଳେ ଆଚାର୍ଯ୍ୟେ ଦାଣ୍ଡଆଡ଼େ ବସି ଦାନ୍ତ ଘଷୁଛନ୍ତି। କାଲୁ କତିରେ ବସିଛି, ଆଚାର୍ଯ୍ୟେ ନିଜର ଝିଅକୁ ତିରସ୍କାରସୂଚକ କଣ୍ଠରେ କହିଲା ଭଳି କହିଲେ-ପୋଡ଼ାମୁହିଁ, ମଲୁ ନାହିଁ ତୁ, ମୋ ମୁହଁରେ ଚୂନକାଳି ଦେଲୁ, ରାଜାଘର କୁକୁର ପସନ୍ଦ ହେଲା ନାହିଁ? ମେହେନ୍ତର କୁକୁର ପସନ୍ଦ ହେଲା। ମୋ ମୁହଁ ତଳକୁ କଲୁ! ଏକା ମୁଥ ଦିଅନ୍ତି ଯେ ତୋର ପ୍ରେମ କରିବା ଛାଡ଼ିଯା'ନ୍ତା।

କାଲୁ ଯେମିତି ଆଚାର୍ଯ୍ୟଙ୍କ କଥା ସବୁ ବୁଝିପାରି ଲାଜରେ ମୁହଁ ବୁଲେଇ ବସିବା ଭଳି ଭଙ୍ଗୀରେ ଆଚାର୍ଯ୍ୟଙ୍କ ଆଡ଼କୁ ମୁହଁ ବୁଲେଇ ସରମରେ ବସି ରହିଲା ।

ରାଜାଙ୍କର କୁକୁର ସମ୍ମୁଖ ସମରରେ ଟିପୁଠାରୁ ପରାଜିତ ହୋଇ ବିଦାୟ ନେବା ପରେ ଔଷଧାଳୟର ହତା ଭିତରେ ଟିପୁ ପ୍ରାଧାନ୍ୟ ବିସ୍ତାର କଲା । କଣ୍ଟ୍ରାକ୍ଟ ମ୍ୟାରେଜ୍ ଭଳି କାଲୁ କେତେଦିନ ପାଇଁ ଟିପୁର ସ୍ତ୍ରୀ । ଟିପୁ ଆଉ ଔଷଧାଳୟର ହତା ଛାଡ଼ିଲା ନାହିଁ । ଟିପୁ ଆଉ କାଲୁ ସୁଖରେ ଏକତ୍ର ଆହାର, ବିହାର, ଶୟନ ସେହି ଔଷଧାଳୟ ହତାର ତରୁକୁଞ୍ଜ ମଧ୍ୟରେ ଆରମ୍ଭ କଲେ । କାଲୁ ଯୁଆଡ଼େ, ଟିପୁ ସିଆଡ଼େ, ଟିପୁ ଯୁଆଡ଼େ, କାଲୁ ସିଆଡ଼େ । ଔଷଧାଳୟର ହତା ଭିତରୁ ଟିପୁର ଭୟରେ ଆଉ ଅନ୍ୟାନ୍ୟ ପ୍ରତିବେଶୀ କୁକୁର ଅଦୃଶ୍ୟ ହୋଇଗଲେ ।

ଦିନେ ବାସୁଆ କବିରାଜଙ୍କୁ ସମ୍ବୋଧନ କରି କହିଲା-ଦେଖିଲେ ବାବୁ, ଏତେ ଯେ କୁକୁର ଆସିଲେ, ରାଜାଙ୍କର କୁକୁର ଆସିଲା, ଆପଣଙ୍କ କୁକୁର କାହାରିକି ପସନ୍ଦ କଲା ? ମୋରି କୁକୁର ତା'ମନକୁ ପାଇଲା, ଦେଖିବେ ବାବୁ-ଭଲ ଛୁଆ ହବ...

ଆଚାର୍ଯ୍ୟେ ବାସୁଆର କଥା ଶୁଣି ମନେ ମନେ ଲଜ୍ଜିତ ହୋଇ ବାସୁଆ ମୁହଁକୁ ଅନେଇ ପାରିଲେନି । ମନେ ମନେ ରାଗରେ ଭାବିଲେ-ଆଜି କାଲୁକୁ ହାଣି ଦେବେ...

ଏହାପରେ ଆଚାର୍ଯ୍ୟେ ଯେତେ ଥର ଯୁଆଡ଼େ ରୋଗୀ ଦେଖିବାକୁ ଗଲେ-ପ୍ରତିବେଶୀ କୁକୁରମାନେ, ଯେଉଁମାନେ କାଲୁର ସ୍ୱୟଂବର ସଭାକୁ କାଲୁର ପ୍ରଣୟପ୍ରାର୍ଥୀ ହୋଇ ଆସିଥିଲେ, ଆଚାର୍ଯ୍ୟଙ୍କୁ ଦେଖି ରାଗରେ ଭୁକି କାମୁଡ଼ିବାକୁ ଧାଇଁଲେ ।

ଆଚାର୍ଯ୍ୟେ ଇମିତି କେତେଥର ହାଲିଆ ହୋଇ ଆସି ନିଜର ସ୍ତ୍ରୀକୁ କହିଲେ-ଶୁଣୁଛ ପଦ୍ମା; କାଲୁର ସ୍ୱୟଂବର ସଭାରୁ ଯେଉଁ କୁକୁରମାନେ ନିରାଶ ହୋଇ ଫେରିଗଲେ, ମୋତେ ଆଉ ରାଗରେ ବାଟ ଚଲେଇ ଦେଲେ ନାହିଁ । ଏ କାଳୀ କୁତୀ କାଲୁ ସକାଶେ ମଣିଷର ଇଜ୍ଜତ, ମହତ ସବୁ ଗଲା, ମଣିଷ ବାଟ ଚାଲି ପାରିଲା ନାହିଁ । ନାରୀ ସବୁ ଅନର୍ଥର ମୂଳ, ମୁଁ ଆଗରୁ କହୁଛି-ମାଈ କୁକୁର ରଖିବା ଆଦୌ ଭଲ ନୁହେଁ ।

ପଦ୍ମା ଆଚାର୍ଯ୍ୟଙ୍କୁ ପରିହାସ କରି ଆଉ ଟିକିଏ ରଗେଇବା ପାଇଁ କହେ-କ'ଣ ମାଈ କୁକୁର ରଖି ମନ୍ଦ ହେଲା ? ଆଉ କେତେଦିନ ପରେ ତ ନାତି, ନାତୁଣୀ ଦେଖିବେ ।

ଆଚାର୍ଯ୍ୟେ ବିରକ୍ତ ହୋଇ କହନ୍ତି-ତୁମେ ଆହୁରି ନିଆଁରେ ଘିଅ ଢାଳୁଛ ?

ଦିନେ ଟିପୁର ଶୟନାବସ୍ଥାରେ ଗୋଟାଏ ଭେଣ୍ଡିଆ କୁକୁର ଔଷଧାଳୟର ଫାଟକ ବାହାରେ ଘଣ୍ଟା ଘଣ୍ଟା ଧରି ଠିଆ ହୋଇ କାଲୁକୁ ଏକ ଧ୍ୟାନରେ ଅନେଇ ରହିଛି, ଟିକିଏ ହଲ୍‌ଚଲ୍ ହେଉନି, କାଲୁ ଔଷଧାଳୟର ବାରନ୍ଦାରେ ମୋଡ଼ି ମାଡ଼ି ହୋଇ ଶୋଇଛି ।

ଆଚାର୍ଯ୍ୟେ ପଦ୍ମାକୁ ଡାକି କହିଲେ-ଦେଖିଲ ପଦ୍ମା, ଏ କୁକୁର କେମିତି ଏକ ଧ୍ୟାନରେ କାଲୁକୁ ଅନେଇ ଘଣ୍ଟା ଘଣ୍ଟା ଧରି ଠିଆ ହୋଇ ରହିଛି, କାହିଁକି ସେ ଇମିତି ଠିଆ ହୋଇ ରହିଛି କହିଲ, କି ଉଦ୍ଦେଶ୍ୟରେ ?

ପଦ୍ମା ଉତ୍ତର ଦିଏ-ତୁମେ ବୁଝି ପାରୁନା ତା'ର ଉଦ୍ଦେଶ୍ୟ କ'ଣ ? ମୋତେ ବୁଝେଇବାକୁ ହେବ ?

ଆଚାର୍ଯ୍ୟେ ପୁଣି କହନ୍ତି-ତୁମେ ଯେତେବେଳେ କଲେଜ ହଷ୍ଟେଲରେ ରହି ପଢୁଥିଲ, ଇମିତି କେତେ ଭେଣ୍ଡିଆ ହଷ୍ଟେଲ ଫାଟକ ବାହାରେ ତୁମ ଉଦ୍ଦେଶ୍ୟରେ ଠିଆ ହୋଇ ରହିଥିବେ, ତୁମେ ଏ କଥା ଭଲ ଭାବରେ ବୁଝେଇ ପାରିବନି ତ, ଆଉ କିଏ ବୁଝେଇବ ?

ପଦ୍ମା ଉତ୍ତର ଦିଏ-ଠିଆ ହୋଇଥିବେ ତୁମରି ପରି ପୁରୁଷ ଜାତି କେହି । ଦେଖ, ନାରୀ ଜାତି କେମିତି ପୁରୁଷକୁ ଘଣ୍ଟା ଘଣ୍ଟା ଧରି ଫାଟକ କଡିରେ ଦଣ୍ଡଆନ ଭଳି ଠିଆ କରିପାରେ ।

ଏତିକିବେଳେ ବାସୁଆ କୁଆଡୁ ଫାଟକ ବାହାରେ ଠିଆ ହୋଇଥିବା କୁକୁରର ପଛପଟୁ ଆସି ତା' ବ୍ରହ୍ମ ତାଳୁରେ ଗୋଟାଏ ତଡ଼ାରେ ଏକା ପାହାର ପକେଇଲା ।

କୁକୁରଟା ସଙ୍ଗେ ସଙ୍ଗେ କିଛି ଶବ୍ଦ ନକରି ଠକ୍ କରି ଗଡ଼ି ପଡ଼ିଲା, ଆଉ କିଛି ନାହିଁ, ଶେଷ, ସବୁ ଶେଷ।

ଆଚାର୍ଯ୍ୟେ ଝୁରିକି ବାଟେ ଏ ଦୃଶ୍ୟ ଦେଖି ଛାନିଆ ହୋଇ ସ୍ତ୍ରୀକୁ ଡରାକି କହିଲେ-ପଦ୍ମା, ବାସୁଆ କ'ଣ କଲା!! କୁକୁରଟାକୁ ମାରିଦେଲା, କି ପାପ କଲା!!

ମୁଁ ଏ ପାପର ନିମିତ୍ତ ହେଲି। ମୁଁ କାଲୁକୁ ରଖିଛି, ସେଇ କାଲୁ ସକାଶେ କୁକୁରଟାର ପ୍ରାଣ ଗଲା!! ଘାତକ ବାସୁଆ କ'ଣ କଲା!!

ସେ କୁକୁର ତ ଏମିତି କିଛି ଅପରାଧ କରି ନାହିଁ, ଯାହାପାଇଁ ମୃତ୍ୟୁ ବରଣ କରିବାକୁ ହେଲା। ଏ ପାପ ମୋର ପଦ୍ମା, ଏ ପାପ ମୋର...

ଆଚାର୍ଯ୍ୟଙ୍କ ସ୍ତ୍ରୀ ଉତ୍ତର ଦେଲେ-ଏତେ ଛାନିଆ କାହିଁକି? ପୁରୁଷ ଜାତିକୁ ଏମିତି ତଡ଼ା ଦରକାର, ପରର ଝିଅ, ବୋହୂଙ୍କୁ ଏକ ଧ୍ୟାନରେ ଚାହିଁ ରହିବା କ'ଣ ପାପ ନୁହେଁ? ଏତେବେଳେ ପାପ, ପୁଣ୍ୟର ବିଚାର ମନେ ପଡ଼ିଗଲା। ଏମିତି ପରର ଝିଅ ବୋହୂଙ୍କ ଲାଳସାରେ କେତେକ ପୁରୁଷ ତ ପୁଣି ହତାଶ ହେଇ ଆତ୍ମହତ୍ୟା କରୁଛନ୍ତି। ତା'ଠାରୁ ଏ କ'ଣ ବଡ଼ ପାପ? ଏ ତ ବାସୁଆ କୁକୁରଟାକୁ ବାଡ଼େଇ ମାରିଦେଲା, କୁକୁର ତ ନିଜେ ଆତ୍ମହତ୍ୟା କରିନି।

ଆଚାର୍ଯ୍ୟେ ଏତେବେଳେ ସ୍ତ୍ରୀକୁ ବାଧା ଦେଇ କହିଲେ-ପଦ୍ମା, ଆଉ ତୁମେ ମୋତେ କିଛି କୁହନା, ମୋର ମୁଣ୍ଡ ଘୂରି ଯାଉଛି...

ଆଚାର୍ଯ୍ୟଙ୍କ ଶରୀର ଅବଶ ବୋଧ ହେଲା, ସେ ଖଟ ଉପରେ ଥକ୍‌କା ହୋଇ ବସି ପଡ଼ିଲେ, ଆଉ ଠିଆ ହୋଇ ପାରିଲେ ନାହିଁ।

ବାସୁଆ ଶୁଣିଲା-ସେ କୁକୁରଟାକୁ ମାରିଦେବା ଦ୍ୱାରା ବାବୁ ଭାରି ବ୍ୟସ୍ତ ହେଉଛନ୍ତି, ବାସୁଆ କି ପାପ କଲା ଏବଂ ଏ ପାପ ମଧ ତାଙ୍କୁ ଲାଗିବ।

ଆଚାର୍ଯ୍ୟେ ଶୁଣିଲେ-ବାସୁଆ କହୁଛି-ମୁଁ କୁକୁରଟାକୁ ମାରିଦେଲି। ଗୋଟାଏ ବଡ଼ ଜୀବକୁ ମାରିଲି ବୋଲି ମୋର ପାପ ହେଲା, ବାବୁଙ୍କୁ ପାପ ଲାଗିଲା ଆଉ ବାବୁ ଯେତେବେଳେ ହଜାର ହଜାର ମଶା ମାରୁଛନ୍ତି, ସେ ଆଉ ପାପ ନୁହେଁ? ପାପ କାହାକୁ ଛାଡ଼ିଛି? ଛୋଟ ଲୋକଙ୍କ ପାଇଁ ଯେମିତି ପାପ ଅଛି, ବଡ଼ ଲୋକଙ୍କ ପାଇଁ ତାଠୁଁ ବଳି ବଡ଼ ପାପ ଅଛି। ମୁଁ କୁକୁରଟାକୁ ତଡ଼ାରେ ମାରିଦେଲି, ମୋର ପାପ ହେଲା, ପୁଣି ବାବୁଙ୍କୁ ପାପ ଲାଗିଲା-ବାବୁମାନେ ଯେତେବେଳେ କଲମରେ ଆମପରି ମଣିଷକୁ ମାରି ଦେଉଛନ୍ତି, ସେ ଆଉ ପାପ ନୁହେଁ? ସେ ପାପ କିଏ କରୁଛି? କାହାକୁ ଲାଗୁଛି? ଯେତେ ସବୁ ବାହାପିଆ କଥା...

କାଲୁ କିଛି ଜାଣେନା, ସେ ମୋଡ଼ିମାଡ଼ି ହୋଇ ଶୋଇଛି, ସେ ଉଠିବ; କିନ୍ତୁ ତା'ରି ପାଇଁ ଜଣେ ଶୋଇଲା, ସେ ଆଉ ଉଠିବ ନାହିଁ, ସେ ଯାଇ କେଉଁ ଅପନ୍ତରାରେ ଜିଭ କାଢ଼ି, ଆଖି ବୁଜି ପଡ଼ିବ।

ବାସୁଆ ମଲା କୁକୁରର ଲାଙ୍ଗୁଡ଼ଟାକୁ ଧରି ଘୋଷାରି ଘୋଷାରି ନେଇ ଦୂରକୁ ଚାଲିଗଲା।

# ବେଦନା ନାଶକ

ଘରେ ଶାଶୁବୁଢ଼ୀ, ପୁଅ ଆଉ ବୋହୂ, ଘର ଗୋଟାକର କାମରୁ ଗୁରାଏ କାମ ବୋହୂ କରେ ଅଳ୍ପ କାମ ଶାଶୁବୁଢ଼ୀ କରେ। ଶାଶୁବୁଢ଼ୀର ହାତ କାମ ବନ୍ଦ ହେଲେ, ମୁହଁ କାମ କରେ, ଅର୍ଥାତ୍ ବକର ବକର ହେଉଥାଏ ପାଟି ବନ୍ଦ ହୁଏନା।

ପୁଅ ବଜାରରେ ଥାଏ, ତା'ର ପାନ ଦୋକାନ, ଲୁଚା ଚୋରାରେ ଦେଶୀ ମଦ ବିକ୍ରି କରେ। ପୁଅ କିଛି ଘର କଥା ବୁଝେ ନାହିଁ, ଘରକୁ ଆସିଲେ ଖାଏ, ପିଏ, ଚାଲିଯାଏ। ରାତି ହେଲେ ଘରକୁ ଆସେ।

ଦିନେ ପୁଅ ଦିଗମ୍ବର ପାନ ଦୋକାନରେ ବସି ପାନ ବିକୁଛି। ହଠାତ୍ ଜଣେ ଲୋକ ଆସି ଖବର ଦେଲା-ଦୌଡ଼ି ଯା ତୋର ମା'ର କ'ଣ ହୋଇଛି, ସାହି ମାଇପିଏ ଘରେ ପଶି କାନ୍ଦୁଛନ୍ତି-

ଦିଗା ଦୋକାନ ଛାଡ଼ି ଘରକୁ ଦୌଡ଼ିଲା। ଘରେ ଯାଇ ଦେଖେ ମା' ବୁଢ଼ୀ ପଡ଼ି ଯାଇଛି। କିଏ କହୁଛି-ବାଁ ହାତଟି ଭାଙ୍ଗି ଯାଇଛି, କିଏ କହୁଛି-ନା ହାତ ଭାଙ୍ଗି ନାହିଁ, ଜଖମ ହେଇ ଯାଇଛି.......।

ବୁଢ଼ୀକୁ ପଡ଼ିବା ଜାଗାରୁ ଟେକି ଆଣି ଗୋଟିଏ ଜାଗାରେ ବସେଇଛନ୍ତି। ବୁଢ଼ୀ ନିଜର ମନ୍ଦଭାଗ୍ୟ, ପୁଅ ବୋହୂର ତା'ପ୍ରତି ଅବହେଳା, ତା'ର ବାପଘରେ ସେ କେମିତି ସୁଖରେ ଥିଲା, ଶାଶୁ ଘରକୁ ଆସିଲା ଦିନୁ, ତା' ବୋହୂ ଅମଳରୁ ଆଜିଯାଏ, ସେ କେତେ କଷ୍ଟ କଲାଣି ଆଉ କଷ୍ଟ ସହି ପାରୁନି। ଏଣିକି ମାଟିରେ କେମିତି ମିଶିବ, ମିଶିଲେ ସେ କେମିତି ଶାନ୍ତି ପାଇବ ଇତ୍ୟାଦି ଇତ୍ୟାଦି ବର୍ଣ୍ଣନା କରି ନାତିଦୀର୍ଘ ସ୍ୱରରେ ବାହୁନୁଛି।

ସାହି ମାଇପେ ବୁଢ଼ୀର ବାହୁନାକୁ ସମର୍ଥନ କଣେଇ କିଏ ବୁଝଉଛି, କିଏ ସାନ୍ତ୍ୱନା ଦଉଛି, କିଏ ଔଷଧ ବତଉଛି, କିଏ ଔଷଧ ଯୋଗାଡ଼ କରୁଛି। ସମସ୍ତଙ୍କ ମୁହଁରେ ବୁଢ଼ୀ ପ୍ରତି ସହାନୁଭୂତି ସୂଚକ ସେହି ଗୋଟାଏ କଥା-ଆହା! ବୁଢ଼ୀ ମଣିଷ, ଖୁବ୍ ଜୋର୍‌ରେ ବାଜି ଯାଇଛି। ବୁଢ଼ୀ ଶରୀର ଆଉ କ'ଣ ବଳ ଅଛି.....?

ଆଉ କେତେକଙ୍କ ମୁହଁରେ ସେହି ଗୋଟାଏ କଥା- କ'ଣ ହେଲା? ବୁଢ଼ୀ କେମିତି ପଡ଼ିଗଲା, କୋଉଠି ବାଜିଛି? ଭାରି କଷ୍ଟ ହେଉଥିବ, ବୃଦ୍ଧ ଶରୀର.....!

ସିନେମାର ଫାଷ୍ଟ ସୋ'ର ଦର୍ଶକଦଳ ବାହାରି ଗଲାପରେ, ସେକେଣ୍ଡ ସୋ'ର ଦର୍ଶକଦଳ ପ୍ରବେଶ କଲା ପରି, ଦଳେ ଯାଇ ପୁଣି ନୂଆ ଦଳେ ଦେଖଣାହାରୀ ପ୍ରବେଶ କଲା ପରେ, ସେଇ ଗୋଟାଏ ଧରଣର ପ୍ରଶ୍ନ। ତା'ର ସେମିତି ଗୋଟାଏ ଧରଣର ଉତ୍ତର-ଦାସେ ଆଇଲେ ମୂଳରୁ ଗା'...

ବୁଢ଼ୀକୁ ଡାକ୍ତରଖାନାକୁ ନିଆ ହେଲା ନାହିଁ, ଡାକ୍ତରଙ୍କୁ ଡକା ହେଲା ନାହିଁ। ସାହି ମାଇପିଙ୍କର ପ୍ରେସ୍‌କ୍ରିପସନ୍ ମତେ କେତେକ ଗାଉଁଲି ଔଷଧ ବୁଢ଼ୀ ହାତରେ ବନ୍ଧା ହେଲା, ବୁଢ଼ୀ ବିଛଣା ଧଇଲେ ବୁଢ଼ୀକୁ କେନ୍ଦ୍ର କରି, ଆଉଁସା, ଘଷା, ଗପ, ସାହି ମାଇପିଙ୍କର ଗୋଟାଏ ଆଲୋଚନାଚକ୍ର ବସିଲା।

ଗାଁ ନିକଟରେ ସରକାରୀ ଡାକ୍ତରଖାନା। ଡାକ୍ତର ଥା'ନ୍ତି ସାହି ମଝିରେ, ଘର ଭଡ଼ା ନେଇ। ସରକାରୀ ଘର ତାଙ୍କୁ ମିଳି ନଥିବାରୁ ଡାକ୍ତର ଭଡ଼ା ଘରେ ଥା'ନ୍ତି। ଏକା, କତିରେ କେହି ନାହିଁ, ଦିନେ ସକାଳୁ ଦାଣ୍ଡ ଆଡୁ କରୁଣ କଣ୍ଠରେ ଶୁଣାଗଲା-ଆଉ ବଞ୍ଚିବି ନାହିଁଲୋ, ମୋ ପ୍ରାଣ କି କଲବଲ ହେଉଛି ଲୋ, ମୋତେ କି ଦଶା ପଇଲା ଲୋ....!

କାନ୍ଦଣାର ଶବ୍ଦ ସଙ୍ଗେ ସଙ୍ଗେ ମୃଦୁ ପଦଧ୍ୱନି, ତା ପରେ ପରେ ଡ଼ାକ୍ତରବାବୁଙ୍କ ଶୋଇବା ଘର ସାମନାରେ ଠେଙ୍ଗାଟିଏ ହାତରେ ଧରି, ଗୋଟିଏ ବୁଢ଼ୀ ଆସି ଉଭା ହେଲେ, ବୁଢ଼ୀର ବାଁ ହାତର ପାପୁଲିଟି ଫୁଲିଛି, ସେଥିରେ ପୁଣି କନା ଖଣ୍ଡେ ବନ୍ଧା ହୋଇଛି।

ବୁଢ଼ୀ ଡାକ୍ତର ବାବୁଙ୍କୁ ଦେଖି କାନ୍ଦ କାନ୍ଦ ହେଇ ଆରମ୍ଭ କଲା-ଏ ଡାକ୍ତର ବାବୁ, ମୋତେ ଦୟାକର। ମୁଁ ବୁଢ଼ୀ ମଣିଷ...

ବୁଢ଼ୀ ଠେଙ୍ଗାଟି ତଳେ ଥୋଇ ଦେଇ ଡ଼ାହାଣ ହାତରେ ବାଁ ହାତ ପାପୁଲିକି ଧରି ଗୋଟିଏ ଖୁଂଟକୁ ଆଉଜି ବସିଲେ।

ଡାକ୍ତର ବାବୁ ପଚାରିଲେ-ବୁଢ଼ୀ କ'ଣ ହେଲା? ବୁଢ଼ୀ ବାହୁନା ସ୍ୱରରେ ଆରମ୍ଭ କଲେ-କ'ଣ କହିବି ବାପ, ପାଣି ମାଠିଆଏ ଆଉଥିଲି, ଗୋଡ଼ ଖସିଗଲା, ପଡ଼ିଗଲି, ଏ ବାଁ ହାତରେ ମାଡ଼ ହୋଇଗଲା।

ବୁଢ଼ୀ ପୁଣି ସେହି ବାହୁନା ସ୍ୱରରେ-ମୋର ଗୋଟିଏ ପୁଅ, ତାକୁ ବାହା ଦେଇ ଗୋଟିଏ ବୋହୂ ଆଣିଥିଲି ଯେ, ତା'ଗୁଣ କହିଲେ ସରିବ ନାହିଁ...।

ଡାକ୍ତର-ବୋହୂ କ'ଣ କାମ କରେ ନା?

ବୁଢ଼ୀ-ସେ ବୋହୂକୁ ମରଣ ହୁଅନ୍ତା କି, ମୋ ପୁଅକୁ ପଛେ ଆଉ ଗୋଟାଏ ବାହା ଦିଅନ୍ତି, ଗୋଟିଏ ଭଲ ବୋହୂ ଆଣନ୍ତି...

ଡାକ୍ତର-ବୋହୂ କ'ଣ ଭଲ ନୁହେଁ?

ବୁଢ଼ୀ-ତା ନାଁ ଧର ନାହିଁ ବାପ, ଅଲକ୍ଷଣୀ ମୋ ପୁଅକୁ କାଳ ସର୍ପ ଜୁଟିଛି। ମୁଁ କ'ଣ ଜାଣିଥିଲି, ଏଡ଼େ ଦୁଷ୍ଟ ପଡ଼ିବ ସେ। କୁଟା ଖଣ୍ଡକ ଦି'ଖଣ୍ଡ କରିବନି, ଅଳସେଇ ବୋଲି ସରିଛି...।

ଡାକ୍ତର ପୁଣି ପ୍ରଶ୍ନ କଲେ-ତୁମ ପୁଅ ନାଁ କ'ଣ?

ବୁଢ଼ୀ-ମୁଁ ପରା ଦିଗା ମା', ଦିଗାକୁ କ'ଣ ଚିହ୍ନିନା?

ପୁଅ ଭାରି ଭଲ ଥିଲା, ଏ ବୋହୂ ଶିକ୍ଷାରେ ପଡ଼ି ଏବେ ଖରାପ ହେଇଗଲା। ଏ ଯୋଉ ଅଲକ୍ଷଣୀ ବୋହୂ, ତାକୁ ସବୁ ମନ୍ଦ କଥା କାନେ କାନେ ଶିଖେଇଲା...।

ବୁଢ଼ୀ ଏତେବେଳେ ଜଖମ ଥିବା ହାତ ଆଉ ଭଲ ହାତ ଉଭୟଙ୍କୁ କୌଣସି ମତେ ଏକାଠି ଯୋଡ଼ି ସୂର୍ଯ୍ୟଙ୍କ ଆଡ଼କୁ ଅନେଇ ପ୍ରାର୍ଥନା କଲା ଭଙ୍ଗୀରେ କହିଲେ- ହେ ସୂର୍ଯ୍ୟ ଦେବତା, ତୁ ଦିନରାତି କରୁଛୁ, ତୁ ଯଦି ସତେ ଏ ଦୁନିଆ ପାଳୁଥିବୁ, ମୋ ବୋହୂକୁ ଯଦି ମରଣ ହବ, ତା'ହେଲେ ଜାଣିବି, ତୁ ଠିକ୍ ଦେବତା, ନହେଲେ ତୁ ପଥର...।

ଡାକ୍ତର ବାବୁ କହିଲେ-ବୁଢ଼ୀ, ଦେଖେ ତୁମରି ହାତ କ'ଣ ହେଇଛି?

ବୁଢ଼ୀ ବହୁ କଷ୍ଟରେ ହାତ ଦେଖେଇଲେ, ଡାକ୍ତର ବାବୁ ହାତ ପରୀକ୍ଷା କରି ଦେଖିଲେ, ହାତ ହାଡ଼ ଭାଙ୍ଗି ନାହିଁ, ମକଚି ଯାଇଛି।

ଡାକ୍ତର ବାବୁ କହିଲେ-ବୁଢ଼ୀ, ତୁମେ ଯାଅ, ତୁମ ପୁଅ ଦିଗାକୁ କହିବ, ଡାକ୍ତରଖାନା ଖୋଲିଲେ ମୋ ସହିତରେ ଦେଖା କରିବ, ମୁଁ ଔଷଧ ଲେଖିଦେବି, ହାତରେ ଲଗେଇବ, ଭଲ ହେଇଯିବ, ତୁମେ ଯାଅ ଆଉ ବସିବ କାହିଁକି?

ବୁଢ଼ୀ ଏଥର ପୁଣି ସେହି ବାହୁନା ସ୍ୱରରେ ଆରମ୍ଭ କଲେ-ଯା'ର ସାରାର୍ଥ ହେଉଛି-ସେ ସଂସାର-ସାଗର କେମିତି ପାରି ହେବେ, ସଂସାରର ଲୀଳା ଖେଳା ତାଙ୍କର ସରି ଆସିଲା, ସେ ଯେଉଁ ମାୟା ରୂପକ ନାବ ଖଣ୍ଡକରେ ବସିଛନ୍ତି, ତାଙ୍କୁ ପୁଅ କି ବୋହୂ, ସାହାଯ୍ୟ, ସହାନୁଭୂତି ରୂପକ ଆହୂଲ ପକେଇ ଏ ଯନ୍ତ୍ରଣା ରୂପକ ଝଡ଼, ଝଞ୍ଜାରୁ ଉଦ୍ଧାର କରି ପାରି କରିବାକୁ ଅନିଚ୍ଛୁକ, ଅସମର୍ଥ...।

ଡାକ୍ତର ବାବୁ ଲକ୍ଷ୍ୟ କଲେ-ଯେମିତି ବୋହୂ ବିରୁଦ୍ଧରେ ଅଭିଯୋଗ କରିବା ବନ୍ଦ ହେଉଛି ବୁଢ଼ୀ ହାତର ଯନ୍ତ୍ରଣା ଅନୁଭବ କରୁଛି। ଏଇ କଥା ଭାବି, ଡାକ୍ତର ବାବୁ ପୁଣି ବୋହୂ କଥା ପଚାରିଲେ-ବୁଢ଼ୀ, ବୋହୂ କ'ଣ ତୁମର କିଛି ଯତ୍ନ ନିଏନା?

ବୁଢ଼ୀ ଏତେବେଳେ ବାହୁନା ସ୍ୱରରୁ ନିବୃତ୍ତ ହୋଇ ସ୍ୱରବିହୀନ ବିରାଟ ଗଦ୍ୟରେ ଆରମ୍ଭ କଲେ-ବାବୁ, ସେ ଅଲକ୍ଷଣୀ ପୁଣି ମୋ ଯତ୍ନ ନେବ? କେବେ କହିବ ସେ ଶାଶୁବୁଢ଼ୀ ଶୋଇଛି। ଟିକିଏ ଗୋଡ଼ ଦି'ଟାରେ ହାତ

ବୁଲେଇ ଦିଏ, ଅଣ୍ଟା ଚିପିଦିଏ କି ମୁଣ୍ଡ ଚିପିଦିଏ, କାହିଁକି ସେ ଅନେଇ ଯିବ ?

ଡାକ୍ତର ବାବୁ ବୁଝିପାରିଲେ-ବର୍ତ୍ତମାନ ବୋହୂ ବିରୁଦ୍ଧରେ କହିଲାବେଳେ, ବୁଢ଼ୀର ଆଉ ହାତର ଯନ୍ତ୍ରଣା ନାହିଁ ।

ପରୀକ୍ଷା ସ୍ୱରୂପ ପୁଣି କହିଲେ-ହଉ ବୁଢ଼ୀ, ତମେ ଯାଅ ମୁଁ ଔଷଧ ଠିକ୍ କରିଦେବି... ।

ବୁଢ଼ୀ ଏଥର ପୁଣି ସ୍ୱରହୀନ ଗଦ୍ୟ ଛାଡ଼ି ବାହୁନା ସ୍ୱର ଧରିଲେ, ଯାହା ବର୍ଣ୍ଣନା କଲେ ତା'ର ସାରମର୍ମ ହେଉଛି-ସେ ଆଉ କେତେ କାଳ ଏ ଉତ୍ତାଳ-ତରଙ୍ଗ ସଙ୍କୁଳ ସଂସାର-ବାରିଧିରେ ଆଘାତ ସହ୍ୟ କରୁଥିବେ, ତାଙ୍କର ଜ୍ୟେଷ୍ଠ ପୁତ୍ର ଆନନ୍ଦଚନ୍ଦ୍ର ଯେ କି ସସ୍ତ୍ରୀକ ଶ୍ୱଶୁରାଳୟରେ ଗୃହପାଳିତ ଜାମାତା ରୂପେ ବିବାହର ଅଳ୍ପଦିନଠାରୁ ଏ ପର୍ଯ୍ୟନ୍ତ ଅବସ୍ଥାନ କରୁଛନ୍ତି, ଯେ କି ବୁଢ଼ୀର ନାମକରଣ ସୁଦ୍ଧା କରନ୍ତି ନାହିଁ, ବୁଢ଼ୀଙ୍କ ମତରେ ସେହି ପୁତ୍ର, ସେହି ବଧୂ କେବଳ ହେଉଛନ୍ତି ଏ ସଂସାର ବାରିଧିରୁ ତାଙ୍କୁ ପାରି କରିବାରେ ସୁଯୋଗ୍ୟ, ସୁଦକ୍ଷ କର୍ଣ୍ଣଧାର... ।

ଡାକ୍ତର ବାବୁ ଏଥର ପୁଣି ପରୀକ୍ଷା ସ୍ୱରୂପ ବୁଢ଼ୀଙ୍କୁ ପଚାରିଲେ-ବୁଢ଼ୀ, ବୋହୂ ରାନ୍ଧେ କେମିତି ? ତୁମକୁ ଭଲ ଭାବରେ ଯତ୍ନ ନେଇ ଖାଇବାକୁ ଦିଏ ?

ବୁଢ଼ୀ ଏଥର ଡାକ୍ତର ବାବୁଙ୍କ ଏତାଦୃଶ ସହଜ ପ୍ରଶ୍ନର ଉତ୍ତର ଦବା ପାଇଁ ଆଗ୍ରହ ସହକାରେ ବାହୁନା ସ୍ୱର ଛାଡ଼ି, ଗଦ୍ୟ ଛନ୍ଦରେ ଆରମ୍ଭ କଲେ-ଯା'କୁ ସଂକ୍ଷେପରେ କହିବାକୁ ଗଲେ-ଭାତ ଗୋଡ଼ି ସହିତରେ ତୁଳନା କରାଯାଇପାରେ, ଡାଲି ଯାହା କରେ, ସେଥିରେ ଗୋଟିଏ ସବ୍‌ମ୍ୟାରିନ୍ ଅକ୍ଲେଶରେ ଆତ୍ମଗୋପନ କରି ଜଳକ୍ରୀଡ଼ା କରିପାରେ । ତରକାରୀ ଯା'କରେ, ତାହା ଘୁଷୁରିର ଅସ୍ପୃଶ୍ୟ, ସେଥିରେ ଯେଉଁ ପନିପରିବା, ମାଛ ଇତ୍ୟାଦି ପଡ଼ିଥାଏ, ସେଗୁଡ଼ିକ ପ୍ରତ୍ୟେକ ଖଣ୍ଡବିଖଣ୍ଡ ଅବସ୍ଥାରେ ଗୋଟିଏ ଲବଣାକ୍ତ ହ୍ରଦରେ ପଡ଼ି କି ଦୁର୍ଦ୍ଦଶା ଭୋଗ କରନ୍ତି, ଖାଦକର ଦୃଷ୍ଟି ଆକର୍ଷଣ କରିବା ପାଇଁ ନିଜକୁ ଦେଖେଇବାରେ ପରସ୍ପର ସହିତ ପ୍ରତିଯୋଗିତା କରନ୍ତି, ଆଉ ରନ୍ଧନଶାଳାର ଅବସ୍ଥା ଗୋଟିଏ ମଶାଣି ଭୂଇଁ ସହିତରେ ତୁଳନୀୟ, ଶେଷରେ ବୁଢ଼ୀ ବୋହୂର ଆଶୁ ନରକ ଗତିର କାମନା କରି ମନ୍ତବ୍ୟ ପ୍ରକାଶ କଲେ-ଯେ କେହି ଖାଉ କି ନଖାଉ, ସେ ନିଜେ ଆକଣ୍ଠ ଭୋଜନ କରି ଆଗେ ଖଟ ଉପରେ କାୟା ବିସ୍ତାର କରିଦିଏ, ବୁଢ଼ୀଙ୍କୁ ସବୁ ନିଜେ କରିବାକୁ ପଡ଼େ ।

ଡାକ୍ତର ବାବୁ କହିଲେ-ହଉ, ତମେ ଯାଅ, ତୁମ ପୁଅକୁ ଡାକି ଦେବ... ।

ବୁଢ଼ୀ ଡାକ୍ତର ବାବୁଙ୍କ ଏକଥା ଶୁଣି, ଡାହାଣ ହାତରେ ବାଁ ହାତକୁ ଧରି ପୁଣି ବାହୁନା ସ୍ୱରରେ ଆରମ୍ଭ କଲେ-ସେଥିରୁ ବୁଝାଗଲା-ତାଙ୍କର ଆଦୌ ଇଚ୍ଛା ନଥିଲା ଡାକ୍ତର ବାବୁଙ୍କ ପାଖକୁ ଆସିବା ପାଇଁ । ଗାଁ'ର ପ୍ରତିବେଶିନୀ ସମବୟସ୍କା ମାଇପିଙ୍କ ଉପଦେଶ ଏବଂ ଅନୁରୋଧ କ୍ରମେ, ସେ ଡାକ୍ତର ବାବୁଙ୍କ ଦ୍ୱାରସ୍ଥ ହେଲେ । ତାଙ୍କୁ ବର୍ତ୍ତମାନ ସେହି ଯନ୍ତ୍ରଣାରେ ପୂର୍ଣ୍ଣକୁମ୍ଭ ସ୍ୱରୂପ ହାତ ଖଣ୍ଡିକ ନେଇ ଡାକ୍ତରଙ୍କ କତିରୁ ବାହୁଡ଼ିବାକୁ ହେଲା । ତାଙ୍କର ଯନ୍ତ୍ରଣା ଅପରିସୀମ ଅକଥନୀୟ, ଅସହନୀୟ... ।

ଡାକ୍ତର ବାବୁ ପୁଣି ଥରେ ବୁଢ଼ୀଙ୍କୁ ଆଉ ଗୋଟିଏ ଶେଷ ପ୍ରଶ୍ନ ଏବଂ ନୂଆ ପ୍ରଶ୍ନ ପଚାରିଲେ । ବୁଢ଼ୀ ସେ ପ୍ରଶ୍ନକୁ ଅତି ସହଜ, ସରଳ ଭାବି ଉତ୍ତର କହିଲେ ପରୀକ୍ଷାବେଳେ ଜଣେ ଛାତ୍ର ଯେପରି ତା'ର ପ୍ରଶ୍ନ ମଧ୍ୟରେ ଯଦି ଗୋଟିଏ ସହଜ ପ୍ରଶ୍ନ ଦେଖେ, ତାକୁ ସେ ଯେପରି ଆଗ୍ରହ ସହକାରେ ଅନ୍ୟ ପ୍ରଶ୍ନକୁ ଛାଡ଼ି ଆଗେ ତା'ର ଉତ୍ତର ଲେଖିବା ପାଇଁ ଆରମ୍ଭ କରିଦିଏ । ବୁଢ଼ୀ ଏତେବେଳେ ଡାକ୍ତର ବାବୁଙ୍କ ଏ ପ୍ରଶ୍ନର ଉତ୍ତର ଦେବା ପାଇଁ ସବୁ ଯନ୍ତ୍ରଣା ପାସୋରି ପକେଇ ଆରମ୍ଭ କଲେ-ଯାହାକୁ ଅଳ୍ପରେ ଲେଖିଲେ ଜାଣି ହେବ ଯେ ତାଙ୍କର ବୋହୂକୁ ଗୋଟିଏ ଖର୍ଜୁରିଗଛ ସହିତରେ ତୁଳନା କଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କର ଦୈହିକ ଗଠନ ହେଲା-ତାଡ଼କା, ହିଡ଼ମ୍ବା କିମ୍ବା ସୂର୍ପଣଖା ଶ୍ରେଣୀୟ । ତା'ର ରୂପରୁ ଆସନ୍ନ ବୈଧବ୍ୟ ଯନ୍ତ୍ରଣା ଭୋଗ ସୂଚିତ ହୁଏ ଅର୍ଥାତ୍ ଉନ୍ନତ ଦଶନ ରାଶିକୁ ଲାଉମଞ୍ଜି ସହିତ, ଉନ୍ନତ ଢାଲୁ

କପାଳକୁ ଗୋଟିଏ ଉନ୍ନତ ପାହାଡ଼ ସହିତ ତୁଳନା କରାଯାଇପାରେ । ତା'ପରେ ଦୁଇଟା ଉଜ୍ଜ୍ୱଳ କୃଷ୍ଣ ମୋଟା ଭୂରୁକୁ ପୁଣି ବାୟସ ନିନ୍ଦିତ କଣ୍ଠସ୍ୱର ତ ଅଛି । ତା ଛଡ଼ା ପାଦ ଦୁଇଟିର ଗଠଣ, ହଳେ କଠଉ ସହିତରେ ତୁଳନୀୟ । ସେ ଇମିତି ଅଲକ୍ଷଣୀ ବୋହୂ କେବେ ଆଣି ନ ଥା'ନ୍ତେ, କେବଳ ଜଣେ ତାଙ୍କର ଦୂର ସମ୍ପର୍କୀୟ ଦେବର ଯା'ର ଆୟୁଷ ଅଛ ବୋଲି ବୁଢ଼ୀର ଦୃଢ଼ ବିଶ୍ୱାସ, ସେଇ ରଘୁଆ ବୁଢ଼ୀକୁ ଧନଲୋଭ ଦେଖେଇ ଭୁଲେଇ ଦେଲା । ଶେଷରେ ବୁଢ଼ୀ ଆକ୍ଷେପ କରି କହିଲେ- ଯେ ସେ ଧନ ଲୋଭରେ ଭୁଲିବାର ଲୋକ ନୁହଁନ୍ତି । ରଘୁଆ ତାଙ୍କୁ କ'ଣ କିମିଆ କରିଦେଲା.... !

ଏତେବେଳେ ବୁଢ଼ୀର ହାତର ଯନ୍ତଣା ପୂରାପୂରି ବିସ୍ମୃତ । ଡାକ୍ତର ବାବୁ ଏଥର ବୁଢ଼ୀକୁ କହିଲେ-ହଉ, ତୁମେ ଯାଅ,ମୁଁ ଗାଧୋଇବି ଆଉ ଡେରି କଲେ ହବ ନାହିଁ, ଯାଅ ଦିଗାକୁ କହିବ, ସେ ଯେମିତି ଅବିକା ଆସି ଡାକ୍ତରଖାନାରେ ମୋ ସହିତ ଦେଖା କରିବ...

ବୁଢ଼ୀ ଏଥର ଠେଙ୍ଗାଟି ଧରି ନିଜ ଯାଗାରୁ ଉଠି ବାହୁନା ସ୍ୱରରେ ଆବୃତ୍ତି କରୁ କରୁ ବାହାରିଲେ, ଯା'ର ସାରାଂଶ ହେଉଛି-ତାଙ୍କର ହାତର ଯନ୍ତଣା ସହସ୍ର ବୃଷ୍ଚିକ ଦଂଶନ ସମ, ମରଣରେ ତାଙ୍କର ଶାନ୍ତି ସୁନିଶ୍ଚିତ, ଏ ସଂସାରରେ କେହି କାହାରି ନୁହଁନ୍ତି । ନିଜର ପୁଅ ତ ଏ ଯନ୍ତଣା ବୁଝିଲା ନାହିଁ ଆଉ ଏ ଡାକ୍ତର ବାପୁଡ଼ା, ସେ ତ ପର ପୁଅ, ସେ କୁଆଡୁ ଏ ଯନ୍ତଣା ବୁଝିବ ?...

ଡାକ୍ତର ବାବୁ ଗାଧୋଇବାକୁ ବାହାରି ବୁଢ଼ୀର ବିଦାୟ ବେଳର ବାହୁନିବା ଶୁଣି ମନେ ମନେ ଭାବିଲେ- ରୋଗଗ୍ରସ୍ତ ଶାଶୁମାନଙ୍କ ପକ୍ଷରେ ବୋହୂର କୁତ୍ସାରଟନା କରିବା ଗୋଟାଏ ଭଲ ସାମୟିକ ବେଦନାନାଶକ ଔଷଧି ପରି କାମଦିଏ ।

# ଗୁରୁଚରଣର ଚାକିରି

ଗୁରୁଚରଣ ପିଅନ, ଗୋଟିଏ ବଡ଼ ଅଫିସ୍‌ରେ କାମ କରେ ।

ଗୁରୁଚରଣ ମଣିଷ ହେଲେ ମଧ, ମଣିଷର ଆକୃତିର ଅଧଫାଳ । ସେତିକିରେ ମଣିଷ ଦେହର ସବୁ ଯନ୍ତ୍ରପାତି ଖଞ୍ଜା ହୋଇଛି । ତା'ର ପରିଧାନରେ ଖଣ୍ଡେ ମଇଳା ଖାକି ହାଫ୍‌ସାର୍ଟ, ଧୋତି, ଗୋଡ଼ରେ ହଳେ ପୁରୁଣା ସଂସ୍କରଣର ଚଟି, ମୁଣ୍ଡରେ କଳା ଧଳା ଖୁଣ୍ଟା ଖୁଣ୍ଟା ବାଳ । ଗୁରୁଚରଣ ବୟସ୍କ ଲୋକ ହେଲେ ମଧ ତା'ର କଣ୍ଠସ୍ୱର ଗୋଟାଏ ପିଲା କଣ୍ଠ ପରି । କୁଁ କୁଁ: ହୋଇ କଥା କହେ ।

ହାକିମଙ୍କର କଡ଼ା ହୁକୁମ-ଗୁରୁଚରଣ ଅଫିସ୍ ଦୁଆର ଜଗି ବସିବ, କାହାରିକି ଅଫିସ୍ ଭିତରକୁ ଛାଡ଼ି ଦେବନାହିଁ ।

ହାକିମଙ୍କ ହୁକୁମ ମାନି ଅଫିସ୍ ଆରମ୍ଭ ବେଳରୁ ଗୁରୁଚରଣ ଅଫିସ୍ ଦୁଆର ଭିତରୁ ବନ୍ଦ କରି ଖଣ୍ଡିଏ ଟୁଲ୍ ଉପରେ ବସି ରହେ । ଅଫିସ୍‌ର କର୍ମଚାରୀ ଯେଉଁମାନେ ଠିକ୍ ସମୟରେ ଆସିଥାନ୍ତି ସେମାନେ ଅଫିସ୍ ଭିତରେ ବସି କାମ କରୁଥାନ୍ତି । ଯେଉଁମାନେ କିଛି ବିଳମ୍ବରେ ଆସନ୍ତି ଅଫିସ୍ ଦୁଆର ବନ୍ଦ ଥିବାର ଦେଖି ଡାକନ୍ତି ଗୁରୁଚରଣ, ଦୁଆର ଖୋଲ । ଗୁରୁଚରଣ ଭିତରେ ଥାଇ ଅନ୍ୟ ଲୋକ ଭାବି ପିଲା କଣ୍ଠରେ ଜବାବ୍ ଦିଏ-ନା, ଦୁଆର ଖୋଲିବି ନାହିଁ ହାକିମ ମନା କରିଛନ୍ତି ।

ପୁଣି ଶୁଣାଯାଏ-ଗୁରୁଚରଣ, ମୁଁ ଗୋବିନ୍ଦ ବାବୁ, ଦୁଆର ଖୋଲ ।

ଗୁରୁଚରଣ ଭିତରୁ ଦୁଆର ବନ୍ଦ କରିଥିଲେ ମଧ ଟିକିଏ ଫାଙ୍କ କରି ଦେଖେ, ତା'ର ଅଫିସ୍‌ର ଜଣେ କର୍ମଚାରୀ ।

ଗୁରୁଚରଣ ତରବରରେ ଉଠି ଦୁଆର ଖୋଲି କହି ପକାଏ-ଓଃ ଗୋବିନ୍ଦବାବୁ! ଗୋବିନ୍ଦବାବୁ ଭିତରକୁ ଗଲେ ।

ପୁଣି ଶୁଣାଯାଏ ଗୁରୁଚରଣ ଦୁଆର ଖୋଲିଲୁ! ଗୁରୁଚରଣ ଉତ୍ତର ଦିଏ-ନା, ହାକିମ ମନା କରିଛନ୍ତି ଦୁଆର ଖୋଲିବି ନାହିଁ ।

ପୁଣି ଶୁଣାଯାଏ-ଆରେ ମୁଁ ମ, ଦୁଆର ଖୋଲ, ମୁଁ ଚମ୍ପତି ବାବୁ ।

ଗୁରୁଚରଣ ଚମ୍ପତି ବାବୁ ଶୁଣି ଟିକିଏ ସନ୍ଦେହରେ ଅଟକି ଯାଏ । ଭାବେ ଚମ୍ପତି ବାବୁ କିଏ? ତାଙ୍କ ଅଫିସ୍‌ରେ ଚମ୍ପତିବାବୁ କେହି ନାହାନ୍ତି, ଏ କିଏ ସତେ ଚିହ୍ନା ଲୋକ ପରି ଡାକୁଛି? ଏ ନିଶ୍ଚେ କିଏ ଗୋଟାଏ ଅଫିସ୍ ଭିତରେ ପଶିବା ପାଇଁ ଫାଉମାରି କଥା କହୁଛି ।

ଗୁରୁଚରଣ ଉତ୍ତର ଦିଏ ନା, ଦୁଆର ଖୋଲା ହବ ନାହିଁ ହାକିମ ମନା କରିଛନ୍ତି । ଚମ୍ପତିବାବୁ ବାହାରେ ଥାଇ ପୁଣି ଡାକନ୍ତି-ଗୁରୁଚରଣ, ମୁଁ ଗିରିଧାରୀ ବାବୁ, ଦୁଆର ଖୋଲ । ଗୁରୁଚରଣ ଭାବେ, ଗିରିଧାରୀବାବୁ, ଚମ୍ପତିବାବୁ ଏ କିଏ ମ?

ଗୁରୁଚରଣ ଦୁଆର ଟିକିଏ ଫାଙ୍କ କରି ଦେଖେ, ଗିରିଧାରୀ ବାବୁ, ଚମ୍ପତିବାବୁ ଯେ ଡାକୁଛନ୍ତି, ତାଙ୍କ ପରି ଲୋକ ସେ କେବେ ଅଫିସରେ ଦେଖିନାହିଁ । ଏଣୁ ଗୁରୁଚରଣ ପୁଣି ପିଲା କଣ୍ଠରେ ଉତ୍ତର ଦିଏ-ନା, ଦୁଆର ଖୋଲିବି ନାହିଁ... ।

ବାବୁ ଗିରିଧାରୀ ଚମ୍ପତି ଦୁଇଦିନ ହେଲା ବଦଳି ହୋଇ ଆସିଛନ୍ତି । ଏଣୁ ସେ ଗୁରୁଚରଣକୁ ଚିହ୍ନିଥିଲେ ମଧ ଗୁରୁଚରଣ ତାଙ୍କୁ ଚିହ୍ନି ନାହିଁ । ଏଣୁ ବାହାର ଲୋକ ଭାବି ଦୁଆର ଖୋଲିବାକୁ ନାରାଜ, ଦୁଆର ଖୋଲେ ନାହିଁ ।

ବାବୁ ଗିରିଧାରୀ ଚମ୍ପତି ବାହାରେ ଥାଇ ଭାବିଲେ ଗୁରୁଚରଣ କ'ଣ ତାଙ୍କୁ ଚିହ୍ନି ପାରୁନି କି? କାରଣ ସେ ତ ମାତ୍ର ଦୁଇଦିନ ହେବ ବଦଳି ହୋଇ ଆସି ଏ ଅଫିସ୍‌ରେ ଯଏନ୍ କରିଛନ୍ତି, ବୋଧେ ଗୁରୁଚରଣ ସେଇଥିପାଇଁ ଦୁଆର ଖୋଲୁ ନାହିଁ ।

ଗିରିଧାରୀ ବାବୁ ପୁଣି ଡାକନ୍ତି-ଆରେ ଗୁରୁଚରଣ, ମୋତେ ଚିହ୍ନି ପାରୁନୁ କି? ମୁଁ ନୂଆ ଆସିଛି, ଦୁଆର ଖୋଲ।

ଅଫିସ୍ ବାହାରେ ସେତେବେଳେ ଆହୁରି କେତେକ ବାହାର ଲୋକେ ଗଦା ହୋଇ ଗଲେଣି, ଯେଉଁମାନଙ୍କର ଅଫିସ୍‌ରେ କାମ ଅଛି, ସେମାନେ ଗିରିଧାରୀ ବାବୁ ସେହି ଅଫିସ୍‌ର ଜଣେ କର୍ମଚାରୀ ହୋଇ ନିଜର ପରିଚୟ ଦେବା ସତ୍ତ୍ୱେ ଗୁରୁଚରଣ ଦୁଆର ନଖୋଲିବାର ଦେଖି କୁହାକୁହି ହୁଅନ୍ତି-ଦେଖ, ଜଣେ ଅଫିସର୍ କର୍ମଚାରୀ, ତାଙ୍କୁ ଗୁରୁଚରଣ ଦୁଆର ଖୋଲୁ ନାହିଁ ଆଉ ତମ କଥା ପଚାରେ କିଏ? ଗୁରୁଚରଣର ଭାରି ଦିମାକ୍ ହୋଇଗଲାଣି!! ତିନି ଚାରି ବର୍ଷ ହେଲାଣି ଗୋଟାଏ ଜାଗାରେ ରହିଲା, ଦିମାକ୍ ହବ ନାହିଁ କିମିତି?

ଗିରିଧାରୀ ବାବୁ ପୁଣି ଡାକନ୍ତି-ଗୁରୁଚରଣ ଦୁଆର ଖୋଲ, ହାକିମ ସିଆଡ଼େ ଖୋଜିବେଣି।

ଗୁରୁଚରଣ ଉଠି ପଡ଼ି ସନ୍ଦେହରେ ଦୁଆର ଖୋଲିଲା, ଫାଙ୍କ କଲା, ଯେତିକି ଗୋଟାଏ ଲୋକ ଆସିପାରିବ। ଗିରିଧାରୀ ବାବୁଙ୍କୁ ଗୁରୁଚରଣ ଯେମିତି ବାଟ ଦେଲା, ତା'ଠାରୁ ଗିରିଧାରୀ ବାବୁଙ୍କର ସାଇକେଲ ଖଣ୍ଡିକ ଧରି ପଶିବା ପାଇଁ ଦୁଆର ମେଲା ହୋଇଗଲା। ଦୁଆର ଅତ୍ୟଧିକ ମେଲା ହେବାର ଦେଖି, ଗିରିଧାରୀ ବାବୁଙ୍କର ସାଇକେଲ ସହ ପ୍ରବେଶ ସମୟରେ ବାହାରର ଆଉ ଦୁଇ ଚାରିଜଣ ଲୋକ ପଶି ଆସିଲେ। ଗୁରୁଚରଣ ସେମାନଙ୍କୁ ବାଧାଦେଇ କହିଲା ନା ଆଉ କାହାରିକି ଛାଡ଼ିବି ନାହିଁ।

ଗୁରୁଚରଣ ସେମାନଙ୍କୁ ବାଧା ଦେଲାରୁ ସେମାନେ ହାତ ଛିଆଡ଼ି ଦେଇ ଗୁରୁଚରଣଙ୍କୁ ଠେଲି ଦେଇ ଜବରଦସ୍ତି ଅଫିସ୍ ଭିତରକୁ ଗିରିଧାରୀ ବାବୁଙ୍କ ପଛେ ପଛେ ପଶିଗଲେ। ଗୁରୁଚରଣ ଦୁଆର ବନ୍ଦ କରି ଥକା ହୋଇ ଟୁଲ୍ ଉପରେ ବସି ଭାବିଲା, କ'ଣ କରିବ ସେ? ତିନି ଚାରିଟା ଲୋକ ଅଫିସ୍ ଭିତରକୁ ଚାଲିଗଲେ, ତାକୁ ତ ମାନିଲେ ନାହିଁ। ତା' ଦିହରେ ବା ବଳ କାହିଁ ସେମାନଙ୍କୁ ଠେଲି ବାହାର କରିଦେବ? ପୁଣି ସେମାନେ ତ କେଡ଼େ କେଡ଼େ ଥିଲାବାଲା ଲୋକ ପରି ମନେ ହେଉଛନ୍ତି, ତାଙ୍କୁ ହାତ ଦେଇ ଠେଲି ବାହାର କରିଦେବା କ'ଣ ତା ପକ୍ଷରେ ସହଜ ହେଉଛି! ଦିହରେ ଆଜି ନାହିଁ ନାହିଁ ତାକୁ ଚାପୁଡ଼ାଏ ବସେଇ ଦେବେ।

ଗୁରୁଚରଣ ପୁଣି ଶୁଣେ ବାହାରୁ କବାଟରେ ଠକ୍ ଠକ୍ କରି ଆଘାତ କରିବାର ଶବ୍ଦ। ଗୁରୁଚରଣ ନୀରବ ରହେ, ଠକ୍‌ଠକ୍ ଶବ୍ଦ ପୁଣି ଧକାଦବାର ଶବ୍ଦ କ୍ରମଶଃ ଶୁଣାଯାଏ। ଗୁରୁଚରଣ ଆଉ ନୀରବ ନରହି ଭିତରୁ ଆସିବା ଜାଗାରୁ ପିଲା କଣ୍ଠରେ ଉତ୍ତର ଦିଏ-କାହିଁକି ସେମିତି କବାଟ ବାଡ଼ଉଛ?

ଗୁରୁଚରଣ ଶୁଣେ-ଗୁରୁଚରଣ ଦୁଆର ଖୋଲିଲୁ। ନା ଖୋଲିବି ନାହିଁ, ହାକିମ ମନା କରିଛନ୍ତି।

ହାକିମ ମନା କରିଛନ୍ତି?

ହଁ।

ଦୁଆର ଖୋଲିବୁ ନାହିଁ? କ'ଣ କହୁଛ?

ନା।

ଗୁରୁଚରଣ ପୁଣି ଶୁଣେ-ଦୁଆର ଖୋଲିବୁ ନାହିଁ; ଦେଖିଲୁ, କିଏ ଠିଆ ହୋଇଛନ୍ତି।

ଏତେବେଳେ ବାହାରେ ଜଣେ ବଡ଼ ହାକିମ ଶ୍ରେଣୀର ଦୀର୍ଘକାୟ ବ୍ୟକ୍ତି ଆସି ଦଣ୍ଡାୟମାନ। ଗୁରୁଚରଣ ବାହାରୁ ଏ କଥା ଶୁଣିପାରି ଭୟ ଏବଂ ସନ୍ଦେହରେ ଦୁଆର ଅଳ୍ପ ଫାଙ୍କ କରି ଚାହିଁ ଦେଖେ। ଯା ଦେଖେ, ତା'ଛାତି ଥରିଉଠେ, ଭାବେ ବୋପାଲୋ, ଏ କିଏ ମ! ଦାମିକା ପୋଷାକ, ନେକ୍‌ଟାଇ, ମୁଣ୍ଡରେ ହ୍ୟାଟ୍, ଗାଲ ଫୁଲି ରହିଛି, ଝୁଁପୁଡ଼ା ନିଶ ହଳେ।

ଗୁରୁଚରଣ ଦୋ'ଘାଇରେ ପଡ଼େ, ଦୁଆର ଖୋଲିଲେ ଚାକିରି ଯିବାର ଭୟ, ଦୁଆର ନ ଖୋଲିଲେ ଚାକିରି ଯିବାର ଭୟ, ଏ ଯଦି ହାକିମଙ୍କ ସାଙ୍ଗ ହୋଇଥିବ!

ଅଫିସ୍ ଭିତରେ ହାକିମ, ଅଫିସ୍ ବାହାରେ ହାକିମ, ବ୍ୟବଧାନ କେବଳ ଅଫିସ୍ ଦୁଆର କବାଟ ଦି'ଖଣ୍ଡ ଆଉ ତା'ପରି ଜଣେ ତଳିଆ କର୍ମଚାରୀ ଦୁଆରପାଳ।

ଗୁରୁଚରଣର ଚାକିରି ଦୋଦୁଲ୍ୟମାନ ହେଲେ ମଧ ଅପେକ୍ଷା କରିଥିବା ହାକିମ ଶ୍ରେଣୀ ଲୋକକୁ ନଚିହ୍ନିଥିଲେ ମଧ ଭୟରେ ଉଠି ଦୁଆର ଖୋଲିଲା । ଦୁଆର ଯେତିକି ଫାଙ୍କକଲା, ସେଥିରେ ଅପରିଚିତ ପୃଥୁଳକାୟ ବ୍ୟକ୍ତି ଭିତରକୁ ପ୍ରବେଶ କଲାବେଳେ ଦୁଆର ଆହୁରି ମେଲା ହୋଇଗଲା । ଏହି ଦୁଆର ମେଲା ହେବା ଦେଖି ଭଦ୍ରଲୋକଙ୍କ ପଛେ ପଛେ ଆହୁରି ତିନି ଚାରିଜଣ ପଶି ଆସିଲେ । ଗୁରୁଚରଣ ବାଧା ଦେଲାବେଳେ ଆଗନ୍ତୁକ ଜଣେ ଲୋକର ଗୋଟାଏ ହାତର ଠେଲାରେ ଗୁରୁଚରଣ ଦୁଆର ପାଖରୁ କେତେ ହାତ ପଛକୁ ଛିଟିକି ଗଲା । ଦୁଆର ଆହୁରି ମେଲା ହେଲାରୁ ଆଉ କେତେଜଣ ଅଫିସ୍ ଭିତରକୁ ପଶିଗଲେ ।

ଗୁରୁଚରଣ କାହାକୁ କ'ଣ କହିବ ? ମନଦୁଃଖରେ ଦୁଆର ବନ୍ଦ କରି ଟୁଲ୍ ଉପରେ ବସି ଦୀର୍ଘ ନିଃଶ୍ୱାସଟାଏ ପକେଇଲା, ଭାବିଲା ଲୋକଟା କେଡ଼େ ଜୋର୍‌ରେ ତାକୁ ଠେଲି ଦେଲା ଆଉ ଅଳ୍ପକେ କାନ୍ଥରେ ତା'ମୁଣ୍ଡ ବାଡ଼େଇ ହେଇ ଯାଇଥାନ୍ତା ।

ଗୁରୁଚରଣ ପୁଣି ଶୁଣେ ବାହାରେ କବାଟର କଡ଼ିର ଖଡ୍‌ଖଡ୍ ଶବ୍ଦ । ଶବ୍ଦ ଅଳ୍ପ ଶୁଣାଗଲା ବେଳେ ଗୁରୁଚରଣ ଚୁପ୍ ରହିଲା । କଡ଼ାର ଖଡ୍ ଖଡ୍ ଶବ୍ଦ ବଢ଼ିଲା, ଗୁରୁଚରଣ ଚୁପ୍ । କଡ଼ାର ଶବ୍ଦ ଆହୁରି ଜୋର୍‌ରେ ଶୁଣାଯିବାରୁ ଗୁରୁଚରଣ ବିରକ୍ତ ହୋଇ ପିଲା କଣ୍ଠରେ ଭିତରୁ କହିଲା, କାହିଁକି ସେମିତି କଡ଼ାକୁ ଖଡ୍ ଖଡ୍ କରୁଛ ? ଦୁଆର ଖୋଲା ହବ ନାହିଁ ।

ଗୁରୁଚରଣ ବାହାରୁ ଉତ୍ତର ଶୁଣେ ଦୁଆର ଖୋଲା ହବ ନାହିଁ? ଆଚ୍ଛା ହଉ, ତୁ ଟିକିଏ ବାହାରକୁ ଆ, ତୋ ହାକିମୀ ଛଡ଼େଇ ଦଉଛି ।

ଗୁରୁଚରଣ ବାହାରୁ ଇମିତି ଧମକ ଶୁଣି ଭୟରେ କବାଟ ଫାଙ୍କକରି ଦେଖେ, ଗୋଟାଏ ଯବାନ୍ ଭେଣ୍ଡା ଟୋକା ମିଲିଟାରୀ ପୋଷାକ ପିନ୍ଧିଛି, ଡାଆଣ ହାତରେ ଘଡ଼ି ବାନ୍ଧିଛି, ଗଜରା ନିଶ । ଗୁରୁଚରଣ ଏ ରୂପ ଦେଖି ମନେ ମନେ ଶଙ୍କିତ ହୁଏ, ଭାବେ ଏ କ'ଣ ମିଲିଟାରୀ ଲୋକପରି ମନେ ହେଉଛି, ସେ ସବୁବେଳେ କ'ଣ ଅଫିସ୍ ଭିତରେ ବସିଥିବ ବାହାରକୁ ତ ଯିବ, ଯଦି ତା'ର ଘରକୁ ଯିବା ବାଟରେ ଛକି ବାଡ଼ାଏ !

ଗୁରୁଚରଣ ଭାବେ-ଏ ଲୋକକୁ ଛାଡ଼ିଦବା ଭଲ କିନ୍ତୁ ଛାଡ଼ିବ କିମିତି ? ଗୋଟାଏ କାମ କଲେ ହବ, ଦୁଆର ଖୋଲି ତାକୁ ପଚାରିବ, କ'ଣ ଧମକଉଛ ବାହାରକୁ ଆ, ତୋ ହାକିମୀ ଛଡ଼ାଇ ଦଉଛି ? ଇମିତି ପଚାରିବା ବେଳେ ଯଦି ଲୋକଟା ଜୋର୍ କରି ପଶିଆସେ ତାକୁ କିଛି ନକହି ଛାଡ଼ି ଦବ, ଅନ୍ୟ ଲୋକମାନେ ଜାଣିବେ ଲୋକଟା ଜବରଦସ୍ତି ପଶିଗଲା ।

ଗୁରୁଚରଣ ମନେ ମନେ ଏଇ କଥା ସ୍ଥିର କରି ଦୁଆର ଖୋଲି ଗୁଣ୍ଡା ଭଳି ଟୋକାଟାକୁ ତା'ର ଧମକ ଦବା କଥା ପଚାରିଲା । ଲୋକଟା ମଧ ଦୁଆର ଖୋଲା ହବାର ଦେଖି ଗୁରୁଚରଣ ଆଡ଼କୁ ମାଡ଼ି ଆସି ଭୁସ୍ କରି ଅଫିସ୍ ଭିତରକୁ ପଶିଗଲା । ଧକ୍କା ବାଜିବା ଭୟରେ ଗୁରୁଚରଣ ପାଖେଇ ଯାଉ ଯାଉ ପିଲା କଣ୍ଠରେ ଚିତ୍କାର କରି ଉଠିଲା, ଏ କ'ଣ ଜବରଦସ୍ତି ପଶିଯିବ ?

ଗୁରୁଚରଣ ଚିତ୍କାର କରୁ କରୁ ସେ ଗୁଣ୍ଡା ଭଳି ଟୋକା ପଛେ ପଛେ ଆଉ ଦୁଇଚାରିଜଣ ଯେ ପଶିବାକୁ ଚେଷ୍ଟା କଲେ, ଗୁରୁଚରଣ ଚକ୍ରବ୍ୟୂହରେ ଅଭିମନ୍ୟୁ ପ୍ରବେଶ କଲାପରେ ଆଉ ଅନ୍ୟ ପାଣ୍ଡବବାହିନୀଙ୍କୁ ଜୟଦ୍ରଥ ଭଳି ବ୍ୟୂହ ଦୁଆର ରୁଦ୍ଧ କରି ଦେଲା; ଆଉ କାହାରିକୁ ପଶିବାକୁ ଦେଲାନାହିଁ । ଗୁରୁଚରଣ ଟୁଲ୍ ଉପରେ ବସିପଡ଼ି ମନେ ମନେ ଆଶ୍ୱସ୍ତ ହେଲା; ଓଃ ଗୋଟାଏ ଜଞ୍ଜାଳ ତୁଟିଲା ।

ଅଫିସ୍ କାମ ଆଗେଇ ଚାଲିଲା, ଅଫିସ୍ ଭିତରେ କୋଳାହଳ, ବାହାରେ ମଧ କୋଳାହଳ; କାର୍, ମଟର, ସାଇକେଲ୍, ରିକ୍ସା ଶବ୍ଦ ।

ଅଫିସ୍ ବାହାର, ଭିତରର ମଧ ସ୍ଥଳରେ ଗୁରୁଚରଣ ଏକା, ଦୁଆର ବନ୍ଦ କରି ବସିଛି, ବାହାରେ ରୁଣ୍ଡ ହୋଇଥିବା ଲୋକମାନଙ୍କ ଆଲୋଚନା ଶୁଣାଯାଉଥାଏ-

ଦୁଆର କାହିଁକି ବନ୍ଦ ହେଉଛି ?

ଅଫିସ୍ ଭିତରେ ଲୋକେ ପଶି ଗୋଳମାଳ କଲେ ।

ସେଇଥିପାଇଁ ଦୁଆର ବନ୍ଦ କରି ଦେଇଛନ୍ତି ?

ଦୁଆର କ'ଣ ଆଉ ଖୋଲା ହବ ନାହିଁ?

ଡାକନ୍ତୁ, ପିଅନ ବସିଥିବ, ଯଦି ଖୋଲେ ।

କ'ଣ ହେଲା ? ଆମକୁ ଅଫିସ୍ ଦୁଆର ଖୋଲା ହବ ନାହିଁ ?

ଗୁରୁଚରଣ ଭିତରେ ଥାଇ ଇମିତି ଜଣକର ଚଢ଼ଉ କଥା ଶୁଣି ଭାବିଲା; କିଏ ଇମିତି କଥା କହୁଛି ? କୋଉ ହାକିମ ହୁକୁମା ଲୋକ କି !

ଗୁରୁଚରଣ ଶଙ୍କିତ ଚିତ୍ତରେ ଦୁଆର ଫାଙ୍କ କରି ଅନେଇ ଦେଖିଲା, ଜଣେ ବଡ଼ ମଣିଷଟାଏ, ପେଟ ଓଳିଆ ପରି ବାହାରିଛି, ମୁହଁରେ ପାଚିଲା ନିଶ, ଦାଢ଼ି, ମୁଣ୍ଡରେ ପାଚିଲା ବାଳ, ଖଦଡ଼ ଧୋତି, ପଞ୍ଜାବି, ହାତରେ ଗୋଟାଏ ଖଦଡ଼ ମୁଣି ଝୁଲେଇଛି । ଗୁରୁଚରଣ ଏ ରୂପକୁ ଦେଖି ତା'ର ମନେପଡ଼ିଲା ଏଇ ଲୋକ ସେଦିନ ବଜାର ଛକରେ କ'ଣ ବକ୍ତୃତା ଦଉଥିଲେ; ଜଣେ ନେତା ହବ କି କ'ଣ !

ଗୁରୁଚରଣ ଧଡ଼ପଡ଼ ହୋଇ କବାଟ ଖୋଲି ଦେଇ ଗୋଟାଏ ଓଳକି ହେଲା ।

ଭଦ୍ରଲୋକ ଜଣକ ନିଜେ ପଶି ଆସିଲେ, ତା'ପରେ ଆଉ ଦୁଇ ତିନି ଜଣଙ୍କୁ ସାଙ୍ଗରେ ଡାକି ନେଇ ଅଫିସ୍ ଭିତରେ ପ୍ରବେଶ କଲେ । ତା'ପରେ ଆଉ ଦୁଇ ତିନି ଜଣ ପଶିଗଲେ । ଆଉ କେତେଜଣ ପଶିବାକୁ ଚେଷ୍ଟା କରୁଥିଲେ । ଗୁରୁଚରଣ କୌଣସିମତେ ଦୁଆର ବନ୍ଦ କରି ଟୁଲ୍ ଉପରେ ବସି ପଡ଼ିଲା ।

ପୁଣି ଶୁଣାଗଲା ଚରଣ ଭାଇ, ଦୁଆର ଖୋଲିଲୁ; ଖୋଲମ । ଗୁରୁଚରଣ ଇମିତି ଭାଇ ସମ୍ବୋଧନ ଶୁଣି ଆଶ୍ଚର୍ଯ୍ୟ ହେଲା । ଚରଣ ଭାଇ ବୋଲି କିଏ ଡାକୁଛି ?

କବାଟ ଫାଙ୍କ କରି ଦେଖେ ରଙ୍ଗାଧର-ତା'ର ପରିଚିତ । ତା'ରି ପରି ଜଣେ ପିଅନ, ଅନ୍ୟ ଅଫିସ୍‌ରୁ ଡାକ ନେଇ ଆସିଛି ।

ଗୁରୁଚରଣ ଦୁଆର ଖୋଲି ଦେଇ ରଙ୍ଗାଧରକୁ ଦେଖି ହସି ଦେଲା ମାତ୍ରେ ରଙ୍ଗାଧର ଅଫିସ୍ ଭିତରକୁ ପଶିଗଲା । ତା'ପଛେ ପଛେ ଚାରି ଛ'ଜଣ ଲୋକ ପଶିଗଲେ । ଗୁରୁଚରଣ ସେମାନଙ୍କୁ ଅଟକେଇବାକୁ ଯାଇ ଠେଲା ପେଲା ହେବାରୁ ତା ପକେଟ୍‌ରେ 'ମଟ୍' କରି ଶବ୍ଦ ହେଲା । ଗୁରୁଚରଣ ଆଉ ଲୋକଙ୍କୁ ବାଧା ଦେବ କ'ଣ ନିଜ ପକେଟ୍‌କୁ ଦେଖୁ ଦେଖୁ ଆହୁରି ତିନି ଚାରି ଜଣ ଲୋକ ପଶିଗଲେ ।

ଗୁରୁଚରଣ କୌଣସିମତେ ଦୁଆର ବନ୍ଦ କରି ନିଜ ପକେଟ୍‌କୁ ଅନେଇଲା । ପଟେ କାଚଚୁଡ଼ି ଭାଙ୍ଗି ଖଣ୍ଡ ଖଣ୍ଡ ହୋଇ ଯାଇଛି । ତା'ର ସ୍ତ୍ରୀ ମାପ ଦେଇଥିଲା । ଆଜି ଅଫିସ୍ ଫେରନ୍ତା ତା ହାତ ଲାଗି କେତେପଟ କାଚ କିଣି ନବା ପାଇଁ । ମାପ ତ ଭାଙ୍ଗିଗଲା, ସେ କାଚ କିଣିବ କିମିତି ? କାଚ କିଣି ନନେଲେ ଘରକୁ ଗଲେ ତ ସ୍ତ୍ରୀ କତିରୁ କିଛି ଗାଳି କିମ୍ବା ସମାର୍ଜନୀ ପ୍ରୟୋଗର ସମ୍ଭାବନା ସୁନିଶ୍ଚିତ ।

କାଚପଟକ ଭାଙ୍ଗିଲା । ଏଣେ ଅଫିସ୍ ଭିତରେ ଲୋକ ଭିଡ଼ କଲେଣି । ଅବିକା ହାକିମ ବୋଧେ ଡକେଇ ଗାଳିଦେବେ, ଜୋରିମାନା କରିପାରନ୍ତି ।

ତା'ଆଖିରେ ଲୁହ ଉତୁରି ଆସିଲା । ସେ ଆଖି ପୋଛି ଦେଇ ଭାବିଲା କି କଷ୍ଟ ସେ ଭୋଗୁଛି । ଚାକିରି ଛାଡ଼ିଦେବାର ଇଚ୍ଛାଥିଲେ ମଧ୍ୟ ଚାକିରି ଛାଡ଼ି ହଉନି । ଚାକିରି କରି ତ ଦି'ବେଳା ଦି'ମୁଠା ପେଟପୁରା ଖାଇବାକୁ ମିଳୁନି, ଧାର କରଜରେ ବୁଡ଼ିଗଲାଣି । ଆଉ ଚାକିରି ଛାଡ଼ିଲେ ଅବସ୍ଥା କ'ଣ ହବ ? ଚାରିଟା ପିଲା, ସ୍ତ୍ରୀ ।

ଗୁରୁଚରଣ ମନେ ମନେ ଅନେକ ସମୟରେ ସ୍ଥିର କରେ, ଆଉ ତା'ଜୀବନ ରଖିବ ନାହିଁ, ରେଳଗାଡ଼ି ତଳେ ଶୋଇ ପ୍ରାଣ ହରେଇ ଦବ । ପୁଣି ରେଳଗାଡ଼ି ତଳେ ଶୋଇ ମରିବାର ଯନ୍ତ୍ରଣା ଭାବି ସେଥିରୁ ନିବୃତ୍ତ ହୁଏ । ପୁଣି ଭାବେ ସେ ଅଛି ବୋଲି ତ ଭାରିଯା ପିଲାଙ୍କର ତୋକପାଣି ଚଳୁଛି ।

ଗୁରୁଚରଣ ଇମିତି ଚିନ୍ତା କରୁ କରୁ ଅଫିସ୍ ଭିତରୁ କଲିଂବେଲ୍‌ର ଶବ୍ଦ ଶୁଣାଗଲା । ଗୁରୁଚରଣ ଚମକି ପଡ଼ିଲା ଏଇ ହାକିମ ଡାକିଲେ, ନା ବଡ଼ବାବୁ ଡାକିଲେ ?

ନା, ଏ ଡାକ ହାକିମଙ୍କର ନୁହେଁ ବଡ଼ବାବୁ ଡାକୁଛନ୍ତି । ଗୁରୁଚରଣ ନିଜ ଜାଗାରୁ ଉଠିପଡ଼ି ବଡ଼ବାବୁଙ୍କ ପାଖକୁ ଦଉଡ଼ିଲା । ଗୁରୁଚରଣ ବଡ଼ବାବୁଙ୍କ ଅଫିସ୍ ଭିତରେ ଯାଇ ଦେଖେ ଲୋକ ଭର୍ତ୍ତି, ଭାରି ଗୋଳମାଳ କରୁଛନ୍ତି ।

ଗୁରୁଚରଣ ଅତି ନମ୍ର ଭାବରେ ବଡ଼ବାବୁଙ୍କ ସାମନାରେ ଗୋଟିଏ ପ୍ରଶ୍ନବାଚକ ଚିହ୍ନ ପରି ଠିଆ ହେଲା ।

ବଡ଼ବାବୁ ରାଗରେ ପ୍ରଶ୍ନ କଲେ, ହଇରେ ତୁ ଅଫିସ୍ ଦୁଆର ବନ୍ଦ କରି ଜଗିଥିଲୁ ନା ଶୋଇଥିଲୁ ?

ଗୁରୁଚରଣ ପିଲା କଣ୍ଠରେ ଉତ୍ତର ଦେଲା-ନାହିଁ ଆଜ୍ଞା ଶୋଇବି କାହିଁକି ? ଦୁଆର ବନ୍ଦ କରିଥିଲି ।

କାହାକୁ ଜଗିଥିଲୁ ? ଇଡିଅଟ୍ । ଏ ଲୋକମାନେ ଅଫିସ୍ ଭିତରେ ପଶିଲେ କିମିତି ?

ଆଜ୍ଞା, ମୋତେ କିଏ ମାନୁଛନ୍ତି ? ମୋତେ ତ ଧକ୍‌କା ଦେଇ ଆସୁଛନ୍ତି, ମୁଁ କ'ଣ କରିବି ?

ତା ହେଲେ ମୁଁ ଏଥର ଦୁଆର ବନ୍ଦ କରି ଜଗେ, ତୁ ଅଫିସ୍ କାମ କର । ଏଇଟାକୁ ବାହାର କରିଦେଲେ ଭଲ ହବ, ଅକର୍ମା କୋଡ଼ିଆଟାଏ ।

ଗୁରୁଚରଣ କ'ଣ ବା ଯୁକ୍ତି ତର୍କ କରି ବଡ଼ବାବୁଙ୍କୁ ତା'ର ଅସୁବିଧାର କଥା ବୁଝାଇବ, ଏଣୁ ନିରତ୍ତର ।

ବଡ଼ବାବୁ କିଛିକ୍ଷଣ ପରେ ବିରକ୍ତ ହୋଇ କହିଲେ, ଯା ବାହାର । ଠିଆ ହେଲୁ କାହିଁକି ? ଏ ସବୁ ଲୋକମାନଙ୍କୁ ପଦାକୁ ଚାଲିଯିବାକୁ କହ ।

ଗୁରୁଚରଣ ବଡ଼ବାବୁଙ୍କ ଆଦେଶ ଅନୁଯାୟୀ ପିଲା କଣ୍ଠରେ ସମସ୍ତଙ୍କୁ ଅନୁରୋଧ କଲା, ଚାଲନ୍ତୁ, ସବୁ ପଦାକୁ ଚାଲନ୍ତୁ, ଅଫିସ୍ ଭିତରେ ଗହଳି କଲେ ବାବୁ ବିରକ୍ତ ହଉଛନ୍ତି ।

ଗୁରୁଚରଣର ଏ ପିଲାକଣ୍ଠର ନିର୍ଦ୍ଦେଶକୁ କିଏ ଶୁଣୁଛି ? ଗୁରୁଚରଣର ମୁହଁକୁ ଅନାନ୍ତି, ଗୁରୁଚରଣ ଭୟରେ ଚପିଯାଏ, କୌଣସି ମତେ ବଡ଼ବାବୁଙ୍କ ସାମ୍‌ନାରୁ ଖସିଆସି ନିଜ ଟୁଲ୍ ଉପରେ ବସି ମନେ ମନେ ଭାବେ, ଏ ଲୋକମାନେ ପଶିବେ, ମୁଁ ଏମାନଙ୍କ ଲାଗି ଶୋଧା ଖାଇବି । ଲୋକମାନେ କେହି ଟିକିଏ ହେଲେ ତା' କଥା ଶୁଣୁ ନାହାନ୍ତି, ଲୋକଗୁଡ଼ା କେତେ ଉଦ୍ଧତ ହେଉଛନ୍ତି ।

ହାକିମଙ୍କଠାରୁ ଗାଳି ଶୁଣିବା, ବଡ଼ବାବୁଙ୍କଠାରୁ ଧମକ ଶୁଣିବା, ଲୋକଙ୍କଠାରୁ ଧକ୍‌କା ଖାଇବା, ଧମକ ଶୁଣିବା, ଲାଞ୍ଛିତ ହବା, ଗାଳି ଶୁଣିବା; ଆଖିରୁ ଲୁହ ଗଡ଼େଇବା ଏ ହେଲା ଗୁରୁଚରଣର ଦୈନନ୍ଦିନ ଚାକିରିର ଘଟଣା । ଏ ସବୁ ତାକୁ ଅସହ୍ୟବୋଧ ହେଲେ ମଧ ଯେଉଁଦିନ ଧନୀ, ଭଲ ମଣିଷ, ଯେଉଁମାନେ ଅଫିସ୍ ଭିତରେ ପଶି ନିଜର କାର୍ଯ୍ୟ ସିଦ୍ଧି ପରେ ଗୁରୁଚରଣ ହାତରେ କିଛି ବକ୍‌ସିସ୍ ସ୍ୱରୂପ କିଛି ଧରେଇ ଦେଇଯାନ୍ତି, ସେଦିନ ଗୁରୁଚରଣର ସବୁ କଷ୍ଟର ଉପଶମ ହୋଇଯାଏ । ସେ ସବୁ ଭୁଲିଯାଇ ପୁଣି ସେଇ ଧକ୍‌କା, ଗାଳି, ଲାଞ୍ଛନା, ଧମକ ସହ୍ୟ କରିବା ପାଇଁ ଆଗାମୀ ଦିନ ପାଇଁ ସବୁ ଶକ୍ତି ଠୁଳ କରି ରଖେ । ଗୁରୁଚରଣର ପ୍ରାୟ କେବେ କିଛି ଇମିତି ହାତ ଚିକ୍‌କଣ ହୁଏ ।

ଯେଉଁଦିନ ଗ୍ରାହକ ଗୁରୁଚରଣର ହାତ ଶୁଖିଲା ହୁଏ, ସେଦିନ ଭାବେ ସେଇ ରେଳଗାଡ଼ି ତଳେ ପ୍ରାଣ ହାରିବା କଥା, ପୁଣି ଅତି ଦୁଃଖରେ ଭାବେ ସେ କ'ଣ କରିବ ? ହାକିମ କି ବଡ଼ବାବୁ କେହି ତା' କଥା ବୁଝିଲେ ନାହିଁ, ଯେତେ ଚେଷ୍ଟା କଲେ ମଧ ତାକୁ ଅନ୍ୟ କୌଣସି କାମ ନଦେଇ, ଏଇ ଅଫିସ ଦୁଆର ଜଗିବା କାମ ତାକୁ ଦେଲେ ।

ସବୁ କଥା ସହ୍ୟ କରି ଅଫିସ୍ କାମ ସାରି ସେଦିନ ଗୁରୁଚରଣ ଶୁଖିଲା ହାତରେ ଘରକୁ ଫେରିଲା ମନ ଦୁଃଖରେ ।

ଘରେ ପହଞ୍ଚି ଦେଖେ ଦୁଆର ବନ୍ଦ । ଗୁରୁଚରଣ ନିଜର ସ୍ତ୍ରୀକୁ ଡାକିଲା, ଗଉରା ବୋଉ, କବାଟ ଖୋଲିଲୁ ।

ଗୁରୁଚରଣ ଡାକିବା ମାତ୍ରେ ଭିତରୁ ସ୍ତ୍ରୀ କଣ୍ଠରୁ ଶୁଣାଗଲା, ଯଉ ରେଶମ କାଚ ଆଣିବାକୁ କହିଥିଲି ଆଣିଛୁ ? କ'ଣ କହୁଛୁ ?

ଗୁରୁଚରଣ ବାହାରେ ଠିଆ ହୋଇ ମନେ ମନେ ଭାବିଲା, ତା' ସ୍ତ୍ରୀ ଯେଉଁ କାଚ ଆଣିବା ପାଇଁ ମାପ ଦେଇଥିଲା, ସେ ପଟକ ତ ଅଫିସ୍‌ରେ ଠେଲାପେଲାରେ ଭାଙ୍ଗିଗଲା । ଆଉ କାଚ ଆଣିବ କେମିତି ?

ଗୁରୁଚରଣ ପୁଣି ଘର ଭିତରୁ ଶୁଣିଲା, କହ ଯଦି କାଚ ଆଣିଚୁ ତ କବାଟ ଖୋଲିବି, ନାହିଁ ତମର ସିଆଡ଼େ ।

ଗୁରୁଚରଣ ସ୍ତ୍ରୀର ଇମିତି କଟୁକଥା ଶୁଣି ଏବଂ କବାଟ ବନ୍ଦ ହବାର ଦେଖି ମନେ ମନେ ଭାବିଲା, ଅଫିସ୍‌ରେ ସେ ଯେତେ ଲୋକଙ୍କୁ ଦୁଆର ବନ୍ଦ କରୁଛି ଅଭିକା ତା'ରି ଫଳ ନିଜେ ଭୋଗୁଛି, ଦରକାରବେଳେ ଜଣକୁ ଦୁଆର ବନ୍ଦ କରିବା କେଡ଼େ କଷ୍ଟର କଥା ।

ଗୁରୁଚରଣ ପୁଣି ଭାବିଲା, ଆଜି ତା' ସ୍ତ୍ରୀକୁ ବାଡ଼େଇବ । ପୁଣି ଭାବିଲା ତା'ର ସ୍ତ୍ରୀର ଆକୃତି ଡିଆସିଲି ଖୋଳପରି ହେଲେ, ତା' ଆକୃତି ଡିଆସିଲି କାଠିପରି । ଏଣୁ ତା' ସାଙ୍ଗରେ ଲାଗିବା ମାନେ ନିଜେ ପୋଡ଼ି ହୋଇ ଦଗ୍‌ଧ ହବା ଛଡ଼ା ଆଉ କିଛି ନୁହେଁ ।

ଗୁରୁଚରଣ ପିଲା କଣ୍ଠରେ ବାହାରୁ ସ୍ତ୍ରୀକୁ କହିଲା, ମୁଁ ଯଦି ମରିବି, ତୁ କାଚ ପିନ୍ଧିବୁ କିମିତି ?

ଘର ଭିତରୁ ପ୍ରତ୍ୟୁତ୍ତର ଆସିଲା, ଯଉ କାଚଗୁଡ଼ା ଆଣି ପିନ୍ଧିବାକୁ ଦଉଛୁନା, ତା'ଠୁ ରାଣ୍ଡ ହାତରେ ରହିବା ଆହୁରି ଭଲ ।

ଗୁରୁଚରଣ ପିଲା କଣ୍ଠରେ ବାହାରୁ ସ୍ତ୍ରୀକୁ ପୁଣି ଡାକି ମିଛରେ କହିଲା, ତୁ କବାଟ ଖୋଲ ମୁଁ କାଚ ଆଣିଛି; ସେମିତି କାହିଁକି ହଉଛୁ ?

ସ୍ତ୍ରୀ କାଚ ଆଣିଥିବା କଥା ଶୁଣି ଆସି ଧଡ଼୍ କରି କବାଟ ଖୋଲି ଦେଇ କହିଲା; ଯୋଗା ପୁରୁଷ ଯାଇଥିଲେ ଚାକିରି କରିବାକୁ, କାହିଁ କାଚ ଦେଖେ ।

ଗୁରୁଚରଣ ଅତି ନମ୍ର ଏବଂ କାତର କଣ୍ଠରେ କହିଲା, ଚାଲ ଦେଖଉଛି ।

ଗୁରୁଚରଣ ଚୋର ପରି ଧୀର ପଦରେ ଗୃହ ପ୍ରବେଶ କଲା ।

# ଅବୁଝ

ସେତେବେଳେ ନରେନ୍ଦ୍ର ଗୋଟିଏ ହାସପାତାଳର ଖଟିଆରେ ଥାଏ । ତା'ର ରୋଗ ଚିହ୍ନା ପଡୁ ନଥାଏ । ରୋଗଟା ପ୍ରକୃତ କ'ଣ ଧରାପଡୁ ନଥାଏ ଅଥଚ ସେ ରୋଗୀ, ଚାଲିପାରୁନି, ବଳ ପାଉନି, ଅଥଚ ବାହାରୁ ଦେଖିଲେ କେହି କହିବନି ଯେ ନରେନ୍ଦ୍ର ରୋଗୀ । ଇମିତିକି ନରେନ୍ଦ୍ର ଯେଉଁଦିନ ପ୍ରଥମେ ରୋଗୀ ବୋଲି ଡାକ୍ତରଖାନା ଖଟିଆରେ ରହେ, ତାକୁ ଖଟିଆ ମିଳେ, ସେଦିନ ସନ୍ଧ୍ୟାବେଳେ ଖଟିଆରେ ବସିଛି, ୱାର୍ଡ଼ର ବେହେରା ଆସି ନରେନ୍ଦ୍ରକୁ ପଚାରିଲା-ବାବୁ! ରୋଗୀ କିଏ ? ନରେନ୍ଦ୍ର ଉତ୍ତର ଦେଲା-ମୁଁ ନିଜେ, ବେହେରା ପୁଣି ପଚାରିଲା-ଆପଣ ନିଜେ ? ଆପଣଙ୍କୁ କି ରୋଗ ହୋଇଛି ? ଆପଣଙ୍କ ଚେହେରାରୁ ତ କିଛି ଜାଣି ହେଉନି ।

ନରେନ୍ଦ୍ର କହିଲା-ହଁ, ମୋର ଦେହ ଖରାପ ଅଛି । ଅତି ଦୁର୍ବଳ ଲାଗୁଛି, ରାତିରେ ଭଲ ନିଦ ହଉନି, ସବୁବେଳେ ଭୟ ହେଉଛି ।

.....ବେହେରା ଦୁଃଖସୂଚକ କଣ୍ଠରେ କହିଲା-ହଁ, ହେଇଥିବ, ବାହାରୁ ସିନା ଆମେ ଦେଖୁଛେ ଭଲ କିନ୍ତୁ ଭିତରେ ଯଦି ଘୁଣ ଲାଗିଥିବ, କିଏ କହିବ..... ।

ନରେନ୍ଦ୍ର ୱାର୍ଡ଼ର ପ୍ରଥମ ଖଟିଆରେ ଥାଏ । ତା'ର ବାଁ ପଟେ କାନ୍ଥ, ଡାହାଣ ଆଡ଼େ ରୋଗୀ ମାଳିଗୁନ୍ଥା ହେଲା ପରି ଗୋଟାକ ପରେ ଗୋଟାଏ ଖଟିଆରେ ପଡ଼ିଛନ୍ତି, କିଏ କା'ର ଖବର ନେଉଛି ? କିଏ କାହାକୁ ଚିହ୍ନୁଛି ? ଦିନ ରାତି ଚିତ୍କାର, ଔଷଧଖିଆ, ପଥିଖିଆ, ରୋଗରୁ ମୁକ୍ତି ପାଇଁ ଭଗବତ୍ ପ୍ରାର୍ଥନା । କିଏ କେବଳ ଉପରେ ଘୂରୁଥିବା ବିଜୁଳି ପଙ୍ଖାକୁ ଚାହିଁ ନୀରବରେ ପଡ଼ିଛି । କଥା କହିବାର ବଳ ନାହିଁ, କିଏ ହତାଶ ହୋଇଯାଉଛି-ଆଉ ଏ ଯାତ୍ରା ବନ୍ଦ ହବ ନାହିଁ । ଏଇଥରକ ଛୁଟି କିଏ ଆଶା କରୁଛି-ଆଉ ଦିନ କେଇଟା ନିୟମିତ ଔଷଧି, ପଥି ଖାଇ ଜଗି ଚଳିଲେ ହେଲା, ପୁଣି ନବ କଳେବର, କା'ର ଜୀବନ-ବୋଇତ ଯଦି କୂଳରେ ଲାଗିଲାଣି ତ, କା'ର ଜୀବନ-ବୋଇତ କାଳ ଦରିଆରେ ଚାହୁଁ ଚାହୁଁ ବୁଡ଼ିଯାଉଛି । ଏଇ ଡାକ୍ତରଖାନା ଖଟିଆରୁ କେତେ ଏପାରି ସେପାରି ହେଉଛନ୍ତି । ଯେ ଏପାରିରେ ରହିଲା, ତା'ରି ଦୁନିଆ, ତା'ର ଏଠୁ ବିଦାୟ ଲାଗି ରିକ୍ସା ବଗି, କାର୍ ଲାଗୁଛି, ତାକୁ ବନ୍ଧୁ-ବାନ୍ଧବ ଆସି ଆନନ୍ଦରେ ଘରକୁ ନେଇଯିବା ପାଇଁ ଗୁଣ୍ଡ ହେଉଛନ୍ତି, ସେ ହସଖୁସିରେ ବିଦାୟ ନେଉଛି ।

ଆଉ ଯେ ସେପାରିକି ଗଲା-ତା ଲାଗି କାଠ, ବାଉଁଶ, ନୂଆ ଲୁଗାର ଯୋଗାଡ଼ ଚାଲିଛି । ସେ ଘୋଡ଼ାଘାଡ଼ି ହୋଇ ଖଟିଆରେ ଚିର ନିଦ୍ରାରେ ଶୋଇଛି, ତା'ର ନିଦ ଆଉ ଭାଙ୍ଗିବ ନାହିଁ । ତାକୁ ନିଅ, ଶୀଘ୍ର ନିଅ, ସେ ପଚିଯିବ, ଗନ୍ଧ ହେବ ଆଉ ବିଳମ୍ବ କରିବା ଉଚିତ୍ ନୁହେଁ । ବୁଲା କୁକୁର ଆସି ମୁର୍ଦାର ଗନ୍ଧରେ ତିନିଥର ପଇଁତରା ମାରୁଛି, କାଉ ନିକଟବର୍ତ୍ତୀ ଗଛରେ ବସି ଡାକ ଛାଡ଼ିଛି; ଶେଷରେ ସେ ଚାରିଜଣଙ୍କ କାନ୍ଧରେ ଚଢ଼ି ବାଉଁଶ କେଇ ଖଣ୍ଡରେ ବୁହା ହୋଇ ବିଦାୟ ନେଇ ଯାଉଛି... ।

ନରେନ୍ଦ୍ରର ଡାକ୍ତରଖାନା ଖଟିଆରେ ରହିବା ଏଇ ପ୍ରଥମ । ସେ ପୁଣି ଭାବିଲା-ଜେଲ୍‌ଖାନାରେ କଏଦୀଙ୍କ ମେଳ, ଅଫିସ୍, କଚେରୀରେ କର୍ମଚାରୀଙ୍କ ମେଳ, ସ୍କୁଲ କଲେଜରେ ଛାତ୍ର ଶିକ୍ଷକଙ୍କ ମେଳ, ରେଳ ଷ୍ଟେସନ୍‌ରେ, ବସ୍‌ଷ୍ଟାଣ୍ଡରେ ମେଳା ମଉଛବରେ ଯାତ୍ରୀଙ୍କ ମେଳ, ସିନେମା ଥିଏଟରରେ ଦର୍ଶକଙ୍କ ମେଳ; ମନ୍ଦିର, ଗୀର୍ଜା, ମସ୍‌ଜିଦ୍‌ରେ ଭକ୍ତ, ଉପାସକଙ୍କ ମେଳ; ଡାକ୍ତରଖାନାରେ ରୋଗୀଙ୍କ ମେଳ । ଏଠା ସକାଳ, ସନ୍ଧ୍ୟା, ଦିନ, ରାତି ଏକ ଭିନ୍ନ ପ୍ରକାରର । କେବଳ ଗୋଟିଏ ପ୍ରକାରର ଅଭିନୟ । ଯିବା, ଆସିବା; କିଏ ଭଲରେ ଯାଉଛି ତ, କିଏ ମନ୍ଦରେ ଯାଉଛି, ଯେ ମନ୍ଦରେ ଯାଉଛି ସେ ଏକବାରେ ଇହଧାମରୁ ବିଦାୟ ନେଉଛି, ଆଉ ଫେରିବାର ବାଟ ନାହିଁ ।

ନରେନ୍ଦ୍ର ଦେଖୁଛି-ଡାକ୍ତରଖାନାର କର୍ମଚାରୀ ଡାକ୍ତର, ଡାକ୍ତରାଣୀ, ନର୍ସ, ବେହେରା, ପୂଝାରୀ, ମେହେନ୍ତର ସମସ୍ତେ ଦେଖୁଛନ୍ତି-ଆଖି ଆଗରେ ମଣିଷ ଜୀବନର ପରିଣତି, ଜୀବନଟା କ'ଣ? କିନ୍ତୁ ତେବେ ସୁଦ୍ଧା ସେମାନେ ଭାବୁଛନ୍ତି-ସେହିମାନେ ଯେମିତି ଚିରଦିନ ଏ ଦୁନିଆଁରେ ସ୍ଥାୟୀ। ମୃତ୍ୟୁ ତାଙ୍କର ନାହିଁ, ଯେଉଁମାନେ ରୋଗୀ ଖଟିଆରେ ପଡ଼ିଛନ୍ତି, ସେମାନେ ଆଉ କି ପ୍ରାଣୀ, ସେମାନେ ମଣିଷ ନୁହନ୍ତି, ରୋଗ କେବଳ ଏଇ ଜାତୀୟ ପ୍ରାଣୀମାନଙ୍କ ପାଇଁ। ଡାକ୍ତର, ନର୍ସ, ବେହେରା, ମେହେନ୍ତର ଏମାନଙ୍କ ପାଇଁ ନୁହେଁ। ଏମାନେ ଚିରଦିନ ଯିମିତି ସୁସ୍ଥ ସବଳ ହୋଇ ରହିବେ ଦୁନିଆ ଯାଙ୍କରି ପାଇଁ। ଯେଉଁ ମଣିଷ ମଲା, ଯାଙ୍କ ଆଖିରେ ଯେମିତି ଆଉ କି ଜୀବନଟାଏ ମଲା, ବିଲେଇ, କୁକୁରଟାଏ ମଲା ପରି କୋକେଇ ବନ୍ଧା ହେଉଛି, ସେଥିରେ ଯେମିତି ମଣିଷ ଯିବ ନାହିଁ, ଆଉ ଗୋଟାଏ କ'ଣ ବୁହା ହୋଇଯିବ। ସେଇଠି ମଣିଷ ଚିତ୍କାର କରି କାନ୍ଦୁଛି, ସେଇଠି ମଣିଷର ହାସ୍ୟ-ପରିହାସରେ ୱାର୍ଡ଼ କମ୍ପି ଉଠୁଛି। ଏଇଠି ପର-ଆପଣାର ପ୍ରକୃତ ପରୀକ୍ଷା କ୍ଷେତ୍ର।

କେହି ରୋଗରେ ପଡ଼ି ଭାବୁଛି-ମୁଁ ତା'ର ଏତେ କରିଥିଲି, ମୁଁ ରୋଗରେ ପଡ଼ିଛି, ସେ ଥରେ ମୋତେ ଦେଖିବାକୁ ଆସିଲାନି। କେହି ତା'ର ପୁଣି କତିରେ ବସୁଛି, ସାନ୍ତ୍ୱନା ଦେଉଛି-ବ୍ୟସ୍ତ ହୁଅନା, ଭଲ ହୋଇଯିବ। ଭଲରେ ଘରକୁ ଫେରିଯିବ। ରୋଗ କ'ଣ ମଣିଷକୁ ହଉନି? ଟିକିଏ ସହ୍ୟ କରିବାକୁ ହେବ, କ'ଣ ଖାଇବାକୁ ମନ ହେଉଛି, କୁହ ଆଣି ଦେବି....।

ଏଇଠି କେତେ ସ୍ନେହ, କେତେ ମମତା, କେତେ ପ୍ରେମ-ଯେ ନର୍ସ ଦୈନିକ ଯେ ରୋଗୀର ଦେହର ଉତ୍ତାପ ଦେଖୁଛି, ଭଲ ମନ୍ଦ ପଚାରୁଛି, ଦେହ ଥଣ୍ଡା ଗରମ ପାଣିରେ ପୋଛା-ପୋଛି କରି ଦେଉଛି, ସେ ନର୍ସ ଯଦି ଦିନେ ନଆସିଲା, ତା'ର ଅନ୍ୟ କୁଆଡ଼େ ଡିଉଟିରେ ଚାଲିଗଲେ, ସେ ରୋଗୀକୁ କିଛି ଭଲ ଲାଗୁନି, ସେ ଦିନ ତମାମ ଅସ୍ତବ୍ୟସ୍ତ। ମନେ ମନେ ତାକୁ ଭାବୁଛି।

ଡାକ୍ତର ଖଟି ଖଟି ମଝିରେ ମଝିରେ କେତେବେଳେ ବସି ପଡ଼ି ଅଳ୍ପ ସମୟ ଅବସର ଭିତରେ ଯଦି ତା'ର ସହକର୍ମିଣୀ ଚେନି କଣ୍ଢେଇ ଭଳି ନର୍ସ ସାଥୀରେ କିଛି ସମୟ ପାଇଁ ହସଖୁସିରେ ବାକ୍ୟାଳାପ କରିପାରିଲା, ସେ ଭାବିଲା...ଏଥର ଏ ମୋ ହାତ ମୁଠାକୁ ଆସିଲା। ନର୍ସ ମଧ୍ୟ ସେହି ଭଳି ତା'ର ଅବସର ବେଳେ ମଝିରେ ମଝିରେ ତରୁଣ ଡାକ୍ତରଙ୍କ ସାଥୀରେ କିଛି ସମୟ ବାକ୍ୟ ବିନିମୟ କରି ପାରିଲେ, ସେ ମଧ୍ୟ ଭାବୁଛି, ଏ ମୋର, ମୋ ଛଡ଼ା ଏ ଆଉ କାହାରି ନୁହନ୍ତି....।

ଇମିତି ରୋଗୀ ସମ୍ମିଳନୀର ପ୍ରଧାନ ପୀଠ ଡାକ୍ତରଖାନାର ୱାର୍ଡ଼ରେ ରହି ଦୈନିକ ଇମିତି କେତେ କଥାର ଚିନ୍ତା କରୁ କରୁ ଦିନେ ସକାଳେ ସାଗର ମନ୍ଥନରୁ ବିଷ ଉଦ୍ଭବ ହେବା ଭଳି ନରେନ୍ଦ୍ରର କାନରେ ବାଜିଲା।

-ମୁଁ କ'ଣ ରୋଜ ଦଉଥିବି?

-କାହିଁକି ଦବୁ ନାହିଁ, ତୋ ବୋପା ଯେ ସେ ଦବ....।

-ମୁଁ କ'ଣ ତୁମ ଚାକର?

-ଚାକର ନୁହେଁ ତ ଦଉଥିଲୁ କେମିତି?

ଖାଲି ଏତିକି ସଂଳାପ ନୁହେଁ, ଏଥି ସଙ୍ଗେ ଜଣେ ଜଣକୁ ଶଶୁରନନ୍ଦନ, ପତ୍ନୀଙ୍କର ଭ୍ରାତା ସମ୍ପର୍କରେ ସମ୍ବୋଧନ କରିବାର ଶୁଣାଯାଉଥାଏ।

ନରେନ୍ଦ୍ର ଆଶ୍ଚର୍ଯ୍ୟ ହୋଇ ଘଟଣା କ'ଣ ଅନୁସନ୍ଧାନ କରିବାକୁ ଯାଇ ଦେଖେ-ଗୋଟିଏ ଯୁବକ ବାରନ୍ଦାରେ ଠିଆ ହୋଇ କାନ୍ଦ କାନ୍ଦ ହୋଇ କେତେକ କଥାର ଉତ୍ତର ଦଉଛି।

ଆଉ ଜଣେ ତା'ରି ସାମନାରେ ବୟସ୍କ ଲୋକ ବସି, ନିଜର ସଦ୍ୟ ରୋଗମୁକ୍ତ ଦେହରେ ତୈଳ ମର୍ଦ୍ଦନ କରୁଛି ଏବଂ ପଦେ ପଦେ ବେଶ୍ ରସାଳ ଏବଂ ଉତ୍କଟ ତୀକ୍ଷ୍ଣ ବାକ୍ୟବାଣ ଯୁବକକୁ ହାଣୁଛି।

ନରେନ୍ଦ୍ର ବାରନ୍ଦାକୁ ଯାଇ ଯୁବକକୁ ପ୍ରଶ୍ନ କଲା-କ'ଣ ହେଇଛି? ତୁମେ କାନ୍ଦୁଛ କାହିଁକି?

ଯୁବକ ଅତି ନମ୍ର ଭାବରେ ଘଟଣା କ'ଣ ବୁଝେଇବାକୁ ଯାଇ ତେଲ ଲଗାଉଥିବା ଲୋକଟିକୁ ଦେଖେଇ ଚିହ୍ନେଇ ଦେଇ କହିବାକୁ ଆରମ୍ଭ କଲା--ମୁଁ ଏ ଲୋକକୁ ଦୈନିକ ଦାନ୍ତ ଘଷିଲାବେଳେ, ପାଇଖାନା ଗଲାବେଳେ ଲୋଟାଏ ଲୋଟାଏ ପାଣି ଦଉଥିଲି, ସେତେବେଳେ ସେ ଭାରି ଦୁର୍ବଳ ଥିଲା। ପାଣି ଆଣି ପାରୁ ନଥିଲା, କି ଯା'ଆସ କରି ପାରୁ ନଥିଲା। ମୁଁ କେତେଥର ତାକୁ ପାଇଖାନାକୁ ଧରି ଧରି ନେଇଛି, ଏବେ ସେ ଭଲ ହେଲାଣି, ଯା'ଆସ କରିପାରିଲାଣି, ସେ କ'ଣ ପାଣି ଆଣି ପାରିବ ନାହିଁ। ମୁଁ କ'ଣ ତାକୁ ନିତି ପାଣି ଯୋଗାଉ ଥିବି ?

-ତୁମେ ସେ ରୋଗୀର କ'ଣ ହୁଅ ?

ଯୁବକ ଉତ୍ତର ଦେଲା-କିଛି ନୁହେଁ, ତା'ର ଅସହାୟ ଅବସ୍ଥା ଦେଖି ସାହାଯ୍ୟ କରୁଥିଲି।

ନରେନ୍ଦ୍ର ପ୍ରଶ୍ନ କଲା-ତୁମେ କ'ଣ କର ?

ଯୁବକ କହିଲା-ମୁଁ କଲେଜରେ ପଢ଼େ, ପ୍ରଥମ ବାର୍ଷିକ ଶ୍ରେଣୀରେ।

ଏତେବେଳେ ବସିଥିବା ରୁଗ୍ଣ ଲୋକଟା କହି ଉଠିଲା-କଲେଜରେ ପାଠ ପଢୁଛି, କଲେଜ ପାଠ ମନା କରିଛି, ଯା'କୁ ନିତି ପାଣି ଯୋଗଉଥିଲୁ ଆଉ ଦବୁ ନାହିଁ...।

ଲୋକଟି ଯୁବକର କଲେଜ ପାଠକୁ ଅଶ୍ୱର କାଳ୍ପନିକ ଅଣ୍ଡା ସହିତ ତୁଳନା କରି ଡାହାଣ ଗୋଡ଼ର ଆଙ୍ଗୁଳି ସନ୍ଧିଗୁଡ଼ାକରେ ତେଲ ଲଗଉ ଲଗଉ ଯୁବକକୁ ନିଜର ଶଶୁରର ଏକ ମାତ୍ର ଅଯୋଗ୍ୟ ବଂଶଧର ରୂପେ ବନ୍ଦନା କରି ପୁଣି ଆରମ୍ଭ କଲା-ଖାଲି ତୋ ପରି ଲୋକକୁ ପାହାର ଦରକାର, ଚାକରଟା ତୁ, ତୋତେ ସର୍କାର ଖାସ୍ ଦରମା ଦେଇ ରଖିଛି ରୋଗୀଙ୍କୁ ସାହାଯ୍ୟ କରିବା ପାଇଁ, ତୋର ପୁଣି ଏଡ଼େ ବଢ଼ପ, ତୁ କଲେଜରେ ପାଠ ପଢୁଛୁ ବୋଲି କହୁଛୁ!। ତୁ ଏଇଠି ନିତି ମୋତେ ଆଉଁସା ଘଷା କରୁଥିଲୁ, ମୁଣ୍ଡ ଚିପି ଦେଉଥିଲୁ, ଖୋଇ ଦେଉଥିଲୁ, ପାଣି ଦେଉଥିଲୁ, ଯୁଆଡ଼େ ଯାଉଥିଲି, ହାତ ଧରି ନବା ଆଣିବା କରୁଥିଲୁ, ଆଜି କଲେଜ ପିଲା ହୋଇଗଲୁ...।

ଯୁବକଟି କାନ୍ଦ କାନ୍ଦ ହୋଇ କହିଲା-ମୁଁ ତାକୁ ଅସହାୟ ଦେଖି ସେବା କରିବାରୁ ଲୋକଟିର ମନରେ ଗୋଟାଏ ଧାରଣା ହୋଇଛି-ମୁଁ ଏ ଡାକ୍ତରଖାନାର ଜଣେ କର୍ମଚାରୀ, ରୋଗୀଙ୍କୁ ସାହାଯ୍ୟ କରିବା ପାଇଁ ଅଛି।

ନରେନ୍ଦ୍ର ଯୁବକକୁ ପ୍ରଶ୍ନ କଲା-ତୁମେ ଏଠି କାହିଁକି ଅଛ ?

ଯୁବକ ଉତ୍ତର ଦେଲା-ମୋର ପେଟମରା ରୋଗ, ତା'ର ଚିକିତ୍ସା ପାଇଁ ଏ ୱାର୍ଡ଼ରେ ଅଛି...।

ନରେନ୍ଦ୍ର-କେଉଁଠି ଅଛ ?

ଯୁବକ ଦୂରକୁ ହାତ ଦେଖେଇ କହିଲା-ସେ ପାଖ ବେଡ୍‌ରେ ଅଛି।

ନରେନ୍ଦ୍ର-ଏ ଲୋକଟି ତୁମକୁ ସାହାଯ୍ୟ କରିବାକୁ କହିଥିଲା କି ?

ଯୁବକ-ନା, ସେ ଅଜ୍ଞାନ ଅବସ୍ଥାରେ ଥିଲା, ତା'ର କେହି ନଥିବାର ଦେଖି ମୁଁ ମୋର ନିଜ ଇଚ୍ଛାରେ ତାକୁ ସାହାଯ୍ୟ କରୁଥିଲି...।

ନରେନ୍ଦ୍ର-ନିଜ ଇଚ୍ଛାରେ ଅନାହୂତ ଭାବରେ ଯେତେବେଳେ ସାହାଯ୍ୟ କରିଛ ଏବେ ଅନିଚ୍ଛା କାହିଁକି ହେଲା ?

ଯୁବକ-ତାକୁ ପାଣି ଦବାରେ କି ଆଉଁସାଘଷା କରିବାରେ ଟିକେ ବିଳମ୍ବ ହେଲେ, ମୋତେ ଅତି ତୁଚ୍ଛ ଆଉ ଅଶ୍ଳୀଳ ଭାଷାରେ ଗାଳି ଗୁଲଜ କରୁଛି। ଆପଣ ତ ନିଜେ ଶୁଣୁଛନ୍ତି; ତା'ପରେ ଲୋକଟି ସୁସ୍ଥ ସବଳ ହେଲାଣି, ଯା ଆସ କରି ପାରିଲାଣି....।

ଲୋକଟି ଯୁବକ ମୁହଁରୁ ସୁସ୍ଥ ସବଳ ହବା କଥା ଶୁଣି ନିଜର ନାଭିର ଚତୁଃପାର୍ଶ୍ୱବର୍ତ୍ତୀ ଅଞ୍ଚଳ ଏବଂ ଅତି

ନିମ୍ନଭାଗ, ଅତି ଗୋପନୀୟ ସ୍ଥାନରେ ତେଲ ଲଗାଉ ଲଗାଉ କହିଲା- ସୁସ୍ଥ-ସବଳ ହେଲିଣି, ତୋ ବୋପାର ଖାଇ ସୁସ୍ଥ ସବଳ ହେଲିଣି...?

ନରେନ୍ଦ୍ର ଲୋକଟିକୁ ସବୁ କଥା ବୁଝେଇ ଗୋଟାଏ ସମାଧାନ ଲାଗି ଚେଷ୍ଟା କରିବାକୁ ଯାଇ କିଛି ଆରମ୍ଭ କରିବା ମାତ୍ରେ ଲୋକଟା ରାଗରେ କହି ଉଠିଲା-ଆଇଲେ କଜଳପାତିଆ ଭଲ ଲୋକ, ତୁ କ'ଣ ତା'ରି ସାଥୀରେ କଲେଜ ପାଠ ପଢୁଛୁ...?

ନରେନ୍ଦ୍ର ଆଶ୍ଚର୍ଯ୍ୟ ହେଲା-ଲୋକଟା ଅବୁଝା!! ନରେନ୍ଦ୍ର ଓ ଯୁବକ ଆଉ ସେଠି ଠିଆ ନହୋଇ ଚାଲି ଆସିଲେ।

# ଦମ୍ପତି

ଚନ୍ଦ୍ରର କ୍ଷୟ ବୃଦ୍ଧି ପରି ଜୀବନର କେତେକ କୃଷ୍ଣପକ୍ଷ ବିତେଇଲା ପରେ, ସେଥର ଶୁକ୍ଲପକ୍ଷରେ ପୁଣି ପ୍ରବେଶ କରି ବିଶ୍ବବାବୁ ଦେଖନ୍ତି-ସାମନାରେ ଟେବୁଲ ଉପରେ କେତେଗୁଡ଼ିଏ ଫାଇଲ୍, ସେ ନିଜେ ଚୌକୀ ଉପରେ ସମାସୀନ, ବିଜୁଳି ପଙ୍ଖା ଘୂର୍ଣ୍ଣାୟମାନ। ମୁଣ୍ଡ ଉପରେ କଲିଂବେଲ୍‌ରେ ହାତ ଛୁଇଁଲା ମାତ୍ରେ ପିଅନ ଆସି ସମ୍ମୁଖରେ ଦଣ୍ଡାୟମାନ, ଖାଲି ଏତିକି ନୁହେଁ ପୁଣି ହାତ ତଳେ କେତେଗୁଡ଼ିଏ ତଳିଆ କର୍ମଚାରୀ। ଏମାନଙ୍କ ଭିତରେ କେତେଗୁଡ଼ିଏ ହରିଜନ ପୁଣି ବିଦ୍ୟମାନ।

ଏମାନଙ୍କ ଉପରେ ବିଶ୍ବବାବୁଙ୍କୁ ଯେତିକି ହାକିମି କରିବାକୁ ହୁଏ, ସେତିକି ସେମାନଙ୍କର ଆପତ୍ତି ଅଭିଯୋଗ ଶୁଣିବାକୁ ହୁଏ। ଖାଲି ଶୁଣିବାକୁ ହୁଏ ନାହିଁ, ବିଚାର କରନ୍ତି, ମତାମତ ଦିଅନ୍ତି, ବୁଝାନ୍ତି, ବାଟ ହୁଡ଼ିଲେ ବାଟ ଦେଖାନ୍ତି, ନବୁଝିଲେ, ରାଜି ନହେଲେ, ଧମକ ଦେଇ ରାଜି କରାନ୍ତି, ଧମକ ବ୍ୟର୍ଥ ହେଲେ ଦଣ୍ଡ ବିଧାନ କରନ୍ତି।

ସେଦିନ ଏଇ ହରିଜନମାନଙ୍କର ଆପତ୍ତି ଅଭିଯୋଗର ଜଟିଳତା, ଘଟଣାବଳୀ ବର୍ଣ୍ଣନା କରିବାରେ ଭାଷାର ନଗ୍ନତା ପରସ୍ପର ମଧ୍ୟରେ କଳହବହ୍ନି ଜାଗରୁକ କରିବାରେ ବ୍ୟାକୁଳତା, ଦୋଷ ସ୍ବୀକାରୋକ୍ତିରେ ସରଳତା ଇତ୍ୟାଦି ବିଷୟ ଭାବି ଭାବି ବିଶ୍ବବାବୁ ମୁଣ୍ଡ ଭିତରେ ଗୋଟାଏ ବ୍ୟସ୍ତତା ଅନୁଭବ କରି ନୀରବରେ ଚୌକୀ ଉପରେ ବସି କଲମ ଧରି ମସୀଯୁଦ୍ଧ ଚଳେଇଛନ୍ତି। ଏଇ ସମୟରେ ଶୁଣିଲେ ବାବୁ! ଆମେ ମା, ପୁଅ କ'ଣ କରିବୁ? ମସୀଯୁଦ୍ଧରୁ ବିରତ ହୋଇ ମୁହଁ ଫେରେଇ ସେ ଦେଖନ୍ତି-ଗୋଟିଏ ବୟସ୍କା ହରିଜନ ରମଣୀ ତାଙ୍କର ଅଫିସ୍ ଦୁଆର ମୁହଁର ଅଳ୍ପ ଦୂରରେ ତଳେ ଘାସ ଉପରେ ବସିଛି।

ସେ ତା' ଆଡ଼କୁ ଚାହିଁବାର ଦେଖି, ରମଣୀଟି ଆହୁରି ଜୋର୍‌ରେ ପ୍ରଶ୍ନ କଲା-କ'ଣ ବାବୁ, ଆମେ କ'ଣ ମରିବୁ?

ରମଣୀର ଏ ପ୍ରଶ୍ନର ଉତ୍ତର ବୁଝିବାକୁ ଯାଇ ନିଜର ସମସ୍ତ ବିରକ୍ତିକୁ ମନେ ମନେ ଚାପି ରଖି ବିଶ୍ବବାବୁ ପଚାରିଲେ-କ'ଣ ହୋଇଛି ତୋର?

ରମଣୀ ଉତ୍ତର ଦେଲା-କ'ଣ ହୋଇଛି? ଆହୁରି ପଚାରୁଛନ୍ତି? ଆମେ ମା, ପୁଅ ବଞ୍ଚିବୁ କିମିତି?

ବିଶ୍ବବାବୁ ବୁଝିପାରିଲେ-ଏ ଗୋଟାଏ ନୂଆ ସମସ୍ୟା, ପଚାରିଲେ-ତୁ କିଏ? ତୋତେ କେଭେ ମୁଁ ଦେଖିଲା ପରି ମନେ ହେଉନି....।

ରମଣୀ କପାଳରେ ହାତମାରି ଉତ୍ତର ଦେଲା-ଏ ମା! ହଜୁରଙ୍କ ଝୁଟା ଉଠେଇବା ଲୋକ ମୁଁ, ମୁଁ କ'ଣ କେଭେ ଏଣିକି ଆସେ ଯେ ମୋତେ ଦେଖିବେ? ନିଜ ସୁନା ତ ଭେଣ୍ଡି, କପାଳକୁ ଦୋଷ ନଦେଇ ଆଉ କା'କୁ କହିବି? ଗେରସ୍ତ ବାଡ଼ିପଶାତ ଯା କରୁଛି, କ'ଣ ଥରେ ଇମିତି ହେଲା? କେତେଥର ହେଲାଣି, ସହି ସହି ଏଥର ବେଶି ବାଧା ହେଲାରୁ ହଜୁରଙ୍କ କତିକି ଆସିଲି, ଭାବିଲି-ହାକିମ ବସିଛନ୍ତି, ମା, ବାପ, ତାଙ୍କୁ ଯାଇ କହେ, କିମିତି ବାଡ଼ିପଶା ଜବଦ ନହେବ!

ରମଣୀର କଥାରୁ ବିଶ୍ବବାବୁ ଏଥର ବେଶ୍ ବୁଝିପାରିଲେ-ସ୍ବାମୀ ବିରୁଦ୍ଧରେ ଅଭିଯୋଗ, ହାକିମ ଆଗରେ କହି ସ୍ବାମୀକୁ ଜବଦ୍ କରିବାର ଅଭିପ୍ରାୟରେ ତାଙ୍କ ନିକଟକୁ ଦେବୀଙ୍କର ପଦବ୍ରଜରେ ଆଗମନ।

ବିଶ୍ବବାବୁ ପ୍ରଶ୍ନ କଲେ-ତୁ କା' ଭାରିଯା? ତୋ ଗେରସ୍ତ ନାଁ କ'ଣ?

ରମଣୀ ବୃଦ୍ଧ ଏବଂ ମୁକ୍ତ କଣ୍ଠରେ ଉତ୍ତର ଦେଲା-ମୋ ଗେରସ୍ତ ନାଁ-ଆପୁଆ, ମୁଁ ଆପୁଆ ଭାରିଯା, ଯମ ଆପୁଆର ପାଞ୍ଚି ହଜେଇଲାଣି....।

ବିଶୁବାବୁ ଆଶ୍ଚର୍ଯ୍ୟ ହେଲେ-ହିନ୍ଦୁ ରମଣୀ ପକ୍ଷରେ ସ୍ୱାମୀର ନାମୋଚ୍ଚାରଣ କରିବାରେ ଯେ ବାଧା ନିଷେଧ, କୁଣ୍ଠା-ସଙ୍କୋଚ ସାଧାରଣତଃ ଦେଖାଯାଏ। ସେ ସବୁ ତ ଆପୁଆ ଭାରିଯାର କିଛି ନାହିଁ, ସେ ତ ନିଃସଙ୍କୋଚରେ, ଅବାଧରେ ଜୀବନ-ଦେବତା ସ୍ୱାମୀର ନାମୋଚ୍ଚାରଣ କରିବା ସଙ୍ଗେ ସଙ୍ଗେ ପୁଣି ଆପୁଆର ଅସରନ୍ତି ଇହଲୀଳାରେ ବିରକ୍ତି ପ୍ରକାଶ କରି ଯମରାଜାଙ୍କ ଉପରେ ଅସନ୍ତୁଷ୍ଟ!

ସେ ପୁଣି ପ୍ରଶ୍ନ କଲେ-ଆପୁଆ କ'ଣ କରିଛି?

ଆପୁଆ ଭାରିଯା ଉତ୍ତର ଦେଲା-ଆଉ କ'ଣ କରନ୍ତାକି? ଦରମାତକ ହଜୁରଙ୍କ କତିରୁ ନେଇ ବଜାରରେ ବୁଲିଲା, ଚା', ପୋଡ଼ପିଠା ଖାଇଲା, ଘରେ ତ ଆଦୌ ପଶିଲା ନାହିଁ। ପୁଅ, ମାଇପକୁ ତ ପଚାରିଲା ନାହିଁ, ଆମେ ତ ଉପାସରେ ମଲୁ, ହାତ ଧରି ବାହା ହେଇଥିଲା, କ'ଣ ଇମିତି ହଟହଟା କରିବା ପାଇଁ? ତା'ର ଦରମାତକ ବାବୁ ସେ ସବୁ କାହିଁକି ନବ? ମୋର ତ ସେ ଦରମାରୁ ଅଧେ ନବାର କଥା। ମୁଁ ତା' ଭାରିଯା...।

ଆପୁଆ ଭାରିଯାର ଉତ୍ତର ଶୁଣି, ବିଶୁବାବୁ ଟିକିଏ ରହସ୍ୟ କରି କହିଲେ-ତୁ ଆପୁଆ ଭାରିଯା, ମୁଁ ଜାଣିବି କେମିତି ତୁ ଆପୁଆ ଭାରିଯା ବୋଲି? ତୋ' ଦେହରେ ଆଉ ମୋହର ମରାହେଇ ନାହିଁ। ତୁ ତା ଦରମାରୁ ଅଧେ ନେବୁ?

ଆପୁଆ ଭାରିଯା ଚିତ୍କାର କରି କହିଲା-ଏ ମା! ମୋ ଗେରସ୍ତ ଦରମାରୁ ମୁଁ ଅଧେ ନେବି ନାହିଁ? ସେ ମୋତେ ବାହା ହେଇଛି ମୋତେ ପୋଷିବ ନାହିଁ? ବିଶୁବାବୁ ପଚାରିଲେ-ବାହା ହେଲାବେଳେ କ'ଣ ଖାଲି ସେ ତୋତେ ପୋଷିବ ବୋଲି ବିଭା ହୋଇଥିଲୁ? ତା'ର ସେ ରୋଜଗାର କରି ଖାଉଛି, ସେ ତୋତେ ପୋଷିବ କାହିଁକି? ତୋର ତୁ ରୋଜଗାର କରି ଖାଉନୁ। ଆଉ ସବୁ ତୋରି ଜାତି ମାଇପିମାନେ କେମିତି ରୋଜଗାର କରି ଖାଉଛନ୍ତି।

ଆପୁଆ ଭରିଯା ଉତ୍ତର ଦେଲା-ମୁଁ କ'ଣ ରୋଜଗାର କରିବାକୁ ମନା କଲି। ଚାକିରି କାହିଁ? ଚାକିରି ଖଣ୍ଡେ ଦିଅନ୍ତୁ।

ବିଶୁବାବୁ ଆପୁଆ ଭାରିଯାର ଉତ୍ତର ଶୁଣି କହିଲେ-ଚାକିରି କରିବୁ? ଆଚ୍ଛା କାଲି ସକାଳେ ଆସିବୁ, ମୁଁ ତୋତେ ଖଣ୍ଡେ କାମ ଦେବି। କାମ କରି ଖାଇଲେ ଆପୁଆ ତୋତେ ଆଉ ଧମକେଇ ପାରିବ ନାହିଁ।

ଚାକିରି ଯେ ସତେ, ସତେ ଏତେ ହଠାତ୍ ଜୁଟିଯିବ, କାଲି ସକାଳେ, ଆପୁଆ ଭାରିଯା ଆଦୌ କଳ୍ପନା କରି ନଥିଲା। ଚାକିରି ପୁଣି ଏତେ ଅଳ୍ପକେ ଜୁଟେ!

ଆପୁଆ ନିଜେ ତ କାମ ଖଣ୍ଡେ ପାଇବା ଲାଗି କେତେ ଘୂରିଛି, କେତେ ଧାଁ ଦୌଡ଼ କରିଛି, କେତେ ଥର ଲମ୍ବ ଲମ୍ବ ହୋଇ କେତେ ଲୋକଙ୍କର ଗୋଡ଼ ତଳେ ପଡ଼ିଛି, ଚାକିରି ପାଇଁ!

ଆପୁଆ ଭାରିଯା ମୋଡ଼ ଦେଇ ପୁଣି କହିଲା-ମୁଁ ଚାକିରି କରିପାରିବି ନାହିଁ, ମୁଁ କାମ କଲେ ମୁଠାଏ ଖାଇବି? କାହିଁକି ମ? ମୁଁ ଖଟି ପାରିବି ନାହିଁ। ଯେ ଚାକିରି କରୁଛନ୍ତି, ସେମାନେ କରନ୍ତୁ...।

ବିଶୁବାବୁ ଆଶ୍ଚର୍ଯ୍ୟ ହୋଇ ଟିକିଏ ଚଢ଼ା କଣ୍ଠରେ କହିଲେ-ତା'ହେଲେ ବସି ଖାଇବୁ? ଖଟି ପାରିବୁ ନାହିଁ, ତେବେ ଚାକିରି ଖଣ୍ଡେ ଦିଅନ୍ତୁ ବୋଲି କେମିତି କହିଲୁ? ଭାବିଥିଲୁ-ଚାକିରି କ'ଣ ଇମିତି ସହଜେ ବାବୁ ଦେଇ ପାରିବେ, ଏଇ ମତଲବ, ଖଟି ଖାଇବାକୁ କଷ୍ଟ ହେଉଛି?

ହାକିମଙ୍କ କଥା ଶେଷ ନହେଉଣୁ ରମଣୀ ମଧ ବେଶ୍ ଚଢ଼ା କଣ୍ଠରେ କହିବାକୁ ଆରମ୍ଭ କଲା-କ'ଣ? ଖଟି ଖାଇବି? ମୁଁ ହାତଧରି ବାହା ହେଇଥିଲି ଖଟି ଖାଇବା ପାଇଁ? ମୋତେ ସେ ପୋଷିବ ନାହିଁ? ହାକିମ କହିଲେ-ନା।

ସାପର ଲାଙ୍ଗୁଡ଼ରେ ହାତ ଛୁଇଁଲେ ସାପ ଯେପରି ଫଣା ଟେକି ଦଂଶନୋନ୍ମୁଖ ହୋଇ ଫେରିପଡ଼େ, ଆପୁଆ ଭାରିଯା ବସିବା ସ୍ଥାନରୁ ଉଠିପଡ଼ି ଠିଆ ହୋଇ କହିଲା-ହଜୁର ହାକିମ, ବାପ, ମା' ଆପଣ ଯା'କୁ ବିଭା ହେଇଛନ୍ତି, ତାଙ୍କୁ ପୋଷୁଛନ୍ତି କି ନା? ସେ ବସି ଖାଉଛନ୍ତି କି ନା? କହନ୍ତୁ, ସା'ନ୍ତାଣୀ କ'ଣ ଖଟି ଖାଉଛନ୍ତି?

ଆପୁଆ ଭାରିଯାର ଏତାଦୃଶ ପ୍ରଶ୍ନରେ ହାକିମଙ୍କ ସୁଦୂରବାସିନୀ ପ୍ରିୟା-ଆପୁଆ ଭାରିଯାର ଆଖିରେ ଯେ 'ସାନ୍ତାଣୀ' ତାଙ୍କର ଖଟି ଖାଇବାର ସାମର୍ଥ୍ୟ, ଶାରୀରିକ ଯୋଗ୍ୟତା, ତନୁ ଲତିକାର ମନ୍ଥରତାରେ ଯେପରି ଏକ ଚଳଚ୍ଚିତ୍ର ମୁହୂର୍ତ୍ତକ ମଧ୍ୟରେ ତାଙ୍କ ଆଖି ଆଗରେ ଖେଳିଗଲା, ତେବେ ସୁଦ୍ଧା ଜାଣିଶୁଣି ମନ କଥା ମନରେ ରଖି ସାହସର ସହିତ କହିଲେ-ସାନ୍ତାଣୀ ଖଟି ଖାଉଛନ୍ତି, ସାନ୍ତାଣୀଙ୍କୁ ମୋତେ ପୋଷିବାକୁ ପଡ଼େନା, ବୁଝିଲୁ ମୋର ମୁଁ ରୋଜଗାର କରି ଖାଉଛି, ସେ ତାଙ୍କର ଖାଉଛନ୍ତି... ।

ହାକିମଙ୍କ ଉକ୍ତି ଶେଷ ନହେଉଣୁ ଆପୁଆ ଭାରିଯା ଆରମ୍ଭ କଲା-ସାନ୍ତାଣୀ ଖଟି ଖାଉଛନ୍ତି । ମିଛକଥା କହୁଛନ୍ତି ହଜୁର, ସାନ୍ତାଣୀ ଯା' ଖଟି ଖାଉଥିବେ ନା !

ଆପୁଆ ଭରିଯା ହାକିମଙ୍କ ସହିତରେ କଥୋପକଥନ ସମୟରେ ତା'ର ଅତ୍ୟଧିକ ଶିର ସଞ୍ଚାଳନ ଯୋଗୁଁ ଭଗ୍ନପ୍ରାୟ ଜୁଡ଼ା-ଦୁର୍ଗକୁ ପୁନର୍ଗଠନ କରିବାକୁ ଯାଇ, ମୁଣ୍ଡରୁ ଲୁଗା କାଢ଼ିଦେଇ ମୁଣ୍ଡ ଝାଡ଼ି, କୁକୁଳା ବାଳଗୁଡ଼ିକୁ ଦୁଇ ହାତରେ ଏକତ୍ର କରୁ କରୁ କହିଲା-ହଜୁର ! ହାକିମ ହେଉଛନ୍ତି, ଆପଣଙ୍କ କଥା ସତ ହେଲା ତ, ମୁଁ ତ କେବେ ଇମିତି କଥା ଶୁଣି ନାହିଁ-ହାକିମ ହୁକୁମାଙ୍କ ଭାରିଯା ଖଟିଖା'ନ୍ତି, ହଉ ସାନ୍ତାଣୀ ଯଦି ଖଟି ଖାଉଛନ୍ତି ତ ଖା'ନ୍ତୁ, ମୁଁ ଖଟିପାରିବି ନାହିଁ, ମୋ ଗେରସ୍ତର ଯେଉଁ ତଲବ ତାକୁ ଅଧା ଅଧା କରି ଦିଅନ୍ତୁ । ମୋର ଆଉ କିଛି ଆପତ୍ତି ନାହିଁ, ତା ଦରମାରୁ ମୋତେ ଅଧେ ଦିଅନ୍ତୁ, ତାକୁ ଅଧେ ଦିଅନ୍ତୁ... ।

ଆପୁଆ ଭାରିଯା କଥାରେ ବାଧା ଦେଇ ହାକିମ କହିଲେ-ଆପୁଆ ଦରମାରୁ ତୋତେ ଅଧେ ଦିଆଯିବ ନାହିଁ । ଯେ ପର୍ଯ୍ୟନ୍ତ ଆପୁଆ ଆମ କତିରେ କାମ କରୁଛି, ତା ଦରମା ତାକୁ ଦିଆଯିବ । ତୁ ଯଦି କାମ କରିବୁ, ତାହେଲେ ଆପୁଆ ପରି ତୁ ମଧ୍ୟ ଦରମା ପାଇବୁ ଆଉ ଯଦି ତୋ ଗେରସ୍ତ ଦରମାରୁ ତୁ ଭାଗ ନେବାକୁ ଚାହୁଁ, ବସି ଖାଇବାର ଇଚ୍ଛା, ତାହେଲେ ଯା, ଆପୁଆକୁ ଘରକୁ ଡ଼ାକି ନେଇ ତାକୁ ଭଲ ଭାବରେ ଖାଇବା ପିଇବାକୁ ଦେଇ ତା'ର ମନ ନେଇ ଚଳ ତା ନହେଲେ ତୋତେ କିଛି ଦିଆଯିବ ନାହିଁ । ମୁଁ ମଧ୍ୟ ଆପୁଆକୁ ମନା କରି ଦେବି, ତୋତେ କିଛି ଦବ ନାହିଁ । ଘରୁ ବାହାର କରିଦେବ.... ।

ଆପୁଆ ଭାରିଯା ହାକିମଙ୍କ ଏକଥା ଶୁଣି ଆଶ୍ଚର୍ଯ୍ୟ ହୋଇ ଗୋଟାଏ ପ୍ରଥମ ବାଣ-ବିଦ୍ଧ ବାଘୁଣୀ ଯେପରି ବ୍ୟାଧକୁ ଆକ୍ରମଣ କରିବା ପାଇଁ ତା'ର ଶେଷ ଚେଷ୍ଟା କରି ଫେରି ପଡ଼େ, ସେଇପରି ଲେଉଟି ପଡ଼ି ରାଗରେ ପ୍ରଶ୍ନ କଲା-ହଜୁର ତ ମୋ ଗେରସ୍ତକୁ ମନା କରିଦେବେ ମୋତେ କିଛି ଦେବେ ନାହିଁ, ଘରୁ ବାହାର କରିଦେବେ ଆଉ ମୋର ପିଲା ପୁଅଟି କୁଆଡ଼େ ଯିବ ?

ବିଶୁବାବୁ ଆଉ ଟିକିଏ ରହସ୍ୟ କରି ପ୍ରଶ୍ନ କଲେ-ସେ ପୁଅ କ'ଣ ଆପୁଆର ଆଗରୁ ଥିଲା, ନା, ତୁ ଆସିଲା ପରେ.... ।

ଉତ୍ତରରେ ଆପୁଆ ଭାରିଯା କହିଲା-ଆପୁଆ ଚା' ଦିହାନ୍ତିରେ ପୁଅ ଦେଖିଥିଲା ? ମୁଁ ଜନ୍ମ କରି ଦେଇଛି, ମୁଁ ପୁଅର ମା.... ।

ବିଶୁବାବୁ କହିଲେ-ତା'ହେଲେ ତୁ ଜାଣୁ ସେ ପୁଅର କଥା, ତୁ ସେ ପୁଅକୁ ପୋଷିବୁ । ଆପୁଆ ତୁମ ମା'ପୁଅକୁ କାହିଁକି କିଛି ଦେବ ନାହିଁ । ଆପୁଆ କଥାରେ ଚଳିଲେ, ଆପୁଆ ମନନେଇ ଚଳିଲେ, ତୋତେ ଆଉ ତୋ ପୁଅକୁ ଆପୁଆ ପୋଷିବ, ନୋହିଲେ ତୋ କଥା ଆଉ ତୋ ପୁଅ କଥା ତୁ ଜାଣୁ, ଯାଃ..... ।

ହାକିମଙ୍କ କଥା ଶୁଣି ଆପୁଆ ଭାରିଯା ହତାଶ ହୋଇ ରାଗରେ ଚିତ୍କାର କରି ଆରମ୍ଭ କଲା-ଏ ମା ! ଇମିତିଆ ହାକିମ ମୁଁ କୋଉଠି ଦେଖି ନାହିଁ; ଏ କି ବୁଝାମଣା ! ଏଇଥିରେ ମୋତେ ସବୁ ସାଇରେ ମାଇପିମାନେ କହିଲେ-ତୁ ଯା' ହାକିମ ଆଗରେ କହିବୁ; ହାକିମ ଭାରି ଭଲ ବୁଝିଲା ବାଲା ଲୋକ । ତାଙ୍କୁ କହିଲେ ସେ ତୋ ଗେରସ୍ତକୁ ଜବଦ୍ କରିଦେବେ; ଯୋଉ ହାକିମ ନା । କହୁଛି କ'ଣ ନା ତୋ ପୁଅକୁ ତୁ ପୋଷିବୁ ।

ମୁଁ କ'ଣ ପୁଅକୁ ମୋର ବାପ ଘରୁ ଆଣିଥିଲି ? ଏ ହାକିମ କୋଉଠୁ ଆଇଛି ଲୋ ମା ! ହାକିମ ଆମେ ଆଉ ଦେଖି ନାହୁଁ..... !

ଆପୁଆ ଭାରିଯା ବକି ବକି ଶେଷରେ ଫାଟକ ଟପି ଅଦୃଶ୍ୟ ହୋଇଗଲା ।

କିଛି ଦିନ ପରେ ଦିନେ ବିଶୁବାବୁ ତାଙ୍କ ନିଜ ଘରେ ରାସ୍ତା ପାଖ ବାରନ୍ଦାରେ ଖଣ୍ଡେ ଚୌକି ଉପରେ ବସି କେତେ କ'ଣ ଭାବୁଛନ୍ତି-ଚାରିଆଡ଼େ ସନ୍ଧ୍ୟା ଆଗମନର ବେଶ୍ ଗୋଟାଏ ବଡ଼ ଧରଣର ଆୟୋଜନ ଚାଲିଥାଏ । ବିଶୁବାବୁଙ୍କ ଦୃଷ୍ଟି ଥିଲା ଆକାଶ ଉପରେ, ହଠାତ୍ ଆକାଶ ଉପରୁ ଆଖି ଫେରାଇ ଚାହିଁଲେ ବାରନ୍ଦା ପାଖ ରାସ୍ତା ଉପରକୁ । ଦେଖିଲେ ଆପୁଆ ଚାଲିଛି ହାତରେ ଭଙ୍ଗା କିରାସିନି ତେଲ ବୋତଲଟିଏ ଧରି; ତା ପଛରେ ଚାଲିଛି ଆପୁଆର ସ୍ତ୍ରୀ, ତା'ରି ପିଲା ପୁଅଟିକୁ କାଖେଇ, ପରିଧାନରେ ବେଶ୍ ଖଣ୍ଡିଏ ନୂତନ ଲାଲ୍ ରଙ୍ଗର ଶାଢ଼ି; ସାରା ଅଙ୍ଗରେ ଗୋଟିଏ ସୁଶ୍ରୀଭାବ ।

ବିଶୁବାବୁ ପଚାରିଲେ-କିରେ ଆପୁଆ ନା କିଏ ? ଆପୁଆ ହଠାତ୍ ବିଶୁବାବୁଙ୍କର ଏ ପ୍ରଶ୍ନ ଶୁଣି ଚମକି ପଡ଼ିଲା ପରି ଓଳିକିଟିଏ ହେଇ ଠିଆ ହୋଇ ରହିବା ମାତ୍ରେ, ବିଶୁବାବୁ ତା'ର ଭାରିଯାକୁ ଉଦ୍ଦେଶ୍ୟ କରି ଆପୁଆକୁ ପୁଣି ପ୍ରଶ୍ନ କଲେ-କ'ଣ ଆଜିକାଲି ସବୁ ଭଲ ?

ଆପୁଆ ଏ କଥା ଶୁଣି ମୁଣ୍ଡ ହଲେଇ ହଲେଇ କହିବାକୁ ଆରମ୍ଭ କଲା-ହଜୁର, ଆଉ କାହିଁକି ପଚାରୁଛନ୍ତି ତା'କଥା । ସେମିତିଆ ଢଙ୍ଗ ତା'ର । ହାତ ଧରି ବାହା ହେଇଛି ଆଜ୍ଞା, କ'ଣ ଆଉ କରିବି ? ମୋ କପାଳକୁ ତ ଜୁଟିଛି ସେ । ହଜୁର ଖଣ୍ଡେ କାମ ହେଲେ ତାକୁ ଦିଅନ୍ତୁ । ମୁଁ ଆଉ ଏକା କେତେ ଚଳେଇବି ?

ଆପୁଆ କଥା କହିଲାବେଳେ ବିଶୁବାବୁ ଦେଖିଲେ-ଆପୁଆ ଭାରିଯା ତା ଆଡ଼କୁ ପଛ କରି ମୁଣ୍ଡରେ ଓଢ଼ଣା ଦେଇ ନବ-ବଧୂର ସଲଜ୍ଜ ଠାଣିରେ ରାସ୍ତା ଆର ପାଖ ବାଡ଼ ମୂଳରେ ଠିଆ ହୋଇଥାଏ । ହାତରେ ବଜାରରୁ ସଦ୍ୟ କିଣା ପାନ, ଗୁଆ, ଗୁଣ୍ଡି କାଖରେ ପିଲା ପୁଅଟିଏ ।

ସେ ଆପୁଆକୁ ପୁଣି ପ୍ରଶ୍ନ କଲେ-ତୋ ଭାରିଯା ତ କାମ କରି ଖାଇବାକୁ ରାଜି ନୁହେଁ, ତୁ କିମିତି କହୁଛୁ, ତାକୁ ଖଣ୍ଡେ କାମ ଦେବା ପାଇଁ ? ଆପୁଆ ଉତ୍ତର ଦେବାକୁ ଯାଇ କହିଲା-କାମ କରି ଖାଇବ ନାହିଁ, ଆଉ ମୁଁ ପୋଷୁଥିବି ? ସେ କ'ଣ ଦେଖୁନାହିଁ ? ଆଉ ଆମ ଜାତିର ମାଇପିମାନେ କାମ କରି ମାସ ଶେଷକୁ ଦରମା ନେଇ ଚଳୁଛନ୍ତି ?

ମାଇପି ଲୋକ; ହଜୁର କେତେବେଳେ କ'ଣ କହି ଦେଇଛି । ସେ ତ ତୁଣ୍ଡେଇଟାଏ, ସେ କାମ କରିବ, ହଜୁର କେତେ ଲୋକଙ୍କୁ ଏମିତି ଦାନା ଦଉଛନ୍ତି, ତାକୁ ଖଣ୍ଡେ କାମ ଦିଅନ୍ତୁ; ହଜୁରଙ୍କ କଲମ ପ୍ରଭୁ ଏମିତି ବଜାୟ ରଖିଥିବେ । ହଜୁରଙ୍କ କଲମରେ ସବୁ ଅଛି.... ।

ଆପୁଆ କଥା କହିବାର ସଙ୍ଗେ ସଙ୍ଗେ ବିଶୁବାବୁଙ୍କର କଲମର ଅକ୍ଷୟ ଜୀବନୀ-ଶକ୍ତି ଏବଂ ମସୀ ଯୁଦ୍ଧରେ ସେ ଆଜୀବନ ଲିପ୍ତ ରହିବା ପାଇଁ ଭଗବାନଙ୍କୁ ଜଣେଇ ଦୁଇ ହାତରେ କିରୋସିନି ତେଲର ବୋତଲଟିଏ ଧରି ମୁଣ୍ଡରେ ଛୁଇଁ ଭକ୍ତିରେ ପ୍ରଣାମଟିଏ କରି ତାଙ୍କ ସାମନାରୁ ବିଦାୟ ନେଇ ଚାଲିବାକୁ ଆରମ୍ଭ କଲା ।

ସ୍ତ୍ରୀ ମଧ୍ୟ ଓଢ଼ଣାର ଅନ୍ତରାଳରେ ଲଜ୍ଜାନତ ମୁହଁଟି ଲୁଚେଇ ନବବଧୂ ପରି ଧୀର ପଦରେ ଆପୁଆର ଅନୁଗାମିନୀ ହେଲା ।

ବିଶୁବାବୁ ଚାହିଁଥାନ୍ତି । ସନ୍ଧ୍ୟାର ଅନ୍ଧକାର ମଧ୍ୟରେ ଧୀରେ ଧୀରେ ହରିଜନ ଦମ୍ପତି କ୍ରମେ ଅଦୃଶ୍ୟ ହୋଇଗଲେ ।

# ବହୁପୁତ୍ରେ

ହଟ ବେହେରାର ଚାରିପୁଅ, ଧନୀଲୋକ। ବେହେରାର ବୟସ ପ୍ରାୟ ଅଶିବର୍ଷ ହେବ। ସେ ସବୁବେଳେ ପ୍ରାୟ ଏଣିକି ଅସୁସ୍ଥ, ଘରୁ ପଦାକୁ ଆଉ ବାହାରିବାର ଦେଖାଯାଏ ନାହିଁ। ଘର ଭିତରେ ଶୋଇଥାନ୍ତି; ବେଳେବେଳେ ଘର ଭିତରୁ ଉଠି ଆସି ବାରନ୍ଦାରେ ବସନ୍ତି। ହଟ ବେହେରା ବହୁତ ଦିନର ଶ୍ୱାସରୋଗୀ। ତା ଛଡ଼ା ବେଳେ ବେଳେ ନାଳଶୂଳା ପୋଖରୀ, ଅଣ୍ଟାଧରା, ଛାତି ଦରଜ, ଜ୍ୱର। ଏମିତି ଗୋଟାକ ପରେ ଗୋଟାଏ ରୋଗରେ ଆକ୍ରାନ୍ତ ହୋଇ ଦିହ ଦୁର୍ବଳ ହୋଇଗଲାଣି।

ସକାଳବେଳା ଅଳ୍ପ ସମୟ ପାଇଁ ବେହେରା ବାରନ୍ଦାରେ ଆସି ବସନ୍ତି, ଦାନ୍ତ ଘଷନ୍ତି, ଚା, ଅଫିମ ଖା'ନ୍ତି। କତିରେ ବଟୁଆ ଆଉ ବଙ୍କୁଲି ବାଡ଼ି ଥୁଆ ହୋଇଥାଏ। ବୃଦ୍ଧା ସ୍ତ୍ରୀ ସବୁ ଜିନିଷ ହାତକୁ ଯୋଗାଇଦିଏ, ସାହାଯ୍ୟ କରେ, ଯେମିତି-ଦାନ୍ତ ଘଷିଲା ବେଳେ ଗରମ ପାଣି, ପାନ ଖାଇଲାବେଳେ ପାନ ବନେଇ ତାକୁ ପାନକୁଟାରେ ପୂରେଇ ଛେଚି ଗୁଣ୍ଡ କରିଦେବା, ଚା'ବେଳେ ଚା' ତିଆରି କରିଦେବା; ଚୁଡ଼ା, ମୁଢ଼ି, ବାଲି, ସାଗୁ ଆଣି କତିରେ ଦବା, ଭାତ ଖାଇଲାବେଳେ ଭାତ ଖୋଇ ଦେବା, ଝାଡ଼ା ପରିଶ୍ରା କଲେ ତାକୁ ପରିଷ୍କାର କରିବା ପୁଣି ବେହେରାଙ୍କ ଆଦେଶ ଅନୁଯାୟୀ ଗୋଡ଼ ମୋଡ଼ି ଦେବା, ପିଠି ଆଉଁସି ଦେବା, କତିରେ ଜଗି ବସିବା ଇତ୍ୟାଦି ଇତ୍ୟାଦି-

ବେହେରାଙ୍କ ସେବା ଶୁଶ୍ରୂଷାରେ ସ୍ତ୍ରୀର ଟିକିଏ ଅବହେଳା ହେଲେ ବେହେରା ସ୍ତ୍ରୀଙ୍କର ଚଉଦପୁରୁଷଙ୍କ ତିଳତର୍ପଣ କରି, ବେଳେ ବେଳେ ସ୍ତ୍ରୀକୁ କୁଳଟା ଆଖ୍ୟା ଦିଅନ୍ତି। ଆଉ ବେଳେ ବେଳେ ଅତି ବିରକ୍ତ ହୋଇ କତିରେ ଥୁଆ ହୋଇଥିବା ବଙ୍କୁଲିବାଡ଼ିକୁ ଉଞ୍ଚେଇ ମାରିବାକୁ ଉଠାନ୍ତି।

ବେହେରା ଯେତେ ଅସୁସ୍ଥ ହେଲେ ମଧ୍ୟ ତାଙ୍କର ବାରଣ ଡାକ୍ତରୀ ଓଷଧ ଖାଇବେ ନାହିଁ କି ଡାକ୍ତର ଡକା ହେବ ନାହିଁ ତାଙ୍କର ଚିକିତ୍ସା ପାଇଁ। ବେହେରାଙ୍କର ଦୃଢ଼ଧାରଣା ଓ ବିଶ୍ୱାସ ଡାକ୍ତର ଚିକିତ୍ସାରେ ରହିଲେ କେବଳ ଟଙ୍କାର ଅପବ୍ୟୟ, ଡାକ୍ତରଙ୍କୁ ଡାକିବାର ଅର୍ଥ ହେଉଛି ଅର୍ଥଶ୍ରାଦ୍ଧ। ବେହେରାଙ୍କର ଚିକିତ୍ସା ହେଲା-ସେଇ ପୁରୁଣାକାଳିଆ ଜଡ଼ିବୁଟି, ଠୁଣ୍ଣୁ ଠୁଣିକିଆ ଇତ୍ୟାଦି।

ବେହେରା ଲୋକଙ୍କୁ ବୁଝାନ୍ତି-ଆମ ବାପ ଅଜା ସେଇ ଜଡ଼ିବୁଟି ଖାଇ ରୋଗରୁ ମୁକ୍ତି ପାଉଥିଲେ ନା, ଏବେ ଗୋଟାଏ ନୂଆ ଭିଆଣ ହେଉଛି ଡାକ୍ତରୀ ଓଷଧ, ଡାକ୍ତର, କମ୍ପାଉଣ୍ଡର, ନର୍ସ, ଡାକ୍ତରଖାନା...।

ବେହେରା ପୁଣି କହନ୍ତି-ଯଦି କହିଲ, ଡାକ୍ତରୀ ଓଷଧ ଭଲ, ତା'ହେଲେ ଲୋକ ମରୁଛନ୍ତି କାହିଁକି? ଆମ ବାପ ଅଜା ଅମଳରେ ଜଡ଼ିବୁଟି ଖାଇ ମରୁଥିଲେ, ସେଗୁଡ଼ା ଭଲ ଓଷଧ ନୁହେଁ। ଏବକା ଡାକ୍ତରୀ ଓଷଧ ଭଲ; ତା'ହେଲେ ଲୋକେ ଡାକ୍ତରୀ ଚିକିତ୍ସାରେ ମରୁଛନ୍ତି କେମିତି? ଅସଲ କଥା ହେଲା-ଭାଇ! ଯମ ହାତରେ ଯେଉଁଦିନ ତୁମ ପାଞ୍ଜି ପଡ଼ିଛି, ସେଦିନ କୋଉ ବୋପା ଆଉ ରଖି ପାରିବନି, ଯିବାକୁ ହବ। ମାହାଳିଆ କହିଛି- "ଦଣ୍ଡେ ନିମିଷେ ଥିଲେ ପ୍ରାଣ, ଘେନି ନପାରେ ଜନ୍ତୁରାଣ"। ଯଦି ତୋର ପରମାୟୁ ଅଛି କେହି ନେଇ ପାରିବନି...।

ବେହେରା କଥା କହୁ କହୁ ମଝିରେ ମଝିରେ କାଶି ଉଠିଲେ। କଥା କହିବାରୁ ନିବୃତ୍ତ ହୋଇ କିଛି ସମୟ କାଶି କିଛି କଫ ଓଳି ତଳକୁ କାଢ଼ି ପକେଇ ପୁଣି ପାଖରେ ବସିଥିବା ଶ୍ରୋତାଦଳଙ୍କୁ ଶୁଣାନ୍ତି-ଦେଖୁଛ ତ ତୁମରି ଆଗରେ ଗାଁ ଭିତରେ ଆଜିକି ପାଞ୍ଚବର୍ଷ ହେଲା ଡାକ୍ତରଖାନା ହେଲାଣି. ମୁଁ କେବେ ଦିନେ ଯାଇ ସେଠୁ ପାନେ ଓଷଧ ଖାଇଛି ନା? କାହିଁ ମୋରି ସାଙ୍ଗରୁ ତ କେତେ କିଏ ଗଲେଣି। ମୁଁ ତ ଅଛି...।

ଶ୍ରୋତାଙ୍କ ଭିତରୁ ଏତେବେଳେ ଜଣେ ଜଣେ ବେହେରାଙ୍କ କଥାକୁ ସମର୍ଥନ କରି କହି ପକାନ୍ତି-ହଁ ତା' ନୁହେଁ କ'ଣ। ତୁମପରି ଧାରାରେ କିଏ ଚଳୁଛି ଯେ ଏତେ କାଳ ବଞ୍ଚିବ। ତୁମରି ଆଗରେ ଆମେ ଜନ୍ମ ହେଇ ଆମେ ଆସି ବାହାରିବାକୁ ବସିଲୁଣି। ସତ କଥା, କେତେ ଲୋକ ତ ଆସି ସେ ଡାକ୍ତରଖାନାରୁ ଔଷଧ ନଉଛନ୍ତି; ଆମେ ତ କେବେ ଦିନେ ଦେଖିଲୁନି ତୁମେ ଡାକ୍ତରଖାନାରୁ ଔଷଧ ପାନେ ଖାଇବା....।

ଇମିତି ପ୍ରତିଦିନ ସନ୍ଧ୍ୟାବେଳେ, ବେହେରାଙ୍କ କତିରେ କେତେକ ବୁଢ଼ା ଦରବୁଢ଼ାଙ୍କ ସମାଗମ ହୁଏ; ଅଳ୍ପ ସମୟ ପାଇଁ ଗୋଟାଏ ସମ୍ମିଳନୀ ବସେ। ସେଥିରେ ରେଡ଼ିଓ ପୋଗ୍ରାମ ଭଳି ଆଞ୍ଚଳିକ ସମ୍ବାଦ, ସର୍ବଭାରତୀୟ ସମ୍ବାଦ, ଦେଶର ହାଲ୍, ଗାଁ ଗହଳି, ନାଟକ, ରୂପକ, ପୁରାଣପାଠ ଅର୍ଥାତ୍ ଦିନେ ଦିନେ ଗୋପୀଭାଷା, ମହାଭାରତ, ରାମାୟଣ, ନୃସିଂହପୁରାଣ, ମଥୁରାମଙ୍ଗଳ ଇତ୍ୟାଦି ବୋଲାଯାଏ। ଆଉ ଦିନେ ଦିନେ ପାଲା ହୁଏ। ବେହେରା ତାଙ୍କର ସ୍ତ୍ରୀ ଏବଂ ବେଳେବେଳେ ପୁଅମାନଙ୍କ ସାଥୀରେ, ଆଉ ଦିନେ ଦିନେ ଦାସକାଠିଆ ହୁଏ, ବେହେରାଙ୍କର ବଙ୍କୁଲିବାଡ଼ି ସାହାଯ୍ୟରେ ସ୍ତ୍ରୀଙ୍କର ପିଠିରେ କିମ୍ବା ମୁଣ୍ଡରେ। ଶେଷରେ ସମ୍ମିଳନୀ ଭାଙ୍ଗେ। ତା'ପରେ ଶାନ୍ତିରେ ହେଉ ବା ଅଶାନ୍ତିରେ ହେଉ, ବେହେରା ରାତ୍ରି ଭୋଜନ ପରେ ବିଜେ ହୁଅନ୍ତି ନିଜର ଶୟନ କକ୍ଷରେ।

ବେହେରାଙ୍କ ଶୋଇବାର ଜାଗା ହେଲା-ଗୋଟିଏ ବଡ଼ ସିନ୍ଦୁକ। ତା'ଭିତରେ ଥାଏ-ଘିଅ ମାଠିଆ, ଟଙ୍କା, ସୁନା, ରୁପା, ତମସୁକ, ପଟା ପାଉତି, କବଲା ଇତ୍ୟାଦି। ବେହେରା ସେଇ ସିନ୍ଦୁକ ଉପରେ ଶେଯପାରି ଶୁଅନ୍ତି। ସ୍ତ୍ରୀ ସିନ୍ଦୁକ କତିକି ଲାଗି ତଳେ ଶୁଏ। ସିନ୍ଦୁକକୁ ଲାଗି ବେହେରାଙ୍କ ବଙ୍କୁଲିବାଡ଼ି ଖଣ୍ଡିକ ଡେରା ହୋଇ ରହେ ଆଉ ଗୋଟିଏ ପଲମରେ ପାଉଁଶ ଭର୍ତ୍ତି ହୋଇ ସିନ୍ଦୁକକୁ ଲାଗି ତଳେ ଥୁଆ ହୋଇଥାଏ। ବେହେରାଙ୍କ କାଶ ଉଠିଲେ କଫ କାଢ଼ି ସେଥିରେ ପକାଇବା ପାଇଁ। ଦୂରକୁ କାହୁ ଦେହରେ ଗୋଟିଏ ଠଣାରେ ଗୋଟିଏ ଡିବିରି ରାତି ସାରା ଜଳୁଥାଏ, ବେହେରାଙ୍କ ଚାରିଆଡ଼େ କାନ୍ଥକୁ ଲାଗି ମୁଗ ଓଳିଆ, ବିରି ଓଳିଆ ସବୁ ଥୁଆ ହୋଇଥାଏ। ବେହେରା ବେହେରାଣୀ ଶୋଇଲେ ଘର ଭିତରେ ଅସରପା, ମୂଷା, ଚୁଚୁନ୍ଦ୍ରାଙ୍କର ନାଇଟ ଡିଉଟି ଆରମ୍ଭ ହୋଇଯାଏ।

କିଛିଦିନ ପରେ ବେହେରା ଭୀଷଣ ରୋଗାକ୍ରାନ୍ତ ହୋଇ ଦିନେ ବେହୋସ ହୋଇଗଲେ। ସେହିଦିନ ବେହେରାଙ୍କ ସ୍ତ୍ରୀ ଆଉ ପୁଅମାନଙ୍କ ଭିତରେ ପ୍ରସ୍ତାବ ହେଲା ଡାକ୍ତରଙ୍କୁ ଡକାଯାଉ। ବେହେରାଙ୍କ ବାରଣ ଡାକ୍ତରୀ ଔଷଧ ଖାଇବେ ନାହିଁ କି ଡାକ୍ତରଙ୍କୁ ଡକା ହେବ ନାହିଁ। ପୁଅମାନେ ବେହେରାଙ୍କ ଏଇ କଥାକୁ ଜିଦ୍ ଧଇଲେ, ଡାକ୍ତର ଡକା ହେବ ନାହିଁ। ସ୍ତ୍ରୀ କହିଲା ସେ ତ ବେହୋସ ଅଛନ୍ତି, ଡାକ୍ତରଙ୍କୁ ଡାକିଲେ ବେହେରା ଜାଣିବେ ନାହିଁ। ଏଣୁ ଡାକ୍ତରଙ୍କୁ ପୁଅମାନଙ୍କର ଅନିଚ୍ଛାସତ୍ତ୍ୱେ ଡକାହେଲା। ଡାକ୍ତର ଆସିଲେ, ପରୀକ୍ଷା କରି ଦେଖିଲେ, ବେହେରାଙ୍କ ଅବସ୍ଥା ଭଲ ନୁହେଁ, ଇଞ୍ଜେକ୍‌ସନ୍ ନିୟମିତ ଭାବରେ ଦୁଇଦିନ ଫୋଡ଼ା ହେଲା ପରେ ବେହେରାଙ୍କ ଜ୍ଞାନ ଫେରିଲା। ଜ୍ଞାନ ଫେରିଲା ପରେ ବେହେରା ସ୍ତ୍ରୀଙ୍କୁ ଆଗେ ପଚାରିଲେ-ତାଙ୍କର କଞ୍ଚି ନେନ୍ଥାଟା କୁଆଡ଼େ ଗଲା? ଗାଇ, ବଳଦ, ମଇଁଷି ଏମାନେ କେମିତି ଅଛନ୍ତି? ଆଉ କେହି ଆସି ତାଙ୍କୁ ଖୋଜୁଥିଲେ କି ନା? ଇତ୍ୟାଦି ଇତ୍ୟାଦି...

ବେହେରା ଯେତେ ଯାହା ବୁଝିଲେ ତଥାପି ତାଙ୍କ ମନରେ ସନ୍ଦେହ ହେଲା-କିଏ କ'ଣ ନେଇଗଲେ କି? ବେଶି ତାଙ୍କ ପୁଅମାନଙ୍କ ଉପରେ ସନ୍ଦେହ। ସେଇମାନେ ବେହେରାଙ୍କୁ ଭାରି ହଇରାଣ କରନ୍ତି। ସ୍ତ୍ରୀ ଉପରେ ଏତେ ସନ୍ଦେହ ହୁଏନା, କାରଣ ତାଙ୍କ ହାତରେ ବଙ୍କୁଲିବାଡ଼ି ଥିବା ଯାଏଁ, ସେ ସେମିତି କରିବାକୁ ସାହସ କରିବ ନାହିଁ। ପୁଅଗୁଡ଼ାକ ଭେଣ୍ଡା, ସେ କ'ଣ ବଙ୍କୁଲିବାଡ଼ିର ମହିମାକୁ ଖାତିର କରୁଛନ୍ତି?

ଚିକିତ୍ସାରେ ବେହେରାଙ୍କ ଜ୍ଞାନ ଫେରିବା ପରେ ଆଉ ଡାକ୍ତରଙ୍କ ପାଦ ଘରେ ପଡ଼ି ନାହିଁ। ତଥାପି ଡାକ୍ତର ବେହେରାଙ୍କ ପୁଅମାନଙ୍କଠାରୁ ବେହେରାଙ୍କ ଅବସ୍ଥା ଖବର ନିଅନ୍ତି। ପୁଅମାନେ ଡାକ୍ତରଙ୍କୁ ଭାରି ଭକ୍ତି କରନ୍ତି।

ଗାଁ ଲୋକମାନେ ଯେଉଁବାଟ ଦେଇ ଗାଁ'ରୁ କାମଧନ୍ଦାକୁ ଯା'ଆସ କରନ୍ତି; ସେଇ ଛକ ମୁଣ୍ଡରେ ଗାଁ'ର ଡାକ୍ତରଖାନା। ଯେ ସେ ବାଟ ଦେଇ ଯା'ଆସ କରନ୍ତି, ସେମାନେ ଡାକ୍ତରଙ୍କୁ ଦେଖନ୍ତି ଆଉ ଡାକ୍ତର ମଧ୍ୟ ତାଙ୍କରି ଅଫିସ୍ ଘରେ ବସି ସେ ବାଟ ଦେଇ ଗାଁ ଲୋକେ ଗଲେ, ଆଇଲେ ସମସ୍ତଙ୍କୁ ଦେଖି ପାରନ୍ତି।

ଯା ସଙ୍ଗେ କଥାବାର୍ତ୍ତା କରିବାର ଇଚ୍ଛା ହୁଏ, କୌଣସି ଖବର ବୁଝିବାର ଥିଲେ ଲୋକକୁ ଡାକି ବୁଝନ୍ତି।

ଦିନେ ସକାଳ ବେଳା ଡାକ୍ତର ବାବୁ ତାଙ୍କର ଅଫିସ୍ ଘରେ ବସିଛନ୍ତି, ବେହେରାଙ୍କ ବଡ଼ ପୁଅ ହଳ ନେଇ ବିଲକୁ ଯାଉଥିବାର ଦେଖି ଡାକିଲେ। ବେହେରାଙ୍କ ବଡ଼ ପୁଅ କତିକୁ ଆସିଲାରୁ ଡାକ୍ତର ପଚାରିଲେ- "ହଇରେ, ବାପ କିମିତି ଅଛି?" ବେହେରାଙ୍କ ବଡ଼ପୁଅ ତରବର ହୋଇ ଉତ୍ତର ଦେଲା-ବୁଢ଼ା ଭଲ ଅଛି।

ତା'ର କିଛି ସମୟ ପରେ ବେହେରାଙ୍କ ମଝିଆ ପୁଅ ବିନୋଦିଆ ସିକାରେ ଦି'ଟା ଦୁଧଭରା ଠେକି ବସେଇ ଡାହାଣ ହାତରେ ସିକାକୁ ଧରି ତରବରରେ ବଜାର ଆଡ଼କୁ ବାହାରି ଯାଉଥିବାର ଦେଖି ଡାକ୍ତର ଡାକିଲେ। ବିନୋଦିଆ କତିକୁ ଆସିବାରୁ ଡାକ୍ତର ପଚାରିଲେ- "ହଇରେ, ବାପ କ'ଣ କରୁଥିଲା? କିମିତି ଅଛି?"

ବିନୋଦିଆ ଉତ୍ତର ଦେଲା- "ବାପା ଦାନ୍ତ ଘଷୁଥିଲା, ଭଲ ଅଛି...।"

ବିନୋଦିଆ ଏତକ କହି ତରବରରେ ଅଧା ଦଉଡ଼ି ଅଧା ଚାଲି ଅବସ୍ଥାରେ ବଜାର ଆଡ଼କୁ ମୁହାଁଇଲା।

ଆଉ କିଛି ସମୟ ପରେ ବେହେରାଙ୍କର ସାନ ମଝିଆ ପୁଅ ଗୋଟାଏ ମାଛମରା ଜାଲ ଧରି ଖଣ୍ଡେ ବିଡ଼ି ଟାଣୁ ଟାଣୁ ଡାକ୍ତରଖାନା ସାମନା ଦେଇ ଗଲାବେଳେ ଡାକ୍ତରଙ୍କ ଦୃଷ୍ଟି ପଡ଼ିବାରୁ ସେ ତାକୁ ଡାକିଲେ। ସେ ବିଡ଼ି ଖଣ୍ଡ ଫୋପାଡ଼ି ଦେଇ ଡାକ୍ତରଙ୍କୁ ଓଳଗି ହେବାରୁ ଡାକ୍ତର ପଚାରିଲେ- "କିରେ, ବାପ ଖବର କ'ଣ?"

ସାନ ମଝିଆ ଉତ୍ତର ଦେଲା- "ଆପଣଙ୍କ ଯୋଗୁଁ ମୋ ବାପା ଏଥର ବଞ୍ଚିଗଲା, ଆମେ ତ ଆଶା ଛାଡ଼ି ଦେଇଥିଲୁ।"

ଡାକ୍ତର କହିଲେ- "ହଁ, ଭଲ ଅଛି ବୋଲି ତୋ ଭାଇ ଦି'ଜଣ କହୁଥିଲେ।"

ବେହେରାଙ୍କ ପୁଅ ପୁଣି କହିଲା- "ଭଲ ନାହିଁ, ଆଉ କ'ଣ? କେତେ ଟାଣ ହେଇଗଲାଣି ପୁଣି ପୂର୍ବପରି ପାଟିତୁଣ୍ଡ କରି ଘର କମ୍ପଉଛି, ଅଭିକା ତ ବୋଉ ସାଙ୍ଗରେ ପାଟିତୁଣ୍ଡ କରୁଥିଲା ନା କ'ଣ।"

ସାନ ମଝିଆ ବିଦାୟ ନେଲେ।

ତା'ପରେ ବେହେରାଙ୍କ ସାନପୁଅ ଗୋଟାଏ ଗାଈକୁ ପଘାରେ ବାନ୍ଧି, ପଘା ଧରି ଗାଈକୁ ଅଡ଼େଇ ନଉନଉ ମୁହଁରେ ଧାଡ଼ିଏ ହିନ୍ଦିଗୀତରୁ 'ଯାଦୁ ନଗରୀ ସେ ଆୟା'...ବୋଲି ବୋଲି ଯାଉଥିଲା ଡାକ୍ତର ବାବୁଙ୍କ ଦୃଷ୍ଟି ପଡ଼ିବାରୁ ଗୀତ ବୋଲିବା ବନ୍ଦ କରି ଡାକ୍ତର ବାବୁଙ୍କୁ ଓଳଗି ହୋଇ ଭଲ ପିଲା ପରି ଆସି ଡାକ୍ତର ବାବୁଙ୍କ ସାମନାରେ ଠିଆ ହେଲାରୁ ଡାକ୍ତର ବାବୁ ପଚାରିଲେ- "କିରେ କୁଆଡ଼େ ଯାଉଛୁ?"

ସାନ ପୁଅ ଉତ୍ତର ଦେଲା-ଆଜ୍ଞା ଏ ଗାଈଟାକୁ ପଶୁ ଡାକ୍ତରଖାନାକୁ ନଉଛି, ଯାର କ'ଣ ହେଇଛି ଆଦୌ ଖାଉ ନାହିଁ...।"

ଡାକ୍ତର ବାବୁ- "ଆଉ ସବୁ ଭଲ?"

ସାନପୁଅ- "ହଁ, ଆଜ୍ଞା...।"

ଏତକ କହି ବେହେରାଙ୍କ ପୁଅ ବିଦାୟ ନେଲା। କିଛି ସମୟ ପରେ ଡାକ୍ତର ବାବୁ ନିଜ କାମରେ ଲାଗିଛନ୍ତି, ରୋଗୀ ଭିଡ଼ିଗଲେଣି ହଠାତ୍ ଗାଁ ଭିତରୁ ଗୋଟାଏ ପାଟିତୁଣ୍ଡ ହବାର ଶୁଣାଗଲା। ଡାକ୍ତର ଆଶ୍ଚର୍ଯ୍ୟ ହୋଇ ଭାବିଲେ- କ'ଣ ଗୋଟାଏ ଗାଁ ଭିତରେ ଗୋଳମାଳ ଶୁଣାଯାଉଛି! ଡାକ୍ତର ବାବୁ ଅଳ୍ପ ସମୟ କାନ ଡେରିବା ପରେ ଦେଖିଲେ-ଗାଁ ଭିତରୁ ବେହେରାଙ୍କ ସ୍ତ୍ରୀ ପାଗଳୀ ପରି କାନ୍ଦି କାନ୍ଦି ଡାକ୍ତରଖାନା ଆଡ଼କୁ ଦୌଡ଼ି ଦୌଡ଼ି ଆସୁଛି।

ବେହେରାଙ୍କ ସ୍ତ୍ରୀ ଡାକ୍ତରଖାନା ଭିତରକୁ ପଶି ଆସି ଡାକ୍ତର ବାବୁଙ୍କ ଅଫିସ୍ ଘର ଭିତରେ ଚଟାଣ ଉପରେ ଡାକ୍ତର ବାବୁଙ୍କ ଗୋଡ଼ ତଳେ ଠୋ କରି ମୁଣ୍ଡ ବାଡ଼େଇ ଦେଇ କାନ୍ଦି କାନ୍ଦି କହିବାକୁ ଲାଗିଲା- "ବୁଢ଼ା ଶୋଇଥିଲା, ମୁଁ କାହିଁକି ଡାକିଲାରୁ ଆଉ ଶୁଣୁ ନାହିଁ। କାଠପରି ପଡ଼ିଛି, ଆପଣ ଆସନ୍ତୁ ଦେଖିବେ.... ।"

ଡାକ୍ତର ବାବୁ ଆଶ୍ଚର୍ଯ୍ୟ ହୋଇ କହିଲେ-ମୁଁ କ'ଣ ଅଭିକା ତୁମର ପୁଅମାନଙ୍କୁ ପଚାରି ଖବର ନେଲି, ବୁଢ଼ା ଭଲ ଅଛି ବୋଲି ସେମାନେ ସମସ୍ତେ କହିଗଲେ, ତୁମେ କ'ଣ କହୁଛ... !

ବେହେରାଙ୍କ ସ୍ତ୍ରୀ କାନ୍ଦି ଦୁଃଖ କରି କହିଲା- "ବାବୁ ସେମାନେ କ'ଣ ବାପକୁ କିଏ ଦେଖନ୍ତି ନା ବାପର ଖବର ଟିକିଏ ବୁଝନ୍ତି? ଏଇଥିରୁ ବୁଝୁ ନାହାନ୍ତି- ପୁଅମାନେ ସକାଳୁ ଉଠି କିଏ କୁଆଡ଼େ ଗଲେଣି, ମୁଁ ବୁଢ଼ୀଟାଏ ସକାଳୁ ଉଠି ଘର କାମ ସାରି ବୁଢ଼ାଙ୍କ ଲାଗି ଗରମ ପାଣି କରି ବୁଢ଼ାକୁ ଦାନ୍ତ ଘଷେଇବା ପାଇଁ ଉଠେଇଲାରୁ ଡାକି ଡାକି ଶୁଣୁ ନାହାନ୍ତି, ଆପଣ ଚାଲନ୍ତୁ ବୁଢ଼ାକୁ ଦେଖିବେ।"

ଡାକ୍ତର ବାବୁ ଆଶ୍ଚର୍ଯ୍ୟ ହୋଇ ଭାବିଲେ-କ'ଣ!! ପୁଅମାନେ ଖାଲି ଗୁଡ଼ାଏ ମିଛ ଖବର ଦେଇଗଲେ! କେହି ପ୍ରକୃତ ଦେଖି ନାହାନ୍ତି!! ଆଗରୁ ପ୍ରବାଦ ଅଛି- "ବହୁ ପୁତ୍ରେ ଦୁଃଖ ନାଶ", ଏ ତ ତା'ର ଠିକ୍ ଓଲଟା କଥା... ।

ବେହେରାଙ୍କ ସ୍ତ୍ରୀଙ୍କ ଅନୁରୋଧ ଏବଂ ଆଉ କେତେକ ଗାଁ ଲୋକଙ୍କ କଥାରେ ଡାକ୍ତର ଯାଇ ବେହେରାଙ୍କ ଘରେ ବେହେରାଙ୍କୁ ପରୀକ୍ଷା କରି ଯାହା ମତ ପ୍ରକାଶ କଲେ, ସେଥିରୁ ଜଣା ପଡ଼ିଲା-ବେହେରା ନିଜର ସ୍ଥାବର ଅସ୍ଥାବର ସମ୍ପତ୍ତି, ବନ୍ଧୁ, କୁଟୁମ୍ବ, ସ୍ତ୍ରୀ, ପୁତ୍ର, ଗାଈ, ମଇଁଷି ଇତ୍ୟାଦିଙ୍କ ମାୟା କାଟି, ସ୍ଥିର ଗଭୀର ନିଦ୍ରାବସ୍ଥାରେ ସ୍ୱର୍ଗରେ ହେଉ ବା ନରକରେ ହେଉ ଏକାକୀ ଗତ ରାତିରୁ ବଙ୍କୁଲି ବାଡ଼ିର ବିନା ସାହାଯ୍ୟରେ ଯାଇ ପହଞ୍ଚି ସାରିଲେଣି.... ।

# ସଧବା

ଅ-ଅ-ଅ-ଗଲ-ଗଲ-ଗଲ ବୋପାଲୋ ଆଉ ବଞ୍ଚିବି ନାହିଁ ଲୋ। ଅ-ଅ-ଅ-ଗଲ-ଗଲ-ଗଲ ମରିଗଲିଲୋ, ବାପ ଆଉ ବଞ୍ଚିବି ନାହିଁ...।

ବାନ୍ତି କରିବାର ଶବ୍ଦ ଶୁଣି ଅନନ୍ତ ବାବୁଙ୍କର ନିଦ ଭାଙ୍ଗିଗଲା, କିଏ ବାନ୍ତି କରୁଛି? ଅ-ଅ-ଅ-ଗଲ-ଗଲ-ଗଲ ଟୋପାଏ ପାଣି, ଓଃ ଛାତି କ'ଣ ହେଉଯାଉଛି...!! ଅନନ୍ତ ବାବୁ ଝଟ୍ କରି ବିଛଣାରୁ ଉଠିଯାଇ ଦେଖନ୍ତି ନିଜ ସ୍ତ୍ରୀଙ୍କର ବାନ୍ତି ହେଉଛି।

ଅନନ୍ତ ବାବୁ ପଚାରିଲେ-କ'ଣ ବାନ୍ତି ହେଲା କାହିଁକି?

ସ୍ତ୍ରୀ ପୁଣି ଥରେ ବାନ୍ତି କରୁ କରୁ କହିଲେ-ମୋଟେ ହଜମ ହେଲା ନାହିଁ, ପେଟ ମୋଡ଼ି ମୋଡ଼ି ହେଲା, ବାନ୍ତି ମଡ଼େଇଲା।

ଅନନ୍ତ ବାବୁ ଛାନିଆ ହୋଇଗଲେ, ରାତି ନିଶବ୍ଦ, କେହି କୁଆଡ଼େ ନାହାନ୍ତି। ସାହି ଘରେ କିଏ କୁଆଡ଼େ ଶୋଇଛନ୍ତି, କ'ଣ କରିବେ? କିଛି ସମୟ ପରେ ସ୍ତ୍ରୀ ମୁହଁ ହାତ ଧୋଇ ଆସି ବିଛଣାରେ ଶୋଇଲେ, ପେଟରେ ଯନ୍ତ୍ରଣା ବନ୍ଦ ହୋଇ ନାହିଁ।

ଅନନ୍ତ ବାବୁ କହିଲେ ଆଚ୍ଛା, ଯା' ବାହାରି ଯିବାର ବାହାରି ଯାଉ ଭୟ କରନା, ମୁଁ ମନା କରୁଛି ତୁମେ ଏତେ ମାଛ ଖାଅନା, ମାନିଲ ନାହିଁ। ତା'ର ଫଳ ତୁମେ ଭୋଗିବ ନାହିଁ ତ ଆଉ କିଏ ଭୋଗିବ?

ଅନନ୍ତ ବାବୁଙ୍କର କଥା ଶେଷ ନ ହେଉଣୁ ପୁଣି ସ୍ତ୍ରୀ ବାରନ୍ଦାକୁ ଉଠିଯାଇ ପୂର୍ବ ପରିଚିତ ଛନ୍ଦରେ ଆରମ୍ଭ କଲେ ଅ-ଅ-ଅ-ଗଲ-ଗଲ-ଗଲ; ମରିଯିବି ଲୋ, ଆଉ ବଞ୍ଚିବି ନାହିଁ, ଆଉ ବଳ ପାଉନାହିଁ ଇତ୍ୟାଦି....

ଅନନ୍ତ ବାବୁ ସ୍ତ୍ରୀଙ୍କର ପିଠି ଆଉଁସି ଦେଲେ, ପାଣି ଯୋଗେଇ ଦେଲେ କୁଳକୁଚା କରିବା ପାଇଁ, ମୁହଁ ଧୋଇବା ପାଇଁ କିନ୍ତୁ ଘରେ ଚାକରବାକରଙ୍କୁ ଡାକିଲେ ନାହିଁ କାରଣ ଉଠିଲେ ଏତେ ରାତିରେ ବାନ୍ତି ହେବାର ଦେଖି ଭୟ କରିବେ, ପିଲାମାନେ ଶୋଇଥା'ନ୍ତି। ଅନନ୍ତବାବୁଙ୍କ ମନଟା ପାପ ଆଡ଼କୁ ଧାଇଁଲା-କ'ଣ ହେବ? କଲେରା ନୁହେଁ ତ! ସ୍ତ୍ରୀ ଆସି ପୁଣି ସ୍ୱ-ଶଯ୍ୟାରେ ଶୋଇଲେ। ଅନନ୍ତ ବାବୁ କହିବାକୁ ଲାଗିଲେ-ମୁଁ ମନାକରୁଛି। ରୋହି ମାଛ ରୋହି ମାଛ ପୁଣି ସଜ, ବାସି, କିଛି ବାରଣ ରଖିଲ ନାହିଁ...।

ସ୍ତ୍ରୀ ଖଟ ଉପରେ ଶୋଇ ପେଟ ଚିପୁ ଚିପୁ କହିଲେ-କିଛି ତ ଖାଇ ହେଲାନି, ଆଉଁଷ ଟିକିଏ ଦେଇ ନଖାଇବି ତ, ଆଉ କ'ଣ ଲଗେଇ ଖାଇବି? କି ମାଛ ଖାଇଲି ଯେ, ସେଇଥିରେ ଏତେ କଥା!

ଅନନ୍ତ ବାବୁ ପ୍ରତ୍ୟୁତ୍ତରରେ କହିଲେ-ଅଭିକା କ'ଣ ହଉଛି, କିଏ କଷ୍ଟ ପାଉଛି?

ସ୍ୱାମୀଙ୍କ କଥା ଶେଷ ନହେଉଣୁ ରଙ୍ଗମଞ୍ଚରେ ଦୃଶ୍ୟ ପରିବର୍ତ୍ତନ ପରି ସ୍ତ୍ରୀ ପୁଣି ଖଟ ଉପରୁ ବାରନ୍ଦାକୁ ଉଠିଯାଇ ଗଦ୍ୟ ଛନ୍ଦରେ ଗୁଡ଼ିଏ ଭାତ, ମାଛ କେଉଁ ଦିନର ସଜନାଶାଗ ଉଦ୍‌ଗାର କରୁ କରୁ କହିଲେ-ଆଉ ବଞ୍ଚିବି ନାହିଁ, ମୋ ପିଲାଛୁଆ ରହିଲେ, ତୁମକୁ ଲାଗିଲା।

ଏଥର ଅନନ୍ତ ବାବୁ ଦେଖିଲେ-ସ୍ତ୍ରୀ ପ୍ରକୃତ ଦୁର୍ବଳ ହୋଇ ପଡ଼ିଲେଣି, ତାଙ୍କ ହାତ ଧରି କୌଣସିମତେ ଆଣି ବିଛଣାରେ ଶୋଇଦେଲେ। ସ୍ତ୍ରୀ କାନ୍ଦ କାନ୍ଦ ହୋଇ କହିଲେ- ଆଉ ମୋ ଗୋଡ଼ ହାତ ଚଳୁନାହିଁ, ଆଉ ବଞ୍ଚିବି ନାହିଁ, ମୋ ପିଲାଛୁଆ ତୁମକୁ ଲାଗିଲେ...।

ଏଥର ଅନନ୍ତ ବାବୁ ସ୍ତ୍ରୀଙ୍କର ଆଶୁ ସ୍ୱର୍ଗାରୋହଣର ଆଶଙ୍କାରେ ବ୍ୟଥିତ ହୋଇ ଭଗବାନଙ୍କଠାରୁ ଆରମ୍ଭ କରି ଗ୍ରାମଦେବତୀ ପର୍ଯ୍ୟନ୍ତ ସ୍ମରଣ କରି ସ୍ତ୍ରୀଙ୍କର ଏ ଯାତ୍ରା ସ୍ଥଗିତ କରିବା ପାଇଁ ମନେ ମନେ ପ୍ରାର୍ଥନା କଲେ। ସେଥିରେ ମଧ୍ୟ ମନ ଥୟ ହେଲା ନାହିଁ କେଉଁ ଦିନର ଗୋଟିଏ ଶିଶିରେ କ'ଣ ହଜମି ଔଷଧ କେଉଁପାନ ଥିଲା,

ଅନନ୍ୟୋପାୟ ହୋଇ ସେଥିରୁ ପାନେ ଖୁଆଇଦେଲେ । ଔଷଧ ଖାଇବାର କିଛି ସମୟ ପରେ ସ୍ତ୍ରୀ ଶୋଇ ପଡ଼ିଲେ ।

ଅନନ୍ତ ବାବୁଙ୍କର ମନରେ କେତେ ସନ୍ଦେହ ଉପୁଜିଲା-ସ୍ତ୍ରୀର ପ୍ରକୃତ ନିଦ୍ରା ନା ସ୍ୱର୍ଗାରୋହଣ ପୂର୍ବରୁ Preparatory leave । କ'ଣ କରିବେ, ଆଖପାଖରେ କେହି ଚିକିତ୍ସକ ନାହାନ୍ତି ଯେ କାହାକୁ ଯାଇ ଡାକି ଆଣିବେ, ସେଥିରେ ପୁଣି ନିଶା ଗର୍ଜୁଛି ।

ଅନନ୍ତ ବାବୁ ନିଜ ଜ୍ଞାନ ବୁଦ୍ଧିରେ ଠିକ୍ କଲେ-ନା, ଏ ସ୍ତ୍ରୀଙ୍କର ପ୍ରକୃତ ନିଦ୍ରା ।

ସ୍ତ୍ରୀଙ୍କର ନିଦ୍ରାବସ୍ଥାରେ ନିଜେ ଯାଇ ସ୍ତ୍ରୀ ଉଦ୍‌ଗାର କରିଥିବା ଅର୍ଦ୍ଧଜୀର୍ଣ୍ଣ ଆହାର ସବୁ ଧୁଆ ହୋଇ କରି ପରିଷ୍କାର କରିଦେଲେ । କାରଣ ସକାଳେ ପିଲାମାନେ ଉଠିଲେ, ଚାକର ବାକର ଉଠିଲେ ଏ ସବୁ ଦେଖି ଭୟଭୀତ ହୋଇପାରନ୍ତି ।

ଅନନ୍ତ ବାବୁ କିଛି ସମୟ ସ୍ତ୍ରୀକୁ ଚାହିଁ ବସି ରହିଲେ । ମନ ମଧ୍ୟରେ କେତେ ଗୁରାଏ କଥା ଉଠିଲା ପଡ଼ିଲା-ସ୍ତ୍ରୀଙ୍କର ଅକାଳ ବିୟୋଗ ପୁଣି ଦାର ପରିଗ୍ରହ, ଯୌତୁକ, ସାବତମା'ର ପିଲାଙ୍କ ପ୍ରତି ଅତ୍ୟାଚାର-ନା, ସ୍ତ୍ରୀଙ୍କର ଆଉ କିଛି ହବ ନାହିଁ । ସେଇ ସଂସାର, ହସ ଖେଳରେ ଦିନ ଯିବ, ଯେମିତି ଚାଲିଛି, ନା ବୋଧହୁଏ ଏ ସ୍ତ୍ରୀ ତାଙ୍କୁ ଭୋଗ ହେବ ନାହିଁ । କାହିଁ କୌଣସି ଜ୍ୟୋତିଷ ତ କେବେ ତାଙ୍କୁ ଦୁଇଟି ପତ୍ନୀଯୋଗ ଥିବାର କହି ନାହାନ୍ତି । ଏମିତି ଭାବୁ ଭାବୁ ଅନନ୍ତ ବାବୁଙ୍କୁ କେତେବେଳେ ନିଦ ଆସିଲା, ସେ ଶୋଇ ପଡ଼ିଲେ ତାଙ୍କୁ ଜଣା ନାହିଁ ।

ତହିଁ ଆରଦିନ ସକାଳେ ଯେତେବେଳେ ତାଙ୍କର ନିଦ୍ରା ଭଙ୍ଗ ହୁଏ, ସେତେବେଳକୁ ଚାରିଆଡ଼େ ଖରା ପଡ଼ିଗଲାଣି । ଯେ ଯା'ର କାମରେ ଲାଗି ପଡ଼ିଲେଣି । ଅନନ୍ତ ବାବୁ ଉଠିଲା ବେଳକୁ ସ୍ତ୍ରୀ ଯାଇ ରୋଷେଇ ଘରେ ଜଳଖିଆ ତିଆରି କରିବାରେ ଲାଗିଛନ୍ତି ।

ଅନନ୍ତ ବାବୁ ପଚାରିଲେ-ଦିହ କିମିତି ଲାଗୁଛି ? ସ୍ତ୍ରୀ-ଟିକିଏ ଦୁର୍ବଳ ଲାଗୁଛି, ସେ କିଛି ନୁହଁ ।

ଅନନ୍ତ ବାବୁ ମନେ ମନେ ଭଗବାନଙ୍କୁ ଧନ୍ୟବାଦ ଜଣେଇ ସ୍ତ୍ରୀଙ୍କୁ କହିଲେ-ଦେଖ, ଆଜି ଟିକିଏ ଖାଇବାକୁ ଜଗିଯାଅ, ଆଉ ମାଛ ଘରେ ପୂରେଇବାକୁ ଦିଅ ନାହିଁ ।

x x x x

ସକାଳର ସୂର୍ଯ୍ୟ ମଥାନକୁ ଉଠିଲେ, ଦୂରରେ ମରୀଚିକାର ଖେଳ ଦେଖି ପଥିକର ଆଖି ଝଲସିଗଲା । ବିଲ ପାଟରେ ଜମିଥିବା ପାଣି ଚକ୍ ଚକ୍ ଦିଶିଲା । ଅନନ୍ତ ବାବୁ ଭାତ ଖାଇ ବସିଲେ, କତିରେ ସ୍ତ୍ରୀ କାନ୍ଥକୁ ଆଉଜି ବସିଥାନ୍ତି । ଅନନ୍ତ ବାବୁ ଯେମିତି ଖାଲି ଭାତ, ଡ଼ାଲି, ତରକାରି ଖାଇବାକୁ ଆଶା କରିଥିଲେ, ଠିକ୍ ସେହିପରି ସ୍ତ୍ରୀ କଥା ମାନି ସବୁ କରିଛନ୍ତି । ଅନନ୍ତ ଖାଉ ଖାଉ ସ୍ତ୍ରୀଙ୍କୁ କହିଲେ-ଦେଖ, ଅଭିକା ଦୁଇ ଚାରିଦିନ ମାଛ ଏକବାରେ ଘରେ ପୂରେଇବାକୁ ଦିଅନା ।

ସ୍ତ୍ରୀ ମଧ୍ୟ ସ୍ୱାମୀଙ୍କ କଥାରେ ପାଳି ଧରିଲା ପରି କହିଲେ-ଆଉ ମାଛ, ଦୁଇ ଚାରିଦିନ କ'ଣ କହୁଛ ? ହପ୍ତାଏ ଯାଉ, ପନ୍ଦରଦିନ ଯାଉ, ଆଉ ମୁଁ ମାଛ କିଣୁଛି ? କାଲି ମରିଯାଇଥାନ୍ତି ଆଉ ସେ ମାଛ ନାଁ ଧରନା... ।

ଅନନ୍ତ ବାବୁ ଖାଇସାରି ଉଠି ହାତ ମୁହଁ ଧୋଇ ବିଛଣାରେ ପଡ଼ିବାକୁ ଯାଉଛନ୍ତି, ଏତିକିବେଳେ ଦାଣ୍ଡ ଆଡୁ ଶୁଣାଗଲା- 'ସାନ୍ତାଣୀ ମାଛ ରଖିବ କି ? ଆଜି ଭଲ ମାଛ ଆଣିଛି, ତୁମେ ଯେମିତି ମାଛ ଖୋଜୁଥିଲ ।'

ନାଗୁଆଣୀ ମାଛବାଲି କଥାରେ ଏ କେତେଟା ଧାଡ଼ି ଅନନ୍ତ ବାବୁଙ୍କ କାନରେ ବାଜିଲା । ଅନନ୍ତ ବାବୁ ଶୁଣି ନଶୁଣିଲା ପରି ବିଛଣାରେ ପଡୁ ପଡୁ ସ୍ତ୍ରୀ ଏବଂ ମାଛବାଲିର କଥୋପକଥନଗୁଡ଼ାକ କ୍ରମଶଃ ଅସ୍ପଷ୍ଟ ହୋଇ ଶୁଣାଗଲା । ଗତ ରାତିରେ ଭଲ ନିଦ ହୋଇନାହିଁ । ଏଣୁ ଅନନ୍ତ ବାବୁ ବିଛଣାରେ ପଡ଼ିଲା ମାତ୍ରେ ତାଙ୍କୁ ଆଉ କିଛି ଜଣାନାହିଁ ।

x x x

ଛେଁ-ଛେଁ-ଛେଁ-କଳ-କଳ, ଛେଁ ଛେଁ ଅନନ୍ତ ବାବୁଙ୍କ ନିଦ୍ରା ଭଙ୍ଗ ହେଲା ପୁଣି ସେହି ଶବ୍ଦ-ଛେଁ-ଛେଁ-କଳ-କଳ-କଳ ଘର ଅଗଣା ସବୁ ମାଛ ଭଜାର ବାସ୍ନାରେ

ଭରପୂର । କ'ଣ ମାଛ ଭଜା ହେଉଛି ନା କ'ଣ! ମାଛ କିଏ ଭାଜୁଛି ? ଅନନ୍ତ ବାବୁ ରୋଷେଇ ଘରକୁ ଯାଇ ଦେଖନ୍ତି-ସ୍ତ୍ରୀ ବେଶ୍ ତତ୍ପରତାର ସହିତ କେତେକ ମାଛ ଖଣ୍ଡକୁ କରେଇରେ ଲେଉଟେଇବାରେ ଲାଗିଛନ୍ତି ।

ଅନନ୍ତ ବାବୁ ପ୍ରଶ୍ନ କଲେ-ଏ କ'ଣ! ତୁମେ ପୁଣି ମାଛ କିଣି ମାଛ ଭାଜିବାରେ ଲାଗିଛ ?

ସ୍ତ୍ରୀ ଉତ୍ତର ଦେଲେ-ହଁ ମାଛ ଭାଜିବ ନାହିଁ କାହିଁକି, ମୁଁ ଆଦୌ ଭାତ ଖାଇ ପାରୁ ନାହିଁ ?

ଅନନ୍ତ ବାବୁ କହିଲେ-କାଲି ରାତିସାରା ଶୋଇବାକୁ ଦେଇନା, କାଲି ରାତି କଥା ଭୁଲିଗଲଣି ।

ସ୍ତ୍ରୀ ଆହୁରି ଟିକିଏ ଚଢ଼ା କଣ୍ଠରେ ଉତ୍ତର ଦେଲେ- ମଲେ ମରିବି । ମୁଁ ସଧବା, ମୁଁ ଆଇଁଷ ଛାଡ଼ି ରହି ପାରିବିନି । ସେ ଅଲକ୍ଷଣା କଥାଗୁଡ଼ାକ ମୋତେ କୁହନା, ତୁମେ ଗଲ ଏଠୁ ।

ଅନନ୍ତ ବାବୁ ପ୍ରତ୍ୟୁତ୍ତରରେ କହିଲେ-ଓଃ, ତୁମେ ତେବେ ଖାଲି ସଧବା ନୁହଁ-ସଧବା ଅଧ୍ୟ ସୁଲକ୍ଷଣୀ ହୋଇ ଯିବାକୁ ବି ଚାହଁ ।

ଗୃହିଣୀ ଦାନ୍ତ କାମୁଡ଼ି କହିଲେ-ହଁ ସେଇୟା ତମେ ତ ସେଇୟା ପାଞ୍ଚୁଛ-ମୁଁ ମଲି ତ ଭଲ କଲି-ଆଚ୍ଛା କଲି- ତମର କ'ଣ ଗଲା ?

ଅନନ୍ତ ବାବୁଙ୍କ ମୁହଁରୁ ଖାଲି ବାହାରି ଆସିଲା ପଦେ କଥା- "ଠାକୁରେ"... ।

# ମନାନମିଆଁ ମଟର ଗାଡ଼ି

ଗାଁ ଶେଷ ମୁଣ୍ଡରେ ଖଣ୍ଡିଏ ଚାଳଘର। ଚାଳ ଉପରେ ଲାଉ ଗଛ ଲଟିଥାଏ। ଘର ସାମନାରେ କେତେଗୁରାଏ କୁକୁଡ଼ା ଚରୁଥାନ୍ତି। କେତେଟା ଛେଳି ଅଳ୍ପ ଦୂରରେ ବନ୍ଧା ହୋଇଥାନ୍ତି ଆଉ ଦି'ଚାରିଟା କୁକର ଘର ଦୁଆର ମୁହଁକୁ ଜଗି ଶୋଇଥାନ୍ତି। ମନାନମିଆଁ ଘର ଦୁଆର ମୁହଁର ଅଳ୍ପ ଦୂରରେ କେହି ନବାଗତ ଲୋକ ପାଦ ପକାଇବା ପାଇଁ ସାହସ କରନ୍ତି ନାହିଁ କୁକୁରଙ୍କ ଭୟରେ। କାଉଟାଏ ବସିଲେ କୁକୁର ଗୋଡ଼େଇ ଯାଆନ୍ତି।

ମନାନମିଆଁ ଘରର ପଶ୍ଚିମ ଆଡକୁ ଅଳ୍ପ ଦୂରରେ ଖଣ୍ଡେ ପୁରୁଣା ଛୋଟିଆ ଜୀର୍ଣ୍ଣ-ଶୀର୍ଣ୍ଣ ମଟର ଗାଡ଼ି ଥୁଆ ହୋଇଥାଏ।

କୁକୁରଗୁରାକ ବେଳେବେଳେ ଖରା ଦାଉରୁ ନିଜକୁ ରକ୍ଷା କରିବା ପାଇଁ ସେହି ଭଙ୍ଗା ମଟରଗାଡ଼ି ତଳେ ଶୋଇଥାନ୍ତି।

ମନାନମିଆଁକୁ ଅନେକ ଲୋକ ଆସି ଡାକନ୍ତି। ଦିନ ତମାମ ଅନ୍ତତଃ ଆଠ ଦଶଜଣ ଲୋକ, ଜଣକେ ଗୋଟାଏ ଦି'ଟା ବଳଦ ଆଣି ମନାନମିଆଁକୁ ଡାକ ପକାନ୍ତି-ମନାନମିଆଁ ଘରେ ଅଛ କି? ମନାନମିଆଁ ଘରେ ଅଛ କି?

କେହି କେହି 'ମନା' ମିଆଁ ବୋଲି ଡାକ ଛାଡ଼ନ୍ତି।

ମନାନମିଆଁର ବେପାର ହେଲା ବଳଦଙ୍କ ଗୋଡ଼ରେ ନାଲମାରିବା। ସେ ଅଞ୍ଚଳ ଖଣ୍ଡକରେ ମନାନମିଆଁ ଛଡ଼ା ବଳଦ ଗୋଡ଼ରେ ନାଲ ମାରିବା କାମ କେହି କରିପାରନ୍ତି ନାହିଁ। ଆଉ ମନାନମିଆଁର ବେପାର ହେଲା-ସେ ଲୋକଙ୍କୁ କେତେ ଠୁଣ୍ଠୁଣିକିଆ ଔଷଧ ଦବା, ପିଲାଙ୍କୁ ଝାଡ଼ ଫୁଙ୍କ କରିବା, କେତେକ ବୋହୂଝିଅ-ଯାହାଙ୍କୁ ଭୂତ, ପ୍ରେତ, ଡାହାଣୀ ଲାଗିଲା-ତାଙ୍କୁ ଝାଡ଼ି ଫୁଙ୍କି ଔଷଧି ଦେଇ ଭଲ କରିବା, ଯେଉଁ ଘରେ ଭୂତ,. ପ୍ରେତ, ଡାହାଣୀ ଆଶ୍ରା କରେ, ସେଠୁଁ ସେମାନଙ୍କୁ ତଡ଼ିବା। ମନାନମିଆଁକୁ ଗୁଣିଟୁଣି ଜଣାଅଛି। ଏକଥା ସମସ୍ତେ ଜାଣନ୍ତି।

ଯେ କେହି ଆସି ବଳଦ ନେଇ ଡ଼ାକ ପକେଇଲେ, ମନାନମିଆଁ ତା'ର ଅଖା ମୁଣିରେ ଥିବା ନାଲ ମାରିବାର ହାତ ହତିଆର ଘେନି ପଦାକୁ ବାହାରି ପଡ଼େ। 'କିଏ ଡାକୁଛି' ଏଣେ ତେଣେ ଚାହେଁ, ଲୋକଙ୍କୁ କତିକି ଡାକି ବଳଦ ଗୋଡ଼ରେ ନାଲ ମାରେ।

ମନାନମିଆଁର ଦୁଇ ପୁଅ-ହୁମା, ଦୁମା। ମନାନମିଆଁ ଘରେ ନଥିଲେ; ହୁମା, ଦୁମା କେହି ଥିଲେ ମଧ ବଳଦ ଗୋଡ଼ରେ ବେଳେବେଳେ ନାଲ ମାରନ୍ତି।

ବଳଦ ଗୋଡ଼ରେ ନାଲ ମାରିଲାବେଳେ ଅନେକ ରକମ ଗପ ପଡ଼େ। ଅନେକ ମନାନମିଆଁକୁ ଆଉ କେତେକ ହୁମା, ଦୁମାକୁ କହନ୍ତି-ଭାଇ ଏ ଗାଡ଼ି ଖଣ୍ଡକ ଇମିତି ପକେଇ ରଖିଛ କାହିଁକି? ତାକୁ ମରାମତି କରି ଚଳେଇଲେ ଅନେକ ପଇସା ରୋଜଗାର ହୁଅନ୍ତା, କେତେ ଲୋକଙ୍କର ସୁବିଧା ହୁଅନ୍ତା, ଯୋଉ ହଇରାଣ ହଉଛନ୍ତି ଲୋକେ ଷ୍ଟେସନ୍ ଯିବା ଆସିବା କରିବା ପାଇଁ।

ଜଣେ କହେ-ଛ'ମାଇଲ ବାଟ! ସେ କିଛି ନୁହେଁ କିନ୍ତୁ ଯୋଉ ଜଙ୍ଗଲ,. ଦିନ ବେଳେ ତ ମନେ ହେଉଛି ବାଘ ନେଇଯିବ, ରାସ୍ତା ଦି'ପାଖରେ କି ଜଙ୍ଗଲ!!!

ଆଉ ଜଣେ କହେ-ଖାଲି ବାଘ ନେଇଯିବ? କାହିଁକି ହାତୀ, ଭାଲୁ, ବାର୍ହା, ସାପ କ'ଣ ନାହିଁ? ସେ ଜଙ୍ଗଲରେ ଖାଲି କ'ଣ ଜଙ୍ଗଲୀ ଜନ୍ତୁ, ମଣିଷ-ଜନ୍ତୁ କ'ଣ କମ ଅଛନ୍ତି! ଡକେଇତି କ'ଣ କମ୍ ହଉଛି ସେ ବାଟରେ!! ଦିନ ଦି'ପହରରେ ଏକୁଟିଆ ପାଇଲେ ତଣ୍ଟି କାଟି ଦେବେ, ଜିନିଷପତ୍ର ଯାହାଥିବ, ଛଡ଼େଇ ନେବେ....।

ଏମିତି ଅନେକ ରକମ ଗପ ସେହି ଭଙ୍ଗା ଗାଡ଼ି ଖଣ୍ଡକୁ କେନ୍ଦ୍ର କରି ପଡ଼େ। ମନାନମିଆଁକୁ କହିଲେ, ମନାନମିଆଁ କହେ-ମୁଁ ହୁମାକୁ ଆଗେ ବାହାଦିଏ, ତା'ପରେ

ସେ ଗାଡ଼ି ମରାମତି କରିବି । ସେଥିରେ ପୂରା ପାଞ୍ଚଶହ ଟଙ୍କା ଲାଗିବ । ଦେଖୁଛୁ କ'ଣ କହୁଛୁ କ'ଣ ? ଦି ଦି'ଟା ଭେଣ୍ଡା ପୁଅ, ଗୋଟାଏ ପଇସା କେହି ମୋତେ ଦେଉଛନ୍ତି ? ଯେ ଯାହା ରୋଜଗାର କଲେ, ସେ ତାଙ୍କର ପାଣ୍ଠି କଲେ । ହୁମାକୁ ମନା କରୁଛି, ସେ ଗାଡ଼ିଟାକୁ କିଣି ଆଣିଲା, ଆରେ ଖାଲି କିଣି ଆଣିଲେ ହେଲା ? ତାକୁ ଚଳେଇ, ସେଥିରୁ ଦି'ପଇସା ବାହାର କଲେ ହବନା.... ।

ଜଣେ କହେ-କାହିଁକି, ତୁମକୁ ତ ଡ୍ରାଇଭର ରଖିବାକୁ ପଡ଼ିବ ନାହିଁ ତୁମର ବଡ଼ପୁଅ ହୁମା ନିଜେ ଡ୍ରାଇଭର ନିଜେ ଚଳାଇବ... ।

ମନାନମିଆଁ ଅଳ୍ପ କାଶୁ କାଶୁ ଉତ୍ତର ଦିଏ-ବୁଝିଲ ଭାଇ, ପୁଅ ଡ୍ରାଇଭର ଯେ, ତାକୁ ପରା ବାହାଦେଇ ନାହିଁ ବୋଲି ସେ ଘରେ ପଶୁ ନାହିଁ । ସେ ବାହାର ଗାଡ଼ି ଚଳଉଛି, ବଡ଼ ଲୋକଙ୍କ କତିରେ ଅଛି, Bedford, Studibecker, Chevrolet, Ambassador କେତେ ଦାମିକା ଗାଡ଼ି ଚଳଉଛି, ଏ ଗାଡି କ'ଣ ସେମିତି ହୋଇଛି ? ଏ ଗାଡ଼ି ଯେତେବେଳେ କିଣିଥିଲା, ତା' ମନଟା ବି ସେମିତି ଥିଲା । ସେତେବେଳେ ସେ ଏ ଗାଁର ସିଘାଂଣୀନାକି ଝିଅଙ୍କ ସାଥୀରେ ଲଟପଟ ହେଉଥିଲା । ଅବିକା ତା'ମନ କାହିଁରେ କ'ଣ, ସେ ଅବିକା ଖୋଜୁଛି- Bedford, Studibecker, Chevrolet କି Ambassador ଗାଡ଼ି ଭଳି ଭାରିଯାଟାଏ... ।

ଜଣେ କହିଲା-କ'ଣ ମନାନ୍ ଭାଇ, ସେଗୁଡାକ ବକି ଯାଉଛୁ ? ତୁମେ ଯା'କର, ଗାଡ଼ିଟାକୁ ଶୀଘ୍ର ମରାମତି କର ।

ମନାନ୍‌ମିଆଁ ଦୁଃଖଭରା କଣ୍ଠରେ ଉତ୍ତର ଦିଏ-ହଉ ତୁମମାନଙ୍କର ନିଶ୍ୱାସ ଆଉ ଆଲ୍ଲାଙ୍କର ଯଦି ବରାଦ ଥିବ ସେ ଗାଡ଼ି ଚାଲିବ...

ଖାଲି ଯେ ଗାଉଁଲି ଲୋକମାନେ ମନାନ୍‌ମିଆଁକୁ ଗାଡ଼ିକୁ ମରାମତି କରି ଚଳେଇବା ବିଷୟରେ ଉପଦେଶ ଦିଅନ୍ତି, ପରାମର୍ଶ କରନ୍ତି, ଗାଡ଼ି ଚଳେଇଲେ ତା'ର ଭଲ ଫଳର ଚେତାବନୀ ଶୁଣାନ୍ତି ଆଉ ଅନୁରୋଧ କରନ୍ତି, ତା' ନୁହେଁ, ସେହି ଜାଗାର ଅଫିସର୍‌ମାନେ ଯେମିତିକି ଡାକ୍ତର, ରେଞ୍ଜର, ଥାନା ଅଫିସର, ପଶୁ ଡାକ୍ତର, ଓଭରସିଅର- ଏମାନେ ମଧ୍ୟ ବେଳେବେଳେ ମନାନମିଆଁକୁ ଭେଟିଲେ, ଅନୁରୋଧ କଲା ଭଳି କହନ୍ତି-କ'ଣ ମନାନମିଆଁ, ଗାଡ଼ି ଖଣ୍ଡକ ପକେଇ ରଖିଛ କାହିଁକି ? ମରାମତି କର, ଚଳାଅ, ଆମେ ଭାରି ହଇରାଣ ହେଉଛୁ ଷ୍ଟେସନ୍ ଯିବା ଆସିବା ପାଇଁ । ତୁମେ ଏଠା ବାସିନ୍ଦା, ତୁମକୁ ବିଶେଷ କୁଆଡ଼େ ଯିବା ଆସିବାକୁ ପଡୁନି । ଆମେମାନେ ଚାକିରିଆ । ଭାରିଯା ପିଲା ଛାଡ଼ି ବାହାରେ ପଡ଼ିଛୁ । ବେଳେବେଳେ ଘରକୁ ଯିବାକୁ ପଡୁଛି । ଯିବା ଆସିବା ପାଇଁ ଯା' କଷ୍ଟ ଭୋଗୁଛୁ, କ'ଣ କହିବୁ... ।

ମନାନମିଆଁ ସ୍ଥାନୀୟ ଅଫିସରମାନଙ୍କ ଏ କଥା ଶୁଣି ରାସ୍ତା ଉପରେ ଅଟକିଯାଇ ମୁଣ୍ଡ କୁଣ୍ଡେଇ ହେଲାଭଳି ମୁଣ୍ଡରେ କେତେକ ଅଙ୍ଗୁଳି ଚାଳନା କରି ଦି'ଥର କାଶି ତିନିଥର ଛିଙ୍କି ଉତ୍ତର ଦେବାକୁ ଆରମ୍ଭ କରି ଯାହା ଉତ୍ତର ଦିଏ, ସେଥିରେ ଭାରତର ମୋଗଲ ବାଦଶାହାଙ୍କ ଯୁଗରୁ ଆରମ୍ଭ କରି ଯେଉଁ ଇତିହାସ ଶୁଣାଏ, ସେ କୌଣସି ଘଟଣା ଇତିହାସରେ ମିଳିବ ନାହିଁ । ଯେଉଁ କେତୋଟି ଧର୍ମଗ୍ରନ୍ଥରୁ ଶ୍ଳୋକର ଆବୃତ୍ତି କରି ଶୁଣାଏ କୋରାନ, ବାଇବେଲ, ଗୀତାରେ ତା'ର ସତ୍ତା ନାହିଁ । ନିଜର ଭଙ୍ଗା ଗାଡ଼ି ଖଣ୍ଡକ ବିଷୟରେ ଭୂମିକା ସହ ଯାହା ମନ୍ତବ୍ୟ ପ୍ରକାଶ କରେ, ସେଥିରେ ବୁଝାଯାଏ ଯେ, ଗାଡ଼ି ଖଣ୍ଡକର ଆଉ ଉପମା ନାହିଁ । ସେ ଗାଡ଼ି ଖଣ୍ଡକ କେବଳ ତା'ରି ଉପମା । ଅନନ୍ୟ ସାଧାରଣ ଅତୁଳନୀୟ, ଶେଷରେ କୁହେ- ବାବୁ, ଏ ହେଲା ୧୯୫୧ ମସିହା, ଦେଖନ୍ତୁ ଏଇ ୧୯୫୧ ମସିହାରେ ଆପଣମାନେ ସେ ଗାଡ଼ିରେ ଚଢ଼ି ନିରାପଦରେ ଷ୍ଟେସନ୍ ଯିବେ, ଯଦି ଆପଣମାନଙ୍କୁ ସେ ଗାଡ଼ିରେ ନଚଢ଼େଇଛି ମୁଁ ମୁସଲମାନ ନୁହେଁ, ମୁଁ ମୋଚି, ଦେଖନ୍ତୁ ମନାନମିଆଁର ଏକ୍ ବାପ୍, ଏକ୍ ବାତ୍... ।

ମନାନମିଆଁର ଏତାଦୃଶ ଦୃଢ଼ ପ୍ରତିଶ୍ରୁତିରେ ଅଫିସରଶ୍ରେଣୀ ଲୋକମାନେ ଆଶ୍ୱସ୍ତ ହୁଅନ୍ତି । ଭାବନ୍ତି- ଯା' ହେଉ, ଏଥର ଷ୍ଟେସନ୍ ଦଉଡ଼ିବାର ଦୁଃଖ ଗଲା । କେତେକ କୁହାକୁହି ହୁଅନ୍ତି-ହଁ, ୧୯୫୧ ମସିହାରେ

ଗାଡ଼ି ଠିକ୍ କରି ଚଳେଇବ। ମନାନମିଆଁ କଥା ଯେ ପାଣିଗାର ଆଉ ଦଳେ କହନ୍ତି-ନାଁ, ନାଁ, ସେ ଜାତିର ମୁସଲମାନ, ବୁଢ଼ା ମଣିଷ, ତା'କଥା ସେ ଠିକ୍ ରଖିବ...।

ଛ'ମାଇଲ ଦୂରରେ ଯେ ଷ୍ଟେସନ୍‌ରେ ଓହ୍ଲେଇ ପଡ଼େ, ସେ ଷ୍ଟେସନ୍‌ରେ ବସି ବସି ଭାବେ ଗାଁକୁ କିମିତି ଯିବି। ତା'ଆଖିରେ ମନାନମିଆଁର ଭଙ୍ଗା ଗାଡ଼ି ଖଣ୍ଡକ ଦେଖାଯାଏ। ମନ ଭିତରେ ପ୍ରଶ୍ନ ଉଠେ- ଆଉ କେବେ ମନାନମିଆଁ ଗାଡ଼ିଖଣ୍ଡକ ମରାମତି କରିବ? କାହିଁକି ପକେଇ ରଖିଛି? ଆଉ ଆଖି ଆଗରେ ତା'ର ଭାସି ଉଠେ ଗାଁକୁ ଯିବାର ରାସ୍ତାର ଦୁଇପାଖର ଘୋର ଜଙ୍ଗଲର ବିଭୀଷିକା। ପୁଣି ତା'ରି ସଙ୍ଗେ ସଙ୍ଗେ ଯାତ୍ରୀର ଆଖି ଆଗରେ ଭାସିଉଠେ-ଗ୍ରାମ୍ୟ ରାସ୍ତାର ଦୁଇପାଖର ବିଚିତ୍ର ବନଶ୍ରୀ। ଲୋକେ ବନାନୀର ସୌନ୍ଦର୍ଯ୍ୟର ଯେତିକି ପ୍ରଲୁବ୍ଧ ହୁଅନ୍ତି, ସେତିକି ତା'ର ବିଭୀଷିକାରେ ଭୀତତ୍ରସ୍ତ ହୁଅନ୍ତି। ବନଦେବୀଙ୍କର ବେସାମରିକ ବାହିନୀରେ ଯେମିତି ବାଘ, ଭାଲୁ, ହାତୀ, ବାରହା, ସମ୍ବର, ବଲିଆ କୁକୁର, ବିଷଧର ସାପ ଇତ୍ୟାଦି ଅଛନ୍ତି; ପୁଣି ସେମିତି ଅଛନ୍ତି ସାମରିକ ବାହିନୀରେ ଜଙ୍ଗଲି ଲୋକ, ହିଂସ୍ର ପ୍ରକୃତିର ମଣିଷ-ଜନ୍ତୁ ଅର୍ଥାତ୍ ଡ଼କାଏତ ଦଳ। ମଣିଷଟାଏ ମାରିବା ତାଙ୍କ ପକ୍ଷରେ ବିଲେଇ, କୁକୁରଟାଏ ମାରିବା ଭଳି। ଯାତ୍ରୀଙ୍କୁ ଏକୁଟିଆ ପାଇଲେ ତଣ୍ଟି ଚିପିଲେ, ଛୁରା ମାଇଲେ; ଯା'ପାଇଲେ ନେଇ ନିବିଡ଼ ଜଙ୍ଗଲ ଭିତରେ ଉଭେଇ ଗଲେ...।

ଏ ସବୁ ଚିନ୍ତାରେ ଏକୁଟିଆ ନିଜର ଗାଁ ଆଡ଼କୁ ଆଗେଇବା ପାଇଁ ଯେତିକି ମନେ ମନେ ଚପିଯାଏ, ସେତିକି ବନଦେବୀଙ୍କର ଶୋଭାର ଗନ୍ତାଘରର ଐଶ୍ୱର୍ଯ୍ୟରେ ପ୍ରଲୁବ୍ଧ ହୋଇ ଘରମୁହାଁ ଯାତ୍ରୀ ଦୁଃସାହସର ସହିତ ଆଗେଇ ଯିବାକୁ ନିଜର ଜୀବନକୁ ଜଳାଞ୍ଜଳି ଦେଇ ବାହାରି ପଡ଼େ। ତାକୁ ପ୍ରଲୁବ୍ଧ କରେ-ଜଙ୍ଗଲର ଅଚିହ୍ନା ଫୁଲର ଗନ୍ଧ, ପଲ୍ଲବ, ଘନ ଆମ୍ରକୁଞ୍ଜ ଭିତରୁ କୋକିଳର କୂଜନ, ବିହଙ୍ଗର କାକଳି, ମୟୂରର ଲମ୍ବାପୁଚ୍ଛ, ରଙ୍ଗୀନ ଗାତ୍ର, ତା'ର ଗୋଟାଏ ଗଛରୁ ଅନ୍ୟ ଗଛକୁ ଉଡ଼ିଯିବା, ଜଙ୍ଗଲ ଭିତରେ ଗ୍ରୀବାନତ କରି ଚରିବୁଲିବା, ପୁଣି ଚରୁ ଚରୁ ପଥିକ ଆଡ଼କୁ ଗ୍ରୀବା ଉନ୍ନତ କରି ଚାହିଁ ରହିବା, ମୃଗଯୂଥର ଲମ୍ଫପ୍ରଦାନ କରି ଜଙ୍ଗଲର ଏକ ପାର୍ଶ୍ୱରୁ ଅନ୍ୟ ପାର୍ଶ୍ୱକୁ ରାସ୍ତା ଅତିକ୍ରମ କରିବାର ଦୃଶ୍ୟ, ଆମ୍ର ମୁକୁଳର ଗନ୍ଧ ଇତ୍ୟାଦି। ଏ ସବୁ ପ୍ରଲୋଭନର ସାମଗ୍ରୀ ମଧ୍ୟରେ ବାଟ ଚାଲୁ ଚାଲୁ ଗୃହାଭିମୁଖୀ ଯାତ୍ରୀର ଆଖି ଆଗରେ ଦେଖାଯାଏ ମନାନମିଆଁର ସେହି ଭଙ୍ଗା ଗାଡ଼ିଖଣ୍ଡକ। ମନେ ମନେ ମନାନମିଆଁ ପ୍ରତି ସେ ବିରକ୍ତ ହୁଏ, ଗାଳି ଦିଏ ପୁଣି ଆଶାକରେ-ଗାଡ଼ିଖଣ୍ଡକ ମରାମତି କରି ଚଳେଇବ, ଅଭାବରୁ କରିପାରୁନି।

ଯେ ଗାଁରେ ଆସି ପହଞ୍ଚେ, ସେ ଆଗେ ଅନାଏ ମନାନମିଆଁ ଭଙ୍ଗା ଗାଡ଼ିଖଣ୍ଡକୁ। ସେମିତି ଥୁଆ ହୋଇଛି, ତା'ର ଚକା ନାହିଁ, ଇଞ୍ଜିନ୍ ନାହିଁ, କେବଳ ଭଙ୍ଗା ଜୀର୍ଣ୍ଣଶୀର୍ଣ୍ଣ ଶରୀରଟା ଖରା ବର୍ଷା ଖାଇ ପଡ଼ିଛି। ବର୍ଷାବେଳେ ମନାନମିଆଁ ଗାଡ଼ି ଉପରେ ଖଣ୍ଡେ ପାଲ ଢଙ୍କେଇ ଦିଏ।

ମନାନମିଆଁ ସହିତରେ ଭେଟ ହେଲେ, ଗାଡ଼ିର ନବକଳେବର ବିଷୟରେ ପ୍ରଶ୍ନକଲେ, ମନାନମିଆଁ ଉତ୍ତର ଦିଏ-କହୁଛିପରା ଗୋଟାଏ କଥା, ୧୯୫୧ ମସିହା ଟପିବ ନାହିଁ ପୁଣି ସେହି କଥା ପଚାରୁଛ? ଏ ମୁସଲମାନ ପିଲା, ଆଉ କେହି ନୁହେଁ।

୧୯୫୧ ମସିହା, ବିଦାୟ ନେଲେ କେତେକ ଗାଁର ଲୋକ, ଯେଉଁମାନେ ଆଶା କରିଥିଲେ ମନାନମିଆଁ ଗାଡ଼ିରେ ଚଢ଼ି ଷ୍ଟେସନ୍ ଯିବେ; ସେମାନେ ମନାନମିଆଁ ଦୁଆର ସାମନା ଦେଇ ଭଙ୍ଗା ଗାଡ଼ିଖଣ୍ଡକ କଟି ଦେଇ ମଶାଣି ଆଡ଼କୁ ଚାଲିଲେ ଚାରି ଜଣଙ୍କ କାନ୍ଧରେ ଚଢ଼ି।

'ରାମନାମ ସତ୍ୟ ହେ', 'ରାମନାମ ସତ୍ୟ ହେ'-ତା ସହିତରେ ବେଳେ ବେଳ କୀର୍ତ୍ତନର ଶବ୍ଦ ଶୁଣି ମନାନମିଆଁ ଘର ଭିତରୁ ବାହାରି ପଡ଼ି ପଚାରେ-ହଇ ହୋ ଭାଇ, କା'ର ସେରକ ପୂରିଲା?

ମୁର୍ଦ୍ଦାର ପଛେ ପଛେ ଯାଉଥିବା ଲୋକଙ୍କ ଭିତରୁ ଜଣେ ଉତ୍ତର ଦିଏ-ନିଧିପାଲଟା ସିଂ।

ମନାନମିଆଁ ବିଦ୍ରୂପ କଲା ଭଳି କଣ୍ଠରେ ଆପେ ଆପେ କହେ-ହ୍ୟା ଆଲ୍ଲା, ମୋ ସଙ୍ଗେ ଦିନ ତଳେ

ଲଗେଇ ଥିଲା-ଗାଡ଼ିଟା ମରାମତି କର ଷ୍ଟେସନ୍ ଯିବାକୁ ଭାରି ଅସୁବିଧା ହେଉଛି । ଯାଉଥା ଏବେ ଷ୍ଟେସନକୁ । ଯେ ଚାରିଜଣଙ୍କ କାନ୍ଧରେ ଚଢ଼ି ଯିବ, ସେ କୁଆଡ଼େ ଗାଡ଼ି ଚଢ଼ି ଷ୍ଟେସନ୍ ଯିବ ?

ଇମିତି କେତେ ଗାଁ ଲୋକ ବିଦାୟ ନେଲେ, କେତେକ ଅଫିସରଶ୍ରେଣୀ ଲୋକେ ବଦଳି ହୋଇଗଲେ ।

କୌଣସି ଅଫିସରଙ୍କ ବଦଳିର ବିଦାୟ ଭୋଜିବେଳେ, ବିନା ନିମନ୍ତ୍ରଣରେ ମନାନମିଆଁ ଯେମିତି ଆପେ ଆପେ ଯାଇ ଜୁଟିଯାଏ; ବସେ, ଗପକରେ, ଅଫିସରଙ୍କୁ ସଲାମ୍ ବଜାଏ । ସେମିତି ସେଦିନ ଜଣେ ଅଫିସରଙ୍କ ବିଦାୟ ଭୋଜିରେ ମନାନମିଆଁ ପହଞ୍ଚି ଅଫିସରଙ୍କୁ ସଲାମ୍ କରିବା ମାତ୍ରେ ଅଫିସର ହସି ହସି ପଚାରିଲେ-କ'ଣ ମନାନମିଆଁ, ତୁମେ ଆଉ ଗାଡ଼ିଖଣ୍ଡକ ମରାମତି କଲ ନାହିଁ ? କ'ଣ ଆଉ ପ୍ରତିଜ୍ଞା କରି କହୁଥିଲ ୧୯୫୧ ମସିହାରେ ଗାଡ଼ିଖଣ୍ଡକ ମରାମତି କରି ଚଳେଇବ ?

ମନାନମିଆଁ ଉତ୍ତର ଦେବାକୁ ଯାଇ ନିଜ ମଥାକୁ କୁଣ୍ଡେଇ ହବା ଭଳି, ମଥାରେ ଆଙ୍ଗୁଳି ଚାଳନା କରୁ କରୁ କହେ-

ଜନାବ୍, ଆପଣ ତ ଜଙ୍ଗଲର ମାଲିକ, ଏତେବଡ଼ ଅଫିସର, ରେଞ୍ଜର ସାହେବ । ଆପଣ ତ ପ୍ରତିଜ୍ଞା କରିଥିଲେ ମୋତେ ଖଣ୍ଡେ ପିଆଶାଳ କାଠ ଦେବେ ବୋଲି, ଦେଲେ ନାହିଁ କି ଜବାବ୍ ରଖି ପାରିଲେ ନାହିଁ । ଆଉ ମୋ ପରି ଲୋକ ଜବାବ୍ ଠିକ୍ ରଖି ନପାରିଲେ କ'ଣ ଗୋଟାଏ ବଡ଼ ଦୋଷର କଥା ହେଲା... ? ଭୋଜିବେଳେ ମନାନମିଆଁ ପତର ଖଣ୍ଡେ ପକେଇ ଆକଣ୍ଠଭୋଜନ କରିସାରି ଚିରାଚରିତ ରୀତିରେ ଲୋକଙ୍କ ସାଥୀରେ ଅତୀତର ଅଫିସର ଓ ବିଦାୟ ଭୋଜି ସହିତ ବର୍ତ୍ତମାନର ଅଫିସର ଓ ବିଦାୟ ଭୋଜିର ସାମ୍ୟ ବୈଷମ୍ୟର ବିଚାର ଓ ନିନ୍ଦା ପ୍ରଶଂସାର ପ୍ରଚାର କରୁ କରୁ ଘରକୁ ଫେରେ ।

ଗାଁ ଲୋକଙ୍କ ଭିତରୁ ଯଦି କେହି ମନାନମିଆଁକୁ ଥଟ୍ଟା କଲା ଭଳି ପଚାରେ-କ'ଣ ମନାନମିଆଁ ୧୯୫୧ ତ ଗଲା; ଗାଡ଼ି ମରାମତି କଲ ? କହୁଥିଲା-ମୁସଲମାନ୍ ପିଲା... ।

ମନାନମିଆଁ ଅଳ୍ପ ରାଗିଯାଇ ଉତ୍ତର ଦିଏ-ଚଲ୍, ତୁ ତ ଭାରି ଗୋଟାଏ ଲୋକ ଯେ ମଟର ଗାଡ଼ି ଚଢ଼ି ଷ୍ଟେସନ୍ ଯିବୁ, ମୋର ଜବାବ୍‌ଟା ଠିକ୍ ରହିଲା ନାହିଁ । ଦୋଷ ହୋଇଗଲା ! ତୁ କ'ଣ ଜବାବ୍ କରିଥିଲୁ, ମନେପଡୁଛି ? ଏତେ ମଦ ବିକୁଛୁ ମୋତେ କହିଥିଲୁ ଚାରି ବୋତଲ ମଦ ଦବାକୁ, ଦେଲୁ ? କେଡ଼େ କେଡ଼େ ହାକିମ ହୁକୁମା ଲୋକ ତ ଜବାବ୍ ଠିକ୍ ରଖୁନାହାନ୍ତି ଆଉ ମନାନମିଆଁକୁ ବାଛି ଦେଲୁ, ଜବାବ୍ ଠିକ୍ ରଖିଲା ନାହିଁ... ।

ଗାଁରୁ ହାଡୁ ବାରିକ ମନାନମିଆଁକୁ ଦିନେ ଥଟ୍ଟା କରି ପଚାରିଲା-କ'ଣ ମନାନମିଆଁ ୧୯୫୧ ମସିହା ତ ଗଲା । ଗାଡ଼ିଟା କ'ଣ ମରାମତି କରୁଥିଲ ପରା ? କହୁଥିଲ-ଏ ମୁସଲମାନ୍ ପିଲା...ହାଡୁ ବାରିକର ଏ ପ୍ରଶ୍ନରେ ମନାନମିଆଁ ଉତ୍ତେଜିତ ହୋଇ କହିଲା-ହଇରେ, ଯୁଗ ଯା'କରିଛି । ତା ନହେଲେ ତୁ ପୁଣି ଗାଡ଼ିରେ ଷ୍ଟେସନ ଯିବାକୁ ବାହାରିଲୁଣି !! ତୁ ପୁଣି ଗାଡ଼ି ଖୋଜିଲୁଣି !! ଗାଡ଼ି ତୋରି ପରି ଲୋକଙ୍କ ପାଇଁ ମରାମତି କରିବି... ?

କେତେଦିନ ପରେ ଡାକ୍ତର ବଦଳି ହେଲେ । ବିଦାୟ ଭୋଜି । ମନାନମିଆଁଙ୍କର ସବୁ ଭୋଜିରେ ଯେମିତି ବିନା ନିମନ୍ତ୍ରଣରେ ପ୍ରବେଶ, ଆକଣ୍ଠଭୋଜନ, ପ୍ରସ୍ଥାନ, ଅବିକଳ ସେହିପରି ।

ମନାନମିଆଁ ଡାକ୍ତରଙ୍କୁ ସାକ୍ଷାତ କରି ସମ୍ମାନସୂଚକ କଣ୍ଠରେ ଆରମ୍ଭ କଲା-ସଲାମ୍ ଅଲେକୁମ୍ ଡାକ୍ତର ସାହେବ ।

ଡାକ୍ତର ପଚାରିଲେ-କ'ଣ ମନାନମିଆଁ, ମୁଁ ତ ବାହାରିଲି, ତୁମ ଗାଡ଼ିଖଣ୍ଡିକ ଆଉ ଚଢ଼ି ହେଲା ନାହିଁ । କ'ଣ ୧୯୫୧ ମସିହା ଟପିବ ନାହିଁ କହୁଥିଲ । ଏ ତ ୧୯୫୪ ମସିହା ହେଲା, କ'ଣ ଆଉ ତୁମର ଜବାବ୍ ଠିକ୍ ରଖିଲ ?

ମନାନମିଆଁ ଡାକ୍ତରଙ୍କର ପ୍ରଶ୍ନର ଉତ୍ତର ଦବାକୁ ଯାଇ ତିନିଥର ଚାରିଥର ଅଳ୍ପ କାଶୁ କାଶୁ ତଳମୁହାଁ ହୋଇ କହିଲା-ହଁ ବୁଝିଲ ଆଜ୍ଞା, ଆପଣ ତ ଅଫିସର ହେଉଛନ୍ତି । ଏଡ଼େ ବଡ଼ ଡାକ୍ତର ହୋଇ ଜବାବ୍ ଠିକ୍ ରଖି କହିଥିଲେ-ମୋର ପେଟମରା ଭଲ କରିଦେବେ,

ଗାରେଣ୍ଟି ଦେଇଥିଲେ, ଭଲ କରି ପାରିଲେ କି? ଆଉ ମୋ ପରି ଗରିବ ଜଣେ ଜବାବ୍ ଠିକ୍ ନରଖି ପାରିଲେ, କ'ଣ ବଡ଼ ନିନ୍ଦାର କଥା ହୋଇଗଲା...?

୧୯୬୩ ମସିହା ଥାନା ଅଫିସରଙ୍କର ବଦଳିରେ ବିଦାୟ ଭୋଜିର ସମାରୋହ, ନାଚ, ଗୀତ, ଆଲୁଅ, ମଦ ଭାଙ୍ଗର ବନ୍ୟା। ତାସ୍, କେରମ୍, ଚେସ୍ ଖେଳ, ଅସରନ୍ତି ଗପର ସୁଅ। ପଲାଉ, ମାଂସର ଗନ୍ଧ ସୁଗନ୍ଧରେ ଥାନା ପ୍ରାଙ୍ଗଣରେ ଉତାଳ ତରଙ୍ଗ।

ମନାନମିଆଁ ଆପେ ଆପେ ଆସି ଥାନା ଅଫିସରଙ୍କୁ ସଲାମ୍ ବଜେଇବା ମାତ୍ରେ ଥାନା ଅଫିସର ବିରକ୍ତିଭରା କଣ୍ଠରେ ମନାନମିଆଁଙ୍କୁ ଗାଡ଼ିର ମରାମତି ବିଷୟରେ ବିଦ୍ରୂପ କରି-ଲୋକଟାର କଥାରେ ଠିକ୍ ନାହିଁ।

ଜବାବ୍ ଠିକ୍ ନାହିଁ କହିବା ମାତ୍ରେ ମନାନମିଆଁ ଉତ୍ତେଜିତ ହୋଇ ଉତ୍ତର ଦେଲା-ଆଜ୍ଞା ବୁଝିଲ, ଆପଣ ଯାହା କହିଲେ, ଆପଣ ଆମରି ଆଗରେ ଜବାବ୍ କରିଥିଲେ, ଦାମ ପ୍ରହରାଜ ଦାଗୀଙ୍କୁ ଜବତ କରିଦେବେ। କରି ପାରିଲେ କି? ଆଉ ମୁଁ ଜବାବ୍ ଠିକ୍ ରଖିଲି ନାହିଁ, ଏ ଗୋଟାଏ ଭାରି ନାପସନ୍ଦ କଥା ହୋଇଗଲା?...

ବର୍ଷ ପରେ ବର୍ଷର ଆଗମନ, ବିଦାୟ ଅଫିସରଙ୍କ ଆଗମନ, ବିଦାୟ ପଡ଼ୋଶୀଙ୍କର ଜନ୍ମ, ମରଣ; ପୁରୁଣା ପଇସା ପରେ ନୂଆ ପଇସା, ସେର ପରେ 'କିଲୋ'ର ପ୍ରଚଳନ, ଶସ୍ତା ପରେ ଦରବୃଦ୍ଧି, ସବୁ ପ୍ରକାର ପରିବର୍ତ୍ତନ, ଆବର୍ତ୍ତନକୁ ଅତିକ୍ରମ କରି ଯେତେବେଳେ ୧୯୬୪ ମସିହା ଦେଖା ଦେଲେ, ମନାନମିଆଁର ବଡ଼ ପୁଅ ହୁମା ଚାକିରି ଛାଡ଼ି ଆସି ଗାଁରେ ପ୍ରବେଶ କଲେ।

ମନାନମିଆଁଙ୍କୁ ଗାଁ ଲୋକ ହୁମାର ଚାକିରି ଛାଡ଼ି ଆସିବାର କଥା କେହି ପଚାରିଲେ ମନାନମିଆଁ ଉତ୍ତର ଦିଏ-କଥାରେ ଅଛି ଭାଇ- 'ଆରେ ଭ୍ରମଣା, ବୁଲିବୁଲି କରି ସେଇ ଅଗଣା'। ଚାକିରି ଛାଡ଼ି ଏବେ ଗାଁକୁ ଆସିଲେଣି, ଏବେ ଗାଁ କଥା ମନେପଡ଼ିଲା। କ'ଣ କରୁଛି ସେ ତାକୁ ଜଣା, ଦେଖୁଛ ତ ଭାଇ, ତମରି ସାମନାରେ ମୋ ହାଲ୍। ଗାଡ଼ିଖଣ୍ଡକ ମରାମତି କରି ଚଳେଇବି ବୋଲି ଲୋକଙ୍କ ସାମନାରେ ଜବାବ୍ କରିଥିଲି। ୧୯୫୧ରୁ ୧୯୬୪ ମସିହା ହେଲା, ଲୋକେ କେତେ କ'ଣ ମୋତେ ଥଟ୍ଟା ନକରୁଛନ୍ତି, କ'ଣ ନକହୁଛନ୍ତି...?

ପ୍ରତିଦିନ ଗୋଧୂଳି ଲଗ୍ନରେ ହୁମା ଖଣ୍ଡେ ସିଲ୍କି ଲୁଙ୍ଗି ପିନ୍ଧି, ଟି କଟ୍ ସାର୍ଟ ମଡ଼େଇ, କୁଞ୍ଚୁ କୁଞ୍ଚୁଆ ବାଳ ଭାଙ୍ଗି, ଅତର ଲଗେଇ, ମୁହଁରେ ସ୍ନୋ ମାଖି, ଡାହାଣ ହାତରେ ଘଡ଼ି ବାନ୍ଧି, ଗୋଟାଏ ଟ୍ରାନ୍‌ଜିଷ୍ଟର୍ ଧରି ଯେତେବେଳେ ଗାଁର ରାସ୍ତା, ଦୋକାନ, ବଜାର ଗଳିକନ୍ଦି ବୁଲି ବାହାରେ; ସେତେବେଳେ କେହି କେହି ହୁମାକୁ ପଚାରନ୍ତି-କ'ଣ ହୁମା ଆଜି ଏ କି ବେଶ? କ'ଣ ଚାକିରି ଛାଡ଼ି ଆସିଛୁ ବୋଲି ଶୁଣୁଛି...

ହୁମା ହିନ୍ଦୀ, ଉର୍ଦ୍ଦୁ, ଓଡ଼ିଆ ମିଶା ଭାଷାରେ ଉତ୍ତର ଦିଏ-ହଁ ଭାଇ, ହମ ନୌକରି ଛୋଡ଼ ଦିଆ ନୌକରି ନେହିଁ କରେଙ୍ଗେ। ମେରେତ ଏକଠୋ ଗାଡ଼ି ହୈ ଓ୍ୱ ଗାଡ଼ିକୁ ମରାମତି କରେଙ୍ଗେ। ହାମ ଖୋଦ୍ ଡ୍ରାଇଭର୍ ହୁଁ, ମେରେ ଗାଡ଼ି, ହାମ ଖୋଦ୍ ଚଲାଏଙ୍ଗେ...।

ଲୋକେ ପଚାରନ୍ତି-ତେବେ କ'ଣ ଗାଡ଼ିଟା ମରାମତି ହେଉଚି? ଯା'ହଉ ଭାଇ, ସେତକ ଯଦି ପାରିବୁ, ଆମେମାନେ ବଞ୍ଚିଯିବୁ, ଷ୍ଟେସନ୍‌କୁ ଯିବା ପାଇଁ ଯଉ ହଇରାଣ ହଉଛୁଁ।

ହୁମା ଉତ୍ତର ଦିଏ-ଦେଖନା, ଏକ ମଇନାକା ଭିତରେ ହାମ ଗାଡ଼ି ଚାଲୁ କରତେ କି ନେଇ...।

କେହି କେହି ହୁମାର ସମବୟସ୍କ ଗାଁର ସାଙ୍ଗ ହୁମାକୁ ଥଟ୍ଟାକରି କହନ୍ତି-ଚୋପା ଛଡ଼େଇବୁ। ବୋପା ତ ୧୯୫୧ରୁ ୧୯୬୪ ହେଲା ଚୋପା ଛଡ଼େଇଲା, ଗାଡ଼ି ଚଢ଼େଇଲା; ବାକି ତୁ ଛଡ଼େଇବୁ। ଯେତିକି ତୋଫାନିଆ କଥା ଶୁଣିବ, ଏ ବାପ ପୁଅଙ୍କ ମୁହଁରୁ....।

ହୁମା ଅଳ୍ପ ଉତ୍ତେଜିତ ହୋଇ କହି ପକାଏ-ଚଲା ଓ ବାବାକା ବାତ ଛୋଡ଼ ଦୋ, ହାମ କିଆ କରତେ ହେଁ ଦେଖୋ....

କିଛିଦିନ ପରେ ଦେଖାଗଲା, ହୁମା ସେହି ଭଙ୍ଗା ଗାଡ଼ି ଖଣ୍ଡକରେ ତିନିଟା ଚକା ଲଗେଇଲା ଆଉ ବାକି ଗୋଟାଏ ଚକା ରହିଲା। ଲୋକେ ଗାଡ଼ିର ତିନୋଟି ଚକ

ଲାଗିବାର ଦେଖି ପରିହାସ କରି କୁହାକୁହି ହେଲେ, ଭାଇ, ଏ ଯେଉଁ ତିନି ଚକ ଲାଗିଲା, ହେଲା-ସତ୍ୟ, ତ୍ରେତା, ଦ୍ୱାପର । ଆଉ ଗୋଟାଏ ଚକା କଳିକାଳ ଶେଷ ହେଲେ ଲାଗିବ..... ।

ଆଉ କିଛିଦିନ ପରେ ଦେଖାଗଲା-ମନାନମିଆଁ ମଟରଗାଡ଼ି କଡିରେ ଗାଁର କେତେଗୁଡ଼ାଏ ଲୋକ; ପିଲା, ଯବାନ ଠିଆ ହୋଇଛନ୍ତି । ମନାନମିଆଁ କ'ଣ ଗୁଡ଼ାଏ ବକୁଛି । ଆଉ କେତେକ ଆସି ରୁଣ୍ଡ ହେଲେ । କ'ଣ ହେଲା, ଆଜି କ'ଣ ମନାନମିଆଁ ଚତୁର୍ମୁଖ ହୋଇ ବକୁଛି !!

ସମସ୍ତେ ବୁଝିଲେ ଯେ-ଆଜି ଗାଡ଼ିର ଚାରିଚକ ଲାଗି ସାରିଛି, ଗାଡ଼ି ଭିତରେ ଯେଉଁଠି ଯେମିତି ଯାତ୍ରୀମାନେ ବସିବା ପାଇଁ ଗଦି ଦରକାର, ଗଦି ପଡ଼ି ସାରିଛି, ଇଞ୍ଜିନ ଖଞ୍ଜା ସରିଛି । ଆଜି ହୁମା, ଦୁମା ଦି'ଭାଇ ଗାଡ଼ି ଦେହରେ ରଙ୍ଗ ଲଗାଉଛନ୍ତି । ଆଉ ଦିନେ ଦି'ଦିନ ଭିତରେ ଗାଡ଼ି ଚାଲିବ । ଏଇ ଘଟଣାର ଉପଲକ୍ଷରେ ମନାନମିଆଁ ଗୋଟାଏ ଦୀର୍ଘ ଉଦ୍‌ବୋଧନୀ ଭାଷଣ ଦେଇ ଲୋକମାନଙ୍କୁ ଏଇ ଗାଡ଼ିଖଣ୍ଡକରେ ବସେଇ ଉତ୍ତର ଭାରତର କଲିକତା, ବମ୍ବେ, ଦିଲ୍ଲୀ, ଆଗ୍ରା, ପଠାଣକୋଟ, କାଶ୍ମୀର, ଜାମୁର ଦର୍ଶନୀୟ ସ୍ଥାନ ଏବଂ ଦକ୍ଷିଣ ଭାରତର ମାନ୍ଦ୍ରାଜ, ବାଙ୍ଗାଲୋର, ହାଇଦ୍ରାବାଦ, ଓଟ୍‌କାମଣ୍ଡ, ଅଜନ୍ତା, ଏଲୋରା, ଇମିତିକି କୁମାରୀକା ପର୍ଯ୍ୟନ୍ତ ବୁଲେଇ ଆଣିବ, ତା'ର ବର୍ଣ୍ଣନା କରିବାରେ ଲାଗିଛି ।

ମନାନମିଆଁ ମୁହଁରୁ ଦର୍ଶନୀୟ ସ୍ଥାନଗୁଡ଼ାକର ବର୍ଣ୍ଣନା ଶୁଣି କେତେକ ଗାଉଁଲି ଲୋକେ ଭାବୁଛନ୍ତି-ଯେମିତି ସେହି ଜାଗାରେ ସେମାନେ ବର୍ତ୍ତମାନ ଅବସ୍ଥିତ, ସେହି ଦୃଶ୍ୟଗୁଡ଼ା ତାଙ୍କ ଆଖି ଆଗରେ ଗୋଟାକ ପରେ ଗୋଟାଏ ଅତିକ୍ରମ କରି ଚାଲିଯାଉଛି । ଉପସଂହାରରେ ମନାନମିଆଁ ନିଜର ଗାଡ଼ିଖଣ୍ଡକୁ ଉଚ୍ଚ ପ୍ରଶଂସା କରିବାର ଶୁଣାଗଲା-ଜାଣିଛି, ଉଡ଼ା ପବନ ଘୋଡ଼ା ଏ, ଉଡ଼ା ପବନ ଘୋଡ଼ା । ଗାଡ଼ିଖଣ୍ଡକ କମ୍ ନୁହେଁ, ବସିଲେ ଜାଣିବ, ଟଙ୍କା ଯୋଗାଡ଼ କର, ଯଦି ଭଲ ଭଲ ଜାଗା ଦେଖିବାର ଇଚ୍ଛା ଅଛି...

ଦିନ ଆସିଲା, ମନାନମିଆଁର ଗାଡ଼ି ଷ୍ଟେସନ୍‌କୁ ଯାତ୍ରୀ ନେଇ ବାହାରିଲା, ଟିକେଟ କରି ଲୋକେ ବସିଲେ ।

ହୁମା ନିଜେ ଡ୍ରାଇଭର, ଦୁମା କଣ୍ଡକ୍ଟର ଆଉ କ୍ଲିନର । ଯାତ୍ରୀ ଭିତରୁ କେତେକ ପ୍ରାଣଭୟରେ ହୁମାକୁ ପଚାରିଲେ-ହଇରେ ହୁମା, ଆମେ ତ ଟିକେଟ କରି ବସିଲୁ, ଭଲରେ ଷ୍ଟେସନ୍‌ରେ ପହଞ୍ଚି ପାରିବୁଟି ?

ହୁମା ଯାତ୍ରୀମାନଙ୍କୁ ଆଶ୍ୱାସନା ଦେଇ କହିଲା-ବସ ଭାଇ, ମୁଁ ନିଜେ ଡ୍ରାଇଭର, ଆଉ କେହି ନୁହେଁ, କିଛି ଭୟ ନାହିଁ...

ସମସ୍ତେ ବସିଲେ, ହୁମା ଗାଡ଼ିକୁ ଷ୍ଟାଟ୍ କଲା-ଘେଚ୍ ଘେଚ୍ ଅଁ-ଅଁ-ଅଁ, ଘେଚ୍ ଘେଚ୍ । ଗାଡ଼ି ଚାଲୁନାହିଁ, କ'ଣ ଏ!!!

ସମସ୍ତେ ପଚାରିଲେ-କ'ଣ ହୁମା, ନୂଆ ଗାଡ଼ି ଚାଲୁନି କାହିଁକି ?

ହୁମା ଉତ୍ତର ଦେଇ କହିଲା-ଭାଇ, ନୂଆ ବଳଦ ଶଗଡ଼ରେ ଯୋଚା ହେଲେ ଚାଲେ ନାହିଁ, ମଣ ହୋଇ ନଥାଏ, ସେମିତି ନୂଆ ଇଞ୍ଜିନ୍ ଗାଡ଼ିରେ ଲଗା ହୋଇଛି, ଅବିକା ମଣ ହେଇନାହିଁ । ଗାଡ଼ି ଚାଲିବ ନାହିଁ, ତା ବୋପା ଚାଲିବ । ଭାଇ, ଗୋଟାଏ କଥା କହିବି, କରିବ ? ନୂଆ ଇଞ୍ଜିନ୍ ଲାଗିଛି, ସେଥିପାଇଁ ଷ୍ଟାଟ୍ ଧରୁନାହିଁ । ତୁମମାନଙ୍କ ଭିତରୁ କେତେଜଣ ଓହ୍ଲେଇ ଗାଡ଼ିକି ଟିକିଏ ପଛରୁ ଠେଲିବ ତ ଦେଖ ଗାଡ଼ି ଚାଲୁଛି କି ନାଁ ?

ହଉ, ସେଇଆ କରାଯାଉ । କେତେକ ଲୋକ ଓହ୍ଲେଇ ଗାଡ଼ିକୁ ପଛରୁ ଠେଲିଲେ । ଗାଡ଼ି କିଛିବାଟ ଠେଲା ହୋଇ ଗଲାପରେ, ଷ୍ଟାଟ୍ ଧରିଲା-ଘେଚ୍ ଘେଚ୍ ଗଁ-ଗଁ-ଗଁ-ଘର-ଘର ଶବ୍ଦ କରି ଗାଡ଼ି ଚାଲିଲା ଷ୍ଟେସନ୍ ଆଡ଼କୁ । ସମସ୍ତେ 'ହରିବୋଲ' ଧ୍ୱନି କଲେ ।

ମନାନମିଆଁ ଆନନ୍ଦରେ ମାଟି ଉପରୁ ହାତେ କୁଦି ଚିତ୍କାର କରି ଡାହାଣ ହାତକୁ ଉପରକୁ ଟେକି କହି ଉଠିଲା-ହ୍ୟା ଆଲ୍ଲା, ହ୍ୟା ଖୋଦା, ଆପ୍ ମାଲିକ୍....

ମନାନମିଆଁ ଆଖି ଆଗରୁ ଗାଡ଼ି ଆସ୍ତେ ଆସ୍ତେ ଉଭେଇ ଗଲା-ସମସ୍ତେ ମନାନମିଆଁ, ହୁମା, ଦୁମାକୁ ପ୍ରଶଂସା କଲେ, ଭାବିଲେ-ଏଥର ଦୁଃଖ ଗଲା, ଯା'ହେଉ ମନାନମିଆଁ ଗୋଟାଏ ହାତ ଦେଖେଇଲା ।

ମନାନମିଆଁ ଅପେକ୍ଷା କଲା, ଗାଡ଼ି ବର୍ତ୍ତମାନ ଯାତ୍ରୀମାନଙ୍କୁ ଷ୍ଟେସନ୍‌ରେ ଛାଡ଼ି ଦେଇ, ଷ୍ଟେସନ୍‌ରେ ଓହ୍ଲେଇଥିବା ନୂତନ ଯାତ୍ରୀଦଳଙ୍କୁ ନେଇ ଫେରି ଆସିବ; କିନ୍ତୁ ଷ୍ଟେସନ୍‌ରେ ଟ୍ରେନ୍‌ରୁ ଓହ୍ଲେଇ ଥିବା କେତେକ ଘରମୁହାଁ ଯାତ୍ରୀଙ୍କ ସାଥୀରେ ସେହି ବିପଦସଙ୍କୁଳ ବନପଥ ଅତିକ୍ରମ କରି କେତେକ ଘଣ୍ଟାପରେ ଦୁମା ଫେରି ଆସି ମନାନମିଆଁକୁ ଖବର ଦେଲା-ଷ୍ଟେସନ୍‌ରେ ପହଞ୍ଚି ଗାଡ଼ି ଖରାପ ହୋଇଗଲା ନଚେତ୍ ଏଇ ଯେଉଁମାନେ ଟ୍ରେନ୍‌ରୁ ଓହ୍ଲେଇଲେ, ସେମାନଙ୍କୁ ନେଇ ଗାଡ଼ି ଫେରିଆସି ଥାଆନ୍ତା । ସେମାନେ ସମସ୍ତେ ଚାଲି ଚାଲି ଆସିଲେ । ମୁଁ ତାଙ୍କ ସଙ୍ଗରେ ଆସିଲି । ଭାଇ କହିଲା-ତୁ ଯା' ଗାଡ଼ି ମରାମତି କରି ନେଇ ଯିବି... ।

ମନାନମିଆଁ ହର୍ଷ ବିଷାଦଭରା କଣ୍ଠରେ କହିଲା-ଟଙ୍କା କ'ଣ ଆଣିଛୁ ?

ଦୁମା ଉତ୍ତର ଦେଲା-ଭାଇ ମୋ ପାଖରୁ ସବୁ ଟଙ୍କା ରଖିଲା, କହିଲା-ତୁ ଚାଲି ଚାଲି ଯିବୁ ଟଙ୍କା ତୁ ନବା ଠିକ୍ ନୁହେଁ, ମୁଁ ସବୁ ଟଙ୍କା ନିଜେ ନେଇ ଯିବି ।

ମନାନମିଆଁ ପୁଣି ପଚାରିଲା-ଆଉ କିଛୁ ବାଟରେ ଅସୁବିଧା ହୋଇ ନାହିଁ ତ ?

ଦୁମା କହିଲା-ନାଁ ସେମିତି କିଛି ହୋଇ ନାହିଁ । ତେବେ ସେ ପଧାନଘର ବୋହୂ ଯେ ଯାଇଥିଲା, ତା'ର କୁଆଡ଼େ ଗର୍ଭ ହେଇଥିଲା । ଗାଡ଼ିରେ କିଛିବାଟ ଗଲା ପରେ, ତା'ର ଭାରି ଯନ୍ତ୍ରଣା ହେଲା । ଗାଡ଼ିରୁ ଯେମିତି ଓହ୍ଲେଇଛି, ତା'ର ଗୋଟିଏ ପୁଅ ଜନ୍ମ ହେଲା । ଲୋକେ କୁହାକୁହି ହେଲେ, ଗାଡ଼ିରେ ଯିବା ଦ୍ୱାରା ଧକଡ଼ ଚକଡ଼ରେ ତା'ର ଗର୍ଭ ନଷ୍ଟ ହୋଇଗଲା...

ମନାନମିଆଁ ଏକଥା ଶୁଣି ଉତ୍ତର ଦେଲା-ଏ କ'ଣ ଗାଡ଼ିର ଦୋଷ ହେଲା ? ବାଟ ଖରାପ ଯୋଗୁ ଏମିତି ହେଲା । ଗର୍ଭ ଯଦି ହୋଇଥିଲା ତ ଗାଡ଼ିରେ ଯାଉଥିଲା କାହିଁକି ? ଏ ଏକଠୋ ବୁଡ଼୍‌ବୋକ୍ ଆଦମୀ ହୈ...

ମାସ ପରେ ମାସ ବିତି ବର୍ଷରେ ପରିଣତ ହେଲା ଆଉ ଗୁକୁଣା ରଥ ଫେରିଲା ନାହିଁ । ଅର୍ଥାତ୍ ମନାନମିଆଁର ଗାଡ଼ିଖଣ୍ଡକ ଯେ ଷ୍ଟେସନ୍ ଆଡ଼କୁ ମୁହଁ କରି ଯାଇଥିଲା ଆଉ ଫେରିଲା ନାହିଁ; ହୁମାର ଆଉ ଦେଖା ନାହିଁ ।

ଯା' ସାଥୀରେ ମନାନମିଆଁର ଦେଖାହୁଏ, ସେ ମନାନମିଆଁକୁ ଗାଡ଼ିର ଶାରୀରିକ କୁଶଳତା ବିଷୟରେ ପ୍ରଶ୍ନ କରନ୍ତି । ମନାନମିଆଁ ରାଗରେ ଗୋଟାଏ ପ୍ରକାର ଉତ୍ତରର ପୁନରାବୃତ୍ତିର ପୌନଃପୁନ୍ୟଃ ପୌନିକତ୍ୱ ବଜାୟ ରଖି କହେ- ଆଲ୍ଲାକା କସମ୍, କ୍ୟା ବୋଲେଙ୍ଗେ, ହାରାମିକା ବଚା ହୁମା ଓ ଗାଡ଼ିକୁ ଲେକର୍ କାହାଁ ବେଚଦିଆ । ମୁଝେ ପତା ମାଲୁମ ନେହିଁ ହୈ । ଏକଠୋ ପଇସାଭି ମେରେ ହାତମେ ଦେଖା ନେଇଁ, କିତନା ଫିକର । ସେ ଗାଡ଼ି ଓ ଲେକର ହିଁ ଆସେ ଭାଗ୍‌ଗିୟା, ହାରାମିକା ବଚା, ଯବ ମେରେ ସାଥ କବ ମୁଲାକାତ ହୋଗା, ତାକୁ ସେ ଉସ୍‌କା କଲିଜା ଫାଡ଼୍‌କେର୍ ଖୁନ୍‌ପିଏଗେଁ, ନୈତ ହାମ୍ ମୁସଲମାନ ନୈ ହିଁ.... ।

# ବାହୁଡ଼ା ବିଜେ

ଡାକ୍ତରଖାନା । ରୋଗୀ ଆସୁଛନ୍ତି, ଓଷଧ ନଉଛନ୍ତି, ଯାଉଛନ୍ତି । ପୁଣି ଆସୁଛନ୍ତି, ଡାକ୍ତରଙ୍କ ନିକଟରେ କେତେ ଅନୁନୟ, ବିନୟ, କାକୁତି ମିନତି, କେତେ ପ୍ରକାର କଥା, କେତେ ହସ, ପରିହାସ, କେତେ ଚିତ୍କାର, କେତେ କାନ୍ଦଣା, କେତେ ପ୍ରକାର ନୂଆ ନୂଆ କଥା, କେତେ ପୁଣି ସେହି ପୁରୁଣା କଥା । "ଦାସେ ଆଇଲେ ମୂଳରୁ ଗା" ମାଇପି, ମରଦ, ପିଲା, ଯବାନ, କେତେ କବି, କେତେ ଲେଖକ, ଚାକିରିଜୀବୀ, କର୍ମୀ, ନେତା, ଟାଉଟର, ଶିକ୍ଷକ, ଛାତ୍ର, ଧନୀ, ଗରିବ, ସମସ୍ତେ ଆସୁଛନ୍ତି, ଯାଉଛନ୍ତି । ରୋଗ କାହାକୁ ଛାଡ଼ି ନାହିଁ । ରୋଗ କତିରେ ସମସ୍ତେ ସମାନ । ସେ ଯେ କେହି ହଉନା କାହିଁକି, ରୋଗରେ ପଡ଼ିବ । ରୋଗରୁ ମୁକ୍ତି ପାଇଲେ, ପୁଣି ସେହି କଥା- 'ବିନା ଯୁଦ୍ଧେ ଦେବି ନାହିଁ ସୂଚ୍ୟଗ୍ର ମେଦିନୀ'....

ଯେ ରୋଗରୁ ମୁକ୍ତି ନପାଇଲେ ତାଙ୍କ ଲାଗି ମଧ୍ୟ କବି ଲେଖିଛନ୍ତି-

"ଖଣ୍ଡି ଯେ ଖଣ୍ଡି ତୋର ପଞ୍ଜରା କାଠି
ଖାଉଣଥିବେ ଶ୍ୱାନ ଶୃଗାଳ ବାଣ୍ଟି".....

ଡାକ୍ତରଖାନା କାମ ଚାଲିଛି । ଦିନ ଯବନିକା ଆଉ ଅଳ୍ପ ସମୟ ପରେ ଖସି ଆସିବ । ସନ୍ଧ୍ୟାରାଣୀ, ନେପଥ୍ୟରେ ସଜବାଜ ହେଉଛନ୍ତି ଆଉ ଅଳ୍ପ ସମୟ ପରେ ଧରିତ୍ରୀ ରଙ୍ଗମଞ୍ଚରେ ଆବିର୍ଭୂତା ହୋଇ ତାଙ୍କର ଅଭିନୟର କଳା-କୌଶଳ ପ୍ରଦର୍ଶନ କରିବେ । ଏଇ ସମୟରେ ଜଣେ ଲୋକ ଆସି ଡାକ୍ତର ବାବୁଙ୍କୁ ଅନୁରୋଧ କରି କହିଲା- ଆଜ୍ଞା, ଆପଣଙ୍କୁ ଆମ ଗାଁକୁ ଯିବାକୁ ହେବ ।

ଡାକ୍ତର ବାବୁ ଲୋକଟିର ଏ କଥା ଶୁଣି ଅନ୍ୟ ରୋଗୀମାନଙ୍କୁ ଅଟକାଇ ଦେଇ ପ୍ରଶ୍ନ କଲେ-କ'ଣ ହୋଇଛି ? କାରଣ କ'ଣ ?

ଲୋକଟି ଉତ୍ତର ଦେଲା-ଗୋଟିଏ ରୋଗୀ ଦେଖିବା ପାଇଁ ।

ଡାକ୍ତର ବାବୁ ଆଶ୍ଚର୍ଯ୍ୟସୂଚକ କଣ୍ଠରେ ପ୍ରଶ୍ନ କଲେ- କ'ଣ ସେ ରୋଗୀର ହେଇଛି ?

ଲୋକଟି ଉତ୍ତର ଦେଲା-ଆଜ୍ଞା, ଆମେ ଭାବୁଛୁ- କଲେରା । ସକାଳୁ ଝାଡ଼ା, ବାନ୍ତି ହେଲାଣି, ଅବସ୍ଥା ଭାରି ଖରାପ ମନେହେଉଛି । ଆପଣ ଯାହା କରିବେ.....

ଡାକ୍ତର ବାବୁ ବିରକ୍ତିସୂଚକ କଣ୍ଠରେ କହିଲେ- ଆପଣ ଯାହା କରିବେ । ସକାଳୁ ଝାଡ଼ା, ବାନ୍ତି ହେଲାଣି ଏତେବେଳକୁ ଆସି କହୁଛ-ଆପଣ ଯାହା କରିବେ । ମୁଁ ଯିବି ନାହିଁ.....ଲୋକଟି ଡାକ୍ତର ବାବୁଙ୍କର ଏକଥା ଶୁଣି ହତାଶ ହୋଇ କହିଲା-ଆଜ୍ଞା, ଆପଣ ଏକଥା କହିଲେ ହବ ? ଆମେ ଗାଈ ଚରଉଛୁ, ଆପଣ ମଣିଷ ଚରଉଛନ୍ତି । ଆପଣ କରିବେ ନାହିଁ ଆଉ କିଏ କରିବ ? ଆପଣ ମା, ବାପ ହେଉଛନ୍ତି.....

ଡାକ୍ତର ବିରକ୍ତ ହୋଇ କହିଲେ ହଇ ହୋ, ମୁଁ ବାପ ହେଇପାରେ, ମା କିମିତି ହେବି ?

ଲୋକଟି ଅପ୍ରତିଭ ହୋଇ କହି ପକାଇଲା-ଆଜ୍ଞା, ମୋ ପାଟିରୁ ବାହାରି ଗଲା, ଆପଣ ଚାଲନ୍ତୁ ଆଜ୍ଞା.....

ଡାକ୍ତର ବାବୁ ପଚାରିଲେ-ଚାଲନ୍ତୁ, ଚାଲନ୍ତୁ ଲଗେଇଛ, ରୋଗୀ ଅବସ୍ଥା ଏମିତି କହୁଛ; ମୁଁ ଯାଇ ପହଞ୍ଚିଲା ବେଳକୁ ରୋଗୀ ଯଦି ସେପାରିକି ଟିକେଟ କାଟି ସାରିଥାଏ....ଲୋକଟି କିଛି ସମୟ ଅଟକିଯାଇ ପଚାରିଲା- ଆଜ୍ଞା, ସେ କ'ଣ ଟିକେଟ କାଟିବ ? ସେ ତ ବିଛଣାରେ ପଡ଼ିଛି, ଝାଡ଼ା ବାନ୍ତିରେ । ତା'ର କୁଆଡ଼େ ବଳ ଅଛି ଯେ, ଆଉ ତା'ହାତରେ ପଇସା କାହିଁ ଯେ, ଟିକେଟ କାଟିବ ?....

ଡାକ୍ତର ବାବୁ ଉତ୍ତର ଦେଲେ-ଶୁଣ, ତା'ର ଯିବାର ବେଳ ଯଦି ହୋଇଯିବ, ଟିକେଟ ପାଇଁ କୁଆଡ଼େ ଯିବାକୁ ପଡ଼ିବ ନାହିଁ। ସେହି ବିଛଣାରେ ଶୋଇଥିଲେ ମଧ, ଟିକେଟ ମିଳିବ, ପଇସା ପଡ଼ିବ ନାହିଁ। ଯୁଆଡ଼େ ଯିବ ସେଠୁ ଜଣେ ଆସି, ନିଜେ ଟିକେଟ ଦେଇ ସାଙ୍ଗରେ ନେଇ ଯିବ....

ଲୋକଟି ପୁଣି କହିଲା-ବୁଝିଲି ଯେ, ଆଜି କାଲି ଯୁଗରେ ବିନା ପଇସାରେ ଟିକେଟ ଦେଇ, ନିଜେ ଆସି ତାକୁ ଘର ଭିତରୁ ନେଇଯିବ, କିଏ ଇମିତି ସେ ଲୋକ ମ?

ଆମେ ତାକୁ ଛାଡ଼ି ଦେବୁ? ସେ କୁଆଡ଼ିକି ନେଇଯିବ?

ଡାକ୍ତର ବାବୁ ଉତ୍ତର ଦେଲେ-ଯୁଆଡ଼ିକି ସମସ୍ତେ ଯା'ନ୍ତି.....

ଲୋକଟି କହିଲା-କ'ଣ କହୁଛନ୍ତି, ମୁଁ ଆପଣଙ୍କ କଥା ବୁଝିପାରୁନି....

ଅନ୍ୟ ଜଣେ ରୋଗୀ କତିରେ ଠିଆ ହୋଇଥିଲା, ସେ ଲୋକଟା ଉପରେ ବିରକ୍ତ ହୋଇ କହି ଉଠିଲା-ଲେମ୍ଭୁ, ବୁଝି ପାରୁ ନାହିଁ। ଡାକ୍ତର ବାବୁ କହୁଛନ୍ତି-ରୋଗୀର ଅବସ୍ଥା ତ ଇମିତି କହୁଛ, ଡାକ୍ତର ବାବୁ ଯାଇ ପହ*ଲା ବେଳକୁ ସେ ଲୋକ ବଞ୍ଚିଥିବ ତ?

ଲୋକଟି ବର୍ତ୍ତମାନ ବୁଝିପାରି କହିଲା-ସେ କଥା ମୁଁ କିମିତି କହି ପାରିବି, ଡାକ୍ତର ବାବୁ କହି ପାରିବେ ନାଁ.....। କଥା ହେଲା-ଡାକ୍ତର ବାବୁ ରିକ୍ସାରେ ଯିବେ। ତାଙ୍କ ପାଉଣାପତ୍ର ଯା'ହେବ ତୁରନ୍ତେ ଦବାକୁ ହବ। ରୋଗୀର ଭଲ ମନ୍ଦ ରୋଗୀ ଜାଣେ, ଏତେ ବିଳମ୍ବରେ କାହିଁକି ଆସିଲ? ଡାକ୍ତର ବାବୁ ଯିବେ, ରୋଗୀର ଯଦି ଡାକ୍ତର ବାବୁ ପହଞ୍ଚିଲା ବେଳକୁ ସ୍ୱର୍ଗପ୍ରାପ୍ତି ହୋଇଥାଏ, ଡାକ୍ତର ବାବୁଙ୍କ ଦୋଷ କ'ଣ? କହନ୍ତୁ....

ଡାକ୍ତର ବାବୁଙ୍କ କତିରେ ଠିଆ ହୋଇଥିବା ଅନ୍ୟ ଜଣେ ରୋଗୀ ଆଗନ୍ତୁକ ଲୋକକୁ ଇମିତି ଚେତାବନୀ ଶୁଣେଇ ଦେଲା।

ଡାକ୍ତର ବାବୁ ହାତଟଣା ରିକ୍ସାରେ ବସିଯିବେ। ଡାକ୍ତରବାବୁଙ୍କୁ ଘର ଚିହ୍ନେଇ ଦବା ପାଇଁ ଅନ୍ୟ ଜଣେ ରୋଗୀର ସମ୍ପର୍କୀୟ ଲୋକ ଡାକ୍ତର ବାବୁ ବସିଥିବା ରିକ୍ସା ସାଙ୍ଗରେ ଦୌଡ଼ି ଦୌଡ଼ି ଯିବା ପାଇଁ ସ୍ଥିର କରି ଦେଇ ଯେ ଲୋକଟି ଡାକ୍ତର ବାବୁଙ୍କୁ ଡାକିବାକୁ ଆସିଥିଲା, ଆଗେ ବାହାରିଗଲା। ଡାକ୍ତର ବାବୁ ହାତଟଣା ରିକ୍ସାରେ ବସିଛନ୍ତି। ରିକ୍ସା ଚାଲିଛି, ଗାଇଡ୍ ଭଳି ଲୋକଟି କାନ୍ଧରେ କାନ୍ଧେ ଲମ୍ବା ଲମ୍ବା ବାଉଁଶ ରଖି ରିକ୍ସା ସଙ୍ଗେ ସଙ୍ଗେ ଦୌଡ଼ି ଦୌଡ଼ି ଚାଲିଛି। କେତେବେଳେ ପଛରେ ପଡ଼ିଯାଉଛି ତ କେତେବେଳେ ରିକ୍ସା କତିରେ କତିରେ ଦୌଡ଼ୁଛି। କିଛି ବାଟ ଗଲାପରେ ଡାକ୍ତର ବାବୁ ଭାବିଲେ-ଲୋକଟି କାହିଁକି ବାଉଁଶ କାନ୍ଧେ କାନ୍ଧେଇ ଚାଲିଛି? ଏକେତେ ଲୋକଟା ରିକ୍ସା ସାଙ୍ଗେ ସାଙ୍ଗେ ଦୌଡ଼ୁଛି, ତା'ପରେ ପୁଣି କାନ୍ଧେ ବାଉଁଶ କାହିଁକି କାନ୍ଧେଇଛି?

ଲୋକଟା ଥରେ ରିକ୍ସା ପାଖେ ପାଖେ ଯାଉଥିବା ବେଳେ ଡାକ୍ତର ବାବୁ ତାକୁ ପଚାରିଲେ-କିରେ, ଏ ବାଉଁଶଗୁଡ଼ାଏ କାହିଁକି କାନ୍ଧେଇ ଚାଲିଛୁ? ବାଉଁଶ କ'ଣ ହେବ?

ଲୋକଟି ଉତ୍ତର ଦେଲା-ଆଜ୍ଞା, ସେ ରୋଗୀ ଯଦି ମରିବ, ତା'ହେଲେ କୋକେଇ ହବ, ଯଦି ବଞ୍ଚିବ ତା'ହେଲେ ବାଡ଼ ବୁଜା ହେବ। ଚତୁର୍ମାସ୍ୟା ଦିନ, ଆଉ ରାତିରେ କିଏ ବାଉଁଶ ଖୋଜିବାକୁ ଆସିବ? ଏଇଥିପାଇଁ ବାଉଁଶ କାନ୍ଧେଇ ନେଇ ଯାଉଛି...

ଡାକ୍ତର ବାବୁ ଦୌଡ଼ୁଥିବା ଲୋକ ମୁହଁରୁ ଇମିତିଆ ଉ©ର ଶୁଣି, ମନେ ମନେ ଭାବିଲେ-ତା'ହେଲେ ମୁଁ ଭଲ ରୋଗୀ ଦେଖିବାକୁ ଯାଉଛି!!! ଯା' ହଉ ମୁଁ ଭଗବାନଙ୍କ ଦୟାରୁ ଭଲରେ ଭଲରେ ରୋଗୀ ଦେଖି ଟଙ୍କା ଧରି ଫେରି ଆସେ, ତାପରେ ଯା ହଉଥାଉ... ଡାକ୍ତର ବାବୁ ଇମିତି ଭାବୁ ଭାବୁ ଦେଖିଲେ-ଜଣେ ଲୋକ ସାମନା ଆଡୁ ଦୌଡ଼ି ଦୌଡ଼ି ଆସି କାନ୍ଦ କାନ୍ଦ ହୋଇ ବାଉଁଶ କାନ୍ଧେଇ ଚାଲିଥିବା ଲୋକଟିକୁ କହିଲା-ଭାଇ, ଭାଇ କାମ ସରିଗଲାଣି। ଆଉ ଡାକ୍ତର ବାବୁଙ୍କ ଯିବାର ଦରକାର ନାହିଁ, ଯା'ହଉ, ବାଉଁଶ ନେଇ ଆସିଲୁ, ବଡ଼ ଭଲ କାମ କରିଛୁ, ବଡ଼ ବୁଦ୍ଧିର କାମ କରିଛୁ....

ବାଉଁଶ କାନ୍ଧେଇଥିବା ଲୋକ ମଧ୍ୟ ଏ ସମ୍ବାଦ ଶୁଣି ହଠାତ୍ ଅଟକି ଯାଇ ଭୋ କରି କାନ୍ଦି ଉଠିଲା ।

ରୋଗୀର ମୃତ୍ୟୁ ସମ୍ବାଦ ଆଣିଥିବା ଲୋକ ବୁଝେଇବା ଭଳି କଣ୍ଠରେ କହିଲା-ଆଉ କାନ୍ଦିଲେ କ'ଣ ହେବ ? ଯା'ହଉ ତୁ ଯେ ବାଉଁଶ ପୁଳାଏ ନେଇ ଆସିଛୁ, ଭାରି ବୁଦ୍ଧିର କାମ କରିଛୁ । ଚାଲ ଚାଲ, ଆହୁରି କେତେ କାମ ଅଛି, ରାତି ହେଇ ଆସୁଛି.... ।

ଡାକ୍ତର ବାବୁ ରିକ୍ସାବାଲାକୁ କହିଲେ-ଚାଲ, ଫେରା ରିକ୍ସା ଆଉ ଠିଆ ହବା ଦରକାର ନାହିଁ.... ।

ରିକ୍ସାବାଲା ଡାକ୍ତର ବାବୁଙ୍କୁ ପଚାରିଲା-ବାବୁ, ଏତେ ବାଟ ଆସିଲେଣି, ଚାଲନ୍ତୁ ରୋଗୀଟାକୁ ଦେଖିବେ । ସେ ତ ଅଳ୍ପ ସମୟ ହେଲା ମରିଛି, ତଟକା ମୁର୍ଦ୍ଦାର । କଡ଼ା ଇନ୍‌ଜିସନ୍ ଇତ୍ୟାଦି ଦେଲେ ବଞ୍ଚି ଯାଇପାରେ । ମୋ ଛୋଟ ବୁଦ୍ଧିରେ କହୁଛି ବାବୁ, ଆପଣଙ୍କ ହାତ ଲାଗିଲେ ବଞ୍ଚିଯିବ....

ଡାକ୍ତର ବାବୁ ବିରକ୍ତ ହୋଇ କହିଲେ-ଚାଲ, ଚାଲ, ତୁ ଫେରେଇଲୁ ରିକ୍ସା...... ।

ରିକ୍ସାବାଲା ରିକ୍ସାକୁ ଘୂରେଇ ଫେରେଇବା ଭଳି କରୁ କରୁ ଡାକ୍ତର ବାବୁଙ୍କୁ ପଚାରିଲା-ବାବୁ, ମୋ ଭଡ଼ା କିଏ ଦବ ?

ଡାକ୍ତର ବାବୁ ଉତ୍ତର ଦେଲେ-ଚାଲ, ମୁଁ ଦେବି, ରିକ୍ସା ଫେରିଲା, ଡାକ୍ତର ବାବୁ ବାହୁଡ଼ିଲେ ।

# ବାଜିଆ ପ୍ରସଙ୍ଗ

ପଲ୍ଲୀ ଅଞ୍ଚଳ । ମାର୍ଗଶୀର ମାସର ଶୀତ ରାତି, ଜହ୍ନ ପଡ଼ିଛି, ରାସ୍ତାରେ ଲୋକ ଚଳାଚଳ କମିଗଲାଣି । ରାସ୍ତାକଡ଼ର ଯେ କେତୋଟି ଦୋକାନ, ସେଥିରେ ତାଟି କବାଟ ପଡ଼ିଲାଣି, ଆଲୁଅ ଲିଭିଲାଣି ।

ଗାଁ ଭିତରେ ଯେ ଯା'ର ଘରେ, ପଦାରେ କେହି ଜଣେ ଦି'ଜଣ ଯିବା ଆସିବା ଦେଖାଯାଉଛି, ଅଧିକାଂଶ ଲୋକଙ୍କ ଦୁଆର ବନ୍ଦ ।

ଗୋଟିଏ ଘର ଭିତରେ ଜଣେ ବୁଢ଼ା ନିଜର ଗୋଦର ଗୋଡ଼କୁ ଆଉଁସୁ ଆଉଁସୁ ଯନ୍ତ୍ରଣାରେ ଛଟପଟ ହେଇ ନିଜର ପୁଅକୁ ଶଶୁର ତନୟ ହିସାବରେ ବନ୍ଦନା କରି କହିବାରେ ଲାଗିଛି-କୁଆଡ଼େ ଗଲା ସେ, ଆଜି ଆସୁ, ମୁଁ ତାକୁ ଦେଖୁଛି । ମୁଁ ତାକୁ କହୁଛି-ମୋତେ ଟିକିଏ ଡାକ୍ତରଖାନାରୁ ଔଷଧ ଆଣି ଦେଇଯା, ଯାଉଛି ଯେ, ଯାଉଛି... ।

ଆଉ ଗୋଟାଏ ଘରେ ଆଲୁଅ ନାହିଁ, ଜଣେ ବୟସ୍କା ବିଧବା ସନ୍ଧ୍ୟା ପରଠାରୁ ପ୍ରାୟ ଦଶଥର, ଥରେ ଘର, ଥରେ ରାସ୍ତାକଡ଼କୁ ଆସି ଅନଉଛି-ପୁଅ କୁଆଡ଼େ ଗଲା ? ଶେଷରେ ପୁଅକୁ ବାଡ଼ିଖିଆ ଆଖ୍ୟାଦେଇ ବିରକ୍ତ ହୋଇ ଭାବୁଛି-କ'ଣ ମଲାକି କୁଆଡ଼େ ? ଘରେ ତେଲ ନାହିଁ, ଲୁଣ ନାହିଁ, ରାତି ହେଲାଣି, ଦୋକାନ ପଡ଼ିଲାଣି, ଗଲା କୁଆଡ଼େ ?...

ଆଉ ଗୋଟାଏ ଘରେ ଜଣେ ବୁଢ଼ା ବ୍ୟସ୍ତ ହୋଇ ନିଜର ଭେଣ୍ଡା ପୁଅକୁ ଶଶୁର ନନ୍ଦନ ଆଖ୍ୟା ଦେଇ ବକିବାରେ ଲାଗିଛି-ବାଛୁରୀଟା କୁଆଡ଼େ ଗଲା ? ଥିଲେ ଟିକିଏ ବାଛୁରୀଟା ଖୋଜି ଆଣିଥାନ୍ତା, ମୋର କ'ଣ ବଳ ପାଉଛି ? ମୁଁ କୁଆଡ଼େ ଯାଇ ପାରୁଛି ?...

ଆଉ ଜଣେ ବୁଢ଼ା ରାସ୍ତାକଡ଼ରେ ଠିଆ ହୋଇ କେତେଥର ବାଜିଆରେ ବାଜିଆରେ ଡାକି ଡାକି ଘରକୁ ଫେରିଲା । ବୁଢ଼ା ଆଉ ଡାକି ପାରିଲାନି, ମନେ ମନେ ବିରକ୍ତ ହେଇ କହିବାକୁ ଲାଗିଲା-ଆଜି ଆସୁ, ଦେଖୁଛି ତାକୁ, ଘରେ ପଇସା ଗୋଟାଏ ନାହିଁ, ସାଆନ୍ତଙ୍କ କତିକି ଯାଇଥିଲେ ପାଞ୍ଚଟା ଟଙ୍କା ଆଣିଥିଲେ ଖର୍ଚ୍ଚ ହୋଇଥାନ୍ତା..... ।

ଇମିତି ସମୟରେ ପଲ୍ଲୀର ଶୀତରାତିରେ ନିସ୍ତବ୍ଧତା ଭଙ୍ଗ କରି ଚାରିଆଡ଼ ଝଙ୍କୃତ ହୋଇ ଉଠିଲା-ହିପ୍ ହିପ୍ ହୁରରେ, ହିପ୍ ହିପ୍ ହୁରରେ, ପିକ୍ ପିକ୍ ଭୁର୍‌ରେ.... ।

ଯା ମୁହଁରେ ଯା ଉଚାରଣ ହେଲା, ହିପ୍ ହିପ୍ ହୁରରେ... ।

ଜଣେ ଦୁଇଜଣ କହିବାର ଶୁଣାଗଲା-ଥ୍ରୀ ଚିୟର୍ସ ଫର୍ ଉଦଣ୍ଡ କ୍ଲବ, ଥ୍ରୀ ଚିୟର୍ସ ଫର୍ ଉଦଣ୍ଡ କ୍ଲବ... ।

ଗାଁ ଖଣ୍ଡକରେ ଏ ମିଳିତ କଣ୍ଠ ଶବ୍ଦର ଝଙ୍କାରରେ ଶୀତ ରାତିରେ ଗୋଟାଏ ଚମକ ଖେଳିଗଲା, କେତେକଙ୍କର ନିଦ ଭାଙ୍ଗିଗଲା ।

ଗର୍ଭବତୀ ବୋହୂମାନଙ୍କର ଏ ଶବ୍ଦରେ ଗର୍ଭନଷ୍ଟ ହବାର ଆଶଙ୍କା କରି ଶାଶୁମାନେ ଉପଦେଶ ଛଳରେ କହିଲେ-ବୋହୂ, କାନରେ ଆଙ୍ଗୁଳି ଦବୁଟି.... ।

ଗର୍ଭିଣୀ ଝିଅ, ଯେଉଁମାନେ ଶାଶୁଘରୁ ଆସି ବାପଘରେ ସନ୍ତାନ ପ୍ରସବ ଲାଗି ଅପେକ୍ଷା କରି ରହିଥିଲେ, ସେମାନଙ୍କର ମା'ମାନେ ଝିଅଙ୍କୁ ଆଶ୍ୱାସନା ଦେଇ କହିଲେ-ଝିଅ, କିଛି ଭୟ କରନା, କୁଳବୁଢ଼ା କୁଆଡ଼େ ଯାଇଥିଲେ, ଚଉଦ ପୁରୁଷ ପିଣ୍ଡ ପକେଇବାକୁ, ଆସି ପାଟି କରି ନିଦ ଭଙ୍ଗଉଛନ୍ତି, ଝରିପୋକ ପର ଲାଗିଛି.... ।

କେତେଗୁରା ଘୂମନ୍ତ ପକ୍ଷୀ ଏ ସମବେତ କଣ୍ଠଧ୍ୱନିରେ ଚମକି ପଡ଼ି ଗୋଟାଏ ଗଛରୁ ଅନ୍ୟ ଗଛକୁ ଉଡ଼ି ଚାଲିଗଲେ ।

ପୁଣି ଶୁଣାଗଲା-ହିପ୍ ହୁର୍‌ରେ, ହିପ୍ ହୁର୍‌ରେ, ପିକ୍ ପିକ୍ ଭୁର୍‌ରେ... ।

ଉଦଣ୍ଡ କ୍ଲବର କେତେକ ଉତ୍ସାହୀ ଯୁବକ, ଯେଉଁମାନେ ଖେଳ ଦେଖିବାକୁ ଯାଇପାରି ନଥିଲେ, ଗାଁ ଭିତରୁ ବାହାରି ଆସି ରାସ୍ତା କଡ଼ରେ ଠିଆ ହୋଇ ଆନନ୍ଦରେ କୁହାକୁହି ହେଲେ-ଆମ କ୍ଲବ ଜିତିଛି... ।

କେତେକ ଆନନ୍ଦରେ ପରସ୍ପରକୁ କୁଣ୍ଢାକୁଣ୍ଢି ହେଇ ଗଡ଼ାତଡ଼ା ହେଇଗଲେ ।

ବାଜିଆର ବାପ ଆସି ରାସ୍ତା କଡ଼ରେ ଠିଆ ହେଲା । ଅନ୍ୟାନ୍ୟ କେତେକ ବୁଢ଼ା, ଯୁଆନ ଧାଡ଼ିବାନ୍ଧି ଠିଆ ହେଲେ । ବାଜିଆର ବାପକୁ ଦେଖି ଆଉ ଜଣେ ଲୋକ ଆସି କହିଲା-ହଇ ହୋ, ତୁମେ ତ ଭାରି ଭଲ ଲୋକ । ଟଙ୍କା ଆଉ କେବେ ଦବ ? କେତେଥର ଦଉଡ଼ିବି ? ମୁଁ ତୁମକୁ ଭେଟିବା ପାଇଁ ବର୍ତ୍ତମାନ ଆସି ପହଁଚୁଛି । ତୁମର ତ ଦିନବେଳା ଭେଟ ମିଳିଲା ନାହିଁ, କୁଆଡ଼େ ଲୁଚୁଛ, ଯା କଲ କଲ, ଟଙ୍କା ଦିଅ.... ।

ବାଜିଆର ବାପ ଏତେଦିନ ଯା'କୁ ଟଙ୍କା ନଦେଇପାରି ଲୁଚି ଲୁଚି ବୁଲୁଥିଲା, ଏ ରାତିବେଳରେ ତା'ରି ହାବୁଡ଼େ ପଡ଼ଲା । କି ବିପଦ ! ! କ'ଣ କହିବ ?....

ପୁଣି ଶୁଣାଗଲା-ହିପ୍ ହିପ୍ ହୁରରେ, ହିପ୍ ହିପ୍ ହୁରରେ.... । ପିକ୍ ପିକ୍ ଭୁର୍‌ରେ.... ।

ବାଜିଆର ବାପ ତିନି ଚାରି ଢୋକ ଛେପ ଗିଳି ନ୍ୟୁନସ୍ୱରରେ କହିଲା-ଭାଇ, ସବୁ ଦୋଷ ମୋର, ଯା ହବାର ହେଲା ଆଉ ମାସେ ସମାଳି ଯାଅ ବାଜିଆ ଟିକିଏ କାମରେ ଲାଗିଯାଉ । ଏତେ ଦିନେ ଖଣ୍ଡେ ଚପରାସି ଚାକିରି ପାଇଛି, ମୁଁ ତୁମର ଟଙ୍କା ଦବାକୁ ଆଉ ଡେରି କରିବି ନାହିଁ.... ।

ଏଇ ସମୟରେ ଦୁଇ ତିନି ଜଣ ଉଦଣ୍ଡ କ୍ଲବର ଉତ୍ସାହୀ ଯୁବକ ସାଇକେଲରେ ଆସି ଓହ୍ଲେଇ ପଡ଼ି ବାଜିଆର ବାପକୁ ଦେଖି ଧଇଁ ସଇଁ ହେଇ ଖବର ଦେଲେ-ବାଜିଆର ଡାଆଁଣ ଗୋଡ଼ ଭାଙ୍ଗି ଯାଇଛି, ତା'ରି ଯୋଗୁଁ ଆମର କ୍ଲବ ଆଜି ଫୁଟବଲ୍ ଫାଇନାଲ୍ ଖେଳରେ ଜିତିଛି, ସେ ଏକା ତିନି ଗୋଲ ଦେଇ ଆମର କ୍ଲବକୁ ଜିତେଇଛି, ସେ ହ୍ୟାଟ୍ରିକ୍ କରିଛି । ତାକୁ ତିନି ଚାରି ଜଣ ପିଲା ଟେକି ନେଇ ଡାକ୍ତରଖାନାକୁ ଗଲେଣି; ସେ ଆଉ ଠିଆ ହେଇ ପାରୁନି କି ଚାଲି ପାରୁନି; କିନ୍ତୁ ତା'ରି ଯୋଗୁଁ ଆଜି ଆମେ ସିଲ୍ଡ ପାଇଛୁ । ଆମ ଯୁବକ ସଂଘର ସମ୍ମାନ, ଗାଁର ସମ୍ମାନ ରହିଛି, ଆପଣ ଯଦି ତାକୁ ଦେଖିବାକୁ ଯିବେ ତ ଆସନ୍ତୁ, ସାଇକେଲ ପଛରେ ବସେଇ ଡାକ୍ତରଖାନାକୁ ନେଇଯିବୁ; ଆଉ ଡେରି କଲେ ହବ ନାହିଁ; ଆସନ୍ତୁ ଯଦି ଯିବେ ତ.... ।

ବାଜିଆର ବାପ ଗୋଲ୍ ଦବା କ'ଣ, ହ୍ୟାଟ୍ରିକ୍ କ'ଣ, ସିଲ୍ଡ କ'ଣ ପାଇଛନ୍ତି, କିଛି ବୁଝି ପାରିଲାନି । ବାଜିଆ ଯୋଗୁଁ ଯେ ଗାଁର ଯୁବକମାନଙ୍କର କି ସମ୍ମାନ ରହିଛି, ଗାଁର ଯେ କ'ଣ ସମ୍ମାନ ରହିଛି, କିଛି ବୁଝି ପାରିଲାନି; କେବଳ ବୁଝିଲା-ବାଜିଆର ଗୋଡ଼ ଭାଙ୍ଗିଯାଇଛି, ସେ ଡ଼ାକ୍ତରଖାନାକୁ ଗଲାଣି ।

ବାଜିଆର ବାପକୁ ଜଣାଗଲା-ତା ମୁଣ୍ଡରେ ଯେମିତି ବଜ୍ରପାତ ହେଲା, ଆଖିରେ କେତେଗୁରା ଜୁଳୁଜୁଳିଆ ପୋକ ଉଡ଼ି ବୁଲିବାର ଦେଖାଗଲା ।

ପୁଣି ପାଖରେ ଶୁଣିଗଲା-ହିପ୍ ହିପ୍ ହୁରରେ, ହିପ୍ ହିପ୍ ହୁରରେ, ପିକ୍, ପିକ୍ ଭୁର୍‌ରେ.... ।

ଗାଁର ଉଦଣ୍ଡ କ୍ଲବର ସିଲ୍ଡ ବିଜୟୀ ଖେଳାଳୀମାନେ ତାଙ୍କର ସମର୍ଥକ, ପୃଷ୍ଠପୋଷକ ଦଳ ସମସ୍ତେ ସିଲ୍ଡ ନେଇ ଆସି ଗାଁ ଦାଣ୍ଡରେ ପହଞ୍ଚିଗଲେ । ଦୋଳ ବେଳେ ଗାଁ ଦାଣ୍ଡରେ ଗାଁର ଠାକୁର ଗୋପୀନାଥଜୀଉଙ୍କର ବିମାନକୁ ନେଇ ମେଳଣ ପଡ଼ିଆକୁ ଗଲାବେଳେ ଇମିତି ଆନନ୍ଦ କୋଳାହଳ, ଗଣ୍ଡଗୋଳ, ଗଡ଼ାଗଡ଼ି, କୁଣ୍ଢାକୁଣ୍ଢି ଦେଖାଯାଏ ନାହିଁ ।

ପ୍ରକାଣ୍ଡ ସିଲ୍ଡ, ଗାଁ ଦାଣ୍ଡରେ ଲୋକାରଣ୍ୟ । ବଡ଼ଠୁଁ ପିଲାଯାଏ; ବୁଢ଼ାଠୁଁ ଭେଣ୍ଡା ଯାଏ, ସମସ୍ତଙ୍କର ସେଇ ଗୋଟାଏ କଥା, ଦାସେ ଆଇଲେ ମୂଳରୁ ଗା-

କିଏ ଗୋଲ ଦେଲା ? କେତେଟା ଗୋଲ ହେଲା ? ବାଜିଆର ଗୋଡ଼ କିମିତି ଭାଙ୍ଗିଲା ? ବାଜିଆ ପରି ଟୋକା ଆମ ଗାଁରେ ଜନ୍ମ ନେବା ଆମର ଭାଗ୍ୟ । ଏକା ତିନି ଗୋଲ ଦେଲା । କି ବିଚିତ୍ର ଖେଳ ତାର ! ଧନ୍ୟ ତା'ର ମା, ବାପ ! କି ବିଚକ୍ଷଣ ବୁଦ୍ଧିମାନ ପୁଅ, ତା'ର ବାପ, ମା କି ଶୁଭ ବେଳରେ ଜନ୍ମ କରିଥିଲେ.... ।

ଉତ୍ସାହୀ ଯୁବକମାନଙ୍କ ମଧ୍ୟରୁ କେତେଜଣଙ୍କ ଉଦ୍ୟମରେ କୁଆଡୁ ଦୁଇ ତିନିଟା ପେଟ୍ରୋମାକ୍ସ, ଡ୍ରମବାଜା, ବିଗୁଲ ଇତ୍ୟାଦି ଆସି ପହଞ୍ଚିଗଲା । ପେଟ୍ରୋମାକ୍ସ ଆଲୁଅରେ ସିଲ୍ଡଟା ଆହୁରି ଚମତ୍କାର ଦେଖାଗଲା । କଳାରଙ୍ଗର କାଠପଟା ଉପରେ ରୂପା ଛାଉଣି ହୋଇଛି । କି ଅଦ୍ଭୁତ, କି ଚମତ୍କାର ଜିନିଷ ! ! ଗାଁର ବୁଢ଼ା ବୁଢ଼ା ପୁରୁଖାଲୋକେ ସିଲ୍ଡ ଦେଖି ଆଶ୍ଚର୍ଯ୍ୟ ହୋଇ କୁହାକୁହି ହେଲେ-ଆମ ବାପ ଚଉଦପୁରୁଷରେ ଇମିତିଆ ଜିନିଷ ଦେଖି ନଥିଲୁ । ବାଜିଆ ଯୋଗୁଁ ଏ ଜିନିଷ ଆମ ଗାଁକୁ ଆସିଲାରୁ ସିନା ଆମେ ଦେଖିଲୁ, ଆଖି ପବିତ୍ର ହେଲା... ।

ସିଲ୍ଡକୁ ଜଣେ ଡେଙ୍ଗା ଟୋକା ନିଜ ଗାମୁଛାରେ ମୁଣ୍ଡରେ ଠେକା ବାନ୍ଧି ଦି'ହାତରେ ଧରି ଠେକା ଉପରେ ରଖି ମୁଣ୍ଡେଇଛି, ତା'ର ଚାରିପଟେ ଲୋକ, ଗାଁର ବୋହୂ, ଝିଅ, ସାନଖୁଡ଼ି, ବଡ଼ଖୁଡ଼ି, ମଝିଆଣୀ, ଦେଠେଇ, ମାଉସୀ, ପିଇସୀ, ମାଇଁ, ଆଈ ଦୋଳବେଳେ ଯେମିତି ଠାକୁରେ ବିବାନରେ ବସି ମେଲଣ ପଡ଼ିଆକୁ ବାହାରିବାବେଳେ ଦୂରରେ ଚାରିପଟେ ବାଡ଼ମୂଳେ କାନ୍ଥ ଉଢ଼ାଳରେ ଠିଆ ହୋଇ ଲୁଚି ଛପି ଦେଖନ୍ତି; ସିଲ୍ଡ ଦେଖିବା ପାଇଁ ସେମିତି ଦୂରରେ ଗଦା ହୋଇ ଦେଖିଲେ-ଯେ ଦେଖିଲେ ସେ ଆଶ୍ଚର୍ଯ୍ୟ ହେଲେ; କେତେକ ଓଳଗି ହୋଇ କହିଲେ-ମା, ଆମ ଗାଁକୁ ଇମିତି ଭଲ ଆଖିରେ ଅନେଇଥା, ସମସ୍ତଙ୍କର ମଙ୍ଗଳ କର ମା... ।

ଦୁଇ ତିନିଜଣ ମାଇପି, ଏ କେତେଜଣ ମାଇପିଙ୍କର ସିଲ୍ଡକୁ ଓଳଗି ହବାର ଦେଖି ହସି ପକେଇ ଥଟ୍ଟା କରି କହିଲେ-ମରୁନା ତୁମେ, ହଇଲୋ ତାକୁ ଓଳଗି ହେଉଛ ? ସେ କ'ଣ ଠାକୁର ହୋଇଛି ?...

ଏତିକିବେଳେ ସାନ ସାନ କେତେକ ପିଲା 'ହରିବୋଲ' ଧ୍ୱନି କରି ପାଟିକଲାରୁ କେତେଗୁରା ଫାଡ଼ା ଶ୍ରେଣୀର ଯୁବକ ମାଇପିଙ୍କ ପରି ହୁଳହୁଳି ପକେଇଲେ ।

ଏଇ ହରିବୋଲ, ହୁଳହୁଳି ଧ୍ୱନି ଶୁଣି ଦୂରରେ ଗୁଣ୍ଡ ହୋଇଥିବା ମାଇପିଙ୍କ ମହଲରୁ କିଛି ନ ବୁଝି ହୁଳହୁଳି ଶବ୍ଦ ଉଚ୍ଛୁଳି ପଡ଼ିଲା ।

ଏ ହରିବୋଲ, ହୁଳହୁଳି ଶବ୍ଦ ବନ୍ଦ ହେଲା ପରେ ଜଣେ ଦି'ଜଣ ମାଇପି ସିଲ୍ଡକୁ ଓଳଗି ହବାର ଦେଖି ଯେଉଁ ମାଇପିମାନେ ପରିହାସ କରୁଥିଲେ; ସେମାନଙ୍କୁ ଲକ୍ଷ୍ୟ କରି ପ୍ରତ୍ୟୁତ୍ତରରେ ପଚାରିଲେ-କିଲୋ, ସେ ଠାକୁର ନୁହେଁ ତ ଏତେ ହରିବୋଲ କାହିଁକି ପଡୁଛି ? ଏତେ ହୁଳହୁଳି କାହିଁକି ପକଉଛନ୍ତି ? ଆଉ ସେ କଳସ କାହିଁକି ଜଣେ ଧରି ଆଗେ ଆଗେ ଚାଲିଛି ?....

ଏ ପ୍ରଶ୍ନର ଉତ୍ତରରେ ଶୁଣାଗଲା-ହଇଲୋ, କଳସ କାହିଁ ମ ? ସେ ପେଣ୍ଟୁଟା ଧରିଛି ନା, କଳସ କିଏ ଧରିଛି ମ ?....

ଏହି ସମୟରେ ଦଳେ ଯୁବକ ଡାକ୍ତରଖାନା ଆଡୁ ଦୌଡ଼ିଆସି ଖବର ଦେଲେ-ବାଜିଆର ଗୋଡ଼ କଟା ହବ । ତା'ର ଡାହାଣ ଗୋଡ଼ର ହାଡ଼ ଗୁଣ୍ଡା ହୋଇଯାଇଛି ଆଉ ଯୋଡ଼ି ହବନି, ତା'ର ବାପ ଅଜ୍ଞାନ ହୋଇ ଡାକ୍ତରଖାନାରେ ପଡ଼ିଛି.....

ବାଜିଆର ଏପରି ଶୋଚନୀୟ ପରିଣତିର ଖବର ଶୁଣି ସମବେତ ଯୁବକଦଳ ଛତ୍ରଭଙ୍ଗ ହେଲାପରି ଅଧିକାଂଶ ଡାକ୍ତରଖାନା ଆଡ଼କୁ ଦଉଡ଼ିଲେ । ସିଲ୍ଡ ପେଟ୍ରୋମାକ୍ସ, ହିପ୍ ହିପ୍ ହୁର୍‌ରେ, ହରିବୋଲ, ହୁଳହୁଳି, ଆନନ୍ଦ, ଉତ୍ସାହ, ଉଦ୍ଦୀପନା, ଜୟୋଲ୍ଲାସ ସବୁ କୁଆଡ଼େ ଉଭେଇଗଲା ।

କେତେକ ଖେଳାଳି ଡାକ୍ତରଖାନାକୁ ନଯାଇ ଘରକୁ ଫେରିଲେ, ଉର୍ଦ୍ଦଣ୍ଡ କ୍ଲବର ଗୋଲ୍‌କିପର୍ ଗୃହ ପ୍ରବେଶ କରି ନିଜର ଅପେକ୍ଷମାଣା, ଉଦ୍‌ବିଗ୍ନା, କାତରହୃଦୟା, ବୟସ୍କା ଜନନୀକୁ ଭେଟି ଉଲ୍ଲାସରେ କହି ପକେଇଲା-ବୋଉ, ଆମେ ତିନି ଗୋଲ୍‌ରେ ଜିତିଛୁ..... ।

ବୋଉ ଉତ୍ତରରେ କହିଲା-ମଲୁ ନାହିଁ ତୁ, ଜିତିଛୁ, ବୋପା ନାଁ ରଖିଛୁ । ଘର ଅନ୍ଧାର, ତେଲ ନାହିଁ, ଲୁଣ ନାହିଁ, ମୁଁ ଅନେଇ ଅନେଇ ଥକିଗଲିଣି..... ।

ପୁଅ ପୁଣି କହିଲା-ବୋଉ, କ'ଣ ଅଛି, ଖାଇବାକୁ ଦେ, ଭୋକରେ ପେଟ ଜଳିଲାଣି.... ।

ବୋଉ-କ'ଣ ଅଛି ଯେ, ଖାଇବାକୁ ଦେବି, ମୋତେ ଖା; ମୋ ଦିନ ସରିଯାଉ.... ।

ଆଉ ଜଣେ ଖେଳାଳି ଗୃହପ୍ରବେଶ କରି ଉଚ୍ଚକଣ୍ଠରେ ଘର ନିନାଦିତ କରି ଜୟୋଲ୍ଲାସରେ କହି ଉଠିଲା-ବା'ମ ଆମେ ମାଣ୍ଡଣ କ୍ଲବକୁ ତିନି ଗୋଲରେ ହରେଇ ସିଲ୍ଡ ପାଇଛୁ.... ।

ଏହାର ଉତ୍ତରରେ ବାପଆଡୁ ଶୁଣାଗଲା-ଶଶୁରପୁଅ, ମୋ ଗୋଡ଼ ଭଲ ଥିଲେ ଏକା ଗୋଇଠାରେ ତୋ ଅନ୍ତବୁଜୁଳା ବାହାର କରି ଦିଅନ୍ତି । ଶଶୁରପୁଅକୁ କହିଲି-ମୋତେ ଟିକିଏ ଡାକ୍ତରଖାନାରୁ ଔଷଧ ଆଣି ଦେଇଯା, ଶଶୁରପୁଅ ଯାଇଥିଲା ଖେଳିବାକୁ... ।

ଶେଷରେ ଉକ୍ତ ଖେଳାଳିଙ୍କ ବାପ ସିଲ୍ଡକୁ ଗୋଟାଏ ପଦାର୍ଥ ସହିତରେ ତୁଳନା କରି ଭର୍ତ୍ସନା କଲା- ଯାହାକି ବୋଧ, କୌତୁହଳୋଦ୍ଦୀପକ, ହାସ୍ୟରସାତ୍ମକ, ସର୍ବସାଧାରଣ କିନ୍ତୁ ଅପ୍ରକାଶ୍ୟ.... ।

ଆଉ ଗୋଟାଏ ଘରେ ଜଣେ ଖେଳାଳି ଆନନ୍ଦରେ ଗୃହପ୍ରବେଶ କରିବା ମାତ୍ରେ ଜଣେ ଅଧିଆଡ଼ୀ ଲୋକ ଗୋଟାଏ ଠେଙ୍ଗା ହାତରେ ଧରି ଗୋଡ଼େଇଲା ବକି ବକି-କୁଆଡ଼େ ଯାଇଥିଲୁ ? ଏତେ ରାତି ହେଲାଣି, ଆଜି ତୁ ଅଛୁ କି, ମୁଁ ଅଛି.... ।

ଇମିତି ଖେଳାଳି ରୂପକ ମାୟାମୃଗ ପଳଉଛି ଆଉ ତା'ପଛରେ ଠେଙ୍ଗା ରୂପକ କୋଦଣ୍ଡ ଧରି ଅଧିଆଡ଼ୀ ରୂପକ ରଘୁପତି ଗୋଡ଼େଇଛନ୍ତି । ଏତିକିବେଳେ ବିପରୀତ ଆଡୁ ଉଦଣ୍ଡ କ୍ଲବର ଏବଂ ଗାଁର ଯୁବକସଂଘ ସେକ୍ରେଟେରୀ ଦାମ ରାଉତରା ଘରକୁ ଫେରିବା ବାଟରେ ଖେଳାଳି ଜଣକୁ ଚିହ୍ନି ପକେଇ ଏବଂ ତା ପଛରେ ଉଦ୍ୟତ ଠେଙ୍ଗାକୁ ରୋକି ଦେଇ କହିଲେ କ'ଣ ହେଇଛି ବୁଢ଼.... ।

ଖେଳାଳି ଜଣକ ଧଇଁ ସଇଁ ହେଇ ଜଣେଇଲା-ମୋର ବାପା ମୋତେ ମାରିବାକୁ ଗୋଡ଼େଇଛି..... ।

ଦାମ ରାଉତରା ଖେଳାଳିର ବାପକୁ ଧମକସୂଚକ କଣ୍ଠରେ ପଚାରିଲା-କାହିଁକି ମାରିବାକୁ ଗୋଡ଼େଇଛ ?

ଖେଳାଳିର ବାପ ରାଗରେ ଉତ୍ତର ଦେଲା-କିଏ ଦାମା, ତୁ ଏ ଗାଁ ଖଣ୍ଡକର ସର୍ବନାଶ କଲୁ.... ।

ଦାମ-କ'ଣ ସର୍ବନାଶ କଲି ? ତୁମେ ମୂର୍ଖଲୋକ, ତା' ନହେଲେ ଇମିତି କଥା କୁହନ୍ତ ?

ଖେଳାଳିର ବାପ ଉତ୍ତର ଦେଲା-ଆଉ ଏ ଶଶୁରପୁଅ ତ କାମକୁ ଗଲା ନାହିଁ, କି ପେଣ୍ଡୁଖେଳ ଏ ଗାଁରେ ପୂରେଇଲୁ ! ପିଲାଗୁରାଙ୍କର ପାଠ ପଢ଼ା ଗଲା; ପାଠ ନପଢ଼ିଲେ ହେଲେ କାମଧନ୍ଦା କରନ୍ତେ, ଦି'ପଇସା ଘରକୁ ଆଣନ୍ତେ, କିଛି ନାହିଁ । କି ନିଇଜ, କି ଯୁବକ ସଂଘ ଏ ଗାଁରେ ହେଲା । ଏ ଗାଁର ସର୍ବନାଶ ହେଲା । ଏ ଭେଣ୍ଡା ଟୋକାଗୁରାକ ଯୁଆଡ଼େ ଯିଏ ପାଠ ପଢୁଥିଲେ କିମ୍ବା କୁଆଡ଼େ କିଏ କାମ କରୁଥିଲେ; ଏବେ ଯୋଉଠୁଁ ସେ କଲବ ଘର ଖଣ୍ଡକ ପାଇଲେ; ସୁବିଧା ହେଇଗଲା; ସମସ୍ତେ ଏକାଠି ହେଇ ବସିବାକୁ ଗୋଟାଏ ଥାନ ମିଳିଗଲା; ବାର ମସୁଧା, ବାର ବଦମାସି, ବାର ଭାଣ୍ଡାମି; ବୋହୂ ଝିଅ ତ ଆଉ ବାଟ ଚାଲି ପାରିଲେ ନାହିଁ.... ।

ଦାମ ପ୍ରତ୍ୟୁତ୍ତରରେ କହିଲା-କ'ଣ କହୁଛ ରଥେ ? ଏ ଗୁରା କ'ଣ ବକୁଛ ? ଆମ ଗାଁରେ ଯୁବକ ସଂଘ ହେଲା ଦିନଠୁଁ, ଗ୍ରାମ ସଫେଇ ସାଂସ୍କୃତିକ ଅନୁଷ୍ଠାନ, ପାଠାଗାର, କ୍ରୀଡ଼ା ପ୍ରତିଯୋଗିତା, ପ୍ରଦର୍ଶନୀ, ସର୍ବଭାରତୀୟ ସ୍ମୃତି ଦିବସ ପାଳନ, ନାଟକ ମାଧ୍ୟମରେ ଅର୍ଥ ସଂଗ୍ରହ ଆଉ ଓଡ଼ିଆ ଭାଷାର ଆଦର ବଢ଼େଇବା, ସର୍ବ ଭାରତୀୟ ପୁଣି ରାଜ୍ୟ ସ୍ତରରେ ଶୋକ ପ୍ରକାଶ କରିବା, ଆହୁରି କେତେ କ'ଣ ହଉଛି ତୁମକୁ କ'ଣ ଜଣା ଅଛି ? ତୁମରି ପରି ଯେତେ ବୁଢ଼ା ଏ ଗାଁରେ ଅଛନ୍ତି ସମସ୍ତେ ଏ ଗାଁର ଅବନତିର ମୂଳ.... ।

ରଥେ ଦାମା ମୁହଁରେ ଇମିତି ବଡ଼ ବଡ଼ କଥାଗୁଡ଼ା ଶୁଣି କେତେକାଂଶରେ ଲଜ୍ଜିତ ହେଲେ, କାରଣ ତାଙ୍କ ପୁଅଠାରୁ ଅଳ୍ପ କେତେ ବର୍ଷର ବଡ଼ ହେବ ଦାମା, ସେ

ପୁଣି ତାଙ୍କୁ 'ରଥେ' ବୋଲି ସମ୍ବୋଧନ କରି କଥା କହୁଛି ।

ରଥେ ରାଗରେ ଜଳି ଉଠି କହିଲେ-ହଇରେ ଦାମା, ତୁ ପୁଣି ଏତେ କଥା ଶିଖିଲୁଣି କେବେଠୁ? ନିଜେ ଯେମିତି ବାଲୁଙ୍ଗା ହେଇ ଚାରି ଦଉଡ଼ି କାଟି ବୁଲୁଛୁ, ସେମିତି ଆଉ ପାଞ୍ଚଟାଙ୍କୁ ସାଙ୍ଗ କରୁଛୁ, ତାଙ୍କ ଜୀବନ ନଷ୍ଟ କରୁଛୁ । ହେଇ, ବାଜିଆ ଯୋଉ ଖେଳିବାକୁ ଯାଇ ଗୋଡ଼ ଭାଙ୍ଗି ଆସିଲା, ଆମେ ଶୁଣୁଛୁ-ତା'ଗୋଡ଼ କୁଆଡ଼େ କଟାହବ, ତା' ବାପ ମା'କୁ କିଏ ପୋଷିବ... ।

ଦାମା ରଥଙ୍କ ଏ କଥାର ଉତ୍ତର ଦବାକୁ ଯାଇ କହିଲା-ବାଜିଆକୁ ଆମେ ପୋଷିବୁ, ବାଜିଆ ଲାଗି ମୁଁ ଜୀବନ ଦବାକୁ ପ୍ରସ୍ତୁତ । ବାଜିଆ ଆମ ଗାଁର, ଦେଶର, ଜାତିର ଗୌରବ । ସେ ଦିନେ ନା ଦିନେ ଆନ୍ତର୍ଜାତିକ ଖ୍ୟାତି ଅର୍ଜନ କରିପାରେ...

ରଥେ-ହଇରେ, ବାଜିଆ ପାଇଁ ଜୀବନ ଦବାକୁ ପ୍ରସ୍ତୁତ କହୁଛୁ, ଅଭିକା ଡାକ୍ତରଖାନାକୁ ତାକୁ ଟିକିଏ ଦେଖିବାକୁ ଯାଇଥିଲୁ? କହ, ସତ କହ, ଛତରା ଚୋର.... ।

ରଥେ ଦାମାକୁ ଚୋର କହିବାର ଶୁଣି, ଦାମା ରଥଙ୍କ ଆଡ଼କୁ ଉହୁଙ୍କି ଯାଇ କହିଲା-କ'ଣ ଚୋରି କରିଥିଳି? ତୁମ ବୋପା ଚଉଦପୁରୁଷ ମୋତେ ଚୋର ବୋଲି କହିଥିଲା?...

ରଥେ ଆହୁରି ଉତ୍ତେଜିତ ହୋଇ ଜୋର୍‌ରେ ପାଟିକରି କହିଲେ-କ'ଣ ତୁ ଚୋର ନୁହଁ? ହଇରେ କଟକରେ ଯେତେବେଳେ ଥେଲୁ ଜାଲ୍ ପରିମିଟ୍‌ରେ ସିମେଣ୍ଟ ଚୋରିରେ ଜେଲ୍ ଯାଇ ନଥିଲୁ? ବଡ଼ି ବଡ଼ି କଥା କହୁଛୁ?

ରଥେ ଆହୁରି କହିଲେ-ହଇରେ ଯୁବକ ସଂଘ ଯୋଗୁଁ ଗାଁରେ ଏତେ ବଡ଼ ବଡ଼ କାମ ହଉଛି, କହୁଛୁ, ସେଦିନ ପୋଖରୀ ତୁଠରେ ବନା ଆଉ କାଶିଆ; ତମରି ଯୁବକ ସଂଘର ଦି'ଟା ଟୋକା ଗୋଟାଏ ଝିଅ ସକାଶେ କି ବାଡ଼ିଆବାଡ଼ି ହେଲେ, ଆମେ ଆଉ କିଛି ଜାଣୁନୁ? ରଥେ ଆହୁରି ଉଦ୍‌ଗାର କଲେ-ହଇରେ, ସର୍ବଭାରତୀୟ ପୁଣି ରାଜ୍ୟସ୍ତରରେ କ'ଣ ଶୋକ ପ୍ରକାଶ କରୁଛ? ବୋପା ମଲାବେଳେ ଶୋକ ପ୍ରକାଶ କରିଥିଲୁ? ବୋପା ମୁହଁ ଚାହିଁଛୁ? ବୋପାକୁ ପୋଷିଛୁ?...

ରଥଙ୍କ ଏତକ ବଚନିକା ଶୁଣି ଜୋକ ମୁହଁରେ ଲୁଣ ପରି ଦାମାକୁ ଜଣାଗଲା... ।

ସହରାଞ୍ଚଳ, ଟ୍ରେନ୍ ଆସି ଷ୍ଟେସନ୍‌ରେ ଠିଆ ହେଲେ ଶୁଣାଯାଏ-ବାବୁମାନେ ଖଞ୍ଜାକୁ ଗୋଟିଏ ପଇସା ଦିଅନ୍ତୁ, ଆପଣମାନଙ୍କର ଭଗବାନ ମଙ୍ଗଳ କରିବେ । ଆପଣମାନଙ୍କର ଶରୀର କୁଶଳ ରହିବ... ।

ଯେଉଁ ଡବାରୁ ଯେ ଦୟା କରି ଯେ ଯା ଦେଲେ, ଖଞ୍ଜା ତାକୁ ନେଇ ମୁଣ୍ଡରେ ଛୁଆଇଁ ଆଉ ଗୋଟିଏ ଡବା ସାମନାରେ ଠିଆହୋଇ ସେହି କଥା କହି ପୁଣି ପଇସା ମାଗେ ।

ବସ୍‌ଷ୍ଟାଣ୍ଡରେ ବସ୍ ଆସି ଠିଆହେଲେ, ଆଶାବାଡ଼ି ଦି'ଖଣ୍ଡ କାଖରେ ଦେଇ ଛୋଟେଇ ଛୋଟେଇ ଯାଇ ଯାତ୍ରୀଙ୍କୁ କହେ-ବାବୁମାନେ ଆପଣଙ୍କର ଧର୍ମ ହବ । ଖଞ୍ଜାକୁ ଗୋଟିଏ ପଇସା ଦିଅନ୍ତୁ, ଗରିବର କେହି ନାହିଁ, ଭଗବାନ ଆପଣଙ୍କର ମଙ୍ଗଳ କରିବେ... ।

ଯେ ଯା ଦେଲା, ପଇସା ହାତରେ ମୁଠେଇ, ମୁଣ୍ଡରେ ଛୁଇଁ, ଛୋଟେଇ ଛୋଟେଇ ଅନ୍ୟ ବସ୍ କତିକି ଯାଇ ପୁଣି ପଇସା ମାଗେ, ଯା ମିଳେ ସେଇଥିରେ ଚା, ବରା, ପକଡ଼ି, କେଉଁଦିନ ହୋଟେଲର ବାରନ୍ଦାରେ ବସି କିଛି ଭାତ ଖାଏ, ରାତି ହେଲେ ମୁସାଫିରିଖାନା କିମ୍ବା କେଉଁ ଦୋକାନ ବାରନ୍ଦାରେ ଶୋଇ ରାତି କଟାଇ ଦିଏ ।

ଦିନେ ଦିନବେଳା ବସ୍‌ଷ୍ଟାଣ୍ଡରେ ସେହି ମିନତିଭରା କାତର କଣ୍ଠରେ ଶୁଣାଯାଉଛି-ବାବୁମାନେ ଖଞ୍ଜାକୁ ଗୋଟିଏ ପଇସା ଦିଅନ୍ତୁ, ଆପଣମାନଙ୍କର ଧର୍ମ ହେବ, ମୋର କେହି ନାହାନ୍ତି, ମୋର ଗୋଟିଏ ଗୋଡ଼ ନାହିଁ, ମୁଁ ଅକ୍ଷମ, ଭଗବାନ ଆପଣମାନଙ୍କର ମଙ୍ଗଳ କରିବେ, ପିଲାମାନଙ୍କର ଶରୀର. କୁଶଳ ରହିବ..... ।

ଏଇ ସମୟରେ ଶୁଣାଗଲା-ହିପ୍ ହିପ୍ ହୁର୍‌ରେ, ହିପ୍ ହିପ୍ ହୁର୍‌ରେ, ଥ୍ରୀ ଚିୟର୍ସ ଫର୍ ମାର୍ତ୍ତଣ୍ଡ କ୍ଲବ ହିପ୍ ହିପ୍ ହୁର୍‌ରେ... ।

ଗୋଟାଏ ଟ୍ରକ୍‌ରେ ଦଳେ ଖେଳାଳି ଠିଆ ହୋଇଛନ୍ତି, ଦୁଇଜଣ ଖେଳାଳି ଗୋଟାଏ ବଡ଼ ସିଲ୍ଡ ଧରିଛନ୍ତି, ଜଣେ ଗୋଟାଏ ପେଣ୍ଡୁକୁ କାଖେଇଲା ଭଳି ଧରିଛି, ଟ୍ରକଟା ବସଷ୍ଟାଣ୍ଡ କଡି ଦେଇ ରାସ୍ତା ଉପରେ ଗଲାବେଳେ ପୁଣି ମିଳିତ କଣ୍ଠର ଧ୍ୱନିରେ ବସ୍‌ଷ୍ଟାଣ୍ଡ କମ୍ପି ଉଠିଲା-ହିପ୍ ହିପ୍ ହୁର୍‌ରେ, ହିପ୍ ହିପ୍ ହୁର୍‌ରେ, ଥ୍ରୀ ଚିୟର୍ସ ଫର୍ ମାର୍ତ୍ତଣ୍ଡ କ୍ଲବ..... ।

ପୁଣି ସେଇ ଟ୍ରକ ଉପରୁ ଶୁଣାଗଲା-ହେଇରେ ବାଜ ପରିଡ଼ା

-କାହିଁ? କାହିଁ?

-ହେଇଟି କ'ଣ ଆଶାବାଡ଼ି ଦି'ଖଣ୍ଡ କାଖରେ ଦେଇ ଗୋଟାଏ ଗୋଡ଼ରେ ଠିଆ ହେଇଛି ।

-ହେଇଟି ସେ ବସ୍ ପାଖରେ ଠିଆହେଇ ପଇସା ମାଗୁଛି... ।

-ହଇରେ, ବାଜିଆ ଭିକ ମାଗିଲା। ତାକୁ କେହି ତାଙ୍କ ଗାଁରେ ସାହାଯ୍ୟ କଲେ ନାହିଁ?

-ତା'ପରି ଖେଳାଳି ଜଣେ, ଆମ ଗାଁ ହେଇଥିଲେ ତାକୁ ବସେଇ ପୋଷନ୍ତୁ ।

-ହଇରେ, ବାଜିଆ ଶେଷକୁ ଭିକ ମାଗିଲା ।

ବାଜିଆ ବୁଝି ପାରିଲା-ମାର୍ତ୍ତଣ୍ଡ କ୍ଲବର ଖେଳାଳିମାନେ କେଉଁଠି ଫୁଟବଲ ମ୍ୟାଚ୍‌ରେ ଜିତି ସିଲ୍ଡ ନେଇ ହିପ୍ ହିପ୍ ହୁର୍‌ରେ କରି ଯାଉଛନ୍ତି । ବାଜିଆ କାନ୍ଦି ପକେଇଲା, ପୁଣି ଲଜ୍ଜିତ ହୋଇ ଭାବିଲା-ଗୋଟାଏ ବସ୍ ଉଢ଼ାଳରେ ଲୁଚି ଠିଆ ହବ, ସେ ତରବରରେ ଛୋଟେଇ ଛୋଟେଇ ଯାଉ ଯାଉ ତା' ମୁଣ୍ଡ ଘୂରିଗଲା, ତା'ର ଆଶାବାଡ଼ି ଦି'ଖଣ୍ଡ ଖସିଗଲା । ବାଜିଆ ସେହି ବସ୍‌ଷ୍ଟାଣ୍ଡର ମାଟି ଉପରେ କଚାଡ଼ି ହେଇ ପଡ଼ିଲା ।

ଟ୍ରକଟା ବସ୍‌ଷ୍ଟାଣ୍ଡ ରାସ୍ତା ଉପରେ ଜନଗହଳି କଟେଇ ଆସ୍ତେ ଆସ୍ତେ ଚାଲିଲା ସଙ୍ଗେ ସଙ୍ଗେ ହିପ୍ ହିପ୍ ହୁର୍‌ରେ, ହିପ୍ ହିପ୍ ହୁର୍‌ରେ-ମିଳିତ କଣ୍ଠର ଧ୍ୱନି କ୍ରମଶଃ କ୍ଷୀଣରୁ କ୍ଷୀଣତର ହେଇ ଆଉ ଶୁଣାଗଲା ନାହିଁ ।

# ଆନ୍ଦୋଳନ

ରଜନୀ ବାବୁ ଦୈନିକ ଖବରକାଗଜ ପଢ଼ନ୍ତି । ଶୋଇବା ପୂର୍ବରୁ ସେ ଖବରକାଗଜ ନ ପଢ଼ିଲେ ତାଙ୍କୁ ନିଦ ହୁଏନା । କେତେଦିନ ଧରି ସେ ଯେତେ ଖବର ପଢ଼ିଲେ, ତା' ଭିତରେ ବିଶେଷ ଗୋଟାଏ ନୂଆ ଧରଣର ଖବର ପଢ଼ିବାକୁ ପାଇଲେ-ଆଜି ଦିଲ୍ଲୀ ବନ୍ଦ, କାଲି ବିହାର ବନ୍ଦ, ପଅରଦିନ କଲିକତା ବନ୍ଦ, ଆନ୍ଧ୍ର ବନ୍ଦ, ଉତ୍ତରପ୍ରଦେଶ ବନ୍ଦ, ମଧ୍ୟପ୍ରଦେଶ ବନ୍ଦ, ବାଲେଶ୍ୱର ବନ୍ଦ, ବ୍ରହ୍ମପୁର ବନ୍ଦ, ବଙ୍ଗ ବନ୍ଦ, ଓଡ଼ିଶା ବନ୍ଦ, କିଷ୍କିନ୍ଦା ବନ୍ଦ ।

ରଜନୀ ବାବୁ ଭାବିଲେ-ଏକୁ କୁହାଯାଏ 'ବନ୍ଦ ଆନ୍ଦୋଳନ' । ଏ ଗୋଟାଏ ନୂଆ ଧରଣର ଆନ୍ଦୋଳନ ଆରମ୍ଭ ହେଲା । ତାଙ୍କ ପିଲାଦିନେ ତ ଇମିତି ଆନ୍ଦୋଳନ ନଥିଲା । ଏବେ ଏ ଆନ୍ଦୋଳନ ଚାଲୁ ହେଲା । ସେଦିନ ରଜନୀ ବାବୁ ଇମିତି ଗୋଟାଏ ବନ୍ଦ ଆନ୍ଦୋଳନ ବିଷୟ ପଢୁ ପଢୁ ତାଙ୍କୁ ନିଦ ହୋଇଗଲା । ଖବରକାଗଜ ଖଣ୍ଡକ ଛାତି ଉପରେ ପଡ଼ିଛି, ରଜନୀ ବାବୁ ଗୋଟାଏ ସ୍ୱପ୍ନ ଦେଖିଲେ-ଗୋଟାଏ ଛୋଟ ସହର, ସେଠି ମ୍ୟୁନିସିପାଲିଟି ଅଛି ଏବଂ ମ୍ୟୁନିସ୍‌ପାଲିଟି ତରଫରୁ କେତେଗୁଡ଼ିଏ ଜନସାଧାରଣଙ୍କ ପାଇଁ ପାଇଖାନା ଅଛି, ଯା'କୁ ଇଂରାଜୀରେ କୁହାଯାଏ- Public Latrine । ସେଗୁଡ଼ାକ ବହୁତ ଦିନରୁ ତିଆରି, ତା'ର ମରାମତି, ରକ୍ଷଣାବେକ୍ଷଣ ଇତ୍ୟାଦିର ଭାର ମ୍ୟୁନିସ୍‌ପାଲିଟି ଉପରେ । ମ୍ୟୁନିସ୍‌ପାଲିଟି ପୁଣି ସରକାରଙ୍କ ଦ୍ୱାରା ପରିଚାଳିତ ।

ସେହି ସହରର ଯୁବକ ସଂଘର ଦଳେ ଯୁବକ ମସୁଧା କଲେ-କିମିତି ଶସ୍ତାରେ ସୁନାମ ଅର୍ଜନ କରିବେ । ଗୋଟାଏ ଆନ୍ଦୋଳନ କରିବେ । କି ଆନ୍ଦୋଳନ କରିବେ? ଆନ୍ଦୋଳନଟା ଇମିତି ହବା ଦରକାର-ଯେଉଁଥିରେ କି ବିଶେଷ ଦୈହିକ କିମ୍ବା ଆର୍ଥିକ କ୍ଷତି ହବ ନାହିଁ । କିନ୍ତୁ ଆନ୍ଦୋଳନ ହବ, ଯା' ଫଳରେ ସହରର ଅନ୍ୟାନ୍ୟ ଲୋକମାନେ ଜାଣିବେ-ଯା' ହେଉ, ଯୁବକ ଦଳ ଗୋଟାଏ ଆନ୍ଦୋଳନ କରି ଗୋଟାଏ କାମ କଲେ । ଆଉ ଆନ୍ଦୋଳନ ଫଳରେ ଯେମିତି ସର୍ବସାଧାରଣ ଲୋକେ ମଧ୍ୟ ଉପକୃତ ହେବେ । ଇମିତି କେତେଥର ମସୁଧା କରୁ କରୁ ଶେଷରେ ସ୍ଥିର କଲେ- "ପାଇଖାନା ବନ୍ଦ ଆନ୍ଦୋଳନ" ଚାଲୁ କରାଯାଉ । ଯେତେ Public Latrine ଅଛି, ସେ ସବୁର ଜୀର୍ଣ୍ଣ-ସଂସ୍କାର କରାଯାଉ, ପୁନର୍ଗଠନ କରାଯାଉ.... ।

ଜଣେ ଯୁବକ କହିଲା-ସଭା କରିବା ପୂର୍ବରୁ ଗୋଟାଏ ଶୋଭାଯାତ୍ରା ବାହାର କରାଯାଉ । ଗୀତଗାଇ, ସ୍ଲୋଗାନ ଦେଇ, ସହର ପରିକ୍ରମା କରାଯାଉ । ଲୋକେ ଆଗେ ବୁଝନ୍ତୁ, ଆମର ଲକ୍ଷ୍ୟ କ'ଣ? ସେଇ କଥା ସ୍ଥିର ହେଲା-ଶୋଭାଯାତ୍ରା "ମାନଭଞ୍ଜନ କ୍ଲବ" ଯେଉଁଠି ଯୁବକ ସଂଘର ଅଫିସ, ସେଇଠୁଁ ବାହାରି ସହର ପରିକ୍ରମା କରି ପୁଣି "ଭୂତକେଳି ପାଠାଗାର" କତିରେ ପହଞ୍ଚି, ସେଇଠି ଗୋଟାଏ ବିରାଟ ସାଧାରଣ ସଭା ହେବ । ସେଥିରେ ଯୁବକ ସଂଘର ସେକ୍ରେଟେରୀ ଗର୍ଭଭଞ୍ଜନ କୋଦମା ସିଂ "ପାଇଖାନା ବନ୍ଦ ଆନ୍ଦୋଳନ" ସମ୍ବନ୍ଧରେ ଭାଷଣ ଦେବେ ।

ଶୋଭାଯାତ୍ରା ଆରମ୍ଭ ହେଲା । ଲାଲରଙ୍ଗର କନା ଉପରେ ଧଳା ଅକ୍ଷରରେ "ପାଇଖାନା ବନ୍ଦ ଆନ୍ଦୋଳନ" ଲେଖା ହୋଇ ଦୁଇଜଣ ଯୁବକ ଉଭୟ ପାର୍ଶ୍ୱରେ ରହି ଗୋଟିଏ ତୋରଣ ଭଳି ଜିନିଷକୁ ଧରି ଚାଲିଲେ । ହାରମୋନିୟମ, ଗିନି ବଜେଇ ଯୁବକମାନେ ଏବଂ ତାଙ୍କ ପଛରେ କେତେକ କିଛି ନବୁଝିଥିବା ଧାଉଡ଼ିଆ ଲୋକଗୁରାଏ ଚାଲିଲେ ଗୀତ ଗାଇ ଗାଇ- ।

"ଆମେ ଯେତେକ ଫାଡ଼ା<br>
ଫେରିବୁ ଝାଡ଼ା<br>
ଆମେ ଯେତେ କୃଷ୍ଣ, ରାଧା,<br>
ମାନିବୁନି କାହାରି ବାଧା,<br>
ଆମେ ଫେରିବୁ ଝାଡ଼ା, ରଖିବୁ ଆଡ଼<br>
ବୁଡ଼ାଇ ଦେବୁ ରାସ୍ତା ଘାଟ,<br>
ଭାଙ୍ଗିବୁ ସରକାରଙ୍କ ଆଡ଼ା,

ଆମେ ଯେତେକ ଫାଡ଼ା.... ।”

ଗୀତର ପରେ ସମସ୍ୱରରେ ଶୁଣାଗଲା-ଆମର ଦାବୀ ପୂରଣ ହେଉ, ସରକାରୀ ସର୍ବସାଧାରଣ ପାଇଖାନାକୁ ଯିବା ବନ୍ଦ କର, ଇନ୍‌କିଲବ-ଜିନ୍ଦାବାଦ, ଇନ୍‌କିଲବ-ଜିନ୍ଦାବାଦ... ।

ଇମିତି ଗୀତ ଗାଇ, ସ୍ଲୋଗାନ ଦେଇ ସହର ପରିକ୍ରମା କରି ଶେଷରେ ଶୋଭାଯାତ୍ରା ଆସି ପହଞ୍ଚିଲା “ଭୂତକେଳି ପାଠାଗାର” ନିକଟରେ । ବହୁତ ଲୋକ ଗୁଣ୍ଡ ହେଲେ । ଆଗର କାର୍ଯ୍ୟନିର୍ଘଣ୍ଟ ଅନୁଯାୟୀ ସଭା ହେବ ।

ସଭାସ୍ଥଳ ଆଗରୁ ସୁସଜ୍ଜିତ ହୋଇଥିଲା; ଅନ୍ୟାନ୍ୟ ଯୁବକମାନଙ୍କଦ୍ୱାରା । ସଭାରେ ପାଇଖାନା ବନ୍ଦ ଆନ୍ଦୋଳନ ବିଷୟରେ ପ୍ରଥମେ ଭାଷଣ ଦେବାକୁ ଉଠିଲେ ଯୁବକ ସଂଘର ସେକ୍ରେଟେରୀ-ଗର୍ଭଭଞ୍ଜନ କୋଦମା ସିଂ । କୋଦମା ସିଂ ଆରମ୍ଭ କଲେ-ଭାଇମାନେ, ଆଜିଠାରୁ ଆମ୍ଭେମାନେ ପାଇଖାନା ବନ୍ଦ ଆନ୍ଦୋଳନ ଆରମ୍ଭ କରୁଛୁ । ଏହାର କାରଣ ହେଲା-ଆମ୍ଭମାନଙ୍କ ମଧ୍ୟରୁ ଅନେକ ପଡ଼ିଆରେ ଝାଡ଼ା ଫେରନ୍ତି ଓ ଆଉ କେତେକ ଅଧୁନା ସରକାରଙ୍କ ତତ୍ତ୍ୱାବଧାନରେ ପରିଚାଳିତ ଏବଂ ପୂର୍ବରୁ ମ୍ୟୁନିସ୍‌ପାଲିଟି ଦ୍ୱାରା ନିର୍ମିତ କେତେକ ସର୍ବସାଧାରଣଙ୍କ ଲାଗି ପାଇଖାନା, ଯାହାକୁ ଇଂରାଜୀରେ କୁହାଯାଏ Public Latrine, ସେଥିରେ ଝାଡ଼ା ଫେରନ୍ତି । ସେ ସବୁର ଅବସ୍ଥା ଅତି ଖରାପ ହୋଇଗଲାଣି । ସେ ସବୁ ମଣିଷର ବ୍ୟବହାର ଉପଯୋଗୀ ହୋଇ ଆଉ ନାହିଁ । ସେ ସବୁ ପାଇଖାନାକୁ ଯିବାର ମଧ ବାଟ ନାହିଁ । ତା’ର ଚାରିପଟ କଂଟାବୁଦା, ବଣଜଙ୍ଗଲରେ ଭରି ଗଲାଣି । ତା’ଭିତରେ ଯାଇ ଝାଡ଼ା ଫେରିବା ଭୟଙ୍କର ବିପଦଜନକ । କାରଣ-ତା’ଭିତରେ ଜାଗା ଜାଗା ହୁଙ୍କା ମାଡ଼ିଗଲାଣି । ଏଣୁ ସାପର ଭୟ, ବିଲୁଆ, କୁକୁର ମଧ ତା’ଭିତରେ ଆଶ୍ରୟ ନେଉଛନ୍ତି । ସେ ପାଇଖାନା ସବୁ ମାସ ମାସ ଧରି ପରିଷ୍କାର ହେଉ ନାହିଁ । ଦୁର୍ଗନ୍ଧରେ ପଶି ହଉନି, ଛାତରୁ ପାଣି ଗଳୁଛି, ବସିବା ଜାଗା ଭାଙ୍ଗିଗଲାଣି । କାନ୍ଥ ସବୁରେ କୋଇଲା ଖଣ୍ଡରେ ଅଙ୍କିତ ହୋଇଥିବା ଯେତେ ପ୍ରକାର ଚିତ୍ର, ତା’ସହିତରେ ଏ ଯୁଗର ମଧ ସମକକ୍ଷ ହେବନି । ଯେଉଁ କେତେକ ସଙ୍କା ପଦାବଳି ନୀତିବାକ୍ୟ ବ୍ୟଙ୍ଗୋକ୍ତି ଲେଖା ହୋଇଥିବାର ଦେଖାଯାଏ ତା’ ସହିତରେ ଯେ କୌଣସି ଦେଶର ସାହିତ୍ୟ ସମକକ୍ଷ ହୋଇ ପାରିବନି । ସେ ସବୁ କାନ୍ଥ ବର୍ଷ ବର୍ଷ ଧରି ସଫେଇ ହଉନି, ଚୂନ ଲାଗୁନି... ।

କୋଦମା ସିଂ ପୁଣି କହିଲେ-ଭାଇମାନେ ଆଉ ଗୋଟାଏ କଥା ଆଜି ଆପଣମାନଙ୍କୁ କହୁଛି । ଯେତେବେଳେ ଶସ୍ତା ଅମଳ ଥିଲା ଲୋକେ ଶସ୍ତାରେ ଖାଦ୍ୟ ପଦାର୍ଥ କିଣି ଖାଉଥିଲେ । ସେତେବେଳେ ଶସ୍ତାରେ ତିଆରି ପାଇଖାନାରେ ଝାଡ଼ା ଫେରୁଥିଲେ । ଆମ୍ଭେମାନେ ମହଙ୍ଗ ଯୁଗର ଲୋକ । ବର୍ତ୍ତମାନ ଟଙ୍କାକୁ କିଲେ ଚାଉଳ । ଆମ୍ଭେମାନେ ମହଙ୍ଗ ଜିନିଷ କିଣି ଖାଉଛୁ । ଆମେ ଏ ଶସ୍ତା ଧରଣର ପାଇଖାନାରେ କାହିଁକି ଝାଡ଼ା ଫେରିବୁ? ଏ ସବୁ ପାଇଖାନା ପରିବର୍ତ୍ତେ ଆମ୍ଭମାନଙ୍କୁ ସେପ୍‌ଟିକ୍ ଲ୍ୟାଟ୍ରିନ୍ ସେଥିରେ ପାଣି ପାଇପ୍, ବିଜୁଳି ପଙ୍ଖା, ବିଜୁଳି ଆଲୁଅ ଅଇନା ଇତ୍ୟାଦି ଯୋଗେଇ ଦିଆଯାଉ । ନଚେତ୍ ଆମେ ସେ ପାଇଖାନାରେ କଦାପି ଆଉ ଝାଡ଼ା ଫେରିବୁ ନାହିଁ । ଆମେ ବିଚ୍ ବଜାରରେ, ରାସ୍ତାଘାଟ ଗଳିକନ୍ଦି ସବୁଠି ଝାଡ଼ା ଫେରିବୁ; କିଛି ବାକି ରଖିବୁ ନାହିଁ... ।

ଏତେବେଳେ ଶ୍ରୋତାଙ୍କ ଆଡୁ କରତାଳିର ଝଡ଼ ବୋହିଗଲା । ପୁଣି ଶୁଣାଗଲା- Hear, Hear ... । କେତେକ ଶ୍ରୋତାଙ୍କ ଭିତରେ କୁହାକୁହି ହେଲେ-ଇମିତିଆ କେତେକ ଯୁବକଙ୍କ ହାତରେ ଯଦି ଦେଶର ଶାସନଭାର ଛାଡ଼ି ଦିଆଯା’ନ୍ତା, ଦେଶ ଭଲରେ ଚଳନ୍ତା... ।

ଆଉ କେତେକ ପ୍ରତ୍ୟୁତ୍ତରରେ କହିଲେ-ଦେଖୁନା, ପାଇଖାନା ମରାମତି ଆଡୁ ଏମାନେ ପ୍ରଥମରୁ ଧଇଲେଣି । ସତ କଥା, ଆମର ତ କାହାରି ଏ ବିଷୟରେ ଖିଆଲ ନାହିଁ... ।

କୋଦମା ସିଂ ପୁଣି ଆରମ୍ଭ କଲେ-ଭାଇମାନେ, ଟିକସ ଦିନୁଦିନ ବଢ଼ିବାରେ ଲାଗିଲା ଅଥଚ ଜନସାଧାରଣଙ୍କ ପାଇଖାନା ପ୍ରତି ସରକାରଙ୍କ ଦୃଷ୍ଟି ପଡ଼ିଲାନି । ଆମ୍ଭମାନଙ୍କର

କଷ୍ଟାର୍ଜିତ ଧନରେ ଦୁର୍ମୁଲ୍ୟ ଖାଦ୍ୟ ଯାହା ଖାଇଲୁ ତାକୁ ଯଦି ଆମେ ଟିକିଏ ଆରାମରେ ନିଷ୍କାସନ କରି ନପାରିଲୁ, ତା'ହେଲେ ଆମର ମଣିଷ ଜନ୍ମ ବୃଥା । ମୁଁ ଆପଣମାନଙ୍କୁ ଅନୁରୋଧ କରୁଛି- ଆପଣମାନେ ସହଯୋଗ କରନ୍ତୁ । ଆଜିଠାରୁ କେହି ଆଉ ସେ ପାଇଖାନାଗୁଡ଼ାକୁ ଝାଡ଼ା ଫେରିବାକୁ ଯା'ନ୍ତୁ ନାହିଁ । ଯେଉଁଠି ଇଚ୍ଛା ସେଠି ଝାଡ଼ା ଫେରନ୍ତୁ । ଯେଉଁମାନଙ୍କ ଝାଡ଼ା ଭଲ ନହେଉଛି, ସେମାନେ ଡ଼ାକ୍ତରଖାନାରୁ ଝାଡ଼ା ହେବାର ଔଷଧି ଖାଇ ଝାଡ଼ା ଫେରନ୍ତୁ । ଏଇ ଆମର ସତ୍ୟାଗ୍ରହ । ଆମେ ଅନଶନ କରିବୁ ନାହିଁ । ଆମେ ଖାଇବୁ, ଝାଡ଼ା ଫେରିବୁ । ଆମେ ଗୋଳାବାରୁଦ, ଲୁହବୁହା ଗ୍ୟାସ୍, ଲାଠିଚାଳନା କିଛି ମାନିବୁ ନାହିଁ । ଯେ ପର୍ଯ୍ୟନ୍ତ ଆମର ଲକ୍ଷ୍ୟ ହାସଲ ନହୋଇଛି, ଦାବୀ ପୂରଣ ନହୋଇଛି, ଏ ପାଇଖାନା ବନ୍ଦ ଆନ୍ଦୋଳନ ଚାଲୁ ରହିବ । ଆମେ ମରଣକୁ ବରଣ କରି ଶହୀଦ ହେବୁ ନାହିଁ । ଆମେ ବଞ୍ଚି ରହି ଶହୀଦ ହେବୁ । ଏ ହେଲା ଆମର ବ୍ରତ, ଲକ୍ଷ୍ୟ, ଦାବୀ ଯାହା କହନ୍ତୁ । ଆଜି ମୁଁ ଏତିକିରେ ବିଦାୟ ନେଉଛି, ମୋର ପରବର୍ତ୍ତୀ ବକ୍ତା ଶ୍ରୀମାନ୍ ପ୍ରେମାତୁର ଡିଆଁବାଘ ଆପଣମାନଙ୍କୁ ପାଇଖାନା ବନ୍ଦ ଆନ୍ଦୋଳନ ବିଷୟରେ କେତେକ କଥା କହିବେ । ଆପଣମାନଙ୍କୁ ଅନୁରୋଧ-ଆପଣମାନେ ଧୀରସ୍ଥିର ହୋଇ ବସି ଶୁଣନ୍ତୁ-

ପ୍ରେମାତୁର ଡିଆଁ ବାଘ ସଭାମଣ୍ଡପକୁ ଯେମିତି ଡ଼ିଆଁ ମାଇଲା ପରି ଉଠିଆସି ଆରମ୍ଭ କଲେ-ଭାଇମାନେ, ମୋର ପୂର୍ବବର୍ତ୍ତୀ ବକ୍ତା ଶ୍ରୀମାନ୍ ଗର୍ଭଭଞ୍ଜନ କୋଦମା ସିଂ ଆପଣମାନଙ୍କୁ "ପାଇଖାନା ବନ୍ଦ" ଆନ୍ଦୋଳନ ବିଷୟରେ ଅନେକ କଥା ବୁଝେଇ କହି ସାରିଛନ୍ତି । ମୁଁ ବିଶେଷ କିଛି କହିବାକୁ ଯାଉନି । ମୁଁ କେବଳ ଅଳ୍ପ କେତେଟା କଥା କହିବି-ଆପଣମାନେ ଦେଖିଥିବେ, ସେହି ସର୍ବସାଧାରଣ ପାଇଖାନା ସବୁ ଦୁଇ ଭାଗରେ ବିଭକ୍ତ । ଗୋଟାଏ ପାଖରେ ଲେଖାଥାଏ 'ପୁରୁଷ' ଅନ୍ୟ ପାଖରେ ଲେଖାଥାଏ 'ମହିଳା' ଏବଂ ପ୍ରତ୍ୟେକ ପାଖର କାନ୍ଥରେ ଜଣେ ପୁରୁଷ ଏବଂ ଜଣେ ମହିଳାର ମୂର୍ତ୍ତି ଅଙ୍କା ହୋଇଥାଏ । କେତେବର୍ଷ ଧରି କେତେକ ପାଇଖାନାରେ ଆଉ ସେ ମୂର୍ତ୍ତି ନାହିଁ କି ସେ ଲେଖା ନାହିଁ । ଏଣୁ ଆମ୍ଭମାନଙ୍କ ଭିତରୁ ଅନେକ ପୁରୁଷ ଆଡ଼େ ନଯାଇ ଭୁଲରେ ମହିଳାଆଡ଼େ ପଶିଯାଉଛନ୍ତି । କେତେକ ମହିଳା ମଧ ଭୁଲରେ ପୁରୁଷ ଆଡ଼େ ପଶି ଯାଉଛନ୍ତି । ଏଣୁ ସେ ପାଇଖାନା ଭିତରେ କେତେକ ସ୍ତ୍ରୀ, ପୁରୁଷଙ୍କ ମିଳନ ସମ୍ଭବ ହେଉଛି । ପୁଣି ସେଇଠୁ କେତେକ ପୁରୁଷ ଓ ସ୍ତ୍ରୀଙ୍କର ସେଠି ପ୍ରଣୟ ସଂଚାର ହେଉଛି । ସେଇ ପାଇଖାନା ଭିତରେ ପୁରୁଷ ଓ ସ୍ତ୍ରୀ ଉଭୟଙ୍କର ପ୍ରେମାଭିନୟ ମଧ ହେଉଛି । ଅନେକ ଜାଗାରେ ସେଇ ପାଇଖାନା ସବୁ ପ୍ରେମର ପୀଠରେ ପରିଣତ ହେଲାଣି । ପୁଣି ପୁରୁଷ ପାଖ ଏବଂ ମହିଳା ପାଖର ମଝିରେ ଯେଉଁ କାନ୍ଥଖଣ୍ଡକ ଥାଏ, ଅନେକ ପାଇଖାନାରେ ସେ କାନ୍ଥ ମଧ ଆଉ ନାହିଁ । ପୁରୁଷ ଓ ମହିଳା ଉଭୟ ପାଖ ଏକ ହୋଇଗଲାଣି । ସ୍କୁଲ, କଲେଜ, ଅଫିସ୍, କଚେରୀ, ସିନେମା, ଥିଏଟର, ଟ୍ରେନ, ବସ୍; ସବୁଠି ସ୍ତ୍ରୀ, ପୁରୁଷ ଯେମିତି ସମାନ ଭାବରେ ସହାବସ୍ଥାନ ରୀତିର କାର୍ଯ୍ୟ କରୁଛନ୍ତି; ଏସବୁ ପାଇଖାନାରେ ମଧ ଆଜିକାଲି ସହାବସ୍ଥାନ ରୀତି ଚାଲୁ ହେଲାଣି । ଆଉ ବାକି ରହିଲା କ'ଣ? ଏତେବେଳେ ଟେବୁଲ ବାଡ଼େଇ ଡିଆଁ ବାଘ ପୁଣି କହିଲେ- କହନ୍ତୁ ଆପଣମାନେ ଆମର ଆଉ ଇଜ୍ଜତ ବୋଲି କିଛି ଅଛି? ଏ କଥା ଆପଣମାନେ କିମିତି ସହ୍ୟ କରୁଛନ୍ତି... ।

ଏତେବେଳେ ଶ୍ରୋତାଙ୍କ ଆଡୁ କରତାଳିର ଝଙ୍କାର ମଧରେ ଶୁଣାଗଲା- Splendid, Splendid..

ଡିଆଁ ବାଘ ପୁଣି କହିଲେ-ସକାଳୁ ଉଠି ଝାଡ଼ାଟି ଯଦି ସୁଚାରୁରୂପେ ପରିଷ୍କାର ହୁଏ, ଆମେ ମନରେ କି ଆନନ୍ଦ ଅନୁଭବ କରୁ । ଯଦି ଝାଡ଼ା ଫେରିବାରେ ବାଧା ପଡ଼େ, ଆମ୍ଭେମାନେ କି ଅଶାନ୍ତି ଭୋଗ କରୁ । ଏ ବିଷୟରେ ଆପଣମାନେ ମୋ ସଙ୍ଗେ ନିଶ୍ଚୟ ଏକମତ ହେବେ । ଆଉ ଗୋଟିଏ ମୋର ନିଜର ବିପଦ କଥା ମୁଁ ଆଜି କହୁଛି-ଦିନେ ସନ୍ଧ୍ୟାବେଳେ ମୁଁ ଗୋଟିଏ ଇମିତିଆ ପାଇଖାନାକୁ ଯାଇ ଗୋଟାଏ ଗୋଖର ସାପର ହାବୁଡ଼େ ପଡ଼ିଥିଲି । ସେ କି ବିପଦ!! କି କଷ୍ଟରେ ମୁଁ ସେଠୁ ଉଦ୍ଧାର ପାଇଛି ।

ଏଇ କଥା କହୁ କହୁ ସେ ଲୋକଙ୍କୁ ଆଉ ଟିକିଏ ପ୍ରଭାବିତ କରିବା ପାଇଁ କାନ୍ଦି ପକେଇଲେ । କାନ୍ଦୁ କାନ୍ଦୁ

କହିଲେ- ମୁଁ ସେଦିନ ସର୍ପାଘାତରେ ମରିଥିଲେ ମୋର ସଦ୍ୟ ବିବାହିତା ପତ୍ନୀର କି ଅବସ୍ଥା ହୋଇଥାନ୍ତା । ମୁଁ ବାପ, ମା'ର ପୁଣି ଗୋଟିଏ ପୁଅ... ।

ଡିଆଁ ବାଘ କାନ୍ଦିବା ବେଳେ କତିରେ ଟେବୁଲ ଉପରେ ଥୁଆ ହୋଇଥିବା microphoneରେ ତାଙ୍କର କାନ୍ଦିବାର ଶବ୍ଦ ଏବଂ ଭାଷଣ ମିଶାମିଶି ହେଇ ଏଡ଼େ ବିକଟ ଉଚ୍ଚସ୍ୱରରେ ଶୁଣାଗଲା ଯେ ଲୋକେ ଭୟଭୀତ ହେଲେ । ଡିଆଁ ବାଘଙ୍କ କାନ୍ଦଣାରେ ଶ୍ରୋତାଙ୍କ ଆଡ଼ୁ ଡିଆଁ ବାଘଙ୍କ ପ୍ରତି କାରୁଣ୍ୟ ପ୍ରକାଶ କରି ଅନେକ ମନେ ମନେ ତରଳି ଯାଇ କାନ୍ଦି ପକେଇଲେ, କେତେକ ସ୍ତମ୍ଭୀଭୂତ ହୋଇଗଲେ ଏବଂ କେତେକ ଉନ୍ମତ୍ତ ହୋଇ ଉଠିଲେ ।

ଡିଆଁ ବାଘ କାନ୍ଦଣା ବନ୍ଦ କରି ଉପସ୍ଥିତ ଜନତାଙ୍କୁ ଆହ୍ୱାନସୂଚକ କଣ୍ଠରେ ସମ୍ବୋଧନ କରି କହିଲେ-ଆସ ଭାଇମାନେ, ଆଜି ଏଇଠୁଁ ପାଇଖାନା ବନ୍ଦ ଆନ୍ଦୋଳନ କାର୍ଯ୍ୟକାରିତାର ଶୁଭାରମ୍ଭ ହେଉ । ଆସ ଆଜି ଏଇଠି ସମସ୍ତେ ଝାଡ଼ାଫେରିବା । ଏଥିରେ ଲଜ୍ଜା ସରମର ପ୍ରଶ୍ନ ଉଠୁ ନାହିଁ । ଏକାଠି ଖାଇ ବସିଲେ ଯେପରି ଆନନ୍ଦ ମିଳେ, ଏକାଠି ଝାଡ଼ା ବସିଲେ ମଧ୍ୟ ସେମିତି ଆନନ୍ଦ ମିଳେ । ଆପଣମାନେ ଜାଣିଥିବେ କି ପୁରୁଷ କି ସ୍ତ୍ରୀ ବେଳେ ବେଳେ କେତେକ ଦଳବଦ୍ଧ ହୋଇ ଝାଡ଼ା ଫେରିବାକୁ ଯା'ନ୍ତି... ।

ଡିଆଁବାଘଙ୍କ ଆହ୍ୱାନରେ ସମସ୍ତେ ସେହି ସଭାସ୍ଥଳରେ ଝାଡ଼ା ବସିବାକୁ ଆରମ୍ଭ କଲେ । କେତେକ ଝାଡ଼ା ନହେବାରୁ ପେଟ ବାଡ଼େଇଲେ, କେତେକ ବିଡ଼ି ଏବଂ ଗୁଡ଼ାଖୁ ଖୋଜିଲେ ।

ରଜନୀ ବାବୁ ସ୍ୱପ୍ନରେ ଦେଖୁଥିଲେ-ସେ ମଧ୍ୟ ଏ ସଭାକୁ ଯାଇଥିଲେ । ସଭାସ୍ଥଳରେ ସମସ୍ତେ ଝାଡ଼ା ବସିବାକୁ ଆରମ୍ଭ କଲାବେଳେ ସେ ମଧ୍ୟ ଝାଡ଼ା ବସିଲେ । ଏଇ ସମୟରେ ପୁଲିସ୍ ଆସି ସଭାସ୍ଥ ଲୋକଙ୍କୁ ଘଉଡ଼େଇବା ପାଇଁ ମୃଦୁ ଲାଠିଚାଳନା କଲେ ।

ରଜନୀବାବୁ ସ୍ୱପ୍ନରେ ଅନୁଭବ କଲେ-ତାଙ୍କ ଅଣ୍ଟାରେ ପାହାରେ ପୁଲିସ୍‌ର ଠେଙ୍ଗା ବସିଲା । ରଜନୀ ବାବୁଙ୍କ ଯାହା କୋଷ୍ଠକାଠିନ୍ୟ ଥିଲା, ସେ ଠେଙ୍ଗା ପାହାରରେ ସବୁ ପରିଷ୍କାର ହୋଇଗଲା । ରଜନୀବାବୁଙ୍କର ନିଦ ଭାଙ୍ଗିଗଲା । ସେ ଉଠିପଡ଼ି ଛାତି ଉପରୁ ଖବରକାଗଜ ଖଣ୍ଡକ କାଢ଼ି ପକେଇ ବିଛଣାକୁ ଚାହିଁ ଦେଖିଲେ-ତାଙ୍କର ବିଛଣା ଉପରେ ସେ ଝାଡ଼ାଫେରି ସାରିଛନ୍ତି ।

କେତେକ କଠିନ ଏବଂ ତରଳ ଉଭୟେ ମିଳିତ ହୋଇ ସହାବସ୍ଥାନ ରୀତିରେ ପ୍ରାୟ କିଲେ ଓଜନର ନିଃସଙ୍କୋଚରେ ନିର୍ଗତ ହୋଇସାରିଛି ।

# ଧୃତରାଷ୍ଟ୍ରଙ୍କ ଭାସେକ୍‌ଟୋମି

ରାଜା ଧୃତରାଷ୍ଟ୍ର ବିଷାଦଗ୍ରସ୍ତ ହୋଇ ନିଜର ଶୟନକକ୍ଷରେ ଶୋଇ ଭାବୁଛନ୍ତି ରାଜୁତି ଗଲା, ହାତପାଣ୍ଡି ଉଚ୍ଛେଦ ହେଲା, ଏଣିକି ଉପାୟ କ'ଣ? ନିଜର ଶହେପୁଅ, ତାଙ୍କର ସ୍ତ୍ରୀ, ତାଙ୍କର ପୁଅ, ଝିଅ, ଏ ତ ଗୋଟାଏ ବସ୍ତିର ଲୋକ ହେଲେଣି। ଚଳିବେ କିମିତି? ଜମିବାଡ଼ିରୁ ଯାହା ଆସୁଛି, ସେ ତ ସମୁଦ୍ରକୁ ଶଙ୍ଖେ ପାଣି। ଆଗେ ରାଜୁତି ଥିଲାବେଳେ କିଛି ଜଣାଯାଉ ନଥିଲା, ପୁଣି ତାଙ୍କ ନିଜର ତ ସନ୍ତାନ ସନ୍ତତି ହେବାର ବୟସ ଯାଇନାହିଁ, ପୁଅ, ବୋହୂଙ୍କର ତ ଆହୁରି ପିଲାଛୁଆ ହବାର ସମ୍ଭବ; ପୁଣି ସେଥିରେ ଚାକର ଚାକରାଣୀ ପଲେ, ଏଥିରେ ଉପାୟ କ'ଣ? କ'ଣ କଲେ ଏ ବଂଶବୃଦ୍ଧି ରୋକି ହବ?

ଏଇ ସମୟରେ ଜଣେ ଦ୍ୱାରପାଳ ରାଜା ଧୃତରାଷ୍ଟ୍ରଙ୍କୁ ସମ୍ବାଦ ଦେଲେ-

ମହାରାଜ, ଉପସ୍ଥିତ ଦ୍ୱାରେ ଜଣେ ଯୁବକ ଆପଣଙ୍କ ଦର୍ଶନାଭିଳାଷୀ, ଆଜ୍ଞା ହେଲେ, କହିବି ତାହାରେ

ଆସିବାକୁ ମଣିମାଙ୍କ ପାଶେ...

ଧୃତରାଷ୍ଟ୍ର ଚିନ୍ତାରୁ ବିରତ ହୋଇ ଶଯ୍ୟାରୁ ଉଠିବସି ଦ୍ୱାରପାଳକୁ କହିଲେ-

ପୁଛ ତାରେ, କିଏ ସେ ଯୁବକ? କାହିଁକି ସେ ଆସିଅଛି ଦ୍ୱାରେ ମୋର ଉଦ୍ଦେଶ୍ୟ କ'ଣ ତାର?....

ଧୃତରାଷ୍ଟ୍ରଙ୍କୁ ପ୍ରଣତି ଜଣେଇ ବିଦାୟ ନେଇ ଯୁବକକୁ ପଚାରି ବୁଝି ଆସି ଦ୍ୱାରପାଳ ପୁଣି ନମ୍ରସ୍ୱରରେ ଜଣେଇଲା-

ମହାରାଜ, ଯୁବକେ ପୁଛିଲି ଯାଇ-

କିଏ ସେହି, ଉଦ୍ଦେଶ୍ୟ କଅଣ ତାର? କାହିଁକି ସେ ଦର୍ଶନ ଚାହେଁ ଛାମୁଙ୍କର ଆଜି?

କହିଲା ଯୁବକ-ସେ ଜଣେ ସରକାରୀ କର୍ମଚାରୀ, Field Worker ପରିବାର ନିୟନ୍ତ୍ରଣ ବିଭାଗରେ କରେ ଚାକିରି,

ଆସିଅଛି ମଣିମାଙ୍କ ପାଶେ, ପରିବାର ନିୟନ୍ତ୍ରଣ ବିଷୟରେ କହିବାକୁ କିଛି....

ଧୃତରାଷ୍ଟ୍ର ଦ୍ୱାରପାଳ ମୁହଁରୁ ଯୁବକର ପରିଚୟ ପାଇ ଆଶ୍ଚର୍ଯ୍ୟ ହୋଇ କହି ଉଠିଲେ-

ସରକାରୀ କର୍ମଚାରୀ!

ପୁଣି ପରିବାର ନିୟନ୍ତ୍ରଣ ବିଭାଗରେ କରେ ଚାକିରି!

କି ଆଶ୍ଚର୍ଯ୍ୟ! ପରିବାର ନିୟନ୍ତ୍ରଣ ବିଭାଗ!

ସେ କଅଣ? କି କାର୍ଯ୍ୟ ହୁଏ ସମ୍ପାଦିତ

ସେ ବିଭାଗଦ୍ୱାରା?

ଡ଼ାକିଆଣ ସସମ୍ମାନେ ତାରେ....।

ଦ୍ୱାରପାଳ ଯାଇ ଯୁବକ Field Workerକୁ ଧୃତରାଷ୍ଟ୍ରଙ୍କ ନିକଟକୁ ଆଣିବା ପୂର୍ବରୁ ଧୃତରାଷ୍ଟ୍ରଙ୍କ ୮୧ ନମ୍ବର ପୁତ୍ରବଧୂ ତାଙ୍କ ଶୟନ କକ୍ଷରେ ପ୍ରବେଶ କରିବା ମାତ୍ରେ, ଧୃତରାଷ୍ଟ୍ର ଅନୁମାନ କଲେ ଯେ, ପରିବାର ନିୟନ୍ତ୍ରଣ ବିଭାଗର ସେହି ଯୁବକ Field Worker ତାଙ୍କ ଶୟନକକ୍ଷରେ ପ୍ରବେଶ କରିଛି। ଧୃତରାଷ୍ଟ୍ର ଆନନ୍ଦରେ କହି ଉଠିଲେ-

ବସ ବସ ନାହିଁ ଭୟ, କୁହ ମୋତେ ଖୋଲି,

ପରିବାର ନିୟନ୍ତ୍ରଣ ବିଭାଗ ବିଷୟ,

ସର୍କାର ଗଢ଼ିଲେ କାହିଁକି?

ପରିବାର ନିୟନ୍ତ୍ରଣ ହୁଏ ଯେ-କିପରି?

କି ଉପାୟେ, ଏ ବିଭାଗଦ୍ୱାରା?...

ଧୃତରାଷ୍ଟ୍ରଙ୍କ ୮୧ ନମ୍ବର ପୁତ୍ରବଧୂ ଶ୍ୱଶୁରଙ୍କ ମୁହଁରୁ ଏ ଉକ୍ତି ଶୁଣି ବୁଝିପାରିଲେ ଯେ, ଶ୍ୱଶୁର ତ ଆଖିରେ ଦେଖି ପାରୁ ନାହାନ୍ତି, ଏଣୁ ସେ ଆଉ କାହାକୁ ଭାବି

କ'ଣ କହୁଛନ୍ତି । ତେବେ ପୁତ୍ରବଧୂ ପରିବାର ନିୟନ୍ତ୍ରଣ ବିଭାଗର ନାଁଟା ଶୁଣି ଟିକିଏ ଚିନ୍ତିତା ହେଲେ-କ'ଣ ଏ ? ଶ୍ୱଶୁର ଏ ନୂଆ କଥା କ'ଣ କହୁଛନ୍ତି ? ହଉ, ସେ ଯାହା କହନ୍ତୁ, ସେ ଯେଉଁ କାମରେ ଆସିଛନ୍ତି, ସେ କଥା ଆଗେ ଶ୍ୱଶୁରଙ୍କୁ ଜଣେଇବେ । ଏଣୁ ପୁତ୍ରବଧୂ କହିବାକୁ ଆରମ୍ଭ କଲେ-

ପିତା, ନୁହେଁ ମୁହିଁ ଅନ୍ୟ କେହି,

ମୁଁ ଅଟେ ପୁତ୍ରବଧୂ ୮୧ ନମ୍ବର,

ଆସିଅଛି ତବ ପାଶେ ଦେବାକୁ ସମ୍ବାଦ-

ମ୍ୟାଟରନିଟି ନର୍ସ ଜଣେ ଡ଼ାକିବାକୁ ହବ,

ପ୍ରସବ, ଆସନ୍ନ ଗର୍ଭ ବେଦନା ହୋଇଛି ଆରମ୍ଭ,

୯୨ ନମ୍ବର ପୁତ୍ରବଧୂଙ୍କର,

ନକରି ବିଳମ୍ବ ତାତ, ପଠାଅ ତୁରିତେ

ଡାକିବାକୁ ନର୍ସ,

ସ୍ୱାମୀ, ଦେବର, ସର୍ବେ ଯାଇଛନ୍ତି କେଣେ

ଉଆସରେ ନାହାନ୍ତି ଯେ କେହି..... ।

ଧୃତରାଷ୍ଟ୍ର ଏ ସମ୍ବାଦରେ ବିଚଳିତ ହେଇପଡ଼ି ଭାବିଲେ-କି ଜଞ୍ଜାଳ । ପ୍ରତିଦିନ କାହାରି ନା କାହାରି ସନ୍ତାନ ପ୍ରସବ । ଏ ଉଆସ ଗୋଟାଏ ପ୍ରସୂତୀ ଭବନ ହେଲାଣି, କ'ଣ କରିବେ ? କାହାକୁ ପଠେଇବେ ନର୍ସ ଡ଼ାକିବାକୁ..... ।

ଧୃତରାଷ୍ଟ୍ର ଏମିତି ଚିନ୍ତା କରୁ କରୁ, ଦୁଃଶାସନ ଆସି ପିତାଙ୍କ ନିକଟରେ ପହଞ୍ଚିବା ମାତ୍ରେ ୮୧ ନମ୍ବର ପୁତ୍ରବଧୂ ଲୁଚିଗଲେ । ଦୁଃଶାସନ ପିତାଙ୍କ ଚିନ୍ତାଗ୍ରସ୍ତ ଅବସ୍ଥା ଦେଖି ପଚାରିଲେ-

ପିତା, କି କାରଣେ ଚିନ୍ତାଗ୍ରସ୍ତ ଏତେ !

କହନ୍ତୁ ପିଟାଇ...

ଧୃତରାଷ୍ଟ୍ର ଦୁଃଶାସନକୁ କହିଲେ-

୯୨ ନମ୍ବର ପୁତ୍ରବଧୂଙ୍କର ଗର୍ଭବେଦନା ହୋଇଛି ଆରମ୍ଭ ।

ନର୍ସ ଜଣେ ଡାକିବାକୁ ହବ...

ଦୁଃଶାସନ ପିତାଙ୍କ ମୁହଁରୁ ଏ କଥା ଶୁଣି କହିଲେ-

ପିତା, ଏଥିପାଇଁ ଚିନ୍ତିତ କାହିଁକି ?

ଯାଉଛି ମୁଁ ଡାକିବାକୁ ନର୍ସ....

ଦୁଃଶାସନ ଏତକ କହି ବିଦାୟ ନେଇ ନର୍ସ ଡାକିବାକୁ ଗଲେ ।

ଡାକ୍ତରଖାନାର ମ୍ୟାଟର୍‌ନିଟି ନର୍ସ ନାଁ-ଶିରୋମଣି, ବିଧବା । ତା'ର ଗୋଟିଏ ପୁଅ । ସେ ମା'ପୁଅ ରହନ୍ତି ଡାକ୍ତରଖାନାର ଗୋଟିଏ ନର୍ସ କ୍ୱାର୍ଟରରେ ।

ଦୁଃଶାସନ ଯାଇ ଶିରୋମଣି କ୍ୱାର୍ଟରରେ ପହଞ୍ଚି ଦୁଆର ମୁହଁରେ ଡ଼ାକିବାରୁ ଶିରୋମଣି କବାଟ ଫିଟେଇ ବାହାରକୁ ଆସି ଦେଖିଲା ଦୁଃଶାସନ ଦୁଆରେ ଠିଆ ହେଇଛନ୍ତି । ଶିରୋମଣି ପଚାରିଲା-କ'ଣ ଆଜ୍ଞା, ଆପଣ କାହିଁକି ଏତେବେଳେ ମୋ ଦୁଆରକୁ ଆସିଛନ୍ତି ?

ଦୁଃଶାସନ କାରଣ କହି ବୁଝେଇ ଦେଲାରୁ, ଶିରୋମଣି ଭାବିଲା- ଧୃତରାଷ୍ଟ୍ରଙ୍କ ପରିବାରକୁ ତ ସେ କେତେଥର ଡେଲିଭରି କରେଇବାକୁ ଗଲେଣି, କେବେହେଲେ ପଇସାଟିଏ ଦଉ ନାହାଁନ୍ତି, ଆଜି ପୁଣି ଆସି ଡାକିଲେଣି ଡେଲିଭରି କରାଇବା ପାଇଁ ଯିବାକୁ । ଏଣୁ ଶିରୋମଣି ଛଳନା କରି କାନ୍ଦ କାନ୍ଦ ହେଇ କହିଲା- ଆଜ୍ଞା, ମୋତେ କ୍ଷମା ଦିଅନ୍ତୁ ମୁଁ ଯାଇ ପାରିବିନି । କାଲି ରାତିସାରା ମୁଁ ଶୋଇନାହିଁ । ପୁଅକୁ ମୋର ଜ୍ୱର । ପୁଅ ମୋତେ କାଲି ରାତିସାରା କୁଣ୍ଢେଇ ଧରିଛି । ମୁଁ ରାତି ଅନିଦ୍ରାରେ କଟେଇଛି । ଏଣୁ ମୋତେ ଭାରି ଦୁର୍ବଳ ଲାଗୁଛି, ଆପଣ ଆଉ କାହାକୁ ଡାକି ନିଅନ୍ତୁ ମୁଁ ଯାଇପାରିବିନି... ।

ଶିରୋମଣି ନର୍ସ ମୁହଁରୁ ଏତକ ଶୁଣି ଦୁଃଶାସନ ରାଗରେ ଗର୍ଜି ଉଠି କହିଲେ-

ଶୁଣ ଶିରୋମଣି, ଅବିଳମ୍ବେ ଚାଲ ମୋର ସାଥେ,

ନଚେତ୍ ପାଞ୍ଚାଳୀ ସମ, ଧରି କେଶଗୁଚ୍ଛ

ନେବି ମୁଁ ଘୋଷାରି ଉଆସରେ କରିବି ଉଲଗ୍ନ

ପୁତ୍ରତବ କ୍ରୋଧାକ୍ରାନ୍ତ, ଗତ ରାତ୍ରି ଯାପିଛ ଉନ୍ନିଦ୍ରେ,

ପୁତ୍ର ତବ ଶୋଇଥିଲେ ତୁମକୁ କୁଣ୍ଢାଇ ଏ କାରଣେ

ପାରିବନି ଯାଇ... ।

ଦୁଃଶାସନର ଧମକରେ ଶିରୋମଣି ଭୀତତ୍ରସ୍ତା ହୋଇ ଦୁଃଶାସନର ସାଥୀରେ ଧୃତରାଷ୍ଟ୍ରଙ୍କ ଉଆସକୁ ନିତମ୍ବ ଦୋହଲେଇ ବାହାରି ଗଲେ ।

ଏଥି ମଧ୍ୟରେ ଦ୍ୱାରପାଳ ଧୃତରାଷ୍ଟ୍ରଙ୍କ ସମ୍ମୁଖରେ ପରିବାର ନିୟନ୍ତ୍ରଣ ବିଭାଗର Field Workerକୁ ଆଣି ପହଁଚେଇ ଜଣେଇଲା-

ମହାରାଜ, Field Worker ଉପସ୍ଥିତ ସମ୍ମୁଖେ ତବ..... ଦ୍ୱାରପାଳ ଏତକ କହି ବିଦାୟ ନେଲା ।

ଧୃତରାଷ୍ଟ୍ର କହିଲେ-

ବସ ବସ ନାହିଁ ଭୟ, କୁହ ମୋତେ ଖୋଲି

ପରିବାର ନିୟନ୍ତ୍ରଣ ବିଭାଗ ବିଷୟ,

କି ଉପାୟେ ପରିବାର ନିୟନ୍ତ୍ରଣ ହେଉଛି କିପରି ?

ଆଜି କାଲି ଶୁଣେ ମୁହିଁ ସର୍କାରଙ୍କ ସବୁ ବିଭାଗରେ

ଚାଲିଛି ଦୁର୍ନୀତି ଲୀଳା,

କୁହ ବତ୍ସ, ତୁମ ବିଭାଗରେ ଦୁର୍ନୀତିର ତାଣ୍ଡବ ଲୀଳା

ଚାଲିଛି କି ନାହିଁ ?.....

Field Worker ପ୍ରଥମେ ତ ଧୃତରାଷ୍ଟ୍ରଙ୍କ ପାଖକୁ ଆସି ହଡ଼ବଡ଼େଇ ଯାଇଥିଲା- କେମିତି ପରିବାର ନିୟନ୍ତ୍ରଣ ବିଷୟରେ କ'ଣ ବୁଝେଇବ ? କେମିତି ଧୃତରାଷ୍ଟ୍ରଙ୍କୁ vasectomy ପାଇଁ ରାଜି କରେଇବ ? ଏଥିରେ ପୁଣି ଧୃତରାଷ୍ଟ୍ର ନିଜେ ପଚାରି ବୁଝିବାକୁ ଚାହିଁଲେଣି ଯେ ତାଙ୍କ ବିଭାଗରେ ଦୁର୍ନୀତି ଚାଲିଛି କି ନାହିଁ ? ଏ ବଡ଼ ବିଷମ କଥା ! ତାଙ୍କ ବିଭାଗରେ ତ ପାଞ୍ଚଜଣଙ୍କର vasectomy କରାଗଲେ, ଦଶଜଣଙ୍କର ନାଁ ଲେଖେଇ ସେ ଟଙ୍କାକୁ ଡାକ୍ତରଙ୍କଠୁଁ ଆରମ୍ଭ କରି ତଳିଆ କର୍ମଚାରୀ ଯାଏ ସମସ୍ତେ ଆତ୍ମସାତ କରୁଛନ୍ତି । ପୁଣି ମୂଳରୁ କାହାରି vasectomy ନକରି କେତେ ଲୋକଙ୍କର ନାଁ ମିଛରେ ଲେଖି ସେ ଟଙ୍କାକୁ ସମସ୍ତେ ଆତ୍ମସାତ କରୁଛନ୍ତି । ପୁଣି ଯା'ର ସ୍ତ୍ରୀ ମୂଳରୁ ନାହିଁ, ସେମିତିଆ ଲୋକଙ୍କୁ ଆଣି ସଂଖ୍ୟା ବଢ଼େଇବା ପାଇଁ vasectomy କରିଦଉଛନ୍ତି । କେତେକ ମୂର୍ଖ ସରଳ ପ୍ରକୃତିର ଲୋକଙ୍କର vasectomy କରି ତାଙ୍କର ନାଯ୍ୟ ପ୍ରାପ୍ୟରୁ ଅଳ୍ପ କିଛି ଦେଇ ବାକି ଟଙ୍କାତକ ଆତ୍ମସାତ୍ କରୁଛନ୍ତି । ଏଥିରେ ତାଙ୍କ ବିଭାଗରେ ଦୁର୍ନୀତି ଚାଲିଛି କି ନା, ଏ ବିଷୟରେ କ'ଣ କହିବ ? ଏ ତ କମ୍ବଳଯାକ ବାଳ... ।

ଏଇକଥା ଭାବି Field Worker କ'ଣ ଉତ୍ତର ଦବ, ଭୟରେ ତା' ପାଟି ଖନି ବାଜିଗଲା । ତଥାପି ଆସିଛି ଯେତେବେଳେ କିଛି ନକହି ବା ଯାଉଛି କେମିତି ଏଠୁଁ ?

ପରିବାର ନିୟନ୍ତ୍ରଣ ବିଭାଗର ଜଣେ Field Worker ଆସିଛି ଶୁଣି ଧୃତରାଷ୍ଟ୍ରଙ୍କର କେତେକ ପୁଅ ଆଉ ପୁତ୍ରବଧୂ ଆସି ଗଦା ହୋଇଗଲେ, ଲୋକଟା କ'ଣ କହୁଛି ଶୁଣିବା ପାଇଁ ।

Field Worker ବିଚରା ଏମାନଙ୍କୁ ଦେଖି ଆହୁରି ଘାବରେଇ ଗଲା । କ'ଣ କରିବ ? କ'ଣ କହିବ ? ଏ ତ କ'ଣ ଆଗେ ଦୁର୍ନୀତି କଥା ପଚାରି ବୁଝିବାକୁ ଚାହିଁଲେଣି । କ'ଣ ଘଟଣା ? କାହିଁକି ସେ ଏଠିକି ଆସିଲା ତଥାପି ଥଙ୍ଗେଇ ଥଙ୍ଗେଇ ହୋଇ Field Worker ବିଚରା ପରିବାର ନିୟନ୍ତ୍ରଣର ଉପକାରିତା ବିଷୟରେ କହୁ କହୁ କଥା ମଝିରେ "ଆପଣଙ୍କର ଏ ବିରାଟ କୁଟୁମ୍ବ" ବୋଲି ଯେମିତି କହି ପକେଇଛି, ନେପଥ୍ୟରୁ ବାହାରିଲା ପରି ଗାନ୍ଧାରୀ ପାଖ ଘରୁ ଝାଡୁ ହସ୍ତରେ ଧରି ବାହାରି ପଡ଼ି ରାଗରେ କହିଲେ-

କିଏ ଏହି ପାଷାଣ୍ଡ

ଆସିଲା କିପରି ଏଠି? କହେସେ....ବିରାଟ କୁଟୁମ୍ବ...

ଏତିକିବେଳେ ଗାନ୍ଧାରୀ Field Worker ଉପରକୁ ଝାଡୁ ଉଠେଇ କହିଲେ-

ଦୂର ହୁଅ ନରାଧମ ଉଆସରୁ ମୋର,

କିଏ ତୁହି, ଆସିଲୁ କାହିଁକି?

ଉଚ୍ଚାରିଲୁ କିମ୍ବା ତୁହି- "ବିରାଟ କୁଟୁମ୍ବ?"

କୂଳବୁଡ଼ା, ଦୂର ହୁଅ, ନଚେତ୍ ଦେଖିଥା ଏ ଝାଡୁ,

ପିଟିପିଟି ନେବି ତୋର ପ୍ରାଣ ଆଜି ଏଠି....

ଏତିକିବେଳେ ଗାନ୍ଧାରୀଙ୍କୁ ବାଧା ଦେଇ, Field Workerକୁ ଝାଡୁ ପାହାରରୁ ବଞ୍ଚେଇବାକୁ ଯାଇ Field Worker ପାଖରେ ଠିଆ ହୋଇ ଧୃତରାଷ୍ଟ୍ର କହିଲେ-

"ରସନା ସଞ୍ଜତ କର ରାଣୀ,

ସେ ଅଟେ ସର୍କାରୀ କର୍ମଚାରୀ ଜଣେ,

ଆସିଅଛି ସର୍କାରଙ୍କ କାର୍ଯ୍ୟଭାର ନେଇ...."

ଧୃତରାଷ୍ଟ୍ରଙ୍କୁ ଉତ୍ତର ଦେବାକୁ ଯାଇ ଗାନ୍ଧାରୀ ରାଗରେ କହିଲେ-

"କ୍ଷାନ୍ତ ହୁଅ ମହାରାଜ, କିଏ ସେ ସର୍କାର?

ସେ କି ପୋଷେ କୁଟୁମ୍ବ ମୋହରି?

ସର୍କାରକୁ ନାହିଁ ମୋର ଭୟ,

ଏ ଝାଡୁରେ ପୃଥିବୀକୁ କରିପାରେ ଜୟ,

ଯେ ଉଆସେ ଅନିବାର୍ଯ୍ୟ ଏକ୍ସୁଡ଼ିର ନିଆଁ ଜଳେ,

ସେଠି ଏ ପାପିଷ୍ଠ ପଶିଲା କିପରି?

ପୁଣି କହେ-ବିରାଟ କୁଟୁମ୍ବ-

ପୁଣି କରିବାକୁ ତବ ମୁଣ୍ଡ ଛେଦନ

ପ୍ରବର୍ତ୍ତାଏ କୁଳାଙ୍ଗାର ଆସି।-"

ଏଇ ସମୟରେ ଗାନ୍ଧାରୀ ଝାଡୁରେ Field Workerକୁ ପାହାରେ ପକେଇଲାବେଳକୁ ଝାଡୁ ପାହାରଟା ବସିଲା ଧୃତରାଷ୍ଟ୍ରଙ୍କ ଉପରେ Field Worker ଖସି ପଳେଇଲା।

# ବୀର ବାହୁଡ଼ା

ଦୋଳ ବେଳ, ଆଜି ଏ ସାହିରେ ମେଲଣ ସରିଲା ତ, କାଲି ସେ ସାହିରେ ମେଲଣ। ସାହି ଠାକୁରଙ୍କ ବିମାନ ଜାଗା ଜାଗା ଯାଉଛି, ଆସୁଛି। ଦିନବେଳା ଠାକୁରଙ୍କ ବିମାନ ଗଲେ ଖାଲି ବାଜା ବଜେଇ ଚାଲି ଯାଉଛନ୍ତି, ରାତିବେଳା ହେଲେ ବାଜା ବଜେଇ ରୋଷଣି କରି ସାହିସାହିର ଲୋକ ଚାଲିଛନ୍ତି। ବିମାନ ଆଗରେ ଅଛ କେତେକ ବୁଢ଼ା ବୁଢ଼ା ଲୋକେ ଚାଲିଛନ୍ତି ତ ବେଶି ଭାଗ ଭେଣ୍ଡିଆ ଦଳ। ହାତରେ ଉଚ୍ଚା ଉଚ୍ଚା ଠେଙ୍ଗା। କୀର୍ତ୍ତନ ହଉଛି, ଢୋଲ, ମହୁରୀ ବାଜୁଛି, ଦେହ ମୁଣ୍ଡରେ ଅବିର ବୋଳା ହୋଇଛି।

ପଧାନ ସାହି, ଗଉଡ଼ ସାହି ଅଛ ଦୂର ଛଡ଼ାଛଡ଼ି। ବର୍ଷେ ପଧାନ ସାହିର ଭେଣ୍ଡିଆଏ ଜିଦ୍ ଧରି ବସିଲେ-ଆମ ଦାଣ୍ଡ ବାଟ ଦେଇ ଗଉଡ଼ ସାହିର ବିମାନ ଯାଇପାରିବ ନାହିଁ, କଦାପି ଛାଡ଼ିଦେବୁ ନାହିଁ। ଆମେ ମରିଯିବୁ ପଛେ ଗଉଡ଼ସାହି ବିମାନକୁ ଏ ବର୍ଷ କଦାପି ଛାଡ଼ିବୁ ନାହିଁ...।

ଆବହମାନକାଳରୁ ଗଉଡ଼ ସାହି ବିମାନ ଦୋଳବେଳେ ପଧାନ ସାହି ଦାଣ୍ଡବାଟ ଦେଇ ମେଳଣକୁ ଯାଉଥିଲା। କ'ଣ କରାଯିବ?

ସାହିର ବୁଢ଼ା ବୁଢ଼ା ଲୋକେ ଭେଣ୍ଡିଆ ଦଳକୁ ଡ଼ାକି ଯେତେ ବୁଝେଇଲେ, ପାରିଲେ ନାହିଁ। ସେହି ଗୋଟାଏ ଜିଦ୍-କଦାପି ଛାଡ଼ିବୁ ନାହିଁ, ରକ୍ତର ନଈ ବୋହିଯାଉ....

ତେଣେ ଗଉଡ଼ ସାହିର ଭେଣ୍ଡିଆଏ ଜିଦ୍ ଧରି ବସିଲେ-ଆମେ ଯେମିତି ହେଲେ ପଧାନ ସାହିର ଦାଣ୍ଡବାଟ ଦେଇ ଏ ବର୍ଷ ବିମାନ ନେଇ ଯିବୁ। ଦେଖିବା ପଧାନସାହିଆ କ'ଣ କରିବେ? ଆମ ବାପ ଅଜା ଅମଳରୁ ଯାହା ହେଇ ଆସୁଥିଲା, ଏ ବର୍ଷ ବନ୍ଦ ହେବ? ଦେଖାଯାଉ କେମିତି ଆମେ ବିମାନ ନନବୁ। ମରିଗଲେ କ'ଣ ହେଲା?...

କେତେକ ଭେଣ୍ଡିଆ ଏ କଥା ଶୁଣି ଉତ୍ତର ଦେଲେ-"ହଇରେ, ମରିଯିବୁ କାହିଁକି? ସେ ଭାତ ଖାଇଲେ ଆମେ କ'ଣ ପେଜ ପିଉଛୁ? ଆମେ ଘିଅ, ଦୁଧ ଖାଇଲାବାଲା..."

ପଧାନସାହିଆ ଭେଣ୍ଡିଆଙ୍କ ଆଉ ଶୁଣାଗଲା-ଆମ ବାପ ଅମଳରୁ ଆମେ ଯୋଦ୍ଧା। ରାଜା ରାଜୁଡ଼ାଙ୍କ ଅମଳରେ ଆମରି ବାପ ଅଜାଏ ରଜାଙ୍କର ସୈନ୍ୟବାହିନୀରେ ଥାଇ ଯୁଦ୍ଧ କରୁଥିଲେ, ଆମେ କ'ଣ ଏଡ଼େ ଅଣପୁରୁଷା ହେଇଗଲୁ ଯେ ଗଉଡ଼ସାହିଆ ଆମ ଦାଣ୍ଡବାଟ ଦେଇ ଏ ବର୍ଷ ବିମାନ ନେଇଯିବେ? ଦେଖିବା, ଯା ହେବାର ହବ। ଆମ ଦାଣ୍ଡ ଗଉଡ଼ସାହିଆଙ୍କ ରକ୍ତରେ ଯଦି କାଦୁଅ ନକରିଛୁ, ସେ ଘିଅ ଦୁଧ ଖାଇ ବଳୁଆ ହେଲେ ବି ଆମେ ଶିକାର ମାଂସ ଖାଇ ବଳୁଆ। ଦେଖାଯାଉ....।"

ଉଭୟ ସାହିର ବୁଢ଼ା ବୁଢ଼ା ମୁଖିଆ ଲୋକମାନେ ଭେଣ୍ଡିଆଙ୍କୁ ଯେତେ ବୁଝେଇଲେ କିଛି ଫଳ ହେଲା ନାହିଁ। ପଧାନସାହିଆ ଭେଣ୍ଡିଆ କହିଲେ-ଆମେ ଛାଡ଼ିବୁ ନାହିଁ.....ଗଉଡ଼ସାହିଆ ଭେଣ୍ଡିଆ କହିଲେ-ଆମେ ଯିବୁ....। ଏଣୁ ଉଭୟ ଦଳ ଛକାଛକି ହେଇ ରହିଲେ।

ଶେଷରେ ଦିନେ ଦୂର ଗାଁର ମେଳଣରେ ଯୋଗଦବାକୁ ଗଉଡ଼ସାହିଆ ଲୋକମାନେ ସନ୍ଧ୍ୟା ପୂର୍ବରୁ ବିମାନ ନେଇ ବାହାରିଲେ ପଧାନ ସାହିକୁ। ଦୂରରୁ ବାଜା, କୀର୍ତ୍ତନ, ପାଟିତୁଣ୍ଡ ଶୁଣାଗଲା। ଏ ପଟୁଆରରେ ଗଉଡ଼ ସାହିର ବୁଢ଼ା ବୁଢ଼ା ଲୋକେ ଯିବାକୁ ଭୟ କଲେ। ବଡ଼ ଉଚ୍ଚ ଉଚ୍ଚ ଡ଼ିହ ଜାଗା ଦେଖି ଗଉଡ଼ ସାହିର ବୁଢ଼ା ବୁଢ଼ା ଲୋକମାନେ ଠିଆ ହୋଇ ରହିଲେ-କ'ଣ ହେଉଛି ଦେଖିବା ପାଇଁ।

ପଧାନସାହିର ବୁଢ଼ା ବୁଢ଼ା ଲୋକେ ଆଉ ଦାଣ୍ଡକୁ ନଯାଇ, ସେମିତି ଉଚ୍ଚା ଉଚ୍ଚା ଜାଗା ଦେଖି ଠିଆ ହେଲେ-କିଏ ଯାଉଛି, ଏ ମାଡ଼ଗୋଳକୁ? ତିନିକାଳ ଗଲା, ଏ ଶେଷ କାଳକୁ ମାଡ଼ଖାଇ କିଏ ମରିବ ମ?

ପଧାନସାହିଆ ବୁଢ଼ାଏ ଦେଖିଲେ-ମାଡ଼ଗୋଳ କରିବାକୁ ବାହାରି ପଡ଼ିଲେ-ଉଚ୍ଛବା, କାଶିଆ, ନାଥିଆ, ଗୋପିଆ, ମଦନା, ଶ୍ୟାମ ଏମିତି ଆଉ କେତେ ଭେଣ୍ଡିଆ । ମୁଣ୍ଡରେ ଠେକାଭିଡ଼ି, ପାଇକଛା ମାରି, ଉଚା ଉଚା ଠେଙ୍ଗାଧରି ।

ତାଙ୍କ ପଛକୁ ମାଇପେ ଗାଣ୍ଡୁଆଏ ଗାଣ୍ଡୁଆଏ ଢ଼େଲା ଧରି ସଜବାଜହେଇ ରହିଲେ । ଗଉଡ଼ସାହି ସାଥୀରେ ମାଡ଼ଗୋଳବେଳେ ଦରକାର ପଡ଼ିଲେ, ମାଇପିଦଳ ଢ଼େଲା ଯୋଗାଇବେ ।

ତେଣେ ଗଉଡ଼ସାହିର ବୁଢ଼ା, ପୁରୁଖା ଲୋକେ ଦେଖିଲେ-ବିମାନ ସାଥୀରେ ବାହାରିଲେ-ଅପନି, ସପନି, ଚପନି, ବିପିନି, ମଦନ, ଚଇତନିଆ, ମଙ୍ଗୁ, କେଳୁଚରଣ ଆହୁରି କେତେ ଭେଣ୍ଡିଆ.... । ହାତରେ ଠେଙ୍ଗାବାଡ଼ି ଧରି, ଭିତରେ ଚଡ଼ିପିନ୍ଧି, ଉପରେ ମାଲକଛା ଭିଡ଼ି ବୀରଦର୍ପରେ ଚାଲିଲେ, ବାଜାବଜାଇ, ଶିଙ୍ଗାବଜେଇ, ପାଟିତୁଣ୍ଡ କରି ।

ଗଉଡ଼ସାହି ବିମାନ ଯେମିତି ପଧାନସାହି ଦାଣ୍ଡରେ ହେଇଛି, ଠକ୍ ଠାକ୍, ଦୁମ୍ ଦାମ୍, ଦୁଲ୍ ଦାଲ୍, ହୋ ହା ଶବ୍ଦ ହେଲା । ପଧାନସାହି ଦାଣ୍ଡ ଲୋକରେ ଭରପୂର । ଶୂନ୍ୟରେ ଉଭୟେ ପଟୁ ଢ଼େଲା ଚାଲିଲା-ସାଁଏ ସାଁଏ ଶବ୍ଦ କରି ।

ଏତିକିବେଳେ ଗଉଡ଼ସାହିର ଦ୍ୱିଜ ବେହେରା, ଗଉଡ଼ସାହି ଭିତରୁ କୁଦି କୁଦି; କୁନ୍ଦାକଛା ଭିଡୁ ଭିଡୁ ଥାକୁଲ ଥାକୁଲ ହେଇ ଦଉଡ଼ିଲା, ଷଣ୍ଢ ଦଉଡ଼ିଲା ପରି ।

ଗଉଡ଼ସାହିର ବୁଢ଼ାଏ ଦେଖି ଅବାକ ହେଇ କୁହାକୁହି ହେଲେ-କିରେ ! ଦିଜୁଆ ତ ମାଡ଼ଗୋଳକୁ ବାହାରି ପଡ଼ିଲା । ଆମେ ତ କୋଉ ଦିନ ହେଇ ତା'ର ଇମିତିଆ ଢଙ୍ଗ ଦେଖି ନଥିଲୁ । ସେ ଭାରୀ ରାଗୀ ବୋଲି ଆମେ ଜାଣୁ, କିନ୍ତୁ ସେ ତ କେଭେ ମାଡ଼ଗୋଳକୁ ବାହାରେ ନା । ଆଜି ସରିଗଲା, ଦଶଟା ଲୋକକୁ ସେ ଏକା ମାରି ପଟାଳି କରିଦବ... ।

ଆଉ କେତେକ ବୁଢ଼ା କୁହାକୁହି ହେଲେ-ଆଜି ପଧାନସାହିଆ ଚେତି ଯିବେ ଯେ, ବୀରପଣ ଦେଖେଇ ହଉଥିଲେ । ଦିଜୁଆ ଦିହରେ କମ୍ ବଳ । ସେ ଆଜି ପଧାନସାହିଆଙ୍କୁ ସାରିଦବ... ।

ଦ୍ୱିଜ ବେହେରା କୁଦି କୁଦି ଥାକୁଲ ଥାକୁଲ ହେଇ ଯାଉ ଯାଉ ଦେଖିଲା ଜଣକ ଚାଳରେ ଗୋଟାଏ ବାଉଁଶ ଠେକ ଦିଆ ହେଇଛି । ତା' ହାତରେ ଠେଙ୍ଗାବାଡ଼ି କିଛି ନଥିଲା, ମାଇଲା ଗୋଟାଏ ତିହ ସେ ଠେକଦିଆ ବାଉଁଶକୁ, ବାଉଁଶ ହୁଗୁଳି ଗଲା । ଚାଲିଲା ସେ ବାଉଁଶ ଖଣ୍ଡକ ଧରି ବୀରଦର୍ପରେ ।

ଦିଜୁଆର ଭୀମରୂପ ଦେଖି ବୁଢ଼ା ବୁଢ଼ା ଲୋକେ ଆଖି ବୁଜି ପକେଇଲେ । ଭାବିଲେ-ସରିଗଲା, ଆଜି ସରିଗଲା... ।

ଦୂରରୁ ଶୁଣାଗଲା-ମରିଗଲିଲେ ବୋଉ, ମୋତେ ଆଉ ମାରନା... । ମୁଁ କୋଉ ହାତରେ ଆଉ ଗୋରୁ ଦୁହିଁବିଲୋ, ଭାଇଗମା... । ମୁଁ କାହିଁକି ଆସିଲିରେ ? କି ଭୁଲ କାମ କଲିଲୋ ଭାଇଗମା । ତୁ ତ ମନା କରୁଥିଲୁଲୋ, ମୁଁ ତୋ କଥା ମାନିଲି ନାହିଁଲୋ ଭାଇଗମା । ମୁଁ ତ ଆଉ ବଞ୍ଚିବି ନାହିଁରେ, ଭାଇଗମା ତୁ କ'ଣ କରିବୁରେ ? ତୁ ତ ପିଲା ବକଟେରେ ଭାଇଗ ପୁଅ, ମୋର ତ ଡାଆଣ ହାତ ଭାଙ୍ଗିଗଲାରେ.... କିଛି ସମୟ ପରେ ଦେଖାଗଲା-ଦ୍ୱିଜ ବେହେରା ଡାଆଁଣ ହାତକୁ ବାଁ ହାତରେ ଟେକି ଧରି କାନ୍ଦି କାନ୍ଦି ଫେରୁଛି । ଦ୍ୱିଜ ବେଳେ ବେଳେ ଭଙ୍ଗା ଡ଼ାଆଁଣ ହାତକୁ ବାଁ ହାତରେ ଟେକି ଧରିଛି ତ, ପୁଣି ତଳକୁ ଓହଳେଇ ବାଁ ହାତରେ ଧରୁଛି ।

ଦ୍ୱିଜର ଅଣ୍ଟାରେ ପାହାର ବସିଛି, ମୁଣ୍ଡରେ ପାହାର ବସିଛି; ଡାଆଁଣ ହାତ ହାଡ଼ ଭାଙ୍ଗିଛି ।

ଦ୍ୱିଜ କିଛି ବାଟ ପଡ଼ି ଉଠି ପଳେଇ ଆସୁ ଆସୁ ଗଉଡ଼ସାହି ଦାଣ୍ଡ ମଝିରେ ଅଜ୍ଞାନ ହେଇ ପଡ଼ିଗଲା ।

# ମନଅବୋଧ ଚଉତିଶା

କପିଳ ମଙ୍ଗରାଜଙ୍କର ନାକଠୁଁ କପାଳ ଯାଏ ଚନ୍ଦନର ରାମାନନ୍ଦୀ ଚିତା। ପରିଧାନରେ ପରିଷ୍କାର ଧୋତି ଆଉ ଦିହରେ ଖଣ୍ଡେ ଧଳା ରଙ୍ଗର ଫତେଇ, ହାତରେ ମାଳା ଝୁଲି। ମଙ୍ଗରାଜେ ସବୁବେଳେ ଝୁଲି ଭିତରେ ହାତପୂରେଇ ମାଳି ଟପଟପ କରନ୍ତି ଆଉ ମଝିରେ ମଝିରେ ମାଳ ଝୁଲିକି ମୁଣ୍ଡରେ ଛୁଆନ୍ତି। ମଙ୍ଗରାଜଙ୍କ ବ୍ୟବସାୟ ଭିତରେ ଘର ଭଡ଼ାଦବା। ବଜାରରେ ତାଙ୍କର ଅନେକଗୁଡ଼ାଏ ଦୋକାନ ଘର, ରହିବା ଘର। ସେଥିରୁ ଭଡ଼ାଟିଆମାନଙ୍କଠାରୁ ଯାହା ଭଡ଼ା ଆଦାୟ ହୁଏ, ସେଇଥିରେ ମଙ୍ଗରାଜେ ତାଙ୍କ ସ୍ତ୍ରୀ ଖୁବ୍ ଭଲରେ ଚଳନ୍ତି। ଘରଭଡ଼ା ଦବା ବ୍ୟବସାୟ ଛଡ଼ା ଟଙ୍କା ଋଣ ଦବା, ଧାନକରଜ ଲଗେଇବା ଇତ୍ୟାଦି ଆହୁରି ଅନେକ ରକମର ବ୍ୟବସାୟ ଅଛି। ମଙ୍ଗରାଜେ ଯେଉଁଠି ରହନ୍ତି, ତାହା ସହରଠାରୁ ଦୂର ଜାଗା ମଫସଲ କହିଲେ ଚଳେ। ପଡ଼ୋଶୀମାନେ ଗାଉଁଲି ଲୋକ, ଅଧାପାଠୁଆ, ମୂର୍ଖ, ସରଳ, କୁଟିଳ ମିଶାମିଶି। ସେମାନଙ୍କ ଭିତରୁ ବୟସ୍କ ବୟସ୍କାମାନେ ମଙ୍ଗରାଜଙ୍କୁ ଭାରି ଖାତିର କରନ୍ତି। ଉପରମୁହାଁ ଟୋକାଟାକରାଏ ସେତେ ଖାତିରି କଲାଭଳି ଜଣାପଡ଼େ ନାହିଁ। ଦୈନିକ ସନ୍ଧ୍ୟାପରେ ମଙ୍ଗରାଜେ ବାହାର ଆଡ଼େ ନିଜ ବାରନ୍ଦାରେ ଗୋଟିଏ ଲଣ୍ଠନ ଜାଳି ବସି ମାଳି ଟପଟପ କରନ୍ତି। ବେଳେବେଳେ କେହି ପଡ଼ୋଶୀ ଆସି ଜୁଟିଗଲେ ଗପ କରନ୍ତି, ପୁଣି କେବେକେବେ ମଙ୍ଗରାଜେ ଭାଗବତ, ରାମାୟଣ, ମହାଭାରତ, ବିଲଙ୍କା ରାମାୟଣ, ସୂର୍ଯ୍ୟ ପୁରାଣ, ନୃସିଂହ ପୁରାଣ, ମଥୁରା ମଙ୍ଗଳ, ଜନ୍ମାଷ୍ଟମୀ ବ୍ରତ, ତ୍ରିନାଥମେଳା ଇତ୍ୟାଦି ବହି ପଢ଼ନ୍ତି। ମଙ୍ଗରାଜଙ୍କ ବହି ବୋଲା ବେଳେ ପଡ଼ୋଶୀ ଲୋକଙ୍କ ଭିତରୁ ମାଇପି, ମରଦ ଉଭୟ ଦଳ ଆସି ଜୁଟିଯାନ୍ତି, ବସି ଶୁଣନ୍ତି। ମରଦ ଦଳ ମଙ୍ଗରାଜଙ୍କୁ ଘେରି ବସନ୍ତି ଆଉ ମାଇପି ଦଳ ମଙ୍ଗରାଜଙ୍କ ସ୍ତ୍ରୀଙ୍କୁ ଘେରି ଅଳ୍ପ ଦୂରରେ ବସି ଶୁଣନ୍ତି।

ଦିନେ କଥାହେଲା-ମଙ୍ଗରାଜେ ୰ଭକ୍ତଚରଣ ଦାସଙ୍କର ମନବୋଧ ଚଉତିଶା ବୋଲି ଶୁଣେଇବେ। ଏଣୁ ଜଣଜଣକରି ମଙ୍ଗରାଜେ ସମସ୍ତଙ୍କୁ ଜଣେଇ ଦେଲେ ଯେ-ତୁମେମାନେ ଆଜି ସନ୍ଧ୍ୟାବେଳେ ଆସ, ମନବୋଧ ଚଉତିଶା ବୋଲି ଶୁଣେଇବି, ଶୁଣିବ-୰ଭକ୍ତଚରଣ ଦାସେ କେମିତି ମନବୋଧ ଚଉତିଶା ଲେଖି ଯାଇଛନ୍ତି। ତୁମମାନଙ୍କୁ ତ ଅନେକ ବିଷୟ ବୋଲି ଶୁଣେଇଲିଣି, ଏ ମନବୋଧ ଚଉତିଶା ଥରେ ଶୁଣିଲେ ତୁମ ମନର କେତେ ପରିବର୍ତ୍ତନ ହେବ। ଆଜି ସନ୍ଧ୍ୟା ପରେ ଆସ, ବୋଲି ଶୁଣେଇବି।

ସଞ୍ଜ ଗଡ଼ିଗଲା। କପିଳ ମଙ୍ଗରାଜଙ୍କର ପଡ଼ୋଶୀଙ୍କ ଭିତରୁ କେତେକ ମରଦ, ମାଇପି ଆସି ଜୁଟିଗଲେ। ମରଦ ମାଇପି ଯେଉଁଠି ବସନ୍ତି ଉଭୟ ଦଳ ବସିଲେ। କେବଳ ଅପେକ୍ଷା କପିଳ ମଙ୍ଗରାଜଙ୍କୁ, ଆସିଲେ ମନବୋଧ ଚଉତିଶା ବୋଲି ଶୁଣେଇବେ। ସଞ୍ଜବେଳର ନିତ୍ୟକର୍ମ ସାରି ଆସିବାକୁ ମଙ୍ଗରାଜେ ଆଉ ତାଙ୍କର ସ୍ତ୍ରୀଙ୍କର ଟିକିଏ ବିଳମ୍ବ ହୋଇଗଲା। ଏଥି ମଧ୍ୟରେ ଶାଶୁ ଶ୍ରେଣୀର ବୁଢ଼ୀ ଜଣେ ଦି'ଜଣ କାନି ବିଛେଇ ଲମ୍ବା ହୋଇ ଶୋଇଗଲେ। ଏଇ ଶ୍ରେଣୀର ବୁଢ଼ୀମାନଙ୍କୁ ବୋହୂ ଶ୍ରେଣୀର ତରୁଣୀଙ୍କ ଭିତରୁ କେତେକ ପଚାରିଲେ- କ'ଣ ଶୋଇଲମ? ପୋଥିବୋଲା ହବ ପରା...।

ଏଇ ବୁଢ଼ୀଙ୍କ ଭିତରୁ ଜଣେ ଦି'ଜଣ ଉତ୍ତରରେ କହିଲେ-ହଁ, ଆମେ ବୁଢ଼ୀ ହେଲୁଣି, ମରିବାକୁ ବସିଲୁଣି, ତୁମେମାନେ ଶୁଣ, ଯୁଗ ଆଇଜ କରିବ, ଆମ ବେରବାର ସରି ଆଇଲାଣି ଲୋ.....।

ଜଣେ ଦି'ଜଣ ବୁଢ଼ୀ କହିଲେ-ବୋପାଲୋ, ଏତିକି ବାଟ ଚାଲି ଆସି ମୋ ଗୋଡ଼ ଦି'ଟା କ'ଣ ହେଉଯାଉଛି ଲୋ।

ଏଣୁ ସାଙ୍ଗରେ ଆସିଥିବା ବୋହୂଙ୍କୁ ହୁକୁମ ହେଲା-ଏ ମଲ୍ଲୀ, ଏ ଗୁରୁବାରୀ, ଟିକିଏ ମୋଡ଼ିଦେଲୁ...।

ଏଣୁ ମଲ୍ଲୀ, ଗୁରୁବାରୀ ସ୍ୱ-ସ୍ୱ ଶାଶୁଙ୍କର ପଦ ଆଉ ନିତମ୍ବ ମନ୍ଥନରେ ଲାଗି ପଡ଼ିଲେ। କିଛିକ୍ଷଣ ପରେ ମଙ୍ଗରାଜେ ସସ୍ତ୍ରୀକ ଆସି ଶ୍ରୋତାଙ୍କ ଭିତରେ ଉପସ୍ଥିତ ହୋଇ ଯେ ଯାର ଆସନ ଗ୍ରହଣ କଲେ।

ମନବୋଧ ଚଉତିଶା ବୋଲା ଆରମ୍ଭ ହେଲା-

ମଙ୍ଗରାଜେ ବୋଲିଲେ-

"କହଇ ମନ ଆରେ ମୋ ବୋଲ କର

କଳାଶ୍ରୀ ମୁଖବାରେ ଦେଖିବା ଚାଳରେ,

କେତେ ଦିନକୁ ମନ ବାନ୍ଧିଛୁ ଆଣ୍ଟ

କି ଘେନି ଯିବୁ ତୋର ଛୁଟିଲେ ଘଟରେ।"

ମଙ୍ଗରାଜେ ଏତକ ବୋଲି ଶ୍ରୋତାଙ୍କୁ ଏହାର ଅର୍ଥ ଭଲ ଭାବରେ ବୁଝେଇ ଦେଲେ। ମରଦ, ମାଇପି ଉଭୟ ଦଳର ଶ୍ରୋତାମାନେ ଏହାର ଅର୍ଥ ବୁଝି ତନ୍ମୟ ହୋଇଗଲେ। ମରଦଙ୍କ ଆଡ଼େ କେତେକଙ୍କ ଭିତରେ ଆଲୋଚନା ପଡ଼ିଗଲା-ଭାଇ କବି ଯେ, ସେ କେମିତି ସାରକଥା ବନେଇ ଚୂନେଇ ଲେଖି ଯାଇଛନ୍ତି। କହିଲେ, ସତେମ କ'ଣ ଅଛି ଏ ଦୁନିଆରେ? ନିଶ୍ୱାସଟା ଚାଲିଛି, ନିଶ୍ୱାସଟା ବନ୍ଦ ହେଇଗଲେ, କିଏ କାହାର? ଏତେ ଯେ ଧନ, ସମ୍ପତ୍ତି ଆମେ କମେଇବାକୁ ଦୌଡ଼ିଛୁ, ତା ଫଳ କ'ଣ? ଆଖି ବୁଜିଲେ ସବୁ ଅନ୍ଧାର...।

ତେଣେ ମାଇପିଙ୍କ ଆଡ଼େ କେତେକଙ୍କ ଭିତରେ ଆଲୋଚନା ପଡ଼ିଗଲା-ନାନୀ, କହିଲୁ ଏ ଦୁନିଆରେ କ'ଣ ଅଛି?.....

ଆଉ ଜଣେ ପାଳି ଧଇଲାପରି କହିଲା-କିଛି ନାହିଁଲୋ ନାନୀ, କିଛି ନାହିଁ। ମରିଗଲେ ପିନ୍ଧାଲୁଗା ଖଣ୍ଡକ ଛଡ଼େଇ ରଖିବେ, ମିଛ ମାୟାରେ ଖାଲି ଘାଣ୍ଟି ହେବା କଥା...।

ମଙ୍ଗରାଜେ ଏତିକିବେଳେ ଶ୍ରୋତାଙ୍କ ଭିତରୁ ଜଣକୁ ଡ଼ାକି ପଚାରିଲେ-ହଇରେ ସାରଙ୍ଗ, ତୁ ଯୋଉ ଧାନ ଭରଣେ କରଜ ନେଲୁ, ତାକୁ ଆଉ ଫେରେଇଲୁ ନାହିଁ। ଏଗୁରା ଭଲ କାମ କରୁଛୁ? ହଉ ତୁ କ'ଣ କରୁଛୁ କର.....।

ସାରଙ୍ଗକୁ ଏତେ ଲୋକ ମଝିରେ ମଙ୍ଗରାଜେ ଧାନକରଜ କଥା ପଚାରିଲାରୁ ସାରଙ୍ଗ ଲଜ୍ଜିତ ହୋଇ ଉତ୍ତର ଦେଲା-କ'ଣ କରିବି ଆଜ୍ଞା, ଅସୁବିଧାରେ ପଡ଼ିଯାଇଛି, ଦେଇ ଦେବି। ଆଉ ଟିକିଏ ସମାଳି ଯା'ନ୍ତୁ.....। ଏତକ ଉତ୍ତର ଦେଇସାରି ସାରଙ୍ଗ ତୁନି ତୁନି କେହି ନଶୁଣିବା ଭଳି ନିଜେ ନିଜେ କହିଲା-ଏଇ ଏକା ମଲେ ସବୁ ଧନଯାକ ମୁଣ୍ଡେଇ ନେଇଯିବ, ଶଳା ଅସଲ କୃପଣ ଏ....।

ମଙ୍ଗରାଜେ ପୁଣି ବୋଲିଲେ-

"ଖଣ୍ଡିଯେ ଖଣ୍ଡି ତୋର ପିଞ୍ଜରା କାଠି,

ଖାଉଣ ଥିବେ ଶ୍ୱାନ, ଶୃଗାଳ ବାଣ୍ଟିରେ

ଖଟ ପଲଙ୍କେ ମନ ଶେଯାଇ ଶୋଉ

ଖଳ ଦୁର୍ଗନ୍ଧ ହେବ ଏ ତୋର ଦେହୁରେ।"

ମଙ୍ଗରାଜେ ଏହାର ଅର୍ଥ ବିଶଦ ଭାବରେ ବୁଝେଇ ଦେଲା ପରେ, ମରଦ ଆଉ ମାଇପି ଉଭୟଆଡ଼େ କୁହାକୁହି ହେଲେ-

ମରଦଙ୍କ ଭିତରେ କେତେକ କୁହାକୁହି ହେଲେ-ଆହା, ସତେମ ଆମ ଏ ଦିହର କେତେ ଯତ୍ନ ନଉଛୁ? କ'ଣ ଅଛି ଏ ଦିହରେ? ମଲେ ତ ସେଇ କାଉ, କୁକୁର, ବିଲୁଆ, ଶାଗୁଣାଙ୍କର ଆହାର ହବ ନା ଆଉ କିଛି ଅଛି?

ତେଣେ ମାଇପିଙ୍କ ଆଡ଼େ କଥା ପଡ଼ିଲା-ନାନୀ, ସତେମ ଏ ଦିହରେ ଆମର କ'ଣ ଅଛି କହିଲୁ? ଆମେ କେତେ ନରଦି, ତେଲ ନଗଉଛୁ? ସଫା ସୁତୁରା ହଉଛୁ? କୋଉଠି ଟିକିଏ ମରି ଲାଗିବ ନାହିଁ। ମଲେତ କିଛି ନାହିଁ ଲୋ ନାନୀ।

ଏଇ ସମୟରେ ଜଣେ ଉକ୍ତ ମାଇପିକୁ ଥଟା କରି କହିଲା-ଆଉ ମାନେ ଫୁଲ ମୁଣ୍ଡରେ ଗୁଞ୍ଜି, ଆଖିରେ କଜ୍ଜା

ଲଗେଇ, କେତକୀ ଖଇର ପାନ ଖାଇ, ଦିହରେ ନାସନା ତେଲ ଲଗା ଯେ, ମଲେ ତୋ ଦିହରୁ ନାସନା ଚହଟିବ, ତୋ ଦିହ କାହିଁକି ଖର ଦୁରୁଗନ୍ଧ ହେବ?

ମଙ୍ଗରାଜେ ଏତିକିବେଳେ ଦେଖିଲେ-ହାଡ଼ିଆ ଧୋବା ଟୋକା ଶ୍ରୋତାଙ୍କ ଭିତରେ ବସି ଶୁଣୁଛି। ମଙ୍ଗରାଜେ ହାଡ଼ିଆକୁ ଡାକି କହିଲେ-ହଇରେ ହାଡ଼ିଆ, ତୁ ଏଥର ଯୋଉ ମୋ ଧୋତି, ଫତେଇ, ବିଛଣା ଚାଦର ନେଲୁ, କ'ଣ କରିଛୁ କହିଲୁ?

ହାଡ଼ିଆ ପଚାରିଲା-କ'ଣ କରିଛି କି ଅଜା?

ମଙ୍ଗରାଜେ ଆହୁରି ଚଡ଼ା କଣ୍ଠରେ-କ'ଣ କରିଛୁ ଆହୁରି ପଚାରିଛୁ? ହଇରେ କି ସଫା କରିଛୁ? ମୁଁ ତ ହାତରେ କାଚିଥିଲେ ତା'ଠୁଁ ବେଶୀ ସଫା କରିଥାନ୍ତି। ମନଇଚ୍ଛା କାମ କରୁଛୁ। ମାହାଳିଆ ମୁଁ ତୋତେ କାଚିବାକୁ ଦେଲି, ଭାରି ଉପରମୁହାଁ ହେଲୁଣି ତୁ। ତୋ ବାପ ତ ଇମିତି ନଥିଲା.....।

ହାଡ଼ିଆ ଏଥର କହିଲା- ହଁ ମ ଅଜା, ପଢୁଛନ୍ତି କ'ଣ? କହୁଛନ୍ତି କ'ଣ? ଏ ଦିହ ତ ଦିନେ ବିଲୁଆ, କୁକୁରଙ୍କ ଆହାର ହବ। ଏତେ ସଫା ସୁତୁରା ହେବାକୁ ମନ ବଳାଉଛନ୍ତି କାହିଁକି.....?

ଏତେବେଳେ ମଙ୍ଗରାଜେ ରାଗିଯାଇ ଆଉ ଜଣକୁ ସାକ୍ଷୀ କରି ହାଡ଼ିଆକୁ କହିଲେ-ମୁଁ ବ*ଛି, ସଫା ସୁତୁରା ହେବି ନାହିଁ? ମଲେ କ'ଣ ହବ, ମୁଁ ଦେଖିବି କି? ତୋ ମୁହଁ ଆଜିକାଲି ଭାରି ବଢ଼ି ଗଲାଣି.....।

ହାଡ଼ିଆ ଏତକ ଶୁଣି ତୁନି ତୁନି ହେଇ ନିଜେ ନିଜେ କହିଲା-ତମର ଖାଇ ମୁହଁ ବଢ଼ି ଗଲାଣି।

ହାଡ଼ିଆ ପୁଣି ବଡ଼ ପାଟିରେ କହିଲା-ହଉ ପଢ଼ନ୍ତୁ ପଢ଼ନ୍ତୁ।

ପୁଣି ମଙ୍ଗରାଜେ ଶାନ୍ତ ହେଇ ବୋଲିଲେ-

"ଗଲେଣି ତୋ ସଙ୍ଗତୁ ଯେତେକ ଜନ,

ଗଣ୍ଠିରେ ବାନ୍ଧି ନେଲେ କେ କେତେ ଧନରେ,

ଗୁରୁ ଗୋବିନ୍ଦ ନାମ ତୁଣ୍ଡେ ନବୋଲୁ

ଗାଢ଼େ ମଜ୍ଜିଣ ନିତ୍ୟେ ଧନ ଅର୍ଜିଲୁ ରେ।"

ମଙ୍ଗରାଜେ ଏହାର ଅର୍ଥ ଭଲ କରି ସମସ୍ତଙ୍କୁ ବୁଝେଇ ଦଉ ଦଉ ହାଡ଼ିଆ କହି ପକେଇଲା-ଆମେ ବୁଝୁଛୁ ଯେ, ଆପଣ ବୁଝନ୍ତୁ ଭଲ କରି.....। ମଙ୍ଗରାଜେ ହାଡ଼ିଆ ମୁହଁରୁ ଏ ଧରଣର କଥା ଶୁଣି ରାଗରେ ଅନ୍ୟମାନଙ୍କୁ ସାକ୍ଷୀ କଲାପରି କହିଲେ-ଶୁଣୁଛ ତ, ଏ ଟୋକାଖଣ୍ଡକ କ'ଣ କହୁଛି.....।

ହାଡ଼ିଆ କହିଲା-କ'ଣ ଖରାପ କଥା କହିଲି? ଉଚିତ୍ କଥା କହୁଛି। ଆମକୁ ଯେ ବୁଝଉଛନ୍ତି, ଆପଣ ନିଜେ କ'ଣ ବୁଝୁଛନ୍ତି? ଆପଣ ଗେରସ୍ତ, ଭାରିଯା ଦି'ଜଣ, ଏତେ ଲୋଭ କାହିଁକି? ଦେଢ଼ି, ମହାଜନୀ, ଖାଲି ଗରିବଙ୍କ ତଣ୍ଟି ଚିପି ଏତେ ଯେ ସମ୍ପତ୍ତି ବଢ଼ଉଛନ୍ତି, କିଏ ଖାଇବ? ହଡ଼ା ମଲେ ଗୁହାଳ ଖାଲି....।

ହାଡ଼ିଆ ଯେଉଁମିତି ଭାବରେ ମଙ୍ଗରାଜଙ୍କ ସଙ୍ଗେ ଯୁକ୍ତି କରୁଛି, ଅନ୍ୟମାନେ ତାକୁ କେହି ବାଧା ଦଉ ନାହାନ୍ତି; ବରଂ ଚୁପ୍ ରହି ଶୁଣୁଛନ୍ତି। ପୁଣି ମଙ୍ଗରାଜେ ନଦେଖିବା ଭଳି ମୁରୁକି ମୁରୁକି ହସୁଛନ୍ତି। ସମସ୍ତଙ୍କର ଯେମିତି ଇଚ୍ଛା-ହାଡ଼ିଆ ଯା'କହୁଛି ଠିକ୍ କହୁଛି। ଆହୁରି ଦି'କଥା ଭଲ କରି ବତଉ.....।

ତେଣେ ମାଇପି ଆଡ଼େ କେତେକ ମୁହଁରେ ଲୁଗା ଦେଇ ମଙ୍ଗରାଜଙ୍କ ସ୍ତ୍ରୀ ଯେମିତି ଜାଣି ନପାରିବେ, ମୁରୁକି ମୁରୁକି ହସୁଛନ୍ତି। ପୁଣି କେତେକ ହାଡ଼ିଆର ଯୁକ୍ତି ଶୁଣି ଆଶ୍ଚର୍ଯ୍ୟ ହେଇ ଭାବୁଛନ୍ତି-କାଲିକା ଟୋକା ହାଡ଼ିଆ, ତା'ମୁହଁ କେଡ଼େ ହେଲାଣି ମ? ଆଉ କେତେକଙ୍କ ଭିତରେ ଆଲୋଚନା ଚାଲିଛି-କିଏ କାହା ପାଖରେ ଗହଣା ବନ୍ଧା ରଖି ଟଙ୍କା କରଜ ନେଇଥିଲା, ସେ ଟଙ୍କା ସୁଝୁ ନାହିଁ, ସୁଧ ବଢ଼ିଗଲାଣି। ଜଣେ ଜଣକୁ ଧମକ ଦେଲା ଭଳି କହୁଛି-ସେ ଆଉ ବେଶୀ ଦିନ ଅପେକ୍ଷା କରି ପାରିବ ନାହିଁ। ଗହଣାକୁ ବିକିଦବ...କା' ଘରେ ଆଜି କି ତିଅଣ ହେଇଥିଲା? କା'ଗେରସ୍ତ କାହାକୁ ବାଡ଼େଇଛି, ସେ ତା କାରଣ କହୁ କହୁ କାନ୍ଦି ପକେଇ କାନିରେ ଲୁହ ପୋଛୁଛି। ପୁଣି କା'ଗେରସ୍ତ ରାଗୀ, କା'ଗେରସ୍ତ ଧୀର ସ୍ଥିର, ଇତ୍ୟାଦି ଇତ୍ୟାଦି।

ଏଣେ ଏତେ ଲୋକଙ୍କ ସାମନାରେ ହାଡ଼ିଆର କଥାଗୁରାକ ମଙ୍ଗରାଜଙ୍କ ଦିହରେ ଛୁରୀ ଚାଲିଗଲା ପରି ଜଣାପଡୁଛି । କ'ଣ କରିବେ ? ହାଡ଼ିଆକୁ ତ କେହି ଟିକିଏ ଚପେଇ ଦଉ ନାହାନ୍ତି । ସମସ୍ତେ ଯେମିତି ହାଡ଼ିଆ ଆଡ଼େ, ତାଙ୍କ ପଟେ କେହି ନୁହଁ ।

ଏଇ ସମୟରେ ଜଣେ ଦି'ଜଣ ବୟସ୍କ ଲୋକ ପାଟି କରି ହାଡ଼ିଆକୁ ଟିକିଏ ଚପେଇ ଦବା ପାଇଁ କହିଲେ-ତୁନିହ' ହାଡ଼ିଆ । ସରିପଟ ହେଇ ଗୋଟାଏ ଯୁକ୍ତି କରୁଛୁ ? ଦେଖୁବୁ ଅଭିକା ।

ଏଣେ ମଙ୍ଗରାଜଙ୍କୁ କହିଲେ-ବୋଲନ୍ତୁ ଆପଣ, ତା'କଥାରୁ କ'ଣ ପାଇବେ ? ଛତରାଟା ସେ ।

ମଙ୍ଗରାଜ ରାଗରେ କେତେଜଣଙ୍କୁ ସାକ୍ଷୀ କଲା ଭଳି କହିଲେ ଦେଖୁନା, ଶଳା କେଡ଼େ ବଡ଼ କଥା କହୁଛି-ହଡ଼ା ମଲେ ଗୁହାଳ ଖାଲି । ମଙ୍ଗରାଜେ ପୁଣି ରାଗରେ ହାଡ଼ିଆକୁ କହିଲେ-ଶଳା ବାହାର ଏଠୁଁ, ନାହିଁତ ଏ କଠଉକୁ ଅନେଇ କଥାବାର୍ତ୍ତା କରୁଥା ।

ହାଡ଼ିଆ ଏଥର ଟିକିଏ ତୁନି ହେଇ ବସିଲା । ମଙ୍ଗରାଜେ ପୁଣି ପଢ଼ିଲେ-

"ଘର ବୋଲି ଅର୍ଜିଛୁ ଯେତେ ପଦାର୍ଥ,
ଘଟ ଛୁଟିଲେ ତୋତେ ବୋଲିବେ ଭୂତରେ,
ଘର ଘରଣୀ ଦେହ କିଳାଉଥିବେ,
ଘେନି ବନ୍ଧୁ କୁଟୁମ୍ବ ସୁଦ୍ଧ ହୋଇବେରେ ।"

ଏଥର କେହି କିଛି କହିବା ଆଗରୁ ହାଡ଼ିଆ କହି ପକେଇଲା-ଦାସେ ଠିକଣା କଥା ଲେଖୁଛନ୍ତି । ଆହା, ଦାସେ ବଞ୍ଚିଥିଲେ ତାଙ୍କ ଗୋଡ଼ ଧୂଳି ନେଇ ମୁଣ୍ଡରେ ଲଗାଇଥାନ୍ତି । ବୁଝିଲେ ଅଜା, ଏ ଘରଭଡ଼ା, ଜମିବାଡ଼ି, ମହାଜନୀ କିଛି ନୁହଁ । ଆଉ ବେଶି ଲୋଭ କରନ୍ତୁ ନାହିଁ, ଏଣିକି ଦାନ ଖଇରାତ କରନ୍ତୁ । ଗରିବ ଦୁଃଖୀ ରଙ୍କୀଙ୍କ ପେଟ ଚିହ୍ନନ୍ତୁ ।

ହାଡ଼ିଆର ଏ କଥା ଶୁଣି ଏଥର ମଙ୍ଗରାଜେ କିଛି ନକହି ପାଖରେ ଥୁଆ ହୋଇଥିବା ନିଜ କଠଉ ହଳକ ଭିତରୁ ପଟେ କଠଉ ଉପରେ ହାତ ପକେଇଲେ । ମନରେ ସ୍ଥିର କଲେ-ଏଥର କଠଉ ପଟେ ହାଡ଼ିଆ ଉପରକୁ ଛାଡ଼ିବେ ।

ହାଡ଼ିଆ ଦେଖିଲା-ମଙ୍ଗରାଜେ ପଟେ କଠଉ ଉପରେ ହାତ ପକେଇଲେ । ହାଡ଼ିଆ ଭାବିଲା-ମଙ୍ଗରାଜେ ବୋଧେ ତା ଉପରକୁ କଠଉ ଫୋପାଡ଼ିବେ, କାରଣ ତା କଥାଗୁରାକ ମଙ୍ଗରାଜେ ସହି ପାରୁନାହାନ୍ତି, ବେଶି ରାଗିଗଲେଣି । ଏଣୁ ହାଡ଼ିଆ ଆଉ କିଛି ନକହି ମଙ୍ଗରାଜଙ୍କୁ କହିଲା-ବୋଲନ୍ତୁ, ବୋଲନ୍ତୁ; ବୁଢ଼ା ହେଲେଣି, ରାଗଟା ଆଉ କମୁ ନାହିଁ ।

ମଙ୍ଗରାଜେ ଏଥର କଠଉ ଉପରୁ ହାତ ଉଠେଇ ଆଣି ଭାବିଲେ-ହାଡ଼ିଆ ବୋଧେ ଭୟ କରିଗଲା, ଆଉ କିଛି ଯୁକ୍ତି କରିବ ନାହିଁ । ମଙ୍ଗରାଜେ ଏଣୁ ଟିକିଏ ପ୍ରକୃତିସ୍ଥ ହେଇ ପୁଣି ବୋଲିଲେ-

"ଉଦ୍ଧାର ହେବୁ ଯେବେ ଭବସାଗରୁ,
ଉପାୟ କରି ଭଜ ଏବେ ଶ୍ରୀଗୁରୁରେ
ଊଣା ହେଉଛି ଦିନୁଦିନ ଆୟୁଷ,
ଆଉ ଏଣିକି ଅଛି କେତେ ବୟସରେ ।"

ମଙ୍ଗରାଜେ ଏତକ ବୋଲି ସାରି ବୁଝେଇବାକୁ ଆରମ୍ଭ କରିବା ପୂର୍ବରୁ, ହାଡ଼ିଆ ହୋ ହୋ କରି ହସିପକେଇଲା । ହାଡ଼ିଆର ହସିବା ଦେଖି; ମଙ୍ଗରାଜେ ରାଗରେ ପଚାରିଲେ-ଶଳା ହସିଲୁ କାହିଁକି ?

ହାଡ଼ିଆ ସଙ୍ଗେ ସଙ୍ଗେ ଉତର ଦେଲା-ହସିଲି କାହିଁକି ବୁଝିପାରୁ ନାହାନ୍ତି ? ଆହା ଭକ୍ତଚରଣ ଦାସେ ଯଦି ବଞ୍ଚିଥାଆନ୍ତେ, ମୁଁ ତାଙ୍କ ଲୁଗାପଟା ସବୁ ମାଗଣାରେ କାଟି ଦିଅନ୍ତି । ଆହା କ'ଣ ଲେଖୁଛନ୍ତି ସେ ! ଏ ଭବସାଗରରୁ ଉଦ୍ଧାର ପାଇବାକୁ ହେଲେ ଶ୍ରୀଗୁରୁଙ୍କୁ ଭଜ-

ହାଡ଼ିଆ ମଙ୍ଗରାଜଙ୍କ କଥାରେ ଉତର ଦେବାକୁ ଯାଇ କହିଲା-କି ଭଜନ କରୁଛନ୍ତି ଆପଣ ! ସେ ମାଳା ଝୁଲିରେ ହାତ ପୂରେଇ ଯୋଉ ମାଳ ଟପ ଟପ କରୁଛନ୍ତି, ନା କିଏ ଧାର କରଜ ନେଲା, କେତେବର୍ଷ ହେଲା, କାହିଁକି ଦେଲା ନାହିଁ, ତାଠୁଁ କୋଉ ଉପାୟରେ ଆଦାୟ ହେବ କା ଉପରେ କେତେ ସୁଧ ହେଲାଣି କା ଉପରେ

ଘରଭଡ଼ା ବାକି ରହିଲା, ସେ କେମିତି ଆଦାୟ ହବ? ଏ ସବୁର ହିସାବ ଚାଲିଛି । ଆପଣ ଶ୍ରୀଗୁରୁଙ୍କୁ ଭଜୁଛନ୍ତି ଖାଲି ଲୋକ ଦେଖାଣିଆ ।

ଏତେ ଲୋକଙ୍କ ସାମନାରେ ହାଡ଼ିଆ ଇମିତିଆ ଉ©ରଦବା ଶୁଣି ମଙ୍ଗରାଜେ ରାଗରେ ବିଚଳିତ ହେଇ ପଟେ କଠଉ ଛାଡ଼ିଲେ ହାଡ଼ିଆ ଉପରକୁ । କଠଉ ପଟକ ହାଡ଼ିଆ ଦେହରେ ନବାଜି, ବାଜିଲା ଯାଇ ମଧୁରଥଙ୍କ ନାକରେ । ମଧୁରଥେ ନାକରେ କଠଉ ଆଘାତ ପାଇ ନାକକୁ ଧରିପକେଇ, 'ବୋପାଲୋ ମରିଗଲି' କହି ଭୂଇଁରେ ଟଳି ପଡ଼ିଲେ ।

ଏଥର ସମସ୍ତଙ୍କ ଦ୍ୱାରା 'ମନଅବୋଧ ଚଉତିଶା' (ଏକାଙ୍କିକା) ପରିବେଷଣ ଆରମ୍ଭ ହେଲା । ଏଥିରେ ହାଡ଼ିଆର ପଳାୟନ ଦୃଶ୍ୟ ଉଲ୍ଲେଖଯୋଗ୍ୟ । ଶ୍ରେଷ୍ଠାଂଶରେ ମଙ୍ଗରାଜଙ୍କ ଅଭିନୟ ·ଅତି ଉଚ୍ଚକୋଟିର-ନରହତ୍ୟା ଇମିତି କି ମଧୁରଥେ ବ୍ରାହ୍ମଣ ହୋଇଥିବାରୁ ବ୍ରହ୍ମହତ୍ୟା ଭୟରେ ବିଚଳିତ ହୋଇ ତାଙ୍କର ଲୁଗାପଟାର ଅବସ୍ଥା ଅତୀବ ଚି©ାକର୍ଷକ । ସମସ୍ତଙ୍କ ଦ୍ୱାରା ହାଡ଼ିଆର ଚଉଦ ପୁରୁଷର ବନ୍ଦନାରେ ଗଦ୍ୟପାଠୋତ୍ସବ ବିଶେଷ ଉପଭୋଗ୍ୟ । ମଧୁରଥଙ୍କ ନାକର ରକ୍ତସ୍ରାବ ସଙ୍ଗେ ତାଙ୍କର ଅଚୈତନ୍ୟ ଅବସ୍ଥାର ଦୃଶ୍ୟରେ ସମସ୍ତେ ଚମତ୍କୃତ । ନାରୀ ଭୂମିକାରେ ମଙ୍ଗରାଜଙ୍କ ପତ୍ନୀ ଏବଂ ଅନ୍ୟମାନେ ମଧୁରଥଙ୍କ ଆସନ୍ନ ପରଲୋକ ପ୍ରାପ୍ତିର ଆଶଙ୍କାରେ ହାଉଳିଖାଇ ଚିତ୍କାର କରିବା ସଙ୍ଗେ ଦିହମୁଣ୍ଡରେ ଲୁଗା ନରହିବାର ଦୃଶ୍ୟ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କଲା । ମଞ୍ଚସଜ୍ଜା ଏବଂ ଆଲୋକସଜ୍ଜାରେ ବିଶେଷ ତ୍ରୁଟି ପରିଲକ୍ଷିତ ହେଲେ ସୁଦ୍ଧା ମଙ୍ଗରାଜଙ୍କ ଚରିତ୍ର ସମସ୍ତଙ୍କୁ ବିଭ୍ରାନ୍ତ କରିଦେଲା ।

•

# ମିଳନ ମାଧୁରୀ

ପ୍ରେସ୍‌ରେ କାମ ଚାଲିଛି । କର୍ମଚାରୀମାନେ ଯେ ଯା'ର କାମରେ ଲାଗିଛନ୍ତି । ମେସିନ୍‌ର ଶବ୍ଦ ବାହାରକୁ ଶୁଣାଯାଉଛି । ଉକ୍ତ ପ୍ରେସ୍‌ରୁ ଖଣ୍ଡିଏ ସାପ୍ତାହିକ ପତ୍ରିକା ପ୍ରକାଶିତ ହୁଏ ନାମ "ସମ୍‌ବାଲୁଆ"- ସମାଲୋଚନାମୂଳକ ପତ୍ରିକା । ଏ ସମ୍‌ବାଲୁଆ ପତ୍ରିକାକୁ ସମ୍ପାଦନା କରନ୍ତି-ଶ୍ରୀ କଳାକଳେବର ମହାପାତ୍ର । ସେ ମଧ ତଳମୁହାଁ ହେଇ କେତେକ ପ୍ରୁଫ୍ ସଂଶୋଧନରେ ଲାଗିଛନ୍ତି ।

ଏଇ ସମୟରେ ଜଣେ ପ୍ରେସ୍ କର୍ମଚାରୀ ସମ୍ପାଦକଙ୍କ ରୁମ୍ ଭିତରକୁ ପଶିଆସି ସମ୍ପାଦକଙ୍କୁ ଜଣେଇଲେ-ଆଜ୍ଞା, ଜଣେ କିଏ ଭଦ୍ରଲୋକ ଆସୁଛନ୍ତି । ସେ ବୋଧହୁଏ ଆପଣଙ୍କ ସଙ୍ଗେ ଦେଖା କରିବେ କି କ'ଣ.... ପ୍ରେସ୍‌ର କର୍ମଚାରୀ ଜଣକ ଏତକ ଖବର ଦେଲାପରେ, ସମ୍ପାଦକ ଟିକିଏ ନିଜକୁ ସଜାଡ଼ି ନେଇ ଭଦ୍ରଲୋକଙ୍କର ଉପସ୍ଥିତିକୁ ଅପେକ୍ଷା କଲେ । ଅଳ୍ପ ସମୟ ପରେ ସମ୍ପାଦକଙ୍କ ରୁମ୍ ଭିତରକୁ ପ୍ରବେଶ କଲେ ଜଣେ ଯୁବକ ।

ଯୁବକଙ୍କର ପରିଧେୟ-ଟେରିଲିନ୍‌ର ଫୁଲ ନଲିପ୍ୟାଣ୍ଟ, ଟେରିଲିନ୍‌ର ହାଓ୍ୟାଇନ୍, ପାଦରେ ନୂଆ ଡ଼ିଜାଇନ୍‌ର ହଳେ ଜୋତା, ବାଁ ହାତରେ ରିଷ୍ଟ ଓ୍ୟାଚ୍, ଛାତିର ବାଁ ପକେଟ୍‌ରେ ଗୋଟାଏ ଫାଉଣ୍ଟେନ୍‌ପେନ୍ ଆଉ ଗୋଟାଏ ଗଗ୍‌ଲେସ୍ । ତା'ର ଗୋଟାଏ ପାଖର ଆଙ୍କୁସାଟା ପକେଟ୍ ବାହାରକୁ ଓହଳିଛି । ପୁଣି ସେହି ପକେଟ୍‌ରେ ଗୋଟିଏ ଛୋଟିଆ ଖାତା । ବୋଧେ ଡ଼ାଇରି ହବ କି କ'ଣ ! ହାତରେ ଖଣ୍ଡେ ପ୍ଲାସ୍‌ଟିକ୍‌ର ହ୍ୟାଣ୍ଡ୍‌ବ୍ୟାଗ୍ । ଯୁବକର ଗାଲ ଦି'ଟା ଅଳ୍ପ ଖାଲୁଆ ହେଲେ ମଧ ଚେହେରାର କାଟାଣ ମନ୍ଦ ନୁହେଁ ।

ଯୁବକ ସମ୍ପାଦକଙ୍କ ଅଫିସ୍ ରୁମ୍ ଭିତରକୁ ପ୍ରବେଶ କରିବା ମାତ୍ରେ, ସମ୍ପାଦକ ମହାପାତ୍ରେ ଯୁବକ ଉପରେ ନିଜର ଚଷମା ଭିତରୁ ଦୃଷ୍ଟି ନିକ୍ଷେପ କରି ନମ୍ର ଭାବରେ କହିଲେ-ବସନ୍ତୁ ।

ଯୁବକ ସମ୍ପାଦକଙ୍କ ପାଖରେ ପଡ଼ିଥିବା ଖଣ୍ଡିଏ ଚୌକୀରେ ବସିଲେ । ସମ୍ପାଦକ ପ୍ରଶ୍ନ କଲେ- "ମୁଁ ତ ଆପଣଙ୍କୁ ଚିହ୍ନି ପାରୁ ନାହିଁ । ଆପଣ କ'ଣ କରନ୍ତି ?"...

ଯୁବକ ଗମ୍ଭୀର ଭାବରେ ଉତ୍ତର ଦେଲେ- "ମୁଁ ଜଣେ ଗଭ୍‌ମେଣ୍ଟସର୍‌ଭାଣ୍ଟ"... ।

ସମ୍ପାଦକ ପୁଣି ପ୍ରଶ୍ନ କଲେ- 'କୋଉ ଡ଼ିପାର୍ଟମେଣ୍ଟରେ' ? ଯୁବକ ପୂର୍ବର ଗାମ୍ଭାର୍ଯ୍ୟ ବଜାୟ ରଖି ଉତ୍ତର ଦେଲେ- 'ଭିଜିଲାନ୍‌ସ୍ ଡ଼ିପାର୍ଟମେଣ୍ଟରେ'...

ଯୁବକ ଉତ୍ତର ଶୁଣିଲା ପରେ, ସମ୍ପାଦକ ମହାପାତ୍ରଙ୍କ ନାଭି ଅଞ୍ଚଳରେ ଟିକିଏ ସମ୍‌ବାଲୁଆ ଲାଗିଲା ପରି ଜଣାଗଲା ।

ମହାପାତ୍ରେ ଯୁବକର ରୂପ ଗାମ୍ଭୀର୍ଯ୍ୟ, ପୋଷାକ ପରିଛଦରୁ ମନେ ମନେ ଭାବି ନେଲେ- ଏ ଜଣେ ନିଶ୍ଚୟ ଭିଜିଲାନ୍‌ସ୍ ଡ଼ିପାର୍ଟମେଣ୍ଟର କେହି ଅଫିସର୍ ହେବେ । ଆଜି ଭିଜିଲାନ୍‌ସ୍ ଡ଼ିପାର୍ଟମେଣ୍ଟର କର୍ମଚାରୀ ଏଠିକି କାହିଁକି ଆସିଲେଣି ? ମହାପାତ୍ରଙ୍କ ମୁଣ୍ଡରେ କେତେଟା ଜାଗାରେ ବାଘୁଆ ମହୁମାଛି ମାରିଲା ପରି ଜଣାଗଲା ।

ସମ୍ପାଦକ ଏଥର ଯୁବକଙ୍କୁ ନମ୍ର ସ୍ୱରରେ ଅନୁରୋଧ କଲେ- "ଆପଣ ଟିକିଏ ଚା' ଖାଆନ୍ତୁ"...

ଯୁବକ ଚା'ପାନର ଅନୁରୋଧରେ ସମ୍ମତି ଦାନ କଲା ପରି ନିରୁତ୍ତର ହେଇ ବସିଲେ ।

ଖାଲି ଚା' କିମିତି ଦେବେ ? ତା'ସାଙ୍ଗକୁ ଅଳ୍ପ କିଛି ଜଳଖିଆ ଦବାର କଥା । ସମ୍ପାଦକ ଚୌକୀରୁ ଉଠିଯାଇ ପ୍ରେସ୍ ଭିତରେ ଜଣକୁ ଚା' ଏବଂ ସାମାନ୍ୟ କିଛି ଜଳଖିଆ ଆଣିବାକୁ ଆଦେଶ ଦେଲେ ।

ପ୍ରେସ୍ ସମ୍ମୁଖସ୍ଥ ରାସ୍ତାର ଆରପଟେ ଚା' ଜଳଖିଆ ଦୋକାନ । ଏଣୁ ଚା' ଜଳଖିଆ ଅନତିବିଳମ୍ବେ ପହଞ୍ଚି ଗଲା । ଯୁବକ ସମ୍ପାଦକଙ୍କ ରୁମ୍‌ରେ ପଡ଼ିଥିବା ଆଉ ଖଣ୍ଡିଏ ଟେବୁଲ ଓ ଚୌକୀରେ ବସି ଜଳଖିଆ ଖାଇବାକୁ ଆରମ୍ଭ କଲେ ।

ଯୁବକ ଜଳଖିଆ କରୁ କରୁ ଗୋଟିଏ ସିଙ୍ଗଡ଼ା ଉଦରସ୍ଥ କରି ଆଉ ଗୋଟିଏ ସିଙ୍ଗଡ଼ାକୁ ଅଧା କାମୁଡ଼ିଛନ୍ତି, ଏଇ ସମୟରେ ପ୍ରେସ୍‌ର ଜଣେ ପିଅନ ସମ୍ପାଦକଙ୍କ ରୁମ୍ ଭିତରକୁ ଗୋଟାଏ ଫାଇଲ୍ ଧରି ପଶିଆସି ଯୁବକକୁ ଦେଖି ଆଶ୍ଚର୍ଯ୍ୟ ହୋଇ ଆନନ୍ଦରେ ହସି ହସି ପରିହାସ କଲା ପରି କହିଲା-ହଇବେ ଭଗିଆ, ତୁ କିମିତି ଏଠିକି ଆସିଲୁ? ତୁ କିମିତି ମୋ ଠିକଣା ପାଇଲୁ? ତୁ ପରା ଭିଜିଲାନସ୍ ଡ଼ିପାର୍ଟମେଣ୍ଟରେ ପିଅନ କାମ କରୁଛୁ? ତୁ କୋରାପୁଟରୁ କେବେ ଆସିଲୁ? ଯା'ହଉ ବହୁତ ଦିନ ପରେ ଭେଟ ହେଲା । ସଙ୍ଗାତ ମୋତେ ମନେରଖିଛି । ମୁଁ ଭାବିଥିଲି-ଭଗିଆ କୁଆଡ଼େ ମଲାଣି, ଯା'ହେଉ ତୁ ବଞ୍ଚିଛୁ... ।

ପିଅନ ଏବଂ ତା'ର ସଙ୍ଗାତ ଭଗିଆ ଉଭୟେ ସମ୍ପାଦକଙ୍କ ରୁମ୍‌ରୁ ବାହାରକୁ ବାହାରି ଗଲାବେଳେ ସମ୍ପାଦକ ମହାପାତ୍ରେ ନିଜର କଲମ ପଛ ଅଂଶଟାକୁ ଓଠରେ ଲଗେଇ କିଛି ସମୟ ଅନେଇ ରହିଲେ । ତା'ପରେ ପୁଣି ପ୍ରୁଫ୍ ସଂଶୋଧନରେ ଲାଗିଲେ । ତଥାପି ତାଙ୍କୁ ଜଣାଗଲା ଯେମିତି ତାଙ୍କର ଦି'ଗାଲରେ ସମ୍ବାଲୁଆ ଲାଗିଛି ।



ଡ଼ାଃ ପୁଲିନ ବିହରୀଙ୍କ ରାୟଙ୍କର ଜନ୍ମସ୍ଥାନ
(ଥୋରିଆ ସାହିର ପଥର କୋଠା, କଟକ)



ପିତା ଶ୍ରୀ ବ୍ରଜବିହାରୀ ରାୟଙ୍କ ସହିତ ଶୈଶବରେ ପୁଲିନ୍‌ବିହାରୀ



ଜ୍ୟେଷ୍ଠା ଭଗିନୀ - କରିଣବାଲାଙ୍କ ସହିତ ଶୈଶବରେ ପୁଲିନ ବିହାରୀ - ୧୯୧୨



କନିଷ୍ଠା ଭଗିନୀ - ଶଙ୍କରୀ ବାଲା



ପିତା ୰ ଶ୍ରୀ ବ୍ରଜ ବିହାରୀ ରାୟ ଓ ମାତା ୰ ସୁଖଦା ସୁନ୍ଦରୀ ଦାସି



ବିବାହ ପରେ - ପୁଲିନ ବିହାରୀ ଓ ପତ୍ନୀ ସୁନିଲା ରାୟ -୧୯୪୦



୧୯୪୦ରେ ବିବାହ ପରର ଫଟୋ  ଠିଆ ହୋଇଥିବା ପ୍ରଥମ ଧାଡ଼ି - ବାଲ୍ୟବନ୍ଧୁ ଲୋକନାଥ ରାଉତ  ଠିଆ ହୋଇଥିବା ଦ୍ୱତିୟ ଧାଡ଼ି - ଏକ ମାତ୍ର ଭଣଜା-ଡ଼ା: ରବିନ୍ଦ୍ର ନାଥ ଦାସ ବସିଥିବା ଧାଡ଼ି - ପୁଲିନ ବିହାରୀ ଓ ପତ୍ନୀ ସୁନିଲା ରାୟ



ଫୁଟବଲ ଖେଳର ଇଉନିଫର୍ମରେ -
ପୁଲିନ ବିହାରୀ - ୧୯୨୯



କଟକ ମେଡ଼ିକାଲ ସ୍କୁଲରେ
ପଢ଼ିଲାବେଳେ ସ୍ୱାସ୍ଥ୍ୟ ଗଠନ କରି -
୧୯୩୮



୧୯୨୯ରେ କଟକର ମୁସ୍‌ଲିମ ସେମିନାରୀ ସ୍କୁଲର ଫୁଟବଲ ଟୁର୍ଣ୍ଣାମେଣ୍ଟରେ ଜିତିବା ପରେ- ୧୯୨୯



କଟକ ଖ୍ରୀଷ୍ଟ କଲେଜିଏଟ ସ୍କୁଲରେ (Doctor teacher) ପଢ଼ାଇବା ବେଳର St. John's Ambulance ସେବା ସଂସ୍ଥା - ଗଭର୍ଣ୍ଣର ଲୁଇସ ସାହେବଙ୍କ ସହିତ ପୁଳିନ ବିହାରୀ

# The Bihar and Orissa Medical Examination Board.

Pulin Bihari Ray

having completed the prescribed courses of study and having satisfied the Examiners of his ability to practise **Western Medical Science** as defined in the Indian Medical Degrees Act, 1916, has been granted this Licence and his name has this day been entered on the Roll of Licentiates of the Board.

Dated at Patna the tenth day of the month of January in the year one thousand, nine hundred and forty

Signed on behalf of the Bihar and Orissa Medical Examination Board.

B.A.
Secretary

F.R.C.P.
I.M.S.
President.

Signature of the Holder.

# ଡାକ୍ତର ଶ୍ରୀ ପୁଲିନ୍ ବିହାରୀ ରାୟ

ଆପଣ ଜଣେ ସୁଯୋଗ୍ୟ ଚିକିତ୍ସକ ଭାବରେ ଶାରୀରିକ-ବେଦନାକ୍ଲିଷ୍ଟ ରୋଗୀମାନଙ୍କୁ ସୁସ୍ଥ କରିବା ସଂଗେ ସଂଗେ ମାନସିକ-କ୍ଲେଶଗ୍ରସ୍ତ ବ୍ୟକ୍ତିମାନଙ୍କୁ ହାସ୍ୟରସ ପରିବେଷଣ କରି ଉପରୋକ୍ତ ଭାବରେ ସୁସ୍ଥ କରନ୍ତି ତାହା ବୃନ୍ଦେ ଦେଖିବାକୁ ମିଳିଥାଏ । ନିରଳସ ଭାବରେ ହାସ୍ୟରସ ସୃଷ୍ଟି କରିବାରେ ଆପଣ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଅଛନ୍ତି । ବୟସାଧିକ୍ୟ ସତ୍ତ୍ୱେ ଆପଣଙ୍କର ସରସ ଲେଖନୀରୁ ହାସ୍ୟରସର ଅମିୟ ମନ୍ଦାକିନୀ ଅବିରାମ ଭାବରେ ପ୍ରବାହିତ ହୋଇ ରସିକ ପାଠକମାନଙ୍କୁ ପ୍ରୀତ କରୁଅଛି

ଆଜିର ଏହି ଉଲ୍ଲେଖନୀୟ ଅବସରରେ ଓଡ଼ିଆ ସାହିତ୍ୟ ସମିତି ଆପଣଙ୍କୁ 'ରସରାଜ' ଉପାଧିରେ ଭୂଷିତ କରି ନିଜକୁ ଗୌରବାନ୍ୱିତ ମନେ କରୁଅଛି ।

କଟକ ୨୯.୧୦.୬୯

ବସନ୍ତ-ମଙ୍ଗଳ
୧୯୭୬

# ଶ୍ରୀ ପୁଲିନ ବିହାରୀ ରାୟ

ଶ୍ରୀ ପୁଲିନ ବିହାରୀ ରାୟଙ୍କ ଲେଖାରେ ଉତ୍କଳୀୟ ସମାଜର ଜୀବନର ସ୍ପଷ୍ଟ ପ୍ରତିଫଳନ ଦେଖିବାକୁ ମିଳେ ।

ଏତଦ୍‌ଦ୍ୱାରା ସମ୍ବର୍ଦ୍ଧନା ଉତ୍ସବ ମଞ୍ଚରେ ତାଙ୍କୁ ସମ୍ମାନିତ କରାଯାଉଛି ।

ପ୍ରଧାନ ଅତିଥି
ବସନ୍ତ-ମଙ୍ଗଳ

ଚେୟାରମାନ
ପ୍ରଜାତନ୍ତ୍ର ପ୍ରଚାର ସମିତି

ଡାକ୍ତର ଶ୍ରୀ ପୁଳିନ ବିହାରୀ ରାୟଙ୍କର ୧୯୪୬ରେ ପ୍ରକାଶିତ ପ୍ରଥମ ଗଳ୍ପସଂକଳନ 'ଛାୟାପଥ'ର ଗଳ୍ପଗୁଡ଼ିକ ସମ୍ବନ୍ଧରେ ଡକ୍ଟର ମାୟାଧର ମାନସିଂହଙ୍କର ଅଭିମତ।



ଡାକ୍ତର ପୁଳିନ ବିହାରୀ ରାୟ

## ଅଭିମତ

ଶ୍ରୀଯୁକ୍ତ ଡାକ୍ତର ପୁଳିନ ବିହାରୀ ରାୟଙ୍କର ଗଳ୍ପଗୁଡ଼ିକ ପଢ଼ି ମୁଁ ପ୍ରୀତ ହୋଇଛି, ଏହି ପୁସ୍ତକରେ ଥିବା ଅଧିକାଂଶ ଗଳ୍ପ ମୋ ଦ୍ୱାରା ସଂପାଦିତ 'ଆରତି' ଓ 'ଶଙ୍ଖ' ପତ୍ରିକାମାନଙ୍କରେ ପ୍ରକାଶିତ ହୋଇଯାଇଛି, ତେଣୁ ଗଳ୍ପ ଲେଖକ ଭାବରେ ପୁଳିନ ବିହାରୀ ବାବୁ ମୋର ବେଶ୍ ପରିଚିତ।

ସଂପାଦକ ଭାବରେ ମୁଁ ଯେତେ କ୍ଷୁଦ୍ର ଗଳ୍ପ ପାଇଥାଏ, ସେ ସେସବୁ ହୁଏତ ଯୌବନ କାଳର ପ୍ରେମର ଘାତ ପ୍ରତିଘାତ ବା କୃଷକ ବା ଶ୍ରମିକର ଦୁଃଖ ବର୍ଣ୍ଣନା କରିଥାନ୍ତି, କିନ୍ତୁ ପୁଳିନ ବାବୁଙ୍କ ଗଳ୍ପରେ ନୂତନତ୍ୱ ଅଛି, ଦୈନନ୍ଦିନ ଜୀବନର ଅନେକ ଉପେକ୍ଷିତ ଓ ଆସାହିତ୍ୟିକ ବିଷୟ ନେଇ ତାଙ୍କର ଗଳ୍ପ ରଚନା ଏଥିରେ ନାହିଁ ଅଛି ଯୌବନକାଳୀନ ପ୍ରଣୟର ଫେନିଳ ଉଚ୍ଛ୍ୱାସ ନାହିଁ ବା ଅଛି ପୁଞ୍ଜିପତି ତନ୍ତ୍ର ସମାଜ ବିରୁଦ୍ଧରେ ଅସ୍ଫାଳନ, ତଥାପି ସେ ଗୁଡିକ ଉପଭୋଗ୍ୟ ହୋଇଛି ନିଜର ସ୍ୱକୀୟ ରସ ଗୁରେ, ମୁଁ ଆଶାକରେ ପୁଳିନ ବାବୁ ଆଉରି ଅନେକ ଗପ ଏଇ ଧରଣର ଲେଖିବେ ଓ ତାଙ୍କର ଏହି ଗଳ୍ପବହିଟି ପାଠକମାନଙ୍କର ନିକଟରେ ଆଦୃତ ହେବ।

॥ ଇତି ॥

ମାୟାଧର ମାନସିଂହ

ପ୍ରଚ୍ଛଦପଟ ଶିଳ୍ପୀ : ଡଃ ମୁରଲୀଧର ଟାଲି